# ବିଦ୍ରୋହୀ ସନ୍ନ୍ୟାସୀ

(ସ୍ୱାମୀ ବିବେକାନନ୍ଦ ଜୀବନୀ ଓ ଦର୍ଶନ)

ମନୋଜ କୁମାର ମହାପାତ୍ର



ନିଉ ଏଜ୍ ପବ୍ଲିକେଶନ୍ସ
କଟକ

Digitized by srujanika@gmail.com

ବିଦ୍ରୋହୀ ସନ୍ୟାସୀ
ମନୋଜ କୁମାର ମହାପାତ୍ର

ପ୍ରଥମ ସଂସ୍କରଣ - ୨୦୦୮
© ମନୋଜ କୁମାର ମହାପାତ୍ର

ISBN : 81-88337-71-4

ପ୍ରକାଶକ :
ନିଉ ଏଜ୍ ପବ୍ଲିକେଶନ୍ସ
'ତାରା ଭବନ', ଷ୍ଟୋନିରୋଡ଼
ଚାନ୍ଦିନୀଚୌକ, କଟକ-୭୫୩୦୦୨

ବିତରକ :
ଏ.କେ.ମିଶ୍ର ଏଜେନ୍ସିଜ୍ (ପ୍ରା) ଲିଃ.
➤ 'ସତ୍ୟଭାମା'
ରକ୍ସି ଲେନ୍, ବାଦାମବାଡ଼ି, କଟକ-୭୫୩୦୦୯
ଫୋନ୍ : ୦୬୭୧-୨୩୨୨୨୪୪, ୨୩୨୨୨୫୫,୨୩୨୨୨୬୬, ଫ୍ୟାକ୍ସ : ୨୩୨୨୨୮୮
E-mail : ctk_akagency@sancharnet.in
➤ ୨୦୯, ବାପୁଜୀ ନଗର, ଭୁବନେଶ୍ୱର - ୭୫୧୦୦୯
ଫୋନ୍ : ୦୬୭୪-୨୫୩୩୯୭୧, ୨୫୩୩୩୪୯

ମୁଦ୍ରଣ : ଶୁଭମ୍ ପ୍ରିଣ୍ଟର୍ସ
ରାଜେନ୍ଦ୍ର ନଗର, କଟକ

*Digitized by srujanika@gmail.com*

## - ଉତ୍ସର୍ଗ -

ମୋର ସ୍ୱର୍ଗତା ପିଉସୀ ରାଜନାନୀ ଓ ପିତାମହ ସ୍ୱର୍ଗତ ଜଗବନ୍ଧୁ ମହାପାତ୍ର ଗୁଆମାଳ (ଭଦ୍ରକ)ଙ୍କର ସ୍ମୃତି ଉଦ୍ଦେଶ୍ୟରେ 'ବିଦ୍ରୋହୀ ସନ୍ୟାସୀ' ଏକ ଉତ୍ସର୍ଗୀକୃତ ଶ୍ରଦ୍ଧାଞ୍ଜଳି ।

**ମନୋଜ କୁମାର ମହାପାତ୍ର**

*Digitized by srujanika@gmail.com*

# ମୁଖବନ୍ଧ

ଅନନ୍ତ ଆକାଶର ବ୍ୟାପକତାକୁ କଳନା କରିବା ଲାଗି ଅଣ୍ଟା ଭିଡ଼ିଛି । ମାପିବାକୁ ଚେଷ୍ଟା କରିଛି, ପୁଣି ଗୋଟିଏ ଶିଡ଼ି ପକାଇ । ତାହାଇ ହୋଇଛି ସ୍ୱାମୀ ବିବେକାନନ୍ଦଙ୍କ ଉପରେ ଏକ ଜୀବନୋପନ୍ୟାସ ରଚନା କ୍ଷେତ୍ରରେ । ଏଭଳି ଏକ ବିଶାଳ ବ୍ୟକ୍ତିତ୍ୱର ଜ୍ୱାଳାମୟ ଚିନ୍ତାଧାରାର ମାର୍ତ୍ତଣ୍ଡକୁ କଲମ ମୁନରେ ଯତ୍‌କିଞ୍ଚିତ୍ ରୂପ ଦେବା କେଡ଼େ କଷ୍ଟକର ବ୍ୟାପାର ତାହା ମୁଁ ଆକାଶକୁ ମାପିବାର ବୃଥା ପ୍ରୟାସ ଭିତରେ ଉପଲବ୍ଧି କରିଛି । କାମିନୀକାଞ୍ଚନାସକ୍ତ ମଣିଷଟିଏ ମୁଁ, ପୁଣି ଲେଖୁଛି ପ୍ରଚଣ୍ଡ ସନ୍ନ୍ୟାସର ତ୍ୟାଗ ଓ ବୈରାଗ୍ୟର କାହାଣୀ; କେତେ ଦୂର ତାହା ମନଛୁଆଁ ହେବ, ହୃଦୟସ୍ପର୍ଶୀ ହେବ, ଅବଶ୍ୟ ମୋତେ ଜଣା ନାହିଁ । ତଥାପି ବାଲ୍ୟକାଳରୁ ଯେଉଁ ଆବେଗତା ଅଥବା ଅଭିଳାଷ ମୋ ଉପରେ ସବାର ହୋଇଥିଲା ତାହା ଏହି ପୁସ୍ତକ ରଚନାର ସମାପ୍ତି ଘଟିବାରେ କିଞ୍ଚିତ୍ ମାତ୍ରାରେ ଲାଘବ ହେବା ଯୋଗୁଁ ମୋତେ ଭାରି ଉସ୍ୱାସ୍ ଲାଗୁଛି । ହଁ ସତରେ ମୁଁ ତାହା ମୁକ୍ତ କଣ୍ଠରେ ସ୍ୱୀକାର କରୁଛି ।

ବିବେକାନନ୍ଦଙ୍କୁ ଜାଣିବାର ଅଭିଳାଷ ମୋ ଭିତରେ ସେହିଦିନ ଜନ୍ମ ନେଇଥିଲା ଯେଉଁଦିନ ମୋ ପିଉସୀ ରାଜନାନୀଙ୍କ ନିକଟରୁ ଶୁଣିଲି ବିବେକାନନ୍ଦ କାହାଣୀ । ସେତେବେଳେ ମୋର ବୟସ ମାତ୍ର ଦଶ ବର୍ଷ । ରାଜନାନୀ ବିବେକାନନ୍ଦଙ୍କ ସମ୍ବନ୍ଧରେ ବହୁ କାହାଣୀ ତାଙ୍କ ବାପା ଅର୍ଥାତ୍ ମୋ ପିତାମହଙ୍କଠାରୁ ଶୁଣିଥିଲେ ବୋଲି କହିବାରୁ ମୁଁ ଆହୁରି ବିସ୍ମୟ ବିମୂଢ଼ ହୋଇଗଲି । ହଁ, ଏଠାରେ ସୂଚେଇ ଦେବାକୁ ଚାହେଁଯେ ମୋ ପିତାମହ ସ୍ୱର୍ଗତ ଜଗବନ୍ଧୁ ମହାପାତ୍ର ଭଦ୍ରକ ଜିଲ୍ଲାର ଗୁଆମାଳ ଗ୍ରାମରେ ଜଣେ ଉଚ୍ଚ ଶିକ୍ଷିତ ଯୁବକ ଥିଲେ । ଊନବିଂଶ ଶତାବ୍ଦୀର ଶେଷଭାଗରେ ସେ କଲିକତାରେ ଏଫ୍.ଏ. ପାସ୍ କରି ବି.ଏ. ପଢୁଥିଲେ । କିନ୍ତୁ ଅଳ୍ପ ବର୍ଷ ସରକାରୀ ଚାକିରି କଲାପରେ ଯୁବକାବସ୍ଥାରେ ମାତ୍ର ୩୫ ବର୍ଷ ବୟସରେ ୧୯୧୧ ମସିହାରେ ତାଙ୍କର ଦେହାନ୍ତ ହୋଇଗଲା । ବର୍ତ୍ତମାନ ପ୍ରଶ୍ନ ଉଠେ - ହେଇପାରେ କଲିକତା ଅବସ୍ଥାନ ସମୟରେ ଶ୍ରୀରାମକୃଷ୍ଣ ପରମହଂସ ଆନ୍ଦୋଳନର ଭକ୍ତ, ଶିଷ୍ୟ ତଥା ବିବେକାନନ୍ଦଙ୍କୁ ଦେଖିଥିବେ, କଥାବାର୍ତ୍ତା ହୋଇଥିବେ ??? ସେ ଯାହାବି ହେଉ, ରାଜନାନୀଙ୍କର ବିବେକାନନ୍ଦ ସମ୍ବନ୍ଧିତ କାହାଣୀ ମୋର ବାଳୁତ ମାନସପଟରେ ଏକ ଅଲିଭା ଦାଗ ଛାଡ଼ିଦେଲା ଯା'ଫଳରେ ବିବେକାନନ୍ଦଙ୍କୁ ଜାଣିବାର ଉତ୍କଣ୍ଠା ମୋର ମାନସିକତାରେ ଏକ ରହସ୍ୟମୟ ଅଭିଳାଷ ପାଲଟିଗଲା । ଆଜି ପର୍ଯ୍ୟନ୍ତ ତାଙ୍କୁ ପଢୁଛି, ଶୁଣୁଛି, ଲେଖୁଛି ଓ ଭାବୁଛି । ମୋର କ୍ଷୁଦ୍ର

Digitized by srujanika@gmail.com

ସୀମିତ ମନରେ ମୁଁ ତାଙ୍କୁ ଯେତେ ଜାଣୁଛି, ସେତେ ସେ ମୋ ପାଇଁ ଅନନ୍ତ ରହସ୍ୟମୟ ହେଉଛନ୍ତି । ସତେକି ତାଙ୍କୁ ଜାଣିବାର ମୋର ସମସ୍ତ ଚେଷ୍ଟା ବୃଥାରେ ନିର୍ବାପିତ ! ତଥାପି ଯେତେବେଳେ ଅଣ୍ଟା ଭିଡ଼ିଛି ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ମୋର ଚେଷ୍ଟା ଅବ୍ୟାହତ ରହିବ ହିଁ ରହିବ, କାହିଁକିନା ସେ ମାନବିକତାର ଦେବଦୂତ ଅଥବା ଆମର ରୋଲ ମଡ଼େଲ । ବିବେକାନନ୍ଦଙ୍କୁ ଜାଣିବାର ଅପ୍ରତିହତ ଚେଷ୍ଟାରୁ ଜନ୍ମ ନେଇଛି **'ବିଦ୍ରୋହୀ ସନ୍ନ୍ୟାସୀ'** ।

ନିଜ ଅନୁଭୂତିରୁ ଯାହା ଶିଖିଛି ବା ଉପଲବ୍ଧି କରିଛି, ତାହାହିଁ ଅଳ୍ପ ଶବ୍ଦରେ ଏଠାରେ ମୁଁ କହିବି : ବିବେକାନନ୍ଦଙ୍କୁ ଜାଣିବା ପଥରେ ଯିଏ ବି ଯାତ୍ରୀ ସାଜିବ, ସେ ଏହି ପ୍ରପଞ୍ଚ ସଂସାରରେ ସଭିଙ୍କୁ ସାଙ୍ଗରେ ଧରି କିପରି ବଞ୍ଚିବାକୁ ହୁଏ, ସମସ୍ୟା ଓ ପ୍ରତିକୂଳ ଅବସ୍ଥାରେ ଜୀବନର ଚଲାପଥରେ କିପରି ସଂଘର୍ଷ କରିବାକୁ ହୁଏ, ବର୍ତ୍ତମାନ ଗଳାକଟା ପ୍ରତିଯୋଗିତାତ୍ମକ ବଜାର ଭିତ୍ତିକ ସମାଜରେ ସମସ୍ତ ସାଂସାରିକ ଚାକଚକ୍ୟ ଓ ପ୍ରଲୋଭନ ସତ୍ତ୍ୱେ ନିଜକୁ ମଣିଷଟିଏ ଭଳି ଗଢ଼ି ତୋଳି ନିର୍ଭୀକତା ସହ ଆଗକୁ ଆଗ କିପରି ମାଡ଼ିଚାଲିବାକୁ ହୁଏ, ତାହା ବିବେକାନନ୍ଦଙ୍କ ଆଦର୍ଶ ଜୀବନ ଓ ବାଣୀରୁ ଜଣେ ବଳ ଓ ସାହସ ସଂଗ୍ରହ କରିପାରିବ । ଏହି ଯାତ୍ରା ସ୍ୱାର୍ଥରୁ ନିଃସ୍ୱାର୍ଥ, ବ୍ୟକ୍ତିରୁ ବ୍ୟଷ୍ଟି, ଭୋଗରୁ ତ୍ୟାଗ, ବହୁରୁ ଏକ ଏବଂ ଦେହରୁ ଆତ୍ମା ଅଭିମୁଖେ ମଣିଷକୁ ପଥ ପ୍ରଦର୍ଶନ କରେ ଯେଉଁଠି ସେ ଜାଗତିକ ଦୃଷ୍ଟିରେ ଜାଣିପାରିବଯେ ସମସ୍ତ ଦୃଶ୍ୟ ଓ ଅଦୃଶ୍ୟ ବସ୍ତୁ ପଶ୍ଚାତରେ ଏକଇ ଶୁଦ୍ଧ ସତ୍ତା ଅଥବା ଈଶ୍ୱର ବିରାଜିତ । ସେହିଠାରୁ ହିଁ ଆରମ୍ଭ ହେବ ବ୍ୟକ୍ତିର ଆଧ୍ୟାତ୍ମିକ ଅନ୍ୱେଷଣ ଓ ବିକାଶର ପ୍ରକ୍ରିୟା ।

ଆଉ ଗୋଟିଏ ବଡ଼ କଥା ହେଉଛି ଯେ - ଯିଏ ଯେଉଁ ଧର୍ମ, ସମ୍ପ୍ରଦାୟ, ମତ ଓ ପଥର ବ୍ୟକ୍ତି ଏପରିକି ନାସ୍ତିକ ହେଇଥାଉ ପଛେ, ସେ ଯଦି ବିବେକାନନ୍ଦଙ୍କୁ ପଢ଼ିବେ ଓ ଜାଣିବେ, ନିଶ୍ଚିତ ଭାବରେ ନିଜର ଉପାସନା ପଦ୍ଧତି, ଈଶ୍ୱର, ଗୁରୁ ଏବଂ ନିଜର ଆଦର୍ଶ ଓ ଚିନ୍ତାଧାରା ପ୍ରତି ଶତଗୁଣରେ ନିଷ୍ଠା, ଭକ୍ତି ଓ ଦୃଢ଼ତା ବଢ଼ିଯିବ ଏଥିରେ ଲେଶମାତ୍ରେ ସନ୍ଦେହ ନାହିଁ । ଏହା ପ୍ରମାଣସିଦ୍ଧ । କାହିଁକିନା ବିବେକାନନ୍ଦ ଏକ ବ୍ୟକ୍ତି ନୁହେଁ ବରଂ ଏକ ଶାଶ୍ୱତ ସ୍ୱର ।

ସ୍ୱାମୀ ବିବେକାନନ୍ଦଙ୍କ ବ୍ୟକ୍ତିତ୍ୱ ଭିତରେ ସାଧାରଣତଃ ଦୁଇଟି ପ୍ରମୁଖ ଦିଗ ପ୍ରତୀୟମାନ ହୁଏ, ଗୋଟିଏ ହେଲା ମାନବିକ, ଅନ୍ୟଟି ଆଧ୍ୟାତ୍ମିକ । ମନୁଷ୍ୟର ଦୁଃଖ, କ୍ଳେଶ, ବେଦନା ଓ ନିର୍ଯ୍ୟାତନା ଦେଖି ତାଙ୍କର ପ୍ରାଣ କାନ୍ଦି ଉଠୁଥିଲା ଏବଂ ସେମାନଙ୍କୁ ଏଭଳି ଦୂରାବସ୍ଥାରୁ ରକ୍ଷା କରିବା ଲାଗି ଏକ ଦ୍ରୁତ ପ୍ରଗତିଶୀଳ ସାମାଜିକ ପରିବର୍ତ୍ତନ ଚାହୁଁଥିଲେ । ଏହି ସାମାଜିକ ପରିବର୍ତ୍ତନ କୌଣସି ଗୋଟିଏ ଧର୍ମ, ତତ୍ତ୍ୱ, ସିଦ୍ଧାନ୍ତ ଓ ବିଚାର ଧାରାକୁ ଅଧାର କରି ନୁହେଁ, ବରଂ ମାନବିକ ମୂଲ୍ୟବୋଧ ଭିତ୍ତିକ ମାନବବାଦକୁ ପାଥେୟ କରି ସଂଘଟିତ ହେବ, ଯା'ଫଳରେ ମନୁଷ୍ୟ ପୃଥିବୀପୃଷ୍ଠରେ ସମ୍ମାନ ଓ ମର୍ଯ୍ୟାଦା ସହ ଏକ ବିଚାରବନ୍ତ ଓ ଉନ୍ନତ ଜୀବନ, ସ୍ୱାଧୀନ ଭାବରେ ବଞ୍ଚିପାରିବ । ଏହା କେବଳ ସେବା ଓ ତ୍ୟାଗ ମାଧ୍ୟମରେ ସମ୍ଭବ ହେବ ଏବଂ ଏହାର ବାସ୍ତବ ରୂପାୟନ ଯୁବ ସମ୍ପ୍ରଦାୟଙ୍କ ଉପରେ ନିର୍ଭରଶୀଳ । ସୁତରାଂ ଭାରତୀୟ

*Digitized by srujanika@gmail.com*

ଯୁବବର୍ଗଙ୍କୁ ଅବିଳମ୍ବେ ଅଣ୍ଟା ଭିଡ଼ି କାର୍ଯ୍ୟରେ ଲାଗିଯିବା ପାଇଁ 'ମର ଓ କର' ଆହ୍ୱାନରେ ସେ ଦୀକ୍ଷିତ କରୁଥିଲେ ।

ଅନ୍ୟପକ୍ଷରେ ସ୍ୱାମୀଜୀଙ୍କର ନିରାକାରବାଦୀ ମନ ବହୁ ସମୟରେ ଊର୍ଦ୍ଧ୍ୱ ଚେତନାର ରାଜ୍ୟକୁ ଉଡ଼ି ଯାଉଥିଲା ଯେଉଁଠାରୁ ସେ ଫେରିବାକୁ ଚାହୁଁ ନ ଥିଲେ; ନିରନ୍ତର ସେଠାରେ ଧ୍ୟାନସ୍ଥ ହୋଇ ଶାଶ୍ୱତ ଆନନ୍ଦ ଭୁଞ୍ଜନ୍ତେ !!! କିନ୍ତୁ ମନୁଷ୍ୟର ଦୁଃଖ ଓ ଯାତନା ବାରମ୍ବାର ତାଙ୍କୁ ଟାଣି ଆଣୁଥିଲା । ଏହି ଟଣାଓଟରା ଭିତରେ ସେ ଖାଲି ଚିତ୍କାର କରୁଥିଲେ ଦୁଃଖ ଓ କ୍ରୋଧରେ; ସତେକି ମୁହୂର୍ତ୍ତକ ମଧ୍ୟରେ ମଣିଷ କାହିଁକି ସମସ୍ତ ଜୀବଙ୍କୁ ମୁକ୍ତି କରି ଦିଅନ୍ତେ !!! କାହିଁକିନା ମହାକାରୁଣିକ ଗୌତମ ବୁଦ୍ଧଙ୍କ ସମ ଆଖିରେ ଆଖିଏ ଲୁହଧରି ସେ ଗେରୁଆ ବସ୍ତ୍ର ପରିଧାନ କରି ସନ୍ନ୍ୟାସୀ ହୋଇଥିଲେ ତ !

ମୋର ବନ୍ଧୁ ଅଧ୍ୟାପକ ସୂର୍ଯ୍ୟନାରାୟଣ ମିଶ୍ରଙ୍କର ସ୍ମୃତି ଇତ୍ୟବସରରେ ମାନସ ପଟରେ ବାରମ୍ବାର ଜାଗି ଉଠୁଛି । କଟକ ଜିଲ୍ଲାର ନରସିଂହପୁରର ଅଧିବାସୀ ତଥା ଦର୍ଶନ ବିଭାଗର ଅଧ୍ୟାପକ ମିଶ୍ର ଥିଲେ ଅଖିଳ ଭାରତ ବିବେକାନନ୍ଦ ଯୁବ ମହାମଣ୍ଡଳର ଜଣେ ସକ୍ରିୟ ସଭ୍ୟ ଏବଂ ବିବେକାନନ୍ଦଙ୍କୁ ଆଜିର ଯୁବ ସମ୍ପ୍ରଦାୟଙ୍କ ଭିତରେ ପରିଚିତ କରାଇବା କ୍ଷେତ୍ରରେ ତାଙ୍କରଭୂମିକା ଅବିସ୍ମରଣୀୟ । ସେ କର୍କଟ ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁସହ ସଂଗ୍ରାମ କରୁଥିବାବେଳେ ମୋତେ ପଦଟିଏ କହିଥିଲେ, ''ମନୋଜବାବୁ, ମୃତ୍ୟୁକୁ ମୋର ଭୟ ନାହିଁ, କିନ୍ତୁ ଗୋଟିଏ ଅବଶୋଷ ମୋର ରହିଗଲା ଯେ ମୁଁ ଆଉ ସ୍ୱାମୀଜୀଙ୍କ କାର୍ଯ୍ୟ କରି ପାରିବି ନାହିଁ ।'' ଆଜକୁ ଚାରିବର୍ଷ ତଳେ ମାତ୍ର ୫୬ ବର୍ଷ ବୟସରେ ତାଙ୍କର ଦେହାନ୍ତ ହେଲା । କିନ୍ତୁ ତାଙ୍କର ଭୟଶୂନ୍ୟ ପଦଟିଏ କଥା ଆମ ସମସ୍ତ ପାଇଁ ଏକ ପ୍ରେରଣା ହୋଇ ରହିଗଲା ।

ବିବେକାନନ୍ଦଙ୍କୁ ଜାଣିବା ପଥରେ ବହୁ ପୁସ୍ତକ ଓ ପତ୍ରପତ୍ରିକା ପଢ଼ିଛି ଏବଂ ରାମକୃଷ୍ଣ ମଠ ଓ ମିଶନର ସାଧୁ ସନ୍ନ୍ୟାସୀ, ଗୃହସ୍ଥ, ଭକ୍ତ ତଥା ବିଦ୍ୱାନ ଓ ପଣ୍ଡିତଙ୍କଠାରୁ ଶୁଣିଛି ବହୁ ଉପାଦେୟ ପରାମର୍ଶ ଓ କାହାଣୀ । ପୁସ୍ତକାଗତ ଜ୍ଞାନ ତଥା ନିଜର ସାଧନା ଓ ଅନୁଭୂତିକୁ ପାଥେୟ କରି ଏହି ଜୀବନୋପନ୍ୟାସ 'ବିଦ୍ରୋହୀ ସନ୍ନ୍ୟାସୀ' ରଚିତ । ନିମ୍ନଲିଖିତ ପୁସ୍ତକ ଓ ପତ୍ରିକା ମୋ ରଚନା କ୍ଷେତ୍ରରେ ସାହାଯ୍ୟ କରିଛି ।


୧. The Life of Swami Vivekananda by Eastern and Western disciples – Vol-I & II.

୨. Vivekananda – The warrior saint by Hansraj Rohbar.

୩. Swami Vivekananda by Amiya P. Sen.

୪. ସ୍ୱାମୀ ବିବେକାନନ୍ଦଙ୍କ ପତ୍ରାବଳୀ ।

୫. Vivekananda – A biography by Swami Nikhilananda.


Digitized by srujanika@gmail.com

୬. ବିବେକାନନ୍ଦ ଚରିତ - ଶ୍ରୀ ସତ୍ୟେନ୍ଦ୍ର ନାଥ ମଜୁମ୍‌ଦାର୍ ।
୭. A Colossus Named Vivekananda – Romain Rolland.
୮. Complete Works of Swami Vivekananda.
୯. ସହାସ୍ୟ ବିବେକାନନ୍ଦ - ଶଙ୍କରୀ ପ୍ରସାଦ ବସୁ ।
୧୦. Swami Vivekananda – the living Vedant by Chaturvedi Badrinath.
୧୧. ପ୍ରବୁଦ୍ଧ ଭାରତ ।
୧୨. ବେଦାନ୍ତ କେଶରୀ ।
୧୩. Vivekananda World Teacher – Swami Adiswarananda.
୧୪. A Biography of Swami Vivekananda – Gautam Ghosh.

ଏହି ପୁସ୍ତକ ରଚନା କ୍ଷେତ୍ରରେ ମିନତି ପଟ୍ଟନାୟକ ପ୍ରୁଫ୍ ରିଡ଼ିଙ୍ଗ୍ ସହ ଅନ୍ୟାନ୍ୟ କାର୍ଯ୍ୟରେ ମୋତେ ଯଦି ସାହାଯ୍ୟ କରି ନ ଥାନ୍ତେ, ବୋଧହୁଏ ଏହି ବିଦ୍ରୋହୀ ସନ୍ନ୍ୟାସୀ ଅଧୁରା ରହିଯାଇଥାନ୍ତା କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କୁ ମୋର ଧନ୍ୟବାଦ । ଧନ୍ୟବାଦ ବି ମୋର ବାଲ୍ୟବନ୍ଧୁ ଡକ୍ଟର ମହେଶ୍ୱର ଦାସଙ୍କୁ ଯିଏ ତାଙ୍କର ବହୁମୂଲ୍ୟ ସମୟ ଦେଇ ପୁସ୍ତକ ସଂଶୋଧନ କାର୍ଯ୍ୟରେ ମୋତେ ସାହାଯ୍ୟ କରିଛନ୍ତି ।

ବାପା ଓ ବୋଉ, ଭାଇ ଓ ଭଉଣୀ, ଆତ୍ମୀୟ ସ୍ୱଜନ, ବନ୍ଧୁବାନ୍ଧବ, ସାଙ୍ଗ ସାଥୀ ଓ ଶୁଭେଚ୍ଛୁ, ମୋର ବିବେକାନନ୍ଦଙ୍କୁ ଜାଣିବାର ବାଲ୍ୟକାଳରୁ ଆଜିପର୍ଯ୍ୟନ୍ତ ଭଳି ଲମ୍ବା ପଥରେ ମୋତେ ପ୍ରେରଣା, ଉତ୍ସାହ ଓ ସହଯୋଗ ପ୍ରଦାନ କରିଥିବାରୁ ମୁଁ ସେମାନଙ୍କୁ ଏଠାରେ ବିନମ୍ର ପ୍ରଣାମ ଓ ଧନ୍ୟବାଦ ଦେଉଛି ।

ସର୍ବଶେଷରେ ଆଶା ରଖିଛି ପାଠକ ପାଠିକାଙ୍କର ସୁଚିନ୍ତିତ ମତାମତ ଜଣାଇଲେ, ମୁଁ ବିଶେଷ ଖୁସି ହେବି । ଆବଶ୍ୟକ ସ୍ଥଳେ ପରବର୍ତ୍ତୀ ସଂସ୍କରଣରେ ପୁସ୍ତକରେ ରହିଯାଇଥିବା ତ୍ରୁଟିକୁ ସଂଶୋଧନ କରିବାକୁ ପ୍ରୟାସ କରିବି ।

ତା. ୧୨.୦୧.୨୦୦୮

ମନୋଜ କୁମାର ମହାପାତ୍ର
B-03 ଶ୍ରୀରାମବିହାର ଆପାର୍ଟମେଣ୍ଟ
ନୀଳକଣ୍ଠ ନଗର, ନୟାପଲ୍ଲୀ, ଭୁବନେଶ୍ୱର-୧୨
(0674)2421077

Digitized by srujanika@gmail.com

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|
| ୧ । ଏକ ସ୍ୱରର ଆବିର୍ଭାବ ଘଟିଲା - ଶୁଦ୍ଧ ଓ ପବିତ୍ର ସ୍ୱର। ଅବ୍ୟକ୍ତ ଥିଲା, ବ୍ୟକ୍ତ ହେଲା | ୧ |
| ୨ । କଳିକାର ପ୍ରସ୍ଫୁଟନ - ମେଟ୍ରୋପଲିଟାନ୍ ଇନ୍‌ଷ୍ଟିଚ୍ୟୁଶନରେ ପ୍ରବେଶ | ୧୪ |
| ୩ । ଅଶାନ୍ତ ଅଗ୍ନିବର୍ଷୀ ମନ - ପ୍ରେସିଡେନ୍ସୀ କଲେଜ ଓ ସ୍କଟିସ ଚର୍ଚ୍ଚ କଲେଜରେ ବିଦ୍ୟାର୍ଥୀ ନରେନ୍ଦ୍ର | ୨୩ |
| ୪ । ଏକ ଐତିହାସିକ ଭେଟ - ଶ୍ରୀରାମକୃଷ୍ଣ ପରମହଂସଙ୍କ ସହ ମିଳନ | ୩୨ |
| ୫ । ନରେନ୍ଦ୍ରଙ୍କର ତାର୍କିକ ଓ ବ୍ରାହ୍ମସମାଜ ଦ୍ୱାରା ସାଂସ୍କାରିକ ମନ ଛିନ୍ନଭିନ୍ନ ହେଲା | ୪୩ |
| ୬ । ଧ୍ୟାନର ଅନନ୍ତ ଇଲାକାରେ ବିଚରଣ | ୫୬ |
| ୭ । ପିତୃ ବିୟୋଗ - ଦାରିଦ୍ର୍ୟ କଷାଘାତ ଜର୍ଜରିତ - ଜୀବନ ଭିତରେ କାଳୀଙ୍କର ଦିବ୍ୟଦର୍ଶନ ଲାଭ | ୬୫ |
| ୮ । 'ଶିବ ଜ୍ଞାନେ ଜୀବ ସେବା' ମହାମନ୍ତ୍ରରେ ଦୀକ୍ଷିତ | ୮୦ |
| ୯.। ପାଠ ପଢ଼ାରେ ଡୋରି ଲାଗିଲା - ନେତୃତ୍ୱ ନେବାର କଳା ବିକଶିତ ହେଲା | ୯୫ |
| ୧୦ । ନରେନ୍ଦ୍ର ପ୍ରତି ଶ୍ରୀରାମକୃଷ୍ଣ ପରମହଂସଙ୍କର ଯୁଗାନ୍ତକାରୀ ଧିକ୍କାର | ୧୦୫ |
| ୧୧ । ଅନନ୍ତ ଶାନ୍ତ ମହାପାରାବାରରେ ନରେନ୍ଦ୍ରଙ୍କର ଅବଗାହନ - ଶ୍ରୀରାମକୃଷ୍ଣ ପରମହଂସଙ୍କର ମହାପ୍ରୟାଣ | ୧୨୦ |
| ୧୨ । ନରେନ୍ଦ୍ରଙ୍କର ନେତୃତ୍ୱ ଏକ ଚେଲେଞ୍ଜର ସମ୍ମୁଖୀନ ହେଲା - ଉତ୍କଟ ଦାରିଦ୍ର୍ୟ ଭିତରେ ଯୁବଭକ୍ତ ଗଣଙ୍କର ସନ୍ନ୍ୟାସ ନାମକରଣ - ରାମକୃଷ୍ଣ ମଠ ଓ ମିଶନର ବୀଜ ବପନ | ୧୩୬ |

*Digitized by srujanika@gmail.com*

୧୩। ପରିବ୍ରାଜକ ଜୀବନ ଆରମ୍ଭ - ସ୍ୱାମୀ ଭାସ୍କରାନନ୍ଦ,
ଶ୍ରୀ ତୈଲଙ୍ଗ ସ୍ୱାମୀ ଓ ପାଓ୍ୱାହାରୀ ବାବାଙ୍କର ସହ ସାକ୍ଷାତ ୧୪୯

୧୪। ହିମାଳୟ ଏବଂ ଉତ୍ତର ଓ ପଶ୍ଚିମ ଭାରତ ପରିଭ୍ରମଣ -
ଭାରତବର୍ଷର ବୈଚିତ୍ର୍ୟମୟ ଶୋଭାରାଶି ଦର୍ଶନ ୧୬୬

୧୫। ପଶ୍ଚିମ ଭାରତର ଅହମ୍ମଦାବାଦ, ଜୁନାଗଡ଼, ପ୍ରଭାସକ୍ଷେତ୍ରାଦି ସ୍ଥାନ
ପରିଭ୍ରମଣ - ବହୁ ବାଧାବିଘ୍ନ ସତ୍ତ୍ୱେ କପର୍ଦ୍ଦକଶୂନ୍ୟ ସନ୍ନ୍ୟାସୀଙ୍କ
ପାଦ ଅବଶ ହେଉ ନ ଥିଲା ୧୮୭

୧୬। ଭାରତବର୍ଷର ଶେଷ ଶିଳାଖଣ୍ଡ କନ୍ୟାକୁମାରୀରେ ସ୍ୱାମୀଜୀ ୧୯୫

୧୭। ରାମେଶ୍ୱରମ୍, ମାନ୍ଦ୍ରାଜ ଓ ହାଇଦ୍ରାବାଦ ଅଭିମୁଖେ ଯାତ୍ରା ୨୦୫

୧୮। ପୁନଶ୍ଚ କ୍ଷେତ୍ରୀ ରାଜାଙ୍କର ଅତିଥି ଏବଂ
ଆମେରିକା ଯାତ୍ରା ପାଇଁ ସଜବାଜ ୨୧୫

୧୯। ଆମେରିକା ଯାତ୍ରା - ବିଶ୍ୱଧର୍ମ ସମ୍ମିଳନୀରେ ଯୋଗ ଦେବେ ୨୨୧

୨୦। ଚିକାଗୋ ବିଶ୍ୱଧର୍ମ ସମ୍ମିଳନୀ - ସ୍ୱାମୀଜୀଙ୍କ ମୁଖରୁ
ନିଃସୃତ ହେଲା ଅଗ୍ନିର ଜିହ୍ୱା ସଦୃଶ ଶବ୍ଦମାଳା ୨୩୦

୨୧। ଆମେରିକା ଭୂଖଣ୍ଡରେ ବେଦାନ୍ତର ବିଜୟ ଝଣ୍ଡା ଉଡ଼ିଲା -
ଭାରତବର୍ଷ ପୁନଃ ଆବିଷ୍କୃତ ହେଲା ୨୪୭

୨୨। ନିନ୍ଦା ଓ ପ୍ରଶଂସାକୁ ଖାତିରି ନାହିଁ - ସ୍ୱାମୀଜୀଙ୍କର ଆମେରିକାରେ
ତୁଫାନୀ ଗସ୍ତ। ପ୍ରଖ୍ୟାତ ଶିଳ୍ପପତି ରକଫେଲରଙ୍କ ସହ ସାକ୍ଷାତ ୨୬୧

୨୩। ଖ୍ରୀଷ୍ଟଧର୍ମ ପ୍ରଚାରକଗଣଙ୍କ ପ୍ରତି ଧିକ୍କାର ୨୭୫

୨୪। ସେଣ୍ଟ ଲରେନ୍ସ ନଦୀକୂଳସ୍ଥ ସହସ୍ର ଦ୍ୱୀପପୁଞ୍ଜ ଉଦ୍ୟାନରେ
ପ୍ରେରଣାପୂର୍ଣ୍ଣ ପ୍ରଶିକ୍ଷଣ ୨୯୩

୨୫। ଅଳ୍ପଦିନ ପାଇଁ ସ୍ୱାମୀଜୀଙ୍କର ପ୍ୟାରିସ ଓ ଲଣ୍ଡନ ଯାତ୍ରା -
ମାର୍ଗେଟ ନୋବେଲ୍ (ଭଗ୍ନୀ ନିବେଦିତା) ଏବଂ
ଜୋସିଆ ଜେ ଗୁଡ୍‌ଓ୍ୱିନ୍ ସ୍ୱାମୀଜୀଙ୍କୁ ଅନୁସରଣ କଲେ ୩୧୨

୨୬। ଏକ ସାର୍ବଜନୀନ ଧର୍ମର ଆଦର୍ଶ ହିଁ ବେଦାନ୍ତ -
ପ୍ରାଚ୍ୟ ଓ ପାଶ୍ଚାତ୍ୟର ସେତୁବନ୍ଧ ୩୨୨

Digitized by srujanika@gmail.com

୨୭ । ପୁନଶ୍ଚ ଇଂଲଣ୍ଡ ଯାତ୍ରା - ପ୍ରଖ୍ୟାତ ଦାର୍ଶନିକ ପ୍ରଫେସର ମେକ୍ସମୁଲରଙ୍କ ସହ ଆଳାପ ଆଲୋଚନା ୩୩୧

୨୮ । ଇୟୁରୋପ ମହାଦେଶ ଭ୍ରମଣ - ସୁଇଜରଲ୍ୟାଣ୍ଡ, ଜର୍ମାନାଦି ରାଷ୍ଟ୍ରରେ ଅବସ୍ଥାନ ଏବଂ ବିଶ୍ୱ ବିଖ୍ୟାତ ଦର୍ଶନ ଶାସ୍ତ୍ର ଅଧ୍ୟାପକ ପାଲ୍ ଡୟସନଙ୍କ ସହ ସାକ୍ଷାତ - ବେଲୁନ୍‌ରେ ଆରୋହଣ କରି ସ୍ୱାମୀଜୀ ଆକାଶରେ ଉଡ଼ିଲେ ୩୪୩

୨୯ । ବେଦାନ୍ତ ଗର୍ଜନରେ ଲଣ୍ଡନ ସହର ଜ୍ଞାନାଲୋକିତ - ଭାରତୀୟ ଧର୍ମ ଓ ସଂସ୍କୃତି ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦ୍ୱାର ପାଶ୍ଚାତ୍ୟ ଜଗତରେ ଉନ୍ମୁକ୍ତ ହେଲା ୩୪୯

୩୦ । ଭାରତବର୍ଷ ଅଭିମୁଖେ ପ୍ରତ୍ୟାଗମନ ଯାତ୍ରା - ରୋମନଗରୀରେ କିଛିଦିନ ଅବସ୍ଥାନ - କଲମ୍ବୋରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ୩୬୫

୩୧ । ଭାରତମାତା କୋଳରେ ତା'ର ସୁପୁତ୍ର - ରାମେଶ୍ୱରମ୍‌ଠାରୁ ମାଡ୍ରାଜ ପର୍ଯ୍ୟନ୍ତ ସ୍ୱାମୀଜୀଙ୍କ ସମ୍ବର୍ଦ୍ଧନା ଲାଗି ସବୁସ୍ଥାନ ଉତ୍ସବମୁଖର ୩୭୩

୩୨ । ସ୍ୱାମୀଜୀଙ୍କ ଘର ବାହୁଡ଼ା - ଭୂମିପୁତ୍ର ନିଜ ଜନ୍ମମାଟିରେ ପଦାର୍ପଣ କଲେ ୩୯୬

୩୩ । ରାମକୃଷ୍ଣ ମଠ ଓ ମିଶନ ପ୍ରତିଷ୍ଠାର ସ୍ୱପ୍ନ ସାକାର ହେଲା ୪୧୧

୩୪ । ଆଲମୋଡ଼ା, ପଞ୍ଜାବ, କାଶ୍ମୀର, ଲାହୋର, ଖେତଡ଼ି ଇତ୍ୟାଦି ସ୍ଥାନ ପରିଭ୍ରମଣ - ଆର୍ଯ୍ୟସମାଜରେ ବକ୍ତୃତା ପ୍ରଦାନ ଓ ସ୍ୱାମୀ ରାମତୀର୍ଥଙ୍କ ସହ ମିଳନ ୪୨୪

୩୫ । ମାରଗେରେଟ୍ ନୋବେଲ୍ ବ୍ରହ୍ମଚାରିଣୀ ଦୀକ୍ଷାରେ ଦୀକ୍ଷିତ - ବିଶ୍ୱବନ୍ଦିତା ଭଗ୍ନୀ ନିବେଦିତା ହେଲେ - ଗାଜିପୁରର ପାଓ୍ୱାହାରି ବାବା ଓ ଜେ. ଜେ. ଗୁଡ଼ଓ୍ୱିନିଙ୍କର ଦେହାନ୍ତ ୪୪୪

୩୬ । ଅମରନାଥ ଓ କ୍ଷୀରଭବାନୀଙ୍କର ଦର୍ଶନ ଲାଭ - ସ୍ୱାମୀ ବିବେକାନନ୍ଦ କିଏ - ସେ ନିଜକୁ ଚିହ୍ନିଲେ ୪୫୫

୩୭ । ବେଲୁଡ଼ଠାରେ ନବ ନିର୍ମିତ ଗୃହକୁ ରାମକୃଷ୍ଣ ମଠ ଓ ମିଶନ ସ୍ଥାନାନ୍ତରିତ - ପରମଭକ୍ତ ନାଗମହାଶୟ ସ୍ୱାମୀଜୀଙ୍କୁ ଭେଟିଲେ - ଗୁରୁଭ୍ରାତା ସନ୍ନ୍ୟାସୀ ସ୍ୱାମୀ ଯୋଗାନନ୍ଦଙ୍କ ଦେହାନ୍ତ ୪୬୫

Digitized by srujanika@gmail.com

୩୮ । ପୁନର୍ବାର ବିଦେଶ ଯାତ୍ରା -
ନିୟୁର୍କସ୍ଥ ବେଦାନ୍ତ ସମିତିର ନୂତନ ଗୃହ ଉଦ୍‌ଘାଟନ ୪୮୧

୩୯ । ବିଦେଶ ଭୂମିରେ ଅଦ୍ୱୈତ ବେଦାନ୍ତର ଗର୍ଜନ ୪୯୪

୪୦ । ପ୍ୟାରିସ୍‌ଠାରେ ଅନୁଷ୍ଠିତ ଧର୍ମ - ଇତିହାସ ସଭାରେ ଯୋଗଦାନ -
ବିଶ୍ୱ ବିଖ୍ୟାତ ଭାରତୀୟ ବୈଜ୍ଞାନିକ ସାର୍ ଜଗଦୀଶ ଚନ୍ଦ୍ର ବୋଷଙ୍କ
ସହ ଭେଟ - ଇୟୁରୋପ ମହାଦେଶର ଅଷ୍ଟ୍ରିଆ, ଗ୍ରୀସ୍ ପ୍ରଭୃତି ରାଷ୍ଟ୍ର
ଭ୍ରମଣ କରି ଇଜିପ୍ଟ ବାଟ ଦେଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ୫୦୭

୪୧ । ବେଲୁଡ଼ ମଠରେ ପଦାର୍ପଣ - ପରମଶିଷ୍ୟ ଓ ବନ୍ଧୁ କ୍ୟାପଟେନ୍
ସେଭିୟରଙ୍କ ଦେହାନ୍ତ ସମ୍ବାଦରେ ସ୍ୱାମୀଜୀ ମର୍ମାହତ -
ମାୟାବତୀ ଆଶ୍ରମ ଅଭିମୁଖେ ଯାତ୍ରା ୫୨୧

୪୨ । ସ୍ୱାମୀଜୀଙ୍କର ଢାକା ଯାତ୍ରା -
ଉତ୍କଟ ଶ୍ୱାସ ଓ ମଧୁମେହ ରୋଗରେ ଅସ୍ତବ୍ୟସ୍ତ ୫୨୯

୪୩ । ବେଲୁଡ଼ ମଠକୁ ପୁନରାଗମନ - ମଠରେ ଦୁର୍ଗୋତ୍ସବ ପାଳିତ -
ବୌଦ୍ଧଧର୍ମ ସାହିତ୍ୟରେ ବେଦାନ୍ତର ସ୍ପର୍ଶ ୫୪୩

୪୪ । ସ୍ୱାମୀଜୀଙ୍କ ବ୍ୟାଧିଗ୍ରସ୍ତ ଶରୀର କ୍ରମଶଃ ଭାଙ୍ଗିପଡୁଥିଲା -
ଶ୍ରୀରାମକୃଷ୍ଣଙ୍କର ଦାୟିତ୍ୱ ସେ ସମ୍ପାଦନ କରି ସାରିଲେଣି -
ତାଙ୍କର ଯନ୍ତ୍ରଣାଗ୍ରସ୍ତ ମୁଖରୁ ଅଗ୍ନି ସ୍ଫୁଲିଙ୍ଗ ଭଳି କଥାଗୁଡ଼ାକ
ବୁନ୍ଦ ବୁନ୍ଦ ହୋଇ ଝରିପଡୁଥିଲା - ସେ ନିଜ ରାଜ୍ୟକୁ
ଫେରିଯିବା ଲାଗି ପ୍ରବଳ ଆଗ୍ରହୀ ୫୫୪

୪୫ । ଆକୃତି ଭସ୍ମୀଭୂତ - ପୁନଶ୍ଚ ଅବ୍ୟକ୍ତ ହେଲେ -
କିନ୍ତୁ ସ୍ୱର ଶବ୍ଦ ମାଳ ପରି ପ୍ରେରଣାର ଉତ୍ସ ଭାବେ
ମଣିଷ ହୃଦୟରେ ବସା ବାନ୍ଧିଲେ ୫୬୯



Digitized by srujanika@gmail.com

॥ ଏକ ॥

# ଏକ ସ୍ୱରର ଆବିର୍ଭାବ ଘଟିଲା - ଶୁଦ୍ଧ ଓ ପବିତ୍ର ସ୍ୱର । ଅବ୍ୟକ୍ତ ଥିଲା, ବ୍ୟକ୍ତ ହେଲା

ଏକ ସ୍ୱରର ଆବିର୍ଭାବ ଘଟିଲା । ଶୁଦ୍ଧ ଓ ପବିତ୍ର ସ୍ୱର । ଅବ୍ୟକ୍ତ ଥିଲା, ବ୍ୟକ୍ତ ହେଲା । କିଏ କହିଲା ଇଯେ ମହାକାରୁଣିକ ବୁଦ୍ଧଙ୍କର ସ୍ୱର, କିଏ କହିଲା ଇଯେ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କର ସ୍ୱର । କିନ୍ତୁ ଏହା ନ ଥିଲା କାହାର ସ୍ୱର । ଶ୍ରୀରାମ, ଶ୍ରୀକୃଷ୍ଣ, ଗୌତମବୁଦ୍ଧ, ଯୀଶୁ ଏବଂ ବହୁ ଅବତାରଙ୍କ ସମେତ ବେଦ, ଉପନିଷଦର ସ୍ୱର ଅବଶ୍ୟ ଥିଲା ଏଥିରେ ନିହିତ । ତଥାପି ଏହି ସ୍ୱର ଥିଲା ନିଆରା ।

''ବିଶ୍ୱରେ ଯେତେ ଧର୍ମ ରହିଛି ଏବଂ ଭବିଷ୍ୟତରେ ଯେତେ ଧର୍ମ ଆବିର୍ଭୂତ ହେବ ସେଥିପାଇଁ ପରବାୟ ନାହିଁ । ଏହା ସ୍ରଷ୍ଟାଙ୍କର ବିଚିତ୍ର ନିୟମ । ଏକ ବହୁ ହେବାର ଅନନ୍ତ ପ୍ରକ୍ରିୟା ଅଥବା ଲୀଳା । କିନ୍ତୁ ସାବଧାନ, ଗୋଟିଏ ଧର୍ମକୁ ସମସ୍ତଙ୍କ ଉପରେ ଲଦିଦେବାକୁ ଚେଷ୍ଟା କଲେ, ଅନନ୍ତ ପ୍ରକ୍ରିୟାରେ ବାଧା ଉପୁଜିବ, ସଂଘର୍ଷ ଘଟିବ, ଯାହା ଅତୀତରେ ହେଉଥିଲା, ବର୍ତ୍ତମାନ ହେଉଛି ଏବଂ ଭବିଷ୍ୟତରେ ହେବ । ବହୁ ରକ୍ତପାତରେ ବିଶ୍ୱ ଆଜି ସିକ୍ତ । ଆଉ ରକ୍ତପାତ ନ ହେଉ, ଆବଶ୍ୟକ ସ୍ଥଳେ ବିଶ୍ୱର ପ୍ରତ୍ୟେକ ବ୍ୟକ୍ତିର ଗୋଟିଏ ଲେଖାଏଁ ଧର୍ମ ହେଲେ ବି କିଛି କ୍ଷତି ନାହିଁ । ଯେତେ ପ୍ରୋଫେଟ୍ ଆସିବେ ଆସନ୍ତୁ, ଯେତେ ଋଷି, ମୁନି ଓ ଅବତାର ଆବିର୍ଭୂତ ହେବେ ହୁଅନ୍ତୁ, ଯେତେ ଶାସ୍ତ୍ର ରଚିତ ହେବ ହେଉ, ବିଶ୍ୱ ପାଇଁ ଏହା ଗୌରବ ଓ ଶୁଭଙ୍କରୀ । କିନ୍ତୁ ସମସ୍ତ ପଶ୍ଚାତରେ ଏକଇ ସତ୍ୟ ଅଥବା ଏକଇ ଈଶ୍ୱର ବିରାଜିତ ବୋଲି କେହି ଭୁଲିଯିବା ଉଚିତ ନୁହେଁ । 'ଏକ' ନିରନ୍ତର 'ବହୁ' ହେଉଛି ଏବଂ 'ବହୁ' ପୁଣି 'ଏକ' ହେବାପାଇଁ ନିରନ୍ତର ଚେଷ୍ଟା କରୁଛି । ଏହି ପ୍ରକ୍ରିୟା ହିଁ ମାୟା । ବାସ୍ତବରେ ସ୍ରଷ୍ଟା ଓ ସୃଷ୍ଟି ଏକ ଓ ଅଭିନ୍ନ ।''

ଏହି ସ୍ୱର ଶାଶ୍ୱତ । କିନ୍ତୁ ଇନ୍ଦ୍ରିୟାନୁଭୂତି, ମାନସିକ ଗଠନ, ସଂକଳ୍ପ ଓ ବିକଳ୍ପ, ମନ ଓ ଅହଙ୍କାର ଓ ଚେତନାର ସ୍ପର୍ଶ ପାଇବାରୁ ଏହି ସ୍ୱର ବିଦ୍ରୋହୀ ସ୍ୱର ଭଳି ପ୍ରତୀୟମାନ ହେଲା । ଧାର୍ମିକ, ଆଧ୍ୟାତ୍ମିକ, ଅର୍ଥନୈତିକ, ସାମାଜିକ, ରାଜନୈତିକ, ନୈତିକ ଓ ମାନବିକ ଭଳି ଅଗଣିତ ଦୃଷ୍ଟିକୋଣ, ଚିନ୍ତାଧାରା ଓ ବିଚାରଧାରାକୁ ପ୍ରକମ୍ପିତ କଲା; ସେମାନଙ୍କୁ ସଂସ୍କାରିତ କଲା, ଜୀବନ୍ତ କଲା, ପ୍ରାଣବନ୍ତ କଲା । ସମସ୍ତେ କାନ ଡେରି ସେହି ସ୍ୱରକୁ ଶୁଣିଲେ ଏବଂ ଜାଣିଲେ ଯେ ସେହି ସ୍ୱର ବିଦ୍ରୋହୀ ନୁହେଁ ବରଂ ମାନବତାର ସ୍ୱର, ସ୍ରଷ୍ଟା ହେବାର ସ୍ୱର ଏବଂ

Digitized by srujanika@gmail.com

'ଏକ' ହେବାର ସ୍ୱର । ଏହା ଜାଣି ସେମାନେ ଆନନ୍ଦମୁଖର ହୋଇଉଠିଲେ । କାରଣ ଏହା ଥିଲା ଅଦ୍ୱୈତ ବେଦାନ୍ତର ନୂତନ ପ୍ରକଟିତ ସ୍ୱର ।

ବ୍ରିଟିଶ୍‌ଶାସିତ ଭାରତବର୍ଷର ରାଜଧାନୀ କଲିକତାରୁ ଏହି ସ୍ୱର ଆତ୍ମପ୍ରକାଶ କଲା । ଜାନୁଆରୀ ୧୨, ୧୮୮୩ ସୋମବାର ଉଷା କାଳରେ ଏକ ଦୀପ୍ତିମନ୍ତ ଚେତନାର ଅବତରଣ ହେଲା - ଭୁବନେଶ୍ୱରୀ ଦେବୀଙ୍କ ଗର୍ଭରୁ ପୁତ୍ର ସନ୍ତାନଟିଏ ଜାତ ହେଲା । କଲିକତା ଉଚ୍ଚ ନ୍ୟାୟାଳୟର ଜଣେ ''ଆଟର୍ଣ୍ଣି-ଏଟ୍-ଲ'' ଥିଲେ ବିଶ୍ୱନାଥ ଦତ୍ତ । ତାଙ୍କର ଧର୍ମପତ୍ନୀ ଭୁବନେଶ୍ୱରୀ ଦେବୀ । ସଂସାରରେ ତ ପ୍ରତି ମୁହୂର୍ତ୍ତରେ ବହୁ ଜନ୍ମ ଘଟୁଛି । କିନ୍ତୁ ଏହି ଜନ୍ମିତ ଶିଶୁ ସମଗ୍ର ବିଶ୍ୱରେ ଦିନେ ଭାରତବର୍ଷର ବେଦାନ୍ତ ଓ ଆଧ୍ୟାତ୍ମିକ ଚେତନାକୁ ପୁନଃ ପ୍ରଜ୍ୱଳିତ କରି ସ୍ୱାମୀ ବିବେକାନନ୍ଦ ଭାବେ କୋଟି କୋଟି ଜନମାନସରେ ସମାଦୃତ ହେବେ ବୋଧହୁଏ ସେତେବେଳେ କାହାକୁ ଜଣା ନ ଥିଲା । କିନ୍ତୁ ଜଣାଥିଲା ଜଣଙ୍କୁ । କଲିକତାର ସିମୁଳିଆଠାରୁ ଅଳ୍ପ କେତେ ମାଇଲ ଦୂରରେ ଅବସ୍ଥିତ ଦକ୍ଷିଣେଶ୍ୱର ପ୍ରାଙ୍ଗଣରେ ପ୍ରତୀକ୍ଷାରତ ମହାନ ଚୈତନ୍ୟପୁରୁଷ ଶ୍ରୀରାମକୃଷ୍ଣ ପରମହଂସଙ୍କର ସେହି ମୁହୂର୍ତ୍ତରେ ପ୍ରତୀକ୍ଷାର ଅନ୍ତ ହେଲା । ଏହି ଶିଶୁ ହିଁ ଭବିଷ୍ୟତରେ ତାଙ୍କର ସାଧନାଲବ୍ଧ ଜ୍ଞାନର ବାହକ ସାଜିବେ । ସେ ଅତୀବ ଆନନ୍ଦିତ ହେଲେ ।

ଭୁବନେଶ୍ୱରୀ ଦେବୀଙ୍କର ଏହି ପୁତ୍ର ପ୍ରଥମ ସନ୍ତାନ ନ ଥିଲେ । ଏଥିପୂର୍ବରୁ ତାଙ୍କର ଗୋଟିଏ ପୁଅ ଏବଂ ଗୋଟିଏ ଝିଅର ବାଲ୍ୟାବସ୍ଥାରେ ମୃତ୍ୟୁ ଘଟିଥିଲା । ତତ୍ ପଶ୍ଚାତେ ତାଙ୍କର ତିନୋଟି କନ୍ୟା ଜାତ ହେଲେ । ହରମୋହିନୀ ଓ ସ୍ୱର୍ଣ୍ଣମୟୀ ସେମାନଙ୍କ ମଧ୍ୟରୁ ଅନ୍ୟତମ । କିନ୍ତୁ ତୃତୀୟ କନ୍ୟା ବାଲ୍ୟାବସ୍ଥାରେ ମୃତ୍ୟୁବରଣ କରିଥିଲେ । ବଂଶରକ୍ଷା ପାଇଁ ଭୁବନେଶ୍ୱରୀ ଦେବୀଙ୍କର ମନ ଉଚ୍ଛନ୍ନ ହୋଇଉଠିଲା । ବାରଣାସିର ଅଧିଷ୍ଠିତ ଦେବଦେବ ମହାଦେବ ବିଶ୍ୱେଶ୍ୱରଙ୍କର ଶରଣାପନ୍ନ ହୋଇ ନିଜ ଘରେ ପୂଜା, ଉପାସନା ଓ ବ୍ରତ ପାଳନ କଲେ । ମଣିଷର ମାନସିକସ୍ଥିତିରେ ଭକ୍ତି ଏଭଳି ଏକ ଅମୋଘ ଅସ୍ତ୍ର ଯାହା ଇନ୍ଦ୍ରିୟମାନଙ୍କର ପରସ୍ତ ପରସ୍ତ ପରଦାକୁ କାଟି ଚେତନା ସହ ସଂଯୋଗ କରି ଦେଇଥାଏ । ଏକେତ ସେ ଥିଲେ ଭକ୍ତିମତୀ, ପୁଣି ଆନ୍ତରିକ ପ୍ରାର୍ଥନା ତାଙ୍କର ମନ, ପ୍ରାଣ ଓ ଚେତନାଶକ୍ତିକୁ ଉର୍ଦ୍ଧ୍ୱତମ କଲା । ତାଙ୍କର ଶୟନ, ସ୍ୱପନ ଓ ଜାଗ୍ରତ ଅବସ୍ଥା କାକୁତି ମିନତିରେ ଶିବମୟ ହୋଇଉଠିଲା ।

ଏକଦା ନିଦ୍ରାରେ ସେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ସ୍ୱପ୍ନଟି ଏହିଭଳି ଥିଲା - ସ୍ୱୟଂ ଶିବ ଗଭୀର ଧ୍ୟାନସ୍ଥ ଥିଲେ । ସେହି ଧ୍ୟାନସ୍ଥ ଅବସ୍ଥାରୁ ମହାଶମ୍ଭୁ ଧୀରେ ଧୀରେ ଉତ୍‌ଥିତ ହୋଇ ଏକ ଶିଶୁପୁତ୍ରରେ ରୂପାନ୍ତରିତ ହେଲେ ଏବଂ ଉକ୍ତ ଦିବ୍ୟ ଦର୍ଶନରେ ସେ ଉତ୍‌ଫୁଲ୍ଲିତ ହୋଇଉଠିଲେ । ମନ ଓ ହୃଦୟ ବଳିଷ୍ଠ ବିଶ୍ୱାସରେ ତନ୍ମୟ ହେଲା ଏବଂ ଉପଲବ୍ଧି ହେଲା ଯେ ଉକ୍ତ ଶିଶୁପୁତ୍ର ହିଁ ତାଙ୍କର ପୁତ୍ର ଭାବେ ଜନ୍ମଗ୍ରହଣ କରିବେ । ଏମନ୍ତ ସମୟେ ତାଙ୍କର ନିଦ୍ରା ଭଙ୍ଗ ହେଲା । କିନ୍ତୁ ଶିବ ଚେତନାରେ ସେ ଏଭଳି ତନ୍ମୟ ହୋଇଥିଲେ ଯେ ସ୍ୱପ୍ନ ଓ ବାସ୍ତବ ଭିତରେ ଏକ ସୀମାରେଖା ସେ ଟାଣି ପାରୁ ନ ଥିଲେ । ମୁଖରୁ କେବଳ ନିସୃତ ହେଉଥିଲା ଶିବ ଶିବ । ଅନ୍ୟ ପକ୍ଷରେ ନିଜର ଅନ୍ତର୍ସ୍ୱର ସୂଚାଇ ଦେଲା ଯେ ସେ ଶିବଙ୍କ କୃପାରୁ ଏକ ପୁତ୍ର ସନ୍ତାନର ଜନନୀ ହେବାକୁ ଯାଉଛନ୍ତି ।

Digitized by srujanika@gmail.com

ପୁତ୍ରର ନାମକରଣ ମୁହୂର୍ତ୍ତ ଯେବେ ଉପସ୍ଥିତ ହେଲା, ପରିବାର ବର୍ଗ ଦୁର୍ଗାପ୍ରସାଦ ନାମଟି ବାଛିଲେ । ଏହି ନାମକରଣ ପଶ୍ଚାତ୍‌ରେ ଏକ ଯୁକ୍ତି ରହିଥିଲା - ବିଶ୍ୱନାଥ ଦତ୍ତ ଯେତେବେଳେ ଶିଶୁ, ସେତେବେଳେ ତାଙ୍କର ପିତା ଦୁର୍ଗାପ୍ରସାଦ ନିଜର ଆଇନ ବ୍ୟବସାୟ ପରିତ୍ୟାଗ କରି, ମାତ୍ର ପଚିଶ ବର୍ଷ ବୟସରେ ଗୃହତ୍ୟାଗୀ ସନ୍ନ୍ୟାସୀ ହୋଇ କେଉଁଆଡ଼େ ଚାଲିଯାଇଥିଲେ । ଯେହେତୁ ଏହି ନବଜାତ ଶିଶୁ ମୁଖମଣ୍ଡଳରେ ମହାତ୍ୟାଗର ଭାବ ଉଙ୍କି ମାରୁଥିଲା, ସେମାନେ ଭାବିଲେ ଯେ ଦୁର୍ଗାପ୍ରସାଦ ବୋଧହୁଏ ପୁଣିଥରେ ବିଶ୍ୱନାଥଙ୍କର ପୁତ୍ର ହୋଇ ଜନ୍ମ ହୋଇଛନ୍ତି । କାରଣ ଦୁର୍ଗାପ୍ରସାଦ ସେତେବେଳେ ଜୀବୀତ ବୋଲି କାହାର ବିଶ୍ୱାସ ନ ଥିଲା । ଅବଶ୍ୟ ବହୁ ଅନୁସନ୍ଧାନ ପରେ ସେମାନେ ଏତାଦୃଶ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ବୀରେଶ୍ୱର ନାମରେ ନାମିତ ହୋଇଥିଲେ ମଧ୍ୟ ନରେନ୍ଦ୍ରନାଥ ନାମଟିକୁ ଶେଷରେ ଗ୍ରହଣ କରାଯାଇଥିଲା । କିନ୍ତୁ ସ୍ନେହରେ ତାଙ୍କୁ ବିଲେ ବୋଲି ସମସ୍ତେ ଡାକିଲେ ।

ବିଶ୍ୱନାଥ ଦତ୍ତ ଜଣେ ଭିନ୍ନ ଦୃଷ୍ଟିର ମଣିଷ ଥିଲେ । କାରଣ ତାଙ୍କର ଶୈଶାବସ୍ଥା ବହୁ ଚେଲେଞ୍ଜର ସମ୍ମୁଖୀନ ହୋଇଥିଲା । ତାଙ୍କର ପିତା ଦୁର୍ଗାପ୍ରସାଦ ସନ୍ନ୍ୟାସୀ ହୋଇ ଚାଲିଯାଇଥିବାରୁ ତାଙ୍କର ମାତା ଶ୍ୟାମାସୁନ୍ଦରୀ ଯୁଗ୍ମ ପରିବାରରେ ବହୁ ସମସ୍ୟାର ସମ୍ମୁଖୀନ ହୋଇ ସାହସର ସହିତ ତାଙ୍କୁ ପ୍ରତିପାଳନ କରିଥିଲେ । ବିଧାତାର କ୍ରୁର ଏଷଣା ସଭିଙ୍କୁ ଅଗୋଚର । ବିଶ୍ୱନାଥଙ୍କୁ ଯେତେବେଳେ ମାତ୍ର ଦଶବର୍ଷ, ସେତେବେଳେ ତାଙ୍କର ସ୍ନେହମୟୀ ମାତା ଇହଲୀଳା ସମ୍ବରଣ କଲେ । ବିଶ୍ୱନାଥ ଦତ୍ତଙ୍କର ଭାର, କକା କାଳିପ୍ରସାଦ ଦତ୍ତ ଯିଏ ଦତ୍ତ ଯୁଗ୍ମ ପରିବାରର ମୁଖ୍ୟ ଥିଲେ, ତାଙ୍କରି ଉପରେ ପଡ଼ିଲା । ମାତୃପିତୃହୀନ ଅନାଥ ବାଳକର ଅବସ୍ଥା ଯାହା ହୁଏ, ତାହାହିଁ ଘଟିଥିଲା ବିଶ୍ୱନାଥଙ୍କ କ୍ଷେତ୍ରରେ ।

ଜୀବନଯାତ୍ରାର ପ୍ରତ୍ୟେକ ପଦକ୍ଷେପରେ କକାଙ୍କ ଦ୍ୱାରା ପ୍ରତାରିତ ହେଉଥିଲେ ବି ବିଶ୍ୱନାଥ ସର୍ବଦା ତାଙ୍କୁ ସମ୍ମାନ କରୁଥିଲେ ଏବଂ ମୁକ୍ତ ହସ୍ତରେ ସାହାଯ୍ୟ କରୁଥିଲେ । କକାଙ୍କ ପ୍ରତି ତିଳେମାତ୍ର ଅସୂୟା କିମ୍ବା ବୈରୀଭାବ ତାଙ୍କର ନ ଥିଲା । ପରିବାରର ପରମ୍ପରା ଅନୁସାରେ ସେ ନିଜ ଚେଷ୍ଟାରେ ଉଚ୍ଚ ଶିକ୍ଷିତ ହୋଇପାରିଥିଲେ । ବଙ୍ଗଳା, ହିନ୍ଦି, ଇଂରାଜୀ, ପାର୍ଶି, ଆରବୀ, ସଂସ୍କୃତ ଓ ଉର୍ଦ୍ଦୁ ଭାଷାରେ ଦକ୍ଷତା ହାସଲ କରି ପାରିଥିଲେ । କେବଳ ସେତିକି ନୁହେଁ, ଆଟର୍ଣ୍ଣିସିପ୍ ପରୀକ୍ଷାରେ କୃତିତ୍ୱ ହାସଲ କରି କଲିକତା ଉଚ୍ଚ ନ୍ୟାୟାଳୟରେ ଜଣେ ପ୍ରତିଷ୍ଠିତ ଆଇନ୍‌ଜୀବୀ ହୋଇ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରୁଥିଲେ । ଖୁଲ୍ଲତାତ କାଳିପ୍ରସାଦ ବିଶାଳ ପୈତୃକ ସମ୍ପତ୍ତିର ଉତ୍ତରାଧିକାରୀ ହୋଇ ବେପରୁଆ ଭାବେ ଅର୍ଥ ଖର୍ଚ୍ଚ କରୁଥିଲେ, କିନ୍ତୁ ପ୍ରତି ବଦଳରେ ତାଙ୍କର କୌଣସି ଉପାର୍ଜ୍ଜନର ପନ୍ଥା ନ ଥିଲା । ଅନ୍ୟପକ୍ଷରେ ବିଶ୍ୱନାଥ ପରିଶ୍ରମ କରି ଆଇନ୍ ବୃତ୍ତିରୁ ବିପୁଳ ଅର୍ଥ ଉପାର୍ଜ୍ଜନ କରୁଥିଲେ ।

ଯେତିକି ଆୟ, ତା'ଠୁଁ ଅଧିକ ସେ ବ୍ୟୟ କରୁଥିଲେ । ରାଜକୀୟ ଭଙ୍ଗୀରେ ପରିଚାଳନା କରୁଥିଲେ ପରିବାର । ସେବକ, ଭୃତ୍ୟ, ଘୋଡ଼ାଗାଡ଼ି, ଘୋଡ଼ା ଏବଂ ଆତ୍ମୀୟ ସ୍ୱଜନ ଓ ବନ୍ଧୁମାନଙ୍କ ଦ୍ୱାରା ସଦାସର୍ବଦା ସେ ବେଷ୍ଟିତ ଥିଲେ । ବିଶାଳ ହୃଦୟ, ଉଚ୍ଚାଭିଳାଷୀ ଓ ଉଚ୍ଚମନା । ଦୁଃଖୀ, ଦରିଦ୍ରମାନଙ୍କୁ ସହାୟତା ନିମନ୍ତେ ତାଙ୍କର ହାତ କେବେ କାର୍ପଣ୍ୟତା ଅନୁଭବ କରୁ ନ ଥିଲା । ଅବାଞ୍ଛିତ ବ୍ୟକ୍ତିମାନଙ୍କୁ ମଧ୍ୟ ସେ ମୁକ୍ତ ହସ୍ତରେ ଦାନ କରୁଥିଲେ ।

Digitized by srujanika@gmail.com

ବୃତ୍ତି ଜୀବନରେ ସେ କେବଳ ସଫଳ ବ୍ୟକ୍ତି ନ ଥିଲେ, ବରଂ ଭାରତୀୟ ସଙ୍ଗୀତ ଓ ଜ୍ୟୋତିଷଶାସ୍ତ୍ର ପ୍ରତି ଥିଲା ତାଙ୍କର ଅସୀମ ଶ୍ରଦ୍ଧା । ସୁଲଳିତ କଣ୍ଠରେ ସେ ଗୀତ ଗାଇ ପାରୁଥିଲେ । ପ୍ରତ୍ୟେକ ଶନିବାର ଓ ରବିବାର ଛୁଟି ଦିନରେ ସଙ୍ଗୀତ ଆସର ବା ସାଇରୀ ତାଙ୍କଘରେ ଅନୁଷ୍ଠିତ ହେଉଥିଲା ଏବଂ ଅନେକ ସଙ୍ଗୀତଜ୍ଞ ଉକ୍ତ ଆସରରେ ଭାଗ ନେଉଥିଲେ । ସମସ୍ତ ଅତିଥିଗଣ ତାଙ୍କଦ୍ୱାରା ଆୟୋଜିତ ଭୁରି ଭୋଜନରେ ଆପାୟିତ ହେଉଥିଲେ । ବହୁ ପ୍ରତିଷ୍ଠିତ ହିନ୍ଦୁ, ମୁସଲମାନ ତାଙ୍କର ବନ୍ଧୁତ୍ୱରେ ବିମୁଗ୍ଧ ହେଉଥିଲେ । ଉଭୟ ବ୍ରାହ୍ମଣ ଓ ମୁସଲମାନ ଫକିର ବିନା ବାଛବିଚାରରେ ତାଙ୍କଠାରୁ ଦାନ ଗ୍ରହଣ କରୁଥିଲେ । ତତ୍କାଳୀନ ସମାଜରେ ତାଙ୍କର ପ୍ରଗତିଶୀଳ ଦୃଷ୍ଟିକୋଣ ଓ ଦୟାର୍ଦ୍ର ହୃଦୟ ବହୁ ବ୍ୟକ୍ତିଙ୍କୁ ଆକୃଷ୍ଟ କରିଥିଲା ।

ମାତା ଭୁବନେଶ୍ୱରୀ ଦେବୀ ସିମୁଳିଆସ୍ଥ ପ୍ରଖ୍ୟାତ ବସୁ ପରିବାରର କନ୍ୟା ଥିଲେ । ନନ୍ଦଲାଲ ବସୁଙ୍କର ସେ ଥିଲେ ଏକମାତ୍ର କନ୍ୟା । ଧର୍ମପରାୟଣା ମହିଳା ତ ନିଶ୍ଚୟ, ତଥାପି ସିଲାଇ, ସଙ୍ଗୀତରେ ତାଙ୍କର କମ୍ ରଚି ନ ଥିଲା । ଭାରି ବୁଦ୍ଧିମତୀ, ଘର ଜଞ୍ଜାଳରେ ବ୍ୟସ୍ତ ରହି ବି ଶିବଙ୍କର ପୂଜାର୍ଚ୍ଚନାରେ ମଗ୍ନ ରହୁଥିଲେ । ପ୍ରତିଦିନ ରାମାୟଣ ଓ ମହାଭାରତ ଅଧ୍ୟୟନ କରୁଥିଲେ । ତାଙ୍କର ଆଧ୍ୟାତ୍ମିକ ଜୀବନ ନିର୍ବାହ ପ୍ରଣାଳୀ ପରିବାରରେ ଶାନ୍ତି ଓ ସନ୍ତୋଷର ବାତାବରଣ ଅହରହ ସୃଷ୍ଟି କରୁଥିଲା ।

ଯେହେତୁ ତାଙ୍କର ଧାର୍ମିକ ମନୋଭାବରେ ଭରିଥିଲା ପ୍ରଗତିଶୀଳତା, ତେଣୁ ସ୍ୱାମୀଙ୍କର ଆଧୁନିକ ଦୃଷ୍ଟିଭଙ୍ଗୀରେ ସେ ନିଜକୁ ବେଶ୍ ସାମିଲ କରି ତାଙ୍କର ପ୍ରତ୍ୟେକ ପଦକ୍ଷେପରେ ସହଧର୍ମିଣୀର ଭୂମିକା ପ୍ରତିପାଦନ କରି ପାରୁଥିଲେ । ମହାନ ସମାଜ ସଂସ୍କାରକ ଶ୍ରୀ ଇଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ନେତୃତ୍ୱରେ ଅନେକ କୁସଂସ୍କାର ବିରୋଧରେ ସେତେବେଳେ ଜନ ଜାଗରଣ ସଂଗଠିତ ହେଉଥିଲା । ବାଲ୍ୟ-ବିଧବାମାନଙ୍କର ପୁନର୍ବିବାହକୁ ସମାଜରେ ପ୍ରଚଳିତ କରେଇବା ପାଇଁ ପ୍ରୟାସ ଆରମ୍ଭ ହୋଇଥାଏ । ସେହି ସମୟରେ ଏଭଳି ଦୁଇଟି ବିବାହ ସମ୍ପନ୍ନ ହୋଇଥିଲା ତାଙ୍କର ପଡ଼ୋଶୀ ଇଲାକାରେ । ବହୁ ଲୋକ ଏହାର ତୀବ୍ର ବିରୋଧ କଲେ କିନ୍ତୁ ବିଶ୍ୱନାଥ ଦତ୍ତ ଓ ତାଙ୍କର ପତ୍ନୀ ଭୁବନେଶ୍ୱରୀ ଦେବୀ ଉକ୍ତ ବିବାହକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଜଣାଇଥିଲେ । ଏଥିରୁ ତାଙ୍କର ପ୍ରଗତିଶୀଳ ମନୋଭାବର ପରିଚୟ ମିଳେ ।

## - ୧ -

*ପ୍ରାୟତଃ ପିଲାମାନେ ବାଲ୍ୟକାଳରେ ଦୁଷ୍ଟାମି କରନ୍ତି । ନରେନ୍ଦ୍ରଙ୍କର ଦୁଷ୍ଟାମି ଟିକିଏ ଅଧିକ ଥିଲା ।*

ଏକ ଆଭିଜାତ୍ୟ ବଂଶ ପରମ୍ପରା ଏବଂ ପିତାମାତାଙ୍କର ଧାର୍ମିକ ଓ ଉଦାର ମନୋଭାବ-ଜନିତ ପରିବେଶରେ ନରେନ୍ଦ୍ରନାଥ ପ୍ରତିପାଳିତ ହୋଇଥିଲେ । ପ୍ରାୟତଃ ପିଲାମାନେ ବାଲ୍ୟକାଳରେ ଦୁଷ୍ଟାମି କରନ୍ତି । ନରେନ୍ଙ୍କର ଦୁଷ୍ଟାମି ଟିକିଏ ଅଧିକ ଥିଲା । ଭୁବନେଶ୍ୱରୀ ଦେବୀ ଶିଶୁ ନରେନ୍ଙ୍କ ଭିତରେ ଦେଖୁଥିଲେ ଅମାପ ଶକ୍ତି । ଭାରି ନଟଖଟ୍,ଅତି ଚଗଲା । ନରେନ୍ଙ୍କର ଦୁଷ୍ଟାମି ଏଭଳି

Digitized by srujanika@gmail.com

ତୀବ୍ର ହୋଇଯାଉଥିଲା ଯେ ତାଙ୍କୁ ସମ୍ଭାଳିବା କଷ୍ଟକର ବ୍ୟାପାର ହେଉଥିଲା । ରାହାଛାଡ଼ି କାନ୍ଦୁଥିଲେ । ଯେତେ ତାଙ୍କୁ ଭୟଭୀତ କଲେ ବି ସେ ଆଦୌ ମା'ଙ୍କ କଥା ଶୁଣୁ ନ ଥିଲେ । ବେଳେବେଳେ ମା' ତାଙ୍କ ମୁଣ୍ଡରେ ଥଣ୍ଡା ପାଣି ଢାଳି ''ଶିବ ଶିବ'' ବଡ଼ ପାଟିରେ କହୁଥିଲେ । ରାଗରେ ତମ୍‌ତମ୍ ହୋଇ ସେ କହୁଥିଲେ, ''ରହ... ରହ ତୁ ଯଦି ଦୁଷ୍ଟାମି ନ ଛାଡ଼ିବୁ, ତେବେ କୈଳାସକୁ ତୋତେ ଶିବ ଛାଡ଼ିବେ ନାହିଁ । ଶିବଙ୍କର ନାମ ଉଚ୍ଚାରଣ ନରେନ୍‌ଙ୍କୁ ଶାନ୍ତ କରି ଦେଉଥିଲା ଏବଂ ଚୁପ୍‌ଚାପ୍ ମା'ଙ୍କୁ କେବଳ ବଲବଲ ଚାହିଁ ରହୁଥିଲେ ।

ଶିଶୁ ନରେନ୍‌ଙ୍କର ଦୁଷ୍ଟାମି ଯେତେବେଳେ ଚରମ ସୀମାର ପହଞ୍ଚୁଥିଲା, ସେତେବେଳେ ମା'ଙ୍କର ଧୈର୍ଯ୍ୟଚ୍ୟୁତ ଘଟୁଥିଲା । ବିରକ୍ତ ହୋଇ ଭୁବନେଶ୍ୱରୀ ଦେବୀ କେତେବେଳେ କେମିତି କହି ପକାଉଥିଲେ, ''ହେ ଭଗବାନ ପୁଅଟିଏ ଲାଗି ଶିବଙ୍କୁ ପୂଜିଥିଲି, କିନ୍ତୁ ସେ ତାଙ୍କର ଜଣେ ଭୂତକୁ ମୋ ପାଖକୁ ପଠାଇ ଦେଇଛନ୍ତି ।'' ପରବର୍ତ୍ତୀ କାଳରେ ଦଳେ ପାଶ୍ଚାତ୍ୟବାସୀ ଭୁବନେଶ୍ୱରୀ ଦେବୀଙ୍କୁ ସାକ୍ଷାତ କରିଥିଲେ । ସେତେବେଳକୁ ନରେନ୍ ସ୍ୱାମୀ ବିବେକାନନ୍ଦରେ ପରିଣତ ହୋଇ ପାଶ୍ଚାତ୍ୟ ରାଷ୍ଟ୍ରରେ ବେଦାନ୍ତର ବିଜୟ ଝଣ୍ଡା ଉଡ଼ାଇ ସାରିଥିଲେ । କଥାବାର୍ତ୍ତା ଭିତରେ ସେମାନଙ୍କ ମଧ୍ୟରୁ ଜଣେ ଭୁବନେଶ୍ୱରୀ ଦେବୀଙ୍କୁ ପଚାରିଥିଲେ, ''ପିଲାଦିନେ ଇଏ କ'ଣ ଦୁଷ୍ଟ ଥିଲେ ?'' ଭୁବନେଶ୍ୱରୀ ଦେବୀ କହିଥିଲେ, ''ବାପରେ ବାପ ! ଇୟା ପାଇଁ ଦୁଇ ଦୁଇଟା ଧାଈ ନିଯୁକ୍ତ ହୋଇଥିଲେ ।''

ଦୁଷ୍ଟାମି ସତ୍ତ୍ୱେ ନରେନ୍ ଥିଲେ ପ୍ରଫୁଲ୍ଲ ଚିତ୍ତ, ମଧୁର ଓ ଆଦରର ଶିଶୁଟିଏ । ଯିଏ ତାଙ୍କୁ ହାତଠାରି ଡାକୁଥିଲେ, ବିନା ସଙ୍କୋଚରେ ସମସ୍ତଙ୍କ କୋଳକୁ ଡେଇଁ ପଡୁଥିଲେ । ଭ୍ରମଣଶୀଳ ସାଧୁ ସନ୍ନ୍ୟାସୀମାନଙ୍କ ପ୍ରତି ଶିଶୁ ନରେନ୍‌ଙ୍କର ବଡ଼ ଆକର୍ଷଣ ରହିଥିଲା । ପିତା ବିଶ୍ୱନାଥଙ୍କର ବଦାନ୍ୟତା ଯୋଗୁଁ ଅନେକ ଭାଟ, ଭିକାରୀ, ସାଧୁ ସନ୍ନ୍ୟାସୀ ତାଙ୍କର ଦ୍ୱାରସ୍ଥ ହେଉଥିଲେ । ସେମାନଙ୍କୁ ଦ୍ୱାର ସମ୍ମୁଖରେ ଠିଆ ହୋଇଥିବାର ଦେଖିଲେ ତାଙ୍କୁ କିଏ ଆଉ ସମ୍ଭାଳେ ! ଯାହା ହାତକୁ ଆସିଲା, ତାହା ସେ ଦେଇ ଦେଉଥିଲେ । ଏକଦା ଜଣେ ସନ୍ନ୍ୟାସୀ ଭିକ୍ଷା ପାଇଁ ଦାଣ୍ଡ ଦୁଆରରେ ଡାକ ଛାଡ଼ିଲେ । ନରେନ୍ ସିଧା ଦୁଆର ନିକଟକୁ ଦୌଡ଼ିଗଲେ ଏବଂ ଜଳଜଳ ଆଖିରେ ସନ୍ନ୍ୟାସୀଙ୍କୁ ଚାହିଁଲେ । ଦେବା ପାଇଁ ତାଙ୍କ ହାତରେ କିଛି ନ ଥିଲା । ନିଜର ନୂଆ ଲୁଗାଟିକୁ ଦେହରୁ କାଢ଼ି ସନ୍ନ୍ୟାସୀଙ୍କ ଥାଳରେ ପକାଇ ଦେଲେ । ସନ୍ନ୍ୟାସୀ ପିଲାଟି ମୁଣ୍ଡରେ ହାତରଖି ଆଶୀର୍ବାଦ ଦେଇ ଗନ୍ତବ୍ୟ ପଥରେ ଚାଲିଗଲେ ।

ନିଜେ ଦିଗମ୍ବର ସାଜିଲେ । ମହାଭାବର ଲକ୍ଷଣ ଶିଶୁ ଅବସ୍ଥାରେ ବି ତାଙ୍କ ଭିତରେ ଉନ୍ମୁଖ ହେଉଥିଲା । ପିତାମାତା ଉକ୍ତ ଘଟଣାରେ ସତର୍କ ହୋଇଉଠିଲେ । ଜଗିବା ପାଇଁ ତାଙ୍କ ଉପରେ କଡ଼ା ନଜର ରଖିଲେ । ଯେତେବେଳେ କୌଣସି ସାଧୁ ସନ୍ନ୍ୟାସୀ ଭିକ୍ଷା ନିମନ୍ତେ ସେଠାରେ ପହଞ୍ଚୁଥିଲେ, ସେତେବେଳେ ନରେନ୍‌ଙ୍କୁ ଗୋଟିଏ ଘରେ ରଖି ଚାବି ପକାଇ ଦେଉଥିଲେ । ସନ୍ନ୍ୟାସୀର ମହାତ୍ୟାଗ ପ୍ରବୃତ୍ତି ତାଙ୍କ ଭିତରେ ପ୍ରକାଶୋନ୍ମୁଖୀ, ତାଙ୍କୁ କିଏ ବା ଧରି ରଖିପାରିବ ? ରୁଦ୍ଧ କୋଠରିରେ ଯାହା ତାଙ୍କ ହାତରେ ପଡୁଥିଲା, ସେହି ବସ୍ତୁକୁ ଝରକା ବାଟେ ତଳକୁ ଫିଙ୍ଗି ଦେଉଥିଲେ, ଭିକ୍ଷା ଦାନ ଉଦ୍ଦେଶ୍ୟରେ ।

Digitized by srujanika@gmail.com

ପରିବାରରେ ଯେତେ ଭୃତ୍ୟ ଓ ସେବକ ଥିଲେ, ତନ୍ମଧ୍ୟରୁ ଘୋଡ଼ା ଗାଡ଼ିର ଚାଳକ କୋଚ୍‌ମ୍ୟାନ ତାଙ୍କର ପ୍ରିୟ ବନ୍ଧୁ ଥିଲେ । ଭବିଷ୍ୟତରେ ଜଣେ ଅଶ୍ୱପାଳ ହେବାକୁ ତାଙ୍କର ଭାରି ଇଚ୍ଛା ଥିଲା । କୋଚ୍‌ମ୍ୟାନର ପଗଡ଼ି, ଝକ୍‌ମକି ପୋଷାକ ପରିଚ୍ଛଦ, ଚାବୁକ ଏବଂ ଘୋଡ଼ାଗାଡ଼ି ଚଳେଇବାର କୌଶଳ ଯୋଗୁଁ ସେ ଜଣେ ବିଶାଳ ବ୍ୟକ୍ତିତ୍ୱର ଅଧିକାରୀ ହୋଇଥିବେ ବୋଲି ନରେନ୍‌ଙ୍କ ଶିଶୁ ମନରେ ଧାରଣା ସୃଷ୍ଟି ହୋଇଥିଲା । ମନ ଭିତରେ ରହିଥିଲା ଏକ ଅଦ୍ଭୁତ ଜଗତ । ସେହି ଜଗତରେ ବସ୍ତୁସବୁ ନୂଆ ନୂଆ ରୂପରେ ପ୍ରତିଭାତ ହେଉଥିଲେ । ଶିଶୁ ନରେନଙ୍କ ମନରେ କୋଚ୍‌ମେନ୍‌ର ରୂପ ଏକ ବିଶିଷ୍ଟ ଆସନ ଗ୍ରହଣ କରିବାର ଅର୍ଥ ପଶ୍ଚାତରେ ରହିଥିଲା ଆଗାମି ଭବିଷ୍ୟତର ଲକ୍ଷ୍ୟ । ଏଭଳିଆ ପୋଷାକ ନ ହେଲେ ବି, ସେହିଭଳିଆ ଦେଖାଯାଉଥିବା ପୋଷାକ ସେ ଭବିଷ୍ୟତରେ ପରିଧାନ କରିବେ । ଘୋଡ଼ାଗାଡ଼ିର ଚାଳକ ହେବେ ନାହିଁ ବରଂ ମନର ଅସଂଖ୍ୟ ଦ୍ରୁତଗାମୀ ଇନ୍ଦ୍ରିୟ ରୂପୀ ଅଶ୍ୱର ନିୟନ୍ତକ ହେବେ ।

ପରିବାର ହିଁ ଶିକ୍ଷାପ୍ରାପ୍ତିର ପ୍ରଥମ ବିଦ୍ୟାଳୟ । ମାତା ଭୁବନେଶ୍ୱରୀ ଦେବୀଙ୍କ କୋଳରେ ବସି ଶୁଣିଲେ ନରେନ୍ ପୁରାଣର ଅନେକ ଆଦର୍ଶ ଦେବାଦେବୀଙ୍କର କାହାଣୀ । ଋଷି ମୁନିମାନଙ୍କର ତପସ୍ୱୀଜୀବନ ଏବଂ ଲୋକହିତକର କାର୍ଯ୍ୟ । ପ୍ରତିଦିନ ମଧ୍ୟାହ୍ନ ପରେ ଭୁବନେଶ୍ୱରୀ ଦେବୀ ପାଠ କରୁଥିଲେ ରାମାୟଣ ଓ ମହାଭାରତ । ପରିବାରର ସମସ୍ତ ମହିଳା ତାହା ଶୁଣୁଥିଲେ । ବାଳକ ନରେନ୍‌ଙ୍କର ଦୁଷ୍ଟାମି ସେତେବେଳେ ଶାନ୍ତ ପଡ଼ି ଯାଉଥିଲା । ଏକାଗ୍ର ଚିତ୍ତରେ ନୀରବରେ ବସି ପୁରାଣ ପାଠ ଶୁଣୁଥିଲେ । କାହାଣୀଗୁଡ଼ିକ ତାଙ୍କର ଶିଶୁ ମାନସକୁ ବେଶ୍ ପ୍ରଭାବିତ କରିଥିଲା । ଏତଦ୍‌ବ୍ୟତୀତ, ନରେନ୍‌ଙ୍କର ଆଈ ଥିଲେ ବୈଷ୍ଣବ ସମ୍ପ୍ରଦାୟର ଜଣେ ପରମଭକ୍ତ । ତାଙ୍କଠାରୁ ବି ଭାଗବତର ଭକ୍ତି ଓ ପ୍ରେମ ସମ୍ବନ୍ଧରେ ଅନେକ ଘଟଣା ଶୁଣି ନିଜର ଶିଶୁ ମନକୁ ପରିପୁଷ୍ଟ କରିଥିଲେ, ଗାଁ ଗାଁ ବୁଲି ବାଉଲ୍‌ମାନେ ଏକତାରା ବଜାଇ ଭଗବାନଙ୍କର ମହିମା ଗାନ କରୁଥିଲେ । ସେମାନଙ୍କ ଗୀତ ମଧ୍ୟ ନରେନଙ୍କୁ ପ୍ରଭାବିତ କରିଥିଲା । ନରେନ୍‌ଙ୍କର ଅପରିପକ୍ୱ ଶିଶୁମାନସରେ ଯେଉଁ ଈଶ୍ୱରଦତ୍ତ ସଂସ୍କାରଗୁଡ଼ିକ ଅବ୍ୟକ୍ତ ଭାବରେ ସୁପ୍ତ ରହିଥିଲା ତାହା ପୁରାଣ ବର୍ଣ୍ଣିତ ଆଦର୍ଶ ପୁରୁଷ ଓ ନାରୀ ଏବଂ ଦେବ ଓ ଦେବୀମାନଙ୍କର କାହାଣୀ ଶ୍ରବଣରେ ବ୍ୟକ୍ତାଭିମୁଖୀ ହୋଇଉଠିଲା ।

ମର୍ଯ୍ୟାଦାପୁରୁଷ ଶ୍ରୀରାମଙ୍କର ସତ୍ୟନିଷ୍ଠା ଓ ପିତୃମାତୃ ଭକ୍ତି ଏବଂ ସତୀ ସୀତାଙ୍କର ପତିବ୍ରତା ନରେନ୍‌ଙ୍କୁ ବିମୁଗ୍ଧ କରିଥିଲା । ପରିବାରବର୍ଗ ଯେପରି ଧ୍ୟାନ ଧାରଣାରେ ମଜ୍ଜି ରହି ଶ୍ରୀରାମଙ୍କୁ କାୟମନୋବାକ୍ୟରେ ପୂଜା ଆରାଧନା କରୁଥିଲେ, ସେ ମଧ୍ୟ ଶ୍ରୀରାମଙ୍କୁ ସେପରି ପୂଜା କରିବେ ବୋଲି ତାଙ୍କ ମନରେ ଏକଦା ଉତ୍କଣ୍ଠା ଜାଗ୍ରତ ହେଲା । ଜଣେ ବ୍ରାହ୍ମଣ ବାଳକ ହରିକୁ ସାଥିରେ ନେଇ ରାମସୀତାଙ୍କର ମାଟି ମୂର୍ତ୍ତିଟିଏ ବଜାରରୁ କିଣି ଆଣିଲେ । ସମସ୍ତଙ୍କ ଅଲକ୍ଷ୍ୟରେ ଘରର ଛାତ ଉପରେ ଥିବା କୋଠରିରେ ମୂର୍ତ୍ତି ସ୍ଥାପିତ କରି ଫୁଲ ପତ୍ରରେ ପୂଜା ଦୁହେଁ କଲେ । ଭିତରୁ କବାଟ କିଳି ଦେଇଥିଲେ । ପୂଜା କରୁକରୁ ଦୁହେଁ କେତେବେଳେ ଧ୍ୟାନମଗ୍ନ ହୋଇଯାଇଥିଲେ ସେମାନଙ୍କୁ ଜଣା ନ ଥିଲା । ଦୁଇ ପିଲାଙ୍କର ବହୁ ସମୟ ଘରୁ ଅନୁପସ୍ଥିତ ସେମାନଙ୍କର ପିତାମାତାଙ୍କ ମନରେ ଆଶଙ୍କା ଜାତ କଲା । ବହୁତ ଖୋଜା ଖୋଜି କଲେ । ଶେଷରେ

Digitized by srujanika@gmail.com

ଛାତ ଉପର ଘର, ଭିତର ପଟୁ ବନ୍ଦ ଥିବାର ସେମାନଙ୍କର ଦୃଷ୍ଟିଗୋଚର ହେଲା । କବାଟକୁ ଖୁବ୍ ଜୋର୍‌ରେ ବାଡ଼େଇବା ଫଳରେ କବାଟର ଝଞ୍ଜିର ଉନ୍ମୁକ୍ତ ହେଲା । ବ୍ରାହ୍ମଣପୁତ୍ରର ଧ୍ୟାନ କବାଟ ଖୋଲିଯିବାର ଶବ୍ଦରେ ଭଙ୍ଗ ହେଲା ଏବଂ ସେଠାରୁ ସେ ଦ୍ରୁତ ଗତିରେ ପଳାୟନ କଲା । କିନ୍ତୁ ନରେନ୍, ହଲ୍‌ଚଲ୍ ନ ହୋଇ ଫୁଲପତ୍ରରେ ସଜ୍ଜିତ ସୀତାରାମଙ୍କ ମୂର୍ତ୍ତି ସମ୍ମୁଖରେ ସେମିତି ଗଭୀର ଧ୍ୟାନରେ ଥିଲେ ଉପବିଷ୍ଟ । ଉଚ୍ଚ ସ୍ୱରରେ ତାଙ୍କୁ ସମସ୍ତେ ଡାକିଲେ କିନ୍ତୁ ସେ ଶୁଣିଲେ ନାହିଁ । ଶେଷରେ ତାଙ୍କୁ ହଲାଇ ଦେବାରୁ ସେ ବିରକ୍ତି ପ୍ରକାଶ କଲେ ଏବଂ ଧ୍ୟାନାବସ୍ଥାରେ ବସି ରହିବାକୁ ସେ ଚାହିଁଲେ । ତାଙ୍କର ଏତାଦୃଶ ଧ୍ୟାନମଗ୍ନ ଅବସ୍ଥାରେ ବିଘ୍ନ ନ ଘଟାଇ ସମସ୍ତେ ନିରବ ରହିଲେ ସତ, କିନ୍ତୁ ସେମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ଶ୍ରୀରାମ-ସୀତାଙ୍କ ପ୍ରତି ନରେନ୍‌ଙ୍କର ଆନ୍ତରିକ ଭକ୍ତିପୂର୍ଣ୍ଣ ମାନସିକତା ଥରେ ବିଶୃଙ୍ଖଳିତ ହୋଇଉଠିଲା । ତାଙ୍କର ପ୍ରିୟତମ ବନ୍ଧୁ ଅଶ୍ୱପାଳ ଯାହାଙ୍କୁ ସେ ବିରାଟ ବ୍ୟକ୍ତି ବୋଲି ସବୁବେଳେ ଭାବୁଥିଲେ, ଘୋଡ଼ାଶାଳରେ ତାଙ୍କ ସହ ଦିନେ ସାକ୍ଷାତ ହେଲା । ଯେତେବେଳେ ସେ ସମୟ ପାଉଥିଲେ, ସେଠାକୁ ସେ ଚାଲି ଯାଉଥିଲେ । ଅଶ୍ୱପାଳଙ୍କ ସହ ଏମିତି କଥାବାର୍ତ୍ତା ହେଉଥିବା ବେଳେ, ଆଲୋଚନା ବିଭାଘର ଆଡ଼କୁ ମୁହାଁଇଲା । ନିଜର ବୈବାହିକ ଜୀବନର ତିକ୍ତ ଅନୁଭୂତି ପିଲାଟି ଆଗରେ ବର୍ଣ୍ଣନା କରିବାକୁ ସେ ପଛାଇଲେ ନାହିଁ । ଦୁଃଖ, କଷ୍ଟ, ସମସ୍ୟା, ଦାସତ୍ୱ ଓ ପରାଧୀନତା ବୈବାହିକ ଜୀବନକୁ ହନ୍ତସନ୍ତ କରିପକାଏ । ବନ୍ଧୁ ଅଶ୍ୱପାଳ ସିନା ନିଜର ଶିଶୁବନ୍ଧୁଙ୍କ ସମ୍ମୁଖରେ ବିବାହର ଭୟାବହତା ଉଦ୍‌ବମନ କରି ଟିକିଏ ଆଶ୍ୱସ୍ତି ଲାଭ କଲେ, କିନ୍ତୁ ଶିଶୁ ବନ୍ଧୁଙ୍କର ଅପରିପକ୍ୱ ମନ ଉକ୍ତ ଉଦ୍‌ବମନରେ ପ୍ରଭାବିତ ହୋଇଗଲା । ବିବାହ ସତେକି ଏକ ଘୃଣ୍ୟ କର୍ମ ବୋଲି ତାଙ୍କର ବୋଧ ହେଲା । ସେ ଭାବିବାକୁ ଲାଗିଲେଯେ ଯେଉଁ ଶ୍ରୀରାମଙ୍କୁ ସେ ଏତେ ଭଲ ପାଉଛନ୍ତି, ସେ ତ ମାତା ସୀତାଙ୍କୁ ବିବାହ କରିଛନ୍ତି । ଶ୍ରୀରାମଙ୍କର ତ୍ୟାଗ, ନିଷ୍ଠା, ସତ୍ୟପାଳନ ଏବଂ ସବୁତକ ତାଙ୍କର ମର୍ଯ୍ୟାଦାପୂର୍ଣ୍ଣ ଗୁଣଗୁଡ଼ିକ ନିରର୍ଥକ ବୋଲି ପ୍ରତୀୟମାନ ହେଲା କାରଣ ଶ୍ରୀରାମ ସୀତାଙ୍କୁ ବିବାହ କରିଛନ୍ତି । ଏହା ହିଁ ତାଙ୍କର ବିରାଟ ଅପରାଧ ।

ଏକ ପକ୍ଷରେ ଅଶ୍ୱପାଳଙ୍କର ବିବାହ ସମ୍ବନ୍ଧରେ ତିକ୍ତ ଅନୁଭୂତିର ବର୍ଣ୍ଣନା, ଅନ୍ୟପକ୍ଷରେ ଶ୍ରୀରାମ-ସୀତାଙ୍କ ପ୍ରତି ତାଙ୍କର ରହିଥିବା ଆନ୍ତରିକ ଭକ୍ତି ଶ୍ରଦ୍ଧା ଓ ସମ୍ମାନ, ଏହି ଦୁଇଟି ପରସ୍ପର ବିରୋଧାତ୍ମକ ଶକ୍ତିଶାଳୀ ମନୋଭାବ ମଝିରେ ଠିଆ ହୋଇ ଶିଶୁ ନରେନ୍ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଜୀବନର ଆଦର୍ଶ ପୁରୁଷ ଶ୍ରୀରାମଙ୍କୁ କେମିତି ସେ ତ୍ୟାଗ କରି ପାରିବେ ! ଏଭଳି ଦ୍ୱନ୍ଦ୍ୱ ଭିତରେ ଶିଶୁ ନରେନ୍ଦ୍ର ଖୁବ୍ ବ୍ୟତିବ୍ୟସ୍ତ ହୋଇ କାନ୍ଦିବାକୁ ଲାଗିଲେ । ଅନନ୍ୟୋପାୟ ହୋଇ ମା'ଙ୍କ ପାଖକୁ ଧାଇଁଗଲେ । ତାଙ୍କର ଅଶ୍ରୁପୂର୍ଣ୍ଣ ଚକ୍ଷୁ ପରିଲକ୍ଷିତ କରି, ତା'ର କାରଣ ଜାଣିବାଲାଗି ମା' ଚାହିଁବାରୁ ନରେନ୍ ସକସକ କଣ୍ଠରେ କହିଲେ, ''ମା, ମୁଁ ସୀତା-ରାମଙ୍କୁ କିପରି ପୂଜା କରିବି ? ସୀତା କ'ଣ ଶ୍ରୀରାମଙ୍କର ପତ୍ନୀ ନୁହଁନ୍ତି କି ?''

ଭୁବନେଶ୍ୱରୀ ଦେବୀ ବୁଝିଗଲେ ପୁତ୍ରର ଦୁଃଖର କାରଣ । ତେବେ ତାଙ୍କୁ ତୁନି କରିବେ କିପରି ? ଏଭଳି ଚିନ୍ତାଗ୍ରସ୍ତ ଥିବା ସମୟରେ ହଠାତ୍ ଶିବଙ୍କ କଥା ମନେପଡ଼ିଗଲା । ଭୁବନେଶ୍ୱରୀ ଦେବୀ ନରେନ୍‌ଙ୍କୁ ସର୍ବଦା ବିରେଶ୍ୱର ବୋଲି ସମ୍ବୋଧନ କରୁଥିଲେ । ଆଶ୍ୱସନାପୂର୍ଣ୍ଣ କଣ୍ଠରେ

Digitized by srujanika@gmail.com

ସେ କହିଲେ, ''ବିରେଶ୍ୱର, ତୁ ଶିବଙ୍କୁ ପୂଜା କର ।'' ମା'ଙ୍କର ଏହି କେଇପଦ କଥା ନରେନ୍ଙ୍କ ହୃଦୟରେ ଶାନ୍ତି ଭରିଦେଲା । କାଳ ବିଳମ୍ବ ନ କରି ଘରର ଛାତ ଉପରକୁ ଦୌଡ଼ିଗଲେ । ଯେଉଁଘରେ ସୀତା-ରାମଙ୍କ ମାଟିମୂର୍ତ୍ତି ରଖି ପୂଜା କରୁଥିଲେ, ସେଠାରେ ପହଞ୍ଚି କିୟତ୍ ସମୟ ଯୁଗଳମୂର୍ତ୍ତିଙ୍କୁ ଅପଲକ ନୟନରେ ଚାହିଁଲେ, ଧୀରେ ମୂର୍ତ୍ତିକୁ ଉଠାଇ ଆଣି, ଛାତ ଉପରୁ ତଳକୁ ଫିଙ୍ଗି ଦେଲେ । ମୂର୍ତ୍ତି ତଳେ ପଡ଼ି ଚୂନା ହୋଇଗଲା ।

- ୨ -

*ମହାତ୍ୟାଗୀ ଶିବଶମ୍ଭୁଙ୍କୁ ଭଲ ପାଇବା ମାନସିକତାରେ ଶିଶୁ ନରେନ୍ ଏଭଳି କ୍ରମଶଃ ବୁଡି ଯାଇଥିଲେ ଯେ ତାଙ୍କର ବାଲ୍ୟଜୀବନ ଶିବମୟ ହୋଇ ଉଠିଥିଲା ।*

ପରବର୍ତ୍ତୀ ଦିନ, ମାଟିର ଶିବ ମୂର୍ତ୍ତିଟିଏ କିଣିଆଣି ଉକ୍ତ ସ୍ଥାନରେ ସ୍ଥାପନା କଲେ । ପୁଷ୍ପ, ପତ୍ରରେ ମୂର୍ତ୍ତିକୁ ସଜାଇ ପୂଜା କଲେ । ଚକ୍ଷୁ ମୁଦ୍ରିତ କରି ଶିବମୂର୍ତ୍ତିଙ୍କ ସମ୍ମୁଖରେ ଧ୍ୟାନସ୍ଥ ହେଲେ । ସୀତାରାମ ମୂର୍ତ୍ତିକୁ ସିନା ଧ୍ୱଂସ କରିଦେଲେ, କିନ୍ତୁ ରାମାୟଣ ପ୍ରତି ତାଙ୍କର ଶ୍ରଦ୍ଧା ଓ ଭକ୍ତି ହ୍ରାସ ହେଲା ନାହିଁ । ନିଜ ପରିବାରରେ କେବଳ ନୁହେଁ, ସାଇ ପଡ଼ିଶାରେ ଯଦି ରାମାୟଣ ପାରାୟଣ ହେଉଥିବ, ସେଠାରେ ସେ ନୀରବରେ ବସି ଏକାଗ୍ର ଚିତ୍ତରେ ରାମାୟଣ ଶୁଣୁଥିଲେ । ହନୁମାନଙ୍କର ଅନନ୍ୟ ପ୍ରଭୁଭକ୍ତି ତାଙ୍କୁ ଖୁବ୍ ଆକର୍ଷିତ କରିଥିଲା । ହନୁମାନ କିଭଳି ରମ୍ଭା-ଉଦ୍ୟାନରେ ବାସ କରୁଥିଲେ, ସମସ୍ତ ବିବରଣୀ ରାମାୟଣରୁ ପଢ଼ି ପୁରାଣପଣ୍ଡା ଏକଦା ଶ୍ରୋତାମାନଙ୍କୁ ଶୁଣାଉଥିଲେ । ବାଳକ ନରେନ୍ଦ୍ରଙ୍କର କଅଁଳ ମନ ହନୁମାନ ଭାବନାରେ ହଠାତ୍ ଆଚ୍ଛାଦିତ ହେଲା । ସେ ଖୁବ୍ ଉତ୍ସୁକିତ ହୋଇ ପ୍ରଶ୍ନ କଲେ, ''ପୁରାଣ ପଣ୍ଡାଜୀ, କଦଳୀ ବଣକୁ ଗଲେ, ମୁଁ ହନୁମାନଙ୍କୁ ଦେଖିପାରିବି ?'' ବାଳକର ପ୍ରଶ୍ନ ଶୁଣି ପୁରାଣ ପଣ୍ଡା ପରିହାସ ଛଳରେ କହି ପକାଇଲେ, ''ହଁ ରେ ପୁଅ, ତୁ ତାଙ୍କୁ ସେଠାରେ ମଧ୍ୟ ଦେଖିପାରିବୁ ।'' ନରେନ୍ଦ୍ରଙ୍କୁ କିଏ ସମ୍ଭାଳେ । ନିଜ ଗୃହ ସନ୍ନିକଟ ଏକ କଦଳୀ-ବନରେ ସିଧା ଯାଇ ହାଜର । ହନୁମାନଙ୍କର ଦର୍ଶନ ଆଶାରେ ସେଠାରେ ବସି ରହିଲେ । ବହୁ ସମୟ ଅତିକ୍ରାନ୍ତ ହେଲା, କିନ୍ତୁ ହନୁମାନଙ୍କର ଦେଖା ମିଳିଲା ନାହିଁ । ଅତି ନିରାଶା ମନରେ ଘରକୁ ଫେରି ଆସିଲେ । କିନ୍ତୁ ଦୁଃଖରେ ସେ ଅତୀବ ଚିନ୍ତାଗ୍ରସ୍ତ ହୋଇପଡ଼ିଲେ । ତାଙ୍କର ଚିନ୍ତାକୁ ଲାଘବ କରିବା ପାଇଁ ପରିବାର ଲୋକେ କହିଲେ, ''ବାବାରେ ପ୍ରଭୁ ଶ୍ରୀରାମଙ୍କ କାର୍ଯ୍ୟ ନିମନ୍ତେ ହନୁମାନ ବୋଧହୁଏ ଅନ୍ୟତ୍ର ଚାଲିଯାଇଥିବେ । ତେଣୁ ତୁମର ସାକ୍ଷାତ ହୋଇପାରିଲା ନାହିଁ ।'' ଅବଶ୍ୟ ଏହା ପରିହାସମୂଳକ ମନ୍ତବ୍ୟ ଥିଲା କିନ୍ତୁ ନରେନ୍ଦ୍ରଙ୍କୁ ସୁହାଇଲା ଭଳି ମଧ୍ୟ ଏହା ଆଶ୍ୱାସନାର ବାଣୀ ଥିଲା ।

ମହାତ୍ୟାଗୀ ଶିବଶମ୍ଭୁଙ୍କୁ ଭଲ ପାଇବା ମାନସିକତାରେ ଶିଶୁ ନରେନ୍ ଏଭଳି କ୍ରମଶଃ ବୁଡିଯାଉଥିଲେ ଯେ ତାଙ୍କର ବାଲ୍ୟଜୀବନ ଶିବମୟ ହୋଇ ଉଠିଥିଲା । ଏହି ସମୟରେ ଏକ ବଦ୍ଧ ଧାରଣା ତାଙ୍କର ମାନସିକତାକୁ ଆଚ୍ଛାଦିତ କଲା ଯେହେତୁ - ଶିବ ସଦା ଧ୍ୟାନମଗ୍ନ ଏବଂ ମାତାଙ୍କ କହିବାନୁସାରେ ସେ ସ୍ୱୟଂ ଧ୍ୟାନ ରାଜ୍ୟରୁ ବିଚ୍ୟୁତ ହୋଇଛନ୍ତି , ସେଥିଲାଗି ଧ୍ୟାନ

Digitized by srujanika@gmail.com

ମାଧ୍ୟମରେ ହିଁ ସେ ଶିବଙ୍କୁ ପୁନଶ୍ଚ ଲାଭ କରିପାରିବେ । ଘଣ୍ଟା ଘଣ୍ଟା ଧରି ଶିବଙ୍କର ମୂର୍ତ୍ତି ସମ୍ମୁଖରେ ସେ ଧ୍ୟାନସ୍ଥ ହୁଅନ୍ତି । ଏହା ତାଙ୍କର ଶିଶୁ ସୁଲଭ କ୍ରୀଡ଼ା ହୋଇପାରେ କିନ୍ତୁ ସେହି କ୍ରୀଡ଼ା ଭିତରେ ଲୁକ୍କାୟିତ ରହିଥିଲା ନିଜର ପ୍ରକୃତ ସ୍ୱରୂପକୁ ଖୋଜିବାର ଅଭିପ୍ସା । ବେଳେବେଳେ ସନ୍ନ୍ୟାସୀଟିଏ ଭଳି ଫୁଙ୍ଗୁଳା ଦେହରେ କୌପିନୀ ପରିଧାନ କରି ନିଜ ମା'ଙ୍କ ସମ୍ମୁଖରେ ଚାଲିଯାଉଥିଲେ, ମା'ଙ୍କ ହୃଦୟ ଆଶ୍ଚର୍ଯ୍ୟରେ ଫାଟି ପଡୁଥିଲା ଏବଂ ସେ ତତ୍‌କ୍ଷଣାତ୍ କହି ପକାଉଥିଲେ ''ଆରେ ବିଶ୍ୱେଶ୍ୱର ଇଏ କ'ଣ ?'' ନରେନ୍ ବିଜୟୋଲ୍ଲାସରେ କହୁଥିଲେ, ''ମା', ଦେଖ ଦେଖ, ମୁଁ ଶିବ, ମୁଁ ଶିବ ।''

ଆକାଶରେ ଖେଳୁଥିଲେ ଏକଦା ଅର୍ଦ୍ଧାକୃତି ଚନ୍ଦ୍ର । ସମବୟସୀମାନଙ୍କ ସହ କ୍ରୀଡ଼ାରତ ବେଳେ ନରେନ୍ ଧ୍ୟାନରେ ଉପବିଷ୍ଟ ହେବାଲାଗି ସେମାନଙ୍କୁ ଉତ୍ସାହିତ କଲେ । ସମସ୍ତେ ଭାବିଲେଯେ ଏହା ମଧ୍ୟ ଏକ କ୍ରୀଡ଼ା । ନରେନ୍‌ଙ୍କ କଥାରେ ସମ୍ମତ ହୋଇ ସମସ୍ତେ ଚକ୍ଷୁ ମୁଦ୍ରିତ କଲେ ଏବଂ ଧ୍ୟାନସ୍ଥ ହେଲେ । ସେମାନଙ୍କ ମଧ୍ୟରୁ କିଏ ଆଖି ମିଟି ମିଟି କରୁଥିଲା ତ ଆଉ କିଏ ଗୋଟିଏ ସ୍ଥାନରେ ବସି ରହିବାର ଯନ୍ତ୍ରଣାରେ ଛାଟିପିଟି ହେଉଥିଲା । ଇତ୍ୟବସରରେ ଜଣେ ବାଳକର ହଠାତ୍ ଦୃଷ୍ଟି ଗୋଚର ହେଲା - ଧ୍ୟାନମନ୍ଦିରର ପଥର ଚଟାଣ ଉପରେ ସର୍ପିଳ ଗତିରେ ଛୁଟି ଆସୁଛି ଗୋଟିଏ ଗୋଖର ସାପ । ପିଲାଟି ଭୟଭୀତ ହୋଇ ଚିତ୍କାର କରିଉଠିଲା - ସମସ୍ତେ ସେହି ଚିତ୍କାରରେ ନିଜ ନିଜ ଆସନରୁ ଉଠିପଡ଼ି ପଳାଇଯିବାକୁ ଉଦ୍ୟତ ହେଲେ । ନରେନ୍‌ଙ୍କୁ ମଧ୍ୟ ସେମାନେ ଖୁବ୍ ଜୋର୍‌ରେ ଡାକ ଛାଡ଼ିଲେ । କିନ୍ତୁ ନରେନ୍ ପ୍ରଶାନ୍ତ ପ୍ରସାରିତ ଆକାଶ ଭଳି ନିର୍ବାତ ଓ ନିଷ୍କମ୍ପ ହୋଇ ବସି ରହିଥିଲେ । ପିଲାମାନେ ନରେନ୍ଦ୍ରଙ୍କୁ ସେଠାରେ ଛାଡ଼ି ପଳାୟନ କଲେ ଏବଂ ସମସ୍ତ ଘଟଣା ତାଙ୍କର ପିତାମାତାଙ୍କୁ କହିଲେ । କିୟତ୍‌କ୍ଷଣ ଅନ୍ତେ ନରେନ୍‌ଙ୍କର ପିତାମାତା ସେଠାରେ ପହଞ୍ଚି ଦେଖିଲେଯେ ନରେନ୍ ନିଶ୍ଚଳ ଧ୍ୟାନରେ ମଗ୍ନ ଏବଂ ନାଗସାପ ମଧ୍ୟ କୁଣ୍ଡଳୀ ହୋଇ ଫଣା ଉତ୍‌ଥିତ କରି ଅପଲକ ନୟନରେ ଚାହିଁଛି ନରେନଙ୍କୁ । ସତେକି ବିଷଧର ସର୍ପ ନରେନ୍‌ଙ୍କର ସୌମ୍ୟ ଶାନ୍ତ ଧ୍ୟାନ ମୁଖମଣ୍ଡଳରେ ଆକର୍ଷିତ ଓ ମନ୍ତ୍ରମୁଗ୍ଧ ! ସର୍ପ ଓ ନରେନ୍‌ଙ୍କର ଦୂରତା ଏତେ କମ୍‌ଥିଲାଯେ ସେମାନେ ନା ସାପକୁ ହଠାତ୍ ଘଉଡ଼ାଇ ପାରୁଥିଲେ ନା ନରେନ୍‌ଙ୍କୁ ସେଠାରୁ ବିପଦମୁକ୍ତ କରିପାରୁଥିଲେ । ଭୟାକୁଳ ଅବସ୍ଥାରେ ସେମାନେ ଗଳଦ୍‌ଘର୍ମ ହେଉଥିବାବେଳେ, ଏହି ନାଟକର ଅବସାନ ଘଟିଲା । ସାପ ଧୀରେ ଧୀରେ ସେଠାରୁ ଚାଲିଗଲା । କିନ୍ତୁ ସବୁଠୁଁ ବଡ଼ ବିସ୍ମୟକର ବ୍ୟାପାର ଥିଲା ଯେ ସେମାନେ ସେଠାରେ ଖୋଜାଖୋଜି କରି ସାପକୁ ଠାବ କରିପାରିଲେ ନାହିଁ । କିନ୍ତୁ ନରେନ୍ଦ୍ରଙ୍କୁ ସାପର ଉପସ୍ଥିତି ସମ୍ବନ୍ଧରେ ପ୍ରଶ୍ନ କରିବାରୁ ସେ କହିଲେ, ''ମୁଁ ସାପ ଫାପ କିଛି ଜାଣିନାହିଁ; ମୁଁ କେବଳ ଆନନ୍ଦ ସାଗରରେ ପହଁରୁଥିଲି ।''

ନେତୃତ୍ୱ ନେବାର କଳା ଉପରେ ଆଜିର ଆଧୁନିକ ପରିଚାଳନା ବିଶାରଦଗଣ ଅନେକ ତର୍କ ବିତର୍କ କରନ୍ତି । କିଏ କହେ - ନେତୃତ୍ୱ ଏଭଳି ଏକ କଳା ଯାହା କେତେକ ବ୍ୟକ୍ତିଙ୍କର ଜନ୍ମଗତ ପ୍ରବୃତ୍ତି । ଆଉ କେତେକ ମତ ବ୍ୟକ୍ତ କରନ୍ତି - ନେତୃତ୍ୱ ନେବାର କଳାକୁ ମଣିଷ ଶିକ୍ଷା, ପ୍ରଶିକ୍ଷଣ ଓ ଅନୁଭୂତିରୁ ଆୟତ୍ତ କରିଥାଏ । ସେମାନଙ୍କର ଯୁକ୍ତି ଯାହାବି ହେଉ, କିନ୍ତୁ ନରେନ୍ଦ୍ରଙ୍କ କ୍ଷେତ୍ରରେ ତାହା ବାଲ୍ୟକାଳରୁ ଆପଣାଛାଏଁ ପରିସ୍ଫୁଟ ହୋଇଥିଲା । ସମବୟସୀମାନେ ନରେନ୍ଦ୍ରଙ୍କୁ

Digitized by srujanika@gmail.com

ପ୍ରତ୍ୟେକ ଖେଳକୁଦରେ ନେତା ଭାବେ ଗ୍ରହଣ କରୁଥିଲେ । ଏଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ - ଯେଉଁମାନେ ତ୍ୟାଗୀ, ସେମାନେ ସାଧାରଣତଃ ନିର୍ଭୀକ । ନିର୍ଭୀକତାରୁ ଜନ୍ମନିଏ ନେତୃତ୍ୱ । ନରେନ୍ଦ୍ର କିନ୍ତୁ ଜନ୍ମରୁ ତ୍ୟାଗୀ ଓ ନିର୍ଭୀକ, ସେଇଥିପାଇଁ ସମବୟସୀଙ୍କ ମେଳରେ ସେ ଜଣେ ନେତା ଭାବେ ଗୃହୀତ ହୋଇଥିଲେ ।

ଏହି ପରିପ୍ରେକ୍ଷୀରେ ଗୋଟିଏ ବିସ୍ମୟକର ଘଟଣା ଏଠାରେ ଅବତାରଣା କରାଯାଉଛି - ନରେନ୍ଦ୍ର ସେତେବେଳେ ମାତ୍ର ଛ'ବର୍ଷର ବାଳକ । ଜଣେ ସମ୍ପର୍କୀୟ ବାଳକ ସହିତ ସେ ଚରହକ ମେଳା ଦେଖିବାକୁ ଯାଇଥିଲେ । ଉକ୍ତ ମେଳାରେ ଭଗବାନ ଶିବଙ୍କର ପୂଜା ଉପାସନା କରାଯାଇଥାଏ । ନରେନ୍ଦ୍ର ମେଳାରେ ଶିବଙ୍କର ମୂର୍ତ୍ତି ସବୁ କିଣିଲେ ଏବଂ ସାଙ୍ଗ ସହ ଘରକୁ ଫେରିବା ବାଟରେ ସନ୍ଧ୍ୟା ହୋଇ ସାରିଥିଲା । ମୁହଁ ଅନ୍ଧାରରେ ଦୁହେଁ ଫେରୁଥିବା ବେଳେ, ହଠାତ୍ ଗୋଟିଏ ଘୋଡ଼ାଗାଡ଼ି ଦ୍ରୁତଗତିରେ ମାଡ଼ି ଆସୁଥିଲା । ନରେନ୍ଦ୍ର ଦେଖିଲେ ଯେ ତାଙ୍କର ସାଙ୍ଗ ରାସ୍ତା ମଝିରେ ଭୟଭୀତ ହୋଇ ଛିଡ଼ା ହୋଇଛି । ଗାଡ଼ି ଏତେ ପାଖେଇ ଯାଇଥିଲା ଯେ ପିଲାଟି ପଳେଇ ଯିବା ପାଇଁ ସମୟ ନ ଥିଲା । ନରେନ୍ଦ୍ର ସେତେବେଳକୁ ଭାବି ନେଇଥିଲେ, ବନ୍ଧୁ ଜଣକ ନିଶ୍ଚିତଭାବେ ଘୋଡ଼ାଖୁରା ତଳେ ଚାପି ହୋଇ ମୃତ୍ୟୁବରଣ କରିବ । ତାଙ୍କର ଉପସ୍ଥିତି ବୁଦ୍ଧି ଅତି ବିଚକ୍ଷଣ । ମୂର୍ତ୍ତିଗୁଡ଼ିକ ଫିଙ୍ଗିଦେଇ ରାସ୍ତା ମଝିରୁ ସାଙ୍ଗକୁ ତତ୍‌କ୍ଷଣାତ୍ ଟାଣିଆଣିଲେ । ଘୋଡ଼ାଗାଡ଼ି କ୍ଷଣକ ମୁହୂର୍ତ୍ତରେ ଅତିକ୍ରମ କଲା । ପଥଚାରୀମାନେ ବାଳକର ସାହସ ତଥା ନିଜ ଜୀବନକୁ ବିପନ୍ନ କରି ସାଙ୍ଗକୁ ରକ୍ଷା କରିବାର କୌଶଳ ଓ ମାନସିକତା ପରିଲକ୍ଷିତ କରି ତଟସ୍ଥ ହୋଇଗଲେ । ନରେନ୍‌ଙ୍କର ପିଠିକୁ ଥାପୁଡ଼ାଇ ସେମାନେ ଆଶୀର୍ବାଦ ଦେଇ କହିଉଠିଲେ, ''ବାଃ - ସୁନ୍ଦର ବାଳକଟିଏ ।'' ଘରେ ପହଞ୍ଚିବାଉତ୍ତାରୁ ଭୁବନେଶ୍ୱରୀ ଦେବୀ ସମସ୍ତ ଘଟଣା ଶୁଣି ସେଦିନ କହିଥିଲେ, ''ବାହାଃ ବିଶ୍ୱେଶ୍ୱର, ସବୁବେଳେ ମଣିଷଟିଏ ଭଳି ମଣିଷ ହୁଅ ।''

ଶିଶୁ ବ୍ୟକ୍ତିତ୍ୱର ବିକାଶ ମା-ବାପାଙ୍କ ଉପରେ ନିର୍ଭର କରେ । ଭଗବାନ ଶିବ ଯିଏ ତ୍ୟାଗର ଗୌରବରେ ସଦା ମହିମାମଣ୍ଡିତ, ତାଙ୍କରି କୃପାରୁ ସେ ଏଭଳି ପୁତ୍ର ପାଇଛନ୍ତି, ତାଙ୍କୁ ସିଏ ତ୍ୟାଗ ଓ ବୀରତ୍ୱର ଶିକ୍ଷା ଦେବେ ନାହିଁ ତ ଦେବ ଆଉ କିଏ ? ଏକବିଂଶ ଶତାବ୍ଦୀର ପିତାମାତା ଆଜି ଏଭଳି ଶିକ୍ଷା ଓ ଉପଦେଶ ନିଜର ପିଲାମାନଙ୍କୁ ପ୍ରଦାନ କରିବା ସ୍ୱପ୍ନ ହୋଇଛି । ସେମାନଙ୍କର ସନ୍ତାନ ପାଠ୍ୟପୁସ୍ତକ ପଢ଼ି, ପରୀକ୍ଷାରେ ଉଚ୍ଚ ନମ୍ବର ହାସଲ କରି ଇଞ୍ଜିନିୟର ଡାକ୍ତର ହୋଇ ଅଜସ୍ର ଅର୍ଥ ଉପାର୍ଜନ କରନ୍ତୁ ବୋଲି ସେମାନେ ଆଜି ମୋହଗ୍ରସ୍ତ ଓ ନିଶାଗ୍ରସ୍ତ । ସେଇଥିପାଇଁ ତ ଆଜି ସାମାଜିକ ଅଙ୍ଗୀକାରବୋଧତାରେ ଅବକ୍ଷୟ ଦେଖାଯାଇଛି । ତ୍ୟାଗର ଜାଗାକୁ ଭୋଗ ମାଡ଼ି ବସିଛି ।

ବିଶ୍ୱନାଥ ଦତ୍ତଙ୍କ ଗୃହକୁ ଅନେକ ମହକିଲ ଆସୁଥିଲେ । ସେମାନେ ବୈଠକଖାନାରେ ବସି ଗପସପ ହୁଅନ୍ତି । ତତକାଳୀନ ସାମାଜିକ ପ୍ରଥାନୁସାରେ ସେ ସମସ୍ତଙ୍କ ପାଇଁ ଗୋଟିଏ ଲେଖାଏଁ ହୁକାର ବନ୍ଦୋବସ୍ତ କରି ଦେଇଥିଲେ । କାରଣ ଜାତିପ୍ରଥା ଭଳି ଏକ କୁସଂସ୍କାରଦ୍ୱାରା ତତ୍‌କାଳୀନ ସମାଜ ବେଶ୍ ଆଚ୍ଛନ୍ନ ଥିଲା । କେତେକ ମହକିଲ ମଧ୍ୟ ମୁସଲମାନ ଥିଲେ । ସେମାନଙ୍କ

Digitized by srujanika@gmail.com

ମଧ୍ୟରୁ ଜଣକ ସହ ନରେନଙ୍କର ଖୁବ୍ ବନ୍ଧୁତ୍ୱ ବଢ଼ିଯାଇଥିଲା । ପ୍ରତ୍ୟେକ ଧର୍ମ ଓ ଜାତି ପାଇଁ ଗୋଟିଏ ଲେଖାଏ ହୁକାର ବନ୍ଦୋବସ୍ତ ପରିଲକ୍ଷିତ କରି ବାଳକ ନରେନଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହେଲା । ଏକାସଙ୍ଗରେ ବସି ଗୋଟିଏ ହୁକା କାହିଁକି ସେମାନେ ଟାଣୁ ନାହାନ୍ତି ବୋଲି ପ୍ରଶ୍ନରେ ତାଙ୍କ ମନ ଏକଦା ଜର୍ଜରିତ ହୋଇଉଠିଲା । ସେ ଭାବିଲେ ଯେ ଗୋଟିଏ ହୁକାରୁ ଜଣେ ଯଦି ଧୂମପାନ କରେ ସେ କ'ଣ ମରିଯିବ ନା ଘରର ଛାତ ଭୁଷୁଡ଼ି ପଡ଼ିବ ? ଏହିଭଳି ବାରମ୍ବାର ପ୍ରଶ୍ନରେ ସେ ଖୁବ୍ ଉଦ୍‌ବେଳିତ ହୋଇପଡ଼ିଲେ । ଥରେ କେହି ନ ଥିବା ସମୟରେ ସେ ପ୍ରତ୍ୟେକ ହୁକାରେ ମୁହଁ ଲଗାଇ ପରୀକ୍ଷା କଲେ ଏବଂ ଦେଖିଲେ ଯେ କୌଣସି ପ୍ରତିକ୍ରିୟା ତାଙ୍କ ଭିତରେ ଘଟୁନାହିଁ କିମ୍ବା ସେ ମରୁ ନାହାଁନ୍ତି । ଇତ୍ୟବସରରେ, ତାଙ୍କ ବାପା ଗୃହ ଭିତରକୁ ପ୍ରବେଶ କଲେ ଏବଂ ନରେନ୍‌ଙ୍କର ଅଦ୍ଭୁତ ଆଚରଣ ଦେଖି ପ୍ରଶ୍ନ କଲେ, ''ନରେନ୍ ତୁ କ'ଣ କରୁଛୁ ?''

''ବାପା, ଜାତିପ୍ରଥା ଭାଙ୍ଗିଦେଲେ କ'ଣ ଯେ ଘଟିବ, ତାହା ମୁଁ ପରୀକ୍ଷା କରୁଥିଲି । ସବୁ ହୁକାରେ ମୁହଁ ମାରିଦେଲି । କାହିଁ ମୋର ତ କିଛି ହେଲାନାହିଁ ?'' ପୁତ୍ରର ମାର୍ଜିତ ଓ ସଂସ୍କାରିତ ମନୋଭାବ ଦେଖି ସେ ଖୁବ୍ ଉଚ୍ଚ ସ୍ୱରରେ ହସିଲେ ଏବଂ ନିଜର ଅଧ୍ୟୟନ କକ୍ଷକୁ ଚାଲିଗଲେ । କିନ୍ତୁ ନରେନ୍ଦ୍ରଙ୍କ ମନରେ ଯେଉଁ ଦ୍ୱନ୍ଦର ମହାବାତ୍ୟା କାୟା ବିସ୍ତାର କରିଥିଲା, ଏହି ପରୀକ୍ଷଣରୁ ଚିରଦିନ ପାଇଁ ତାହାର ପରିସମାପ୍ତି ଘଟିଲା । ସବୁ ମଣିଷ ସମାନ ଏବଂ ସମସ୍ତେ ଏକ ଈଶ୍ୱରଙ୍କର ସନ୍ତାନ ବୋଲି ଧାରଣା ପରିପୁଷ୍ଟ ହେଲା ।

- ୩ -

*ଯେଉଁ ବ୍ୟକ୍ତି ନିଜ ମା'କୁ ସମ୍ମାନ ଓ ପୂଜା କରେ ନାହିଁ, ସେ କେବ ବି ମହାନ୍ ହୋଇ ପାରିବ ନାହିଁ । ମୋ ଜ୍ଞାନର ପ୍ରସ୍ଫୁଟନ ପାଇଁ ମା'ଙ୍କ ନିକଟରେ ମୁଁ ସଦା ଋଣୀ ।*

ଏହି ଅସାଧାରଣ ବାଳକର ବାଲ୍ୟଜୀବନରେ ଏକ ଅଦ୍ଭୁତ ଦର୍ଶନ ହେଉଥିଲା । ସେ ଯେତେବେଳେ ଶୋଇବା ସମୟରେ ଆଖି ବୁଜୁଥିଲେ ସେତେବେଳେ ଦୁଇ ଭ୍ରୂଲତା ମଝିରେ ବିଭିନ୍ନ ରଙ୍ଗ ବେରଙ୍ଗର ଏକ ଉଜ୍ଜ୍ୱଳ ଜ୍ୟୋତିର ଆବିର୍ଭାବ ଘଟୁଥିଲା । ଉକ୍ତ ଜ୍ୟୋତି କ୍ରମଶଃ ବିସ୍ତାରିତ ହୋଇ ହଠାତ୍ ବିଚ୍ଛୁରିତ ହୋଇଯାଉଥିଲା ଏବଂ ସେହି ଶୁଭ୍ର ଆଲୋକର ଉତ୍ତାଳ ଢେଉରେ ତାଙ୍କର ସମଗ୍ର ଶରୀର ବୁଡିଯାଉଥିଲା । ଜ୍ୟୋତିର ଊର୍ମିମାଳାରେ ମନ ସମାହିତ ହେବାକ୍ଷଣି, ଆପଣାଛାଏଁ ତାଙ୍କର ଶରୀର ଓ ମନ ନିଦ୍ରାରେ ଆଚ୍ଛନ୍ନ ହୋଇପଡୁଥିଲା । ଏହା ତାଙ୍କ ପାଇଁ ଥିଲା ଏକ ନିତିଦିନିଆ ଘଟଣା । କିନ୍ତୁ ଏହିପ୍ରକାର ଅନୁଭୂତି ସମ୍ବନ୍ଧରେ ସେ କାହାକୁ କହୁ ନ ଥିଲେ । କାରଣ ସେ ଭାବିଥିଲେ ଯେ ଏଭଳି ଦୃଶ୍ୟ ବୋଧହୁଏ ସମସ୍ତଙ୍କର ହେଉଥିବ ।

କିନ୍ତୁ ସେ ଯେତେବେଳେ ସ୍କୁଲରେ ପାଠ ପଢୁଥିଲେ ସେତେବେଳେ ଜଣେ ସାଙ୍ଗକୁ କଥା ପ୍ରସଙ୍ଗଚେ ଥରେ ପଚାରିଲେ, ''ରାତିରେ ଶୋଇବା ପୂର୍ବରୁ ଦୁଇ ଭ୍ରୂଲତା ମଝିରେ ତୁମେ ଗୋଟିଏ ଜ୍ୟୋତି ଦର୍ଶନ କର କି ?'' ଆଶ୍ଚର୍ଯ୍ୟରେ ସାଙ୍ଗର ଚକ୍ଷୁ ବିସ୍ତାରିତ ହେଲା ଏବଂ ସେ

Digitized by srujanika@gmail.com

ଦେଖନ୍ତି ନାହିଁ ବୋଲି ସ୍ପଷ୍ଟ ଭାବରେ କହିଲେ । ନରେନ କିନ୍ତୁ ତାଙ୍କୁ କହିଲେ, ମୁଁ ସବୁଦିନେ ଦେଖେ । ହଁ, ତୁମେ ଗୋଟିଏ କଥା ମନେରଖିବ, ରାତିରେ ସାଙ୍ଗେ ସାଙ୍ଗେ ଶୋଇପଡ଼ିବ ନାହିଁ । କିଛି ସମୟ ଶଯ୍ୟାରେ ସତର୍କ ମନରେ ଶୋଇବ । ତେବେ ତୁମେ ଜ୍ୟୋତିର ଦର୍ଶନ କରିପାରିବ ।''

ଉକ୍ତ ଜ୍ୟୋତିଃ ଦର୍ଶନ ସମ୍ବନ୍ଧରେ, ପରବର୍ତ୍ତୀ କାଳରେ ତାଙ୍କର ପରମଗୁରୁ ଶ୍ରୀରାମକୃଷ୍ଣ ପରମହଂସ ପ୍ରଥମ ସାକ୍ଷାତରେ ନରେନ୍ଦ୍ରଙ୍କୁ ଉତ୍ସୁକ ସ୍ୱରରେ ପ୍ରଶ୍ନ କରିଥିଲେ, ''ବାବା ନରେନ, ତୁମେ ଶୋଇବା ପୂର୍ବରୁ ଜ୍ୟୋତି ଦର୍ଶନ କର କି ?'' ନରେନ୍ଦ୍ର 'ହଁ' କହିବାରୁ ଶ୍ରୀରାମକୃଷ୍ଣ ବାଳକ ସମ ତାଳିମାରି ସେଦିନ ନାଚି ଉଠିଥିଲେ । ଏତାଦୃଶ ଜ୍ୟୋତିଃ ଦର୍ଶନ ତାଙ୍କ ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଜାରି ରହିଥିଲା । ଅବଶ୍ୟ ଗଭୀର ଧ୍ୟାନର ଶୀର୍ଷ ସ୍ଥାନରେ ଉପନୀତ ହେବାବେଳକୁ ଏହା ସାମୟିକ ହୋଇଯାଇଥିଲା । ପିଲାଦିନରେ ତାଙ୍କର ଦୁଷ୍ଟାମି ଯେପରି ତୀବ୍ର ଓ ଭୀଷଣ ଥିଲା, ସେପରି ଥିଲା ତାଙ୍କର ଧ୍ୟାନମଗ୍ନ ହେବାର ପ୍ରବୃତ୍ତି । ସେ ଏପରି ଚଳଚଞ୍ଚଳଯେ ଥରେ ସମବୟସୀମାନଙ୍କ ଦୌଡ଼ାଦୌଡ଼ି ଖେଳକୁଦରେ ଡିଆଁ ମାରୁଥିବା ସମୟରେ, ଉପାସନା ଗୃହର ବାରଣ୍ଡାରୁ ତଳକୁ ଖସିପଡ଼ିଲେ, ଯାହାଫଳରେ ତାଙ୍କର ମୁଣ୍ଡ ଗୋଟିଏ ପଥରରେ ପିଟି ହୋଇଗଲା । ଅବଶ୍ୟ ଉକ୍ତ ଆଘାତରୁ ସେ ବର୍ତ୍ତିଗଲେ, କିନ୍ତୁ ଦକ୍ଷ ଚକ୍ଷୁ ଉପରେ ସବୁଦିନ ପାଇଁ ରହିଗଲା ଏକ କଟା ଦାଗ । ପରବର୍ତ୍ତୀ କାଳରେ ଏହି କଟା ଦାଗ ଅନ୍ତରାଳେ ରହିଥିବା ରହସ୍ୟକୁ ଉନ୍ମୋଚନ କରି ଶ୍ରୀରାମକୃଷ୍ଣ ମନ୍ତବ୍ୟ ଦେଇଥିଲେ, ''ଏହି ଦୁର୍ଘଟଣା ଯୋଗୁଁ ନରେନ୍‌ର ଶକ୍ତି ଯଦି ପ୍ରତିହତ ନ ହୋଇଥାନ୍ତା, ତେବେ ସାରା ବିଶ୍ୱକୁ ସେ ଖଣ୍ଡବିଖଣ୍ଡିତ କରିଦେଇଥାନ୍ତା ।''

ନରେନ୍‌ଙ୍କୁ ଯେତେବେଳେ ଛ'ବର୍ଷ, ସେତେବେଳେ ପିତା ତାଙ୍କୁ ଗ୍ରାମ୍ୟ ପାଠଶାଳାରେ ପ୍ରବେଶ କରେଇ ଦେଲେ । ସବୁ ପିଲାଙ୍କ ଭଳି ନୂଆ ଧୋତିଟିଏ ପିନ୍ଧି, ଚଟେଇଟିଏ କାଖରେ ଯାକି ପାଠଶାଳାକୁ ଗଲେ । ପିତା ବିଶ୍ୱନାଥ ଥିଲେ ଜଣେ ସଂସ୍କାରଧର୍ମୀ ତଥା ଶୃଙ୍ଖଳିତ ବ୍ୟକ୍ତି । ନରେନ୍ଦ୍ରଙ୍କ ଦୁଷ୍ଟାମି ପାଇଁ ସେ ବିବ୍ରତ ଥିଲେ ବି କଡ଼ା ଭାଷାରେ କେବେ ତାଙ୍କୁ ଭର୍ତ୍ସନା କରୁ ନ ଥିଲେ । ବରଂ ନରେନ୍ଦ୍ର ଓ ଅନ୍ୟ ସନ୍ତାନଙ୍କ ଭିତରେ ଆତ୍ମ-ସମ୍ମାନ ଓ ନମ୍ରତା ଭଳି ସୁଗୁଣ ଭରିଦେବା ପାଇଁ ନିଜର ବିଜ୍ଞତାର ସଦୁପୋଯୋଗ କରୁଥିଲେ । ଯଦି ନରେନ୍ କିମ୍ବା ଅନ୍ୟ ସନ୍ତାନମାନେ କାହାକୁ ଦୁର୍ବ୍ୟବହାର କରୁଥିଲେ କିମ୍ବା ଅଶାଳୀନତା ପ୍ରଦର୍ଶନ କରୁଥିଲେ, ସଂସ୍କାରିତ କରିବା ଉଦ୍ଦେଶ୍ୟରେ ସେ ଅନ୍ୟମାନଙ୍କ ସମ୍ମୁଖରେ ସେମାନଙ୍କର ଦୁର୍ବ୍ୟବହାରକୁ ଉପସ୍ଥାପିତ କରି, ସେମାନଙ୍କୁ ଲଜ୍ଜିତ କରୁଥିଲେ ।

ଏକଦା ନରେନ୍ ନିଜ ମା'ଙ୍କୁ ନିଷ୍ଠୁର ବ୍ୟବହାର ପ୍ରଦର୍ଶନ କଲେ । ଏହି ପରିପ୍ରେକ୍ଷୀରେ ନରେନ୍ଦ୍ରଙ୍କୁ ତିରସ୍କୃତ କରିବା ପରିବର୍ତ୍ତେ ନରେନ୍‌ଙ୍କର କୋଠରି ଯେଉଁଠି ସେ ସାଙ୍ଗମାନଙ୍କ ସହ ଖେଳନ୍ତି, ସେହି ଘର କାନ୍ଥରେ ପିତା ଲେଖି ଦେଇଥିଲେ ''ନରେନ୍‌ବାବୁ ଆଜି ତାଙ୍କ ମା'ଙ୍କୁ ଏଭଳି କଦର୍ଯ୍ୟ ବ୍ୟବହାର କରିଛନ୍ତି ।'' କେବଳ ସେତିକି ନୁହେଁ, ନରେନ୍ ଯେଉଁ କୁଭାଷା ବ୍ୟବହାର କରିଥିଲେ, ସେହି ଭାଷାକୁ ମଧ୍ୟ ସେଠାରେ ସେ ଲେଖି ଦେଇଥିଲେ । ନରେନଙ୍କ ପାଖକୁ ଯେଉଁ ସାଙ୍ଗମାନେ ଆସୁଥିଲେ, ପିତାଙ୍କର ଲିଖିତ ଶବ୍ଦଗୁଡ଼ିକ ଉପରେ ସେମାନଙ୍କର

Digitized by srujanika@gmail.com

ଆଖି ପଡ଼ିଯାଉଥିଲା । ନରେନ୍ ଖୁବ୍ ଲଜ୍ଜିତ ହେଉଥିଲେ । ପିତା ବିଶ୍ୱନାଥ ଦତ୍ତଙ୍କର ଏହି ଉପାୟଟି ନରେନ୍‌ଙ୍କୁ ବେଶ୍ ସଂସ୍କାରିତ ଓ ଶୃଙ୍ଖଳିତ କରିପାରିଥିଲା ।

ଶିଶୁର ବୌଦ୍ଧିକ ବିକାଶ ନିମନ୍ତେ ଅଧ୍ୟୟନ ଯେପରି ମହତ୍ତ୍ୱପୂର୍ଣ୍ଣ, ଠିକ୍ ସେଭଳି ମଧ୍ୟ ସଙ୍ଗୀତ, କ୍ରୀଡ଼ା ଏବଂ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ, ତାହା ଭଲଭାବରେ ବୁଝିପାରିଥିଲେ ବିଶ୍ୱନାଥ । କାରଣ ଏହାରି ମାଧ୍ୟମରେ ମିଳିଥାଏ ନିରୋଳା ଆତ୍ମସୁଖ । ନରେନ୍‌ଙ୍କୁ ସଙ୍ଗୀତ ପ୍ରତି ଆକର୍ଷଣ କରିବାଲାଗି ସେ ସଙ୍ଗୀତ ଶିକ୍ଷାର ବ୍ୟବସ୍ଥା କରିଥିଲେ । ଯେହେତୁ ସଙ୍ଗୀତ ଥିଲା ନିଜ ପରିବାରର ପରମ୍ପରା, ସେଥିପାଇଁ ନରେନ୍ ଏକ ସୁନ୍ଦର ସଙ୍ଗୀତଜ୍ଞ ହୋଇପାରିଥିଲେ । ପିତାଙ୍କର ଶ୍ରଦ୍ଧା, ଅନୁଶାସନ, ସାଧୁତା, ନିଷ୍ଠା ସର୍ବୋପରି ତାଙ୍କର ସଂସ୍କାରଧର୍ମୀ ମନୋଭାବ ନରେନ୍‌ଙ୍କର ବାଲ୍ୟଜୀବନକୁ ବହୁଳ ଭାବରେ ପ୍ରଭାବିତ କରିଥିଲା ।

ଭୁବନେଶ୍ୱରୀ ଦେବୀଙ୍କ କୋଳ ଯେଉଁଠି ନରେନ୍‌ଙ୍କର ବାଲ୍ୟଜୀବନ କଟିଥିଲା, ତାହା ତ ସବୁକ୍ଷେତ୍ରଠୁଁ ଥିଲା ନିଆରା । ଯେଉଁ ସଂସ୍କାର ଓ ଆଧ୍ୟାତ୍ମିକ ପ୍ରବୃତ୍ତି ନେଇ ନରେନ୍ ଏହି ପୃଥିବୀ ପୃଷ୍ଠରେ ଜନ୍ମଗ୍ରହଣ କରିଥିଲେ, ଭୂମିଷ୍ଠ ପରଠାରୁ ତା'ର ବିକାଶ ପ୍ରକ୍ରିୟାରେ ମାତାଙ୍କରଯେ ଅତୁଳନୀୟ ଦାନ ରହିଥିଲା, ତାହା ବର୍ଣ୍ଣନା କରିବା ଏଠାରେ ବାହୁଲ୍ୟ ହେବ । ତଥାପି ମା'ଙ୍କ ଠାରୁ ବୀଜମନ୍ତ୍ର ସଦୃଶ ଯେଉଁ ଉପଦେଶ ନରେନ୍ ପାଇଥିଲେ, ତାହା କିପରି ତାଙ୍କୁ ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ପ୍ରଚୋଦିତ କରିଥିଲା, ତାହା ଏଠାରେ ନିଶ୍ଚିତ ରୂପେ ବର୍ଣ୍ଣନାଯୋଗ୍ୟ ।

''ଜୀବନ ସାରା ଶୁଦ୍ଧ ଜୀବନଯାପନ କରିବୁ । ନିଜର ସମ୍ମାନକୁ ସର୍ବଦା ଜଗିରଖି ଚଳିବୁ । ଅନ୍ୟର ସମ୍ମାନରେ ହାନି ପହଞ୍ଚାଇବୁ ନାହିଁ । ସବୁବେଳେ ଶାନ୍ତ ରହିବୁ କିନ୍ତୁ ଆବଶ୍ୟକ ସ୍ଥଳେ ହୃଦୟକୁ କଠୋର କରିବୁ ।'' ମା'ଙ୍କର ଏଇ କେଇପଦ ଉପଦେଶ ତାଙ୍କର ଭବିଷ୍ୟତ ଜୀବନକୁ ସୁନ୍ଦର ଓ ବଳିଷ୍ଠ କରି ଗଢ଼ିତୋଳିଥିଲା; କହିବା ବାହୁଲ୍ୟଯେ ତାଙ୍କର ସମଗ୍ର ସଂଘର୍ଷମୟ ଜୀବନକାଳରେ ସେ ସର୍ବଦା ଏହାକୁ ସ୍ମରଣ କରୁଥିଲେ । ନରେନ୍ ପରବର୍ତ୍ତୀ ସମୟରେ ଯେତେବେଳେ ସ୍ୱାମୀ ବିବେକାନନ୍ଦ ଭାବେ ବିଶ୍ୱ ଆଦୃତ ହେଲେ, ସେତେବେଳେ ମା'ଙ୍କ ସମ୍ବନ୍ଧରେ ଏକଦା କହିଥିଲେ, ''ଯେଉଁ ବ୍ୟକ୍ତି ନିଜ ମା'କୁ ସମ୍ମାନ ଓ ପୂଜା କରେନାହିଁ, ସେ କେବେ ବି ମହାନ ହୋଇପାରିବ ନାହିଁ । ...ମୋ ଜ୍ଞାନର ପ୍ରସ୍ଫୁଟନ ପାଇଁ ମା'ଙ୍କ ନିକଟରେ ମୁଁ ସଦା ଋଣୀ ।



Digitized by srujanika@gmail.com

॥ ଦୁଇ ॥

## କଳିକାର ପ୍ରସ୍ଫୁଟନ - ମେଟ୍ରୋପଲିଟାନ୍ ଇନ୍‌ଷ୍ଟିଚ୍ୟୁଶନ୍‌ରେ ପ୍ରବେଶ

୧୮୭୧ ଖ୍ରୀଷ୍ଟାବ୍ଦ, ନରେନ୍ଦ୍ରନାଥଙ୍କୁ ମାତ୍ର ଆଠବର୍ଷ ବୟସ । ସ୍ୱନାମଧନ୍ୟ ମହାନ ସମାଜ ସଂସ୍କାରକ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଦ୍ୱାରା ପ୍ରତିଷ୍ଠିତ ମେଟ୍ରୋପଲିଟାନ୍ ଇନଷ୍ଟିଚ୍ୟୁଶନ୍‌ର ଇଂରାଜୀ ବିଭାଗରେ ନରେନ୍ଦ୍ରନାଥଙ୍କର ନାମ ଲେଖାହେଲା । ଭାରି ଚଗଲା । ଦୁଷ୍ଟାମି ସୀମାର ତାତ୍ପର୍ଯ୍ୟ ତାଙ୍କ ପାଖରେ ଆଦୌ ନ ଥିଲା । ସଦା ଚଳଚଞ୍ଚଳ । ସ୍କୁଲର ପ୍ରଥମ ଦିନରେ ନିଜର ନୂଆ ପ୍ୟାଣ୍ଟ୍ ସାର୍ଟକୁ ଚିରାଫଟାରେ ପରିଣତ କରିଦେଲେ । ଡେସ୍କ୍ ପାଖରେ ବହୁ ସମୟ ବସିବା ବଡ଼ କଷ୍ଟକର ବ୍ୟାପାର । ବାରମ୍ବାର ଉଠବସ ଭିତରେ ସେ ଅଥୟ ହୋଇପଡୁ ଥିଲେ । ସବୁ କ୍ଷେତ୍ରରେ ତୀବ୍ର ମନୋଭାବ । ଯଦି ଖେଳିବେ, ଭୟଙ୍କର ଭାବେ ଖେଳିବେ । ଗୋଟି ଖେଳ, ଡେଇଁବା, ଦୌଡ଼ିବା, ମୁଷ୍ଟିଯୁଦ୍ଧ ଏବଂ କ୍ରିକେଟ ଥିଲା ତାଙ୍କର ପ୍ରିୟଖେଳ । ସବୁ ଖେଳରେ ଥିଲେ ସେ ଅଗ୍ରଗାମୀ ।

ପାଠପଢ଼ିବା କ୍ଷେତ୍ରରେ ତାଙ୍କର ପାରଙ୍ଗମତା ମଧ୍ୟ ତଦ୍ରୂପ । ମନ ଓ ଚିନ୍ତା ଖୁବ୍ ଗତିଶୀଳ । ସତେକି ବିଶ୍ୱବ୍ରହ୍ମାଣ୍ଡର ସବୁତକ ବିଦ୍ୟାକୁ ସେ ଗୋଟିଏ ମୁହୂର୍ତ୍ତ ଭିତରେ କରାୟତ କରିନେବେ ! ପାଠ ଓ ଖେଳର ବିଜୟୀ ମାନସିକତା ଭିତରେ ଏକ ମହାନ୍ ମାନବୀୟ ଗୁଣ ବି କ୍ରମଶଃ ପରିସ୍ଫୁଟ ହେଉଥିଲା । ତାହା ଥିଲା ତାଙ୍କର ମାନବିକତା । କୋଡ଼ିଏରୁ ଊର୍ଦ୍ଧ୍ୱ ସାଙ୍ଗସାଥୀଙ୍କ ସହ ସେ ଦିନେ କଲିକତା ଦୁର୍ଗ ଦେଖିବାକୁ ଯାଇଥିଲେ । ସେମାନଙ୍କ ମଧ୍ୟରୁ ଜଣେ ବାଳକ ହଠାତ୍ ପେଟ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲା, କିନ୍ତୁ ପିଲାଟିର ଯନ୍ତ୍ରଣା ଉପରେ ଗୁରୁତ୍ୱ ନ ଦେଇ ସମସ୍ତେ ମଉଜ ମଜଲିସ୍‌ରେ ମାତିଗଲେ । କିନ୍ତୁ ନରେନ୍ କଲିକତା ଦୁର୍ଗ ସମ୍ମୁଖସ୍ଥ ପ୍ରାନ୍ତରରେ ଅନ୍ୟ ସାଥୀଙ୍କ ସହ ହସ କୌତୁକରେ ମାତିଥିଲେ ବି ପିଲାଟିର ଯନ୍ତ୍ରଣା ତାଙ୍କ ମନକୁ ଉଦ୍‌ବେଳିତ କଲା । ଦୌଡ଼ିଗଲେ ଯନ୍ତ୍ରଣାଗ୍ରସ୍ତ ସାଙ୍ଗ ପାଖକୁ ଏବଂ ତା' ଦେହରେ ହାତମାରି ଜାଣିଲେ ଯେ ସାଙ୍ଗ ଭୀଷଣ ଜ୍ୱରରେ ଆକ୍ରାନ୍ତିତ । ସାଙ୍ଗେସାଙ୍ଗେ ପିଲାଟିର ହାତଧରି ଗୋଟିଏ ଘୋଡ଼ା ଗାଡ଼ିରେ ବସାଇଲେ ଏବଂ ନିଜେ ସେହି ଗାଡ଼ିରେ ଯାଇ ତାକୁ ଘରେ ପହଞ୍ଚାଇ ଦେଲେ । ଅନ୍ୟର ଯନ୍ତ୍ରଣାକୁ ସେ ନିଜ ଯନ୍ତ୍ରଣା ବୋଲି ଭାବି ଏତାଦୃଶ କାର୍ଯ୍ୟ କରିପାରିଲେ । ଏହି ଘଟଣା ତାଙ୍କର ମାନବିକତାର ପରିଚୟ ।

Digitized by srujanika@gmail.com

ମେଟ୍ରୋପଲିଟାନ ଇନ୍‌ଷ୍ଟିଚ୍ୟୁଟ୍‌ରେ ଇଂରାଜୀ ମାଧ୍ୟମ ଶିକ୍ଷାପ୍ରାପ୍ତ କରିବାକୁ ତାଙ୍କୁ କୁହାଗଲା । ଯେହେତୁ ଇଂରାଜୀ ଏକ ବିଦେଶୀ ଭାଷା, ତାହା ମାଧ୍ୟମରେ ଶିକ୍ଷା ଗ୍ରହଣ କରିବାକୁ ସେ ରାଜି ହେଲେ ନାହିଁ । ତାଙ୍କର ଯୁକ୍ତି ଥିଲା - ମାତୃଭାଷା କାହିଁକି ଶିକ୍ଷାର ମାଧ୍ୟମ ହୋଇପାରିବ ନାହିଁ ? ସ୍କୁଲର ଶିକ୍ଷକମାନେ ତାଙ୍କୁ ଯେତେ ବୁଝାଇଲେ ବି ସେ ନିଜ ମତରେ ଅଟଳ ରହିଲେ । ପିତା ମାତା ମଧ୍ୟ ତାଙ୍କୁ ବୁଝାଇବାରେ ବିଫଳ ହେଲେ । ନିଜ ଭାଷା ପ୍ରତି ସ୍ୱାଭିମାନ ଲକ୍ଷ୍ୟ କରି ସମସ୍ତେ କେବଳ ବିସ୍ମିତ ହେଲେ ନାହିଁ ବରଂ ମୁଣ୍ଡ ଅବନତ ହୋଇଗଲା । ଯାହାହେଉ, ତାଙ୍କର ଜଣେ ସମ୍ପର୍କୀୟ ନୃସିଂହ ଦତ୍ତ ବହୁ ମାସ ଧରି ତତ୍‌କାଳୀନ ସମାଜରେ ଇଂରାଜୀ ଭାଷାର ମହତ୍ୱ ସମ୍ବନ୍ଧରେ ବୁଝାଇଲା ପରେ, ସେ ଇଂରାଜୀ ପଢ଼ିବାକୁ ଶେଷରେ ରାଜି ହେଲେ । ଅଳ୍ପଦିନ ଭିତରେ ଏହି ଭାଷା ଉପରେ ସେ ଦକ୍ଷତା ହାସଲ କଲେ । ଏଠାରେ ସ୍ମରଣଯୋଗ୍ୟ ଯେ ଇଂରାଜୀ ଭାଷାରେ ତାଙ୍କର ନିପୁଣତା ଏଭଳି ଉଚ୍ଚକୋଟିର ଥିଲା, ଯାହା ମାଧ୍ୟମରେ ନିଜର ମିଶନ୍‌କୁ ସମଗ୍ର ବିଶ୍ୱରେ ପ୍ରସାରିତ କରି ପାରିଥିଲେ ।

- ୧ -

*ଶିକ୍ଷକଙ୍କର ବେତ୍ରାଘାତ ପରମ୍ପରା ବିରୋଧୀ ନରେନ୍ଦ୍ରନାଥ -*
*"କହିଦେଉଛି, ମୋ କାନ ମୋଡ଼ନ୍ତୁ ନାହିଁ । ମୋତେ ପିଟିବାକୁ*
*ଆପଣ କିଏ ? ଦୟାକରି ମୋତେ ଛୁଅନ୍ତୁ ନାହିଁ ।"*

ଜେଜେମା ଓ ଆଈ ମା'ମାନଙ୍କ ପାଖରେ କାଳେ କାହାଣୀପେଡ଼ି ରହିଥାଏ ବୋଲି ସମସ୍ତଙ୍କର ବିଶ୍ୱାସ । କାରଣ ପିଲାମାନେ ସେମାନଙ୍କ ପାଖରୁ ଅନେକ କାହାଣୀ ଶୁଣନ୍ତି । ନିଜର ଭାଇ ଓ ଭଉଣୀମାନଙ୍କ ପାଖରେ ସୁନ୍ଦର ସୁନ୍ଦର କାହାଣୀ ଶୁଣାଇ ନରେନ୍ଦ୍ର ଜେଜେମା ଓ ଆଈମା'ଙ୍କର ଭୂମିକା ତୁଲାଇ ନେଉଥିଲେ । କେବଳ ଭାଇ ଭଉଣୀ ନୁହେଁ, ସାଙ୍ଗମାନେ ମଧ୍ୟ ତାଙ୍କ ପାଖରୁ କାହାଣୀ ଶୁଣିବାକୁ ଚାହିଁ ବସୁଥିଲେ । ନାଟକୀୟ ଭଙ୍ଗୀରେ କାହାଣୀଗୁଡ଼ିକୁ ଜୀବନ୍ତ କରି ଉପସ୍ଥାପନା କରିବାରେ ସେ ଥିଲେ ସିଦ୍ଧହସ୍ତ ।

ସାଧାରଣତଃ ଜୀବନର ଲକ୍ଷ୍ୟ ସମ୍ବନ୍ଧରେ ଛାତ୍ରମାନଙ୍କୁ ପଚାରିଲେ, ଡାକ୍ତର, ଇଞ୍ଜିନିୟର, ଉଚ୍ଚପଦସ୍ଥ ଅଫିସର ହେବାର ଚିରାଚରିତ ଅଭିପ୍ସା ପ୍ରକାଶ କରିଥାନ୍ତି । ନରେନ୍ଦ୍ରନାଥ କିନ୍ତୁ ସନ୍ନ୍ୟାସୀ ହେବାର ସ୍ୱପ୍ନ ଦେଖୁଥିଲେ । ସନ୍ନ୍ୟାସୀଟିଏ ଦେଖିଲେ ତାଙ୍କର ଆନନ୍ଦ ଉଚ୍ଛୁଳି ପଡୁଥିଲା । ସନ୍ନ୍ୟାସୀ ହେବାର ମୁହୂର୍ତ୍ତ କେବେ ଆସିବ ଚିନ୍ତାରେ ସେ ଅନେକବାର ବିବ୍ରତ ହୋଇ ଉଠୁଥିଲେ । ମେଟ୍ରୋପଲିଟାନ୍ ସ୍କୁଲରେ ନୂଆକରି ଛାତ୍ରଟିଏ ପ୍ରବେଶ କଲେ, ସେ ତାଙ୍କୁ ପ୍ରଥମ ପ୍ରଶ୍ନ କରୁଥିଲେ, "ତୁମ ବଂଶରେ କେହି ସନ୍ନ୍ୟାସୀ ହୋଇଛନ୍ତି ?" ଯଦି ନୂତନ ଆଗନ୍ତୁକ କୁହନ୍ତି 'ହଁ' ତେବେ ସେହି ପିଲାଟି ସହ ତାଙ୍କର ବନ୍ଧୁତା ନିବିଡ଼ ହେଉଥିଲା ।

ଶିକ୍ଷକଙ୍କର ବେତ୍ରାଘାତକୁ ସେ ପସନ୍ଦ କରୁ ନ ଥିଲେ । ନିର୍ଭୀକ ଭାବରେ ଏହି ପରମ୍ପରାକୁ ସେ ଘୋର ବିରୋଧ କରୁଥିଲେ । ଏକଦା କ୍ଲାସରେ ଜନୈକ ଶିକ୍ଷକ ଜଣେ ସହପାଠୀକୁ ଶୃଙ୍ଖଳିତ

Digitized by srujanika@gmail.com

କରିବା ପାଇଁ ଅମାନୁଷିକ ଭାବରେ ବେତ୍ରାଘାତ କଲେ । ଏତାଦୃଶ କ୍ରୂରତା ଲକ୍ଷ୍ୟ କରି ନରେନ୍ ଉଚ୍ଚସ୍ୱରରେ ହସିଉଠିଲେ । ଶିକ୍ଷକ କ୍ରୋଧରେ ଡିମା ଡିମା ଆଖିରେ ନରେନ୍ଦ୍ରଙ୍କ ଉପରେ ଝାମ୍ପିପଡ଼ି ତାଙ୍କୁ ମଧ ବେତ୍ରାଘାତ କଲେ ଏବଂ ଭବିଷ୍ୟତରେ ଏଭଳି ବିଦ୍ରୂପ ଭାବରେ ନ ହସିବାକୁ ତାଙ୍କୁ ଶପଥ କରିବାକୁ କହିଲେ । କିନ୍ତୁ ନରେନ ତାଙ୍କର ନିର୍ଦ୍ଦେଶ ପ୍ରତି କର୍ଣ୍ଣପାତ କଲେ ନାହିଁ ଏବଂ ଶପଥ କରିବାକୁ ସଫା ମନା କରିଦେଲେ । ଏଥିରେ କ୍ଷୁବ୍ଧ ହୋଇ ଶିକ୍ଷକ ମହାଶୟ ନରେନ୍‌କୁ କେବଳ ଭୟଙ୍କର ଭାବେ ବେତ୍ରାଘାତ କଲେନାହିଁ ବରଂ ତାଙ୍କର କାନକୁ ଏଭଳି ଜୋର୍‌ରେ ମୋଡ଼ିଦେଲେ ଯେ ନରେନ୍‌ଙ୍କର ଗୋଟିଏ କାନ ଭୀଷଣଭାବେ କ୍ଷତିଗ୍ରସ୍ତ ହେଲା । ଭୟଙ୍କର ଯନ୍ତ୍ରଣା ସତ୍ତ୍ୱେ ନରେନ୍ ତଥାପି ଶପଥ କଲେ ନାହିଁ ବରଂ କାନ୍ଦି କାନ୍ଦି ଚିତ୍କାର କରି କହିଲେ, "କହି ଦେଉଛି, ମୋ କାନ ମୋଡ଼ନ୍ତୁ ନାହିଁ । ମୋତେ ପିଟିବାକୁ ଆପଣ କିଏ ? ଦୟାକରି ମୋତେ ଛୁଅଁନ୍ତୁ ନାହିଁ ।"

ଉପରୋକ୍ତ ଘଟଣା ଘଟୁଥିବା ସମୟରେ, ପଣ୍ଡିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ସେଠାରେ ଦୈବାତ୍ ପହଞ୍ଚିଲେ । ନରେନ୍ କାନ୍ଦିକାନ୍ଦି ସମସ୍ତ ଘଟଣା ତାଙ୍କ ପାଖରେ ବର୍ଣ୍ଣନା କଲେ । କାଖରେ ବସ୍ତାନୀ ଝୁଲାଇ ସେ କହିଲେ "ସାର୍, ଏହି ସ୍କୁଲରେ ପଢ଼ିବା ପାଇଁ ଆଉ ଆସିବି ନାହିଁ ।" ଈଶ୍ୱରଚନ୍ଦ୍ର ବୁଝିଗଲେ ନରେନ୍‌ର ବ୍ୟଥା । ତାଙ୍କୁ ନିଜ କାର୍ଯ୍ୟାଳୟକୁ ନେଇଯାଇ ଶାନ୍ତ୍ୱନା ଦେଲେ । କେବଳ ସେତିକି ନୁହେଁ, ସ୍କୁଲର ଆଚରଣ ସଂହିତା ଅନୁସାରେ ଉକ୍ତ ଶିକ୍ଷକଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣକଲେ ଏବଂ ଏଭଳି ଘଟଣା ଯେପରି ପୁନର୍ବାର ନ ଘଟେ, ସେଥିପାଇଁ ବିହିତ ପଦକ୍ଷେପ ମଧ ଗ୍ରହଣକଲେ । ବଡ଼ ବିସ୍ମୟକର କଥା ଯେ ବିଶ୍ୱନାଥ ଦତ୍ତ ଓ ଭୁବନେଶ୍ୱରୀ ଦେବୀ ଯେତେବେଳେ ଉକ୍ତ ଘଟଣା ସମ୍ବନ୍ଧରେ ଅବଗତ ହେଲେ, ସେମାନେ ତତ୍‌କ୍ଷଣାତ୍ ସ୍କୁଲକୁ ନ ଯିବା ପାଇଁ ନରେନ୍‌ଙ୍କୁ ପରାମର୍ଶ ଦେଲେ । କିନ୍ତୁ ଭୋଳାନାଥ ନରେନ୍ ପିତାମାତାଙ୍କ ପ୍ରସ୍ତାବ ଗ୍ରହଣ ନ କରି ପୁନର୍ବାର ସ୍କୁଲକୁ ଗଲେ, ସତେ ଯେପରି ସ୍କୁଲରେ କିଛି ଘଟଣା ଘଟି ନ ଥିଲା ।

- ୨ -

*ମନଗଢ଼ା କାହାଣୀ ବିଶ୍ୱାସଯୋଗ୍ୟ ନୁହେଁ - "ଆରେ ବୋକା ତୁ କେମିତି ପିଲାଟାଏ । ଯିଏ ଯାହା କହିଦେବ ସେଥିରେ ଆଦୌ ବିଶ୍ୱାସ କରିବୁ ନାହିଁ । ସତରେ ଯଦି ବ୍ରହ୍ମରାକ୍ଷସ ଥା'ନ୍ତା, ସେ କେଉଁଦିନରୁ ମୋବେକ ମୋଡ଼ି ସାରନ୍ତାଣି ।"*

ପିଲାଟି ଦିନରୁ ନରେନ୍ ଯେତିକି ସାହସୀ ଥିଲେ, ତା'ଠାରୁ ଅଧିକ ଥିଲେ ସ୍ୱାଧୀନ-ଚେତାର ବାଳକ । ନିତ୍ୟନୈମିତ୍ତିକ ଜୀବନ ଯେତେବେଳେ ରସହୀନ ଓ ସ୍ୱାଦହୀନ ହୋଇପଡୁଥିଲା, ନରେନ୍ ଏଥିରୁ ମୁକ୍ତି ଲଭିବା ପାଇଁ ଜଣେ ସାଙ୍ଗ ଘରକୁ ଚାଲି ଯାଉଥିଲେ, ଯେଉଁଠାରେ ରହିଥିଲା ଏକ ବଗିଚା । ଉକ୍ତ ବଗିଚାରେ ରହିଥିଲା ଶାଖା ପ୍ରଶାଖାରେ ପରିପୂର୍ଣ୍ଣ ଚମ୍ପା

Digitized by srujanika@gmail.com

ଗଛଟିଏ । ତା'ରି ଡାଳରେ ତଳକୁ ମୁଣ୍ଡକରି ନରେନ୍ ସାଥୀମାନଙ୍କ ସହ ଖେଳିବାକୁ ଭାରି ଭଲ ପାଉଥିଲେ । ଭଗବାନ ଶିବଙ୍କର ପ୍ରିୟ ପୁଷ୍ପ ଚମ୍ପା । ଚମ୍ପାଫୁଲର ସୁଗନ୍ଧିତ ବାସ୍ନାରେ ନରେନ୍ ବିଭୋର ହୋଇପଡୁଥିଲେ । ଦିନକର ଘଟଣା - ଏକଦା ନରେନ୍ ପ୍ରଫୁଲ୍ଲ ଚିତ୍ତରେ ଚମ୍ପା ଗଛ ଡାଳରେ ଝୁଲୁଥିବା ସମୟରେ, ସାଙ୍ଗର ଜେଜେବାପା ଯାହାଙ୍କର ଦୃଷ୍ଟିଶକ୍ତି ପ୍ରାୟ ଲୋପ ପାଇଯାଇଥିଲା, ସେ ନରେନ୍‌ର କଣ୍ଠସ୍ୱର ଶୁଣିପାରିଲେ । ଝୁଲନ୍ତାବସ୍ଥାରେ କାଳେ ନରେନ୍ କେତେବେଳେ ଭୂପତିତ ହେବ, ସେହି ଚିନ୍ତାରେ ବୃଦ୍ଧ ଜେଜେ ଖୁବ୍ ଭୟଭୀତ ହୋଇ ଉଠିଲେ । ତା'ବାଦେ, ପିଲାମାନଙ୍କର ଖେଳକୁଦରେ ଚମ୍ପାଫୁଲଗୁଡ଼ିକ ନଷ୍ଟ ବି ହୋଇଯାଇ ପାରେ । ନରେନ୍‌କୁ ସେ ଅତ୍ୟନ୍ତ ଭଲ ପାଉଥିଲେ ଯା'ଫଳରେ ସେ କଡ଼ା ଭାଷାରେ ତାଙ୍କୁ ଭର୍ତ୍ସନା କରିପାରିବେ ନାହିଁ । ବୃଦ୍ଧ କୋମଳ କଣ୍ଠରେ ଏକଦା ତାଙ୍କୁ ନିଜ ପାଖକୁ ଡାକି କହିଲେ, ''ଆରେ ପୁଅ, ଏହି ଗଛରେ ଚଢ଼ନା ।''

ନରେନ୍ଦ୍ର ଆଶ୍ଚର୍ଯ୍ୟରେ ବୃଦ୍ଧଙ୍କୁ ଚାହିଁଲେ । ବୃଦ୍ଧ ଅତୀବ ଚତୁର । ନରେନ୍ଦ୍ରଙ୍କର ଦୀପ୍ତିମନ୍ତ ଚକ୍ଷୁ ତାଙ୍କ ନିଷେଧାଜ୍ଞାର କାରଣ ଜାଣିବା ପାଇଁ ପ୍ରତୀକ୍ଷାରତ, ସେ ହୃଦ୍‌ବୋଧ କଲେ । କଅଁଳେଇ ନରେନ୍‌କୁ କହିଲେ, ''ଆରେ ପୁଅ, ଏହି ଚମ୍ପା ଗଛରେ ଗୋଟିଏ ବ୍ରହ୍ମରାକ୍ଷସ ରହୁଛି । ରାତିରେ ଗୋଟିଏ ଧଳା ପୋଷାକ ପିନ୍ଧି ଆବିର୍ଭୂତ ହୁଏ ଏବଂ ଦେଖିବାକୁ ଭୟଙ୍କର ।'' ନରେନ୍ ବି ଡରିବାର ପାତ୍ର ନୁହେଁ । ସେ କହିଲେ, ''ଜେଜେ, ବ୍ରହ୍ମରାକ୍ଷସ ମୋର କ'ଣ କରିବ ? ସେ ତ ଖାଲି ବୁଲିବ ।'' ନରେନ୍ଦ୍ରଙ୍କର ନିର୍ଭୀକତା ଏଭଳି ବଳିଷ୍ଠ ଥିଲାଯେ ବିଚରା ଜେଜେଙ୍କର ଔଷଧ କାଟୁ କଲାନାହିଁ । ସେ ପୁନଶ୍ଚ ଏକ ଅଭିନବ ଉପାୟରେ କହିଲେ, ''ନରେନ୍, ତୁ ଜାଣିନାହୁଁ । ପିଲାଲୋକ ତ । ଯିଏ ଗଛରେ ଚଢ଼େ, ତା' ତଣ୍ଟିକୁ ଏମିତି ଚିପିଦିଏ ଯେ ସାଙ୍ଗେସାଙ୍ଗେ ଆରୋହୀର ମୃତ୍ୟୁ ହୋଇଯାଏ ।''

ବୃଦ୍ଧ ଜେଜେଙ୍କର ଚେତାବନୀ ଶୁଣି ନରେନ୍ଦ୍ର ନୀରବ ରହିଲେ । କିନ୍ତୁ ବୃଦ୍ଧ ସେଦିନ ସାମାନ୍ୟ ହସି ସେଠାରୁ ବିଦାୟ ନେଲେ । ସେ ମନେମନେ ଭାବି ନେଇଥିଲେ ଯେ ତାଙ୍କର ମନଗଢ଼ା କାହାଣୀ ନରେନ୍ଦ୍ର ଉପରେ ବେଶ୍ ପ୍ରଭାବ ପକାଇବ ଏବଂ ନରେନ୍ ଆଉ ଗଛ ଚଢ଼ିବ ନାହିଁ । କିୟତ୍ ସମୟ ଅତିକ୍ରାନ୍ତେ ବ୍ରହ୍ମରାକ୍ଷସକୁ ଉଚିତ ଶିକ୍ଷା ଦେବାଲାଗି ସେ ପୁନଶ୍ଚ ଚମ୍ପାବୃକ୍ଷ ଆରୋହଣ କଲେ । ତାଙ୍କର ସାଙ୍ଗ ପୁନର୍ବାର ନରେନ୍‌କୁ ବ୍ରହ୍ମରାକ୍ଷସ ବୃତାନ୍ତ ଦୋହରାଇ କହିଲେ, ବ୍ରହ୍ମରାକ୍ଷସ ତୁମକୁ ନିଶ୍ଚୟ ଧରିବ ଏବଂ ତୁମର ବେକ ମୋଡ଼ି ଦେବ । ଚମ୍ପାଗଛ ଡାଳରେ ବସି ନରେନ୍ ଠୋ ଠୋ ହସି କହିଲେ, ''ଆରେ ବୋକା, ତୁ କେମିତି ପିଲାଟାଏ । ଯିଏ ଯାହା କହିଦେବ ସେଥିରେ ଆଦୌ ବିଶ୍ୱାସ କରିବୁ ନାହିଁ । ସତରେ ଯଦି ବ୍ରହ୍ମରାକ୍ଷସ ଥା'ନ୍ତା, କେଉଁ ଦିନରୁ ମୋ ବେକ ମୋଡ଼ି ସାରନ୍ତାଣି ।''

ମାଟିଆବ୍ରୁଜ୍ କୋଲକତାର ଏକ ସହରତଳି ଅଞ୍ଚଳ । ସେଠାରେ ନବାବ୍‌ଙ୍କର ପ୍ରାଣୀ ଉଦ୍ୟାନ ଅବସ୍ଥିତ । ଏକଦା ସାଥୀମାନଙ୍କ ସହିତ ସେଠାକୁ ନରେନ୍ ନୌକା ଯାତ୍ରା କରି ଭ୍ରମଣ ଉଦ୍ଦେଶ୍ୟରେ ଯାଇଥିଲେ । ପ୍ରାଣୀ ଉଦ୍ୟାନରେ କିଛି ସମୟ ବିତାଇ ପୁନଶ୍ଚ ନୌକାରେ

Digitized by srujanika@gmail.com

ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ, ଜଣେ ସାଙ୍ଗ ଅସୁସ୍ଥତା ବଶତଃ ନୌକା ଭିତରେ ବାନ୍ତି କରିପକାଇଲେ । ମାଝି ନିଜର ନୌକାଟି ଅପରିଷ୍କୃତ ଦେଖି କ୍ରୋଧାନ୍ୱିତ ହୋଇଉଠିଲା ଏବଂ ଭଲଭାବରେ ଜାଗାଟିକୁ ପରିଷ୍କାର କରିବା ପାଇଁ ସେମାନଙ୍କୁ କଡ଼ା ସ୍ୱରରେ ଆଦେଶ ଦେଲା । କିନ୍ତୁ ସେମାନେ ସଫା କରିବାକୁ ମନା କରିଦେଲେ ଏବଂ ତା ପରିବର୍ତ୍ତେ କିଛି ଅର୍ଥ ମାଝିକୁ ଯାଚିଲେ । ମାଝି ରାଜି ହେଲାନାହିଁ ଏବଂ ସେ ତା'ର ନିଷ୍ପତ୍ତିରେ ଅଟଳ ରହିଲା ।

ନୌକା କୂଳରେ ଲାଗିବା ଉତ୍ତାରୁ, ପିଲାମାନଙ୍କୁ ନୌକାରୁ ମାଝି ଓହ୍ଲାଇବାକୁ ଦେଲାନାହିଁ ବରଂ ବାନ୍ତି ସଫା କରିବା ପାଇଁ ବାରମ୍ବାର ଧମକାଇଲା । ମାଝି ଓ ତା'ର ସହକର୍ମୀମାନେ ପିଲାମାନଙ୍କୁ ଅକଥନୀୟ ଭାଷାରେ ଗାଳିଗୁଲଜ କରୁଥିବାବେଳେ, ନରେନଙ୍କର ଦୃଷ୍ଟି କୂଳରେ ଟହଲ ମାରୁଥିବା ଦୁଇଜଣ ସିପାହୀଙ୍କ ଉପରେ ପଡ଼ିଲା । ପ୍ରତ୍ୟୁତ୍ପନ୍ନମତି ବାଳକ ନରେନ୍ ଡଙ୍ଗାରୁ ହଠାତ୍ ଲମ୍ଫ ପ୍ରଦାନ କରି କୂଳରେ ପହଞ୍ଚିଗଲେ ଏବଂ ଖଣ୍ଡି ଇଂରାଜୀରେ ସିପାହୀଦ୍ୱୟଙ୍କୁ ସମସ୍ତ ଘଟଣା ଏକା ନିଶ୍ୱାସରେ କହିଗଲେ । ସେମାନେ ପିଲାମାନଙ୍କର ଦୁର୍ଦ୍ଦଶା ବୁଝିପାରି ମାଝିଙ୍କଠାରୁ ସେମାନଙ୍କୁ ମୁକ୍ତ କଲେ । ସୈନିକଦ୍ୱୟ ନରେନ୍‌ଙ୍କର ସାହସ ଓ ଉପସ୍ଥିତି ବୁଦ୍ଧିକୁ ମୁକ୍ତକଣ୍ଠରେ ପ୍ରଶଂସା କଲେ । ନରେନ୍ ମଧ ସେ ଦୁହିଁଙ୍କୁ ଧନ୍ୟବାଦ ପ୍ରଦାନ କରି ସାଙ୍ଗମାନଙ୍କ ଗହଣରେ ଘରକୁ ଫେରିଆସିଲେ । ଜଟିଳ ପରିସ୍ଥିତିରେ ସମସ୍ୟାକୁ କିପରି ସମାଧାନ କରାଯାଏ, ତା'ର କଳା ନରେନ୍‌ଙ୍କ ଚରିତ୍ରରେ ବାଲ୍ୟକାଳରୁ ପ୍ରସ୍ଫୁଟିତ ହୋଇଥିଲା ।

ସେହିପରି ଆଉ ଏକ ଘଟଣା । ନରେନ୍ଦ୍ରଙ୍କୁ ସେତେବେଳେ ମାତ୍ର ବାରବର୍ଷ । ବ୍ରିଟିଶ ସମ୍ରାଟ୍ ଅଷ୍ଟମ ଏଡ଼ୱାର୍ଡ଼ଙ୍କର ଭାରତ ଆଗମନ ସମୟରେ ବ୍ରିଟିଶର ଜଣେ ଯୋଦ୍ଧା 'ସିରାପିସ୍' କୋଲକତା ବନ୍ଦର ପରିଦର୍ଶନରେ ଆସିଥିଲେ । ବ୍ରିଟିଶ ଜାହାଜ ଓ ଜଣେ ଇଂରାଜୀ ଯୋଦ୍ଧାଙ୍କୁ ଦେଖିବା ପାଇଁ ନରେନ୍‌ଙ୍କର ସାଙ୍ଗମାନଙ୍କ ମଧରେ ଇଚ୍ଛା ଜାଗ୍ରତ ହେଲା ଏବଂ ଏଥି ନିମନ୍ତେ ଏକ ଅନୁମତିପତ୍ରର ବ୍ୟବସ୍ଥା କରିବା ପାଇଁ ସେମାନେ ନରେନ୍‌ଙ୍କୁ କହିଲେ । ସାଙ୍ଗମାନଙ୍କର ଅନୁରୋଧ କ୍ରମେ ହାତରେ ଖଣ୍ଡିଏ ଦରଖାସ୍ତ ଧରି ନରେନ୍ଦ୍ର ବନ୍ଦର ଅଫିସ୍‌ରେ ପହଞ୍ଚିଲେ କିନ୍ତୁ ଦୁର୍ଭାଗ୍ୟର କଥା ଯେ ନରେନ୍ ଛୋଟ ବାଳକଟିଏ ହୋଇଥିବାରୁ, ଦ୍ୱାରପାଳ ଅଫିସ୍ ଭିତରକୁ ପ୍ରବେଶ ନିମନ୍ତେ ତାଙ୍କୁ ଅନୁମତି ଦେଲେ ନାହିଁ । ନରେନ୍ ବଡ଼ ଅଡୁଆରେ ପଡ଼ିଲେ । ଇତ୍ୟବସରରେ ନରେନ୍ ଦେଖିବାକୁ ପାଇଲେ ଯେ କିଛି ଲୋକ ହାତରେ ଦରଖାସ୍ତ ଧରି ଅନ୍ୟ ଏକ ବାଟରେ କାର୍ଯ୍ୟାଳୟର ଉପର ମହଲାକୁ ଯାଉଛନ୍ତି । ସେଠାରେ ବୋଧହୁଏ ଅନୁମତିପତ୍ର ବିତରଣ କରାଯାଉଥିବ ଭାବି ନରେନ୍ ଚୁପ୍‌ଚାପ୍ ସିଡ଼ିଘର ଦେଇ ଉପର ମହଲାକୁ ଚାଲିଗଲେ ଏବଂ ଧାଡ଼ିରେ ଠିଆ ହୋଇଗଲେ । ଯେତେବେଳେ ତାଙ୍କର ପାଳି ପଡ଼ିଲା, ସେ ଦରଖାସ୍ତଟିକୁ ବଢ଼ାଇଦେଲେ ଏବଂ ଦରଖାସ୍ତଟି କୌଣସି ପ୍ରଶ୍ନବିନା ଦସ୍ତଖତ ହୋଇଗଲା । ଅର୍ଥାତ୍ ଅନୁମତି ମିଳିଗଲା । ଆନନ୍ଦରେ ଗଦ୍‌ଗଦ୍ ହୋଇ ନରେନ୍ ଯେତେବେଳେ ତଳକୁ ଓହ୍ଲାଇ ଆସିଲେ, ସେତେବେଳ ଦ୍ୱାରପାଳ ବିସ୍ମିତ କଣ୍ଠରେ ତାଙ୍କୁ ଉପରକୁ କେମିତି ଯାଇଥିଲେ ବୋଲି ପ୍ରଶ୍ନ କରିବାରୁ ନରେନ୍ କହିଲେ, ''ବାଃ, ତୁମେ କ'ଣ ଜାଣିନାହଁ ଯେ ମୁଁ ଜଣେ ଯାଦୁକର ।''

Digitized by srujanika@gmail.com

- ୩ -

*ଶାରୀରିକ ଓ ବୌଦ୍ଧିକ ବିକାଶ ପୂର୍ଣ୍ଣମାନବ ସୃଷ୍ଟିକରେ, କୁସ୍ତିକସରତ୍, କ୍ରୀଡ଼ା, ସଙ୍ଗୀତ ଓ ବାଦ୍ୟଯନ୍ତ୍ର ଚାଳନାରେ ସିଦ୍ଧହସ୍ତ ଥିଲେ ନରେନ୍ଦ୍ର ।*

ନରେନ୍‌ଙ୍କର ବୁଦ୍ଧି ଯେପରି ତୀକ୍ଷ୍ଣ, ସେପରି ଥିଲା ତାଙ୍କର ଶକ୍ତିଶାଳୀ ଶରୀର, କୁସ୍ତି କସରତ୍‌ରେ ସେ ଧୁରନ୍ଧର । ଶ୍ରୀ ନବଗୋପାଳ ମିତ୍ରଙ୍କର ବ୍ୟାୟାମଶାଳାରେ ସଦସ୍ୟ ଥିଲେ ନରେନ୍ଦ୍ର ଏବଂ ତାଙ୍କର ସାଙ୍ଗମାନେ । କୌଣସି କାରଣବଶତଃ, ନବଗୋପାଳବାବୁ ବ୍ୟାୟାମଶାଳାର ପରିଚାଳନା ଉଚିତ ମାର୍ଗରେ କରିବାକୁ ସକ୍ଷମ ହେଲେନାହିଁ । ବାଧ ହୋଇ ନରେନ୍ଦ୍ର ସମେତ ଅନ୍ୟ ସାଙ୍ଗମାନଙ୍କୁ ବ୍ୟାୟାମଶାଳାର ଦାୟିତ୍ୱ ଅର୍ପଣ କଲେ । ନରେନ୍ଦ୍ରଙ୍କର ତତ୍ତ୍ୱାବଧାନରେ ସୁପରିଚାଳିତ ହେଲା ବ୍ୟାୟାମଶାଳା ।

ଏକଦା ନରେନ୍ ଓ ତାଙ୍କର ସାଥୀମାନେ ବ୍ୟାୟାମଶାଳାରେ ଗୋଟିଏ ଖୁବ୍ ଓଜନିଆ ଲୌହ ଝୁଲଣକୁ ଦୌଡ଼ି ଉପରେ ଝୁଲାଇବାକୁ ଚେଷ୍ଟା କରୁଥିଲେ । ସେମାନଙ୍କର ଏଭଳି କଠିନ ପରିଶ୍ରମ ବହୁ ଲୋକଙ୍କୁ ଆକର୍ଷିତ କଲା । ଅଳ୍ପ ସମୟ ମଧ୍ୟରେ ବହୁଲୋକ ସେଠାରେ ରୁଣ୍ଡ ହୋଇଗଲେ । ଏକତ୍ରିତ ଦେଖଣାହାରୀଙ୍କ ଭିତରେ ଜଣେ ଇଂରାଜୀ ନାବିକ ଠିଆ ହୋଇଥିଲେ । ଏହି କଷ୍ଟସାଧ୍ୟ ଉଠାଇବାକାର୍ଯ୍ୟରେ ସହାୟତା ନିମନ୍ତେ ଉକ୍ତ ଇଂରାଜୀ ନାବିକଙ୍କୁ ନରେନ୍ଦ୍ର ଅନୁରୋଧ କଲେ । ଇଂଗ୍ରେଜୀ ନାବିକ ବାଳକ ନରେନ୍ଦ୍ରଙ୍କର ଅନୁରୋଧକୁ ଏଡ଼ାଇ ପାରିଲେ ନାହିଁ ଏବଂ ଓଜନିଆ ଲୌହ ଝୁଲଣ ଉଠାଇବା କାର୍ଯ୍ୟରେ ପିଲାମାନଙ୍କୁ ସାହାଯ୍ୟ କଲେ । ଏହି ଉତ୍ତୋଳନ କାର୍ଯ୍ୟ ଚାଲିଥିବା ସମୟରେ, ହଠାତ୍ ଲୌହ ଝୁଲଣଟି ଭୂପତିତ ହେଲା ଯଦ୍ୱାରା ଇଂଗ୍ରେଜ୍ ନାବିକ ଆଘାତପ୍ରାପ୍ତ ହୋଇ ଅଚେତ ହୋଇପଡ଼ିଲେ ।

ଏହି ଭୟଙ୍କର ଦୁର୍ଘଟଣାଜନିତ ଦୃଶ୍ୟରେ ଭୟଭୀତ ହୋଇ ସମସ୍ତ ଦେଖଣାହାରୀ ତ ପଳାଇଗଲେ, ନରେନ୍ଦ୍ର ଓ ଜଣେ ଦୁଇଜଣ ସାଙ୍ଗ ବ୍ୟତୀତ ସମସ୍ତ ବନ୍ଧୁ ମଧ୍ୟ ଘଟଣାସ୍ଥଳରୁ ପଳାୟନ କଲେ । ପ୍ରଚଣ୍ଡ ଆଘାତ ଯୋଗୁଁ ନାବିକର ମୃତ୍ୟୁ ହୋଇଛି ବୋଲି ସେମାନେ ଭାବିଲେ । କିନ୍ତୁ ନରେନ୍ ନିଜର ଧୋତିକୁ ଚିରି ଖଣ୍ଡିଏ କନାରେ ନାବିକର କ୍ଷତ ସ୍ଥାନରେ ବାନ୍ଧି ଦେଲେ ଏବଂ ନାବିକଙ୍କ ମୁହଁରେ ଥଣ୍ଡା ପାଣି ଛିଞ୍ଚିଲେ । କେବଳ ସେତିକି ନୁହେଁ, ଧୀରେ ଧୀରେ ନାବିକଙ୍କୁ ବିଞ୍ଚିବାକୁ ଲାଗିଲେ । ନାବିକବନ୍ଧୁଙ୍କର ଚେତା ଫେରିବାରୁ ଦୁଇଜଣ ସାଙ୍ଗ ସହିତ ନରେନ୍ ତାଙ୍କୁ ଉଠାଇ ନିକଟସ୍ଥ ବିଦ୍ୟାଳୟର ଏକ କୋଠରିକୁ ବୋହି ନେଲେ । ସାଙ୍ଗେସାଙ୍ଗେ ଜଣେ ଡାକ୍ତରଙ୍କୁ ଡକାଗଲା । ଏକ ସପ୍ତାହଧରି ଚିକିତ୍ସା ଓ ସେବା ଫଳରେ ଇଂଗ୍ରେଜ ନାବିକ ସମ୍ପୂର୍ଣ୍ଣ ସୁସ୍ଥ ହେଲେ । ସେ ନିଜର କୃତଜ୍ଞତା ପ୍ରକାଶ କରିବା ସହିତ ନରେନ୍ଦ୍ରଙ୍କର ଅହେତୁକ ସେବା ଓ ଯତ୍ନ ନିମନ୍ତେ ଶତମୁଖରେ ପ୍ରଶଂସା କରିଥିଲେ । ଯେଉଁ ସେବା ଓ ତ୍ୟାଗ ମହାମନ୍ତ୍ରରେ ନରେନ୍ଦ୍ର ଯୁବସମାଜକୁ ପରବର୍ତ୍ତୀ କାଳରେ ଦୀକ୍ଷିତ କରିଥିଲେ, ତା'ର ବୀଜ ପ୍ରଥମରୁ ହିଁ ତାଙ୍କ ଚରିତ୍ରରେ ଜନ୍ମଗତ ପ୍ରବୃତ୍ତି ଭାବେ ନିହିତ ଥିଲା ।

Digitized by srujanika@gmail.com

ଏଥିପୂର୍ବରୁ ତାଙ୍କର ଶାରୀରିକ ଗଠନ ସମ୍ବନ୍ଧରେ ସମ୍ୟକ୍ ଧାରଣା ପ୍ରଦାନ କରାଯାଇଛି । ତଥାପି କୁସ୍ତିକସରତ ଓ ଲାଠି ଚାଳନାରେ ସେ କିପରି ପାରଙ୍ଗମ ଥିଲେ, ତାହା ଏଠାରେ ଅବତାରଣା କଲେ ଜଣେ ଜାଣିପାରିବଯେ ମନ ଓ ଚେତନାର କେବଳ ବିକାଶ ହେଲେ ମଣିଷ ଏକ ପୂର୍ଣ୍ଣମାନବ ହୋଇପାରେ ନାହିଁ କିମ୍ବା ଦୁର୍ବଳ ସ୍ୱାସ୍ଥ୍ୟ ଓ ବ୍ୟାଧିଗ୍ରସ୍ତ ଶରୀରରେ ମଧ୍ୟ ଏକ ବିକଶିତ ମନ ଓ ଚେତନା ପୂର୍ଣ୍ଣଭାବରେ ସମ୍ଭବ ହୁଏ ନାହିଁ । ଦେହ ଓ ମନ ଅଙ୍ଗାଅଙ୍ଗି ଭାବେ ଜଡ଼ିତ । ସୁତରାଂ ଏହି ଦୁଇଟିର ବିକାଶ ମଣିଷକୁ ପୂର୍ଣ୍ଣମାନବ ଅଭିମୁଖେ ପଥ ଦେଖାଇଥାଏ । ନରେନ୍ଦ୍ର ଲାଠିଚାଳନା ବିଦ୍ୟା ଓ କୌଶଳ ଅନେକ ମୁସଲମାନ କୁସ୍ତି ବିଶାରଦଙ୍କଠାରୁ ଶିଖିଥିଲେ । ଏକଦା ନରେନ୍ ଲାଠିଚାଳନା ପ୍ରତିଯୋଗିତାରେ ଭାଗ ନେଇଥିଲେ । ସେତେବେଳେ ତାଙ୍କର ବୟସ ମାତ୍ର ଦଶବର୍ଷ । ଜଣେ ପୋଖତ ଲାଠିଚାଳକ ସହ ତାଙ୍କର ମୁକାବିଲା ହେଲା । ଏମିତି କୌଶଳରେ ନରେନ୍ ସେଦିନ ଲାଠିଚାଳନା କରୁଥିଲେ ଯେ ସମସ୍ତ ଦେଖଣାହାରୀ ଆନନ୍ଦରେ ବିହ୍ୱଳିତହୋଇ କରତାଳିରେ ନରେନ୍ଦ୍ରଙ୍କୁ ଉତ୍ସାହିତ କରିବାକୁ ଲାଗିଲେ । କିନ୍ତୁ ନରେନ୍ଦ୍ରଙ୍କର ଦୃଷ୍ଟି ଆଦୌ ପ୍ରଶଂସାସୂଚକ କରତାଳି ଆଡ଼କୁ ଢଳି ନ ଥିଲା, ଏକାଗ୍ର ଚିତ୍ତରେ ସେ ପ୍ରବୀଣ ଲାଠିଚାଳକ ସହିତ ସୁନ୍ଦର ଭାବେ ମୁକାବିଲାରେ ନିମଗ୍ନ ଥିଲେ । ହଠାତ୍ ନରେନ୍ ପ୍ରତିଦ୍ୱନ୍ଦୀଙ୍କ ଲାଠିକୁ ଏପରି ଶକ୍ତ ପ୍ରହାର କଲେଯେ ପ୍ରତିଦ୍ୱନ୍ଦୀଙ୍କର ଲାଠି ଦୁଇଖଣ୍ଡ ହୋଇ ତଳେ ପଡ଼ିଗଲା । ପ୍ରତିଦ୍ୱନ୍ଦୀ ତତ୍‌କ୍ଷଣାତ୍ ପରାଜୟ ସ୍ୱୀକାର କଲେ । ଦର୍ଶକଗଣ କରତାଳିରେ ନରେନ୍‌ଙ୍କୁ ସ୍ୱାଗତ କଲେ ।

କ୍ରୀଡ଼ାରେ ପାରଦର୍ଶିତା କେବଳ ଲାଭ କରି ନ ଥିଲେ, ସଙ୍ଗୀତରେ ମଧ୍ୟ । ଯେହେତୁ ପିତା ବିଶ୍ୱନାଥ ଦତ୍ତ ସଙ୍ଗୀତପ୍ରେମୀ ଥିଲେ, ପିଲାମାନେ ଯେପରି ସଙ୍ଗୀତ ପ୍ରତି ଆକୃଷ୍ଟ ହେବେ, ସେଥିପାଇଁ ସେ ପରିବାରରେ ଏକ ଅନୁକୂଳ-ବାତାବରଣ ସୃଷ୍ଟି କରିଥିଲେ, ଯଦ୍ୱାରା ନରେନ୍ ଅନେକ ହିନ୍ଦି, ଉର୍ଦ୍ଦୁ ଓ ପାର୍ଶି ସଙ୍ଗୀତ ଓସ୍ତାଦ୍ ଅହମ୍ମଦ ଖାନ୍‌ଙ୍କଠାରୁ ଶିଖିବା ସଙ୍ଗେ ସଙ୍ଗେ ବହୁ ଭକ୍ତି ସଙ୍ଗୀତ ଉଜିର ଖାନ୍, ଦୁନି ଖାନ୍, କନ୍ହେଇ ଲାଲ୍ ଧେଣ୍ଡି ଓ ଜଗନ୍ନାଥ ମିଶ୍ରଙ୍କଠାରୁ ଶିଖିଥିଲେ । ତବଲା ଓ ପଖୱାଜ୍, ଏସ ରାଜ୍, ସୀତାର ବାଦ୍ୟଯନ୍ତ୍ରରେ ମଧ୍ୟ ସେ ପାରଦର୍ଶିତା ଲାଭ କରିଥିଲେ । ତାଙ୍କର କଣ୍ଠସ୍ୱର ଏଭଳି ସୁମଧୁର ଓ ହୃଦୟସ୍ପର୍ଶୀ ଥିଲା, ଶ୍ରୋତାମାନେ ଶ୍ରବଣ କରିବା ମାତ୍ରେ ଚମକୃତ ଓ ମନ୍ତ୍ରମୁଗ୍ଧ ହୋଇପଡୁଥିଲେ ।

ବିଶ୍ୱନାଥ ଦତ୍ତ ଜଣେ ପ୍ରତିଭାବାନ ଆଇନଜୀବୀ ହୋଇଥିବାରୁ ବହୁ ସମୟରେ ଉତ୍ତର ଓ ମଧ୍ୟଭାରତର କେତେକ ଜାଗାକୁ ଆଇନ୍ ବ୍ୟବସାୟ ଜନିତ କାର୍ଯ୍ୟ ନିମନ୍ତେ ତାଙ୍କୁ ଯିବାକୁ ପଡୁଥିଲା । ୧୮୭୭ ଖ୍ରୀଷ୍ଟାବ୍ଦରେ ବିଶ୍ୱନାଥ ବାବୁ ରାୟପୁର ଗସ୍ତରେ ଯାଇଥିଲେ । ସେଠାରେ ତାଙ୍କୁ ଅନେକ ମାସ ରହିବାକୁ ପଡ଼ିଥିଲା । ସେଥିପାଇଁ ତାଙ୍କର ପରିବାରକୁ ସେଠାକୁ ନେଇ ଆସିବାଲାଗି ବନ୍ଦୋବସ୍ତ କରିଥିଲେ । ସେତେବେଳେ ରେଳ ଯୋଗାଯୋଗର ବ୍ୟବସ୍ଥା ନ ଥିଲା । ତେଣୁ ଶଗଡ଼ରେ ପୂର୍ଣ୍ଣ ପରିବାର ବଣଜଙ୍ଗଲ ଦେଇ ରାୟପୁର ଯାତ୍ରାକରିଥିଲେ । ନରେନ୍ ଏହି ଯାତ୍ରାର ଦାୟିତ୍ୱ

Digitized by srujanika@gmail.com

ବହନ କରିଥିଲେ । ଅବଶ୍ୟ ଏଭଳି ଦୁଃସାଧ୍ୟ ଯାତ୍ରା ସମୟରେ ସେ ଅନେକ ଅସୁବିଧା ଓ ସମସ୍ୟାର ସମ୍ମୁଖୀନ ହୋଇଥିଲେ, ତଥାପି ଅରଣ୍ୟର ମନୋରମ ଶୋଭାରାଶି ଓ ବନ୍ୟ ପ୍ରାଣୀଙ୍କର ନିର୍ଭୟ ବିଚରଣ ନରେନ୍ଦ୍ରଙ୍କ ମନରୁ ସବୁ କଷ୍ଟତକ ଧୋଇ ଦେଇଥିଲା ଏବଂ ପ୍ରକୃତିର ଶୋଭାର ଭଣ୍ଡାର ଅବଲୋକନ କରି ତାଙ୍କର ମନ ଏକ ଅଚିନ୍ତନୀୟ ରାଜ୍ୟକୁ ଚାଲିଯାଉଥିଲା । ତାଙ୍କର ବୟସ ସେତେବେଳେ ଚଉଦ ବର୍ଷ ଏବଂ ସେ ଅଷ୍ଟମ ଶ୍ରେଣୀର ଛାତ୍ର ଥିଲେ ।

- ୪ -

*ରାୟପୁର ଅଭିମୁଖେ ଦୀର୍ଘ ଶଗଡ଼ ଯାତ୍ରା : "ମଧୁମକ୍ଷୀମାନଙ୍କ ରାଜ୍ୟର ଆଦି ଓ ଅନ୍ତ ସମ୍ବନ୍ଧରେ ମୁଁ ଏଭଳି ବିସ୍ମୟରେ ଭାବିବାକୁ ଲାଗିଲି ଯେ ମୋ ମନ ଅସୀମ ଶକ୍ତିମାନ୍ ଓ ତ୍ରିଲୋକ ନିୟନ୍ତା ପରମେଶ୍ୱରଙ୍କ ଚିନ୍ତାରେ ବୁଡ଼ିଗଲା ।"*

ରାୟପୁର ଅଭିମୁଖେ ଦୀର୍ଘ ଶଗଡ଼ ଯାତ୍ରାର ହୃଦୟସ୍ପର୍ଶୀ ଅନୁଭୂତିର ସ୍ମୃତିଚାରଣ ପରବର୍ତ୍ତୀ କାଳରେ କରି ନରେନ୍ଦ୍ରନାଥ କହିଥିଲେ, "ଅଗ୍ନାଅଗ୍ନି ବନସ୍ତ ଭିତରେ ଶଗଡ଼ରେ ଯାତ୍ରାକରି ମୋର ଯେଉଁ ଅନୁଭୂତି ହୋଇଥିଲା, ତାହା ମୋ ସ୍ମୃତିପଟରେ ଏଭଳିଭାବେ ଲିପିବଦ୍ଧ ହୋଇଥିଲାଯେ ମୁଁ ଆଜିପର୍ଯ୍ୟନ୍ତ ତାହା ଭୁଲି ପାରୁନାହିଁ । ଏହି ଯାତ୍ରାକାଳରେ ଏକଦା ଆମକୁ ବିନ୍ଧ୍ୟ ପର୍ବତାମାଳା ବକ୍ଷଦେଶରେ ପଦଚାରଣ କରିବାକୁ ପଡ଼ିଥିଲା । ରାସ୍ତାର ଦୁଇପାର୍ଶ୍ୱରେ ପର୍ବତମାଳାର ନଭସ୍ପର୍ଶୀ ଚୂଡ଼ାଦେଶ ରାଜକୀୟ ଭଙ୍ଗୀରେ ଥିଲା ଦଣ୍ଡାୟମାନ ଏବଂ ବିଭିନ୍ନ କିସମର ବୃକ୍ଷ ଓ ଲତା ପୁଷ୍ପଫଳ ଭାରରେ ରାସ୍ତା କଡ଼କୁ ନଇଁ ପଡ଼ିଥିବାର ଦୃଶ୍ୟ ପର୍ବତମାଳାର ସୌନ୍ଦର୍ଯ୍ୟକୁ ଚମକୃତ କରୁଥିଲା । ବିଭିନ୍ନ ରଙ୍ଗର ପକ୍ଷୀଙ୍କର ଡାଳରୁ ଡାଳ ଉଡ୍ଡୟନ ଓ ସୁମଧୁର କାକଳି ମନକୁ ଉର୍ଦ୍ଧ୍ୱ ଚେତନାରେ ସମାହିତ କରୁଥିଲା । ମୋର ମନ ଅସାଧାରଣ ପ୍ରଶାନ୍ତିରେ ମଗ୍ନ ହୋଇ ଉଠୁଥିଲା ।

ମନ୍ଥର ଗତିରେ ଶଗଡ଼ କ୍ରମଶଃ ଏଭଳି ସୁନ୍ଦର ସ୍ଥାନରେ ପହଞ୍ଚିଲା ଯେଉଁଠି ଦୁଇଟି ପର୍ବତର ଚୂଡ଼ାଦେଶ ନିଗୂଢ଼ ପ୍ରେମରେ ଚଲାପଥର ଉର୍ଦ୍ଧ୍ୱଦେଶରେ ପରସ୍ପର ଥିଲେ ଆଲିଙ୍ଗନରତ । ଚୂଡ଼ାଦେଶର ଗୋଟିଏ ପାର୍ଶ୍ୱରୁ ଲମ୍ବିଯାଇ ଥିବା ଏକ ବିରାଟ ଛିଦ୍ର ପରିପୂର୍ଣ୍ଣ ହୋଇଥିଲା ବିଶାଳ ମହୁଫେଣାରେ ଏବଂ ମଧୁମକ୍ଷୀମାନଙ୍କ ବହୁବର୍ଷର ପରିଶ୍ରମର ଫଳ ସ୍ୱରୂପ ଏହା ସମ୍ଭବ ହୋଇଛି ବୋଲି ମୁଁ ଭାବିଲି । ମଧୁମକ୍ଷୀମାନଙ୍କ ରାଜ୍ୟର ଆଦି ଓ ଅନ୍ତ ସମ୍ବନ୍ଧରେ ମୁଁ ଏଭଳି ବିସ୍ମୟରେ ଭାବିବାକୁ ଲାଗିଲି ଯେ ମୋ ମନ ଅସୀମ ଶକ୍ତିମାନ ଓ ତ୍ରିଲୋକ ନିୟନ୍ତା ପରମେଶ୍ୱରଙ୍କ ଚିନ୍ତାରେ ବୁଡ଼ିଗଲା । ବାହ୍ୟଜଗତର ଚିନ୍ତା ମୋ ମନରୁ କିୟତ୍‌ସମୟ ଅନ୍ତର୍ଦ୍ଧାନ ହୋଇଗଲା । କେତେ ସମୟ ଧରି ମୁଁ ଶଗଡ଼ରେ ଏଭଳି ବାହ୍ୟ ଜ୍ଞାନଶୂନ୍ୟ ଅବସ୍ଥାରେ ପଡ଼ିରହିଥିଲି, ତାହା ମୋତେ ଜଣା ନ ଥିଲା । କିନ୍ତୁ ଚେତା ଫେରିବାରୁ ମୁଁ ଦେଖିଲି ଯେ ଉକ୍ତ ସ୍ଥାନକୁ ଅତିକ୍ରମ କରି ବହୁ ଦୂରକୁ ଆମେ ଚାଲିଯାଇଛୁ ।

Digitized by srujanika@gmail.com

ରାୟପୁରରେ ସ୍କୁଲ ନ ଥିବାରୁ, ନରେନ୍ ବାପାଙ୍କ ସହ ମିଳାମିଶା କରିବାର ଯଥେଷ୍ଟ ସୁଯୋଗ ପାଇଲେ । ଅନେକ ବିଷୟବସ୍ତୁ ଉପରେ ଆଲୋଚନା କଲେ । ବିଶ୍ୱନାଥଙ୍କ ନିକଟକୁ ଯେଉଁମାନେ ଆସୁଥିଲେ, ସେମାନଙ୍କ ମଧ୍ୟରୁ ଅନେକ ଗୁଣୀ, ଜ୍ଞାନୀ, ପଣ୍ଡିତ ଥିଲେ । ନରେନ୍ ମଧ୍ୟ ସେମାନଙ୍କ ସହ ପ୍ରତ୍ୟକ୍ଷ ଆଲୋଚନାର ସୁଯୋଗ ପାଇଲେ । ରାୟପୁରରେ କିଛି ମାସ ଅତିବାହିତ କରି ନରେନ୍ କଲିକତା ଅବଶ୍ୟ ଫେରିଆସିଲେ କିନ୍ତୁ ସେ ଏକ ଭିନ୍ନ ବାଳକ ହୋଇଯାଇଥିଲେ - ଶାରୀରିକ ରୂପରେ ଯୌବନ ହେଲା ପରିସ୍ଫୁଟ । ବଳିଷ୍ଠ ଚେହେରା । ରାୟପୁର ଅବସ୍ଥାନ କାଳରେ ବଙ୍ଗଳା ସାହିତ୍ୟିକମାନଙ୍କ ସହ ଆଲୋଚନା ଓ ବଙ୍ଗଳା ଭାଷା ପଠନ, ଅସାଧାରଣ ଧାର୍ମିକ, ପଣ୍ଡିତ ଓ ବିଦ୍ୱାନମାନଙ୍କ ସହ ତର୍କ, ସର୍ବୋପରି ନିଜ ପିତାଙ୍କସହ ଅବସର ସମୟରେ ମୁକ୍ତ ଓ ହୃଦୟ ଖୋଲା କଥୋପକଥନ, ତାଙ୍କର ତୀକ୍ଷ୍ଣ ବୁଦ୍ଧିକୁ ଶାଣିତ କରି ଦେଇଥିଲା । ଏତଦ୍‌ବ୍ୟତୀତ, ଅଗ୍ନାଅଗ୍ନି ବନସ୍ତ ଭିତରେ ଦୀର୍ଘ ଦିନର ଯାତ୍ରା, ପାର୍ବତ୍ୟାଞ୍ଚଳର ସବୁଜିମା ଦୃଶ୍ୟ, ବିଭିନ୍ନ ପ୍ରକାର କୀଟପତଙ୍ଗର ବିଚିତ୍ର ବହୁରୂପୀ ବେଶ ଓ ନିସ୍ୱନ, ବନ୍ୟପ୍ରାଣୀମାନଙ୍କର ନିର୍ଭୟ ବିଚରଣ, ପଶୁ ସୁଲଭ ବ୍ୟବହାର ଓ ସଂହତି, ଅରଣ୍ୟ ମଧ୍ୟରେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ରାତ୍ରିଯାପନ ଓ ନିଶା ଗର୍ଜନ, ବିଭିନ୍ନ ବୃକ୍ଷ, ଲତା ଓ ଗୁଳ୍ମର ପ୍ରସ୍ଫୁଟନ, ଫଳ ଧାରଣ ଓ ସ୍ୱାଦିଷ୍ଟ ଫଳର ଆସ୍ୱାଦନ ଏବଂ ଅନେକ ଆରଣ୍ୟକ ଦୃଶ୍ୟରାଜି ଭିତରେ ତାଙ୍କର ମନ ଓ ଚେତନା ଉର୍ଦ୍ଧାୟନ ହୋଇଥିବାରୁ ତାଙ୍କର ଅନ୍ତର୍ଦୃଷ୍ଟି ଖୁବ୍ ପ୍ରସାରିତ ଓ ଗଭୀର ହୋଇ ଉଠିଥିଲା ।

ନରେନ୍ଦ୍ର ନାଥଙ୍କୁ ୧୮୭୯ ମସିହାରେ ମାତ୍ର ଷୋହଳ ବର୍ଷ, ସେତେବେଳେ ସେ ଏଣ୍ଟ୍ରାନ୍ସ ପରୀକ୍ଷାରେ ସଫଳତା ସହ ଉତ୍ତୀର୍ଣ୍ଣ ହେଲେ । ବର୍ତ୍ତମାନ ସେ ଜଣେ ଉଦୟମାନ ଯୁବକ । ସୁଠାମ ଚେହେରା । ଚକ୍ଷୁଦ୍ୱୟ ଭବିଷ୍ୟତର ରହସ୍ୟମୟ ଦିଗ୍‌ବଳୟକୁ ଭେଦ କରିବାପାଇଁ ସଦା ଆକାଂକ୍ଷୀ । ଏହିଭଳି ଏକ କୌମାରରୁ ଯୌବନ ଅଭିମୁଖେ ଗତିଶୀଳ ପରିବର୍ତ୍ତନର ସ୍ରୋତରେ ଭାସମାନ ଅବସ୍ଥା ଭିତରେ ନରେନ୍ ତତ୍‌କାଳୀନ ସମ୍ଭ୍ରାନ୍ତ ମହାବିଦ୍ୟାଳୟ ପ୍ରେସିଡେନ୍‌ସୀ କଲେଜ୍‌ରେ ଉଚ୍ଚଶିକ୍ଷା ନିମନ୍ତେ ପଦାର୍ପଣ କଲେ ।



Digitized by srujanika@gmail.com

॥ ତିନି ॥

# ଅଶାନ୍ତ ଅଗ୍ନିବର୍ଷୀ ମନ-ପ୍ରେସିଡେନ୍ସୀ କଲେଜ ଓ ସ୍କଟିସ୍ ଚର୍ଚ୍ଚ କଲେଜରେ ବିଦ୍ୟାର୍ଥୀ ନରେନ୍ଦ୍ର

ଜାନୁଆରୀ ୧୮୮୦ରେ କଲିକତାର ପ୍ରଖ୍ୟାତ ପ୍ରେସିଡ଼େନ୍ସୀ କଲେଜରେ ନରେନ୍ଦ୍ରନାଥ ପ୍ରବେଶ କଲେ । ଇଂରାଜୀ ଅମଳର କଥା । ବହୁ ଇଂରେଜୀ ପ୍ରଫେସର ଦ୍ୱାରା କଲେଜ ଥିଲା ବିମଣ୍ଡିତ । ଇଂରେଜ ପରମ୍ପରା ଅନୁଯାୟୀ ଛାତ୍ରମାନଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ଇୟୁରୋପୀୟ ପୋଷାକ କିମ୍ବା ଭାରତୀୟ ଚପକାନ ଓ ଟ୍ରାଉଜର ପରିଧାନର ବିଧି ପ୍ରଚଳିତ ଥିଲା । ନରେନ୍ଦ୍ର ଚପକାନ ଓ ଟ୍ରାଉଜର ପରିଧାନ କରି, ହାତରେ ଗୋଟିଏ ଘଣ୍ଟା ବାନ୍ଧି, କଲେଜକୁ ଯାଉଥିଲେ ।

କଲେଜରେ ପ୍ରଥମ ବର୍ଷଟି ସୁରୁଖୁରୁରେ ବିତିଲା । କିନ୍ତୁ ମେଲେରିଆରେ ବାରମ୍ବାର ଆକ୍ରାନ୍ତ ଯୋଗୁଁ ଦ୍ୱିତୀୟ ବର୍ଷ ଅଧ୍ୟୟନରେ ଘୋର ବ୍ୟାଘାତ ଘଟିଲା ଯଦ୍ୱାରା ଏଫ୍.ଏ. ପରୀକ୍ଷା ଦେବାପାଇଁ ତାଙ୍କୁ ଅନୁମତି ମିଳିଲା ନାହିଁ । ବାଧହୋଇ ସେ ପ୍ରେସିଡ଼େନ୍ସୀ କଲେଜ୍ ଛାଡ଼ି ସ୍କଟିଶ୍ ଚର୍ଚ୍ଚ କଲେଜରେ ପଢ଼ିଲେ ଏବଂ ସେହି କଲେଜରେ ୧୮୮୪ ମସିହା ପର୍ଯ୍ୟନ୍ତ ପଢ଼ି ଏଫ୍.ଏ. ଓ ବି.ଏ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହେଲେ ।

କଲେଜ ଜୀବନକାଳରେ ତାଙ୍କର ଚିନ୍ତା ଓ ଚେତନାର ପରିବ୍ୟାପ୍ତି ଘଟିଥିଲା । ଇଂରାଜୀ, ଇତିହାସ, ଗଣିତ, ତର୍କଶାସ୍ତ୍ର, ମନୋବିଜ୍ଞାନ ଭଳି ମହତ୍ୱପୂର୍ଣ୍ଣ ବିଷୟବସ୍ତୁଗୁଡ଼ିକୁ ସେ ମନୋଯୋଗ ସହ ପଢ଼ି ତାଙ୍କର ମନ ଓ ବୁଦ୍ଧିକୁ ଉର୍ଦ୍ଧ୍ୱଗାମୀ କରାଇପାରିଥିଲେ । ଉନ୍ନତ ଦର୍ଶନଶାସ୍ତ୍ର ଅଧ୍ୟୟନ ସାଙ୍ଗକୁ ଗଣିତଶାସ୍ତ୍ର, ଇଂରାଜୀ ସାହିତ୍ୟ ଓ କଥୋପକଥନର କଳା ତାଙ୍କର ଚିନ୍ତା ଓ ଚେତନାକୁ କରିଥିଲା ଋଦ୍ଧିମନ୍ତ । ପାଶ୍ଚାତ୍ୟ ଦର୍ଶନଶାସ୍ତ୍ର ଓ ପ୍ରାଚୀନ ଓ ଆଧୁନିକ ଇୟୁରୋପୀୟ ଇତିହାସ ଓ ସାହିତ୍ୟର ଗଭୀର ଅଧ୍ୟୟନ ତାଙ୍କର ଦୃଷ୍ଟିକୋଣକୁ ସରସ ଓ ସୁନ୍ଦର ଭାବରେ ଗଢ଼ି ତୋଳିଥିଲା ।

- ୧ -

*ଜେନେରାଲ ଏସେମ୍ବ୍ଲି କଲେଜରେ ପ୍ରିନ୍ସିପାଲ ପ୍ରଫେସର ହେଷ୍ଟିଙ୍କର ଭବିଷ୍ୟତ ବାଣୀ : ''ବାସ୍ତବରେ ନରେନ୍ଦ୍ରନାଥ ଜଣେ ପ୍ରତିଭାସମ୍ପନ୍ନ ଯୁବକ । ସମଗ୍ର ବିଶ୍ୱର କୋଣଅନୁକୋଣ ମୁଁ ଭ୍ରମଣ କରିଛି କିନ୍ତୁ ଏଭଳି ବୁଦ୍ଧିମାନ୍ ଓ ସମ୍ଭାବନାପୂର୍ଣ୍ଣ ଛାତ୍ର କେଉଁଠାରେ ଦେଖି ନାହିଁ, ଏପରିକି ଜର୍ମାନୀ ବିଶ୍ୱବିଦ୍ୟାଳୟ ଦର୍ଶନ ଛାତ୍ରଙ୍କ ଭିତରେ ।''*

Digitized by srujanika@gmail.com

ଇଯେତ ଗଲା ପାଠପଢ଼ା କଥା । ବାସ୍ତବତାକୁ ଜାଣିବା ଓ ପରମସତ୍ୟକୁ ଉପଲବ୍ଧି କରିବା ପାଇଁ ତାଙ୍କର ଜନ୍ମଗତ ପ୍ରବୃତ୍ତି ଏହି ସମୟରେ ଦୁର୍ବାର ଅଭିପ୍ସାରେ ପରିଣତ ହୋଇଥିଲା । ଭୌତିକବିଦ୍ୟାରୁ ଉପଲବ୍ଧ ଜ୍ଞାନ ତାଙ୍କର ଅନ୍ତରାତ୍ମାକୁ ଆଦୌ ପରିତୃପ୍ତ କରିପାରୁ ନ ଥିଲା । ପ୍ରକୃତିର ରହସ୍ୟକୁ ଭେଦ କରିବାର ଦୁର୍ବାର ଅଭିପ୍ସା ଥିଲା ତୀବ୍ର ଓ ପ୍ରଖର । କଲେଜର ସାଥୀଗଣ ଯେଉଁମାନେ ତାଙ୍କର ଅନ୍ତରଙ୍ଗ ଥିଲେ, ସେମାନେ ନରେନ୍ଦ୍ରଙ୍କର ଦୃଢ଼ ଆତ୍ମ-ବିଶ୍ୱାସ ଏବଂ ପ୍ରସାରିତ ମନ ଓ ଚିନ୍ତାଧାରା ପରିଲକ୍ଷିତ କରି କେବଳ ତଟସ୍ଥ ହେଉ ନ ଥିଲେ ବରଂ ଏହି ସାଥୀଜଣକ ଔଜ୍ଜ୍ୱଲ୍ୟ ଚକ୍ଷୁଦ୍ୱୟରେ ଦେଖିପାରୁଥିଲେ ଭବିଷ୍ୟତରେ ଇତିହାସ ରଚନା କରିବାର ସମ୍ଭାବନା । କଲେଜର ଉଭୟ ଭାରତୀୟ ଓ ଇୟୁରୋପୀୟ ପ୍ରଫେସରମାନେ ନରେନ୍ଦ୍ରଙ୍କ ବ୍ୟକ୍ତିତ୍ୱରେ ନିହିତ ଶକ୍ତି ଓ ବିଶାଳ ଆକାଂକ୍ଷିତ ମନ ଦ୍ୱାରା ଆକର୍ଷିତ ହେଉଥିଲେ । କଲେଜର ପ୍ରିନ୍‌ସିପାଲ୍ ଉଇଲିୟମ ହେଷ୍ଟି ନରେନ୍ଦ୍ରଙ୍କ ଫଳିତ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ଭବିଷ୍ୟତବାଣୀ ଶୁଣାଇଥିଲେ : ବାସ୍ତବରେ ନରେନ୍ଦ୍ରନାଥ ଜଣେ ପ୍ରତିଭାସମ୍ପନ୍ନ ଯୁବକ । ସମଗ୍ର ବିଶ୍ୱରକୋଣ ଅନୁକୋଣ ମୁଁ ଭ୍ରମଣ କରିଛି, କିନ୍ତୁ ଏଭଳି ବୁଦ୍ଧିମାନ ଓ ସମ୍ଭାବନାପୂର୍ଣ୍ଣ ଛାତ୍ର କେଉଁଠାରେ ଦେଖିନାହିଁ, ଏପରିକି ବହୁ ଜର୍ମାନୀ ବିଶ୍ୱବିଦ୍ୟାଳୟ ଦର୍ଶନ ଛାତ୍ରଙ୍କ ଭିତରେ ।

ତାଙ୍କର ଯୌକ୍ତିକ ଓ ବିଶ୍ଳେଷଣୀୟ ଆଲୋଚନା ଥିଲା ସୁନ୍ଦର ଓ ଆକର୍ଷଣୀୟ । ଅନେକ ସାଥୀ ତାଙ୍କ କଥାକୁ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲେ । କୌଣସି ବିଷୟବସ୍ତୁ ଉପରେ ଆଲୋଚନା ଆରମ୍ଭ ହେଲେ, ସେ ସେଥିରେ ମୁଖ୍ୟ ଅଂଶଗ୍ରହଣ କରୁଥିଲେ ଏବଂ ବିଷୟବସ୍ତୁର ଗଭୀରତାକୁ ଏପରି ସାବଲୀଳ ଭାଷାରେ ଉପସ୍ଥାପନ କରିପାରୁଥିଲେଯେ ସାଥୀମାନେ ତାଙ୍କର ଯୁକ୍ତିକୁ ଖଣ୍ଡନ କରିବା ସମ୍ଭବ ମଣୁ ନ ଥିଲେ । କଦବାଏ କେମିତି କେହି ଯଦି ତାଙ୍କର ଯୁକ୍ତିକୁ ଖଣ୍ଡନ କରିବାକୁ ପ୍ରୟାସ କରୁଥିଲା, ସେ ଏଭଳି ଶକ୍ତି ଓ ଭାଷା ପ୍ରୟୋଗ କରି ପ୍ରତିପକ୍ଷ ଉପରେ ଝାମ୍ପି ପଡୁଥିଲେଯେ ପ୍ରତିପକ୍ଷ ନିର୍ବାକ ହେବା ଛଡ଼ା କୌଣସି ଚାରା ପାଉ ନ ଥିଲେ ।

ବୋନାପାର୍ଟ ନେପୋଲିୟନଙ୍କର ସେ ଥିଲେ ଜଣେ ଉଚ୍ଚ ପ୍ରଶଂସକ । ସେନାପତି ମାର୍ଶାଲ ନେ ଯେପରି ନିଜର ସମ୍ରାଟ ନେପୋଲିୟନଙ୍କର ଆଦେଶକୁ ନିର୍ଦ୍ୱନ୍ଦରେ ପାଳନ କରୁଥିଲେ, ଠିକ୍ ସେପରି ମହାନ୍ କାର୍ଯ୍ୟ ସମ୍ପାଦନ କରୁଥିବା ବ୍ୟକ୍ତିଙ୍କ ପ୍ରତି ଅନୁଗାମୀମାନଙ୍କର ଆନୁଗତ୍ୟ ରହିବା ଉଚିତ ବୋଲି ସେ କହୁଥିଲେ । ତାଙ୍କର ପ୍ରତ୍ୟେକ ବାକ୍ୟରେ ଭରି ରହିଥାଏ ମାଧୁର୍ଯ୍ୟ । ସତୀର୍ଥମାନଙ୍କ ଗହଣରେ ସେ ଯେତେବେଳେ କଥାବାର୍ତ୍ତାରେ ନିମଗ୍ନ ରହୁଥିଲେ, ସେତେବେଳେ ସାଥୀମାନେ ଏକ ଲୟରେ ତାଙ୍କର ବୀଣାବିନିନ୍ଦିତ ସ୍ୱରଦ୍ୱାରା ବିମୁଗ୍ଧ ହୋଇପଡୁଥିଲେ । ତାଙ୍କର କଣ୍ଠର ସ୍ୱର ଥିଲା ମଧୁର ସଙ୍ଗୀତ । ସେଁ କେବଳ ସୁଲଳିତ କଣ୍ଠରେ ଗୀତ ଗାଉ ନ ଥିଲେ, ବରଂ ସ୍ୱୟଂ କବିତା ରଚନା କରିବାରେ ସିଦ୍ଧହସ୍ତ ଥିଲେ । ତାଙ୍କର କାବ୍ୟିକ ଦୃଷ୍ଟି ପ୍ରକୃତିର ଗଭୀରତମ ପ୍ରଦେଶକୁ ସ୍ପର୍ଶ କରୁଥିଲା । ଗୀତ ଗାନ କରିବା ସମୟରେ ସେ ଗୀତର ଭାବାର୍ଥରେ ଏପରି ମଜ୍ଜି ଯାଉଥିଲେ ଯେ ସତେକି ସମଗ୍ର ବିଶ୍ୱ ତାଙ୍କର ଅନ୍ତର୍ଚକ୍ଷୁରେ ସଙ୍ଗୀତମୟ ହୋଇଉଠୁଥିଲା ଏବଂ ଭୋଳାନାଥ ଶଙ୍କରଙ୍କ ଭଳି ତାଙ୍କର ହସ୍ତ ପୟର ସଙ୍ଗୀତର

Digitized by srujanika@gmail.com

ତାଳେ ତାଳେ ନୃତ୍ୟରତ ହୋଇଉଠୁଥିଲା । ଯେଉଁମାନେ ତାଙ୍କର ନୃତ୍ୟ ଦେଖୁଥିଲେ ସମସ୍ତେ ତାଙ୍କର ମନୋମୁଗ୍ଧକାରୀ ଅଙ୍ଗ ପ୍ରତ୍ୟଙ୍ଗ ଚାଳନାରେ ତନ୍ମୟହୋଇ ଏକ ଶାଶ୍ୱତ ଶାନ୍ତି ଉପଲବ୍ଧି କରୁଥିଲେ ।

ଚରିତ୍ର ମାନବର ଏକ ଅମୂଲ୍ୟ ପୁଞ୍ଜି । ବହୁ ସଚ୍ଚରିତ୍ରର ଯୁବକ ଥିଲେ ନରେନ୍ଦ୍ରନାଥ । ପରୋପକାର ଚରିତ୍ରର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ନିଜର ମନ ଓ ଚେତନା ବହୁ ଊର୍ଦ୍ଧ୍ୱରେ ବିଚରଣ କରୁଥିଲେ ବି ସମାଜର ଦୁଃସ୍ଥ ଓ ନିଃସହାୟଙ୍କ ପ୍ରତି ତାଙ୍କର କରୁଣାର୍ଦ୍ର ହୃଦୟ କେବେ ବିମୁଖ ହେଉ ନ ଥିଲା । କଲେଜର ସାଙ୍ଗସାଥୀ କେହି କଦବାଏ କେମିତି ଅସୁବିଧାରେ ପଡ଼ିଲେ ନରେନ୍ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଆଗଭର ହୋଇ ଉଠୁଥିଲେ । ପରକୁ ସାହାଯ୍ୟ କରିବା ତାଙ୍କର ଏକ ଚରିତ୍ରଗତ ସ୍ୱଭାବ ଥିଲା । ସହପାଠୀ ହରିଦାସ ଚଟ୍ଟୋପାଧ୍ୟାୟ ଜେନେରାଲ୍ ଆସେମ୍ବ୍ଲି ଇନ୍‌ଷ୍ଟିଚ୍ୟୁଟରେ ପଢୁଥିବା ସମୟରେ ଏଭଳି ଏକ ସମସ୍ୟାରେ ସମ୍ମୁଖୀନ ହେଲେଯେ ଯାହାଫଳରେ ସେ ପରୀକ୍ଷା ଦେବାରୁ ବଞ୍ଚିତ ହେବାର ପରିସ୍ଥିତି ସୃଷ୍ଟି ହେଲା । ପରିବାରର ଆର୍ଥିକ ପରିସ୍ଥିତି ଯୋଗୁଁ କଲେଜର ଆବଶ୍ୟକ ଦେୟ ଏବଂ ପରୀକ୍ଷା ଫିସ୍ ପଇଠ କରିବାକୁ ସେ ସକ୍ଷମ ନ ଥିଲେ । ସେ ଖୁବ୍ ବିଚଳିତ ହୋଇ ନରେନ୍ଦ୍ରଙ୍କୁ ସବୁକଥା ଜଣାଇଲେ ।

ନରେନ୍ଦ୍ର ଭଲଭାବରେ ଜାଣିଥିଲେଯେ ଗରିବ ଛାତ୍ରମାନଙ୍କ ପାଇଁ ପରୀକ୍ଷା ଫିସ୍ ଓ କଲେଜର ଅନ୍ୟାନ୍ୟ ଦେୟ ଛାଡ଼ କରାଯିବାର ବିଧି ରହିଛି । କିନ୍ତୁ ସେଥିପାଇଁ ଛାତ୍ରକୁ ଦରଖାସ୍ତ ଦେବାକୁ ହେବ । ତା' ମାନେ କଲେଜର ବରିଷ୍ଠ କିରାଣି ରାଜକୁମାର ଯଦି ଛାତ୍ରର ଅର୍ଥ ପଇଠ କରିବା ଅକ୍ଷମତାକୁ ହୃଦୟଙ୍ଗମ କରିବେ, ତେବେ ଯେକୌଣସି ଛାତ୍ରର ଦେୟ ସେ ଛାଡ଼ କରିପାରିବେ । କଲେଜ କର୍ତ୍ତୃପକ୍ଷ ତାଙ୍କୁ ଏଥିନିମନ୍ତେ ଅଖଣ୍ଡ କ୍ଷମତା ପ୍ରଦାନ କରିଥିଲା । ପ୍ରତ୍ୟୁତ୍ପନ୍ନମତି ନରେନ୍ଦ୍ର ଏକ ଉପାୟ ବାହାର କଲେ । ହରିଦାସଙ୍କଠାରୁ ଖଣ୍ଡିଏ ଦରଖାସ୍ତ ନେଇ ବରିଷ୍ଠ କିରାଣି ରାଜକୁମାରଙ୍କ କାର୍ଯ୍ୟାଳୟରେ ପହଞ୍ଚିଲେ । ସେଠାରେ ସେଦିନ ବହୁ ଛାତ୍ରଙ୍କ ଗହଳି ଲାଗିଥିଲା । ସମସ୍ତେ ପରୀକ୍ଷା ଫିସ୍ ସହ କଲେଜର ଅନ୍ୟାନ୍ୟ ଦେୟ ପରୀକ୍ଷା ପୂର୍ବରୁ ପଇଠ କରୁଥିଲେ । ନରେନ୍ଦ୍ରନାଥ ଭିଡ଼ ଭିତରୁ କୌଣସିମତେ ଆଗକୁ ଯାଇ ରାଜକୁମାରଙ୍କୁ ଦରଖାସ୍ତ ଦେଇ ଭଦ୍ରୋଚିତ ସ୍ୱରରେ କହିଲେ, ''ସାର୍, ହରିଦାସ କଲେଜର ଦେୟ ପଇଠ କରିବାକୁ ଅସମର୍ଥ । ଆପଣ ଦୟାପରବେଶ ହୋଇ ସେଥିରୁ ତାଙ୍କୁ ଛାଡ଼ କରିବେ କି ? ଆପଣ ଯଦି ଏତକ ଦୟା କରନ୍ତେ, ସେ ନିଶ୍ଚୟ ପରୀକ୍ଷାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୁଅନ୍ତେ, ନଚେତ ସେ ପରୀକ୍ଷା ଦେଇପାରିବେ ନାହିଁ ।''

ବରିଷ୍ଠ କିରାଣିଭଦ୍ରଲୋକଙ୍କ ମୁଖମଣ୍ଡଳରେ ବିରକ୍ତି ଚିହ୍ନ ଉଙ୍କି ମାରିଲା । ଚଷମା ତଳୁ ଚାହିଁ ସେ ରକ୍ଷ କଣ୍ଠରେ କହିଲେ, ''ଯା... ଯା... ତୁମର କଳକଳପାତିଆ ଭଦ୍ରଲୋକି ଥାଉ । ତୁମେ ନିଜକୁ ତେଲ ମାଲିସ୍ କର । ସେ ଯଦି କଲେଜର ଆବଶ୍ୟକୀୟ ଅର୍ଥ ଜମା ନ କରିବ, ମୁଁ ତାକୁ ପରୀକ୍ଷାରେ ପ୍ରବେଶ କରିବା ପାଇଁ ଅନୁମତି ଦେବି ନାହିଁ ।'' ଏତାଦୃଶ ଦାମ୍ଭିକପୂର୍ଣ୍ଣ ନିଷ୍ଠୁର

Digitized by srujanika@gmail.com

ବାକ୍ୟ ନରେନ୍ଦ୍ରଙ୍କୁ ହତୋତ୍ସାହ କଲାନାହିଁ ବରଂ ସାଙ୍ଗ ହରିଦାସ ଯିଏ ବରିଷ୍ଠ କିରାଣିଙ୍କର ନିର୍ଦ୍ଦୟ କଥାଶୁଣି ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଥିଲେ, ତାଙ୍କୁ ବୁଝାଇ କହିଲେ, ''ଆରେ ଭାଇ, ତୁମେ କାହିଁକି ଏଭଳି ନିରାଶ ହୋଇପଡୁଛ । ସେହି ବୁଢ଼ା ଏଭଳି ଖାଲି ବଡ଼ ବଡ଼ କଥା କହେ । ମୁଁ ନିଶ୍ଚୟ ତୁମ ପାଇଁ ଗୋଟିଏ ବାଟ ବାହାର କରିବି । ତୁମେ ଆଦୌ ବ୍ୟସ୍ତ ହୁଅନାହିଁ ।''

- ୨ -

*ହିନ୍ଦୁଧର୍ମର ସମସ୍ତ ପ୍ରକାର ପୂଜା ପଦ୍ଧତି ଓ ଉପାସନା, ମୂର୍ତ୍ତିପୂଜା, ପୁରୋହିତବାଦ, ଜାତିପ୍ରଥା, ଯୌତୁକ ପ୍ରଥାଭଳି ଅନେକ ପ୍ରାଚୀନ ପରମ୍ପରାର ଦୁର୍ଗ ଧରାଶାୟୀ ହେବାକୁ ଲାଗିଲା । ନିରାକାର ପରଂବ୍ରହ୍ମଙ୍କର ଉପାସନା ବ୍ରାହ୍ମସମାଜର ଧ୍ୟେୟ ହେଲା । ବହୁ ଯୁବକ ଓ ଯୁବତୀ, ପାଶ୍ଚାତ୍ୟ ସଭ୍ୟତାକୁ ଆପଣେଇ ନେବା ସଙ୍ଗେସଙ୍ଗେ ବ୍ରାହ୍ମସମାଜର ଜୟଯାତ୍ରାରେ ସାମିଲ ହେଲେ ।*

ନରେନ୍ଦ୍ର ଯେପରି ସାହସୀ, ସେପରି ମଧ୍ୟ ହାସ୍ୟରସିକତା ସୃଷ୍ଟିକରିବାରେ ପାରଙ୍ଗମ । ବରିଷ୍ଠ କିରାଣି ରାଜକୁମାର ଅଫିସ ଛୁଟି ହେବାପରେ, ସନ୍ଧ୍ୟାରେ ଅଫିମ ଗଞ୍ଜେଇ ଧୂଆଁ ଟାଣିବା ପାଇଁ ପ୍ରତିଦିନ ଏକ ଗୋପନୀୟ ସ୍ଥାନକୁ ସମସ୍ତଙ୍କ ଅଜାଣତରେ ଯାଆନ୍ତି ବୋଲି ନରେନ୍ଦ୍ର ଜାଣିବାକୁ ପାଇଲେ । ଉକ୍ତ ଅଫିମ-ଗଞ୍ଜେଇ ଧୂଆଁ ଟାଣିବାର ସ୍ଥାନଟିକୁ ମଧ୍ୟ ନରେନ୍ଦ୍ର ଠାବ କରିନେଲେ । ଏକଦା ସନ୍ଧ୍ୟାପରେ, ରାଜକୁମାର ଅନ୍ଧକାର ପଥରେ ଏକାନ୍ତରେ ଅଫିମ-ଗଞ୍ଜେଇ ଧୂମ ସେବନ କରିବା ପାଇଁ ଉକ୍ତ ଆଡ୍‌ଡ଼ାସ୍ଥଳୀକୁ ସଅଳ ପାଦରେ ଅଗ୍ରସର ହେଉଥିଲେ । ଅନ୍ଧକାରାଚ୍ଛନ୍ନ ପଥ ମଧ୍ୟଭାଗରେ ହଠାତ୍ ନରେନ୍ଦ୍ରଙ୍କୁ ଦେଖି ସେ ଚମକି ପଡ଼ିଲେ । ତାଙ୍କର ସ୍ନାୟୁ ଭୟରେ ଦୁର୍ବଳ ହୋଇପଡ଼ିଲା, ତଥାପି ମନରେ ସାହସ ବାନ୍ଧି ପଚାରିଲେ, ''କଥା କ'ଣ ଦତ୍ତ ? ଏଠାରେ ତୁମେଯେ ?'' ନରେନ୍ଦ୍ର ଏହି ସୁଯୋଗକୁ ହାତଛଡ଼ା ନ କରି ହରିଦାସଙ୍କର ପରୀକ୍ଷା ଫିସ୍ ଛାଡ଼ କରିବା ପାଇଁ ତାଙ୍କୁ ପୁନଶ୍ଚ ସେଠାରେ ଅନୁରୋଧ କଲେ । କିନ୍ତୁ ନରେନ୍ଦ୍ରଙ୍କର ଏହି ଅନୁରୋଧ ଭିତରେ ଟିକିଏ ମୃଦୁ ଚେତାବନୀ ରହିଥିଲା : ଯଦି ପରୀକ୍ଷା ଫିସ୍ ଛାଡ଼ ନ କରନ୍ତି, ତେବେ ଆପଣ ଅଫିମ-ଗଞ୍ଜେଇ ଧୂଆଁ ଟାଣିବା ପାଇଁ ଯେଉଁ ସ୍ଥାନକୁ ସବୁଦିନେ ଯାଉଛନ୍ତି, ସେସବୁର ରହସ୍ୟ ମୁଁ ପ୍ରଘଟ କରିଦେବି ।'' ସେ ଏଭଳି ଅପବାଦରୁ ରକ୍ଷାପାଇବା ଲାଗି କହି ପକାଇଲେ, ''ଆରେ ପୁଅ, ତୁମେ ଏମିତି ରାଗି ଯାଉଛ କାହିଁକି ? ତୁମେ କହିବ, ମୁଁ ପୁଣି ତୁମ କଥା ରଖିବି ନାହିଁ ।'' ବାସ୍ ଏତିକିମାତ୍ର ନାଟକ । ପରବର୍ତ୍ତୀ ଦିନ ହରିଦାସ ଚଟ୍ଟୋପାଧ୍ୟାୟଙ୍କର କଲେଜର ସମସ୍ତ ଦେୟ ଓ ପରୀକ୍ଷା ଫିସ୍ ଛାଡ଼ ହୋଇଗଲା ।

ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ସଭ୍ୟତା ଭାରତବର୍ଷରେ ଆସ୍ତେଆସ୍ତେ କାୟା ବିସ୍ତାର କରୁଥିଲା ଏବଂ ଭାରତର ଯୁବ ସଂପ୍ରଦାୟ ସେଥିରେ ଆକୃଷ୍ଟ ହୋଇ ଅଗ୍ନିରେ ପତଙ୍ଗ ପଡ଼ିଲା ଭଳି, ପାଶ୍ଚାତ୍ୟ ଭାବଭଙ୍ଗୀ ଜାଲରେ ବନ୍ଦୀ ହୋଇ ପଡୁଥିଲେ । ଉଚ୍ଚ ଶିକ୍ଷିତ ହୋଇ ବ୍ରିଟିଶ

Digitized by srujanika@gmail.com

ଶାସନରେ ଖଣ୍ଡିଏ ଚାକିରିକରିବାର ଏକମାତ୍ର ଲକ୍ଷ୍ୟ ସେମାନଙ୍କୁ କଣ୍ଟାଗ୍ରତ କରୁଥିଲା । ତଥାପି ଇୟୁରୋପୀୟ ବୁଦ୍ଧିଜୀବୀ ମାନସିକତା ଓ ଭାରତୀୟ ସଂସ୍କୃତି ଭିତରେ ରହିଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ବୁଝିବା ପାଇଁ ଇଂରାଜୀ ଭାଷା ଯୁବବର୍ଗଙ୍କୁ ସାହାଯ୍ୟ କରିଥିଲା । ନିଜର ପ୍ରାଚୀନ ଧର୍ମକୁ ସଜାଡ଼ିବା ଏବଂ ସନାତନ ଧର୍ମର ମୂଳତତ୍ତ୍ୱ ଯାହା ଉପରେ ବିଭିନ୍ନ ପ୍ରକାର କୁସଂସ୍କାର ଓ ଜାତିପ୍ରଥା ଭଳି ଧୂଳି ଜମି ଯାଇଥିଲା, ସେଗୁଡ଼ିକୁ ପରିଷ୍କୃତ କରିବା ପାଇଁ ଏକ ନବ ଚେତନାର ସ୍ରୋତ ଆବିର୍ଭୂତ ହେଲା । ଏହି 'ନବ ଚେତନା' ରାଜା ରାମମୋହନ ରାୟଙ୍କର ନେତୃତ୍ୱରେ ''ବ୍ରାହ୍ମ ସମାଜ''ର ରୂପ ଧାରଣ କଲା । ହିନ୍ଦୁଧର୍ମର ସମସ୍ତ ପ୍ରକାର ପୂଜା ପଦ୍ଧତି ଓ ଉପାସନା, ମୂର୍ତ୍ତିପୂଜା, ପୁରୋହିତବାଦ, ଜାତିପ୍ରଥା, ଯୌତୁକ ପ୍ରଥାଭଳି ଅନେକ ପ୍ରାଚୀନ ପରମ୍ପରାର ଦୁର୍ଗ ଧରାଶାୟୀ ହେବାକୁ ଲାଗିଲା । ନିରାକାର ପରଂବ୍ରହ୍ମଙ୍କର ଉପାସନା ବ୍ରାହ୍ମସମାଜର ଧ୍ୟେୟ ହେଲା । ବହୁ ଯୁବକ ଓ ଯୁବତୀ, ପାଶ୍ଚାତ୍ୟ ସଭ୍ୟତାକୁ ଆପଣେଇ ନେବା ସଙ୍ଗେସଙ୍ଗେ ବ୍ରାହ୍ମସମାଜର ଜୟଯାତ୍ରାରେ ସାମିଲ ହେଲେ । ଇଂଲଣ୍ଡରେ ରାଜା ରାମମୋହନ ରାୟଙ୍କର ଦେହାନ୍ତ ଉତ୍ତାରୁ, ଏହି ସଂସ୍କାରଧର୍ମୀ ବ୍ରାହ୍ମସମାଜର ସଫଳ ଜୟଯାତ୍ରାରେ କୌଣସି ପ୍ରତିବନ୍ଧ ସୃଷ୍ଟି ହେଲାନାହିଁ, ବରଂ ଉପନିଷଦର ଜଣେ ମହାନ ଭକ୍ତ ତଥା ପ୍ରବକ୍ତା ମହର୍ଷି ଦେବେନ୍ଦ୍ରନାଥ ଠାକୁର ଓ ଖ୍ରୀଷ୍ଟଧର୍ମର ଉପାସନା ଓ ସିଦ୍ଧାନ୍ତ ପ୍ରତି ଆକୃଷ୍ଟ ଓ ରୁଚି ରଖିଥିବା ବ୍ୟକ୍ତିତ୍ୱ କେଶବଚନ୍ଦ୍ର ସେନ, ବ୍ରାହ୍ମଧର୍ମର ଦାୟିତ୍ୱ ଓ ନେତୃତ୍ୱ ଗ୍ରହଣ କଲେ । ଏହି ନେତାଦ୍ୱୟଙ୍କର ଋଦ୍ଧିମନ୍ତ ଜ୍ଞାନ ଓ ଆଧ୍ୟାତ୍ମିକ ଔଜ୍ଜ୍ୱଲ୍ୟ ବହୁ ଶିକ୍ଷିତ ଯୁବକ ଓ ଯୁବତୀଙ୍କୁ ପ୍ରଭାବିତ କରିବା ସହ ମୂର୍ତ୍ତିପୂଜା, କଠୋର ପୂଜା ପଦ୍ଧତି, ବାଲ୍ୟ ବିବାହ ଭଳି ହିନ୍ଦୁଧର୍ମର ଅନେକ ରକ୍ଷଣଶୀଳ ପରମ୍ପରାର ଅଟ୍ଟାଳିକା ଭୂପତିତ ହେଲା ।

- ୩ -

*ବୁଦ୍ଧ ବୁଝିପାରିବେ ନରେନ୍ଦ୍ରଙ୍କ ଭିତରେ କୁହୁଳୁଥିବା ମାନସକୁ, ବନ୍ଧାପଡ଼ିଥିବା ଚେତନାର ବିକଳ ବିଳାପକୁ । ଶବ୍ଦ, ରୂପ, ରସ, ଗନ୍ଧ, ସ୍ପର୍ଶ, ମନ, ବୁଦ୍ଧି, ଅହଙ୍କାର କାରାଗୃହରେ ସେତେକି ନରେନ୍ଦ୍ରଙ୍କର ଆତ୍ମା ଲୁହା କଡ଼ିରେ ବନ୍ଧା ହୋଇ ଚହଲବିକଳ ହେଉଛି ! ପଥ ଖୋଜୁଛି ସବୁ ଲୌହ ଶିକୁଳିକୁ ଛିଡ଼ାଇ ଆତ୍ମା ନିଜ ଜାଗାକୁ ଚାଲିଯିବ ! ତେବେ ପଥ କିଏ ଦେଖାଇବ ? ସବୁ ଦ୍ୱାରରେ ତ ବଡ଼ ବଡ଼ ତାଲା ଝୁଲୁଛି, ଗଣ୍ଠି ପଡ଼ିଛି । ତାଲା କିଏ ଖୋଲିବ, ଗଣ୍ଠି କିଏ ଫିଟାଇବ ? ସେହି ଚିନ୍ତାରେ ସେ ଖାଲି ଦଗ୍ଧୀଭୂତ ହେଉଥିଲେ ।*

ଯେତେବେଳେ ଅଧିକାଂଶ ଶିକ୍ଷିତ ଯୁବକ ବ୍ରାହ୍ମଧର୍ମର ପ୍ରଖର ପ୍ରବାହରେ ଅବଗାହନ କରୁଥିଲେ, ସେତେବେଳେ ଉଚ୍ଚଶିକ୍ଷିତ ଯୁବକ ନରେନ୍ଦ୍ର ସେଥିରେ କିପରି ବାଦ୍ ପଡ଼ିଥାନ୍ତେ ? ସେ ମଧ୍ୟ ବ୍ରାହ୍ମଧର୍ମର ପ୍ରଗତିମୂଳକ ଧାରଣା ଓ ସଂସ୍କାରଧର୍ମୀ ସାମାଜିକ ଓ ଧାର୍ମିକ ଚେତନା ପ୍ରତି

Digitized by srujanika@gmail.com

ଆକୃଷ୍ଟ ହୋଇ ଏହାର ସଦସ୍ୟତା ଗ୍ରହଣ କରିଥିଲେ । ସେ ପ୍ରାର୍ଥନା ସଭାରେ ଭାଗ ନେଲେ ଏବଂ ବୌଦ୍ଧିକ ତର୍କ, ଆଧ୍ୟାତ୍ମିକ ଆଲୋଚନା ଓ ଉପାସନା ପଦ୍ଧତିରେ ସାମିଲ ହେଲେ । କିନ୍ତୁ ତାଙ୍କ ଆତ୍ମାର ଗଭୀର ଆଧ୍ୟାତ୍ମିକ ପିପାସାକୁ ଏହା ଶାନ୍ତ କରିପାରିଲା ନାହିଁ । ତାଙ୍କ ଭିତରଟା ଯାହା ଚାହୁଁଥିଲା, ତାହା ବ୍ରାହ୍ମଧର୍ମ ତାଙ୍କୁ ଦେଇପାରିଲା ନାହିଁ । ସେ ସବୁ ଧର୍ମର ସିଦ୍ଧାନ୍ତ ପଢ଼ିଛନ୍ତି, ସବୁ ଧାର୍ମିକ ସମ୍ପ୍ରଦାୟର ତତ୍ତ୍ୱକୁ ବୁଝିଛନ୍ତି, ତତ୍‌କାଳୀନ ବହୁ ସନ୍ଥ, ମହାତ୍ମାଙ୍କୁ ଭେଟିଛନ୍ତି, କିନ୍ତୁ କେହି ଜଣେ ବି ତାଙ୍କର ଅନ୍ତରାତ୍ମାର ଜ୍ୱଳନକୁ ଶୀତଳ କରିପାରି ନ ଥିଲେ । ବହୁ 'ଧନସମ୍ପତ୍ତି'ର ପ୍ରାଚୁର୍ଯ୍ୟଶାଳୀ ହେବାକୁ ସେ ଚାହୁଁ ନ ଥିଲେ କିମ୍ବା ଯଶ, ପ୍ରତିଷ୍ଠା ଓ ସମ୍ମାନର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ହୋଇ ସମାଜରେ ନିଜର ପତିଆରା ଜାହିର କରିବାରେ ତାଙ୍କର ତିଳେମାତ୍ର କାମନା ନ ଥିଲା କିମ୍ବା ସୁନ୍ଦରୀ କନ୍ୟାକୁ ବିବାହ କରି ସୁଖମୟ ଦାମ୍ପତ୍ୟ ଜୀବନ ନିର୍ବାହ କରିବାର ସ୍ୱପ୍ନ ମଧ୍ୟ ତାଙ୍କର ନ ଥିଲା । ତାଙ୍କର ପିତା ଚାହିଁଥିଲେ ଯେ ନରେନ୍ଦ୍ର ବିଲାତ ଯାଇ ସେଠାରେ ଅଧ୍ୟୟନ କରି, ବ୍ରିଟିଶ ସାମ୍ରାଜ୍ୟର ସବୁଠୁଁ ଆକର୍ଷଣୀୟ ଚାକିରି 'ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍'ରେ ଯୋଗ ଦେବେ । ସେଥିପାଇଁ ଜଣେ ଧନୀବ୍ୟକ୍ତି ନରେନ୍ଦ୍ରଙ୍କର ବିଲାତ ଗସ୍ତ ତଥା ସେଠିକାର ସମସ୍ତ ଖର୍ଚ୍ଚ ବହନ କରିବାକୁ ରାଜି ଥିଲେ, କାରଣ ତାଙ୍କର ସୁନ୍ଦରୀ କନ୍ୟା ସହ ନରେନ୍ଦ୍ରଙ୍କର ବିବାହ ସଂପନ୍ନ କରିବାର ପ୍ରସ୍ତାବ ସେ ଦେଇଥିଲେ । କିନ୍ତୁ କେବଳ ବିଲାତ ଯିବାର ପ୍ରସ୍ତାବ ନୁହେଁ, ପିତାଙ୍କର ସଂସାରମୁଖୀ ସମସ୍ତ ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

ପ୍ରଶ୍ନ ଉଠେ - ତେବେ ନରେନ୍ଦ୍ର ଚାହୁଁଥିଲେ କ'ଣ ? ଏହାର ଉତ୍ତର ସାଂସାରିକ ଦୃଷ୍ଟିକୋଣରୁ କଦାପି ଦେଇହେବ ନାହିଁ । ପରମକାରୁଣିକ ଶାକ୍ୟସିଂହ ଗୌତମ ବୁଦ୍ଧଙ୍କ ପାଖରେ କ'ଣ ବା ନ ଥିଲା । ପିତା, ମାତା, ପତ୍ନୀ, ପୁତ୍ର, ପରିବାର, ରାଜ ସିଂହାସନ ସର୍ବୋପରି ପ୍ରିୟ ପ୍ରଜାବର୍ଗଙ୍କ ଭିତରେ କ୍ଷଣମାତ୍ର ରହିବାକୁ ତାଙ୍କର ମନ କାହିଁକି ବଳିଲା ନାହିଁ ? ତା'ର ଉତ୍ତର କିଏ ବା ଦେଇପାରିବ ? କେବଳ ସ୍ୱୟଂ ବୁଦ୍ଧ ଦେଇପାରିବେ । ବୁଦ୍ଧ ବୁଝିପାରିବେ ନରେନ୍ଦ୍ରଙ୍କ ଭିତରେ କୁହୁଳୁଥିବା ମାନସକୁ, ବନ୍ଧାପଡ଼ିଥିବା ଚେତନାର ବିକଳ ବିଳାପକୁ । ଶବ୍ଦ, ରୂପ, ରସ, ଗନ୍ଧ, ସ୍ପର୍ଶ, ମନ, ବୁଦ୍ଧି, ଅହଙ୍କାର କାରାଗୃହରେ ସତେକି ନରେନ୍ଦ୍ରଙ୍କର ଆତ୍ମା ଲୁହା କଡ଼ିରେ ବନ୍ଧା ହୋଇ ତହଳବିକଳ ହେଉଛି ! ପଥ ଖୋଜୁଛି ସବୁ ଲୌହ ଶିକୁଳିକୁ ଛିଡ଼ାଇ ଆତ୍ମା ନିଜ ଜାଗାକୁ ଚାଲିଯିବ ! ତେବେ ପଥ କିଏ ଦେଖାଇବ ? ସବୁ ଦ୍ୱାରରେ ତ ବଡ଼ ବଡ଼ ତାଲା ଝୁଲୁଛି, ଗଣ୍ଠି ପଡ଼ିଛି । ତାଲା କିଏ ଖୋଲିବ, ଗଣ୍ଠି କିଏ ଫିଟାଇବ ? ସେହି ଚିନ୍ତାରେ ସେ ଖାଲି ଦଗ୍‌ଧିଭୂତ ହେଉଥିଲେ ।

ମନକୁ ଯେତେ ବୁଝାଇବାକୁ ଚେଷ୍ଟା କରୁଥିଲେ, ମନ ତାଙ୍କର ଆଦୌ ବୁଝୁ ନ ଥିଲା । ସମସ୍ତେ ତ ଈଶ୍ୱରଙ୍କ କଥା କହୁଛନ୍ତି । କିନ୍ତୁ ସେହି ଈଶ୍ୱରଙ୍କୁ କେହି ଦେଖାଇ ପାରୁନାହାଁନ୍ତି । ଏକଦା ମନରେ ତାଙ୍କର ଆଶାର ଝରଣାଟିଏ ଉଦ୍ରେକ ହେଲା । ବ୍ରାହ୍ମ ଧର୍ମର ମୁଖ୍ୟ ପୁରୋଧା ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ପାଖରେ ପହଞ୍ଚିଲେ । ମହର୍ଷି କିଛି କହିବା

Digitized by srujanika@gmail.com

ପୂର୍ବରୁ ନରେନ୍ଦ୍ର ଅଧିରହୋଇ କହି ପକାଇଲେ, ''ମହାଶୟ, ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି ? ମହର୍ଷି ତଟସ୍ଥ ହୋଇ ଯୁବକଙ୍କୁ ବିସ୍ଫାରିତ ନୟନରେ ଚାହିଁଲେ ଏବଂ କିୟତ୍ ମୁହୂର୍ତ୍ତ ପରେ କହିଲେ, ''ବତ୍ସ, ମୁଁ ଦେଖିପାରୁଛି ତୁମର ଯୋଗୀର ଚକ୍ଷୁ । ତୁମକୁ ଧ୍ୟାନ କରିବାକୁ ହେବ ।'' ଯିଏ ଚାହୁଁଥିଲେ ନିଜ ପ୍ରଶ୍ନର ଏକ ସିଧାସଳଖ ଉତ୍ତର, ସେ ଅଙ୍କାବଙ୍କା ଉତ୍ତର ଶୁଣି ନୈରାଶ୍ୟରେ ବୁଡ଼ିଗଲେ । ଧାର୍ମିକ ସନ୍ଥମାନେ ଈଶ୍ୱର ଉପଲବ୍ଧି ଲାଗି ସିଧା ପଥ ପ୍ରଦର୍ଶନ କରେଇବାର ଶକ୍ତି ଅଛି ବୋଲି ନରେନ୍ଦ୍ରଙ୍କର ବଦ୍ଧ ଧାରଣା ଥିଲା କିନ୍ତୁ ତାହା ସେମାନଙ୍କଠାରୁ ନ ପାଇବାରୁ ମନ ଅବଶ୍ୟ ନିରାଶରେ ବୁଡ଼ିଗଲା, ତଥାପି ତାଙ୍କର ଅନ୍ୱେଷଣ ଯାତ୍ରାରେ କୌଣସି ପ୍ରତିକୂଳ ପରିସ୍ଥିତି ଉପୁଜିଲା ନାହିଁ ।

ମନେପଡ଼ିଗଲା ପ୍ରଫେସର ଉଇଲିୟମ ହେଷ୍ଟିଙ୍କ କଥା । ଜେନେରାଲ ଏସେମ୍ବ୍ଲି କଲେଜର ସେ ଥିଲେ ପ୍ରିନ୍ସିପାଲ । ୧୮୮୧ ମସିହାର କଥା । ନରେନ୍ଦ୍ର ଥିଲେ ସେହି କଲେଜର ଛାତ୍ର । ଏକଦା ପ୍ରଫେସର ହେଷ୍ଟି ପ୍ରଖ୍ୟାତ କବି ୱର୍ଡ୍ସୱାର୍ଥଙ୍କର କବିତା 'ଦି ଏକ୍ସକର୍ସନ' କ୍ଲାସରେ ପଢ଼ାଉଥିଲେ । ଉକ୍ତ କବିତାରେ ଭାବାତୀତ ଅବସ୍ଥା (Ecstasy) ବୋଲି ଗୋଟିଏ ଶବ୍ଦ ଥିଲା । ଭାବାତୀତ ଅବସ୍ଥା ସମ୍ବନ୍ଧରେ ଛାତ୍ରଙ୍କୁ ବୁଝାଉଥିବା ସମୟରେ ହେଷ୍ଟି ସାହେବ କହିଥିଲେ - ''ଏହି ଅବସ୍ଥାକୁ ସେହି ବ୍ୟକ୍ତି ଲାଭ କରିପାରିବ, ଯାହାର ମନ ପବିତ୍ର ଓ ନିର୍ମଳ ହୋଇଥିବ ଏବଂ ଏକ ନିର୍ଦ୍ଦିଷ୍ଟ ବସ୍ତୁ ପ୍ରତି ନିରନ୍ତର ଧ୍ୟାନରତ ହେଉଥିବ । ଏଭଳି ବ୍ୟକ୍ତି ସଂସାରରେ ବର୍ତ୍ତମାନ ବିରଳ । କୋଟିଏରୁ ଗୋଟିଏ ମିଳିବେ । କିନ୍ତୁ ମୋ ଜୀବନକାଳ ମଧ୍ୟରେ ମୁଁ ଜଣଙ୍କୁ ଦେଖିବାର ସୌଭାଗ୍ୟ ଲାଭ କରିଛି, ଯିଏ ସ୍ୱୟଂ ପବିତ୍ର ଓ ଶୁଦ୍ଧ ଏବଂ ଭାବାତୀତ ଅବସ୍ଥା ଲାଭ କରି ଚେତନାର ବହୁ ଉର୍ଦ୍ଧ୍ୱରେ ଉପନୀତ ହୋଇଛନ୍ତି । ସେ ହେଉଛନ୍ତି ଦକ୍ଷିଣେଶ୍ୱର କାଳୀ ମନ୍ଦିର ନିବାସୀ ସନ୍ଥ ଶ୍ରୀରାମକୃଷ୍ଣ ପରମହଂସ ଦେବ । ଯଦି ତାଙ୍କୁ ସାକ୍ଷାତ କରିବାର ଅବକାଶ ମିଳେ ତାହାଲେ ଭାବାତୀତ ଅବସ୍ଥା କ'ଣ ତୁମେ ବୁଝିପାରିବ ।'' ଶ୍ରେଣୀ କକ୍ଷରେ ନିଜ ପ୍ରଫେସରଙ୍କ ମୁଖରୁ ଏତାଦୃଶ ବିସ୍ମୟକର ସମ୍ବାଦ ଶୁଣି ନରେନ୍ଦ୍ରଙ୍କ ଅବଚେତନ ଆକାଶରେ ବିଦ୍ୟୁତ ଖେଳିଗଲା । ଏହି ବିଦ୍ୟୁତ ଝଲକ ଲିଭିଗଲା ନାହିଁ ବରଂ ତାଙ୍କ ମନରେ ଏକ ଆକର୍ଷଣୀୟ ଉଜ୍ଜ୍ୱଳ ବିନ୍ଦୁରେ ପରିଣତ ହେଲା ।

ଅବଶ୍ୟ ନିଜର ସମ୍ପର୍କୀୟ ବନ୍ଧୁ ଶ୍ରୀରାମଚନ୍ଦ୍ର ଦତ୍ତଙ୍କଠାରୁ ଶ୍ରୀରାମକୃଷ୍ଣ ପରମହଂସଙ୍କ ସମ୍ବନ୍ଧରେ ନରେନ୍ଦ୍ର ପୂର୍ବରୁ ଶୁଣିଥିଲେ । ଏଠାରେ ସ୍ମରଣଯୋଗ୍ୟ ଯେ ଶ୍ରୀରାମକୃଷ୍ଣଙ୍କର ଗୃହୀଭକ୍ତଙ୍କ ଭିତରେ ରାମବାବୁ ଥିଲେ ଜଣେ ବିଶିଷ୍ଟ ଭକ୍ତ । ନରେନ୍ଦ୍ରଙ୍କର ବିବାହ ପ୍ରତି ବିରାଗ ମନୋଭାବ ଲକ୍ଷ୍ୟକରି ସେ ମଧ୍ୟ ଶ୍ରୀରାମକୃଷ୍ଣଙ୍କୁ ଭେଟିବା ପାଇଁ ତାଙ୍କୁ ପରାମର୍ଶ ଦେଇଥିଲେ । ବର୍ତ୍ତମାନ ପ୍ରଫେସର ହେଷ୍ଟିଙ୍କର ମନ୍ତବ୍ୟ ନରେନ୍ଦ୍ରଙ୍କ ମନରେ ଆଶା ସଞ୍ଚାର କଲା । ତାଙ୍କୁ ଭେଟିବାର ଅଭିପ୍ସା ତୀବ୍ରତର ହେଲା । ସେ ଭାବିଲେ ଯେ ଶ୍ରୀରାମକୃଷ୍ଣ ବୋଧହୁଏ ତାଙ୍କ ମନରେ ଉଠୁଥିବା ଝଡ଼କୁ ଶାନ୍ତ କରିଦେବେ ଏବଂ ସବୁ ଆଧ୍ୟାତ୍ମିକ ପ୍ରଶ୍ନର ଏକ ସରଳ ସମାଧାନର ପଥ

Digitized by srujanika@gmail.com

॥ ଚାରି ॥

# ଏକ ଐତିହାସିକ ଭେଟ - ଶ୍ରୀରାମକୃଷ୍ଣ ପରମହଂସଙ୍କ ସହ ମିଳନ

ନରେନ୍ଦ୍ର ପହଞ୍ଚିଲେ ଦକ୍ଷିଣେଶ୍ୱରରେ । ସାଙ୍ଗରେ ଥିଲେ କେତେଜଣ ବାଲ୍ୟ ବନ୍ଧୁ । ବିଶ୍ୱର ଆଧ୍ୟାତ୍ମିକ ଇତିହାସରେ ଏହା ଥିଲା ଏକ ମହତ୍ୱପୂର୍ଣ୍ଣ ଓ ଶୁଭଙ୍କରୀ ମୁହୂର୍ତ୍ତ । କାରଣ ଯେଉଁ ବ୍ୟକ୍ତିଙ୍କୁ ସେ ଭେଟିବାକୁ ଯାଉଛନ୍ତି, ସେହି ବ୍ୟକ୍ତି ହିଁ 'ସଁବାଳୁଆ ପ୍ରଜାପତିରେ ପରିଣତ ହେବା ଭଳି' ଭବିଷ୍ୟତରେ ତାଙ୍କୁ ବିବେକାନନ୍ଦରେ ରୂପାନ୍ତରିତ କରିବେ । ଅନ୍ୟପକ୍ଷରେ ଶ୍ରୀରାମକୃଷ୍ଣ ପରମହଂସ, ଦକ୍ଷିଣେଶ୍ୱର କାଳୀମନ୍ଦିର ପରିସର ଭିତର ଓ ବାହାରେ, ବହୁ ବର୍ଷ ହେଲା ପ୍ରତୀକ୍ଷାରତ, ଯଦିଓ ବହୁ ଭକ୍ତ, ଜ୍ଞାନୀ, ପଣ୍ଡିତ ତଥା ଆଧ୍ୟାତ୍ମିକ ଜ୍ଞାନପିପାସୁ ଯୁବକଙ୍କ ଦ୍ୱାରା ସେ ଥିଲେ ବେଷ୍ଟିତ ତଥାପି ସେମାନଙ୍କ ମଧ୍ୟରୁ ଜଣକୁ ଏକ ସର୍ବସୁନ୍ଦର ପ୍ରଜାପତିରେ ରୂପାନ୍ତରଣ କରିବାର ସମ୍ଭାବ୍ୟତା ସେ ଦେଖି ନ ଥିଲେ । ତାହାର ଅର୍ଥ ନୁହେଁ ଯେ ଯେଉଁମାନେ ତାଙ୍କ ପାଖକୁ ଆସୁଥିଲେ ଏବଂ ତାଙ୍କୁ ଭଲ ପାଉଥିଲେ, ସେମାନେ ସମସ୍ତେ ପ୍ରଜାପତି ହେବାର ସମ୍ଭାବ୍ୟତା ବହନ କରୁ ନ ଥିଲେ । ସେମାନଙ୍କ ମଧ୍ୟରୁ ଅବଶ୍ୟ ଅନେକ ଉଚ୍ଚକୋଟିର ସାଧକ ଥିଲେ କିନ୍ତୁ ତାଙ୍କ ତପସ୍ୟାର ଫଳ ଓ ଭାବଧାରାକୁ ଜନକଲ୍ୟାଣ ଉଦ୍ଦେଶ୍ୟରେ ବିଶ୍ୱବ୍ୟାପୀ ପ୍ରଚାର କରିବାର ସାମର୍ଥ ସେମାନଙ୍କର ନ ଥିଲା ବୋଲି ସେ ଅନୁଭବ କରିଥିଲେ । ବୋଧହୁଏ ଯେପରି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ, ଶ୍ରୀରାମ ହନୁମାନଙ୍କୁ, ମହାକାରୁଣିକ ବୁଦ୍ଧ ଭିକ୍ଷୁ ଆନନ୍ଦଙ୍କୁ, ଶ୍ରୀଗୌରାଙ୍ଗ ନିତ୍ୟାନନ୍ଦଙ୍କୁ ଏବଂ ଯୀଶୁଖ୍ରୀଷ୍ଟ ପିଟରଙ୍କୁ ବାଛିଥିଲେ ଏବଂ ନିଜ ନିଜର ସାଧନାଲବ୍ଧ ଜ୍ଞାନ ଓ ଦୃଷ୍ଟିକୋଣକୁ ହସ୍ତାନ୍ତର କରିଥିଲେ, ଠିକ୍ ସେହିଭଳି ଶ୍ରୀରାମକୃଷ୍ଣ ପରମହଂସ ନରେନ୍ଦ୍ର ପାଇଁ ଅପେକ୍ଷା କରିଥିଲେ । ଯାହାହେଉ, ସେହି ଦୈବମୁହୂର୍ତ୍ତ ଉପସ୍ଥିତ ହେଲା ଦକ୍ଷିଣେଶ୍ୱରରେ ।

ପଶ୍ଚିମ ଦୁଆରପଟୁ ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କ କୋଠରିକୁ ପ୍ରବେଶ କଲେ । ନିଜ ଦେହ ଓ ପୋଷାକ ପ୍ରତି ଆଦୌ ସେ ଯତ୍ନଶୀଳ ନ ଥିଲେ । ତାଙ୍କର ଚକ୍ଷୁଯୁଗଳ ପ୍ରଶ୍ନିଳ, ସତେକି ମନ ହଜି ଯାଇଥିଲା କୌଣସି ଏକ ଉଚ୍ଚତମ ବସ୍ତୁକୁ ଜାଣିବାର ନିଶାରେ । କଲିକତା ସହରଭିତରୁ ଏଭଳି ଏକ ଆଧ୍ୟାତ୍ମିକ ଅନ୍ୱେଷଣୀ ଆତ୍ମା ତାଙ୍କ ନିକଟରେ ଉପନୀତ ହେବ ବୋଲି ପ୍ରଥମେ ସେ ବିଶ୍ୱାସ କରିପାରୁ ନ ଥିଲେ । କୋଠରି ଚଟାଣରେ ଗାଲିଚାଟିଏ ବିଛାଇ ଦେଲେ । ସାଙ୍ଗମାନଙ୍କ ସହ ନରେନ୍ଦ୍ର ଉପବେଶନ କଲେ । ନରେନ୍ଦ୍ର ତିନି-ଚାରୋଟି ବଙ୍ଗଳା ଭଜନ ଶିଖିଛନ୍ତି ବୋଲି

Digitized by srujanika@gmail.com

ଶ୍ରୀରାମକୃଷ୍ଣ ପୂର୍ବରୁ ଅବଗତ ଥିଲେ । ତେଣୁ ଗୋଟିଏ ଭଜନ ଗାନ କରିବା ପାଇଁ ସେ ନରେନ୍ଦ୍ରଙ୍କୁ କହିଲେ । ସୁଲଳିତ ଓ ବୀଣାବିନିନ୍ଦିତ ସ୍ୱରରେ ନରେନ୍ଦ୍ର ଗାଇ ଉଠିଲେ, ''ରେ ମନ ଅପରିଚିତ ପଥିକଟିଏ ପରି ଏହି ବିଦେଶୀ ସ୍ଥାନରେ କାହିଁକି ଭ୍ରମଣ କରୁଛ, ନିଜର ନିକେତନକୁ ଚାଲ ।''

ସାପୁଆ କେଳାର ପଦ୍ମତୋଳା ଡାକରେ ନାଗରାଜ ଯେପରି ଅପଲକ ନୟନରେ, ମନ୍ତ୍ରମୁଗ୍ଧ ହୋଇ, ଫଣା ଉତ୍ତୋଳନ କରି ଅବଲୋକନ କରେ, ଠିକ୍ ସେଭଳି ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କର ଅନ୍ତର୍ମୁଖୀ ମନ ଭିତରୁ ବ୍ରହ୍ମନାଦ ଶ୍ରବଣ କରି ତନ୍ମୟ ହୋଇଉଠିଲେ । ଆଗପଛ କିଛି ବିଚାର ନ କରି, ସ୍ନେହରେ ନରେନ୍ଦ୍ରଙ୍କ ହାତ ଧରି ନେଇଗଲେ ଏକ ଗୋପନ କକ୍ଷକୁ ଏବଂ କକ୍ଷ ଭିତରୁ ଦ୍ୱାର ବନ୍ଦ କରିଦେଲେ । ତାଙ୍କର ଏତାଦୃଶ ନାଟକୀୟ ଆଚରଣ ଦେଖି ନରେନ୍ଦ୍ର କିଛି ବୁଝିପାରୁ ନ ଥିଲେ, ସତେକି ସେ ନିଜର ବ୍ୟକ୍ତିତ୍ୱ ଦ୍ୱାରା ପରିଚାଳିତ ନହୋଇ, ସେହି ସନ୍ଥପ୍ରାଣ ରାମକୃଷ୍ଣଙ୍କ ସ୍ନେହ ରଜ୍ଜୁରେ ଟାଣି ହୋଇଯାଉଛନ୍ତି ! ଗୋଟିଏ ରୁଦ୍ଧ କୋଠରିରେ ମୁହୂର୍ତ୍ତକ ପାଇଁ ଶ୍ରୀରାମକୃଷ୍ଣଙ୍କୁ ଏକୁଟିଆ ପାଇ, ନରେନ୍ଦ୍ର ଭାବିନେଇଥିଲେ ଯେ ବୋଧହୁଏ ସେ ତାଙ୍କୁ କିଛି ଉପଦେଶ ଦେବେ । କିନ୍ତୁ ଘଟଣାଟି ସେଠାରେ ଅନ୍ୟପ୍ରକାର ଘଟିଲା ।

ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କର ହାତଧରି, ନିର୍ନିମେଷ ନୟନରେ ଚାହିଁଥିଲେ ଏବଂ ତାଙ୍କ ଚକ୍ଷୁଯୁଗଳରୁ ଝରୁଥିଲା ଅବିଶ୍ରାନ୍ତ ଅଶ୍ରୁ । କିୟତ୍‌କ୍ଷଣଉତ୍ତାରୁ ଅତି କୋମଳ କଣ୍ଠରେ ସେ କହିଲେ, ''ବାବା, ତୁ ଅନେକ ବିଳମ୍ବରେ ଏଠାକୁ ଆସିଛୁରେ । ଏତେଦିନ ଧରି ନିର୍ଦ୍ଦୟ ଭାବରେ ମୋତେ ତୁ ଅପେକ୍ଷାରତ କାହିଁକି କରାଇଥିଲୁ ? ସଂସାରୀମାନଙ୍କର ବିଷୟବାସନାର କଥା ଶୁଣିଶୁଣି ମୋ କାନ ପୋଡ଼ି ଗଲାଣିରେ । ଆହାଃ... ଆଜି ତୋତେ ପାଇଛି । ସବୁକଥା ତୋତେ କହିବି, ସବୁକିଛି ତୋତେ ଦେଇଦେବି, କାହିଁକିନା, ତୁ ମୋର ଏକମାତ୍ର ଆପଣାରଲୋକ ଯିଏ ମୋ ହୃଦୟର ଭାଷା ଓ ଅନୁଭୂତିକୁ ଠିକ୍ ଭାବରେ ବୁଝିପାରିବ ।'' ଏହି କେଇପଦ କଥା ସେ କେବଳ କହୁ ନ ଥିଲେ, ବରଂ ପିଲାଟିଏ ଭଳି ଧକେଇ ଧକେଇ କାନ୍ଦୁଥିଲେ । ଏହି ଅନ୍ତର୍ମୁଖୀ ନାଟକର ଶେଷ ଏତିକିରେ ହେଲାନାହିଁ । ହାତଯୋଡ଼ି ଓ ଅନୁନୟ ବିନୟ ହୋଇ, ନରେନ୍ଦ୍ରଙ୍କ ସମ୍ମୁଖରେ ଠିଆ ହୋଇ କହିବାକୁ ଆରମ୍ଭ କଲେ, ''ହେ ଭଗବାନ୍, ମୁଁ ତୁମକୁ ଚିହ୍ନିଛି । ତୁମେ ସେହି ପୁରାତନ ଋଷି ନର-ନାରାୟଣ । ଏଥର ତୁମେ ଜଗତର ହିତ ଓ ଉଦ୍ଧାର ନିମନ୍ତେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଛ ।''

ଦକ୍ଷିଣେଶ୍ୱରର ଏହି ବ୍ରାହ୍ମଣଙ୍କର ବିଚିତ୍ର ବ୍ୟବହାରରେ ନରେନ୍ଦ୍ର ଅବାକ୍ ଓ ନିସ୍ତବ୍ଧ ହେଲେ । କିଏ ଏହି ବ୍ୟକ୍ତି ଯାହାଙ୍କୁ ମୁଁ ଆଜି ଦର୍ଶନ କରୁଛି ? ନିଶ୍ଚିତ ରୂପେ ସେ ଜଣେ ବଦ୍ଧ ପାଗଳ ! ମୁଁ ବିଶ୍ୱନାଥ ଦତ୍ତଙ୍କର ପୁତ୍ର । ମୁଁ ବା କିପରି ହୋଇପାରିବି ନରରୂପୀ ନାରାୟଣ ? ମୁଁ ପୁଣି ଜଗତ ଉଦ୍ଧାର ପାଇଁ ଆସିଛି ! ତାଙ୍କର ମନ ଓ ହୃଦୟ ସନ୍ଦେହ ଜାଲରେ କ୍ରମଶଃ ସଂଶୟାଚ୍ଛନ୍ନ ହେବାକୁ ଲାଗିଲା । ତଥାପି ନରେନ୍ଦ୍ର ନିଜ ମନର ଭାଷାକୁ ବ୍ୟକ୍ତ ନ କରି, ପାଗଳା ବ୍ରାହ୍ମଣ ଆଉ କ'ଣ ନାଟକ ରଚନା କରିବାକୁ ଯାଉଛନ୍ତି, ତାହା ଜାଣିବା ପାଇଁ ଅପେକ୍ଷା କଲେ । କିଛି ସମୟପରେ, ଶ୍ରୀରାମକୃଷ୍ଣ ନିଜ କୋଠରି ଭିତରକୁ ପ୍ରବେଶ କରି କିଛି ମିଶ୍ରି ଓ ଲହୁଣି ଧରିଆସି

Digitized by srujanika@gmail.com

ଦେଖାଇଦେବେ । କିନ୍ତୁ ପାଶ୍ଚାତ୍ୟ ଦର୍ଶନ ଓ ସାହିତ୍ୟ, ବ୍ରାହ୍ମ ଧର୍ମର ନିରାକାରବାଦ ଓ ସାମାଜିକ ସଂସ୍କାର ଏବଂ ହିନ୍ଦୁ ଧର୍ମର ମୂର୍ତ୍ତିପୂଜା ପ୍ରତି ନକାରାତ୍ମକ ଚିନ୍ତାଧାରା ଦ୍ୱାରା ନରେନ୍ଦ୍ରଙ୍କର ମାନସିକତା ଏଭଳିଭାବେ ପ୍ରଭାବିତ ଓ ଆଚ୍ଛନ୍ନ, ସେ କ'ଣ ଜଣେ ପୌତ୍ତଳିକ ପାଖରୁ ନିଜର ତୃଷାକୁ ମେଣ୍ଟାଇ ପାରିବେ ? ନରେନ୍ଦ୍ରଙ୍କ ଭିତରେ ଦାଉ ଦାଉ ଜଳୁଥିବା ମନର ଅବସ୍ଥାକୁ ଯେଉଁମାନେ ସେତେବେଳେ ଲକ୍ଷ୍ୟ କରିଥିବେ, ସେମାନେ ନିଶ୍ଚିତ ଭାବରେ ଏତାଦୃଶ ପ୍ରଶ୍ନର ସମ୍ମୁଖୀନ ହୋଇଥିବେ, ଏଥିରେ ସନ୍ଦେହ ନାହିଁ ।

ଶ୍ରୀରାମକୃଷ୍ଣ ପରମହଂସଙ୍କର ଦର୍ଶନାଭିଳାଷୀ ନରେନ୍ଦ୍ରଙ୍କର ମୁହାଁମୁହିଁ ଭେଟର ପ୍ରଥମ ସୁଯୋଗ ୧୮୮୧ ନଭେମ୍ବର ମାସରେ ଉପସ୍ଥିତ ହେଲା । ଯୁବଭକ୍ତ ସୁରେନ୍ଦ୍ରନାଥ ମିତ୍ର ତାଙ୍କୁ ନିଜ ଗୃହକୁ ନିମନ୍ତ୍ରିତ କରିଥାନ୍ତି । ତାଙ୍କର ଆଗମନ ଉପଲକ୍ଷେ ଭଜନ ଓ କୀର୍ତ୍ତନ ଗୃହରେ ଆୟୋଜିତ ହୋଇଥିଲା ଏବଂ ଅନେକ ବନ୍ଧୁ ଓ ଭକ୍ତ ମଧ୍ୟ ଆମନ୍ତ୍ରିତ ହୋଇଥିଲେ । ନରେନ୍ଦ୍ର ମଧ୍ୟ ସେଦିନ ଉପସ୍ଥିତ ଥିଲେ । ସେ ଭଜନଟିଏ ସୁଲଳିତ କଣ୍ଠରେ ଗାନ କଲେ । ନରେନ୍ଦ୍ରଙ୍କର ବୀଣାବିନିନ୍ଦିତ ସ୍ୱର ଓ ସଂଗୀତର ମୂର୍ଚ୍ଛନା ଶ୍ରୀରାମକୃଷ୍ଣଙ୍କୁ ମନ୍ତ୍ରମୁଗ୍ଧ କଲା । ସେ ଚାହିଁଲେ ଅପଲକ ନୟନରେ ନରେନ୍ଦ୍ରଙ୍କୁ । କିଏ ଏହି ଯୁବକ ? ଯୁବକଙ୍କ ବିଷୟରେ ଅଧିକ ଜାଣିବାପାଇଁ ସେ ଉତ୍କଣ୍ଠିତ ହୋଇପଡ଼ିଲେ । ଅନ୍ୟମାନଙ୍କଠାରୁ ନିମିଷକ ଭିତରେ ନରେନ୍ଦ୍ରଙ୍କ ବିଷୟରେ ସବୁ ବୁଝିନେଲେ । ତାଙ୍କୁ ଆଉ କିଏ ସମ୍ଭାଳେ ! ସ୍ନେହପୂର୍ଣ୍ଣ କଣ୍ଠରେ ସେ ଏତିକିମାତ୍ର କହିଥିଲେ ''ବାବା, ଦକ୍ଷିଣେଶ୍ୱରକୁ ଥରେ ଆସ ।'' ତାଙ୍କର ସ୍ନେହପୂର୍ଣ୍ଣ ଓ ଆନ୍ତରିକ ନିମନ୍ତ୍ରଣକୁ ନରେନ୍ଦ୍ର ବିନାଦ୍ୱିଧାରେ ସେହିଠି ହିଁ ଗ୍ରହଣ କଲେ । ଏହି ମୁହାଁମୁହିଁ ଭେଟ ଓ ସ୍ନେହପୂର୍ଣ୍ଣ ନିମନ୍ତ୍ରଣ ବୋଧହୁଏ ଥିଲା ବିଧି ନିର୍ଦ୍ଦେଶିତ । ନରେନ୍ଦ୍ରଙ୍କ ମନ ଓ ହୃଦୟ ଏକ ଅନିର୍ବଚନୀୟ ଆନନ୍ଦରେ ଉତ୍ଫୁଲ୍ଲିତ ହୋଇଉଠିଲା । ସତେକି ଏହି ସନ୍ଥ ତାଙ୍କ ହାତଧରି ପଥ ଦେଖାଇଦେବେ, ଯେଉଁ ପଥକୁ ଲାଭକରିବା ପାଇଁ ସେ ଖାଲି ତହଳବିକଳ ହେଉଛନ୍ତି ।

ଅନନ୍ତ ଶୂନ୍ୟ ଆକାଶ ଏଭଳିଭାବେ ପରିବ୍ୟାପ୍ତ ଓ ପ୍ରସାରିତଯେ ତାହାର ଆଦି ଓ ଅନ୍ତ କଳନା କରିବା ସମ୍ଭବ ନୁହେଁ । ଏତାଦୃଶ ଅନନ୍ତରୂପୀ ବିଶାଳତା ଭିତରେ ଲମ୍ଫ ପ୍ରଦାନ କରି ଯିଏ ତା'ର ଗଭୀରତା ମାପିବାକୁ ଚେଷ୍ଟା କରେ ଏବଂ ସେହି ଉଦ୍ୟମରେ ତାକୁ କୂଳକିନାରା ମିଳୁ ନ ଥିଲେ ବି, ସେ ଆଦୌ ହତୋତ୍ସାହ ନ ହୋଇ ନିଜ ଲକ୍ଷ୍ୟ ଅଭିମୁଖେ ନିରନ୍ତର ଅଗ୍ରସର ହେଉଥାଏ । ଏଭଳି ବ୍ୟକ୍ତିଙ୍କୁ ଆମେ ସାଧାରଣତଃ ନିର୍ବୋଧ ବୋଲି କହିପାରୁ । କାରଣ ସାମର୍ଥ୍ୟ, ତା'ର ସୀମିତ । ସସୀମ କେବଳ ଅସୀମ ଆଡ଼କୁ ଚାହିଁପାରିବ କିନ୍ତୁ ଅସୀମକୁ ବିଭାଜିତ କରିପାରିବ ନାହିଁ ବୋଲି ସେ ଭଲଭାବରେ ଜାଣିଥାଏ । କିନ୍ତୁ କୋଟିଏରେ ଗୋଟିଏ ମଣିଷ ଥା'ନ୍ତି, ଯିଏ ନିଜର ସୀମିତ ସାମର୍ଥ୍ୟକୁ ଭ୍ରୂକ୍ଷେପ ନକରି ଅସୀମତା ଭିତରେ ପଶିଯା'ନ୍ତି ଏବଂ ନିଜ ଲକ୍ଷ୍ୟର ଅନ୍ୱେଷଣରେ ମଗ୍ନ ହୁଅନ୍ତି । ଏଭଳି ବ୍ୟକ୍ତିତ୍ୱ ଥିଲେ ନରେନ । ନିଜର ସୀମା ଭିତରେ ନିଜର ଲକ୍ଷ୍ୟକୁ ବାରମ୍ବାର ଖୋଜିଲେ, କିନ୍ତୁ ତନ୍ମଧ୍ୟରେ କୌଣସିସ୍ଥିତିରେ ତାଙ୍କର ଅଗ୍ନିବର୍ଷୀ ମନ ଶାନ୍ତ

Digitized by srujanika@gmail.com

ହେଲାନାହିଁ । ସତେକି ଛଳନା, ମିଥ୍ୟା, ଶଠତା ଦ୍ୱାରା ସମସ୍ତ ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ଆବୃତ ଏବଂ ସେମାନଙ୍କ ପ୍ରମୁଖ ବଡ଼ପଣ୍ଡାମାନେ ସତ୍ୟଠୁଁ ବହୁ ଦୂରରେ ରହିଛନ୍ତି । ନରେନ୍ଙ୍କର ଅନ୍ୱେଷଣରତ ଅଗ୍ନିବର୍ଷୀ ମନ ବିଦ୍ରୋହ ନିଆଁରେ ପ୍ରଜ୍ୱଳିତ ହୋଇଉଠୁଥିଲା ।

ଶ୍ରୀରାମକୃଷ୍ଣ ପରମହଂସଙ୍କ ସହ ପ୍ରଥମ ଅନୌପଚାରିକ ସାକ୍ଷାତ ନରେନ୍ଙ୍କ ବିଦ୍ରୋହୀ ମନରେ ଏକ ନୂତନ ଆଶା ସଞ୍ଚାରଣ କଲା । ତାଙ୍କର ବାଳକସୁଲଭ ମୁଖମଣ୍ଡଳ, ହଜିଲା ହଜିଲା ଚକ୍ଷୁଦ୍ୱୟ, ହାସ୍ୟ ଲହରିତ ଅଧର ଏବଂ ସ୍ନେହଭରା କେଇପଦକଥା ନରେନ୍ଙ୍କ ମାନସପଟରେ ଏକ ପଥଚିତ୍ରଟିଏ ଆଙ୍କିଦେଲା, ଯେଉଁ ପଥରେ ଗମନ କଲେ, ଲକ୍ଷ୍ୟସ୍ଥଳରେ ନିଶ୍ଚିତ ଉପନୀତ ହେବାର ବିଶ୍ୱାସ ସୃଷ୍ଟି ହେଲା । ନରେନ୍ ଅଧୀର ହୋଇପଡ଼ିଲେ । ତାଙ୍କୁ ଭେଟିବାର ଆଗ୍ରହ ବନ୍ୟାସ୍ରୋତ ସମ ପ୍ଳାବିତ ହେଲା । ଯୁବାବସ୍ଥାରେ ଦୁଇଟି ବିପରୀତଧର୍ମୀ ଚିନ୍ତା ନରେନ୍ଙ୍କୁ ପ୍ରାୟ ଗ୍ରାସ କରୁଥିଲା । ଗୋଟିଏ ପକ୍ଷରେ ସାଂସାରିକ ଜୀବନର ମୋହ ଓ ମାଧୁର୍ଯ୍ୟ, ଅନ୍ୟପକ୍ଷରେ କପର୍ଦ୍ଦକ ଶୂନ୍ୟ ପରିବ୍ରାଜକ ସନ୍ନ୍ୟାସୀ ଜୀବନ । ସେ ଭଲଭାବରେ ଜାଣିଥିଲେଯେ ଏହି ଦୁଇଟି ମାର୍ଗର ଗୋଟିଏ ମାର୍ଗକୁ ଯଦି ସେ ବାଛିନେବେ, ସେଥିରେ ସେ ନିଶ୍ଚୟ ସଫଳତା ଲାଭ କରିପାରିବେ । ଏହି ଦୃଢ଼ ଆତ୍ମବିଶ୍ୱାସ ତାଙ୍କର ଥିଲା । କିନ୍ତୁ ତାଙ୍କର ଅନ୍ତରାତ୍ମା ତ୍ୟାଗର ପଥ ଅଭିମୁଖେ ବେଶି ଆକର୍ଷିତ ହେଉଥିଲା । କାରଣ ସାଂସାରିକ ଜୀବନର ଅଳିକତା ଓ ନିରର୍ଥକତା ସମ୍ବନ୍ଧରେ ସେ ବେଶ୍ ସଚେତନ ଥିଲେ ।



Digitized by srujanika@gmail.com

ଦେଖାଇଦେବେ । କିନ୍ତୁ ପାଶ୍ଚାତ୍ୟ ଦର୍ଶନ ଓ ସାହିତ୍ୟ, ବ୍ରାହ୍ମ ଧର୍ମର ନିରାକାରବାଦ ଓ ସାମାଜିକ ସଂସ୍କାର ଏବଂ ହିନ୍ଦୁ ଧର୍ମର ମୂର୍ତ୍ତିପୂଜା ପ୍ରତି ନକାରାତ୍ମକ ଚିନ୍ତାଧାରା ଦ୍ୱାରା ନରେନ୍ଦ୍ରଙ୍କର ମାନସିକତା ଏଭଳିଭାବେ ପ୍ରଭାବିତ ଓ ଆଚ୍ଛନ୍ନ, ସେ କ'ଣ ଜଣେ ପୌତ୍ତଳିକ ପାଖରୁ ନିଜର ତୃଷ୍ଣାକୁ ମେଣ୍ଟାଇ ପାରିବେ ? ନରେନ୍ଦ୍ରଙ୍କ ଭିତରେ ଦାଉ ଦାଉ ଜଳୁଥିବା ମନର ଅବସ୍ଥାକୁ ଯେଉଁମାନେ ସେତେବେଳେ ଲକ୍ଷ୍ୟ କରିଥିବେ, ସେମାନେ ନିଶ୍ଚିତ ଭାବରେ ଏତାଦୃଶ ପ୍ରଶ୍ନର ସମ୍ମୁଖୀନ ହୋଇଥିବେ, ଏଥିରେ ସନ୍ଦେହ ନାହିଁ ।

ଶ୍ରୀରାମକୃଷ୍ଣ ପରମହଂସଙ୍କର ଦର୍ଶନାଭିଳାଷୀ ନରେନ୍ଦ୍ରଙ୍କର ମୁହାଁମୁହିଁ ଭେଟର ପ୍ରଥମ ସୁଯୋଗ ୧୮୮୧ ନଭେମ୍ବର ମାସରେ ଉପସ୍ଥିତ ହେଲା । ଯୁବଭକ୍ତ ସୁରେନ୍ଦ୍ରନାଥ ମିତ୍ର ତାଙ୍କୁ ନିଜ ଗୃହକୁ ନିମନ୍ତ୍ରିତ କରିଥାନ୍ତି । ତାଙ୍କର ଆଗମନ ଉପଲକ୍ଷେ ଭଜନ ଓ କୀର୍ତ୍ତନ ଗୃହରେ ଆୟୋଜିତ ହୋଇଥିଲା ଏବଂ ଅନେକ ବନ୍ଧୁ ଓ ଭକ୍ତ ମଧ୍ୟ ଆମନ୍ତ୍ରିତ ହୋଇଥିଲେ । ନରେନ୍ଦ୍ର ମଧ୍ୟ ସେଦିନ ଉପସ୍ଥିତ ଥିଲେ । ସେ ଭଜନଟିଏ ସୁଲଳିତ କଣ୍ଠରେ ଗାନ କଲେ । ନରେନ୍ଦ୍ରଙ୍କର ବୀଣାବିନିନ୍ଦିତ ସ୍ୱର ଓ ସଂଗୀତର ମୂର୍ଚ୍ଛନା ଶ୍ରୀରାମକୃଷ୍ଣଙ୍କୁ ମନ୍ତ୍ରମୁଗ୍ଧ କଲା । ସେ ଚାହିଁଲେ ଅପଲକ ନୟନରେ ନରେନ୍ଦ୍ରଙ୍କୁ । କିଏ ଏହି ଯୁବକ ? ଯୁବକଙ୍କ ବିଷୟରେ ଅଧିକ ଜାଣିବାପାଇଁ ସେ ଉତ୍କଣ୍ଠିତ ହୋଇପଡ଼ିଲେ । ଅନ୍ୟମାନଙ୍କଠାରୁ ନିମିଷକ ଭିତରେ ନରେନ୍ଦ୍ରଙ୍କ ବିଷୟରେ ସବୁ ବୁଝିନେଲେ । ତାଙ୍କୁ ଆଉ କିଏ ସମ୍ଭାଳେ ! ସ୍ନେହପୂର୍ଣ୍ଣ କଣ୍ଠରେ ସେ ଏତିକିମାତ୍ର କହିଥିଲେ ''ବାବା, ଦକ୍ଷିଣେଶ୍ୱରକୁ ଥରେ ଆସ ।'' ତାଙ୍କର ସ୍ନେହପୂର୍ଣ୍ଣ ଓ ଆନ୍ତରିକ ନିମନ୍ତ୍ରଣକୁ ନରେନ୍ଦ୍ର ବିନାଦ୍ୱିଧାରେ ସେହିଠି ହିଁ ଗ୍ରହଣ କଲେ । ଏହି ମୁହାଁମୁହିଁ ଭେଟ ଓ ସ୍ନେହପୂର୍ଣ୍ଣ ନିମନ୍ତ୍ରଣ ବୋଧହୁଏ ଥିଲା ବିଧି ନିର୍ଦ୍ଦେଶିତ । ନରେନ୍ଦ୍ରଙ୍କ ମନ ଓ ହୃଦୟ ଏକ ଅନିର୍ବଚନୀୟ ଆନନ୍ଦରେ ଉତ୍ଫୁଲ୍ଲିତ ହୋଇଉଠିଲା । ସତେକି ଏହି ସନ୍ଥ ତାଙ୍କ ହାତଧରି ପଥ ଦେଖାଇଦେବେ, ଯେଉଁ ପଥକୁ ଲାଭକରିବା ପାଇଁ ସେ ଖାଲି ତହଳବିକଳ ହେଉଛନ୍ତି ।

ଅନନ୍ତ ଶୂନ୍ୟ ଆକାଶ ଏଭଳିଭାବେ ପରିବ୍ୟାପ୍ତ ଓ ପ୍ରସାରିତଯେ ତାହାର ଆଦି ଓ ଅନ୍ତ କଳନା କରିବା ସମ୍ଭବ ନୁହେଁ । ଏତାଦୃଶ ଅନନ୍ତରୂପୀ ବିଶାଳତା ଭିତରେ ଲମ୍ଫ ପ୍ରଦାନ କରି ଯିଏ ତା'ର ଗଭୀରତା ମାପିବାକୁ ଚେଷ୍ଟା କରେ ଏବଂ ସେହି ଉଦ୍ୟମରେ ତାଙ୍କୁ କୂଳକିନାରା ମିଳୁ ନ ଥିଲେ ବି, ସେ ଆଦୌ ହତୋତ୍ସାହ ନ ହୋଇ ନିଜ ଲକ୍ଷ୍ୟ ଅଭିମୁଖେ ନିରନ୍ତର ଅଗ୍ରସର ହେଉଥାଏ । ଏଭଳି ବ୍ୟକ୍ତିଙ୍କୁ ଆମେ ସାଧାରଣତଃ ନିର୍ବୋଧ ବୋଲି କହିପାରୁ । କାରଣ ସାମର୍ଥ୍ୟ, ତା'ର ସୀମିତ । ସସୀମ କେବଳ ଅସୀମ ଆଡ଼କୁ ଚାହିଁପାରିବ କିନ୍ତୁ ଅସୀମକୁ ବିଭାଜିତ କରିପାରିବ ନାହିଁ ବୋଲି ସେ ଭଲଭାବରେ ଜାଣିଥାଏ । କିନ୍ତୁ କୋଟିଏରେ ଗୋଟିଏ ମଣିଷ ଥା'ନ୍ତି, ଯିଏ ନିଜର ସୀମିତ ସାମର୍ଥ୍ୟକୁ ଭ୍ରୂକ୍ଷେପ ନକରି ଅସୀମତା ଭିତରେ ପଶିଯା'ନ୍ତି ଏବଂ ନିଜ ଲକ୍ଷ୍ୟର ଅନ୍ୱେଷଣରେ ମଗ୍ନ ହୁଅନ୍ତି । ଏଭଳି ବ୍ୟକ୍ତିତ୍ୱ ଥିଲେ ନରେନ । ନିଜର ସୀମା ଭିତରେ ନିଜର ଲକ୍ଷ୍ୟକୁ ବାରମ୍ବାର ଖୋଜିଲେ, କିନ୍ତୁ ତତ୍‌ମଧ୍ୟରେ କୌଣସିସ୍ଥିତିରେ ତାଙ୍କର ଅଗ୍ନିବର୍ଷୀ ମନ ଶାନ୍ତ

Digitized by srujanika@gmail.com

ହେଲାନାହିଁ । ସତେକି ଛଳନା, ମିଥ୍ୟା, ଶଠତା ଦ୍ୱାରା ସମସ୍ତ ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ଆବୃତ ଏବଂ ସେମାନଙ୍କ ପ୍ରମୁଖ ବଡ଼ପଣ୍ଡାମାନେ ସତ୍ୟଠୁଁ ବହୁ ଦୂରରେ ରହିଛନ୍ତି । ନରେନ୍ଦ୍ରଙ୍କର ଅନ୍ୱେଷଣରତ ଅଗ୍ନିବର୍ଷୀ ମନ ବିଦ୍ରୋହ ନିଆଁରେ ପ୍ରଜ୍ୱଳିତ ହୋଇଉଠୁଥିଲା ।

ଶ୍ରୀରାମକୃଷ୍ଣ ପରମହଂସଙ୍କ ସହ ପ୍ରଥମ ଅନୌପଚାରିକ ସାକ୍ଷାତ ନରେନ୍ଦ୍ରଙ୍କ ବିଦ୍ରୋହୀ ମନରେ ଏକ ନୂତନ ଆଶା ସଞ୍ଚାରଣ କଲା । ତାଙ୍କର ବାଳକସୁଲଭ ମୁଖମଣ୍ଡଳ, ହଜିଲା ହଜିଲା ଚକ୍ଷୁଦ୍ୱୟ, ହାସ୍ୟ ଲହରିତ ଅଧର ଏବଂ ସ୍ନେହଭରା କେଇପଦକଥା ନରେନ୍ଦ୍ରଙ୍କ ମାନସପଟରେ ଏକ ପଥଚିତ୍ରଟିଏ ଆଙ୍କିଦେଲା, ଯେଉଁ ପଥରେ ଗମନ କଲେ, ଲକ୍ଷ୍ୟସ୍ଥଳରେ ନିଶ୍ଚିତ ଉପନୀତ ହେବାର ବିଶ୍ୱାସ ସୃଷ୍ଟି ହେଲା । ନରେନ୍ଦ୍ର ଅଧୀର ହୋଇପଡ଼ିଲେ । ତାଙ୍କୁ ଭେଟିବାର ଆଗ୍ରହ ବନ୍ୟାସ୍ରୋତ ସମ ପ୍ଲାବିତ ହେଲା । ଯୁବାବସ୍ଥାରେ ଦୁଇଟି ବିପରୀତଧର୍ମୀ ଚିନ୍ତା ନରେନ୍ଦ୍ରଙ୍କୁ ପ୍ରାୟ ଗ୍ରାସ କରୁଥିଲା । ଗୋଟିଏ ପକ୍ଷରେ ସାଂସାରିକ ଜୀବନର ମୋହ ଓ ମାଧୁର୍ଯ୍ୟ, ଅନ୍ୟପକ୍ଷରେ କପର୍ଦ୍ଦକ ଶୂନ୍ୟ ପରିବ୍ରାଜକ ସନ୍ୟାସୀ ଜୀବନ । ସେ ଭଲଭାବରେ ଜାଣିଥିଲେଯେ ଏହି ଦୁଇଟି ମାର୍ଗର ଗୋଟିଏ ମାର୍ଗକୁ ଯଦି ସେ ବାଛିନେବେ, ସେଥିରେ ସେ ନିଶ୍ଚୟ ସଫଳତା ଲାଭ କରିପାରିବେ । ଏହି ଦୃଢ଼ ଆତ୍ମବିଶ୍ୱାସ ତାଙ୍କର ଥିଲା । କିନ୍ତୁ ତାଙ୍କର ଅନ୍ତରାତ୍ମା ତ୍ୟାଗର ପଥ ଅଭିମୁଖେ ବେଶି ଆକର୍ଷିତ ହେଉଥିଲା । କାରଣ ସାଂସାରିକ ଜୀବନର ଅଳିକତା ଓ ନିରର୍ଥକତା ସମ୍ବନ୍ଧରେ ସେ ବେଶ୍ ସଚେତନ ଥିଲେ ।



Digitized by srujanika@gmail.com

ପହଞ୍ଚିଲେ । ନରେନ୍ଦ୍ରଙ୍କୁ ନିଜ ହାତରେ ଖୁଆଇବାକୁ ଚେଷ୍ଟା କଲେ । କିନ୍ତୁ ନରେନ୍ଦ୍ର ବାରମ୍ବାର ବାରଣ କଲେ । ଶ୍ରୀରାମକୃଷ୍ଣ କ'ଣ ତାଙ୍କୁ ଏତେ ସହଜରେ ଛାଡ଼ିଦେବେ ! ଅତି ଯତ୍ନ ଓ ସ୍ନେହସହକାରେ ମା' ପୁଅକୁ ଖୁଆଇଦେବା ଭଳି ନରେନ୍ଦ୍ରଙ୍କୁ ଖୁଆଇଲେ । କି ଆନନ୍ଦ ଶ୍ରୀରାମକୃଷ୍ଣଙ୍କର !!!

ପୁନଶ୍ଚ ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କର ହାତକୁ ଜାବୁଡ଼ି ଧରି ସସ୍ନେହେ କହିଲେ, ''ବାବା, ଏଠାରେ ଅଜି ପ୍ରତିଜ୍ଞା କର, ଯେତେ ଶୀଘ୍ର ପାର ମୋତେ ତୁମେ ଦେଖା କରିବ !'' ନରେନ୍ଦ୍ର କେବଳ 'ହଁ' ମାରିଲେ । ଫେରି ଆସିଲେ ନିଜର ସାଥୀମାନଙ୍କ ଗହଣକୁ । କିନ୍ତୁ ଶ୍ରୀରାମକୃଷ୍ଣ ଉପସ୍ଥିତ ଭକ୍ତମାନଙ୍କୁ ଚାହିଁ କହି ଉଠିଲେ, ''ଦେଖୁଛ, ଏହି ବାଳକ ଦେବୀ ସରସ୍ୱତୀଙ୍କର ଉଜ୍ଜ୍ୱଳ ଆଲୋକ ।'' ଯେଉଁମାନେ ତାଙ୍କର ଏତାଦୃଶ ମନ୍ତବ୍ୟ ଶୁଣିଲେ, ସେମାନେ ସମସ୍ତେ ନରେନ୍ଦ୍ରଙ୍କୁ ଏକ ଲୟରେ ଚାହିଁଲେ । ତାଙ୍କର ସମ୍ଭାଷଣ ଏହିଠାରେ ସମାପ୍ତ ହେଲାନାହିଁ । ସେ ନରେନ୍ଦ୍ରଙ୍କୁ ପ୍ରଶ୍ନ କଲେ, ''ବାବା, ତୁମେ ଶୋଇବା ପୂର୍ବରୁ, ଆଖି ବନ୍ଦ କରିବା ସମୟରେ ଗୋଟିଏ ଜ୍ୟୋତି ଦର୍ଶନ କର କି ?'' ନରେନ୍ଦ୍ର କହିଲେ, ''ଆଜ୍ଞା ହଁ ।'' ଶ୍ରୀରାମକୃଷ୍ଣଙ୍କର ଆନନ୍ଦ କିଏ ଦେଖେ ? ସେ ତାଙ୍କର ବାଳକ ସ୍ୱଭାବ ଭଙ୍ଗୀରେ ନାଚି ଉଠିଲେ ଏବଂ କହିଲେ, ''ଆହାଃ... ସବୁକିଛି ଆଜି ମେଳ ଖାଇଛି । ଏହି ପିଲା ଜନ୍ମରୁ ଧ୍ୟାନସିଦ୍ଧ ।''

- ୧ -

*ନରେନ୍ଦ୍ରଙ୍କର ଅନ୍ୱେଷଣରତ ମନରୁ ଝରିପଡ଼ିଲା ପ୍ରଶ୍ନଟିଏ :*
*''ମହାଶୟ, ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି ? ଶ୍ରୀରାମକୃଷ୍ଣ ତତ୍‌କ୍ଷଣାତ୍*
*କହିଉଠିଲେ, ''ହଁରେ ବାବା ! ତୁମକୁ ମୁଁ ଏଠାରେ ଯେମିତି ଦେଖୁଛି,*
*ଠିକ୍ ସେମିତି ମୁଁ ତାଙ୍କୁ ଦେଖେ, ବରଂ ଆହୁରି ସ୍ପଷ୍ଟ ଓ ନିବିଡ଼ଭାବେ*
*ମୁଁ ତାଙ୍କୁ ଦେଖେ ।''*

ନରେନ୍ଦ୍ର ଏହି ଅଦ୍ଭୁତ ମାନବଙ୍କର ପ୍ରତ୍ୟେକ ଶବ୍ଦ ଓ ଭାବଭଙ୍ଗୀକୁ ନିଜର ତାର୍କିକ ମନରେ ବିଶ୍ଳେଷଣ କରିବାରେଥିଲେ ମଗ୍ନ । ସେ ଭାବୁଥିଲେ : ''ସେ ଅନ୍ୟମାନଙ୍କ ସହ ଯେଉଁ ଆଚରଣ ପ୍ରଦର୍ଶନ କରୁଛନ୍ତି ଓ କଥା କହୁଛନ୍ତି, ସେଥିରେ ବାସ୍ତବରେ କୌଣସି ତ୍ରୁଟି ନାହିଁ । ତାଙ୍କର ଆଧ୍ୟାତ୍ମିକ ଭାଷା ଓ ଭାବାତୀତ ଅବସ୍ଥାରୁ ପ୍ରତୀୟମାନ ହେଉଛିଯେ ସେ ଜଣେ ଉତ୍କୃଷ୍ଟ ତ୍ୟାଗୀ-ମାନବ । ତାଙ୍କର ପ୍ରତ୍ୟେକ ଶବ୍ଦ ଅମୃତୋପମ । ତାଙ୍କର ଜୀବନଯାତ୍ରା ଓ ଉପଦେଶ ଭିତରେ କୌଣସି ପାର୍ଥକ୍ୟ ତ ଜଣାପଡୁନାହିଁ । ଏଭଳି ସହଜ ଓ ସରଳ ଭାଷାରେ ଗଭୀର ଜ୍ଞାନକୁ ବୁଝାଇପାରୁଥିବା ବ୍ୟକ୍ତି ଜଣେ କ'ଣ ମହାପୁରୁଷ !!!

ନରେନ୍ଦ୍ରଙ୍କର ମନ କ୍ରମଶଃ ହାଲୁକା ହୋଇଗଲା । ପୂର୍ବଭଳି ହଠାତ୍ ତାଙ୍କ ମୁଖରୁ ପ୍ରଶ୍ନଟିଏ ଝରିପଡ଼ିଲା, ''ମହାଶୟ, ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି ?'' ନରେନ୍ଦ୍ରଙ୍କର ପ୍ରଶ୍ନ ଶ୍ରୀରାମକୃଷ୍ଣଙ୍କ ସରଳ ପ୍ରାଣରେ ଆନନ୍ଦର ଲହରିଟିଏ ଖେଳାଇ ଦେବାରୁ, ତାଙ୍କର ବାଳକ ସ୍ୱଭାବ ମୁଖମଣ୍ଡଳ

Digitized by srujanika@gmail.com

ଖୁବ୍ ଉତ୍‌ଫୁଲ୍ଲିତ ହୋଇଉଠିଲା । ସେ ତତ୍‌କ୍ଷଣାତ୍ କହିଉଠିଲେ, ''ହଁ'ରେ ବାବା ! ତୁମକୁ ମୁଁ ଏଠାରେ ଯେମିତି ଦେଖୁଛି, ଠିକ୍ ସେମିତି ମୁଁ ତାଙ୍କୁ ଦେଖେ; ବରଂ ଆହୁରି ସ୍ପଷ୍ଟ ଓ ନିବିଡ଼ ଭାବେ ମୁଁ ତାଙ୍କୁ ଦେଖେ । ଈଶ୍ୱରଙ୍କୁ ଉପଲବ୍ଧି କରିହୁଏ, ଦର୍ଶନ କରିହୁଏ, ତାଙ୍କ ସହ ବି ସିଧା କଥାବାର୍ତ୍ତା କରିହୁଏ । କିନ୍ତୁ ଈଶ୍ୱରଙ୍କୁ କିଏ ବୁଝିବ ? କେବଳ ପତ୍ନୀ, ପୁତ୍ର, ଧନ ସମ୍ପତ୍ତି ପାଇଁ ମଣିଷ ଆଖିରୁ ଅଜସ୍ର ଲୁହ ବୁହାଉଛି କିନ୍ତୁ ଈଶ୍ୱରଙ୍କ ପାଇଁ ଆଖିରୁ ଟୋପାଏ ଲୁହ କାହାରି ଝରେନାହିଁ । ଯଦି ଜଣେ ଆନ୍ତରିକ ସହ ଈଶ୍ୱର ଦର୍ଶନ ପାଇଁ କାନ୍ଦିବ, ଈଶ୍ୱର ନିଶ୍ଚିତ ଭାବେ ତାଙ୍କୁ ଦର୍ଶନ ଦେବେ ହିଁ ଦେବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।''

ଶ୍ରୀରାମକୃଷ୍ଣଙ୍କର କେଇପଦ ସ୍ପଷ୍ଟୋକ୍ତି ଓ ମୁହୂର୍ତ୍ତକ ଆତ୍ମୀୟ ବ୍ୟବହାର ନରେନ୍ଦ୍ରଙ୍କର ଜ୍ୱଳନ୍ତ ମନରେ ବାରି ସିଞ୍ଚନ କଲା । ସେ ଭାବିବାକୁ ଲାଗିଲେ : ଧନ୍ୟ ଏହି ମହାତ୍ମା । ତାଙ୍କୁ ମୋର ସହସ୍ର ପ୍ରଣାମ । ଏତେ ଦିନପରେ ଆଜି ଏଭଳି ଜଣେ ବ୍ୟକ୍ତିଙ୍କୁ ପାଇଛି ଯିଏ ସାହସ ଓ ବିଶ୍ୱାସ ସହିତ କହିପାରୁଛନ୍ତି ଯେ ମୁଁ ଈଶ୍ୱରଙ୍କୁ ଦର୍ଶନ କରିଛି । ତାଙ୍କର ଏତାଦୃଶ ମୁଖନିସୃତ ବାଣୀ ମୋ କାନରେ ବାରମ୍ବାର ଝଙ୍କୃରିତ ହେଉଛି; ମୋ ଅନ୍ତରାତ୍ମା ପ୍ରଚଣ୍ଡ ଦୃଢ଼ ବିଶ୍ୱାସରେ ପରିପୂର୍ଣ୍ଣ ହୋଇ ଉଠୁଛି । ହଁ, ସେ ଜଣେ ସାଧାରଣ ମଣିଷ ନୁହନ୍ତି, ଉପଦେଶ ଛଳରେ ଏହିସବୁ କଥା ସେ କହୁନାହାନ୍ତି । ବରଂ ତାଙ୍କର ଗଭୀର ଅନୁଭୂତିରୁ ଏହା ନିର୍ଗତ ହେଉଛି । ତାଙ୍କର ପ୍ରତ୍ୟେକ ଶବ୍ଦରେ ଭରି ରହିଛି ନିରାଟ ସତ୍ୟ । କିନ୍ତୁ ମୋ ପ୍ରତି ତାଙ୍କର ଅଦ୍ଭୁତ ବ୍ୟବହାରକୁ ଗ୍ରହଣ କରିପାରୁନାହିଁ । ବେଳେବେଳେ ଭାବୁଛି ସେ ଜଣେ ବୋଧହୁଏ ଅର୍ଦ୍ଧପାଗଳ । ତଥାପି ତାଙ୍କର ଅସୀମ ତ୍ୟାଗ ଓ ବୈରାଗ୍ୟକୁ ମୁଁ ମାପି ପାରୁନାହିଁ । ହଁ... ହଁ ସେ ଜଣେ ପାଗଳ ହୋଇପାରନ୍ତି, କିନ୍ତୁ ଅଳ୍ପ କେତେଜଣ ବ୍ୟକ୍ତି ତାଙ୍କ ଭଳି ତ୍ୟାଗୀ ହେବାର ସୌଭାଗ୍ୟ ଅର୍ଜନ କରିପାରିବେ । ସେ କିନ୍ତୁ ପୁଣ୍ୟବାନ ବ୍ୟକ୍ତିଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବ୍ୟକ୍ତିତ୍ୱ । ଜଣେ ସତ୍ୟନିଷ୍ଠ ସନ୍ନ୍ୟାସୀ ଏବଂ ମାନବଜାତିର ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ।

ବହୁ ସକାରାତ୍ମକ ଓ ନକାରାତ୍ମକ ଚିନ୍ତାର ଢେଉ ନରେନ୍ଦ୍ରଙ୍କୁ ଦୁଦାଉ ଥିଲେ ବି ଶ୍ରଦ୍ଧା ଓ ସମ୍ମାନ ସହିତ ଶ୍ରୀରାମକୃଷ୍ଣଙ୍କୁ ପ୍ରଣାମ ଜଣାଇ ନରେନ୍ଦ୍ର ସାଥୀମାନଙ୍କ ଗହଣରେ ଦକ୍ଷିଣେଶ୍ୱରରୁ ସେଦିନ ବିଦାୟ ନେଇ କଲିକତାକୁ ଫେରି ଆସିଥିଲେ । କିନ୍ତୁ ଶ୍ରୀରାମକୃଷ୍ଣଙ୍କର ଦିବ୍ୟ ଆଶୀର୍ବାଦ ଓ ଅହେତୁକ ସ୍ନେହ ନରେନ୍ଦ୍ରଙ୍କ ଚିନ୍ତା ଓ ଚେତନାକୁ ଆଚ୍ଛନ୍ନ କରି ରଖିଥିଲା ବୋଲି କହିଲେ ବାହୁଲ୍ୟ ହେବନାହିଁ । କାରଣ ଶ୍ରୀରାମକୃଷ୍ଣ ହେଉଛନ୍ତି ଶହ ଶହ ମହାପୁରୁଷ, ଋଷି, ମୁନି, ସାଧୁ, ସନ୍ଥ ଓ ଅଗଣିତ ଧର୍ମପ୍ରାଣ ବ୍ୟକ୍ତିଙ୍କର ନିରବଚ୍ଛିନ୍ନ ସାଧନା, ତପସ୍ୟା ଓ ତ୍ୟାଗଦ୍ୱାରା ଋଦ୍ଧିମନ୍ତ ଭାରତୀୟ ସଂସ୍କୃତିର ପ୍ରତୀକ । ତାଙ୍କର ପ୍ରତ୍ୟେକ କଥାରେ ଭରିରହିଛି ନିଗୂଢ଼ ଜ୍ଞାନ । ସେହି ଜ୍ଞାନ କୌଣସି ସାଂସାରିକ ବସ୍ତୁ ଲାଭ କରି ଭୌତିକ ସୁଖରେ ମାତିବା ପାଇଁ ନୁହେଁ, ବରଂ ମନୁଷ୍ୟ ଭିତରେ ନିହିତ ସୁପ୍ତ ଚେତନା ଶକ୍ତି ଜାଗ୍ରତ କରାଇ ଈଶ୍ୱର ଲାଭ କିପରି ହେବ, ସେଥିପାଇଁ ପଥ ପ୍ରଦର୍ଶନ କରିବା ତାଙ୍କ ଜୀବନର ଚରମ ଲକ୍ଷ୍ୟ । ମନୁଷ୍ୟ ଇନ୍ଦ୍ରିୟମାନଙ୍କ ମୋହ ଜାଲରୁ ମୁକୁଳି, ଆଧାତ୍ମିକ ମାର୍ଗରେ ଗତିକରି ଈଶ୍ୱରଙ୍କୁ ଉପଲବ୍ଧି କରୁ, ଏହି ଧରାପୃଷ୍ଠରେ ଦେବତ୍ୱ

Digitized by srujanika@gmail.com

ଲାଭ କରୁ ଏବଂ ସର୍ବୋପରି ସବୁ ଧର୍ମର ପ୍ରଦର୍ଶିତ ପଥ ଈଶ୍ୱର ଏବଂ ଈଶ୍ୱର ଲାଭ ପାଇଁ ଗୋଟିଏ ଗୋଟିଏ ପଥ ବୋଲି ଗ୍ରହଣକରି ଅଯଥା ଧାର୍ମିକ ଓ ସାଂପ୍ରଦାୟିକ କଳହରୁ ନିବୃତ୍ତ ରହୁ, ତାହା ହିଁ ଥିଲା ତାଙ୍କ ଜୀବନର ଲକ୍ଷ୍ୟ ।

ଶ୍ରୀରାମକୃଷ୍ଣଙ୍କ ସହିତ ପ୍ରଥମ ସାକ୍ଷାତ ନିଃସନ୍ଦେହରେ ନରେନ୍ଦ୍ରଙ୍କର ପରମସତ୍ତାଭିମୁଖୀ ମନର ଚଲାପଥରେ ଦେଖାଦେଇଥିବା ସଂଶୟର କୁଜ୍ଝଟିକାକୁ ଅବଶ୍ୟ କିୟତମାତ୍ରାରେ ପରିଷ୍କାର କରିବାରେ ସାହାଯ୍ୟ କରିଥିଲା, ଯାହାଫଳରେ ସେ କ୍ରମଶଃ ତାଙ୍କ ସ୍ନେହ ପାଶରେ ବାନ୍ଧି ହୋଇପଡୁଥିଲେ, କିନ୍ତୁ ତାଙ୍କର ମନ୍ତବ୍ୟ 'ତୁ ନରରୂପୀ ନାରାୟଣ, ଜଗତ ଉଦ୍ଧାର ପାଇଁ ତୋର ଜନ୍ମ'କୁ ସେ ଆଦୌ ଗ୍ରହଣ କରି ନ ପାରି, ପରମହଂସ ଦେବଙ୍କର ବିକୃତ ମସ୍ତିଷ୍କର ପ୍ରଳାପ ହୋଇପାରେ ବୋଲି ସେ ଧରି ନେଇଥିଲେ । ଏତାଦୃଶ ଭାବନା ସତ୍ତ୍ୱେ ନରେନ୍ଦ୍ର ନିଜର ପ୍ରତିଶ୍ରୁତି ରକ୍ଷାକରି ପୁଣି ଥରେ ଦକ୍ଷିଣେଶ୍ୱର ଉଦ୍ୟାନରେ ଉପସ୍ଥିତ ହେଲେ । ଏଥର ସେ ଏକୁଟିଆ ଆସିଥିଲେ । ସିଧା ପରମହଂସ ଦେବଙ୍କ କୋଠରି ଭିତରକୁ ପ୍ରବେଶ କଲେ । ଶ୍ରୀରାମକୃଷ୍ଣ ଖଟ ଉପରେ ବସିଥିଲେ । ଯେମିତି ତାଙ୍କ ଦୃଷ୍ଟି ନରେନ୍ଦ୍ରଙ୍କ ଉପରେ ପଡ଼ିଛି, ସେ ଖୁବ୍ ଉଲ୍ଲସିତ ହୋଇ ନିଜ ଶଯ୍ୟାରେ ବସିବାଲାଗି ତାଙ୍କୁ ସ୍ୱାଗତ କଲେ । ଯୁବକ ପ୍ରଣାମ କରି ତାଙ୍କ ପାଖରେ ବସିଲେ ।

ନିଜ ପାଖରେ ନରେନ୍ଦ୍ରଙ୍କର ଉପସ୍ଥିତି ଶ୍ରୀରାମକୃଷ୍ଣଙ୍କର ମନ ଓ ଶରୀରକୁ କେବଳ ରୋମାଞ୍ଚିତ ଓ ଭାବପ୍ରବଣିତ କରୁ ନ ଥିଲା ବରଂ ତାଙ୍କର ମନ କ୍ରମଶଃ ଉର୍ଦ୍ଧ୍ୱ ଚେତନାରେ ସମାସୀନ ହେବାକୁ ଲାଗିଲା । ମୁଖମଣ୍ଡଳ ଆଲୋକିତ ହେଲା । ଭାବ ସମାଧିରେ ସେ ସେତେବେଳକୁ ବୁଡିଗଲେଣି । ତାଙ୍କ ଓଠରୁ ଝରି ପଡୁଥିଲା ଖାଲି ଅସ୍ପଷ୍ଟ ବାକ୍ୟ । ଦୁର୍ବୋଧ୍ୟ ଥିଲା ନିଃସୃତ ଭାଷା । ସେ ନରେନ୍ଦ୍ରଙ୍କୁ ଅପଲକ ନୟନରେ ଚାହିଁଥିଲେ ସତେକି ତାଙ୍କର ଚକ୍ଷୁଯୁଗଳ ନରେନ୍ଦ୍ରଙ୍କ ମୁଖମଣ୍ଡଳରେ ସ୍ଥିର ହୋଇଯାଇଛି । ଇତ୍ୟବସରରେ ସେ ଧୀରେ ଧୀରେ ନରେନ୍ଦ୍ରଙ୍କ ପାଖକୁ ଲାଗି ଆସିଲେ ।

ଗତ ସାକ୍ଷାତ ଭଳି ବୋଧହୁଏ ଏହି ବଦ୍ଧପାଗଳ ପୁଣି ଗୋଟିଏ ନାଟକ ରଚନା କରିବେ ବୋଲି ନରେନ୍ଦ୍ର ଭାବିନେଲେ । କିନ୍ତୁ ନରେନ୍ଦ୍ରଙ୍କୁ ଅଧିକ ଚିନ୍ତା କରିବାକୁ ସେ ସମୟ ଦେଲେ ନାହିଁ । ଆଖି ପିଛୁଳାକେ ନରେନ୍ଦ୍ରଙ୍କ ବକ୍ଷରେ ନିଜର ଦକ୍ଷ ପାଦକୁ ଥାପି ଦେଲେ । ପାଦ ସ୍ପର୍ଶରେ ନରେନ୍ଦ୍ର ହଠାତ୍ ଏକ ଅଭିନବ ଅନୁଭୂତି ଉପଲବ୍ଧି କଲେ । ସେହି ଅନୁଭୂତି ଥିଲା ବିଚିତ୍ର ଓ ଭୟଙ୍କର ମଧ୍ୟ । ତାଙ୍କ ସମ୍ମୁଖସ୍ଥ ସମସ୍ତ ଦୃଶ୍ୟମାନ ବସ୍ତୁ, ଏପରିକି କୋଠରିର କାନ୍ଥ ଓ କୋଠରି ମଧ୍ୟ ଘୂର୍ଣ୍ଣାୟମାନ ହୋଇ ମହାଶୂନ୍ୟରେ ଅନ୍ତର୍ହିତ ହୋଇଯାଉଛି । ବିଶ୍ୱବ୍ରହ୍ମାଣ୍ଡ ସହିତ ନିଜର ଅସ୍ତିତ୍ୱ ସେହି ରହସ୍ୟମୟ ସର୍ବଗ୍ରାସୀ ମହାଶୂନ୍ୟରେ ଲୀନହେବାକୁ ଲାଗିଲା । ନରେନ୍ଦ୍ର ଭୟଭୀତ ହୋଇପଡ଼ିଲେ ଏବଂ ନିଜର ଅସ୍ତିତ୍ୱ ହରାଇ ମୃତ୍ୟୁର ସମ୍ମୁଖୀନ ହେବାକୁ ଯାଉଛନ୍ତି ବୋଲି ସେ ଅନୁଭବ କଲେ । ନିଜକୁ ସମ୍ଭାଳି ନେଇ ସେ ଚିତ୍କାର କରି କହିଉଠିଲେ, ''ଆପଣ ଇୟେ ସବୁ କ'ଣ କରୁଛନ୍ତି ? ମୋର ବାପା-ମା ଘରେ ଯେ ଅଛନ୍ତି ।''

Digitized by srujanika@gmail.com

ଶ୍ରୀରାମକୃଷ୍ଣ ନିଜର ଦିବ୍ୟ-ପ୍ରକ୍ରିୟାକୁ ସେହିଠାରେ ଅନ୍ତ କରିଦେଲେ । ନରେନ୍ଦ୍ରଙ୍କର ବକ୍ଷକୁ ଆଉଁସିଦେଇ ହସିଉଠି କହିଲେ, ''ଠିକ୍ ଅଛି, ଆଜି ଏତିକି ଥାଉ । ସମୟ ଆସିଲେ, ସବୁକିଛି ଜାଣିବୁ ।'' ଏଠାରେ କହିବା ବାହୁଲ୍ୟଯେ ଯେମିତି ସେ ଏତିକି କହିଛନ୍ତି, ନରେନ୍ଦ୍ରଙ୍କ ମନରୁ ଏତାଦୃଶ ଅଭିନବ ଅନୁଭୂତି ନିମିଷକ ମଧ୍ୟରେ ଉଭେଇଗଲା । ନରେନ୍ଦ୍ର ପ୍ରକୃତିସ୍ଥ ହେଲେ ।

- ୨ -

*ନରେନ୍ଦ୍ରଙ୍କର ନାସ୍ତିକ ଓ ପ୍ରଶ୍ନିଳ ମନ ଚହଲି ଗଲା : ମୁଁ ଯାହାଙ୍କୁ ପାଗଳ ଭାବୁଛି, ସେହି ବ୍ୟକ୍ତି ମୋର ବିଚାର-ବୁଦ୍ଧିସମ୍ପନ୍ନ ମନକୁ କିପରି ଖଣ୍ଡବିଖଣ୍ଡିତ କରି ପକାଇଲେ ?*

ଏମନ୍ତ ଅଦ୍ଭୁତ ଓ ଅସାଧାରଣ ଘଟଣାର ଅବଧି କିୟଦ୍ ମୁହୂର୍ତ୍ତ ପାଇଁ ଘଟିଥିଲେ ବି ନରେନ୍ଦ୍ରଙ୍କର ନାସ୍ତିକ ଓ ପ୍ରଶ୍ନିଳ ମନକୁ ଚହଲାଇ ଦେଲା । ପ୍ରଶ୍ନ ଉପରେ ପ୍ରଶ୍ନ ମାଡ଼ିବସିଲା ମନକୁ । ପାଗଳ ବ୍ରାହ୍ମଣ ଇଚ୍ଛାରେ ଇୟେ ସବୁ ଅଦ୍ଭୁତ ଘଟଣା କିପରି ସମ୍ଭବ ହେଲା ? ଏହା କ'ଣ ଯାଦୁ ବିଦ୍ୟା ? ନରେନ୍ଦ୍ରଙ୍କର ମନ ଥିଲା ଦୃଢ଼ ଓ ଶକ୍ତିଶାଳୀ । ସମ୍ମୋହନୀ ଶକ୍ତିରେ ତାଙ୍କର ବିଶ୍ୱାସ ନ ଥିଲା । ଯାଦୁ କ'ଣ ତାଙ୍କ ତାର୍କିକ ମନରେ ପ୍ରଭାବ ବିସ୍ତାର କରିପାରିବ ? ପରମହଂସଦେବ ତ ଜଣେ ସାଧାରଣ ପୂଜକ । ସେ ତ ବଦ୍ଧ ପାଗଳ । ନିଜକୁ କ'ଣ ସେ ଯାଦୁବିଦ୍ୟାର ସମ୍ମୋହନୀ ଶକ୍ତିଠାରେ ବିକ୍ରି କରିଦେଲେ ? ଏମିତି ବହୁକଥା ସେ ଭାବିଗଲେ । କେବଳ ଭାବିଲେ ନାହିଁ, ଭବିଷ୍ୟତରେ ଏଭଳି ଯାଦୁ ସମ୍ମୋହନ ବିଦ୍ୟା ନିକଟରେ ନିଜକୁ ଆତ୍ମ-ସମର୍ପଣ କରିବେ ନାହିଁ ବୋଲି ଦୃଢ଼ ସଂକଳ୍ପ କଲେ ।

ତଥାପି ପ୍ରଶ୍ନର ପାହାଡ଼ ତାଙ୍କର ବାଟ ଓଗାଳିଲା । ନରେନ୍ଦ୍ର ପୁନଶ୍ଚ ଭାବିଲେ, ''ମୁଁ ଯାହାଙ୍କୁ ପାଗଳ ଭାବୁଛି, ସେହି ବ୍ୟକ୍ତି ମୋର ବିଚାର-ବୁଦ୍ଧିସମ୍ପନ୍ନ ମନକୁ କିପରି ଖଣ୍ଡ-ବିଖଣ୍ଡିତ କରି ପକାଇଲେ ? ଆତ୍ମୀୟ ଅନ୍ତରଙ୍ଗ ବନ୍ଧୁଙ୍କ ସହ ବହୁଦିନ ପରେ ଅଚାନକ ଭେଟ ହୋଇଗଲେ ଯେମିତି ଜଣେ ଆନନ୍ଦରେ ଅଧୀର ହୋଇପଡ଼େ, ଠିକ୍ ସେମିତି ପ୍ରଥମ ସାକ୍ଷାତରେ ସେହି ଅପରିଚିତ ପରମହଂସଦେବ ମୋର ହାତ ଧରି ଅଶ୍ରୁଳ ଚକ୍ଷୁରେ କେତେକଥା କହିଗଲେ । ସେସବୁକୁ ମୁଁ ଏକ ପାଗଳର ପ୍ରଳାପ ଭାବି ମନରୁ ତଡ଼ି ଦେଇଥିଲି । କନ୍ତୁ ଏଥର ସେ କଲେ କ'ଣ ? ମୋର ବିବେକ, ବୁଦ୍ଧି, ଜ୍ଞାନ, ତର୍କକୁ ସେ ଚୂର୍ଣ୍ଣିଭୂତ କରିଦେଲେ ।'' ନରେନ୍ଦ୍ର ଏପରି ତୁହାକୁ ତୁହା ପ୍ରଶ୍ନର ଲମ୍ୱା ଧାଡ଼ିରେ ବୁଡି ଯାଉଥିଲେ । ପରମହଂସ ଦେବଙ୍କ ସମ୍ବନ୍ଧରେ କୌଣସି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନ ଥିଲେ ।

ଅପରପକ୍ଷରେ ଦକ୍ଷିଣେଶ୍ୱର ନିବାସୀ ସନ୍ଥ ଶ୍ରୀରାମକୃଷ୍ଣଙ୍କର କିଛି ଅଭିପ୍ସା ନ ଥିଲା । ଦ୍ୱିତୀୟ ଆଗମନ କାଳରେ ନରେନ୍ଦ୍ରଙ୍କର ବାହ୍ୟଜ୍ଞାନ ବିଲୁପ୍ତ ଅବସ୍ଥାରେ ସବୁ ପ୍ରଶ୍ନର ଉତ୍ତର ସେ ଆଦାୟ କରିନେଇଛନ୍ତି । ନରେନ୍ଦ୍ର ବାସ୍ତବରେ କିଏ, କେଉଁଠୁ ଆସିଛନ୍ତି, କାହିଁକି ଆସିଛନ୍ତି, ମର୍ତ୍ତ୍ୟମଣ୍ଡଳରେ କେତେଦିନ ଜୀବନଧାରଣ କରିବେ ଇତ୍ୟାଦି ଏଥିରେ ଅନ୍ତର୍ଭୁକ୍ତ । ବହୁବର୍ଷ ପୂର୍ବରୁ

Digitized by srujanika@gmail.com

ସେ ଦେଖିଥିବା ଦିବ୍ୟ-ଦର୍ଶନ ସହିତ ନରେନ୍ଦ୍ରଙ୍କଠାରୁ ଆଦାୟ କରିଥିବା ଉତ୍ତର ମେଳଖାଉଛି । ନରେନ୍ଦ୍ରଙ୍କ ସହ ଭେଟ ହେବାଉତ୍ତାରୁ, ସେ ଆନନ୍ଦିତ ଓ ନିଶ୍ଚିନ୍ତ ।

ଏହି ଦିବ୍ୟ ଦର୍ଶନ କ'ଣ ? ଶ୍ରୀରାମକୃଷ୍ଣ ଦେବ କଥା ଛଳରେ ସ୍ୱୟଂ କହିଥିଲେ, ''ଏକଦା ଗଭୀର ସମାଧିରେ ମୋ ମନ ଆଲୋକମୟ ପଥରେ ଖୁବ୍ ଉର୍ଦ୍ଧ୍ୱକୁ ଉଡ଼ିଯାଉଥିଲା । ନାକ୍ଷତ୍ରିକ ଜଗତ ଅତିକ୍ରମକରି ମୋ ମନ ସୂକ୍ଷ୍ମଭାବ ରାଜ୍ୟରେ ଉପନୀତ ହେଲା । ସେଠାରୁ ମନ ଉଡ଼ିଲା କ୍ରମଶଃ ଆହୁରି ଉର୍ଦ୍ଧ୍ୱକୁ । ଦୁଇପାର୍ଶ୍ୱରେ ଦେଖିଲି ଅନେକ ଦେବତା ଓ ଦେବୀଙ୍କର ମନୋରମ କଳେବର । ମନ ମୋର ସାପେକ୍ଷିକ ଜଗତର ସୀମା ପାର ହୋଇ ବ୍ରହ୍ମଲୋକରେ ପହଞ୍ଚିଲା । ସେଠାରେ ଦେଖିଲି ଯେ ଏକ ଉଜ୍ଜ୍ୱଳ ଆଲୋକ ବ୍ରହ୍ମଲୋକକୁ ସାପେକ୍ଷିକ ଜଗତଠାରୁ ବିଭାଜିତ କରିରଖିଛି । ମୋର ମନ ସେଠାରେ ଅଟକିଲା ନାହିଁ । ପୁନଶ୍ଚ ଉର୍ଦ୍ଧ୍ୱକୁ ଗତିକଲା । ବ୍ରହ୍ମଲୋକକୁ ଅତିକ୍ରମ କରି, ଜଗତକୁ ଦୃଶ୍ୟ ହେଉ ନ ଥିବା ଭାବାତୀତ ରାଜ୍ୟରେ ମୁଁ ପହଞ୍ଚିଲି । ହଁ, ଏପରିକି କୌଣସି ଦେବାଦେବୀ ଏହି ରାଜ୍ୟକୁ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିପାରନ୍ତି ନାହିଁ । ବରଂ ନିମ୍ନଦେଶରେ ଉପବେଶନକରି ତୃପ୍ତିଲାଭ କରନ୍ତି ।

କିୟଦ୍ ସମୟ ଅତିକ୍ରାନ୍ତେ, ଉକ୍ତ ରାଜ୍ୟରେ ସାତଜଣ ଋଷି ସୂକ୍ଷ୍ମ ଶରୀରରେ ସମାଧିରେ ମଗ୍ନଥିବାର ଦେଖିଲି । ସାତଜଣ ଋଷି କେବଳ ମାନବୀୟ ଗୁଣକୁ ଅତିକ୍ରମ କରିଥିଲେ ତାହାନୁହେଁ ବରଂ ସର୍ବପ୍ରକାର ଦୈବଗୁଣକୁ ମଧ୍ୟ ଅତିକ୍ରମ କରି, ଶୁଦ୍ଧପୂତ ଜ୍ଞାନରେ ଉଦ୍‌ଭାସିତ ହେଉଥିଲେ । ସେମାନଙ୍କର ଗୁଣ ଗାରିମାରେ ମୁଁ ମନ୍ତ୍ରମୁଗ୍ଧ ହୋଇପଡ଼ିଲି । ସତେକି ମୁଁ ଆନନ୍ଦ ସାଗରରେ ଭୟଶୂନ୍ୟ ହୋଇ ସନ୍ତରଣ କରୁଛି । ଇତ୍ୟବସରରେ, ଏକ ଅଦ୍ଭୁତ ଘଟଣା ମୋ ସମ୍ମୁଖରେ ରୂପନେଲା । ସେହି ଜ୍ୟୋତିର୍ମୟ ଅଖଣ୍ଡ ଜଗତର କିଛି ଅଂଶ ଏକ କୋମଳ ଦେବ ଶିଶୁରେ ହେଲା ରୂପାନ୍ତରିତ । ହଠାତ୍ ସଦ୍ୟଜାତ ଦେବଶିଶୁଟି ସପ୍ତଋଷିଙ୍କ ମଧ୍ୟରୁ ଜଣେ ଋଷିଙ୍କ ନିକଟକୁ ଆସିଲେ ଏବଂ ଉକ୍ତ ଋଷିଙ୍କ କଣ୍ଠଦେଶକୁ ନିଜର ସୁନ୍ଦର ବାହୁଦ୍ୱୟରେ ଜାବୁଡ଼ି ଧରି ସୁମିଷ୍ଟ ଭାଷାରେ କହିବାକୁ ଲାଗିଲେ । ଏହା ଥିଲା ଗଭୀର ସମାଧିରୁ ଋଷିଙ୍କର ମନକୁ ଫେରାଇ ଆଣିବାରେ ପ୍ରୟାସ । ଶିଶୁର କୋମଳ ସ୍ପର୍ଶରେ ଋଷିଙ୍କର ସମାଧି ଭଙ୍ଗ ହେଲା । ତାଙ୍କର ଅର୍ଦ୍ଧନିମିଳିତ ଚକ୍ଷୁ ସେହି ଅଦ୍ଭୁତ ଦେବଶିଶୁ ପ୍ରତି ସ୍ଥିର ହେଲା । ଋଷିଙ୍କର ଆଲୋକିତ ମୁଖମଣ୍ଡଳ ସୂଚାଇ ଦେଉଥିଲା ଯେ ଦେବଶିଶୁ ହିଁ ତାଙ୍କ ହୃଦୟର ଧନ । ଆନନ୍ଦ ଗଦ୍‌ଗଦ୍ କଣ୍ଠରେ ଦେବଶିଶୁ ଋଷିଙ୍କୁ କହିଲେ, ''ମୁଁ ଧରାଧାମକୁ ଯାଉଛି, ତୁମେ ବି ମୋ ସହ ଆସିବ ।''

ଋଷି ନୀରବ ରହିଲେ । କିନ୍ତୁ ତାଙ୍କର ଚାହାଁଣି ସମ୍ମତିସୂଚକ ଥିଲା । ଦେବଶିଶୁ ସ୍ଥିର ଦୃଷ୍ଟିରେ ଚାହିଁଥିବା ସମୟରେ ଋଷି ପୁନଶ୍ଚ ଗଭୀର ଧ୍ୟାନମଗ୍ନ ହେଲେ । ଆଶ୍ଚର୍ଯ୍ୟର ଘଟଣା ଯେ ଋଷିଙ୍କର ଏକ କ୍ଷୁଦ୍ର ଅଂଶ, ଆଲୋକରେ ପରିଣତ ହୋଇ ପୃଥିବୀ ପୃଷ୍ଠରେ ଅବତରଣ କଲେ ।

ଶ୍ରୀରାମକୃଷ୍ଣ ଯେତେବେଳେ ପ୍ରଥମେ ନରେନ୍ଦ୍ରଙ୍କୁ ଭେଟିଲେ, ସେତେବେଳେ ସେ ଚିହ୍ନିପାରିଥିଲେ ଯେ ଦିବ୍ୟଦର୍ଶନରେ ଦେଖିଥିବା ଋଷି ହିଁ ନରେନ୍ଦ୍ର । ଶ୍ରୀରାମକୃଷ୍ଣ ମଧ୍ୟ ସ୍ୱୀକାର କରିଛନ୍ତିଯେ ସେହି ଦେବଶିଶୁ ଯାହାଙ୍କୁ ସେ ସମାଧିରେ ଦର୍ଶନ କରିଥିଲେ, ସେହି ହେଉଛନ୍ତି ସ୍ୱୟଂ ନିଜେ ।

Digitized by srujanika@gmail.com

ଉଭୟଙ୍କ ଜୀବନଯାତ୍ରାରେ 'ନରେନ୍ଦ୍ର ଓ ଶ୍ରୀରାମକୃଷ୍ଣଙ୍କର ଭେଟ' ଏକ ବିଧି ନିର୍ଦ୍ଦେଶିତ ନାଟକ । କିନ୍ତୁ ସେମାନଙ୍କ ମଧ୍ୟରେ ପାର୍ଥକ୍ୟର ସରଳରେଖା ରହିଛି । ଗୋଟିଏ ପକ୍ଷରେ ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କୁ ଚିହ୍ନିପାରିଛନ୍ତି, ଅନ୍ୟପକ୍ଷରେ ନରେନ୍ଦ୍ର ହଠାତ୍ ଶ୍ରୀରାମକୃଷ୍ଣଙ୍କୁ ଚିହ୍ନିପାରି ନାହାନ୍ତି । କାରଣ ନରେନ୍ଦ୍ର ସେତେବେଳେ ସମ୍ପୂର୍ଣ୍ଣ ନାସ୍ତିକ ନ ଥିଲେ ବି ହିନ୍ଦୁ ଧର୍ମର ଦେବାଦେବୀଙ୍କର ପୂଜା ପଦ୍ଧତିରେ କୌଣସି ପ୍ରକାର ତାଙ୍କର ବିଶ୍ୱାସ ନ ଥିଲା । ଶାସ୍ତ୍ରରେ ବର୍ଣ୍ଣିତ ବିଭିନ୍ନ ପ୍ରକାର ନିଷେଧାଜ୍ଞା, ନିୟମ ଓ ପୂଜାପଦ୍ଧତିକୁ ତାଙ୍କର ତାର୍କିକ ମନ ଆଦୌ ଗ୍ରହଣ କରିପାରୁ ନ ଥିଲା ।

ଆଧୁନିକ ଯୁଗର ସଚେତନତା, ବୌଦ୍ଧିକ ବିଶ୍ଳେଷଣ ଓ ସାଧୁତା ଏବଂ ଜୀଜ୍ଞାସା ଭଳି ଅନେକ ମାନବୀୟ ଗୁଣରେ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ଥିଲେ ନରେନ୍ଦ୍ର । ତାଙ୍କର ଖୋଲା ମନ ଓ ଉନ୍ମୁକ୍ତ ହୃଦୟ ବିନା ପ୍ରମାଣରେ କୌଣସି ବସ୍ତୁକୁ ଗ୍ରହଣ କରୁ ନ ଥିଲା । ବ୍ରାହ୍ମ ସମାଜର ଜଣେ ଅନୁରକ୍ତ ଅନୁଗାମୀଭାବେ ହିନ୍ଦୁ ସମାଜକୁ ସଂସ୍କାରିତ କରିବାର ପ୍ରବଳ ଇଚ୍ଛା ତାଙ୍କ ଭିତରେ ବସା ବାନ୍ଧିଥିଲା । ଗୁରୁବାଦକୁ ସେ ସଂଶୟ ଚକ୍ଷୁରେ ଦେଖୁଥିଲେ ଏବଂ ଗୁରୁଙ୍କୁ ମାଧ୍ୟମ କରି ପରମସତ୍ତା ଈଶ୍ୱରଙ୍କୁ ଲାଭ କରିବାର ପରମ୍ପରା ପ୍ରତି ସେ ସନ୍ଦୀହାନ ଥିଲେ । ସେ ଚାହୁଁଥିଲେ ଈଶ୍ୱରଙ୍କ ସହ ମୁହାଁମୁହିଁ ସାକ୍ଷାତ । ସେ ଆଧୁନିକତାର ପ୍ରତୀକ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟପକ୍ଷରେ ଶ୍ରୀରାମକୃଷ୍ଣ ପରମହଂସ ଥିଲେ ଭାରତୀୟ ଆଧ୍ୟାତ୍ମିକ ପ୍ରଥା, ସଂସ୍କୃତି, ପରମ୍ପରା ଓ ପ୍ରାଚୀନ ଧର୍ମର ମୂର୍ତ୍ତିମନ୍ତ ପ୍ରତୀକ । ଆଧୁନିକ ଚିନ୍ତା ଓ ଚେତନା ତାଙ୍କୁ ସ୍ପର୍ଶ କରି ନ ଥିଲା । ଏହି ଦୁଇଜଣଙ୍କର ବ୍ୟକ୍ତିତ୍ୱ ବାହ୍ୟ-ଦୃଷ୍ଟିରେ ପରସ୍ପର ବରୋଧୀ ବୋଲି ପ୍ରତୀୟମାନ ହେଉଥିଲେ ବି ଅନ୍ତର୍ଦ୍ଦୃଷ୍ଟିରେ ସେମାନେ ଥିଲେ ଏକ ଓ ଅଭିନ୍ନ, ଯାହା ପ୍ରଥମ ସାକ୍ଷାତରୁ ଶ୍ରୀରାମକୃଷ୍ଣ ଜାଣିପାରିଥିଲେ ।

ସଂଶୟ-ମିଶା ଭଲପାଇବା ଜାଲରେ ନରେନ୍ଦ୍ର ପତିତ ହୋଇ ବି ଶ୍ରୀରାମକୃଷ୍ଣଙ୍କୁ ଛାଡ଼ି ରହିପାରୁ ନ ଥିଲେ । ମନ ତାଙ୍କର ବାରମ୍ବାର ଆକର୍ଷିତ ହେଉଥିଲା ଦକ୍ଷିଣେଶ୍ୱରକୁ । କିଛିଦିନ ପରେ ପୁଣି ନରେନ୍ଦ୍ର ଦକ୍ଷିଣେଶ୍ୱରରେ ପହଞ୍ଚିଲେ । ଏହାଥିଲା ଦକ୍ଷିଣେଶ୍ୱରକୁ ତାଙ୍କର ତୃତୀୟ ଆଗମନ । ସେ ବର୍ତ୍ତମାନ ଦୃଢ଼ମନା । ପରମହଂସଙ୍କ ସମ୍ମୋହନୀ ଭେଳିକିରେ ଆଉ ପଡ଼ିବେ ନାହିଁ ବୋଲି ମନସ୍ଥ କରିଥିଲେ । ଶ୍ରୀରାମକୃଷ୍ଣ ହଠାତ୍ ନରେନ୍ଦ୍ରଙ୍କୁ ଦେଖି ପୂର୍ବବତ୍ ଆନନ୍ଦିତ ହେଲେ । ସେ ନରେନ୍ଦ୍ରଙ୍କୁ ସସ୍ନେହେ ଦକ୍ଷିଣେଶ୍ୱର ପାର୍ଶ୍ୱସ୍ଥିତ ଯଦୁମଲ୍ଲିକଙ୍କର ଉଦ୍ୟାନକୁ ନେଇଗଲେ । ଉଦ୍ୟାନବାଟିସ୍ଥ ବୈଠକଖାନାରେ ଦୁହେଁ ଯାଇ ଉପବେଶନ କଲେ । ନରେନ୍ଦ୍ରଙ୍କୁ ନିକଟରେ ପାଇ ଶ୍ରୀରାମକୃଷ୍ଣଙ୍କର ମନ ଉର୍ଦ୍ଧ୍ୱକୁ ଯାତ୍ରାକଲା ଏବଂ କିୟତ୍ ମୁହୂର୍ତ୍ତ ଭିତରେ ସେ ଗଭୀର ସମାଧିରେ ମଗ୍ନ ହେଲେ । ସେହି ଦିବ୍ୟାବସ୍ଥାରେ ସେ ନରେନ୍ଦ୍ରଙ୍କୁ ପୁନଶ୍ଚ ସ୍ପର୍ଶ କଲେ । ସ୍ପର୍ଶ ମାତ୍ରକେ ନରେନ୍ଦ୍ରଙ୍କର ଦୃଢ଼ତା ଓ ସମ୍ମୋହନ ଭେଳିକିରେ ନ ପଡ଼ିବାର ସିଦ୍ଧାନ୍ତ ପାଣି ଫାଟିଲା । ସେହି ମୁହୂର୍ତ୍ତରେ ନରେନ୍ଦ୍ର ହରାଇଲେ ବାହ୍ୟଜ୍ଞାନ । ସେ କିଛି ଜାଣିପାରିଲେ ନାହିଁ । ଅଚେତ ଅବସ୍ଥାରେ ନରେନ୍ଦ୍ରଙ୍କୁ ଶ୍ରୀରାମକୃଷ୍ଣ ଗୋଟିଏ ପରେ ଗୋଟିଏ ପ୍ରଶ୍ନ ପଚାରିଗଲେ । ନରେନ୍ଦ୍ର ଅବୋଧ ଶିଶୁଟିଏ ଭଳି ସବୁ ପ୍ରଶ୍ନର ଉତ୍ତର ଦେଇ ଚାଲିଲେ । ନରେନ୍ଦ୍ରଙ୍କର ଅତୀତ ଜୀବନର ପରିଚୟ, ବାସସ୍ଥାନ, ବର୍ତ୍ତମାନ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଏବଂ ଆୟୁଷ ସମ୍ବନ୍ଧରେ ସେ ସବିଶେଷ ଉତ୍ତର ପାଇଗଲେ ।

Digitized by srujanika@gmail.com

- ୩ -

*ମଣିଷ ସବୁକିଛି ରହସ୍ୟ ଯଦି ଅନାୟସରେ ଜାଣିପାରୁଥା'ନ୍ତା ନିଜ ସମ୍ବନ୍ଧରେ, ବିଶ୍ୱ ସମ୍ବନ୍ଧରେ ଏବଂ ଈଶ୍ୱର ସମ୍ବନ୍ଧରେ, ତା'ହେଲେ ସାରା ଜଗତ, ମଣିଷ ଓ ଈଶ୍ୱର ଆଜି ରହସ୍ୟମୟ ହୋଇ ରହି ନ ଥା'ନ୍ତା ଏବଂ ଈଶ୍ୱରଙ୍କ ଲୀଳା କେବେ ବି ଗତିଶୀଳ ହୁଅନ୍ତା ନାହିଁ। କେବଳ ଜାଣିପାରନ୍ତି ଅବତାରୀ ପୁରୁଷ।*

ଅବଶ୍ୟ ଆଜିର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ମଣିଷ ଦିବ୍ୟ ଦର୍ଶନର ସତ୍ୟତା ଉପରେ ନାଶା କୁଞ୍ଚନ କରିପାରେ। କାରଣ ବ୍ୟବହାରିକ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହାକୁ ପ୍ରମାଣିତ କରିହେବ ନାହିଁ। ନରେନ୍ଦ୍ରଙ୍କ ସମ୍ବନ୍ଧରେ ଶ୍ରୀରାମକୃଷ୍ଣ ଯାହା ଦେଖିଲେ, ତାହା ସାଧାରଣ ମଣିଷ ପକ୍ଷରେ ବୁଝିବା ସମ୍ଭବ ନୁହେଁ। ମଣିଷ ଯାହା ଉପଲବ୍ଧି କରେ, ପଶୁ ତାହା କରିପାରେ ନାହିଁ। ପଶୁ ଯାହା ଅନୁଭବ କରେ, ଉଦ୍ଭିଦ ତାହା କରିପାରେ ନାହିଁ। ମଣିଷ ଭିତରେ ଜ୍ଞାନୀ ଯାହା ଉପଲବ୍ଧି କରେ, ମୂର୍ଖ ତାହା କରିପାରେ ନାହିଁ। ଜଣେ ରିକ୍ସାଚାଳକ ଭେଷଜ ବିଜ୍ଞାନର ଗୂଢ଼ତତ୍ତ୍ୱ ବୁଝିପାରିବ ନାହିଁ। ବିବର୍ତ୍ତନ ଚକ୍ରରେ ଚେତନାର ସ୍ତରସବୁ ରହିଛି। ଯିଏ ଯେଉଁ ଚେତନା ସ୍ତରରେ ଅବସ୍ଥାନ କରିବ ସେତିକି ସୀମିତ ବିଷୟବସ୍ତୁକୁ ସେ ବୁଝିପାରିବ। କିନ୍ତୁ ମନୁଷ୍ୟ ଏକ ରହସ୍ୟମୟ ପ୍ରାଣୀ ଯାହା ଭିତରେ ରହିଛି ସବୁ ଚେତନାର ସ୍ତର, ନୀଚରୁ ଉଚ୍ଚ କେବଳ ନୁହେଁ, ମହାଚେତନା ପର୍ଯ୍ୟନ୍ତ, ଏପରିକି ନିଜେ ସ୍ୱୟଂ ଚୈତନ୍ୟ ହୋଇଯିବା ପର୍ଯ୍ୟନ୍ତ।

ନରେନ୍ଦ୍ରଙ୍କ ଭିତରେ ନାରାୟଣ ସ୍ୱୟଂ ବିରାଜିତ ବୋଲି ଶ୍ରୀରାମକୃଷ୍ଣ ଦେଖିଲେ, କାରଣ ସଂସାରର ଦୁର୍ଗନ୍ଧ ନରେନ୍ଦ୍ରଙ୍କର ଦିବ୍ୟତ୍ୱ ପରାହତ କରି ନ ଥିଲା। ସେଥିପାଇଁ ସେ ନରେନ୍ଦ୍ରଙ୍କ ପ୍ରତି ଖୁବ୍ ଆକର୍ଷିତ ହୋଇପଡ଼ିଥିଲେ। ହାଜରାମହାଶୟ ଯିଏ ଦକ୍ଷିଣେଶ୍ୱର ପରିସର ମଧ୍ୟରେ ଅବସ୍ଥାନ କରୁଥିଲେ, ସେ ଥିଲେ ବଡ଼ ଚତୁର ସଂସାରୀ ବ୍ୟକ୍ତି। ସେଠାରେ ଅବଶ୍ୟ ସେ ସାଧନ ଭଜନ କରୁଥିଲେ। କିନ୍ତୁ ତାଙ୍କର ଖଳବୁଦ୍ଧି ବେଳେବେଳେ ସମସ୍ୟା ସୃଷ୍ଟି କରୁଥିଲା। ଶ୍ରୀରାମକୃଷ୍ଣଙ୍କର ନରେନ୍ଦ୍ରପ୍ରୀତି ଲକ୍ଷ୍ୟକରି ଏକଦା ତାଙ୍କୁ ସେ କହିଲେ, ''ଆପଣ ଯଦି ନରେନ୍ଦ୍ର ଓ ଅନ୍ୟ ଯୁବକଙ୍କ ପାଇଁ ସବୁବେଳେ ଏଭଳି ଚିନ୍ତିତ ଓ ବ୍ୟସ୍ତ ହେବେ, ତେବେ ଆପଣଙ୍କୁ ଈଶ୍ୱରଙ୍କ ବିଷୟରେ ଭାବିବା ପାଇଁ ସମୟ ମିଳିବ ନାହିଁ ଯେ।'' ତାଙ୍କର ଏଭଳି ଈର୍ଷାନ୍ୱିତ ଅସାର କଥାରେ ବାଳକ ସ୍ୱଭାବପନ୍ନ ଶ୍ରୀରାମକୃଷ୍ଣ ମୁହୂର୍ତ୍ତକ ପାଇଁ ଚିନ୍ତିତ ହୋଇପଡ଼ିଲେ। କିନ୍ତୁ ପରମୁହୂର୍ତ୍ତରେ ସେ ଉପଲବ୍ଧି କଲେଯେ ଅବଶ୍ୟ ଈଶ୍ୱର ସବୁ ପ୍ରାଣୀଙ୍କ ମଧ୍ୟରେ ବିରାଜିତ, କିନ୍ତୁ ନରେନ୍ଦ୍ରଙ୍କ ଭଳି ପବିତ୍ର ଆତ୍ମାରେ ସେ ବିଶେଷ ଭାବେ ପ୍ରକଟିତ। ଏହି ଦିବ୍ୟ ଭାବନା ତାଙ୍କର ଚିନ୍ତାକୁ ନିମିଷକ ମଧ୍ୟରେ ଦୂରିଭୂତ କଲା ଏବଂ ସେ ତତ୍‌କ୍ଷଣାତ୍ କହିଲେ, ''ଓହୋଃ - ହାଜରା ବାସ୍ତବରେ ନିର୍ବୋଧ ! ମୋ ମନରେ ସେ କିପରି ଅସାର ଚିନ୍ତା ଭରି ଦେଇଥିଲା ! ବିଚରାକୁ କାହିଁକି ଦୋଷ ଦେବି ! ସେ ମୂର୍ଖ ଏସବୁ କଥା କିପରି ଜାଣିପାରିବ ?''

Digitized by srujanika@gmail.com

ମଣିଷ ସବୁକିଛି ରହସ୍ୟ ଯଦି ଅନାୟସରେ ଜାଣିପାରୁଥାନ୍ତା ନିଜ ସମ୍ବନ୍ଧରେ, ବିଶ୍ୱ ସମ୍ବନ୍ଧରେ ଏବଂ ଈଶ୍ୱର ସମ୍ବନ୍ଧରେ, ତାହାଲେ ସାରା ଜଗତ, ମଣିଷ ଓ ଈଶ୍ୱର ଆଜି ରହସ୍ୟମୟ ହୋଇ ରହି ନ ଥାନ୍ତା ଏବଂ ଈଶ୍ୱରଙ୍କର ଲୀଳା କେବେବି ଗତିଶୀଳ ହୁଅନ୍ତା ନାହିଁ । କେବଳ ଜାଣିପାରନ୍ତି ଅବତାରୀ ପୁରୁଷ । ଶ୍ରୀରାମକୃଷ୍ଣ ହେଉଛନ୍ତି ଆଧ୍ୟାତ୍ମିକଶକ୍ତିର ଭଣ୍ଡାର । ଏଭଳି ପୂର୍ଣ୍ଣ ଓ ପବିତ୍ର ମହାମାନବ କୋଟିଏରେ ଗୋଟିଏ ଆସନ୍ତି, ପୁଣି ବହୁ ଶତାବ୍ଦୀ ବ୍ୟବଧାନରେ ଥରଟିଏ ଆସନ୍ତି, କିନ୍ତୁ ସେମାନେ ଯେଉଁ ଆଦର୍ଶ ନିଜ ମାନୁଷୀ ଜୀବନକାଳରେ ପ୍ରତିଷ୍ଠା କରିଯା'ନ୍ତି, ତାହା ହଜାର ହଜାର ବର୍ଷ ପର୍ଯ୍ୟନ୍ତ ମାନବ ସମାଜ ପାଇଁ ପଥପ୍ରଦର୍ଶକ ସ୍ତମ୍ଭ ଭାବେ ପ୍ରତିଭାତ ହେଉଥାଏ ।

- ୪ -

*ଶ୍ରୀରାମକୃଷ୍ଣଙ୍କ ସହିତ ନରେନ୍ଦ୍ରନାଥଙ୍କର ପ୍ରଥମ ସାକ୍ଷାତ ବିଶ୍ୱ ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ସନ୍ଧିକ୍ଷଣ ଥିଲା । ଉକ୍ତ ଐତିହାସିକ ଦିନଟିକୁ ଯେପରି ସାରାବିଶ୍ୱ ଅପଲକ ନୟନରେ ଚାହିଁଥିଲା । ସାମ୍ପ୍ରଦାୟିକ ଅନ୍ଧବିଶ୍ୱାସ ଓ କୁସଂସ୍କାରରୁ ଧର୍ମକୁ ମୁକୁଳାଇ, ନିଜର ମୂଳ ସ୍ୱରୂପରେ ଆଲୋକିତ କରିବା ପାଇଁ ପ୍ରଚଣ୍ଡ ତ୍ୟାଗର ଆବଶ୍ୟକତା ଥିଲା, ଶ୍ରୀରାମକୃଷ୍ଣଙ୍କ ସହ ନରେନ୍ଦ୍ରଙ୍କର ଦକ୍ଷିଣେଶ୍ୱରରେ ପ୍ରଥମ ଭେଟ ହିଁ ଉକ୍ତ ପ୍ରଚଣ୍ଡ ତ୍ୟାଗର ବୀଜ ପୃଥିବୀ ପୃଷ୍ଠରେ ବପନ କଲା ।*

ଆଜକୁ ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବରୁ ରାଜକୁମାର ଶାକ୍ୟସିଂହ ଗୌତମ ତତ୍କାଳୀନ ସାମାଜିକ ଓ ଧାର୍ମିକ ବ୍ୟବସ୍ଥାରେ ବୀତସ୍ପୃହ ହୋଇ ଏକ ଆଧ୍ୟାତ୍ମିକ ସମାଧାନ ନିମନ୍ତେ ଯେପରି ରାଜ ସିଂହାସନ ଓ ପରିବାର ତ୍ୟାଗ କରି ଗୃହତ୍ୟାଗୀ ସନ୍ନ୍ୟାସୀ ହୋଇଯାଇଥିଲେ, ଠିକ୍ ସେପରି ନରେନ୍ଦ୍ର ଆଭିଜାତ ବଂଶରେ ଜନ୍ମ ଓ ପ୍ରତିପାଳିତ ହୋଇ ଏବଂ ଉଚ୍ଚ ଶିକ୍ଷା ଲାଭ କରି ମଧ୍ୟ ତତ୍କାଳୀନ ସମାଜର ଧାର୍ମିକ ପୂଜା ପଦ୍ଧତିର ଅସାରତା ଓ କୁସଂସ୍କାରରେ ଭରପୂର ସାମାଜିକ ବ୍ୟବସ୍ଥା ପ୍ରତି ସଂଶୟମନା ହୋଇ ଏକ ଉଚ୍ଚ ଆଧ୍ୟାତ୍ମିକ ସମାଧାନ ନିମନ୍ତେ ଖୋଜି ବୁଲୁଥିଲେ ଏଭଳି ଜଣେ ବ୍ୟକ୍ତିଙ୍କୁ ଯିଏ ତାଙ୍କୁ ପରମସତ୍ତାଙ୍କ ସହିତ ମୁହାଁମୁହିଁ ଦର୍ଶନ କରାଇ ଦେବେ । ସାକ୍ୟସିଂହ ଗୌତମଙ୍କୁ ଶ୍ରୀରାମକୃଷ୍ଣଙ୍କ ଭଳି ଆଧ୍ୟାତ୍ମିକ ମହାମାନବ ମିଳି ନ ଥିଲା, ହୁଏତ ମିଳିଥିଲେ ତାଙ୍କର ଗତିପଥ ବଦଳି ଯାଇଥାନ୍ତା । କିନ୍ତୁ ନରେନ୍ଦ୍ରନାଥ ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତ ଅଥବା ଯୁଗ ସନ୍ଧିକ୍ଷଣରେ ଜନ୍ମ ହୋଇଥିଲେ, ଯେଉଁଥିପାଇଁ ସେ ଭାଗ୍ୟବାନ୍ ଯେ ଶ୍ରୀରାମକୃଷ୍ଣ ତାଙ୍କୁ ମିଳି ଯାଇଥିଲେ ।

ଶ୍ରୀରାମକୃଷ୍ଣଙ୍କ ସହିତ ନରେନ୍ଦ୍ରନାଥଙ୍କର ପ୍ରଥମ ସାକ୍ଷାତ ବିଶ୍ୱ ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ସନ୍ଧିକ୍ଷଣ ଥିଲା । ଉକ୍ତ ଐତିହାସିକ ଦିନଟିକୁ ଯେପରି ସାରାବିଶ୍ୱ ଅପଲକ ନୟନରେ ଚାହିଁଥିଲା ।

Digitized by srujanika@gmail.com

ସାମ୍ପ୍ରଦାୟିକ ଅନ୍ଧବିଶ୍ୱାସ ଓ କୁସଂସ୍କାରରୁ ଧର୍ମକୁ ମୁକୁଳାଇ, ନିଜର ମୂଳ ସ୍ୱରୂପରେ ଆଲୋକିତ କରିବା ପାଇଁ ପ୍ରଚଣ୍ଡ ତ୍ୟାଗର ଆବଶ୍ୟକତା ଥିଲା, ଶ୍ରୀରାମକୃଷ୍ଣଙ୍କ ସହ ନରେନ୍ଦ୍ରଙ୍କର ଦକ୍ଷିଣେଶ୍ୱରରେ ପ୍ରଥମ ଭେଟ ହିଁ ଉକ୍ତ ପ୍ରଚଣ୍ଡ ତ୍ୟାଗର ବୀଜ ପୃଥିବୀ ପୃଷ୍ଠରେ ବପନ କଲା । ଏହି ମହିମାମୟ ସାକ୍ଷାତ ଧର୍ମ ଜଗତରେ ଏକ ବୈପ୍ଳବିକ ସେବା ଓ ତ୍ୟାଗର ମନୋଭାବ ସୃଷ୍ଟି କଲା, ଯଦ୍ୱାରା ଉନବିଂଶ ଓ ବିଂଶ ଶତାବ୍ଦୀ ମଧ୍ୟରେ ଗଢ଼ି ଉଠିଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାରର ବିରାଟ ବିରାଟ ପ୍ରାଚେରୀ ଭାଙ୍ଗି ଚୂର୍‌ମାର୍ ହୋଇଗଲା । ଶ୍ରୀରାମକୃଷ୍ଣଙ୍କ ସହ ଏଥିପୂର୍ବରୁ ବ୍ରାହ୍ମସମାଜର କେଶବଚନ୍ଦ୍ର ସେନ, ପ୍ରତାପ ଚନ୍ଦ୍ର ମଜୁମଦାର, ବିଜୟକୃଷ୍ଣ ଗୋସ୍ୱାମୀଙ୍କ ଭଳି ଅନେକ ମହାନ ଜ୍ଞାନଦୀପ୍ତ ବ୍ୟକ୍ତି ଓ ରାଖାଲ ଚନ୍ଦ୍ର ଘୋଷ, ରାମଚନ୍ଦ୍ର ଦତ୍ତ, ବଳରାମ ବୋଷ ଭଳି ବହୁ ଭକ୍ତଙ୍କ ସହିତ ସାକ୍ଷାତ ହୋଇଥିଲେ ମଧ୍ୟ ଏହା ଅପୂରଣୀୟ ଥିଲା । ସେମାନେ ସମସ୍ତେ ଥିଲେ ଶ୍ରୀରାମକୃଷ୍ଣଙ୍କ ଦୃଷ୍ଟିରେ ସ୍ନେହର ପାତ୍ର ଓ କେତେକ ଭକ୍ତ ମଧ୍ୟ ତାଙ୍କ ଚକ୍ଷୁରେ ଥିଲେ ଈଶ୍ୱରକୋଟି ଅନ୍ତର୍ଭୁକ୍ତ । ଏହା ସତ୍ତ୍ୱେ ଅବତାର ପୁରୁଷ ଶ୍ରୀରାମକୃଷ୍ଣଙ୍କର ହୃଦୟ ଏକ ପ୍ରଚଣ୍ଡ ତ୍ୟାଗୀ ଆତ୍ମଦୀପ୍ତ ପୁରୁଷ ପାଇଁ ସଦା ବ୍ୟାକୁଳିତ ଥିଲା । ତାହା ପୂର୍ଣ୍ଣ କଲେ ନରେନ୍ଦ୍ର ।



Digitized by srujanika@gmail.com

॥ ପାଞ୍ଚ ॥

# ନରେନ୍ଦ୍ରଙ୍କର ତାର୍କିକ ଓ ବ୍ରାହ୍ମସମାଜ ଦ୍ୱାରା ସାଂସ୍କାରିକ ମନ ଛିନ୍ନଭିନ୍ନ ହେଲା

ଯେଉଁ ମୁହୂର୍ତ୍ତରେ ନରେନ୍ଦ୍ର ଦକ୍ଷିଣେଶ୍ୱରରେ ଶ୍ରୀରାମକୃଷ୍ଣଙ୍କୁ ପ୍ରଥମ ସାକ୍ଷାତରେ ପ୍ରଶ୍ନ କରିଥିଲେ, ''ମହାଶୟ, ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି ?'' ଏବଂ ''ତୁମକୁ ଯେଭଳି ଦେଖୁଛି ତାହାଠୁଁ ସ୍ପଷ୍ଟ ଭାବରେ ମୁଁ ଈଶ୍ୱରଙ୍କୁ ଦେଖିଛି'' ବୋଲି ଶ୍ରୀରାମକୃଷ୍ଣଙ୍କର ଉତ୍ତର ପାଇବା ପରେ, ସେହି ମୁହୂର୍ତ୍ତରେ ନରେନ୍ଦ୍ରଙ୍କ ଭିତରେ ସୁପ୍ତ ଆଧ୍ୟାତ୍ମିକ କଳିକାର ପ୍ରସ୍ଫୁଟୀକରଣ ଘଟିଲା । କିନ୍ତୁ ଏହି ପ୍ରସ୍ଫୁଟୀକରଣ ପ୍ରକ୍ରିୟା ଦ୍ୱିତୀୟ ଓ ତୃତୀୟ ସାକ୍ଷାତ କାଳରେ ଶ୍ରୀରାମକୃଷ୍ଣଙ୍କର ସ୍ପର୍ଶ ହେତୁ, ଆଧ୍ୟାତ୍ମିକ ଜାଗରଣ ଅଭିମୁଖେ ନରେନ୍ଦ୍ରଙ୍କୁ ପଥ ପ୍ରଦର୍ଶନ କଲା । ଏହା ଥିଲା ନରେନ୍ଦ୍ରରୁ ସ୍ୱାମୀ ବିବେକାନନ୍ଦରେ ରୂପାନ୍ତରିତ ହେବାର ଅୟାରମ୍ଭ । ବର୍ତ୍ତମାନ ଯୁବକ ନରେନ୍ଦ୍ର ହୃଦୟଙ୍ଗମ କଲେଣି ଯେ ତାଙ୍କ ଜୀବନର ଲକ୍ଷ୍ୟ ନିଶ୍ଚୟ ପୂରଣ ହେବ, କାରଣ ପରମସତ୍ୟକୁ ଜାଣିବାର ଅନେକ ପ୍ରଶ୍ନ ଯାହା ତାଙ୍କ ଭିତରେ ଦାଉଦାଉ ଜଳି ନୈରାଶ୍ୟ ସୃଷ୍ଟି କରୁଥିଲା, ତାହା ଶ୍ରୀରାମକୃଷ୍ଣଙ୍କର ଅହଙ୍କାରଶୂନ୍ୟ ସ୍ୱକ୍ଷୋକ୍ତି ଦ୍ୱାରା କ୍ରମଶଃ ଶିଥିଳ ହେବାକୁ ଆରମ୍ଭ କଲାଣି ।

ନରେନ୍ଦ୍ରଙ୍କର ଦକ୍ଷିଣେଶ୍ୱରରେ ଉପସ୍ଥିତି ଶ୍ରୀରାମକୃଷ୍ଣଙ୍କର ବହୁଦିନର ପ୍ରତୀକ୍ଷାକୁ ସମାପ୍ତ କଲା । ଏହି ପ୍ରତୀକ୍ଷା ଥିଲା ଜଣେ ଅନ୍ତରଙ୍ଗ ବ୍ୟକ୍ତିକୁ ପାଇବା ପାଇଁ । ସେ ମଧ୍ୟ ଆଶ୍ୱସ୍ତ ହେଲେ ଯେ ଏହି ଯୁବକ ତାଙ୍କୁ ଠିକ୍‌ଭାବେ ବୁଝିପାରିବେ ଏବଂ ତାଙ୍କର ସାଧନାଲବ୍ଧ ସିଦ୍ଧାନ୍ତକୁ ଜନକଲ୍ୟାଣ ନିମନ୍ତେ ବିଶ୍ୱରେ ପ୍ରଚାର କରିବେ । ଏହି ପ୍ରତୀକ୍ଷାକୁ ଶ୍ରୀରାମକୃଷ୍ଣ ଗଳ୍ପ ଛଳରେ ଏବଂ ବାଳକସୁଲଭ ଢଙ୍ଗରେ ପ୍ରକାଶ କରି ଏକଦା କହିଥିଲେ, ''ଜଣେ ବ୍ୟକ୍ତିର ଦୈବାତ୍ ମୃତ୍ୟୁ ହେଲା । ମୃତ୍ୟୁ ପରେ ସେ ଏକ ମନ୍ଦସ୍ୱଭାବ ପ୍ରେତରେ ହେଲା ପରିଣତ । ସେହି ପ୍ରେତଟି ପ୍ରେତରାଜ୍ୟରେ ଏଭଳି ନିଃସଙ୍ଗ ଥିଲାଯେ ଆଖପାଖ ଗାଁରେ ଯାହାର ମୃତ୍ୟୁ ହେଉଥିଲା, ସେ ସେଠାରେ ପହଞ୍ଚି ଯାଉଥିଲା ଏବଂ ଆଶା ରଖୁଥିଲା ଯେ ମୃତ ବ୍ୟକ୍ତି ତାହା ଭଳି ଗୋଟିଏ ପ୍ରେତରେ ପରିଣତ ହେବ ଯିଏ ତା'ର ସାଥୀ ହୋଇ ପ୍ରେତରାଜ୍ୟରେ ଆନନ୍ଦରେ ବସବାସ କରିପାରିବ । କିନ୍ତୁ ଦୁଃଖର ବିଷୟ, କୌଣସି ମୃତ ବ୍ୟକ୍ତି ଉକ୍ତ ପ୍ରେତର ସାଥୀ ହୋଇପାରିଲେ ନାହିଁ । କାରଣ ନିଜର ସୁକର୍ମ ଯୋଗୁଁ ସମସ୍ତେ ମୋକ୍ଷ କିମ୍ବା ଉଚ୍ଚତର ରାଜ୍ୟକୁ ଚାଲିଯାଉଥିଲେ, ଯଦ୍ଦ୍ୱାରା ପ୍ରେତଟି ସବୁବେଳେ ଏକୁଟିଆ ହୋଇଯାଉଥିଲା । ପ୍ରେତଟି ଭଳି ମୁଁ ଜଣେ ଅନ୍ତରଙ୍ଗ ସାଥୀଟିଏ

Digitized by srujanika@gmail.com

ଅହରହ ଖୋଜୁଥିଲି । ବୁଝିଲୁ ନରେନ, ତୁମେ ଦକ୍ଷିଣେଶ୍ୱର ଆସିବା ଦିନଠାରୁ ମୋର ପ୍ରତୀକ୍ଷାର ଅନ୍ତ ହୋଇଛି । ତୁମକୁ ମୁଁ ପାଇଛି, ତୁମେ ମୋର ଅନ୍ତରଙ୍ଗ ବନ୍ଧୁ । ପୁଣି ତୁମେ କହୁଛ ଯେ ତୁମର ବାପା ମା ଅଛନ୍ତି... ।

ନରେନ୍ଦ୍ରଙ୍କ ପ୍ରତି ଶ୍ରୀରାମକୃଷ୍ଣଙ୍କର ଅହେତୁକ ସ୍ନେହ ଦେଖି ସେଠାକୁ ଆସୁଥିବା ଅନେକ ଭକ୍ତ ଆଶ୍ଚର୍ଯ୍ୟ ହେଉଥିଲେ । ନରେନ୍ଦ୍ର ଦକ୍ଷିଣେଶ୍ୱରରେ ଯେତେବେଳେ ପହଞ୍ଚୁଥିଲେ, ତାଙ୍କୁ ଦେଖି ଶ୍ରୀରାମକୃଷ୍ଣ ଏପରି ଆନନ୍ଦ ଉଲ୍ଲସିତ ଓ ଭାବପ୍ରବଣ ହୋଇଉଠୁଥିଲେ ଯେ ନରେନ୍ଦ୍ରଙ୍କର ପୂରା ନାଁ ଉଚ୍ଚାରଣ କରି ନ ପାରି ଭାବ ସମାଧିରେ ବୁଡି ଯାଉଥିଲେ । ଦୁଇଜଣଙ୍କ ଭିତରେ ରହିଥିବା ଅଦ୍ଭୁତ ସମ୍ପର୍କ ଓ ବ୍ୟବହାରକୁ ସାଧାରଣ ଲୋକେ ବୁଝି ପାରୁ ନ ଥିଲେ । ଏକଦା ବ୍ରାହ୍ମସମାଜର ମୁଖ୍ୟ କେଶବଚନ୍ଦ୍ର ସେନ ଓ ବିଜୟକୃଷ୍ଣ ଗୋସ୍ୱାମୀ ଦକ୍ଷିଣେଶ୍ୱରକୁ ଆସିଥିଲେ । ନରେନ୍ଦ୍ର ସେଦିନ ବି ଉପସ୍ଥିତ ଥିଲେ । ସେମାନେ ଶ୍ରୀରାମକୃଷ୍ଣଙ୍କୁ ସାକ୍ଷାତ ଆଲୋଚନା କରି ପ୍ରତ୍ୟାବର୍ତ୍ତନ କଲାଉତ୍ତାରୁ ଶ୍ରୀରାମକୃଷ୍ଣ ଉପସ୍ଥିତ ଅନ୍ୟ କେତେଜଣ ବ୍ରାହ୍ମସମାଜ ଭକ୍ତଗଣଙ୍କୁ କହିଲେ, ‘‘କେଶବ ଓ ବିଜୟଙ୍କ ଭିତରେ ଜ୍ଞାନାଲୋକ ଜଳୁଥିବାର ମୁଁ ଦେଖିପାରିଛି । ସେମାନଙ୍କର ଜ୍ଞାନାଲୋକ ଦୀପର ଶିଖାଭଳି । କିନ୍ତୁ ନରେନ୍ଦ୍ର ସ୍ୱୟଂ ଜ୍ୱଳନ୍ତ ସୂର୍ଯ୍ୟ ।’’

ଶ୍ରୀରାମକୃଷ୍ଣଙ୍କର ଏତାଦୃଶ ମନ୍ତବ୍ୟକୁ ତତ୍‌କ୍ଷଣାତ୍ ବିରୋଧ କରି ନରେନ୍ଦ୍ର କହିଉଠିଲେ, ‘‘ବୁଝିଲେ ଆଜ୍ଞା, ଆପଣ ଯଦି ଏମିତି କହିବେ, ଲୋକେ ଆପଣଙ୍କୁ ପାଗଳ ବୋଲି ନିଶ୍ଚୟ ଭାବିବେ । ସାରା ପୃଥିବୀରେ କେଶବଚନ୍ଦ୍ର ସେନ ଜଣେ ସମାଦୃତ ବିଖ୍ୟାତ ବ୍ୟକ୍ତି ଏବଂ ବିଜୟକୃଷ୍ଣ ଜଣେ ଉଚ୍ଚକୋଟିର ସାଧକ । ମୁଁ ସେମାନଙ୍କ ତୁଳନାରେ କେତେ ନଗଣ୍ୟ, ଆପଣ ସେମାନଙ୍କୁ କିପରି ମୋ ସହିତ ତୁଳନା କରିପାରୁଛନ୍ତି ?’’

ଶ୍ରୀରାମକୃଷ୍ଣଙ୍କ ମୁଖମଣ୍ଡଳରେ ସଙ୍କୋଚବିହୀନ ହସଟିଏ ଖେଳିଗଲା । ସେ କହିଲେ, ‘‘ବାବା, ମୁଁ କ’ଣ କରିପାରିବି ରେ ? ମୁଁ କ’ଣ ଜାଣିଶୁଣି ଏମିତି କଥା କହୁଛି । ମା ଯାହା ମୋତେ ଦେଖାଇ ଦିଅନ୍ତି, ତାହାହିଁ ମୁଁ କହିଥାଏ । ମା ମୋର କେବେ ମିଥ୍ୟା କୁହନ୍ତି ନାହିଁ ।’’

ନରେନ୍ଦ୍ର ଏଭଳି ଯୁକ୍ତିକୁ ପ୍ରତ୍ୟାଖ୍ୟାନ କରି କହିଲେ, ‘‘ବୁଝିଲେ ମହାଶୟ ! ଇୟେ ସବୁ ଆପଣଙ୍କ ମୁଣ୍ଡର ଗୋଳମାଳ । ବିଜ୍ଞାନ ଓ ଦର୍ଶନଶାସ୍ତ୍ର ପ୍ରମାଣ କରିଛି ଯେ ଆମର ଇନ୍ଦ୍ରିୟଗୁଡ଼ିକ ଆମକୁ ଅନେକ ସମୟରେ ପ୍ରତାରଣା କରନ୍ତି । ଯେହେତୁ ମୁଁ ଆପଣଙ୍କର ପ୍ରିୟ, ତେଣୁ ଆପଣଙ୍କ ଦୃଷ୍ଟିରେ ମୁଁ ଜଣେ ମହାନ୍ ଆତ୍ମା ବୋଲି ପ୍ରତିଭାତ ହେଉଛି । ସୁତରାଂ ଆପଣ ନାନାପ୍ରକାର ଅଦ୍ଭୁତ ଦର୍ଶନ ମୋ ସମ୍ବନ୍ଧରେ ଦେଖନ୍ତି ।’’

ନରେନ୍ଦ୍ରଙ୍କର ଯୁକ୍ତି ଓ ବିଦ୍ରୁପକୁ ସେ କେତେବେଳେ ହସରେ ଉଡ଼ାଇ ଦେଉଥିଲେ ତ କେତେବେଳେ ନିରୀହ ବାଳକସମ ମା କାଳୀଙ୍କ ନିକଟରେ ଗୁହାରି କରି କହୁଥିଲେ, ‘‘ମା, ନରେନ୍ଦ୍ର ଏମିତି କଥା ମୋତେ କହୁଛି ।’’ ପାଷାଣ ମୂର୍ତ୍ତି କାଳୀ ତାଙ୍କର ଅନାବିଳ ଓ ପବିତ୍ର ଭକ୍ତି ଓ ପ୍ରେମରେ ଚିନ୍ମୟୀ ମୂର୍ତ୍ତିରେ ରୂପାନ୍ତରିତ ହୋଇ କହୁଥିଲେ, ‘‘ତୁମେ ସେଥିରେ ମୁଣ୍ଡ ବ୍ୟଥା କରନି, ତା’କଥା ଆଦୌ ଶୁଣନା । ତୁମର ସବୁ ସତ୍ୟକୁ ସବାଶେଷରେ ସେ ଗ୍ରହଣ କରିବ ।’’

Digitized by srujanika@gmail.com

ନରେନ୍ଦ୍ର ଈଶ୍ୱରଙ୍କର ସାକାର ରୂପକୁ ମାନୁ ନ ଥିଲେ । ମା କାଳୀଙ୍କୁ ସେ ବିଶ୍ୱାସ କରୁ ନ ଥିଲେ । "ଜଗଜ୍ଜନନୀ କାଳୀ ଏମିତି କହିଲେ, ସେମିତି କହିଲେ" ପରମହଂସଙ୍କଠାରୁ ଯେତେବେଳେ ଶୁଣୁଥିଲେ, ସେତେବେଳେ ସେହିସବୁ କଥାକୁ ମସ୍ତିଷ୍କର ଭ୍ରାନ୍ତଧାରଣା ବୋଲି ଭାବି ସେ ହସରେ ଉଡ଼ାଇ ଦେଉଥିଲେ । ନରେନ୍ଦ୍ରଙ୍କର ଚିନ୍ତା ଓ ଚେତନା ପ୍ରଥମରୁ ଈଶ୍ୱରଙ୍କର ନିରାକାରଭାବରେ ପ୍ରତିଷ୍ଠିତ । ବିଶେଷତଃ ବ୍ରାହ୍ମସମାଜର ସଂସ୍କାର ତାଙ୍କ ଉପରେ ସମ୍ପୂର୍ଣ୍ଣ ପ୍ରଭାବ ପକାଇଥିଲା । ଈଶ୍ୱରଙ୍କର ସାକାର ରୂପକୁ ନେଇ ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କ ସହିତ ଯେତେ ବାକ୍ୟୁଦ୍ଧ କଲେବି, ତାଙ୍କଠାରୁ ଈଶ୍ୱରଙ୍କ ସାକାର ରୂପ ସମ୍ବନ୍ଧିତ ଚର୍ଚ୍ଚା ଓ ଦର୍ଶନ ଶୁଣିବାକୁ ସେ କେବେ କୁଣ୍ଠାବୋଧ କରୁ ନ ଥିଲେ । ପ୍ରକାଶ୍ୟରେ ତାଙ୍କୁ ଯେତେ କଟୁ ସମାଲୋଚନା କରୁଥିଲେ ତାଠୁଁ ଅଧିକ ତାଙ୍କୁ ପ୍ରାଣଠୁଁ ଭଲ ପାଉଥିଲେ ।

- ୧ -

*ନରେନ୍ଦ୍ରଙ୍କର ମୃଦୁ ଭର୍ତ୍ସନା : ଆପଣ ଅକାରଣେ ମୋ ପ୍ରତି ଏଭଳି ଆସକ୍ତି ରଖନ୍ତୁ ନାହିଁ । ଆପଣ ତ ଜାଣନ୍ତି ଜଡ଼ ଭରତ ଉପାଖ୍ୟାନ... ଯଦି ତାହା ସତ୍ୟ, ତେବେ ଆଜିଠାରୁ ସତର୍କ ରୁହନ୍ତୁ ।*

ପାଠପଢ଼ାରେ ବ୍ୟସ୍ତତା ଯୋଗୁଁ, ନରେନ୍ଦ୍ର ଏକଦା ଦକ୍ଷିଣେଶ୍ୱରକୁ ଆସିପାରିଲେ ନାହିଁ । କିନ୍ତୁ ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କର ଅନୁପସ୍ଥିତକୁ ସହ୍ୟ କରିପାରିଲେ ନାହିଁ । ସେ ସର୍ବଦା ଚାହୁଁଥିଲେ ଯେ ନରେନ୍ଦ୍ର ତାଙ୍କ ପାଖକୁ ସବୁଦିନ ଆସନ୍ତୁ । ଏହି ଚାହିଁବା ଭିତରେ ଏକ ମହତ୍ ଉଦ୍ଦେଶ୍ୟ ରହିଛି । କାରଣ ଏହି ପୃଥିବୀ ପୃଷ୍ଠରେ ତାଙ୍କର ଅବସ୍ଥାନର ସମୟସୀମା ଦ୍ରୁତଗତିରେ ନିକଟତର ହେଉଥିଲା ଏବଂ ବିଦାୟ ନେବା ପୂର୍ବରୁ ତାଙ୍କର ସମସ୍ତ ଆଧ୍ୟାତ୍ମିକ ଜ୍ଞାନ ସେ ହସ୍ତାନ୍ତର କରିପାରିବେ । ଯେହେତୁ ନରେନ୍ଦ୍ରଙ୍କର ବର୍ତ୍ତମାନର ଚିନ୍ତା ଓ ଚେତନା ସେହି ଆଧ୍ୟାତ୍ମିକ ଜ୍ଞାନ ବହନ କରିବାକୁ ଅସମର୍ଥ, ତେଣୁ ଏକ ଉପଯୁକ୍ତ ପାତ୍ରଭାବେ ତାଙ୍କୁ ଗଢ଼ିତୋଳିବାକୁ ହେବ ଯଦ୍ୱାରା ସେ ତାହା ବହନ କରି ଜଗତର ହିତ ନିମନ୍ତେ କାର୍ଯ୍ୟ କରିପାରିବେ । ସୁତରାଂ କ୍ଷଣମାତ୍ର ନରେନ୍ଦ୍ରକୁ ନିଜ ଚକ୍ଷୁ ଅନ୍ତରାଳରେ ରହିବାକୁ ସେ ଚାହୁଁ ନ ଥିଲେ ।

ବହୁଦିନ ଧରି ନରେନ୍ଦ୍ରଙ୍କର ଦର୍ଶନଲାଭରୁ ବଞ୍ଚିତ ହୋଇ ତାଙ୍କୁ ଖୋଜିବା ନିମନ୍ତେ ଏକଦା ସେ କଲିକତାରେ ପହଞ୍ଚିଲେ । ସେ ଦିନଟି ଥିଲା ରବିବାର । ପ୍ରାୟ ପ୍ରତି ରବିବାର ନରେନ୍ଦ୍ର ବ୍ରାହ୍ମସମାଜ ଗୃହରେ ଭଜନଗାନ କରିବାକୁ ଆସନ୍ତି ବୋଲି ପୂର୍ବରୁ ସେ ଜାଣିଥିଲେ । ତେଣୁ ସେ ସିଧା ବ୍ରାହ୍ମସମାଜ ଉପାସନା କକ୍ଷରେ ଉପସ୍ଥିତ ହେଲେ । ସେହି ସମୟରେ ଉପାସନା ବେଦୀ ଉପରେ ବ୍ରାହ୍ମସମାଜର ଜଣେ ଆଚାର୍ଯ୍ୟ ପ୍ରବଚନ ଦେଉଥିଲେ । ଈଶ୍ୱରଙ୍କ କଥା ପ୍ରବଚନରୁ ଶ୍ରବଣ କରିବାମାତ୍ରେ, ସେ ଅତ୍ୟନ୍ତ ଭାବୋନ୍ମତ୍ତ ହୋଇପଡ଼ିଲେ । ସେ ଭାବାବେଶରେ ଉପାସନା ବେଦୀ ନିକଟରେ ଉପନୀତ ହେଲେ । ଅହଙ୍କାରୀ ଆଚାର୍ଯ୍ୟ ତାଙ୍କୁ ସ୍ୱାଗତ କଲେନାହିଁ । କିନ୍ତୁ କେତେକ ଭକ୍ତ ଶ୍ରୀରାମକୃଷ୍ଣଙ୍କର ଅଚାନକ ଉପସ୍ଥିତି ଦେଖି, ତାଙ୍କୁ ପ୍ରଣାମ ଜଣାଇବା ଲାଗି

Digitized by srujanika@gmail.com

ତରତରରେ ନିଜନିଜର ଆସନ ତ୍ୟାଗକରି ଦଣ୍ଡାୟମାନ ହେଲେ । ସଭାଗୃହରେ ନିମିଷକ ମଧ୍ୟରେ ବିଶୃଙ୍ଖଳା ସୃଷ୍ଟି ହେଲା । କେତେକ ଈର୍ଷାନ୍ୱିତ ବ୍ରାହ୍ମଭକ୍ତ ଇତ୍ୟବସରରେ ଆଲୋକ ଲିଭାଇଦେଲେ ଏବଂ ଆଚାର୍ଯ୍ୟ ପ୍ରବଚନ ବନ୍ଦକରି ସେଠାରୁ ଚାଲିଗଲେ । ସମଗ୍ର ଗୃହ ଅନ୍ଧକାରରେ ବିଶୃଙ୍ଖଳିତ ହୋଇଉଠିଲା ଏବଂ ଠେଲାପେଲାରେ ଅନ୍ଧକାର ମଧ୍ୟରୁ ଆର୍ତ୍ତନାଦ ଶୁଭିଲା ।

ବଡ଼ ଆଶ୍ଚର୍ଯ୍ୟର ଘଟଣା ଯେ ଶ୍ରୀରାମକୃଷ୍ଣ ଉପାସନା ଗୃହରେ ପହଞ୍ଚିବାକ୍ଷଣି, ନରେନ୍ଦ୍ର ପ୍ରଥମରୁ ଅଲକ୍ଷ୍ୟରେ ତାଙ୍କ ପାଖେ ପାଖେ ଜଗି ରହିଥିଲେ । କାଳେ ତାଙ୍କ ଶ୍ରୀଅଙ୍ଗରେ ଆଘାତ ଲାଗିବ । ଶ୍ରୀରାମକୃଷ୍ଣଙ୍କର କାଳୀ ଆରାଧନା ବ୍ରାହ୍ମସମାଜୀଙ୍କ ପକ୍ଷରେ ଗ୍ରହଣଯୋଗ୍ୟ ନ ଥିଲା । କିନ୍ତୁ କେତେକ ବ୍ରାହ୍ମ ଭକ୍ତ ତାଙ୍କର ସିଦ୍ଧାନ୍ତ ଗ୍ରହଣ କରିଥିବାରୁ ସେମାନେ ତାଙ୍କ ପ୍ରତି ଈର୍ଷାପରାୟଣ ହୋଇଉଠିଥିଲେ । ନରେନ୍ଦ୍ରଙ୍କୁ ଏହା ଜଣା ଥିଲା । ତେଣୁ ନିଜର ଦୁଇବାହୁ ପ୍ରସାରିତ କରି ଜନଗହଳି ଭିତରୁ ଶ୍ରୀରାମକୃଷ୍ଣଙ୍କୁ କୁଣ୍ଢାଇ ପକାଇଲେ । ନିଜ କହୁଣିରେ ଲୋକମାନଙ୍କୁ ଆଡ଼େଇ ସେହି ଅନ୍ଧକାର ଉପାସନା ଗୃହର ପଛପଟ ଦ୍ୱାର ଦେଇ ବାହାରକୁ ସେ ଚାଲିଆସିଲେ । କ୍ଷଣମାତ୍ର ସେଠାରେ ନ ରହି, ଘୋଡ଼ାଗାଡ଼ିରେ ଶ୍ରୀରାମକୃଷ୍ଣଙ୍କୁ ବସାଇ ନିଜେ ନରେନ୍ଦ୍ର ଦକ୍ଷିଣେଶ୍ୱରକୁ ଚାଲି ଆସିଲେ ।

ଉପରୋକ୍ତ ଘଟଣାରେ ଅତୀବ ମର୍ମାହତ ହୋଇ ପରମହଂସ ଦେବଙ୍କୁ ମୃଦୁ ଭର୍ତ୍ସନା କରି ନରେନ୍ଦ୍ର କହିଲେ, ''ଆପଣ ଅକାରଣେ ମୋ ପ୍ରତି ଏଭଳି ଆସକ୍ତି ରଖନ୍ତୁ ନାହିଁ । ଆପଣ ତ ଜାଣନ୍ତି ଜଡ଼ଭରତ ଉପାଖ୍ୟାନ । ପୁରାଣରେ ବର୍ଣ୍ଣିତ ରାଜା ଭରତ ତାଙ୍କର ପୋଷା ହରିଣ ପ୍ରତି ଅତ୍ୟନ୍ତ ଆସକ୍ତଥିବାରୁ, ମୃତ୍ୟୁପରେ ସେ ଗୋଟିଏ ହରିଣ ହୋଇ ଜନ୍ମ ହୋଇଥିଲେ । ଯଦି ତାହା ସତ୍ୟ, ତେବେ ଆପଣ ଆଜିଠାରୁ ସତର୍କ ରୁହନ୍ତୁ । ମୋ ଉପରୁ ଆସକ୍ତି ଛାଡ଼ନ୍ତୁ ।''

ବାଳକ ସ୍ୱଭାବୀ ଶ୍ରୀରାମକୃଷ୍ଣଙ୍କର ସରଳ ପ୍ରାଣ ନରେନ୍ଦ୍ରଙ୍କର ଜଡ଼ ଭରତ ଉପାଖ୍ୟାନରେ ତନ୍ମୟ ହୋଇଗଲା । ସେ ଚିନ୍ତିତ ହୋଇ ନରେନ୍ଦ୍ରଙ୍କୁ ଚାହିଁ କହିଲେ, ''ହଁ ରେ ନରେନ୍ । ହଁ ସତକଥା କହୁଛୁ । ସତରେ ମୋର କ'ଣ ଯେ ହେବ ? କିନ୍ତୁ ତୋତେ ଦେଖା ନକରି ରହିପାରୁନି ।''

ନରେନ୍ଦ୍ରଙ୍କ ନିକଟରେ ନିଜର ଦୁଃଖ ବ୍ୟକ୍ତ କରି ଏକ ଲୟରେ ଚାଲିଲେ କାଳୀ ମନ୍ଦିରକୁ । ଏଠାରେ କହିବା ବାହୁଲ୍ୟ ଯେ ଏହି ସରଳପ୍ରାଣ ବ୍ୟକ୍ତି ଯେତେବେଳେ ଏଭଳି ତାର୍କିକ ଉକ୍ତି ଶୁଣନ୍ତି, ସେତେବେଳେ ସେ ଦୌଡ଼ି ଯାଆନ୍ତି ମା କାଳୀଙ୍କ ନିକଟକୁ ଏବଂ ସବୁ ପ୍ରଶ୍ନ ତାଙ୍କ ସମ୍ମୁଖରେ ଅଜାଡ଼ି ଦିଅନ୍ତି । ଏଥର ବି ତାହା କଲେ । ଅଳ୍ପ ସମୟ ପରେ ସେ ନରେନ୍ଦ୍ରଙ୍କ ପାଖକୁ ଫେରି ଆସିଲେ । ତାଙ୍କର ମୁଖମଣ୍ଡଳ ଆଲୋକରେ ଉଦ୍‌ଭାସିତ ଓ ଗଦ୍‌ଗଦ୍ କଣ୍ଠରେ ସେ କହିଉଠିଲେ, ''ଦୁଷ୍ଟ, ମୋତେ ଟିକିଏ ଶାନ୍ତିରେ ରହିବାକୁ ଦେ । ଯେତେ କହିଲେ ବି, ତୋର କୌଣସି କଥା ଶୁଣିବି ନାହିଁ । ମା' ମୋତେ କହିଛନ୍ତି, ତୁ ତାଙ୍କୁ ନାରାୟଣ ଭାବେ ଗ୍ରହଣ କରିଥିବାରୁ, ତୁ ଏତେ ଭଲ ପାଉଛୁ । ହଁ, ମା' ମୋତେ ସ୍ପଷ୍ଟ କହିଛନ୍ତି, ତୁ ଯେଉଁଦିନ ନରେନ୍ଦ୍ର ଭିତରେ ନାରାୟଣଙ୍କୁ ଦର୍ଶନ କରିବୁ ନାହିଁ, ସେହିଦିନଠୁଁ ତାକୁ ତ୍ୟାଗ କରିବୁ ।'' ନରେନ୍ଦ୍ର ନୀରବ ରହିଲେ ।

Digitized by srujanika@gmail.com

ଅନ୍ୟ ଦିନର ଏକ ଘଟଣା । ପୁନଶ୍ଚ ନରେନ୍ଦ୍ର ନିଜର ପଢ଼ାପଢ଼ି ଯୋଗୁଁ ଦକ୍ଷିଣେଶ୍ୱର ଆସିପାରିଲେ ନାହିଁ । ନରେନ୍ଦ୍ରଙ୍କର ଅଦର୍ଶନ ଶ୍ରୀରାମକୃଷ୍ଣଙ୍କ ଭିତରେ ବ୍ୟାକୁଳତା ସୃଷ୍ଟିକଲା । କାଳ ବିଳମ୍ବ ନ କରି ବିନାଖବରରେ ସେ ଦିନେ ନରେନ୍ଦ୍ରଙ୍କର କଲିକତାସ୍ଥ ବାସଭବନରେ ପହଞ୍ଚିଗଲେ । ସାଙ୍ଗରେ ଯାଇଥିଲେ ତାଙ୍କର ଭ୍ରାତୃପୁତ୍ର ରାମଲାଲ । ସେଠାରେ ପହଞ୍ଚି ସେ ଜାଣିବାକୁ ପାଇଲେ ଯେ ନରେନ୍ଦ୍ର ଗୃହର ଉପରମହଲାରେ ପାଠପଢ଼ାରେ ବ୍ୟସ୍ତ । ସେ ଅଧୈର୍ଯ୍ୟହୋଇ ଉପରମହଲାକୁ ଲମ୍ବିଥିବା ସିଡ଼ିରେ ଆରୋହଣ କରିବାକୁ ଉଦ୍ୟତ ହେଲେ । ରାମଲାଲ ତାଙ୍କ ହାତଧରି ସତର୍କତା ସହ ଉପରକୁ ଉଠିଲେ । କେତୋଟି ପାହାଚ ଅତିକ୍ରମ କରିଛନ୍ତି କି ନାହିଁ, ସେ ଦେଖିଲେ ଯେ ନରେନ୍ଦ୍ର ସିଡ଼ିର ଶେଷଭାଗରେ ଠିଆ ହୋଇଛନ୍ତି । ଯେମିତି ନରେନ୍ଦ୍ରଙ୍କୁ ଦେଖିଛନ୍ତି, 'ନରେନ୍ ନରେନ୍ ମୋ ହୃଦୟର ଧନ ନରେନ୍' କହି ହଠାତ୍ ସମାଧିରେ ବୁଡିଗଲେ । ନରେନ୍ ବ୍ୟସ୍ତ ହୋଇ ତଳକୁ ଦୌଡ଼ି ଆସିଲେ ଏବଂ ରାମଲାଲଙ୍କ ସହ ବହୁ କଷ୍ଟରେ ତାଙ୍କୁ ଟେକିଟେକି ନିଜର ପଢ଼ାଘରକୁ ନେଇଗଲେ । ସେତେବେଳକୁ ସେ ଗଭୀର ସମାଧିରେ ମଗ୍ନ । ସେଠାରେ ତାଙ୍କୁ ନରେନ୍ଦ୍ର ଅତି ଯତ୍ନ ସହକାରେ ଉପବେଶନ କରାଇଲେ । ନରେନ୍ଦ୍ରଙ୍କର ଜଣେ ସହପାଠୀ ଯାହାଙ୍କୁ ସେ ଶ୍ରୀରାମକୃଷ୍ଣଙ୍କ କଥା କହି ନ ଥିଲେ ଓ ସମାଧି କିଭଳି ଅବସ୍ଥା ତାହା ଆଦୌ ଜାଣି ନ ଥିଲେ,ସେ ହଠାତ୍ ବିଚଳିତ ହୋଇ ପଚାରିଲେ, ''ନରେନ୍, ଏହି ଲୋକଟା କିଏ ?''

ସହପାଠୀଙ୍କର ଅଭଦ୍ରୋଚିତ ପ୍ରଶ୍ନରେ ବିରକ୍ତ ପ୍ରକାଶ କରି ନରେନ୍ଦ୍ର କହିଲେ, ''ତୁମର ସେଥିରେ ମୁଣ୍ଡ ଖେଳାଇବା ଦରକାର ନାହିଁ । ତୁମେ ବର୍ତ୍ତମାନ ଘରକୁ ଯାଇପାର ।''

ଇତ୍ୟବସରରେ ତାଙ୍କର ବାହ୍ୟଜ୍ଞାନ ଫେରି ଆସିଲା । ତାଙ୍କର ଚକ୍ଷୁଦ୍ୱୟ ଅଶ୍ରୁପୂର୍ଣ୍ଣ । ସେ ବାଳକ ସମ ପ୍ରଶ୍ନ କଲେ, ''ନରେନ୍, ଆଜିକାଲି ମୋତେ ଭେଟିବାଲାଗି ଦକ୍ଷିଣେଶ୍ୱର ଆସୁନ କାହିଁକି ? ଏତକ ସ୍ନେହପୂର୍ଣ୍ଣ ସମ୍ବୋଧନ କରି ସାଙ୍ଗରେ ଆଣିଥିବା ମିଠାଇକୁ ଅତି ସରାଗରେ ନିଜ ହାତରେ ତାଙ୍କୁ ଖୁଆଇ ଦେଲେ । ଧନ୍ୟ ଏହି ମହାନ୍ ଗୁରୁ । ଶିଷ୍ୟର ଆଧାତ୍ମିକ ଉନ୍ନତି ନିମନ୍ତେ କେତେ ତତ୍ପର । ଏତିକିରେ ଏଠାରେ କଥା ସରିଲା ନାହିଁ । ଗୋଟିଏ ଭଜନ ଗାନ କରିବା ପାଇଁ ନରେନ୍ଦ୍ରଙ୍କୁ କହିଲେ, ''ନରେନ୍, ଭଜନଟିଏ ଗାଅ ।'' ନରେନ୍ଦ୍ର ନିଜର ତାନପୁରା ହାତରେଧରି ଜଗଜ୍ଜନନୀଙ୍କର ଭଜନଟିଏ ଗାନ କଲେ । ସମସ୍ତେ ନୀରବରେ ସୁଲଳିତ ସ୍ୱର ଶ୍ରବଣ କଲେ, କିନ୍ତୁ ଶ୍ରୀରାମକୃଷ୍ଣ ଭଜନର ତାଳେତାଳେ ନିଜର ବାହ୍ୟଜ୍ଞାନ ହରାଇଲେ । ପ୍ରକୃତିସ୍ଥ ହେଲାପରେ ରାମଲାଲଙ୍କ ସହ ଦକ୍ଷିଣେଶ୍ୱର ପ୍ରତ୍ୟାବର୍ତ୍ତନ କଲେ ।

ଶ୍ରୀରାମକୃଷ୍ଣ ବାଳକମାନଙ୍କୁ ଅତି ଭଲ ପାଉଥିଲେ । କାରଣ ସଂସାରର ବିଷୟବାସନା ଓ କାମିନୀ କାଞ୍ଚନ ସେମାନଙ୍କୁ ସ୍ପର୍ଶ କରି ନ ଥାଏ । ନୂଆ ମାଟି ହାଣ୍ଡି ଭଳି ସ୍ୱଚ୍ଛ ଓ ପବିତ୍ର । ଉପମା ଛଳରେ ସେ କହୁଥିଲେ, ''ଦେଖ, ଯେଉଁ ତାଟିଆରେ ରସୁଣ ଫୁଟା ଯାଇଥିବ, ସେହି ତାଟିଆକୁ ଯେତେ ମାଜିଲେ ବି ରସୁଣ ଗନ୍ଧ ଯିବ ନାହିଁ । ବାଳକମାନେ ସଜ ହାଣ୍ଡି ବା ତାଟିଆ ଭଳି । ବହୁ ବାଳକ ଭକ୍ତଙ୍କ ଗହଣରେ ସେ ଦକ୍ଷିଣେଶ୍ୱରରେ ରହିବାକୁ ପସନ୍ଦ କରୁଥିଲେ । ଶ୍ରୀରାମକୃଷ୍ଣ,

Digitized by srujanika@gmail.com

ବାଳକମାନଙ୍କମଧ୍ୟରୁ ନରେନ୍ଦ୍ରଙ୍କୁ ଅଧିକ ଭଲପାଉଥିଲେ । ତାହାର ଅର୍ଥ ନୁହେଁ ଯେ ଅନ୍ୟବାଳକ ଭକ୍ତ ଯେଉଁମାନଙ୍କ ମଧ୍ୟରୁ ଅନେକ ଭବିଷ୍ୟତରେ ବିଖ୍ୟାତ ସମାଦୃତ ସନ୍ୟାସୀ ହୋଇ ପାରିଥିଲେ, ସେମାନଙ୍କୁ ସେ ଭଲ ପାଉ ନ ଥିଲେ । ବାଳକ ନାରାୟଣଙ୍କର ଜୀବନ୍ତ ମୂର୍ତ୍ତିଭାବେ ସେ ଦେଖୁଥିଲେ ।

ଶ୍ରୀରାମକୃଷ୍ଣ କହୁଥିଲେ, ''ଏହି ବାଳକମାନେ ବହୁତ ଭଲ... । କିନ୍ତୁ ମୁଁ ନରେନ୍ଦ୍ରଙ୍କ ଭଳି ଅନ୍ୟକୌଣସି ବାଳକ ଅବଶ୍ୟ ଦେଖି ନାହିଁ । ସେ ସଙ୍ଗୀତରେ ପାରଙ୍ଗମ, ଜ୍ଞାନ ଆହରଣରେ ସିଦ୍ଧହସ୍ତ, ଧାର୍ମିକ ଆଲୋଚନାରେ ସେ ଅନନ୍ୟ । ଧ୍ୟାନରେ ବସି ସମଗ୍ର ରାତି ବିତାଇ ଦିଏ ଯେଉଁଠି ତା'ର ବାହ୍ୟଜ୍ଞାନ ବିଲୁପ୍ତ ହୋଇଯାଏ । ସେ ଏକ ଖାଣ୍ଟି ସୁନା ମୁଦ୍ରା ଯେଉଁଥିରେ ଟିକିଏ ମାତ୍ର ଖାଦ ନାହିଁ । ଟଙ୍କ୍ ଟଙ୍କ୍ ବାଜେ । ସବୁ କାର୍ଯ୍ୟ ସେ ଅନାୟସରେ କରିପାରେ ଏବଂ ପରୀକ୍ଷାରେ ପାସ୍ କରିବା ତା'ର ବାଁ ହାତର ଖେଳ । ସେ ବ୍ରାହ୍ମସମାଜକୁ ଯାଏ ଏବଂ ସେଠାରେ ଭଜନ ଗାନ କରେ । କିନ୍ତୁ ସେ ଅନ୍ୟ ବ୍ରାହ୍ମସମାଜୀ ଭଳି ନୁହେଁ, ସେ ହିଁ ପ୍ରକୃତରେ ବ୍ରହ୍ମଜ୍ଞାନୀ । ସେ ଧ୍ୟାନରେ ଉପବିଷ୍ଟ ହେଲେ ଜ୍ୟୋତି ଦର୍ଶନ କରେ ।

- ୨ -

*ଦେଖ ନରେନ୍, ତୋ ଭିତରେ ସ୍ୱୟଂ ଶିବ ବିରାଜିତ; ଆଉ ମୋ ଭିତରେ ସ୍ୱୟଂ ଜଗଜ୍ଜନନୀ ବିରାଜିତା । ଏହି ଦୁଇଜଣ ବାସ୍ତବରେ ଏକ ଓ ଅଭିନ୍ନ ।*

ଯିଏ ଯାହାକୁ ଭଲପାଏ, ସିଏ ତା'ର ପ୍ରଶଂସା ଗାନ କରେ । ଭଲପାଇବା ଭିତରେ ନିଜର ସ୍ୱାର୍ଥ ନିହିତ ଥାଏ । ସ୍ୱାର୍ଥ ଯେତେ ହାସଲ ହେଉଥିବ, ସ୍ନେହମମତା ସେତେଦିନ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିବ । ସ୍ୱାର୍ଥରେ ଆଞ୍ଚ ଆସିଲେ, ଭଲପାଇବା କୁଆଡ଼େ ଚାଲିଯିବଯେ ତା'ର ପତ୍ତା ମିଳିବ ନାହିଁ । କିନ୍ତୁ ଶ୍ରୀରାମକୃଷ୍ଣ ସାଧାରଣ ମନୁଷ୍ୟ ନୁହଁନ୍ତି । ତାଙ୍କର ନିଜର ଭଳି କିଛି ନାହିଁ । ମନୁଷ୍ୟକୁ ନିଜ ସ୍ୱରୂପ ଚିହ୍ନାଇ ଦେବାପାଇଁ ତାଙ୍କର ଆଗମନ । ବ୍ୟକ୍ତିର ଈଶ୍ୱରାଭିମୁଖୀ ମନ ହେଲେ, ସମସ୍ତ ଦୁଃଖ ଜଞ୍ଜାଳ ଉଭେଇଯିବ । ନରେନ୍ଦ୍ରଙ୍କ ଭିତରେ ଏକ ବିଶାଳ ସମ୍ଭାବନା ସେ ଦେଖିଥିଲେ ଏବଂ ନରେନ୍ଦ୍ର କେବଳ ତାଙ୍କର ଭାବଧାରାକୁ ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରିପାରିବେ । ତେଣୁ ତାଙ୍କର ନରେନ୍ଦ୍ରଙ୍କ ଠାରେ ଏଭଳି ଆସକ୍ତି । ଏହି ପରିପ୍ରେକ୍ଷୀରେ ସେ ନରେନ୍ଦ୍ରଙ୍କୁ ଏକଦା ଏକାନ୍ତରେ କହିଥିଲେ, ''ଦେଖ ନରେନ୍ ତୋ ଭିତରେ ସ୍ୱୟଂ ଶିବ ବିରାଜିତ; ଆଉ ମୋ ଭିତରେ ସ୍ୱୟଂ ଜଗଜ୍ଜନନୀ ବିରାଜିତା । ଏହି ଦୁଇଜଣ ବାସ୍ତବରେ ଏକ ଓ ଅଭିନ୍ନ ।''

ଏତାଦୃଶ ମନ୍ତବ୍ୟ ନରେନ୍ଦ୍ରଙ୍କର ଶ୍ରୁତିକଟୁ ହେଲା । ସେ ନିଜର ପ୍ରଶଂସା ସହି ନ ପାରି ହଠାତ୍ କହି ଉଠିଲେ, ''ଦେଖନ୍ତୁ ମହାଶୟ । ଆପଣଙ୍କର କଥାଗୁଡ଼ାକ ନିହାତି ପ୍ରମାଦପୂର୍ଣ୍ଣ, ଏଭଳି ଭ୍ରାନ୍ତ ଧାରଣା କେବଳ ପାଗଳର ହୋଇପାରେ ।'' ନରେନ୍ଦ୍ର ଯେତେ କଟୁକଥା କହିଲେ

Digitized by srujanika@gmail.com

ବି ସେଗୁଡ଼ିକ ତାଙ୍କୁ ଚନ୍ଦନ ଲେପନ ଭଳି ବୋଧ ହେଉଥିଲା । କାରଣ ସେ ଭଲ ଭାବରେ ଉପଲବ୍ଧି କରିଥିଲେ ନରେନ୍ଦ୍ର ଏକ ଉଚ୍ଚ ସ୍ତରୀୟ ସତ୍ତାର ବାଳକ ଯାହାଙ୍କୁ ସତ୍-ଚିତ୍-ଆନନ୍ଦ କୁହାଯାଏ । ତାଙ୍କର ପୁରୁଷ ପ୍ରକୃତି । ବହୁଭକ୍ତ ଏଠାକୁ ଆସନ୍ତି କିନ୍ତୁ ନରେନ୍ଦ୍ରଙ୍କ ଭଳି ନୁହେଁ । ଯେଉଁମାନେ ତାଙ୍କ ନିକଟକୁ ଆସୁଥିଲେ, ସେ ସମସ୍ତଙ୍କର ସ୍ୱଭାବ ଓ ଚରିତ୍ରର ଟିକିନିଖି ହିସାବ ରଖୁଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଦଶପାଖୁଡ଼ାର ପଦ୍ମଫୁଲ, ଅନ୍ୟ କେତେଜଣ ଷୋଡ଼ଶ ପାଖୁଡ଼ାର ପଦ୍ମଫୁଲ, ଅନ୍ୟ କେତେଜଣ ଶତ ପାଖୁଡ଼ାର ପଦ୍ମଫୁଲ କିନ୍ତୁ ନରେନ୍ଦ୍ର ସହସ୍ର ପାଖୁଡ଼ାର ପଦ୍ମଫୁଲ ବୋଲି ସେ ପ୍ରାୟତଃ କହୁଥିଲେ । ଅନ୍ୟ ଭକ୍ତମାନେ କଳସି ବା ଛୋଟ ପାତ୍ର ହୋଇପାରନ୍ତି, ନରେନ୍ଦ୍ର କିନ୍ତୁ ଏକ ବିଶାଳ ଜଳପାତ୍ର । ଅନ୍ୟମାନେ କ୍ଷୁଦ୍ର ଜଳାଶୟ ହୋଇପାରନ୍ତି, କିନ୍ତୁ ନରେନ୍ଦ୍ର ହାଲଦାରପୁକୁର ସମ ବିଶାଳ ପୁଷ୍କରିଣୀ । (ଏଠାରେ ଉଲ୍ଲେଖନୀୟ ଯେ ଶ୍ରୀରାମକୃଷ୍ଣଙ୍କର ଗ୍ରାମ କାମାରପୁକୁରରେ ଏକ ପୁଷ୍କରିଣୀ ଅଛି ଯାହାର ନାମ ହାଲଦାରପୁକୁର) । ମାଛମାନଙ୍କ ଭିତରେ ନରେନ୍ଦ୍ର ରାଘବ ବାଳିଆ । ଅନ୍ୟମାନେ ଛୋଟ ଛୋଟ ମାଛ । ନରେନ୍ଦ୍ର ଗୋଟିଏ ବିରାଟ ବାଉଁଶ ଯାହାର ଭିତର କେବଳ ଫମ୍ପା । ନରେନ୍ଦ୍ର ଗୋଟିଏ ଅଣ୍ଡିରା ପାରା ଯାହାର ଥଣ୍ଟକୁ ଧରିଲେ ସେ ଖସି ପଳାଇ ଯିବ । କିନ୍ତୁ ମାଈ ପାରା ଯାଇପାରିବ ନାହିଁ । ଏଭଳି ଅନେକ ଉପମା ଦେଇ ସେ ନରେନ୍ଦ୍ରଙ୍କୁ ଅନ୍ୟ ସମ୍ମୁଖରେ ପ୍ରଶଂସା କରୁଥିଲେ, ଯେଉଁ ପ୍ରଶଂସାରେ ତାଙ୍କର ନ ଥିଲା ଲେଶମାତ୍ର ସ୍ୱାର୍ଥ ଓ ଆସକ୍ତି ।

ବ୍ରାହ୍ମସମାଜର ଜଣେ ଅନୁଗାମୀହେତୁ ନରେନ୍ଦ୍ର ଈଶ୍ୱରଙ୍କର ନିରାକାର ଭାବଧାରା ପ୍ରତି ଅଙ୍ଗୀକାରବଦ୍ଧ ଥିଲେ । ହିନ୍ଦୁଧର୍ମର ଦେବାଦେବୀମାନଙ୍କ ପ୍ରତି ତାଙ୍କର କୌଣସି ପ୍ରକାର ଆକର୍ଷଣ ନ ଥିଲା । ଶ୍ରୀରାମକୃଷ୍ଣଙ୍କର କାଳୀ ଉପାସନାକୁ ସେ ଆଦୌ ଗ୍ରହଣ କରୁ ନ ଥିଲେ । ନରେନ୍ଦ୍ରଙ୍କ ଜଣେ ବନ୍ଧୁ ରାଖାଲ ମଧ୍ୟ ବ୍ରାହ୍ମସମାଜର ଉପାସନାକୁ ଗ୍ରହଣ କରୁଥିଲେ । କିନ୍ତୁ ରାଖାଲ ବାସ୍ତବରେ ଥିଲେ ଜଣେ ବଡ଼ ଭକ୍ତ । ତାଙ୍କ ଭିତରେ ଭକ୍ତିଭାବର ଲହରି ନିତ୍ୟ ଖେଳୁଥିଲା । କିନ୍ତୁ ନିଜର ମନ କଥା କେବେ ବି ନରେନ୍ଦ୍ରଙ୍କଠାରେ ପ୍ରକାଶ କରୁ ନ ଥିଲେ । ଏକଦା ରାଖାଲ ଶ୍ରୀରାମକୃଷ୍ଣଙ୍କ ସହିତ କାଳୀ ମନ୍ଦିରକୁ ଯାଇଥିଲେ । ଶ୍ରୀରାମକୃଷ୍ଣ କହିଲେ, ''ଆରେ ରାଖାଲ, ମା'ଙ୍କୁ ଭୂମିଷ୍ଠ ପ୍ରଣାମ କର ।'' ଅବଶ୍ୟ ବ୍ରାହ୍ମସମାଜ ନିୟମାନୁସାରେ ରାଖାଲ ଦ୍ୱିଧା ପ୍ରକାଶ କଲେ କିନ୍ତୁ କାଳେ ଶ୍ରୀରାମକୃଷ୍ଣ ଅସନ୍ତୁଷ୍ଟ ହେବେ, ତାଙ୍କ ସମ୍ମାନାର୍ଥେ ବାଧବାଧକତାରେ କାଳୀଙ୍କୁ ଭୂମିଷ୍ଠ ପ୍ରଣାମ କଲେ । ରାଖାଲଙ୍କର ମୂର୍ତ୍ତି ଉପାସନା ନରେନ୍ଦ୍ରଙ୍କୁ ଭଲ ଲାଗିଲା ନାହିଁ । ସେ ବିରକ୍ତ ହୋଇ ରାଖାଲଙ୍କୁ କଟୁଭାଷାରେ ଭର୍ତ୍ସନା କଲେ । ନରେନ୍ଦ୍ରଙ୍କର ଏତାଦୃଶ ଭର୍ତ୍ସନା ଲକ୍ଷ୍ୟକରି ଶ୍ରୀରାମକୃଷ୍ଣ କହିଲେ, ''ନରେନ୍, ରାଖାଲକୁ ଏଭଳି ଭର୍ତ୍ସନା କରନାହିଁ । ସେ ତୁମକୁ ଭାରି ଭୟ କରେ । ବର୍ତ୍ତମାନ ରାଖାଲ ଈଶ୍ୱରଙ୍କର ସାକାର ରୂପକୁ ବିଶ୍ୱାସ କଲେଣି । ଏହା ତା'ର ମୌଳିକ ପ୍ରବୃତ୍ତି । ତାକୁ କିପରି ପରିବର୍ତ୍ତନ କରିପାରିବୁ ? ସମସ୍ତେ ପ୍ରଥମରୁ ଈଶ୍ୱରଙ୍କର ନିରାକାର ଭାବକୁ ହୃଦୟଙ୍ଗମ କରିପାରିବେ ନାହିଁ ।'' ଶ୍ରୀରାମକୃଷ୍ଣଙ୍କର କହିବାର ତାତ୍ପର୍ଯ୍ୟ ବୁଝିଗଲେ, ଆଉ କେବେବି ରାଖାଲଙ୍କର ମୂର୍ତ୍ତି ଉପାସନାକୁ ସେ ବିରୋଧ କରି ନ ଥିଲେ । ରାଖାଲ ପରବର୍ତ୍ତୀ କାଳରେ ସ୍ୱାମୀ ବ୍ରହ୍ମାନନ୍ଦ ଭାବେ ସମାଦୃତ ସନ୍ୟାସୀ ହୋଇଥିଲେ ।

Digitized by srujanika@gmail.com

ଶ୍ରୀରାମକୃଷ୍ଣ ବାରମ୍ବାର ନରେନ୍ଦ୍ରଙ୍କୁ ବୁଝାଇ କହୁଥିଲେ ''ପୁତ୍ର, କୌଣସି ଉପାସନା ମାର୍ଗକୁ ସମାଲୋଚନା କରନାହିଁ । ସମସ୍ତ ମାର୍ଗଭିତରେ ତୁମେ କେବଳ ସତ୍ୟକୁ ଦେଖ । ଈଶ୍ୱରଙ୍କର ସତ୍ତା ସବୁଠାରେ ପ୍ରକାଶିତ । ମୂର୍ତ୍ତି ଭିତରେ ବି ଜଣେ ଈଶ୍ୱରଙ୍କର ରୂପ ଦର୍ଶନ କରିପାରିବ । ପ୍ରତ୍ୟେକ ମଣିଷ ନିଜ ନିଜ ରଚି ଅନୁସାରେ ପୂଜାପାଠ କରେ । ନିଜର ଇପ୍‌ସିତ ଈଷ୍ଟଙ୍କୁ ଦର୍ଶନ କରେ । ମୂର୍ତ୍ତିପୂଜାକୁ ତୁମେ ହସରେ ଉଡ଼ାଇ ଦିଅ ନାହିଁ ।'' କିନ୍ତୁ ମୂର୍ତ୍ତିପୂଜାର ବୈଶିଷ୍ଟ୍ୟ ଯେତେ ବୁଝାଇଲେ ବି ନରେନ୍ଦ୍ରଙ୍କ ମନ ମୂର୍ତ୍ତିପୂଜା ଅଭିମୁଖେ ଆଦୌ ଆକୃଷ୍ଟ ହେଉ ନ ଥିଲା । ଦିନେ ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କୁ କହିଲେ, ''ଆଚ୍ଛା ନରେନ୍, ତୁମେ ଯଦି ମା' କାଳୀଙ୍କୁ ଗ୍ରହଣ କରୁନାହଁ, ତେବେ ଏଠାକୁ ତୁମେ କାହିଁକି ଆସୁଛ ?''

ନରେନ୍ଦ୍ର ଏତାଦୃଶ ପ୍ରଶ୍ନରେ ହତୋତ୍ସାହ ନ ହୋଇ ପ୍ରତ୍ୟୁତ୍ତର ଛଳରେ କହିଲେ, ''ମହାଶୟ, ଯେହେତୁ ମୁଁ ଏଠାକୁ ଆସୁଛି, ସେଥିପାଇଁ କ'ଣ ଆପଣଙ୍କର କାଳୀଙ୍କୁ ମାନିବାକୁ ବାଧ ?'' ଶ୍ରୀରାମକୃଷ୍ଣ କହିଲେ, ''ଆରେ ବାବା, ମୁଁ ଜାଣିଛି ତୁମେ କେବଳ ଭବିଷ୍ୟତରେ ମା'ଙ୍କୁ ଗ୍ରହଣ କରିବ ନାହିଁ ବରଂ ତାଙ୍କ ପାଇଁ ତୁମେ ବହୁତ ଅଶ୍ରୁମୋଚନ କରିବ ।'' ଉପସ୍ଥିତ ଭକ୍ତମାନଙ୍କୁ ଲକ୍ଷ୍ୟ କରି ଶ୍ରୀରାମକୃଷ୍ଣ ପୁନର୍ବାର କହି ଉଠିଲେ, ''ବୁଝିଲେ ଆଜ୍ଞା ! ଏହି ବାଳକ ଈଶ୍ୱରଙ୍କର ସାକାର ରୂପକୁ ମାନୁ ନାହିଁ ଏବଂ ମୋର ଅତିନ୍ଦ୍ରିୟ ମାନସିକତା ଓ ଅନୁଭୂତିକୁ ମସ୍ତିଷ୍କର ବିକୃତ ଧାରଣା ବୋଲି କହୁଛି; ତଥାପି ଏହି ବାଳକ ପବିତ୍ର ଓ ଶୁଦ୍ଧ, ଯଦି ପ୍ରତ୍ୟକ୍ଷ ପ୍ରମାଣ ନ ମିଳେ, ଏହି ବାଳକ କୌଣସି ବସ୍ତୁରେ ବିଶ୍ୱାସ କରେନାହିଁ । ସେ ବହୁତ ପାଠ ପଢ଼ିଛି, ତେଣୁ ତା'ର ବିଚାରଧାରା ଅତି ଉତ୍କୃଷ୍ଟ ।'' ନରେନ୍ଦ୍ର ଚାହିଁଲେ ଶ୍ରୀରାମକୃଷ୍ଣଙ୍କୁ ବିସ୍ମୟରେ, ''କିଏ ଏହି ମହାପୁରୁଷ ! ଈଶ୍ୱରଙ୍କର ଅସ୍ତିତ୍ୱ ବିନା ବାଛବିଚାରରେ, ବିଭିନ୍ନ ରୂପରେ ଦେଖି ପାରୁଛନ୍ତି !''

## - ୩ -

*ଶ୍ରୀରାଧା-କୃଷ୍ଣ ପ୍ରେମ : ଆତ୍ମାର କୌଣସି ଲିଙ୍ଗ ନାହିଁ । ଏହା ପୁରୁଷ ନୁହେଁ କିମ୍ବା ନାରୀ ନୁହେଁ । ଶରୀରରେ ଲିଙ୍ଗ ଥାଏ । ଯେଉଁ ବ୍ୟକ୍ତି ଦେହ ଓ ମନର ଉର୍ଦ୍ଧ୍ୱକୁ ଚାଲିଯାଏ, ସେଠାରେ ସେ ଲିଙ୍ଗର ଭେଦଭାବ ଦେଖିବାକୁ ପାଏ ନାହିଁ । ସବୁକିଛି ଚୈତନ୍ୟମୟ ।*

ତାଙ୍କର ବିସ୍ମୟ, ଶ୍ରୀରାମକୃଷ୍ଣଙ୍କଠାରୁ ରାଧା-କୃଷ୍ଣଙ୍କର ଦିବ୍ୟ ଲୀଳା ଶ୍ରବଣ କଲା ଉତ୍ତାରୁ ଦ୍ୱିଗୁଣିତ ହେଲା । ନରେନ୍ଦ୍ର ଯୁକ୍ତି ଛଳରେ କହିଲେ, ''ମହାଶୟ, ରାଧାକୃଷ୍ଣ ଲୀଳା ମୁଁ ବିଶ୍ୱାସ କରେନାହିଁ । କାରଣ ରାଧା ବୋଲି କୌଣସି ବ୍ୟକ୍ତିସତ୍ତା ପୁରାଣରେ ବର୍ଣ୍ଣିତ ହୋଇନାହିଁ ଏବଂ ଐତିହାସିକ ଦୃଷ୍ଟିକୋଣରୁ, ରାଧାଙ୍କର ଭୂମିକା ସନ୍ଦେହ ଘେରରେ ରହିଛି ଏବଂ ଏହା ପ୍ରମାଣସିଦ୍ଧ ନୁହେଁ । ଦ୍ୱିତୀୟରେ ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀରାଧାଙ୍କର ସମ୍ପର୍କ ଥିଲା ଅନୈତିକ ଏବଂ ଆପତ୍ତିଜନକ ।'' ନରେନ୍ଦ୍ରଙ୍କର ଏଭଳି ମନ୍ତବ୍ୟରେ ସେ ଆଦୌ ବିଚଳିତ ନ ହୋଇ ତାଙ୍କୁ ରାଧା-କୃଷ୍ଣଙ୍କର ଅମୃତ ଲୀଳା ସମ୍ବନ୍ଧରେ ବୁଝାଇବାକୁ ଚେଷ୍ଟା କଲେ । କିନ୍ତୁ ନରେନ୍ଦ୍ରଙ୍କ ତାର୍କିକ ମନ ନ ବୁଝିବାରୁ ଶ୍ରୀରାମକୃଷ୍ଣ କହିଲେ, ''ନରେନ୍ ! ଶୁଣ୍ ମୋ କଥା । ମନେକର ରାଧା

Digitized by srujanika@gmail.com

ବୋଲି କୌଣସି ନାରୀ ଇତିହାସ ଓ ପୁରାଣ ଦ୍ୱାରା ସ୍ୱୀକୃତ ହୋଇନାହିଁ, କିନ୍ତୁ ଜଣେ ନାରୀ ଈଶ୍ୱରଙ୍କୁ ପାଇବା ପାଇଁ ବ୍ୟାକୁଳତା ସହକାରେ ଉଦ୍ୟମ କରୁଥିଲା ବୋଲି ଏକ କାଳ୍ପନିକ କାହାଣୀର ଉଦ୍ଭବ ହୋଇଛି । ତୁମେ କାହିଁକି ସେହି କାଳ୍ପନିକ ରାଧା ଓ ଗୋପୀମାନଙ୍କର ଈଶ୍ୱରଙ୍କୁ ଲାଭକରିବାର ବ୍ୟାକୁଳତା ଉପରେ ଗଭୀର ଧ୍ୟାନ କରୁ ନାହଁ ? ତୁମେ କେବଳ କାହାଣୀ ଉପରେ ମନକୁ କାହିଁକି ସମାସୀନ କରୁଛ ? ସେମାନେ ତୁମକୁ ମନୁଷ୍ୟ ଭଳି ପ୍ରତୀୟମାନ ହୋଇପାରନ୍ତି, କିନ୍ତୁ ସେମାନଙ୍କର ବ୍ୟାକୁଳତା ଓ ଦିବ୍ୟଦର୍ଶନକୁ ଐଶ୍ୱରିକ ବୋଲି କାହିଁକି ଗ୍ରହଣ କରୁନାହଁ ?

ବୈଷ୍ଣବ ସାଧନାର ଉଚ୍ଚତମ ସ୍ତର ''ମଧୁର ଭାବ'' ଅର୍ଥାତ୍ ପ୍ରେମିକାର ପ୍ରେମିକ ପାଇଁ ଗଭୀର ପ୍ରେମ ଉପରେ ମୁଁ ସାଧନା କରିଥିଲି । ପ୍ରେମ ଉପରେ ବୈଷ୍ଣବ ଆଚରଣ କେନ୍ଦ୍ରିଭୂତ । ଏଥିରେ ପୂଜକ ଓ ପୂଜ୍ୟର ମିଳନ ଘଟିଥାଏ । ଏହି ଆଦର୍ଶର ଚମତ୍କାରିତା ବଡ଼କଥା ନୁହେଁ, ମଧୁର ଓ ଆତ୍ମିୟତା ସମ୍ପର୍କଭାବ ବିଶେଷ ମହତ୍ତ୍ୱପୂର୍ଣ୍ଣ । ନିଜର ସମସ୍ତ ସୁଖ ଓ ସ୍ୱାର୍ଥ ତ୍ୟାଗକରି ,କେବଳ କୃଷ୍ଣ ପ୍ରେମରେ ଭୋଳ ହେଉଥିଲେ ଶ୍ରୀରାଧା । ଏହି ସାଧନା ଦ୍ୱାରା ଯୌନ ଲାଳସାର ପରିସମାପ୍ତି ଘଟିଥାଏ । ଆତ୍ମାର କୌଣସି ଲିଙ୍ଗ ନାହିଁ । ଏହା ପୁରୁଷ ନୁହେଁ କିମ୍ବା ନାରୀ ନୁହେଁ । ଶରୀରରେ ଲିଙ୍ଗ ଥାଏ । ଯେଉଁ ବ୍ୟକ୍ତି ଦେହ ଓ ମନର ଉର୍ଦ୍ଧ୍ୱକୁ ଚାଲିଯାଏ, ସେଠାରେ ସେ ଲିଙ୍ଗର ଭେଦଭାବ ଦେଖିବାକୁ ପାଏନାହିଁ । ସବୁକିଛି ଚୈତନ୍ୟମୟ - ମୁଁ ସେହି ରାଧାଭାବରେ ବହୁଦିନ ଧରି ନିମଗ୍ନ ଥିଲି - କି ଆନନ୍ଦ, କି ମଧୁରତା, କି ଅପୂର୍ବ ମିଳନ ! ପରମସତ୍ୟ ପରମେଶ୍ୱରଙ୍କୁ ଲାଭ କରିବାର ଏହା ଏକ ପଥ ।''

ନିଜ ଜୀବନର ଅପୂର୍ବ ସାଧନାର ଇତିବୃତ୍ତି ନରେନ୍ଦ୍ରଙ୍କ ସମ୍ମୁଖରେ ଉନ୍ମୋଚନ କଲେ ମଧ୍ୟ, ଶ୍ରୀରାମକୃଷ୍ଣ ଭଲ ଭାବରେ ଜାଣିଥିଲେ ଯେ ନରେନ୍ଦ୍ର ଜଣେ ଉଗ୍ର ବିଦ୍ରୋହୀ । ବୌଦ୍ଧିକ ତର୍କ ବିଚାର ଓ ସାଧନା ବିନା କେହି ଜ୍ଞାନାଲୋକିତ ହୋଇପାରିବେ ନାହିଁ ବୋଲି ତାଙ୍କର ଥିଲା ବଦ୍ଧ ଧାରଣା ।. ତେଣୁ ଶ୍ରୀରାମକୃଷ୍ଣ ପ୍ରଥମରୁ ନରେନ୍ଦ୍ରଙ୍କୁ ଅଦ୍ୱୈତ ବେଦାନ୍ତରେ ଦୀକ୍ଷିତ କରିବାକୁ ଚେଷ୍ଟା କରିଥିଲେ । ଅନେକ ସମୟରେ ସେ ଅଷ୍ଟବକ୍ର ସଂହିତା ଏବଂ ଅନ୍ୟାନ୍ୟ ଅଦ୍ୱୈତ ଶାସ୍ତ୍ରକୁ ପଢ଼ି ଶୁଣାଇବାକୁ ନରେନ୍ଦ୍ରଙ୍କୁ କହୁଥିଲେ । ଏହିସବୁ ଶାସ୍ତ୍ରରେ ନିଜକୁ ସ୍ରଷ୍ଟା ବା ସ୍ୱୟଂ ଈଶ୍ୱର ଭାବେ ବର୍ଣ୍ଣିତ ହୋଇଥିବାରୁ ନରେନ୍ଦ୍ର ଅତ୍ୟନ୍ତ କ୍ରୋଧିତ ହୋଇଉଠିଲେ । କାରଣ ବ୍ରାହ୍ମସମାଜ ଆଚାର ସଂହିତାର ଏହାଥିଲା ବିରୁଦ୍ଧାଚରଣ । ସେ ନିଜର ବିରକ୍ତି ପ୍ରକାଶ କରି କହିଲେ, ''ଏହି ଶାସ୍ତ୍ରଗୁଡ଼ିକ ଅତ୍ୟନ୍ତ ଈଶ୍ୱର ନିନ୍ଦୁକ । ଏଭଳି ଦର୍ଶନ ଓ ନିରୀଶ୍ୱରବାଦ ଭିତରେ କୌଣସି ପ୍ରଭେଦ ନାହିଁ । ନିଜକୁ ଈଶ୍ୱର ଭାବିବା ଭଳି ଗର୍ହିତ ପାପ ସମଗ୍ର ସଂସାରରେ କେଉଁଠି ବି ନାହିଁ । ମୁଁ ଈଶ୍ୱର, ତୁମେ ଈଶ୍ୱର, ଏହିସବୁ ଜାବତୀୟ ସୃଷ୍ଟବସ୍ତୁ ଈଶ୍ୱର - ଏହାଠୁଁ ବଳି ଉଦ୍ଭଟ ଚିନ୍ତା କିଛି ହୋଇପାରିବ ନାହିଁ । ଯେଉଁ ଋଷି ଏଭଳି ଉଦ୍ଭଟ କଥା ରଚନା କରିଛନ୍ତି, ସେ ନିଶ୍ଚିତଭାବେ ଜଣେ ପାଗଳ ହୋଇଥିବେ ।

ନରେନ୍ଦ୍ରଙ୍କର ବିଦ୍ରୋହୀ ମନରୁ ଉତ୍ପନ୍ନ ଅଗ୍ନିଶିଖାର ଉଦ୍‌ଗୀରଣ ଓ ମୁକ୍ତ ଚିନ୍ତନକୁ ଲକ୍ଷ୍ୟକରି ସେ କହି ଉଠିଲେ, ''ବାବା, ଏହି ମହାନ ଋଷିମାନଙ୍କର ଦୃଷ୍ଟିକୋଣକୁ ତୁମେ ଗ୍ରହଣ କରି

Digitized by srujanika@gmail.com

ନ ପାର, କିନ୍ତୁ ସେମାନଙ୍କୁ କିପରି ତୁମେ ଭଜନା କରିପାରୁଛ, ତୁମେ କ'ଣ ଈଶ୍ୱରଙ୍କର ଅସୀମତା ଓ ଅନନ୍ତ ବ୍ୟାପକତାକୁ ସୀମିତ କରିପାରିବ ? ସେହି ପରମସତ୍ୟ ପରମେଶ୍ୱରଙ୍କୁ ପ୍ରାର୍ଥନା କର ଏବଂ ତାଙ୍କର ଗୋଟିଏ ପଥରେ ବିଶ୍ୱାସ ରଖ, ସେ ନିଜକୁ ପ୍ରକାଶିତ କରିପାରିବେ ।''

ଶ୍ରୀରାମକୃଷ୍ଣ ପରମହଂସ, ସାଂସାରିକ ଓ ବ୍ୟବହାରିକ ଦୃଷ୍ଟିରେ ନରେନ୍ଦ୍ରଙ୍କୁ ଭିନ୍ନ ମଣୁଥିଲେ । ସେ ସାଧାରଣତଃ ଭକ୍ତମାନଙ୍କୁ ଖାଦ୍ୟ, ପ୍ରାର୍ଥନା, ଉପାସନା, ଧ୍ୟାନ, ଧାରଣା, ଶୟନ ଏବଂ ଅନ୍ୟ ନିତ୍ୟନୈମିତ୍ତ କାର୍ଯ୍ୟଧାରାରେ ସଂଜମ ଆଚରଣ କରିବା ନିମନ୍ତେ ଗୁରୁତ୍ୱ ପ୍ରଦାନ କରୁଥିଲେ । କିନ୍ତୁ ନରେନ୍ଦ୍ରଙ୍କ କ୍ଷେତ୍ରରେ ସାତ ଖୁଣ୍ ମାଫ୍, କୌଣସି ପ୍ରକାର ଆଚରଣ ବିଧି ସେ ଲାଗୁ କରୁ ନ ଥିଲେ । ତାଙ୍କ ଦୃଷ୍ଟିରେ ନରେନ୍ଦ୍ର ଜନ୍ମରୁ ନିତ୍ୟସିଦ୍ଧ, ଧ୍ୟାନସିଦ୍ଧ ଏବଂ ଜ୍ଞାନର ଜ୍ୱଳନ୍ତ ଗର୍ଜନ । ସେ ଯାହାବି ଅଶୁଦ୍ଧ ଖାଦ୍ୟ ଭକ୍ଷଣ କରିବେ ତାଙ୍କର ଶୁଦ୍ଧ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରିବ ନାହିଁ । ମାୟାର ପରଳକୁ ତାଙ୍କର ଜ୍ଞାନର ତୀକ୍ଷ୍ଣ ଗଡ୍ଗ ଖଣ୍ଡ ଖଣ୍ଡ କାଟି ପକାଏ, ସେ ମାୟାର ଅଧୀନ ନୁହନ୍ତି । ଏଠାରେ ଉଲ୍ଲେଖନୀୟ ଯେ ଶ୍ରୀରାମକୃଷ୍ଣଙ୍କର ଦର୍ଶନାଭିଳାଷୀ ଭକ୍ତଗଣ ଯେତେବେଳେ ଦକ୍ଷିଣେଶ୍ୱର ଆସୁଥିଲେ, ସାଥିରେ ଆଣୁଥିଲେ ବିଭିନ୍ନ ପ୍ରକାର ଫଳ ଓ ମିଠାଇ । କିନ୍ତୁ ଯେଉଁ ଭକ୍ତଙ୍କର ଚରିତ୍ର ଓ ମନ ପବିତ୍ର ଓ ନିର୍ମଳ, ସେମାନଙ୍କର ସାମଗ୍ରୀ ସେ ଗ୍ରହଣ କରୁଥିଲେ । କିନ୍ତୁ ଅନ୍ୟମାନଙ୍କର ଖାଦ୍ୟ ସାମଗ୍ରୀକୁ ନରେନ୍ଦ୍ରଙ୍କୁ ଦେଇ ଦେଉଥିଲେ । ଯଦି ନରେନ୍ଦ୍ର ଦକ୍ଷିଣେଶ୍ୱରରେ ଉପସ୍ଥିତ ନ ଥାନ୍ତି, ତେବେ ତାଙ୍କ ଗୃହକୁ ପଠାଇ ଦେଉଥିଲେ । ନରେନ୍ଦ୍ର ସମସ୍ତପ୍ରକାର ଅଶୁଦ୍ଧ ଭୋଜନ କରିପାରିବେ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା ।

ନରେନ୍ଦ୍ର ହୋଟେଲରେ ନିଷେଧାତ୍ମକ ଖାଦ୍ୟ ସେବନ କରି ଏକଦା ଶ୍ରୀରାମକୃଷ୍ଣଙ୍କ ନିକଟରେ ଉପନୀତ ହୋଇ କହିଲେ, ''ମହାଶୟ, ମୁଁ ଆଜି ହୋଟେଲରେ ମାଂସ ଖାଇଛି ।'' ନରେନ୍ଦ୍ରଙ୍କର ସାହସିକ ବାକ୍ୟ ଶ୍ରବଣ କରି ସେ କହିଲେ, ''ତାହା ତୁମକୁ ତିଳେମାତ୍ର ପ୍ରଭାବିତ କରିପାରିବ ନାହିଁ । ଗୋମାଂସ କିମ୍ବା ଶୁକର ମାଂସ ଭୋଜନ କରି ଯଦି ଜଣକର ମନ ଈଶ୍ୱର ଚିନ୍ତାରେ ଅନବରତ ସମାସୀନ ରହେ, ତେବେ ସେହି ଖାଦ୍ୟ ହବିଷ୍ୟାନ୍ନଠାରୁ କୌଣସି ଗୁଣରେ କମ୍ ନୁହେଁ । କିନ୍ତୁ ହବିଷ୍ୟାନ୍ନ ଖାଇ ଯଦି ଜଣକର ମନ ବିଷୟ ଭାବନାରେ ମଗ୍ନ ରହେ, ତେବେ ତାହା ଗୋମାଂସ ଓ ଶୁକର ମାଂସଠୁଁ ବି ହୀନ ଭୋଜନ । ତୁମେ ମାଂସ ଖାଇଥିବାରୁ, ମୋ ପାଇଁ ତା'ର କୌଣସି ଗୁରୁତ୍ୱ ନାହିଁ । କିନ୍ତୁ ମୋ ସମ୍ମୁଖରେ ଉପବିଷ୍ଟ ଭକ୍ତବୃନ୍ଦ ଭିତରୁ କେହି ଜଣେ ଯଦି ଏଭଳି କରିଥାନ୍ତେ, ସେମାନଙ୍କୁ ମୁଁ ସ୍ପର୍ଶ କରିପାରି ନ ଥାନ୍ତି ।'' ଶ୍ରୀରାମକୃଷ୍ଣ ଏତକ କହି ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ନରେନ୍ଦ୍ରଙ୍କୁ ।

ନରେନ୍ଦ୍ରଙ୍କ ଅନ୍ତଃସ୍ଥଳରେ ବିସ୍ମୟର ରେଖାଟିଏ ଲହରିତ ହେଲା । ସେ ଗ୍ରୀବା ଉତ୍ତୋଳନ କରି ଶ୍ରୀରାମକୃଷ୍ଣଙ୍କର ସଦା ସ୍ମିତହାସ୍ୟ ମୁଖମଣ୍ଡଳକୁ ବାରମ୍ବାର ଅବଲୋକନ କଲେ - କିଏ ଏହି ମହାପୁରୁଷ !!! ମୋର ସମସ୍ତ ଗୁଣ ଓ ଅବଗୁଣକୁ ଅକୁଣ୍ଠଚିତ୍ତରେ ଗ୍ରହଣ କରିନେଉଛନ୍ତି । କି ଅଦ୍ଭୁତ ଚରିତ୍ର ? ସାଧାରଣତଃ ଯିଏ ଯେଉଁ ଆଧ୍ୟାତ୍ମିକ ମାର୍ଗରେ ଗତିକରେ, ସେହି ମାର୍ଗକୁ କେବଳ ସେ ଜାବୁଡ଼ି ଧରିଥାଏ, ଅନ୍ୟ ଧର୍ମ ବା ପଥ ପ୍ରତି ନାଶାକୁଞ୍ଚନ କରେ । ଧର୍ମୋନ୍ମାଦନତା

Digitized by srujanika@gmail.com

ଓ ଧର୍ମାନ୍ଧତା ନିଗଡ଼ ଭିତରେ ସେମାନେ ଅନ୍ତରୀଣ । କିନ୍ତୁ ଏହି ମହାପୁରୁଷ କୌଣସି ଏକ ସମ୍ପ୍ରଦାୟିକ ନିଗଡ଼ ଭିତରେ ବନ୍ଦୀ ନୁହନ୍ତି । ବୈଦିକ, ବୈଷ୍ଣବ, ଶାକ୍ତ, ଶୈବ, ଗାଣପତ୍ୟ, ସୌର, ତନ୍ତ୍ର ସମ ହିନ୍ଦୁଧର୍ମର ଅନେକ ପାରମ୍ପରିକ ସମ୍ପ୍ରଦାୟର ସାଧନାକୁ ନିଜ ଜୀବନରେ ସାଧିତ କରି ରୂପହୀନ ନିରାକାର ବ୍ରହ୍ମଙ୍କର ଅଦ୍ୱୈତ ସାଧନାରେ ମଧ୍ୟ ସେ ନିଷ୍ଠାବାନ୍ ହୋଇପାରିଛନ୍ତି । ବୌଦ୍ଧ, ଜୈନ, ଶିଖ ଧର୍ମ ସହିତ ଖ୍ରୀଷ୍ଟିଆନ ଓ ଇସଲାମ୍ ସମ ବିଦେଶୀ ଧର୍ମକୁ ମଧ୍ୟ ସେ ସାଧିତ କରି ଏକ ସତ୍ୟର ବିଭିନ୍ନ ପଥ ବୋଲି ଘୋଷଣା କରିପାରିଛନ୍ତି । ଏଭଳି କାର୍ଯ୍ୟ ପୃଥିବୀର କୌଣସି ମହାପୁରୁଷଙ୍କ ପକ୍ଷେ ସମ୍ଭବ ହୋଇ ନ ଥିଲା । ମହାଜ୍ଞାନୀ, ପଣ୍ଡିତଗଣ ନିଜ ନିଜ ମତ ଓ ସିଦ୍ଧାନ୍ତ ରୂପକ ମହୁଫେଣାରେ ମଧୁମକ୍ଷୀ ସମ ଝୁଲି ରହିଥାନ୍ତି । ଅନ୍ୟ ମତ ଓ ସିଦ୍ଧାନ୍ତ ସମ୍ବନ୍ଧରେ ପଦେ ଭଲକଥା କହିବାତ ଦୂରର କଥା, ସେଗୁଡ଼ିକୁ ଆଡ଼ ଆଖିରେ ମଧ୍ୟ ଚାହାନ୍ତି ନାହିଁ । କୁତ୍ସାରଟନା, କଳହ, ସଂଘର୍ଷ, ରକ୍ତପାତରୁ ସେମାନେ କ୍ଲାନ୍ତ ହୁଅନ୍ତି ନାହିଁ ।

ତଥାପି ଏହି ନିରକ୍ଷର ଓ ଦରିଦ୍ର ବ୍ୟକ୍ତିଙ୍କର ମନ ଓ ଦୃଷ୍ଟିକୋଣ ଏଭଳିଭାବେ ପ୍ରସାରିତ ଓ ବିସ୍ତୃତ ଯେ ବିଶ୍ୱର ସମସ୍ତ ଧର୍ମ ଓ ପଥକୁ ଧାରଣ କରିପାରୁଛି । ବେଦର ସେହି ଅମୃତବାଣୀ ଓ ମନ୍ତ୍ର "ଏକମ୍ ସଦ୍ ବିପ୍ରା ବହୁଦାଃ ବଦନ୍ତି"ର ଏହି ବ୍ୟକ୍ତି କ'ଣ ମାନବାୟନ ! ଈଶ୍ୱରଙ୍କର ଉଭୟ ସାକାର ଓ ନିରାକାର ମଝିରେ ଇଏ କ'ଣ ଏକ ସଂଯୋଗକାରୀ ସେତୁ ? ଏମନ୍ତ ପ୍ରଶ୍ନଗୁଡ଼ିକ କ୍ଷେପଣାସ୍ତ୍ର ସମ ନରେନ୍ଦ୍ରଙ୍କର ତାର୍କିକ ଓ ବ୍ରାହ୍ମ ସମାଜ ଦ୍ୱାରା ସଂସ୍କାରିତ ମନକୁ ଛିନ୍ନଭିନ୍ନ କରିପକାଇଲା ।

ଶ୍ରୀରାମକୃଷ୍ଣ ଅନ୍ୟପକ୍ଷରେ ସ୍ପଷ୍ଟ ଭାବେ ଜାଣିଛନ୍ତି ଯେ ନରେନ୍ଦ୍ରଙ୍କର ମନ ଓ ଚେତନା ଜ୍ଞାନମାର୍ଗରେ ଧାବିତ । ଅଦ୍ୱୈତ ମାର୍ଗର ସାରମର୍ମ ଅଭିମୁଖେ ସେ ତାଙ୍କର ମନକୁ ପଥପ୍ରଦର୍ଶନ କରୁଥିଲେ । ଏକଦା ସେ ନରେନ୍ଦ୍ରଙ୍କୁ କହିଲେ, "ନରେନ୍, ମନକୁ ଶାନ୍ତ କର । ମନୁଷ୍ୟ ଭିତରେ ଯେଉଁ ଆତ୍ମା ବିରାଜିତ, ତାହା ସ୍ୱୟଂ ବ୍ରହ୍ମ । ନିଜକୁ ଚିହ୍ନ, ବ୍ରହ୍ମକୁ ଚିହ୍ନିବୁ । ସଂସାରରେ ଯାହାସବୁ ଦେଖୁଛ, ସବୁକିଛି ବ୍ରହ୍ମମୟ । ଏକଇ ସତ୍ତାର ପ୍ରତିଫଳନ ମାତ୍ର ।" ନରେନ୍ଦ୍ରଙ୍କ ଭିତରେ ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ ହୋଇଉଠିଲା । ସେ ତାଙ୍କର ମହାବାକ୍ୟକୁ ପ୍ରତ୍ୟାଖ୍ୟାନ କରି ପ୍ରକୋଷ୍ଠ ମଧ୍ୟରୁ ବାହାରି ଆସିଲେ ।

- ୪ -

*ନରେନ୍ଦ୍ର ଉପଲବ୍ଧି କଲେ ଅଦ୍ୱୈତାବସ୍ଥାର ଝଲକ : ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ବାସ୍ତବରେ ଈଶ୍ୱର ବ୍ୟତୀତ ଅନ୍ୟ କିଛି ନୁହେଁ । ଭୋଜନ ପାଇଁ ଯେତେବେଳେ ଉଦ୍ୟତ ହେଲି ଦେଖିଲି ଯେ ମୋ ସମ୍ମୁଖସ୍ଥ ଖାଦ୍ୟ, ଥାଳି, ପରିବେଷକ ଏବଂ ମୁଁ ନିଜେ ସବୁକିଛି ହିଁ ସେହି ବ୍ରହ୍ମ ।*

ହାଜରା ମହାଶୟ ଦକ୍ଷିଣେଶ୍ୱର ପ୍ରାଙ୍ଗଣରେ ବସିଥିଲେ । ସେଠାରେ ନରେନ୍ଦ୍ର ପହଞ୍ଚି ବିଦ୍ରୂପ ସ୍ୱରରେ କହିଉଠିଲେ, "ବୁଝିଲେ ହାଜରା ମହାଶୟ କିଭଳି ଅବାନ୍ତର କଥା ! ଏହା

Digitized by srujanika@gmail.com

କିପରି ସମ୍ଭବ ? ଏହି କଳସୀ ବ୍ରହ୍ମ, ଏହି କପ୍ ବ୍ରହ୍ମ, ତୁମେ ବ୍ରହ୍ମ, ମୁଁ ବ୍ରହ୍ମ... ଏଭଳି ଈଶ୍ୱର ନିନ୍ଦୁକ କଥା ଆଉ କ'ଣ ହୋଇପାରେ ?'' ନରେନ୍ଦ୍ରଙ୍କର ବିଦ୍ରୂପ ଗର୍ଜନ ଶ୍ରୀରାମକୃଷ୍ଣଙ୍କର କର୍ଣ୍ଣଗୋଚର ହେଲା । ସେତେବେଳେ ସେ ନିଜ ପ୍ରକୋଷ୍ଠରେ ଅର୍ଦ୍ଧ-ଚେତନାବସ୍ଥାରେ ଥିଲେ । ନିଜର ପିନ୍ଧିବା ବସ୍ତ୍ରକୁ ହାତରେ ଧରି, ସମ୍ପୂର୍ଣ୍ଣ ଉଲଗ୍ନ ହୋଇ, ବାଳକ ସମ ବାହାରକୁ ଚାଲି ଆସି କହିଲେ, ''ଆରେ ନରେନ୍, ତୁମେ କ'ଣ କହୁଛ ?'' ଅବଶ୍ୟ ତାଙ୍କ ଅଧରରେ ହାସ୍ୟ ଲହରିତ ହେଉଥିଲା । ଏହି ପଦେକଥା କହି ସେ ନରେନ୍ଦ୍ରଙ୍କୁ ଧୀରେ ସ୍ପର୍ଶ କଲେ । ବାସ୍, ସ୍ପର୍ଶ ମାତ୍ରକେ ନରେନ୍ଦ୍ର ତତ୍‌କ୍ଷଣାତ୍ ସାଂସାରିକ ଜ୍ଞାନ ହରାଇ ବସିଲେ । ସମାଧିସ୍ଥ । ସମାଧି ଅବସ୍ଥାରେ ଯେଉଁ ନୈସର୍ଗିକ ଅନୁଭୂତି ସେ ଲାଭ କଲେ, ତାହା ନରେନ୍ଦ୍ର ସ୍ୱୟଂ ପରବର୍ତ୍ତୀ କାଳରେ ବର୍ଣ୍ଣନା କରିଥିଲେ ।

''ଶ୍ରୀରାମକୃଷ୍ଣଙ୍କର ସେଦିନର ଯାଦୁକାରୀ ସ୍ପର୍ଶ ତତ୍‌କ୍ଷଣାତ୍ ମୋ ମନରେ ଏକ ଅଦ୍ଭୁତ ପରିବର୍ତ୍ତନ ଆଣିଥିଲା । ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ବାସ୍ତବରେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟକିଛି ନୁହେଁ ବୋଲି ମୁଁ ଦେଖି ତଟସ୍ଥ ହୋଇପଡ଼ିଲି । ମୁଁ ତାହା ସ୍ପଷ୍ଟ ରୂପରେ ଦେଖିଲି, ଏତାଦୃଶ ପ୍ରଭାବ ଓ ଅନୁଭୂତି କେତେଦିନ ପର୍ଯ୍ୟନ୍ତ ରହିବ, ତାହା ଦେଖିବା ପାଇଁ ମୁଁ ନୀରବ ହୋଇଗଲି । କିନ୍ତୁ ଏହା ଦିନସାରା କମିଲା ନାହିଁ । ମୁଁ ଘରକୁ ଫେରିଆସିଲି । ଭୋଜନ ପାଇଁ ମୁଁ ଯେତେବେଳେ ଉଦ୍ୟତ ହେଲି, ଦେଖିଲି ଯେ ମୋ ସମ୍ମୁଖସ୍ଥ ଖାଦ୍ୟ ଥାଳି, ପରିବେଷକ ଏବଂ ମୁଁ ନିଜେ ସବୁକିଛି ହିଁ ସେହି ବ୍ରହ୍ମ । ଅତିକଷ୍ଟରେ ଗୁଣ୍ଡାଏ ଖାଇ ଚୁପ୍‌ଚାପ୍ ସେଠାରେ ବସି ରହିଲି । ମୋ ମା'ଙ୍କ ଡାକରେ ହତ୍‌ବାକ୍ ହୋଇପଡ଼ିଲି । ସେ କହୁଥିଲେ, ଆରେ ତୁ କାହିଁକି କାଠ ଭଳି ବସିରହିଛୁ, ଖାଉନୁ କାହିଁକି ?'' ତାଙ୍କ କଥାରେ ମୁଁ ପୁଣି ଖାଇବାକୁ ଲାଗିଲି । କିନ୍ତୁ ଯେତେବେଳେ ମୁଁ ଖାଉଥିଲି, ଶୋଉଥିଲି, କଲେଜ ଯାଉଥିଲି ଏବଂ ଯାହାବି କାର୍ଯ୍ୟ କରୁଥିଲି, ସେହି ଏକାଭଳି ଅନୁଭୂତି ମୋତେ ମାଡ଼ି ବସିଥିଲା । ସବୁବେଳେ ମୁଁ 'ସେହି' ଭାବ ଭିତରେ ବୁଡି ରହୁଥିଲି । ରାଜରାସ୍ତାରେ ପଦଚାରଣ ସମୟରେ, ଯେଉଁ ଗାଡ଼ିଗୁଡ଼ିକ ଆତଯାତ କରୁଥିଲା, ସେଥିପ୍ରତି ମୋର ତିଳେମାତ୍ର ଭ୍ରୂକ୍ଷେପ ନ ଥିଲା । ମୋ ଉପରେ କାଳେ ଗାଡ଼ି ଚଢ଼ିଯିବ ସେଥିପାଇଁ ମୋ ମନରେ ଟିକିଏ ବି ଭୟ ଉଦ୍ରେକ ହେଉ ନ ଥିଲା । ସତେକି ସେହି ଗାଡ଼ି ଓ ମୁଁ ଏକ ବସ୍ତୁ । ମୋ ଅଙ୍ଗପ୍ରତ୍ୟଙ୍ଗରେ ପ୍ରାଣ ନ ଥିଲା, ସତେକି ମୋର ସମସ୍ତ ଶରୀର ନିଷ୍କ୍ରିୟ ଓ ପକ୍ଷଘାତରେ ଆକ୍ରାନ୍ତିତ ।

ମୁଁ ଖାଇବାରେ ସ୍ୱାଦ ବାରିପାରୁ ନ ଥିଲି, ସତେକି ଅନ୍ୟ କେହି ଜଣେ ଖାଉଛନ୍ତି । ଭୋଜନ ସମୟରେ ବେଳେବେଳେ ମୁଁ ଶୋଇଯାଉଥିଲି ଏବଂ ମଝିରେ ମଝିରେ ଉଠି ଅଳ୍ପ ଖାଉଥିଲି । ବେଳେବେଳେ ମୁଁ ଅଧିକ ଖାଇ ନେଉଥିଲି, କିନ୍ତୁ ମୋର କିଛି କ୍ଷତି ହେଉ ନ ଥିଲା । ମୋ ମା ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ ଏବଂ ଭାବିଲେ ଯେ ମୁଁ ବୋଧହୁଏ ଭୟଙ୍କର ବ୍ୟାଧିରେ ପୀଡ଼ିତ । ମୁଁ ବୋଧହୁଏ ବେଶିଦିନ ବଞ୍ଚିବି ନାହିଁ ବୋଲି ଭାବି ସେ ବଡ଼ ଭୟଭୀତ ହୋଇପଡ଼ିଲେ । ଯେତେବେଳେ ମୋର ଏତାଦୃଶ ଅବସ୍ଥାରେ କିଞ୍ଚିତ ପରିବର୍ତ୍ତନ ଘଟିଲା, ସାରା ସଂସାର ଏକ ସ୍ୱପ୍ନସମ ମୋତେ ପ୍ରତୀୟମାନ ହେଲା । କର୍ଣ୍ଣୱାଲିସ୍ ଷ୍ଟ୍ରୀଟ୍‌ରେ ମୁଁ

Digitized by srujanika@gmail.com

ଯାଉଥିବା ସମୟରେ, ସେଠାରେ ରହିଥିବା ଗୋଟିଏ ଲୌହ ରେଲିଙ୍ଗରେ ମୁଁ ମୁଣ୍ଡକୁ ପିଟିଲି, କାରଣ ମୁଁ ଯାହାକୁ ଦେଖୁଛି, ତାହା ସତ୍ୟ କି ନୁହେଁ ଜାଣିବା ପାଇଁ ଏଭଳି କାର୍ଯ୍ୟ କରିଲି । ମୋର ଏହି ଅବସ୍ଥା କିଛି ଦିନ ପର୍ଯ୍ୟନ୍ତ ରହିଲା । ଯେତେବେଳେ ମୁଁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ ହେଲି ସେତେବେଳେ ମୁଁ ବୁଝିପାରିଲି ଯେ ଅଦ୍ୱୈତାବସ୍ଥାର ଏହା ଥିଲା ଏକ ଝଲକ ମାତ୍ର । ଶାସ୍ତ୍ରର ବର୍ଣ୍ଣନା ମିଥ୍ୟା ନୁହେଁ ଏବଂ ଅଦ୍ୱୈତ ଦର୍ଶନର ସାରମର୍ମ ସତ୍ୟସିଦ୍ଧ ବୋଲି ମୁଁ ଉପଲବ୍ଧି କଲି ।''

ପରମହଂସଦେବଙ୍କର ଶିକ୍ଷା ଓ ପ୍ରଶିକ୍ଷଣ ନରେନ୍ଦ୍ରଙ୍କ ବ୍ୟକ୍ତିତ୍ୱ ଉପରେ କ୍ରମଶଃ ଛାୟା ବିସ୍ତାର କରିବାକୁ ଆରମ୍ଭ କଲା । ଏହି ମହାନ୍ ଶିଷ୍ୟ ଧୀରେ ଧୀରେ ସଂଶୟରୁ ନିଶ୍ଚିତତା, ଅନ୍ଧକାରରୁ ଆଲୋକ, ବିଶୃଙ୍ଖଳିତ ଚିତ୍ତ ମନରୁ ଶାନ୍ତ ଦିବ୍ୟ ଦର୍ଶନ, ସାଂସାରିକ ବିଭିନ୍ନତାରୁ ସାମଗ୍ରିକ ଏକତ୍ୱର ବିଶାଳ ବିସ୍ତୃତି ଅଭିମୁଖେ ପଥ ପ୍ରଦର୍ଶିତ ହେଲେ । ଶ୍ରୀରାମକୃଷ୍ଣ ନିଜର ଅଖଣ୍ଡ ଆଧ୍ୟାତ୍ମିକ ଶକ୍ତିବଳରେ ନରେନ୍ଦ୍ରଙ୍କୁ ସାଂସାରିକ ଓ ଜାଗତିକ ବନ୍ଧନରୁ ଆଧ୍ୟାତ୍ମିକ ମୁକ୍ତି, ଅଜ୍ଞ ବିଦ୍ୟାରେ ଉହଳ ବିକଳ ମନ ଓ ଚେତନାକୁ ବ୍ରହ୍ମଙ୍କର ସର୍ବଜ୍ଞାନମୟ ଚେତନାରେ ରୂପାନ୍ତରଣ ପ୍ରକ୍ରିୟାରେ ଅବଗାହନ କରିବାରେ ସହାୟତା କଲେ । ଜାଗତିକ ଦୃଷ୍ଟିରେ ଈଶ୍ୱରଙ୍କର ବର୍ଣ୍ଣିତ ସମସ୍ତ ସାକାର ରୂପର ଅବବୋଧ ମଧ୍ୟରୁ ତାଙ୍କର ମନ ଓ ଚେତନା, ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶ ଏବଂ ପ୍ରପଞ୍ଚ ସାଂସାରିକ ଅନୁଭୂତି ଓ ଭଲ-ମନ୍ଦ ମାନସିକତା ଉର୍ଦ୍ଧ୍ୱରେ ବିରାଜିତ ପରମ ସତ୍ୟ ବ୍ରହ୍ମ ମହାପାରାବାର ଅଭିମୁଖେ ଉଡ୍ଡୟନ କଲା । ତାଙ୍କର ବିଦ୍ରୋହୀ ମନର ହୁତାସନ କିୟଦାଂଶରେ ଅବଦମିତ ହେବାକୁ ଲାଗିଲା । ଶ୍ରୀରାମକୃଷ୍ଣଙ୍କ ପ୍ରତି ନରେନ୍ଦ୍ରଙ୍କର ବିଶ୍ୱାସ ଓ ସମ୍ମାନ ଶତସହସ୍ର ଗୁଣରେ ବର୍ଦ୍ଧିତ ହେଲା ।

ନରେନ୍ଦ୍ରଙ୍କ ଭିତରେ ଗ୍ରନ୍ଥିସବୁ ଯେତେ ପରିମାଣରେ ଖୋଲି ଯାଉଥିଲା, ସେତିକି ପରିମାଣରେ ତାଙ୍କର ଆଧ୍ୟାତ୍ମିକ ଦୃଷ୍ଟିକୋଣ ପ୍ରସାରିତ ହେଉଥିଲା । ତାଙ୍କର ଦକ୍ଷିଣେଶ୍ୱରକୁ ଆଗମନର ଅବଧି ବୃଦ୍ଧିପ୍ରାପ୍ତ ହେଲା । ଶ୍ରୀରାମକୃଷ୍ଣଙ୍କ ସହ ସାକ୍ଷାତ ଓ କଥୋପକଥନ ନିମନ୍ତେ ମନ ତାଙ୍କର ଉଚ୍ଛନ୍ନ ହେଲା ଏବଂ ପ୍ରତ୍ୟେକ ସାକ୍ଷାତ ଓ କଥୋପକଥନ ଭିତରେ ସେ ତାଙ୍କୁ ନିତ୍ୟ-ନୂତନ ଭାବେ ଦର୍ଶନ କଲେ । ସତେକି ସେ ଭବସାଗରରେ ଏକ ସଦ୍ୟ ପ୍ରସ୍ଫୁଟିତ ପଦ୍ମଫୁଲଟିଏ ଯାହାର ସୁଗନ୍ଧ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ । ନରେନ୍ଦ୍ର ଏକ ଭ୍ରମର ହୋଇ ସେହି ସଜଫୁଟା ପଦ୍ମଫୁଲରେ ଲାଖିଯାଇ ମଧୁ ଆହରଣ ପାଇଁ ବ୍ୟଗ୍ର । ଏତେଦିନ ଧରି ଯେଉଁ ଲକ୍ଷ୍ୟକୁ ସେ କଲିକତାର କୋଣ-ଅନୁକୋଣରେ ଖୋଜି ବୁଲୁଥିଲେ, ସେହି ଲକ୍ଷ୍ୟକୁ ଶ୍ରୀରାମକୃଷ୍ଣଙ୍କ ଭିତରେ ଲାଭ କରି ଅବଶ୍ୟ ତାଙ୍କ ଅନ୍ୱେଷଣର ତୀବ୍ରତାରେ ସାମାନ୍ୟ ହ୍ରାସ ହୋଇଥିବାର ଉପଲବ୍ଧି କଲେ, କିନ୍ତୁ ବହୁପଥଯେ ତାଙ୍କୁ ଅତିକ୍ରମ କରିବାକୁ ହେବ, ସେ ସମ୍ପୂର୍ଣ୍ଣରୂପେ ଅବଗତ ଥିଲେ ।



Digitized by srujanika@gmail.com

॥ ଛଅ ॥

# ଧ୍ୟାନର ଅନନ୍ତ ଇଲାକାରେ ବିଚରଣ

ଭାରତୀୟ ଗୁରୁ-ଶିଷ୍ୟ ପରମ୍ପରାନୁସାରେ, ଶିଷ୍ୟ କେତେଦୂର ଗୁରୁଙ୍କର ଉପଦେଶ ଗ୍ରହଣ କରିପାରିଛି, ତାହା ନିର୍ଣ୍ଣୟ କରିବା ନିମନ୍ତେ ଗୁରୁ ବିଭିନ୍ନ ପରୀକ୍ଷା ପଦ୍ଧତିର ସହାୟତା ନିଅନ୍ତି ବୋଲି ପୁରାଣ ଶାସ୍ତ୍ରରେ ବହୁ ଦୃଷ୍ଟାନ୍ତ ରହିଛି । ଏଠାରେ କିନ୍ତୁ ବ୍ୟତିକ୍ରମ । ଶ୍ରୀରାମକୃଷ୍ଣଙ୍କ ନିକଟକୁ ଯେଉଁ ଭକ୍ତମାନେ ଆସୁଥିଲେ ଏବଂ ସେମାନଙ୍କ ମଧ୍ୟରୁ ଯେଉଁ ଭକ୍ତଙ୍କ ମଧ୍ୟରେ ଆଧ୍ୟାତ୍ମିକ ସାଧନା କରିବାର ଦୁର୍ବାର ଇଚ୍ଛା ଓ ଆନ୍ତରିକତା ରହିଛି ବୋଲି ସେ ଉପଲବ୍ଧି କରୁଥିଲେ, ସେମାନଙ୍କୁ ମୁକ୍ତ କଣ୍ଠରେ କହୁଥିଲେ, ''ବାବା, ମୋର ଉପଦେଶ ଗ୍ରହଣ କରିବା ପୂର୍ବରୁ ମୋତେ ଭଲ ଭାବରେ ପରୀକ୍ଷା କରିନିଅ, ଯେପରି ସୁଧ-ଖୋର ବ୍ୟକ୍ତି ନିଜର ମୁଦ୍ରାକୁ ପରଖି ନିଏ ।'' ଏମନ୍ତ ଖୋଲାମନ ପରିଲକ୍ଷିତ କରି ନରେନ୍ଦ୍ରଙ୍କର ବିସ୍ମୟର ସୀମା ପ୍ରସାରିତ ହେଲା । ସେ ଚିନ୍ତା ମଗ୍ନ ହେଲେ -

''କିଏ ଏହି ମହାପୁରୁଷ ଯାହାଙ୍କର ପ୍ରତ୍ୟେକ ବାକ୍ୟରେ ଭରିରହିଛି ନିଃସ୍ୱାର୍ଥପରତା ? ବାଟବଣା ଶିଷ୍ୟମାନଙ୍କୁ ବାଟ ଦେଖାଇବାର ପ୍ରଚଣ୍ଡ ନିଶା । ଈଶ୍ୱର ପ୍ରସଙ୍ଗ ବ୍ୟତୀତ କୌଣସି କଥା ଉଚ୍ଚାରିତ ହେଉନାହିଁ ତାଙ୍କ ମୁଖରୁ । ଇଏ ପୁଣି ମୂର୍ଖ - ନିରକ୍ଷର !!! ସାମାନ୍ୟତମ ଆଧ୍ୟାତ୍ମିକ ଜ୍ଞାନର ଉନ୍ମେଷ ଏବଂ ଅଳ୍ପ ସିଦ୍ଧି ଲାଭରେ ମନୁଷ୍ୟ ରାତେରାତ୍ ମହାନ୍ ଗୁରୁରେ ପରିଣତ ହୋଇଯାଉଛନ୍ତି । ହଜାର ନୁହେଁ ଲକ୍ଷ ଲକ୍ଷ ଲୋକ ଶିଷ୍ୟ ହେବା ପାଇଁ ସେଭଳି ଗୁରୁଙ୍କ ପାଖରେ ଧାଡ଼ି ବାନ୍ଧୁଛନ୍ତି । ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର ଆଖ୍ୟା ଦେଇ ତାଙ୍କୁ ପରମେଶ୍ୱର - ପରମାତ୍ମା ବୋଲି ଶତମୁଖରେ ପ୍ରଶଂସା ଗାନ କରୁଛନ୍ତି । ଏତାଦୃଶ ଗୁରୁମାନଙ୍କର ସଂଖ୍ୟା ଆମ ଦେଶରେ କମ୍ ନୁହେଁ ।

କିନ୍ତୁ ଏହି ମହାପୁରୁଷ ଗୁରୁଗିରି ଜାଲରେ ଆଦୌ ପଡ଼ି ନାହାଁନ୍ତି । କେହି ଯଦି ତାଙ୍କୁ ଗୁରୁ ବୋଲି କହିଦିଏ, ସେ ମା ମା କହି ଡେଇଁ ପଡ଼ନ୍ତି । କେହି ଯଦି ତାଙ୍କ କପାଳରେ ସିନ୍ଦୁର ଓ ଚନ୍ଦନ ଟୋପାଟିଏ ଲଗାଇ ଦିଏ କିମ୍ବା ପୁଷ୍ପମାଲ୍ୟଟିଏ ତାଙ୍କ ଗଳାରେ ଲମ୍ବାଇ ଦିଏ, ତେବେ ଏଭଳି ନ କରିବାକୁ ସେମାନଙ୍କୁ ସତର୍କ କରାଇ ଦିଅନ୍ତି । ତାଙ୍କର ଈଶ୍ୱର ଭାବନାରେ ସଦା ଭାବିତ ମନ 'ଈଶ୍ୱର ହିଁ ଏକମାତ୍ର ଗୁରୁ' ବୋଲି ବିଶ୍ୱାସ କରିଥାଏ । କୌଣସି ଆଲୋଚନା କିମ୍ବା ବାକ୍ୟାଳାପ ଭିତରେ କେବେ ବି 'ମୁଁ' ବୋଲି ଶବ୍ଦ ସେ ବ୍ୟବହାର କରନ୍ତି ନାହିଁ - 'ମୁଁ' ସ୍ଥାନରେ 'ଏଠାରେ' ବା ''ନିଜ ଶରୀରକୁ ଦେଖାଇ'' ବା ''ଏହା ଭିତରେ ଯିଏ ଅଛନ୍ତି'' ବୋଲି ଶବ୍ଦ ବ୍ୟବହାର କରନ୍ତି । ସତେକି 'ମୁଁ' ବୋଲି ଏକ ପ୍ରଥମବାଚକ ଶବ୍ଦ ତାଙ୍କ ଅଭିଧାନରେ ନାହିଁ ।

Digitized by srujanika@gmail.com

- ୧ -

*ବହୁ ମୁନି, ଋଷି, ସନ୍ଥ, ସନ୍ନ୍ୟାସୀ ସମଗ୍ର ସାଂସାରିକ ବସ୍ତୁ ତ୍ୟାଗ କରିବାର ଦୃଷ୍ଟାନ୍ତ ପୁରାଣ, ଇତିହାସ ଓ ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି, କିନ୍ତୁ କେହି ଜଣେ ନିଜର ଆଧ୍ୟାତ୍ମିକ ସାଧନା ଲବ୍ଧ ସିଦ୍ଧି ଓ ଦିବ୍ୟଶକ୍ତିକୁ ସାଂସାରିକ ବସ୍ତୁ ଭଳି ତ୍ୟାଗ କରିବାର ଦୃଷ୍ଟାନ୍ତ ମୁଁ ଦେଖି ନାହିଁ ।*

ଟଙ୍କା, ପଇସା, ସୁନା, ରୁପା, ଏପରିକି ଧାତୁ ଦ୍ରବ୍ୟ ସ୍ପର୍ଶ କରିପାରନ୍ତି ନାହିଁ । ସମଗ୍ର ନାରୀଙ୍କ ଭିତରେ ତାଙ୍କର ଆରାଧ୍ୟ ମା କାଳୀ ବିରାଜିତ, ଏପରିକି ନିଜର ପତ୍ନୀ ମଧ୍ୟ ତାଙ୍କର ମା । ଏଭଳି ବିରଳ ବ୍ୟକ୍ତିତ୍ୱ କେଉଁଠାରେ ନାହାନ୍ତି, ମାନବ ଇତିହାସରେ ବୋଧହୁଏ ଏହି ବ୍ୟକ୍ତି ପ୍ରଥମ । ଇଏ ପୁଣି ତାଙ୍କୁ ପରଖିବା ପାଇଁ ସମସ୍ତଙ୍କୁ ଆହ୍ୱାନ କରୁଛନ୍ତି । ଧନ୍ୟ ଧନ୍ୟ ଏହି ମହାପୁରୁଷ ! ଏଭଳି ଅନେକ ଚିନ୍ତାରେ ନରେନ୍ଦ୍ର ବୁଡିଯାଉଥିଲେ ।

ଦିନକର ଘଟଣା । ନରେନ୍ଦ୍ର ଦକ୍ଷିଣେଶ୍ୱର ଆସିଥାନ୍ତି । କିନ୍ତୁ ଦେଖିଲେ ଯେ ଶ୍ରୀରାମକୃଷ୍ଣ ନିଜ କକ୍ଷରେ ନାହାନ୍ତି । ସେହି ପବିତ୍ର କକ୍ଷରେ କିଛି ସମୟ ରହିଛନ୍ତି କି ନାହିଁ, ହଠାତ୍ ଶ୍ରୀରାମକୃଷ୍ଣଙ୍କ କାମିନୀ ଓ କାଞ୍ଚନ ତ୍ୟାଗର ମହିମା ମନେପଡ଼ିଲା । ତାଙ୍କୁ ପରୀକ୍ଷା କରିବାର ନିଶା ହଠାତ୍ ନରେନ୍ଦ୍ରଙ୍କୁ ଘାରିଲା । ସେ ପକେଟରୁ ରୁପା ଟଙ୍କାଟିଏ ବାହାର କରି ଶ୍ରୀରାମକୃଷ୍ଣଙ୍କର ଶଯ୍ୟା ତଳେ ରଖିଦେଲେ । ଦେଖିବେ ତାଙ୍କର ପ୍ରତିକ୍ରିୟା । ଅବଶ୍ୟ ନରେନ୍ଦ୍ର ସେଠାରେ ରହିଲେ ନାହିଁ । ନିକଟସ୍ଥ ପଞ୍ଚବଟି ଉଦ୍ୟାନକୁ ଧ୍ୟାନ ନିମନ୍ତେ ଚାଲିଗଲେ । କିୟତ୍ ସମୟଉତ୍ତାରୁ ଶ୍ରୀରାମକୃଷ୍ଣ ଫେରି ଆସିଲେ ନିଜ କୋଠରିକୁ । ନିଜ ଶଯ୍ୟାରେ ଯେମିତି ବସିଛନ୍ତି, ହଠାତ୍ ଚିତ୍କାରକରି ଯନ୍ତ୍ରଣାରେ ସେ ଛଟପଟ ହେବାକୁ ଲାଗିଲେ । ନରେନ୍ଦ୍ର ସେତେବେଳେକୁ ସେଠାରେ ପହଞ୍ଚି ସାରିଥିଲେ ଏବଂ ନୀରବରେ ଦ୍ୱାରଦେଶରେ ଠିଆ ହୋଇଥିଲେ । ଇତ୍ୟବସରରେ ଜଣେ ସେବକ ତାଙ୍କର ଯନ୍ତ୍ରଣା ଲକ୍ଷ୍ୟକରି ଶଯ୍ୟାକୁ ଝାଡ଼ିଦେଲେ, ବିଛଣା ତଳୁ ଟଙ୍କାଟିଏ ଠନ୍‌କିନା ତଳେ ପଡ଼ିଗଲା । ଶଯ୍ୟାରୁ ଟଙ୍କା ନିଷ୍କାସିତ ହେବାପରେ, ଶ୍ରୀରାମକୃଷ୍ଣଙ୍କର ଯନ୍ତ୍ରଣା ଉଭେଇଗଲା । ସେ ଆରାମରେ ଶଯ୍ୟା ଉପରେ ଉପବେଶନ କଲେ । କୌଣସି କଥାବାର୍ତ୍ତା ନ କରି ନରେନ୍ଦ୍ର ଧୀରେ ସେଠାରୁ ଚାଲିଗଲେ । ସେ କାହିଁକି ସେଠାରେ ରହିଥାନ୍ତେ ? ପରୀକ୍ଷାର ପରିଣାମ ସେ ଯେ ନିଜ ଆଖିରେ ଦେଖିନେଲେ ।

ଯେଉଁ ନରେନ୍ଦ୍ରଙ୍କୁ ଦେଖିବା ମାତ୍ରେ ନରେନ୍ ନରେନ୍ କହି ସମାଧିସ୍ଥ ହୋଇଯାଉଥିଲେ, ସେହି ନରେନ୍ଦ୍ରଙ୍କୁ ପରୀକ୍ଷା କରିବା ପାଇଁ ଶ୍ରୀରାମକୃଷ୍ଣଙ୍କର ଏକଦା ମନ ବଳିଲା । ସେ ଏକ ପରୀକ୍ଷାର ଅଭିନବ ଉପାୟ ବାହାର କଲେ । ଏହି ପରୀକ୍ଷାରେ କୌଣସି କ୍ଲିଷ୍ଟତା ନ ଥିଲା । ବାଲ୍ୟ-କ୍ରୀଡ଼ାରେ ପିଲାମାନେ ଯେପରି ଟିକିଏ ମୁହଁ ଫୁଲାଫୁଲି ହୋଇ କିଛି ମୁହୂର୍ତ୍ତ ପରସ୍ପର ଭିତରେ କଥାବାର୍ତ୍ତା ହୁଅନ୍ତି ନାହିଁ, ଠିକ୍ ସେପରି କ୍ରୀଡ଼ାର ନାଟକ ସେ ରଚନା କଲେ - ପୂର୍ବଭଳି ନରେନ୍ଦ୍ର

Digitized by srujanika@gmail.com

ଏକଦା ଦକ୍ଷିଣେଶ୍ୱରରେ ପହଞ୍ଚିଲେ । ଶ୍ରୀରାମକୃଷ୍ଣଙ୍କୁ ପ୍ରଣାମ କଲେ ଏବଂ ତାଙ୍କ ସମ୍ମୁଖରେ ବସିଲେ । ସେ କିଛି ସମୟ ବସିବା ପରେ ଦେଖିଲେ ଯେ ଶ୍ରୀରାମକୃଷ୍ଣ ତାଙ୍କ ସହ କଥାବାର୍ତ୍ତା ହେଉନାହାନ୍ତି । ସେ ବୋଧହୁଏ ସମାଧିସ୍ଥ ହୋଇଥିବେ ଭାବି ନରେନ୍ଦ୍ର ସେଠାରୁ ବାହାରକୁ ଚାଲି ଆସିଲେ ଏବଂ ହାଜରା ମହାଶୟଙ୍କ ସହ କଥାବାର୍ତ୍ତା ହେଲେ । କିନ୍ତୁ ହଠାତ୍ ସେ ଶୁଣିବାକୁ ପାଇଲେ ଯେ ଅନ୍ୟମାନଙ୍କ ସହ ଶ୍ରୀରାମକୃଷ୍ଣ କଥାବାର୍ତ୍ତାରେ ମଗ୍ନ । ସେ ପୁନଶ୍ଚ ତାଙ୍କ କୋଠରିକୁ ପ୍ରବେଶ କଲେ । ଏଥର ଶ୍ରୀରାମକୃଷ୍ଣ ତାଙ୍କୁ ସ୍ୱାଗତ କରିବା ପରିବର୍ତ୍ତେ, କୋଠରିର କାନ୍ଥ ଆଡ଼କୁ ନିଜ ମୁହଁ ବୁଲାଇ ନେଲେ । ନରେନ୍ଦ୍ର ହତାଶ ହୋଇ କଲିକତା ଫେରି ଆସିଲେ, କିନ୍ତୁ ଶ୍ରୀରାମକୃଷ୍ଣଙ୍କର କୌଣସି ପ୍ରତିକ୍ରିୟା ଦୃଷ୍ଟି ଗୋଚର ହେଲାନାହିଁ ।

ଗୋଟିଏ ସପ୍ତାହ ଅତିକ୍ରାନ୍ତେ, ଶ୍ରୀରାମକୃଷ୍ଣଙ୍କର ମନକଥା ଓ ଆଚରଣ ଜାଣିବା ନିମନ୍ତେ ପୁନଶ୍ଚ ନରେନ୍ଦ୍ର ଦକ୍ଷିଣେଶ୍ୱରରେ ଉପନୀତ ହେଲେ । କିନ୍ତୁ ଶ୍ରୀରାମକୃଷ୍ଣ ପୂର୍ବବତ୍ ତାଙ୍କୁ ସ୍ୱାଗତ ଓ ତାଙ୍କ ସହ କଥାବାର୍ତ୍ତା କଲେ ନାହିଁ । ହାଜରା ମହାଶୟ ଓ ଅନ୍ୟ ବନ୍ଧୁମାନଙ୍କ ସହ ଦକ୍ଷିଣେଶ୍ୱରରେ ସମଗ୍ର ଦିନଟି ବିତାଇ ସେ ସନ୍ଧ୍ୟାରେ କଲିକତାକୁ ଫେରି ଆସିଲେ । ଏଭଳି ନାଟକ ମାସେଯାକ ଚାଲିଲା । ସବୁଠାରୁ ଆଶ୍ଚର୍ଯ୍ୟ ଘଟଣା ଯେ ନରେନ୍ଦ୍ର ଅଗୋଚରରେ ସେ ତାଙ୍କର ସମସ୍ତ କାର୍ଯ୍ୟକଳାପ ଓ ପ୍ରତିକ୍ରିୟା ସମ୍ବନ୍ଧିତ ଟିକିନିଖି ଖବର ଅନ୍ୟମାନଙ୍କଠାରୁ ଆଦାୟ କରି ନେଉଥିଲେ ।

ଏକ ମାସ ପରେ, ନରେନ୍ଦ୍ରଙ୍କର କୌଣସି ପ୍ରତିକ୍ରିୟାର ପରିସ୍ଫୁଟନ ନ ଦେଖି, ଏକଦା ନରେନ୍ଦ୍ରଙ୍କୁ ଶ୍ରୀରାମକୃଷ୍ଣ ପ୍ରଶ୍ନ କଲେ, ''ନରେନ୍, କେତେଦିନ ହେଲା ମୁଁ ତୁମକୁ ସ୍ୱାଗତ କରୁନାହିଁ ଏବଂ ମାସେ ହେଲା ତୁମ ସହିତ କଥା ବି ହେଉନି, ତଥାପି ତୁମେ ଏଠାକୁ ଆସୁଛ ? ନରେନ୍ଦ୍ର ଉତ୍ତର ଦେଲେ, ''ଆପଣ କ'ଣ ଭାବୁଛନ୍ତି ଯେ ମୁଁ ଆପଣଙ୍କର ଉପଦେଶ ଶୁଣିବାକୁ ଏଠାକୁ ଆସୁଛି ? ଯେହେତୁ ମୁଁ ଆପଣଙ୍କୁ ବହୁତ ଭଲପାଏ, ତେଣୁ ମୁଁ ଆପଣଙ୍କୁ ଦେଖିବା ପାଇଁ ଦକ୍ଷିଣେଶ୍ୱର ଆସୁଛି ।'' ନରେନ୍ଦ୍ରଙ୍କର ଭଲପାଇବାର ଗଭୀରତା ହୃଦୟଙ୍ଗମ କରି ଶ୍ରୀରାମକୃଷ୍ଣ ବାଳକ ସମ ଆନନ୍ଦରେ ଉଲ୍ଲସିତ ହୋଇ କହିଲେ, ''ହେଇ ଦେଖ, ନରେନ୍ କ'ଣ କହୁଛି । ଆରେ ବାବା, ଏହା ମୋର ଖେଳଘର ଥିଲା । ମୁଁ ଯଦି ତୋ ସହ କଥାବାର୍ତ୍ତା ନ ହେବି ଏବଂ ତୋତେ ଆଡ଼ ଆଖିରେ ଚାହିଁବି, ତେବେ ତୁ ମୋ ପାଖକୁ ଆସିବୁ କି ନାହିଁ, ତାହା ମୁଁ ପରୀକ୍ଷା କରୁଥିଲି । ମୁଁ ଭଲ ଭାବେ ଜାଣେ ତୋଭଳି ପିଲା ମୋର ଏଭଳି ଅବହେଳା ପ୍ରଦର୍ଶନକୁ ଖାତିର କରିବ ନାହିଁ । ଅନ୍ୟ କେହି ହୋଇଥିଲେ ମୋ ପାଖକୁ କେବେବି ଆସି ନ ଥାନ୍ତା ।''

ଏତାଦୃଶ ପରୀକ୍ଷା ଓ ପ୍ରତି-ପରୀକ୍ଷା ଦୁହିଁଙ୍କ ମଧ୍ୟରେ ଚାଲିଥିବା ଅବସରରେ, ଶ୍ରୀରାମକୃଷ୍ଣ ଦକ୍ଷିଣେଶ୍ୱରର ନିଜ ସାଧନା-ସ୍ଥଳୀ 'ପଞ୍ଚବଟି'କୁ ଏକଦା ନରେନ୍ଦ୍ରଙ୍କୁ ଏକାନ୍ତରେ ଡାକିଲେ । ନିଜ ପାଖରେ ତାଙ୍କୁ ବସାଇ ସ୍ନେହପୂର୍ଣ୍ଣ ଭାଷାରେ କହିଲେ, ''ନରେନ୍ଦ୍ର, କୃଚ୍ଛ୍ର ଆଧାତ୍ମିକ ତପସ୍ୟା ଓ ସାଧନା ଏହି ପଞ୍ଚବଟିରେ ମୁଁ ସମ୍ପାଦନ କରିଛି । ଏଥିରୁ ମୋତେ ମିଳିଛି ଅପୂର୍ବ ମହାସିଦ୍ଧି ଓ ଶକ୍ତି । ଏହା ମୋର ବା କି କାର୍ଯ୍ୟରେ ଆସିବ ! ମୁଁ ତ' ଠିକ୍‌ଭାବେ ବସ୍ତ୍ରଟିଏ ପରିଧାନ କରିପାରୁନାହିଁ । ତେଣୁ ମା'ଙ୍କର ଅନୁମତିକ୍ରମେ ଏହି ମହାଶକ୍ତି ଓ ଅଷ୍ଟସିଦ୍ଧି ତୁମକୁ ହସ୍ତାନ୍ତର

Digitized by srujanika@gmail.com

କରିବାକୁ ଚାହୁଁଛି । ତୁମେ ତ ଭବିଷ୍ୟତରେ ମା'ଙ୍କ ପାଇଁ ବହୁ କାର୍ଯ୍ୟ ସମ୍ପାଦନ କରିବ ବୋଲି ମୋତେ ସ୍ୱୟଂ ମା ଦେଖାଇ ଦେଇଛନ୍ତି । ମୁଁ ଯଦି ଏହି ଦୈବୀଶକ୍ତି ଓ ସିଦ୍ଧି ସମୂହକୁ ହସ୍ତାନ୍ତର କରେ, ତେବେ ଭବିଷ୍ୟତରେ ଆବଶ୍ୟକ ସ୍ଥଳେ ତୁମେ ସେସବୁ କାର୍ଯ୍ୟରେ ଲଗାଇପାରିବ । ତୁମେ କ'ଣ କହୁଛ ?''

ନରେନ୍ଦ୍ର ନିଜ ଗୁରୁଦେବଙ୍କ ମୁଖରୁ ସବୁକିଛି ଆଧ୍ୟାତ୍ମିକ ସାଧନାରୁ ସମ୍ଭୂତ ନିଜର ଦିବ୍ୟଶକ୍ତି ଓ ସିଦ୍ଧିକୁ ଦାନ କରିଦେବାର ଆଗ୍ରହ ପରିଲକ୍ଷିତ କରି ସେ ହତବାକ୍ ହୋଇପଡ଼ିଲେ । ବହୁ ଋଷି, ମୁନି, ସନ୍ଥ, ସନ୍ୟାସୀ ସମଗ୍ର ସାଂସାରିକ ବସ୍ତୁ ତ୍ୟାଗ କରିବାର ଦୃଷ୍ଟାନ୍ତ ପୁରାଣ, ଇତିହାସ ଓ ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି, କିନ୍ତୁ କେହି ଜଣେ ନିଜର ଆଧ୍ୟାତ୍ମିକ ସାଧନାଲବ୍ଧ ସିଦ୍ଧି ଓ ଦିବ୍ୟଶକ୍ତିକୁ ସାଂସାରିକ ବସ୍ତୁଭଳି ତ୍ୟାଗ କରିବାର ଦୃଷ୍ଟାନ୍ତ ମୁଁ ଦେଖିନାହିଁ । କିଏ ଏହି ମହାତ୍ମା ଯାହାଙ୍କର ନିଜର ବୋଲି କିଛି ନାହିଁ ? ସତେକି ଏହି ବ୍ୟକ୍ତି ମୁକ୍ତ ପବନ, ମୁକ୍ତ ଆକାଶ ଏବଂ ମୁକ୍ତ ସୂର୍ଯ୍ୟାଲୋକ ସଦୃଶ ଯା'ଙ୍କର 'ମୋର'ବୋଲି ସ୍ଥାନ ନାହିଁ । ନରେନ୍ଦ୍ର ବିସ୍ମିତ ନୟନରେ ପ୍ରଶ୍ନ କଲେ, ''ମହାଶୟ, ଭଗବଦ୍ ଦର୍ଶନରେ ଏହି ଶକ୍ତି ମୋତେ ସାହାଯ୍ୟ କରିପାରିବ ?

ଶ୍ରୀରାମକୃଷ୍ଣ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ନା, ତାହା ତୁମର ଈଶ୍ୱରଲାଭରେ ସାହାଯ୍ୟ କରିବ ନାହିଁ । କିନ୍ତୁ ଈଶ୍ୱରୋପଲବ୍ଧି ପରବର୍ତ୍ତୀ କାଳରେ ଯେତେବେଳେ ଜଗଜ୍ଜନନୀଙ୍କର କାର୍ଯ୍ୟରେ ତୁମେ ନିଜକୁ ନିୟୋଜିତ କରିବ, ସେତେବେଳେ ଏହି ଶକ୍ତି ଓ ସିଦ୍ଧି ତୁମ କାର୍ଯ୍ୟରେ ସହାୟତା କରିବ ।''

ଯେମିତି ଗୁରୁ, ସେମିତି ଶିଷ୍ୟ । ନରେନ୍ଦ୍ର କହିଲେ, ''ମହାଶୟ, ମୋର ସେସବୁର ଆବଶ୍ୟକ ନାହିଁ । ମୁଁ ପ୍ରଥମେ ଈଶ୍ୱରୋପଲବ୍ଧି କରିବି, ତା'ପରେ ମୁଁ ଜାଣିପାରିବି ଯେ ଏହିସବୁ ସିଦ୍ଧି ଓ ଶକ୍ତି ମୋର ଆବଶ୍ୟକ କି ନୁହେଁ । ତେବେ ଯାଇ ମୁଁ ଆପଣଙ୍କୁ କହିବି । ବର୍ତ୍ତମାନ ଯଦି ଆପଣଙ୍କଠାରୁ ତାହା ଗ୍ରହଣ କରେ, ତେବେ ମୁଁ ମୋର ଲକ୍ଷ୍ୟ ଓ ଆଦର୍ଶ କେବଳ ଭୁଲି ଯିବି ନାହିଁ, ବରଂ ସେହି ଶକ୍ତିକୁ ନିଜର ସ୍ୱାର୍ଥ ସାଧନ ପାଇଁ ଅପବ୍ୟବହାର କରି ଦୁଃଖ ଯନ୍ତ୍ରଣାରେ କେବଳ ପତିତ ହେବି ।'' ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କର ଏତାଦୃଶ କାମନାହୀନ ସ୍ପଷ୍ଟୋକ୍ତି ଶୁଣି ଆନନ୍ଦିତ ହେଲେ ।

ନିଜ ହାତରେ ନରେନ୍ଦ୍ରଙ୍କୁ ଏକ ପ୍ରଚଣ୍ଡ ଶକ୍ତିକେନ୍ଦ୍ର ଭାବେ ଗଢ଼ିତୋଳିବାକୁ ଶ୍ରୀରାମକୃଷ୍ଣଙ୍କର ଅଦମ୍ୟ ଉତ୍ସାହ ଥିଲା ଅଭୂତପୂର୍ବ । ନିଜର ସମସ୍ତ ଆଧ୍ୟାତ୍ମିକ ସାଧନାର ଫଳ ସେ ଧୀରେ ଧୀରେ ନରେନ୍ଦ୍ରଙ୍କୁ ପ୍ରଦାନ କରୁଥିଲେ ଯାହା ମାଧ୍ୟମରେ ସେ ଭବିଷ୍ୟତରେ ଜଗତର କଲ୍ୟାଣ ଓ ମାନବ ଆତ୍ମାର ପୂର୍ଣ୍ଣ ବିକାଶ ନିମନ୍ତେ କାର୍ଯ୍ୟ କରି ପାରିବେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ନରେନ୍ଦ୍ର ହିଁ ଏକମାତ୍ର ବ୍ୟକ୍ତି ଯିଏ ତାଙ୍କର ମହାଶକ୍ତି ଧାରଣ କରିବା ଲାଗି ସକ୍ଷମ । ଏଠାରେ କହିବା ବାହୁଲ୍ୟ ଯେ ନରେନ୍ଦ୍ରଙ୍କର ଯୌବନାବସ୍ଥାର ତିନୋଟି ମୁଖ୍ୟ ଗୁଣ ତାଙ୍କର ଚରିତ୍ର ଓ ନିୟତିକୁ ରୂପାୟିତ କରିପାରୁଥିଲା । ପ୍ରଥମଟି ହେଲା ତାଙ୍କର ସହଜାତ ଆଧ୍ୟାତ୍ମିକ ପ୍ରବୃତ୍ତି ଯଦ୍ୱାରା ସେ

Digitized by srujanika@gmail.com

ନିଜର ବାସ୍ତବ ମୌଳିକପ୍ରକୃତି ସମ୍ବନ୍ଧରେ ସଚେତନ ଥିଲେ । ଦ୍ୱିତୀୟତଃ ତାଙ୍କ ପରିବାରର ପ୍ରଭାବ ଓ ବହୁ ପୁସ୍ତକ ଅଧ୍ୟୟନ । ହିନ୍ଦୁ ଧର୍ମର ରାମାୟଣ ଓ ମହାଭାରତ ଭଳି ଦୁଇଟି ମହାକାବ୍ୟର ଜ୍ଞାନ ଓ ନିର୍ଯ୍ୟାସ ମାତା ଭୁବନେଶ୍ୱରୀ ଦେବୀଙ୍କ ଠାରୁ ଶିଖିଥିଲେ । ଏତଦ୍‌ବ୍ୟତୀତ ମା'ଙ୍କର ଧର୍ମପରାୟଣତା ଓ ପରିବାରରେ ପିଲାମାନଙ୍କୁ ନିଷ୍ଠା ସହ ପ୍ରତିପାଳନ କରିବାର ଅଙ୍ଗୀକାରବଦ୍ଧତା ତାଙ୍କର ଚରିତ୍ର ଗଠନରେ ପ୍ରଭାବ ବିସ୍ତାର କରିଥିଲା । ପିତା ବିଶ୍ୱନାଥ ଦତ୍ତଙ୍କର ପ୍ରସାରିତ ମନ, ପୌରୁଷତ୍ୱ ଏବଂ ଯଥାର୍ଥ ରାଷ୍ଟ୍ରୀୟ ପରମ୍ପରା ପ୍ରତି ସମ୍ମାନ ଓ ଆଦର, ଭାରତୀୟ ଓ ବୈଦେଶିକ ସଂସ୍କୃତି ସମ୍ବନ୍ଧରେ ଜାଣିବାର ଆଗ୍ରହ ତାଙ୍କ ଭିତରେ ପରିସ୍ଫୁଟ ହୋଇଥିଲା । ତାଙ୍କର ତୃତୀୟ ଗୁଣ ବା ଦିଗଟି ହେଲା ଶ୍ରୀରାମକୃଷ୍ଣ ପରମହଂସଙ୍କ ସହ ଘନିଷ୍ଠତା ଯାହା ତାଙ୍କର ବ୍ୟକ୍ତିତ୍ୱକୁ ପୂର୍ଣ୍ଣ ବିକଶିତ କରି ପାରିଥିଲା । ସଂଶୟ ଓ ମାନସିକ ଯନ୍ତ୍ରଣାରୁ ମୁକ୍ତିଦେଇ ତାଙ୍କୁ ଶାନ୍ତି ଓ ଦୃଢ଼ ଆସ୍ଥା ଅଭିମୁଖେ ପଥ ପ୍ରଦର୍ଶିତ କରିଥିଲା ।

- ୨ -

*ଜାତିପ୍ରଥାର ଜାଲ ଭିତରେ ମଣିଷ ଶ୍ୱାସରୁଦ୍ଧ ହେଉଥିବାର ଯନ୍ତ୍ରଣା, ଉଚ୍ଚବର୍ଗ ବ୍ୟକ୍ତିଙ୍କର ଆଭିଜାତ୍ୟ ଜୀବନଶୈଳୀ ଏବଂ ପୁରୋହିତ ଓ ବ୍ରାହ୍ମଣ ସମାଜର ନୀଚ ଜାତିପ୍ରତି ଘୃଣା ତାଙ୍କର ଯୁବପ୍ରାଣରେ ବାରମ୍ବାର ବିଦ୍ରୋହ ସୃଷ୍ଟି କରୁଥିଲା । ଭାରତବର୍ଷର ଏହି ଦୁର୍ଭାଗ୍ୟଶାଳୀ ଜନତାଙ୍କୁ ସାମାଜିକ, ଆର୍ଥିକ ଓ ଧାର୍ମିକ ଶୋଷଣ ଏବଂ ନିର୍ଯ୍ୟାତନାରୁ ଉଦ୍ଧାର କରିବା ନିମନ୍ତେ ତାଙ୍କ ଭିତରେ ବିଦ୍ରୋହର ନିଆଁ ଅହର୍ନିଶ ଜଳୁଥିଲା ।*

ନରେନ୍ଦ୍ର ଯେଉଁ ସମୟ-କାଳରେ ଜନ୍ମ ହୋଇ ପ୍ରତିପାଳିତ ଓ ଶିକ୍ଷିତ ହେଉଥିଲେ, ସେହି ସମୟ ଅତ୍ୟାଧୁନିକ ଯୁଗର ପ୍ରବେଶ ଦ୍ୱାର ଥିଲା । ଇଂରାଜୀ ଶିକ୍ଷା ସହିତ ପାଶ୍ଚାତ୍ୟ ବିଜ୍ଞାନ, ଇତିହାସ ଓ ଦର୍ଶନ ଶାସ୍ତ୍ର ଭାରତୀୟ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ପଠିତ ହେଉଥିଲା ଏବଂ ଯୁବକ ଓ ଯୁବତୀମାନେ ଅଧିକତର ଉକ୍ତ ବିଦ୍ୟା ପ୍ରତି ଆକୃଷ୍ଟ ହୋଇ ନିଜ ନିଜର ଚିନ୍ତାଧାରାକୁ ପରିପୁଷ୍ଟ କରୁଥିଲେ । ନରେନ୍ଦ୍ର ମଧ୍ୟ ସେଥିରୁ ବାଦ୍ ପଡ଼ି ନ ଥିଲେ । ବିଶ୍ଳେଷଣୀୟ ବୈଜ୍ଞାନିକ ପଦ୍ଧତି ପ୍ରତି ତାଙ୍କର ଅତ୍ୟନ୍ତ ସମ୍ମାନ ରହିଥିଲା ଏବଂ ଶ୍ରୀରାମକୃଷ୍ଣଙ୍କର ଆଧ୍ୟାତ୍ମିକ ଦିବ୍ୟଦର୍ଶନକୁ ସେ ଖୁବ୍ ସତର୍କତା ସହ ବିଶ୍ଳେଷଣ କରୁଥିଲେ । ଇଂରେଜୀ କବି ବିଶେଷତଃ ୱାର୍ଡ୍ସୱର୍ଥ ଓ ସେଲିଙ୍କର କବିତା ତାଙ୍କର ଅନୁଭବକୁ ମନ୍ଥନ କରୁଥିଲା । କେବଳ ସେତିକି ନୁହେଁ, ପାଶ୍ଚାତ୍ୟ ଭେଷଜ ବିଜ୍ଞାନ ଅଧ୍ୟୟନ କରି, ମନୁଷ୍ୟ ଶରୀରର ସ୍ନାୟୁ, ମସ୍ତିଷ୍କ, ମେରୁଦଣ୍ଡର କାର୍ଯ୍ୟପ୍ରଣାଳୀ ଉପରେ ବିଶେଷ ଜ୍ଞାନ ସେ ଆହରଣ କରିଥିଲେ । ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କର ପ୍ରବନ୍ଧ "ଥ୍ରି ଏସେଜ୍ ଅନ୍ ରିଲିଜନ୍"କୁ ଏଭଳି ସେ କଣ୍ଠସ୍ଥ କରିଥିଲେଯେ ତାଙ୍କର ଈଶ୍ୱରବିଶ୍ୱାସୀ ମନ ଉପରେ ନକାରାତ୍ମକ ପ୍ରଭାବ ପକାଇଥିଲା । ପ୍ରକୃତିର ଅପ୍ରତିରୋଧୀ ମନ୍ଦଶକ୍ତି

Digitized by srujanika@gmail.com

ଓ ମନୁଷ୍ୟର ହିଂସାତ୍ମକ ମନୋଭାବ ତାଙ୍କୁ ବ୍ୟତିବ୍ୟସ୍ତ କରୁଥିଲା, ଯେଉଁଥିପାଇଁ ସର୍ବଶକ୍ତିମାନ ସ୍ରଷ୍ଟାଙ୍କର ସୃଷ୍ଟି ରଚନାର ରହସ୍ୟ ଏବଂ ସର୍ବଶକ୍ତିମାନ ଈଶ୍ୱରଙ୍କୁ ମଙ୍ଗଳମୟ କହିବାର ମନୁଷ୍ୟର ନିରନ୍ତର ଚେଷ୍ଟା ଉପରେ ସେ ପ୍ରଶ୍ନ କରୁଥିଲେ ।

ଦାର୍ଶନିକ ହ୍ୟୁମ୍‌ଙ୍କର ସଂଶୟବାଦ ଓ ହାର୍‌ବର୍ଟ ସ୍ପେନ୍ସରଙ୍କ ଅଜ୍ଞେୟବାଦର ସିଦ୍ଧାନ୍ତ ତାଙ୍କ ମନରେ ଈଶ୍ୱରଙ୍କର ଅସ୍ତିତ୍ୱ ପ୍ରମାଣସାପେକ୍ଷ ନୁହେଁ ବୋଲି ଜନ୍ମାଇ ଥିଲା ଏକ ଦୃଢ଼ ବିଶ୍ୱାସ । ସାମୁଏଲ୍ କେଣ୍ଟ, ସୋପେନହରଙ୍କ ଭଳି ଜର୍ମାନୀ ଦାର୍ଶନିକ ଏବଂ କାମତେ'ଙ୍କର ସକାରାତ୍ମକ ଦର୍ଶନ ତାଙ୍କ ମନରେ ଉଠୁଥିବା ପରମସତ୍ୟକୁ ଜାଣିବାର ନିଶାକୁ ଶାନ୍ତ କରିପାରୁ ନ ଥିଲା । ସେ ଚାହୁଁଥିଲେ ପରମାତ୍ମାଙ୍କ ସହ ପ୍ରତ୍ୟକ୍ଷ ଦର୍ଶନ । ତତ୍‌କାଳୀନ ହିନ୍ଦୁ ସମାଜର ଅବସ୍ଥା ଓ ବ୍ୟବସ୍ଥା ସମ୍ବନ୍ଧରେ ନ କହିଲେ ଭଲ । ଜାତିପ୍ରଥାର ଜାଲ ଭିତରେ ମଣିଷ ଶ୍ୱାସରୁଦ୍ଧ ହେଉଥିବାର ଯନ୍ତ୍ରଣା, ଉଚ୍ଚବର୍ଗ ବ୍ୟକ୍ତିଙ୍କର ଆଭିଜାତ୍ୟ ଜୀବନଶୈଳୀ ଏବଂ ପୁରୋହିତ ଓ ବ୍ରାହ୍ମଣ ସମାଜର ନୀଚ ଜାତିପ୍ରତି ଘୃଣା ତାଙ୍କର ଯୁବପ୍ରାଣରେ ବାରମ୍ବାର ବିଦ୍ରୋହ ସୃଷ୍ଟି କରୁଥିଲା । ଭାରତବର୍ଷର ଏହି ଦୁର୍ଭାଗ୍ୟଶାଳୀ ଜନତାଙ୍କୁ ସାମାଜିକ, ଆର୍ଥିକ ଓ ଧାର୍ମିକ ଶୋଷଣ ଓ ନିର୍ଯ୍ୟାତନାରୁ ଉଦ୍ଧାର କରିବା ନିମନ୍ତେ ତାଙ୍କ ଭିତରେ ବିଦ୍ରୋହର ନିଆଁ ଅହର୍ନିଶ ଜଳୁଥିଲା । ହଜାର ହଜାର ବର୍ଷର ପ୍ରାଚୀନ ଧର୍ମ ହିନ୍ଦୁଧର୍ମ । ବେଦ, ବେଦାନ୍ତ, ଉପନିଷଦ ଓ ଗୀତା ଭଳି ମହାନ ଶାସ୍ତ୍ର ଏଠାରେ ରହିଥିଲେ ବି ସାଧାରଣବର୍ଗ ଆଦୌ ଉପକୃତ ହେଉନାହାନ୍ତି ଭାବି ସେ ଆଶ୍ଚର୍ଯ୍ୟ ହେଉଥିଲେ । ହିନ୍ଦୁଧର୍ମର ପୂଜାପଦ୍ଧତି, ଅସଂଖ୍ୟ ଦେବାଦେବୀଙ୍କର ଆରାଧନା କାହିଁକି ସାଧାରଣ ଦୁଃଖୀ, ଦରିଦ୍ର ନିଷ୍ପେଷିତ ଜନତାଙ୍କର ଦୁଃଖ ଓ ବେଦନାକୁ ଲାଘବ କରିପାରୁନାହିଁ ? ତାଙ୍କର ବିଦ୍ରୋହୀ ମନ ଏହିସବୁ କୁସଂସ୍କାର ଓ ଅସମ୍ବେଦନଶୀଳ ମନୋଭାବକୁ ଶତ ଧିକ୍‌କାର କଲା ।

ଶ୍ରୀରାମକୃଷ୍ଣଙ୍କୁ ଭେଟିବା ପୂର୍ବରୁ ଓ ସ୍ୱାମୀ ବିବେକାନନ୍ଦରେ ରୂପାନ୍ତରଣ ପ୍ରକ୍ରିୟା ମଧ୍ୟରେ ନରେନ୍ଦ୍ରଙ୍କର ବିଦ୍ରୋହୀ ମନ କିପରି ଭାରତର ଦେଶବାସୀଙ୍କ ପାଇଁ ତହଳବିକଳ ହେଉଥିଲା, ତାହା ସହଜରେ କେହି ହଠାତ୍ ବୁଝିପାରିବେ ନାହିଁ । ପରବର୍ତ୍ତୀକାଳରେ ସେ ସ୍ୱାମୀ ବିବେକାନନ୍ଦ ଭାବେ ଭାରତୀୟଙ୍କର ଦୁର୍ବଳତା ସମ୍ବନ୍ଧରେ ଯାହା କହିଥିଲେ ତା'ର କିୟଦାଂଶ ଏଠାରେ ଉପସ୍ଥାପିତ, ଯେଉଁଥିରୁ ବୁଝିହେବ ଯୁବାବସ୍ଥା ସମୟରେ ନରେନ୍ଦ୍ରଙ୍କର ବିଦ୍ରୋହୀ ମାନସିକତା ।

''ମୁଁ ଅଦ୍ୱୈତବାଦ ସମ୍ବନ୍ଧରେ ବେଶି ପ୍ରଚାର କରୁଛି ଏବଂ ଦ୍ୱୈତବାଦ ଉପରେ ଅଳ୍ପ କହୁଛି ବୋଲି ଅଭିଯୋଗ ଏକଦା ଶୁଣିଥିଲି । ଆହାଃ... ଦ୍ୱୈତବାଦୀ ଧର୍ମରେ ଭରି ରହିଛି ଉତ୍କର୍ଷତା, ପ୍ରେମର ସାଗର, ଅସୀମତା, ଭାବାତୀତ ଆଶୀର୍ବାଦ ଓ ଆନନ୍ଦ । ଏହିସବୁ ମୁଁ ଜାଣେ । ତଥାପି ଆନନ୍ଦରେ ଅଶ୍ରୁ ବିସର୍ଜନ କରିବାର ସମୟ ବର୍ତ୍ତମାନ ନୁହେଁ । ଆମେ ଯଥେଷ୍ଟ ଅଶ୍ରୁ ବିସର୍ଜନ କରିଛେ । ଆମେ କୋମଳ ଭାବାପନ୍ନ ହେବାର ସମୟ ବର୍ତ୍ତମାନ ନୁହେଁ । ଆମର ଜନତା ତୁଳା ଭଳି ହେବା ପର୍ଯ୍ୟନ୍ତ କୋମଳତା ଆମ ପାଖରେ ରହିଆସିଛି । ବର୍ତ୍ତମାନ ଆମର ସାଂସାରିକ ମାଂସପେଶୀ ଲୁହାଭଳି ହେଉ ଏବଂ ଆମର ସ୍ନାୟୁ ଇସ୍ପାତ ଭଳି ଟାଣ ହେଉ । ଆମ ଭିତରେ ପ୍ରଚଣ୍ଡ ଇଚ୍ଛାଶକ୍ତି ଉଦୟ ହେଉ ଯାହାଫଳରେ କୌଣସି ଶକ୍ତି ଆମକୁ ବାଧା ଦେଇପାରିବ

Digitized by srujanika@gmail.com

ନାହିଁ ଏବଂ ନିଜ ନିଜ ଦୃଷ୍ଟିଭଙ୍ଗୀରେ ଆମେ ସମସ୍ତେ ଲକ୍ଷ୍ୟ ହାସଲ ନିମନ୍ତେ କାର୍ଯ୍ୟ କରିପାରିବା । ଏପରିକି ଆବଶ୍ୟକ ସ୍ଥଳେ ସମୁଦ୍ରର ଅତଳ ଗଭୀରକୁ ଲମ୍ଫ ପ୍ରଦାନ କରି ମୃତ୍ୟୁ ସହ ମୁହାଁମୁହିଁ ହେବାପାଇଁ ଭୟ କରିବା ନାହିଁ । ଏତାଦୃଶ ମାନସିକତା ବର୍ତ୍ତମାନ ଆମର ଆବଶ୍ୟକ ଯାହା ଆମେ ନିଜେ ସୃଷ୍ଟି କରିପାରିବା, ସ୍ଥାପନ କରିପାରିବା ଏବଂ ଶକ୍ତିଶାଳୀ କରି ଗଢ଼ି ତୋଳିପାରିବା । ଯଦି ଆମେ ଅଦ୍ୱୈତ ଅର୍ଥାତ୍ ସମଗ୍ରତାର ଏକତ୍ୱର ଆଦର୍ଶ ହୃଦୟଙ୍ଗମ କରିପାରିବା, ତେବେ ଏହା ସମ୍ଭବ ହେବ । ସୁତରାଂ ନିଜ ଭିତରେ ସଂଚାର କର ବିଶ୍ୱାସ, ବିଶ୍ୱାସ ଏବଂ ବିଶ୍ୱାସ... ।

ଯଦି ତୁମର ତେତିଶ କୋଟି ପୌରାଣିକ ଦେବାଦେବୀ ଏବଂ ପରବର୍ତ୍ତୀକାଳରେ ଆହୁରି ପ୍ରଚଳିତ ହୋଇଥିବା ଦେବାଦେବୀଙ୍କ ଉପରେ ବିଶ୍ୱାସ ରହିଥାଏ, କିନ୍ତୁ ତୁମ ନିଜ ଉପରେ ଯଦି ବିଶ୍ୱାସ ନାହିଁ, ତେବେ ତୁମେ କୌଣସି ମୁକ୍ତିର ଅଧିକାରୀ ହୋଇପାରିବ ନାହିଁ । ତୁମ ନିଜ ଉପରେ ବିଶ୍ୱାସ ରଖ ଏବଂ ସେହି ବିଶ୍ୱାସ ଉପରେ ଦଣ୍ଡାୟମାନ ହୁଅ । ଆମେ ତେତିଶ କୋଟି ଜନତା ବିଗତ ହଜାର ହଜାର ବର୍ଷ ହେଲା କେତେକ ମୁଷ୍ଟିମେୟ ବିଦେଶୀଙ୍କ ଦ୍ୱାରା କାହିଁକି ଶାସିତ ହେଉଛନ୍ତି ? କାରଣ ସେମାନଙ୍କର ନିଜ ଉପରେ ବିଶ୍ୱାସ ଅଛି ଏବଂ ତାହା ଆମର ନାହିଁ ? ଯେତେବେଳେ ଆମର ନିଃସ୍ୱ ଦେଶବାସୀ ଇଂରାଜୀମାନଙ୍କ ଦ୍ୱାରା କେବେ କେମିତି ନିହତ ହୁଅନ୍ତି ଓ ଦୁର୍ବ୍ୟବହାର ଲାଭ କରନ୍ତି, ସେତେବେଳେ ସମଗ୍ର ଦେଶ ଆର୍ତ୍ତନାଦରେ ଶିହରିତ ହୋଇ ଉଠିବାର ସମ୍ବାଦ ମୋ କାନରେ ପଡ଼ିଲେ ମୁଁ ଅତ୍ୟନ୍ତ ମର୍ମାହତ ହୋଇ କ୍ରନ୍ଦନ କରେ । କିନ୍ତୁ ପରମୁହୂର୍ତ୍ତରେ ଗୋଟିଏ ପ୍ରଶ୍ନ ମୋର ମନକୁ ଉଦ୍‌ବେଳିତ କରେ ଯେ ଏହି ଘଟଣା ପାଇଁ ଦାୟୀ କିଏ ? ନିଶ୍ଚିତଭାବେ ଇଂରାଜୀମାନେ ଦାୟୀ ନୁହଁନ୍ତି । ଆମେ ଏତାଦୃଶ ଅବକ୍ଷୟ ପାଇଁ ନିଜେ ଦାୟୀ । ଆମର ସମ୍ଭ୍ରାନ୍ତ ପୂର୍ବସୁରୀ ଗଣ ଆମ ରାଷ୍ଟ୍ରର ସାଧାରଣ ଜନତାଙ୍କୁ ପଦଦଳିତ କରିଛନ୍ତି ଯା'ଫଳରେ ସେମାନେ ନିଃସହାୟ ହୋଇ ନିଜକୁ ମନୁଷ୍ୟ ବୋଲି ଭାବିବା ବିସ୍ମରଣ ହୋଇଛନ୍ତି । ସେମାନଙ୍କୁ କାଠକଟାଳି ଓ ଜଳବାହକ ହେବାପାଇଁ ଯୁଗଯୁଗଧରି ବାଧ କରାଯାଇଛି । ତେଣୁ ସେମାନେ ଭୃତ୍ୟ, କାଷ୍ଠ କର୍ତ୍ତକ ଓ ଜଳବାହକ ଭାବେ ଜନ୍ମ ହୋଇଛନ୍ତି ବୋଲି ନିଜକୁ ଭାବିବା ପାଇଁ ଚାପ ପ୍ରୟୋଗ କରାଯାଇଛି ।

... ଜାତି, ବର୍ଣ୍ଣ, ଦୁର୍ବଳତା ଓ ସବଳତା ନିର୍ବିଶେଷରେ ପ୍ରତ୍ୟେକ ନର, ନାରୀ ଓ ଶିଶୁ ଜାଣିବା ଉଚିତ ଯେ ଦୁର୍ବଳ ଓ ସବଳ, ଉଚ୍ଚ ଓ ନୀଚ ଏବଂ ପ୍ରତ୍ୟେକ ବ୍ୟକ୍ତି ପଶ୍ଚାତରେ ବିରାଜିତ ଏକ ଅସୀମ ଆତ୍ମା ଯିଏ ମହାନ ଓ ଉତ୍ତମ ହେବାପାଇଁ ସମସ୍ତଙ୍କ ଭିତରେ ଅସୀମ ସମ୍ଭାବ୍ୟତା ଓ ଅସୀମ ଦକ୍ଷତା ଭରି ଦେଉଛନ୍ତି ବୋଲି ସଦୈବ ଆଶ୍ୱାସନା ପ୍ରଦାନ କରୁଛନ୍ତି । ଆସନ୍ତୁ, ପ୍ରତ୍ୟେକ ଆତ୍ମା ସମ୍ମୁଖରେ ଆମେ ଘୋଷଣା କରିବା - ଉଠ, ଉଠ, ଜାଗ ! ଦୁର୍ବଳତାର ସମ୍ମୋହନୀ ଶକ୍ତିରୁ ଉଠ । ବାସ୍ତବରେ କେହି ଦୁର୍ବଳ ନୁହଁନ୍ତି, କେବଳ ଆତ୍ମା ହିଁ ଅସୀମ, ସର୍ବଶକ୍ତିମାନ ଓ ସର୍ବବିଦ୍ୟମାନ, ଠିଆ ହୁଅ, ନିଜର ମତକୁ ସୁଦୃଢ଼ କର, ତୁମ ଭିତରେ ଈଶ୍ୱର ବିରାଜିତ ବୋଲି ଘୋଷଣା କର, ତୁମ ଭିତରେ ତାଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରନାହିଁ ।''

Digitized by srujanika@gmail.com

- ୩ -

*ଶ୍ରୀରାମକୃଷ୍ଣ ପ୍ରବୋଦିତ ସ୍ୱରରେ କହିଥିଲେ, ''ନରେନ୍, ଈଶ୍ୱର ଆମର ଆନ୍ତରିକ ପ୍ରାର୍ଥନା ଶୁଣନ୍ତି । ମୁଁ ତୁମକୁ ଆଶ୍ୱାସନା ଦେଉଛି ତୁମେ ଈଶ୍ୱର ଦର୍ଶନ କରିପାରିବ ଏବଂ ମୋ ସହ ବର୍ତ୍ତମାନ ଯେପରି କଥାବାର୍ତ୍ତା କରୁଛ, ଠିକ୍ ସେପରି ତୁମେ ତାଙ୍କ ସହ କଥାବାର୍ତ୍ତା କରିପାରିବ ।*

ନରେନ୍ଦ୍ରଙ୍କର ଏଭଳି ସଂଶୟୀ ଓ ଈଶ୍ୱରଙ୍କ ବିରୋଧରେ ବିଦ୍ରୋହୀ ମନକୁ ଶ୍ରୀରାମକୃଷ୍ଣ ଭଲଭାବରେ ବୁଝି ପାରିଥିଲେ । ନରେନ୍ଦ୍ରଙ୍କର ବିଚକ୍ଷଣ ବୁଦ୍ଧି ଏବଂ ପରମସତ୍ୟକୁ ଜାଣିବାର ଦୁର୍ବାର ଅଭିପ୍ସା ନିଃସନ୍ଦେହରେ ଦିନେ ସମସ୍ତ ପ୍ରକାର ସୀମା ଅତିକ୍ରାନ୍ତ କରି ତାଙ୍କୁ ଏକ ବିଶାଳ ଆଧ୍ୟାତ୍ମିକ ସିଂହରେ ପରିଣତ କରିବ ବୋଲି ଶ୍ରୀରାମକୃଷ୍ଣଙ୍କୁ ଅଛପା ନ ଥିଲା । ତେଣୁ ଅତି ସାବଧାନ ଓ ଧୈର୍ଯ୍ୟ ସହକାରେ ତାଙ୍କୁ ଧୀରେ ଧୀରେ ସସ୍ନେହେ ପରାମର୍ଶ ଓ ପଥପ୍ରଦର୍ଶନ କରୁଥିଲେ । ଅନ୍ୟପକ୍ଷରେ ଶ୍ରୀରାମକୃଷ୍ଣ ଯେଉଁ ପରମ ଆନନ୍ଦ ଓ ପ୍ରଶାନ୍ତ ଆଧ୍ୟାତ୍ମିକ ମହାପାରାବାରରେ ଅବଗାହନ କରୁଥିଲେ, ତାହାର କିୟଦାଂଶ ନରେନ୍ଦ୍ରଙ୍କ ବିଦ୍ରୋହୀ ମନ ବୁଝିବାରେ ସକ୍ଷମ ହୋଇଥିଲା । ଯାହାଙ୍କୁ ସେ ପୌତ୍ତଳିକ ଓ ବିକୃତ ମସ୍ତିଷ୍କର ନିରକ୍ଷର ବ୍ୟକ୍ତି ବୋଲି ପ୍ରଥମେ ଭାବିଥିଲେ, ସେ ଯେ ବାସ୍ତବରେ ଆଧ୍ୟାତ୍ମିକ ରାଜ୍ୟର ଜଣେ ମହିମାମଣ୍ଡିତ ତେଜସ୍ୱୀ ପୁରୁଷ ସିଂହ, ତାହା ତାଙ୍କୁ ଚିହ୍ନିବା ପାଇଁ ବେଶି ସମୟ ଲାଗିଲା ନାହିଁ ।

ସେହି ମହାପୁରୁଷଙ୍କ ପଦପ୍ରାନ୍ତରେ ଧ୍ୟାନର ଗୂଢ଼ତମ ରହସ୍ୟ ଉନ୍ମୋଚନ କରିବା ପାଇଁ ଆତ୍ମ-ନିବେଦନ କଲେ । ଶ୍ରୀରାମକୃଷ୍ଣ ପ୍ରବୋଦିତ ସ୍ୱରରେ କହିଥିଲେ, ''ନରେନ୍, ଈଶ୍ୱର ଆମର ଆନ୍ତରିକ ପ୍ରାର୍ଥନା ଶୁଣନ୍ତି । ମୁଁ ତୁମକୁ ଆଶ୍ୱାସନା ଦେଉଛି ତୁମେ ଈଶ୍ୱର ଦର୍ଶନ କରିପାରିବ ଏବଂ ମୋ ସହ ବର୍ତ୍ତମାନ ଯେପରି କଥାବାର୍ତ୍ତା କରୁଛ, ଠିକ୍ ସେପରି ତୁମେ ତାଙ୍କ ସହ କଥାବାର୍ତ୍ତା କରିପାରିବ । ତାଙ୍କର ସ୍ପର୍ଶ ବି ଅନୁଭବ କରିପାରିବ । ହଁ, ତୁମେ ତାଙ୍କର ଦୈବୀ ରୂପରେ ବିଶ୍ୱାସ ରଖି ନ ପାର, କିନ୍ତୁ ଯଦି ତୁମେ ତାଙ୍କୁ ସତ୍-ଚିତ୍-ଆନନ୍ଦରୂପକ ପରମସତ୍ତା, ଯିଏ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ସ୍ରଷ୍ଟା ଓ କର୍ତ୍ତା ଭାବେ ବିଶ୍ୱାସ କରିବ, ତେବେ ତୁମେ ତାଙ୍କୁ ଏଭଳି ପ୍ରାର୍ଥନା କର : ହେ ଈଶ୍ୱର ମୁଁ ତୁମକୁ ଜାଣେନାହିଁ । ମୋତେ କୃପାକର, ମୋ ସମ୍ମୁଖରେ ତୁମର ସତ୍ୟ ସ୍ୱରୂପକୁ ପ୍ରକଟିତ କର । ସତରେ ନରେନ୍, ତୁମର ଆତ୍ମ ନିବେଦନ ଯଦି ନିଷ୍ଠାବାନ ହେବ, ସେ ନିଶ୍ଚୟ ତୁମ କଥା ଶୁଣିବେ ହିଁ ଶୁଣିବେ ।''

ନରେନ୍ଦ୍ରଙ୍କର ବିଶ୍ୱାସ ଏହି କେଇପଦ ଆଶ୍ୱାସନା ବାଣୀରେ ପ୍ରଜ୍ୱଳିତ ହେଲା । ଶ୍ରୀରାମକୃଷ୍ଣଙ୍କର ପ୍ରେରଣାପୂର୍ଣ୍ଣ ବାକ୍ୟରେ ଆରମ୍ଭ କଲେ ଧ୍ୟାନ ଓ ଧାରଣା । ଆଶ୍ଚର୍ଯ୍ୟର ଘଟଣା ଯେ ନରେନ୍ଦ୍ରଙ୍କର ଧ୍ୟାନ କ୍ରମଶଃ ଗଭୀର ହେବାକୁ ଲାଗିଲା ଏବଂ ଧ୍ୟାନସ୍ଥ ସମୟରେ ତାଙ୍କର ଶରୀର ଜ୍ଞାନ ବିସ୍ମରଣ ହେଲା ଯାହାଫଳରେ ଅନ୍ତର୍ମନ ଶାନ୍ତ ହୋଇଉଠିଲା । ଧ୍ୟାନପରେ ମଧ୍ୟ ସେ ଉପଲବ୍ଧି କଲେ ଯେ ତାଙ୍କର ମନ ଶାନ୍ତି ରାଜ୍ୟରେ ବିଚରଣ କରୁଛି । ସେ ବାରମ୍ବାର

Digitized by srujanika@gmail.com

ଅନୁଭବକଲେ ଆତ୍ମା ଓ ଶରୀର ଭିତରେ ପାର୍ଥକ୍ୟତା । ଗଭୀର ଧ୍ୟାନର ନୀରବତା ଓ ପ୍ରଶାନ୍ତି ଉପର୍ଯ୍ୟୁପରି ତାଙ୍କର ମନ ଓ ଚେତନାର ସୋପାନଗୁଡ଼ିକୁ ଦୀପ୍ତିମନ୍ତ କଲା । ନିଶାସକ୍ତ ଯେପରି ନିଶାଆଡ଼କୁ ତା'ର ମନ ସର୍ବଦା ଧାବିତ ହେଉଥାଏ, ନରେନ୍ଦ୍ର ଠିକ୍ ସେପରି ଧ୍ୟାନରେ ଉପବିଷ୍ଟ ହେବାଲାଗି ଚଳଚଞ୍ଚଳ ହୋଇଉଠୁଥିଲେ । ଥରେ ଧ୍ୟାନରେ ଉପବେଶନ କଲେ, ସେଠାରୁ ଉଠିବାଲାଗି ତାଙ୍କର ମନ ଆଦୌ ଚାହୁଁ ନ ଥିଲା ।

ଏକଦା ସେ ଗଭୀର ଧ୍ୟାନରେ ନିମଗ୍ନ ହେଲେ । ବହୁ ସମୟ ପରେ ଧ୍ୟାନସ୍ଥ ଅବସ୍ଥାରେ ନରେନ୍ଦ୍ର ଏକ ଅପୂର୍ବ ଦୃଶ୍ୟ ଅବଲୋକନ କଲେ । ଜଣେ ଦୀପ୍ତିମନ୍ତ ସନ୍ୟାସୀ ହଠାତ୍ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ସନ୍ୟାସୀଙ୍କର ଉପସ୍ଥିତିରେ ଚତୁର୍ଦ୍ଦିଗ ଆଲୋକମୟ ହୋଇଉଠିଲା । ଗୈରିକ ବସନ ପରିହିତ ସନ୍ୟାସୀ ହସ୍ତରେ ଧାରଣ କରିଥିଲେ କମଣ୍ଡଳୁ । ତାଙ୍କର ଅନାସକ୍ତ ମୁଖମଣ୍ଡଳରେ ଲହରିତ ହେଉଥିଲା ଶାନ୍ତି ଓ ସୌମ୍ୟତା । ତାଙ୍କର ଶାନ୍ତ, ସୌମ୍ୟ ଓ ତେଜସ୍ୱୀ ରୂପ ପ୍ରତି ସେ ଆକର୍ଷିତ ହୋଇପଡ଼ିଲେ । ସନ୍ୟାସୀ ଧୀରେ ଧୀରେ ପଦଚାରଣ କରି, ତାଙ୍କ ନିକଟକୁ ଆଗମନ କରି ତାଙ୍କ ଉପରେ ନିଜର ଦୃଷ୍ଟି ନିବଦ୍ଧ କଲେ । ବୋଧହୁଏ ସେ ତାଙ୍କୁ କିଛି କହିବାକୁ ଚାହୁଁଥିଲେ । କିନ୍ତୁ ତାଙ୍କର ତେଜସ୍ୱୀ ରୂପ ଦେଖି ନରେନ୍ଦ୍ର ଅତ୍ୟନ୍ତ ଭୟଭୀତ ହୋଇପଡ଼ିଲେ ଏବଂ ବିଚଳିତ ହୋଇ ଆସନରୁ ଉଠିପଡ଼ିଲେ । ନରେନ୍ଦ୍ର ଭୟରେ ନିଜ କୋଠରିରୁ ପଳାୟନ କଲେ ।

ବାହାରେ କିଛି ମୁହୂର୍ତ୍ତ ବିତାଇବା ପରେ, ସେ ମନେମନେ ଲଜ୍ଜିତ ହେଲେ ଏବଂ ନିଜକୁ ଜଣେ ଭୟାଳୁ ଓ ନିର୍ବୋଧ ବୋଲି ଭାବିଲେ । ମନରେ ପୁନଶ୍ଚ ସାହସ ସଞ୍ଚୟ କରି, ନିଜ କୋଠରିକୁ ପୁନର୍ବାର ପ୍ରବେଶ କଲେ । କିନ୍ତୁ ହାୟ, ସନ୍ୟାସୀ ସେଠାରେ ନ ଥିଲେ । ନରେନ୍ଦ୍ର ବହୁ ସମୟ ସେଠାରେ ଅପେକ୍ଷା କଲେ, କାଳେ ସନ୍ୟାସୀ ପୁନର୍ବାର ଆବିର୍ଭୂତ ହେବେ । କିନ୍ତୁ ତାହା ଘଟିଲା ନାହିଁ । ନରେନ୍ଦ୍ର ନୈରାଶ୍ୟରେ ଭାଙ୍ଗି ପଡ଼ି ଭାବିଲେ - ଆହାଃ... ମୁଁ ଜୀବନରେ ବହୁ ସନ୍ୟାସୀ ଦେଖିଛି, କିନ୍ତୁ ଏମନ୍ତ ସନ୍ୟାସୀ ଯାହାଙ୍କ ସୌମ୍ୟ ମୁଖମଣ୍ଡଳ ଦିବ୍ୟ ପ୍ରେମରେ ଉଦ୍‌ଭାସିତ, ମୁଁ ଜୀବନରେ ଦେଖିନାହିଁ ।'' ସନ୍ୟାସୀଙ୍କର ରୂପ, ନରେନ୍ଦ୍ରଙ୍କ ମନ ଓ ହୃଦୟରେ ଅଲିଭା ଦାଗ ଛାଡ଼ିଦେଇଗଲା । କିନ୍ତୁ ଏହି ସନ୍ୟାସୀ ଯେ ସ୍ୱୟଂ ଭଗବାନ ବୁଦ୍ଧ ଥିଲେ, ତାହା ନରେନ୍ଦ୍ରଙ୍କୁ ଅଛପା ରହିଲା ନାହିଁ ।

ଧ୍ୟାନର ଅନନ୍ତ ଇଲାକାରେ ବିଚରଣ କରି ନରେନ୍ଦ୍ର କ୍ରମଶଃ ଉପଲବ୍ଧି କଲେ ଯେ ମନୁଷ୍ୟର ସୀମିତ ମନ ଓ ଇନ୍ଦ୍ରିୟ ଦ୍ୱାରା ପରମସତ୍ୟକୁ ଠାବ କରିହେବ ନାହିଁ । ଶ୍ରୀରାମକୃଷ୍ଣଙ୍କର ପ୍ରତ୍ୟେକ ବାକ୍ୟର ମହତ୍ତ୍ୱ ଧୀରେ ଧୀରେ ତାଙ୍କ ସମ୍ମୁଖରେ ଉନ୍ମୋଚିତ ହେବାକୁ ଆରମ୍ଭ କଲା । ବୌଦ୍ଧିକ ତର୍କ ମାଧ୍ୟମରେ ସତ୍ୟକୁ ଜାଣିବାର ଚେଷ୍ଟା ବୃଥା ମାତ୍ର । ଆଧ୍ୟାତ୍ମିକ ସତ୍ୟ ଏଭଳି ଏକ ଅବସ୍ଥା, ଯାହା ଶ୍ରୀରାମକୃଷ୍ଣ କେବଳ ଉପଲବ୍ଧି କରିଛନ୍ତି, ତାଙ୍କର ଶରଣାପନ୍ନ ହେଲେ, ସମସ୍ତ ରହସ୍ୟ ଯେ ଉଦ୍‌ଘାଟିତ ହୋଇପାରିବ, ନରେନ୍ଦ୍ରଙ୍କର ଦୃଢ଼ ଆତ୍ମବିଶ୍ୱାସ ଜାତ ହେଲା ।



Digitized by srujanika@gmail.com

॥ ସାତ ॥

# ପିତୃ ବିୟୋଗ - ଦାରିଦ୍ର୍ୟ କଷାଘାତ ଜର୍ଜରିତ ଜୀବନ ଭିତରେ କାଳୀଙ୍କର ଦିବ୍ୟଦର୍ଶନ ଲାଭ

ଶ୍ରୀରାମକୃଷ୍ଣଙ୍କର ଛତ୍ରଛାୟା ତଳେ ଯୁବକ ନରେନ୍ଦ୍ର ଆଧ୍ୟାତ୍ମିକ ପଥରେ ଉପର୍ଯ୍ୟୁପରି ଅଗ୍ରସର ହେଉଥିବା ସମୟରେ ଜାନୁଆରୀ ୩୦, ୧୮୮୪ ମସିହାରେ ତାଙ୍କର ବି.ଏ. ପରୀକ୍ଷାର ଫଳ ପ୍ରକାଶିତ ହେଲା । ନରେନ୍ଦ୍ର କୃତିତ୍ୱ ସହ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଆଇନ୍ ବ୍ୟବସାୟରେ ନରେନ୍ଦ୍ର ଜଣେ ଉଜ୍ଜ୍ୱଳ ତାରକା ହେବା ଲାଗି ପିତା ବିଶ୍ୱନାଥ ଦତ୍ତଙ୍କର ଉଚ୍ଚ ଅଭିଳାଷ ଥିଲା । କଲିକତାର ଖ୍ୟାତନାମା ଆଟର୍ଣ୍ଣି-ଏଟ୍-ଲ ନିମାଇଁ ଚନ୍ଦ୍ର ବସୁଙ୍କ ବ୍ୟବସାୟ ସଂସ୍ଥାରେ ନରେନ୍ଦ୍ରଙ୍କୁ ସେ ଜଣେ ଆର୍ଟିକ୍ଲିଡ୍ କ୍ଲର୍କ ଭାବରେ ପ୍ରବେଶ କରାଇ ଦେଲେ, ଇଚ୍ଛା ଥିଲା ଯେ ନରେନ୍ଦ୍ର ଭବିଷ୍ୟତରେ ଜଣେ ଆଟର୍ଣ୍ଣି ହୋଇପାରିବେ । ତତ୍ ସଙ୍ଗେସଙ୍ଗେ କଲିକତାର ପ୍ରସିଦ୍ଧ ମହାବିଦ୍ୟାଳୟ ମେଟ୍ରୋପଲିଟାନ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ତିନି ବର୍ଷୀୟ ଆଇନ୍ ପାଠ୍ୟକ୍ରମରେ ନାମ ମଧ୍ୟ ଲେଖାଇ ଦେଲେ ।

ବିଶ୍ୱନାଥଙ୍କର ଉଚ୍ଚାଭିଳାଷ ଏତିକିରେ ସମାପ୍ତ ହେଲାନାହିଁ । ପୁତ୍ର ନରେନ୍ଦ୍ରଙ୍କୁ ଇଂଲଣ୍ଡ ପଠାଇବାର ଇଚ୍ଛା ତାଙ୍କ ମନରେ ବଳବତ୍ତର ହେଲା । ସେଠାରେ ରହି ସେ ଆଇ.ସି.ଏସ୍. (ଇଣ୍ଡିଆନ ସିଭିଲ୍ ସର୍ଭିସ୍) ପରୀକ୍ଷା ପାଇଁ ପ୍ରସ୍ତୁତି କରିପାରିବେ । ସେଥିପାଇଁ ପ୍ରଚୁର ଅର୍ଥ ଆବଶ୍ୟକ । ତେଣୁ କଲିକତାର ଜଣେ ପ୍ରଭାବଶାଳୀ ଧନୀବ୍ୟକ୍ତିଙ୍କ ସହ ସେ କଥାବାର୍ତ୍ତା କଲେ । ନରେନ୍ଦ୍ରଙ୍କ ଭଳି ଜଣେ ଉଚ୍ଚ ଶିକ୍ଷିତ ଯୁବକର ଭବିଷ୍ୟତ ଉଜ୍ଜ୍ୱଳମୟ ଦେଖି ସେ ପ୍ରସ୍ତାବରେ ରାଜି ହେଲେ, କିନ୍ତୁ ଏହି ପ୍ରସ୍ତାବ ବିନିମୟରେ ତାଙ୍କର ସୁନ୍ଦରୀ କନ୍ୟାକୁ ନରେନ୍ଦ୍ର ବିବାହ କରିବେ ବୋଲି ଏକ ସର୍ତ୍ତ ମଧ୍ୟ ରଖିଲେ । ଯାହାହେଉ ବିଶ୍ୱନାଥ ବି ତାଙ୍କ ସର୍ତ୍ତରେ ରାଜିହେଲେ । ଉକ୍ତ ଧନୀକ କନ୍ୟାଙ୍କ ସହ ନରେନ୍ଦ୍ରଙ୍କୁ ବିବାହ କରିବାର ଆୟୋଜନରେ ସେ ଲାଗିପଡ଼ିଲେ ।

ନରେନ୍ଦ୍ରଙ୍କର ବିବାହ ପ୍ରସ୍ତାବ ଶ୍ରୀରାମକୃଷ୍ଣଙ୍କ କାନରେ ପଡ଼ିଲା । ସେ ବିବାହ ପ୍ରସ୍ତାବକୁ ଘୋର ବିରୋଧ କଲେ । ମା କାଳୀଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ସେ ଅଶ୍ରୁଳ ନୟନରେ କହିଲେ, ''ମା, କୌଣସି ବ୍ୟକ୍ତି କିମ୍ବା ପରିବାରର ପ୍ରେମ ପାଇଁ ନରେନ୍ଦ୍ରର ଜନ୍ମ ନୁହେଁ । ପରିବାର ଗଢ଼ିବା ତା'ର କାମ ନୁହେଁ । କୋଟି କୋଟି ଆତ୍ମାର ମୋକ୍ଷ ନିମନ୍ତେ ତା'ର ପୃଥିବୀପୃଷ୍ଠକୁ ଆଗମନ । ମା, ଏହି ବିବାହ ପ୍ରସ୍ତାବକୁ ଭଣ୍ଡୁର କରିଦିଅ । ନରେନ୍ଦ୍ର ମଧ୍ୟ ତଦ୍ରୂପ ନିଜର ବିବାହ

Digitized by srujanika@gmail.com

ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି କହିଥିଲେ, ''ଆପଣମାନେ କ'ଣ କରିବାକୁ ଯାଉଛନ୍ତି ? ମୋତେ କ'ଣ ସଂସାର ଭିତରେ ବୁଡାଇ ମାରିବେ ! ଯଦି ମୋତେ ବିବାହ କରିଦିଅନ୍ତି, ତେବେ ମୋ ସହ ସବୁକିଛିର ବିନାଶ ଘଟିବ ।'' ଜୀବନଯାକ ବ୍ରହ୍ମଚାରୀ ରହିବାର ସଂକଳ୍ପ ତାଙ୍କର ପର୍ବତ ସମାନ ଅଟଳ ଥିଲା । ସନ୍ନ୍ୟାସୀ ଜୀବନର ଗୌରବ ସେ ଭଲଭାବରେ ବାଲ୍ୟକାଳରୁ ହୃଦୟଙ୍ଗମ କରିଥିଲେ ।

ଅନେକ ସମୟରେ ସାଥୀମାନେ ତାଙ୍କୁ କହୁଥିଲେ, ''ନରେନ୍, ତୁମେ ଜଣେ ମେଧାବୀ ଛାତ୍ର, ଗୋଟିଏ ନିର୍ଦ୍ଦିଷ୍ଟ ଯୋଜନାରେ ତୁମେ ମନ କାହିଁକି ଦେଉନାହଁ, ସେଥିରୁ ତୁମେ ପ୍ରଚୁର ଅର୍ଥ ଉପାର୍ଜନ କରିପାରିବ ଏବଂ ବିଭା ହୋଇ ଘର ସଂସାର ଅନାୟାସରେ କରିପାରିବ ।'' ନରେନ୍ଦ୍ର କିନ୍ତୁ ନିଜର ସ୍ୱଭାବସୁଲଭ ଠାଣିରେ ସ୍କନ୍ଧ ହଲାଇ ସେମାନଙ୍କୁ କହୁଥିଲେ, ''ହଁ ରେ ଭାଇ ତୁମେ ସତ କଥା କହୁଛ । ମୁଁ ବି ତୁମମାନଙ୍କ ଭଳି ଭାବୁଥିଲି, ମୋର ଖ୍ୟାତି ହେବ, ଉଚ୍ଚ ପଦବୀରେ ଅବସ୍ଥାପିତ ହେବି, ଧନ ଓ କ୍ଷମତାର ଅଧିକାରୀ ହେବି । କିନ୍ତୁ କ୍ଷଣିକ ମୁହୂର୍ତ୍ତରେ ମୁଁ ଦେଖିବାକୁ ପାଇଲି ଯେ ଖ୍ୟାତି, ପଦବୀ, ଧନ, କ୍ଷମତା, ସୁନ୍ଦରୀ ପତ୍ନୀ, ସମ୍ପତ୍ତି ସବୁକିଛି ମୃତ୍ୟୁର କରାଳ ଗହ୍ୱରମଧ୍ୟରେ ପତିତ ହୋଇ ଭସ୍ମିଭୂତ ହୋଇଗଲେ । ଏହି ପ୍ରପଞ୍ଚ ସଂସାରରେ ସବୁକିଛି କ୍ଷଣସ୍ଥାୟୀ । ସନ୍ନ୍ୟାସୀ ଜୀବନ ହିଁ ବାସ୍ତବରେ ମହାନ୍, କାରଣ ମୃତ୍ୟୁମୁଖରୁ ଏହା ରକ୍ଷା କରିପାରେ ।''

ନରେନ୍ଦ୍ରଙ୍କ ମନର କଥାକୁ ସାଙ୍ଗମାନେ ଧରିପାରିଲେ ନାହିଁ, ବରଂ ତାଚ୍ଛଲ୍ୟ ମନ୍ତବ୍ୟ ଦେଲେ - ନରେନ୍ଦ୍ର ! ଦକ୍ଷିଣେଶ୍ୱରସ୍ଥ କାଳୀ ମନ୍ଦିରର ପାଗଳା ବ୍ରାହ୍ମଣର କୁହୁକ ଜାଲରେ ତୁମେ ପଡ଼ିଛ । ଶ୍ରୀରାମକୃଷ୍ଣ ସବୁବେଳେ ସମାଧିରେ ମଗ୍ନ ରହୁଛନ୍ତି ଏବଂ ଈଶ୍ୱରଙ୍କ ବିଷୟ ବ୍ୟତୀତ କିଛି କହୁ ନାହାନ୍ତି । ତୁମର ଭବିଷ୍ୟତ ସେ ନଷ୍ଟ କରିସାରିଲେଣି । ଏବେ ସମୟ ଅଛି, ଆଉ ତାଙ୍କ ପାଖକୁ ଯାଅନାହିଁ । ପଢ଼ାପଢ଼ିରେ ମନ ଦିଅ । ତୁମର ଉଜ୍ଜ୍ୱଳ ଭବିଷ୍ୟତ ତୁମ ହାତ ମୁଠାରେ ରହିଛି । ତୁମ ସାମର୍ଥ୍ୟ ଉପରେ ଆମର ବିଶ୍ୱାସ ଅଛି, ତୁମେ ଯାହା ଚାହିଁବ, ତାହା ତୁମେ ହୋଇପାରିବ, ଦୟାକରି ତୁମେ ଦକ୍ଷିଣେଶ୍ୱର ଆଉ ଯାଅନାହିଁ, ସେହି ପାଗଳା ବ୍ରାହ୍ମଣକୁ ବୁଝିବା ଭାରି କଷ୍ଟ ।

ନରେନ୍ଦ୍ର ଗୁରୁଗମ୍ଭୀର ସ୍ୱରରେ ସାଙ୍ଗମାନଙ୍କୁ କହିଲେ, ''ଦେଖ ଭାଇ, ତୁମେ ତାଙ୍କୁ ବୁଝିପାରିବ ନାହିଁ, ମୁଁ ତ ନିଜେ ତାଙ୍କୁ ବୁଝି ପାରୁନାହିଁ । କିନ୍ତୁ ମୁଁ ସେହି ବୁଢ଼ା ବ୍ରାହ୍ମଣଙ୍କୁ ଭାରି ଭଲପାଏ । ସେ ହିଁ ସନ୍ଥ, ଆଦର୍ଶ ପୁରୁଷ ଶ୍ରୀରାମକୃଷ୍ଣ ପରମହଂସ ।''

ନରେନ୍ଦ୍ରଙ୍କର ଅବିବାହିତ ରହିବାର ସଂକଳ୍ପ ଫଳପ୍ରଦ ହେଲା । ପରିବାରର ସମସ୍ତେ ତାଙ୍କର ଦୃଢ଼ ମନୋବଳ ସମ୍ବନ୍ଧରେ ସଚେତନ ଥିଲେ । ବିଧିର ବିଧାନକୁ କେହି ଟାଳି ପାରିବେ ନାହିଁ । ଶ୍ରୀରାମକୃଷ୍ଣ ଯେଉଁଥି ପାଇଁ ନରେନ୍ଦ୍ରଙ୍କୁ ଏହି ପୃଥିବୀକୁ ଆଣିଥିଲେ, ତାହାର ବିପରୀତ କାର୍ଯ୍ୟ କସ୍ମିନକାଳେ ସମ୍ଭବ ନୁହେଁ । ବର କନ୍ୟା ଦୁଇ ପକ୍ଷ ମଧ୍ୟରେ ସାମାନ୍ୟ ମାତ୍ର ମନମାଳିନ୍ୟ ଯୋଗୁଁ ବିବାହ ପ୍ରସ୍ତାବ ଭାଙ୍ଗିଗଲା । ନରେନ୍ଦ୍ର ଖୁସି ହେଲେ ।

Digitized by srujanika@gmail.com

କିନ୍ତୁ ଶ୍ରୀରାମକୃଷ୍ଣ ଦୌଡ଼ିଲେ ମା କାଳୀଙ୍କ ନିକଟକୁ । ବାହୁଦ୍ୱୟ ଉତ୍ତୋଳନ କରି ମା ମା ଡାକି ଶିଶୁଟିଏ ଭଳି ନୃତ୍ୟ କଲେ । ଶତ ସହସ୍ର କୃତଜ୍ଞତା ଅଜାଡ଼ି ଦେଲେ ମା କାଳୀଙ୍କ ଯୁଗଳ ପାଦପଦ୍ମରେ । ଆଉ ତାଙ୍କ ପାଖରୁ କେହି ନରେନ୍ଦ୍ରଙ୍କୁ ଛଡ଼ାଇ ନେଇପାରିବେ ନାହିଁ । ସ୍ୱାମୀ ବିବେକାନନ୍ଦ ହେବାର ରୂପାନ୍ତରଣ କାର୍ଯ୍ୟ ଅବାଧରେ ଚାଲିବ ଏଥିରେ କେହି ବାଧା ସୃଷ୍ଟି କରିପାରିବେ ନାହିଁ ।

- ୧ -

*ମାତା, ଭ୍ରାତା ଓ ଭଗ୍ନୀମାନଙ୍କର ଅସହାୟ ବିଳାପ ଓ ଉଚ୍ଚାଭିଳାଷୀ କର୍ମମୁଖର ପିତାଙ୍କର ମୃତଶରୀର ଲକ୍ଷ୍ୟକରି ତାଙ୍କର ପ୍ରାଣପକ୍ଷୀ ଦୁଃଖାଭିଭୂତ ହୋଇ ଘୁମୁରି ଉଠିଲା । ଏହି ଦୁଃଖଦ ପରିବେଶରେ ନା ସେ କାନ୍ଦି ପାରୁଥିଲେ, ନା ତାଙ୍କ ମୁଖରୁ ପଦେକଥା ସ୍ଫୁରଣ ହେଉଥିଲା । ସତେକି ସେ ସ୍ଥାଣୁ ଓ ଅଥର୍ବ ପାଲଟି ଯାଇଥିଲେ ।*

୧୮୮୪ ମସିହାର ପ୍ରଥମାର୍ଦ୍ଧ ନରେନ୍ଦ୍ରଙ୍କ ପାଇଁ ଥିଲା ଅଗ୍ନିପରୀକ୍ଷାର ସମୟ । ସଂସାରର ବାସ୍ତବ ନିଷ୍ଠୁର ରୂପ ସହ ସେ ମୁହାଁମୁହିଁ ହେଲେ । ନିଜଘରଠାରୁ ଦୁଇମାଇଲ ଦୂରରେ ଅବସ୍ଥିତ ବାରାନଗରଠାରେ ଏକ ସଙ୍ଗୀତ ସନ୍ଧ୍ୟା ତାଙ୍କ ବନ୍ଧୁମାନଙ୍କ ଦ୍ୱାରା ଆୟୋଜିତ ହୋଇଥିଲା । ନରେନ୍ଦ୍ର ଉକ୍ତ ସଙ୍ଗୀତ ଆସରରେ ଭଜନଟିଏ ଗାନ କରି, ସେଠାରେ ସାଙ୍ଗମାନଙ୍କ ଅନୁରୋଧ କ୍ରମେ ରାତ୍ରିଯାପନ କରୁଥିଲେ । ସେଦିନ ଥିଲା ଫେବୃୟାରୀ ୨୫ ତାରିଖ । ଠିକ୍ ରାତି ଦୁଇଘଟିକା ସମୟରେ ନରେନ୍ଦ୍ରଙ୍କର ବନ୍ଧୁ ହେମାଲି ସେଠାରେ ପହଞ୍ଚି ଏକ ନିଷ୍ଠୁର ଦୁଃସମ୍ବାଦ ଜଣାଇଲେ । ପିତା ବିଶ୍ୱନାଥ ଦତ୍ତଙ୍କର ହୃଦ୍‌କ୍ରିୟା ବନ୍ଦ ଯୋଗୁଁ ଦେହାନ୍ତ ହୋଇଛି ।

ଏହି ଦାରୁଣ ଦୁଃସମ୍ବାଦ ନରେନ୍ଦ୍ରଙ୍କର ମାନବୀୟ ଅସ୍ତିତ୍ୱକୁ ପ୍ରକମ୍ପିତ କଲା । ସେ ତତ୍‌କ୍ଷଣାତ୍ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ମାତା, ଭ୍ରାତା ଓ ଭଗ୍ନୀମାନଙ୍କର ଅସହାୟ ବିଳାପ ଓ ଉଚ୍ଚାଭିଳାଷୀ କର୍ମମୁଖର ପିତାଙ୍କର ମୃତଶରୀର ଲକ୍ଷ୍ୟକରି ତାଙ୍କର ପ୍ରାଣପକ୍ଷୀ ଦୁଃଖାଭିଭୂତ ହୋଇ ଘୁମୁରି ଉଠିଲା । ଏହି ଦୁଃଖଦ ପରିବେଶରେ ନା ସେ କାନ୍ଦି ପାରୁଥିଲେ, ନା ତାଙ୍କ ମୁଖରୁ ପଦେକଥା ସ୍ଫୁରଣ ହେଉଥିଲା । ସତେକି ସେ ସ୍ଥାଣୁ ଓ ଅଥର୍ବ ପାଲଟି ଯାଇଥିଲେ । ହିନ୍ଦୁ ଧର୍ମର ପ୍ରଥାନୁସାରେ, ପରିବାରର ଜ୍ୟେଷ୍ଠପୁତ୍ର ହୋଇଥିବାରୁ, ପିତାଙ୍କର ଶବସଂସ୍କାର ଓ ଶେଷକୃତ୍ୟ ସମ୍ପନ୍ନ କଲେ । ଶ୍ମଶାନ ଘାଟରେ ପିତାଙ୍କର ପାର୍ଥିବ ଶରୀର ଅଗ୍ନିର ଲେଲିହାନ ଶିଖାରେ ଦଗ୍ଧିଭୂତ ହେଉଥିବା ସମୟରେ ସଂସାରର ଅଳିକତାକୁ ସେ ନିଜ ଚକ୍ଷୁରେ ଖୁବ୍ ନିକଟରୁ ଜଳ ଜଳ ଦେଖୁଥିଲେ । ତାଙ୍କର ସମସ୍ତ ନୀରବତା ପ୍ରଜ୍ୱଳିତ ଅଗ୍ନିର ଧାପରେ ଭାଙ୍ଗି ଚୁର୍‌ମାର୍ ହୋଇଗଲା । ପିତାଙ୍କର ଅନାବିଳ ସ୍ନେହ, ପ୍ରେମ, ମମତା, ସାହସ, ଧୈର୍ଯ୍ୟ ଓ କର୍ତ୍ତବ୍ୟନିଷ୍ଠା ସ୍ମରଣକରି ପିତୃହୀନ ବାଳକ ନରେନ୍ଦ୍ର ଉଚ୍ଚ ସ୍ୱରରେ କ୍ରନ୍ଦନ କଲେ ।

Digitized by srujanika@gmail.com

ପିତାଙ୍କର ଅକସ୍ମାତ ଦେହାନ୍ତ ସମଗ୍ର ପରିବାରକୁ ନୈରାଶ୍ୟ ସାଗରରେ ବୁଡ଼ାଇ ଦେଲା । ସେ ଥିଲେ ପରିବାରର ଏକମାତ୍ର ଉପାର୍ଜନକ୍ଷମ ବ୍ୟକ୍ତି । ସବୁଠାରୁ ପରିତାପର ବିଷୟଯେ ସେ ଯେତିକି ଅର୍ଥ ଉପାର୍ଜନ କରୁଥିଲେ, ତାହାଠାରୁ ଅଧିକ ଅର୍ଥ ବ୍ୟୟ କରୁଥିଲେ । ଆଭିଜାତ୍ୟ ଜୀବନ ନିର୍ବାହହେତୁ ସେ ବହୁଅର୍ଥ କରଜ କରିଥିଲେ । ମୃତ୍ୟୁ ପରେ, ଟଙ୍କା ଆଦାୟ କରିବା ପାଇଁ ମହାଜନମାନେ ତାଙ୍କର ଘର ଦୁଆର ଖଟଖଟ୍ କଲେ । ସାତ ଆଠଜଣ କୁଟୁମ୍ବ । ଘର ଚଳାଇବା ପାଇଁ ଅର୍ଥ କେଉଁଠୁ ଆସିବ ? ଦାରିଦ୍ର୍ୟର କଳାବାଦଲ ସମଗ୍ର ପରିବାରକୁ ଆଚ୍ଛାଦିତ କଲା । ଯେଉଁ ପରିବାର ପ୍ରାଚୁର୍ଯ୍ୟ ଭିତରେ ରହି ଦୁଃଖ, କଷ୍ଟ କ'ଣ ଜାଣି ନ ଥିଲା, ଆଜି ସେହି ପରିବାର ପାଇଁ ଅନ୍ନ ମୁଠାଏ ବି ସ୍ୱପ୍ନ ହେଲା । ନରେନ୍ଦ୍ର ସେତେବେଳେ ଆଇନର ଛାତ୍ର । କଲେଜର ସହପାଠୀଙ୍କ ମଧ୍ୟରେ ସବୁଠାରୁ ଗରିବ ଛାତ୍ର ସେ ହୋଇଗଲେ । ପାଦରେ ଫଟା ଜୋତା, ପୋଷାକର ଅବସ୍ଥା ନ କହିଲେ ଭଲ । ବହୁ ସମୟରେ କଲେଜ ଅନାହାରରେ ଯାଉଥିଲେ । ଘରେ ବି ଅନେକ ସମୟରେ ଭୋଜନ କରୁ ନ ଥିଲେ । କାଳେ ଅନ୍ୟ ଭାଇ ଓ ଭଉଣୀଙ୍କ ଭାଗ କମିଯିବ । ମା' ଯେତେବେଳେ ତାଙ୍କୁ ଖାଇବାକୁ କହୁଥିଲେ, ସେତେବେଳେ ସେ ସାଙ୍ଗ ଘରେ ଖାଇ ଆସିଛନ୍ତି ବୋଲି କହୁଥିଲେ ।

ଭୋକ ଉପାସରେ ତାଙ୍କର ବଳିଷ୍ଠ ଶରୀର ଦୁର୍ବଳ ଓ କ୍ଷୀଣ ହୋଇଗଲା । ବେଳେବେଳେ ସେ ଦୁର୍ବଳତା ଯୋଗୁଁ ମୂର୍ଚ୍ଛିତ ହୋଇଯାଉଥିଲେ । ନରେନ୍ଦ୍ରଙ୍କର ଦାରିଦ୍ର୍ୟ ଅନ୍ୟସାଥିମାନଙ୍କୁ ବିଶେଷ ଭାବେ ଦୁଃଖାଭିଭୂତ କଲା । ସେମାନେ ଭୋଜନ ନିମନ୍ତେ ପରସ୍ପର ଗୃହକୁ ନରେନ୍ଦ୍ରଙ୍କୁ ନିମନ୍ତ୍ରିତ କରୁଥିଲେ । କିନ୍ତୁ ବନ୍ଧୁମାନଙ୍କ ସହ ବାର୍ତ୍ତାଳାପ ପରେ, ଯେତେବେଳେ ତାଙ୍କୁ ଭୋଜନ ନିମନ୍ତେ କୁହାଯାଉଥିଲା, ସେତେବେଳେ ନିଜ ମା, ଭାଇ ଓ ଭଉଣୀଙ୍କର କ୍ଷୁଧାର୍ତ୍ତ ମୁଖମଣ୍ଡଳ ତାଙ୍କର ମାନସାକାଶରେ ବିଜୁଳିପରାୟେ ଝଲକି ଉଠୁଥିଲା । ସେ ଭୋଜନ ପାଇଁ ନ ବସି, ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ବାହାନାରେ ବନ୍ଧୁମାନଙ୍କଠାରୁ କ୍ଷମା ମାଗି, ତତ୍‌କ୍ଷଣାତ୍ ସେମାନଙ୍କ ଗୃହରୁ ଚାଲି ଆସୁଥିଲେ ।

ଖାଦ୍ୟବସ୍ତ୍ରର ଅଭାବ ମଧ୍ୟରେ ସମ୍ପୂର୍ଣ୍ଣ ପରିବାର ତହଳବିକଳ ହେଉଥିବା ସମୟରେ, ବିଶ୍ୱନାଥ ଦତ୍ତଙ୍କ ଅନ୍ନରେ ପ୍ରତିପାଳିତ କେତେକ ଆତ୍ମୀୟସ୍ୱଜନ, ସେମାନଙ୍କ ଉପରେ ଦାଉ ସାଜିଲେ । ପୈତୃକ ସମ୍ପତ୍ତି ଭାଗବଣ୍ଟନ ଉପରେ ସେମାନେ ଅଦାଲତରେ ଏକ ମାମଲା ଦାୟର୍ କଲେ । ଏଠାରେ ଉଲ୍ଲେଖନୀୟ ଯେ ଏହି ସମ୍ପତ୍ତି କଳହ ବିଶ୍ୱନାଥଙ୍କର ଜୀବିତାବସ୍ଥାରେ ଆରମ୍ଭ ହୋଇଥିଲା, ଯାହାଫଳରେ ବିଶ୍ୱନାଥ ନିଜ ପୈତୃକ ଗୃହରୁ ବାହାରି ଆସି ପରବାର ସହ ଏକ ଭଡ଼ାଘରେ ରହୁଥିଲେ । ବର୍ତ୍ତମାନ ଏହି କଳହ ଉଗ୍ରରୂପ ଧାରଣ କଲା । ପରିସ୍ଥିତି ଏଭଳି ଅସମ୍ଭାଳ ହେଲାଯେ ନରେନ୍ଦ୍ର ମା, ଭାଇ ଓ ଭଉଣୀଙ୍କ ସହ କଲିକତାର ରାମତନୁ ବୋଷ ମାର୍ଗରେ ଅବସ୍ଥିତ ନିଜ ଆଈଙ୍କ ଘରେ ଆଶ୍ରୟ ନେଲେ । ଅଦାଲତରେ ମାମଲା ବହୁଦିନ ଗଡ଼ି ଚାଲିଲା । ଅବଶ୍ୟ ବିଶ୍ୱନାଥଙ୍କର ବନ୍ଧୁ ଖ୍ୟାତନାମା ଓକିଲ ଡବ୍ଲ୍ୟୁ.ସି. ବାନାର୍ଜି ଓ ନିମାଇଁ ଚନ୍ଦ୍ର ବସୁ ଏହି ମାମଲାରେ ନରେନ୍ଦ୍ରଙ୍କର ପରିବାର ତରଫରୁ କେସ୍ ଲଢ଼ିଥିଲେ ।

Digitized by srujanika@gmail.com

- ୨ -

*ଗରିବ, ଦୁର୍ବଳ, ନିଷ୍ପେଷିତ, ନିସ୍ୱ ଓ ଦରିଦ୍ର ଜନତାଙ୍କ ପାଇଁ ଏହି ସଂସାରରେ କୌଣସି ସ୍ଥାନ ନାହିଁ । କିଛିଦିନ ପୂର୍ବେ ଯେଉଁମାନେ ତାଙ୍କୁ କୌଣସି କ୍ଷେତ୍ରରେ ସାହାଯ୍ୟ କରି ନିଜକୁ ଗର୍ବ ମନେ କରୁଥିଲେ, ସେମାନେ ବର୍ତ୍ତମାନ ତାଙ୍କର ଏତାଦୃଶ ଅବସ୍ଥା ଲକ୍ଷ୍ୟ କରି ମୁହଁ ବୁଲାଇ ନେଲେ । ସମଗ୍ର ସଂସାର ଏକ ସୈତାନର ଖେଳଘର ସଦୃଶ ତାଙ୍କ ଆଖିରେ ନାଚି ଉଠିଲା ।*

ଯୁବକ ନରେନ୍ଦ୍ର ଦତ୍ତ, ଆଭିଜାତ୍ୟ ଓ ପ୍ରାଚୁର୍ଯ୍ୟଶାଳୀ ପରିବାରରେ ଜନ୍ମ ଏବଂ ପ୍ରତିପାଳିତ । ତଥାପି ଉତ୍କଟ ଦାରିଦ୍ର୍ୟ କଷାଘାତରେ ସେ ନିଜର ଆତ୍ମବିଶ୍ୱାସ, ସାହସ ଓ ଧୈର୍ଯ୍ୟ ହରାଇ ନ ଥିଲେ । ଜୀବନକୁ ଏକ ସଂଗ୍ରାମ ଓ ସଂଘର୍ଷ ଭାବେ ଗ୍ରହଣ କରିବା ପାଇଁ ଦାରିଦ୍ର୍ୟ ତାଙ୍କୁ ଏକ ସୁଯୋଗ ଦେଇଛି ବୋଲି ସେ ଭାବୁଥିଲେ । ତଥାପି ବେଳେବେଳେ ସେ ଅତ୍ୟନ୍ତ ଅଧର୍ଯ୍ୟ ବି ହୋଇ ପଡୁଥିଲେ । ପିତାଙ୍କ ଦେହାନ୍ତ ପରେ ସେ ଖାଲି ପାଦରେ, କଲିକତାର ଗଳି, ଉପଗଳି ବୁଲୁଥିଲେ । ପେଟରେ ଭୋକ, ହାତରେ ଖଣ୍ଡିଏ ଚାକିରି ପାଇଁ ଦରଖାସ୍ତ, ଦାରୁଣ ଦ୍ୱିପ୍ରହର ଖରାରେ, ସେ କେତେ ଅଫିସ୍ ନ ବୁଲିଛନ୍ତି ! କିନ୍ତୁ ସବୁଠାରେ ତାଙ୍କ ପାଇଁ ଅଫିସର ଦ୍ୱାର ବନ୍ଦ ଥିଲା । କେହି ଜଣେ ଆଶ୍ୱାସନାର ବାଣୀ ତାଙ୍କୁ ଶୁଣାଇ ନାହାନ୍ତି । ଜୀବନର ଏହି ନିଷ୍ଠୁର ବାସ୍ତବରୂପକୁ ନିଜେ ଅଙ୍ଗେ ନିଭାଇ ସେ ନିଶ୍ଚିତ ହୋଇଥିଲେ ଯେ ସମଗ୍ର ସଂସାରରେ ନିଃସ୍ୱାର୍ଥପର ଅନୁକମ୍ପା ବିରଳ ।

ଗରିବ, ଦୁର୍ବଳ, ନିଷ୍ପେଷିତ, ନିସ୍ୱ ଓ ଦରିଦ୍ର ଜନତାଙ୍କ ପାଇଁ ଏହି ସଂସାରରେ କୌଣସି ସ୍ଥାନ ନାହିଁ । କିଛିଦିନ ପୂର୍ବେ ଯେଉଁମାନେ ତାଙ୍କୁ କୌଣସି କ୍ଷେତ୍ରରେ ସାହାଯ୍ୟ କରି ନିଜକୁ ଗର୍ବ ମନେ କରୁଥିଲେ, ସେମାନେ ବର୍ତ୍ତମାନ ତାଙ୍କର ଏତାଦୃଶ ଅବସ୍ଥା ଲକ୍ଷ୍ୟ କରି ମୁହଁ ବୁଲାଇ ନେଲେ । ସମଗ୍ର ସଂସାର ଏକ ସୈତାନର ଖେଳଘର ସଦୃଶ ତାଙ୍କ ଆଖିରେ ନାଚି ଉଠିଲା । ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ସେହି କେଇପଦ କଥା ତାଙ୍କ ମନକୁ ହଠାତ୍ କବାଟରେ ଡାକି ଦେଲା - "ଯଦି ଈଶ୍ୱର କୃପାଳୁ ଓ ଶୁଭଦାୟକ, ତେବେ କୋଟି କୋଟି ଜନତା ଦୁର୍ଭିକ୍ଷ ବେଳେ ମୁଠାଏ ଅନ୍ନ ପାଇଁ ଆର୍ତ୍ତନାଦ କରୁଛନ୍ତି କାହିଁକି ? ବାରମ୍ବାର ଏହି କେଇପଦ କଥା ତାଙ୍କ କର୍ଣ୍ଣଗହ୍ୱରରେ ପ୍ରତିଧ୍ୱନି ଛଳରେ ଗର୍ଜି ଉଠୁଥିଲା "ଈଶ୍ୱର ନାହାନ୍ତି... ଈଶ୍ୱର ନାହାନ୍ତି ।"

ଚାକିରି ନ ମିଳିବାର ବ୍ୟର୍ଥ ଭାବନା, ମାତା, ଭ୍ରାତା, ଭଗ୍ନୀଙ୍କର ଓଳିଏ ପେଟପୂରା ଖାଇବାର ଅସମର୍ଥତା, ଅଦାଲତର ଖର୍ଚ୍ଚ ବହନ କରିବାର ବିଫଳତା ସତ୍ତ୍ୱେ ନିଜ ଭିତରେ ରହିଥିବା ପ୍ରଚଣ୍ଡ ଈଶ୍ୱର ବିଶ୍ୱାସକୁ ନରେନ୍ଦ୍ର କେବେ ହରାଇ ନଥିଲେ । ସକାଳୁ ଈଶ୍ୱରଙ୍କର ନାମ ସ୍ମରଣ କରି ସେ ପ୍ରତିଦିନ ଚାକିରି ଅନ୍ୱେଷଣରେ କଲିକତା ନଗରୀରେ ଘୂରି ବୁଲୁ ଥିଲେ । ନରେନ୍ଦ୍ରଙ୍କର ଈଶ୍ୱର ବିଶ୍ୱାସ ପ୍ରତି ତାଚ୍ଛଲ୍ୟ କରି ଦିନେ ମାତା ଭୁବନେଶ୍ୱରୀ ଦେବୀ କହିଲେ,

Digitized by srujanika@gmail.com

''ଆରେ ନିର୍ବୋଧ, ପିଲାଟି ଦିନରୁ ଭଗବାନ ଭଗବାନ ହେଉଛୁ, ଭଗବାନ ତୋ ପାଇଁ କ'ଣ କରିଛନ୍ତି ?'' ମାତାଙ୍କର ଭର୍ତ୍ସନା ନରେନ୍ଦ୍ରଙ୍କର ଈଶ୍ୱର ବିଶ୍ୱାସୀ ମନକୁ ଚହଲାଇ ଦେଲା କିୟତକ୍ଷଣ । ସେ ଚିନ୍ତିତ ହୋଇ କହିବାକୁ ଲାଗିଲେ, ''ସତରେ କ'ଣ ଈଶ୍ୱର ଅଛନ୍ତି ? ଯଦି ତାଙ୍କର ଅସ୍ତିତ୍ୱ ଅଛି, ସେ କ'ଣ ମଣିଷ ଅନ୍ତରର ପ୍ରାର୍ଥନା ଶୁଣନ୍ତି ? ତେବେ କାହିଁକି ସେ ମୋର ଆନ୍ତରିକ ପ୍ରାର୍ଥନା ଶୁଣୁ ନାହାନ୍ତି ? ତାଙ୍କର ଶୁଭଙ୍କରୀ ସଂସାରରେ କାହିଁକି ଏତେ ଦୁଃଖ କଷ୍ଟ ? କୃପାମୟ ଈଶ୍ୱରଙ୍କ ରାଜ୍ୟରେ ସୈତାନ କାହିଁକି ରାଜତ୍ୱ କରୁଛି ?'' ଏହିସବୁ ପ୍ରଶ୍ନ ସତ୍ତ୍ୱେ ସେ ମନରୁ ଈଶ୍ୱରଙ୍କୁ କାଢ଼ି ଫିଙ୍ଗି ଦେଇପାରୁ ନ ଥିଲେ ।

ନରେନ୍ଦ୍ରଙ୍କର କେତେଜଣ ପୁରାତନ ବନ୍ଧୁ, ଯେଉଁମାନେ ଅସାଧୁ ଉପାୟ ଅବଲମ୍ବନ କରି, ନିଜର ଜୀବିକା ବେଶ୍ ସ୍ୱଚ୍ଛଳତା ସହ ନିର୍ବାହ କରୁଥିଲେ, ସେମାନେ ନରେନ୍ଦ୍ରଙ୍କର ଆର୍ଥିକ ଅଭାବ ଅନାଟନରେ ବିଚଳିତ ହୋଇ ସେମାନଙ୍କ ଅନୈତିକ କାର୍ଯ୍ୟରେ ଯୋଗ ଦେବା ନିମନ୍ତେ ତାଙ୍କୁ ପ୍ରଲୋଭିତ କଲେ । ସେମାନେ ଭାବି ଥିଲେ ଯେ ନରେନ୍ଦ୍ର ଯଦି ସେମାନଙ୍କ ପରି କାର୍ଯ୍ୟ କରିବେ, ସେ ନିଶ୍ଚିତ ରାତାରାତି ଧନୀ ହୋଇପାରିବେ । ସେମାନଙ୍କ ସହାୟତାର ମନୋଭାବ ଅବଶ୍ୟ ନରେନ୍ଦ୍ରଙ୍କର ଅର୍ଥାଭାବକୁ ଦୂର କରିବା ନିମନ୍ତେ ସୀମିତ ଥିଲା, କିନ୍ତୁ ନରେନ୍ଦ୍ର ଯେ ସେମାନଙ୍କ ଭଳି ବ୍ୟକ୍ତିତ୍ୱ ନୁହେଁ, ତାହା ସେମାନେ ଚିହ୍ନି ପାରି ନ ଥିଲେ । ଏତାଦୃଶ ଅନୁକମ୍ପାମୂଳକ ମନୋଭାବ ପାଇଁ ନରେନ୍ଦ୍ର ସେମାନଙ୍କୁ ଧନ୍ୟବାଦ ଦେଲେ, କିନ୍ତୁ ସେଭଳି ଅନୈତିକ କାର୍ଯ୍ୟରେ ନିଜକୁ ବଳି ଦେଇପାରିବେ ନାହିଁ ବୋଲି ରୋକ୍‌ଠୋକ୍ ମନା କରିଦେଲେ । ଦୁଃଖ ଦୁର୍ଦ୍ଦଶା ଭିତରେ ଘାଣ୍ଟି ହେଉଥିବା ସମୟରେ ପ୍ରତ୍ୟେକ ମଣିଷ ଜୀବନରେ ପ୍ରଲୋଭନ ଦେଖା ଦେଇଥାଏ, କିନ୍ତୁ ବିବେକୀ ମଣିଷ ତାହା ତୃଣବତ୍ ତ୍ୟାଗ କରି ନିଜର ଲକ୍ଷ୍ୟ ପଥରୁ କେବେ ବିଚ୍ୟୁତ ହୁଏନାହିଁ । ନରେନ୍ଦ୍ରଙ୍କୁ ଏଭଳି ଏକ ପ୍ରଲୋଭନର ଏକଦା ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ଏକଦା ଜଣେ ରୂପସୀ ନାରୀ ନରେନ୍ଦ୍ରଙ୍କର ଆର୍ଥିକ ପରିସ୍ଥିତିର ସୁଧାର ନିମନ୍ତେ ଏକ କୁତ୍ସିତ ପ୍ରସ୍ତାବ ଦେଇଥିଲେ । କିନ୍ତୁ ନରେନ୍ଦ୍ର ପ୍ରସ୍ତାବଟିକୁ ପ୍ରତ୍ୟାଖ୍ୟାନ କରି ରୂପସୀ ନାରୀଙ୍କୁ କଠୋର ଭାଷାରେ କହିଥିଲେ, ''ଦେବୀ, ନିଜର ରକ୍ତ ମାଂସ ଶରୀରକୁ ଉପଭୋଗ କରି ତୁମର ମୂଲ୍ୟବାନ ଜୀବନ ନଷ୍ଟ କରିସାରିଲଣି । ମୃତ୍ୟୁର କରାଳ ଛାୟା ତୁମ ସମ୍ମୁଖରେ ଦଣ୍ଡାୟମାନ । ତା'ର ସମ୍ମୁଖୀନ ହେବାପାଇଁ ତୁମେ କିଛି କରିଛ କି ? ଏଭଳି ନୀଚ ମନୋବୃତ୍ତି ମନରୁ ତ୍ୟାଗ କର । ଭଗବାନଙ୍କର ଶରଣାପନ୍ନ ହୁଅ ।'' ଏହି ଦୁଃଖଦ ପରିସ୍ଥିତିରେ, ଚାକିରି ଅନ୍ୱେଷଣ ତାଙ୍କର ଏକ ମୁଖ୍ୟକାର୍ଯ୍ୟ ହୋଇଥିଲେ ବି, ଅସାଧୁ ଓ ଅନୈତିକ ପଥ ଅବଲମ୍ବନ କରିବା ମାନସିକତାର ସେ ଶିକାର ହୋଇ ନ ଥିଲେ । କେତେକ ବନ୍ଧୁ ଏହି ବିଷମ ପରିସ୍ଥିତିରେ ତାଙ୍କୁ ଭୁଲ ବୁଝିଛନ୍ତି, କିନ୍ତୁ ନରେନ୍ଦ୍ର ଖାଣ୍ଟି ସୁନା ଭଳି ବାରମ୍ବାର ଜ୍ୱଳନ୍ତ ଅଗ୍ନିରେ ପତିତ ହୋଇ ବି, ବିଶୁଦ୍ଧ ଦୀପ୍ତିମନ୍ତ ଜ୍ୟୋତିରେ ଉଦ୍‌ଭାସିତ ହୋଇଥିଲେ ।

ଅନ୍ୟ ପକ୍ଷରେ, ଶ୍ରୀରାମକୃଷ୍ଣ ପରମହଂସଙ୍କ ନିକଟରେ ନରେନ୍ଦ୍ରଙ୍କର ଦୁଃଖଦ ଅଗ୍ନି ପରୀକ୍ଷା ସମ୍ବନ୍ଧିତ ସମସ୍ତ ଖବର ପହଞ୍ଚୁଥିଲା, କିନ୍ତୁ ଚରିତ୍ର ସଂହାର ଜନିତ ଖବରଗୁଡ଼ିକୁ ସେ ଆଦୌ

Digitized by srujanika@gmail.com

ବିଶ୍ୱାସ ନ କରି ଉପେକ୍ଷା କରି ଦେଉଥିଲେ । ଶ୍ରୀରାମକୃଷ୍ଣଙ୍କର ଜଣେ ଅନ୍ତରଙ୍ଗ ଭକ୍ତ ଭବନାଥ ନରେନ୍ଦ୍ରଙ୍କର ଚରିତ୍ର ଉପରେ ଏକଦା ସଂଶୟ ପ୍ରକାଶ କଲେ । ଶ୍ରୀରାମକୃଷ୍ଣ ଅତ୍ୟନ୍ତ ବିରକ୍ତି ପ୍ରକାଶ କରି ତାଙ୍କୁ କଠୋର ଶବ୍ଦରେ କହିଥିଲେ, "ଆରେ ବୋକା, ଏହିସବୁ ବାଜେକଥା କହନାହିଁ । ନରେନ୍ଦ୍ର ବିଷୟରେ ଏହିସବୁ ଆରୋପ ଆଦୌ ସତ୍ୟ ନୁହେଁ ବୋଲି ମା ମୋତେ କହିଛନ୍ତି । ତୁମେ ଯଦି ନରେନ୍ଦ୍ରଙ୍କ ବିଷୟରେ ଏଭଳି ମିଥ୍ୟା କଥା କହିବ, ତୁମର ମୁହଁ ମୁଁ ଚାହିଁବି ନାହିଁ ।" ନରେନ୍ଦ୍ରଙ୍କ ପ୍ରତି ତାଙ୍କର କିଭଳି ଅଟଳ ବିଶ୍ୱାସ ଥିଲା, ତାହା ଏହି କେଇପଦ ମନ୍ତବ୍ୟରୁ ଜାଣିହେବ ।

- ୩ -

*ଚିନ୍ତାରାଶିର ଉଦ୍‌ଫଣ ଢେଉ ଢେଉକା ପ୍ରଖର ସ୍ରୋତରେ ସେ ଭାସମାନ ଥିବା ସମୟରେ, ନିଜ ଆତ୍ମାକୁ ଆବୃତ କରିଥିବା ପରଳଗୁଡ଼ିକୁ ସତେକି ଏକ ଐଶ୍ୱରିକ ଶକ୍ତି ଗୋଟିକ ପରେ ଗୋଟିଏ ଅନାବୃତ କରି ଦେଉଛନ୍ତି । ମଙ୍ଗଳମୟ ପରମସତ୍ତାଙ୍କ ସୃଷ୍ଟିରେ ଉଭୟ ଐଶ୍ୱରିକ ନ୍ୟାୟ ଓ କୃପା ଏବଂ ଦୁଃଖ ଓ ବେଦନାର ସହାବସ୍ଥାନ ସମ୍ବନ୍ଧିତ ତାଙ୍କର ଅନେକ ସଂଶୟ ସମାଧାନ ହୋଇଗଲା ।*

ଇତ୍ୟବସରରେ ଗ୍ରୀଷ୍ମକାଳ ପୃଥିବୀ ପୃଷ୍ଠରୁ ବିଦାୟ ନେଲା । ବର୍ଷାକାଳ ଉପସ୍ଥିତ । ତଥାପି ନରେନ୍ଦ୍ରଙ୍କର ଅର୍ଥ ଉପାର୍ଜନ କରିବାର ଅନ୍ୱେଷଣର ଅନ୍ତ ହେଲାନାହିଁ । ଅବଶ୍ୟ କଲିକତାର ମେଟ୍ରୋପଲିଟାନ ଇନ୍‌ଷ୍ଟିଚ୍ୟୁଟରେ ପ୍ରଧାନ ଶିକ୍ଷକ ପଦବୀ ମିଳିଥିଲା, କିନ୍ତୁ କେତେ ମାସ ସେଠାରେ କାର୍ଯ୍ୟ କଲାପରେ ତାଙ୍କୁ ଭଲ ଲାଗିଲା ନାହିଁ, ପ୍ରଧାନ ଶିକ୍ଷକ ପଦବୀ ତ୍ୟାଗ କଲେ । ଯେତିକି ଦରମା ସ୍କୁଲରୁ ପାଉଥିଲେ, ତାହା ଘର ଚଳାଇବା ପାଇଁ ଯଥେଷ୍ଟ ନ ଥିଲା । ଢୋ ଢୋ ବର୍ଷାରେ ପୁଣି ଚାକିରିଟିଏ ପାଇଁ କଲିକତାର ଗଳି କନ୍ଦି ବୁଲିଲେ ।

ଏତାଦୃଶ ଅସରନ୍ତି ସଂଘର୍ଷ ମଧ୍ୟରେ ଏକ ଅଦ୍ଭୁତ ଘଟଣା ଘଟିଲା । ଘୋର ବର୍ଷାରେ ସବୁଦିନ ଭଳି ଏକଦା ଚାକିରିଟିଏ ଖୋଜୁ ଖୋଜୁ ଦିନଟି ସରିଗଲା । ନରେନ୍ଦ୍ରଙ୍କୁ ସେଦିନ ଖାଇବାକୁ ଗଣ୍ଡିଏ ମିଳିଲା ନାହିଁ । ବର୍ଷାରେ ଏ ପିଣ୍ଡାରୁ ସେ ପିଣ୍ଡା ହୋଇ ଚାକିରି ଖୋଜିବାରେ ଥିଲେ ମଗ୍ନ । ଏତେ ବଡ଼ ସହର । ଚିହ୍ନା ଓ ଅଚିହ୍ନା ମୁହଁଗୁଡ଼ିକରେ ନରେନ୍ଦ୍ର ଦେଖିବାକୁ ପାଇଲେ ନାହିଁ ସହାୟତାର ଚିହ୍ନ । ସେ କ୍ଷୁଧାର୍ତ୍ତ ଓ କ୍ଳାନ୍ତ । ନୈରାଶ୍ୟର ପାହାଡ଼ ମୁଣ୍ଡେଇ ସେ ଘରକୁ ଫେରିଲେ । ହାତ, ଗୋଡ଼ ଓ ସର୍ବାଙ୍ଗ ଶରୀରରେ ସତେକି ପ୍ରାଣର ସ୍ପନ୍ଦନ ନାହିଁ । ଅତ୍ୟଧିକ ଦୁର୍ବଳତା ଯୋଗୁଁ, ସେ ନିଜ ଘର ଦୁଆର ପାହାଚ ଚଢ଼ି ପାରିଲେ ନାହିଁ । ଦ୍ୱାର ନିକଟସ୍ଥ ରାସ୍ତା ପାର୍ଶ୍ୱରେ ସେ ଟଳି ପଡ଼ିଲେ ।

Digitized by srujanika@gmail.com

ସନ୍ଧ୍ୟା ନଇଁ ଆସିଥିଲା । କିୟଦ୍ ସମୟ ବୋଧହୁଏ ସେ ଚେତାଶୂନ୍ୟ ହୋଇପଡ଼ିଲେ, ଚେତା ଫେରିବାରୁ ନରେନ୍ଦ୍ର ଉପଲବ୍ଧି କଲେ ଯେ ତାଙ୍କର ମନ ବିଭିନ୍ନ ପ୍ରକାର ଚିନ୍ତାରେ ପରିପୂର୍ଣ୍ଣ । ଚିନ୍ତାଗୁଡ଼ିକ ଢେଉ ଭଳି ପରସ୍ପର ସହ ଧକ୍କା ଖାଉଛନ୍ତି । ଗୋଟିଏ ଚିନ୍ତାରେ ମନକୁ ଏକାଗ୍ର କରିବା ପାଇଁ ଚେଷ୍ଟା କଲେ, କିନ୍ତୁ ସେ ଏଭଳି ଦୁର୍ବଳ ଓ କ୍ଷୀଣ ହୋଇଯାଇଥିଲେ ଯେ ଚିନ୍ତାର ଢେଉ ପରେ ଢେଉକୁ ପ୍ରତିରୋଧ କରିପାରିଲେ ନାହିଁ । ଚିନ୍ତାରାଶିର ଉତ୍ଫଣ ଢେଉ ଢେଉକା ପ୍ରଖର ସ୍ରୋତରେ ସେ ଭାସମାନ ଥିବା ସମୟରେ, ନିଜ ଆତ୍ମାକୁ ଆବୃତ କରିଥିବା ପରଳଗୁଡ଼ିକୁ ସତେକି ଏକ ଐଶ୍ୱରିକ ଶକ୍ତି ଗୋଟିକ ପରେ ଗୋଟିଏ ଅନାବୃତ କରି ଦେଉଛନ୍ତି । ମଙ୍ଗଳମୟ ପରମସତ୍ତାଙ୍କ ସୃଷ୍ଟିରେ ଉଭୟ ଐଶ୍ୱରିକ ନ୍ୟାୟ ଓ କୃପା ଏବଂ ଦୁଃଖ ଓ ବେଦନାର ସହାବସ୍ଥାନ ସମ୍ବନ୍ଧିତ ତାଙ୍କର ଅନେକ ସଂଶୟ ସମାଧାନ ହୋଇଗଲା । ଗଭୀର ଆତ୍ମ-ନିରୀକ୍ଷା ଦ୍ୱାରା ସେ ଏହାର ଅର୍ଥ ଜାଣିପାରିଲେ ଏବଂ ଆତ୍ମ-ସନ୍ତୋଷ ଲାଭ କଲେ । ଏହି ଦିବ୍ୟାନୁଭୂତି ଫଳରେ ସେ ଦେହ ଓ ମନରେ କୌଣସି କ୍ଳାନ୍ତି ଅନୁଭବ କଲେ ନାହିଁ ବରଂ ମନ ଶକ୍ତି ଓ ଶାନ୍ତିରେ ସତେଜ ହୋଇଉଠିଲା । ସେ ନିଜ କୋଠରିକୁ ପ୍ରତ୍ୟାବର୍ତ୍ତନ କଲେ ।

ଏହି ସଂସାରରେ ସାଧାରଣ ମଣିଷ ଭଳି ଘର, ସଂସାର ଓ ଅର୍ଥ ଉପାର୍ଜନ କରିବା ଲାଗି ତାଙ୍କର ଜନ୍ମ ନୁହେଁ ବୋଲି ସେ ଅନୁଭବ କଲେ । ନିଜର ପିତାମହଙ୍କ ସମ ସଂସାର ତ୍ୟାଗକରି ସନ୍ନ୍ୟାସୀ ହେବାର ପ୍ରଚଣ୍ଡ ଇଚ୍ଛା ତାଙ୍କ ଭିତରେ ଉଦ୍ରେକ ହେଲା । କେବଳ ଭାରତୀୟ ନୁହେଁ ବିଶ୍ୱର ସମଗ୍ର ମାନବଜାତିର ଦୁଃଖର ମୂଳ କାରଣକୁ ଠାବକରି ଏକ ସହଜ ଓ ସରଳ ଉପାୟ ବାହାର କରିବା ପାଇଁ ତାଙ୍କ ମନ ବ୍ୟାକୁଳିତ ହେଲା । ବିଶ୍ୱରେ ଅନେକ ଦର୍ଶନ ଓ ସିଦ୍ଧାନ୍ତ ରହିଛି । ଧାର୍ମିକ ଗୁରୁ ଓ ଦାର୍ଶନିକମାନେ ମନୁଷ୍ୟର ଦୁଃଖ କଷ୍ଟର ଅନ୍ତ ପାଇଁ ଭୌତିକ ଓ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଅନେକ ପଥ ଅବଶ୍ୟ ଆବିଷ୍କାର କରିଛନ୍ତି । ନରେନ୍ଦ୍ର ଉଭୟ ଦୃଷ୍ଟିକୋଣକୁ ସମାନଭାବେ ଗ୍ରହଣ କରିଛନ୍ତି କିନ୍ତୁ ଆଧ୍ୟାତ୍ମିକ ଦୃଷ୍ଟିକୋଣ ବାସ୍ତବିକାଭିମୁଖୀ ହେଲେ ମନୁଷ୍ୟ ଦୁଃଖ ଓ ବେଦନାରୁ ମୁକ୍ତି ପାଇପାରିବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା ।

ଏଠାରେ ଉଲ୍ଲେଖନୀୟ ଘଟଣା ଯେ କଲିକତାର ଏହି ଅନାମଧେୟ ବାଳକ ସମଗ୍ର ମାନବଜାତିର ମୁକ୍ତିର ପଥ ପୁନଃ ଆବିଷ୍କାର କରିବା ପ୍ରକ୍ରିୟାରେ ନିଜକୁ ପ୍ରସ୍ତୁତ କରୁଥିବା ସମୟରେ ଆଧୁନିକ ଯୁଗର ପ୍ରାଣକେନ୍ଦ୍ର ଲଣ୍ଡନଠାରେ ଅନ୍ୟ ଏକ ମହାମାନବ ଋଷିପ୍ରତୀମ ଦାର୍ଶନିକ କାର୍ଲମାର୍କ୍ସ ସମଗ୍ର ମାନବଜାତିର ମୁକ୍ତି ନିମନ୍ତେ ଶ୍ରେଣୀ ସଂଘର୍ଷର ସିଦ୍ଧାନ୍ତ 'କମ୍ୟୁନିଷ୍ଟ ଇସ୍ତାହାର'ରେ ବର୍ଣ୍ଣନା କରି ୧୮୮୩ ମସିହାରେ ଇହଲୀଳା ସମ୍ବରଣ କରିସାରିଥାନ୍ତି । ସର୍ବହରା ଶ୍ରେଣୀର ବିପ୍ଳବୀ ଚରିତ୍ର କିପରି ହେବା ଆବଶ୍ୟକ, ତାହା ସେ ବର୍ଣ୍ଣନା କରିଛନ୍ତି ଏହି ଇସ୍ତାହାରରେ । ସେ ନିଜର ବସ୍ତୁବାଦୀ ଦର୍ଶନରେ ପୁଞ୍ଜିବାଦ ଦର୍ଶନ, ରାଜନୀତି, ସମାଜ, ଧର୍ମ ଆଦି ଯେଉଁସବୁ ତତ୍ତ୍ୱ ଶୋଷଣ ପ୍ରକ୍ରିୟା ସପକ୍ଷରେ ଜନସାଧାରଣକୁ ଆଚ୍ଛାଦିତ କରି ରଖିଛନ୍ତି, ସେସବୁ ବିରୋଧରେ ଆପୋଷହୀନ ଲଢ଼ାଇ କରିବା ପାଇଁ ସର୍ବହରା ଜନତାକୁ ସେ ପଥ ପ୍ରଦର୍ଶନ କରିଛନ୍ତି । ସମାଜବାଦ ମାଧ୍ୟମରେ ମନୁଷ୍ୟ ସମସ୍ତ ପ୍ରକାର ଦୁଃଖ ନିର୍ଯ୍ୟାତନାରୁ ମୁକ୍ତି ଲଭିବ ବୋଲି ସେ ଦୃଢ଼ ମତ ପୋଷଣ

Digitized by srujanika@gmail.com

କରିଥିଲେ । ମାର୍କ୍ସଙ୍କ ଜୀବନ ଅତ୍ୟନ୍ତ ଦାରିଦ୍ର୍ୟ ଭିତରେ କଟିଥିଲା । ସେ ଦୁଇଓଳି ଖାଇବାକୁ ପାଉ ନ ଥିଲେ । ଚରମ ଦାରିଦ୍ର୍ୟ ଯୋଗୁଁ ତାଙ୍କର କେତେକ ସନ୍ତାନ ମୃତ୍ୟୁବରଣ କରିଥିଲେ । ଏହି ମହାଜ୍ଞାନୀ କିନ୍ତୁ ପୁଞ୍ଜିବାଦ ସଂମୁଖରେ ଆତ୍ମ-ସମର୍ପଣ କରି ନ ଥିଲେ, ଯେଉଁଥିପାଇଁ ତାଙ୍କ କଲମ ମୁନରୁ ଝରି ପଡ଼ିଥିଲା ଦାରିଦ୍ର୍ୟରୁ ସମସ୍ତ ମାନବଜାତିର ମୁକ୍ତି ନିମନ୍ତେ ସଂଗ୍ରାମର ବହ୍ନି ।

ମନୁଷ୍ୟର ଭୌତିକ ଦୁଃଖ ନିର୍ଯ୍ୟାତନା ଦାରିଦ୍ର୍ୟରୁ ସୃଷ୍ଟ ବୋଲି ନରେନ୍ଦ୍ର ଉପଲବ୍ଧି କରିଥିଲେ ବି ଭୌତିକ ଜଗତର ଉର୍ଦ୍ଧ୍ୱରେ ଏକ ମହାଚେତନା ରହିଛି, ଯାହାକୁ ମଣିଷ ଚିହ୍ନି ପାରିଲେ, ତାହାର ସମସ୍ତ ଦୁଃଖ କଷ୍ଟର ସମାପ୍ତି ଘଟିବ, ଏହି ବିଶ୍ୱାସ ଅଭିମୁଖେ ନରେନ୍ଦ୍ରଙ୍କର ମନ ସଦା ଧାବିତ ହେଉଥିଲା । ସନ୍ନ୍ୟାସ ନେବାର ଅଭିଳାଷ ଏଭଳି ତୀବ୍ରଗାମୀ ହେଲା ଯେ ନରେନ୍ଦ୍ର ମୁହୂର୍ତ୍ତମାତ୍ର ବିଳମ୍ବ ନ କରି ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବା ଲାଗି ଉଚ୍ଛନ୍ନ ହେଲେ । ଏହିଭଳି ଭାବନାରେ ସେ ମଜ୍ଜି ଥିଲାବେଳେ, ଶ୍ରୀରାମକୃଷ୍ଣଙ୍କର କଲିକତା ଆଗମନର ସମ୍ବାଦ ତାଙ୍କ ପାଖରେ ପହଞ୍ଚିଲା । ଶ୍ରୀରାମକୃଷ୍ଣଙ୍କୁ ଗୁରୁଭାବେ ବରଣକରି ସେ ସନ୍ନ୍ୟାସ ଗ୍ରହଣ କରିବାର ସିଦ୍ଧାନ୍ତ ସେ ସେତେବେଳକୁ ମନରେ ନେଇ ସାରିଥିଲେ ।

- ୪ -

*ହେଉ ହେଲା, ଆଜି ମଙ୍ଗଳବାର, ରାତିରେ କାଳୀ ମନ୍ଦିରକୁ ଯାଅ, ମା'ଙ୍କ ସମ୍ମୁଖରେ ଲମ୍ବ ଖମ୍ବ ହୋଇ ପ୍ରଣିପାତ କର । ତୁମେ ଯାହା ବର ମାଗିବ, ତାହା ତାଙ୍କଠାରେ ପ୍ରକାଶ କର । ମୋ ମା ନିଶ୍ଚୟ ତୁମକୁ ବର ଦାନ କରିବେ । ସେ ଜ୍ଞାନମୟୀ, ସ୍ୱୟଂ ବ୍ରହ୍ମଙ୍କର ସିଏ ଅଖଣ୍ଡ ଶକ୍ତି । ତାଙ୍କର ଇଚ୍ଛାମାତ୍ରେ ଏହି ବିଶ୍ୱବ୍ରହ୍ମାଣ୍ଡର ଜନ୍ମ । ତାଙ୍କ ଭିତରେ ସମସ୍ତ ଶକ୍ତି ସମାହିତ, ଯାହା ଚାହିଁବ, ସେ ନିଶ୍ଚୟ ଦେବେ ।*

ବହୁଦିନ ପରେ ନିଜର ଅନ୍ତରଙ୍ଗ ଭକ୍ତ ନରେନ୍ଦ୍ରଙ୍କୁ ହଠାତ୍ ଦେଖି ଶ୍ରୀରାମକୃଷ୍ଣ ଭାବ ବିହ୍ୱଳିତ ହୋଇପଡ଼ିଲେ ଏବଂ ନରେନ୍ଦ୍ରଙ୍କର ହାତକୁ ଚାପି ଧରି ତାଙ୍କ ସହ ସେଦିନ ଦକ୍ଷିଣେଶ୍ୱରରେ ରାତ୍ରଯାପନ କରିବା ପାଇଁ ପରାମର୍ଶ ଦେଲେ । କାର୍ଯ୍ୟ ବାହାନାରେ ନରେନ୍ଦ୍ର ଦକ୍ଷିଣେଶ୍ୱର ନ ଯିବା ପାଇଁ ଯେତେ ଯୁକ୍ତି ବାଢ଼ିଲେ ବି ଶ୍ରୀରାମକୃଷ୍ଣ ତାଙ୍କର କଥା ଆଦୌ ଶୁଣିଲେ ନାହିଁ । ବାଧ ହୋଇ ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କ ସହ ଗାଡ଼ିରେ ଦକ୍ଷିଣେଶ୍ୱର ଯାତ୍ରା କଲେ । ଯାତ୍ରାକାଳରେ ଅବଶ୍ୟ ସେ ତାଙ୍କ ସହ ବେଶି କଥାବାର୍ତ୍ତା ହେଲେନାହିଁ, କିନ୍ତୁ ତାଙ୍କ କୋଠରିରେ ଅନ୍ୟମାନଙ୍କ ସହ ନରେନ୍ଦ୍ର କିଛି ସମୟ ଉପବେଶନ କଲାରୁ, ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କୁ ଅପଲକ ନୟନରେ ଦେଖି ଦେଖି ଭାବ ସମାଧିରେ ବୁଡିଗଲେ । ଭାବ ସମାଧି ଅବସ୍ଥାରେ ଶ୍ରୀରାମକୃଷ୍ଣ ଧୀରେ ଧୀରେ ନରେନ୍ଦ୍ରଙ୍କ ପାଖକୁ ଲାଗି ଆସି, ତାଙ୍କୁ ସ୍ନେହରେ ସ୍ପର୍ଶ କଲେ । ସୁମଧୁର କଣ୍ଠରେ ସେ ଭଜନଟିଏ ଗାନ କରିଲେ ଏବଂ ତାଙ୍କ ଚକ୍ଷୁଯୁଗଳରୁ ବହୁଥିଲା ଅବିଶ୍ରାନ୍ତ ଅଶ୍ରୁଧାରା । ଶ୍ରୀରାମକୃଷ୍ଣଙ୍କ ଭଜନର ଗଭୀର ମର୍ମାର୍ଥ ଏବଂ ତାଙ୍କର ଅହେତୁକ ସ୍ନେହପୂର୍ଣ୍ଣ ଅଶ୍ରୁଧାରା ନରେନ୍ଦ୍ରଙ୍କୁ ବିମୋହିତ କଲା । ନିଜର

Digitized by srujanika@gmail.com

ଅଶ୍ରୁପୂର୍ଣ୍ଣ ଅନୁଭୂତିକୁ ସେ ବାରମ୍ବାର ଚାପି ଧରୁଥିଲେ । କିନ୍ତୁ ତାଙ୍କ ମଧ୍ୟରେ ଏଭଳି ଅଶ୍ରୁର ଉତ୍ତାଳ ତରଙ୍ଗ ଲହରିତ ଯେ ନରେନ୍ଦ୍ର ଆଉ ନିଜକୁ ସମ୍ଭାଳି ନ ପାରି କାନ୍ଦି ପକାଇଲେ । ଏହି ଗୁରୁ-ଶିଷ୍ୟଙ୍କର ଅଶ୍ରୁପୂର୍ଣ୍ଣ ଭାବ ବିନିମୟକୁ ନିର୍ନିମେଷ ନୟନରେ ଚାହିଁଥିଲେ ଉପସ୍ଥିତ ଭକ୍ତଗଣ ।

ଶ୍ରୀରାମକୃଷ୍ଣ କିୟତ ସମୟ ଅତିକ୍ରାନ୍ତେ ପ୍ରକୃତିସ୍ଥ ହେଲେ । ଉତ୍ସୁକତା ସହ କେତେକ ଭକ୍ତ ଦୁଇଜଣଙ୍କର ଅଶ୍ରୁମୋଚନର କାରଣ ଜାଣିବା ପାଇଁ ଶ୍ରୀରାମକୃଷ୍ଣଙ୍କ ନିକଟରେ ନିବେଦନ କଲେ । କିନ୍ତୁ ଶ୍ରୀରାମକୃଷ୍ଣ ସ୍ମିତହାସ୍ୟ କରି କହିଲେ, ''ଓହୋଃ... ତୁମେମାନେ ବୁଝିପାରିବ ନାହିଁ ଆମ ଦୁଇଜଣଙ୍କ ଭିତରେ ରହିଥିବା ସମ୍ପର୍କକୁ ।'' ବାସ୍, ତାଙ୍କର ଏତିକିମାତ୍ର କଥାରେ ସମସ୍ତେ ନୀରବ ହେଲେ । ରାତ୍ରି ଅଧିକ ହେବାରୁ ସମସ୍ତେ ତାଙ୍କ କୋଠରିରୁ ବିଦାୟ ନେଲେ । କିନ୍ତୁ ନରେନ୍ଦ୍ରଙ୍କୁ ନିଜ ପାଖକୁ ଡାକି କହିଲେ, ''ବାବା, ମୁଁ ଜାଣେ ତୁମେ ମା'ଙ୍କ କାର୍ଯ୍ୟ ନିମନ୍ତେ ଏହି ଧରାଧାମକୁ ଆସିଛ, ତୁମେ ଜଣେ ସଂସାରୀ ହୋଇ ଜୀବନ ନିର୍ବାହ କରିପାରିବ ନାହିଁ । କିନ୍ତୁ ମୁଁ ଯେତେଦିନ ବଞ୍ଚିଛି, ତୁମେ ମୋ ପାଇଁ ବଞ୍ଚିବାକୁ ହେବ ।'' ଏତିକି ମାତ୍ର ସ୍ନେହପୂର୍ଣ୍ଣ ବାଣୀ ଶୁଣାଇ ସେ ବାଳକ ସମ କଇଁ କଇଁ କାନ୍ଦି ଉଠିଲେ ।

ପରବର୍ତ୍ତୀ ଦିନ, ତାଙ୍କଠାରୁ ଅନୁମତି ଭିକ୍ଷାକରି ନରେନ୍ଦ୍ର କଲିକତା ଚାଲି ଆସିଲେ । ପରିବାର ଚଳାଇବା ଚିନ୍ତା ପୁନଶ୍ଚ ତାଙ୍କୁ ବିଚଳିତ କଲା । ଆଟର୍ଣ୍ଣି ଅଫିସରେ କେତେକ ପୁସ୍ତକ ଅନୁବାଦ କରି କିଛି ଅର୍ଥ ଉପାର୍ଜନ କଲେ ଯାହାଫଳରେ ଯେନତେନ ପ୍ରକାରଣେ ପରିବାରର ଖର୍ଚ୍ଚ ତୁଲାଇ ପାରିଲେ । କିନ୍ତୁ ଏହି ଆୟରେ ସ୍ଥାୟୀତ୍ୱ ନ ଥିବାରୁ, ମାତା, ଭ୍ରାତା ଓ ଭଗ୍ନୀଙ୍କର ଭରଣପୋଷଣର ଚିନ୍ତା ତାଙ୍କୁ ବାରମ୍ବାର ଉଦ୍‌ବେଳିତ କରୁଥିଲା । ଇତ୍ୟବସରରେ ଗୋଟିଏ ଚିନ୍ତା ତାଙ୍କ ମନରେ ଝଲକି ଉଠିଲା । ଶ୍ରୀରାମକୃଷ୍ଣ ତ ସବୁବେଳେ କୁହନ୍ତି, ''ଯଦି ଜଣେ ଈଶ୍ୱରଙ୍କୁ ଆନ୍ତରିକତା ସହ ଗୁହାରି କରିବ, ଈଶ୍ୱର ତାଙ୍କ କଥା ନିଶ୍ଚୟ ଶୁଣିବେ । ତାଙ୍କ ପ୍ରାର୍ଥନା ବି ମା କାଳୀ ଶୁଣନ୍ତି । ମୋର ଦାରିଦ୍ର୍ୟ ଦୂର କରିବା ପାଇଁ ସେ ମା'ଙ୍କୁ ପ୍ରାର୍ଥନା କରିବେ ବୋଲି ମୁଁ ତାଙ୍କୁ କହିବି । ସେ ନିଶ୍ଚୟ ମୋ କଥା ଟାଳିପାରିବେ ନାହିଁ ।'' ଏଭଳି ଚିନ୍ତା ମନରେ ଉଦ୍ରେକ ହେଲାରୁ ତାଙ୍କର ମନ ଓ ହୃଦୟ ଆତ୍ମ-ବିଶ୍ୱାସରେ ଭରି ଉଠିଲା । ସେ ଅଧିକକାଳ ବିଳମ୍ବ ନ କରି, ଉତ୍ସାହିତ ମନରେ ଦକ୍ଷିଣେଶ୍ୱର ଅଭିମୁଖେ ଯାତ୍ରା କଲେ ।

ନରେନ୍ଦ୍ରଙ୍କର ସହସା ଉପସ୍ଥିତି, ଶ୍ରୀରାମକୃଷ୍ଣଙ୍କୁ ଆନନ୍ଦ ସାଗରରେ ଭସାଇ ଦେଲା । ନରେନ୍ ନରେନ୍ କହି ତାଙ୍କୁ ସସ୍ନେହେ ଆଲିଙ୍ଗନ କଲେ । ନରେନ୍ଦ୍ର ଭୂମିଷ୍ଠ ପ୍ରଣାମ ଜଣାଇ ଅତି ଆତୁର କଣ୍ଠରେ କହିଲେ, ''ମହାଶୟ, ମୋ ପରିବାରର ଦାରିଦ୍ର୍ୟ ଦୂର କରିବା ପାଇଁ ଆପଣ ଟିକେ ମୋ ପାଇଁ ମା'ଙ୍କ ନିକଟରେ ପ୍ରାର୍ଥନା କରନ୍ତୁ । ମୋର ବିଶ୍ୱାସ ମା ଆପଣଙ୍କର ପ୍ରାର୍ଥନା ନିଶ୍ଚୟ ଶୁଣିବେ ।''

ଶ୍ରୀରାମକୃଷ୍ଣ ହସ ହସ ମୁଖମଣ୍ଡଳରେ ନରେନ୍ଦ୍ରଙ୍କୁ ଚାହିଁ କହିଲେ, ''ବାବା, ମୁଁ ଏଭଳି ମାଗି ପାରିବି ନାହିଁ । କିନ୍ତୁ ତୁମେ ନିଜେ ଯାଇ ମା'ଙ୍କୁ ମାଗୁନ କାହିଁକି ? ଯେହେତୁ ତୁମେ ମା'ଙ୍କୁ ସ୍ୱୀକାର କରୁନାହଁ, ସେଥିପାଇଁ ତୁମେ ଆଜି ସବୁ ଦୁଃଖ ଭୋଗକରୁଛ ।''

Digitized by srujanika@gmail.com

''ଆଜ୍ଞା, ମୁଁ ତ ମା'ଙ୍କୁ ଜାଣେ ନାହିଁ କି ଚିହ୍ନି ନାହିଁ । ମୋ ତରଫରୁ ଆପଣ ଟିକିଏ ମା'ଙ୍କୁ କୁହନ୍ତୁନା ? ମୋ ପାଇଁ ଆପଣ ନିଶ୍ଚୟ କହିବେ ?'' ନରେନ୍ଦ୍ର ଅତି ବିନମ୍ର ସହକାରେ କହିଲେ ।

ନରେନ୍ଦ୍ରଙ୍କର ବିନମ୍ରତା ଲକ୍ଷ୍ୟ କରି ଶ୍ରୀରାମକୃଷ୍ଣଙ୍କର ଭକ୍ତପ୍ରାଣ କାନ୍ଦି ଉଠିଲା । ସେ କହିଲେ, ''ବାବା, ମୁଁ ତୁମ ପାଇଁ ମା'ଙ୍କୁ ବାରମ୍ବାର କହିଛି । କିନ୍ତୁ ତୁମେ ମା'ଙ୍କୁ ଗ୍ରହଣ କରୁନାହିଁ ବୋଲି ସେ ମୋର ପ୍ରାର୍ଥନା ଶୁଣୁ ନାହାନ୍ତି । ହେଉ ହେଲା, ଆଜି ମଙ୍ଗଳବାର, ରାତିରେ କାଳୀ ମନ୍ଦିରକୁ ଯାଅ, ମା'ଙ୍କ ସମ୍ମୁଖରେ ଲମ୍ବ ଖମ୍ବ ହୋଇ ପ୍ରଣିପାତ କର । ତୁମେ ଯାହା ବର ମାଗିବ, ତାହା ତାଙ୍କଠାରେ ପ୍ରକାଶ କର । ମୋ ମା ନିଶ୍ଚୟ ତୁମକୁ ବର ଦାନ କରିବେ । ସେ ଜ୍ଞାନମୟୀ, ସ୍ୱୟଂ ବ୍ରହ୍ମଙ୍କର ସିଏ ଅଖଣ୍ଡ ଶକ୍ତି । ତାଙ୍କର ଇଚ୍ଛାମାତ୍ରେ ଏହି ବିଶ୍ୱବ୍ରହ୍ମାଣ୍ଡର ଜନ୍ମ । ତାଙ୍କ ଭିତରେ ସମସ୍ତ ଶକ୍ତି ସମାହିତ, ଯାହା ଚାହିଁବ, ସେ ନିଶ୍ଚୟ ଦେବେ ।''

ଦାରିଦ୍ର୍ୟ ଉତ୍ପୀଡ଼ନରେ ନରେନ୍ଦ୍ର ଜର୍ଜରିତ । ପରିବାରର ମାତା, ଭ୍ରାତା ଓ ଭଗ୍ନୀମାନଙ୍କର ତହଲବିକଳ ଜୀବନର ଚିତ୍ର ତାଙ୍କ ମାନସପଟରେ ବାରମ୍ବାର ନାଚି ଉଠୁଥିଲା । କେତେଲୋକଙ୍କୁ ସାହାଯ୍ୟ ଆଶାରେ ସେ ନ ଭେଟିଛନ୍ତି । କେହି ଜଣେ ବି ଆଶ୍ୱାସନାର ପଦଟିଏ କଥା ତାଙ୍କୁ କହି ନାହାନ୍ତି । କିନ୍ତୁ ଆଜି ଜଣେ ନିଶ୍ୱ ଦରିଦ୍ର କାଙ୍ଗାଳ ବ୍ରାହ୍ମଣ ସୁନିଶ୍ଚିତ କଣ୍ଠରେ ଆହ୍ୱାନ କରୁଛନ୍ତି ''ଯା ରେ ନରେନ୍, ମା'ଙ୍କୁ ମାଗ, ସେ ନିଶ୍ଚୟ ତୁମର ପ୍ରାର୍ଥନା ଶୁଣିବେ ।'' କି ପ୍ରକାର ତାଙ୍କର ପ୍ରଚଣ୍ଡ ଆତ୍ମ-ବିଶ୍ୱାସ ! ନରେନ୍ଦ୍ରଙ୍କ ମନ ବିଶ୍ୱାସରେ ପୂର୍ଣ୍ଣ ହୋଇଉଠିଲା । ସେ ଶ୍ରୀରାମକୃଷ୍ଣଙ୍କର ପ୍ରତ୍ୟେକ ବାକ୍ୟକୁ ବିଶ୍ୱାସ କରିନେଇ ରାତି ନ'ଟା କେତେବେଳେ ଆସିବ, ସେହି ଶୁଭ ମୁହୂର୍ତ୍ତକୁ ବ୍ୟଗ୍ର ଓ ଉତ୍କଣ୍ଠା ଚିତ୍ତରେ ପ୍ରତୀକ୍ଷା କଲେ ।

ରାତି କ୍ରମଶଃ ଘନେଇ ଆସିଲା । ଗଙ୍ଗାନଦୀର କଳ କଳ ନାଦ ରାତ୍ରିର ନିସ୍ତବ୍ଧତାକୁ ସଙ୍ଗୀତ ମୁଖର କରୁଥିଲା । ଜନଶୂନ୍ୟ ହେଲା ଦକ୍ଷିଣେଶ୍ୱର ମନ୍ଦିର ବେଢ଼ା । ଶ୍ରୀରାମକୃଷ୍ଣ ପରମହଂସ ନିଜ କୋଠରିରେ ଭାବସମାଧିରେ ମଗ୍ନ । ନରେନ୍ଦ୍ର ଆଜ୍ଞାଧୀନ ବାଳକ ସମ ତାଙ୍କୁ ପ୍ରଣିପାତ କରି ଅଗ୍ରସର ହେଲେ କାଳୀ ମନ୍ଦିର ଅଭିମୁଖେ । ଶ୍ରୀରାମକୃଷ୍ଣଙ୍କ ହାସ୍ୟ ଲହରିତ ଅଧରରୁ ଝରିପଡୁଥିଲା ଅସ୍ପଷ୍ଟ ଶବ୍ଦସବୁ । ନରେନ୍ଦ୍ରଙ୍କ ମନରେ ଅପୂର୍ବ ଉନ୍ମାଦ - ମା କାଳୀଙ୍କର ଜୀବନ୍ତ ରୂପ ଦର୍ଶନ କରିବେ । କେବଳ ସେତିକି ନୁହେଁ ତାଙ୍କ ସହ କଥା ହେବେ । ଯେଉଁ ପାଷାଣ ମୂର୍ତ୍ତିକୁ ମା' ବୋଲି କହିବାଲାଗି କୁଣ୍ଠା ବୋଧ କରୁଥିଲେ ଏବଂ ଶ୍ରୀରାମକୃଷ୍ଣଙ୍କର ମା କାଳୀଙ୍କ ସହ ସାକ୍ଷାତ ଓ କଥାବାର୍ତ୍ତାକୁ ମାନସିକ ଉନ୍ମାଦନା କହି ହସରେ ଉଡ଼ାଇ ଦେଉଥିଲେ, ସେହି ମା କାଳୀଙ୍କ ନିକଟକୁ ସେ ଆଜି ଆସୁଛନ୍ତି ଭିକ୍ଷା ପାଇଁ ପ୍ରାର୍ଥନା କରିବେ । ମନ୍ଦିରକୁ ଯିବା ବାଟରେ ତାଙ୍କର ପାଦ ଟଳମଳ ହେଉଥିଲା । ଦିବ୍ୟ ଭାବନାରେ ସେ କ୍ରମଶଃ ପରିପୂର୍ଣ୍ଣ ହୋଇଉଠୁଥିଲେ । ମା'ଙ୍କର ଜୀବନ୍ତ ରୂପ ଦର୍ଶନରେ ସେ କ'ଣ ସବୁ କହିବେ, ତା'ର ଏକ ପଥଚିତ୍ର ମନେ ମନେ ଆଙ୍କୁଥିଲେ ।

Digitized by srujanika@gmail.com

- ୫ -

*ଧିକ୍ ମୋ ଜୀବନ, ଦୟାଳୁ ରାଜାଙ୍କ ପାଖରୁ ସାରୁ, ଲାଉ, କଖାରୁ ମାଗିବା ଯାହା, ଜଗଜ୍ଜନନୀଙ୍କଠାରୁ ଦାରିଦ୍ର୍ୟରୁ ନିସ୍ତାର ପାଇଁ ପ୍ରାର୍ଥନା କରିବା ସେଇୟା ।'' ମା କାଳୀଙ୍କର ଦୀପ୍ତିମନ୍ତ ରୂପକୁ ସେ ଚାହିଁପାରିଲେ ନାହିଁ, ଲଜ୍ଜାରେ ତାଙ୍କର ମୁଖ ଅବନତ ହେଲା । ମା'ଙ୍କ ସମ୍ମୁଖରେ ପୁନଶ୍ଚ ସାଷ୍ଟାଙ୍ଗ ପ୍ରଣିପାତ କରି ଆକୁଳିତ ଚିତ୍ତରେ ସେ ପ୍ରାର୍ଥନା କରିବାକୁ ଲାଗିଲେ, ''ମା, ତୁମର କରୁଣା ସର୍ବଦା ମୋ ଉପରେ ରହିଥାଉ । ମୋତେ ବୈରାଗ୍ୟ ଦିଅ, ବିବେକ ଦିଅ, ଜ୍ଞାନ ଦିଅ, ଭକ୍ତି ଦିଅ ।''*

ବର୍ତ୍ତମାନ ମନ୍ଦିର ଦ୍ୱାର ଦେଶରେ ଉପନୀତ । ଚାହିଁଲେ ଯୋଡ଼ ହସ୍ତରେ ମା କାଳୀଙ୍କର ପାଷାଣ ମୂର୍ତ୍ତିକୁ । କି ଆଶ୍ଚର୍ଯ୍ୟ ! ପ୍ରସ୍ତର ମୂର୍ତ୍ତି ସ୍ଥାନରେ ସାକ୍ଷାତ ଚିନ୍ମୟୀ ଓ ଚୈତନ୍ୟମୟୀ ରୂପେ ସ୍ୱୟଂ ମା ଆବିର୍ଭୂତା । ପ୍ରେମ, କରୁଣା ଓ ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ଦେବୀ । ତାଙ୍କ କରୁଣାରେ ଚତୁର୍ଦ୍ଦିଗ ଦୀପ୍ତିମନ୍ତ ଓ ଆନନ୍ଦମୟ । ଅନିର୍ବଚନୀୟ ଆନନ୍ଦରେ ନରେନ୍ଦ୍ର ହେଲେ ଶିହରିତ । ନରେନ୍ଦ୍ରଙ୍କ ଦେହ ଓ ମନ ଭକ୍ତିସ୍ରୋତରେ ଆପ୍ଲୁତ ହେଲା । ମା'ଙ୍କର ଅପୂର୍ବ ଦିବ୍ୟଦର୍ଶନରେ ତାଙ୍କ ମୁଖରୁ କୌଣସି ବାକ୍ୟ ସ୍ଫୁରିଲା ନାହିଁ । ସାଷ୍ଟାଙ୍ଗ ପ୍ରଣାମ କରି, ସେ ଦିବ୍ୟାନୁଭୂତି ସ୍ୱରରେ କହିଲେ, ''ମା, ତୁମଠାରୁ ମୁଁ କିଛି ମାଗୁନି । ମୋତେ ବିବେକ ଦିଅ - ବୈରାଗ୍ୟ ଦିଅ; ଜ୍ଞାନ ଦିଅ; ଭକ୍ତି ଦିଅ ମା' । ମା' ମୋ ପ୍ରତି ଏତିକି କରୁଣା କର - ମୁଁ ଯେପରି ତୁମକୁ ସର୍ବଦା ଦର୍ଶନ କରୁଥାଏ । ଦିବ୍ୟ ଜଗଜ୍ଜନନୀଙ୍କର ଦର୍ଶନରେ ସେ ବିସ୍ମୃତ ହେଲେ ନିଜର ଅସ୍ତିତ୍ୱକୁ - ସାରା ସଂସାରକୁ । ସ୍ୱୟଂ ମା କାଳୀ ତାଙ୍କ ଭିତରେ ବିରାଜିତା ବୋଲି ସେ ସେହି ମୁହୂର୍ତ୍ତରେ ଉପଲବ୍ଧି କଲେ । ଅଧିକ କିଛି କହି ନ ପାରି ପ୍ରତ୍ୟାବର୍ତ୍ତନ କଲେ ଶ୍ରୀରାମକୃଷ୍ଣଙ୍କ କୋଠରିକୁ । ଫେରିବାବେଳେ ତାଙ୍କର ପାଦ କେବଳ ନିଶାଗ୍ରସ୍ତ ଭଳି ଟଳମଳ ହେଉଥିଲା ।

ନାଟକର ସୂତ୍ରଧର ଶ୍ରୀରାମକୃଷ୍ଣ ପୂର୍ବବତ୍ ନିଜ ଶଯ୍ୟା ଉପରେ ବସିଥିଲେ । ମୁହୁର୍ମୁହୁଃ ସ୍ମିତହାସ୍ୟ ତାଙ୍କର ଅଧରକୁ ଲହରିତ କରୁଥିଲା । ''ମା'ଙ୍କୁ କ'ଣ ମାଗିଲ ? ବର ଦେଲେ ତ ?'' ଶ୍ରୀରାମକୃଷ୍ଣଙ୍କ ଅଚାନକ ପ୍ରଶ୍ନରେ ନରେନ୍ଦ୍ର ପ୍ରକୃତିସ୍ଥ ହେଲେ । ''ନା, କିଛି ମାଗି ପାରିଲି ନାହିଁ । ସବୁ ଭୁଲିଗଲି । ବର୍ତ୍ତମାନ କ'ଣ କରିବି କୁହନ୍ତୁ ।'' ନରେନ୍ଦ୍ର ଉତ୍ସୁକତା ସହ ପ୍ରଶ୍ନ କଲେ । ଶ୍ରୀରାମକୃଷ୍ଣ କେବଳ ହସିଲେ । ଅଧିକ କିଛି କହିଲେ ନାହିଁ । କିୟତ୍ ମୁହୂର୍ତ୍ତ ପରେ, ସେ କହିଲେ, ''ହତୋତ୍ସାହ ହୁଅନାହିଁ । ପୁଣି ଥରେ ମା'ଙ୍କ ପାଖକୁ ଯାଅ । ମାଗି ନିଅ ତୁମର ଅଭିଷ୍ଟ ଫଳ ।''

କାଠ କଣ୍ଢେଇଟି ଭଳି, ସୂତ୍ରଧରଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି, ପୁନଶ୍ଚ ମା କାଳୀଙ୍କ ନିକଟକୁ ସେ ଟଳଟଳ ପାଦରେ ଚାଲିଲେ । ସେଠାରେ ଉପନୀତ ହୋଇ ମା'ଙ୍କର ମୂର୍ତ୍ତିକୁ

Digitized by srujanika@gmail.com

ପୁଣିଥରେ ଚାହିଁଲେ । କିଛି ପରିବର୍ତ୍ତନ ନାହିଁ । ସେହି ଭୁବନମୋହିନୀ-କରୁଣାମୟୀ-ଆନନ୍ଦଦାୟିନୀ ଚିନ୍ମୟୀ ରୂପରେ ମା କାଳୀ ଦୀପ୍ତିମନ୍ତ ଓ ଉଦ୍‌ଭାସିତ । ନରେନ୍ଦ୍ରଙ୍କ ହୃଦୟରେ ଏଥରକ ଭକ୍ତିର ସ୍ରୋତ ବେଗଗାମୀ ହେଲା । ଭକ୍ତିର ଉତ୍ତାଳ ତରଙ୍ଗରେ ସେ ନିଜର ଲକ୍ଷ୍ୟ ବିସ୍ମରଣ ହେଲେ । ଭକ୍ତି ଗଦ୍‌ଗଦ୍ କଣ୍ଠରେ କହି ଉଠିଲେ, ''ମା ମୋତେ ଦିଅ ବିବେକ, ବୈରାଗ୍ୟ, ଜ୍ଞାନ ଓ ଭକ୍ତି । ମୁଁ ତୁମଠାରୁ ଆଉ କିଛି ମାଗୁନାହିଁ ।'' ଏତିକିମାତ୍ର ହୃଦୟର ଭାଷା ବ୍ୟକ୍ତ କରି, ଦେବୀଙ୍କୁ ପ୍ରଣାମ କରି, ଶ୍ରୀରାମକୃଷ୍ଣଙ୍କ ନିକଟକୁ ପୁନର୍ବାର ଫେରିଆସିଲେ ।

ନରେନ୍ଦ୍ରଙ୍କର ଦ୍ୱିତୀୟବାର ମାଗିବାରେ ବିଫଳତା ପରିଲକ୍ଷିତ କରି ଶ୍ରୀରାମକୃଷ୍ଣ ବିରକ୍ତ ହୋଇ କହିଲେ, ''କେମିତିକା ଭାବହୀନ ପିଲାଟାଏ ତୁ ! ଏହି କେଇପଦ କଥା ତୁ ମନେରଖି ମାଗି ପାରୁନାହୁଁ ? ହେଉ ହେଲା, ଏଥର ଯାଇ ପୁଣି ତାଙ୍କୁ ମାଗ । ଡେରି କରନି ।''

ତୃତୀୟବାର ମା'ଙ୍କ ସମ୍ମୁଖରେ ପହଞ୍ଚିଲା ବେଳକୁ ନରେନ୍ଦ୍ରଙ୍କ ମନ ପରିବର୍ତ୍ତିତ ହୋଇ ଏକ ଅଭିନବ ଭାବନାରେ ପୂର୍ଣ୍ଣ ହୋଇଉଠିଛି । ଆବିର୍ଭୂତା ମହାଦେବୀ କାଳୀଙ୍କର ଚିନ୍ମୟୀ ରୂପକୁ ଅବଲୋକନ କରି ସେ ଚିନ୍ତା କରିବାକୁ ଲାଗିଲେ - ଛି-ଛି କି ପ୍ରକାର ହୀନ ବୁଦ୍ଧି ମୋର । ଜଗଜ୍ଜନନୀଙ୍କ ନିକଟକୁ ସାମାନ୍ୟତମ ହେୟବସ୍ତୁ ମାଗିବାକୁ ମୁଁ କ'ଣ ଆସିଛି ! ଧିକ୍ ମୋ ଜୀବନ, ଦୟାଳୁ ରାଜାଙ୍କ ପାଖରୁ ସାରୁ, ଲାଉ, କଖାରୁ ମାଗିବା ଯାହା, ଜଗଜ୍ଜନନୀଙ୍କଠାରୁ ଦାରିଦ୍ର୍ୟରୁ ନିସ୍ତାର ପାଇଁ ପ୍ରାର୍ଥନା କରିବା ସେଇୟା ।'' ମା କାଳୀଙ୍କର ଦୀପ୍ତିମନ୍ତ ରୂପକୁ ସେ ଚାହିଁପାରିଲେ ନାହିଁ, ଲଜ୍ଜାରେ ତାଙ୍କର ମୁଖ ଅବନତ ହେଲା । ମା'ଙ୍କ ସମ୍ମୁଖରେ ପୁନଶ୍ଚ ସାଷ୍ଟାଙ୍ଗ ପ୍ରଣିପାତ କରି ଆକୁଳିତ ଚିତ୍ତରେ ସେ ପ୍ରାର୍ଥନା କରିବାକୁ ଲାଗିଲେ, ''ମା, ତୁମର କରୁଣା ସର୍ବଦା ମୋ ଉପରେ ରହିଥାଉ । ମୋତେ ବୈରାଗ୍ୟ ଦିଅ, ବିବେକ ଦିଅ, ଜ୍ଞାନ ଦିଅ, ଭକ୍ତି ଦିଅ ।''

ମନ୍ଦିରରୁ ଫେରି ଆସିଲେ ଯୁବକ ନରେନ୍ଦ୍ର । ସେ ବର୍ତ୍ତମାନ ଭଲଭାବରେ ବୁଝି ସାରିଲେଣି ଯେ ତିନିତିନି ଥର ଯେଉଁ ନାଟକ ସବୁ ଘଟିଗଲା, ସେସବୁ ଘଟିଛି ଶ୍ରୀରାମକୃଷ୍ଣଙ୍କ ଇଚ୍ଛାରେ । ତାହା ନ ହୋଇଥିଲେ, ବାରମ୍ବାର ସେ କାହିଁକି ମାଗିବାରେ ବିଫଳ ହୋଇଥାନ୍ତେ !!! ନରେନ୍ଦ୍ର କ୍ଷୀପ୍ର ପାଦରେ ଶ୍ରୀରାମକୃଷ୍ଣଙ୍କ ନିକଟରେ ପହଞ୍ଚି କହିଲେ, ''ମହାଶୟ ! ଆପଣ ଜଣେ ବେଶ୍ ଧୁରନ୍ଧର ନାଟ୍ୟକାର । ମୋ ମନକୁ ଆପଣଙ୍କ ଇଚ୍ଛାରେ ସମ୍ମୋହିତ କରି ମୋର ସ୍ମରଣ ଶକ୍ତିକୁ ଲୋପ କରିଛନ୍ତି । ଯାହାଫଳରେ ମୁଁ ତିନିତିନି ଥର ଦେବୀଙ୍କ ପାଖକୁ ଯାଇ ବି କିଛି ମାଗି ପାରିଲି ନାହିଁ । ମୁଁ ବର୍ତ୍ତମାନ କିଛି ଜାଣିପାରୁ ନାହିଁ । ମୋ ପରିବାରର ମା, ଭାଇ ଓ ଭଉଣୀ ଯେପରି ଦାରିଦ୍ର୍ୟର କଷ୍ଟ ନ ଭୋଗନ୍ତି, ତାହା ମୋତେ ବର ଦିଅନ୍ତୁ ।

ଶ୍ରୀରାମକୃଷ୍ଣ ପୂର୍ବବତ୍ ହସୁଥିଲେ । ନରେନ୍ଦ୍ରଙ୍କର ଅଖଣ୍ଡ ବିଶ୍ୱାସ ଦେଖି ସେ କହିଲେ, ''ଏଭଳି ପ୍ରାର୍ଥନା ମୁଁ ମୁହଁରେ ଧରି ପାରିବି ନାହିଁ । ତୁମେ ତାହା ନିଜେ ମାଗିବା ପାଇଁ କହିଲି, କିନ୍ତୁ ତୁମେ ତାହା କହିପାରିଲ ନାହିଁ । ତାହାର ଅର୍ଥଯେ ସଂସାରର ସୁଖ ଭୋଗ ପାଇଁ ତୁମର

Digitized by srujanika@gmail.com

ଉନ୍ନ ନୁହେଁ । ଠିକ୍ ଅଛି, ମୁଁ ତୁମକୁ ସାହାଯ୍ୟ କରିପାରିବି ନାହିଁ ।'' ତାଙ୍କର ନାସ୍ତିବାଣୀ ଶୁଣି ନରେନ୍ଦ୍ର ଅବଶ୍ୟ କିଛି ସମୟ ନିରାଶ ହୋଇପଡ଼ିଲେ, କିନ୍ତୁ ସେତେବେଳକୁ ଶ୍ରୀରାମକୃଷ୍ଣଙ୍କ ପ୍ରତି ଏପରି ଅଟଳ ବିଶ୍ୱାସ ତାଙ୍କର ହୋଇଯାଇଥିଲାଯେ ସେ ତାଙ୍କୁ ଛାଡ଼ିଲେ ନାହିଁ । ପିତା ସମ୍ମୁଖରେ ଯେପରି ପୁତ୍ର ଅଳି ଓ ଅଝଟ କରେ, ଠିକ୍ ସେପରି ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କୁ ବାରମ୍ବାର ଅନୁରୋଧ କଲେ । ଶ୍ରୀରାମକୃଷ୍ଣ ସର୍ବଶେଷରେ ତାଙ୍କୁ ଆଶ୍ୱାସନା ପ୍ରଦାନ କରି କହିଲେ, ''ଠିକ୍ ଅଛି, ତୁମର ପରିବାରକୁ ଗଣ୍ଡିଏ ଖାଇବାକୁ ଓ ଖଣ୍ଡିଏ ପିନ୍ଧିବାକୁ ମିଳିବ । ଏଥିରେ ଅଭାବ ରହିବ ନାହିଁ ।''

ଏତାଦୃଶ ଘଟଣା ନିଃସନ୍ଦେହରେ ନରେନ୍ଦ୍ରଙ୍କ ଜୀବନକୁ ବହୁପରିମାଣରେ ପ୍ରଭାବିତ ଓ ପରିବର୍ତ୍ତିତ କରିଥିଲା । ବର୍ତ୍ତମାନ ସେ ଈଶ୍ୱରଙ୍କର ମାତୃତ୍ୱ ଦିଗକୁ ଉପଲବ୍ଧି କଲେ । ପୂର୍ବରୁ ସେ ମୂର୍ତ୍ତି ଉପାସନାକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ମୂର୍ତ୍ତିପୂଜା ମାଧ୍ୟମରେ ଈଶ୍ୱରଙ୍କର ଉପାସନାର ମହତ୍ତ୍ୱ ଓ ଉଦ୍ଦେଶ୍ୟ ଏବଂ ଈଶ୍ୱରଙ୍କର ମାତୃତ୍ୱ ଦିଗର ରହସ୍ୟ ବର୍ତ୍ତମାନ ବୁଝିପାରିଲେ । ନରେନ୍ଦ୍ରଙ୍କ ମନରେ ବସା ବାନ୍ଧିଥିବା ରୂପହୀନ ନିରାକାର-ନିରପେକ୍ଷ-ଐଶ୍ୱରିକ ସତ୍ତାର କଳ୍ପନା ଏବଂ ଈଶ୍ୱରଯେ ବିଶ୍ୱବ୍ରହ୍ମାଣ୍ଡ ବାହାରେ ଏକ ଐଶ୍ୱରିକ ସତ୍ତା ଯିଏ ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ନିୟନ୍ତ୍ରଣ କରୁଛନ୍ତି, ସେଭଳି ଏକ କଳ୍ପନା ଏହି ଉପଲବ୍ଧି ମାଧ୍ୟମରେ ତାଙ୍କ ମନରୁ ବହିଷ୍କୃତ ହେଲା । ଈଶ୍ୱରଙ୍କ ସତ୍ତା ସୃଷ୍ଟିର ପ୍ରତ୍ୟେକ ବସ୍ତୁ ମଧ୍ୟରେ ବିରାଜିତ ଏବଂ ଈଶ୍ୱରଙ୍କୁ ଲାଭ କରିବାର ବିଭିନ୍ନ ମାର୍ଗ ମଧ୍ୟରୁ ମୂର୍ତ୍ତିପୂଜା ଏକ ମାଧ୍ୟମ ବୋଲି ସେ ଅନୁଭବ କଲେ । ସୃଷ୍ଟି, ସ୍ଥିତି ଓ ବିନାଶ ପ୍ରକ୍ରିୟା ସେହି ଏକ ଈଶ୍ୱରଙ୍କ ମହାଶକ୍ତି ଦ୍ୱାରା ଅନବରତ ସଂଘଟିତ ହେଉଛି, ଯାହାକୁ ଶ୍ରୀରାମକୃଷ୍ଣ ଜଗଜ୍ଜନନୀ ମହାକାଳୀ ଭାବେ ସ୍ୱଚକ୍ଷୁରେ ଦେଖୁଛନ୍ତି, ସେହି ରହସ୍ୟ ଯେ ନିରାଟ ସତ୍ୟ, ତାହା ନରେନ୍ଦ୍ର ବେଶ୍ ବୁଝିପାରିଲେ ।

ରାତ୍ରିର ଘନ ଅନ୍ଧକାର ମଧ୍ୟରେ କାଳୀଙ୍କର ଦିବ୍ୟଦର୍ଶନ ଲାଭ କରି ଏବଂ ଶ୍ରୀରାମକୃଷ୍ଣଙ୍କର ଅଭୟବାଣୀ ଶ୍ରବଣ କରି ନରେନ୍ଦ୍ର ସାରାରାତି କାଳୀଙ୍କର ଭଜନ ଗାନକରି ବିତାଇଲେ । ପରଦିନ ଅପରାହ୍ନରେ ଦକ୍ଷିଣେଶ୍ୱର ଛାଡ଼ିବା ପୂର୍ବରୁ ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବା ପାଇଁ ତାଙ୍କ କୋଠରିରେ ପହଞ୍ଚିଲେ । ନରେନ୍ଦ୍ରଙ୍କୁ ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହୋଇ ତାଙ୍କୁ ପାଖରେ ବସାଇଲେ । ଧୀରେ ଧୀରେ ଘୁଞ୍ଚି ନରେନ୍ଦ୍ରଙ୍କ କୋଳରେ ଯାଇ ବସିଲେ । ତାଙ୍କର ଏଭଳି ବାଲ୍ୟଚପଳତା ସଦୃଶ ଆଚରଣ ଅବଶ୍ୟ ନରେନ୍ଦ୍ରଙ୍କୁ ବିସ୍ମିତ କଲା । ସେ କିଛି କହିପାରିଲେ ନାହିଁ । ନରେନ୍ଦ୍ରଙ୍କ କୋଳରେ ବସି ନିଜର ବକ୍ଷଦେଶକୁ ଆଙ୍ଗୁଳି ଦେଖାଇ କହିଲେ, ''ଏଠାରେ ଯିଏ ଅଛନ୍ତି, ସେ ବି ତୁମ ଭିତରେ ବିରାଜିତ । ତୁମ - ମୋ ଭିତରେ କିଛି ହିଁ ପାର୍ଥକ୍ୟ ନାହିଁ । ଗଙ୍ଗା ଜଳରେ ଭାସମାନ ଏକ ଯଷ୍ଟି ଯେମିତି ଜଳକୁ ଦୁଇଭାଗ କରୁଥିବା ଭଳି ପ୍ରତୀୟମାନ ହୁଏ, ସେମିତି ଆମେ ଦୁଇଟି ଶରୀର ପାଇଥିବାରୁ ଦୁଇଟି ବ୍ୟକ୍ତି ଭଳି ପ୍ରତୀୟମାନ ହେଉଛନ୍ତି । କିନ୍ତୁ ତାହା ସତ୍ୟ ନୁହେଁ । ତୁମେ ଓ ମୁଁ ଏକ ଓ ଅଭିନ୍ନ ।

Digitized by srujanika@gmail.com

ଇତ୍ୟବସରରେ ଶ୍ରୀରାମକୃଷ୍ଣଙ୍କର ହୁକ୍କା ଟାଣିବାଲାଗି ପାଇଁ ମନ ବଳିଲା । ନରେନ୍ଦ୍ର ସେଠାରୁ ଉଠିଯାଇ ତମାଖୁ ଭର୍ତ୍ତିକରି ହୁକ୍କା ପ୍ରସ୍ତୁତ କଲେ । ତତ୍‌ପଶ୍ଚାତେ ତାଙ୍କର ସେବନ ନିମନ୍ତେ ରଖିଲେ । ଦୁଇ ତିନିଥର ହୁକ୍କା ଟାଣିବା ପରେ ନରେନ୍ଦ୍ରଙ୍କୁ ହୁକ୍କା ଟାଣିବା ପାଇଁ କହିଲେ । ଗୁରୁଙ୍କର ହୁକ୍କାକୁ କେମିତି ବା ସେ ଟାଣିପାରିବେ । କାଳେ ଅଇଁଠା ହୋଇଯିବ । ସେ ତାହା କରିବାକୁ ସଙ୍କୋଚ ପ୍ରକାଶ କଲେ । ଶ୍ରୀରାମକୃଷ୍ଣ ଏଭଳି ଯୁକ୍ତିକୁ କର୍ଣ୍ଣପାତ ନ କରି କହିଲେ, ''କିଏ କାହାର ଅଇଁଠା ଖାଉଛି । ତୁମେ ଓ ମୁଁ ଯେ ଏକ ଓ ଅଭିନ୍ନ ।'' ଏତକ କହି ନରେନ୍ଦ୍ରଙ୍କ ଓଠ ସମ୍ମୁଖରେ ହୁକ୍କା ଲଗାଇ ଦେଲେ । ଉପାୟ ଶୂନ୍ୟ ହୋଇ ନରେନ୍ଦ୍ର ଦୁଇ ତିନିଥର ବି ହୁକ୍କା ଟାଣିଲେ । ଶ୍ରୀରାମକୃଷ୍ଣ ପୁନଶ୍ଚ ନରେନ୍ଦ୍ରଙ୍କଠାରୁ ହୁକ୍କା ନେଇ ନିଜେ ଯେତେବେଳେ ଟାଣିବାକୁ ଉଦ୍ୟତ ହେଲେ, ସେ ତତ୍‌କ୍ଷଣାତ୍ ଚିତ୍କାର କରି ଉଠିଲେ, ''ମହାଶୟ, ଆପଣ କ'ଣ କରୁଛନ୍ତି, ଆପଣଙ୍କ ହାତରେ ମୋ ଛେପ ଲାଗିଯାଇଛି ।'' ନରେନ୍ଦ୍ରଙ୍କର କୌଣସି କଥା ନ ଶୁଣି ସେ ସେହି ଅଇଁଠା ହାତରେ ଧୂମ ପାନ କରିବାକୁ ଲାଗିଲେ । ଏତାଦୃଶ ନାଟକ ଭିତରେ ଶ୍ରୀରାମକୃଷ୍ଣଙ୍କ ମୁଖରୁ ଖାଲି ଝରିପଡୁଥିଲା ହସର ଫୁଲର ପାଖୁଡ଼ା ।

ନରେନ୍ଦ୍ର ବିସ୍ଫାରିତ ଓ ବିସ୍ମିତ ନୟନରେ ନିଜ ଗୁରୁଙ୍କର ଅହେତୁକ ସ୍ନେହର ଅନନ୍ତ ପାରାବାର ଲକ୍ଷ୍ୟକରି ଭାବିଲେ, ''ଧନ୍ୟ ଏହି ମହାମାନବ, ଯିଏ କାହାର ଉଚ୍ଛିଷ୍ଟ ଦୂରର କଥା, କୌଣସି ବ୍ୟକ୍ତି ତାଙ୍କ ପାଇଁ ଆଣିଥିବା ଦ୍ରବ୍ୟକୁ ଯଦି ଆଗରୁ କାହାକୁ ଅର୍ପଣ ହୋଇଥାଏ ସେହି ଦ୍ରବ୍ୟ ସେ ଗ୍ରହଣ କରନ୍ତି ନାହିଁ । ଆଜି ମୋର ଛେପକୁ ଭ୍ରୂକ୍ଷେପ ନ କରି ନିର୍ବିକାର ଚିତ୍ତରେ କହୁଛନ୍ତି କ'ଣ ନା 'ମୁଁ ଓ ତୁମେ' ଏକ ଓ ଅଭିନ୍ନ !!!



Digitized by srujanika@gmail.com

॥ ଆଠ ॥

# 'ଶିବ ଜ୍ଞାନେ ଜୀବ ସେବା' ମହାମନ୍ତ୍ରରେ ଦୀକ୍ଷିତ

ଈଶ୍ୱରଙ୍କର ମାତୃତ୍ୱ ଦିଗ, ନରେନ୍ଦ୍ରଙ୍କର ମନ ଓ ଚେତନାରେ ଉନ୍ମୋଚିତ ହେଲା ଫଳରେ, ତାଙ୍କର ଅନ୍ତରାତ୍ମାର ରୁଦ୍ଧ ଦ୍ୱାରଗୁଡ଼ିକ ଖୋଲିଗଲା ଏବଂ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ବିନାଶ ପ୍ରକ୍ରିୟାର ସେହି ମହାଦେବୀଯେ କର୍ତ୍ତୀ, ତାହା ସେ ବର୍ତ୍ତମାନ ଉପଲବ୍ଧି କଲେ । ସେ କାଳୀଙ୍କୁ ସ୍ୱୀକାର କରିଛନ୍ତି । ଅନ୍ୟପକ୍ଷରେ ଶ୍ରୀରାମକୃଷ୍ଣ ଆଜି ପରମ ଆନନ୍ଦରେ ଉତ୍‌ଫୁଲ୍ଲିତଯେ ତାଙ୍କର ପରମଶିଷ୍ୟ ନରେନ୍ଦ୍ର ଆଜି ଜଗଜ୍ଜନନୀ କାଳୀଙ୍କୁ ଗ୍ରହଣ କରିଛନ୍ତି, ଯାହାଙ୍କ ଦ୍ୱାରା ଭବିଷ୍ୟତର ଅନେକ କାର୍ଯ୍ୟ ନିର୍ବିଘ୍ନରେ ସମ୍ପାଦିତ ହୋଇପାରିବ । କେବଳ ସେତିକି ନୁହେଁ, ତାଙ୍କର ସାଧନାଲବ୍ଧ ଜ୍ଞାନ ମଧ୍ୟ ସେ ନରେନ୍ଦ୍ରଙ୍କୁ ଦେଇଦେବେ । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଆସନ୍ନଯୁଗରେ ବିଗତଯୁଗମାନଙ୍କ ଅପେକ୍ଷା ମନୁଷ୍ୟ ଏକ ସଂଶୟାଚ୍ଛନ୍ନ ସ୍ଥିତିରେ ପହଞ୍ଚିବ, ଯେଉଁଠି ବିଜ୍ଞାନ ଓ ଧର୍ମକୁ ନେଇ କେବଳ କଳହ ଉପୁଜିବ ନାହିଁ ବରଂ ଧର୍ମାନ୍ଧତା ଓ ଧର୍ମୋନ୍ମାଦନକୁ ଆଧାର କରି ଧର୍ମ-ଧର୍ମ ଓ ସମ୍ପ୍ରଦାୟ -ସମ୍ପ୍ରଦୟ ଭିତରେ ରକ୍ତାକ୍ତ ସଂଘର୍ଷ ଘଟିବ । ମାନବ ସମାଜ ସେତେବେଳେ ତ୍ରାହି ତ୍ରାହି ଡାକିବ । ଏହି ବିଷମ ପରିସ୍ଥିତିରୁ ମାନବସମାଜକୁ ରକ୍ଷାକରିବା ଲାଗି ଭାତବର୍ଷର ଏକ ଆଧାତ୍ମିକ ଭୂମିକାକୁ ଶ୍ରୀରାମକୃଷ୍ଣ ନିଜର ଦିବ୍ୟଦର୍ଶନରେ ଜଳଜଳ ଦେଖିପାରିଥିଲେ, ଯେଉଁଥିପାଇଁ ତାଙ୍କର ଏହି ସୀମିତ ଧରାପୃଷ୍ଠରେ ଅବତରଣ । ଭାରତର ହଜାର ହଜାର ବର୍ଷର ବୈଦିକ ପ୍ରାଚୀନ ତତ୍ତ୍ୱ "ସର୍ବଧର୍ମ ସମନ୍ୱୟ ସିଦ୍ଧାନ୍ତ", ଯାହା ସେ ସ୍ୱୟଂ ନିଜ ଜୀବନରେ ସାଧନା କରି "**ଯତୋମତ ତତୋ ପଥ**" ବୋଲି ପ୍ରମାଣିତ କରିଛନ୍ତି, ତାହା ସେ ନରେନ୍ଦ୍ରଙ୍କୁ ସମର୍ପଣ କରି ଧରାଧାମରୁ ବିଦାୟ ନେବେ ଏବଂ ତାଙ୍କର ଏହି ଆପ୍ତବାକ୍ୟ ନରେନ୍ଦ୍ର ସମଗ୍ର ବିଶ୍ୱରେ ଭଗିରଥଙ୍କ ଭଳି ପ୍ରଚାର ଓ ପ୍ରସାର କରିବେ ଯଦ୍ୱାରା ବିଜ୍ଞାନ ଓ ଧର୍ମ ତଥା ଧର୍ମ ଓ ଧର୍ମ ଭିତରେ କଳହ ଓ ସଂଘର୍ଷର ଅସାରତାକୁ ବୌଦ୍ଧିକ ଓ ବୈଜ୍ଞାନିକ ମାନବ ସହଜରେ ହୃଦୟଙ୍ଗମ କରି ସମାଜରେ ଶାନ୍ତି ଓ ମୈତ୍ରୀଭାବ ପ୍ରତିଷ୍ଠା କରିପାରିବେ ।

ସାଂସାରିକ ଦୃଷ୍ଟିକୋଣରୁ ଏକ ନିରକ୍ଷର, ଅପାଠୁଆ ଓ କାଙ୍ଗାଳ ଗୁରୁଙ୍କର ଆଶ୍ରିତ ବଟବୃକ୍ଷ ତଳେ, ଏକ ସଭ୍ୟ, ଉଚ୍ଚଶିକ୍ଷିତ, ଆଧୁନିକ, ଦାର୍ଶନିକ ଓ ବୈଜ୍ଞାନିକ ଯୁବକଙ୍କର ପ୍ରଶିକ୍ଷଣର ପାଠ୍ୟକ୍ରମ ଅଗ୍ରସର ହେଲା । ଦକ୍ଷିଣେଶ୍ୱର ଏକ ମୁକ୍ତ ନନ୍ଦନକାନନ । ଏଠାରେ ନ ଥିଲା ସଂସାରର ସ୍ୱାର୍ଥପରତା, ଲୋଭ, ମୋହ, ଭୟ, ଅହଙ୍କାର, ଦାମ୍ଭିକତା ଭଳି ଅନେକ ମାନବୀୟ ଅବଗୁଣ । ଶ୍ରୀରାମକୃଷ୍ଣଙ୍କର ଜ୍ଞାନାଲୋକରେ ସମଗ୍ର ଦକ୍ଷିଣେଶ୍ୱର ଉଦ୍‌ଭାସିତ । ଜ୍ଞାନ, ଭକ୍ତି,

Digitized by srujanika@gmail.com

ବିବେକ, ବୈରାଗ୍ୟର ଅମୃତଧାରା ଏଠାରେ ସଦା ପ୍ରବାହିତ । ନିର୍ଭୟରେ ଯିଏ ଯେତେ ଏଠାରେ ଅବଗାହନ କରିପାରେ । କେହି ଏଠାରେ କାହାକୁ ବାଧା ଦିଅନ୍ତି ନାହିଁ । ସେହି ପୁରାତନ ଋଷିମାନଙ୍କର ମନ୍ତ୍ର ''ଶୁଣ ଶୁଣ ହେ ଅମୃତସନ୍ତାନ; ଯେଉଁମାନେ ଦିବ୍ୟଧାମରେ ବାସ କରନ୍ତି, ସେମାନେ ମଧ ଶୁଣନ୍ତୁ । ଆମ୍ଭେ ସେହି ମହାନ ପୁରୁଷଙ୍କର ଦର୍ଶନ ପାଇଛୁ, ଯିଏ ସକଳ ଅନ୍ଧକାର ଓ ଅଜ୍ଞାନ ଉଦ୍ଧ୍ୱ'ରେ ଅବସ୍ଥିତ; ତାଙ୍କୁ ଜାଣିଲେ ତୁମେମାନେ ମଧ ମୃତ୍ୟୁକୁ ଅତିକ୍ରମ କରିବ'' ଦକ୍ଷିଣେଶ୍ୱର ମାଟି ଓ ପବନରେ ନିରନ୍ତର ଗୁଞ୍ଜରିତ ହେଉଥିଲା । ଏତାଦୃଶ ପୁଣ୍ୟ ଓ ପବିତ୍ର ପରିବେଶରେ ନରେନ୍ଦ୍ର ପରିବାରର ସମସ୍ତ ଦୁଃଶ୍ଚିନ୍ତା ତ୍ୟାଗକରି ଶ୍ରୀରାମକୃଷ୍ଣଙ୍କ ପଦପ୍ରାନ୍ତରେ ନିଜକୁ ସମର୍ପଣ କଲେ ।

ଶ୍ରୀରାମକୃଷ୍ଣଙ୍କ ଦ୍ୱାରା ନିର୍ମିତ ପଞ୍ଚବଟୀର ବୃକ୍ଷମାନଙ୍କର ଶୀତଳ ଛାୟାତଳେ ଉପବେଶନ କରି ନରେନ୍ଦ୍ରଙ୍କୁ ଧ୍ୟାନ କରିବାର ବିଭିନ୍ନ ମାର୍ଗ ଉପରେ ଶିକ୍ଷାପ୍ରଦାନ କଲେ । ସେ ଅତି ସ୍ପଷ୍ଟ ଭାଷାରେ ନରେନ୍ଦ୍ରଙ୍କୁ କହୁଥିଲେ, ''ନରେନ୍, ମୋର ପ୍ରତ୍ୟେକ ଉପଦେଶ ଅନ୍ଧଭାବରେ ଗ୍ରହଣ କରନାହିଁ । ସ୍ୱର୍ଣ୍ଣକାର ଯେପରି ସୁନାର ଶୁଦ୍ଧତାକୁ ବାରମ୍ବାର ପରୀକ୍ଷା ନିରୀକ୍ଷା କରି ପରଖି ନିଏ, ତୁମେ ସେପରି ମୋର ପ୍ରତ୍ୟେକ ଶିକ୍ଷାକୁ ପରଖି ନିଅ । ମୁଁ ତୁମର ପ୍ରତ୍ୟେକ ପରୀକ୍ଷା ସ୍ୱାଗତ କରିବି ବୋଲି ପ୍ରତିଶ୍ରୁତି ଦେଉଛି । ଶ୍ରୀରାମକୃଷ୍ଣ ଜାଣିଛନ୍ତି ଯେ ନରେନ୍ଦ୍ରଙ୍କ ଭିତରେ ରହିଛି ସ୍ୱୟଂ ଶିବଙ୍କର ସ୍ୱଭାବ ଓ ଚରିତ୍ର । ତାଙ୍କର ଏଭଳି ମନର କଥା ଅନ୍ୟ ଭକ୍ତମାନେ ଶୁଣି ଆଚମ୍ବିତ ହେଉଥିଲେ । ଏକଦା ନରେନ୍ଦ୍ରଙ୍କର ଉପସ୍ଥିତିରେ ସେ ତାଙ୍କ ଆଡ଼କୁ ହାତଠାରି କହିଲେ, ''ଦେଖ ଦେଖ ନରେନ୍‌କୁ । ଓହୋଃ, ତା'ର ଅନ୍ତର୍ଦୃଷ୍ଟିର କିପ୍ରକାର କ୍ଷମତା !! ଦୀପ୍ତିମନ୍ତ ଜ୍ଞାନର କୂଳକିନାରା ହୀନ ମହାସାଗର ସଦୃଶ ମୋର ନରେନ୍ । ଜ୍ଞାନର ତେଜ ଏଭଳି ପ୍ରଚଣ୍ଡ ଆଲୋକରେ ଉଦ୍‌ଭାସିତ, ସ୍ୱୟଂ ମହାମାୟା ବି ଦଶଫୁଟ ଦୂରରୁ କମ ବ୍ୟବଧାନରେ ତାକୁ ଧରିପାରୁ ନାହାନ୍ତି । ତା' ତେଜର ହ୍ରାସ ଏବଂ ସାମାନ୍ୟ ମାୟାରେ ତାକୁ ଆଚ୍ଛନ୍ନ କରିବା ଲାଗି ମୁଁ ମା'ଙ୍କୁ ପ୍ରାର୍ଥନା କରୁଛି, ଯାହାଫଳରେ ସେ ଜଗତର ମଙ୍ଗଳ ନିମନ୍ତେ କାର୍ଯ୍ୟ କରିପାରିବ । ନଚେତ୍ ସେ ନିରନ୍ତର ଶାଶ୍ୱତ ଧ୍ୟାନରେ ମଗ୍ନ ହୋଇ ସଂସାର କାର୍ଯ୍ୟ ଭୁଲିଯିବ । ସେ ଧ୍ୟାନ ପୁତ୍ର । ସତ୍-ଚିତ୍-ଆନନ୍ଦ ପରାତ୍ପର ବ୍ରହ୍ମ ଅଭିମୁଖେ ତା'ର ମନ ସଦା ଧାବିତ ।

- ୧ -

*''ରେ ମନ ଅଯଥାରେ ସେହି ପରମସତ୍ତାକୁ କାହିଁକି ଖୋଜୁଛୁ, ତୋର ଅନ୍ୱେଷଣ ଅନ୍ଧକାରଗୃହରେ ପାଗଳର ଅନ୍ୱେଷଣ ସହ ସମାନ । ଷଡ଼ଦର୍ଶନ ମଧ ତାଙ୍କର ଟେର୍ ପାଇ ନାହିଁ । ନା ତନ୍ତ୍ର ନା ବେଦ ତାଙ୍କର ଖବର ପାଇଛି । କିନ୍ତୁ ସେହି ପରମସତ୍ତା କେବଳ ପ୍ରେମ ଓ ଭକ୍ତିରେ ବନ୍ଧା ।''*

ପଞ୍ଚବଟୀ ଉଦ୍ୟାନରେ ଗୁରୁ-ଶିଷ୍ୟ ଉପବେଶନ କରି ଯେଉଁସବୁ ଆଧ୍ୟାତ୍ମିକ ତତ୍ତ୍ୱ ଓ ସାଧନାର ରହସ୍ୟାତ୍ମକ ଆଲୋଚନାରେ ମଗ୍ନରହିଥିବେ, ତାହା କେବଳ ପତିତପାବନୀ ଗଙ୍ଗାର

Digitized by srujanika@gmail.com

କଳକଳ ନାଦରେ ପ୍ରତିଧ୍ୱନିତ ହୋଇ ଅନନ୍ତ ଗଗନକୁ ଉଠିଯାଇଥିବ ସିନା, ଅନ୍ୟ କେହି ସେସବୁ ଶୁଣିବାର ସୁଯୋଗ ପାଇ ନ ଥିବେ । ପ୍ରଶିକ୍ଷଣର ବିଷୟବସ୍ତୁ ଦୁହିଁଙ୍କ ମଧ୍ୟରେ ସୀମିତ ଥିଲା । କିନ୍ତୁ ଧ୍ୟାନାଭ୍ୟାସ ସମୟରେ ନରେନ୍ଦ୍ରଙ୍କର ମନ କିନ୍ତୁ ନିକଟସ୍ଥ ଝୋଟ କାରଖାନାର ସାଇରନ୍ ଯୋଗୁଁ ଚହଲି ଯାଉଥିଲା ଏବଂ ସେ ଯେତେ ଚେଷ୍ଟାକଲେ ମଧ୍ୟ ମନକୁ ଏକାଗ୍ର କରିପାରୁ ନ ଥିଲେ । ସେ ବିଚଳିତ ହୋଇ ଶ୍ରୀରାମକୃଷ୍ଣଙ୍କ ସମ୍ମୁଖରେ ପ୍ରକାଶ କଲେ । ଶ୍ରୀରାମକୃଷ୍ଣ କହିଲେ, ''ବାବା, ତୁମେ ଆଦୌ ବିଚଳିତ ହୁଅନାହିଁ । ସେହି ସାଇରନ୍ ଗର୍ଜନ ଉପରେ ତୁମର ଧ୍ୟାନ କେନ୍ଦ୍ରିଭୂତ କର, ଦେଖିବ ତୁମର ମନ ଆପଣାଛାଏଁ ଏକାଗ୍ର ହୋଇଯିବ ।'' ନରେନ୍ଦ୍ର ତାହା ହିଁ କଲେ, କିନ୍ତୁ ସଫଳ ହେଲେ । ଧ୍ୟାନ ସମୟରେ ନିଜର ଦେହଜ୍ଞାନ ବିସ୍ମରଣ ହେବାପାଇଁ ବାରମ୍ବାର ଚେଷ୍ଟା କଲେ, କିନ୍ତୁ ସେ ଦେଖିଲେ ଯେ ତାଙ୍କର ଦେହଜ୍ଞାନ ଧ୍ୟାନାବସ୍ଥାରେ ସମୂଳେ ବିଲୋପିତ ହେଉନାହିଁ । ପୁନଶ୍ଚ ଗୁରୁଙ୍କ ଦ୍ୱାରସ୍ଥ ହେଲେ । ଶ୍ରୀରାମକୃଷ୍ଣ ବୁଝିଗଲେ ନରେନ୍ଦ୍ରଙ୍କର ଗଭୀର ଧ୍ୟାନାଭିମୁଖୀ ମନର ଗତିକୁ । ସେ ତାଙ୍କର ଅଦ୍ୱୈତ ବେଦାନ୍ତବାଦୀ ପରମଯୋଗୀ ଗୁରୁ ତୋତାପୁରୀଙ୍କଠାରୁ ମନ ନିଶ୍ଚଳ କରିବାର ଯେଉଁ ଅମୋଘ ଉପାୟ ଶିକ୍ଷା କରିଥିଲେ, ତାହା ସେ ନରେନ୍ଦ୍ରଙ୍କୁ ପ୍ରଦାନ କଲେ । ନରେନ୍ଦ୍ରଙ୍କର ଭ୍ରୂଲତା ମଧ୍ୟବର୍ତ୍ତୀ ସ୍ଥାନରେ ନିଜର ମୁନିଆ ନଖକୁ ଖୁବ୍ ଜୋର୍‌ରେ ଫୋଡ଼ିଦେଇ କହିଲେ, ''ବର୍ତ୍ତମାନ ଏହି ନଖାଘାତ ଯନ୍ତ୍ରଣାଦାୟକ ଜାଗାରେ ମନ ସ୍ଥିର କର ।'' ଉକ୍ତ ଉପାୟ ଅବଲମ୍ବନ କରି ନରେନ୍ଦ୍ର ଧ୍ୟାନର ସରଳ ମାର୍ଗ ଆବିଷ୍କାର କରିପାରିଲେ ଏବଂ ଧ୍ୟାନାବସ୍ଥାରେ ତାଙ୍କର ଦେହ-ଜ୍ଞାନ ସମୂଳେ ବିଲୋପିତ ହେଲା ।

କେବଳ ଧ୍ୟାନ ଓ ଧାରଣା ପଞ୍ଚବଟୀରେ ସେ ଅଭ୍ୟାସ କରୁ ନଥିଲେ ବରଂ ଅନ୍ୟ ସାଥୀମାନଙ୍କ ସହ ବିଭିନ୍ନ ପ୍ରକାର କ୍ରୀଡ଼ା କଉତୁକରେ ବ୍ୟସ୍ତ ରହୁଥିଲେ । କେତେବେଳେ ଗଛ-ବୃକ୍ଷରେ ଚଢ଼ି ଖେଳୁଥିଲେ ତ, କେତେବେଳେ ଥଟ୍ଟା ପରିହାସରେ ସମୟ ବିତାଉ ଥିଲେ । ତାଙ୍କର ବାଳକ ସ୍ୱଭାବ ଗୁଣ ଏହି ପଞ୍ଚବଟୀରେ ବେଶ୍ ପ୍ରକଟିତ ହେଉଥିଲା । ଡିଆଁ କୁଦାରେ ପଞ୍ଚବଟି ହୁଲୁସ୍ଥୁଲ ହେଉଥିଲା । ବେଳେବେଳେ ସାଥୀମାନଙ୍କ ଗହଣରେ ବଣଭୋଜିର ଆୟୋଜନ ମଧ୍ୟ କରୁଥିଲେ । ଶ୍ରୀରାମକୃଷ୍ଣ ବି ସେମାନଙ୍କ ଖେଳକୁଦ ଅତି ପ୍ରଶଂସାସୂଚକ ଚକ୍ଷୁରେ ଉପଭୋଗ କରି ଆମୋଦିତ ହେଉଥିଲେ । ଏକଦା ସେ ଦେଖିଲେ ଯେ ବଣଭୋଜି କାର୍ଯ୍ୟକ୍ରମରେ ନରେନ୍ଦ୍ର ନିଜେ ଖାଦ୍ୟ ପ୍ରସ୍ତୁତ କରିଛନ୍ତି; ଖାଦ୍ୟ ସେଠାରେ ସେବନ କରିବାକୁ ତାଙ୍କର ମନ ବଳିଲା । କିନ୍ତୁ ନରେନ୍ଦ୍ର ଜାଣିଛନ୍ତିଯେ ଶ୍ରୀରାମକୃଷ୍ଣ କେବଳ ବ୍ରାହ୍ମଣମାନଙ୍କ ଦ୍ୱାରା ରନ୍ଧିତ ଖାଦ୍ୟ ସେବନ କରନ୍ତି । ତେଣୁ କାଳୀ ମନ୍ଦିରରେ ଭୋଜନ କରିବାକୁ ସେ ତାଙ୍କୁ ଅନୁରୋଧ କଲେ । କିନ୍ତୁ ଶ୍ରୀରାମକୃଷ୍ଣ ତାଙ୍କର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି କହିଲେ, ''ତୋ ଭଳି ଜଣେ ଶୁଦ୍ଧ ଆତ୍ମାଙ୍କ ଦ୍ୱାରା ପ୍ରସ୍ତୁତ ଖାଦ୍ୟ ସେବନ କରିବାରେ କୌଣସି ତ୍ରୁଟି ମୁଁ ଦେଖୁନାହିଁ ।'' ନରେନ୍ଦ୍ରଙ୍କର ବାରମ୍ବାର ବାରଣ ସତ୍ତ୍ୱେ, ସେ ସେମାନଙ୍କର ବଣଭୋଜିରେ ସାମିଲ୍ ହୋଇ ମହାନନ୍ଦରେ ଖାଦ୍ୟଗ୍ରହଣ କଲେ ।

ନରେନ୍ଦ୍ରଙ୍କୁ ପାଇବାପରେ ଶ୍ରୀରାମକୃଷ୍ଣ ତାଙ୍କର ଦିବ୍ୟଦର୍ଶନରେ ନରେନ୍ଦ୍ରଙ୍କ ଭିତରେ ନିହିତ ଦିବ୍ୟତ୍ୱ ଦେଖି ବୁଝିପାରିଥିଲେଯେ ନରେନ୍ଦ୍ର ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଯାହାଙ୍କ ଭିତରେ

Digitized by srujanika@gmail.com

ରହିଛି ଅଠରଟି ଅସାଧାରଣ ଶକ୍ତି । ତାଙ୍କ ଭାଷାରେ : ନରେନ୍ଦ୍ର ଅଠରଟି ଶକ୍ତିର ସମାହାର । ଅଠରଟି ଶକ୍ତି ଭିତରୁ ଗୋଟିଏ କିମ୍ବା ଦୁଇଟି ଶକ୍ତିର ଜଣେ ମନୁଷ୍ୟ ଯଦି ଅଧିକାରୀ ହେବ, ତେବେ ସମଗ୍ର ବିଶ୍ୱରେ ସେ ଖ୍ୟାତି ଅର୍ଜନ କରିପାରିବ । କିନ୍ତୁ ସମସ୍ତ ଅଶୁଦ୍ଧତା ଓ ଅପବିତ୍ରତାକୁ ଦଗ୍ଧିଭୂତ କରି ନରେନ୍ଦ୍ର ପାଉଁସରେ ପରିଣତ କରିପାରିବ । କାହିଁକିନା ନରେନ୍ଦ୍ର ହେଉଛି ଗର୍ଜନକାରୀ ଜ୍ୱଳନ୍ତ ହୁତାସନ । ଏପରିକି ନରେନ୍ ଗୋମାଂସ ଓ ଶୂକର ମାଂସ ଭକ୍ଷଣ କଲେ, ତା' ଭିତରେ ବିରାଜିତ ପ୍ରଚଣ୍ଡ ଆଧ୍ୟାତ୍ମିକ ଶକ୍ତି କୌଣସି ଭାବରେ ପ୍ରଭାବିତ ହେବ ନାହିଁ ।

ଶ୍ରୀରାମକୃଷ୍ଣ ଭାରତୀୟ ଧାର୍ମିକ ପରମ୍ପରାର ନିଷ୍ଠାବାନ ଅନୁଗାମୀ । ସେ ଭଗବାନବୁଦ୍ଧଙ୍କ ଭଳି ତର୍କ ବ୍ୟବହାର କରୁ ନ ଥିଲେ । କାରଣ ସେ ଜାଣିଥିଲେ, ବିଶୁଦ୍ଧ ଆଧ୍ୟାତ୍ମିକତା ଭାଷାରେ ବର୍ଣ୍ଣିତ ହୋଇପାରିବ ନାହିଁ । କିନ୍ତୁ ନରେନ୍ଦ୍ରଙ୍କର ତର୍କ ଓ ସମାଲୋଚନା ଉପରେ ସେ ପ୍ରତିବନ୍ଧ ଲାଗିକରି ନ ଥିଲେ, ବରଂ ତର୍କ କରିବାକୁ ସେ ଉତ୍ସାହିତ କରୁଥିଲେ । ଏକଦା ନିଜର ସାଥୀମାନଙ୍କସହ ଦକ୍ଷିଣେଶ୍ୱରରେ ପ୍ରଚଣ୍ଡ ତର୍କରେ ନରେନ୍ଦ୍ର ମଗ୍ନ ରହିଥିବାର ସେ ଦେଖିଲେ । ଈଶ୍ୱର ସାକାର ନା ନିରାକାର ଏବଂ ଅବତାରବାଦ ସତ୍ୟ ନା ମିଥ୍ୟା ବିଷୟବସ୍ତୁ ଉପରେ ସେମାନଙ୍କର ଆଲୋଚନା କେନ୍ଦ୍ରିଭୂତ ଥିଲା । ନରେନ୍ଦ୍ର ଶାସ୍ତ୍ର ଓ ଦର୍ଶନକୁ ଆଧାର କରି ପ୍ରଚଣ୍ଡ ତର୍କରେ ଥିଲେ ବ୍ୟସ୍ତ । ଇତ୍ୟବସରରେ ଶ୍ରୀରାମକୃଷ୍ଣ ସେଠାରେ ଉପନୀତ ହୋଇ ସେମାନଙ୍କର ଯୁକ୍ତିତର୍କ ଶୁଣିଲେ । ନରେନ୍ଦ୍ରଙ୍କର ଅକାଟ୍ୟ ଯୁକ୍ତି ଶୁଣି ଅବଶ୍ୟ ସେ କିଛି କହିଲେ ନାହିଁ କିନ୍ତୁ ସୁଲଳିତ କଣ୍ଠରେ ଭଜନଟିଏ ଗାନ କଲେ ଯାହାର ମର୍ମାର୍ଥ ନରେନ୍ଦ୍ର ସମେତ ସମବେତ ବନ୍ଧୁମାନଙ୍କୁ ବିସ୍ମିତ କଲା । ''ରେ ମନ ଅଯଥାରେ ସେହି ପରମସତ୍ତାକୁ କାହିଁକି ଖୋଜୁଛୁ, ତୋର ଅନ୍ୱେଷଣ ଅନ୍ଧକାରଗୃହରେ ପାଗଳର ଅନ୍ୱେଷଣ ସହ ସମାନ । ଷଡ୍‌ଦର୍ଶନ ମଧ୍ୟ ତାଙ୍କର ଟେର୍ ପାଇ ନାହିଁ । ନା ତନ୍ତ୍ର ନା ବେଦ ତାଙ୍କର ଖବର ପାଇଛି । କିନ୍ତୁ ସେହି ପରମସତ୍ତା କେବଳ ପ୍ରେମ ଓ ଭକ୍ତିରେ ବନ୍ଧା ।''

ଭୀଷଣ ତର୍କାଲୋଚନା ଲକ୍ଷ୍ୟ କରି ଶ୍ରୀରାମକୃଷ୍ଣ କହୁଛନ୍ତି, ''ତୁମେ କ'ଣ ତାଙ୍କୁ ଜ୍ଞାନ ଓ ବୁଦ୍ଧି ସାହାଯ୍ୟରେ ପାଇପାରିବ । ଜ୍ଞାନ ଗର୍ବିତ ମନୁଷ୍ୟ ଗୃଧ୍ରପକ୍ଷୀ ସହ ସମାନ । ବହୁ ତତ୍ତ୍ୱ ଓ ସିଦ୍ଧାନ୍ତ ଦ୍ୱାରା ଈଶ୍ୱରଙ୍କୁ ଜାଣିବା ପାଇଁ ସେମାନେ ଚେଷ୍ଟା କରନ୍ତି । ସେମାନଙ୍କଠାରେ ଶୁଦ୍ଧମନ ଓ ଚେତନା ନ ଥାଏ । ଏହିଭଳି ଯୁକ୍ତି ମାଧ୍ୟମରେ ସେମାନେ ଅବଶ୍ୟ ନାମ, ଯଶ ଓ ପ୍ରତିଭା ସଂସାରରେ ଲାଭ କରିପାରନ୍ତି, କିନ୍ତୁ ଈଶ୍ୱରଙ୍କୁ ପାଆନ୍ତି ନାହିଁ । ଗୃଧ୍ରପକ୍ଷୀ ଆକାଶର ବହୁ ଊର୍ଦ୍ଧ୍ୱରେ ଉଡ଼େ, କିନ୍ତୁ ତା'ର ନଜର ଥାଏ ନିମ୍ନ ଦେଶରେ ପଡ଼ିଥିବା ପଚାସଢ଼ା ଶବ ଉପରେ । ଠିକ୍ ସେଭଳି ଜ୍ଞାନୀ ଓ ପଣ୍ଡିତମାନେ ଶାସ୍ତ୍ର ଓ ଦର୍ଶନର ଦୁହାଇଦେଇ ଈଶ୍ୱରଙ୍କ ସମ୍ବନ୍ଧରେ ବହୁ ଉପଦେଶ ଶୁଣାନ୍ତି, କିନ୍ତୁ ସେମାନଙ୍କର ମନ କାମିନୀ ଓ କାଞ୍ଚନ ଭିତରେ ସର୍ବଦା ରହିଥାଏ ।'' କିନ୍ତୁ ନରେନ୍ଦ୍ର ଯୁକ୍ତିରେ ପରାଜୟ ସ୍ୱୀକାର କରିବାର ପାତ୍ର ନୁହନ୍ତି । ସେ ଯେତେବେଳେ ଅନ୍ଧବିଶ୍ୱାସ ଉପରେ କହିବାକୁ ଆରମ୍ଭ କଲେ, ସେତେବେଳେ ଶ୍ରୀରାମକୃଷ୍ଣ କହିଲେ, ''ନରେନ୍, ତୁ ଅନ୍ଧବିଶ୍ୱାସର

Digitized by srujanika@gmail.com

ଅର୍ଥ କ'ଣ ବୁଝୁଛୁ ? ବିଶ୍ୱାସର କ'ଣ ଆଖି ଅଛି କି, ଯାହାଫଳରେ ତୁମେ ତାହାକୁ ଅନ୍ଧ କହିପାରିବ ? ବିଶ୍ୱାସ ସର୍ବଦା ହିଁ ଅନ୍ଧ । ତୁମେ ତା'କୁ କେବଳ ବିଶ୍ୱାସ କିମ୍ବା ଜ୍ଞାନ କହିପାର । ବିଶ୍ୱାସକୁ ଶ୍ରେଣୀଭୁକ୍ତ କରି, ଗୋଟିଏ ବିଶ୍ୱାସର ଆଖି ଅଛି, ଅନ୍ୟଟିର ନାହିଁ, ଏମିତି ତୁମେ କହିପାରିବ ନାହିଁ ।''

ଶ୍ରୀରାମକୃଷ୍ଣଙ୍କର ଏତାଦୃଶ ସ୍ପଷ୍ଟୋକ୍ତି ଶୁଣି ନରେନ୍ଦ୍ର ହୃଦୟଙ୍ଗମ କଲେ ଯେ ବାସ୍ତବରେ ଆତ୍ମୋପଲବ୍ଧି ହିଁ ପ୍ରକୃତ ଧର୍ମ । ମଣିଷ ନିଶ୍ଚୟ ଭଗବାନଙ୍କୁ ଦର୍ଶନ କରିପାରିବ । ଈଶ୍ୱରଙ୍କ ସମ୍ବନ୍ଧରେ ଅବଶ୍ୟ ଭାବିବା ଭଲ, କିନ୍ତୁ ତାଙ୍କର ଦର୍ଶନ ଅତ୍ୟୁତ୍ତମ । ଶ୍ରୀରାମକୃଷ୍ଣ ଈଶ୍ୱର ଲାଭର ବିଭିନ୍ନ ପଥ ସମ୍ବନ୍ଧରେ ନିଜର ଅଙ୍ଗେ ନିଭାଇଥିବା ଅନୁଭୂତି ବର୍ଣ୍ଣନା କରି ନରେନ୍ଦ୍ରଙ୍କୁ କହିଥିଲେ, ''ଦେଖ୍ ନରେନ୍ । ପିମ୍ପୁଡ଼ିର ପଦଧ୍ୱନି ଈଶ୍ୱର ଶୁଣନ୍ତି । ତୁ ଆନ୍ତରିକତାସହ ପ୍ରାର୍ଥନା କର ସେ ନିଶ୍ଚୟ ଶୁଣିବେ । କିନ୍ତୁ ସେଥିପାଇଁ କାମିନୀ ଓ କାଞ୍ଚନ ତ୍ୟାଗ ଆବଶ୍ୟକ । ଆନ୍ତରିକତା ନ ରହିଲେ କିଛି ସମ୍ଭବ ନୁହେଁ । ଯେତିକି ସାଧନା ମୁଁ ଜୀବନରେ କରିଛି, ତାହାର ଗୋଟିଏ ଭାଗ ତୁ କର, ନିଶ୍ଚୟ ଈଶ୍ୱରଙ୍କୁ ଦର୍ଶନ କରି ପାରିବୁ । ତୁ ସବୁବେଳେ ପ୍ରଶ୍ନ କରୁଛୁ ଯେ ଈଶ୍ୱର ସାକାର ନା ନିରାକାର । ସେ ହି ଉଭୟ, ତଥାପି ସେ ଉଭୟରୁ ମଧ୍ୟ ଅତୀତ । ସେ ବୁଦ୍ଧି କିମ୍ବା ଧାର୍ମିକତତ୍ତ୍ୱର ବହୁ ଊର୍ଦ୍ଧ୍ୱରେ, ସେ ମଧ୍ୟ ଭକ୍ତର ମାନସିକତା ଅନୁସାରେ ରୂପ ଗ୍ରହଣ କରିପାରିବେ । ସେ ଭାଷାତୀତ । ପୁସ୍ତକ ଭିତରେ ତାଙ୍କୁ ନା ତୁମେ ପାଇପାରିବ, ନା ମନ୍ଦିରର ଚାରିକାନ୍ଥ ଭିତରେ । ମୂର୍ତ୍ତିପୂଜା ଠିକ୍ ନା ଭୁଲ ଉପରେ ତୁ ଅନେକ ତର୍କ କରୁଛୁ । ବାବା, ତୁ ଗୋଟିଏ କଥା ମନରେ ରଖ - ଯିଏ ଯେପରି ଭାବରେ ତାଙ୍କୁ ଦେଖିବାକୁ ଚାହିଁବ, ସେ ସେପରି ଭାବରେ ତାଙ୍କ ନିକଟରେ ପ୍ରକଟିତ ହେବେ । କେବଳ ସେଥିପାଇଁ ଡାକିବା ଭଳି ଡାକିବା ଦରକାର ।''

ଈଶ୍ୱରଙ୍କ ସମ୍ବନ୍ଧରେ ନରେନ୍ଦ୍ରଙ୍କର ସବୁ ପ୍ରଶ୍ନର ଉତ୍ତର ଦେବା ନିମନ୍ତେ ଶ୍ରୀରାମକୃଷ୍ଣ ସଦା ତତ୍ପର ଥିଲେ । ନରେନ୍ଦ୍ରଙ୍କର ପୁସ୍ତକଭିତ୍ତିକ ଜ୍ଞାନ ତାଙ୍କର ଆତ୍ମୋପଲବ୍ଧି ନିକଟରେ ହାର ମାନୁଥିଲା । ଏହି କାଙ୍ଗାଳ ସନ୍ଥଙ୍କର ଅଗ୍ନିବର୍ଷୀ ଆଲୋକ ତେଜରେ ତାଙ୍କର ସମସ୍ତ ଜ୍ଞାନ ମଳିନ ପଡ଼ିଯାଇଥିଲା । ଶ୍ରୀରାମକୃଷ୍ଣ ତାଙ୍କର ସମସ୍ତ ସଂଶୟ ନାଶ କରି ଦିନେ ଏକାନ୍ତରେ କହିଲେ, ''ନରେନ୍, ଏହି ମା ଭବତାରିଣୀ କାଳୀମନ୍ଦିର ଓ ପଞ୍ଚବଟୀରେ ମୁଁ ବହୁ ସାଧନା କରିଛି । ହିନ୍ଦୁ ଧର୍ମର ବୈଷ୍ଣବ, ଶାକ୍ତ, ଶୈବ, ତନ୍ତ୍ର, ସୌରିକ ଭଳି ସମସ୍ତ ପଥ ଜୀବନରେ ସାଧିତ କରି ମୁଁ 'ଏକ' ଈଶ୍ୱରଙ୍କୁ ଦେଖିଛି । କେବଳ ସେତିକି ନୁହେଁ, ଖ୍ରୀଷ୍ଟଧର୍ମ, ଇସଲାମ ଧର୍ମ, ବୌଦ୍ଧ, ଜୈନ ଧର୍ମ ପଥରେ ପଥିକଟିଏ ହୋଇ ସାଧନା କରିଛି, କିନ୍ତୁ ପାଇଛି କ'ଣ ତୁମେ ଜାଣିଛ - ଏକ ଈଶ୍ୱର, କିନ୍ତୁ ବହୁ ପଥ, ଯେତେ ମତ, ସେତେ ପଥ । ଏକ ପରମସତ୍ୟ ପରମାତ୍ମାଙ୍କୁ ପାଇବାର ଅନେକ ପଥ ରହିଛି । ଯିଏ ଯେଉଁ ପଥରେ ଅନୁଗାମୀ ହୋଇପାରେ, ସମସ୍ତେ ସେହି ଏକ ଈଶ୍ୱର - ସେହି ଏକ ଓ ଅଭିନ୍ନ ପରମସତ୍ୟ ପାଖରେ ଉପନୀତ ହୁଅନ୍ତି ।

*Digitized by srujanika@gmail.com*

- ୨ -

*ଜୀବେ ଦୟା ! ଜୀବେ ଦୟା ! ଭାକ୍ ଶାଳା । ତୁ ନିର୍ବୋଧଟାଏ । ପୃଥିବୀ ପୃଷ୍ଠରେ ବିଚରଣ କରୁଥିବା ତୁ ଏକ ନଗଣ୍ୟ ପୋକଟାଏ । ତୁ ପୁଣି ଅନ୍ୟକୁ ଦୟା କରିବୁ । ଶାଳା, ଦୟା ଦେଖାଇବାକୁ ତୁ କିଏ ? ନା - ନା... ଏହା ହୋଇପାରିବ ନାହିଁ । ଜୀବେ ଦୟା ନୁହେଁ, କହ ଶିବ ଜ୍ଞାନେ ଜୀବ ସେବା ।*

ଶ୍ରୀରାମକୃଷ୍ଣଙ୍କର ଉଦାର ମନୋଭାବ ପରିଲକ୍ଷିତ କରି ନରେନ୍ଦ୍ରଙ୍କ ହୃଦୟରେ ଶତସହସ୍ର ପ୍ରଶଂସାସୂଚକ ମୁଖ ଉନ୍ମୁଖ ହେବାକୁ ଲାଗିଲା । ସତରେ କିଏ ଏହି ମହାପୁରୁଷ ! ପାଠଶାଠ ନାହିଁ । ସାଧାରଣତଃ ରକ୍ଷଣଶୀଳ ପରିବାରର ବ୍ରାହ୍ମଣ ନିଜ ନିଜର ମାର୍ଗ ଅନୁସାରେ ପୂଜା ପଦ୍ଧତିରେ ବିଶ୍ୱାସ ରଖି ଅନ୍ୟର ପୂଜାପଦ୍ଧତି ପ୍ରତି ନାଶା କୁଞ୍ଚନ କରନ୍ତି । କିନ୍ତୁ ଏହି ମହାପୁରୁଷ ବ୍ୟତିକ୍ରମ, ସତରେ ସେ ଜଣେ ଜ୍ଞାନସିଦ୍ଧ ମଣିଷ । ନରେନ୍ଦ୍ର ବିସ୍ମିତ ଚକ୍ଷୁରେ ଅବଲୋକନ କରିଥିବାବେଳେ ଶ୍ରୀରାମକୃଷ୍ଣଙ୍କ ଅଧରରେ ଲହରିତ ହେଉଥିଲା, ସ୍ମିତହାସ୍ୟ ଓ ତାଙ୍କର ଚକ୍ଷୁଯୁଗଳ ଅର୍ଦ୍ଧନମିତ ହେଉଥିଲା, ଭାବସମାଧି ଉନ୍ମେଷରେ । ସେ ମନ୍ଦମନ୍ଦ ହସି କହିଲେ, "ନରେନ୍ ! ଯେଉଁମାନେ ଧର୍ମ ନାଁରେ ନିଜର ଭାବାବେଗ ସନ୍ତୁଷ୍ଟ କରନ୍ତି, ସେମାନେ କେବେ ବି ଆଧ୍ୟାତ୍ମିକ ସାଧନା ଆପଣେଇ ପାରିବେ ନାହିଁ । ହିନ୍ଦୁଧର୍ମରେ ବିଭିନ୍ନ ସାଧନାର ପଥ ରହିଛି । ମନୁଷ୍ୟ ନିଜ ନିଜର ସ୍ୱଭାବ ଓ ମାନସିକତା ଅନୁସାରେ ସାଧନାର ପଥଟିଏ ବାଛି ନିଏ । ଅବଶ୍ୟ ଜଣକର ସାଧନାର ପଥ ଅନ୍ୟକୁ ଭଲ ଲାଗି ନ ପାରେ । ଶୁଣ ନରେନ୍, ତୁ ସେମାନଙ୍କ କଥା ଶୁଣନାହିଁ । ମୋତେ ଦେଖ, ମୁଁ ସମଗ୍ର ନାରୀଜାତିକୁ ମା ଭଳି ସମ୍ମାନ କରେ । ଏହା ସବୁଠାରୁ ପବିତ୍ର ଚିନ୍ତା ଓ ଭାବନା । ଏଥିରେ କୌଣସି ପତନର ଭୟ ନ ଥାଏ । ଜଣେ ନାରୀକୁ ନିଜର ଭଗ୍ନୀ ସଦୃଶ ଭାବିବା ବି ମନ୍ଦ ନୁହେଁ । କିନ୍ତୁ ନାରୀକୁ ଅନ୍ୟ ଭାବନାରେ ଭାବିବା ଭୟଙ୍କର । ଏଭଳି ଭାବନାରେ ପବିତ୍ରତା ଅକ୍ଷୁର୍ଣ୍ଣ ରଖିବା କଷ୍ଟସାଧ୍ୟ । ଭଗବାନଙ୍କୁ ଲାଭ କରିବାର ବହୁ ପଥ ରହିଛି । ସେଗୁଡ଼ିକ ମଧ୍ୟରୁ କେତେକ ମେହେନ୍ତରର ଭଳି ପଛପଟ ଦ୍ୱାର ଦେଇ ଗମନ କରିବା ସଦୃଶ । ଯଦି ଭଗବାନଙ୍କୁ ପାଇବ ତ ମୁଖ୍ୟ ଦ୍ୱାର ଦେଇ ଚାଲିଯାଅ ।"

ଏତକ କହୁ କହୁ ଶ୍ରୀରାମକୃଷ୍ଣ ଅତୀବ ଉଲ୍ଲସିତ ହୋଇପଡ଼ିଲେ । ସେ ନିଜର ଅନୁଭୂତି ବର୍ଣ୍ଣନା କରି ପୁନଶ୍ଚ କହିଲେ, "ବାବା, ଅନେକ ମତ ଓ ପଥ ରହିଛି, ମୋତେ ଆଜି ଭଲ ଲାଗୁନାହିଁ, ବିଭିନ୍ନ ପଥ ଓ ମତାବଲମ୍ବୀ ପରସ୍ପର ଖାଲି ଅଯଥାରେ କଳହ କରୁଛନ୍ତି । ତୁ ମୋର ଅତି ଆପଣାର । ଏଠାରେ କେହି ବାହାର ଲୋକ ନାହାନ୍ତି । ମୁଁ ତୋତେ ଗୋଟିଏ କଥା ଏଠାରେ କହୁଛି - ସେ ହିଁ ଏକମାତ୍ର ପୂର୍ଣ୍ଣ ଏବଂ ମୁଁ ତାଙ୍କର ଅଂଶ ମାତ୍ର । ସେ ହିଁ ପ୍ରଭୁ, ମୁଁ ତାଙ୍କର ଦାସ, ବେଳେବେଳେ ମୁଁ ଭାବେଯେ ସେ ଇ ମୁଁ ଏବଂ ମୁଁ ଇ ସେହି ।" ନରେନ୍ଦ୍ରଙ୍କର ଚକ୍ଷୁଦ୍ୱୟ ବିସ୍ମୟରେ ହେଲା ପ୍ରସାରିତ, ସେ ଅପଲକ ନୟନରେ ଚାହିଁଲେ ଶ୍ରୀରାମକୃଷ୍ଣଙ୍କୁ, ସତେକି ତାଙ୍କ ଶରୀରର ପ୍ରତ୍ୟେକ କୋଷ ଏବଂ ଅଣୁ ପରମାଣୁ ତନ୍ତ୍ରୀ ଭିତରେ ଏକ ପ୍ରକମ୍ପନ ଖେଳିଯାଉଛି । ବ୍ରାହ୍ମସମାଜର

Digitized by srujanika@gmail.com

ସମସ୍ତ ଶିକ୍ଷା ଓ ସଂସ୍କାର ଯାହା ତାଙ୍କର ମନ ଓ ହୃଦୟକୁ ଆଚ୍ଛନ୍ନ କରିଥିଲା, ସବୁତକ ସତେକି ଶ୍ରୀରାମକୃଷ୍ଣଙ୍କର ଆଧାତ୍ମିକ କମ୍ପନରେ ମିଳେଇ ଯାଉଛି ଏବଂ ସ୍ୱେଦ ହୋଇ ବହିଯାଉଛି ସମଗ୍ର ଶରୀରରେ । ''ଆରେ ଶାଲା ପାପୀ ପାପୀ ନିଜକୁ କହନାରେ, କହିଲେ ତୁ ପାପୀ ହୋଇଯିବୁ । ମା'ଙ୍କର ସନ୍ତାନ ତୁ, ତୋତେ ପାପ ଲାଗିବନି । ଏମିତି ଟାଣ କରି କହ, ଦେଖିବୁ ପାପ ତୋ ପାଖକୁ କେମିତି ଆସିବ ?'' ଶ୍ରୀରାମକୃଷ୍ଣ ଏକାନ୍ତରେ କହିଚାଲିଥିଲେ । ସତେକି ଅମୃତଧାରା ଅବାରିତ ଭାବେ ନରେନ୍ଦ୍ରଙ୍କ ସମ୍ମୁଖରେ ହେଉଛି ବର୍ଷିତ !!!

ପ୍ରଶିକ୍ଷଣର ଗୋଟିଏ ପରେ ଗୋଟିଏ ଅଧ୍ୟାୟ ଉନ୍ମୁକ୍ତ ହେଉଥିଲା । ଶ୍ରୀରାମକୃଷ୍ଣ ନିଜ ହାତରେ ଗଢୁଛନ୍ତି ନରେନ୍ଦ୍ରଙ୍କୁ ବିବେକାନନ୍ଦରେ ରୂପାନ୍ତରିତ କରିବା ପାଇଁ । ଅନ୍ୟପକ୍ଷରେ ନରେନ୍ଦ୍ରଙ୍କ ଭିତରେ ଯେଉଁସବୁ ସିଦ୍ଧାନ୍ତ ଓ ତତ୍ତ୍ୱର ପୁସ୍ତକଗତ ଛାପ ରହିଥିଲା, ତାହା କ୍ରମଶଃ ମଉଳି ଯାଉଥିଲା । ଦିନକର ଘଟଣା । ଦକ୍ଷିଣେଶ୍ୱରର ନିଜ କୋଠରିରେ ଖଟ ଉପରେ ଶ୍ରୀରାମକୃଷ୍ଣ ଉପବିଷ୍ଟ । ଅନେକ ଭକ୍ତ ତଳେ ଉପବେଶନ କରିଥିଲେ । ନରେନ୍ଦ୍ର ବି ସେଠାରେ ଉପସ୍ଥିତ । ବୈଷ୍ଣବ ଧର୍ମ ସମ୍ବନ୍ଧରେ ଚର୍ଚ୍ଚା ଚାଲିଥିଲା । ଶ୍ରୀରାମକୃଷ୍ଣ ଶ୍ରୀଗୌରାଙ୍ଗ ସମ୍ବନ୍ଧରେ କିୟତ୍‌ସମୟ କହିଲେ ଏବଂ ବୈଷ୍ଣବ ଧର୍ମରେ ତିନୋଟି ମୁଖ୍ୟ ବିଷୟ ରହିଛି - ନାମେ ରଚି, ବୈଷ୍ଣବ ସେବା ଓ ଜୀବେ ଦୟା । ଅର୍ଥାତ୍ - ଈଶ୍ୱର ତାଙ୍କ ନାଁରୁ ଭିନ୍ନ ନୁହଁନ୍ତି - ସୁତରାଂ ସର୍ବଦା ତାଙ୍କର ନାମ ଗାନ କରିବା ଉଚିତ । ଈଶ୍ୱର ଓ ତାଙ୍କର ଭକ୍ତ ଅର୍ଥାତ୍ ଶ୍ରୀକୃଷ୍ଣ ଓ ବୈଷ୍ଣବ ଏକ ଓ ଅଭିନ୍ନ । ତେଣୁ ବୈଷ୍ଣବମାନଙ୍କୁ ସମ୍ମାନ ଜଣାଇ ତାଙ୍କର ସେବା କରିବା ଉଚିତ । ଯେହେତୁ ସମଗ୍ର ସୃଷ୍ଟି ଶ୍ରୀକୃଷ୍ଣଙ୍କର ଅଧୀନ, ତେଣୁ ସମସ୍ତ ଜୀବ ପ୍ରତି ଦୟା ପ୍ରଦର୍ଶନ କର । ଶ୍ରୀରାମକୃଷ୍ଣ ଯେତେବେଳେ ବୈଷ୍ଣବ ତତ୍ତ୍ୱ 'ଜୀବେ ଦୟା' ଉଚ୍ଚାରଣ କଲେ, ସେତେବେଳେ ପୂରା ବାକ୍ୟଟିକୁ କହି ନ ପାରି ହଠାତ୍ ଭାବ ସମାଧିରେ ବୁଡ଼ିଗଲେ । ଶ୍ରୀରାମକୃଷ୍ଣଙ୍କୁ ଉପସ୍ଥିତ ଭକ୍ତଗଣ ନୀରବ ଓ ବିସ୍ମୟରେ ଚାହିଁଥିଲେ । କିୟତ୍ ସମୟ ଅତିକ୍ରାନ୍ତେ ଅର୍ଦ୍ଧ ବାହ୍ୟଦଶାରେ ନିଜକୁ ସମ୍ବୋଧନ କରି ସେ କହିଲେ, ''ଜୀବେ ଦୟା ! ଜୀବେ ଦୟା ! ଭାକ୍ ଶାଲା । ତୁ ନିର୍ବୋଧଟାଏ । ପୃଥିବୀ ପୃଷ୍ଠରେ ବିଚରଣ କରୁଥିବା ତୁ ଏକ ନଗଣ୍ୟ ପୋକଟାଏ । ତୁ ପୁଣି ଅନ୍ୟକୁ ଦୟା କରିବୁ । ଶାଲା, ଦୟା ଦେଖାଇବାକୁ ତୁ କିଏ ? ନା - ନା... ଏହା ହୋଇପାରିବ ନାହିଁ । ଜୀବେ ଦୟା ନୁହେଁ, କହ ଶିବ ଜ୍ଞାନେ ଜୀବ ସେବା ।''

ଯୁବକ ନରେନ୍ଦ୍ର ଚମକି ପଡ଼ିଲେ । ଦେହରେ ତାଙ୍କର ବିଦ୍ୟୁତ ଖେଳିଗଲା । କଣ୍ଠ ଥରି ଉଠିଲା । ଶରୀରର ସମସ୍ତ ଗ୍ରନ୍ଥି କମ୍ପିତ ହେଲା । କି ଚମତ୍କାର ଦର୍ଶନ !!! ଶ୍ରୀରାମକୃଷ୍ଣଙ୍କ ମୁଖ ନିସୃତ 'ଶିବ ଜ୍ଞାନେ ଜୀବ ସେବା' କେଇପଦ ଶବ୍ଦ ମଧ୍ୟରୁ ଏକ ନୂତନ ତଥ୍ୟ ସେ ଆବିଷ୍କାର କଲେ । ମାନବର ଆବେଗ ଗୁମ୍ଫିତ ଚିନ୍ତାର ଅସଂଗତ ଭାବେ ପରିଚିତ ଶୁଷ୍କ ଓ କଠୋର ବେଦାନ୍ତ ଜ୍ଞାନକୁ ଭକ୍ତିର ଆନନ୍ଦର-ସହ ଅତି ସୁନ୍ଦର ଭାବେ ମିଶ୍ରଣ କରି ପାରିଲେ କିପରି ? ଆହାଃ... କି ଚମତ୍କାର ବଳିଷ୍ଠ ଦର୍ଶନ !!! ବେଦାନ୍ତ ଜ୍ଞାନର ଉପଲବ୍ଧି ପାଇଁ ସାଧକ ସଂସାର ତ୍ୟାଗ କରେ ଏବଂ ନିଜର ଭାଇ, ବନ୍ଧୁ, କୁଟୁମ୍ବକୁ ଆଧ୍ୟାତ୍ମିକ ପଥର ପ୍ରତିବନ୍ଧ ଭାବି ପଳାୟନ କରେ ଅରଣ୍ୟକୁ । ଏହା କ'ଣ ଜଘନ୍ୟ ସ୍ୱାର୍ଥପରତା ନୁହେଁ କି ? ଆଜି ମୋର ଚକ୍ଷୁ ଉନ୍ମିଳୀତ, ଶିବ

Digitized by srujanika@gmail.com

ଜ୍ଞାନେ ଜୀବ ସେବା ଦର୍ଶନରେ ଭରି ରହିଛି ବେଦାନ୍ତ ଜ୍ଞାନ । ଅରଣ୍ୟକୁ ପଳାୟନ କରିବାର ଆଜି ଆବଶ୍ୟକତା ନାହିଁ ।

କୋଟି କୋଟି ଜନତା ଯିଏ ଯେଉଁ ସ୍ତରରେ ରହିଥାନ୍ତୁ, ଯିଏ ଯେଉଁ ପେସାରେ ରହିଥାନ୍ତୁ, ଯିଏ ଯେଉଁ ଭାବରେ ରହିଥାନ୍ତୁ, ସମସ୍ତେ ଏକ ଈଶ୍ୱରଙ୍କ ଅଂଶ ସ୍ୱରୂପ । ସେହି ଈଶ୍ୱର ଜଗତ ହେଇଛନ୍ତି, ସେହି ଈଶ୍ୱର ବି ହୋଇଛନ୍ତି ଜୀବ । ବେଦର ସେହି ଅମୃତ ମନ୍ତ୍ର'' ତ୍ୱଂ ସ୍ତ୍ରୀ ତ୍ୱ ପୁମାନସି ତ୍ୱଂ କୁମାର ଉତ ବା କୁମର, ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି, ତ୍ୱଂ ଜାତୋ ଭବସି ବିଶ୍ୱତୋ ମୁଖଃ - ତୁମେ ସ୍ତ୍ରୀ, ତୁମେ ପୁରୁଷ, ତୁମେ ବାଳକ, ତୁମେ ବାଳିକା, ତୁମେ ବୃଦ୍ଧ ବାଡ଼ି ସହାୟତାରେ ବୁଲୁଅଛ, ତୁମେ ଜଗତରେ ଜୀବ ହୋଇ ଜନ୍ମିତ'' ନରେନ୍ଦ୍ର କର୍ଣ୍ଣରେ ସେହି ସମୟରେ ଝଙ୍କୃତ ହେଲା । ସେ ବାରମ୍ବାର ଚାହୁଁଥିଲେ ଶ୍ରୀରାମକୃଷ୍ଣଙ୍କର ଦୀପ୍ତିମନ୍ତ ମୁଖମଣ୍ଡଳକୁ ଏବଂ ଭାବୁଥିଲେ - ସେହି ଏକବ୍ରହ୍ମ ବହୁ ଜୀବରେ ବିଭାଜିତ । ତା'ହାଲେ ତୁମେ ସବୁକିଛି । ସତରେ ତୁମେ ବି ଅଦ୍ଭୁତ ଜୀବନ୍ତ ଈଶ୍ୱର, ଜଗତ ମଧ୍ୟରେ ସେ ହିଁ ଏକମାତ୍ର ବସ୍ତୁ । ଜୀବନ୍ତ ଈଶ୍ୱର ଆମ୍ଭମାନଙ୍କ ଗହଣରେ ରହିଛନ୍ତି, ତଥାପି ଆମେ ମନ୍ଦିର, ଗୀର୍ଜା, ମସଜିଦ୍ ନିର୍ମାଣ କରୁଛୁ ଏବଂ ସବୁପ୍ରକାର କାଳ୍ପନିକ ବସ୍ତୁରେ ବିଶ୍ୱାସ ରଖୁଛୁ । ମାନବାତ୍ମା ଅଥବା ମାନବ ଦେହ ହିଁ ଏକମାତ୍ର ଉପାସ୍ୟ ଈଶ୍ୱର । ଅବଶ୍ୟ ତୀର୍ଯ୍ୟକ୍ ପ୍ରାଣୀମାନେ ଈଶ୍ୱରଙ୍କର ମନ୍ଦିର ସତ, କିନ୍ତୁ ମନୁଷ୍ୟ ହିଁ ସର୍ବଶ୍ରେଷ୍ଠ ମନ୍ଦିର, ମନ୍ଦିର ଭିତରେ ମାନବ ହେଉଛି ତାଜମହଲ ସ୍ୱରୂପ । ମନୁଷ୍ୟ ଭିତରେ ରହିଥିବା ସେହି ଶିବଙ୍କର ଯଦି ଉପାସନା କରି ନ ପାର, ତେବେ କୌଣସି ମନ୍ଦିରରେ ଉପାସନା କଲେ କିଛି ଫଳ ମିଳିବ ନାହିଁ । ଯେଉଁ ମୁହୂର୍ତ୍ତରେ ପ୍ରତ୍ୟେକ ମନୁଷ୍ୟ ଦେହରୂପକ ମନ୍ଦିରରେ ବିରାଜିତ ଈଶ୍ୱରଙ୍କୁ ଉପଲବ୍ଧି କରିପାରିବ, ସେହି ମୁହୂର୍ତ୍ତରେ ମନୁଷ୍ୟ ସମୁଦାୟ ଭବବନ୍ଧନରୁ ମୁକ୍ତ ହେବ ।

ନରେନ୍ଦ୍ର ପୁନଶ୍ଚ ଭାବନାରାଶିରେ ସନ୍ତରଣ କରି ଭାବୁଥିଲେ, ''ଆଜି ଶ୍ରୀରାମକୃଷ୍ଣ ଯାହା କହିଲେ, ''ଶିବ ଜ୍ଞାନେ ଜୀବ ସେବା,'' ତାହା ଏକ ମାନବ ଜାତି ନିମନ୍ତେ ଘୋଷଣା ପତ୍ର । ବାସ୍ତବରେ ଜୀବ ଦୟାର ପାତ୍ର ନୁହେଁ । ଦୟା ଶବ୍ଦ ଉଚ୍ଚାରଣ ମାତ୍ରେ ମଣିଷ ମନରେ ଅହଙ୍କାର ଜାତ ହୁଏ । ମନୁଷ୍ୟ ନିଜେତ ନଗଣ୍ୟ, ପୁଣି ଅନ୍ୟକୁ ଦୟା କରିବ କ'ଣ ? ଯେଉଁ ଈଶ୍ୱର ବିଭିନ୍ନ ଜୀବ ରୂପରେ ଆମ ସମ୍ମୁଖରେ ପ୍ରକାଶମୟ, ତାଙ୍କରି ସେବା ଆମର କାମ୍ୟ, ଜୀବକୁ ଈଶ୍ୱରଙ୍କର ଅଂଶ ସ୍ୱରୂପ ଭାବି ଯିଏ ଆନ୍ତରିକ ସହ ସେବାରେ ନିଜକୁ ନିୟୋଜିତ କରେ, ସେହି ବ୍ୟକ୍ତି ଅଳ୍ପ ସମୟ ମଧ୍ୟରେ ତା'ର ହୃଦୟ ଓ ମନ ନିର୍ମଳ ଓ ପବିତ୍ର ହୋଇଯାଏ ଏବଂ ସେ ଭଗବତ୍ ଦର୍ଶନ କରି ସତ୍-ଚିତ୍-ଆନନ୍ଦ ସାଗରରେ ବୁଡିଯାଏ ।

ସେହିଭଳି ଭକ୍ତିମାର୍ଗ ଉପରେ ଶ୍ରୀରାମକୃଷ୍ଣଙ୍କର ଶିବ ଜ୍ଞାନେ ଜୀବ ସେବା ଦର୍ଶନ ସଂସାରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବ ବୋଲି ନରେନ୍ଦ୍ର ହୃଦୟଙ୍ଗମ କଲେ । କେବଳ ସେତିକି ନୁହେଁ ତାଙ୍କର ଅନ୍ତର୍ଦୃଷ୍ଟି ଏହି ମହାବାକ୍ୟରେ ଏଭଳି ପ୍ରସାରିତ ହେଲାଯେ ସେ ଉପଲବ୍ଧି କଲେ - ପଥର ମୂର୍ତ୍ତି ସମ୍ମୁଖରେ ପୁଷ୍ପ, ଧୂପ, ନୈବେଦ୍ୟ ଦେଇ ଭକ୍ତିରେ ମଗ୍ନ ହେବା ଅପେକ୍ଷା, ଈଶ୍ୱର ରୂପେ ଜୀବନ୍ତ ମାନବ ଯେଉଁମାନେ ଦାରିଦ୍ର୍ୟ କଷାଘାତରେ ଜର୍ଜରିତ, ସେମାନଙ୍କର ସେବାକରି ମୁଖରେ ହସ ଖେଳାଇ ପାରିଲେ, ଜୀବ ସେବା ସାର୍ଥକ ହେବ । କର୍ମଯୋଗୀ ଯେଉଁମାନେ

Digitized by srujanika@gmail.com

କର୍ମକୁ ପୂଜା ଭାବେ ଗ୍ରହଣ କରନ୍ତି, ସେମାନେ ମଧ୍ୟ ଶ୍ରୀରାମକୃଷ୍ଣଙ୍କର ମୁଖ ନିଃସୃତବାଣୀ 'ଶିବ ଜ୍ଞାନେ ଜୀବ ସେବା' ମହାମନ୍ତ୍ର ଦ୍ୱାରା ଉପକୃତ ହେବେ । କର୍ମ ହିଁ ଈଶ୍ୱର । ନିୟତ କର୍ମ ଜୀବନର ଲକ୍ଷ୍ୟ । ମାନବ ସଦା କର୍ମମୁଖର । ଜୀବ ମଧ୍ୟରେ ବିରାଜିତ ଭଗବତ୍ ଶକ୍ତିକୁ ଜ୍ଞାନୀ ଚିହ୍ନିପାରେ । ତେଣୁ ସର୍ବ କର୍ମ ହିଁ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସମାପିତ ହେଉଛି, ନିସ୍ୱ, ଦରିଦ୍ର, ଚଣ୍ଡାଳ, ମୂର୍ଖ, ପଣ୍ଡିତ, ବ୍ରାହ୍ମଣ ସମସ୍ତଙ୍କୁ ପୂଜା କରିବ । ସ୍ୱାର୍ଥପରତା ସମ ନାରକୀୟ ନିଗଡ଼ ଭିତରୁ ମାନବ ଉଦ୍‌ଧୃତ ହେବ । ସାରା ବିଶ୍ୱ ଆନନ୍ଦ ମୁଖର ହୋଇଉଠିବ ।

ନରେନ୍ଦ୍ରଙ୍କର ସମସ୍ତ ଗ୍ରନ୍ଥି ଉନ୍ମୋଚିତ ହେଲା । ସତେକି ସେ ଆଜି ଶ୍ରୀରାମକୃଷ୍ଣଙ୍କ ନିକଟରୁ ''ଶିବ ଜ୍ଞାନେ ଜୀବ ସେବା'' ଭଳି ଏକ ନୂତନ ମନ୍ତ୍ର ଲାଭ କରିଛନ୍ତି ଯାହା ମାଧ୍ୟମରେ ସେ ମନୁଷ୍ୟ ଭିତରେ ସଞ୍ଚରଣ କରିବେ ଏକ ନୂତନ ଦିଗନ୍ତ । ଏହି ମନ୍ତ୍ରକୁ ଜଗତର ସବୁ ଧର୍ମ ଓ ସମ୍ପ୍ରଦାୟ ଗ୍ରହଣ କରିବେ ଏବଂ ପୃଥିବୀର କୋଣ ଅନୁକୋଣରେ ଏହି ନୂତନ ପୁନଃଆବିଷ୍କୃତ ମନ୍ତ୍ରକୁ ପହଞ୍ଚାଇ ମାନବ ମନ ଓ ହୃଦୟରେ ଭକ୍ତି, ସେବା, ଜ୍ଞାନ, ବିବେକ, ବୈରାଗ୍ୟ ଓ ତ୍ୟାଗର ସ୍ରୋତ ବୁହାଇବେ ବୋଲି ମନେ ମନେ ସଂକଳ୍ପବଦ୍ଧ ହେଲେ ।

ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କୁ ଜଣେ ପୌତ୍ତଳିକ ଭାବେ ପ୍ରଥମରୁ ଭାବିଥିଲେ । କିନ୍ତୁ ଜଣେ ପୌତ୍ତଳିକ ମୁହଁରୁ କେବେ ବି ଶିବ ଜ୍ଞାନେ ଜୀବ ସେବା ଭଳି ଏକ ମହାନ୍ ତତ୍ତ୍ୱ ପ୍ରକାଶିତ ହୋଇପାରିବ ନାହିଁ, ନରେନ୍ଦ୍ର ବର୍ତ୍ତମାନ ବୁଝି ପାରିଲେ । ଯେଉଁ ହିନ୍ଦୁଧର୍ମ ବିଭିନ୍ନ ମୂର୍ତ୍ତିପୂଜା ଓ ଉପାସନା ପଦ୍ଧତି ମାଧ୍ୟମରେ ପରାତ୍ପର ପରମସତ୍ତାର ଆରାଧନା କରେ, ସେସବୁ ଆରାଧନା ପଶ୍ଚାତରେ ଅଦ୍ୱୈତ ଦର୍ଶନର ମୂଳଦୁଆ ବିଦ୍ୟମାନ, ଏଥିରେ ସନ୍ଦେହ ନାହିଁ । ବାସ୍ତବରେ ଶ୍ରୀରାମକୃଷ୍ଣ ଯାହାସବୁ କହୁଛନ୍ତି ଓ ତାଙ୍କ ଆଚରଣରେ ଯାହାସବୁ ପ୍ରକାଶିତ ହେଉଛି, ତାହା ତାଙ୍କର ପ୍ରତ୍ୟକ୍ଷ ଅନୁଭୂତିର ପ୍ରକାଶନ ବୋଲି ସେ ଅନୁଭବ କଲେ । ତାହା ଯଦି ନ ହୋଇଥାନ୍ତା, ବ୍ରାହ୍ମ ଆନ୍ଦୋଳନର ମୁଖ୍ୟ ପୁରୋଧା କେଶବଚନ୍ଦ୍ର ସେନ୍‌ଙ୍କ ଭଳି ସର୍ବଆଦୃତ ଓ ସର୍ବସମାଦୃତ ବ୍ୟକ୍ତି କ'ଣ ଶ୍ରୀରାମକୃଷ୍ଣଙ୍କ ପଦପ୍ରାନ୍ତରେ ଆଶ୍ରୟ ନେଇଥାନ୍ତେ !!!

- ୩ -

*ଦାର୍ଶନିକ-ଜ୍ଞାନୀର ଚେହେରା ଭିତରେ ପ୍ରେମ-ଭକ୍ତିର ଉତ୍ତାଳ ତରଙ୍ଗ ସୃଷ୍ଟି ହେଲା । ସେ ମାନିଲେ ଈଶ୍ୱରଙ୍କର ସାକାର ରୂପକୁ, ପ୍ରେମ-ଭକ୍ତିର ସୁଧାରସକୁ ଏବଂ ସାଜିଲେ ସର୍ବଶ୍ରେଷ୍ଠ ଭକ୍ତ । ଜଣେ ବନ୍ଧୁ ତାଙ୍କୁ ପଚାରିଲେ, ''ନରେନ୍ଦ୍ର, ତୁମେ କ'ଣ ରାଧା-କୃଷ୍ଣଙ୍କର ପ୍ରେମ ଓ ଲୀଳାକୁ ବିଶ୍ୱାସ କର ?'' ନରେନ୍ଦ୍ର ବିନା ଦ୍ୱିଧାରେ କହିଥିଲେ, ''ହଁ ହଁ ନିଶ୍ଚୟ ।*

ଈଶ୍ୱରଙ୍କର ସାକାର ରୂପ ମିଥ୍ୟା ନୁହେଁ । ଏହା ମାନବ ହୃଦୟରେ ପ୍ରେମ ଓ ଭକ୍ତିର ସୁଅ ଛୁଟାଇଦିଏ । ପଞ୍ଚବଟିର ଶୀତଳଛାୟା ତଳେ ଏକଦା ଶ୍ରୀରାଧାଙ୍କର ଅପ୍ରାକୃତିକ ପ୍ରେମ ସମ୍ବନ୍ଧରେ

Digitized by srujanika@gmail.com

ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କୁ ବୁଝାଇଥିଲେ । ନରେନ୍ଦ୍ରଙ୍କର ନିରାକାରବାଦୀ ମନ ଶ୍ରୀକୃଷ୍ଣ-ଶ୍ରୀରାଧାଙ୍କର ଅପ୍ରାକୃତ ପ୍ରେମକୁ ଆଦୌ ଗ୍ରହଣ କରିପାରୁ ନ ଥିଲା । ''ଦେଖ ନରେନ୍, ମୁଁ ମଧୁର ଭାବ ସାଧନା କରିଛି । ଶ୍ରୀରାଧା ପ୍ରେମରେ ଉବୁଟୁବୁ ହୋଇଛି । ମଧୁର ଭାବର ସ୍ୱାଦ ଯିଏ ଆସ୍ୱାଦନ କରିଛି, ସେ ଜାଣିଛି ଶ୍ରୀରାଧାଙ୍କର ମହାପ୍ରେମର ଗଭୀରତା । ପ୍ରେମକୁ ସାଂସାରିକ ପ୍ରେମ ଭଳି ଭାବନା । ସେଥିରେ ବାସନା ରହିଛି । କିନ୍ତୁ ଶ୍ରୀରାଧାଙ୍କର ପ୍ରେମ ପବିତ୍ର, ଶୁଦ୍ଧ ଓ ଅପ୍ରାକୃତ । ସେଥିରେ କାମନା ବାସନା ଦୂରର କଥା, ଦେହ ଜ୍ଞାନ ଓ ମନ ଜ୍ଞାନ ରହେ ନାହିଁ । କେବଳ ଆନନ୍ଦ ହିଁ ଆନନ୍ଦ । ଶ୍ରୀରାମକୃଷ୍ଣ ଭାବ ଗଦ୍‌ଗଦ୍ କଣ୍ଠରେ କହିଲେ, କିନ୍ତୁ ନରେନ୍ଦ୍ର ତାଙ୍କ କଥାରେ ଆଦୌ ପ୍ରଭାବିତ ହେଲେନାହିଁ ।

ଯାହାଙ୍କର ସ୍ପର୍ଶ ମାତ୍ରକେ ପାଷାଣ୍ଡ ହୃଦୟ ବି ତରଳି ଯାଏ, ନରେନ୍ଦ୍ର ତ ପରମ ଜ୍ଞାନୀ, ଶ୍ରୀରାମକୃଷ୍ଣଙ୍କର ଚୈତନ୍ୟଭରା ବାକ୍ୟ କେବେ ବି ନିଷ୍ଫଳ ହେବନାହିଁ । ଏକ ଅଦ୍ଭୁତ ଘଟଣା ଘଟିଲା । ନରେନ୍ଦ୍ର ନିଦ୍ରିତାବସ୍ଥାରେ ଦେଖିଲେ ଏକ ସ୍ୱପ୍ନ । ଶ୍ରୀରାମକୃଷ୍ଣ ସେହି ସ୍ୱପ୍ନରେ ହେଲେ ଆବିର୍ଭୂତ । ନରେନ୍ଦ୍ରଙ୍କୁ ହାତଠାରି କହୁଛନ୍ତି, ''ଆସ ମୋ ସାଙ୍ଗରେ, ତୁମକୁ ଦେଖାଇ ଦେବି ଶ୍ରୀରାଧାଙ୍କୁ ।'' ନରେନ୍ଦ୍ରଙ୍କର ତାର୍କିକ ଓ ଜ୍ଞାନୀ ମନ ଏଠାରେ କାଟୁ କଲାନାହିଁ । ଅବୋଧ ଶିଶୁଟିଏ ଭଳି ତାଙ୍କୁ ଅନୁସରଣ କଲେ । କିୟତ ଦୂର ଅତିକ୍ରାନ୍ତେ, ଶ୍ରୀରାମକୃଷ୍ଣ ପଛକୁ ବୁଲି ପଡ଼ି କହିଲେ, ''ନରେନ୍, ତୁମେ କୁଆଡ଼େ ଯିବ ?'' ବାସ୍, ଏତକ କହି ନିମିଷକ ଭିତରେ ସୌନ୍ଦର୍ଯ୍ୟମୟୀ ରୂପମାଧୁରୀ ଶ୍ରୀରାଧିକା ରୂପରେ ନିଜେ ସେହିଠାରେ ରୂପାନ୍ତରିତ ହୋଇଗଲେ । ନରେନ୍ଦ୍ର ଆଶ୍ଚର୍ଯ୍ୟ ହେଲେ । ଶ୍ରୀରାଧାଙ୍କର ରୂପ ଲାବଣ୍ୟ ମୂର୍ତ୍ତି ଅବଲୋକନ କରି ସେ କେବଳ ବିସ୍ମିତ ହେଲେନାହିଁ ବରଂ ଶ୍ରୀରାଧାଙ୍କର ଅପ୍ରାକୃତ ପ୍ରେମର ଉର୍ମିମାଳା ଭିତରେ ବୁଡିଗଲେ । ଅପ୍ରାକୃତ ପ୍ରେମର ସ୍ୱାଦ ଆସ୍ୱାଦନା କଲେ । ନିରାକାର ବ୍ରହ୍ମଙ୍କର ଭଜନ ଯିଏ ନିତ୍ୟ ଗାନ କରୁଥିଲେ, ଏହି ସ୍ୱପ୍ନ ସାକ୍ଷାତକାର ପରେ, ଶ୍ରୀରାଧାକୃଷ୍ଣଙ୍କର ଅମର ପ୍ରେମ ଭଜନ ସୁଲଳିତ କଣ୍ଠରେ ଗାନ କରିବାକୁ ଲାଗିଲେ । ନରେନ୍ଦ୍ରଙ୍କର ଥିଲା କ୍ରୀଡ଼ାବିତ୍ ଚେହେରା । ସୁନ୍ଦର ମାଂସପେଶୀ ଦ୍ୱାରା ଗଠିତ ବଳିଷ୍ଠ ଶରୀର । ମୁଖମଣ୍ଡଳରେ ଉଙ୍କିମାରୁଥିଲା ସହୃଦୟତାର ହସ । ସେ ଥିଲେ ଜଣେ ଦାର୍ଶନିକ ସ୍ୱଭାବର ମଣିଷ, କିନ୍ତୁ ବର୍ତ୍ତମାନ ଶ୍ରୀରାମକୃଷ୍ଣ ଭରିଦେଲେ ତାଙ୍କ ଭିତରେ ପ୍ରେମ ଓ ଭକ୍ତି । ଦାର୍ଶନିକ-ଜ୍ଞାନୀର ଚେହେରା ଭିତରେ ପ୍ରେମ-ଭକ୍ତିର ଉତ୍ତାଳ ତରଙ୍ଗ ସୃଷ୍ଟି ହେଲା । ସେ ମାନିଲେ ଈଶ୍ୱରଙ୍କର ସାକାର ରୂପକୁ, ପ୍ରେମ-ଭକ୍ତିର ସୁଧାରସକୁ ଏବଂ ସାଜିଲେ ସର୍ବଶ୍ରେଷ୍ଠ ଭକ୍ତ । ଜଣେ ବନ୍ଧୁ ତାଙ୍କୁ ପଚାରିଲେ, ''ନରେନ୍ଦ୍ର, ତୁମେ କ'ଣ ରାଧା-କୃଷ୍ଣଙ୍କର ପ୍ରେମ ଓ ଲୀଳାକୁ ବିଶ୍ୱାସ କର ?'' ନରେନ୍ଦ୍ର ବିନା ଦ୍ୱିଧାରେ କହିଥିଲେ, ''ହଁ ହଁ ନିଶ୍ଚୟ ।''

ଦକ୍ଷିଣେଶ୍ୱର ମନ୍ଦିର ପ୍ରାଙ୍ଗଣ ଓ ତତ୍ ସନ୍ନିକଟ ପଞ୍ଚବଟୀରେ ଶ୍ରୀରାମକୃଷ୍ଣଙ୍କ ତତ୍ତ୍ୱାବଧାନରେ ନରେନ୍ଦ୍ରଙ୍କର ଆଧ୍ୟାତ୍ମିକ ପ୍ରଶିକ୍ଷଣ ଓ ରୂପାନ୍ତରଣ ପ୍ରକ୍ରିୟା ଦ୍ରୁତଗତିରେ ଚାଲିଥିବା ସମୟରେ, ନରେନ୍ଦ୍ରଙ୍କର କେତେକ ଧନିକ ବନ୍ଧୁ କଲିକତାର ସହରାଞ୍ଚଳସ୍ଥ ଏକ ଉଦ୍ୟାନ ବାଟିକାକୁ ଆମନ୍ତ୍ରଣ

Digitized by srujanika@gmail.com

କରି ତାଙ୍କୁ ଗାଡ଼ିରେ ନେଇଗଲେ । ସେଠାରେ ସବୁପ୍ରକାର ଆମୋଦ ପ୍ରମୋଦର କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା । ସଙ୍ଗୀତ ଆସରରେ ବହୁ ବନ୍ଧୁ ଭାଗ ନେଲେ । ନରେନ୍ଦ୍ର ମଧ ସଂଗୀତ ଗାନ କଲେ । ଉପଭୋଗରେ ସମସ୍ତେ ମସ୍‌ଗୁଲ୍ ହେଲେ । ନରେନ୍ଦ୍ର ମଧ ଖାଦ୍ୟପେୟ ଓ ସଙ୍ଗୀତ ଉପଭୋଗ କଲେ । କିୟତ ସମୟ ପରେ ନରେନ୍ଦ୍ର କ୍ଳାନ୍ତି ଅନୁଭବ କଲେ । ଉଦ୍ୟାନ ବାଟିରେ ଏକ କୋଠରିରେ ବିଶ୍ରାମ ନେବାପାଇଁ ନରେନ୍ଦ୍ରଙ୍କୁ ନେଇଗଲେ । ନରେନ୍ଦ୍ର ସେଠାରେ ଏକୁଟିଆ ବିଶ୍ରାମ ନେଲେ । ହଠାତ୍ ଦେଖିଲେ ଯେ ଜଣେ ସୁନ୍ଦରୀ ନର୍ତ୍ତକୀ ତାଙ୍କୁ ଆମୋଦିତ କରିବା ନିମନ୍ତେ ସେଠାରେ ଉପନୀତ । ନରେନ୍ଦ୍ର ଝିଅଟିକୁ ଦେଖି ଏକ ନିରୀହ ବାଳକ ସମ ତା' ସହ କଥାବାର୍ତ୍ତା ଆରମ୍ଭ କରିଦେଲେ । ସତେକି ସେ ନିଜେ ଝିଅଟିର ବଡ଼ ଭାଇ । ନରେନ୍ଦ୍ରଙ୍କର ସହାନୁଭୂତି ଓ ଜ୍ୟେଷ୍ଠଭ୍ରାତା ସମ ଆଳାପ ଆଲୋଚନାରେ ବିମୋହିତ ହୋଇ ଝିଅଟି ନିଜ ଜୀବନର ଅନେକ ଗୋପନୀୟ କାହାଣୀ, ଦୁଃଖ ଓ ବେଦନା ତାଙ୍କ ସମ୍ମୁଖରେ ନିଃସଙ୍କୋଚରେ ବ୍ୟକ୍ତ କଲା । କିନ୍ତୁ ପରମୁହୂର୍ତ୍ତରେ ତାଙ୍କର ସହାନୁଭୂତିକୁ ଝିଅଟି ଭୁଲ ବୁଝିଲା ଏବଂ ନରେନ୍ଦ୍ରଙ୍କର ସୁନ୍ଦର ସୁଠାମ ଚେହେରାରେ ବିମୋହିତ ହୋଇ ନିଜର ଯୌନଲାଳସା ବ୍ୟକ୍ତ କରିବାର ଅଙ୍ଗ ପ୍ରଦର୍ଶନ କଲା । ନରେନ୍ଦ୍ର ଅନନ୍ୟୋପାୟ ହୋଇ ଶ୍ରୀରାମକୃଷ୍ଣଙ୍କୁ ସ୍ମରଣ କଲେ । ତାଙ୍କ ମନ ଓ ଚେତନାରେ ବିଦ୍ୟୁତ ଖେଳିଗଲା । ସେ କ୍ରୋଧରେ ଉତ୍‌କ୍ଷିପ୍ତ ହୋଇ କହିଲେ, ''ମୋତେ କ୍ଷମା କରନ୍ତୁ, ମୁଁ ବର୍ତ୍ତମାନ ଏଠାରୁ ଚାଲିଯାଉଛି । ଅବଶ୍ୟ ତୁମ ପ୍ରତି ମୋର ଅପାର ଦୟା ରହିଛି ଏବଂ ମୁଁ ତୁମର ମଙ୍ଗଳ କାମନା କରୁଛି । ହଁ ମୁଁ ତୁମକୁ ସାବଧାନ କରିଦେଉଛି, ଯଦି ଏଭଳି ଜୀବନଧାରାକୁ ତୁମେ ଦୁର୍ବଳତା ବୋଲି ଭାବୁଛ, ତେବେ ଆଜି ନ ହେଲେ ବି କାଲି ଏଥିରୁ ମୁକ୍ତି ଲାଭ କରିବ ।'' ନରେନ୍ଦ୍ର ଏତକ କହି ହଠାତ୍ ସେ ସ୍ଥାନ ତ୍ୟାଗକରି ଦକ୍ଷିଣେଶ୍ୱର ଅଭିମୁଖେ ଅଗ୍ରସର ହେଲେ ।

ନର୍ତ୍ତକୀ, କିଂ କର୍ତ୍ତବ୍ୟବିମୂଢ଼ା ହୋଇ, ନରେନ୍ଦ୍ରଙ୍କ ସାଙ୍ଗମାନଙ୍କ ନିକଟକୁ ଦ୍ରୁତ ପାଦରେ ଚାଲିଆସିଲେ । କାହିଁକିନା, ସାଙ୍ଗମାନେ ଏହି ଝିଅଟିକୁ ନରେନ୍ଦ୍ରଙ୍କର ମନୋରଞ୍ଜନ ପାଇଁ ପଠାଇଥିଲେ । ନର୍ତ୍ତକୀ ବିଚଳିତ କଣ୍ଠରେ ସେମାନଙ୍କୁ କହିଲେ, ''ଯାହହେଉ ଆପଣମାନେ ମୋ ସହ ସୁନ୍ଦର ଖେଳଟିଏ ଖେଳିଛନ୍ତି, ଜଣେ ମହାନ୍ ସାଧୁଙ୍କୁ ପ୍ରଲୋଭିତ କରିବା ଲାଗି ମୋତେ ପଠାଇଥିଲେ । ବାପରେ ବାପ... କି ଅଦ୍ଭୁତ ସାଧୁ ସେ !!!

ଶ୍ରୀରାମକୃଷ୍ଣ ସେତେବେଳକୁ ନିଜର ଶୁଦ୍ଧ ଚୈତନ୍ୟ, ଜଗଜ୍ଜନନୀଙ୍କୁ ଉପଲବ୍ଧି କରିଥିବା ନିଜର ବ୍ୟକ୍ତିଗତ ଅନୁଭୂତି ଏବଂ ହିନ୍ଦୁଧର୍ମର ସର୍ବଧର୍ମ ସମନ୍ୱୟର ମାନସିକତା ଭରିଦେଲେଣି ନରେନ୍ଦ୍ରଙ୍କ ଭିତରେ । ସେ ଏହା କିପରି କରିଲେ ଏବଂ କେଉଁ ମାଧ୍ୟମରେ କରାଇଲେ, ତାହା ଏକେତ ବର୍ଣ୍ଣନାତୀତ, ସାଧାରଣ ସଂସାରୀ ମନ ତାହା ହୃଦୟଙ୍ଗମ କରିବା ସମ୍ଭବ ନୁହେଁ । ଇୟେ ସବୁ ଅତି ସୂକ୍ଷ୍ମ କଥା । ମୂଳରୁ ନରେନ୍ଦ୍ରଙ୍କର ବୈରାଗ୍ୟ ଭାବ, ପରେ ଶ୍ରୀରାମକୃଷ୍ଣଙ୍କ ସଂସ୍ପର୍ଶରେ ଆସି ସେ ଆଜି ଆଧ୍ୟାତ୍ମିକ ଓ ତ୍ୟାଗର ଜ୍ୱଳନ୍ତ ଅଗ୍ନି ସମ ଗର୍ଜନ କରୁଛନ୍ତି । କାମିନୀ କାଞ୍ଚନ ତାଙ୍କୁ ସ୍ପର୍ଶ କରିପାରିବ ନାହିଁ, ସ୍ପର୍ଶ କଲେ ଭସ୍ମ ହୋଇଯିବ । ଇତ୍ୟବସରରେ ଅତ୍ୟଧିକ ଧ୍ୟାନାଭ୍ୟାସ

Digitized by srujanika@gmail.com

ନରେନ୍ଦ୍ରଙ୍କ ମନରେ ଏକପ୍ରକାର ଭୟ ଜାତ କଲା । ବ୍ରାହ୍ମ ଭକ୍ତମାନେ କୁହନ୍ତି ଯେ ଗଭୀର ଧ୍ୟାନ ଓ ଈଶ୍ୱରଙ୍କ ପ୍ରେମରେ ନିମଜ୍ଜନ ସାଧକର ମସ୍ତିଷ୍କ ବିକୃତି ଘଟାଇଥାଏ । ନରେନ୍ଦ୍ର ବିଚଳିତ ହୋଇ ଏହି ବିଷୟରେ ପ୍ରଶ୍ନ କରିଥିଲେ । ଶ୍ରୀରାମକୃଷ୍ଣ ବୁଝିଗଲେ ନରେନ୍ଦ୍ରଙ୍କର ଭୟର କାରଣ । ସେ ତାଙ୍କୁ ଆଶ୍ୱାସନା ଦେଇ କହିଲେ, ''ନରେନ୍, ଈଶ୍ୱର ମହୁର ସମୁଦ୍ର । ତୁମେ କ'ଣ ଏହି ସମୁଦ୍ର ଭିତରକୁ ଲମ୍ଫ ପ୍ରଦାନ କରିବ ନାହିଁ । ମନେକର ଗୋଟିଏ ଓସାରିଆ ମୁହଁଥିବା ବଡ଼ ପାତ୍ରରେ ମହୁ ଭରି ରହିଛି । ମନେକର ତୁମେ ଗୋଟିଏ ମାଛି । ତେବେ ତୁମେ କ'ଣ କରିବ ?''

ନରେନ୍ଦ୍ର କହିଲେ, ''ମୁଁ ପାତ୍ରଟିର ଫନ୍ଦରେ ବସି ଟିକିଏ ଟିକିଏ ମଧୁ ପାନ କରିବି । ଯଦି ଏହା ନକରେ ତେବେ ପାତ୍ରରେ ପଡ଼ିଯାଇ ମୃତ୍ୟୁବରଣ କରିବି ଯେ ।'' ଶ୍ରୀରାମକୃଷ୍ଣ ଉଚ୍ଚ ସ୍ୱରରେ ହସିଉଠି କହିଲେ, ଆରେ ବାବା, ତୁ ଭୁଲିଯାଇଛୁ ଯେ ଏହା ସତ-ଚିଦ୍-ଆନନ୍ଦର ମହାସାଗର । ଏଠରେ ମୃତ୍ୟୁର ଭୟ ନାହିଁ, ଅମୃତର ଶାଶ୍ୱତ ମହାପାରାବାର । କେବଳ ନିର୍ବୋଧମାନେ କୁହନ୍ତି ଯେ ଈଶ୍ୱରଙ୍କୁ ଅତିମାତ୍ରାରେ ପ୍ରେମ କରିବା ଉଚିତ ନୁହେଁ । ଐଶ୍ୱରିକ ପ୍ରେମରେ ଆଜି ପର୍ଯ୍ୟନ୍ତ କେହି ଅଧିକ ଯାଇପାରିଛନ୍ତି ? ମୁଁ କହୁଛି ସତ୍-ଚିଦ୍-ଆନନ୍ଦ ମହାପାରାବାରର ଅତଳ ଗହ୍ୱରକୁ ବୁଡ଼ିଯାଅ । କେବଳ ଆନନ୍ଦ ଇ ଆନନ୍ଦ ।'' ଶ୍ରୀରାମକୃଷ୍ଣଙ୍କର ଏତାଦୃଶ ଶିକ୍ଷା ନରେନ୍ଦ୍ରଙ୍କୁ ଧ୍ୟାନର ଗଭୀରତମ ପ୍ରଦେଶକୁ ଲମ୍ଫ ପ୍ରଦାନ କରିବା ନିମନ୍ତେ ଉତ୍ସାହିତ କଲା ।

- ୪ -

*ଯେତେବେଳେ ଗୋଟିଏ ପ୍ରକାଣ୍ଡ ହାତୀ କ୍ଷୁଦ୍ର ପୋଖରୀରେ ପ୍ରବେଶ କରେ, ସେତେବେଳେ କ'ଣ ହେବ ? ଉଚ୍ଚ ଶବ୍ଦରେ ଜଳରାଶି ଉକ୍ତ କ୍ଷୁଦ୍ର ପୋଖରୀରୁ ଉଚ୍ଛୁଳି ପଡ଼ିବ । କିନ୍ତୁ ହାତୀଟି ଯେତେବେଳେ ଏକ ବିରାଟ ହ୍ରଦ ଭିତରକୁ ପ୍ରବେଶ କରିବ, ସେତେବେଳେ ଆଦୌ ଶବ୍ଦ ହେବନାହିଁ । ଏହି ଦୁଇଜଣ ଭକ୍ତ କ୍ଷୁଦ୍ର ପୋଖରୀ ସଦୃଶ । ଏହି ଦୁଇଟି କ୍ଷୁଦ୍ର ପୋଖରୀରେ ଐଶ୍ୱରିକ ପ୍ରେମର ସାମାନ୍ୟ ପ୍ରବେଶରେ, ସେମାନେ ବିରାଟ ଶବ୍ଦ କରି ଉଚ୍ଛୁଳି ପଡୁଛନ୍ତି, କିନ୍ତୁ ତୁମେ ତ ବିଶାଳ ହ୍ରଦ ।'' ନରେନ୍ଦ୍ର ଏଭଳି ଅନୁପମ ଦୃଷ୍ଟାନ୍ତ ଶ୍ରବଣ କରି ଭାବୁଛନ୍ତି ''କିଏ କହେ ଏହି ମହାପୁରୁଷଙ୍କୁ ନିରକ୍ଷର ବୋଲି ?*

ଦକ୍ଷିଣେଶ୍ୱରରେ ପ୍ରତିଦିନ ବହୁ ଭକ୍ତଙ୍କର ସମାଗମ ହେଉଥିଲା । କଲିକତାର ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ସରକାରୀ ପଦସ୍ଥ ଅଧିକାରୀ, ରାଜା, ଜମିଦାର, ଶିକ୍ଷିତ, ଅଶିକ୍ଷିତ, ମୂର୍ଖ, ପଣ୍ଡିତଙ୍କ ଭଳି ସମାଜର ସବୁବର୍ଗର ଲୋକେ ଶ୍ରୀରାମକୃଷ୍ଣଙ୍କର ଦର୍ଶନ ଏବଂ ଉପଦେଶ ଶୁଣିବା

Digitized by srujanika@gmail.com

ଲାଗି ଆସୁଥିଲେ । କେତେକ ଭକ୍ତ ମଧ୍ୟ ଦକ୍ଷିଣେଶ୍ୱରରେ ଧ୍ୟାନ, ଧାରଣା, ଉପାସନାରେ ମଗ୍ନ ରହୁଥିଲେ । କିନ୍ତୁ ଶ୍ରୀରାମକୃଷ୍ଣ ବାଳକମାନଙ୍କୁ ଅତ୍ୟନ୍ତ ଆଦର କରୁଥିଲେ ଏବଂ ସେମାନଙ୍କୁ ଗୋପନରେ ଅନେକ ଶିକ୍ଷା ପ୍ରଦାନ କରୁଥିଲେ । ଏକଦା ଶ୍ରୀରାମକୃଷ୍ଣଙ୍କ ଦୃଷ୍ଟିରେ ପଡ଼ିଲା ଯେ ନରେନ୍ଦ୍ର ଜଣୈକ ସଂସାରୀ ଭକ୍ତଙ୍କ ସହ ବେଶି ମିଳାମିଶା କରୁଛନ୍ତି । ସେ ଥିଲେ ବିଷୟବାସନାରେ ପରିପୂର୍ଣ୍ଣ ମଣିଷଟିଏ । ଶ୍ରୀରାମକୃଷ୍ଣଙ୍କୁ ଭଲ ଲାଗିଲା ନାହିଁ ଏବଂ ନରେନ୍ଦ୍ରଙ୍କୁ ଉକ୍ତ ବ୍ୟକ୍ତି ସହ ବେଶି ମିଳାମିଶା ନ କରିବା ପାଇଁ ତାଗିଦ୍ କଲେ । କିନ୍ତୁ ନରେନ୍ଦ୍ର ପ୍ରତିବାଦ କଲେ ଏବଂ ଶ୍ରୀରାମକୃଷ୍ଣଙ୍କୁ ସ୍ପଷ୍ଟ ଭାବରେ ଉତ୍ତର ଦେଲେ, ''ଦେଖନ୍ତୁ ମହାଶୟ, ଆପଣ ଯେଉଁ ବ୍ୟକ୍ତିର ଚାରିତ୍ରିକ ଦୁର୍ବଳତା ସମ୍ବନ୍ଧରେ ମୋତେ କହୁଛନ୍ତି, ସେ ତାହା ସମ୍ପୂର୍ଣ୍ଣ ଭାବରେ ପରିତ୍ୟାଗ କରିଛନ୍ତି । ସେ ବର୍ତ୍ତମାନ ଭଲ ଲୋକ ।

ଶ୍ରୀରାମକୃଷ୍ଣ ପୁନଶ୍ଚ ନରେନ୍ଦ୍ରଙ୍କୁ କହିଲେ, ''ନରେନ୍, ତୁମେମାନେ ବାଳକ । ସଂସାରର କାମିନୀ ଓ କାଞ୍ଚନ ତୁମମାନଙ୍କୁ ସ୍ପର୍ଶ କରିନାହିଁ । ଥରେ କାମିନୀ କାଞ୍ଚନର ଗନ୍ଧ ତୁମକୁ ଲାଗିଲେ, ଈଶ୍ୱର ପ୍ରାପ୍ତି କେବେ ବି ହେବ ନାହିଁ । ଯେଉଁ ତାଟିଆରେ ରସୁଣ ଫୁଟା ହୋଇଥିବ, ଯେତେ ସଫା କଲେ ବି ରସୁଣର ଗନ୍ଧ ତାଟିଆରୁ ଯିବ ନାହିଁ । ବାଳକମାନେ ଶୁଦ୍ଧ ଓ ପବିତ୍ର । କାମିନୀ ଓ କାଞ୍ଚନର ମନୋଭାବ ସେମାନଙ୍କୁ ସ୍ପର୍ଶ କରି ନ ଥାଏ । କୁଆ ଖୁମ୍ପିଥିବା ଆମ୍ବ ଦେଖିଛ ? ସେଗୁଡ଼ିକ ଦେବତାଙ୍କ ପାଖରେ ଭୋଗ ଲଗାଯାଏ ନାହିଁ । ଯେଉଁ ଭକ୍ତମାନେ କାମିନୀ କାଞ୍ଚନର ସ୍ୱାଦ ଚାଖିଛନ୍ତି, ସେମାନେ ଅନ୍ୟ ଏକ ଶ୍ରେଣୀଭୁକ୍ତ ଭକ୍ତ ।

ଶୁଣ୍ ନରେନ୍, ଶୁଦ୍ଧ ଆତ୍ମାର କେତେକ ଲକ୍ଷଣ ମୁଁ କହୁଛି । ଦଳେ ସନ୍ନ୍ୟାସୀ ଏକତ୍ରିତ ହୋଇ ଈଶ୍ୱରଙ୍କୁ ଧ୍ୟାନ କରୁଥିଲେ । ସେହି ସ୍ଥାନ ଦେଇ କେତେକ ମହିଳା ଚାଲିଗଲେ । ଜଣେ ସନ୍ନ୍ୟାସୀ ଆଖି ତରାଟି ମହିଳାମାନଙ୍କୁ ଚାହିଁଲେ । କାରଣ ଏଥିପୂର୍ବରୁ ସେ ବିବାହ କରି ତିନୋଟି ସନ୍ତାନର ଜନକ ହୋଇ ସାରିଥିଲେ । ସଂସାରୀମାନେ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ପାଇଁ ସମୟ ପାଆନ୍ତି ନାହିଁ । କିନ୍ତୁ ତୁମେ କ'ଣ ଭାବୁଛ ଯେ ମୁଁ ସେମାନଙ୍କୁ ଘୃଣା କରେ ? ନା, ତାହା କଦାପି ନୁହେଁ । କାରଣ ଈଶ୍ୱର ସବୁ କିଛି ହୋଇଛନ୍ତି ବୋଲି ମୁଁ ଭାବେ । ସମଗ୍ର ନାରୀଙ୍କୁ ମୁଁ ମାତୃ ଦୃଷ୍ଟିରେ ଦେଖେ । ତେଣୁ ପତିବ୍ରତା ଓ ବେଶ୍ୟା ମଧ୍ୟରେ ମୁଁ ପାର୍ଥକ୍ୟ ଦେଖିପାରେ ନାହିଁ... । ମୁଁ ଦେଖୁଛି ଯେ ସମସ୍ତେ କାଚ ମାଳି ଚାହାଁନ୍ତି, କେହି ହୀରା ମାଳି ଚାହେଁ ନାହିଁ । ମନୁଷ୍ୟ କାମତୃଷ୍ଣାରେ ବିମୋହିତ; ସେ ମଧ୍ୟ କାଞ୍ଚନର ମୋହ ଜାଲରେ ବନ୍ଦୀ; କିନ୍ତୁ ଯିଏ ଈଶ୍ୱରଙ୍କୁ ଦର୍ଶନ କରିଛି, ସେ ଏଗୁଡ଼ିକୁ ତୁଚ୍ଛ ଭାବେ । ଜଣେ ବ୍ୟକ୍ତି ରାବଣଙ୍କୁ କହିଥିଲେ, ''ମହାରାଜ ! ଆପଣ ବହୁରୂପ ଧରି ସୀତାଙ୍କୁ ଭୟଭୀତ କରିବା ନିମନ୍ତେ ବାରମ୍ବାର ଅଶୋକ ବନକୁ ଯାଉଛନ୍ତି । କିନ୍ତୁ ଆପଣ ରାମ ରୂପରେ ତାଙ୍କ ପାଖକୁ କାହିଁକି ଯାଉ ନାହାନ୍ତି ? ସେ ତ ଆପଣଙ୍କୁ ନିଜ ପତି ଭାବେ ଚିହ୍ନିପାରି ସ୍ୱାଗତ କରିବେ । ଯଦି ମୁଁ ରାମଙ୍କୁ ଧ୍ୟାନ କରିବି ଏବଂ ରାମରୂପ ଧରିବି, ତେବେ ସମଗ୍ର ବିଶ୍ୱର ସବୁଠାରୁ ସୌନ୍ଦର୍ଯ୍ୟ ବସ୍ତୁ କୁଟାଖିଅ ପରି ତୁଚ୍ଛ ବୋଧ ହେବ । ବାବା, ପବିତ୍ର ହୃଦୟ ବିନା

Digitized by srujanika@gmail.com

ଈଶ୍ୱରଙ୍କଠାରେ ଭକ୍ତି ହେବା ସମ୍ଭବ ନୁହେଁ । ଜଣେ ଅଶୁଦ୍ଧ ମନୁଷ୍ୟ ପକ୍ଷରେ ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁପ୍ରତି ଏକାଗ୍ରତା ସମ୍ଭବ ନୁହେଁ । ତା'ର ମନ ବିଭିନ୍ନ ବସ୍ତୁ ପ୍ରତି ଆକର୍ଷିତ ହେବ । ଯଦି ତୁମର ମନ କାମିନୀ ଓ କାଞ୍ଚନାସକ୍ତ ହେବ, ତୁମେ ଅନ୍ୟ କିଛି ଭାବିପାରିବ ନାହିଁ । ଜଣେ ସଂସାରୀ ମନୁଷ୍ୟ ଯିଏ ବିଷୟ ବାସନାରେ ନିମଜ୍ଜିତ, ତାହା ପକ୍ଷରେ ଅନାସକ୍ତ ରହିବା ଅସମ୍ଭବ । ସେଭଳି ବ୍ୟକ୍ତି ପତ୍ନୀର ଦାସ, ଅର୍ଥର ଦାସ ଏବଂ ମାଲିକର ଦାସ ।

ଶ୍ରୀରାମକୃଷ୍ଣଙ୍କର ଅନାବିଳ ଓ ଅହେତୁକ ପ୍ରେମ କିପରି ତାଙ୍କ ପାଇଁ ଅବାରିତ ଭାବେ ସଦା ପ୍ରବାହମୁଖୀ, ତାହା ହୃଦୟଙ୍ଗମ କରି ନରେନ୍ଦ୍ର ବିସ୍ଫାରିତ ନୟନରେ କେବଳ ଚାହିଁଥିଲେ । ତାଙ୍କର ଅର୍ଦ୍ଧୋନ୍ମୀଳିତ ଚକ୍ଷୁଦ୍ୱୟରେ ସମଗ୍ର ମାନବ ଜାତି ପ୍ରତି କାରୁଣ୍ୟ ଭାବ ପରିସ୍ଫୁଟ । ଶ୍ୱେତ ଓ କୃଷ୍ଣବର୍ଣ୍ଣ ମିଶ୍ରିତ ଦାଢ଼ୀ ଆବୃତ ସଦା ହାସ୍ୟ ମୁଖରୁ ଯେଉଁ ଅମୃତବାଣୀ ନିର୍ଝରିତ, ତାହା ତ ଏକ ସାଧାରଣ ସଂସାରୀ ମାନବ ମୁଖରୁ କସ୍ମିନକାଳେ ନିର୍ଗତ ହୋଇପାରିବ ନାହିଁ ! ସଂସାର ମୋହମାୟା ଆବର୍ତ୍ତନ ଭିତରେ ପତିତ ମାନବଙ୍କର କଲ୍ୟାଣ ନିମନ୍ତେ ଶୁଭ ମନାସି କହୁଛନ୍ତି, "ତୁମେ କ'ଣ ଭାବୁଛ ଯେ ମୁଁ ସେମାନଙ୍କୁ ଘୃଣା କରେ ? ତାହା କଦାପି ନୁହେଁ । କାରଣ ଈଶ୍ୱର ସବୁକିଛି ହୋଇଛନ୍ତି ବୋଲି ମୁଁ ଭାବେ ।" ଏହି ବ୍ୟକ୍ତି ଯାହାଙ୍କୁ ମୁଁ ଅର୍ଦ୍ଧପାଗଳ, ନିରକ୍ଷର ଓ ବୁଢ଼ା ବ୍ରାହ୍ମଣ ବୋଲି ଭାବୁଥିଲି, ତାହା ସେ କେବେ ହୋଇପାରିବେ ନାହିଁ । ତାହା ଯଦି ହୋଇଥାନ୍ତେ, ଏଭଳି ଶୁଭଙ୍କରୀ ଓ ମାନବପ୍ରେମୀ କଥା ତାଙ୍କ ମୁଖରୁ ନିଃସୃତ ହୁଅନ୍ତା ନାହିଁ । ବାପରେ ବାପ୍ କି ପ୍ରଚଣ୍ଡ ଅଦ୍ୱୈତବାଦୀ !!!

ନରେନ୍ଦ୍ର ନିଜର ସାଧନା ଦକ୍ଷିଣେଶ୍ୱରରେ ଅବ୍ୟାହତ ରଖିଥିବା ସମୟରେ ତାଙ୍କ ମନରେ ଗୋଟିଏ ପ୍ରଶ୍ନ ଉଠିଲା । ସେ ଦେଖିଲେ ଯେ ଶ୍ରୀରାମକୃଷ୍ଣଙ୍କର ଅନ୍ୟ ଦୁଇଜଣ ଭକ୍ତ ନିତ୍ୟ ଗୋପାଳ ଓ ମନମୋହନ ଈଶ୍ୱରଙ୍କ ନାମ ଉଚ୍ଚାରଣ ମାତ୍ରେ ମନ୍ଦିର ବେଢ଼ାରେ ଅଚେତ୍ ହୋଇ ତଳେ ଗଡ଼ିଯାଉଛନ୍ତି । ସେ ଦୁହିଁଙ୍କର ଆଧ୍ୟାତ୍ମିକ ଅଗ୍ରଗତି ପରିଲକ୍ଷିତ କରି ନରେନ୍ଦ୍ରଙ୍କ ମନରେ ବ୍ୟର୍ଥ ଭାବନା ଉଦ୍ରେକ ହେଲା । ସେ ଭାବିଲେ ମୋତେ ଶ୍ରୀରାମକୃଷ୍ଣ ଏତେ ଭଲ ପାଉଛନ୍ତି, ସମସ୍ତଙ୍କ ସମ୍ମୁଖରେ ମୋର ପ୍ରଶଂସା କରନ୍ତି, ମୋତେ ନ ଦେଖିଲେ ନରେନ୍ ନରେନ୍ କହି ଅଶ୍ରୁ ଗଡ଼ାଉଛନ୍ତି, ହେଲେ ସେମାନଙ୍କ ଭଳି ଆଧ୍ୟାତ୍ମିକ ଜ୍ଞାନ ମୋତେ ଦେଉନାହାନ୍ତି ।" ଏଭଳି ଚିନ୍ତାରେ ସେ ଥରେ ବିଚଳିତ ହୋଇ ଶ୍ରୀରାମକୃଷ୍ଣଙ୍କ ନିକଟରେ ଅଭିଯୋଗ କଲେ । ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କର ହୃଦୟର ଭାଷା ବୁଝିଯାଇ କହିଲେ, "ବାବା, ତୁ ଆଦୌ ବିଚଳିତ ହୁଅନା । ସେଥିରୁ ତୋତେ କ'ଣ ମିଳିବ ? ଯେତେବେଳେ ଗୋଟିଏ ପ୍ରକାଣ୍ଡ ହାତୀ କ୍ଷୁଦ୍ର ପୋଖରୀରେ ପ୍ରବେଶ କରେ, ସେତେବେଳେ କ'ଣ ହେବ ? ଉଚ୍ଚ ଶବ୍ଦରେ ଜଳରାଶି ଉକ୍ତ କ୍ଷୁଦ୍ର ପୋଖରୀରୁ ଉଚ୍ଛୁଳି ପଡ଼ିବ । କିନ୍ତୁ ହାତୀଟି ଯେତେବେଳେ ଏକ ବିରାଟ ହ୍ରଦ ଭିତରକୁ ପ୍ରବେଶ କରିବ, ସେତେବେଳେ ଆଦୌ ଶବ୍ଦ ହେବନାହିଁ । ଏହି ଦୁଇଜଣ ଭକ୍ତ କ୍ଷୁଦ୍ର ପୋଖରୀ ସଦୃଶ । ଏହି ଦୁଇଟି କ୍ଷୁଦ୍ର ପୋଖରୀରେ ଐଶ୍ୱରିକ ପ୍ରେମର ସାମାନ୍ୟ ପ୍ରବେଶରେ, ସେମାନେ ବିରାଟ ଶବ୍ଦ କରି ଉଚ୍ଛୁଳି ପଡୁଛନ୍ତି, କିନ୍ତୁ

Digitized by srujanika@gmail.com

ତୁମେ ତ ବିଶାଳ ହ୍ରଦ ।'' ନରେନ୍ଦ୍ର ଏଭଳି ଅନୁପମ ଦୃଷ୍ଟାନ୍ତ ଶ୍ରବଣ କରି ଭାବୁଛନ୍ତି ''କିଏ କହେ ଏହି ମହାପୁରୁଷଙ୍କୁ ନିରକ୍ଷର ବୋଲି ?''

ଶ୍ରୀରାମକୃଷ୍ଣଙ୍କର ପ୍ରତ୍ୟେକବାକ୍ୟ ନରେନ୍ଦ୍ରଙ୍କ ଭିତରେ ଭରିଦେଲା ଆଶା ଓ ସାହସ । ନିଜ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ କ୍ରମଶଃ ସ୍ପଷ୍ଟ ହେଉଥିଲା ତାଙ୍କର ମାନସ ଦର୍ଶନରେ । କେତେଜଣ ଅନ୍ତରଙ୍ଗ ବନ୍ଧୁଙ୍କୁ ନିଜର ଭବିଷ୍ୟତ କାର୍ଯ୍ୟପନ୍ଥାର ଆଭାସ ପ୍ରଦାନ କରି ନରେନ୍ଦ୍ର କହିଥିଲେ, ''କ'ଣ, ଅତି ବେଶିରେ ତୁମେ ଜଣେ ଓକିଲ କିମ୍ବା ଡାକ୍ତର କିମ୍ବା ବିଚାରପତି ହେବ । କିନ୍ତୁ ଅପେକ୍ଷା କର, ମୁଁ ମୋର ଭବିଷ୍ୟତ ପଥ ବହୁ ଶୀଘ୍ର ବାଛି ନେବି ।'' ନରେନ୍ଦ୍ର ନିଜେ ଭବିଷ୍ୟତରେ କ'ଣ ହେବେ, ତାହା ସେ ବର୍ତ୍ତମାନ ଜଳଜଳ ଦେଖିଲେଣି । କାରଣ ତାଙ୍କ ପ୍ରତି ରହିଥିବା ଶ୍ରୀରାମକୃଷ୍ଣଙ୍କର ଅସଲ ଉଦ୍ଦେଶ୍ୟର ରହସ୍ୟ ସ୍ପଷ୍ଟ ପ୍ରତିଭାତ । ସମାଜର ପ୍ରତିଷ୍ଠିତ ଡାକ୍ତର, ଓକିଲ, ବିଦ୍ୱାନ ଓ ଧାର୍ମିକଗୁରୁ ଶ୍ରୀରାମକୃଷ୍ଣଙ୍କ ନିକଟକୁ ଆସୁଥିଲେ । କିନ୍ତୁ ସେମାନଙ୍କ ମଧ୍ୟରୁ ସେ ନରେନ୍ଦ୍ରଙ୍କୁ ସବୁଠାରୁ ଉଚ୍ଚରେ ରଖିଥିଲେ । ତାଙ୍କର ଏତାଦୃଶ ନିଃସ୍ୱାର୍ଥପର ଆଚରଣ ଓ ବ୍ୟବହାର ଯେ ତାଙ୍କର ଭବିଷ୍ୟତ ପଥ ପରିଷ୍କାର କରୁଛି, ତାହା ନରେନ୍ଦ୍ର ଉପଲବ୍ଧି କରି ସାରିଥିଲେ ।



Digitized by srujanika@gmail.com

॥ ନଅ ॥

# ପାଠପଢ଼ାରେ ଡୋରି ଲାଗିଲା - ନେତୃତ୍ୱ ନେବାର କଳା ବିକଶିତ ହେଲା

ଶ୍ରୀରାମକୃଷ୍ଣ ପରମହଂସ ଈଶ୍ୱରଙ୍କର ଏକ ଅବତାର ବା ମାନୁଷୀ ରୂପ ସମ ବଳିଷ୍ଠ ଚିନ୍ତାଧାରା ଯାହା ସାଧାରଣତଃ ଭାରତୀୟ ମାନସିକତାରେ ଦେଖାଯାଏ, ବର୍ତ୍ତମାନ ନରେନ୍ଦ୍ରଙ୍କୁ ତାହା ତିଳେମାତ୍ର ସ୍ପର୍ଶ କରିନାହିଁ । କିନ୍ତୁ ତାଙ୍କର ଚରିତ୍ର, ସ୍ୱଭାବ ଓ ଆଚରଣ ସାଧାରଣ ମାନବୀୟ ଗୁଣରେ ଆଚ୍ଛନ୍ନ ନୁହେଁ, ତାହା ସେ ଏକପ୍ରକାର ସିଦ୍ଧାନ୍ତରେ ଉପନୀତ ହୋଇସାରିଲେଣି । ସମସ୍ତ ଶାସ୍ତ୍ରର ତତ୍ତ୍ୱ ଜୀବନ୍ତ ଓ ପରିସ୍ଫୁଟ ହୋଇଛନ୍ତି ତାଙ୍କ ଭିତରେ ସେ ନିଃସନ୍ଦେହରେ ମନେମନେ ଭାବି ନେଲେଣି । ଅନ୍ୟମାନେ ଯେପରି ଶ୍ରୀରାମକୃଷ୍ଣଙ୍କୁ ଭାବୁଥିଲେ ଓ ଗ୍ରହଣ କରୁଥିଲେ, ତାହାଠାରୁ ଅଧିକ ବ୍ୟାପକ ଓ ପ୍ରସାରିତ ଦୃଷ୍ଟିକୋଣରେ ମାପୁଥିଲେ ନରେନ୍ଦ୍ର । ସବୁଧର୍ମର ଅନ୍ତିମ ଲକ୍ଷ୍ୟ ଏବଂ ଗୋଟିଏ ଧର୍ମର ଅନ୍ତିମ ଲକ୍ଷ୍ୟରେ ସେ ସୀମିତ ନୁହନ୍ତି ବୋଲି ତାଙ୍କର ଅବଚେତନ ମନରୁ ବାରମ୍ବାର ଅଶ୍ରୁତସ୍ୱର ସେ ଶୁଣିବାକୁ ପାଉଥିଲେ । ଆଧ୍ୟାତ୍ମିକ ଜୀବନର ସର୍ବଶ୍ରେଷ୍ଠ ସମ୍ଭାବ୍ୟତା ତାଙ୍କ ବାକ୍ୟରେ ପରିପୂର୍ଣ୍ଣ, ସେ ଅନୁଭବ କଲେ । ଅବଶ୍ୟ ଏକଇ ଚୈତନ୍ୟ ବହୁ ରୂପରେ ବିଦ୍ୟମାନ । କିନ୍ତୁ ନିଜ ଦେହ, ମନ ଓ ଇନ୍ଦ୍ରିୟମାନଙ୍କ ମାଧ୍ୟମରେ ସେହି ଚୈତନ୍ୟ ସୀମିତ ଓ ବନ୍ଦୀ ସଦୃଶ ଅନୁଭୂତ ହୁଏ ଯାହା ମନୁଷ୍ୟ ଜାଣିପାରେ ନାହିଁ । କିନ୍ତୁ ଶ୍ରୀରାମକୃଷ୍ଣ ବନ୍ଧନ ମୁକ୍ତ, ଅନନ୍ତ ଚୈତନ୍ୟ ଓ ଆନନ୍ଦ ସେ ନିଜେ ହୋଇଯାଇଛନ୍ତି, ଯାହାଫଳରେ ସେ ବାରମ୍ବାର ସମାଧିସ୍ଥ ହେଉଛନ୍ତି, ବହୁ କଷ୍ଟରେ ଭକ୍ତମାନଙ୍କ ସହ ବାର୍ତ୍ତାଳାପ ଏବଂ ନିତ୍ୟକର୍ମ ସମାପନ କରିବା ଲାଗି ଦେହାଭିମୁଖୀ ହୁଅନ୍ତି । ସଂସାର ଓ ସଂସାରାତୀତ ଇଲାକା କିମ୍ବା ନିତ୍ୟ ଓ ଲୀଳା ଭିତରେ ସେ ଏକ ପଥ ନିର୍ମାଣ କରିଛନ୍ତି ଯାହା ମାଧ୍ୟମରେ ସେ ଅନାୟସରେ ଆତଯାତ କରି ପାରନ୍ତି ।

ଏତାଦୃଶ ଉପରୋକ୍ତ ଚିନ୍ତାରେ ନରେନ୍ଦ୍ର ବୁଡି ଯାଉଥିଲାବେଳେ ସେ ଶ୍ରୀରାମକୃଷ୍ଣଙ୍କ ଭିତରେ ଏକ ନୂତନ ଦିଗ ଉନ୍ମୋଚନ କଲେ । ହିନ୍ଦୁଧର୍ମର ସାରାଂଶ ଓ ମୂର୍ତ୍ତିମନ୍ତ ମାନବ ଭାବେ ତାଙ୍କ ଦୃଷ୍ଟିରେ ଶ୍ରୀରାମକୃଷ୍ଣ ପ୍ରତିଭାତ ହେଲେ । ଏତଦ୍‌ବ୍ୟତୀତ ଶ୍ରୀଚୈତନ୍ୟ, ଶ୍ରୀଶଙ୍କରାଚାର୍ଯ୍ୟ ଓ ମହାକାରୁଣିକ ଗୌତମ ବୁଦ୍ଧଙ୍କୁ ସେ ଶ୍ରୀରାମକୃଷ୍ଣଙ୍କ ଭିତରେ ନୂତନଭାବେ ପୁନଃ ଆବିଷ୍କାର କଲେ । ସବୁଧର୍ମ, ସମ୍ପ୍ରଦାୟ, ମତ ଓ ପଥର ମିଳନଘଟକ ସ୍ୱୟଂ ଶ୍ରୀରାମକୃଷ୍ଣ ଆଗାମୀ ଯୁଗରେ ଆଧୁନିକ ଓ ବିଜ୍ଞାନୀ ମନୁଷ୍ୟକୁ ମାର୍ଗ ଦର୍ଶନ କରିବେ ବୋଲି ସେ ନିଶ୍ଚିତ ହେଲେ । ଅନ୍ୟପକ୍ଷରେ ଶ୍ରୀରାମକୃଷ୍ଣ, ନରେନ୍ଦ୍ରଙ୍କର ପିତାଙ୍କ ଦେହାନ୍ତ ପରେ ଯେଉଁ ପାରିବାରିକ ଦୁଃଖ, କଷ୍ଟ ଓ ନିର୍ଯ୍ୟାତନାର

Digitized by srujanika@gmail.com

ସମ୍ମୁଖୀନ ହେଉଥିଲେ, ତାହାର ନିରାକରଣ ପାଇଁ ସେ ଅଧିକ ତତ୍ପର ଓ ଯତ୍ନବାନ ଥିଲେ । ନରେନ୍ଦ୍ରଙ୍କୁ ସାହାଯ୍ୟ ନିମନ୍ତେ ପ୍ରଭାବଶାଳୀ ଭକ୍ତମାନଙ୍କୁ ସେ ଅନୁରୋଧ କରୁଥିଲେ । ତାଙ୍କର ଏଭଳି ଏକ ଅନୁରୋଧ ଭିକ୍ଷା ନରେନ୍ଦ୍ରଙ୍କ ଉପସ୍ଥିତିରେ ଘଟିଥିଲା । ଜଣେ ପ୍ରଭାବଶାଳୀ ଭକ୍ତଙ୍କୁ ଶ୍ରୀରାମକୃଷ୍ଣ କହିଥିଲେ, ''ନରେନ୍‌ର ପିତାଙ୍କର ଦେହାନ୍ତ ହୋଇଛି । ତା'ର ପରିବାର ଭୋକ ଉପାସରେ କାଳ କାଟୁଛନ୍ତି । ତେଣୁ ସାଙ୍ଗମାନେ ତାଙ୍କୁ ସାହାଯ୍ୟ କରିବା ଆବଶ୍ୟକ ।'' ଶ୍ରୀରାମକୃଷ୍ଣ ଏତକ କହିଦେଲେ ତ, କିନ୍ତୁ ଉକ୍ତ ପ୍ରଭାବଶାଳୀ ଭଦ୍ରଲୋକ ସେଠାରୁ ପ୍ରସ୍ଥାନ କଲାପରେ ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କୁ କହିଲେ, ''ଆଜ୍ଞା, ଆପଣ ମୋ ବିଷୟରେ ତାଙ୍କୁ କାହିଁକି ଏଭଳି କହିଲେ ?''

ଶ୍ରୀରାମକୃଷ୍ଣ ବୁଝିଗଲେ ନରେନ୍ଦ୍ରଙ୍କର ଅନ୍ତରର ଅକୁହାଭାଷା । ପରିବାରର ଦୁଃଖଦ କାହାଣୀ ଅନ୍ୟ ନିକଟରେ ପ୍ରକାଶ କରିବା ଦ୍ୱାରା ସେ ଆଘାତପ୍ରାପ୍ତ ବୁଝିପାରି ଶ୍ରୀରାମକୃଷ୍ଣ ଅଶ୍ରୁପୂର୍ଣ୍ଣ ନୟନରେ କହି ଉଠିଲେ, ''ନରେନ୍‌ରେ, ତୁ କ'ଣ ଜାଣିନୁ ଯେ ତୋ ପାଇଁ ମୁଁ ସବୁକିଛି କରିପାରେ । ଦରକାର ପଡ଼ିଲେ ତୋ ପାଇଁ ଦୁଆର ଦୁଆର ବୁଲି ଭିକ ମୁଁ ମାଗିବି ।'' ତାଙ୍କର ଅହେତୁକ ପ୍ରେମ ଓ ସ୍ନେହ ଦେଖି ନରେନ୍ ଆଶ୍ଚର୍ଯ୍ୟ ହେଲେ । ପରବର୍ତ୍ତୀ କାଳରେ ନରେନ୍ଦ୍ର ନିଜେ ସ୍ୱୀକାର କରିଥିଲେଯେ - ସେ ମୋତେ ପ୍ରେମରେ ଏମିତି ବାନ୍ଧିଥିଲେ ଯେ ମୁଁ ନିଜକୁ ତାଙ୍କର ଭୃତ୍ୟ ବୋଲି ଭାବୁଛି । ଶ୍ରୀରାମକୃଷ୍ଣଙ୍କ ଆଶୀର୍ବାଦ ଫଳରେ ନରେନ୍ଦ୍ରଙ୍କର ପାରିବାରିକ ଦୁଃଖ କିୟଦାଂଶରେ ଲାଘବ ହେଲା । ନ୍ୟାୟାଳୟରେ ପାରିବାରିକ ସଂପତ୍ତି ପାଇଁ ଯେଉଁ କେଶ୍ ଚାଲିଥିଲା, ତାହା ନରେନ୍ଦ୍ରଙ୍କ ପରିବାର ସପକ୍ଷରେ ରାୟ ପ୍ରକାଶ ପାଇଲା । ତାଙ୍କର ପରିବାର ଏଥର ଆଶ୍ୱସ୍ତ ହେଲା ।

- ୧ -

*ଶ୍ରୀରାମକୃଷ୍ଣଙ୍କୁ ବହୁ ପରୀକ୍ଷା-ନିରୀକ୍ଷା ପରେ ନରେନ୍ଦ୍ର ଚିହ୍ନି ପାରିଲେ ଯେ ଏହି ଅସାଧାରଣ ବ୍ୟକ୍ତିଙ୍କୁ କୌଣସି ସାଂସାରିକ ମାପକାଠିରେ ତଉଲେଇ ହେବ ନାହିଁ ।*

ପ୍ରଥମ ଚାରିବର୍ଷ ଶିକ୍ଷା ଓ ପ୍ରଶିକ୍ଷଣ, ଅନେକ ଯୁକ୍ତି ଓ ତର୍କ, ପ୍ରଶ୍ନ ଓ ପରୀକ୍ଷା-ନିରୀକ୍ଷା ଭିତରେ ଅତିବାହିତ ହେଲା । ନରେନ୍ଦ୍ର ଶେଷରେ ଆବିଷ୍କାର କଲେ ଯେ ଶ୍ରୀରାମକୃଷ୍ଣ ଏଭଳି ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଯାହାଙ୍କୁ କୌଣସି ସାଂସାରିକ ମାପକାଠିରେ ତଉଲେଇ ହେବନାହିଁ । ସେ ମନୁଷ୍ୟ ରୂପଧାରଣ କରିଛନ୍ତି ସତ, ଆମ ଭଳି ନିଶ୍ୱାସ-ପ୍ରଶ୍ୱାସ ନେଉଛନ୍ତି ସତ, କିନ୍ତୁ ଜୀବନଧାରଣ ନିମନ୍ତେ କେତେକ ଆବଶ୍ୟକୀୟ ନିତୀକର୍ମ ବ୍ୟତୀତ ଅନ୍ୟକୌଣସି ମାନବୀୟ ଗୁଣ ଓ ଅବଗୁଣରେ ସେ ଆଦୌ ବନ୍ଦୀ ନୁହନ୍ତି । ସେ ଏକ ମୁକ୍ତ ଚେତନାର ପ୍ରବାହ ଯିଏ କୌଣସି ନିର୍ଦ୍ଦିଷ୍ଟ ବସ୍ତୁରେ ସୀମିତ ହୋଇପାରିବେ ନାହିଁ । ତାଙ୍କର ସମସ୍ତ ପ୍ରଶ୍ନ ଓ ସଂଶୟର ଏଭଳି ପରିସମାପ୍ତି ସେ ଘଟାଇ ପାରିଛନ୍ତି, ଯାହା ତାଙ୍କର ଆତ୍ମବିଶ୍ୱାସକୁ ହିମାଳୟ ପରି ଅଟଳ କରିଦେଇଛି । ତାଙ୍କର ସ୍ପର୍ଶ, ବାକ୍ୟ, ଚାହାଣି, ହସ, ଅଶ୍ରୁ, ନୃତ୍ୟ, ସଙ୍ଗୀତ ଓ ମୁହୁର୍ମୁହୁ ସମାଧିରେ କୌଣସି ପ୍ରକାର

Digitized by srujanika@gmail.com

ଚମତ୍କାରିତା ସେ ଦେଖୁନାହାନ୍ତି ବରଂ ସେଥିରେ ଦେଖୁଛନ୍ତି ଓ ଉପଲବ୍ଧି କରିଛନ୍ତି ଏକ ଶାଶ୍ୱତ ଚୈତନ୍ୟର ପ୍ରବାହ ମାତ୍ର ।

ଯେଉଁ ଶାଶ୍ୱତ ଅନନ୍ତ ଚୈତନ୍ୟକୁ ବେଦାନ୍ତ କହେ "ତୁମେ ଓ ମୁଁ ବ୍ରହ୍ମ", ତାହା ଇ ଶ୍ରୀରାମକୃଷ୍ଣ ରୂପ ଭିତରେ ପ୍ରତ୍ୟହ ସ୍ରୋତଗାମୀ ଯାହା ସାଧାରଣ ମନୁଷ୍ୟ ଭିତରେ ଦେଖିବା ବିରଳ । ନରେନ୍ଦ୍ରଙ୍କର ଅନ୍ତରାତ୍ମା ଶ୍ରୀରାମକୃଷ୍ଣଙ୍କ କଥା ଭାବୁ ଭାବୁ ଆଲୋକିତ ହୋଇଉଠିଲା - ବିଶାଳ କାଦୁଅ ପ୍ରାନ୍ତରର ଏକ ଦୃଷ୍ଟାନ୍ତ ତାଙ୍କ ମାନସପଟରେ ଝଲସି ଉଠିଲା - ସେହି କାଦୁଅରୁ ନିର୍ମିତ ହୁଏ ଏକ ବିରାଟ ହାତୀ ଏବଂ କ୍ଷୁଦ୍ର ମୂଷିକ । ପ୍ରଶ୍ନ ଉଠୁଛି କ୍ଷୁଦ୍ର କାଦୁଅ ମୂଷିକ କ'ଣ ବିରାଟ କାଦୁଅ ହାତୀ ହୋଇପାରିବ ? ନା କେବେ ସମ୍ଭବ ନୁହେଁ । କିନ୍ତୁ କାଦୁଅ ହାତୀ ଓ ମୂଷିକକୁ ଯଦି ପାଣିରେ ପୁନଶ୍ଚ ବୁଡ଼ାଇ ଦିଆଯାଏ, ତାହାଲେ ଉଭୟ ପୁନଶ୍ଚ କାଦୁଅ ହୋଇଯିବେ । କିନ୍ତୁ ଯେପର୍ଯ୍ୟନ୍ତ କାଦୁଅ ହାତୀ ଓ ମୂଷିକର ରୂପ ରହିବ, ସେପର୍ଯ୍ୟନ୍ତ ଏକ ବିରାଟ ବ୍ୟବଧାନ ଦୁହିଁଙ୍କ ମଧ୍ୟରେ ବିରାଜମାନ କରିବ ହିଁ କରିବ । ସେହି ଅନନ୍ତ ଶାଶ୍ୱତ ଚୈତନ୍ୟ ଜଳ ଓ କାଦୁଅ ସଦୃଶ । ଶ୍ରୀରାମକୃଷ୍ଣ କାଦୁଅର ଏକ ରୂପ କିନ୍ତୁ ସନ୍ତରଣ କରୁଛନ୍ତି ଅନନ୍ତ ଶାଶ୍ୱତ ଆନନ୍ଦମୟ ଚୈତନ୍ୟ ସାଗରରେ ।

୧୮୮୫ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମକାଳରେ, ଅସହ୍ୟ ଉତ୍ତାପ ଓ ଗୁଳଗୁଳି ଯୋଗୁଁ, ଶ୍ରୀରାମକୃଷ୍ଣ ନିଜ ଗଳାରେ ହଠାତ୍ ଯନ୍ତ୍ରଣା ଅନୁଭବ କଲେ । ଭକ୍ତମାନେ ଯନ୍ତ୍ରଣାର ଉପଶମ ପାଇଁ ବରଫ ଓ ମିଶ୍ରି ମିଶାଇ ତାଙ୍କୁ ପିଇବାକୁ ଦେଲେ । ସଦା ବାଳକ ସ୍ୱଭାବୀ ଶ୍ରୀରାମକୃଷ୍ଣ ମହାଆନନ୍ଦରେ ନାଚି ନାଚି ବରଫଜଳ ପାନ କଲେ । ମାସେ ଦୁଇମାସ ପରେ ଯନ୍ତ୍ରଣାର ବୃଦ୍ଧି ଘଟିଲା । କଲିକତାର ବହୁ ବଜାର ପ୍ରସିଦ୍ଧ ଡାକ୍ତର ରାଖାଲ ତାଙ୍କୁ ପରୀକ୍ଷା କରି ଔଷଧ ସେବନ ଓ ପ୍ରଲେପନ କରିବା ପାଇଁ ପରାମର୍ଶ ଦେଲେ । ତାହାହିଁ ହେଲା । କିନ୍ତୁ ଗଙ୍ଗା କୂଳରୁ ପାଣିହାଟି ବୈଷ୍ଣବ ମହୋତ୍ସବରେ ସେ ନୃତ୍ୟ ଓ ଗୀତରେ ଭାଗ ନେବାରୁ ତାଙ୍କର ବ୍ୟାଧି ଗୁରୁତର ହେଲା । ସେ ବିଶେଷ କଥାବାର୍ତ୍ତା କରିପାରିଲେ ନାହିଁ । ପଦେ ଦୁଇପଦ କଥା କହି ବାରମ୍ବାର ସମାଧିରେ ନିମଜ୍ଜିତ ହେଲେ । ଖାଇବା, ପିଇବା ବିସ୍ମରଣ ହେଲେ । ଧ୍ୟାନସ୍ଥ ହୋଇ ଗଭୀର ସମାଧିରେ ବିଚରଣ କଲେ । ପ୍ରକୃତ କ୍ରୁଶବିଦ୍ଧ ଯନ୍ତ୍ରଣାରେ ସେ ଜର୍ଜରିତ ହେବାକୁ ଲାଗିଲେ ।

ଭକ୍ତମାନଙ୍କ ମଧ୍ୟରେ ଖେଳିଗଲା ଶୋକର ଛାୟା । ପରମଭକ୍ତ ନରେନ୍ଦ୍ର ଅବସ୍ଥାର ଭୟାବହତା ହୃଦୟଙ୍ଗମ କରି ନୈରାଶ୍ୟରେ ଅତ୍ୟନ୍ତ ଶିହରିତ ହୋଇଉଠିଲେ । ନରେନ୍ଦ୍ର ବ୍ୟସ୍ତ ହୋଇ ଜଣେ ବନ୍ଧୁଙ୍କୁ କହିଥିଲେ, "ଆମର ପ୍ରେମ ଓ ପୂଜାର ମଣିଷ ବୋଧହୁଏ ବେଶିଦିନ ଆଉ ଇହ ସଂସାରରେ ରହିବେ ନାହିଁ, ମୋର ଭାରି ଭୟ ହେଉଛି । ଏହି ବ୍ୟାଧି ସମ୍ବନ୍ଧରେ ମୁଁ ଭେଷଜ ଶାସ୍ତ୍ର ଅଧ୍ୟୟନ କରିଛି ଏବଂ ବହୁ ଡାକ୍ତରଙ୍କ ସହ ମଧ୍ୟ ପରାମର୍ଶ କରିଛି । ଏହି ଗଳାରୋଗ ଦୁଃସାଧ୍ୟ କର୍କଟ ରୋଗ, ଯାହାର ନିଦାନ ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ।"

ଭକ୍ତମାନେ ଚିନ୍ତା କଲେ ଯେ ଶ୍ରୀରାମକୃଷ୍ଣଙ୍କର ବ୍ୟାଧିର ଚିକିତ୍ସା ଏବଂ ଜଳବାୟୁ ପରିବର୍ତ୍ତନ ନିମନ୍ତେ, ତାଙ୍କୁ କଲିକତାରେ ରଖିବାକୁ ପଡ଼ିବ । ଦରିଦ୍ର ଓ ଚିର କାଙ୍ଗାଳ ଆମର ଠାକୁର । କିଏ ତାଙ୍କର ଖର୍ଚ୍ଚ ବହନ କରିବ ? ଆମେ ସମସ୍ତେ ତ ପିଲା, ପାଠ ପଢୁଛନ୍ତି ।" ବାଳକ ଭକ୍ତମାନେ

Digitized by srujanika@gmail.com

ବିଚଳିତ ହୋଇ ପଡ଼ିଲେ । ଏଠାରେ ଉଲ୍ଲେଖନୀୟ ଯେ ଶ୍ରୀରାମକୃଷ୍ଣ ପରମହଂସଙ୍କୁ ସ୍ନେହ ଓ ଭକ୍ତିରେ ଭକ୍ତମାନେ ଠାକୁର ବୋଲି ସମ୍ବୋଧନ କରୁଥିଲେ । ସମସ୍ତଙ୍କ ସହ ବିଚାର ବିମର୍ଶ କରି ଭକ୍ତପ୍ରବୀର ନରେନ୍ଦ୍ର ଠାକୁରଙ୍କୁ କଲିକତା ନେଇଯିବା ପାଇଁ ନେତୃତ୍ୱ ଗ୍ରହଣ କଲେ । ପିଲାମାନଙ୍କର ଶ୍ରଦ୍ଧା ଲକ୍ଷ୍ୟ କରି ଶ୍ରୀରାମକୃଷ୍ଣ ବି ଚିକିତ୍ସା ପାଇଁ ରାଜି ହେଲେ । ପ୍ରଥମେ ବାଗବଜାରସ୍ଥିତ ଏକ ଭଡ଼ାଘରେ ତାଙ୍କୁ ରଖାଗଲା, କିନ୍ତୁ ସେଠାରେ ପରିବେଶ ଅନୁକୂଳ ନ ହେବାରୁ ପୁନଶ୍ଚ ତାଙ୍କୁ ଶାମପୁକୁରସ୍ଥିତ ଏକ ଭଡ଼ାଘରେ ରଖାଗଲା । ଖାଦ୍ୟପେୟର ସୁବନ୍ଦୋବସ୍ତ ନିମନ୍ତେ ମା ସାରଦା ମଧ୍ୟ ସେଠାରେ ରହିଲେ । ଶ୍ରୀରାମକୃଷ୍ଣଙ୍କ ପ୍ରତି ନରେନ୍ଦ୍ରର ପ୍ରେମ, ନିଃସ୍ୱାର୍ଥପର ତ୍ୟାଗ ଓ ଉତ୍ସାହ ଦ୍ୱାରା ସମସ୍ତଭକ୍ତ ହେଲେ ଅନୁପ୍ରେରିତ । ସମସ୍ତେ ଆଧ୍ୟାତ୍ମିକ ଗୁରୁଙ୍କ ସେବାରେ ମନ ଓ ପ୍ରାଣ ଢାଳିଦେଇ ବିଭିନ୍ନ କାର୍ଯ୍ୟରେ ଲାଗିପଡ଼ିଲେ । ସେମାନେ ପାଠ ପଢ଼ା ଭୁଲିଗଲେ ଓ ସ୍କୁଲ ଓ କଲେଜ ଗଲେନାହିଁ । ସେମାନଙ୍କର ପିତା ଓ ମାତା ବାଧ୍ୟ ହୋଇ ଏଭଳି ଗୁରୁତ୍ୱପୂର୍ଣ୍ଣ ସମୟ ଜଣେ ଅନାମଧେୟ ଧାର୍ମିକ ବ୍ୟକ୍ତିଙ୍କ ନିମନ୍ତେ ନଷ୍ଟ ନ କରିବା ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇଲେ । କିନ୍ତୁ ନରେନ୍ଦ୍ରଙ୍କର ନେତୃତ୍ୱ ନେବାର କଳାର ଯାଦୁରେ ଏହି ବାଳକମାନେ ଏଭଳି ଥିଲେ ମନ୍ତ୍ରମୁଗ୍ଧ ଯେ ପିତାମାତାଙ୍କର ଭର୍ତ୍ସନା ଓ ହସ୍ତକ୍ଷେପ ଆଦୌ ସେମାନଙ୍କ ଉପରେ କାଟୁ କଲାନାହିଁ ।

- ୨ -

*ନରେନ୍ଦ୍ରଙ୍କର ଭାବନା ଭିତରେ ଶ୍ରୀରାମକୃଷ୍ଣ ଛାଇ ହୋଇଗଲେ ।*
*ଗୁରୁଦେବଙ୍କ ପଦପ୍ରାନ୍ତରେ ନିଜକୁ ସମର୍ପଣ କରି ତାଙ୍କର ଯଥାବିଧି*
*ସେବାରେ ସେ କାୟମନୋ-ବାକ୍ୟରେ ଲାଗିପଡ଼ିଲେ ।*

ଶ୍ରୀରାମକୃଷ୍ଣଙ୍କର ଭକ୍ତମାନଙ୍କ ମଧ୍ୟରୁ କେହି ଜଣେ ବି ଧନୀ ନ ଥିଲେ ଯିଏ ତାଙ୍କର ସମସ୍ତ ଖର୍ଚ୍ଚ ଏକାକୀ ବହନ କରିପାରିଥାନ୍ତେ । ଖର୍ଚ୍ଚର ବୃଦ୍ଧି ଯୋଗୁଁ ଏହି ବାଳକମାନେ ଅବଶ୍ୟ ହତୋତ୍ସାହ ହୋଇପଡ଼ିଲେ, ସେମାନଙ୍କ ମଧ୍ୟରୁ କେହି କେହି ଗୃହକୁ ଫେରିଯିବା ପାଇଁ ମଧ୍ୟ ମନସ୍ଥ କରିନେଲେ । କିନ୍ତୁ ଶ୍ରୀରାମକୃଷ୍ଣଙ୍କର ଦିବ୍ୟ ପ୍ରେମ ଏଭଳି ସେମାନଙ୍କୁ ଆଚ୍ଛାଦିତ କରିଥିଲା ଯେ ସେମାନେ ନିଜ ଭିତରୁ ଏକ ଅଶ୍ରୁତ ସ୍ୱର ଶୁଣିବାକୁ ପାଇଲେ - ଛି ଛି - ଏଭଳି ଅଯଥା ଚିନ୍ତା ଆମେ କାହିଁକି କରୁଛୁ ? ଠାକୁର ସ୍ୱୟଂ ସବୁ ଯୋଗାଡ଼ କରିଦେବେ ।'' ଅନ୍ୟ କେତେଜଣ ମଧ୍ୟ ଭାବିଲେ ''ଆହାଃ... ଆଧ୍ୟାତ୍ମିକ ରାଜ୍ୟରେ ସଦା ବିଚରଣରତ ଏହି ମହାନ ପୁରୁଷ ସିଂହଙ୍କର ସେବା କରିବା ପାଇଁ ଆମକୁ ସୁଯୋଗ ମିଳିଛି, ଯାହାଫଳରେ ତାଙ୍କ ପାଖରୁ ଆଧ୍ୟାତ୍ମିକ ଜ୍ଞାନ ଆମେ ନେଇପାରିବୁ ।'' ଆଉ କେତେକ ଭକ୍ତ ଭାବିଲେ, ''ଠାକୁରଙ୍କର ବ୍ୟାଧି ଜଗଜ୍ଜନନୀ କାଳୀଙ୍କର ଇଚ୍ଛା । ଏହି ବ୍ୟାଧିର ପୀଡ଼ା ମାଧ୍ୟମରେ ବୋଧହୁଏ ମା କାଳୀ କୌଣସି ଲକ୍ଷ୍ୟର ପୂର୍ତ୍ତି କରାଇବେ । ଆଉ କେତେ ଭକ୍ତଙ୍କ ମତରେ - ଠାକୁର ଜାଣିଶୁଣି ଏହି ରୋଗ ନିଜ ଭିତରେ ଭିଆଇଛନ୍ତି, କାରଣ ମାନବ ଜାତିର କଲ୍ୟାଣ ନିମନ୍ତେ ଅବତାରମାନେ ଏହା କରିଥାନ୍ତି । ଯୀଶୁଖ୍ରୀଷ୍ଟ କ୍ରୁଶବିଦ୍ଧ ହୋଇ ଅକଥନୀୟ ଯନ୍ତ୍ରଣାରେ ଛଟପଟ ହୋଇଥିଲେ, ମନୁଷ୍ୟ ପାପକୁ ନିଜେ ଗ୍ରହଣ

Digitized by srujanika@gmail.com

କରି ଜଗତର କଲ୍ୟାଣ କରିଥିଲେ । କେତେକ ଭକ୍ତ ମଧ୍ୟ ଭାବୁଥିଲେ - ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି ଚକ୍ରରେ ସବୁ ଜୀବ ପଡ଼ିବେ ହିଁ ପଡ଼ିବେ, ଏହା ଏକ ପ୍ରାକୃତିକ ନିୟମ । ଯେହେତୁ ଠାକୁର ଜଣେ ମଣିଷ, ତେଣୁ ସେ ବ୍ୟାଧିଗ୍ରସ୍ତ ହେବା ସ୍ୱାଭାବିକ । ଏଥିରେ କୌଣସି ପ୍ରକାର ଏକ ଐଶ୍ୱରିକ ଉଦ୍ଦେଶ୍ୟ ନିହିତ ବୋଲି ଭାବିବା ମୂର୍ଖତା ଛଡ଼ା କିଛି ବି ନୁହେଁ ।''

ଭକ୍ତମାନେ ବିଭିନ୍ନ ଦୃଷ୍ଟିରେ ଶ୍ରୀରାମକୃଷ୍ଣଙ୍କର ବ୍ୟାଧିର କାରଣ ସମ୍ବନ୍ଧରେ ମତବ୍ୟକ୍ତ କରୁଥିଲେ ବି ସମସ୍ତଙ୍କ ଭିତରେ ଏକ ଦୃଢ଼ ବିଶ୍ୱାସ ରହିଥିଲା ଯେ ସେ ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଯାହାଙ୍କଠାରେ ସ୍ୱାର୍ଥର ତିଳେମାତ୍ର ଚିହ୍ନବର୍ଣ୍ଣ ନାହିଁ ଏବଂ ମନୁଷ୍ୟର ଚୈତନ୍ୟ ଉଦୟ ଲାଗି ପଥ ପ୍ରଦର୍ଶନ କରାଇବା ନିମନ୍ତେ ତାଙ୍କର ଜନ୍ମ । ତାଙ୍କରି ସେବାରେ ନିଜକୁ ସମର୍ପଣ କରିପାରିଲେ, ମନୁଷ୍ୟ ଜୀବନର ପରମଲକ୍ଷ୍ୟ ପୂରଣ ହେବ । ଯେଉଁ ଗୃହୀ ଭକ୍ତମାନେ ଶ୍ରୀରାମକୃଷ୍ଣଙ୍କୁ ନିଜର ଗୁରୁ ଅଥବା ଆରାଧ୍ୟ ଦେବତା ଭାବେ ପୂଜା ଓ ସମ୍ମାନ କରୁଥିଲେ, ସେମାନେ ସମସ୍ତେ ଏକ ମନରେ ଯୁବ ଭକ୍ତଗଣଙ୍କୁ ଅର୍ଥ ଓ ପରାମର୍ଶ ପ୍ରଦାନ କରି ଉତ୍ସାହିତ କଲେ ।

ନରେନ୍ଦ୍ର ଧର୍ମାନ୍ଧ ନ ଥିଲେ । ଯେଉଁ ବ୍ୟକ୍ତିଙ୍କୁ ଜଣେ ପ୍ରେମମୟ ପୁରୁଷ ଭାବେ ସେ ପୂର୍ବରୁ ଦେଖିଥିଲେ ଏବଂ ବର୍ତ୍ତମାନ ଜଣେ ବ୍ୟାଧିଗ୍ରସ୍ତ ବ୍ୟକ୍ତି ଭାବେ ଦେଖୁଛନ୍ତି, ସେ ହିଁ ଏକ ଅସାଧାରଣ ଦିବ୍ୟ ବ୍ୟକ୍ତିତ୍ୱ, ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ସେ ଶ୍ରୀରାମକୃଷ୍ଣଙ୍କ ଭିତରେ ମାନବ ଓ ଈଶ୍ୱରଙ୍କର ଅଭିନ୍ନ ରୂପ ଦର୍ଶନ କରିଛନ୍ତି । ସୀମିତ ମାନବୀୟ ଗୁଣକୁ ଅତିକ୍ରମ କରି ମଣିଷ କିପରି ଏଠାରେ ଈଶ୍ୱରରେ ରୂପାନ୍ତରିତ ହୋଇପାରିବ, ତାହା ଦେଖାଇ ଦେବା ନିମନ୍ତେ ତାଙ୍କର ଏଠାରେ ଆଗମନ । ନରେନ୍ଦ୍ରଙ୍କର ଭାବନା ଭିତରେ ଶ୍ରୀରାମକୃଷ୍ଣ ଛାଇ ହୋଇଗଲେ । ଗୁରୁଙ୍କ ପଦପ୍ରାନ୍ତରେ ନିଜକୁ ସମର୍ପଣ କରି ତାଙ୍କର ଯଥାବିଧ ସେବାରେ ସେ କାୟମନୋବାକ୍ୟରେ ଲାଗିପଡ଼ିଲେ । ନରେନ୍ଦ୍ରଙ୍କର ତୀବ୍ର ବୈରାଗ୍ୟ ଓ ସେବା ମନୋଭାବ ଅନ୍ୟ ଯୁବ ଭକ୍ତମାନଙ୍କ ଭିତରେ ପ୍ରଚଣ୍ଡ ଆତ୍ମବିଶ୍ୱାସ ଜାତ କଲା । ଶ୍ରୀରାମକୃଷ୍ଣଙ୍କର ସେବା ବର୍ତ୍ତମାନ ସେମାନଙ୍କର ଏକାନ୍ତ ଧ୍ୟେୟ । ପାଠପଢ଼ା, ସ୍କୁଲ, କଲେଜ, ଏପରିକି ଘରଦ୍ୱାର, ପିତାମାତା ସବୁକିଛି ଭୁଲିଗଲେ । ଯୁବ ଭକ୍ତଗଣ ସିନା ଠାକୁରଙ୍କ ସେବାରେ ମନପ୍ରାଣ ଢାଳି ଦେଇଥିଲେ, କିନ୍ତୁ ସେହି ପିଲାମାନଙ୍କର ଖାଦ୍ୟପେୟ ବ୍ୟବସ୍ଥାର କଥା ମା ସାରଦା ନିଜେ ହିଁ ବୁଝୁଥିଲେ । ପତିଙ୍କର ସେବା କରିବା ସଙ୍ଗେ ସଙ୍ଗେ ନିଜ ସନ୍ତାନ ସମ ପିଲାମାନଙ୍କର ଯତ୍ନ ନେବାକୁ ପଡୁଥିଲା ।

ଶ୍ରୀରାମକୃଷ୍ଣ ପରମହଂସ ଜଣେ ଅବତାର କିମ୍ବା ଜଣେ ସାଧାରଣ ମାନବ, ଏହି ଦୁଇଟି ମତକୁ ନରେନ୍ଦ୍ର ଆଦୌ ସ୍ୱୀକାର କରୁ ନ ଥିଲେ । ଡାକ୍ତର ମହେନ୍ଦ୍ରଲାଲ ସରକାର ଶ୍ରୀରାମକୃଷ୍ଣଙ୍କର ଚିକିତ୍ସାର ଦାୟିତ୍ୱ ନେଇଥିଲେ । ସେ ପ୍ରାୟତଃ ସେଠାକୁ ଆସୁଥିଲେ । ଅନେକ ଭକ୍ତମାନଙ୍କ ସହ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ଆଲୋଚନା କରୁଥିଲେ । ଶ୍ରୀରାମକୃଷ୍ଣଙ୍କ ପ୍ରତି ତାଙ୍କର ଥିଲା ଅସୀମ ସ୍ନେହ ଓ ଶ୍ରଦ୍ଧା । କିନ୍ତୁ ସେ ଈଶ୍ୱରଙ୍କର ମାନୁଷୀ ରୂପ ଅଥବା ଅବତାର ତତ୍ତ୍ୱରେ ତାଙ୍କର ଆଦୌ ବିଶ୍ୱାସ ନ ଥିଲା । ଅବତାରବାଦ ସମ୍ବନ୍ଧରେ ତାଙ୍କ ସହ ନରେନ୍ଦ୍ରଙ୍କର ଏକଦା ପ୍ରଚଣ୍ଡ ବିତର୍କ ହୋଇଥିଲା । ଉକ୍ତ ଆଲୋଚନାରେ ନରେନ୍ଦ୍ର ତାଙ୍କୁ ସ୍ପଷ୍ଟ କହିଥିଲେ, ''ଆମେମାନେ ଶ୍ରୀରାମକୃଷ୍ଣଙ୍କୁ ଈଶ୍ୱର ଭଳି ଭାବିଥାଉ । ମହାଶୟ, ଆପଣ ଜାଣନ୍ତି କି ସେହି ଈଶ୍ୱର ଭଳି ଅବସ୍ଥା କ'ଣ ?

Digitized by srujanika@gmail.com

ଉଦ୍ଭିଦ ଜଗତ ଓ ଜୀବଜଗତ ମଧ୍ୟଭାଗରେ ଏଭଳି ଏକ ବିନ୍ଦୁ ରହିଛି ଯାହାକୁ ନା ଆପଣ ଉଦ୍ଭିଦ କହିପାରିବେ, ନା ଜୀବ କହିପାରିବେ । ସେହି ବିନ୍ଦୁର ସ୍ଥିତିକୁ ନିରୂପଣ କରିବା କଷ୍ଟସାଧ୍ୟ । ଠିକ୍ ସେହିଭଳି ମାନବଜଗତ ଓ ଈଶ୍ୱରଜଗତ ମଧ୍ୟଭାଗରେ ଏକ ସ୍ତର ରହିଛି । ସେହି ସ୍ତରରେ ଅବସ୍ଥିତ ମଣିଷକୁ ନା ଆପଣ ମନୁଷ୍ୟ କହିପାରିବେ ନା ଈଶ୍ୱର । ହଁ, ମୁଁ କହୁନାହିଁ ଯେ ଶ୍ରୀରାମକୃଷ୍ଣ ଈଶ୍ୱର କିନ୍ତୁ ମୁଁ ନିର୍ଦ୍ୱନ୍ଦରେ ଏତିକି କହି ପାରିବି ଯେ ସେ ଜଣେ ଈଶ୍ୱର ସଦୃଶ ବ୍ୟକ୍ତି ।

ନରେନ୍ଦ୍ରଙ୍କର ଏତାଦୃଶ ବ୍ୟାଖ୍ୟାରେ ଡାକ୍ତର ସରକାର ଅତି ଆଚମ୍ବିତ ଓ ଆନନ୍ଦିତ ହୋଇ ନରେନ୍ଦ୍ରଙ୍କୁ ମଧ୍ୟାହ୍ନ ଭୋଜନ ନିମନ୍ତେ ନିଜ ଗୃହକୁ ଆମନ୍ତ୍ରିତ କଲେ । କେବଳ ସେତିକି ନୁହେଁ ନରେନ୍ଦ୍ରଙ୍କର ଭଜନ ଶୁଣି, ସେ ତାଙ୍କୁ ଆନନ୍ଦରେ ଆଲିଙ୍ଗନ କରିଥିଲେ । ଡାକ୍ତର ସରକାର ଏଭଳି ନରେନ୍ଦ୍ରଙ୍କ ଉପରେ ଆନନ୍ଦିତ ଥିଲେ ଯେ ସେ ତତ୍‌କ୍ଷଣାତ୍ ଶ୍ରୀରାମକୃଷ୍ଣଙ୍କୁ ଶାମପୁକୁର ଭଡ଼ାଘରେ କହିଥିଲେ, ''ନରେନ୍ଦ୍ରଙ୍କ ଭଳି ବାଳକମାନେ ଆପଣଙ୍କ ସେବା କରି ବାସ୍ତବରେ ଧନ୍ୟ ହୋଇଛନ୍ତି । ଆଧ୍ୟାତ୍ମିକ ଶିକ୍ଷାରେ ଆପଣ ସେମାନଙ୍କୁ ଆଲୋକିତ କରୁଛନ୍ତି । ସେମାନଙ୍କ ଭିତରେ ନରେନ୍ଦ୍ର ମୁକ୍ତା ସମ, ଭବିଷ୍ୟତ ଜୀବନରେ ସେ ଉଜ୍ଜ୍ୱଳ ଆଲୋକ ହୋଇ ଝଟକିବ ।''

ଡାକ୍ତରଙ୍କ ନିକଟରୁ ନରେନ୍ଦ୍ରଙ୍କର ପ୍ରଶଂସା ଶୁଣିବା ପରେ ଶ୍ରୀରାମକୃଷ୍ଣଙ୍କୁ କିଏ ଆଉ ସମ୍ଭାଳେ ! ଆନନ୍ଦ ଗଦ୍‌ଗଦ୍ କଣ୍ଠରେ ସେ ଡାକ୍ତରଙ୍କୁ କହିଲେ, ''ଲୋକେ କହନ୍ତି ଯେ ଅଦ୍ୱୈତ ଗୋସ୍ୱାମୀଙ୍କର ଅଗ୍ନି ତପସ୍ୱୀ ନଦିୟାରେ ଶ୍ରୀଗୌରାଙ୍ଗଙ୍କୁ ଅବତାର ଭାବେ ଜନ୍ମ ଦେଇଥିଲା । ଠିକ୍ ସେହିଭଳି ଏହା ପାଇଁ (ନିଜ ଶରୀରକୁ ଦେଖାଇ) ନରେନ୍ଦ୍ରଙ୍କର ଏଠାକୁ ଆଗମନ ।'' ଡାକ୍ତର ସରକାର ଚମକି ପଡ଼ିଲେ । ଏଭଳି ଦୁଃସାଧ୍ୟ ବ୍ୟାଧିରେ ପୀଡ଼ିତ ହୋଇ ବି ନିଜ ଶରୀର ପ୍ରତି ଟିକିଏ ମାତ୍ର ଚିନ୍ତା ନ କରି, କେବଳ କହି ଚାଲିଛନ୍ତି ଈଶ୍ୱରଙ୍କର ଲୀଳା !

ସାଧାରଣତଃ ମଣିଷ କର୍କଟ ଭଳି ଭୟଙ୍କର ବ୍ୟାଧିରେ ପୀଡ଼ିତ ହେଲେ, ଭୟ ଓ ଆଶଙ୍କାରେ କାଳାତିପାତ କରିବାର ଦୃଷ୍ଟିଗୋଚର ହୋଇଥାଏ । କିନ୍ତୁ ଶ୍ରୀରାମକୃଷ୍ଣ ଏଭଳି ମାନସିକତାର ଥିଲେ ଏକ ବ୍ୟତୀକ୍ରମ । ରୋଗ ପୂର୍ବରୁ ସେ ଯେପରି ମୁହୁର୍ମୁହୁ ସମାଧିସ୍ଥ ହେଉଥିଲେ, ଈଶ୍ୱରୀୟ କଥାବାର୍ତ୍ତାରେ ସଦା ନିମଗ୍ନ ରହୁଥିଲେ, ସେହିଭଳି ବ୍ୟାଧିଗ୍ରସ୍ତ ହେବାପରେ ବି ତାଙ୍କର ଆଚରଣରେ କୌଣସି ପରିବର୍ତ୍ତନ ଘଟି ନ ଥିଲା । ନିଜ ମର ଜୀବନର ଅନ୍ତିମ କ୍ଷଣ ଦ୍ରୁତଗତିରେ ନିକଟତର ହେଉଛି ଜାଣି ଯୁବଭକ୍ତମାନଙ୍କ ଭିତରେ ଈଶ୍ୱର ଉପଲବ୍ଧିର ଦାଉ ଦାଉ ଜଳୁଥିବା ଇଚ୍ଛାଗ୍ନିକୁ ପ୍ରଜ୍ୱଳିତ କରିବା ନିମନ୍ତେ ସେ ଅତ୍ୟନ୍ତ ତତ୍ପର ହୋଇଉଠିଲେ । ଯୁବଭକ୍ତମାନଙ୍କୁ ଇତ୍ୟବସରରେ ଅନେକ ଉପଦେଶ ଓ ମାର୍ଗଦର୍ଶନ କରାଇବା ସହ ସେ ସବୁବେଳେ କହୁଥିଲେ, ''କାମିନୀ ଓ କାଞ୍ଚନ ପ୍ରତି ତୁମମାନଙ୍କର ମନ ଆକର୍ଷିତ ନ ହେଉ । ସବୁକିଛି ତ୍ୟାଗ କର । ତ୍ୟାଗ ତୁମମାନଙ୍କର ଶ୍ରେଷ୍ଠ ଆଦର୍ଶ ହେଉ ।'' ତାଙ୍କ ନିଜ ଜୀବନର ଜୀବନଚର୍ଯ୍ୟା, ତାଙ୍କର ଶକ୍ତିଶାଳୀ ମୁଖନିଃସୃତ ବାଣୀ, ଦିବ୍ୟ ଚେତନା ଓ ପରମ ସତ୍ୟ ସହ ତାଙ୍କର ପ୍ରତ୍ୟକ୍ଷ କଥୋପକଥନ, ତାଙ୍କର ସମସ୍ତଙ୍କ ପ୍ରତି ଅହେତୁକ କରୁଣା ସର୍ବୋପରି ଗଭୀର ସମାଧିରେ ମୁହୁର୍ମୁହୁ ନିମଜ୍ଜନ ପ୍ରତ୍ୟେକ ଭକ୍ତଙ୍କର ମନ ଓ ଚେତନାକୁ ନିରନ୍ତର ଆଲୋକିତ କରୁଥିଲା । ଗୃହୀଭକ୍ତ ଯେଉଁମାନେ ଶାମପୁକୁର ଭଡ଼ାଘରେ ଶ୍ରୀରାମକୃଷ୍ଣଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ, ସେମାନଙ୍କୁ

Digitized by srujanika@gmail.com

ସେ କହୁଥିଲେ, ''ବାବା, ବର୍ତ୍ତମାନ କଳିଯୁଗ । ଈଶ୍ୱରଙ୍କର ନାମ ଓ ଗୁଣ କୀର୍ତ୍ତନ କର । ନାରଦଙ୍କର ଏହି ଭକ୍ତିମାର୍ଗ ଆପଣେଇ ନେଇ, ପ୍ରଭୁଙ୍କର ନାମ ନିରନ୍ତର ମୁଖରେ ଉଚ୍ଚାରଣ କଲେ, ତୁମମାନଙ୍କ ଭିତରେ ଆଧ୍ୟାତ୍ମିକ ଜାଗରଣ ଘଟିବହିଁ ଘଟିବ ।

ଶାମପୁକୁର ଭଡ଼ା ଗୃହରେ, ତାଙ୍କର ନିରନ୍ତର ସେବା ଓ ଚିକିତ୍ସା ଚାଲିଥିବା ସମୟରେ, କେତେକ ଗୃହୀଭକ୍ତ ଶ୍ରୀରାମକୃଷ୍ଣଙ୍କୁ ଈଶ୍ୱରଙ୍କର ଏକ ଅବତାର ଭାବେ ପ୍ରଚାର ଆରମ୍ଭ କଲେ । କଲିକତାର ତତ୍‌କାଳୀନ ବିଶିଷ୍ଟ ସାହିତ୍ୟିକ ଓ ନାଟ୍ୟକାର ଗିରୀଶ ଚନ୍ଦ୍ର ଘୋଷ ଓ ସ୍ୱନାମଧନ୍ୟ ବୈଜ୍ଞାନିକ ଓ ଚିକିତ୍ସକ ଡାକ୍ତର ରାମଚନ୍ଦ୍ର ଦତ୍ତ, ଶ୍ରୀରାମକୃଷ୍ଣଙ୍କର ପରମ ଭକ୍ତଥିଲେ । ସେମାନେ ସର୍ବସମ୍ମୁଖରେ ଘୋଷଣା କଲେ ଯେ ଶ୍ରୀରାମକୃଷ୍ଣ ସ୍ୱୟଂ ଈଶ୍ୱରଙ୍କର ଅବତାର ହୋଇ ଧରାଧାମରେ ଅବତୀର୍ଣ୍ଣ । ତାଙ୍କୁ ଅବତାର ଦୃଷ୍ଟିରେ ସମାଦୃତ ଓ ପୂଜିତ କରିବା ପାଇଁ ସମସ୍ତଙ୍କ ଉପରେ ପ୍ରଭାବ ବିସ୍ତାର କଲେ । ବ୍ରାହ୍ମସମାଜର ସ୍ଥିତି ଶ୍ରୀରାମକୃଷ୍ଣଙ୍କର ବର୍ଦ୍ଧିତ ଲୋକପ୍ରିୟତାରେ ସେତେବେଳକୁ ଟଳମଳ । ବହୁଭକ୍ତ ବ୍ରାହ୍ମସମାଜ ତ୍ୟାଗକରି ଶ୍ରୀରାମକୃଷ୍ଣଙ୍କର ଆଧ୍ୟାତ୍ମିକ ଶ୍ରେଷ୍ଠତା ପାଖରେ ମସ୍ତକ ଅବନତ କଲେଣି । ବ୍ରାହ୍ମସମାଜର ମୁଖ୍ୟ କେଶବ ଚନ୍ଦ୍ର ସେନ ଓ ବିଖ୍ୟାତ ପ୍ରଚାରକ ବିଜୟକୃଷ୍ଣ ଗୋସ୍ୱାମୀ ବ୍ରାହ୍ମସମାଜରେ ରହି ବି ଶ୍ରୀରାମକୃଷ୍ଣଙ୍କର ଉଚ୍ଚପ୍ରଶଂସକ ସାଜି ସାରିଥିଲେ । ଏପରିକି ବିଜୟକୃଷ୍ଣ ଗୋସ୍ୱାମୀ, ତାଙ୍କର ଢାକା ବାସ ସ୍ଥାନରେ ଧ୍ୟାନରେ ଶ୍ରୀରାମକୃଷ୍ଣଙ୍କର ମହିମାମୟ ରୂପ ଦର୍ଶନ କଲେ । କାଳ ବିଳମ୍ବ ନ କରି **ଅକ୍ଟୋବର ୨୫, ୧୮୮୫**ରେ ସେ କଲିକତାରେ ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ କରିବା ପାଇଁ ଉପନୀତ ହେଲେ ।

ଶ୍ୟାମପୁକୁରଠାରେ ଉପସ୍ଥିତ ହୋଇ ସେ ଶ୍ରୀରାମକୃଷ୍ଣଙ୍କୁ କହିଲେ, ''ସମଗ୍ର ଦେଶ ମୁଁ ଭ୍ରମଣ କରିଛି, ବହୁ ଆଧ୍ୟାତ୍ମିକ ଗୁରୁଙ୍କର ଦର୍ଶନ ଲାଭ କରିଛି । କିନ୍ତୁ ଆପଣଙ୍କ ଭଳି ବ୍ୟକ୍ତି ମୁଁ କେଉଁଠାରେ ବି ଦେଖିନାହିଁ । ଅନ୍ୟ ସ୍ଥାନମାନଙ୍କରେ ମୁଁ ଦୁଇଅଣା, ଅତି ବେଶିରେ ତିନିଅଣା କିମ୍ବା ଚାରିଅଣାର ଆଧ୍ୟାତ୍ମିକ ଜାଗରଣର ସନ୍ଧ ଦେଖିଛି, କିନ୍ତୁ ଆପଣଙ୍କଠାରେ ମୁଁ ଷୋହଳ ଅଣାର ଐଶ୍ୱରିକ ଶକ୍ତିର ପୂର୍ଣ୍ଣ ପ୍ରକଟନ ଦର୍ଶନ କରୁଛି । ଢାକାରେ ଧ୍ୟାନାବସ୍ଥାରେ ମୁଁ ମୋର ଦିବ୍ୟଦର୍ଶନରେ ଆପଣଙ୍କୁ ଦେଖିଛି, ଆପଣଙ୍କ ଉପରେ ମୋର ତିଳେମାତ୍ର ସନ୍ଦେହ ନାହିଁ । ଲୋକମାନେ ଆପଣଙ୍କୁ ବୁଝିପାରିବେ ନାହିଁ, କାରଣ ସମସ୍ତଙ୍କର ଆପଣଙ୍କ ନିକଟକୁ ଅବାଧ ଓ ସହଜ ପ୍ରବେଶ ରହିଛି । ଆପଣ କଲିକତା ନିକଟରେ ଅବସ୍ଥାନ କରୁଛନ୍ତି । ଯାତାୟତର ସୁବିଧା ଅଛି । ଯିଏ ଚାହିଁବ ସେ ଆପଣଙ୍କୁ ଅନାୟସରେ ଭେଟି ପାରିବ । ତଥାପି ଆମେ ଆପଣଙ୍କର ମୂଲ୍ୟାଙ୍କନ କରିପାରିବୁ ନାହିଁ । କିନ୍ତୁ ଯଦି ଆପଣ କୌଣସି ଏକ ପର୍ବତ ଶିଖର ଦେଶରେ ଅବସ୍ଥାନ କରୁଥାନ୍ତେ, ସେଠାକୁ ଯାତ୍ରା କରିବା ବହୁ କଷ୍ଟସାଧ ବ୍ୟାପାର ହୋଇଥାନ୍ତା, ତେବେ ଆପଣଙ୍କୁ ଭିନ୍ନ ଦୃଷ୍ଟିରେ ଆମେ ମୂଲ୍ୟାଙ୍କନ କରିଥାନ୍ତୁ । ବର୍ତ୍ତମାନ ଆମେ ଭାବୁଛୁ ଯେ ଯଦି ଏଭଳି ଆଧ୍ୟାତ୍ମିକ ମାନବ ଆମ ନିକଟରେ ବାସ କରୁଛନ୍ତି ତେବେ ଦୂରସ୍ଥ ସ୍ଥାନରେ କେଡ଼େ ଶକ୍ତିଶାଳୀ ଆଧ୍ୟାତ୍ମିକ ମାନବ ସତରେ ବାସ କରୁ ନ ଥିବେ । ଏଭଳି ଚିନ୍ତାରେ ବାୟା ହୋଇ ଆପଣଙ୍କ ନିକଟକୁ ନ ଆସି, ଆମେ ଖାଲି ଆଧ୍ୟାତ୍ମିକ ଜ୍ଞାନ ଅନ୍ୱେଷଣରେ ଇତସ୍ତତଃ ଘୂରି

Digitized by srujanika@gmail.com

ବୁଲୁଛୁ ।'' ବିଜୟକୃଷ୍ଣ ଗୋସ୍ୱାମୀଙ୍କର ଏଭଳି ତତ୍ତ୍ୱପୂର୍ଣ୍ଣ ଘୋଷଣା ଉପସ୍ଥିତ ଭକ୍ତମାନଙ୍କୁ ପ୍ରଭାବିତ କରିଥିବାବେଳେ, ଶ୍ରୀରାମକୃଷ୍ଣ ସ୍ମିତହାସ୍ୟ ବଦନରେ କେବଳ ତାଙ୍କୁ ଚାହିଁଥିଲେ ।

ବିଜୟକୃଷ୍ଣଙ୍କର ଶ୍ୟାମପୁକୁରରେ ଉପସ୍ଥିତି ଏବଂ ଶ୍ରୀରାମକୃଷ୍ଣଙ୍କୁ ଅବତାର ଭାବେ ଘୋଷଣା ବନାଗ୍ନି ସମ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହେଲା । ବହୁଲୋକ ଶ୍ରୀରାମକୃଷ୍ଣଙ୍କ ଦୈବୀଶକ୍ତିର ଅଭିବ୍ୟକ୍ତି ଦେଖିବା ପାଇଁ ବ୍ୟଗ୍ର ହୋଇଉଠିଲେ । ଆଉ କେତେକ ଭକ୍ତି ସଙ୍ଗୀତ ଶ୍ରବଣ କରି ଆଂଶିକ ଭାବାତୀତ ଅବସ୍ଥା ଲାଭ କଲେ । କିନ୍ତୁ ନରେନ୍ଦ୍ର ଏହି ପଥର ଭୟାବହତା ଖୁବ୍ ଶୀଘ୍ର ହୃଦୟଙ୍ଗମ କରିପାରିଲେ । ଯୁବଭକ୍ତମାନଙ୍କୁ ଏତାଦୃଶ ଭକ୍ତିମାର୍ଗରେ ନ ଯିବାପାଇଁ ସତର୍କ ବାଣୀ ଶୁଣାଇ କହିଲେ, ''ଦେଖ ଭାଇ, ଭାବପ୍ରବଣତା ମନୁଷ୍ୟ ଜୀବନରେ କୌଣସି ସ୍ଥାୟୀ ପରିବର୍ତ୍ତନ ଘଟାଇ ପାରିବ ନାହିଁ । ଗୋଟିଏ ମୁହୂର୍ତ୍ତରେ ଈଶ୍ୱରୋପଲବ୍ଧି ଅଭିମୁଖେ ମନୁଷ୍ୟକୁ ପଥ ଦେଖାଇ ଦେବ, ପରବର୍ତ୍ତୀ ମୁହୂର୍ତ୍ତରେ କାମିନୀ ଓ କାଞ୍ଚନ ଅଭିମୁଖେ ମନୁଷ୍ୟକୁ ଆକର୍ଷିତ କରିବ । ସୁତରାଂ ଏଭଳି ଅବସ୍ଥାର କୌଣସି ମୂଲ୍ୟ ନାହିଁ । ଏତାଦୃଶ ଭାକ୍ତିକ ଭାବପ୍ରବଣତାରେ ଜଣେ ଅଶ୍ରୁ ବିସର୍ଜନ କରିବା ସହିତ ନାନା ପ୍ରକାର ଦୃଶ୍ୟରେ ବିମୋହିତ ହେବ । ତାହାର ଶରୀରରେ ଅନେକ ପ୍ରକାର ପରିବର୍ତ୍ତନ ଘଟିବ ଏବଂ ବାରମ୍ବାର ବାହ୍ୟଜ୍ଞାନ ଶୂନ୍ୟ ହୋଇପଡ଼ିବ । ମୁଁ ଭଲ ଭାବରେ ଜାଣିଛି ଯେ ଏହି ସବୁ ଲକ୍ଷଣ ସ୍ନାୟୁଗତ ଦୁର୍ବଳତା ଛଡ଼ା କିଛିନୁହେଁ । ଏହି ଲକ୍ଷଣରେ ଶିକାର ହେଲେ ଜଣେ ପ୍ରଚୁର ପୁଷ୍ଟିକର ଖାଦ୍ୟ ଖାଇବା ଉଚିତ ଏବଂ ଯଦି ନିଜର ମନକୁ ନିୟନ୍ତ୍ରଣ କରିବାରେ ସକ୍ଷମ ନ ହୁଏ ତେବେ ଡାକ୍ତରଙ୍କ ପରାମର୍ଶ ଶୀଘ୍ର ନେବା ଉଚିତ । ନିଜ ମନ ଓ ଭାବପ୍ରବଣତା ଉପରେ ଯେତେ ନିୟନ୍ତ୍ରଣ ଜାରି ରଖିବ, ସେତେ ତୁମର ମନ ଦୃଢ଼ ଓ ବାସ୍ତବାଭିମୁଖୀ ହେବ । କିନ୍ତୁ କେତେକ ବିରଳ ବ୍ୟକ୍ତିଙ୍କ କଥା ଅଲଗା । ସେମାନଙ୍କର ଆଧ୍ୟାତ୍ମିକ ଭାବ ଏଭଳି ଶକ୍ତିଶାଳୀ ଯେ ତାହା ପ୍ରଚଣ୍ଡ ମହା ଢେଉରେ ପରିଣତ ହୁଏ ଏବଂ ସମସ୍ତପ୍ରକାର ନିୟନ୍ତ୍ରଣର ବନ୍ଧକୁ ବୁଡ଼ାଇ ଦିଏ, ଯାହାଫଳରେ ସେମାନଙ୍କର ଦେହ ଓ ମନରେ ଅଭୂତପୂର୍ବ ପରିବର୍ତ୍ତନ ଘଟାଇ ସାଧାରଣ ଚେତନାକୁ ଶୂନ୍ୟ କରି ପକାଏ । ନିର୍ବୋଧ ବ୍ୟକ୍ତି କେବଳ ସେମାନଙ୍କର ଭାବାତୀତ ଅବସ୍ଥାକୁ ବୁଝି ନ ପାରି ତୁଚ୍ଛାଟାରେ ଅନୁକରଣରେ ମାତି ଥା'ନ୍ତି । ବହୁ ବ୍ୟକ୍ତି ଏଭଳି ଅବସ୍ଥାରେ ମଧ୍ୟ ମାନସିକ ବିକୃତ ବ୍ୟାଧିରେ ପୀଡ଼ିତ ହେବାର ଦୃଷ୍ଟାନ୍ତ ରହିଛି ।

- ୩ -

*ମନୁଷ୍ୟର ମନ ଈଶ୍ୱରଙ୍କର ପ୍ରକୃତ ସ୍ୱରୂପ ବର୍ଣ୍ଣନା କରିପାରିବ ନାହିଁ । ଯେଉଁଠି ମନୁଷ୍ୟର ମନ ଅଧିକ ଅଗ୍ରସର ହୁଏ ନାହିଁ ଏବଂ ଯେଉଁଠାରେ ସବୁ ଦର୍ଶନ ହାର୍ ମାନେ, ସେହିଠାରୁ ଆରମ୍ଭ ହୁଏ ଆଧ୍ୟାତ୍ମିକତାର ଅନ୍ୱେଷଣ ।...*

ବିଶେଷତଃ ଯୁବଭକ୍ତଗଣ ନରେନ୍ଦ୍ରଙ୍କର ସତର୍କ ସୂଚନାରେ ପ୍ରକୃତିସ୍ଥ ହୋଇ ଭାକ୍ତିକ ଭାବପ୍ରବଣତା ମାର୍ଗରୁ କ୍ଷାନ୍ତ ହେଲେ । ସମସ୍ତ ଯୁବଭକ୍ତ ନରେନ୍ଦ୍ରଙ୍କ ସହ ଏକତ୍ରୀତ ହୋଇ ଭକ୍ତି

Digitized by srujanika@gmail.com

ଓ ତ୍ୟାଗର ଭଜନ ଗାନ କଲେ । ସଂସାରର ମୋହ ମାୟା ତ୍ୟାଗକରି ଶ୍ରୀରାମକୃଷ୍ଣଙ୍କୁ ନିଜର ଆଦର୍ଶ ଭାବେ ଗ୍ରହଣ କରିବାକୁ ନରେନ୍ଦ୍ର ସେମାନଙ୍କୁ ଆହ୍ୱାନ ଦେଲେ । ନରେନ୍ଦ୍ର କହୁଥିଲେ - ଆମ ନିକଟରେ ଯେଉଁ ମହାପୁରୁଷ ବିଦ୍ୟମାନ, ତାଙ୍କର ଈଶ୍ୱରଙ୍କ ପ୍ରତି ପ୍ରେମକୁ ଲକ୍ଷ୍ୟ କର, ଦ୍ୱୈତବାଦରେ ଭାସିଯାଅ ନାହିଁ । ପ୍ରଥମେ ଦ୍ୱୈତବାଦ ଜ୍ଞାନକୁ ତୁମ ଲୁଗାକାନିରେ ଗଣ୍ଠି ପକାଇ ରଖ, ତାହାପରେ ଯାହା ତୁମର ଇଚ୍ଛା, ତାହା କର । ତୁମେମାନେ ଠାକୁରଙ୍କର ଯେଉଁ ଭକ୍ତି, ପ୍ରେମ, ଅନାବିଳ ଭାବ ଭଳି ଦ୍ୱୈତବାଦୀ ଜ୍ଞାନ ଦେଖୁଛ, ତାହା ତାଙ୍କର ବାହ୍ୟ ଆବରଣ । କିନ୍ତୁ ବାସ୍ତବରେ ଏହି ଜ୍ଞାନ ପଶ୍ଚାତରେ ରହିଛି ତାଙ୍କର ପ୍ରଚଣ୍ଡ ଅଦ୍ୱୈତ ଜ୍ଞାନ । ଅବଶ୍ୟ ଅଦ୍ୱୈତ ଜ୍ଞାନ ପ୍ରଥମାବସ୍ଥାରେ ହୃଦୟଙ୍ଗମ କରିବା କଷ୍ଟସାଧ୍ୟ, ତେଣୁ ଦ୍ୱୈତଜ୍ଞାନର ସାହାଯ୍ୟ ଆମେ ପ୍ରଥମେ ନେଇପାରୁ । ମାନସିକ ଭାବ ପ୍ରବଣତାରେ ଭାସି କାହାକୁ ଅବତାର ଭାବରେ ଚିତ୍ରଣ କରନାହିଁ । ଲୋକେ ଗୁରୁଙ୍କୁ ଜଣେ ଅବତାର ରୂପେ ଭାବିପାରନ୍ତି, ଏହା ସେମାନଙ୍କର ମାନସିକତା, ମୋର ସେଥିରେ କିଛି କହିବାର ନାହିଁ । କିନ୍ତୁ ମୁଁ କହିବି ଯେ ଈଶ୍ୱରଙ୍କର ଅବତାର ଯେଉଁଠି ପାରେ ସେଠି, କିମ୍ବା ସବୁ ସ୍ଥାନରେ କିମ୍ବା ସବୁ ଋତୁରେ ଅବତୀର୍ଣ୍ଣ ହୁଅନ୍ତି ନାହିଁ । ମୁଁ ଏବେ ଶୁଣିବାକୁ ପାଉଛି ଯେ କେବଳ ଢାକା ସହରରେ ତିନିରୁ ଚାରିଜଣ ଅବତାର ଅବସ୍ଥାନ କରିଛନ୍ତି ... ।'' ଯୁବଭକ୍ତଗଣ ନରେନ୍ଦ୍ରଙ୍କର ସକାରାତ୍ମକ ନେତୃତ୍ୱରେ ଅଭିଭୂତ ହୋଇପଡ଼ିଲେ ।

ନରେନ୍ଦ୍ରଙ୍କର ମନ ବିଶେଷ ଭାବରେ ପାଶ୍ଚାତ୍ୟ ଦାର୍ଶନିକ ହେମିଲ୍‌ଟନ୍‌ଙ୍କର ସିଦ୍ଧାନ୍ତ ଦ୍ୱାରା ପ୍ରଭାବିତ ହୋଇଥିଲା । ହେମିଲଟନ୍‌ଙ୍କ ମତାନୁସାରେ - ମନୁଷ୍ୟର ମନ ଈଶ୍ୱରଙ୍କର ପ୍ରକୃତ ସ୍ୱରୂପ ବର୍ଣ୍ଣନା କରିପାରିବ ନାହିଁ । ଯେଉଁଠି ମନୁଷ୍ୟର ମନ ଅଧିକ ଅଗ୍ରସର ହୁଏ ନାହିଁ ଏବଂ ଯେଉଁଠାରେ ସବୁ ଦର୍ଶନ ହାର୍ ମାନେ, ସେହିଠାରୁ ଆରମ୍ଭ ହୁଏ ଆଧ୍ୟାତ୍ମିକତାର ଅନ୍ୱେଷଣ । ଶ୍ୟାମପୁକୁରଠାରେ ଅବସ୍ଥାନ ସମୟରେ ନରେନ୍ଦ୍ର ଅଷ୍ଟବକ୍ର ସଂହିତା, ଭଗବଦ୍ ଗୀତା, ଉପନିଷଦ, ଇମିଟେଶନ୍ ଅଫ୍ କ୍ରାଇଷ୍ଟ ଭଳି ଅନେକ ଧର୍ମପୁସ୍ତକ ଅଧ୍ୟୟନ କରିବା ସହିତ ଧ୍ୟାନ, ଧାରଣା ଓ ଆଧ୍ୟାତ୍ମିକ ଆଲୋଚନାରେ ମଗ୍ନ ରହିଲେ । ଏତଦ୍‌ବ୍ୟତୀତ, ଶ୍ରୀରାମକୃଷ୍ଣ ତାଙ୍କୁ ଏକାନ୍ତରେ ଅନେକ ଆଧ୍ୟାତ୍ମିକ ରହସ୍ୟର ତତ୍ତ୍ୱପୂର୍ଣ୍ଣ ବାଣୀ ଶୁଣାଇ, ତାଙ୍କ ମନରୁ ସବୁପ୍ରକାର ଛାପ ଦୂରୀଭୂତ କରୁଥିଲେ । ନିଜର ପିତା ବିଶ୍ୱନାଥ ଦତ୍ତ ଏକଦା ତାଙ୍କୁ କହିଥିଲେ, ''ନରେନ୍, ତୁ ଦକ୍ଷିଣେଶ୍ୱରକୁ ବାରମ୍ବାର କାହିଁକି ଯାଉଛୁ ? ସମାଧି ଓ ଭାବାତୀତ ଅବସ୍ଥା କେବଳ ସ୍ନାୟୁବିକ ଅକ୍ଷମତା କହିଲେ ଅତ୍ୟୁକ୍ତି ହେବନାହିଁ । ପରମହଂସ ଦେବ କ୍ଲିଷ୍ଟସାଧ୍ୟ ତପସ୍ୟା ଯୋଗୁଁ ସେ ନିଜ ମସ୍ତିଷ୍କର ଭାରସାମ୍ୟ ହରାଇଛନ୍ତି । ତୁ ସେଠାକୁ ଆଦୌ ଯାଆନାହିଁ ।'' ପିତାଙ୍କର ଏହି କେଇପଦ ଭର୍ତ୍ସନା ଯେ ମିଥ୍ୟା ପ୍ରମାଣିତ ହୋଇଛି, ତାହା ବର୍ତ୍ତମାନ ନରେନ୍ଦ୍ର ଭଲ ଭାବରେ ବୁଝି ପାରିଛନ୍ତି । ତାଙ୍କର ହେମିଲଟନ ଦର୍ଶନ ଏବଂ ପିତାଙ୍କର ପୁତ୍ରମୋହ ଯୋଗୁଁ ଶ୍ରୀରାମକୃଷ୍ଣଙ୍କ ପ୍ରତି କଳ୍ପନା ପ୍ରସୂତ ଆକ୍ଷେପ ଦ୍ୱାରା ପ୍ରଭାବିତ ମନ କ୍ରମଶଃ ବିଲୋପିତ ହେଲା ଏବଂ ସେହି ସ୍ଥାନରେ ଶ୍ରୀରାମକୃଷ୍ଣଙ୍କ ପ୍ରତି ଦୃଢ଼ ବିଶ୍ୱାସ ଏବଂ ସେହି ଯୁଗରେ ସେ ଜଣେ ଅସାଧାରଣ ଆଧ୍ୟାତ୍ମିକ ମାନବଙ୍କର ଚିତ୍ର ସ୍ୱତଃପ୍ରବୃତ୍ତ ଭାବେ ତାଙ୍କ ମାନସପଟରେ ଆଙ୍କି ହୋଇଯାଉଥିଲା ।

Digitized by srujanika@gmail.com

ନିଜର ଆଧ୍ୟାତ୍ମିକ ସାଧନାରେ ଶକ୍ତିଶାଳୀ ଏବଂ ଯୁବଭକ୍ତମାନଙ୍କର ଚରିତ୍ର ନିର୍ମାଣ ପ୍ରକ୍ରିୟାରେ ନରେନ୍ଦ୍ର ଶ୍ୟାମପୁକୁର ଭଡ଼ାଗୃହରେ ନିମଜ୍ଜିତ ଥିବା ସମୟରେ, ଶ୍ରୀରାମକୃଷ୍ଣଙ୍କର ଶାରୀରିକ ଅବସ୍ଥାରେ ଦ୍ରୁତ ଅବନତି ଘଟୁଥିଲା । ଔଷଧ କାଟୁ କଲା ନାହିଁ । ଡାକ୍ତର ମହେନ୍ଦ୍ରଲାଲ ସରକାର ଯିଏ ଠାକୁରଙ୍କର ଚିକିତ୍ସା କରୁଥିଲେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ । କଲିକତାର ପ୍ରଦୂଷିତ ଜଳବାୟୁ ଠାକୁରଙ୍କର ସ୍ୱାସ୍ଥ୍ୟାବସ୍ଥା ପାଇଁ ଅନୁକୂଳ ନୁହେଁ ଏବଂ କଲିକତା ସହରାଞ୍ଚଳରେ ରହିଲେ ସ୍ୱାସ୍ଥ୍ୟର ଉନ୍ନତି ଘଟିପାରେ ବୋଲି ସେ ଅନୁଭବ କଲେ । ନରେନ୍ଦ୍ର ଅନ୍ୟ ଭକ୍ତମାନଙ୍କ ସହ ଘରଟିଏ ଯୋଗାଡ଼ କରିବା ପାଇଁ ଲାଗିପଡ଼ିଲେ । ଶେଷରେ କାଶିପୁର ସ୍ଥିତ ଗୋପାଳଚନ୍ଦ୍ର ଘୋଷଙ୍କର ଗୋଟିଏ ଗୃହକୁ ଭଡ଼ାରେ ନେବା ପାଇଁ ମନୋନୀତ କଲେ । ଘରଟିର ମାସିକ ଭଡ଼ା ଥିଲା ଅଶି ଟଙ୍କା । ୧୮୮୫ ମସିହା ଡିସେମ୍ବର ୧୧ ତାରିଖ ଅପରାହ୍ଣରେ ଏକ ନୂତନ ଗୃହକୁ ଶ୍ରୀରାମକୃଷ୍ଣ ଭକ୍ତମାନଙ୍କ ସହିତରେ ବିଜେ କଲେ । ତାଙ୍କର ପତ୍ନୀ ମା ସାରଦା ଦେବୀଙ୍କ ରହିବାର ସମସ୍ତ ପ୍ରକାର ସୁବନ୍ଦୋବସ୍ତ ସେଠାରେ କରାଗଲା । ଏହି ଗୃହଟିରେ ଚତୁଃପାର୍ଶ୍ୱିକ ପରିବେଶ, ମୁକ୍ତ ପବନ ଓ ପରିଷ୍କାର ପରିଚ୍ଛନ୍ନତା ଖୁବ୍ ମନୋହର ଓ ଆକର୍ଷଣୀୟ ଥିଲା ।



Digitized by srujanika@gmail.com

॥ ଦଶ ॥

# ନରେନ୍ଦ୍ର ପ୍ରତି ଶ୍ରୀରାମକୃଷ୍ଣ ପରମହଂସଙ୍କର ଯୁଗାନ୍ତକାରୀ ଧିକ୍କାର

କାଶିପୁର ଉଦ୍ୟାନବାଟି ଦର୍ଶନ କରିବ, ଶ୍ରୀରାମକୃଷ୍ଣଙ୍କର ଅନ୍ତିମ ନାଟକର ମହତ୍ତ୍ୱପୂର୍ଣ୍ଣ ଭୂମିକା । ତାଙ୍କର ଶାରୀରିକ ଅସୁସ୍ଥତାର ବର୍ଦ୍ଧିଷ୍ଣୁ କରୁଣପୂର୍ଣ୍ଣ ଯନ୍ତ୍ରଣା ସତ୍ତ୍ୱେ ଶ୍ରୀରାମକୃଷ୍ଣ ଦିବ୍ୟ ପ୍ରେମ ଓ ଆନନ୍ଦରେ ଉଦ୍‌ଫୁଲ୍ଲିତ ହେଉଥିଲେ, କାରଣ ସେ ଯେଉଁଥିପାଇଁ ଏଠାରେ ଅବତୀର୍ଣ୍ଣ, ତାହାର ଲକ୍ଷ୍ୟ ପୂର୍ଣ୍ଣ ହୋଇଛି - ଅନେକ ଯୁବଭକ୍ତ ସଂସାରର ସମସ୍ତ ମୋହ ମାୟା ତ୍ୟାଗ କରି, ବିଶ୍ୱ କଲ୍ୟାଣ ନିମନ୍ତେ ସନ୍ନ୍ୟାସୀ ହେବାର ସଂକଳ୍ପ ନେଇଛନ୍ତି । ସେମାନେ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ, ତାଙ୍କର ମହତ୍‌ବାଣୀ ପ୍ରଚାର ଓ ପ୍ରସାର କରିବେ । ନରେନ୍ଦ୍ର ସେମାନଙ୍କର ଉପଯୁକ୍ତ ନେତୃତ୍ୱ ନେବେ ଏବଂ ଭବିଷ୍ୟତର କାର୍ଯ୍ୟପନ୍ଥା ଅଙ୍କନ କରିବେ । ବିଶ୍ୱାସ ଓ ସନ୍ତୋଷରେ ପରିପୂର୍ଣ୍ଣ ତାଙ୍କର ମନ ଓ ହୃଦୟ । ନରେନ୍ଦ୍ର ସମେତ ଯୁବଭକ୍ତମାନଙ୍କୁ ନିଜର ମନର କଥା ଏହିଠାରେ ଏକଦା କହିଥିଲେ, ‘‘ଇହ ସଂସାରରୁ ବିଦାୟ ନେବା ଅବସରରେ, ମୁଁ ସବୁକିଛି ସଂସାରକୁ ଖୋଲି କହିଦେବି; ହଁ, ଯେତେବେଳେ ବହୁଲୋକ ଏହି ଶରୀରର ମହାନତା ଓ ମହତ୍ତ୍ୱ ସମ୍ବନ୍ଧରେ ଖୋଲାଖୋଲି କଥାବାର୍ତ୍ତା ଓ ଚର୍ଚ୍ଚା କରିବେ, ସେତେବେଳେ ମା ଏହି ଶରୀରକୁ ନେଇଯିବେ ।’’

ନରେନ୍ଦ୍ରନାଥ ଚମକି ପଡ଼ିଲେ, ‘‘ହେ ଭଗବାନ ! ବ୍ୟାଧିଗ୍ରସ୍ତ ହୋଇ ଅକଥନୀୟ ଶାରୀରିକ ଯନ୍ତ୍ରଣା ଭୋଗ କରୁଥିଲେ ବି ଭକ୍ତମାନଙ୍କର ଆଧ୍ୟାତ୍ମିକ ଜାଗରଣ ପରିଲକ୍ଷିତ କରି କିପରି ଆନନ୍ଦିତ ହୋଇ ପାରୁଛନ୍ତି !!! ଯୀଶୁଖ୍ରୀଷ୍ଟଙ୍କ ଭଳି ନିଜର ସମସ୍ତ ଯନ୍ତ୍ରଣାକୁ ସହି ନେଇ, ଅନ୍ୟମାନଙ୍କର ଈଶ୍ୱରୋପଲବ୍ଧି ନିମନ୍ତେ ପ୍ରତି ମୁହୂର୍ତ୍ତରେ କ୍ରୁଶବିଦ୍ଧ ହେଉଥିବାର ଏହି ମହାନ୍ ସନ୍ଥ ବାସ୍ତବିକ୍ ଜଗତରେ ବିରଳ । ଶାରୀରିକ କଷ୍ଟ ତାଙ୍କର ଆଧ୍ୟାତ୍ମିକ ଭାବକୁ କୌଣସି ପ୍ରକାରେ ପ୍ରଭାବିତ କରୁନାହିଁ । ତାଙ୍କର ଐଶ୍ୱରିକ ଜ୍ଞାନ ପୂର୍ବାପେକ୍ଷା ଅଧିକ ପ୍ରଜ୍ୱଳିତ ଓ ଉଦ୍‌ଭାସିତ । ଏହି ବିରଳ ବ୍ୟକ୍ତିତ୍ୱଙ୍କୁ କୌଣସି ପ୍ରକାରରେ ଜୀବିତ ରଖିବାକୁ ହେବ । ନରେନ୍ଦ୍ର ଡାକ୍ତର ପରାମର୍ଶ କଲେ । ବେଶି କଥାବାର୍ତ୍ତା ଯୋଗୁଁ ତାଙ୍କର ଗଳାର ଅବସ୍ଥା ଗୁରୁତର ହେଉଛି, ତେଣୁ କଥାବାର୍ତ୍ତା ନ କରିବା ପାଇଁ ଡାକ୍ତର ପରାମର୍ଶ ଦେଲେ । କିନ୍ତୁ ଶ୍ରୀରାମକୃଷ୍ଣ କଥା ନ

Digitized by srujanika@gmail.com

କହି କ'ଣ ରହିପାରିବେ ? ଆଧ୍ୟାତ୍ମିକ ଜ୍ଞାନ ଯୁବ ଭକ୍ତଗଣଙ୍କୁ ହସ୍ତାନ୍ତର ନ କଲେ, ତାଙ୍କର ଲକ୍ଷ୍ୟଯେ ଅଧୁରା ରହିଯିବ !

ଦୃଢ଼ମନା ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କର ସେବା ଦିନ ଓ ରାତି ଅବାରିତ ଗତିରେ ସମ୍ପାଦନ କରିବା ପାଇଁ ସଂକଳ୍ପ କଲେ । ଯୁବଭକ୍ତମାନଙ୍କୁ ଦିନରାତି ଜଗିବା ପାଇଁ ନିର୍ଦ୍ଦେଶ ଦେଲେ । ସେ ବି ନିଜେ ରହିଲେ । ସେ ନିଜର ଆଇନ୍ ପରୀକ୍ଷା କଥା ସଂପୂର୍ଣ୍ଣ ଭୁଲିଗଲେ । ଶ୍ରୀରାମକୃଷ୍ଣ ଯେତିକି ମାତ୍ରାରେ ଦିନକୁ ଦିନ ଦୁର୍ବଳ ହେଉଥିଲେ, ତତୋଽଧିକ ନରେନ୍ଦ୍ର ଆଧ୍ୟାତ୍ମିକ ଶକ୍ତିରେ ବଳୀୟାନ ହୋଇ ଉଠୁଥିଲେ । ନରେନ୍ଦ୍ରଙ୍କର ଜ୍ୱଳନ୍ତ ନିଃସ୍ୱାର୍ଥପର ସେବା ଓ ନେତୃତ୍ୱ ଆଲୋକରେ ଦୀପ୍ତିମନ୍ତ ହେଲେ ଯୁବଭକ୍ତଗଣ । ପରସ୍ପର ଭିତରେ ରହିଥିବା ବିଭିନ୍ନତା ଏକତ୍ୱରେ ପରିଣତ ହେଲା । ସେମାନଙ୍କ ମଧ୍ୟରୁ ବାରଜଣ ନରେନ୍ଦ୍ରଙ୍କର ନେତୃତ୍ୱ ବହ୍ନିରେ ଏକ ମନ ଓ ଏକ ପ୍ରାଣ ହୋଇ ଶ୍ରୀରାମକୃଷ୍ଣଙ୍କ ସେବାରେ ଦିନ ରାତି ମଜ୍ଜିଗଲେ । ସେମାନେ ହେଲେ - ନରେନ୍ଦ୍ର, ରାଖାଲ, ବାବୁରାମ, ନିରଞ୍ଜନ, ଯୋଗୀନ, ଲାଟୁ, ତାରକ, ବୁଢ଼ା ଗୋପାଳ, କାଳୀ, ଶଶୀ, ଶରତ୍ ଓ ଛୋଟ ଗୋପାଳ । ପିତାମାତାଙ୍କର ବିରୋଧ ସତ୍ତ୍ୱେ ଯୁବଭକ୍ତ ସାରଦା ମଝିରେ ମଝିରେ ଆସି କାଶିପୁର ଉଦ୍ୟାନବାଟିରେ ରହୁଥିଲେ । ହରିଶ୍ ଅବଶ୍ୟ ସେଠାରେ କିଛି ଦିନ ରହିଥିଲେ, କିନ୍ତୁ ତାଙ୍କର ମସ୍ତିଷ୍କ ବିକୃତି ଘଟିବାରୁ ସେ ନିଜ ଘରକୁ ଚାଲିଗଲେ । ହରି ଓ ଗଙ୍ଗାଧର, ଶ୍ରୀରାମକୃଷ୍ଣଙ୍କ ଉପଦେଶାନୁସାରେ ଘରେ ରହି ତପସ୍ୟା ଓ ସାଧନାରେ ମଗ୍ନ ରହୁଥିଲେ ବି ମଝିରେ ମଝିରେ କାଶିପୁର ଉଦ୍ୟାନବାଟିକୁ ଆସୁଥିଲେ ।

ଶ୍ରୀରାମକୃଷ୍ଣଙ୍କର ଅନ୍ତିମ ମୁହୂର୍ତ୍ତ ଯେତେ ନିକଟତର ହେଉଥିଲା, ନରେନ୍ଦ୍ରଙ୍କର ଈଶ୍ୱରୋପଲବ୍ଧି କରିବାର ପ୍ରଚଣ୍ଡ ଆକାଙ୍କ୍ଷା ସେତେ ତୀବ୍ରତର ହୋଇ ଉଠୁଥିଲା । ତୀବ୍ରତାର ଜ୍ୱଳନ ତାଙ୍କୁ ଅସ୍ଥିର ଓ ଅଧୀର କରି ପକାଉଥିଲା । ଏତାଦୃଶ ମାନସିକ ଜ୍ୱଳନ ଭିତରେ, ପରିବାରର କେତେକ ଜରୁରୀ କାର୍ଯ୍ୟର ମିମାଂସା କରିବା ଲାଗି ସେ ଦୁଇ ତିନିଦିନ ପାଇଁ ଘରକୁ ଯିବା ସକାଶେ ମନସ୍ଥ କଲେ । କିନ୍ତୁ ସେହି ରାତ୍ରରେ ଯେତେବେଳେ ସେ ଶୋଇବାକୁ ଗଲେ, ସେତେବେଳେ ସେ ଆଦୌ ଶୋଇପାରିଲେ ନାହିଁ । ଶରତ୍, ଛୋଟ ଗୋପାଳ ଓ ଅନ୍ୟ କେତେକ ସାଙ୍ଗମାନଙ୍କୁ ରାତ୍ରଭ୍ରମଣ କରିବା ପାଇଁ ସେ ଡାକିଲେ । କାଶିପୁର ଉଦ୍ୟାନରେ ସେମାନଙ୍କ ସହ ଭ୍ରମଣ କାଳରେ ନରେନ୍ଦ୍ର କହିଲେ, "ଠାକୁରଙ୍କର ରୋଗ ଭୀଷଣ ଗୁରୁତର, ସେ କ'ଣ ଦେହତ୍ୟାଗ କରବାକୁ ଚାହୁଁ ନ ଥିବେ ! ବର୍ତ୍ତମାନ ସମୟ ଅଛି, ତାଙ୍କର ସେବା ମାଧମରେ ନିଜକୁ ଜ୍ଞାନାଲୋକିତ କର, ତାଙ୍କଠାରେ ପ୍ରାର୍ଥନା ଓ ଧ୍ୟାନ କର । ନଚେତ ତାଙ୍କର ଦେହାନ୍ତ ପରେ, ତୁମେ ବହୁତ ଅନୁତାପ କରିବ । ଏହି କାମ କରିସାରି, ସେହି କାମ ପରେ, ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରିବି ଭଳି ନିର୍ବୋଧ ଚିନ୍ତା ଭିତରେ ଆମେ କେବଳ ଆମର ବହୁ ମୂଲ୍ୟ ସମୟ ନଷ୍ଟ କରୁଛନ୍ତି । ଏତାଦୃଶ ଚିନ୍ତାରୂପକ ଶିକୁଳି ଆମକୁ ବାରମ୍ବାର ବନ୍ଧନ କରୁଛି, ମନେରଖ ଏଭଳି ଚିନ୍ତାର ଅର୍ଥ ମୃତ୍ୟୁ । ଏହାର ମୂଳୋତ୍ପାଟନ ସହସା ଆବଶ୍ୟକ ।

Digitized by srujanika@gmail.com

- ୧ -

*ଠାକୁର, ମୋତେ ଏପରି ଔଷଧ ସେବନ କରିବାକୁ ଦିଅନ୍ତୁ, ଯାହାଫଳରେ ମୁଁ ପଢ଼ିଥିବା ସମସ୍ତ ବିଦ୍ୟା ଯେପରି ଭୁଲିଯିବି । ଏତିକି ଯଦି ଆପଣ ଦୟା କରନ୍ତେ, ତେବେ ସତରେ ମୁଁ ଆପଣଙ୍କ ନିକଟରେ ଚିରକୃତଜ୍ଞ ରହନ୍ତି ।*

ନରେନ୍ଦ୍ର ସାଙ୍ଗମାନଙ୍କୁ ଏହି ସତର୍କସୂଚକ ଉପଦେଶ ପ୍ରଦାନ କରୁଥିବା ସମୟରେ ରାତ୍ରି କ୍ରମଶଃ ଗଭୀରତର ହେଉଥିଲା । ଶୀତ ରାତ୍ରିର ଆକାଶ ଅଗଣିତ ନକ୍ଷତ୍ରରେ ଆଚ୍ଛାଦିତ । ନିଶା ଗର୍ଜନ ଭିତରେ ଧ୍ୟାନ କରିବାର ଆଗ୍ରହ ସେମାନଙ୍କ ଭିତରେ ପ୍ରବଳ ଭାବେ ଅନୁଭୂତ ହେଲା । ଉଦ୍ୟାନର ପଦଚଲା ପଥ ପାର୍ଶ୍ୱରେ ପଡ଼ିଥିଲା କିଛି କୁଟା ଓ ଶୁଖିଲା ଘାସ । ନରେନ୍ଦ୍ର ସେମାନଙ୍କୁ ଏକ ଶାଶ୍ୱତ ଆବେଗଭରା କଣ୍ଠରେ କହିଉଠିଲେ, ''ଭାଇମାନେ, ଏଥିରେ ଅଗ୍ନି ସଂଯୋଗ କର । ଏଭଳି ଗଭୀର ରାତ୍ରିରେ ଯୋଗୀଗଣ ଧୂନି ଜଳାନ୍ତି । ଆସ ଆମେ ତାହା କରି ଆମର କାମନାଗୁଡ଼ିକୁ ଏଠାରେ ଦଗ୍ଧିଭୂତ କରିବା'' ନରେନ୍ଦ୍ରଙ୍କ ନିର୍ଦ୍ଦେଶରେ ଯୁବଭକ୍ତଗଣ ଶୁଖିଲା ଘାସ ଓ କୁଟାକୁ ଠୁଳକରି ଅଗ୍ନି ସଂଯୋଗ କଲେ । ଏବଂ ଜ୍ୱଳନ୍ତ ଅଗ୍ନିର ଚତୁଃପାର୍ଶ୍ୱରେ ଉପବେଶନ କରି, ଧ୍ୟାନସ୍ଥ ହେଲେ । ମନର ସବୁତକ କାମନା, ବାସନା ଓ ଅପବିତ୍ର ଚିନ୍ତାରାଜିକୁ ସେହି ପ୍ରଜ୍ୱଳିତ ଅଗ୍ନିରେ ନିକ୍ଷେପ କଲେ ।

ଅନ୍ୟପକ୍ଷରେ ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କର ଈଶ୍ୱରୋପଲବ୍ଧି କରିବାର ତୀବ୍ର ଆକାଂକ୍ଷାକୁ ବୁଝି ସାରିଲେଣି । ସେ ନରେନ୍ଦ୍ରଙ୍କୁ ଏକାନ୍ତରେ ନିଜ ପାଖକୁ ଡାକି କହିଲେ, ''ବାବା, ମୋ ଗୁରୁଙ୍କ ପାଖରୁ ଯେଉଁ ରାମ ମନ୍ତ୍ର ଲାଭ କରିଥିଲି, ସେହି ମନ୍ତ୍ରରେ ମୁଁ ତୁମକୁ ଆଜି ଦୀକ୍ଷିତ କରୁଛି ।'' ଏତକ କହି ସେ ନରେନ୍ଦ୍ରଙ୍କୁ ରାମମନ୍ତ୍ରରେ ଦୀକ୍ଷିତ କଲେ । ରାମମନ୍ତ୍ର ଗୁଞ୍ଜରଣରେ ତାଙ୍କର ଭାବପ୍ରବଣତା ମନ୍ଥିତ ହେଲା । ସନ୍ଧ୍ୟା ଆଗମନ ବେଳକୁ ସେ ରାମମନ୍ତ୍ରର ନିରନ୍ତର ଜପରେ ସମ୍ପୂର୍ଣ୍ଣ ବିହ୍ୱଳିତ । ସତେକି ନିଜକୁ ସେ ଭୁଲି ଯାଇଥିଲେ । ରାମନାମ ଉଚ୍ଚାରଣ କରି କାଶିପୁର ଉଦ୍ୟାନବାଟିର ଚତୁଃପାର୍ଶ୍ୱରେ ସେ କେବଳ ପ୍ରଦକ୍ଷିଣ କରିବାକୁ ଲାଗିଲେ । ବାହ୍ୟଜ୍ଞାନ ତାଙ୍କର ନ ଥିଲା, ଭାବାତୀତ ବହ୍ନିରେ ପ୍ରଜ୍ୱଳିତ ତାଙ୍କର ମନ ଓ ଚେତନା । ନରେନ୍ଦ୍ରଙ୍କର ଏତାଦୃଶ ଭାବାତୀତ ରାମନାମ ଉଚ୍ଚାରଣର ସମ୍ବାଦ ଶ୍ରୀରାମକୃଷ୍ଣଙ୍କ ନିକଟରେ ପହଞ୍ଚିବାରୁ ସେ କେବଳ କହିଲେ, ''ସେହି ଅବସ୍ଥାରେ ତାଙ୍କୁ ରହିବାକୁ ଦିଅ, ଠିକ୍ ସମୟରେ ସେ ପ୍ରକୃତିସ୍ଥ ହେବ ।'' ସତରେ କେତେଘଣ୍ଟା ଅତିକ୍ରାନ୍ତେ ନରେନ୍ଦ୍ରଙ୍କ ଭିତରେ ଉଦ୍‌ଥିତ ଭାବ ବିହ୍ୱଳତାର ଝଡ଼ ଥମିଗଲା, ସେ ପୂର୍ବବତ୍ ଶାନ୍ତ ହୋଇଗଲେ ।

ବର୍ତ୍ତମାନ କାଶିପୁର ଉଦ୍ୟାନବାଟି ଏକ ମନ୍ଦିରରେ ହୋଇଛି ରୂପାନ୍ତରିତ । ଦକ୍ଷିଣେଶ୍ୱର ମନ୍ଦିର ଭଳି ଏଠାରେ ପ୍ରସ୍ତର ନାରାୟଣୀ ପୂଜିତ ନୁହଁନ୍ତି, ବରଂ ଜୀବନ୍ତ ନାରାୟଣ ପୂଜିତ । ଏହି ମନ୍ଦିର ଭିତରେ କେତେବେଳେ ଦର୍ଶନ ଆଲୋଚିତ ହେଉଛି ତ କେତେବେଳେ ଭକ୍ତି ସଙ୍ଗୀତରେ ସମଗ୍ର ବାତାବରଣ ହେଉଛି ଗୁଞ୍ଜରିତ । ଶ୍ରୀରାମକୃଷ୍ଣ ବିଶେଷକରି ଯୁବଭକ୍ତମାନଙ୍କର ଆଧ୍ୟାତ୍ମିକ ପ୍ରଗତିରେ ସନ୍ତୁଷ୍ଟ ହୋଇ ସଦା ସ୍ମିତ ହାସ୍ୟରେ ଚାହୁଁଥିଲେ ଭକ୍ତଗଣଙ୍କୁ । ସେ ହଠାତ୍ ନରେନ୍ଦ୍ରଙ୍କୁ

Digitized by srujanika@gmail.com

ପ୍ରଶ୍ନ କଲେ, ''ନରେନ୍, ତୁମେ କ'ଣ ଆଜିକାଲି କଲେଜରେ ପଢ଼ାପଢ଼ି କରୁନ କି ? ତୋର ଆଇନ୍ ପରୀକ୍ଷା ଖବର କ'ଣ ?'' ନରେନ୍ଦ୍ର ବୁଝିଗଲେ ଠାକୁରଙ୍କର ରଙ୍ଗ-ରହସ୍ୟ କଥା । ରାମମନ୍ତ୍ରରେ ଭୋଳ ଭୋଳାନାଥ ନରେନ୍ଦ୍ର ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ଠାକୁର, ମୋତେ ଏପରି ଔଷଧ ସେବନ କରିବାକୁ ଦିଅନ୍ତୁ, ଯାହାଫଳରେ ମୁଁ ପଢ଼ିଥିବା ସମସ୍ତ ବିଦ୍ୟା ଯେପରି ଭୁଲିଯିବି । ଏତିକି ଯଦି ଆପଣ ଦୟା କରନ୍ତେ, ତେବେ ସତରେ ମୁଁ ଆପଣଙ୍କ ନିକଟରେ ଚିରକୃତଜ୍ଞ ରହନ୍ତି ।

ନରେନ୍ଦ୍ର ଇତ୍ୟବସରରେ ଧ୍ୟାନର ଗଭୀର ସୋପାନରେ ଉପନୀତ ହେଲେଣି । କାୟମନୋବାକ୍ୟରେ ଶ୍ରୀରାମକୃଷ୍ଣଙ୍କର ଆଧ୍ୟାତ୍ମିକ ଉପଦେଶନର ପାଳନ, ଦୈନନ୍ଦିନ ଧ୍ୟାନର ଅଭ୍ୟାସ ଏବଂ ସର୍ବୋପରି ଶ୍ରୀରାମକୃଷ୍ଣଙ୍କର ଆଶୀର୍ବାଦ ଓ କୃପା ଫଳରେ ନରେନ୍ଦ୍ର ଆଧ୍ୟାତ୍ମିକ ରାଜ୍ୟର ଗଭୀର ପ୍ରଦେଶକୁ ଅଗ୍ରସର ହେଉଥାନ୍ତି । କିନ୍ତୁ ନିର୍ବିକଳ୍ପ ସମାଧି ଭଳି ଧ୍ୟାନର ସର୍ବଶ୍ରେଷ୍ଠ ଅବସ୍ଥା ଲାଭ କରିବାର ଦୁର୍ବାର ଇଚ୍ଛା ତାଙ୍କୁ ବାରମ୍ବାର ବ୍ୟାକୁଳିତ କରୁଥିଲା । ସେ ଜାଣନ୍ତି ଯେ ଏଭଳି ଅବସ୍ଥା ସେ ଲାଭ କରନ୍ତୁ ବୋଲି ଶ୍ରୀରାମକୃଷ୍ଣ ଚାହାନ୍ତି ନାହିଁ । ତଥାପି ମନରେ ସାହସ ବାନ୍ଧି ସେ ଦିନେ ଶ୍ରୀରାମକୃଷ୍ଣଙ୍କୁ ନିଜର ମନକଥା ପ୍ରକାଶ କରିବେ ବୋଲି ମନସ୍ଥ କଲେ । ଅନ୍ୟ ପକ୍ଷରେ, କଲିକତାର ପ୍ରସିଦ୍ଧ ହୋମିଓପାଥିକ ଡାକ୍ତର **ରାଜେନ୍ଦ୍ର ଲାଲ ଦତ୍ତ** ଶ୍ରୀରାମକୃଷ୍ଣଙ୍କୁ ଲାଇକୋପୋଡ଼ିୟମ-୨୦୦ ସେବନ କରିବାକୁ ଦେବାରୁ, ତାଙ୍କର ଅବସ୍ଥାରେ ସାମାନ୍ୟ ଆରୋଗ୍ୟର ଲକ୍ଷଣ ଉଙ୍କି ମାରିଲା, ଯାହାଫଳରେ ଶ୍ରୀରାମକୃଷ୍ଣ ସାମାନ୍ୟ ସୁସ୍ଥ ଅନୁଭବ କଲେ ।

୧୮୮୬ ଜାନୁଆରି ଏକ ତାରିଖ । ଏକ ଅଭୂତପୂର୍ବ ଘଟଣା ଘଟିଲା । ଶ୍ରୀରାମକୃଷ୍ଣ ସାମାନ୍ୟ ସୁସ୍ଥ ଅନୁଭବ କରିବାରୁ, ଉଦ୍ୟାନବାଟି ପ୍ରାଙ୍ଗଣରେ ଶୟନାବସ୍ଥାରେ ଅଳ୍ପ ସମୟ ବିଶ୍ରାମ ନେବାକୁ ଇଚ୍ଛା ପ୍ରକଟ କଲେ । ସେତେବେଳକୁ ଅପରାହ୍ନ ତିନି ଘଟିକା । ଭକ୍ତମାନେ ପ୍ରାଙ୍ଗଣରେ ଶଯ୍ୟା ପ୍ରସ୍ତୁତ କରିଦେଲେ । ଶ୍ରୀରାମକୃଷ୍ଣ ସେଠାରେ କିୟତ୍‌ସମୟ ବିଶ୍ରାମ ନେଲେ । ତାଙ୍କର ମୁଖମଣ୍ଡଳ ଦିବ୍ୟ ପ୍ରେମରେ ଉଦ୍‌ଭାସିତ । ଅଧରରେ ହାସ୍ୟ ଲହରିତ । ସେଦିନ ନୂତନବର୍ଷ ହୋଇଥିବାରୁ, ବହୁ ଗୃହୀଭକ୍ତ ତାଙ୍କର ଦର୍ଶନ ନିମନ୍ତେ କାଶିପୁର ଆସିଥାନ୍ତି । ଯୁବଭକ୍ତଗଣ ଯେଉଁମାନେ ଠାକୁରଙ୍କ ସେବାରେ ବ୍ୟସ୍ତ, ସେମାନେ ଉଦ୍ୟାନବାଟିର ତଳମହଲାରେ ବିଶ୍ରାମ ନେଉଥା'ନ୍ତି । ପରମଭକ୍ତ ଗିରୀଶ ଚନ୍ଦ୍ର ଘୋଷ, ଡାକ୍ତର ରାମଚନ୍ଦ୍ର ଦତ୍ତ ଏବଂ ଅନ୍ୟ କେତେକ ଗୃହୀ ଭକ୍ତ ଆମ୍ରଗଛର ଛାୟା ତଳେ ପରସ୍ପର ମଧ୍ୟରେ କଥାବାର୍ତ୍ତାରେ ମଗ୍ନ ଥିଲେ । ଶ୍ରୀରାମକୃଷ୍ଣ ସେମାନଙ୍କୁ ଦେଖି ମନରେ କ'ଣ ଯେ ଭାବିଲେ, ହଠାତ୍ କେତେଜଣ ଭକ୍ତଙ୍କ ସାଥୀରେ ଧୀରେ ଧୀରେ ସେମାନଙ୍କ ନିକଟରେ ଉପସ୍ଥିତ ହେଲେ । ଦୁର୍ବଳ ଶରୀର, ତଥାପି ଦେହ ପ୍ରତି ଦୃଷ୍ଟି ନାହିଁ । ହାସ୍ୟ ବଦନରେ ସେ ଗିରୀଶଙ୍କୁ ଚାହିଁଲେ ।

''ଗିରୀଶ ! ମୋ ଭିତରେ ତୁମେ କ'ଣ ଏମିତି ଦେଖିଛ ଯେ ଚାରିଆଡ଼େ ପ୍ରଚାର କରୁଛ ମୁଁ ଅବତାର ବୋଲି ଅନେକ କଥା ? ବାଳକସୁଲଭ କଣ୍ଠରେ ଶ୍ରୀରାମକୃଷ୍ଣ ପ୍ରଶ୍ନ କଲେ । ନିର୍ଲିପ୍ତ ନୟନରେ ଅବୋଧ ଶିଶୁଟିଏ ଭଳି ଚାହିଁ ସେ କେବଳ ହସୁଥିଲେ । କ'ଣ ଯେ ତାଙ୍କ ମନରେ ସେଦିନ ଥିଲା ସେ ଏଭଳି ହଠାତ୍ ପ୍ରଶ୍ନ କଲେ ? ହୋଇପାରେ, ସେ ଯେଉଁ ପୂର୍ବରୁ ସୂଚନା ଦେଇଥିଲେ ଯେ ଦେହତ୍ୟାଗ ପୂର୍ବରୁ ସମସ୍ତଙ୍କ ଆଗରେ ହାଣ୍ଡି ଭାଙ୍ଗି ଦେବେ, ତାହା କ'ଣ ଆଜି ସମସ୍ତଙ୍କ ସମ୍ମୁଖରେ କହିଦେବେ କି ?

Digitized by srujanika@gmail.com

ଠାକୁରଙ୍କର ଅପ୍ରତ୍ୟାଶିତ ପ୍ରଶ୍ନରେ ଗିରୀଶ ଭାବ ବିହ୍ୱଳିତ ହୋଇ କମ୍ପିତ ଓଠରେ, ହସ୍ତଯୋଡ଼ି କହି ଉଠିଲେ, ''ମୁଁ ବା ଆପଣଙ୍କ ସମ୍ବନ୍ଧରେ କ'ଣ କହିପାରିବି ? ଯାହାଙ୍କ ସମ୍ବନ୍ଧରେ ଅଣୁମାତ୍ର କହିବା ପାଇଁ ବ୍ୟାସ ଓ ବାଲ୍ମିକୀ ସଫଳ ହୋଇ ନ ଥିଲେ, ମୁଁ ପୁଣି ତାଙ୍କ ବିଷୟରେ କହିବି ? ଗିରୀଶଙ୍କର ଭକ୍ତିପୂର୍ଣ୍ଣ ବାକ୍ୟ ଶ୍ରବଣ ମାତ୍ରକେ, ଶ୍ରୀରାମକୃଷ୍ଣଙ୍କର ମନ ଓ ଚେତନା ଏଭଳି ଉର୍ଦ୍ଧ୍ୱଗାମୀ ହେଲା ଯେ ସେ ନିମିଷକ ଭିତରେ ଗଭୀର ସମାଧିସ୍ଥ ହେଲେ । ଗିରୀଶ ଭକ୍ତିଆପ୍ଳୁତ କଣ୍ଠରେ, ଉଚ୍ଚ ସ୍ୱରରେ କହି ଉଠିଲେ ''ଜୟ ଶ୍ରୀରାମକୃଷ୍ଣ, ଜୟ ଶ୍ରୀରାମକୃଷ୍ଣ, ଠାକୁରଙ୍କ ଚରଣରୁ ସେ ବାରମ୍ବାର ଧୂଳି ହାତରେ ନେଇ ମୁଣ୍ଡରେ ମାରୁଥିଲେ ।

ଇତ୍ୟବସରରେ ଶ୍ରୀରମକୃଷ୍ଣ ଅର୍ଦ୍ଧ-ବାହ୍ୟଦଶାକୁ ଫେରି ଆସିଲେ । ଅପୂର୍ବ ଜ୍ୟୋତିରେ ମୁଖମଣ୍ଡଳ ଆଲୋକିତ ଏବଂ ତାଙ୍କର ସ୍ମିତହାସ୍ୟ ଅଧରରୁ ଝରିପଡ଼ିଲା, ''ତୁମମାନଙ୍କୁ ମୁଁ ଅଧିକ ବା କ'ଣ କହିପାରିବି ? ତୁମମାନଙ୍କର କେବଳ ଚୈତନ୍ୟ ହେଉ !!'' ଉପସ୍ଥିତ ଭକ୍ତଗଣ ଶ୍ରୀରାମକୃଷ୍ଣଙ୍କର ମୁଖନିଃସୃତ ଆଶୀର୍ବାଦ ଶ୍ରବଣ କରି ଉଚ୍ଚ ସ୍ୱରରେ କହିଉଠିଲେ, ''ଜୟ ଶ୍ରୀରାମକୃଷ୍ଣ'' । କେତେକ ଭକ୍ତ ଲମ୍ବଖମ୍ବ ହୋଇ ତାଙ୍କ ସମ୍ମୁଖରେ ପ୍ରଣିପାତ କଲେ । ଅନ୍ୟ କେତେ ଜଣ ଫୁଲ ଅଜାଡ଼ି ଦେଲେ ତାଙ୍କ ପାଦଦ୍ୱୟରେ । ଜଣ ଜଣ କରି ଭକ୍ତମାନେ ତାଙ୍କ ଚରଣରୁ ଧୂଳି ନେଇ ମୁଣ୍ଡରେ ମାରୁଥିଲେ । ଆଧ୍ୟାତ୍ମିକ ପ୍ରବାହରେ ତନ୍ମୟ ଶ୍ରୀରାମକୃଷ୍ଣ ସସ୍ନେହେ ଭକ୍ତମାନଙ୍କର ବକ୍ଷ ଦେଶକୁ ସ୍ପର୍ଶ କରି କହି ଉଠୁଥିଲେ, ''ତୁମର ଚୈତନ୍ୟ ହେଉ ।'' ଅନେକ ଗୃହୀ ଭକ୍ତ ଠାକୁରଙ୍କ ସ୍ପର୍ଶରେ ଅପୂର୍ବ ଆଧ୍ୟାତ୍ମିକ ଅନୁଭବରେ ଶିହରିତ ହୋଇଉଠିଲେ । ସେହି ଅପୂର୍ବ ଆଧ୍ୟାତ୍ମିକ ଅନୁଭବ ଭାଷାରେ ବର୍ଣ୍ଣନା କରିହେବ ନାହିଁ । ସେମାନଙ୍କ ଦୃଷ୍ଟିରେ ଶ୍ରୀରାମକୃଷ୍ଣ କଳ୍ପତରୁ ଭାବେ ପ୍ରତିଭାତ ହେଲେ । ନିଜ ନିଜର ପ୍ରବୃତ୍ତି ଓ ମନୋଭାବ ଅନୁସାରେ ସମସ୍ତେ ଜାତି ବର୍ଣ୍ଣ ନିର୍ବିଶେଷରେ ଗ୍ରହଣ କଲେ ଶ୍ରୀରାମକୃଷ୍ଣଙ୍କଠାରୁ ଆଧ୍ୟାତ୍ମିକ ଅନୁକମ୍ପା । ମାନବ ଜୀବନର ଶ୍ରେଷ୍ଠ ଅଭିଳାଷ ଈଶ୍ୱରୋପଲବ୍ଧି । ଯେଉଁମାନେ ଚାତକ ପକ୍ଷୀ ଭଳି ବର୍ଷାର ଆଗମନକୁ ଧୈର୍ଯ୍ୟ ଓ ନିଷ୍ଠା ସହକାରେ ଅପେକ୍ଷା କରିଥିଲେ, ସେମାନେ ଶ୍ରୀରାମକୃଷ୍ଣଙ୍କଠାରୁ ସୁଧା ବାରି ପାନ କରି ସେମାନଙ୍କର ମାନବ ଜୀବନ ସଫଳ କଲେ ।

ଏହି କଳ୍ପତରୁ ଦିବସର ପରବର୍ତ୍ତୀ ଦିନ । ନରେନ୍ଦ୍ର ଧ୍ୟାନାଭ୍ୟାସ କରୁଥିବା ସମୟରେ ହଠାତ୍ ଅପୂର୍ବ ଶିହରଣ ନିଜ ବକ୍ଷ ଭିତରେ ଅନୁଭବ କଲେ । ବୋଧହୁଏ ତାଙ୍କର କୁଣ୍ଡଳିନୀ ଜାଗ୍ରତ ହେଲା । ସେ ଇଡ଼ା ଓ ପିଙ୍ଗଳା ନାଡ଼ିର ଉନ୍ମେଷ ଅନୁଭବ କଲେ । କିନ୍ତୁ ନିର୍ବିକଳ୍ପ ସମାଧିର ମୋହ ତାଙ୍କୁ ଆଚ୍ଛନ୍ନ କରିଥିଲା । ସେହି ଭାବାତୀତ ଅବସ୍ଥାର ସ୍ୱାଦ ଆସ୍ୱାଦନ ନିମନ୍ତେ ମନ ଘୁମୁରୁଥାଏ । ସେ ମନରେ ସାହସ ବାନ୍ଧି ଶ୍ରୀରାମକୃଷ୍ଣଙ୍କ ନିକଟରେ ପହଞ୍ଚିଲେ । ନିଜର ଅନୁଭୂତି କଥା କହିସାରି ନରେନ୍ଦ୍ର କହିଲେ, ''ଠାକୁର, କଳ୍ପତରୁ ଦିବସରେ ଅନ୍ୟମାନେ ଆପଣଙ୍କ ସ୍ପର୍ଶରେ ଆତ୍ମୋପଲବ୍ଧି କରିଛନ୍ତି, ମୋତେ କିଛି ଦିଅନ୍ତୁ; ସମସ୍ତେ ସଫଳ ହୋଇଛନ୍ତି; ମୁଁ କ'ଣ ଅତୃପ୍ତ ରହିଯିବି ? ଶ୍ରୀରାମକୃଷ୍ଣ ହସିଉଠିଲେ ଏବଂ କହିଲେ, ''ତୁମର ପରିବାରର ସମସ୍ୟାକୁ ପ୍ରଥମେ ସମାଧାନ କର, ତା'ପରେ ମୋ ପାଖକୁ ଆସ । ତୁମକୁ ସବୁକିଛି ମିଳିଯିବ । ଆଚ୍ଛା ନରେନ୍, ତୁମେ ପ୍ରକୃତରେ କ'ଣ ଚାହଁ ?

Digitized by srujanika@gmail.com

ନରେନ୍ଦ୍ର ତତ୍‌କ୍ଷଣାତ୍ କହିଉଠିଲେ, ''ଠାକୁର, ମୁଁ ସମାଧିରେ ନିରବଚ୍ଛିନ୍ନ ତିନି ଚାରି ଦିନ ନିମଗ୍ନ ରହିବାକୁ ମୋର ଏକାନ୍ତ ଇଚ୍ଛା, କେବଳ ଥରେ ମାତ୍ର କ୍ଷୁଧା ନିବାରଣ ସକାଶେ ସମାଧି ଅବସ୍ଥାରୁ ଫେରିଆସିବି । ତା'ପରେ ପୁଣି ସମାଧିସ୍ଥ ହେବି ।''

ଯେଉଁ ନରେନ୍ଦ୍ରଙ୍କୁ ସେ ଏତେ ଆଦର କରନ୍ତି, କିନ୍ତୁ ସେଦିନ ତାଙ୍କ ଉପରେ ବିରକ୍ତି ପ୍ରକାଶ କରି ଶ୍ରୀରାମକୃଷ୍ଣ କହିଉଠିଲେ, ''ଏତେ କ୍ଷୁଦ୍ର ବୁଦ୍ଧି ତୋର ! ସମାଧିଠାରୁ ରହିଛି ଆହୁରି ଉଚ୍ଚତର ଅବସ୍ଥା । ସତ୍-ଚିତ୍-ଆନନ୍ଦ ବ୍ରହ୍ମ । ସେଇ ସବୁ ହୋଇଛନ୍ତି । ତୁ ପରା ତାଙ୍କର ଭଜନ ସଦା ଗାନ କରୁ । ଅପେକ୍ଷା କର, ସମାଧିଠୁଁ ଉଚ୍ଚତର ଅବସ୍ଥା ତୁ ଲାଭ କରିବୁ ।''

ନରେନ୍ଦ୍ର ନୀରବ ରହିଲେ । କିନ୍ତୁ ଶ୍ରୀରାମକୃଷ୍ଣ କୌଣସି ମତେ ତାଙ୍କୁ ନିର୍ବିକଳ୍ପ ସମାଧିରେ ବର୍ତ୍ତମାନ ଉପନୀତ କରାଇବେ ନାହିଁ । କାରଣ ନିଜ ସ୍ୱରୂପକୁ ସେଇଠି ସେ ଚିହ୍ନି ନେବେ । ଆଉ ସେଠାରୁ ଫେରିବେ ନାହିଁ । ନରେନ୍ଦ୍ରଙ୍କର ଆଶା ଆଶାରେ ରହିଗଲା । ଯାହାହେଉ, ପରଦିନ ପ୍ରଭାତରେ ନିଜର ପରିବାରବର୍ଗଙ୍କୁ ଭେଟିବା ପାଇଁ ସିମୁଳିଆ ସ୍ଥିତ ଗୃହକୁ ଚାଲିଗଲେ । ପରିବାର ଲୋକେ ସେଦିନ୍ ନରେନ୍ଦ୍ରଙ୍କୁ ଭର୍ତ୍ସନାକରି କହିଲେ, ''ଭେଗାଙ୍କ ପରି ତୁ କାହିଁକି ଖାଲି ବୁଲୁଛୁ ? ତୋର ଆଇନ ପରୀକ୍ଷାର ସମୟ ପାଖେଇ ଗଲେଣି । ତଥାପି ପାଠପଢ଼ାରେ ମନ ଦେଉନାହୁଁ । ଲକ୍ଷ୍ୟହୀନ ଭାବରେ ଖାଲି ଘୁରୁଛୁ ।'' ନରେନ୍ଦ୍ର ନିଜ ଅଧ୍ୟୟନ କକ୍ଷ'କୁ ପ୍ରବେଶ କଲେ । ସେ ଅଧ୍ୟୟନ କରିବାକୁ ଚାହିଁଲେ, କିନ୍ତୁ ପଢ଼ିପାରିଲେ ନାହିଁ । ସେ ଅନୁଭବ କଲେ ଯେମିତି ପାଠ ପଢ଼ିବା ଗୋଟିଏ ଭୟଙ୍କର କାର୍ଯ୍ୟ । ତାଙ୍କର ହୃଦୟ ବିଦାରିତ ହେଲା । ତାଙ୍କ ଚକ୍ଷୁରୁ ଝରିଲା ଅଶ୍ରୁ । ସେ ଏମିତି ଜୀବନରେ କେବେ ବି କାନ୍ଦି ନ ଥିଲେ । ବହିପତ୍ର ଫିଙ୍ଗିଦେଇ ଦୌଡ଼ିଲେ । ଖଳାରେ ଛଣ ଗଦା ରହିଥିଲା । ଛଣଗୁଡ଼ିକ ନିଜ ଉପରେ ଢାଙ୍କି ପକାଇଲେ । ତା'ପରେ ଦୌଡ଼ି ଦୌଡ଼ି କାଶିପୁର ଚାଲି ଆସିଲେ ।

- ୨ -

*ଏହିକଥା ବାରମ୍ବାର କହିବା ଲାଗି ତୋତେ ଲାଜ ଲାଗୁନି ? ଛି... ଛି, ତୁ ଏତେ ବଡ଼ ଆଧାର, ତୋ ମୁଖରେ ଏଭଳି ଛୋଟ କଥା ଶୋଭା ପାଉନି । ମୁଁ ଭାବିଥିଲି ତୁ ଏକ ବିଶାଳ ବଟବୃକ୍ଷ ହେବୁ । ତୋର ଛାୟାରେ ହଜାର ହଜାର ଲୋକ ଆଶ୍ରୟ ଲାଭ କରିବେ । ତାହା ନ ହୋଇ ତୁ କେବଳ ତୋ ନିଜର ମୁକ୍ତି ଚାହୁଁଛୁ ? ଏହା ତ ଅତି ତୁଚ୍ଛ କଥା !! ବାବାରେ ତୋର ଏତେ ଛୋଟ ନଜର ନ ହେଉ ।*

ଏପଟେ ଶ୍ରୀରାମକୃଷ୍ଣ ରାତି ନଅ ଘଟିକା ସମୟରେ ଦୁଇଜଣ ଯୁବଭକ୍ତ ନିରଞ୍ଜନ ଓ ଶଶୀଙ୍କୁ ନରେନ୍ଦ୍ରଙ୍କର ଉଚ୍ଚ ପ୍ରଶଂସା କରି କହୁଥିଲେ, ''ନରେନ୍‌ର ମନର ଅବସ୍ଥା କି ଅଦ୍ଭୁତ ! ଦେଖ, ନରେନ୍ ପ୍ରଥମେ ଈଶ୍ୱରଙ୍କର ରୂପକୁ ବିଶ୍ୱାସ କରୁ ନ ଥିଲା; ବର୍ତ୍ତମାନ ଦେଖନା,

Digitized by srujanika@gmail.com

କିପରି ଈଶ୍ୱରଙ୍କ ପାଇଁ ତା'ର ପ୍ରାଣ ଉଚ୍ଛନ୍ନ ହେଉଛି । ତୁମେ ଜାଣିଛ ସେହି କାହାଣୀ । ଜଣେ ଶିଷ୍ୟ ଈଶ୍ୱର ଦର୍ଶନ କରାଇ ଦେବାକୁ ଗୁରୁଙ୍କୁ ଅନୁରୋଧ କରିଥିଲେ । ଗୁରୁ ଶିଷ୍ୟଙ୍କୁ କହିଲେ, ''ମୋ ସହ ଆସ, ଈଶ୍ୱରଙ୍କୁ କିପରି ଦର୍ଶନ କରାଯାଏ, ମୁଁ ତୁମକୁ ଦେଖାଇ ଦେବି ।'' ଏହା କହି ଗୁରୁ ଶିଷ୍ୟକୁ ଏକ ହ୍ରଦ ନିକଟକୁ ନେଇଗଲେ ଏବଂ ପାଣି ଭିତରେ ଶିଷ୍ୟର ମୁଣ୍ଡକୁ ବୁଡାଇ ଚାପି ଧରିଲେ । କିଛି ସମୟପରେ, ଗୁରୁ ପାଣିରୁ ଉଠାଇ ଆଣି ଶିଷ୍ୟକୁ ପ୍ରଶ୍ନ କଲେ, ''ତୁମକୁ କେମିତି ଲାଗିଲା ?'' ଶିଷ୍ୟ କହିଲେ, ''ବାପ୍‌ରେ ବାପ୍, ଅଣନିଃଶ୍ୱାସୀ ହୋଇ ମୁଁ ଯେ ମରିଯାଇଥାନ୍ତି !! ଗୁରୁ କହିଲେ, ''ହଁ, ଠିକ୍ ସେମିତି କଥା । ଯେତେବେଳେ ତୁମର ମନ ଓ ହୃଦୟ ଈଶ୍ୱର ଲାଭ ପାଇଁ ବ୍ୟାକୁଳିତ ହେବ, ମରିଗଲା ଭଳି ଲାଗିବ, ସେତେବେଳେ ତୁମେ ଜାଣିବ ଯେ ଈଶ୍ୱର ଦର୍ଶନ ଅଧିକ ବିଳମ୍ବ ନାହିଁ, ପୂର୍ବ ଦିଗ୍‌ବଳୟରେ ସିନ୍ଦୁରା ଫାଟିଲେ, ଜାଣିବ ଯେ ସୂର୍ଯ୍ୟୋଦୟ ଶୀଘ୍ର ହେବ ।

ଶ୍ରୀରାମକୃଷ୍ଣଙ୍କର ଏଭଳି ମନ୍ତବ୍ୟରୁ ସୂଚନା ମିଳୁଥିଲା ଯେ ନରେନ୍ଦ୍ର ବୋଧହୁଏ ଶୀଘ୍ର ତାଙ୍କର ଲକ୍ଷ୍ୟସ୍ଥଳରେ ଉପନୀତ ହେବେ । କିନ୍ତୁ ଅପରପକ୍ଷରେ ନରେନ୍ଦ୍ରଙ୍କ ମନ ବୁଝୁ ନ ଥିଲା । ନିର୍ବିକଳ୍ପ ସମାଧିର ଅଭିଳାଷ ତାଙ୍କ ଭିତରେ ତୀବ୍ରତର ହେଉଥିଲା । ପୁନଶ୍ଚ ସେ ଶ୍ରୀରାମକୃଷ୍ଣଙ୍କ ନିକଟରେ ଉକ୍ତ ଅଭିଳାଷ ନିମନ୍ତେ ଅଳି କଲେ । ଶ୍ରୀରାମକୃଷ୍ଣ ସେଦିନ ତାଙ୍କୁ ପଚାରିଥିଲେ : ''ନରେନ୍, ବାସ୍ତବରେ ତୁ କ'ଣ ଚାହୁଁଛୁ ? ନରେନ୍ଦ୍ର ତତ୍‌କ୍ଷଣାତ୍ କହି ଉଠିଲେ, ''ଠାକୁର, ଶୁକଦେବଙ୍କ ସମ ନିର୍ବିକଳ୍ପ ସମାଧିର ଅପାର ଆନନ୍ଦ ସାଗରରେ ଅବଗାହନ କରିବାକୁ ମୁଁ ଚାହେଁ ।''

''ଏହିକଥା ବାରମ୍ବାର କହିବା ଲାଗି ତୋତେ ଲାଜ ଲାଗୁନି ? ଛି... ଛି, ତୁ ଏତେ ବଡ଼ ଆଧାର, ତୋ ମୁଖରେ ଏଭଳି ଛୋଟ କଥା ଶୋଭା ପାଉନି । ମୁଁ ଭାବିଥିଲି ତୁ ଏକ ବିଶାଳ ବଟବୃକ୍ଷ ହେବୁ । ତୋର ଛାୟାରେ ହଜାର ହଜାର ଲୋକ ଆଶ୍ରୟ ଲାଭ କରିବେ । ତାହା ନ ହୋଇ ତୁ କେବଳ ତୋ ନିଜର ମୁକ୍ତି ଚାହୁଁଛୁ ? ଏହା ତ ଅତି ତୁଚ୍ଛ କଥା !! ବାବାରେ ତୋର ଏତେ ଛୋଟ ନଜର ନ ହେଉ ।'' ଏହା ଥିଲା ଶ୍ରୀରାମକୃଷ୍ଣଙ୍କର ଯୁଗାନ୍ତକାରୀ ଧିକ୍କାର । ଶ୍ରୀରାମକୃଷ୍ଣଙ୍କର 'ଶିବ ଜ୍ଞାନେ ଜୀବ ସେବା' ମହାବାକ୍ୟ ଶୁଣି ନରେନ୍ଦ୍ର ପୂର୍ବରୁ ଯେପରି ଏକଦା ଧର୍ମ ରାଜ୍ୟରେ ଏକ ନବୀନ ସମ୍ଭାବନାର ଗଭୀରତା ଅନୁଭବ କରିଥିଲେ ଠିକ୍ ସେହିଭଳି ଶ୍ରୀରାମକୃଷ୍ଣଙ୍କଠାରୁ ଆଜି ଧିକ୍କାର ଶୁଣି ତାଙ୍କ ଭାବରାଜ୍ୟରେ ଏକ ନୂତନ ସୂର୍ଯ୍ୟୋଦୟ ହେଲା । ମୋକ୍ଷ କାମନା ଏକ ତୁଚ୍ଛ କଥା, ସେ ଅନୁଭବ କଲେ । ବର୍ତ୍ତମାନ ସେ ଶ୍ରୀରାମକୃଷ୍ଣଙ୍କର ମୂଳ ଉଦ୍ଦେଶ୍ୟର ରହସ୍ୟ ପ୍ରତି ସଚେତନ ହେଲେ - ''ନରେନ୍ ଏକାଧାରରେ ହେବ ଜଣେ ଜ୍ଞାନୀ ଓ ଭକ୍ତ, ଈଶ୍ୱରଙ୍କୁ ବିଭିନ୍ନ ରୂପରେ ଦର୍ଶନ କରିବ, ତତ୍‌ସଙ୍ଗେ ନିର୍ଗୁଣ ନିରାକାର ପରଂବ୍ରହ୍ମଙ୍କୁ ବି ଉପଲବ୍ଧି କରିବ । ସେ କେବଳ ଜଣେ ସିଦ୍ଧ-ପୁରୁଷ ନୁହେଁ, ବରଂ ଜଣେ ଶୁଦ୍ଧ ଆତ୍ମା ଯିଏ ବହୁ ଆତ୍ମାକୁ ଉଦ୍ଧାର କରିବ । ଭାବ ସାଗରରେ ମାୟା ଅତିକ୍ରମ କରିବା ତା'ର ଖେଳଘର, କିନ୍ତୁ ବହୁଲୋକଙ୍କୁ ଏଥିରୁ ଉଦ୍ଧାର କରିବାରେ ସେ ସହାୟକ ହେବ । ମୋକ୍ଷ ତା ପାଇଁ ଗୌଣ ।''

ଐଶ୍ୱରୀୟ ଭଜନ, କୀର୍ତ୍ତନ, ପ୍ରବଚନ ସହ ଆଧ୍ୟାତ୍ମିକ ସାଧନାରେ ପରିସ୍ଫୁଟ କାଶିପୁର ଉଦ୍ୟାନବାଟି ଦୀପ୍ତିମନ୍ତ, କିନ୍ତୁ ଶ୍ରୀରାମକୃଷ୍ଣଙ୍କ ବ୍ୟାଧିରେ ଆରୋଗ୍ୟର ଲକ୍ଷଣ ଦୃଷ୍ଟିଗୋଚର

Digitized by srujanika@gmail.com

ହେଉ ନ ଥିଲା । ନରେନ୍ଦ୍ରଙ୍କ ନେତୃତ୍ୱରେ ଯୁବଭକ୍ତଗଣ ଛାଇଭଳି ତାଙ୍କ ପାଖରେ ଜଗି ରହୁଥିଲେ ଏବଂ ଆବଶ୍ୟକ ସ୍ଥଳେ ସବୁପ୍ରକାର ସେବା ଓ ସାମଗ୍ରୀ ଯୋଗାଇ ଦେଉଥିଲେ । ହଠାତ୍ ନରେନ୍ଦ୍ର ଅନୁଭବ କଲେ - କେତେକ ଯୁବଭକ୍ତ କର୍କଟ ରୋଗ ସଂକ୍ରାମକ ବୋଲି ଭୟ କରି ଶ୍ରୀରାମକୃଷ୍ଣଙ୍କ ସେବାରୁ ନିବୃତ ହେଉଛନ୍ତି । ବହୁ ଗୃହୀଭକ୍ତ ବି ଏତାଦୃଶ ଭୟାଳୁ ମାନସିକତା ଯୋଗୁଁ ଦୂରେଇ ଗଲେ । କର୍କଟ ରୋଗ ସଂକ୍ରାମକ ନୁହେଁ ବୋଲି ବିଶେଷ କରି ଯୁବଭକ୍ତଙ୍କୁ ସେ ବୁଝାଇଲେ । କଥାରେ କହିବା ଅପେକ୍ଷା କାମରେ ଦେଖାଇଲେ ମଣିଷର ବଦ୍ଧ ଧାରଣା ଦୂରିଭୂତ ହୁଏ । ଯୁବଭକ୍ତମାନଙ୍କୁ ଦିନେ ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କ ଶୟନ କକ୍ଷକୁ ନେଇ ଆସିଲେ । ଘର କୋଣରେ ଗୋଟିଏ ଗିନାରେ କିଛି ଉଚ୍ଛିଷ୍ଟ ରହିଥିଲା । ଯେଉଁ ତରଳ ପଥ୍ୟ ତାଙ୍କୁ ଖାଇବାକୁ ଦିଆଯାଇଥିଲା, ସବୁତକ ଖାଇ ନ ପାରିବାରୁ ସେଥିରୁ କିୟଦାଂଶ ଉକ୍ତ ଗିନାରେ ରହିଯାଇଥିଲା । ସେହି ନାଳମିଶା ଉଚ୍ଛିଷ୍ଟକୁ ସମସ୍ତଙ୍କ ସମ୍ମୁଖରେ ନରେନ୍ଦ୍ର ନିର୍ବିକାର ଚିତ୍ତରେ ଢକ ଢକ ପିଇଲେ । ନରେନ୍ଦ୍ରଙ୍କ ବିକାରଶୂନ୍ୟ ଚିତ୍ତ ଓ ଶ୍ରୀରାମକୃଷ୍ଣଙ୍କ ପ୍ରତି ଅହେତୁକ ପ୍ରେମ ଓ ଭକ୍ତି ଉପସ୍ଥିତ ଭକ୍ତମାନଙ୍କୁ ତଟସ୍ଥ କଲା । ଏହି ଦୃଶ୍ୟରେ ସମସ୍ତଙ୍କ ମନରୁ ଭୟ ଓ ଆଶଙ୍କା ଦୂର ହୋଇଗଲା ।

ଦକ୍ଷିଣେଶ୍ୱରସ୍ଥିତ ପଞ୍ଚବଟୀରେ ଧୂନି ଜଳାଇ, ରାତି ପରେ ରାତି ଉଜାଗର ରହି, ସେ ଯେଉଁ କଷ୍ଟସାଧ୍ୟ ଆଧ୍ୟାତ୍ମିକ ସାଧନା ଶ୍ରୀରାମକୃଷ୍ଣଙ୍କ ତତ୍ତ୍ୱାବଧାନରେ ସମ୍ପାଦନ କରିଥିଲେ, ତାହାର ଫଳ ସ୍ୱରୂପ ସଞ୍ଚିତ ହୋଇଥିଲା ତାଙ୍କ ଭିତରେ ପ୍ରଚଣ୍ଡ ଦିବ୍ୟ ଶକ୍ତି । ଏହା ଭଲରୂପେ ଜାଣିଥିଲେ ଶ୍ରୀରାମକୃଷ୍ଣ । ଏତାଦୃଶ ପ୍ରଚଣ୍ଡ ଶକ୍ତିର ଆଭାସ ୧୮୮୬ ମାର୍ଚ୍ଚ ମାସ ଶିବରାତ୍ରିରେ ହଠାତ୍ ଆତ୍ମପ୍ରକାଶ କଲା । କାଶିପୁର ଉଦ୍ୟାନବାଟିରେ ନରେନ୍ଦ୍ର ତିନି ଚାରିଜଣ ସାଙ୍ଗଙ୍କ ସହ ଏକ କୋଠରିରେ ଶିବାର୍ଚ୍ଚନାରେ ମଗ୍ନ ଥିଲେ । ଶିବରାତ୍ରିରେ ସାରା ରାତି ଉଜାଗର ରହି ଧ୍ୟାନସ୍ଥ ହେବେ ବୋଲି ସେମାନେ ମନସ୍ଥ କରିଥିଲେ । ନିର୍ଜଳ ଉପବାସରେ ସେମାନେ ଶିବ ମହିମାରେ ଥିଲେ ନିମଜ୍ଜିତ । ହଠାତ୍ ଅସରାଏ ବର୍ଷା ହେଲା । ଆକାଶରୁ ତାରା ଲୁଚିଗଲେ । ରାତ୍ରର ପ୍ରଥମ ପ୍ରହର ପୂଜାର୍ଚ୍ଚନା, ଧ୍ୟାନ ଓ ଜପ ସମାପ୍ତ କରି ନରେନ୍ଦ୍ର ପୂଜକ ଆସନରେ ସାମାନ୍ୟ ବିଶ୍ରାମ ନେଇ, ଅନ୍ୟ ଜଣେ ବନ୍ଧୁଙ୍କ ସହ କଥାବାର୍ତ୍ତା କରୁଥିଲେ । ଜଣେ ବନ୍ଧୁ ତାଙ୍କ ପାଇଁ ହୁକ୍କା ପ୍ରସ୍ତୁତ କରିବା ପାଇଁ ସେଠାରୁ ପ୍ରସ୍ଥାନ କଲେ । ଅନ୍ୟ ସାଙ୍ଗ କୌଣସି କାର୍ଯ୍ୟ ନିମନ୍ତେ ସେଠାରୁ ଚାଲିଗଲେ ।

ଇତ୍ୟବସରରେ ନରେନ୍ଦ୍ରଙ୍କ ଭିତରେ ହଠାତ୍ ଦିବ୍ୟଶକ୍ତିର ଅନୁଭବ ଜାଗି ଉଠିଲା । ସେ ଚାହିଁଲେ ସମୀପରେ ଉପବିଷ୍ଟ ସାଙ୍ଗ କାଳୀଙ୍କୁ । କାଳୀଙ୍କ ଉପରେ ନିଜ ଦିବ୍ୟଶକ୍ତିର ପ୍ରଭାବ ପରୀକ୍ଷା କରିବା ପାଇଁ ତାଙ୍କ ମନର ଏକ ଖିଆଲ ଉଦ୍ରେକ ହେଲା । ନରେନ୍ଦ୍ର କହିଲେ, ''କାଳୀ, ମୁଁ ଏଠାରେ ଧ୍ୟାନରେ ବସୁଛି । ତୁମେ ବି ଧ୍ୟାନସ୍ଥ ହୁଅ । କିନ୍ତୁ ଅଳ୍ପ ସମୟପରେ ତୁମେ ମୋତେ ସ୍ପର୍ଶ କରିବ ।'' ଦୁଇ ଗୁରୁ-ଭାଇ ଧ୍ୟାନସ୍ଥ ହେଲେ । ଏହି ସମୟରେ ଯେଉଁ ଗୁରୁଭାଇ ହୁକ୍କା ପ୍ରସ୍ତୁତ ନିମନ୍ତେ ବାହାରକୁ ଯାଇଥିଲେ, ସେ କୋଠରିକୁ ପ୍ରବେଶ କଲେ । କୋଠରି ଭିତର ଦୃଶ୍ୟ ଦେଖି ସେ ଆଚମ୍ବିତ ହେଲେ - ନରେନ୍ଦ୍ର ସ୍ଥିର ଓ ଅଚଳାବସ୍ଥାରେ ଧ୍ୟାନ ମଗ୍ନ ଏବଂ କାଳୀ ଚକ୍ଷୁ ମୁଦ୍ରିତ କରି ନିଜର ଡାହାଣ ହାତ ନରେନ୍ଦ୍ରଙ୍କ ଦକ୍ଷ ଜାନୁ ଉପରେ ରଖିଛନ୍ତି । କେବଳ ସେତିକି ନୁହେଁ କାଳୀଙ୍କ ହାତ ଭୀଷଣଭାବେ କମ୍ପିତ ହେଉଥିଲା । ହାତରେ ହୁକ୍କା ଧରି ଗୁରୁ-ଭାଇ ଜଣକ ବିସ୍ମିତ ନୟନରେ ସେହି ଅପୂର୍ବ ଦୃଶ୍ୟକୁ ଚାହିଁଥିଲେ ।

Digitized by srujanika@gmail.com

କିୟତ୍ ମୁହୂର୍ତ୍ତ ଅତିକ୍ରାନ୍ତେ, ନରେନ୍ଦ୍ର ଆଖି ଖୋଲିଲେ । କାଳୀଙ୍କୁ ଚାହିଁ କହିଲେ, ''ବାସ୍ ଯଥେଷ୍ଟ ହେଲା । କାଳୀ, ତୋତେ କେମିତି ଲାଗୁଛି ? କାଳୀ କହିଲେ, ''ଇଲେକ୍‌ଟ୍ରି ସକ୍ ଭଳି ମୁଁ ଅନୁଭବ କଲି, ମୋ ହାତ ଖାଲି କମ୍ପମାନ ହେଉଥିଲା । ଯେତେ ଚେଷ୍ଟା କରୁଥିଲି, ହାତକୁ ସ୍ଥିର ରଖିବା ପାଇଁ , କିନ୍ତୁ ପାରୁ ନ ଥିଲି ।''

ପୁନଶ୍ଚ ନରେନ୍ଦ୍ର ସାଙ୍ଗମାନଙ୍କ ସହ ଦ୍ୱିତୀୟ ପ୍ରହର ଜନିତ ପୂଜାର୍ଚ୍ଚନା ସମାପନ କରି ଧ୍ୟାନରେ ଉପବିଷ୍ଟ ହେଲେ । କିନ୍ତୁ କାଳୀ କ୍ରମଶଃ ଗଭୀର ସମାଧିରେ ମଗ୍ନ ହେଲେ । ଏଭଳି ଧ୍ୟାନମଗ୍ନ ହେବାରେ କାଳୀଙ୍କୁ କେହି ପୂର୍ବରୁ ଦେଖି ନ ଥିଲେ । ତାଙ୍କର ସମଗ୍ର ଶରୀର କାଷ୍ଠ ସଦୃଶ ଟାଣ ହୋଇଗଲା ଏବଂ ତାଙ୍କର ବାହ୍ୟ ଜ୍ଞାନ ନ ଥିଲା । ନରେନ୍ଦ୍ରଙ୍କୁ ସ୍ପର୍ଶ କରିଥିବାରୁ କାଳୀ ଏଭଳି ଗଭୀର ଧ୍ୟାନମଗ୍ନ ବୋଲି ସମସ୍ତେ ଭାବିଲେ । ଶିବରାତ୍ରିର ଅନ୍ତିମ ପ୍ରହର ପୂଜାର୍ଚ୍ଚନା ଯଥାବିଧି ସମ୍ପନ୍ନ ହେଲା । ନରେନ୍ଦ୍ର ପୂଜକ ଆସନରେ ଉପବିଷ୍ଟ ଥିବା ସମୟରେ, ଅନ୍ୟଜଣେ ଗୁରୁଭାଇ ଶଶୀ ଗୃହମଧ୍ୟକୁ ପ୍ରବେଶ କରି ନରେନ୍ଦ୍ରଙ୍କୁ କହିଲେ, ''ଠାକୁର ଡାକୁଛନ୍ତି ।'' ନରେନ୍ଦ୍ର ତତ୍‌କ୍ଷଣାତ୍ ଉପର ମହଲାକୁ କ୍ଷୀପ୍ରପାଦରେ ପଦଚାରଣ କଲେ ।

''ନରେନ୍, ଇଏ କି କଥା ? ବହୁ କଷ୍ଟରେ ଯେତିକି ସଂଚୟ କରିଛ; ତାହାଠୁଁ ଅଧିକ ବ୍ୟୟ କାହିଁକି କରୁଛ ? ପ୍ରଥମେ ପର୍ଯ୍ୟାପ୍ତ ପରିମାଣରେ ସଂଞ୍ଚୟ କର, ତା'ପରେ ତୁ ଜାଣିପାରିବୁ କେମିତି ଓ କେତେବେଳେ ଏହି ସଞ୍ଚିତ ଶକ୍ତିକୁ କାହାପାଇଁ ବ୍ୟୟ କରିବୁ । ଜଗଜ୍ଜନନୀ ସ୍ୱୟଂ ତୋତେ ଶିଖାଇ ଦେବେ । କାଳୀ ଭିତରେ ତୋର ମାନସିକ ଶକ୍ତିକୁ ପୂରାଇ ତା'ର ତୁ କି ପ୍ରକାର ଅନିଷ୍ଟ କରିଛୁ ତାହା ତୁ ଦେଖିପାରିଲୁ ନାହିଁ ? ସେ ଏକ ଭିନ୍ନ ମାନସିକ ସ୍ତରରେ ରହି, ଆଧ୍ୟାତ୍ମିକ ସାଧନାରେ ଅଗ୍ରସର ହେଉଥିଲା । ଗର୍ଭଧାରଣର ଛଅମାସ ଭିତରେ ଗର୍ଭପାତ ହେଲା ଭଳି, ତା'ଭିତରେ ତୋର ମାନସିକ ଶକ୍ତିକୁ ପୂରାଇ, ତା'ର ଆଧ୍ୟାତ୍ମିକ ଶକ୍ତିକୁ ଧ୍ୱଂସ କରିଦେଲୁ । କାଳୀର ଭାଗ୍ୟ ଉଜ୍ଜ୍ୱଳ, ତୁ ତା'ର ବିଶେଷ କ୍ଷତି କରିପାରିଲୁ ନାହିଁ । ହେଉ ହେଲା । ଏଣିକି ଏପରି କାମ କରିବୁ ନାହିଁ ।''

- ୩ -

*କି ଆଶ୍ଚର୍ଯ୍ୟ ଦୃଶ୍ୟ !! ନରେନ୍ଦ୍ର ଗଭୀର ଧ୍ୟାନମଗ୍ନ ଏବଂ ତାଙ୍କର ସମଗ୍ର ଶରୀର ଅସଂଖ୍ୟ ମଶା ଦ୍ୱାରା ଆବୃତ । ସତେକି ମଶାର କମ୍ବଳଟିଏ ସେ ଘୋଡ଼ି ହୋଇ ବସିଛନ୍ତି !! ଗିରୀଶବାବୁ ଭାବୁଛନ୍ତି - ଗୋଟିଏ ମାତ୍ର ମଶାର ଦଂଶନରେ, ମୁଁ ଏଇଠି ଛାଟିପିଟି ହେଉଛି, ମନକୁ ଏକାଗ୍ର କରିପାରୁନାହିଁ, ସହସ୍ର ମଶାଙ୍କ ଦଂଶନରେ ବି ନରେନ୍ଦ୍ର ଧୀର ଓ ଅଟଳ । ଧନ୍ୟ ନରେନ୍ଦ୍ର, ତୁମକୁ ମୋର ଶତ ସହସ୍ର ପ୍ରଣାମ ।*

ଠାକୁରଙ୍କ ମୃଦୁ ଭର୍ତ୍ସନା ନରେନ୍ଦ୍ରଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କଲା । ସେ ନୀରବରେ ଠିଆହୋଇ ଭାବୁଥିଲେ - ବାପରେ ବାପ !! ଆମେ ଯାହାସବୁ ତଳ ମହଲାରେ କରୁଥିଲୁ, ସେସବୁ ଠାକୁର

Digitized by srujanika@gmail.com

ଜାଣିପାରିଛନ୍ତି । ଦାରୁଣ ରୋଗଗ୍ରସ୍ତ ଥାଇ ବି ସେ ଅଲକ୍ଷ୍ୟରେ ଆମର ଯତ୍ନ ନେଉଛନ୍ତି । ଧନ୍ୟ ଏହି ମହାମାନବ !!!'' ପ୍ରଣାମ ଜଣାଇ ଧୀରେ କକ୍ଷରୁ ପ୍ରସ୍ଥାନ କଲେ । ଶ୍ରୀରାମକୃଷ୍ଣଙ୍କର ମୃଦୁ ଭର୍ତ୍ସନା ନରେନ୍ଦ୍ରଙ୍କ ଭିତରେ ପ୍ରଚଣ୍ଡ ଆଧ୍ୟାତ୍ମିକ ଭଉଁରୀ ସୃଷ୍ଟି କଲା । ସେ ନିଜର ସାଧନା ଓ ତପସ୍ୟାକୁ ତୀବ୍ରତର କଲେ । ସେ ବର୍ତ୍ତମାନ ନିଶ୍ଚିତ ଯେ ଠାକୁର ଆଜି ନୁହେଁ ତ କାଲି ତାଙ୍କ ହାତଧରି ମନୁଷ୍ୟ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟର ଶୀର୍ଷସ୍ଥାନରେ ଉପବେଶନ କରାଇ ଦେବେ । ତାଙ୍କର ଭାବନା ଯେପରି, କାର୍ଯ୍ୟ ବି ସେପରି । କାଶିପୁର ଉଦ୍ୟାନର ଏକ ବୃକ୍ଷ ତଳେ ସେ ଏକଦା ଧ୍ୟାନରେ ହେଲେ ଉପବିଷ୍ଟ । ପ୍ରଖ୍ୟାତ ନାଟ୍ୟକାର ତଥା ପରମଭକ୍ତ ଗିରୀଶ ଘୋଷ ବି ତାଙ୍କ ନିକଟରେ ଧ୍ୟାନରେ ଉପବେଶନ କଲେ । ଗିରୀଶ ବାରମ୍ବାର ନିଜର ମନକୁ ଏକାଗ୍ର କରିବା ପାଇଁ ଚେଷ୍ଟା କରୁଥିଲେ, କିନ୍ତୁ ସଫଳ ହୋଇପାରୁ ନ ଥିଲେ । ସେ ଆଖି ଖୋଲି ନରେନ୍ଦ୍ରଙ୍କୁ ଚାହିଁଲେ । କି ଆଶ୍ଚର୍ଯ୍ୟ ଦୃଶ୍ୟ !! ନରେନ୍ଦ୍ର ଗଭୀର ଧ୍ୟାନମଗ୍ନ ଏବଂ ତାଙ୍କର ସମଗ୍ର ଶରୀର ଅସଂଖ୍ୟ ମଶା ଦ୍ୱାରା ଆବୃତ । ସତେକି ମଶାର କମ୍ବଳଟିଏ ସେ ଘୋଡ଼ି ହୋଇ ବସିଛନ୍ତି !! ଗିରୀଶବାବୁ ଭାବୁଛନ୍ତି - ଗୋଟିଏ ମାତ୍ର ମଶାର ଦଂଶନରେ, ମୁଁ ଏଇଠି ଛାଟିପିଟି ହେଉଛି, ମନକୁ ଏକାଗ୍ର କରିପାରୁନାହିଁ, ସହସ୍ର ମଶାଙ୍କ ଦଂଶନରେ ବି ନରେନ୍ଦ୍ର ଧୀର ଓ ଅଟଳ । ଧନ୍ୟ ନରେନ୍ଦ୍ର, ତୁମକୁ ମୋର ଶତ ସହସ୍ର ପ୍ରଣାମ ।

ଶ୍ରୀରାମକୃଷ୍ଣଙ୍କର ଶାରୀରିକ ଅବସ୍ଥା ଦିନକୁ ଦିନ ଉଦ୍‌ବେଗଜନକ ହେଉଥିବା ସମୟରେ, ମନ ତାଙ୍କର ଉଡ଼ିବୁଲୁଥିଲା ବହୁ ଉର୍ଦ୍ଧ୍ୱରେ, ଶାନ୍ତି ଓ ସନ୍ତୋଷରେ । କିନ୍ତୁ ଭକ୍ତମାନଙ୍କର ଉଦ୍‌ବେଗ ଓ ଦୁଃଖ ସେତେବେଳକୁ ସୀମା ଲଙ୍ଘନ କଲାଣି । ଯୁବଭକ୍ତମାନେ ଗୃହ ତ୍ୟାଗ କରି କାଶିପୁର ଉଦ୍ୟାନ ବାଟିକୁ ଆପଣାର ଗୃହ ବୋଲି ଆବୋରି ନେଲେଣି । ଗୃହୀ ଭକ୍ତଗଣ ବିନା ଦ୍ୱିଧାରେ କାଶୀପୁର ଉଦ୍ୟାନବାଟିର ସମସ୍ତ ଖର୍ଚ୍ଚ ବହନ କରୁଥିଲେ । ସେମାନଙ୍କର ଆଲୋକ ସ୍ତମ୍ଭ ବହୁଶୀଘ୍ର ନିର୍ବାପିତ ହେବେ, ଏହା ଅନୁଭବ କରି ଭୟ ଓ ଆଶଙ୍କାରେ ବାରମ୍ବାର ଶିହରିତ ହେଉଥିଲେ । ଶ୍ରୀରାମକୃଷ୍ଣଙ୍କ ମୁଖରୁ ଶୋଣିତ ନିର୍ଗତ ଏବଂ କଣ୍ଠ ଦେଶରେ ରନ୍ଧ୍ରର ଦୃଶ୍ୟ ସେମାନଙ୍କର ଭୟ ଓ ଆଶଙ୍କାକୁ ଆହୁରି ଅଧିକ କରୁଣମୟ କରିଦେଲା ।

ସବୁଠାରୁ ଆଶ୍ଚର୍ଯ୍ୟର ଘଟଣା ଯେ ଏଭଳି ପୀଡ଼ିତାବସ୍ଥାରେ ବି ସେ ଅତ୍ୟନ୍ତ ପ୍ରଫୁଲ୍ଲ ରହୁଥିଲେ । କାରଣ ଏହିସବୁ ଅବସ୍ଥା ମା'ଙ୍କ ଦ୍ୱାରା ସଂଘଟିତ ବୋଲି ସେ ଜାଣିଥିଲେ । ଯେତେବେଳେ ବ୍ୟାଧିର ଯନ୍ତ୍ରଣା ଉତ୍କଟ ଓ ଅସହ୍ୟ ଅନୁଭୂତ ହେଉଥିଲା, ସେତେବେଳେ ଧୀର ସ୍ୱରରେ କହୁଥିଲେ, ''ଏହି ଦେହ ଓ ଯନ୍ତ୍ରଣା ପରସ୍ପରର ଯତ୍ନ ନିଅନ୍ତୁ, କିନ୍ତୁ ଆରେ ମନ, ତୁ ସର୍ବଦା ଆନନ୍ଦରେ ବୁଡ଼ି ରହିଥା ।'' ଏକଦା ଏକ ରାତ୍ରିରେ ତାଙ୍କର ପରମ ଭକ୍ତ ମାଷ୍ଟର ମହାଶୟ ମହେନ୍ଦ୍ର ଗୁପ୍ତଙ୍କୁ କହିଲେ, ''ମାଷ୍ଟର ମହାଶୟ ! ମୁଁ ଚୁପ୍‌ଚାପ୍ ସବୁତକ ଯନ୍ତ୍ରଣା ସହୁଛି କାହିଁକି ଜାଣିଛ ? କାରଣ ତୁମେମାନେ କାନ୍ଦିବ । ତୁମେମାନେ ଯେତେବେଳେ କହିବ ଯେ ଏଭଳି ଦାରୁଣ ଯନ୍ତ୍ରଣା ଭୋଗିବା ଅପେକ୍ଷା ଶରୀର ତ୍ୟାଗ ଶ୍ରେୟସ୍କର, ସେତେବେଳେ ଦେହାନ୍ତ ହେଇଯିବ ।'' ଅନ୍ୟ କେତେକ ଭକ୍ତଙ୍କୁ ସେ କହୁଥିଲେ, ''ଶରୀର ରହିଲେ, ରୋଗ ହେବ । ଏହା ପ୍ରକୃତିର ନିୟମ । ମୁଁ ଈଶ୍ୱରଙ୍କ ବହୁ ରୂପ ଦର୍ଶନ କରେ, (ନିଜର ଶରୀରକୁ ଇଙ୍ଗିତ କରି) ଏହି ଦେହ ବି ତାଙ୍କର ଗୋଟିଏ ରୂପ ।''

Digitized by srujanika@gmail.com

ମାର୍ଚ୍ଚ ୧୫, ୧୮୮୬ ସକାଳ । ଶ୍ରୀରାମକୃଷ୍ଣ ସାମାନ୍ୟ ସୁସ୍ଥ ଅନୁଭବ କଲେ । ନରେନ୍ଦ୍ର, ରାଖାଲ, ଲାଟୁ, ମହେନ୍ଦ୍ର ଗୁପ୍ତ, ବୁଢ଼ା ଗୋପାଳ ଏବଂ ଅନ୍ୟ କେତେଜଣ ଭକ୍ତ ଠାକୁରଙ୍କ କୋଠରିରେ ବସିଥିଲେ । ଶ୍ରୀରାମକୃଷ୍ଣ ଧୀର କଣ୍ଠରେ ସେମାନଙ୍କ ସହ କଥାବାର୍ତ୍ତା ହେଉଥିଲେ, କେତେବେଳେ ହାତଠାରରେ ସଙ୍କେତ ଦେଉଥିଲେ, କିନ୍ତୁ ଠାକୁରଙ୍କ ପୂର୍ବ ରାତ୍ରିର ଶୋଚନୀୟ ଅବସ୍ଥା ପାଇଁ ଭକ୍ତମାନଙ୍କ ମୁହଁରେ ଟିକିଏ ହସ ବି ନ ଥିଲା । ବିମର୍ଷ ବଦନରେ ସେମାନେ କେବଳ ଶ୍ରୀରାମକୃଷ୍ଣଙ୍କୁ ଚାହିଁଥିଲେ ଏବଂ ତାଙ୍କ ମୁଖ ନିଃସୃତ ବାଣୀ ଶୁଣୁଥିଲେ - ତୁମେ ଜାଣ, ମୁଁ ବର୍ତ୍ତମାନ ଏଇଠି କ'ଣ ଦେଖୁଛି ? ଈଶ୍ୱର ସବୁକିଛି ହୋଇଛନ୍ତି । ମନୁଷ୍ୟ ଏବଂ ଅନ୍ୟାନ୍ୟ ଜୀବ ଚମଡ଼ାରେ ଗଠିତ, ସତେକି ଚମଡ଼ା ବାକ୍ସ । ଈଶ୍ୱର ଏହିସବୁ ଚମଡ଼ା ବାକ୍ସ ଭିତରେ ବିରାଜିତ । କେତେବେଳେ ସେମାନେ ହାତ ହଲାଉଛନ୍ତି, କେତେବେଳେ ଗୋଡ଼ ହଲାଉଛନ୍ତି ତ କେତେବେଳେ ମୁଣ୍ଡ ହଲାଉଛନ୍ତି । ପୂର୍ବରୁ ଥରେ ମୋର ଏଭଳି ଏକ ଦର୍ଶନ ହୋଇଥିଲା । ଘର, ଉଦ୍ୟାନ, ରାସ୍ତା, ମଣିଷ, ଗାଈ ଗୋରୁ, ପଶୁ - ସମସ୍ତେ ଏକ ଉପାଦାନରେ ଗଠିତ - ସତେକି ସେଗୁଡ଼ିକ ମହମରେ ଗଠିତ । ଈଶ୍ୱର ବଳିର ଅର୍ଗଳି, ଘାତକ ଓ ପଶୁ ହୋଇଛନ୍ତି ବୋଲି ମୁଁ ଦେଖିଲି ।

ଏକ ସତ୍ତା ହିଁ ସବୁକିଛି ହୋଇଛନ୍ତି କହି ସେ ଆନନ୍ଦ ସାଗରରେ ବୁଡ଼ିଯାଇ କହି ଉଠିଲେ, ''ଆହାଃ - କି ଦୃଶ୍ୟ !!! ସେ ତତ୍‌କ୍ଷଣାତ୍ ନିଜର ଦେହ ଓ ସଂସାରକୁ ଭୁଲିଯାଇ ସମାଧିରେ ନିମଗ୍ନ ହେଲେ । ଉପସ୍ଥିତ ଭକ୍ତଗଣ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ନରେନ୍ଦ୍ର ଏହି ଅବସ୍ଥାରେ ଖୁବ୍ ବିଚଳିତ ହୋଇପଡ଼ିଲେ । କିୟତ୍ ମୁହୂର୍ତ୍ତପରେ ଶ୍ରୀରାମକୃଷ୍ଣଙ୍କର ଆଂଶିକ ବାହ୍ୟଚେତା ଫେରିଆସିବାରୁ ସେ କହି ଉଠିଲେ, ''ମୋର ଟିକିଏ ବି ଯନ୍ତ୍ରଣା ନାହିଁ । ମୁଁ ସେହି ପୁରାତନ ଆତ୍ମା ।'' ଭକ୍ତ ଲାଟୁଙ୍କ ଉପରେ ତାଙ୍କର ଦୃଷ୍ଟିପଡ଼ିଲା । ସେ ତାଙ୍କୁ ଚାହିଁ କହିଲେ, ''ହେଇ ଦେଖ, ଲାଟୁ କେମିତି ପାପୁଲିରେ ଭରା ଦେଇ ବସିଛି । ମୁଁ ଦେଖୁଛି ଈଶ୍ୱର ନିଜେ ହିଁ ପାପୁଲିରେ ମୁଣ୍ଡ ଥୋଇ ବସିଛନ୍ତି ।''

ଶ୍ରୀରାମକୃଷ୍ଣ ପୁନଶ୍ଚ ଉପସ୍ଥିତ ଭକ୍ତମାନଙ୍କୁ ଅବଲୋକନ କଲେ ଏବଂ ସେମାନଙ୍କର ପ୍ରେମ ପରିଲକ୍ଷିତ କରି ତାଙ୍କ ଭିତରେ କରୁଣାର ଉତ୍ତାଳ ତରଙ୍ଗ ଉଠିଲା । ମମତାମୟୀ ମା ଭଳି ସେ ନରେନ୍ଦ୍ର ଓ ରାଖାଲଙ୍କର ଚିବୁକ ଧରି ସ୍ନେହରେ ଗେହ୍ଲା କଲେ । କିୟତ୍ ସମୟ ଅତିକ୍ରାନ୍ତେ ମହେନ୍ଦ୍ର ମାଷ୍ଟରଙ୍କୁ କହିଲେ, ''ମାଷ୍ଟର ମହାଶୟ, ଆଉ କେତେଦିନ ଯଦି ଏହି ଶରୀର ରହି ଯାଆନ୍ତା, ବହୁ ଲୋକ ଜ୍ଞାନାଲୋକିତ ହୋଇପାରନ୍ତେ । କିନ୍ତୁ ହାୟ... ଏହା କସ୍ମିନକାଳେ ହେବ ନାହିଁ । ଏଥର ଏହି ଦେହ ରହିପାରିବ ନାହିଁ ।'' ସମବେତ ଭକ୍ତଗଣ ଆଉ କ'ଣ ଝରିପଡ଼ିବ ଶ୍ରୀମୁଖରୁ, ତାହା ଶୁଣିବା ପାଇଁ ବ୍ୟଗ୍ର ହୋଇଉଠିଲେ ।

''ଏହା ପ୍ରଭୁଙ୍କର ଇଚ୍ଛା ନୁହେଁ । ଏଥର ଏହି ଦେହ ବେଶିଦିନ ରହିବ ନାହିଁ, କାରଣ ମୋର ଅକପଟତା ଓ ନିର୍ବୋଧତା ଦେଖି ଲୋକେ ଫାଇଦା ଉଠାଇବେ, ତା'ପରେ ମୁଁ ଏଭଳି ଜଣେ ସରଳ ଓ ନିର୍ବୋଧ ମଣିଷ ଯେ ସମସ୍ତଙ୍କୁ କାଳେ ସବୁକିଛି ଦେଇଦେବି । କଳିଯୁଗରେ ମଣିଷ ଧ୍ୟାନ ଓ ଜପର ବିରୋଧୀ ବୋଲି ଦେଖିବ ।'' ରାଖାଲଙ୍କର ଧୈର୍ଯ୍ୟଚ୍ୟୁତ ଘଟିଲା, ସେ

Digitized by srujanika@gmail.com

ଭାବବିହ୍ୱଳିତ ହୋଇ କହିଉଠିଲେ, ''ଠାକୁର, ଆପଣ ଦୟାକରି ଈଶ୍ୱରଙ୍କୁ କୁହନ୍ତୁ ଯେପରି ଆପଣଙ୍କ ଶରୀର ଅଧିକ କାଳ ରହିବ ।''

''ଏହା ଈଶ୍ୱରଙ୍କ ଇଚ୍ଛା ଉପରେ ନିର୍ଭର କରେ ।'' ଶ୍ରୀରାମକୃଷ୍ଣ ସ୍ମିତ ବଦନରେ ଉତ୍ତର ଦେଲେ । ନରେନ୍ଦ୍ରଙ୍କୁ ଏଥର କିଏ ସମ୍ଭାଳେ । ସେ କହି ଉଠିଲେ, ''ଆପଣଙ୍କ ଇଚ୍ଛା ଏବଂ ଈଶ୍ୱରଙ୍କ ଇଚ୍ଛା ଏକ ଓ ଅଭିନ୍ନ ।''

. ନରେନ୍ଦ୍ରଙ୍କର କେଇପଦ କଥା ଶୁଣି ଶ୍ରୀରାମକୃଷ୍ଣ ନୀରବ ରହିଲେ, ତାଙ୍କର ଚାହାଁଣି ସୂଚାଇ ଦେଉଥିଲା ଯେ ସେ କୌଣସି ଗୁରୁତ୍ୱପୂର୍ଣ୍ଣ ଚିନ୍ତାରେ ମଗ୍ନ । କିଛି ସମୟପରେ ଶ୍ରୀରାମକୃଷ୍ଣ କହିଲେ, ''ମୁଁ ଯଦି ବି ଈଶ୍ୱରଙ୍କୁ କୁହେ, ତେବେ କିଛି ଫଳ ଫଳିବ ନାହିଁ । ବର୍ତ୍ତମାନ ମୁଁ ଦେଖୁଛି ଯେ ମୁଁ ଓ ମା ଏକ ହୋଇଯାଇଛୁ... ।'' ଅଧିକ କିଛି ସେ କହିଲେ ନାହିଁ, ସତେକି ସେ ଜାଣିଶୁଣି କହୁ ନାହାନ୍ତି ।

ସମସ୍ତେ ଗ୍ରୀବା ଉତ୍ତୋଳନକରି ଶ୍ରୀରାମକୃଷ୍ଣଙ୍କୁ ଏକ ଲୟରେ ଚାହିଁଥିଲେ, ଆଉ କ'ଣ ନିଃସୃତ ହେବ ଶ୍ରୀମୁଖରୁ । ସମସ୍ତଙ୍କ ପ୍ରତୀକ୍ଷା ଭଙ୍ଗକରି ଶ୍ରୀରାମକୃଷ୍ଣ ନିଜ ଶରୀରକୁ ଠାରି କହିଲେ, ''ଏହି ଦେହରେ ଦୁଇଟି ବ୍ୟକ୍ତି ଅଛନ୍ତି । ଜଣେ ହେଉଛନ୍ତି ଦିବ୍ୟ ଜଗଜ୍ଜନନୀ । (ଟିକିଏ ରହିଯାଇ) ହଁ... ହଁ... ସେହି ମା' । ଏବଂ ଅନ୍ୟ ଜଣକ ତାଙ୍କର ଭକ୍ତ । ଯିଏ ନିଜର ହାତ ଭାଙ୍ଗି ଥିଲେ ଏବଂ ଯିଏ ବର୍ତ୍ତମାନ ଅସୁସ୍ଥ ଅଛନ୍ତି, ସେ ହେଉଛନ୍ତି ଭକ୍ତ ! ତୁମେମାନେ ବୁଝି ପାରୁଛ ତ ?

- ୪ -

*ତ୍ୟାଗ ନିହାତି ଦରକାର । ଗୋଟିଏ ଜିନିଷ ଯଦି ଅନ୍ୟ ଜିନିଷ ଉପରେ ରହିଛି, ଗୋଟିକୁ ଆଣିବାକୁ ହେଲେ, ଅନ୍ୟଟିକୁ ବାହାର କରିବାକୁ ହେବ । ଉପରେ ରହିଥିବା ଜିନିଷକୁ ବାହାର ନ କରି ତଳେ ରହିଥିବା ଜିନିଷକୁ କ'ଣ ତୁମେ ଆଣିପାରିବ ?*

ଉପସ୍ଥିତ ଭକ୍ତଗଣ ନିର୍ବାକ ଓ ସ୍ଥାଣୁ । ସେମାନେ ନିର୍ନିମେଷ ନୟନରେ ତାଙ୍କୁ ଚାହିଁ ଭାବୁଥିଲେ - କିଏ ଏହି ମହାପୁରୁଷ !!! ଏଭଳି ଭାବନାରେ ସମସ୍ତେ ମଗ୍ନ ଯେ, ବାକ୍ୟ କିପରି ସେମାନଙ୍କ ମୁଖରୁ ସ୍ଫୁରିବ ? ଶ୍ରୀରାମକୃଷ୍ଣ ପୁନଶ୍ଚ କହିଉଠିଲେ, ''ହେ ଭଗବାନ ! ଏହିସବୁ କଥା ମୁଁ କାହାକୁ କହିଲେ, ମୋତେ କିଏ ବୁଝିପାରିବ ?'' କିୟଦ୍ ସମୟ ନୀରବ ରହି ପୁଣି କହିଲେ, ''ଈଶ୍ୱର ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୁଅନ୍ତି, ଭକ୍ତଗଣଙ୍କସହ ଧରାଧାମକୁ ଆସନ୍ତି । ଏବଂ ତାଙ୍କ ସହିତ ଭକ୍ତମାନେ ଧରାଧାମରୁ ବିଦାୟ ନିଅନ୍ତି ।''

ଏଭଳି ଚମତ୍କାର ମୁଖନିଃସୃତ ବାଣୀ ରାଖାଲଙ୍କ ଭିତରେ ଆଶା ସଞ୍ଚାର କଲା । ସେ ତତ୍‌କ୍ଷଣାତ୍ କହି ଉଠିଲେ, ''ସେଇଥିପାଇଁ ତ ଆମେ ଆପଣଙ୍କ ପାଖରେ ନିବେଦନ କରୁଛୁ ଯେ ଆମକୁ ଛାଡ଼ି ଆପଣ ଯାଆନ୍ତୁ ନାହିଁ ।''

Digitized by srujanika@gmail.com

ଶ୍ରୀରାମକୃଷ୍ଣଙ୍କ ଅଧରରେ ସ୍ମିତହାସ୍ୟ ଲହରିତ ହେଲା । ସେ କହିଲେ, ''ଦଳେ ବାଉଲଙ୍କର ହଠାତ୍ ଆବିର୍ଭାବ ଘଟେ । ସେମାନେ ନାଚନ୍ତି, ଗାନ କରନ୍ତି, ଯେମିତି ସେମାନେ ଆସିଥାନ୍ତି, ସେମାନେ ସେଭଳି ହଠାତ୍ ଚାଲିଯାଆନ୍ତି । ସେମାନେ ଆସନ୍ତି ଏବଂ ଚାଲିଯାଆନ୍ତି, କେହି ସେମାନଙ୍କୁ ଚିହ୍ନନ୍ତି ନାହିଁ ।''

ସବୁ ଭକ୍ତ ହସି ଉଠିଲେ, ଶ୍ରୀରାମକୃଷ୍ଣ ବି । ପୁନଶ୍ଚ କିଛି ସମୟ ଅତିକ୍ରାନ୍ତେ ଠାକୁର କହିଲେ, ''ଦେହ ଧାରଣ କଲେ, ଯନ୍ତ୍ରଣା ଭୋଗ ଅବସମ୍ଭାବୀ । ରୋଗ ହେବ ହିଁ ହେବ । ବହୁ ସମୟରେ ମୁଁ ନିଜକୁ ନିଜେ କହିଥାଏ ''ମୁଁ କ'ଣ ପୁନଶ୍ଚ ସଂସାରକୁ ଫେରିବି ନାହିଁ !! କିନ୍ତୁ ସେଥିରେ ବି କିଛି ରହିଛି । ବାହାରେ ସ୍ୱାଦିଷ୍ଟ ଭୋଜି ଖାଇବା ପରେ, ଘର ତିଆରି ଖାଦ୍ୟ ସୁଆଦିଆ ଲାଗେ ନାହିଁ । ତା'ବାଦେ, ଏକ ମାନବ ଶରୀର ଧାରଣ କେବଳ ଭକ୍ତଙ୍କ ପାଇଁ ଉଦ୍ଦିଷ୍ଟ ।''

ଶ୍ରୀରାମକୃଷ୍ଣ ଇତ୍ୟବସରରେ ନରେନ୍ଦ୍ରଙ୍କୁ ମମତାଭରା ଆଖିରେ ଚାହିଁଲେ । ନରେନ୍ଦ୍ରଙ୍କ ଉପରେ ନିଜର ଦୃଷ୍ଟିରଖି ସସ୍ନେହେ କହିଲେ, ''ଜଣେ ଚଣ୍ଡାଳ କାନ୍ଧରେ ମାଂସର ଭାର ବହନ କରି ଯାଉଥିଲା । ସେହି ସମୟରେ ଶଙ୍କରାଚାର୍ଯ୍ୟ ଗଙ୍ଗାରୁ ସ୍ନାନ ସମାପନ କରି ସେହି ବାଟରେ ଯାଉଥିଲେ । ହଠାତ୍ ଚଣ୍ଡାଳ ତାଙ୍କୁ ସ୍ପର୍ଶ କଲା । ଶଙ୍କରାଚାର୍ଯ୍ୟ କଠୋର ଭାଷାରେ ଚଣ୍ଡାଳକୁ ତିରସ୍କାର କରି କହିଲେ, ''କ'ଣ ହେଲା, ତୁମେ ମୋତେ ଛୁଇଁ ଦେଲ ?'' ଚଣ୍ଡାଳ କହିଲା, ''ମହାଶୟ, ମୁଁ ଆପଣଙ୍କୁ ଛୁଇଁ ନାହିଁ କିମ୍ବା ଆପଣ ବି ମୋତେ ଛୁଇଁ ନାହାନ୍ତି । ମୋ ସହ ତର୍କ କରନ୍ତୁ; ଆପଣ କ'ଣ ଶରୀର ନା ମନ ନା ବୁଦ୍ଧି ? ବିଶ୍ଳେଷଣ କରି କୁହନ୍ତୁ ଆପଣ କ'ଣ ? ଆପଣ ଶୁଦ୍ଧ ଆତ୍ମା, ଅନାସକ୍ତ ଓ ମୁକ୍ତ, ସତ୍ତ୍ୱ, ରଜ, ତମ ଭଳି ତ୍ରିଗୁଣରେ ଆପଣ ଆବଦ୍ଧ ନୁହନ୍ତି । ବ୍ରହ୍ମ କିଭଳି ବସ୍ତୁ ? ଏହା ପବନ ସଦୃଶ । ପବନ ଉଭୟ ସୁଗନ୍ଧ ଓ ଦୁର୍ଗନ୍ଧକୁ ବହନ କରେ, କିନ୍ତୁ କୌଣସିରେ ପ୍ରଭାବିତ ହୁଏ ନାହିଁ ।''

ନରେନ୍ଦ୍ରଙ୍କ ମନ ଓ ଚେତନା ହେଉଥିଲା ଉର୍ଦ୍ଧ୍ୱଗାମୀ । ସେ କହିଲେ, ''ଆଜ୍ଞା ହଁ ।'' ପୁନଶ୍ଚ ଶ୍ରୀରାମକୃଷ୍ଣ କହିଲେ, ''ଗୁଣ ଓ ମାୟାରୁ ସେ ଉର୍ଦ୍ଧ୍ୱରେ । ଉଭୟ ଜ୍ଞାନର ମାୟା ଓ ଅଜ୍ଞାନର ମାୟା ଉର୍ଦ୍ଧ୍ୱରେ । କାମିନୀ ଓ କାଞ୍ଚନ ହିଁ ଅଜ୍ଞାନର ମାୟା । ଜ୍ଞାନ, ତ୍ୟାଗ, ଭକ୍ତି ଓ ଅନ୍ୟ ଆଧ୍ୟାତ୍ମିକ ଗୁଣ ଜ୍ଞାନର ମାୟା । ଶଙ୍କରାଚାର୍ଯ୍ୟ ଜ୍ଞାନର ମାୟା ରଖିଥିଲେ; ଏବଂ ତୁମେ ଓ ଅନ୍ୟମାନେ ଯେଉଁ ଶ୍ରଦ୍ଧା ମୋ ଉପରେ ରଖିଛ, ତାହା ହିଁ ଜ୍ଞାନର ମାୟା । ଜ୍ଞାନର ମାୟାକୁ ଧୀରେ ଧୀରେ ଅନୁସରଣ କଲେ, ବ୍ରହ୍ମଜ୍ଞାନ ଉଦୟ ହେବ । ସିଡ଼ିର ପାହାଚଗୁଡ଼ିକ ଜ୍ଞାନର ମାୟା ସଦୃଶ । ତା'ପରେ ଛାତ । ଜଣେ ଛାତରେ ପହଞ୍ଚିଗଲେ, ସିଡ଼ିର ପାହାଚ ମାଧ୍ୟମରେ ଉପର ଓ ତଳକୁ ଯା'ଆସ କରିପାରିବ । ଅର୍ଥାତ୍, ଈଶ୍ୱରୋପଲବ୍ଧି ପରେ ବି ଜଣେ ଜ୍ଞାନର ମାୟାକୁ ଧାରଣ କରିପାରିବ । ଅନ୍ୟମାନଙ୍କୁ ଶିକ୍ଷାପ୍ରଦାନ କରିବା ପାଇଁ, ଦିବ୍ୟ ଆନନ୍ଦ ନିଜେ ଚାଖିବା ପାଇଁ ଏବଂ ଭକ୍ତଙ୍କ ସହ କ୍ରୀଡ଼ା କରିବା ପାଇଁ ସେମାନେ ଏହି ଜ୍ଞାନର ମାୟା ରଖିଥାନ୍ତି ।''

Digitized by srujanika@gmail.com

ନରେନ୍ଦ୍ର କହିଲେ, ''ଠାକୁର, ମୁଁ ଯେତେବେଳେ ତ୍ୟାଗ ସମ୍ବନ୍ଧରେ କହେ, କେତେକ ଲୋକ ମୋ ଉପରେ ରାଗିଯା'ନ୍ତି ।

ଶ୍ରୀରାମକଷ୍ଣ କହିଲେ, ''(ନିଜ ଅଙ୍ଗକୁ ଦେଖାଇ) ତ୍ୟାଗ ନିହାତି ଦରକାର । ଗୋଟିଏ ଜିନିଷ ଯଦି ଅନ୍ୟ ଜିନିଷ ଉପରେ ରହିଛି, ଗୋଟିଏକୁ ଆଣିବାକୁ ହେଲେ, ଅନ୍ୟଟିକୁ ବାହାର କରିବାକୁ ହେବ । ଉପରେ ରହିଥିବା ଜିନିଷକୁ ବାହାର ନ କରି ତଳେ ରହିଥିବା ଜିନିଷକୁ କ'ଣ ତୁମେ ଆଣିପାରିବ ?

ନରେନ୍ଦ୍ର - ''ଆଜ୍ଞା, ଏକଦମ୍ ସତ କଥା ।

ଶ୍ରୀରାମକୃଷ୍ଣ - ''ମୁଁ ବର୍ତ୍ତମାନ ତାହା କହି ନ ଥିଲି : ଯେତେବେଳେ ଜଣେ ଦେଖେ ଯେ ଈଶ୍ୱର ହିଁ କେବଳ ସବୁ ବସ୍ତୁରେ ବିରାଜିତ, ସେତେବେଳେ ସେ ଅନ୍ୟ କିଛି ଦେଖିପାରିବ କି ? ତେବେ ସେ କ'ଣ ସଂସାର ଭଳି ବସ୍ତୁ ଦେଖିପାରିବ ?

ଶ୍ରୀରାମକୃଷ୍ଣ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ନରେନ୍ଦ୍ରଙ୍କୁ ଚାହିଁଲେ । ଭକ୍ତମାନଙ୍କୁ ପୁନଶ୍ଚ ଚାହିଁ ସେ କହିଉଠିଲେ, ''ମହାନ'' । ନରେନ୍ଦ୍ରଙ୍କ ମୁଖମଣ୍ଡଳ ହେଲା ଆଲୋକିତ । ସେ ହସ ହସ ବଦନରେ କହିଲେ, ମହାଶୟ, ମହାନ୍ କ'ଣ ।'' ଶ୍ରୀରାମକୃଷ୍ଣ କହିଲେ, ''ମୁଁ ଦେଖିପାରୁଛି - ଏକ ମହାନ୍ ତ୍ୟାଗ ନିମନ୍ତେ ପ୍ରସ୍ତୁତି ଚାଲିଛି ।''

ନରେନ୍ଦ୍ର ଏବଂ ଅନ୍ୟ ଭକ୍ତଗଣ ନୀରବରେ ଶ୍ରୀରାମକୃଷ୍ଣଙ୍କ ଦୀପ୍ତିମନ୍ତ ମୁଖମଣ୍ଡଳକୁ ନିର୍ବାକ ଚିତ୍ତରେ କେବଳ ଚାହିଁଥିଲେ । ରାଖାଲ ହଠାତ୍ କହି ଉଠିଲେ, ''ଠାକୁର, ନରେନ୍ଦ୍ର ବର୍ତ୍ତମାନ ଆପଣଙ୍କୁ ବେଶ୍ ଭଲ ଭାବରେ ବୁଝିପାରିଛି ।''

ଶ୍ରୀରାମକୃଷ୍ଣ ହସିଲେ - ହଁ, ହଁ ତାହା ଠିକ୍ । ମୁଁ ଦେଖୁଛି ଯେ ଅନ୍ୟମାନେ ବି ବୁଝିବାକୁ ଆରମ୍ଭ କଲେଣି... ।'' କିୟତ୍ ମୁହୂର୍ତ୍ତ ଅତିକ୍ରାନ୍ତେ ସେ ପୁନଶ୍ଚ କହିଲେ, ''ମୁଁ ଦେଖୁଛି ଯେ ସମସ୍ତ ବସ୍ତୁ - ପ୍ରତ୍ୟେକ ବସ୍ତୁ ଯାହା ବିରାଜମାନ କରୁଛି - ଏଠାରୁ ଆସିଛନ୍ତି ।'' ନରେନ୍ଦ୍ରଙ୍କୁ ଚାହିଁ ସେ କହିଲେ, ''ତୁମେ କ'ଣ ବୁଝିଛ ନରେନ୍ ।'' ନରେନ୍ଦ୍ର ତତ୍‌କ୍ଷଣାତ୍ କହିଉଠିଲେ, ''ସମସ୍ତ ସୃଷ୍ଟ ବସ୍ତୁ ଆପଣଙ୍କଠାରୁ ଆସିଛି ?'' ଅବ୍ୟକ୍ତ ଆନନ୍ଦରେ ଠାକୁରଙ୍କ ମୁଖମଣ୍ଡଳ ହେଲା ଆଲୋକିତ । ସତେକି ନରେନ୍ଦ୍ର ପ୍ରବେଶ କରିଛନ୍ତି ଜ୍ଞାନାପାରାବାରରେ । ଉଲ୍ଲସିତ ହୋଇ ସେ ରାଖାଲଙ୍କୁ ଚାହିଁ କହି ଉଠିଲେ, ''ଆରେ ରାଖାଲ, ନରେନ୍ କ'ଣ କହିଲା, ତୁ ବୁଝିଲୁ ତ ?

ଉପରୋକ୍ତ ଆଲୋଚନା ବିଭିନ୍ନ ମାର୍ଗରେ ନରେନ୍ଦ୍ରଙ୍କୁ ଆଲୋକିତ କଲା । ଈଶ୍ୱରଙ୍କର ଅସ୍ତିତ୍ୱ, ସ୍ୱଭାବ ଓ ସ୍ୱରୂପ ଏବଂ ଅବତାର ସଦୃଶ ବିଷୟବସ୍ତୁ ଉପରେ ରହିଥିବା ତାଙ୍କର ସଂଶୟକୁ ନେଇ ସେ ଶ୍ରୀରାମକୃଷ୍ଣଙ୍କ ନିକଟକୁ ଆସିଥିଲେ । ଶ୍ରୀରାମକୃଷ୍ଣ ଜ୍ଞାନ ଓ ବୁଦ୍ଧି ମାଧ୍ୟମରେ ନରେନ୍ଦ୍ରଙ୍କୁ ପ୍ରଥମେ ବୁଝାଇବାକୁ ଚେଷ୍ଟା କଲେ । ତେଣୁ ବୁଦ୍ଧି ଓ ତର୍କ ଉପରେ ପ୍ରତିଷ୍ଠିତ ଏହି ଶିକ୍ଷାକୁ ନରେନ୍ଦ୍ର ଶୀଘ୍ର ଗ୍ରହଣ କରିନେଲେ; କିନ୍ତୁ ନାମ ଓ ରୂପହୀନ ବ୍ରହ୍ମଙ୍କର ସାକ୍ଷାତ୍ ଦର୍ଶନ

Digitized by srujanika@gmail.com

ନିମନ୍ତେ ତାଙ୍କର ମନ ବ୍ୟାକୁଳିତ । ସମାଧିରେ ଆତ୍ମୋପଲବ୍ଧି କରିବାକୁ ସେ ସଦା ଚେଷ୍ଟିତ । ଶ୍ରୀରାମକୃଷ୍ଣ ସେହି ଉଚ୍ଚତମ ଭୂମିକୁ ନେଇଯିବା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି - ସେହି ଉଚ୍ଚତମ ଭୂମି ଏଭଳି ଏକ ଉପଲବ୍ଧି ଯେଉଁଠି ବ୍ରହ୍ମ କେବଳ ଜଗତାତୀତ ନୁହନ୍ତି ବରଂ ଜଗତ ଭିତରେ ଅନ୍ତର୍ନିହିତ ଓ ସର୍ବବ୍ୟାପୀ, ଜଗତ ହି ପରମସତ୍ୟର ପ୍ରକାଶନ ମାତ୍ର; ପୂର୍ଣ୍ଣତାର ଏକ ପର୍ଯ୍ୟାୟ ହେଉଛି ଆପେକ୍ଷିକ ଜଗତ । ଉଚ୍ଚତମ ଆତ୍ମୋପଲବ୍ଧିର ମାନବ ଜଗତରୁ ପୂର୍ଣ୍ଣବ୍ରହ୍ମ ପର୍ଯ୍ୟନ୍ତ ଅନାୟସରେ ଅତିକ୍ରମ କରିପାରେ । କେବଳ ସେତିକି ନୁହେଁ, ବ୍ରହ୍ମରୁ ଜଗତକୁ ମଧ୍ୟ ସହଜରେ ପ୍ରତ୍ୟାବର୍ତ୍ତନ କରିବାର ସାମର୍ଥ୍ୟ ତାଙ୍କ ପାଖରେ ରହିଥାଏ ।

ନରେନ୍ଦ୍ର ବର୍ତ୍ତମାନ ହୃଦୟଙ୍ଗମ କଲେଣି - ପରମସତ୍ୟଙ୍କ ନିମନ୍ତେ ମାନବ ଶରୀର ଧାରଣ କରିବା ବି ସମ୍ଭବ; ଜଗତରେ ଲୀଳା କରି ପୁନଶ୍ଚ ଜଗତାତୀତ ହୋଇ ପୂର୍ଣ୍ଣତାରେ ମିଶିଯିବା ବି ତାଙ୍କ ପାଇଁ ସମ୍ଭବ । ବର୍ତ୍ତମାନ ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କୁ ଏକ ନୂତନ ଦୃଷ୍ଟିକୋଣରେ ଦେଖିଲେ ଭକ୍ତି ଓ ଜ୍ଞାନ ଉଭୟ ପଥ ସେହି ପରମ ସତ୍ୟ ଅଭିମୁଖେ ମନୁଷ୍ୟକୁ ନେଇ ଯାଇପାରିବ; ପରମସତ୍ୟ ଉପଲବ୍ଧିର ସମ୍ପୂର୍ଣ୍ଣ ସମାପନ ହେଉଛି ପ୍ରେମ ।



Digitized by srujanika@gmail.com

॥ ଏଗାର ॥

# ଅନନ୍ତ ଶାନ୍ତ ମହାପାରାବାରରେ ନରେନ୍ଦ୍ରଙ୍କର ଅବଗାହନ - ଶ୍ରୀରାମକୃଷ୍ଣ ପରମହଂସଙ୍କର ମହାପ୍ରୟାଣ

୧୮୮୬ ଏପ୍ରିଲ୍ ମାସ । ନରେନ୍ଦ୍ର ସାଙ୍ଗମାନଙ୍କ ସହ ମହାକାରୁଣିକ ଜ୍ଞାନାଲୋକିତ ତଥାଗତ ବୁଦ୍ଧଙ୍କ ସମ୍ବନ୍ଧରେ କାଶିପୁର ଉଦ୍ୟାନବାଟିରେ ଆଲୋଚନା କରୁଥିଲେ । ଅଶ୍ୱତ୍ଥ ବୃକ୍ଷ ତଳେ ଆସୀନ ହୋଇ ବୁଦ୍ଧ ଶପଥ ନେଲେ - ଏହି ପଦ୍ମାସନରେ ଉପବିଷ୍ଟ ହୋଇ ମୋର ଦେହ ପଛେ ଶୁଷ୍କ ହୋଇଯାଉ, ମାଂସ ହାଡ଼ ମିଳେଇ ଯାଉ ଏବଂ ମୋର ପ୍ରାଣ ପଛେ ଉଡ଼ିଯାଉ, ତଥାପି ନିର୍ବାଣ ପ୍ରାପ୍ତି ନ ହେବା ପର୍ଯ୍ୟନ୍ତ ମୁଁ ଏହି ଆସନରୁ ଗାତ୍ରୋତ୍ଥାନ କରିବି ନାହିଁ।'' ବୁଦ୍ଧଙ୍କର ଏତାଦୃଶ ସମାଧି ଅବସ୍ଥାର ରୂପ ଓ ନିର୍ବାଣ ପ୍ରାପ୍ତି ପୂର୍ବରୁ ଦୃଢ଼ ସଂକଳ୍ପ ବୁଦ୍ଧଗୟା ଦର୍ଶନ ନିମନ୍ତେ ନରେନ୍ଦ୍ରଙ୍କ ମନ ଓ ପ୍ରାଣରେ ପ୍ରେରଣା ଭରିଦେଲା । ଗୁରୁଭାଇ ତାରକ ଓ କାଳୀଙ୍କୁ ସାଙ୍ଗରେ ନେଇ ସେ ବୁଦ୍ଧଗୟା ଯାତ୍ରା କରିବେ । ଉଦ୍ଦେଶ୍ୟ ଥିଲା ଯେ ବୁଦ୍ଧଗୟାସ୍ଥିତ ଅଶ୍ୱତ୍ଥ ବୃକ୍ଷ ତଳେ ଯେଉଁଠି ତଥାଗତ ଏକଦା ଉପବିଷ୍ଟ ହୋଇ ଜ୍ଞାନପ୍ରାପ୍ତି କରିଥିଲେ, ସେହି ବୋଧି-ବୃକ୍ଷ ତଳେ ସେ ଉପବେଶନ କରି ଧ୍ୟାନାଭ୍ୟାସ କରିବେ ।

ବୁଦ୍ଧଗୟାରେ ଉପନୀତ ହେଲାରୁ, ସେଠିକାର ନିର୍ଜନତା ଏବଂ ତଥାଗତଙ୍କର ସାକ୍ଷ୍ୟ ବହନ କରୁଥିବା ପରିବେଶ ନରେନ୍ଦ୍ରଙ୍କ ମନ ଓ ହୃଦୟରେ ସଂସାର ତ୍ୟାଗ କରିବାର ଦୁର୍ବାର ଇଚ୍ଛା ଲହରିତ ହେଲା । ପ୍ରତିଦିନ ବୋଧିବୃକ୍ଷର ଛାୟାତଳେ ନରେନ୍ଦ୍ର ତାରକ ଓ କାଳୀଙ୍କ ସହ ଉପବେଶନ କରି କେବଳ ଧ୍ୟାନାଭ୍ୟାସ କରିଲେ ନାହିଁ ବରଂ ତଥାଗତଙ୍କର ଅଭୂତପୂର୍ବ ତ୍ୟାଗ ଓ ବୈରାଗ୍ୟ ସମ୍ବନ୍ଧରେ ଆଲୋଚନା କରି ଆଶ୍ଚର୍ଯ୍ୟରେ ଖାଲି ଶିହରିତ ହେଲେ । ଏଠାରେ ଏକ ରାତ୍ରରେ ତିନିଜଣ ବନ୍ଧୁ ବୋଧିଦ୍ରୁମ ତଳେ ଆସୀନ ଥିଲେ । ରାତ୍ରିର ପ୍ରଶାନ୍ତ ପରିବେଶ ଓ ତଥାଗତଙ୍କ ହୃଦୟସ୍ପର୍ଶୀ ଜୀବନ ନରେନ୍ଦ୍ରଙ୍କ ମନକୁ ଗଭୀରତା ଅଭିମୁଖେ ପଥପ୍ରଦର୍ଶନ କଲା । ନରେନ୍ଦ୍ର ହଠାତ୍ ତାରକଙ୍କ କାନ୍ଧରେ ହାତରଖି ଭୋ ଭୋ କାନ୍ଦି ଉଠିଲେ । ଚକ୍ଷୁରୁ ବହୁଥିଲା ଅବିଶ୍ରାନ୍ତ ଲୋତକ ଧାରା । ତାରକ ବିସ୍ମୟାଭୂତ ହୋଇ କହିଲେ, ''ନରେନ୍, ତୁମେ ଏଭଳି କାନ୍ଦୁଛ କାହିଁକି ? ନରେନ୍ଦ୍ର ଅଶ୍ରୁ ବିଗଳିତ କଣ୍ଠରେ ଉତ୍ତର ଦେଲେ, ''ଯେତେବେଳେ ମୁଁ ଧ୍ୟାନମଗ୍ନ ହେବାକୁ ଆରମ୍ଭ କଲି, ତଥାଗତ ବୁଦ୍ଧଙ୍କର ମହାନ ଚରିତ୍ର, ଅପାର କରୁଣା, ମାନବିକ ପ୍ରେମ ଓ ଶିକ୍ଷା ଏବଂ

Digitized by srujanika@gmail.com

ବୌଦ୍ଧଧର୍ମରେ ସମଗ୍ର ଭାରତବର୍ଷ ଦୀକ୍ଷିତ ହେବାର ଇତିହାସ ମୋ ସମ୍ମୁଖରେ ଏଭଳି ତୀବ୍ର ଭାବରେ ଉଦ୍‌ଭାସିତ ହେଲା ଯେ, ମୁଁ ନିଜକୁ ସମ୍ଭାଳି ନ ପାରି କାନ୍ଦି ଉଠିଲି ।''

ଶ୍ରୀରାମକୃଷ୍ଣ ଜାଣିଛନ୍ତି ଯେ ନରେନ୍ ନିଜର ସାଥୀ କାଳୀ ଓ ତାରକ ସହିତ ବୁଦ୍ଧଗୟା ଚାଲି ଯାଇଛନ୍ତି, କିନ୍ତୁ ନରେନ୍ଦ୍ରଙ୍କର ଏହି ଭ୍ରମଣ ତାଙ୍କୁ ଆଦୌ ଆଶ୍ଚର୍ଯ୍ୟାନ୍ୱିତ କଲାନାହିଁ । କାରଣ ନରେନ୍ଦ୍ରଙ୍କର ବୁଦ୍ଧ ସ୍ୱଭାବ ଏବଂ ନରେନ୍ଦ୍ର ନିଶ୍ଚିତ ଭାବେ ତାଙ୍କ ନିକଟକୁ ଯଥାଶୀଘ୍ର ପ୍ରତ୍ୟାବର୍ତ୍ତନ କରିବେ । ଅନ୍ୟପକ୍ଷରେ କାଶିପୁର ଉଦ୍ୟାନବାଟିରେ ସେବାରତ ଅନ୍ୟ ବନ୍ଧୁମାନେ ନରେନ୍ଦ୍ରଙ୍କ ଅବର୍ତ୍ତମାନର କଟୁତା ସହି ପାରିଲେ ନାହିଁ । ନରେନ୍ଦ୍ର ଥିଲେ ସେମାନଙ୍କର ମାର୍ଗଦର୍ଶକ ଓ ନୟନ ପିତୁଳା । ସେମାନେ ନିଜର ଆରାଧ୍ୟ ଗୁରୁ ଶ୍ରୀରାମକୃଷ୍ଣଙ୍କ ନିକଟରେ ନରେନ୍ଦ୍ରଙ୍କର ଶୀଘ୍ର ପ୍ରତ୍ୟାବର୍ତ୍ତନ ନିମନ୍ତେ ଅଳି କଲେ । ସେ ବୁଝିଗଲେ ସେମାନଙ୍କ ହୃଦୟରେ ଉଠୁଥିବା ବିଚ୍ଛେଦର କରୁଣ ତୀବ୍ରତା । ଶ୍ରୀକୃଷ୍ଣଙ୍କ ବିନା ଗୋପୀଗଣ ବିରହ ଯନ୍ତ୍ରଣାରେ ଘାରି ହେଲା ଭଳି, ଗୁରୁଭାଇମାନେ ନରେନ୍ଦ୍ରଙ୍କୁ ଫେରାଇ ଆଣିବା ପାଇଁ ଜିଦ୍ ଧରି ବସିଲେ । ଯୁବଭକ୍ତମାନଙ୍କ ମନର ବେଦନା ଓ ବିରହ ସେ ବୁଝିପାରିଲେ । ବହୁ ଦୂରରେ ରହିବି ନରେନ୍ଦ୍ରଙ୍କର କାର୍ଯ୍ୟାବଳୀ ସେ ସ୍ୱୟଂ ଦିବ୍ୟ ଦର୍ଶନରେ ଦେଖିପାରୁଥିଲେ । ତଥାଗତ ବୁଦ୍ଧଙ୍କର ଧ୍ୟାନମଗ୍ନ ଚିତ୍ର ଦେଖି କାଳେ ନରେନ୍ଦ୍ର ଗଭୀର ସମାଧିରେ ମଗ୍ନ ହୋଇଯିବ ଭାବି ଶ୍ରୀରାମକୃଷ୍ଣ ସମସ୍ତଙ୍କ ସମ୍ମୁଖରେ ଗୋଲ ମୁଣ୍ଡୁଳାଟିଏ ଆଙ୍କି ଦେଇ କହିଲେ, ''ସେ ଆଉ ବେଶିଦୂର ଯାଇ ପାରିବନି ।'' ସତକୁ ସତ କିୟତ ଦିବସ ଅତିକ୍ରାନ୍ତେ, ନରେନ୍ଦ୍ର କାଶିପୁର ଉଦ୍ୟାନକୁ ଲେଉଟି ଆସିଲେ । ବଡ଼ ବିଚିତ୍ର ଘଟଣା । ତାଙ୍କୁ ସପ୍ତର୍ଷିମଣ୍ଡଳରୁ ନେଇ ଆସିଛନ୍ତି ବୋଲି ତାଙ୍କୁ ସେ ନିରନ୍ତର ଜଗିଛନ୍ତି । ନରେନ୍ଦ୍ରଙ୍କର ଚାଲିଚଳନ ଏବଂ ଜୀବନ ନିର୍ବାହକୁ, ପ୍ରତିମୁହୂର୍ତ୍ତରେ କୁନି କଅଁଳା ବାଛୁରିକୁ ମା ଗାଈ ଜଗିଲା ଭଳି, ଅତି ଯତ୍ନ ଓ ସତର୍କତା ସହ ଲକ୍ଷ୍ୟ ରଖିଛନ୍ତି ଶ୍ରୀରାମକୃଷ୍ଣ ।

- ୧ -

*ବୁଦ୍ଧଗୟାରୁ ପ୍ରତ୍ୟାବର୍ତ୍ତନ କରି ନରେନ୍ଦ୍ର ବୌଦ୍ଧଦର୍ଶନ ଉପରେ ଶ୍ରୀରାମକୃଷ୍ଣଙ୍କ ସହ ଆଲୋଚନା କଲେ । ''ବୁଦ୍ଧର ଅର୍ଥ କ'ଣ ତୁମେ ଜାଣ ?'' ବୋଧ ବା ଶୁଦ୍ଧ ଚୈତନ୍ୟ ସହ 'ଏକ ହେବାକୁ' ବୁଦ୍ଧ କୁହାଯାଏ ।*

ଏପ୍ରିଲ ୧୮୮୬, ୯ ତାରିଖ । ଶ୍ରୀରାମକୃଷ୍ଣ କାଶିପୁର ଉଦ୍ୟାନବାଟିରେ, ଉପର ତାଲାରେ, ଏକ ବଡ଼ କୋଠରିରେ, ନିଜ ଶଯ୍ୟାରେ ବସିଥା'ନ୍ତି । ପାଖରେ ବସିଥିଲେ ମାଷ୍ଟର ମହାଶୟ ଓ ଲାଟୁ ମହାଶୟ । କିଛି ସମୟପରେ ନରେନ୍ଦ୍ର, ଶଶୀ, ରାଖାଲ ଓ ଅନ୍ୟ ଭକ୍ତମାନେ ସେଠାରେ କିୟତ ସମୟ ବ୍ୟବଧାନରେ ପହଞ୍ଚିଲେ । ନିଜର ପାଦ ଘଷି ଦେବାପାଇଁ ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କୁ କହିଲେ । ତତ୍‌ପଶ୍ଚାତେ ସେ ମାଷ୍ଟର ମହାଶୟଙ୍କ ଆଡ଼କୁ ହସି କହିଲେ, ''ନରେନ୍ ବୁଦ୍ଧଗୟା ଯାଇଥିଲା ।'' ମାଷ୍ଟର ମହାଶୟଙ୍କୁ ଆଉ କିଏ ସମ୍ଭାଳେ ! ତତ୍ତ୍ୱଜ୍ଞାନରେ ପରିପୂର୍ଣ୍ଣ ମଣିଷଟିଏ

Digitized by srujanika@gmail.com

ସେ । ନରେନ୍ଦ୍ରଙ୍କ ସହ ତତ୍ତ୍ୱଜ୍ଞାନ ସମ୍ବନ୍ଧିତ ଆଲୋଚନାକୁ ସେ ଯେତେ ଉପଭୋଗ ନ କରନ୍ତି, ତା'ଠୁଁ ବେଶି ଉପଭୋଗ କରନ୍ତି ସ୍ୱୟଂ ଶ୍ରୀରାମକୃଷ୍ଣ । ତେଣୁ ସେ ନରେନ୍ଦ୍ରଙ୍କୁ ପ୍ରଶ୍ନ ଛଳରେ ପଚାରିଲେ, ''ବୁଦ୍ଧଙ୍କର ଦର୍ଶନ ଓ ସିଦ୍ଧାନ୍ତ କ'ଣ ?

ନରେନ୍ଦ୍ର କହିଲେ, ''ନିଜର ଆଧ୍ୟାତ୍ମିକ ସାଧନାଲବ୍ଧ ସତ୍ୟ ବୁଦ୍ଧ ଭାଷାରେ ବର୍ଣ୍ଣନା କରି ପାରିନାହାନ୍ତି, ତେଣୁ ଲୋକେ କୁହନ୍ତି ଯେ ସେ ଜଣେ ନିରୀଶ୍ୱରବାଦୀ ବା ନାସ୍ତିକ ।'' ଶ୍ରୀରାମକୃଷ୍ଣ ତତ୍‌କ୍ଷଣାତ୍ କହିଉଠିଲେ, ''ସେ କାହିଁକି ନାସ୍ତିକ ହେବେ ? ସେ ନାସ୍ତିକ ନ ଥିଲେ । ସେ କେବଳ ଆତ୍ମୋପଲବ୍ଧି ଭାଷାରେ ବର୍ଣ୍ଣନା କରିପାରିନାହାନ୍ତି । ବୁଦ୍ଧର ଅର୍ଥ କ'ଣ ତୁମେ ଜାଣ ? ବୋଧ ବା ଶୁଦ୍ଧ ଚୈତନ୍ୟ ସହ 'ଏକହେବା'କୁ ବୁଦ୍ଧ କୁହାଯାଏ ! ଅର୍ଥାତ୍ ନିଜେ ଜଣେ ଶୁଦ୍ଧ ଚୈତନ୍ୟ ହୋଇଯିବ ।'' ନରେନ୍ଦ୍ର କହିଲେ, ''ହଁ ଆଜ୍ଞା । ତିନି ଶ୍ରେଣୀର ବୁଦ୍ଧ ଅଛନ୍ତି - ବୁଦ୍ଧ, ଅର୍ହତ ଓ ବୋଧିସତ୍ତ୍ୱ ।''

''ଏହା ମଧ୍ୟ ଭଗବାନଙ୍କର ଲୀଳା, ଭଗବାନଙ୍କର ଏହା ଏକ ନୂତନ ଲୀଳା । ବୁଦ୍ଧଙ୍କୁ କାହିଁକି ନାସ୍ତିକ କୁହାଯିବ ? ଯେତେବେଳେ ଜଣେ ବ୍ୟକ୍ତି ନିଜର ବାସ୍ତବ ସ୍ୱରୂପକୁ ଉପଲବ୍ଧି କରେ, ସେତେବେଳେ ସେ ଏଭଳି ଏକ ଅବସ୍ଥା ଲାଭ କରେ ଯେ ଯାହା ଅସ୍ତିତ୍ୱ ଓ ଅନସ୍ତିତ୍ୱ ମଝିରେ ଏକପ୍ରକାର ସ୍ଥିତିକୁ ବୁଝାଇ ଥାଏ ।'' ଶ୍ରୀରାମକୃଷ୍ଣ ଏତିକି କହି ନରେନ୍ଦ୍ରଙ୍କୁ ସ୍ନେହଭରା ଦୃଷ୍ଟିରେ ଚାହିଁଲେ । ନରେନ୍ଦ୍ର କହିଲେ, ''ଏହା ଏଭଳି ଏକ ଅବସ୍ଥା ଯେଉଁଠି ବହୁ ବିରୋଧାତ୍ମକ ଘଟଣାର ମିଳନ ଘଟିଥାଏ । ଉଦ୍‌ଜାନ ଓ ଅମ୍ଳଜାନର ମିଶ୍ରଣ ଥଣ୍ଡା ଜଳ ସୃଷ୍ଟି କରେ ଏବଂ ସେହି ଏକା ଉଦ୍‌ଜାନ ଓ ଅମ୍ଳଜାନର ଅକ୍ସିହାଇଡ୍ରୋଜେନ୍ ବ୍ଲୋ ପାଇପ୍‌ରେ ବ୍ୟବହୃତ ହୁଏ । ସେହି ଅବସ୍ଥାରେ ଉଭୟ କର୍ମ ଓ ଅକର୍ମ ସମ୍ଭବ ହୋଇଥାଏ; କହିବାକୁ ଗଲେ ସେତିକିବେଳେ ଜଣେ ବ୍ୟକ୍ତି ଇ ନିଃସ୍ୱାର୍ଥପର କର୍ମ କରିଥାଏ । ସାଂସାରିକ ମନୁଷ୍ୟ ଯେଉଁମାନେ ଇନ୍ଦ୍ରିୟାନୁଭୂତିରେ ମଜ୍ଜିଥା'ନ୍ତି ସେମାନେ କେବଳ କହନ୍ତି ଯେ ସବୁ ରହିଛି, କିନ୍ତୁ ମାୟାବାଦୀ ଯେଉଁମାନେ ମାୟାବାଦ ବିଶ୍ୱାସ କରନ୍ତି, ସେମାନେ କୁହନ୍ତି ଯେ କିଛି ହିଁ ନାହିଁ । ବୁଦ୍ଧଙ୍କର ଆତ୍ମୋପଲବ୍ଧି ଉଭୟ ଅଛି ଓ ନାହିଁର ଉର୍ଦ୍ଧ୍ୱରେ ।''

ଶ୍ରୀରାମକୃଷ୍ଣ ତତ୍‌କ୍ଷଣାତ୍ କହି ଉଠିଲେ, ''ହଁ, ହଁ ଏହି ଅସ୍ତିତ୍ୱ ଓ ନାସ୍ତିତ୍ୱ (ଅଛି ଓ ନାହିଁ) ହେଉଛି ପ୍ରକୃତିର ଗୁଣ ମାତ୍ର । ପରମ ସତ୍ୟ ଏହି ଉଭୟର ଉର୍ଦ୍ଧ୍ୱରେ, ପ୍ରକୃତି ଗୁଣର ଅତୀତ ।''

ନରେନ୍ଦ୍ର - ବୁଦ୍ଧ ଶକ୍ତି ନିମନ୍ତେ ଆଦୌ ଆଗ୍ରହ ପ୍ରକାଶ କରି ନ ଥିଲେ । ସେ କେବଳ ନିର୍ବାଣ ଚାହିଁଥିଲେ । ଆହାଃ - ତାଙ୍କର କି ଅଭୂତପୂର୍ବ ଅନାସକ୍ତ ଭାବ ! ଯେତେବେଳେ ସେ ବୋଧିଦ୍ରୁମ ତଳେ ଧ୍ୟାନ କରିବାକୁ ବସିଲେ, ସେ ସେତେବେଳେ ଏହି ପ୍ରତିଜ୍ଞା କରିଥିଲେ : ଯଦି ମୁଁ ନିର୍ବାଣ ଲାଭ ନ କରେ, ତେବେ ମୋ ଶରୀର ଏଇଠି ବିନିଷ୍ଟ ହୋଇଯାଉ । ଏଭଳି ଏକ କଠୋର ସଂକଳ୍ପ । ଏହି ଶରୀର ବାସ୍ତବିକ୍ ଗୋଟିଏ ପ୍ରଚଣ୍ଡ ଶତ୍ରୁ । ଏହାକୁ ଦମନ ନ କରି କୌଣସି ଜିନିଷ କ'ଣ ଲାଭ କରିହେବ ?''

ନରେନ୍ଦ୍ରଙ୍କ କହିବାର ତାତ୍ପର୍ଯ୍ୟ ବୁଝି ନ ପାରି, ତାଙ୍କର ଗୁରୁଭାଇ ଶଶୀ ହଠାତ୍ କହି ଉଠିଲେ, ''ତୁମେ ତ କହୁଛ ଯେ ମାଂସ ଭକ୍ଷଣ କରି ବି ଜଣେ ସତ୍ତ୍ୱ ଗୁଣର ଅଧିକାରୀ

Digitized by srujanika@gmail.com

ହୋଇପାରିବ । ମାଂସ ଖାଇବାକୁ ତୁମେ ସବୁବେଳେ ଆମକୁ କହୁଛ ।'' ନରେନ୍ଦ୍ର ହସିଲେ - ହଁ, ମୁଁ ଅବଶ୍ୟ ମାଂସ ଖାଏ, କିନ୍ତୁ ମୁଁ ବି କେବଳ ଭାତ ଖାଇ, ଏପରିକି ବିନା ଲୁଣରେ ଭାତ ଖାଇ ବଞ୍ଚି ପାରେ ।''

ସେମାନଙ୍କର ଆଲୋଚନା ଶ୍ରୀରାମକୃଷ୍ଣ ଉପଭୋଗ କରୁଥିଲେ । ଅଳ୍ପ ସମୟ ପରେ ସେ କହିଲେ, ''ତୁମେ ଏଠାରେ ସବୁ କିଛି ପାଇପାରିବ, ଏପରିକି ମସୁର ଡାଲି ଓ ତେନ୍ତୁଳି । ନା କ'ଣ ?'' ନରେନ୍ଦ୍ର କହିଲେ, ''ହଁ, ଆପଣ ସବୁ ସ୍ତର ଉପଲବ୍ଧି କରି, ବର୍ତ୍ତମାନ ଆପଣ ସାଧାରଣ ସ୍ତରରେ ଅବସ୍ଥାନ କରୁଛନ୍ତି ।''

''ହଁ । କେହି ଜଣେ ମୋତେ ଏହି ସାଧାରଣ ସ୍ତରରେ ଅବସ୍ଥାନ କରିବା ପାଇଁ ବାଧ୍ୟ କରୁଛି ।'' ଏତକ କହି ଶ୍ରୀରାମକୃଷ୍ଣ ମାଷ୍ଟର ମହାଶୟଙ୍କ ହାତରୁ ପଙ୍ଖା ନେଇ କହି ଉଠିଲେ, ''ଯେମିତି ମୋ ସମ୍ମୁଖସ୍ଥ ଏହି ପଙ୍ଖାକୁ ମୁଁ ପ୍ରତ୍ୟକ୍ଷ ଦର୍ଶନ କରୁଛି, ଠିକ୍ ସେମିତି ମୁଁ ଈଶ୍ୱରଙ୍କୁ ଦର୍ଶନ କରିଛି... । ଏବଂ ମୁଁ ଦେଖିଛି ଯେ ସେ ଏବଂ ମୋ ହୃଦୟ ଭିତରେ ଯିଏ ଅବସ୍ଥାନ କରୁଛନ୍ତି ଏକ ଓ ଅଭିନ୍ନ ।'' ନରେନ୍ଦ୍ର ଅବ୍ୟକ୍ତ ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ କହିଲେ, ''ଆଜ୍ଞା ହଁ... ହଁ । ସୋହମ୍ - ମୁଁ ହି ସେ ।'' ଶ୍ରୀରାମକୃଷ୍ଣ କହିଲେ, ''କିନ୍ତୁ ଗୋଟିଏ ରେଖା ଏହି ଦୁଇଟିକୁ କେବଳ ବିଭାଜିତ କରୁଛି - ତାହା ହେଲା, ମୁଁ ଦିବ୍ୟାନନ୍ଦ ଉପଭୋଗ କରିବି ।''

ନରେନ୍ଦ୍ର ଚମକି ପଡ଼ିଲେ । ସମଗ୍ର ଦେହ ଭିତରେ ଅପୂର୍ବ ଶିହରଣ ଖେଳିଗଲା । ଯେଉଁ ବ୍ୟକ୍ତିଙ୍କ ସାଥିରେ ସେ ବର୍ତ୍ତମାନ କଥୋପକଥନରେ ମଗ୍ନ, ସେ ଆଧ୍ୟାତ୍ମିକ ରାଜ୍ୟର ସବୁ ପାହାଚ ଅତିକ୍ରମ କରିସାରି ନିତ୍ୟ ଜଗତର ସତ୍ୟରୁ ଅବରୋହଣ କରି, ସାଧାରଣ ଜଗତ ସ୍ତରରେ ଅବସ୍ଥାନ କରୁଛନ୍ତି । ନିଜର ଅନ୍ତରର କଥା ମାଷ୍ଟର ମହାଶୟଙ୍କ ପାଖରେ ନରେନ୍ଦ୍ର କହି ପକାଇଲେ ।

''ମହାପୁରୁଷମାନେ, ନିଜର ମୁକ୍ତି ଲାଭ କରିସାରିବା ପରେ, ନିଜର 'ମୁଁ ତ୍ୱ'କୁ ଧାରଣ କରିଥାନ୍ତି ଏବଂ ଶରୀରର ସୁଖ ଓ ଦୁଃଖ ଜାଣି ଶୁଣି ଭୋଗ କରନ୍ତି । କାରଣ ଅନ୍ୟମାନଙ୍କର ମୁକ୍ତି ଓ ମୋକ୍ଷର ପଥ ପ୍ରଦର୍ଶନ କରିବାରେ ସେମାନେ ସାହାଯ୍ୟ କରନ୍ତି । ମାଷ୍ଟର ମହାଶୟ, ଆପଣ ବୁଝିପାରିଲେ ତ ? ଏହା କୁଲି କାର୍ଯ୍ୟ ଭଳି । ବାଧ୍ୟବାଧକତାର ବଶବର୍ତ୍ତୀ ହୋଇ ଆମେ କୁଲି କାମ କରନ୍ତି, କିନ୍ତୁ ମହାତ୍ମାମାନେ ନିଜର ମଧୁର ଆନନ୍ଦ ଆହରଣ ପାଇଁ କାର୍ଯ୍ୟ କରନ୍ତି ।''

- ୨ -

*ଶ୍ରୀରାମକୃଷ୍ଣଙ୍କର ଗୋପନୀୟ ନିର୍ଦ୍ଦେଶ - ନରେନ୍ଦ୍ର ଈଶ୍ୱରକୋଟି ଭକ୍ତ, ନିର୍ବିକଳ୍ପ ସମାଧି ଆଡ଼କୁ ପ୍ରଚଣ୍ଡଭାବେ ତା'ର ମନ ଧାବିତ । ସାବଧାନ ! କିଛିବର୍ଷ ପାଇଁ ଏହି ସଂସାରରେ ଦେହ ଧାରଣ ତା'ର ନିହାତି ଆବଶ୍ୟକ । ଭବିଷ୍ୟତରେ ସେ ଅନେକ କାର୍ଯ୍ୟ କରିବ । ନରେନ୍ଦ୍ରର ମନ ସଦା ସର୍ବଦା ଖୁବ୍ ଉଚ୍ଚ ଭୂମିରେ ବିଚରଣ କରେ, ଦେହ ପ୍ରତି ତା'ର ଆସକ୍ତି ନ ଥାଏ ।*

Digitized by srujanika@gmail.com

ଶ୍ରୀରାମକୃଷ୍ଣଙ୍କର ଦେହ-ତ୍ୟାଗ କରିବାର ଦିନ ନିକଟତର ହେଉଥିଲା । ଭକ୍ତମାନଙ୍କର ଉଦ୍‌ବେଗ ଓ ନୈରାଶ୍ୟ ସୀମା ଲଙ୍ଘନ କରୁଥିଲା । ଏହି ସମୟରେ ବୁଢ଼ା ଗୋପାଳଙ୍କ ମନରେ ଏକ ଇଚ୍ଛା ପ୍ରକଟିତ ହେଲା - ଗଙ୍ଗାସାଗର ମେଳାରେ ସନ୍ନ୍ୟାସୀମାନଙ୍କୁ ଗୈରିକ ବସ୍ତ୍ର ଓ ରଦ୍ରାକ୍ଷମାଳା ବାଣ୍ଟିବାକୁ ମନସ୍ଥ କଲେ । ଶ୍ରୀରାମକୃଷ୍ଣ ବୁଢ଼ାଗୋପାଳଙ୍କର ଇଚ୍ଛା ସମ୍ବନ୍ଧରେ ଅବଗତ ହେବାରୁ ସେ କହିଲେ, ''ଏଠାରେ ଯେଉଁ ବାଳକମାନେ ଅଛନ୍ତି, ସେମାନେ ପୂର୍ଣ୍ଣ ତ୍ୟାଗର ନିଦର୍ଶନ । ଅନ୍ୟ କେଉଁଠି ଶୁଦ୍ଧ ଆତ୍ମା ଅନ୍ୱେଷଣ କରିବା କେବଳ ନିର୍ବୋଧତା । ଏହି ବାଳକମାନଙ୍କ ଭିତରେ ତୁମେ ଯଦି ଗୈରିକ ବସ୍ତ୍ର ଓ ରଦ୍ରାକ୍ଷମାଳା ବଣ୍ଟନ କରିବ, ତେବେ ବହୁ ପୁଣ୍ୟ ଅର୍ଜନ କରିବ ।''

ବୁଢ଼ା ଗୋପାଳଙ୍କ ଚିନ୍ତା ଓ ଚେତନା ଏତାଦୃଶ ଉପଦେଶନ ଶ୍ରବଣରେ ଆଲୋକିତ ହେଲା । ସେ ବାରଟି ଗୈରିକ ବସ୍ତ୍ର ଓ ରଦ୍ରାକ୍ଷ ମାଳା ଶ୍ରୀରାମକୃଷ୍ଣଙ୍କ ହସ୍ତରେ ଶ୍ରଦ୍ଧା ଓ ଭକ୍ତି ସହକାରେ ଅର୍ପଣ କଲେ । ଶ୍ରୀରାମକୃଷ୍ଣ ହର୍ଷୋତ୍‌ଫୁଲ୍ଲ ମନରେ ନରେନ୍ଦ୍ର, ରାଖାଲ, ବାବୁରାମ, ନିରଞ୍ଜନ, ଯୋଗୀନ୍ଦ୍ର, ତାରକ, ଶଶୀ, ଶରତ୍‌, କାଳୀ, ଲାଟୁ ଓ ବୁଢ଼ା ଗୋପାଳଙ୍କୁ ଗୈରିକ ବସ୍ତ୍ର ଓ ରଦ୍ରାକ୍ଷ ମାଳା ପ୍ରଦାନକରି ସନ୍ନ୍ୟାସ ଧର୍ମରେ ଦୀକ୍ଷିତ କରାଇଲେ । ନିଜ ହାତରେ ସେମାନଙ୍କୁ ସନ୍ନ୍ୟାସ ପରିଚ୍ଛଦରେ ଭୂଷିତ କଲେ । ମନ୍ତ୍ର ପ୍ରଦାନ କଲେ । ଭବିଷ୍ୟତ ରାମକୃଷ୍ଣ ମଠ ଓ ମିଶନର ବୀଜ ପ୍ରଥମେ ଏହି ଏଗାର ଜଣ ଗୃହତ୍ୟାଗୀ ଭକ୍ତଙ୍କ ଭିତରେ ବପନ କଲେ । ସମସ୍ତ ସନ୍ନ୍ୟାସୀଙ୍କର ଯତ୍ନ ଓ ଆଧ୍ୟାତ୍ମିକ ଉନ୍ନତି ଓ ପ୍ରଗତି ନିମନ୍ତେ ଦାୟିତ୍ୱ ନରେନ୍ଦ୍ରଙ୍କ ଉପରେ ନ୍ୟସ୍ତ ହେଲା । ନରେନ୍ଦ୍ର ହେଲେ ମୁଖ୍ୟ ଇଞ୍ଜିନ । ତାଙ୍କ ପଶ୍ଚାତରେ ବାନ୍ଧି ଦେଲେ ଡବାଭଳି ଅନ୍ୟ ଯୁବ ସନ୍ନ୍ୟାସୀଙ୍କୁ ।

ଶ୍ରୀରାମକୃଷ୍ଣ ଆଜି ଆଶ୍ୱସ୍ତ; ମହାତ୍ୟାଗୀ ନରେନ୍ଦ୍ରଙ୍କୁ ସେ ଯେତେବେଳେ ଦାୟିତ୍ୱ ଅର୍ପଣ କରିଛନ୍ତି, ନିଶ୍ଚିତଭାବେ ତାଙ୍କର କାର୍ଯ୍ୟ ନିର୍ବିଘ୍ନରେ ସମ୍ପାଦିତ ହେବ । ଭକ୍ତ ଓ ସନ୍ନ୍ୟାସୀଙ୍କର ଦାୟିତ୍ୱ ସିନା ନରେନ୍ଦ୍ରଙ୍କୁ ସମର୍ପି ଦେଲେ, କିନ୍ତୁ ଗୋପନରେ ନରେନ୍ଦ୍ରଙ୍କର ଯତ୍ନ ନେବାପାଇଁ ଅନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ - ନରେନ୍ଦ୍ର ଈଶ୍ୱରକୋଟି ଭକ୍ତ, ନିର୍ବିକଳ୍ପ ସମାଧି ଆଡ଼କୁ ପ୍ରଚଣ୍ଡଭାବେ ତା' ର ମନ ଧାବିତ । ସାବଧାନ ! କିଛିବର୍ଷ ପାଇଁ ଏହି ସଂସାରରେ ଦେହ ଧାରଣ ତା'ର ନିହାତି ଆବଶ୍ୟକ । ଭବିଷ୍ୟତରେ ସେ ଅନେକ କାର୍ଯ୍ୟ କରିବ । ନରେନ୍ଦ୍ରର ମନ ସଦା ସର୍ବଦା ଖୁବ୍ ଉଚ୍ଚ ଭୂମିରେ ବିଚରଣ କରେ, ଦେହ ପ୍ରତି ତା'ର ଆସକ୍ତି ନ ଥାଏ ।

ନରେନ୍ଦ୍ର ସନ୍ନ୍ୟାସୀ ଧର୍ମରେ ଦୀକ୍ଷିତହେତୁ, ''ଅହଂ ବ୍ରହ୍ମାସ୍ମି''ର ପ୍ରତ୍ୟକ୍ଷ ଅନୁଭୂତି ଓ ଦର୍ଶନ ନିମନ୍ତେ ତାଙ୍କର ମନ ଘୁମୁରି ଉଠିଲା, ସେ ଅନୁନୟ ବିନୟ ହୋଇ ଶ୍ରୀରାମକୃଷ୍ଣଙ୍କ ନିକଟରେ ଆତ୍ମ ନିବେଦନ କଲେ । ଅଦ୍ୱୈତ ବେଦାନ୍ତର ଗୁପ୍ତ ଦ୍ୱାର ଅବଶ୍ୟ ସେ ଉପଦେଶନ ମାଧ୍ୟମରେ ନରେନ୍ଦ୍ରଙ୍କ ସମ୍ମୁଖରେ ଖୋଲି ଦେଇଥିଲେ, କିନ୍ତୁ ସେହି ପୂର୍ଣ୍ଣ ପରମ ସତ୍ୟର ମୁହାମୁହିଁ ଦର୍ଶନ ଓ ଅନୁଭୂତିରେ ବୁଡିଯିବା ପାଇଁ ତାଙ୍କର ପ୍ରଚଣ୍ଡ ଇଚ୍ଛା ମ୍ରିୟମାଣ କରୁଥିଲା ବାରମ୍ବାର । ଶ୍ରୀରାମକୃଷ୍ଣ ବି ବୁଝିଗଲେଣି ଯେ ନିର୍ବିକଳ୍ପ ସମାଧି ଅବସ୍ଥାର ଉନ୍ମୋଚନକୁ ଅଧିକ

Digitized by srujanika@gmail.com

ବିଳମ୍ବ କରି ହେବନାହିଁ । ନରେନ୍ଦ୍ରଙ୍କର ଧୈର୍ଯ୍ୟଚ୍ୟୁତି ପରିଲକ୍ଷିତ କରି ତାଙ୍କର କାରୁଣ୍ୟ ହୃଦୟ ବିଗଳିତ ହେଲା ।

ଏକଦା କାଶିପୁର ଉଦ୍ୟାନବାଟିର ଅନ୍ୟ ଏକ କୋଠରିରେ ବୁଢ଼ା ଗୋପାଳଙ୍କ ସହିତ ନରେନ୍ଦ୍ର ଧ୍ୟାନସ୍ଥ ଥିଲେ । ଏକ ଅପୂର୍ବ ଘଟଣା ଘଟିଲା । ସନ୍ଧ୍ୟା କାଳ । ହଠାତ୍ ନରେନ୍ଦ୍ର ନିଜ ମସ୍ତକ ପଶ୍ଚାତଭାଗରେ ଅବଲୋକନ କଲେ ଆଲୋକ, ଯେତେକି ଏକ ଟର୍ଚ୍ଚ ଲାଇଟରୁ ଆଲୋକ ବିଚ୍ଛୁରିତ । ଉକ୍ତ ଆଲୋକ କ୍ରମଶଃ ଉଜ୍ଜ୍ୱଳତର ହେବାକୁ ଲାଗିଲା ଏବଂ ସର୍ବଶେଷରେ ଏକ ବିଶାଳ ଦୀପ୍ତିମନ୍ତ ଜ୍ୟୋତିରେ ହେଲା ପରିଣତ । ଯେତେକି ଆଲୋକର ପ୍ରଚଣ୍ଡ ବିସ୍ଫୋରଣ ଘଟିବ । ମନ ସେହି ବିଶାଳ ଜ୍ୟୋତିରେ ସମ୍ପୂର୍ଣ୍ଣ ବିଲୀନ ହେଲା । ତାଙ୍କର ଆଦୌ ବାହ୍ୟଜ୍ଞାନ ରହିଲାନାହିଁ । ତାଙ୍କର ମନ ଓ ଚେତନାତୀତ ଅବସ୍ଥାରେ କ'ଣ ସବୁ ଘଟିଥିବ, ନରେନ୍ଦ୍ର କି ପ୍ରକାର ଦର୍ଶନ କରିଥିବେ, ତାହା ତାଙ୍କୁ ହିଁ ଜଣା, ଯାହା ଭାଷାରେ ବର୍ଣ୍ଣନା କରିହେବ ନାହିଁ । କାରଣ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର କାଳେ ସେହି ଅଖଣ୍ଡ ରାଜ୍ୟର ବର୍ଣ୍ଣନା କରିପାରିବେ ନାହିଁ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି । ନରେନ୍ଦ୍ର ନିଶ୍ଚଳ ହୋଇ କେବଳ ବସିଥିଲେ । ସମଗ୍ର କୋଠରି ଅବ୍ୟକ୍ତ ଆନନ୍ଦରେ ଶିହରିତ । ନୀରବତା କେବଳ ସେଠାରେ ରାଜତ୍ୱ କରୁଥିଲା ।

ହଠାତ୍ ନରେନ୍ଦ୍ର ଚିତ୍କାର କରିଉଠିଲେ, ''ଗୋପାଳ ଦା, ଗୋପାଳ ଦା ମୋ ଦେହ କେଉଁଠି ?'' ଧ୍ୟାନସ୍ଥ ଅବସ୍ଥାରେ ବୁଢ଼ା ଗୋପାଳ ଚମକି ପଡ଼ିଲେ ଏବଂ ଚାହିଁଲେ ନରେନ୍ଦ୍ର ଉଚ୍ଚ ସ୍ୱରରେ ଚିତ୍କାର କରୁଛନ୍ତି । ସେ ନରେନ୍ଦ୍ରଙ୍କ ନିକଟକୁ ଲାଗିଯାଇ କହିଲେ, ''ନରେନ୍, ନରେନ୍, ଏହି ପରା ତୁମର ଦେହ ।'' ନରେନ୍ଦ୍ର ପୁନଶ୍ଚ ନୀରବ । ଗୋପାଳ ଦା କିଂକର୍ତ୍ତବ୍ୟବିମୂଢ଼ ହୋଇ ଧାଇଁଲେ ଶ୍ରୀରାମକୃଷ୍ଣଙ୍କ କୋଠରିକୁ ସାହାଯ୍ୟ ପାଇଁ । ଗୋପାଳଦା ଏକ ନିଃଶ୍ୱାସରେ ନରେନ୍ଦ୍ରଙ୍କର ଅବସ୍ଥା ବର୍ଣ୍ଣନା କରୁଥିବା ସମୟରେ ଶ୍ରୀରାମକୃଷ୍ଣଙ୍କର ସେଠାରେ ଭାବାତୀତ ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହେଲେ । ଶ୍ରୀରାମକୃଷ୍ଣ ନିଜ ଶଯ୍ୟାରେ ଗଭୀର ଶାନ୍ତାବସ୍ଥାରେ ଉପବିଷ୍ଟ, ମୁଖମଣ୍ଡଳରେ ହଜିଲା ହଜିଲା ଭାବ ଉଙ୍କି ମାରୁଥିଲା, ଯେତେକି ନରେନ୍ଦ୍ରଙ୍କର ସବୁ ଘଟଣାରେ ସେ ନିଜେ ମଜ୍ଜି ଯାଇଛନ୍ତି, ସବୁ ଜାଣି ନ ଜାଣିବା ପରି ଖାଲି ବସିଛନ୍ତି । ଗୋପାଳଦାଙ୍କଠାରୁ ସବୁ ଶୁଣିବା ପରେ ସେ ଅତି କ୍ଷୀଣ ସ୍ୱରରେ କହିଲେ, ''ହଁ, ତାକୁ ସେହି ଅବସ୍ଥାରେ କିଛି ସମୟ ରହିବାକୁ ଦିଅ । ସେ ମୋତେ ଏଥିପାଇଁ ବହୁତ ଚିଡ଼ାଇଲେଣି ।'' ଗୋପାଳଦା ବୁଝିଗଲେ ଯେ ସେ ନରେନ୍ଦ୍ରଙ୍କ ପାଇଁ ଅକାରଣେ ବ୍ୟସ୍ତ ହେଉଛନ୍ତି । ସେ ନୀରବରେ ସେଠାରୁ ପ୍ରସ୍ଥାନ କଲେ ।

ଅନ୍ୟ ଜଣେ ଗୁରୁଭାଇ ନିରଞ୍ଜନ, ନରେନ୍ଦ୍ରଙ୍କର ସମାଧି ଅବସ୍ଥା ଦେଖି ଏଭଳି ଭୟଭୀତ ହୋଇଯାଇଥିଲେ ଯେ ସେ ଧଇଁସଇଁ ହୋଇ ଶ୍ରୀରାମକୃଷ୍ଣଙ୍କ ପାଖରେ କହିଲେ, ''ଠାକୁର, ନରେନ୍ ମରିଯାଇଛି । ତାଙ୍କ ଦେହ ବରଫ ଭଳି ଥଣ୍ଡା ହୋଇଗଲାଣି ।'' ଶ୍ରୀରାମକୃଷ୍ଣ ନିରଞ୍ଜନଙ୍କର ବାଲ୍ୟ ଚପଳତାପୂର୍ଣ୍ଣ କଥାଶୁଣି କେବଳ ଠୋ ଠୋ ହସି ଉଠିଲେ, କିନ୍ତୁ କିଛି କହିଲେ ନାହିଁ । ନରେନ୍ଦ୍ର ସେମିତି ବାହ୍ୟଜ୍ଞାନ ହରାଇ କୋଠରି ଚଟାଣରେ ଶାୟିତ ଥିଲେ ।

Digitized by srujanika@gmail.com

- ୩ -

*ବାବା ଗୋଟିଏ କଥା ଆଜି ମନେ ରଖିବୁ, ବାକ୍ସରେ ମୂଲ୍ୟବାନ ସ୍ୱର୍ଣ୍ଣାଳଙ୍କାର ରଖି ତାଲା ପକାଇ ଦେଲାଭଳି, ତୋର ସମସ୍ତ ଉପଲବ୍ଧ ଜ୍ଞାନକୁ ମୁଁ ବାକ୍ସରେ ତାଲା ପକାଇ ରଖିଦେଲି । ଆଉ ସେହି ବାକ୍ସର ଚାବିକାଠି ମୋ ପାଖରେ ରହିଲା । ତୁ କେବଳ ମା'ଙ୍କ କାର୍ଯ୍ୟ କରିବୁ । ଯେତେବେଳେ ତୁ ସମସ୍ତ କାର୍ଯ୍ୟ ସମ୍ପାଦନ କରିବୁ, ସେତେବେଳେ ମୁଁ ସେହି ବାକ୍ସର ଚାବି ଖୋଲିଦେବି । ଆଜି ଯାହା ଦର୍ଶନ କଲୁ, ସେଥିରେ ପୁଣି ବୁଡିଯିବୁ ।*

ରାତି ନ'ଟାରେ ନରେନ୍ଦ୍ରଙ୍କର ଚେତା ଫେରିବାର ଲକ୍ଷଣ ପ୍ରକାଶ ପାଇଲା । ଯେତେବେଳେ ତାଙ୍କର ପୂର୍ଣ୍ଣ ଚେତା ଫେରିଆସିଲା, ସେତେବେଳେ ସେ ଦେଖିଲେ ଯେ ଗୁରୁଭାଇମାନେ ଉଦ୍‌ଗ୍ରୀବ ନୟନରେ ତାଙ୍କୁ ଚାହିଁ ଚତୁଃପାର୍ଶ୍ୱରେ ବସି ରହିଛନ୍ତି । ସେ ପୁନଶ୍ଚ ସ୍ମରଣ ଶକ୍ତି ଫେରିପାଇଲେ । ସେ ଅନୁଭବ କରୁଥିଲେ ସତେକି ସେ ଅନନ୍ତ ଅବିନଶ୍ୱର ଶାନ୍ତ ମହାପାରାବାରରେ ସ୍ନାନ କରି ପ୍ରତ୍ୟାବର୍ତ୍ତନ କରିଛନ୍ତି । ହୃଦୟ ପରିପୂର୍ଣ୍ଣ ଆନନ୍ଦ ଢେଉରେ । ସେ ବର୍ତ୍ତମାନ ଉପଲବ୍ଧି କଲେ, ବେଦାନ୍ତ ହିଁ ସବୁଧର୍ମ ଦର୍ଶନକୁ ନିଜର କରିପାରିବ । ନିର୍ବିକଳ୍ପ ସମାଧିର ସ୍ୱାଦ ଆସ୍ୱାଦନ କରି ଆନନ୍ଦରେ ବିଭୋର ହୋଇ ପହଞ୍ଚିଲେ ଶ୍ରୀରାମକୃଷ୍ଣଙ୍କ ପାଖରେ । ଶ୍ରୀରାମକୃଷ୍ଣ ନିଜ ଶଯ୍ୟାରେ ଥିଲେ ଉପବିଷ୍ଟ । ପ୍ରଣାମ କଲେ ନରେନ୍ଦ୍ର । ଅପଲକ ନୟନରେ ନରେନ୍ଦ୍ରଙ୍କୁ ଚାହିଁ ଶ୍ରୀରାମକୃଷ୍ଣ ମୃଦୁ ସ୍ୱରରେ କହିଲେ, ''ବେଶ୍ କଥା । ମା ତୋତେ ସବୁକିଛି ଦେଖାଇ ଦେଲେ । ବାବା ଗୋଟିଏ କଥା ଆଜି ମନେ ରଖିବୁ, ବାକ୍ସରେ ମୂଲ୍ୟବାନ ସ୍ୱର୍ଣ୍ଣାଳଙ୍କାର ରଖି ତାଲା ପକାଇ ଦେଲାଭଳି, ତୋର ସମସ୍ତ ଉପଲବ୍ଧ ଜ୍ଞାନକୁ ମୁଁ ବାକ୍ସରେ ତାଲା ପକାଇ ରଖିଦେଲି । ଆଉ ସେହି ବାକ୍ସର ଚାବିକାଠି ମୋ ପାଖରେ ରହିଲା । ତୁ କେବଳ ମା'ଙ୍କ କାର୍ଯ୍ୟ କରିବୁ । ଯେତେବେଳେ ତୁ ସମସ୍ତ କାର୍ଯ୍ୟ ସମ୍ପାଦନ କରିବୁ, ସେତେବେଳେ ମୁଁ ସେହି ବାକ୍ସର ଚାବି ଖୋଲିଦେବି । ଆଜି ଯାହା ଦର୍ଶନ କଲୁ, ସେଥିରେ ପୁଣି ବୁଡିଯିବୁ ।''

ଶ୍ରୀରାମକୃଷ୍ଣ ବୋଧହୁଏ ନରେନ୍ଦ୍ରଙ୍କୁ ସ୍ମରଣ କରାଇଦେଲେ ତାଙ୍କର ପୂର୍ବାବସ୍ଥାର ବିବରଣୀ; କାର୍ଯ୍ୟ ସମାପନ ହେଲେ, ପୁନଶ୍ଚ ପ୍ରତ୍ୟାବର୍ତ୍ତନ କରିବେ ସେହି ଦିବ୍ୟ ଅଖଣ୍ଡ ରାଜ୍ୟକୁ । ସଚ୍ଚିଦାନନ୍ଦ ବ୍ରହ୍ମରେ ମନକୁ ଲୟକରି ସେ ଅମୃତ ପାନ କରିବେ । ଯେମିତି ସେ କରୁଥିଲେ ତାଙ୍କୁ ଆଣିବା ସମୟରେ । ସେ ଯେତେବେଳେ ଦେବଶିଶୁ ହୋଇ ନରେନ୍ଦ୍ରଙ୍କ ଗଳାରେ ଝୁଲି ପଡ଼ିଲେ, ସେତେବେଳେ ନରେନ୍ଦ୍ର ଖାଲି ଅର୍ଦ୍ଧୋନ୍ମିଳୀତ ଚକ୍ଷୁରେ ହସି ଦେଇଥିଲେ । ସେ ଆସିବା ସମୟରେ ତାଙ୍କୁ କହି ଆସିଥିଲେ ଯେ ତାଙ୍କ ପଛେ ପଛେ ଆସିବାକୁ । ସେ କ'ଣ ତାଙ୍କୁ ଆଣିଥିଲେ ଯେ ଏଠାରେ ବସି ନିର୍ବିକଳ୍ପ ସମାଧିର ସୁଖ ଭୁଞ୍ଜିବାକୁ ? ତାଙ୍କର ମୁକ୍ତି ପାଇଁ ନୁହେଁ ସେ ତ ମୁକ୍ତାତ୍ମା, ଚିର ତ୍ୟାଗୀ । ସେ ତ ସଭିଙ୍କର ମୁକ୍ତିଦାତା । ମାନବ ଶରୀର ଭିତରେ ରହି ସେ କ'ଣ ନିଜ ସ୍ୱରୂପକୁ ଏଡ଼େ ବେଗି ଭୁଲିଯାଇଛି ? ସେ ପରା ମୋର ମହାମନ୍ତ୍ର ''ଶିବ ଜ୍ଞାନେ ଜୀବ ସେବା'',

Digitized by srujanika@gmail.com

ଯାହା ଦିନେ ବେଦାନ୍ତର ନିର୍ଯ୍ୟାସ ରୂପେ କେବଳ ଅରଣ୍ୟ ମଧ୍ୟରେ ସୀମିତ ଥିଲା, ଏବେ ନରେନ୍ଦ୍ର ବେଦାନ୍ତକୁ ବିଶ୍ୱର ଘରେ ଘରେ ପହଞ୍ଚାଇବ ।''

ପୁନଶ୍ଚ ଶ୍ରୀରାମକୃଷ୍ଣଙ୍କ ଶ୍ରୀମୁଖରୁ ଝରିପଡ଼ିଲା, ''ହଁ ରେ ନରେନ୍, ଦେହ ପ୍ରତି ଖୁବ୍ ଯତ୍ନ ନେବୁ । ତୋର ସୁସ୍ଥ ଶରୀର ମୋର ଏକାନ୍ତ କାମ୍ୟ । ତାହା ନ ହେଲେ ସର୍ବନାଶ । ହଁ, ମନେରଖିବୁ ଗୋଟିଏ କଥା । ଅଶୁଦ୍ଧ ଓ ଅସାଧୁଙ୍କଠାରୁ ଖାଦ୍ୟ ଖାଇବୁ ନାହିଁ, ସେମାନଙ୍କ ସାଙ୍ଗ ହେବୁ ନାହିଁ । ତୁ ମୋର ଜୀବ ଜୀବନ ।'' ପରବର୍ତ୍ତୀ ସମୟରେ ଅନ୍ୟ ଭକ୍ତମାନଙ୍କୁ ଶ୍ରୀରାମକୃଷ୍ଣ ସତର୍କବାଣୀ ଶୁଣାଇ କହିଥିଲେ ନରେନ୍ଦ୍ରର ହେବ ଇଚ୍ଛାମୃତ୍ୟୁ । ଯେଉଁ ମୁହୂର୍ତ୍ତରେ ସେ ଚିହ୍ନିପାରିବ ଯେ ସେ କିଏ ସେହି ମୁହୂର୍ତ୍ତରେ ସେ ଆଉ ନିଜ ଶରୀର ଭିତରେ ରହିବାକୁ ଚାହିଁବ ନାହିଁ । ସମୟ ଆସନ୍ନ ପ୍ରାୟ, ସେ ନିଜର ବୌଦ୍ଧିକ ଜ୍ଞାନ ଓ ଆଧ୍ୟାତ୍ମିକ ଶକ୍ତି ବଳରେ ସମଗ୍ର ବିଶ୍ୱର ମୂଳଦୁଆକୁ ଦୋହଲାଇ ଦେବ । ପରମ ସତ୍ୟର ଉପଲବ୍ଧିଠାରୁ ନରେନ୍ଦ୍ରଙ୍କୁ ଦୂରେଇ ରଖିବା ପାଇଁ ମୁଁ ନିରନ୍ତର ଦିବ୍ୟ ଜନନୀଙ୍କ ପାଖରେ ପ୍ରାର୍ଥନା କରୁଛି । ତାକୁ ଅନେକ କାର୍ଯ୍ୟ ନିର୍ବାହ କରିବାକୁ ହେବ । କିନ୍ତୁ ପରମସତ୍ୟ ଓ ତାହା ମଝିରେ ଯେଉଁ ଆବରଣ ରହିଛି, ତାହା ଏଭଳି ପତଳା ଯେ କେଉଁ ମୁହୂର୍ତ୍ତରେ ତାହା ଖୋଲିଯିବ, ତାହା କିଏ କହିପାରିବ ? ତେଣୁ ମା'ଙ୍କୁ କହିଛି କାର୍ଯ୍ୟ ସମାପ୍ତ ନ ହେବା ପର୍ଯ୍ୟନ୍ତ ପରମସତ୍ୟଙ୍କୁ ଆବୃତ ରଖିବେ ।

ପରମ ସତ୍ୟର ଉପଲବ୍ଧି ପାଇଁ ନରେନ୍ଦ୍ରଙ୍କର ବ୍ୟାକୁଳିତ ମନ ସିନା କିୟଦାଂଶରେ ଶାନ୍ତ ହେଲା, ଅନ୍ୟପକ୍ଷରେ କାଶିପୁର ଉଦ୍ୟାନବାଟିରେ ଅନ୍ୟ ଏକ ଘଟଣା ଯୁବଭକ୍ତଙ୍କର ପ୍ରାଣକୁ ମନ୍ଥନ କଲା । କାଶିପୁର ଉଦ୍ୟାନବାଟିର ସମସ୍ତ ଖର୍ଚ୍ଚ ତିନିଜଣ ଗୃହୀଭକ୍ତ ବହନ କରୁଥିଲେ । ସେମାନେ ହେଲେ **ରାମଚନ୍ଦ୍ର ଦତ୍ତ, କାଳୀପଦ ଘୋଷ ଏବଂ ସୁରେନ୍ଦ୍ରନାଥ ମିତ୍ର** । ଆବଶ୍ୟକ ଅନୁଯାୟୀ ଯୁବଭକ୍ତମାନେ ସେମାନଙ୍କର ପ୍ରଦତ୍ତ ଅର୍ଥରାଶିକୁ ଖର୍ଚ୍ଚ କରୁଥିଲେ ଏବଂ ଯୁବଭକ୍ତ ଛୋଟ ଗୋପାଳ ସେସବୁର ହିସାବ ରଖୁଥିଲେ । ରାମଚନ୍ଦ୍ର ଦତ୍ତ ମଝିରେ ମଝିରେ ଖର୍ଚ୍ଚ ହିସାବ ଯାଞ୍ଚ କରୁଥିଲେ । ଗୃହୀଭକ୍ତମାନେ ସେମାନଙ୍କ ମୁକ୍ତ ହସ୍ତ ଖର୍ଚ୍ଚକୁ ନାପସନ୍ଦ କଲେ, ଯା'ଫଳରେ ଯୁବଭକ୍ତମାନଙ୍କୁ ଅକଥନୀୟ ଭାଷାରେ ଭର୍ତ୍ସନା ସେମାନେ କରିବାକୁ ପଶ୍ଚାଦ୍‌ପଦ ହେଲେ ନାହିଁ । ପରିସ୍ଥିତି ଅଣାୟତ୍ତ ହୋଇପଡ଼ିବାରୁ ନରେନ୍ଦ୍ର ଶ୍ରୀରାମକୃଷ୍ଣଙ୍କ ପାଖରେ ସବୁକଥା ଖୋଲିକହିଲେ । ଯୁବଭକ୍ତମାନଙ୍କର ନିଷ୍କାମ ସେବା ମନୋବୃତ୍ତି ଲକ୍ଷ୍ୟକରି ଶ୍ରୀରାମକୃଷ୍ଣ କହିଲେ, ''ନରେନ୍ ତୁ ମୋତେ ଯେଉଁଠିକୁ ନେଇଯିବୁ, ଯେଉଁ ପରିବେଶରେ ମୋତେ ରଖିବୁ, ମୁଁ ସେଠି ରହିବିରେ । ତୁ ମୋର ଜୀବନ ଧନ ।'' ନରେନ୍ଦ୍ରଙ୍କ ଭିତରେ ଉଠିଲା ମହାଭାବର ଉତ୍ତାଳ ତରଙ୍ଗ । ଅଶ୍ରୁପୂର୍ଣ୍ଣ ନୟନରେ ଚାହିଁ ନରେନ୍ଦ୍ର କହିଉଠିଲେ, ଠାକୁର, ଚିନ୍ତା କରନ୍ତୁନି, ମୁଁ ଆପଣଙ୍କୁ କାନ୍ଧରେ ବସାଇ ଦୁଆର ଦୁଆର ବୁଲି ଭିକ ମାଗିବି ଏବଂ ଆପଣଙ୍କ ଖାଦ୍ୟପେୟର ବ୍ୟବସ୍ଥା କରିବି । ଆପଣଙ୍କୁ ମୁହୂର୍ତ୍ତେ ଛାଡ଼ି ରହି ପାରିବି ନାହିଁ । ଶ୍ରୀରାମକୃଷ୍ଣଙ୍କ କଣ୍ଠରୁ ବାରମ୍ବାର ସ୍ୱର ଝରିପଡୁଥିଲା, ''ନରେନ୍ ଏହି ଗୃହୀଭକ୍ତଙ୍କଠାରୁ ମୁଁ ଆଉ ଟଙ୍କା ନେବି ନାହିଁରେ ।''

ଶ୍ରୀରାମକୃଷ୍ଣଙ୍କର ଏତାଦୃଶ ସଂକଳ୍ପ ଯୁବଭକ୍ତଗଣଙ୍କୁ ଚିନ୍ତାଗ୍ରସ୍ତ କରିଲା । କିଏ ଖର୍ଚ୍ଚ ବହନ କରିବ ? କଲିକତାର ଲକ୍ଷ୍ମୀନାରାୟଣ ମାରୱାଡ଼ି ଏହି ଦୁର୍‌ବସ୍ଥାର ସମ୍ବାଦ ପାଇ ଅର୍ଥ ସାହାଯ୍ୟ

Digitized by srujanika@gmail.com

କରିବାକୁ ଆଗଭର ହେଲେ, କିନ୍ତୁ ଶ୍ରୀରାମକୃଷ୍ଣ ତାଙ୍କଠାରୁ ଅର୍ଥ ଗ୍ରହଣ କରିବାକୁ ସଫା ମନା କରିଦେଲେ । ଯୁବଭକ୍ତମାନଙ୍କର ଚିନ୍ତା ଓ ଉଦ୍‌ବେଗ ଆକାଶ ଛୁଆଁ ହେଲା । ଯୁବପ୍ରାଣରେ ଉଠୁଥିବା ବ୍ୟଥାର ଗଭୀରତାକୁ ବୁଝିପାରିଲେ ଶ୍ରୀରାମକୃଷ୍ଣ । ସେ ତତ୍‌କ୍ଷଣାତ୍ ପରମଭକ୍ତ ଗିରୀଶଚନ୍ଦ୍ର ଘୋଷଙ୍କୁ ଡକାଇ ପଠାଇ କହିଲେ, ''ଗିରୀଶ, ତୁମେ ଆଜିଠାରୁ ଏଠାକାର ସମସ୍ତ ଖର୍ଚ୍ଚ ଏକାକୀ ବହନ କରିବ ।'' ଗିରୀଶ ବାବୁ ଏଭଳି ନିର୍ଦ୍ଦେଶ ପାଇବା କ୍ଷଣି, ଭକ୍ତି ଗଦ୍‌ଗଦ୍ ଚିତ୍ତରେ କହିଉଠିଲେ, ''ଅହୋ ଭାଗ୍ୟ ମୋର, ନିଶ୍ଚୟ ନିଶ୍ଚୟ ଆପଣଙ୍କ ଆଦେଶ ମୋ ଶିରୋଧାର୍ଯ୍ୟ । ଯଦି ଦରକାର ପଡ଼େ ଘର ଓ ଜମି ବିକ୍ରି କରି ସମସ୍ତ ଖର୍ଚ୍ଚ ମୁଁ ତୁଲାଇବି ।'' ଯୁବଭକ୍ତଗଣ ଗିରୀଶବାବୁଙ୍କର ଆଶ୍ୱାସନାରେ ଆଶ୍ୱସ୍ତ ହେଲେ । ଠାକୁରଙ୍କୁ ଭେଟିବା ପାଇଁ ଉକ୍ତ ତିନିଜଣ ଗୃହୀଭକ୍ତଙ୍କୁ ସେମାନେ ଅନୁମତି ଦେଲେ ନାହିଁ । ଯାହାହେଉ ପରବର୍ତ୍ତୀ ସମୟରେ ଶ୍ରୀରାମକୃଷ୍ଣ ନିଜେ ପରିସ୍ଥିତିକୁ ଶାନ୍ତ କରିବା ପାଇଁ ତିନିଜଣ ଗୃହୀଭକ୍ତ ଓ ଯୁବଭକ୍ତଙ୍କ ଭିତରେ ବୁଝାମଣା କରାଇ ଦେଲେ, ଯାହାଫଳରେ ତିନିଜଣ ଗୃହୀଭକ୍ତ ଠାକୁରଙ୍କ ସେବାରେ ଭାଗନେବା ପାଇଁ ପୁନଶ୍ଚ ସୁଯୋଗ ପାଇଲେ ।

୧୮୮୬ ଜୁଲାଇ ଶେଷଭାଗରେ ଶ୍ରୀରାମକୃଷ୍ଣଙ୍କର ସ୍ୱାସ୍ଥ୍ୟାବସ୍ଥା ଗୁରୁତର ହେଲା । ତାଙ୍କ ମୁଖରୁ ଆଉ ବାକ୍ୟ ସ୍ଫୁରିଲା ନାହିଁ, କେବଳ ଫୁସ୍‌ଫୁସ୍ ସ୍ୱରରେ କଥାବାର୍ତ୍ତା ହେଲେ, ଅଧିକନ୍ତୁ, ଠାର ମାଧ୍ୟମରେ ନିଜର ମନର କଥାକୁ ବ୍ୟକ୍ତ କଲେ । ଭକ୍ତମାନେ ନୈରାଶ୍ୟରେ ବୁଡ଼ିଗଲେ । ଯେଉଁ ବ୍ୟକ୍ତିଙ୍କୁ ସେମାନେ ଗୁରୁ, ଅବତାର, ପିତା, ମାତା ସମ ଭକ୍ତି ଓ ଶ୍ରଦ୍ଧା କରୁଥିଲେ, ଆଜି ସେ କଥାବାର୍ତ୍ତା କରିପାରୁନାହାନ୍ତି ଦେଖି ସେମାନଙ୍କର ଛାତି ଫାଟିଗଲା । କେତେକ ଭକ୍ତ କେବଳ ତାଙ୍କୁ ଅଶ୍ରୁଳ ନୟନରେ ଚାହୁଁଥିଲେ, ଅନ୍ୟ କେତେଜଣ ଗୋପନରେ ଉଚ୍ଚ ସ୍ୱରରେ କାନ୍ଦୁଥିଲେ । ସେମାନଙ୍କର ଅସହାୟତା ଚରମ ସୀମାରେ ଉପନୀତ । ଯୁବଭକ୍ତଗଣ ତାଙ୍କୁ ଅତି ନିଜର ଭାବୁଥିଲେ ଏବଂ ସେ ମଧ୍ୟ ମୋନଙ୍କୁ ନିଜର ଭାବୁ ଥିଲେ । ଅଧିକାଂଶ ସମୟରେ ଶ୍ରୀରାମକୃଷ୍ଣ ସେମାନଙ୍କୁ ପାଖରେ ବସାଇ, ମା'ଟିଏ ଭଳି ମୁଣ୍ଡର କେରା କେରା କେଶରାଶିକୁ ଆଉଁଷି ଦେଉଥିଲେ ତ, କେତେବେଳେ ଠାର ମାଧ୍ୟମରେ ନିଜର ପ୍ରେମ ଓ ସ୍ନେହ ବ୍ୟକ୍ତ କରୁଥିଲେ । ତାଙ୍କର ସର୍ବଦା ଚିନ୍ତା ଯେ ତାଙ୍କ ଅନ୍ତେ ପିଲାମାନଙ୍କର କିଏ ଯତ୍ନ ନେବ ? କିନ୍ତୁ ନରେନ୍ଦ୍ରଙ୍କୁ ଦେଖିବାକ୍ଷଣି ତାଙ୍କର ଚିନ୍ତା ସବୁ ଅନ୍ତର୍ଦ୍ଧାନ ହୋଇଯାଉଥିଲା । ଏତେ ବିଶ୍ୱାସ ତାଙ୍କଠାରେ !!!

- ୪ -

*ନରେନ୍ଦ୍ର ବିସ୍ମିତ ନୟନରେ ଶ୍ରୀରାମକୃଷ୍ଣଙ୍କୁ ଚାହିଁ ଭାବୁଥିଲେ, ''ବାପରେ ବାପ ! କି ଦେହାତୀତ ଜ୍ଞାନାବସ୍ଥା !!! ଅଦ୍ୱୈତ ବେଦାନ୍ତର କି ଚମତ୍କାର ଉପଲବ୍ଧି ? ଅଦ୍ୱୈତ ବେଦାନ୍ତର ଇଏ କ'ଣ ମୂର୍ତ୍ତିମନ୍ତ ପ୍ରତୀକ ?*

ଶ୍ରୀରାମକୃଷ୍ଣଙ୍କର ଅନ୍ତିମ ଦିନ ଯେତେ ପାଖେଇ ଆସୁଥିଲା, ସେତେ ସେ ଶାନ୍ତ ଓ ସ୍ଥିର ଚିତ୍ତରେ ଅଧିକ ଶକ୍ତିସମ୍ପନ୍ନ ହୋଇ ପିଲାମାନଙ୍କର ଆଧ୍ୟାତ୍ମିକ ଜୀବନକୁ ଉଦ୍ଦୀପ୍ତ ଓ ପ୍ରଜ୍ୱଳିତ

Digitized by srujanika@gmail.com

କରୁଥିଲେ । ପ୍ରତ୍ୟେକ ସନ୍ଧ୍ୟାରେ ସେ ନିଜ ପାଖରେ ଦୁଇ ତିନିଘଣ୍ଟା ନରେନ୍ଦ୍ରଙ୍କୁ ବସାଇ ଅନ୍ତିମ ଉପଦେଶନ ଶୁଣାଉଥିଲେ - ବିଭିନ୍ନ ପ୍ରକାର ଆଧ୍ୟାତ୍ମିକ ସାଧନା କିପରି ସମ୍ପାଦନ କରିବେ - ଗୁରୁଭାଇମାନଙ୍କୁ କିପରି ଏକତ୍ର ରଖି ସେମାନଙ୍କୁ ଆଧ୍ୟାତ୍ମିକ ମାର୍ଗରେ ଅଗ୍ରସର କରାଇବେ - ତ୍ୟାଗ ଓ ବୈରାଗ୍ୟ ଜୀବନଯାପନ କରିବାଲାଗି ସେ କିପରି ସେମାନଙ୍କୁ ପଥପ୍ରଦର୍ଶନ କରାଇବେ, ଏମିତି ଅନେକ ବିଷୟବସ୍ତୁ ।

ନରନ୍ଦ୍ରଙ୍କ ମନ, ଚିନ୍ତା ଓ ଚେତନାରେ ଶ୍ରୀରାମକୃଷ୍ଣ ଛାଇ ହୋଇଗଲେଣି । ଏକଦା ଶ୍ରୀରାମକୃଷ୍ଣଙ୍କର ପରମଭକ୍ତ ତଥା ବିଦ୍ୱାନ ପଣ୍ଡିତ ଶଶଧର ତର୍କଚୂଡ଼ାମଣୀ କାଶିପୁର ଉଦ୍ୟାନବାଟିରେ ହେଲେ ଉପସ୍ଥିତ । ଶ୍ରୀରାମକୃଷ୍ଣଙ୍କ ସହ ଆଲୋଚନା ସମୟରେ ସେ କହିଲେ "ଠାକୁର, ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି ଯେ ଆପଣଙ୍କ ଭଳି ଶୁଦ୍ଧ ମହାତ୍ମାଗଣ ଇଚ୍ଛା ମାତ୍ରକେ ନିଜର ଶାରୀରିକ ବ୍ୟାଧି ଆରୋଗ୍ୟ କରିପାରିବେ । ଆପଣ ଯଦି ନିଜ ଶରୀରର ବ୍ୟାଧିଗ୍ରସ୍ତ ସ୍ଥାନରେ ମନକୁ ଏକାଗ୍ର କରିବେ, ନିଶ୍ଚିତଭାବେ ବ୍ୟାଧିର ଆରୋଗ୍ୟ ହେବ ଇ ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଠାକୁର, ଆପଣ ଥରେ ଚେଷ୍ଟା କରନ୍ତୁ ନା ? ଶ୍ରୀରାମକୃଷ୍ଣଙ୍କ ଓଷ୍ଠରେ ହାସ୍ୟ ଲହରିତ ହେଲା, ସେ ବିନା ଦ୍ୱିଧାରେ ସହସା କହି ଉଠିଲେ, "ଆପଣ ଜଣେ ବିଦ୍ୱାନ ପଣ୍ଡିତ, ତଥାପି ଏଭଳି ଅସାର କଥା କହି ପାରୁଛନ୍ତି ? ମୁଁ ସବୁଦିନ ପାଇଁ ମୋର ମନକୁ ଈଶ୍ୱରଙ୍କଠାରେ ଅର୍ପଣ କରିସାରିଛି । ମନକୁ ସେଠାରୁ ଫେରାଇ ଆଣି ପଚାସଢ଼ା ମାଂସ ଓ ରକ୍ତର ଏହି ପଞ୍ଜୁରୀ ଉପରେ ମୁଁ କିପରି ଏକାଗ୍ର କରି ପାରିବି ? ପଣ୍ଡିତ ପ୍ରବର ନୀରବ ରହିଲେ ।

ଅସହାୟ ପରିସ୍ଥିତିରେ ପଣ୍ଡିତଙ୍କ ପରାମର୍ଶ ନରେନ୍ଦ୍ରଙ୍କୁ ଏକ ସାହାରା ଭଳି ପ୍ରତୀୟମାନ ହେଲା । ବୁଡ଼ିଯାଉଥିବା ଲୋକର କୁଟା ଖିଅଟିଏ ସାହାରା ଭଳି ନରେନ୍ଦ୍ର ତତ୍‌କ୍ଷଣାତ୍ ଶ୍ରୀରାମକୃଷ୍ଣଙ୍କ ନିକଟରେ ପ୍ରାର୍ଥନା କରି କହିଲେ, "ଠାକୁର, ଅନ୍ତତଃପକ୍ଷେ ଆମ କେତେଜଣଙ୍କ ପାଇଁ ଏହି ବ୍ୟାଧିରୁ ଆପଣଙ୍କୁ ମୁକ୍ତ ହେବାକୁ ପଡ଼ିବ", ଶ୍ରୀରାମକୃଷ୍ଣ ବାଳଭକ୍ତମାନଙ୍କର ଶ୍ରଦ୍ଧା ପରିଲକ୍ଷିତ କରି କହିଲେ, "ବାବା, ତୁମେ କ'ଣ ଭାବୁଛ ଯେ ସ୍ୱଇଚ୍ଛାରେ ଏହିରୋଗ ମୁଁ ଭୋଗ କରୁଛି ? ହଁ ମୁଁ ଏହା ଭଲ କରିଦେବି, ତଥାପି ଏହା ରହିବ । ଦିବ୍ୟ ଜନନୀଙ୍କ ଇଚ୍ଛା ଉପରେ ସବୁକିଛି ନିର୍ଭର କରେ ।"

"ଆପଣ ଦୟାକରି ଆରୋଗ୍ୟ ନିମନ୍ତେ ଦିବ୍ୟ ଜନନୀଙ୍କୁ ପ୍ରାର୍ଥନା କରନ୍ତୁ; ଆପଣଙ୍କ ପ୍ରାର୍ଥନା ଶୁଣି ସେ କେବେ ବି ରହି ପାରିବେ ନାହିଁ । ନିଶ୍ଚୟ ଭଲ କରିଦେବେ ।" ନରେନ୍ଦ୍ର ଏକା ନିଃଶ୍ୱାସରେ କହିଗଲେ ।

ଶ୍ରୀରାମକୃଷ୍ଣ ଉତ୍ତର ଦେଲେ, "ଏଭଳି କହିବା ଭାରି ସହଜ ରେ ନରେନ୍; କିନ୍ତୁ ଏଭଳି ଜିନିଷ ମୁଁ ମାଗି ପାରିବି ନାହିଁ ।"

"ଆମେ ଆପଣଙ୍କୁ ଛାଡ଼ିବୁ ନାହିଁ । ଆପଣ ଅନ୍ତତଃପକ୍ଷେ ଆମ ପାଇଁ ମା'ଙ୍କୁ କହିବାକୁ ପଡ଼ିବ ।" ନରେନ୍ଦ୍ର ଜିଦ୍ ଧରି ବସିଲେ ।

Digitized by srujanika@gmail.com

ନରେନ୍ଦ୍ର ତାଙ୍କର ନୟନ ତାରା । ନରେନ୍ଦ୍ରଙ୍କର ବାଳୁତ ମନକୁ ବହଲାଇବା ପାଇଁ ଶ୍ରୀରାମକୃଷ୍ଣ କହିଲେ, ''ହଉ ହେଲାରେ ବାବା, ଦେଖେ କ'ଣ କରିହେବ ?''

କେତେ ଘଣ୍ଟାପରେ ନରେନ୍ଦ୍ର ପୁନଶ୍ଚ ଫେରି ଆସିଲେ ଶ୍ରୀରାମକୃଷ୍ଣଙ୍କ ନକଟକୁ । ଉତ୍ସୁକତା ସହ ପଚାରିଲେ, ''ଠାକୁର, ରୋଗ ବିଷୟରେ ମା'ଙ୍କୁ ପଚାରିଲେ ତ ? କ'ଣ କହିଲେ ମା ? ଶ୍ରୀରାମକୃଷ୍ଣ ବୁଝିପାରିଲେ ନରେନ୍ଦ୍ରଙ୍କର ଉଦ୍‌ବେଗର ତୀବ୍ରତା । ସଦା ହାସ୍ୟ ମୁଖମଣ୍ଡଳରେ ସେ କହିଲେ, ''ଗଳାର କ୍ଷତ ଦେଖାଇ ମୁଁ ମାଙ୍କୁ କହିଲି, ''ମା, ମୁଁ କିଛି ଖାଇପାରୁନାହିଁ । କୃପାକରି ମୋତେ ଟିକିଏ ଖାଇବାକୁ ସମର୍ଥ କର ।'' ଜଗଜ୍ଜନନୀ କାଳୀ ତୁମମାନଙ୍କ ଆଡ଼କୁ ହାତଠାରି କହିଲେ, ''କାହିଁକି ? ତୁ କ'ଣ ଅସଂଖ୍ୟ ମୁଖରେ ଖାଉନାହୁଁ ! ମା'ଙ୍କ ପ୍ରତ୍ୟୁତ୍ତରରେ ମୁଁ ଅତ୍ୟନ୍ତ ଲଜ୍ଜିତ ହେଲି, ମୋ ପାଟିରୁ ଆଉ ପଦଟିଏ କଥା ବି ସ୍ଫୁରଣ ହେଲାନାହିଁ ।''

ଶ୍ରୀରାମକୃଷ୍ଣଙ୍କର ଅପୂର୍ବ ମୁଖନିଃସୃତ ବାକ୍ୟ ଶ୍ରବଣ କରି ନରେନ୍ଦ୍ର ବିସ୍ମିତ ନୟନରେ କେବଳ ତାଙ୍କୁ ଚାହିଁ ଥିଲେ । ବାପରେ ବାପ । କି ଦେହାତୀତ ଜ୍ଞାନାବସ୍ଥା !!! ଅଦ୍ୱୈତ ବେଦାନ୍ତର କି ଚମତ୍କାର ଉପଲବ୍ଧି ? ଅଦ୍ୱୈତ ବେଦାନ୍ତର ଇଏ କ'ଣ ମୂର୍ତ୍ତିମନ୍ତ ପ୍ରତୀକ ?

ଦେହତ୍ୟାଗ ପୂର୍ବରୁ ଶ୍ରୀରାମକୃଷ୍ଣଙ୍କ ମନରେ ଯୁବଭକ୍ତଙ୍କ ହାତରୁ ଭିକ୍ଷାନ୍ନ ସେବନ କରିବାକୁ ଏକଦା ମନ ଉଚ୍ଛନ୍ନ ହେଲା । ଦ୍ୱାର ଦ୍ୱାର ବୁଲି ମହାତ୍ୟାଗୀ ସନ୍ନ୍ୟାସୀ ଭଳି ଭିକ୍ଷା ମାଗଣ କରିବେ ଏବଂ ସେହି ଭିକ୍ଷାନ୍ନକୁ ସେ ନିଜେ ସେବନ କରି ପରମ ସନ୍ତୋଷ ଲାଭ କରିବେ । ନରେନ୍ଦ୍ର ନିଜ ଆରାଧ୍ୟ ଦେବଙ୍କର ଅଭିଳାଷ ପୂରଣ କରିବା ନିମନ୍ତେ ଅନ୍ୟ ଯୁବଭକ୍ତଙ୍କ ଗହଣରେ, ପ୍ରଭୁଙ୍କ ନାମ ତୁଣ୍ଡରେ ଉଚ୍ଚାରଣ କରି ଦ୍ୱାର ବୁଲି ଭିକ ମାଗିଲେ । ପିଲାଙ୍କର ଏଭଳି ବେଶ ଦେଖି କେତେକ ଲୋକ ସେମାନଙ୍କୁ ତିରସ୍କାର କରି କହିଲେ, ''ସଂସାରରେ ନିଜ କର୍ତ୍ତବ୍ୟ ଅବହେଳା କରି, ତୁମେ ପିଲାମାନେ ଭିକ୍ଷା ମାଗଣ କରୁଛ, ଲାଜ ଲାଗୁନି ।'' ଅନ୍ୟ କେତେଜଣ ପିଲାମାନଙ୍କର ଏତାଦୃଶ ଭିକ୍ଷା ମାଗଣକୁ ଦେଖି କାନ୍ଦି ପକାଇଲେ । ଯାହା ହେଉ ଭିକ୍ଷାରୁ ଯେଉଁ ଦ୍ରବ୍ୟ ସେମାନଙ୍କୁ ମିଳିଥିଲା, ତାହା କାଶିପୁର ଉଦ୍ୟାନରେ ରନ୍ଧନ କରି ଶ୍ରୀରାମକୃଷ୍ଣଙ୍କର ସେବନ ନିମନ୍ତେ ପରଷି ଦେଲେ । ଶ୍ରୀରାମକୃଷ୍ଣ ଅତ୍ୟନ୍ତ ଆନନ୍ଦିତ ହୋଇ ସେଥିରୁ କିଛି ଅଂଶ ନେଇ ମୁହଁରେ ମାରିଲେ ଏବଂ କହିଲେ, ''ବେଶ ଭଲ କାର୍ଯ୍ୟକରିଛ । ଏହି ଖାଦ୍ୟ ଅତ୍ୟନ୍ତ ଶୁଦ୍ଧ ।'' ଶ୍ରୀରାମକୃଷ୍ଣଙ୍କ ମାନସଦର୍ଶନରେ ଯୁବଭକ୍ତମାନଙ୍କର ସନ୍ନ୍ୟାସୀ ରୂପ ଏବଂ ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗଣର ଭବିଷ୍ୟତ ଦୃଶ୍ୟ ନାଚି ଉଠିଲା । ସେ ଆଶ୍ୱସ୍ତ ହେଲେ ।

ଆଉ କେତୋଟି ଦିନ ପରେ ଶ୍ରୀରାମକୃଷ୍ଣ ଇହଲୀଳା ସମ୍ବରଣ କରିବେ । କର୍କଟ ବ୍ୟାଧିର ପ୍ରଚଣ୍ଡ ରୂପ ତାଙ୍କ ଶରୀରକୁ କ୍ଷୀଣ କରିଦେଲେଣି । ମୁଖରୁ ବାକ୍ୟ ସ୍ଫୁରଣ ହେଉନାହିଁ । ଏହି ବିଷମ ଅବସ୍ଥାରେ ସେ ନରେନ୍ଦ୍ରଙ୍କୁ ନିଜ ପାଖକୁ ଡାକିଲେ । ହଠାତ୍ ଖଣ୍ଡିଏ କାଗଜରେ ନିଜ ହାତରେ ଲେଖିଦେଲେ ''ନରେନ୍ ଅନ୍ୟମାନଙ୍କୁ ଶିକ୍ଷା ଦେବ ।'' ଏବଂ କାଗଜଟିକୁ ନରେନ୍ଦ୍ରଙ୍କୁ ବଢ଼ାଇ ଦେଲେ । ନରେନ୍ଦ୍ର ତାଙ୍କର ନିର୍ଦ୍ଦେଶନାମାକୁ ପଢ଼ି ଚମକି ଉଠିଲେ । ବିଚଳିତ କଣ୍ଠରେ ସେ କହିଲେ, ''ଠାକୁର, ନା ନା ମୁଁ ପାରିବି ନାହିଁ ।'' ରାଜାଧିରାଜ ବିଶ୍ୱବ୍ରହ୍ମାଣ୍ଡର ଚକ୍ରବର୍ତ୍ତୀ ଆଜି କାଙ୍ଗାଳ ବେଶରେ ଅବତୀର୍ଣ୍ଣ । ତାଙ୍କର ଆଦେଶନାମାକୁ କିଏ ବା ଅବଜ୍ଞା

Digitized by srujanika@gmail.com

କରିପାରିବ ! ଶ୍ରୀରାମକୃଷ୍ଣ ମୃଦୁ ମୃଦୁ ହସି କହିଲେ, ''ତୋତେ କରିବାକୁ ପଡ଼ିବ । ତୋ ହାଡ଼ କରିବ ।'' ଏହା ପୂର୍ବରୁ ମଧ୍ୟ ସେ ନରେନ୍ଦ୍ରଙ୍କୁ ସୂଚନା ଦେଇଥିଲେ, ''ଠିକ୍ ସମୟରେ ମୋର ସିଦ୍ଧି ତୋ ଭିତରେ ପ୍ରକଟିତ ହେବ । ତୁ ହିଁ ଅନେକ ସଂସାରାସକ୍ତ ମଣିଷଙ୍କୁ ଭବିଷ୍ୟତରେ ଆଧ୍ୟାତ୍ମିକ ମଣିଷରେ ପରିଣତ କରିବୁ । ତୁ ହେବୁ ବିଶ୍ୱଗୁରୁ । ତୋ ପଦପ୍ରାନ୍ତରେ ଅଗଣିତ ମଣିଷ ଆଶ୍ରୟ ନେବେ ।''

- ୪ -

*ନରେନ୍‌ରେ, ଆଜି ସବୁକିଛି ତୋତେ ଦାନ କରି ମୁଁ କପର୍ଦ୍ଦକ ଶୂନ୍ୟ ଫକିର ହୋଇଗଲି । ଦେଖ, ଆଜି ଯେଉଁ ମହାଶକ୍ତି ତୋ ଭିତରେ ମୁଁ ସଞ୍ଚାର କଲି, ତଥା ପ୍ରଦାନ କଲି, ତାହା ସାହାଯ୍ୟରେ ତୁ ଅନେକ ମହାନ କାର୍ଯ୍ୟ ସମ୍ପାଦନ କରିବୁ । କିନ୍ତୁ କାର୍ଯ୍ୟ ସମାପ୍ତି ପରେ, ତୁ ଯେଉଁଠାରୁ ଆସିଥିଲୁ, ସେଠାକୁ ଫେରିଯିବୁ ।*

ଶ୍ରୀରାମକୃଷ୍ଣ ମାନବୀୟ ଲୀଳା ସାଙ୍ଗ କରିବାକୁ ମନସ୍ଥ କରି ସାରିଲେଣି । ମହା ସମାଧିର ତିନି ଚାରିଦିନ ପୂର୍ବରୁ ନିଜ ଶଯ୍ୟା ନିକଟକୁ ସେ ନରେନ୍ଦ୍ରଙ୍କୁ ଡାକିଲେ । ଯେଉଁ ଆଧ୍ୟାତ୍ମିକ ରାଜ୍ୟ ନିଜ ସାଧନା ଓ ତପସ୍ୟା ଦ୍ୱାରା ଅଧିକୃତ କରିଛନ୍ତି, ସେହି ରାଜ୍ୟର ରାଜ ସିଂହାସନରେ ଅଭିଷିକ୍ତ କରିବେ ନରେନ୍ଦ୍ରଙ୍କୁ ଏବଂ ତାଙ୍କୁ ସମର୍ପଣ କରିବେ ନିଜର ସମସ୍ତ ଶକ୍ତି । ନରେନ୍ଦ୍ର ଉପନୀତ ହେଲେ । ସେ ତାଙ୍କୁ ହାତଠାରି ଡାକିଲେ ନିଜ ପାଖରେ ବସିବାକୁ । ଶ୍ରୀରାମକୃଷ୍ଣ ଏକ ଲୟରେ ନରେନ୍ଦ୍ରଙ୍କୁ ଚାହୁଁ ଚାହୁଁ ଗଭୀର ସମାଧି ମଗ୍ନ ହେଲେ । ଇତ୍ୟବସରରେ ନରେନ୍ଦ୍ର ହଠାତ୍ ଏକ ଅପୂର୍ବ ଅନୁଭବରେ ହେଲେ ଶିହରିତ । ସତେକି ଇଲେକ୍ଟ୍ରିକ୍ କରେଣ୍ଟ ଭଳି ଏକ ସୂକ୍ଷ୍ମ ଶକ୍ତି ପ୍ରବାହ ଶ୍ରୀରାମକୃଷ୍ଣଙ୍କଠାରୁ ନିର୍ଗତ ହୋଇ ନରେନ୍ଦ୍ରଙ୍କ ଭିତରକୁ ପ୍ରବେଶ କଲା ! ସେହି ସୂକ୍ଷ୍ମ ଶକ୍ତି ପ୍ରବାହ ଏଭଳି ଥିଲା ଶକ୍ତିଶାଳୀ, ଯାହା ନିମିଷକରେ ନରେନ୍ଦ୍ରଙ୍କୁ ଚେତନା ଶୂନ୍ୟ କରିଦେଲା । ନରେନ୍ଦ୍ର ସେଠାରେ ବାହ୍ୟ ଜ୍ଞାନ ହରାଇ ବସିଲେ । ଆଉ ସବୁ କ'ଣ ସେଠାରେ ଘଟିଗଲା, ତାହା ନରେନ୍ଦ୍ର ଅବଶ୍ୟ ଜାଣିପାରି ନ ଥିଲେ ।

କିୟତ୍ ମୁହୂର୍ତ୍ତ ଅତିକ୍ରାନ୍ତେ, ନରେନ୍ଦ୍ରଙ୍କ ଚେତା ଫେରିଲା । ସେ ଚାହିଁଲେ ଶ୍ରୀରାମକୃଷ୍ଣଙ୍କୁ, କିନ୍ତୁ ଇୟେ କି ଆଶ୍ଚର୍ଯ୍ୟ ଘଟଣା ! ଶ୍ରୀରାମକୃଷ୍ଣଙ୍କ ଚକ୍ଷୁଦ୍ୱୟରୁ ବହମାନ ଅଶ୍ରୁଧାରା ! ନରେନ୍ଦ୍ର ଅତ୍ୟନ୍ତ ବିଚଳିତ ହୋଇ ପଚାରିଲେ, ''ଠାକୁର, ଆପଣ କାନ୍ଦୁଛନ୍ତି ? କ'ଣ ହେଲା ? ଶ୍ରୀରାମକୃଷ୍ଣ କହିଲେ, ''ନରେନ୍‌ରେ, ଆଜି ସବୁକିଛି ତୋତେ ଦାନ କରି ମୁଁ କପର୍ଦ୍ଦକ ଶୂନ୍ୟ ଫକିର ହୋଇଗଲି । ଦେଖ, ଆଜି ଯେଉଁ ମହାଶକ୍ତି ତୋ ଭିତରେ ମୁଁ ସଞ୍ଚାର କଲି, ତଥା ପ୍ରଦାନ କଲି, ତାହା ସାହାଯ୍ୟରେ ତୁ ଅନେକ ମହାନ କାର୍ଯ୍ୟ ସମ୍ପାଦନ କରିବୁ । କିନ୍ତୁ କାର୍ଯ୍ୟ ସମାପ୍ତି ପରେ, ତୁ ଯେଉଁଠାରୁ ଆସିଥିଲୁ, ସେଠାକୁ ଫେରିଯିବୁ ।'' ଯେଉଁ ଭଗବତ କରୁଣା ଲାଭ ନିମନ୍ତେ ମୁନିଋଷିମାନଙ୍କୁ ଯୁଗ ଯୁଗ ତପସ୍ୟା କରିବାକୁ ପଡ଼େ, ଆଜି ବିନା ସାଧନା-ତପସ୍ୟାରେ ଭଗବତ ଶକ୍ତିର ଅଧିକାରୀ ହେଲେ ନରେନ୍ଦ୍ର । ଶ୍ରୀରାମକୃଷ୍ଣ ଜାଣିଥିଲେ - ନରେନ୍ଦ୍ରଙ୍କ ମାଧ୍ୟମରେ ଅନେକ

Digitized by srujanika@gmail.com

ମହାନ୍ କାର୍ଯ୍ୟ ଭବିଷ୍ୟତରେ ସମ୍ପାଦିତ ହେବ ଏବଂ ନରେନ୍ଦ୍ର ସେତେବେଳେ ଆବଶ୍ୟକ କରିବେ ପ୍ରଚଣ୍ଡ ଭଗବତ୍ ଶକ୍ତି ଯାହା ଦ୍ୱାରା ସେ ଜଗତର ମଙ୍ଗଳ ସାଧନ ନିର୍ବିଘ୍ନରେ କରିପାରିବେ । ଶ୍ରୀରାମକୃଷ୍ଣ ଆଶ୍ୱସ୍ତ ହେଲେ ମହାଶକ୍ତି ହସ୍ତାନ୍ତର ହେତୁ ।

ଅନ୍ୟପକ୍ଷରେ ଭଗବତ ଶକ୍ତିସମ୍ପନ୍ନ ନରେନ୍ଦ୍ରଙ୍କ ତାର୍କିକ ମନରେ ଶ୍ରୀରାମକୃଷ୍ଣଙ୍କୁ ଅବତାର ଭାବେ ଗ୍ରହଣ କରିବା ଭଳି ନକରାତ୍ମକ ଚିନ୍ତାରେ ପରିବର୍ତ୍ତନ ଘଟିଲା ନାହିଁ । ତାଙ୍କର ଜ୍ଞାନ ଗର୍ବିତ ଓ ତାର୍କିକ ମନ ବହୁ ପ୍ରଶ୍ନ ବାଣରେ ଜର୍ଜରିତ ହୋଇ ଉଠୁଥିଲା । ଇଏ କ'ଣ ସତରେ ଅବତାର ? ଇଏ କ'ଣ ନର-ନାରାୟଣ, ବୈକୁଣ୍ଠ ଧାମରୁ ଅବତରଣ କରି ଆସିଛନ୍ତି - ଜଗତର କଲ୍ୟାଣ ପାଇଁ ? ଦୁଃଖ କଷଣରୁ ମାନବକୁ ଉଦ୍ଧାର କରି, ସେମାନଙ୍କୁ ଭଗବତ୍ ଦର୍ଶନ କରାଇଦେବା ନିମନ୍ତେ, ସତରେ କ'ଣ ଏହି ମାନବ ଦୁଃସାଧ ବ୍ୟାଧି ଭୋଗୁଛନ୍ତି ? କିଏ ଏହି ମହାପୁରୁଷ ? ଚିହ୍ନି ମଧ ଚିହ୍ନି ହେଉନାହିଁ ।

- ୬ -

*ଆରେ ନରେନ୍, ତଥାପି ତୁ ବିଶ୍ୱାସ କରୁନୁ । ସେ ଯିଏ ରାମ ହୋଇଥିଲେ ଏବଂ ସେ ଯିଏ କୃଷ୍ଣ ହୋଇଥିଲେ, ସେ ହିଁ ନିଜେ ଏଥର ଶ୍ରୀରାମକୃଷ୍ଣ ଭାବେ ଏହି ଶରୀରରେ ଅବସ୍ଥିତ । କିନ୍ତୁ ତୋର ବେଦାନ୍ତ ମତରେ ନୁହେଁ । ବେଦାନ୍ତ ଅନୁସାରେ ତ ପ୍ରତ୍ୟେକ ଆତ୍ମା ଈଶ୍ୱର । ହଁ, ହଁ ରେ ନରେନ୍, ଏହା ବାସ୍ତବରେ ସତ୍ୟ ।*

ଶ୍ରୀରାମକୃଷ୍ଣଙ୍କ କୋଠରିରେ ନରେନ୍ଦ୍ରଙ୍କ ସମେତ ଅଳ୍ପ କେତେକ ଭକ୍ତ ଦଣ୍ଡାୟମାନ । ମରଶରୀର ତ୍ୟାଗ କରି ଅଳ୍ପ ଦିନ ପରେ ସେ ଚାଲିଯିବେ । ରାତ୍ରିର ଗଭୀରତା କ୍ରମଶଃ ବଢୁଥିଲା । କର୍କଟ ରୋଗର ଯନ୍ତ୍ରଣା ଓ ବେଦନାରେ ସେ ଛଟପଟ । ତଥାପି ତାଙ୍କର ମୁହଁରେ ଖେଳୁଥିଲା ହସ । ନରେନ୍ଦ୍ର ନିର୍ନିମେଷ ନୟନରେ ଚାହୁଁ ଚାହୁଁ ଭାବୁଥିଲେ, ''ହେ ଠାକୁର, ଲୋକେ କହନ୍ତି ଆପଣ ଈଶ୍ୱରଙ୍କ ଅବତାର । ଆପଣ ବି କୁହନ୍ତି 'ମୋ ବାପା ଗୟାରେ ଯାହାକୁ ଦର୍ଶନ କରିଥିଲେ ସେ ଏହି ଦେହ ଭିତରେ ବିରାଜିତ ।'' ବର୍ତ୍ତମାନ ଆପଣ ପ୍ରଚଣ୍ଡ ଅକଥନୀୟ ଯନ୍ତ୍ରଣାରେ ଜର୍ଜରିତ, ଦେହ ଆପଣଙ୍କର କ୍ଷୀଣ ଓ ମୁମୁର୍ଷାବସ୍ଥା ।'' ଏତାଦୃଶ ଭାବନା ଭିତରେ ବିଜୁଳି ପରାୟ ଏକ ଭାବନା ନରେନ୍ଦ୍ରଙ୍କ ମନରେ ଉଦ୍ଭାସିତ ହୋଇଉଠିଲା । ସେ ମନେ ମନେ କହିବାକୁ ଲାଗିଲେ, ''ଏହି ଦୁଃଖ, ଯନ୍ତ୍ରଣା ଓ ବେଦନା ଭିତରେ ଯଦି ଆପଣ ଥରଟିଏ ମାତ୍ର କହି ଦିଅନ୍ତେ, ''ମୁଁ ଈଶ୍ୱରଙ୍କ ଅବତାର', ତେବେ ମୁଁ ନିଶ୍ଚୟ ବିଶ୍ୱାସ କରିବି ।''

ନରେନ୍ଦ୍ର ଏଭଳି ଚିନ୍ତାରେ ମଗ୍ନରହି ଶ୍ରୀରାମକୃଷ୍ଣଙ୍କ ଠାରୁ ଉତ୍ତର ଟିଏ ପାଇବା ଆଶାରେ ଅପଲକ ନୟନରେ ଚାହିଁଥିଲେ ଶ୍ରୀରାମକୃଷ୍ଣଙ୍କୁ । ଆଦୌ କାଳ ବିଳମ୍ବ ଘଟିଲା ନାହିଁ । ତତ୍କ୍ଷଣାତ୍ ଶ୍ରୀରାମକୃଷ୍ଣ ନରେନ୍ଦ୍ରଙ୍କ ଆଡ଼କୁ ଚାହିଁଲେ, ସମସ୍ତ ପ୍ରକାର ଶାରୀରିକ କଷ୍ଟ ଖାତିର ନ କରି ହସ ହସ ବଦନରେ କହିଲେ, ''ଆରେ ନରେନ୍, ତଥାପି ତୁ ବିଶ୍ୱାସ କରୁନୁ । ସେ ଯିଏ ରାମ

Digitized by srujanika@gmail.com

ହୋଇଥିଲେ ଏବଂ ସେ ଯିଏ କୃଷ୍ଣ ହୋଇଥିଲେ, ସେ ହିଁ ନିଜେ ଏଥର ଶ୍ରୀରାମକୃଷ୍ଣ ଭାବେ ଏହି ଶରୀରରେ ଅବସ୍ଥିତ । କିନ୍ତୁ ତୋର ବେଦାନ୍ତ ମତରେ ନୁହେଁ । ବେଦାନ୍ତ ଅନୁସାରେ ତ ପ୍ରତ୍ୟେକ ଆତ୍ମା ଈଶ୍ୱର । ହଁ ହଁ ରେ ନରେନ୍, ଏହା ବାସ୍ତବରେ ସତ୍ୟ ।''

ନରେନ୍ଦ୍ର ଏଭଳି ଯୁଗାନ୍ତକାରୀ ଘୋଷଣାରେ ହେଲେ ବିସ୍ମୟାଭିଭୂତ ଓ ନିର୍ବାକ । ସେ ଶ୍ରୀରାମକୃଷ୍ଣଙ୍କୁ ବିସ୍ଫାରିତ ନୟନରେ ଚାହିଁ ଭାବିଲେ, ''ବାସ୍ତବରେ ମୁଁ ନିର୍ବୋଧ । ଏଭଳି ଗୁରୁଙ୍କୁ ଏତେଦିନ ହେଲା ମୁଁ ସନ୍ଦେହ କରି ଆସୁଥିଲି । କେତେ ମୁଁ ତାଙ୍କୁ ପରୀକ୍ଷା କରିଛି, କେତେ ଯେ ତାଙ୍କୁ ମୁଁ ବିଦ୍ରୁପ ଉପହାସ କରିଛି, ବୁଢ଼ା ବ୍ରାହ୍ମଣ, ପାଗଳ ବ୍ରାହ୍ମଣ, ମୂର୍ଖ ବ୍ରାହ୍ମଣ କହି କେତେ ଯେ ତାଙ୍କୁ ମୁଁ ଅପମାନ କରିଛି । ତଥାପି ମୋତେ ତାଙ୍କ ପ୍ରେମ ଓ ସ୍ନେହରୁ ବଞ୍ଚିତ କରି ନାହାନ୍ତି । କେତେବାର ସେ ମୋ ସମ୍ମୁଖରେ ପ୍ରକଟିତ ହୋଇଥିଲେ । ତଥାପି ମୁଁ ତାଙ୍କୁ ଅବତାର ଭାବେ ଗ୍ରହଣ କରୁ ନ ଥିଲି । ଧନ୍ୟ ଆପଣଙ୍କର ମୋ ପ୍ରତି ପ୍ରେମ ଓ ଶ୍ରଦ୍ଧା । ଆପଣଙ୍କୁ ମୋର ଶତକୋଟି ପ୍ରଣାମ ।'' ଶ୍ରୀରାମକୃଷ୍ଣଙ୍କ ମୁଖରୁ କେଇପଦ ନିଃସୃତ ବାକ୍ୟ ଭକ୍ତଗଣଙ୍କ ମନରେ ବିଶ୍ୱାସ ଜନ୍ମାଇଲା ଯେ ଅତୀତରେ ଯେଉଁ ଈଶ୍ୱରୀୟସତ୍ତା ପୁରୁଷୋତ୍ତମ, ଯୁଗର ଆବଶ୍ୟକତା ଅନୁଯାୟୀ ମାନବ ରୂପ ନେଇ ଏହି ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ, ସେହି ସତ୍ତା ଆଜି ଶ୍ରୀରାମକୃଷ୍ଣ ରୂପରେ ସେମାନଙ୍କ ସମ୍ମୁଖରେ ବିରାଜିତ ।

ଶେଷ ଦୁଇଦିନ ଥିଲା ଭକ୍ତମାନଙ୍କ ପାଇଁ ଅତ୍ୟନ୍ତ କରୁଣ ଓ ଦୁଃଖପୂର୍ଣ୍ଣ । ସେମାନେ ଜାଣନ୍ତି ଯେ ଯେକୌଣସି ମୁହୂର୍ତ୍ତରେ ଆରାଧ୍ୟ ଗୁରୁଙ୍କର ମହାପ୍ରୟାଣ ହୋଇଯିବ । ସମସ୍ତଙ୍କର ଉତ୍କଣ୍ଠିତ ପ୍ରାଣ ଡହଳ ବିକଳ ହେଉଥିଲା । ଅଗଷ୍ଟ ୧୫, ୧୮୮୬ । **ଡାକ୍ତର ନବୀନ ପାଲ୍** ଠାକୁରଙ୍କୁ ପରୀକ୍ଷା କରିବା ପାଇଁ ପହଞ୍ଚିଲେ । ଶ୍ରୀରାମକୃଷ୍ଣ ତାଙ୍କୁ ଚାହିଁ କହିଲେ, ''ଡାକ୍ତର ମହାଶୟ, ଆଜି ମୋର ଯନ୍ତ୍ରଣା ଓ ପୀଡ଼ା ବହୁତ ଅସହ୍ୟ । କୌଣସି ଔଷଧ କାଟୁ କରୁନାହିଁ । ଏହିରୋଗ ଆଉ ଭଲ ହେବ ନାହିଁ । ଡାକ୍ତରବାବୁ ସତେକି ମୁଁ ହାଣ୍ଡି ହାଣ୍ଡି ଭାତ ଓ ଡାଲି ଖାଇଛି ବୋଲି ମୁଁ ଅନୁଭବ କରୁଛି ।'' ଡାକ୍ତର ନୀରବ ରହିଲେ ।

- ୭ -

*ମା ତୁମକୁ ଚିହ୍ନିବା ଭାରି କଷ୍ଟ । ଦକ୍ଷିଣେଶ୍ୱରର ଅଣ ଓସାରିଆ ସଙ୍କୁଚିତ ନହବତ୍ କୋଠରିରେ ସବୁ ଦୁଃଖ ବେଦନାକୁ ସହି, ଯେଉଁ ଅସୀମ ମାତୃତ୍ୱର ପରାକାଷ୍ଠା ତୁମେ ଦେଖାଇଛ, ତାହା କ'ଣ ଆମେ ଭୁଲିଯିବୁ !! ନରେନ୍ ବୁଟ ଡାଲି ଖାଏ, ପରଟା ଭଲପାଏ, ସୁଜି ହାଲୁଆ ତା'ର ପ୍ରିୟ, ସବୁ ନିଜ ହାତରେ ତିଆରି କରି ଖାଇବାକୁ ମୋତେ ଦେଉଥିଲ । ମୁଁ କେବଳ ନୁହେଁ ମା, ସବୁ ବାଳକ ଯେଉଁମାନେ ଠାକୁରଙ୍କ ପାଖରେ ରହି ସାଧନା ଓ ତପସ୍ୟାରେ ମଗ୍ନ ରହୁଥିଲେ, ସମସ୍ତଙ୍କ ପେଟରେ କଥା ତୁମେ ଜାଣିପାରି, ସମସ୍ତଙ୍କୁ ଭୁରି ଭୋଜନ କରାଉଥିଲ ।*

Digitized by srujanika@gmail.com

ସନ୍ଧ୍ୟା ନଇଁ ଆସୁଥିଲା । ଶ୍ରୀରାମକୃଷ୍ଣ ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ଅନୁଭବ କଲେ । ସେ ହଠାତ୍ ସମାଧି ମଗ୍ନ ହେଲେ । କିନ୍ତୁ ଏହି ସାମାଧି ଅନ୍ୟ ଦିନମାନଙ୍କର ସମାଧି ଅପେକ୍ଷା ପୃଥକ ଥିଲା । ନରେନ୍ଦ୍ର ''ହରି ଓମ୍ ତତ୍‌ସତ୍'' ଗାନ କରିବାଲାଗି ଭକ୍ତମାନଙ୍କୁ ନିର୍ଦ୍ଦେଶ ଦେଲେ । ଏତାଦୃଶ ଉଚ୍ଚାରଣ ବହୁ ସମୟ ଧରି ଚାଲିଲା । ଅର୍ଦ୍ଧରାତ୍ରି ପରେ, ଶ୍ରୀରାମକୃଷ୍ଣଙ୍କର ଭୌତିକ ଜଗତାଭିମୁଖି ଜ୍ଞାନ ଫେରିଆସିଲା ଏବଂ ମୃଦୁ ସ୍ୱରରେ କହିଲେ, ''ମୋତେ ଭାରି ଭୋକ ।'' ସେ ଅଳ୍ପ କ୍ଷୀରି ସେବନ କଲେ । ସେ ଅପେକ୍ଷାକୃତ ସୁସ୍ଥ ଜଣା ପଡୁଥିଲେ । ପାଞ୍ଚ ଛ'ଟି ତକିଆକୁ ଆଉଜି ସେ ମୃଦୁ ସ୍ୱରରେ ନରେନ୍ଦ୍ରଙ୍କ ସହ କଥାବାର୍ତ୍ତା ହେଲେ । ଶେଷ ଉପଦେଶ ନରେନ୍ଦ୍ରଙ୍କୁ ପ୍ରଦାନ କଲେ । କାଳୀ, କାଳୀ, କାଳୀ ତିନିବାର ଉଚ୍ଚାରଣ କରି ଧୀରେ ଶଯ୍ୟାରେ ଶୟନ କଲେ । ଠିକ୍ ଦୁଇ ମିନିଟ୍ ପରେ ସମଗ୍ର ଶରୀରରେ ଅପୂର୍ବ ଦିବ୍ୟ ଶିହରଣ ଖେଳିଗଲା । ଲୋମମୂଳ ଟାଙ୍କୁରି ଉଠିଲା । ନାଶାଗ୍ରରେ ତାଙ୍କର ଚକ୍ଷୁଦ୍ୱୟ ସ୍ଥିର ହେଲା, ଦିବ୍ୟ ଆନନ୍ଦରେ ମୁଖମଣ୍ଡଳ ହୋଇଉଠିଲା ଆଲୋକିତ, ଓଠରେ ଦିବ୍ୟ ହାସ୍ୟ ଲହରିତ ହେଲା । ଶ୍ରୀରାମକୃଷ୍ଣ ସେହି ରାତ୍ରିରେ (୧୬ ଅଗଷ୍ଟ, ୧୮୮୬) ମହାସମାଧିରେ ମଗ୍ନ ହେଲେ ।

ଅଗଷ୍ଟ ୧୬, ୧୮୮୬ ସୂର୍ଯ୍ୟୋଦୟ ଏକ ମହାନ୍ ଅବତାର ପୁରୁଷଙ୍କର ପ୍ରାଣହୀନ ମର ଶରୀର ଅବଲୋକନ କରି ଶତ ସହସ୍ର ବିନମ୍ର ପଣାମ ଜଣାଇଲେ । କାଶିପୁର ଉଦ୍ୟାନ ସମବେତ ବହୁ ଭକ୍ତଙ୍କର ଅଶ୍ରୁ ନିର୍ଝରରେ ସିକ୍ତ ହେଲା । ହରିନାମ ସଂକୀର୍ତ୍ତନ ଭିତରେ ଓମ୍, କ୍ରସ, ଅର୍ଦ୍ଧଚନ୍ଦ୍ର ଓ ଅନ୍ୟାନ୍ୟ ଧର୍ମ ଓ ସମ୍ପ୍ରଦାୟର ଚିହ୍ନ ବହନ କରୁଥିବା ଧ୍ୱଜା ଧାରଣ କରି ବହୁ ଭକ୍ତ ପୁଷ୍ପ, ଚନ୍ଦନ ଓ ସିନ୍ଦୁରରେ ସଜ୍ଜିତ ମର ଶରୀରକୁ ନେଇଗଲେ କାଶିପୁରର ଅନତୀଦୂର ଶ୍ମଶାନ ଘାଟକୁ । ଶ୍ରୀରାମକୃଷ୍ଣଙ୍କର ମର ଶରୀରକୁ ଗଙ୍ଗାଜଳରେ ଅବଗାହନ କରି, ନୂତନ ଗୈରିକ ବସ୍ତ୍ର ପରିଧାନ କରାଇ ଏବଂ ବୈଦିକ ରୀତିରେ ପୂଜାର୍ଚ୍ଚନା କରି, ପୁଷ୍ପ ସଜ୍ଜିତ କାଷ୍ଠ ଭାଡ଼ିଉପରେ ରଖିଲେ । ମନ୍ତ୍ର ଉଚ୍ଚାରଣ, ହରିବୋଲ ଓ ହୁଳହୁଳି ପବିତ୍ର ଧ୍ୱନି ଭିତରେ ଅଗ୍ନି ସଂଯୋଗ କରାଗଲା । ଘିଅ, ଧୂପ ଓ ଝୁଣା ଅର୍ପିତ ହେଲା । ଅଗ୍ନି ହୁତାଶନରେ ରୂପାନ୍ତରିତ ହେଲା । ଭକ୍ତମାନଙ୍କର 'ଜୟ ଶ୍ରୀରାମକୃଷ୍ଣ' ଉଚ୍ଚାରଣରେ ନିମିଷକ ମଧ୍ୟରେ ମରଶରୀର ପାଉଁଶରେ ପରିଣତ ହେଲା । ଏକ ମହାନ୍ ଅବତାର ପୁରୁଷଙ୍କର ଭୌତିକ ଲୀଳା ଏଠାରେ ସମାପନ ହେଲା ।

ନରେନ୍ଦ୍ର ଭକ୍ତମାନଙ୍କ ସହ ପ୍ରତ୍ୟାବର୍ତ୍ତନ କଲେ କାଶିପୁର ଉଦ୍ୟାନବାଟିକୁ । ବେଦନାଗ୍ରସ୍ତ ହୃଦୟ ଓ ଅଶ୍ରୁଳ ବିମର୍ଷ ବଦନ ସତ୍ତ୍ୱେ, ଗୁରୁଦେବ ଶ୍ରୀରାମକୃଷ୍ଣଙ୍କ ଦ୍ୱାରା ଅର୍ପିତ ଗୁରୁ ଦାୟିତ୍ୱକୁ ଅକ୍ଷରେ ଅକ୍ଷରେ ପାଳନ କରିବାର ଦାୟିତ୍ୱବୋଧ ତାଙ୍କର ମନ ଓ ପ୍ରାଣକୁ ସତେଜ ରଖିଥିଲା । ଶ୍ରୀରାମକୃଷ୍ଣଙ୍କର ଲୀଳା ସହଚରୀ ଶ୍ରୀ ସାରଦା ଦେବୀଙ୍କର ଦର୍ଶନ ନିମନ୍ତେ ପ୍ରାଣ ତାଙ୍କର ବ୍ୟାକୁଳିତ ହେଲା । ସେ ନିଃଶବ୍ଦ ପଦରେ କାଶିପୁର ଉଦ୍ୟାନବାଟିର ଉପର ମହଲାରେ ମା ଅବସ୍ଥାନ କରୁଥିବା କୋଠରି ଅଭିମୁଖେ ଆରୋହଣ କଲେ । ଶୋକାକୁଳ ମା ସାରଦା ଓଢ଼ଣା ଅବଗୁଣ୍ଠିତ ମୁଖ ଅବନତ କରି ବସିଥିଲେ । ତାଙ୍କର ମୁଖ ତ ଦର୍ଶନ ସେ କରିପାରିଲେ ନାହିଁ, ଦ୍ୱାର ଦେଶରେ ସାଷ୍ଟାଙ୍ଗ ପ୍ରଣିପାତ କଲେ ବାରମ୍ବାର ।

Digitized by srujanika@gmail.com

ତାଙ୍କର ଚକ୍ଷୁଦ୍ୱୟରୁ ବହମାନ ଅବିଶ୍ରାନ୍ତ ଅଶ୍ରୁଧାରା । କମ୍ପିତ ଓଠରେ ନରେନ୍ଦ୍ର ଭାବୁଥିଲେ, ''ମା, ଠାକୁର ଚାଲିଗଲା ପରେ ତୁମେ ହିଁ ମୋ ଆଶା ଭରସା । ଏହି ଭବସାଗରରେ ମୁଁ ଜଣେ ଦିଗଭ୍ରଷ୍ଟ ନାବିକ, ତୁମେ ହିଁ ହେବ ମୋର ଧ୍ରୁବତାରା, ଯାହାଙ୍କୁ ଲକ୍ଷ୍ୟ କରି ଠାକୁରଙ୍କର ଇପ୍‌ସିତ ଲକ୍ଷ୍ୟକୁ ମୁଁ କାର୍ଯ୍ୟରେ ରୂପାନ୍ତରିତ କରିବି । ହଁ ମା, ଗତ ରାତିରେ ଠାକୁରଙ୍କ ଦେହାନ୍ତର ଅଳ୍ପ ମୁହୂର୍ତ୍ତ ପରେ ତୁମେ ଯାହା ଅଶ୍ରୁପୂର୍ଣ୍ଣ ନୟନରେ ବାହୁନି ବାହୁନି କହୁଥିଲ, ତାହା ହିଁ ଧ୍ରୁବ ସତ୍ୟ । - ''ହେ ମା କାଳୀ, ତୁମେ କୁଆଡ଼େ ଚାଲିଗଲ ?'' ... ହିନ୍ଦୁ ପ୍ରଥାନୁସାରେ ତୁମେ ଯେତେବେଳେ ବିଧବା ବେଶ ଧାରଣ କରିବା ପାଇଁ ନିଜ ଅଙ୍ଗରୁ ଗହଣା ଓ ସଧବାର ଚିହ୍ନକୁ ଲିଭାଇ ଦେବାର ଉଦ୍ୟମ କରିବସିଲ, ସେତେବେଳେ ପରା ଠାକୁର ସ୍ୱୟଂ ଆବିର୍ଭୂତ ହୋଇ ତୁମକୁ କହିଲେ, ''କି ଗୋ, ମୁଁ କେଉଁଠିକୁ ଯାଇଛି ? ମୁଁ ପରା ଏଇଠି ଅଛି । ଗୋଟିଏ କୋଠରିରୁ ଆଉ ଗୋଟିଏ କୋଠରିକୁ ଯିବାଭଳି ।'' ସେ ପରା ତୁମ ହାତରୁ ବଳା ବାହାର ନ କରିବା ପାଇଁ ତୁମର ହାତକୁ ଧରି ପକାଇଲେ । ହଁ ମା', ମୁଁ ଆଜି ଭଲ ଭାବରେ ବୁଝିପାରିଛି ସେ ଥିଲେ ସ୍ୱୟଂ କାଳୀ । କାଳୀଙ୍କର ତ ଅନେକ ରୂପ । ଗୋଟିଏ ରୂପ ସିନା ଅନ୍ତର୍ଦ୍ଧାନ ହୋଇଗଲେ, ଆଉ ଗୋଟିଏ ରୂପ ଯେ ସ୍ୱୟଂ ତୁମେ, ଯାହାଙ୍କ ଭିତରେ ଆମେ ତାଙ୍କୁ ହିଁ ନିରନ୍ତର ଦର୍ଶନ କରିବୁ ।

ମା' ତୁମକୁ ଚିହ୍ନିବା ଭାରି କଷ୍ଟ । ଦକ୍ଷିଣେଶ୍ୱରର ଅଣ ଓସାରିଆ ସଙ୍କୁଚିତ ନହବତ୍ କୋଠରିରେ ସବୁ ଦୁଃଖ ବେଦନାକୁ ସହି, ଯେଉଁ ଅସୀମ ମାତୃତ୍ୱର ପରାକାଷ୍ଠା ତୁମେ ଦେଖାଇଛ, ତାହା କ'ଣ ଆମେ ଭୁଲିଯିବୁ !! ନରେନ୍ ବୁଟ ଡାଲି ଖାଏ, ପରଟା ଭଲପାଏ, ସୁଜି ହାଲୁଆ ତା'ର ପ୍ରିୟ, ସବୁ ନିଜ ହାତରେ ତିଆରି କରି ଖାଇବାକୁ ମୋତେ ଦେଉଥିଲ । ମୁଁ କେବଳ ନୁହେଁ ମା, ସବୁ ବାଳକ ଯେଉଁମାନେ ଠାକୁରଙ୍କ ପାଖରେ ରହି ସାଧନା ଓ ତପସ୍ୟାରେ ମଗ୍ନ ରହୁଥିଲେ, ସମସ୍ତଙ୍କ ପେଟର କଥା ତୁମେ ଜାଣିପାରି, ସମସ୍ତଙ୍କୁ ଭୁରି ଭୋଜନ କରାଉଥିଲ । ଆଧ୍ୟାତ୍ମିକ ସାଧନା ପଥରେ ପେଟପୂରା ଭୋଜନ ଅହିତକର ବୋଲି ଠାକୁରଙ୍କର ବାରମ୍ବାର ଚେତାବନୀକୁ ଭ୍ରୂକ୍ଷେପ ନ କରି, ତୁମେ କିନ୍ତୁ ଆମମାନଙ୍କୁ ଯତ୍ନ ସହକାରେ ପେଟପୂରା ଭୋଜନ କରାଇବାରେ କେବେ ବି ଅବହେଳା ପ୍ରଦର୍ଶନ କରିନାହଁ ମା । ଆମମାନଙ୍କର ଯତ୍ନ ତୁମେ ଯଦି ଦକ୍ଷିଣେଶ୍ୱର, ବରାହ ନଗର ଓ କାଶିପୁର ଉଦ୍ୟାନବାଟିରେ ନ ନେଇଥାନ୍ତ, ଅନ୍ୟମାନଙ୍କର କଥା ଛାଡ଼ନ୍ତୁ, ମୋର ବିଦ୍ରୋହୀ ମନ ଆଜି ମୋତେ କେଉଁ ପଥ ଅଭିମୁଖେ ଟାଣିନେଇ ଥାନ୍ତା, ତାହା କିଏ ଜାଣିଥାନ୍ତା ମା' ! ତୁମେ ହିଁ ଆମର ଆଶ୍ରୟଦାତ୍ରୀ, ତୁମର ପଣତ କାନି ତଳେ ଆଶ୍ରୟ ନେଇଥିବାରୁ ଆମେ ଆଜି ଜାଣିପାରିଛୁ ଯେ ଶ୍ରୀରାମକୃଷ୍ଣ ପରମହଂସ କିଏ । ମା ମୋର ଆଜି ଆଖି ଖୋଲିଯାଇଛି, ସୀତା, ସାବିତ୍ରୀ, ଦମୟନ୍ତୀ ଭଳି ପତିବ୍ରତା ସତୀ ନାରୀଙ୍କର କାହାଣୀ ଆମେ ପୁସ୍ତକରେ ପଢ଼ିଥିଲୁ, କିନ୍ତୁ ତୁମର ପବିତ୍ରତା ଓ ଏକନିଷ୍ଠ ପତିବ୍ରତାର ବାସ୍ତବ ରୂପ ନିଜ ଆଖିରେ ଦେଖି ତାହାର ମହିମା ଆମେ ଉପଲବ୍ଧି କଲୁ । ମା ଶ୍ରୀରାମକୃଷ୍ଣ ରୂପକ ଜ୍ୱଳନ୍ତ ଅଗ୍ନିର ତୁମେ ହିଁ ଦାହୀକା ଶକ୍ତି । ସମୟ ଆଉ ବେଶି ଦୂର ନାହିଁ ମା, ଯେଉଁଦିନ ତୁମେ ହିଁ ଜଗଜ୍ଜନନୀ କାଳୀଙ୍କର ମାନବୀ ରୂପ ବୋଲି କୋଟି କୋଟି ଲୋକ ବୁଝିପାରି ତୁମର ଅଭୟ ଚରଣରେ ଆଶ୍ରୟ ନେବେ । ତୁମକୁ ମା ମୋର କୋଟି କୋଟି ପ୍ରଣାମ ।



Digitized by srujanika@gmail.com

॥ ବାର ॥

# ନରେନ୍ଦ୍ରଙ୍କର ନେତୃତ୍ୱ ଏକ ଚେଲେଞ୍ଜର ସମ୍ମୁଖୀନ ହେଲା - ଉତ୍କଟ ଦାରିଦ୍ର୍ୟ ଭିତରେ ଯୁବଭକ୍ତ ଗଣଙ୍କର ସନ୍ନ୍ୟାସ ନାମକରଣ - ରାମକୃଷ୍ଣ ମଠ ଓ ମିଶନର ବୀଜ ବପନ

କାଶିପୁର ଉଦ୍ୟାନବାଟିରେ ଶ୍ରୀରାମକୃଷ୍ଣଙ୍କର ପବିତ୍ର ଦେହାବଶେଷର ପୂର୍ଣ୍ଣ କଳସିକୁ ନେଇ ଭକ୍ତମାନଙ୍କ ମଧ୍ୟରେ ମତାନ୍ତର ସୃଷ୍ଟି ହେଲା । ଗୃହୀ ଭକ୍ତଗଣ ଦେହାବଶେଷ ପୂର୍ଣ୍ଣ କଳସିକୁ ରାମଚନ୍ଦ୍ର ଦତ୍ତଙ୍କ ଦ୍ୱାରା କାଙ୍କୁରଗାଛିଠାର ନିର୍ମିତ ଯୋଗୋଦ୍ୟାନରେ ସ୍ଥାପିତ କରି, ନିତ୍ୟ ପୂଜାର୍ଚ୍ଚନା କରିବାକୁ ଇଚ୍ଛା ପ୍ରକଟ କଲେ । କିନ୍ତୁ ନରେନ୍ଦ୍ରଙ୍କ ନେତୃତ୍ୱରେ ଯୁବଭକ୍ତଗଣ ଏହାର ତୀବ୍ର ପ୍ରତିବାଦ କଲେ । ସେମାନେ ଚାହିଁଲେ କାଶିପୁର ଉଦ୍ୟାନବାଟିରେ ପବିତ୍ର କଳସି ସ୍ଥାପିତ ହେବ ଏବଂ ସେଠାରେ ପୂଜାର୍ଚ୍ଚନା ଯଥାରୀତିରେ ସମ୍ପାଦିତ ହେବ । ଏହି ବିବାଦୀୟ ପରିସ୍ଥିତିରେ, ନରେନ୍ଦ୍ର ଏକ ମୁଖ୍ୟ ଭୂମିକା ଗ୍ରହଣ କଲେ । କଳସିରୁ ଅଧା ଦେହାବଶେଷ ବାହାର କରି ଅନ୍ୟ ଏକ କଳସିରେ ରଖିଦେଲେ, ଯାହା ସେମାନେ ଭବିଷ୍ୟତରେ ମଠରେ ସ୍ଥାପିତ କରି ପୂଜାର୍ଚ୍ଚନା କରିବେ । ଗୃହୀଭକ୍ତମାନଙ୍କ ପ୍ରସ୍ତାବରେ ରାଜି ହୋଇ ପବିତ୍ର କଳସିକୁ ଅଗଷ୍ଟ ୨୩ ତାରିଖ ପବିତ୍ର ଜନ୍ମାଷ୍ଟମୀ ଦିନ କାଙ୍କୁରଗାଛିର ଯୋଗୋଦ୍ୟାନଠାରେ ଭକ୍ତଗଣଙ୍କ ଉପସ୍ଥିତିରେ ସ୍ଥାପିତ ହେଲା । ଅଗଷ୍ଟ ୩୧ ତାରିଖରେ କାଶିପୁର ଉଦ୍ୟାନବାଟିର ଚୁକ୍ତିକାଳ ସରିଯିବାକୁ ଥିଲା ଏବଂ ଗୃହୀଭକ୍ତମାନେ ଏହାର ନବୀକରଣ ବାବଦରେ ଅର୍ଥ ପ୍ରଦାନ କରିବାକୁ ମନା କରିବାରୁ ଯୁବଭକ୍ତମାନଙ୍କ ମନରେ ନୈରାଶ୍ୟର ବାଦଲ ଖେଳିଗଲା ।

ମହାସମାଧିର ସପ୍ତାହ ମଧ୍ୟରେ କାଶିପୁର ଉଦ୍ୟାନରେ ନରେନ୍ଦ୍ର ଏକ ଅଦ୍ଭୁତ ଘଟଣା ଦର୍ଶନ କଲେ - ଗୁରୁଭାଇ ହରୀଶଙ୍କ ସହ ନରେନ୍ଦ୍ର ଉଦ୍ୟାନର ଏକ ପୋଖରୀ କୂଳରେ ଦଣ୍ଡାୟମାନ ହୋଇ ଶ୍ରୀରାମକୃଷ୍ଣଙ୍କର ଦେହାନ୍ତ ସମ୍ବନ୍ଧିତ ଦୁଃଖ ଓ ବେଦନା ଉପରେ ଆଲୋଚନା କରୁଥିଲେ । ରାତ୍ରି ଘନେଇ ଆସୁଥିଲା । ପ୍ରାୟ ସମୟ ରାତ୍ର ଆଠ ଘଟିକା । ଇତ୍ୟବସରରେ ନରେନ୍ଦ୍ର ଏକ ବସ୍ତ୍ରାବୃତ ଜ୍ୟୋତିର୍ମୟ ରୂପ ହଠାତ୍ ଦର୍ଶନ କରିଲେ । ଉକ୍ତ ଅସ୍ପଷ୍ଟ ଜ୍ୟୋତିର୍ମୟ ରୂପ ଧୀରେ ଧୀରେ ସେମାନଙ୍କ ଅଭିମୁଖେ ହେଉଥିଲେ ଅଗ୍ରସର । ବୋଧହୁଏ ଶ୍ରୀରାମକୃଷ୍ଣ !!! ସେ

Digitized by srujanika@gmail.com

ସମ୍ପୂର୍ଣ୍ଣ ନୀରବ ହୋଇଗଲେ, କିନ୍ତୁ ଅନ୍ୟପକ୍ଷରେ ଏହା ଏକ ମନର ଭ୍ରମ ହୋଇଥିବ ବୋଲି ଏକ ଭାବନା ତାଙ୍କ ମନରେ ଉଦ୍ରେକ ହେଲା । ଏହି ସମୟରେ ହରୀଶ ଭୟଭୀତ ହୋଇ କହିଉଠିଲେ, ''ସେଠାରେ କିଏ ? ନରେନ୍ ଦେଖ ଦେଖ ।'' ନରେନ୍ ଉଚ୍ଚ ସ୍ୱରରେ କହିଲେ ''କିଏ ସେଠାରେ ?'' ନରେନ୍ଦ୍ରଙ୍କର ଉଚ୍ଚ ସ୍ୱର ଶୁଣି ଅନ୍ୟ ଯୁବ ଭକ୍ତଗଣ ଉଦ୍ୟାନବାଟିରୁ ନରେନ୍ଦ୍ରଙ୍କ ନିକଟକୁ ଦୌଡ଼ି ଆସିଲେ । କିନ୍ତୁ ମଲ୍ଲୀଫୁଲ ବୁଦା ଅନ୍ତରାଳେ ହଠାତ୍ ଜ୍ୟୋତିର୍ମୟ ରୂପ ଅନ୍ତର୍ଦ୍ଧାନ ହୋଇଗଲେ । ଲଣ୍ଠନ ଆଲୁଅରେ ସମସ୍ତେ ଖୋଜିଲେ କିନ୍ତୁ କିଛି ପାଇଲେ ନାହିଁ । ଏହି ଅଦ୍ଭୁତ ଜ୍ୟୋତିର୍ମୟ ରୂପର ଆବିର୍ଭାବ ନରେନ୍ଦ୍ରଙ୍କ ମନକୁ ବିଶେଷ ଭାବେ ପ୍ରଭାବିତ କରିଥିଲା ।

ପରମ ଗୃହୀଭକ୍ତ **ବଳରାମ ବୋଷ** ଦିବ୍ୟ ଜନନୀ ସାରଦାଙ୍କୁ ନିଜ ଗୃହକୁ ନେଇଗଲେ । ସେଠାରେ ସେ ଅବସ୍ଥାନ କରିବେ । ଶ୍ରୀରାମକୃଷ୍ଣଙ୍କର ଦେହାବଶେଷର ଅନ୍ୟ ଏକ କଳସି ସହିତ, ତାଙ୍କର ବ୍ୟବହୃତ ଶଯ୍ୟା, ବସ୍ତ୍ର, ଆସବାବପତ୍ର, ବାସନକୁସନ ଏବଂ ଅନ୍ୟାନ୍ୟ ମୂଲ୍ୟବାନ ଜିନିଷପତ୍ର ବଳରାମ ବାବୁଙ୍କ ଘରେ ସାଇତି ରଖିଲେ । ଉଦ୍ଦେଶ୍ୟ ଥିଲା ଯେ ଯେଉଁଦିନ ଯୁବ ସନ୍ୟାସୀମାନେ ଗୋଟିଏ ମଠ ସ୍ଥାପନ କରିବେ, ସେହିଠାରେ ରଖିବେ ନିଜ ଗୁରୁଦେବଙ୍କର ସ୍ମୃତିର ଜିନିଷପତ୍ର ଏବଂ ନିତ୍ୟ ପୂଜାର୍ଚ୍ଚନା ଆରମ୍ଭ ହେବ । ଯାହାହେଉ, ଅଗଷ୍ଟ ୩୧ ତାରିଖରେ କାଶିପୁର ଉଦ୍ୟାନବାଟି ଖାଲିକରି ସମସ୍ତେ ସେଠାରୁ ବିଦାୟ ନେଲେ । କାଶିପୁର କେବଳ ସେମାନଙ୍କ ସ୍ମୃତିପଟରେ ରହିଗଲା ।

ନରେନ୍ଦ୍ରଙ୍କର ନେତୃତ୍ୱ ନେବାର କଳା ଏକ ଚେଲେଞ୍ଜର ସମ୍ମୁଖୀନ ହେଲା । ଯୁବ ସନ୍ୟାସୀମାନଙ୍କର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ । ଠାକୁରଙ୍କର ଦେହାନ୍ତ ପରବର୍ତ୍ତୀ ଘଟଣାଗୁଡ଼ିକ ତାଙ୍କ ପାଇଁ ଅତ୍ୟନ୍ତ ଉତ୍ସାହହୀନ ଥିଲା । କଠୋର ସନ୍ୟାସ ଜୀବନଯାପନ ନିମନ୍ତେ ତାଙ୍କ ମନ ବାରମ୍ବାର ଆକର୍ଷିତ ହେଉଥିଲା । ସେ ସବୁକିଛି ତ୍ୟାଗ କରି ଚାଲିଯିବାର ଅଭିପ୍ସା ତାଙ୍କୁ ବ୍ୟତିବ୍ୟସ୍ତ କରିଦେଇଥିଲା । କିନ୍ତୁ ପରମୁହୂର୍ତ୍ତରେ ସେ ଭାବୁଥିଲେ, କିଏ ଏହି ଯୁବ ସନ୍ୟାସୀମାନଙ୍କୁ ଦିଗ୍‌ଦର୍ଶନ ଦେବ ? ଗୃହୀଭକ୍ତମାନଙ୍କଠାରୁ ସେପରି କିଛି ଆଖିଦୃଶିଆ ସାହାଯ୍ୟ ସେ ପାଇଲେ ନାହିଁ । ପଇସାଟିଏ ଦେବାତ ଦୂରର କଥା, ପଦେ ଆଶ୍ୱାସନାର ବାଣୀ ମଧ ତାଙ୍କୁ କହୁ ନ ଥିଲେ । କପର୍ଦ୍ଦକଶୂନ୍ୟ ହାତରେ ସେ କ'ଣ ଗୋଟିଏ ମଠ ପ୍ରତିଷ୍ଠା କରିପାରିବେ, ଯେଉଁଠି ଗୃହତ୍ୟାଗୀ ଯୁବ ସନ୍ୟାସୀମାନେ ସାଧନା ଓ ତପସ୍ୟା କରିବାରେ ସାହାଯ୍ୟ କରିବ । ମୁଣ୍ଡ ତାଙ୍କର ଝାଇଁ ଝାଇଁ ହୋଇଯାଉଥିଲା ।

କେତେକ ଗୃହୀଭକ୍ତଙ୍କର ପରାମର୍ଶ ଥିଲା ଯେ ''ଠାକୁର ତ ଚାଲି ଗଲେଣି, ଆଉ ମଠଫଟ କରିବାର ଆବଶ୍ୟକତା ନାହିଁ, ସେମାନେ ନିଜ ନିଜ ଘରକୁ ଫେରିଯାଇ ପାଠପଢ଼ା ଓ ଗୃହ କାର୍ଯ୍ୟରେ ମଗ୍ନ ରୁହନ୍ତୁ । ଘରେ ରହି ଠାକୁରଙ୍କ ଆଦର୍ଶରେ ନିଜକୁ ଗଢ଼ି ତୋଳନ୍ତୁ ।'' ଏତାଦୃଶ ପରାମର୍ଶ ନରେନ୍ଦ୍ରଙ୍କର ମନକୁ କେବଳ ବିଚଳିତ କଲାନାହିଁ ବରଂ ଏଭଳି ସଂସାରାସକ୍ତ ଗୃହୀଭକ୍ତଙ୍କ ବିରୋଧରେ ମନ ବିଦ୍ରୋହ କରିଉଠିଲା । ପର ମୁହୂର୍ତ୍ତରେ ମନକୁ ଆଶ୍ୱାସନା ଦେଇ ସେ କହୁଥିଲେ, ''ହେ ଠାକୁର ! ଆପଣଙ୍କର ଏହି ପୃଥିବୀ ପୃଷ୍ଠକୁ ଆଗମନର ଉଦ୍ଦେଶ୍ୟ ସଂସାରୀମାନେ

*Digitized by srujanika@gmail.com*

ବୁଝିପାରିବେ ନାହିଁ । କାମିନୀ କାଞ୍ଚନର ମୋହମାୟାରୁ ଯୁବସନ୍ନ୍ୟାସୀମାନେ ଉଠି, ବିଶ୍ୱରେ ଏକ ଅଭୂତପୂର୍ବ ଆନ୍ଦୋଳନ ଘଟାଇବେ, ଯାହାଫଳରେ ମନୁଷ୍ୟ ସମାଜ ଶାନ୍ତି ଓ ସନ୍ତୋଷରେ ବାସ କରିବେ, ତାହା ଏହି ସଂସାରୀକୀଟ ବୁଝିପାରିବେ ନାହିଁ । ତ୍ୟାଗ ଓ ସେବା ଆଦର୍ଶର ଏକ ନୂତନ ପରିଭାଷାର ବୀଜ ଯାହା ଆପଣ ଏହି କେତେଜଣ ଯୁବସନ୍ନ୍ୟାସୀଙ୍କ ହୃଦୟରେ ବପନ କରିଛନ୍ତି, ତାହା ଭବିଷ୍ୟତରେ ଏକ ବିଶାଳ ବଟବୃକ୍ଷରେ ପରିଣତ ହୋଇ କୋଟି କୋଟି ସଂସାରୀମାନଙ୍କ ହୃଦୟରେ ଆଧାତ୍ମିକ ଚେତାନାର ଉନ୍ମେଷ ଘଟାଇବ, ତାହା ଗୃହୀ ସଂସାରୀମାନେ କିପରି ଜାଣିବେ ?

ନରେନ୍ଦ୍ରଙ୍କ ମନରେ, ଯୁବ ସନ୍ନ୍ୟାସୀମାନଙ୍କ ନିମନ୍ତେ ଏକ ମଠ ସ୍ଥାପନର ଅଭିପ୍ସା କ୍ରମଶଃ ଦୃଢ଼ୀଭୂତ ହେଉଥିବା ସମୟରେ, ସେପଟେ ଶ୍ରୀରାମକୃଷ୍ଣଙ୍କ ଅତ୍ୟନ୍ତ ପ୍ରିୟ ଗୃହୀଭକ୍ତ ସୁରେନ୍ଦ୍ରନାଥ ମିତ୍ରଙ୍କର ମନ ଓ ହୃଦୟ ଆକାଶରେ ଏକ ନୂତନ ଦୃଷ୍ଟିକୋଣ ଜନ୍ମଲାଭ କରୁଥିଲା । କାଶିପୁର ଉଦ୍ୟାନବାଟିର ଖର୍ଚ୍ଚର କିଛି ଅଂଶ ସେ ପୂର୍ବରୁ ବହନ କରୁଥିଲେ ଏବଂ ଶ୍ରୀରାମକୃଷ୍ଣଙ୍କର ବ୍ୟକ୍ତିଗତ ଖର୍ଚ୍ଚ ମଧ ସେ ବହନ କରୁଥିଲେ । ଠାକୁରଙ୍କ ଦେହାନ୍ତ ପରେ ତାଙ୍କର ଚିନ୍ତା ବି ଯୁବ ସନ୍ନ୍ୟାସୀମାନଙ୍କର ସ୍ଥାୟୀ ବସବାସ ନିମନ୍ତେ ଉଚ୍ଛନ୍ନ ହେଉଥିଲା । କିନ୍ତୁ ସେ କୌଣସି ବାଟ ପାଉ ନ ଥିଲେ । ନରେନ୍ଦ୍ରଙ୍କର ମନର କଥା ସେ ଭଲ ଭାବେ ଜାଣନ୍ତି । ନରେନ୍ଦ୍ରଙ୍କର ଇଚ୍ଛା - ଉଭୟ ଗୃହୀଭକ୍ତ ଓ ସନ୍ନ୍ୟାସୀଙ୍କୁ ନେଇ ରାମକୃଷ୍ଣ ମଠ ଗଢ଼ି ଉଠିବ ଯେଉଁଠାରେ ସନ୍ନ୍ୟାସୀମାନେ ଅବସ୍ଥାନ କରି ନିଜ ନିଜର ସାଧନା ଓ ତପସ୍ୟା କରିପାରିବେ ଏବଂ ଗୃହୀ ଭକ୍ତମାନେ ମଠକୁ ଅବସର ସମୟରେ ଆସି ସନ୍ନ୍ୟାସୀମାନଙ୍କ ସହ ମିଶି ଶ୍ରୀରାମକୃଷ୍ଣଙ୍କ ଭାବରେ ଭାବିତ ହୋଇ ଆଧାତ୍ମିକ ମାର୍ଗରେ ଗମନ କରିପାରିବେ ।

ସୁରେନ୍ଦ୍ରବାବୁ ଏକଦା ଅଫିସରୁ ପ୍ରତ୍ୟାବର୍ତ୍ତନ କରି ନିଜ ଗୃହର ଉପାସନା ସ୍ଥଳୀରେ ଧାନ ନିମନ୍ତେ ଉପବେଶନ କଲେ । ସମ୍ମୁଖରେ ରହିଥିଲା ଶ୍ରୀରାମକୃଷ୍ଣଙ୍କର ଚିତ୍ର । ନିଜର ଦୃଷ୍ଟି ଠାକୁରଙ୍କ ଉପରେ ଏକାଗ୍ର କରି ଚକ୍ଷୁ ମୁଦ୍ରିତ କଲେ । ଶ୍ରୀରାମକୃଷ୍ଣ ହଠାତ୍ ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ କହିଲେ, ''ଆରେ ସୁରେନ୍ଦ୍ର ! ତୁମେ କ'ଣ କରୁଛ ? ମୋ ପିଲାମାନେ ରାସ୍ତାରେ ବୁଲୁଛନ୍ତି । ସେମାନଙ୍କର ଦୁଃଖ ଦୁର୍ଦ୍ଦଶାକୁ ଟିକେ ଦେଖ । ଆରେ ବାବା, ଆଉ ଡେରି କରନି, ତାଙ୍କ ପାଇଁ କିଛି ବ୍ୟବସ୍ଥା କର ।''

ଶ୍ରୀରାମକୃଷ୍ଣଙ୍କର ନିର୍ଦ୍ଦେଶ ଶ୍ରବଣରେ ସୁରେନ୍ଦ୍ରଙ୍କ ସଂସାରବଦ୍ଧ ମନର ରୁଦ୍ଧ କୋଠରିଗୁଡ଼ିକ ତତ୍‌କ୍ଷଣାତ୍ ଉନ୍ମୁକ୍ତ ହୋଇଗଲା । ଅପୂର୍ବ ଶିହରଣ ଖେଳିଗଲା ସମଗ୍ର ଶରୀରରେ । ସାମାନ୍ୟ କାଳ ବିଳମ୍ବ ନ କରି ସୁରେନ୍ଦ୍ରବାବୁ ଦୌଡ଼ିଲେ ନରେନ୍ଦ୍ରଙ୍କ ଗୃହକୁ । ଅବଶ୍ୟ ନରେନ୍ଦ୍ରଙ୍କର ଗୃହ ତାଙ୍କ ଘରଠାରୁ ବେଶି ବାଟ ନ ଥିଲା । ଘର୍ମାକ୍ତ ମୁଖମଣ୍ଡଳ ଓ ଅଧର୍ଯ୍ୟ ଭାବ ଭଙ୍ଗୀ ଓ ଅଶ୍ରୁଳ ନୟନରେ ସୁରେନ୍ଦ୍ରବାବୁ ଅଣନିଃଶ୍ୱାସୀ ହୋଇ ନରେନ୍ଦ୍ରଙ୍କ ସମ୍ମୁଖରେ କହି ଉଠିଲେ, ''ଭାଇ, ତୁମେ କୁଆଡ଼େ ଆଉ ଯିବ ? ଚାଲ, ଘରଟିଏ ଭଡ଼ା ନେବା । ତୁମେ ସେଠାରେ ରହିବ ଏବଂ ସେହି ଘରଟି ଆମ ଠାକୁରଙ୍କର ଉପାସନା ସ୍ଥଳୀ ହେବ । ସମସ୍ତ ଯୁବ ସନ୍ନ୍ୟାସୀମାନେ ସେଠାରେ ଆଧାତ୍ମିକ ସାଧନା ଓ ତପସ୍ୟା କରିବେ । ଆମେ ଗୃହସ୍ଥ ସେଠାକୁ ମଝିରେ ମଝିରେ ଯିବୁ;

Digitized by srujanika@gmail.com

ତୁମମାନଙ୍କର ଆଶୀଷ ଗ୍ରହଣ କରି ଆମର ହୃଦୟ ଶାନ୍ତ କରିବୁ... ତୁମେ ତ ଜାଣ କାଶିପୁର ଉଦ୍ୟାନବାଟିର ଖର୍ଚ୍ଚର କିଛି ଅଂଶ ମୁଁ ବହନ କରୁଥିଲି । ମୁଁ ବର୍ତ୍ତମାନ ତୁମମାନଙ୍କର ଖର୍ଚ୍ଚ ବହନ କରି ଆନନ୍ଦିତ ହେବି ।

- ୧ -

*ଯୁବ ସନ୍ନ୍ୟାସୀମାନଙ୍କୁ ନରେନ୍ଦ୍ରଙ୍କର ଆହ୍ୱାନ - "ହେ ମୋର ପ୍ରିୟ ଭ୍ରାତାଗଣ, ମନୁଷ୍ୟ ଗଠନ ଆମ ଜୀବନର ବ୍ରତ ହେଉ । ତାଙ୍କ ଏହି ବ୍ରତକୁ କେବଳ ଆମର ଆଧାତ୍ମିକ ମାର୍ଗରେ ପରିଣତ କରିବା ! ନିଷ୍ଫଳ ପାଠପଢ଼ାରୁ ଆମେ ଦୂରରେ ରହିବା । ସଂସାରର ଚାକଚକ୍ୟ ଆମର ମନକୁ ମୁହୂର୍ତ୍ତକ ପାଇଁ ପ୍ରଲୋଭିତ ନ କରୁ । ଈଶ୍ୱରୋପଲବ୍ଧି ଆମ ଜୀବନର ମୁଖ୍ୟ ବସ୍ତୁ ହେଉ, ଯାହା ଶ୍ରୀରାମକୃଷ୍ଣଙ୍କର ଜୀବନଚର୍ଯ୍ୟାରୁ ଆମେ ଶିକ୍ଷା ଗ୍ରହଣ କରିଛେ । ଆମେ ନିଶ୍ଚୟ ଈଶ୍ୱରଙ୍କୁ ଲାଭ କରିବା ।"*

ଅନ୍ତରଙ୍ଗ ବନ୍ଧୁ ସୁରେନ୍ଦ୍ର ବାବୁଙ୍କର ଏଭଳି ଅପ୍ରତ୍ୟାଶିତ ବଦାନ୍ୟତା ପରିଲକ୍ଷିତ କରି ନରେନ୍ଦ୍ର ଭାବବିହ୍ୱଳିତ ହୋଇପଡ଼ିଲେ । ସେ ତତ୍‌କ୍ଷଣାତ୍ ଘରଟିଏ ଖୋଜିବା ପାଇଁ ବାହାରିପଡ଼ିଲେ । ଦକ୍ଷିଣେଶ୍ୱର ଓ କୋଲକତା ମଝିରେ ବାରାନଗର ଅବସ୍ଥିତ । ସେଠାରେ ଏକ ଦ୍ୱିତଳ ଗୃହକୁ ଭଡ଼ାରେ ନେବାପାଇଁ ସେ ନିଷ୍ପତ୍ତି କଲେ । କଣ୍ଟା, ବୁଦା, ଅନାବନା ଗଛରେ ପରିପୂର୍ଣ୍ଣ ସ୍ଥାନ । ଘରଟି ଅବଶ୍ୟ ମଧ୍ୟ ଜୀର୍ଣ୍ଣଶୀର୍ଣ୍ଣ । ମରାମତି ଦରକାର । କେବଳ ସେତିକି ନୁହେଁ, ଭୂତପ୍ରେତଙ୍କର ଆବାସସ୍ଥଳୀ ଭାବେ ଗୃହଟି ସେହି ଅଞ୍ଚଳରେ ପ୍ରସିଦ୍ଧ ଲାଭ କରିଥାଏ । ତଳ ତାଲାରେ ସାପ, ଗୋଧି, ନେଉଳ, ଝିଟିପିଟି ଭଳି ଅନେକ ସରୀସୃପଙ୍କର ବାସସ୍ଥଳୀ । ଘର ପଛପଟେ ଏକ ପୋଖରୀ । ମଶାମାନଙ୍କର ଉତ୍ପତ୍ତି ସ୍ଥଳ । ଯେହେତୁ ପବିତ୍ର ଗଙ୍ଗାନଦୀ କୂଳରେ ଏହା ଅବସ୍ଥିତ, କାଶିପୁର ଶ୍ମଶାନ ଘାଟ ଯେଉଁଠାରେ ଶ୍ରୀରାମକୃଷ୍ଣଙ୍କ ଅନ୍ତିମ କ୍ରିୟା ସମ୍ପାଦିତ ହୋଇଥିଲା, ତାହା ଏହି ଗୃହର ଅନତୀଦୂରରେ ଅବସ୍ଥିତ ଏବଂ ମାସିକ ଭଡ଼ା ମାତ୍ର ଏଗାର ଟଙ୍କା ହୋଇଥିବାରୁ, ଏହି ଘରଟିକୁ ଶେଷରେ ବିବେଚନା କରାଗଲା । ଏତଦ୍‌ବ୍ୟତୀତ ଗୃହର ପରିବେଶର ନିର୍ଜ୍ଜନତା ମଧ୍ୟ ଏକ କାରଣ । ଯାହାହେଉ ବରାହନଗରସ୍ଥିତ ଏହି ଗୃହ ଯୁବ ସନ୍ନ୍ୟାସୀମାନଙ୍କର ପ୍ରଥମ ଆଶ୍ରୟସ୍ଥଳୀ ହେଲା । ତାରକ, ବୁଢ଼ାଗୋପାଳ, ଛୋଟ ଗୋପାଳ, କାଳୀ, ଗୃହତ୍ୟାଗୀ ସନ୍ନ୍ୟାସୀ ଏଠାରେ ଅବସ୍ଥାନ କଲେ । ବଳରାମ ବସୁଙ୍କ ଘରୁ ଠାକୁରଙ୍କର ବ୍ୟବହୃତ ଜିନିଷପତ୍ର ଏବଂ ଦେହାବଶେଷ ଅଣାଯାଇ ଏଠାକାର ଉପାସନା ସ୍ଥଳୀରେ ସ୍ଥାପିତ ହେଲା । ପୂଜାର୍ଚ୍ଚନା ରୀତିମତ ଚାଲିଲା । ଜଣେ ରୋଷେୟାକୁ ମାସିକ ଛ'ଟଙ୍କାରେ ଏଠାରେ ନିଯୁକ୍ତ କରାଗଲା । ଏଠାରେ କହିବା ବାହୁଲ୍ୟ ଯେ ଶ୍ରୀରାମକୃଷ୍ଣଙ୍କର ଦେହାନ୍ତର ମାତ୍ର ଛ'ସପ୍ତାହ ମଧ୍ୟରେ ମଠ ପ୍ରତିଷ୍ଠିତ ହୋଇପାରିଥିଲା ।

Digitized by srujanika@gmail.com

ଯୁବ ସନ୍ନ୍ୟାସୀମାନେ ଧୀରେ ଧୀରେ ବରାହନଗର ମଠରେ ଏକତ୍ରିତ ହେବାକୁ ଲାଗିଲେ । ଯେଉଁ ବାଳକମାନେ ଘରକୁ ଫେରିଯାଇ ପୁନଶ୍ଚ ଅଧ୍ୟୟନରେ ମନ ବଳାଇଥିଲେ, ସେମାନଙ୍କ ନିକଟରେ ନରେନ୍ଦ୍ର ପହଞ୍ଚି, ମଠରେ ଯୋଗ ଦେବାକୁ ପ୍ରବର୍ତ୍ତାଇଲେ । ନରେନ୍ଦ୍ରଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ, ବିଷୟବସ୍ତୁ ଉପସ୍ଥାପନ କରିବାର ଚମତ୍କାର କଳା ଏବଂ ସର୍ବୋପରି ଆଧ୍ୟାତ୍ମିକ ସଙ୍ଗୀତ ଓ କଥୋପକଥନ ଯୁବଭକ୍ତଙ୍କର ମନକୁ ପ୍ରଜ୍ୱଳିତ କଲା । ସେମାନେ ବରାହନଗର ମଠରେ ଏକତ୍ରିତ ହୋଇ ନରେନ୍ଦ୍ରଙ୍କର ନେତୃତ୍ୱରେ ସାଧନା ଓ ତପସ୍ୟା ଆରମ୍ଭ କଲେ । ଗୋଟିଏ ଅନୁଷ୍ଠାନ ଗଠନ ଏବଂ ତାହାର ପରିଚାଳନା ଦଳଗତ ଉତ୍ସାହ ଓ ଗତ୍ୟାତ୍ମକ ନେତୃତ୍ୱ ଉପରେ ନିର୍ଭର କରେ । ଶ୍ରୀରାମକୃଷ୍ଣଙ୍କର ମହାସମାଧିର ପରବର୍ତ୍ତୀ ଦିନମାନଙ୍କରେ ଯେଉଁ ପ୍ରକାର ନକାରାତ୍ମକ ପରିସ୍ଥିତିର ସମ୍ମୁଖୀନ ନରେନ୍ଦ୍ର ହୋଇଥିଲେ, ତାହାରି ଭିତରେ ନରେନ୍ଦ୍ର କେବଳ ପ୍ରଦାନ କରିଥିଲେ ସକାରାତ୍ମକ ନେତୃତ୍ୱ । ଯୁବ ଭକ୍ତଙ୍କ ଭିତରେ ସଞ୍ଚାରିତ କରିଥିଲେ ଅନୁଷ୍ଠାନ ଗଢ଼ିବାର ଅଦମ୍ୟ ଉତ୍ସାହ ।

ଏକ ବଳିଷ୍ଠ ସଂଗଠନ ଦାନା ବାନ୍ଧୁଥିବା ବେଳେ, ସେହି ବର୍ଷ ଡିସେମ୍ବର ମାସରେ, ଗୁରୁଭାଇ ବାବୁରାମଙ୍କ ମାତା ମାତଙ୍ଗିନି ଦେବୀ, ନିଜ ଗ୍ରାମ ଅନନ୍ତପୁରକୁ ଯୁବ ସନ୍ନ୍ୟାସୀମାନଙ୍କୁ ବଡ଼ଦିନ ଛୁଟି ଅବସରରେ, ନିମନ୍ତ୍ରଣ କଲେ । ନରେନ୍ଦ୍ର ତାଙ୍କର ନିମନ୍ତ୍ରଣକୁ ସ୍ୱୀକାର କରି, ଯୁବସନ୍ନ୍ୟାସୀଗଣଙ୍କୁ ସାଥୀରେ ନେଇ ପହଞ୍ଚିଲେ ଅନନ୍ତପୁରରେ । ଯୁବସନ୍ନ୍ୟାସୀଗଣଙ୍କୁ ଆଦରରେ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ ମାତଙ୍ଗିନୀ ଦେବୀ । ଗ୍ରାମ୍ୟ ପରିବେଶର ନୀରବତା ଓ ନିସ୍ତବ୍ଧତା ନରେନ୍ଦ୍ର ସମେତ ଯୁବ ସନ୍ନ୍ୟାସୀଙ୍କର ଅନ୍ତର୍ନିହିତ ଆଧ୍ୟାତ୍ମିକ ସ୍ଫୁଲିଙ୍ଗକୁ କ୍ରମଶଃ ପ୍ରଜ୍ୱଳିତ କଲା । ନରେନ୍ଦ୍ରଙ୍କର ଅଭୂତପୂର୍ବ ଅଦମ୍ୟ ଉତ୍ସାହ ଉକ୍ତ ପ୍ରଜ୍ୱଳିତ ଅଗ୍ନିକୁ ବିଞ୍ଚିବାରୁ ତାହା ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହେବାକୁ ଲାଗିଲା । ଏତଦ୍‌ବ୍ୟତୀତ ଯୁବ ସନ୍ନ୍ୟାସୀମାନଙ୍କର ଏକତ୍ର ଅବସ୍ଥାନ ଏବଂ ସେମାନଙ୍କର ତ୍ୟାଗ ଓ ବୈରାଗ୍ୟ ମନୋଭାବ ପରିଲକ୍ଷିତ କରି, ନରେନ୍ଦ୍ରଙ୍କ ଭିତରେ ରହିଥିବା ଶ୍ରୀରାମକୃଷ୍ଣଙ୍କର ଆଧ୍ୟାତ୍ମିକ ମହାସତ୍ତା, ଫଣା ଉତ୍ତୋଳନ କଲା । ସନ୍ନ୍ୟାସୀ ଜୀବନର ମହାନତା ତାଙ୍କ ମାନସପଟରେ ପ୍ରକଟିତ ହେଲା । ନରେନ୍ଦ୍ର, ଆଧ୍ୟାତ୍ମିକ ପ୍ରବାହରେ ଉଦ୍‌ବୁଦ୍ଧ ହୋଇ, ଯୁବଭକ୍ତଗଣଙ୍କୁ ସମ୍ବୋଧନ କରି ଉଚ୍ଚ ସ୍ୱରରେ କହି ଉଠିଲେ, ''ହେ ମୋର ପ୍ରିୟ ଭ୍ରାତାଗଣ, ମନୁଷ୍ୟ ଗଠନ ଆମ ଜୀବନର ବ୍ରତ ହେଉ । ଚାଲ ଏହି ବ୍ରତକୁ କେବଳ ଆମର ଆଧ୍ୟାତ୍ମିକ ମାର୍ଗରେ ପରିଣତ କରିବା ! ନିଷ୍ଫଳ ପାଠପଢ଼ାରୁ ଆମେ ଦୂରରେ ରହିବା । ସଂସାରର ଚାକଚକ୍ୟ ଆମର ମନକୁ ମୁହୂର୍ତ୍ତକ ପାଇଁ ପ୍ରଲୋଭିତ ନ କରୁ । ଈଶ୍ୱରୋପଲବ୍ଧି ଆମ ଜୀବନର ମୁଖ୍ୟ ବସ୍ତୁ ହେଉ, ଯାହା ଶ୍ରୀରାମକୃଷ୍ଣଙ୍କର ଜୀବନଚର୍ଯ୍ୟାରୁ ଆମେ ଶିକ୍ଷା ଗ୍ରହଣ କରିଛେ । ଆମେ ନିଶ୍ଚୟ ଈଶ୍ୱରଙ୍କୁ ଲାଭ କରିବା ।''

ନରେନ୍ଦ୍ରଙ୍କର ପ୍ରଜ୍ୱଳିତ ଆଧ୍ୟାତ୍ମିକ ଚିନ୍ତା ଓ ଚେତନା ଦ୍ୱାରା ଅନୁପ୍ରାଣିତ ହୋଇ, ଯୁବଗଣ ଏକତ୍ୱ ଭାବନାର ମହତ୍ୱ ପ୍ରତି ସଚେତନ ହୋଇଉଠିଲେ; ଏବଂ ଏକ ଅଦ୍ଭୁତ ଆଧ୍ୟାତ୍ମିକ ମହାଶକ୍ତି ଦ୍ୱାରା ସେମାନେ ପରସ୍ପର ନିବନ୍ଧିତ ବୋଲି ଅନୁଭବ କଲେ । ଏହି ଅନନ୍ତପୁର ରହଣି କାଳରେ

Digitized by srujanika@gmail.com

ଏକ ଦେହ, ଏକ ମନ ଏବଂ ଏକ ଆତ୍ମାର ଭାବନାରେ ସେମାନେ ବିକଶିତ ହେବାକୁ ଲାଗିଲେ । ସାଧନା ଓ ତପସ୍ୟାରେ ସମୟ ବିତିଲା; ଶ୍ରୀରାମକୃଷ୍ଣଙ୍କର ଭାବନାରେ ନିରନ୍ତର ମନ ଆଚ୍ଛନ୍ନ ହେଲା, ମୁଖ ସର୍ବଦା ଶ୍ରୀରାମକୃଷ୍ଣଙ୍କ ନାମ ଜପରେ ପ୍ରକମ୍ପିତ ହେଲା । ସର୍ବତ୍ୟାଗୀ ସନ୍ନ୍ୟାସୀ ହେବାର ସଂକଳ୍ପ ଦୃଢ଼ୀଭୂତ ହେଲା ।

ଏକ ଗଭୀର ଶୀତ ରାତ୍ରିରେ, ଏକ ନୂତନ ଚିନ୍ତା ନୂତନ କଳେବରରେ ଯୁବଗଣଙ୍କ ମାନସପଟରେ ଜନ୍ମଲାଭ କଲା ଏହି ଅନନ୍ତପୁର ଗ୍ରାମର ନୀରବତା ଭିତରେ । ଯୁବକଗଣ ଘର ଅଗଣାରେ ଗୋବର ଜଳାଇ ଧୂନି ଚତୁଃପାର୍ଶ୍ୱରେ ଉପବିଷ୍ଟ । ଉର୍ଦ୍ଧ୍ୱରେ ନକ୍ଷତ୍ରଖଚିତ ମୁକ୍ତ ଆକାଶ । ଚତୁଃର୍ଦ୍ଦିଗରେ ରାଜତ୍ୱ କରୁଥିଲା ନୀରବତା । ଗଭୀର ଧ୍ୟାନରେ ଯୁବକଗଣ ଧ୍ୟାନମଗ୍ନ । ବହୁ ସମୟ ଅତିକ୍ରାନ୍ତେ ସେମାନଙ୍କର ଧ୍ୟାନ ଭଙ୍ଗ ହେଲା । ଧୂନି ଆଲୋକରେ ନରେନ୍ଦ୍ରଙ୍କ ମୁଖମଣ୍ଡଳ ଚିକ୍‌ଚିକ୍ କରୁଥିଲା । ନରେନ୍ଦ୍ରଙ୍କ ମୁଖରୁ ଇତ୍ୟବସରରେ ନିଃସୃତ ହେଲା ତ୍ରାଣକର୍ତ୍ତା ଯୀଶୁଖ୍ରୀଷ୍ଟଙ୍କର ରହସ୍ୟାବୃତ ଜନ୍ମ ବୃତାନ୍ତ, ଦିବ୍ୟବାଣୀ ଓ କ୍ରୁସବିଦ୍ଧର ମର୍ମସ୍ପର୍ଶୀ କାହାଣୀ । ଯୀଶୁଖ୍ରୀଷ୍ଟଙ୍କ ଭଳି ମହାତ୍ୟାଗୀ ହୋଇ କୋଟି କୋଟି ଜନତାଙ୍କର ମୁକ୍ତି ନିମନ୍ତେ କାର୍ଯ୍ୟ କରିବା ପାଇଁ ସମବେତ ଯୁବକମାନଙ୍କୁ ନରେନ୍ଦ୍ର ତାଙ୍କର ଅଗ୍ନିବର୍ଷୀ ଭାଷାରେ ଆହ୍ୱାନ କଲେ । ନରେନ୍ଦ୍ରଙ୍କର ପ୍ରତ୍ୟକ ଶବ୍ଦରେ ଭରିଥିଲା ଶ୍ରୀରାମକୃଷ୍ଣଙ୍କର ଶିବ ଜ୍ଞାନେ ଜୀବ ସେବାର ମହାମନ୍ତ୍ର । ନିସ୍ତବ୍ଧ ରାତ୍ରି ନରେନ୍ଦ୍ରଙ୍କର ପ୍ରେରଣାପୂର୍ଣ୍ଣ ଆହ୍ୱାନରେ ଶିହରିତ ହେଲା । ଯୁବକମାନଙ୍କର ମୁଖମଣ୍ଡଳ ଦିବ୍ୟ ଆଲୋକରେ ହେଲା ଉଦ୍‌ଭାସିତ । ସତେକି ଶ୍ରୀରାମକୃଷ୍ଣ ପରମହଂସଙ୍କର ଐଶ୍ୱରୀୟ ଚିନ୍ତାରାଶି ସେଇଠି ଅଜାଡ଼ି ହୋଇପଡୁଛି । ସେମାନଙ୍କୁ ସେ ତ କାଶିପୁର ଉଦ୍ୟାନବାଟିରେ ସନ୍ନ୍ୟାସୀ ଧର୍ମରେ ଦୀକ୍ଷିତ କରିଥିଲେ, କିନ୍ତୁ ଆଜି ଗୃହତ୍ୟାଗ କରି ମଠରେ ସନ୍ନ୍ୟାସୀ ହୋଇ କାଳାତିପାତ କରିବାର ଅଭିପ୍‌ସା ବଜ୍ର ପରି ଦୃଢ଼ ହେଲା । ନରେନ୍ଦ୍ରଙ୍କ ନେତୃତ୍ୱରେ ଆଜି ସେମାନେ ଭ୍ରାତୃତ୍ୱ ବନ୍ଧନରେ ବନ୍ଦୀ । ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ଉକ୍ତ ରାତ୍ରିଟି ଖ୍ରୀଷ୍ଟମାସ (ବଡ଼ଦିନ) ଥିଲା ।

- ୨ -

*ମୁଁ ତ ଶ୍ରୀରାମକୃଷ୍ଣଙ୍କର ଭୃତ୍ୟ । ତାଙ୍କର ଆଦେଶ ମୁଁ କସ୍ମିନକାଳେ ଅମାନ୍ୟ କରି ପାରିବି ନାହିଁ । ମୋ ପଥରେ ସ୍ୱର୍ଗ, ନର୍କ, ମୁକ୍ତି ଯାହାବି ଆସୁ, ମୁଁ ଖାତିର ନ କରି କେବଳ ଆଗେଇ ଯିବ ।*

ନରେନ୍ଦ୍ର ଅନ୍ୟ ଗୁରୁଭାଇଙ୍କ ସହ ବରାହନଗର ମଠକୁ ଫେରିଆସିଲେ ସତ କିନ୍ତୁ ଅନନ୍ତପୁରରେ ନେଇଥିବା ଆଧ୍ୟାତ୍ମିକ ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବାର ଦୁର୍ବାର ନିଶା ସେମାନଙ୍କୁ ବାରମ୍ବାର ଅଥୟ କରୁଥିଲା । ବରାହନଗର ମଠରେ ପ୍ରତ୍ୟହ ଧ୍ୟାନ ଧାରଣା ଓ କୀର୍ତ୍ତନରେ ସେମାନେ କାୟମନୋବାକ୍ୟରେ ମଗ୍ନ ରହୁଥିଲେ । ବିଭିନ୍ନ ପୁଷ୍ପରେ ଶ୍ରୀରାମକୃଷ୍ଣଙ୍କର ଚିତ୍ରକୁ ସଜାଇ ପୂଜାର୍ଚ୍ଚନା କରୁଥିଲେ । ପ୍ରତି ମୁହୂର୍ତ୍ତରେ ସେମାନେ ଶ୍ରୀରାମକୃଷ୍ଣଙ୍କର ଉପସ୍ଥିତି ମଠରେ ଉପଲବ୍ଧି କରୁଥିଲେ । ୧୮୮୭ ଜାନୁଆରୀ ମାସରେ ଶାସ୍ତ୍ର ଅନୁସାରେ ସନ୍ନ୍ୟାସ ଗ୍ରହଣ

Digitized by srujanika@gmail.com

କରିବା ନିମନ୍ତେ ଔପଚାରିକ ପୂଜା ପଦ୍ଧତି ସମ୍ପାଦନ କରିବା ପାଇଁ ନରେନ୍ଦ୍ର ଅନ୍ୟ ସାଥୀମାନଙ୍କର ମତ ଲୋଡ଼ିଲେ । ସମସ୍ତେ ନରେନ୍ଦ୍ରଙ୍କ ପ୍ରସ୍ତାବରେ ଏକମତ ହେଲେ । ଜାନୁଆରୀ ମାସର ଏକ ଶୁଭଦିନ ନିର୍ବାଚିତ ହେଲା । ଉଷା କାଳରେ ସମସ୍ତ ଯୁବକ ଗଙ୍ଗାରେ ଅବଗାହନ କରି ବରାହନଗର ମଠର ଉପାସନା ସ୍ଥଳୀରେ ସମବେତ ହେଲେ । ଶ୍ରୀରାମକୃଷ୍ଣଙ୍କର ଚିତ୍ର ଓ ଦେହାବଶେଷ ସମ୍ମୁଖରେ ସମସ୍ତେ ଉପବେଶନ କଲେ । ବିରଜା ହୋମ ଅନୁଷ୍ଠିତ ହେଲା । ଯୁବଭକ୍ତ କାଳୀ ଶାସ୍ତ୍ରରୁ ମନ୍ତ୍ର ଉଚ୍ଚାରଣ କଲେ । ଜଣ ଜଣ ହୋଇ ଯୁବକମାନେ ପ୍ରଜ୍ୱଳିତ ଅଗ୍ନିରେ ଆହୁତି ପ୍ରଦାନ କଲେ । ଶ୍ରୀରାମକୃଷ୍ଣ ସେମାନଙ୍କୁ କାଶିପୁରରେ ସନ୍ୟାସ ଧର୍ମରେ ଦୀକ୍ଷିତ କରାଇ ଗୈରିକ ବସ୍ତ୍ର ଓ ରୁଦ୍ରାକ୍ଷ ମାଳା ପ୍ରଦାନ କରିଥିଲେ, ଆଜି ଯେଉଁ ପୂଜାର୍ଚ୍ଚନା ଓ ବିରଜା ହୋମ ଅନୁଷ୍ଠିତ ହେଲା, ତାହା କେବଳ ଔପଚାରିକ ଥିଲା ।

ଔପଚାରିକ ପୂଜାର୍ଚ୍ଚନା ଓ ବିରଜା ହୋମ ସମାପ୍ତି ପରେ, ନରେନ୍ଦ୍ର ଯୁବ ସନ୍ୟାସୀମାନଙ୍କର ନାମକରଣ କଲେ : ରାଖାଲ - ସ୍ୱାମୀ ବ୍ରହ୍ମାନନ୍ଦ; ବାବୁରାମ - ସ୍ୱାମୀ ପ୍ରେମାନନ୍ଦ; ଶରତ-ସ୍ୱାମୀ ସାରଦାନନ୍ଦ, ଶଶୀ-ସ୍ୱାମୀ ରାମକୃଷ୍ଣାନନ୍ଦ; ନିରଞ୍ଜନ - ସ୍ୱାମୀ ନିରଞ୍ଜନାନନ୍ଦ; କାଳୀ - ସ୍ୱାମୀ ଅଭେଦାନନ୍ଦ; ସାରଦା - ସ୍ୱାମୀ ତ୍ରିଗୁଣାତୀତାନନ୍ଦ; ତାରକ - ସ୍ୱାମୀ ଶିବାନନ୍ଦ; ବୁଢ଼ା ଗୋପାଳ - ସ୍ୱାମୀ ଅଦ୍ୱୈତାନନ୍ଦ; ଲାଟୁ - ସ୍ୱାମୀ ଅଦ୍ଭୁତାନନ୍ଦ; ଯୋଗୀନ - ସ୍ୱାମୀ ଯୋଗାନନ୍ଦ; ହରି - ସ୍ୱାମୀ ତୁରିୟାନନ୍ଦ; ଗଙ୍ଗାଧର - ସ୍ୱାମୀ ଅଖଣ୍ଡାନନ୍ଦ; ସୁବୋଧ - ସ୍ୱାମୀ ସୁବୋଧାନନ୍ଦ ଏବଂ ହରିପ୍ରସନ୍ନ - ସ୍ୱାମୀ ବିଜ୍ଞାନାନନ୍ଦ । ଏଠାରେ ଉଲ୍ଲେଖନୀୟ ଯେ ରାଖାଲ, ବାବୁରାମ, ଶଶୀ, ଶରତ, ନିରଞ୍ଜନ, କାଳୀ ଓ ସାରଦାଙ୍କୁ ଉକ୍ତ ଦିବସରେ ନରେନ୍ଦ୍ର ସନ୍ୟାସୀ ନାମରେ ନାମିତ କରିଥିଲେ । ପରବର୍ତ୍ତୀ କାଳରେ ଅନ୍ୟମାନଙ୍କୁ ବିଭିନ୍ନ ସମୟରେ ପୂଜାର୍ଚ୍ଚନା ଓ ବିରଜା ହୋମ ଅନୁଷ୍ଠିତ କରାଇ ନରେନ୍ଦ୍ର ସେମାନଙ୍କର ସନ୍ୟାସୀ ନାମକରଣ କରିଥିଲେ । ଶ୍ରୀରାମକୃଷ୍ଣଙ୍କର ନରେନ୍ଦ୍ରଙ୍କୁ ମିଶାଇ ଷୋହଳ ଜଣ ପ୍ରତ୍ୟକ୍ଷ ସନ୍ୟାସୀ ଥିଲେ । ପନ୍ଦରଜଣ ଗୁରୁଭାଇଙ୍କର ସନ୍ୟାସୀ ନାମକରଣ ଅନ୍ତେ ନରେନ୍ଦ୍ର ନିଜର ସନ୍ୟାସୀ ନାମ ରଖିଥିଲେ ସ୍ୱାମୀ ବିବିଦିଶାନନ୍ଦ, କିନ୍ତୁ ଏହି ନାମର ବ୍ୟବହାର ସେ କ୍ୱଚିତ୍ କରିଥିଲେ । ପରବର୍ତ୍ତୀ କାଳରେ ବିଶେଷ କରି ପରିବ୍ରାଜକ ସମୟରେ ଉକ୍ତନାମକୁ ପରିବର୍ତ୍ତନ କରି ସ୍ୱାମୀ ସଚ୍ଚିଦାନନ୍ଦ ରଖିଥିଲେ, କିନ୍ତୁ ୧୮୯୩ରେ ସେ ଯେତେବେଳେ ଆମେରିକା ଅଭିମୁଖେ ଯାତ୍ରା କଲେ, ସେତେବେଳେ କ୍ଷେତ୍ରି ମହାରାଜାଙ୍କ ଅନୁରୋଧ କ୍ରମେ ସେ ନିଜକୁ ସ୍ୱାମୀ ବିବେକାନନ୍ଦ ନାମରେ ନାମିତ କରିଥିଲେ । ଆଦି ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ଦଶନାମୀ ସମ୍ପ୍ରଦାୟର ପରମ୍ପରାନୁସାରେ ସନ୍ୟାସ ଗ୍ରହଣ ଉତ୍ସବ ସମ୍ପାଦିତ ହୋଇଥିଲା ।

ସନ୍ୟାସୀ ତ ହୋଇଗଲେ, ବରାହନଗର ମଠ ପରିଚାଳନା ଏବଂ ଖାଦ୍ୟ ବସ୍ତ୍ର ଆୟୋଜନ କରିବାଲାଗି ଅର୍ଥ ଆସିବ କେଉଁଠୁ ? ବାଳକମାନଙ୍କର ସନ୍ୟାସ ପରିଧାନ ଓ ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗଣକୁ ସମାଜର କେତେକ ବ୍ୟକ୍ତି ନାଶା କୁଞ୍ଚନ କଲେ । ପାଠ ନ ପଢ଼ି, କାମଧନ୍ଦା ନ କରି, ପରମହଂସ ଦେବଙ୍କ ପାଗଳାମିରେ ମାତି, ପିଲାମାନେ ଆଜି ଦାଣ୍ଡରେ ଭିକାରୀ ସାଜିଛନ୍ତି । ଏଭଳି ଅର୍ଥହୀନ ଜୀବନନିର୍ବାହରୁ କ୍ଷାନ୍ତ ହୋଇ ପିଲାମାନେ ନିଜ ନିଜ ଗୃହକୁ

Digitized by srujanika@gmail.com

ପ୍ରତ୍ୟାବର୍ତ୍ତନ କରି ପୁନଶ୍ଚ ଅଧ୍ୟୟନରେ ମନ ନିବେଶ କରନ୍ତୁ ବୋଲି ସେମାନେ ପରାମର୍ଶ ଦେଉଥିଲେ । କେତେକ ପିତାମାତା ବରାହନଗର ମଠକୁ ଆଗମନ କରି ପିଲାମାନଙ୍କୁ ନିଜ ନିଜ ଘରକୁ ନେଇଯିବା ପାଇଁ ଅଜସ୍ର ଅଶ୍ରୁମୋଚନ କରୁଥିଲେ । ଏତାଦୃଶ ସାମାଜିକ ଓ ପାରିବାରିକ ଭର୍ତ୍ସନା ଓ ଅସହଯୋଗ ସହିତ ଉତ୍କଟ ଦାରିଦ୍ର୍ୟର ସେମାନେ ସମ୍ମୁଖୀନ ହେଲେ । ଏଠାରେ ସଜନା ଶାଗ, ଭାତ ଓ ଲୁଣ ଭକ୍ଷଣ କରି ସେମାନେ ମାସ ମାସ ବିତାଇବାକୁ ଲାଗିଲେ । କିନ୍ତୁ ସେମାନଙ୍କର ପୂଜାର୍ଚ୍ଚନା, ଧ୍ୟାନ ଏବଂ ଆଧ୍ୟାତ୍ମିକ ଆଲୋଚନା ଉତ୍କଟ ଦାରିଦ୍ର୍ୟର ଡିମା ଡିମା ଆଖିକୁ ଆଦୌ ଭ୍ରୂକ୍ଷେପ ନ କରି ଆହୁରି ଗାଢ଼ ହେଲା । ନରେନ୍ଦ୍ରଙ୍କର ପ୍ରଚଣ୍ଡ ଆତ୍ମବିଶ୍ୱାସ ଏବଂ ପ୍ରେରଣାପୂର୍ଣ୍ଣ ଆହ୍ୱାନ ପ୍ରତି ପଦକ୍ଷେପରେ ସେମାନଙ୍କୁ ସମସ୍ତ କଷ୍ଟ ଓ ନିର୍ଯ୍ୟାତନା ସହି ନେବାକୁ ଉତ୍ସାହିତ କରୁଥିଲା ।

''ମୁଁ ତ ଶ୍ରୀରାମକୃଷ୍ଣଙ୍କର ଭୃତ୍ୟ । ତାଙ୍କର ପାଦପଦ୍ମରେ ମୋର ଦେହ ଓ ମନକୁ ସମର୍ପଣ କରିଛି । ତାଙ୍କର ଆଦେଶ ମୁଁ କସ୍ମିନକାଳେ ଅମାନ୍ୟ କରିପାରିବି ନାହିଁ । ସଂସାରର ସମସ୍ତ ବସ୍ତୁ ତ୍ୟାଗକରି ଚାଲି ଆସିଥିବା ଭକ୍ତ ଓ ସନ୍ନ୍ୟାସୀଗଣଙ୍କୁ ନେଇ ସେ ଯେଉଁ ସଂଘର ମୂଳଦୁଆ ପକାଇଛନ୍ତି, ତାହାର ରକ୍ଷଣାବେକ୍ଷଣର ଦାୟିତ୍ୱ ସେ ନିଜେ ମୋ ଉପରେ ନ୍ୟସ୍ତ କରିଛନ୍ତି, ମନ ଓ ପ୍ରାଣ ଢାଳି ମୁଁ ତା'ର କେବଳ ସେବା କରିବି । ମୋ ପଥରେ ସ୍ୱର୍ଗ, ନର୍କ, ମୁକ୍ତି ଯାହାବି ଆସୁ, ମୁଁ ଖାତିର ନ କରି କେବଳ ଆଗେଇ ଯିବି । ସେ ମୋତେ ନିର୍ଦ୍ଦେଶ ଦେଇଛନ୍ତି ଯେ ତାଙ୍କର ତ୍ୟାଗୀ ଭକ୍ତମାନଙ୍କୁ ଏକାଠି କରି ଏକ ସଂଘ ଗଠନ କରିବି । ଶ୍ରୀରାମକୃଷ୍ଣଙ୍କର ଦେହାବଶେଷ ସେଠାରେ ସ୍ଥାପିତ ଓ ପୂଜିତ ହେବ । କୋଟି କୋଟି ଜନତା ସଂଘକୁ ଆସି ସେବା ଓ ତ୍ୟାଗର ମହାନତା ଶିଖିବେ । ମୋତେ ଯଦି କେହି ପ୍ରଶ୍ନ କରେ ତୁମେ ତ ଜଣେ ସର୍ବତ୍ୟାଗୀ ସନ୍ନ୍ୟାସୀ, ଏଭଳି କାମନା ପ୍ରତି ଆସକ୍ତ ହେଉଛ କାହିଁକି ? ତା'ର ଉତ୍ତରରେ ମୁଁ କହିବି, ଦେଖ, ଶ୍ରୀରାମକୃଷ୍ଣ ଏହି ମାଟିରେ ଜନ୍ମ ହୋଇଥିଲେ । ଏଠାରେ ସେ କେତେ କ୍ଳିଷ୍ଟ ଓ ତପସ୍ୟା କରିଥିଲେ । କାହାପାଇଁ କରିଥିଲେ ? ବିଷୟ ବାସନାର ମୋହଗ୍ରସ୍ତ ମଣିଷଙ୍କୁ ଈଶ୍ୱର ଲାଭର ମାର୍ଗ ଦେଖାଇବା ପାଇଁ । ଏଭଳି ଏକ ବ୍ୟକ୍ତି ସାରା ସଂସାରରେ ବିରଳ । ତାଙ୍କର ସ୍ମୃତି ରକ୍ଷା ପାଇଁ ଏକ ମଠ ଆବଶ୍ୟକ । ସେଥିପାଇଁ ଯଦି ମୋତେ ଚୋରି, ଡକାୟତି କରିବାକୁ ପଡ଼େ, ମୁଁ ତାହା କରିବା ପାଇଁ ପ୍ରସ୍ତୁତ । ଦେଖୁଛତ ବଙ୍ଗଳା ରାଜ୍ୟର ଅବସ୍ଥା । ସାଂସାରିକ ଚାକଚକ୍ୟ, ଆମୋଦ ପ୍ରମୋଦ ଓ କାମିନୀ କାଞ୍ଚନ ମୋହରେ କିଭଳି ଏହି ଜାତି ଆଜି ନିମଗ୍ନ, ତ୍ୟାଗର ମହିମା ସେମାନେ ଆଦୌ ବୁଝିପାରିବେ ନାହିଁ । ଈଶ୍ୱର ତ୍ୟାଗ ଓ ଅନାସକ୍ତ ଭାବ ଏହି ଜାତିର ମୁଣ୍ଡରେ ଟିକିଏ ପଶାନ୍ତୁ ବୋଲି ତାଙ୍କଠାରେ ମୋର ଏତିକି ପ୍ରାର୍ଥନା ।''

ଭୋକ, ଉପାସରେ କଳବଳ ହେଉଥିଲେ ବି ସେମାନେ ଶ୍ରୀରାମକୃଷ୍ଣଙ୍କର ପ୍ରଦର୍ଶିତ ପଥରେ ଏକନିଷ୍ଠ ହୋଇ ଅଗ୍ରସର ହେଉଥିଲେ । ରାତ୍ରି ବିତୁଥିଲା କୃଚ୍ଛ୍ର ସାଧନାରେ, ନିଦ ମାତ୍ରୁ ନ ଥିଲା ଆଖିରେ । ଘର ଚଟାଣରେ ସପ ବିଛାଇ ଶୋଉଥିଲେ, ବିଷଧର ସର୍ପଗୁଡ଼ିକର ଅବାଧ ଆତଜାତ ପ୍ରତି ଭ୍ରୂକ୍ଷେପ ନ ଥିଲା । ବାସନ ମାଜୁଥିଲେ, ଗେରୁଆ ବସ୍ତ୍ର ଓ କୌପିନି ସଫା

Digitized by srujanika@gmail.com

କରୁଥିଲେ, ଯାହା ଅକସ୍ମାତେ ମିଳୁଥିଲା, ତାହାହିଁ ସେମାନେ ସେବନ କରୁଥିଲେ । ସୁରେନ୍ଦ୍ର ନାଥ ମିତ୍ର ଅବଶ୍ୟ ମାସକୁ ତିରିଶ ଟଙ୍କା ଦେଉଥିଲେ, କିନ୍ତୁ ଯୁବ ସନ୍ନ୍ୟାସୀମାନଙ୍କର ଆର୍ଥିକ ଦୁରାବସ୍ଥା ଦେଖି ତାଙ୍କ ଆଖିରେ ଲୁହ ଥୟଧରିଲା ନାହିଁ, ମାସକୁ ଶହେ ଟଙ୍କାକୁ ବୃଦ୍ଧି କଲେ । ଏତଦ୍‌ବ୍ୟତୀତ ଖାଦ୍ୟ ବସ୍ତ୍ର ଆବଶ୍ୟକ ସ୍ଥଳେ ସେ ଯୋଗାଇ ଦେଉଥିଲେ । ତାହା ସାଙ୍ଗକୁ **ବଳରାମ ବୋଷ** ଓ ଗିରୀଶ ଚନ୍ଦ୍ର ଘୋଷଙ୍କର ମୁକ୍ତ ହସ୍ତରେ ଆର୍ଥିକ ଦାନ ବି କିୟଦାଂଶରେ ଆର୍ଥିକ ଦୁଃଖକୁ ଲାଘବ କରିବାରେ ସାହାଯ୍ୟ କରୁଥିଲା ।

ଗୁରୁଭାଇ ସନ୍ନ୍ୟାସୀଗଣ ଦୁଃଖ କଷ୍ଟ ସହି କେବଳ ଈଶ୍ୱରୋପଲବ୍ଧି ଉଦ୍ଦେଶ୍ୟରେ ସମଗ୍ର ଜୀବନ ବିତାଇ ଦିଅନ୍ତୁ ବୋଲି ନରେନ୍ଦ୍ରଙ୍କର ଦୃଷ୍ଟିକୋଣ ନ ଥିଲା । ବିଶ୍ୱରେ ଯେଉଁ ଚିନ୍ତାରାଶିର ସ୍ରୋତ ବହମାନ, ସେହିସବୁ ବିଷୟରେ ସନ୍ନ୍ୟାସୀଗଣ ଅବଗତ ହୋଇ ନିଜର ଦୃଷ୍ଟିକୋଣକୁ ପ୍ରସାରିତ କରିବା ପାଇଁ ନରେନ୍ଦ୍ର ସମସ୍ତ ପ୍ରକାର ଶିକ୍ଷା ପ୍ରଦାନ କରୁଥିଲେ । ବିଶ୍ୱ ବିଖ୍ୟାତ ଦାର୍ଶନିକ ଆରିଷ୍ଟୋଟଲ, କ୍ୟାଣ୍ଟ, ହେଗେଲଙ୍କ ସହିତ ଶଙ୍କରାଚାର୍ଯ୍ୟ, ଗୌତମ ବୁଦ୍ଧ, ରାମାନୁଜ, ମାଧବାଚାର୍ଯ୍ୟଙ୍କର ଦର୍ଶନକୁ ନରେନ୍ଦ୍ର ପ୍ରାଞ୍ଜଳଭାବରେ ସେମାନଙ୍କୁ ବୁଝାଇ ଦେଉଥିଲେ । ଜ୍ଞାନ, ଭକ୍ତି, ଯୋଗ ଓ କର୍ମର ସାରତତ୍ତ୍ୱକୁ ଶ୍ରୀରାମକୃଷ୍ଣଙ୍କ ଶିକ୍ଷା ଓ ଅନୁଭୂତି ପରିପ୍ରେକ୍ଷୀରେ ସେ ଗୁରୁଭାଇଙ୍କ ସହ ଆଲୋଚନା କରୁଥିଲେ । ଶୁଷ୍କ ଦର୍ଶନ ଭିତରେ ସେମାନେ ଯେତେବେଳେ ବିତସ୍ପୃହ ହୋଇପଡୁଥିଲେ, ସେତେବେଳେ ଭକ୍ତିମୂଳକ ସଂଗୀତ ଗାନରେ ନିଜକୁ ହଜାଇ ଦେଉଥିଲେ । ମଝିରେ ମଝିରେ ନରେନ୍ଦ୍ର ଥଟ୍ଟା ପରିହାସ କରି ସେମାନଙ୍କର ମନକୁ ହାଲୁକା କରି ଦେଉଥିଲେ । ନରେନ୍ଦ୍ରଙ୍କ ତତ୍ତ୍ୱାବଧାନରେ ଶାସ୍ତ୍ର ଅଧ୍ୟୟନ, ଧ୍ୟାନାଭ୍ୟାସ, ଆଧ୍ୟାତ୍ମିକ ଆଲୋଚନା ଭିତରେ ଦିନ ଓ ରାତି କିପରି ବିତୁଥିଲା, ତାହା ସେମାନେ ଭୁଲିଯାଉଥିଲେ । ଗୃହ, ଧନ ସମ୍ପତ୍ତି, ଶିକ୍ଷା, ପିତାମାତା, ବନ୍ଧୁ ପରିଜନର ମୋହଜାଲ ଖଣ୍ଡ ବିଖଣ୍ଡିତ ହେଲା । ସନ୍ନ୍ୟାସ ଧର୍ମର ଶୃଙ୍ଖଳ ସମସ୍ତ ଗୁରୁଭାଇଙ୍କୁ ବାନ୍ଧିଦେଲା ।

- ୩ -

*ଆମ ପାଇଁ ତ ଠାକୁର ସବୁତକ କ୍ଳିଷ୍ଟ ସାଧନା ଓ କଠୋର ତପସ୍ୟା କରିଛନ୍ତି, ଆମର ଏତେ କରିବା ଆବଶ୍ୟକ ନାହିଁ । ତୁମେ କ'ଣ ଭାବୁଛ ଯେ ତୁମେ ସମସ୍ତେ ରାମକୃଷ୍ଣ ପରମହଂସ ହୋଇଯିବ । କେବେ ନୁହେଁ । ଗୋଟିଏ ଯୁଗରେ ଗୋଟିଏ ରାମକୃଷ୍ଣ ପରମହଂସ ଜନ୍ମ ଗ୍ରହଣ କରନ୍ତି ।*

**୧୮୮୭ ଫେବୃୟାରୀ ୨୧ ତାରିଖ** । ଶିବରାତ୍ରି ମଠରେ ପାଳିତ ହେଲା । ନରେନ୍ଦ୍ରଙ୍କ ଦ୍ୱାରା ଲିଖିତ ଶିବ ସଂଗୀତ "ତା ଥେଇୟା, ତା ଥେଇୟା, ଭୋଲା ନାଚେ" ଗାନ କରି ଯୁବସନ୍ନ୍ୟାସୀଗଣ ସଂଗୀତର ତାଳେ ତାଳେ ହର୍ଷ ମନରେ ନୃତ୍ୟକଲେ । ଶଶୀ ଶ୍ରୀରାମକୃଷ୍ଣଙ୍କର ପୂଜାର୍ଚ୍ଚନା ସମ୍ପାଦନ କଲେ । ସଂଧ୍ୟା ଆଗମନରେ, ଧୂପ ଓ ଝୁଣାର ସୁଗନ୍ଧିତ ବାସ୍ପାରେ ମଠର

Digitized by srujanika@gmail.com

ପରିବେଶ ମହମହ ବାସି ଉଠିଲା । ମଠ ପ୍ରାଙ୍ଗଣରେ ବିଲ୍ୱବୃକ୍ଷ ତଳେ ଶିବଙ୍କର ପୂଜାର୍ଚ୍ଚନା ଆରମ୍ଭ ହେଲା । ନରେନ୍ଦ୍ର ଓ ଅନ୍ୟ କେତେଜଣ ସନ୍ନ୍ୟାସୀ ଦେହରେ ପାଉଁଶ ବୋଳି, କୌପିନି ପିନ୍ଧି ଏବଂ ରୁଦ୍ରାକ୍ଷମାଳା ଗଳାରେ ଝୁଲାଇ ବୃକ୍ଷର ଚତୁଃପାର୍ଶ୍ୱରେ ''ଶିବ ଗୁରୁ - ଶିବ ଗୁରୁ - ହର ହର ବମ୍ ବମ୍ ଗାଇ ନୃତ୍ୟ ଆରମ୍ଭ କଲେ । ସେଦିନ କି ନୃତ୍ୟ ନରେନ୍ଦ୍ରଙ୍କର !! ରାତ୍ରିର ଗଭୀରତା ଭିତରେ ପଶୁପକ୍ଷୀମାନେ ସ୍ତବ୍ଧ ହେଲେ ନରେନ୍ଦ୍ରଙ୍କର ତାଣ୍ଡବ ନୃତ୍ୟରେ । ବାସ୍ତବରେ ନରେନ୍ଦ୍ରଙ୍କର ତାଣ୍ଡବ ନୃତ୍ୟ ଦର୍ଶନ କରି ସମସ୍ତେ ନିଜର ଅସ୍ତିତ୍ୱ ବିସ୍ମରଣ ହେଲେ । ସତେକି ସ୍ୱୟଂ ଦେବଦେବ ମହାଦେବ ଶିବଙ୍କର ତାଣ୍ଡବ ନୃତ୍ୟ ! ରାତି ପାହିଗଲା ନାଚରେ, ସଂଗୀତରେ । ପ୍ରତ୍ୟୁଷରେ ସମସ୍ତ ସନ୍ନ୍ୟାସୀ ଶ୍ରୀରାମକୃଷ୍ଣଙ୍କ ଦେହାବଶେଷ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଦେହରେ ଗୈରିକ ବସ୍ତ୍ର ଓ ମୁଖମଣ୍ଡଳର ଜ୍ୟୋତି ନରେନ୍ଦ୍ରଙ୍କର ମହାତ୍ୟାଗର ଭାବନାକୁ ଲୁକ୍କାୟିତ କରିପାରୁ ନଥିଲା । ଶ୍ରୀରାମକୃଷ୍ଣଙ୍କର ଜୀବନ୍ତ ଉପସ୍ଥିତି ସେଠାରେ ସମସ୍ତେ ଉପଲବ୍ଧି କରୁଥିଲେ ।

ବରାହନଗର ମଠ ଶ୍ରୀରାମକୃଷ୍ଣଙ୍କର ଚିନ୍ତାଧାରାରେ ହେଲା ଆଲୋକିତ । ତାଙ୍କର ସୂକ୍ଷ୍ମ ଶରୀର ନିରନ୍ତର ସେଠାରେ ବିରାଜିତ । ଯୁବ ସନ୍ନ୍ୟାସୀମାନଙ୍କ ପାଇଁ ନରେନ୍ଦ୍ର ଚବିଶ ଘଣ୍ଟା କାମ କରୁଥିଲେ । ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ କରି ନରେନ୍ଦ୍ର ଡାକ ଛାଡୁଥିଲେ, ''ଉଠ, ଜାଗ୍ରତ ହୁଅ, ଦିବ୍ୟ ଅମୃତ ପାନ କର ।'' ଯଦି କେହି ଯୁବ ସନ୍ନ୍ୟାସୀ ଅତ୍ୟଧିକ କୃଚ୍ଛ୍ର ସାଧନାରେ ଲିପ୍ତ ରହିବା ଦେଖୁଥିଲେ, ସେ ତତ୍‌କ୍ଷଣାତ୍ ସେଥିରୁ ନିବୃତ ରହିବାକୁ ପରାମର୍ଶ ଦେଉଥିଲେ । ତାଙ୍କ ମତରେ - ''ଆମ ପାଇଁ ତ ଠାକୁର ସବୁତକ କ୍ଳିଷ୍ଟ ସାଧନା ଓ କଠୋର ତପସ୍ୟା କରିଛନ୍ତି, ଆମର ଏତେ କରିବା ଆବଶ୍ୟକ ନାହିଁ । ତୁମେ କ'ଣ ଭାବୁଛ ଯେ ତୁମେ ସମସ୍ତେ ରାମକୃଷ୍ଣ ପରମହଂସ ହୋଇଯିବ । କେବେ ନୁହେଁ । ଗୋଟିଏ ଯୁଗରେ ଗୋଟିଏ ରାମକୃଷ୍ଣ ପରମହଂସ ଜନ୍ମ ଗ୍ରହଣ କରନ୍ତି ।''

ତାଙ୍କର କହିବାର ତାତ୍ପର୍ଯ୍ୟ ଯେ ସେ ସମସ୍ତ ପିଲାମାନଙ୍କର ଦାୟିତ୍ୱ ନେଇଛନ୍ତି । ସେମାନେ ସୁସ୍ଥ ଓ ସବଳ ରହିଲେ, ଆଧ୍ୟାତ୍ମିକ ସାଧନା ପଥରେ ଧୀର ଧୀରେ ଅଗ୍ରସର ହୋଇପାରିବେ । ଭାବ ପ୍ରବଣତା ସାଧନା ମାର୍ଗରେ ମନୁଷ୍ୟକୁ କିଛି ସମୟ ଉର୍ଦ୍ଧ୍ୱକୁ ନେଇଯାଇ ପାରେ, କିନ୍ତୁ ପରମୁହୂର୍ତ୍ତରେ ଖୁବ୍ ନିଚକୁ ମଧ୍ୟ ପତିତ କରିପାରେ । ପତନର ଭୟ ରହିଛି । ନରେନ୍ଦ୍ର ଉପଯୁକ୍ତ ଗୁରୁଙ୍କର ଶିଷ୍ୟ ଭାବେ ସବୁ ଗୁରୁଭାଇଙ୍କର ଯତ୍ନ ସୁଚାରୁଭାବେ ଏହି ବରାହନଗର ମଠରେ ଚାରିବର୍ଷ ଧରି ନେଇଥିଲେ । ଶ୍ରୀରାମକୃଷ୍ଣ ଦେହ ତ୍ୟାଗ ପୂର୍ବରୁ ନରେନ୍ଦ୍ରଙ୍କୁ ଡାକି କହିଥିଲେ, ''ଦେଖ ନରେନ୍, ତୋ ହାତରେ ଏହି ବାଳକମାନଙ୍କୁ ଅର୍ପଣ କରିଯାଉଛି । କାରଣ ସେମାନଙ୍କ ଅପେକ୍ଷା ତୁ ସବୁଠାରୁ ବୁଦ୍ଧିମାନ ଓ ଶକ୍ତିଶାଳୀ । ଏମାନଙ୍କର ଯତ୍ନ ନେବୁ । ଗୋଟିଏ ସ୍ଥାନରେ ରହି ସେମାନେ ଯେପରି ସାଧନ ଭଜନରେ ମଗ୍ନ ରୁହନ୍ତି, ତାହାର ସମସ୍ତ ବ୍ୟବସ୍ଥା କରିବୁ ।'' ନରେନ୍ଦ୍ର ତାହା ହିଁ କରୁଥିଲେ ।

ଅନ୍ୟପକ୍ଷରେ ଦିବ୍ୟ ଜନନୀ ସାରଦା ଦେବୀଙ୍କୁ ବରାହନଗର ମଠରେ ବାଳ ସନ୍ନ୍ୟାସୀମାନଙ୍କର ଦୁଃଖ ଦୁର୍ଦ୍ଦଶା ଅଛପା ନ ଥିଲା । ମା'ର ହୃଦୟ ସେମାନଙ୍କ ପାଇଁ ସର୍ବଦା

Digitized by srujanika@gmail.com

ବିଚଳିତ ହେଉଥିଲା । ଶ୍ରୀରାମକୃଷ୍ଣଙ୍କର ଅନ୍ତିମ ଉପଦେଶକୁ ନିଜର ପଣତ କାନିରେ ଗଣ୍ଠିଧନ କରି ସାଇତି ରଖିଛନ୍ତି । ନିଜେ ଅସହାୟ ପରିସ୍ଥିତିରେ କାଳାତିପାତ କରୁଥିଲେ ବି ମନ ତାଙ୍କର ରହିଥିଲା ବାଳ ସନ୍ନ୍ୟାସୀଙ୍କ ପାଖରେ । ବୁଦ୍ଧଗୟା, ବାରଣାସୀରେ ସନ୍ନ୍ୟାସୀମାନଙ୍କର ଜୀବନଯାପନ ଦୃଶ୍ୟ ତାଙ୍କ ମାତୃତ୍ୱ ହୃଦୟକୁ ଦୁଃଖାଭିଭୂତ କରିଥିଲା । ସେ ଅଶ୍ରୁଳ ନୟନରେ ଶ୍ରୀରାମକୃଷ୍ଣଙ୍କୁ ପ୍ରାର୍ଥନା କରି କହିଥିଲେ, - ହେ ପ୍ରଭୁ, ତୁମେ ମାନବ ଶରୀର ଧାରଣ କରି ଏହି ପୃଥିବୀପୃଷ୍ଠକୁ ଆସିଥିଲ, ଭକ୍ତମାନଙ୍କ ସହ ଲୀଳାଖେଳା କରି, ପୁଣି ଫେରିଗଲ ତୁମର ଅମର ଧାମକୁ । ତୁମେ ଚାଲିଗଲା ପରେ କ'ଣ ସବୁ ଶେଷ ହୋଇଗଲା ?? ତୁମ ଆସିବାର କ'ଣ ବା କାରଣ ଥିଲା ? ତୁମେ ଏଠାରେ ଅକାରଣେ ଏତେ ଦୁଃଖକଷ୍ଟ କାହିଁକି ଭୋଗ କଲ ? ବାରଣାସୀରେ ସାଧୁମାନେ ଭିକ ମାଗି ନିଜର କ୍ଷୁଧା ନିବାରଣ କରିବାରେ ମୁଁ ଦେଖିଛି, ସେମାନଙ୍କର ଘର ଦ୍ୱାର ନାହିଁ । ଗଛ ମୂଳରେ ସେମାନେ ଶୋଉଛନ୍ତି, କେଡ଼େ ହୀନିମାନ ସେମାନଙ୍କର ଜୀବନ ନିର୍ବାହ !! ହେ ଠାକୁର, ମୋ ପିଲାଙ୍କର ଏମିତି ଜୀବନ ଦେଖି ସହି ପାରିବି ନାହିଁ, ତୁମ ପାଇଁ ସେମାନେ ପିତାମାତା ଘର ଦ୍ୱାର ସବୁକିଛି ତ୍ୟାଗ କରିଛନ୍ତି । ସେମାନେ କ'ଣ ଦ୍ୱାର ଦ୍ୱାର ବୁଲି ଭିକ ମାଗିବେ ? ଯେଉଁମାନେ ତୁମର ନାମ ନେଇ ସଂସାର ତ୍ୟାଗ କରିଛନ୍ତି, ସେମାନଙ୍କର ଖାଦ୍ୟ, ବସ୍ତ୍ର ଓ ବାସ ସ୍ଥାନର ଅଭାବ ନ ରହୁ । ସେମାନେ ଯେପରି ତୁମର ନାମ ଜପି ଏକାଠି ବାସ କରିବେ, ଏବଂ ତୁମର ଆଦର୍ଶ ଓ ଭାବଧାରା ସଂସାରରେ ପ୍ରଚାର କରିବେ । ସଂସାରୀ ଗୃହସ୍ଥମାନେ ସେମାନଙ୍କ ପାଖରୁ ଆଧ୍ୟାତ୍ମିକ ବାଣୀ ଶୁଣି ଶାନ୍ତି ଓ ସନ୍ତୋଷରେ ଜୀବନ ବିତାଇବେ । ଏଥିପାଇଁ କ'ଣ ତୁମେ ଧରାଧାମକୁ ଆସି ନ ଥିଲ କି ? ମୋ ଛାତି ଆଜି ଫାଟିଯାଉଛି ସେମାନଙ୍କର ଅସହାୟ ଜୀବନ ନିର୍ବାହ ଦେଖି; ହେ ଠାକୁର ! ମୁଁ ମା, ମୋର ପିଲାମାନେ ବରାହନଗର ମଠରେ ଯେଉଁ ଦୁଃଖ କଷ୍ଟରେ କାଳାତିପାତ କରୁଛନ୍ତି, ସେମାନଙ୍କ ପ୍ରତି କୃପା କର, ଦୟାକର । ଏହି ମା'ର ପ୍ରାର୍ଥନା ଟିକିଏ ଶୁଣ ପ୍ରଭୁ ।

- ୪ -

*ସେହି ବ୍ୟକ୍ତି ପ୍ରକୃତ ନେତା ଯିଏ ଦଳର ସଦସ୍ୟମାନଙ୍କର ମନୋଭାବ ଓ ଚିନ୍ତାଧାରାକୁ ଶୀଘ୍ର ଓ ସହଜରେ ହୃଦୟଙ୍ଗମ କରିପାରେ । କେବଳ ହୃଦୟଙ୍ଗମ ନୁହେଁ, ତଦନୁସାରେ କର୍ମ କରିବାକୁ ଉତ୍ସାହିତ ହୁଏ ।*

ବରାହନଗର ମଠରେ ଅବସ୍ଥାନ କାଳରେ, ଯୁବ ସନ୍ନ୍ୟାସୀଗଣଙ୍କ ମନରେ ଏକ ନୂତନ ଉଦ୍ଦୀପନା ବସା ବାନ୍ଧିଲା । ମଠର ଚାରିକାନ୍ଥ ଭିତରେ ରହି, ରଙ୍ଗହୀନ ତର୍କ ବିତର୍କ ଓ ଶାସ୍ତ୍ରର ଶୁଷ୍କ ଅଧ୍ୟୟନରେ କେତେଦିନ ସେମାନେ ସମୟ ବିତାଇଥାନ୍ତେ ? ଅବଶ୍ୟ ପୁସ୍ତକ ଅଧ୍ୟୟନ ଆବଶ୍ୟକ, କିନ୍ତୁ ବ୍ୟକ୍ତିର ଅନୁଭୂତିକୁ ଏହା ସୁଦୃଢ଼ କରିପାରେ ନାହିଁ । ଶ୍ରୀରାମକୃଷ୍ଣ ବହି ପଢ଼ି ନ ଥିଲେ, କିନ୍ତୁ ନିଜର ଅନୁଭୂତିରୁ ସେ ସବୁ ଶିଖି ପାରିଥିଲେ ଯାହା ଶାସ୍ତ୍ର ସହ ମେଳ ଖାଉଥିଲା । ତୀର୍ଥ

Digitized by srujanika@gmail.com

ଭ୍ରମଣରେ ଅନେକ ସ୍ଥାନ ଦର୍ଶନ କରି ଅନୁଭୂତି ଲାଭ କରିବାକୁ ସେମାନଙ୍କର ମନ ଉଚ୍ଛନ୍ନ ହେଲା । ସାରଦା ପ୍ରସନ୍ନ ହଠାତ୍ ମଠରୁ ଦିନେ ଅନ୍ତର୍ଦ୍ଧାନ ହୋଇଗଲେ । ନରେନ୍ଦ୍ର କିନ୍ତୁ ତାଙ୍କର ଏଭଳି ଆଚରଣରେ କ୍ଷୁବ୍ଧ ହୋଇ ଅନ୍ୟତମ ବରିଷ୍ଠ ଗୁରୁଭାଇଙ୍କୁ କହିଲେ, "ତୁମେ କାହିଁକି ତାକୁ ଯିବାକୁ ଅନୁମତି ଦେଲ ? ଦେଖ ରାଖାଲ, ମୁଁ ବଡ଼ ଅସୁବିଧାରେ ପଡ଼ିଛି, ପରିବାର ଓ ସଂସାରର ସମସ୍ତ ମାୟା ମୋହ ତ୍ୟାଗ କରି ମୁଁ ଏଠାକୁ ପଳାଇ ଆସିଛି । ଏଠାରେ ବି ମୁଁ ନିଜକୁ ଏକ ବିଶାଳ ମାୟାରେ ବାନ୍ଧି ପକାଇଛି । ସାରଦାପ୍ରସନ୍ନ କିନ୍ତୁ ଅବୋଧ ବାଳକ, ତା ପାଇଁ ମୁଁ ବିଶେଷ ଚିନ୍ତିତ ।"

କିନ୍ତୁ ସାରଦା ପ୍ରସନ୍ନ ମଠ ତ୍ୟାଗକରି ଚାଲିଯିବା ପୂର୍ବରୁ ଖଣ୍ଡିଏ ଚିଠି ନରେନ୍ଦ୍ରଙ୍କୁ ଲେଖିଥିଲେ - "ମୁଁ ପଦବ୍ରଜରେ ବୃନ୍ଦାବନ ଚାଲିଯାଉଛି । ମୁଁ ଜାଣେ ସେଠାରେ ମୋ ପକ୍ଷରେ ବାସ କରିବା ବହୁ କଷ୍ଟଦାୟକ । କିଏ ଜାଣେ କେତେବେଳେ ମୋର ମନ ପରିବର୍ତ୍ତନ ହେବ ? ବହୁ ସମୟରେ ମୋ ପିତାମାତା ଓ ଆତ୍ମୀୟ ସ୍ୱଜନଙ୍କୁ ସ୍ୱପ୍ନ ଦେଖୁଛି । ମୋତେ ମାୟା ପ୍ରଲୋଭିତ କରୁଛି । ମୁଁ ଅନେକ କଷ୍ଟ ଭୋଗୁଛି, ଥରେ ଦୁଇଥର ମୋ ପରିବାର ପିତାମାତା ଓ ଆତ୍ମୀୟ ସ୍ୱଜନଙ୍କୁ ଦେଖିବା ପାଇଁ ଘରକୁ ଚାଲିଯାଇଥିଲି । ଏଠାରେ ବେଶିଦିନ ରହିବା ମୋ ପାଇଁ ଆଦୌ ମଙ୍ଗଳ ନୁହେଁ । ଏଠାରୁ ଚାଲିଯିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ମୋର ନ ଥିଲା, ନଚେତ୍ ମାୟାରେ ମୁଁ ପଡ଼ି ଯାଇଥାନ୍ତି ।"

ନରେନ୍ଦ୍ର ଚିଠି ପଢ଼ି ଆଘାତ ପ୍ରାପ୍ତ ହେଲେ । ସେ ଭାବିଲେ - ପିଲାମାନେ ତୀର୍ଥ ଭ୍ରମଣରେ ଯିବା ନିମନ୍ତେ ବ୍ୟାକୁଳିତ । ଏଭଳି ଯଦି ସେମାନେ ଚାହାଁନ୍ତି, ଅତି ଶୀଘ୍ର ମଠରେ ତାଲା ଝୁଲିବ । ତାହା ହିଁ ହେଉ । ସେମାନଙ୍କୁ ବାନ୍ଧି ରଖିବାକୁ ମୁଁ କିଏ ? ନରେନ୍ଦ୍ରଙ୍କର ମନ ସିନା ଏମନ୍ତ ଚିନ୍ତାରେ ଆଘାତପ୍ରାପ୍ତ ହେଉଥିଲା, କିନ୍ତୁ ସେ ବି ତୀର୍ଥ ଭ୍ରମଣରେ ଏକାକି ଚାଲିଯିବାର ମାନସିକତାରେ ଅସ୍ତବ୍ୟସ୍ତ ହେଉଥିଲେ । ମାୟାଜାଲରେ ପତିତ ନ ହେବା ପାଇଁ ସେ ସବୁପ୍ରକାର ବନ୍ଧନ ଛିଡ଼ାଇବାକୁ ମନେ ମନେ ପ୍ରସ୍ତୁତ ହେଉଥିଲେ । ଶ୍ରୀରାମକୃଷ୍ଣଙ୍କ ନିକଟରୁ ଯେଉଁ ଶିକ୍ଷା ସେ ପ୍ରାପ୍ତ ହୋଇଥିଲେ, ତାହାର ବାସ୍ତବ ରୂପ ସେ ଭାରତ ଭ୍ରମଣରେ ଦର୍ଶନ କରିବେ । ଭାରତର ସାମାଜିକ, ଅର୍ଥନୈତିକ ଓ ନୈତିକ ଅଧଃପତନ ତାଙ୍କୁ ବାରମ୍ବାର ଆଘାତ ଦେଉଥିଲା । ଅନ୍ୟ ଗୁରୁଭାଇଙ୍କ ସହ ବିଚାର ବିମର୍ଶ କଲେ । ଶଶୀ କେବଳ ବରାହନଗର ମଠରେ ରହିବେ । ଅନ୍ୟମାନେ ଭାରତ ଭ୍ରମଣରେ ଯିବେ । ମଝିରେ ମଝିରେ ବରାହନଗର ମଠକୁ ଫେରି ଆସିବେ ।

ସେହି ବ୍ୟକ୍ତି ପ୍ରକୃତ ନେତା ଯିଏ ଦଳର ସଦସ୍ୟମାନଙ୍କର ମନୋଭାବ ଓ ଚିନ୍ତାଧାରାକୁ ଶୀଘ୍ର ଓ ସହଜରେ ହୃଦୟଙ୍ଗମ କରିପାରେ । କେବଳ ହୃଦୟଙ୍ଗମ ନୁହେଁ, ତଦନୁସାରେ କର୍ମ କରିବାକୁ ଉତ୍ସାହିତ ହୁଏ । ନରେନ୍ଦ୍ର ଜାଣନ୍ତି, ହିନ୍ଦୁ ସନ୍ନ୍ୟାସୀଙ୍କର ଚରିତ୍ର ତୀର୍ଥ ଭ୍ରମଣ ଦ୍ୱାରା ଦୀପ୍ତିମନ୍ତ ଓ ରଶ୍ମିମନ୍ତ ହୁଏ । ଜଣେ ପରିବ୍ରାଜକ ସନ୍ନ୍ୟାସୀ ଓ ବହମାନ ସ୍ରୋତ କଦ୍ଭିନକାଳେ ଅଶୁଦ୍ଧ ଓ ଅପରିଷ୍କୃତ ହେବ ନାହିଁ । ସନ୍ନ୍ୟାସୀ ଗୋଟିଏ ସ୍ଥାନରେ ଅଧିକ କାଳ ବାସ କରେ ନାହିଁ, ସେଥିପାଇଁ ସ୍ଥାନ, କାଳ ଓ ପାତ୍ର ତାଙ୍କୁ ସ୍ପର୍ଶ କରିପାରେ ନାହିଁ । ଗୁରୁଭାଇମାନଙ୍କର ମନକଥା

Digitized by srujanika@gmail.com

ବୁଝିପାରି, ବରାହନଗର ମଠର ଦ୍ୱାର ସେ ଖୋଲିଦେଲେ - ସେମାନେ ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଅନୁଭୂତି ଲାଭ କରନ୍ତୁ - ମଠର ଶୃଙ୍ଖଳ ଭାଙ୍ଗି ଚତୁର୍ଦ୍ଦିଗକୁ ସେମାନେ ଚାଲି ଯାଆନ୍ତୁ; ନିଜର ସାମର୍ଥ୍ୟକୁ ପରୀକ୍ଷା କରି ନିଅନ୍ତୁ ।

ଅବଶ୍ୟ ଯୁବ ସନ୍ନ୍ୟାସୀମାନଙ୍କର ବରାହନଗର ମଠରେ କଠୋର ଆଧ୍ୟାତ୍ମିକ ସାଧନା ଏବଂ ପରବର୍ତ୍ତୀ ସମୟରେ ସେମାନଙ୍କର ବିଭିନ୍ନ ସ୍ଥାନ ପରିଭ୍ରମଣର ଯୋଜନାକୁ ଗୃହୀଭକ୍ତମାନେ ପସନ୍ଦ କରୁ ନ ଥିଲେ । ନରେନ୍ଦ୍ର ଯୁବଗଣଙ୍କୁ ପଥଭ୍ରଷ୍ଟ କରୁଛନ୍ତି ବୋଲି କେହି କେହି ମିଥ୍ୟାରେ ପ୍ରଚାର କରୁଥିଲେ । ସେମାନେ ଚାହୁଁଥିଲେ ଯେ ଘରେ ରହି ଯୁବକମାନେ ଶ୍ରୀରାମକୃଷ୍ଣଙ୍କର ପଥାନୁସରଣ କରିପାରିବେ । ଏପରିକି ଜଣେ ଗୃହୀଭକ୍ତ ଚିଡ଼ାଇବା ଠାଣିରେ ଏକଦା କହି ପକାଇଲେ, ଘରଦ୍ୱାର ତ୍ୟାଗ କରି ସତେକି ସେମାନେ ପରଂବ୍ରହ୍ମ ଦର୍ଶନ କରିବେ ? ଏଭଳି ବିଦ୍ରୂପ ମନ୍ତବ୍ୟ କରିବେ ? ନରେନ୍ଦ୍ରଙ୍କ ଭିତରେ ବିଦ୍ରୋହ ବହ୍ନି ଜଳି ଉଠିଲା, ତଥାକଥିତ ଗୃହସ୍ଥାଶ୍ରମ ଏବଂ କୁସଂସ୍କାରଛନ୍ନ ବଦ୍ଧ ମାନସିକତା ବିରୁଦ୍ଧରେ ଏହି ବହ୍ନି ଉଦ୍ଦିଷ୍ଟ ଥିଲା । ନରେନ୍ଦ୍ର ଉତ୍ୟକ୍ତ ସ୍ୱରରେ ତାଙ୍କୁ କହିଥିଲେ, ''ତୁମେ କ'ଣ ଭାବୁଛ ? ମନେକରାଯାଉ, ଆମେ ଈଶ୍ୱରୋପଲବ୍ଧି କରିନାହୁଁ; ତେବେ କ'ଣ ଆମେ ବିଷୟବାସନାପୂର୍ଣ୍ଣ ସଂସାରକୁ ଫେରିଯାଇ ଆମର ଉଚ୍ଚ ପ୍ରବୃତ୍ତି ବଳି ଦେଇଦେବୁ ?''

ନିର୍ଜନତା ଓ ନିଃସଙ୍ଗତାର ସ୍ୱାଦ ଆସ୍ୱାଦନ ନିମନ୍ତେ ନରେନ୍ଦ୍ରଙ୍କର ମନ ବି ପ୍ରଚଣ୍ଡ ବେଗରେ ଘୂମୁରି ଉଠିଲା । ନିଜର ଅନ୍ତଃଶକ୍ତିକୁ ପରୀକ୍ଷା କରିବା ପାଇଁ ତଥା ଅନ୍ୟ ଗୁରୁଭାଇ ଯେପରି ତାଙ୍କ ଉପରେ ସର୍ବଦା ନିର୍ଭର ନ କରନ୍ତି, ସେଥିସକାଶେ ସେ ମଠ ତ୍ୟାଗ କରି ପରିବ୍ରାଜକ ଭାବେ ଚାଲିଯିବା ନିମନ୍ତେ ନିଷ୍ପତ୍ତି ନେଲେ । ତାଙ୍କର ନିଷ୍ପତ୍ତି କଠୋର ସଂକଳ୍ପରେ ପରିଣତ ହେଲା । ଦିବ୍ୟ ଜନନୀ ସାରଦା ଦେବୀଙ୍କ ନିକଟରେ ଉପନୀତ ହୋଇ ନିଜର ମନକଥା ଜଣାଇଲେ ଏବଂ ତାଙ୍କର ଆଶୀର୍ବାଦ ଗ୍ରହଣ କରି ନିଜର ପରିବ୍ରାଜକ ଜୀବନ ଆରମ୍ଭ କରିବାକୁ ମନସ୍ଥ କଲେ । ତତ୍ ସଙ୍ଗେସଙ୍ଗେ ଜଣ ଜଣ କରି ଯୁବସନ୍ନ୍ୟାସୀ ମଠରୁ ବିଦାୟ ନେଲେ ଭାରତବର୍ଷ ଭୂଖଣ୍ଡରେ ଅବସ୍ଥିତ ତୀର୍ଥସ୍ଥାନ ପରିଭ୍ରମଣରେ । ୧୮୯୧ ମସିହା ଆରମ୍ଭରେ ଏକ ବ୍ରାହ୍ମ ମୁହୂର୍ତ୍ତରେ, ବରାହନଗର ମଠ ପରିତ୍ୟାଗ କରି, ଧୂଳିଧୂସରିତ ପଥରେ ନରେନ୍ଦ୍ର ହେଲେ ଚଳମାନ ପରିବ୍ରାଜକ । ଦିବ୍ୟ ଜନନୀ ସାରଦା ଦେବୀଙ୍କର ଆଶିଷ ଗ୍ରହଣ କରିବା ସମୟରେ ତାଙ୍କୁ କହିଥିଲେ, 'ମା, ଯେ ପର୍ଯ୍ୟନ୍ତ ଶ୍ରୀଗୁରୁଦେବଙ୍କର ଇପ୍‌ସିତ କାର୍ଯ୍ୟ ପୂରଣ କରି ନ ପାରିଛି, ସେପର୍ଯ୍ୟନ୍ତ ଏଠାକୁ ଆଉ ଫେରିବି ନାହିଁ ।''



Digitized by srujanika@gmail.com

॥ ତେର ॥

# ପରିବ୍ରାଜକ ଜୀବନ ଆରମ୍ଭ - ସ୍ୱାମୀ ଭାସ୍କରାନନ୍ଦ, ଶ୍ରୀ ତୈଲଙ୍ଗ ସ୍ୱାମୀ ଓ ପାଓ୍ୱାହାରୀ ବାବାଙ୍କ ସହ ସାକ୍ଷାତ

ସ୍ୱାମୀ ବିବେକାନନ୍ଦଙ୍କ ଭଳି ଏକ ମହାନ ବ୍ୟକ୍ତିତ୍ୱ ରାତାରାତି ତିଆରି ହୋଇ ନ ଥିଲା । ଶ୍ରୀରାମକୃଷ୍ଣ ପରମହଂସଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଦକ୍ଷିଣେଶ୍ୱର ତପୋଭୂମି ଏବଂ ପରବର୍ତ୍ତୀକାଳରେ କାଶିପୁର ଉଦ୍ୟାନବାଟିର ଆଧାତ୍ମିକ ପରିବେଶରେ ନରେନ୍ଦ୍ରନାଥ ସ୍ୱାମୀ ବିବେକାନନ୍ଦ ହେବା ପ୍ରକ୍ରିୟାରେ ପାଞ୍ଚବର୍ଷ କାଳ ବହୁ ଅଗ୍ନି ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । ନିଜ ଗୁରୁଦେବଙ୍କର ମହାପ୍ରୟାଣାନ୍ତେ, ନରେନ୍ଦ୍ରନାଥଙ୍କର ଅଗ୍ନି ପରୀକ୍ଷାର ଅନ୍ତ ହେଲାନାହିଁ ବରଂ ଏହା ଲେଲିହମାନ ଜ୍ୱଳନ୍ତ ଅଗ୍ନିରେ ପରିଣତ ହୋଇ ତାଙ୍କର ଦେହ, ମନ, ଚିନ୍ତା ଓ ଚେତନାକୁ ଦଗ୍ଧିଭୂତ କଲା; ଯେପରି ସ୍ୱର୍ଣ୍ଣକାରର ଜ୍ୱଳନ୍ତ ଅଗ୍ନିରେ ସୁବର୍ଣ୍ଣ ପଡ଼ି ଦଗ୍ଧିଭୂତ ହୁଏ । ବରାହନଗର ମଠରେ ଚାରିବର୍ଷରୁ ଊର୍ଦ୍ଧ୍ୱ ସମୟ ନରେନ୍ଦ୍ରନାଥ ସୁନା ଭଳି ଅଗ୍ନିରେ ଖାଲି ଆଉଟପାଉଟ ହୋଇଛନ୍ତି । କେବଳ ଯେ ଆଧାତ୍ମିକ ରାଜ୍ୟର ଶୀର୍ଷ ସ୍ଥାନରେ ଉପନୀତ ହେବାର ତୀବ୍ର ମାନସିକତା ଯୋଗୁଁ ଏତାଦୃଶ ଡହଳବିକଳ ଅବସ୍ଥା ସଂଘଟିତ ହେଉନଥିଲା, ବରଂ ତତ୍‌କାଳୀନ ଭାରତୀୟ ସାମାଜିକ, ଧାର୍ମିକ, ଆର୍ଥିକ ଓ ନୈତିକ ଅବସ୍ଥାର ଅଧଃପତନ ତାଙ୍କ ଭିତରେ ବିଦ୍ରୋହ ବହ୍ନି ଜଳେଇ ଦେଉଥିଲା । ଏହିସବୁ ଜ୍ୱଳନ ସ୍ୱାମୀ ବିବେକାନନ୍ଦ ହେବା ପ୍ରକ୍ରିୟାର ଅଂଶସ୍ୱରୂପ ଥିଲା ।

ବର୍ତ୍ତମାନ ପରିବ୍ରାଜକ ପଥ ବି ଅନ୍ୟ ଏକ ଅଗ୍ନି ପରୀକ୍ଷାର ପଥ, ସ୍ୱାମୀ ବିବେକାନନ୍ଦ ହେବା ପ୍ରକ୍ରିୟାର ପଥ । ହଁ, ଏଠାରେ କହିବା ବହୁଲ୍ୟ ଯେ ସ୍ୱାମୀ ବିବେକାନନ୍ଦ ସମ ଏକ ବଳିଷ୍ଠ ଚରିତ୍ର ସମଗ୍ର ବିଶ୍ୱରେ ସୁପରିଚିତ ହେବାପାଇଁ ପ୍ରାକ୍ ବିବେକାନନ୍ଦ ଜୀବନ କେତେ ସାଧନା, ତପସ୍ୟା ତଥା ଅସୀମ ଶାରୀରିକ ଓ ମାନସିକ ଯନ୍ତ୍ରଣା ସହ୍ୟ କରିଛି, ତାହାର ବିସ୍ତୃତ ବିବରଣୀ କେହି ଲିପିବଦ୍ଧ କରିନାହାନ୍ତି । ତଥାପି ଶ୍ରୀରାମକୃଷ୍ଣ ପରମହଂସ ଅନ୍ତିମ ସମୟରେ ଯେଉଁ ମହାଶକ୍ତି ନରେନ୍ଦ୍ରଙ୍କ ମଧ୍ୟରେ ପ୍ରବେଶ କରାଇ କପର୍ଦ୍ଦକ ଶୂନ୍ୟ ଫକୀର ହୋଇଯିବାର ଅଶ୍ଳୀଳ ମନ୍ତବ୍ୟ ଦେଇଥିଲେ, ସେହି ଶକ୍ତି ନରେନ୍ଦ୍ରଙ୍କୁ ବିବେକାନନ୍ଦ ହେବା ପ୍ରକ୍ରିୟାକୁ ତୀବ୍ରତର କରିଥିଲା ।

ପଦଚାରଣରେ ଆରମ୍ଭ ହେଲା ପରିବ୍ରାଜକ ଜୀବନ । ସମଗ୍ର ଭାରତବର୍ଷ ପରିଭ୍ରମଣ କରି ଭାରତର ମୂଳ ସନାତନ ପ୍ରାଣକୁ ବିଭିନ୍ନ ଦୃଷ୍ଟିରେ, ବିଭିନ୍ନ ଭଙ୍ଗୀରେ ସେ ଉପଲବ୍ଧି କରିବେ ।

Digitized by srujanika@gmail.com

ଯୋଗାରଢ଼, ବ୍ରହ୍ମଜ୍ଞାନୀ ସ୍ୱାମୀ ବିବେକାନନ୍ଦ ଚାଲିଲେ ଭାରତବର୍ଷର ବହୁ ପଥ, ଗ୍ରାମ, ସହର, ତୀର୍ଥସ୍ଥାନ, ଜନପଦ, ଅରଣ୍ୟ, ନଦନଦୀ, ମରୁଭୂମି, ପାହାଡ଼ ପର୍ବତ; ମସ୍ତକ ଉପରେ ଅନନ୍ତ ଆକାଶ, ପାଦ ତଳେ ବହୁ ବିଚିତ୍ରମୟୀ ମା ଧରିତ୍ରୀ ! ଶରୀରର ଗୈରିକ ଉତ୍ତରୀୟ ମୁକ୍ତ ପବନରେ ବୈଜୟନ୍ତୀ ଝଣ୍ଡା ଭଳି ଉଡ୍ଡୟମାନ । ହସ୍ତରେ ଲମ୍ବା ଯଷ୍ଟି, ସ୍କନ୍ଧରେ ଝୁଲନ୍ତା ଥଳିରେ ଭଗବତ ଗୀତା, ଇଶାନୁସରଣ ପୁସ୍ତକ ଓ ଶ୍ରୀରାମକୃଷ୍ଣ ପରମହଂସଙ୍କର ଫଟୋ । ସମ୍ମୁଖରେ ଅସରନ୍ତି ଚକ୍ରବାଳ ହାତଠାରି ଡାକୁଥିଲା ନୀରବରେ "ଭଗ ଚରୈବେତି" । ନିଃସଙ୍ଗ ସନ୍ୟାସୀ ବିବେକାନନ୍ଦ ଏକ ନିଷ୍ଠାରେ, ଭାରତର ଆତ୍ମାକୁ ବହୁରୂପରେ ଦର୍ଶନ କରିବା ପାଇଁ ଚାଲୁଥିଲେ । ନିର୍ବିକଳ୍ପ ସମାଧିରେ ଶ୍ରୀରାମକୃଷ୍ଣ ତାଙ୍କୁ ଦେଖାଇ ଦେଇଥିଲେ ସବୁକିଛିର ସମଷ୍ଟିପୂର୍ଣ୍ଣ ଏକ ବ୍ରହ୍ମକୁ । କିନ୍ତୁ ଆଜି ପୁନର୍ବାର ସେହି ଏକ ବ୍ରହ୍ମକୁ ବହୁ ରୂପରେ ଦର୍ଶନ କରିବେ ଭାରତବର୍ଷର ପ୍ରତ୍ୟେକ ଗଳି କନ୍ଦିରେ । ସେ ଅନୁଭବ କରିବେ ପୂର୍ଣ୍ଣ ବ୍ରହ୍ମକୁ ସୂର୍ଯ୍ୟଙ୍କର ପ୍ରଖର ଉଷ୍ମ ତାପରେ, ଚନ୍ଦ୍ରର ଶୀତଳ ରଶ୍ମୀରେ, ନଦୀର ଶୀତଳ ଜଳରେ, ଭୀଷଣ ବର୍ଷାର କମ୍ପନରେ, ଅଗ୍ନାଅଗ୍ନି ବନସ୍ତର ଛାୟାରେ, ଜନହୀନ ପଥର ନୀରବତାରେ ଓ ଜନବହୁଳ ପଥର ଘୋ ଘୋ ଶବ୍ଦରେ ।

ତାଙ୍କ ହୃଦୟରେ ବିଦ୍ୟମାନ ଜାଗ୍ରତ ଅବତୀର୍ଣ୍ଣ ଭଗବାନ ଶ୍ରୀରାମକୃଷ୍ଣ । ତାଙ୍କୁ କୌଣସି ଗୋଟିଏ ମନ୍ଦିରରେ ସ୍ଥାପିତ କରି ନାହାନ୍ତି । ସେ ଏକ ସ୍ଥାନରେ ବସି ଭୋଗ, ନୈବେଦ୍ୟ ସେବନ କରିବାର ଦେବତା ନୁହଁନ୍ତି । ସେ ଭକ୍ତପ୍ରାଣ, ଭକ୍ତ ହୃଦୟରେ ଦୁର୍ବାର ଅନୁପ୍ରେରଣା ହୋଇ ସ୍ୱାମୀ ବିବେକାନନ୍ଦଙ୍କୁ ତୀର୍ଥରୁ ତୀର୍ଥ, ନଗର, ଜନପଦ, ପର୍ବତ ଗୁହା, ଅରଣ୍ୟ ଦରିଦ୍ରର ପର୍ଣ୍ଣ କୁଟୀର, ରାଜାର ପ୍ରାସାଦ, ଗୃହହୀନର ବୃକ୍ଷଛାୟା ପାଖକୁ ନେଇଯାଉଛନ୍ତି । ପ୍ରତ୍ୟେକ ଭିତରେ ସେ ଉପଲବ୍ଧି କରିବେ ଭଗବାନଙ୍କର ସତ୍ତାକୁ । ସେ ଦେଖିବେ ଯେ ସେହି ଏକଇ ପରମସତ୍ୟ କିପରି ଏକରୁ ବହୁ ହୋଇଛନ୍ତି । ଦର୍ଶନ କରିବେ ନିଜ ଆଖିରେ । ଶ୍ରୀରାମକୃଷ୍ଣଙ୍କର ସ୍ୱର ନିଜ ଅନ୍ତରରେ ଶୁଣୁଛନ୍ତି 'ଦେଖିନେ ନରେନ୍, ଏହି ଭାରତବର୍ଷ କେତେ ଅଜ୍ଞାନ ସମ୍ମୁତ ମୁଖରେ ଦାରିଦ୍ର୍ୟପିଷ୍ଟ ନାରାୟଣର କି ଲାଞ୍ଛନା ! ନିରୀହ ଉପରେ ସମାଜର କି ନିଷ୍ପେଷଣ - କେତେ ସୁପ୍ତ ଦେବତ୍ୱ ମୁକ୍ତି ପ୍ରତ୍ୟାଶୀ । ଅନ୍ୟ ପକ୍ଷରେ ଉନ୍ମୋଚନ କରିବେ କେତେ ମଳିନ ଆବରଣ ଅନ୍ତରାଳେ ଏଣେ ତେଣେ ବିଚ୍ଛୁରିତ ଅତୁଳନୀୟ ଆଧ୍ୟାତ୍ମ ସମ୍ପଦ ।

ସ୍ୱାମୀ ବିବେକାନନ୍ଦ (ସ୍ୱାମୀଜୀ) କଲିକତାରୁ ବାହାରି କାଶୀ ଅଭିମୁଖେ ଯାତ୍ରା କଲେ । କ୍ଷୁଧା ନିବାରଣ ପାଇଁ ଭିକ୍ଷା ଉପରେ ନିର୍ଭର କରିବା ବ୍ୟତୀତ ଅନ୍ୟ ପନ୍ଥା ତାଙ୍କର ନ ଥିଲା । ପଥରେ ଅବଶ ହୋଇ ପଡ଼ିଲେ, ଆଶ୍ରୟ ନେଉଥିଲେ ବୃକ୍ଷର ଛାୟା ତଳେ, ମନ୍ଦିର ଓ ମଠରେ, ଗରିବର ପର୍ଣ୍ଣ କୁଟୀରରେ, ଧନୀ ଗୃହରେ, ରାଜ ପ୍ରାସାଦରେ । ଅଗ୍ନାଅଗ୍ନି ବନସ୍ତର କଣ୍ଟକିତ ବୃକ୍ଷମୂଳ କେତେବେଳେ ହୋଇଛି ତ ଶଯ୍ୟା, ଆଉ କେତେବେଳେ ପଥ ପାର୍ଶ୍ୱର ବୃକ୍ଷ ତଳର ଛାୟା ଓ ଭଗ୍ନ ମନ୍ଦିରର ଚଟାଣ ହୋଇଛି ଶୟନ ଶଯ୍ୟା । ସମୟ ସମୟରେ ଭିକ୍ଷା ନ ମିଳିଲେ, କିମ୍ବା କେହି ତାଙ୍କୁ ଆମନ୍ତ୍ରଣ ନ କଲେ, କିଛି ହିଁ ଆହାର ନ କରି ରହିଯାଉଥିଲେ ପାଞ୍ଚ ଛଅ ଦିନ । ଭୋକ ଉପାସରେ କେବେ ବି ତାଙ୍କର ମନ ଲକ୍ଷ୍ୟରୁ ବିଚ୍ୟୁତ ହେଉ ନ ଥିଲା ।

Digitized by srujanika@gmail.com

- ୧ -

*ବାରଣାସୀରେ ବାନରପଲ ସହ ମୁହାଁମୁହିଁ : ''ଆମେ ବାସ୍ତବରେ ଯଦି ସ୍ୱାଧୀନତା ଚାହୁଁ, ତେବେ ପ୍ରକୃତି ଉପରେ ବିଜୟ ଲାଭ କରିବାକୁ ପଡ଼ିବ, ପ୍ରକୃତିଠାରୁ ଦୂରେଇ ଯାଇ ନୁହେଁ, ଭୀରୁ କେବେବି ବିଜୟ ହାସଲ କରି ପାରିବ ନାହିଁ ।''*

ବହୁ ପଥ ଅତିକ୍ରାନ୍ତେ, ମନ୍ଦିରମାଳିନୀ ବାରଣାସୀ ନଗରରେ ସେ ଉପନୀତ ହେଲେ । କାଶି ବିଶ୍ୱନାଥ ଓ ମାତା ଅନ୍ନପୂର୍ଣ୍ଣାଙ୍କ ଦର୍ଶନ କରି ସାରନାଥ ଅଭିମୁଖେ ପଦଚାରଣ କଲେ । ସାରନାଥସ୍ଥିତ ମୃଗବିହାରରେ ଭଗବାନ ଗୌତମବୁଦ୍ଧ ପ୍ରଥମେ ନିଜର ବାଣୀ ପ୍ରଦାନ କରିଥିଲେ । ଅନାବନା ବୃକ୍ଷରାଜିରେ ପରିପୂର୍ଣ୍ଣ ଭଗ୍ନ ସ୍ତୁପ ଓ ବୌଦ୍ଧ ମଠ ଦର୍ଶନ ସ୍ୱାମୀଜୀଙ୍କର ଭାବଧାରାକୁ ଉଜ୍ଜଳମୟ କଲା ଏବଂ ବୁଦ୍ଧଙ୍କର ଉପଦେଶନ ସ୍ମୃତିପଟରେ ଉଦ୍‌ଜୀବୀତ ହେଲା । ବୁଦ୍ଧଙ୍କ ସମ ସେ ବର୍ତ୍ତମାନ ପ୍ରତିମୁହୂର୍ତ୍ତରେ ସମ୍ମୁଖୀନ ହେଉଛନ୍ତି ବାହ୍ୟଜଗତର ଭୀଷଣ ଓ କରାଳ ପ୍ରତିକୂଳ ଅବସ୍ଥା ଏବଂ ଅନ୍ତର୍ଜଗତର ନୈରାଶ୍ୟ ଓ ସଂଶୟରୂପକ ରାକ୍ଷସର ଅଟ୍ଟହାସ୍ୟ । ଈଶ୍ୱରଙ୍କର ଅସ୍ତିତ୍ୱ ଓ ଅନସ୍ତିତ୍ୱ ଚିନ୍ତାରେ ସେ ବାରମ୍ବାର ବ୍ୟତିବ୍ୟସ୍ତ ହୋଇପଡୁଥିବା ବେଳେ ଶ୍ରୀରାମକୃଷ୍ଣଙ୍କର କେଉପଦ ଆଶ୍ୱାସନାର ବାଣୀ ''ନରେନ୍, ବିଶ୍ୱାସ ହିଁ ମୂଳବସ୍ତୁ, ବିଶ୍ୱାସ ରହିଲେ ଈଶ୍ୱର ତୋ ପାଖେ ପାଖେ ରହିଛନ୍ତି ବୋଲି ତୁ ଅନୁଭବ କରିବୁ'' କେବଳ ତାଙ୍କର ବିଦ୍ରୋହୀ ମନକୁ ଶାନ୍ତ ଓ ସ୍ଥିର କରୁଥିଲା । ତତ୍‌ପଶ୍ଚାତେ ଦୁର୍ଗା ମନ୍ଦିରରେ ପହଞ୍ଚି ମା ଦୁର୍ଗାଙ୍କୁ ପ୍ରଣାମ କରି ପ୍ରତ୍ୟାବର୍ତ୍ତନ କରିବା ସମୟରେ ଏକ ଦୁର୍ଦ୍ଦାନ୍ତ ବାନରପଲ ସହ ସେ ମୁହାଁମୁହିଁ ହେଲେ । ବହୁ ବାନର ଏକା ସାଙ୍ଗରେ ଅପ୍ରତ୍ୟାଶିତ ଭାବେ ତାଙ୍କୁ ଭୟାନକ ଭାବେ ଆକ୍ରମଣ କଲେ । ଆକ୍ରମଣରୁ ତ୍ରାହି ପାଇବା ପାଇଁ ସେ ପ୍ରାଣ ବିକଳରେ ଦୌଡ଼ିଲେ; କିନ୍ତୁ ବାନର ଛାଡ଼ିବାର ଜନ୍ତୁ ନୁହଁନ୍ତି । ସେମାନେ ବି ତୀବ୍ର ବେଗରେ ଦୌଡ଼ି ତାଙ୍କୁ ଝାମ୍ପି ଆଘାତ କରିବାକୁ ଉଦ୍ୟତ ହେଲେ ।

ସେ ଅଧିକ କାଳ ଦୌଡ଼ି ନ ପାରି ଅବଶ ହୋଇପଡ଼ିଲେ । ମନେ ମନେ ଭାବିନେଲେ ଯେ ସେ ନିଶ୍ଚିତ ବାନାରଗୁଡ଼ିକ ଦ୍ୱାରା କ୍ଷତାକ୍ତ ହେବେ । ଏହି ସମୟରେ ସେ ହଠାତ୍ ଶୁଣିବାକୁ ପାଇଲେ ଜଣେ ସନ୍ନ୍ୟାସୀଙ୍କର କଣ୍ଠ ସ୍ୱର ''ବସ ଦୌଡ଼ ନାହିଁ, ଜାନୱାରମାନଙ୍କର ସମ୍ମୁଖୀନ ହୁଅ ।'' ସ୍ୱାମୀଜୀ ଦପ୍‌କିନା ଠିଆ ହେଲେ ଏବଂ ବୀରଦର୍ପରେ ଚାହିଁଲେ ଭୟାନକ ବାନରପଲଙ୍କୁ । ତାଙ୍କର ତେଜସ୍ୱୀ ଚାହାଁଣି ଅତୀବ ପ୍ରଖର ଥିଲା । ବାନରପଲ ଆଉ ଅଗ୍ରସର ହେଲେ ନାହିଁ । ବିକୃତ ଦାନ୍ତନିକୁଟା ମୁହଁରେ ଥରେ ତାଙ୍କୁ ଚାହିଁ ପଶ୍ଚାଦ୍‌ପଦ ହେଲେ । ସ୍ୱାମୀଜୀଙ୍କର ହୃଦୟ ଅଜ୍ଞେୟ ସନ୍ନ୍ୟାସୀଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନରେ ପୂର୍ଣ୍ଣ ହେଲା । ସେ ତାଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ, ପାରମ୍ପରିକ ରୀତିରେ ପ୍ରଣାମ ଜଣାଇ ସେଠାରୁ ବିଦାୟ ନେଲେ । ପରବର୍ତ୍ତୀକାଳରେ ସ୍ୱାମୀଜୀ ଉକ୍ତ ଘଟଣାର ସ୍ମୃତିଚାରଣ କରି ଏକଦା ଆମେରିକୀୟ ଶିଷ୍ୟଗଣଙ୍କୁ କହିଥିଲେ, ''ସମସ୍ତେ ଏହି ଘଟଣାରୁ ଶିକ୍ଷା ଲାଭ କରିବା ଉଚିତ - ଭୀଷଣ ଓ ଭୟଙ୍କର ପରିସ୍ଥିତିକୁ

Digitized by srujanika@gmail.com

ସାହସର ସହିତ ସମ୍ମୁଖୀନ ହୁଅ । ଜୀବନର ଦୁଃଖ, କଷ୍ଟ ଓ ସମସ୍ୟାକୁ ଖାତିର ନ କରି ସେଗୁଡ଼ିକର ସମାଧାନର ଉପାୟ ସାହସର ସହିତ ବାହାର କଲେ, ବାନରପଲ ପଳାୟନ ସଦୃଶ ସମସ୍ତ ସମସ୍ୟାର ସମାଧାନ ହୋଇଯିବ । ଆମେ ବାସ୍ତବରେ ଯଦି ସ୍ୱାଧୀନତା ଚାହୁଁ, ତେବେ ପ୍ରକୃତି ଉପରେ ବିଜୟ ଲାଭ କରିବାକୁ ପଡ଼ିବ, ପ୍ରକୃତିଠାରୁ ଦୂରେଇ ଯାଇ ନୁହେଁ । ଭୀରୁ କେବେବି ବିଜୟ ହାସଲ କରିପାରିବ ନାହିଁ ।''

ବାରଣାସୀ ଅବସ୍ଥାନ କାଳରେ, ସ୍ୱାମୀଜୀ ଦ୍ୱାରକା ଦାସ ଆଶ୍ରମରେ ରହିଥିଲେ । ସେଠାରେ ବହୁ ସନ୍ନ୍ୟାସୀ ଓ ବିଦ୍ୱାନଙ୍କ ସହ ତାଙ୍କର ସାକ୍ଷାତ ହେଲା । ବଙ୍ଗଳାର ବିଖ୍ୟାତ ପଣ୍ଡିତ ଓ ଲେଖକ **ଭୂଦେବ ମୁଖୋପାଧାୟ**ଙ୍କ ସହ ଏଠାରେ ହିନ୍ଦୁଧର୍ମର ସକାରାତ୍ମକ ଦିଗ ଉପରେ ସେ ବହୁ ଆଲୋଚନା କରିଥିଲେ । ସ୍ୱାମୀଜୀ ଆଶ୍ରମରୁ ବିଦାୟ ନେବାପରେ ପଣ୍ଡିତ ମହାଶୟ ମନ୍ତବ୍ୟ ଦେଇଥିଲେ, ''ଅତି ଆଶ୍ଚର୍ଯ୍ୟ ! ଏତେ କମ୍ ବୟସରେ ଏଭଳି ଅନୁଭୂତି ଓ ଅନ୍ତର୍ଦୃଷ୍ଟି ସେ ଲାଭ କରିପାରିଛନ୍ତି ! ସେ ଜଣେ ମହାପୁରୁଷ ନିଶ୍ଚୟ ହେବେ ।''

ନିଜ ଗୁରୁଦେବଙ୍କ ମୁଖରୁ ଦକ୍ଷିଣେଶ୍ୱରରେ ମହାନ ସନ୍ଥ ଓ ସନ୍ନ୍ୟାସୀ ତୈଲଙ୍ଗ ସ୍ୱାମୀଙ୍କ ଅଦ୍ଭୁତ ଐଶ୍ୱରିକ ଆଚରଣ ସମ୍ବନ୍ଧରେ ଶୁଣିଥିଲେ । ତାଙ୍କୁ ଦର୍ଶନ କରିବା ପାଇଁ ମନ ତାଙ୍କର ବ୍ୟଗ୍ର ହୋଇଉଠିଲା । ତୈଲଙ୍ଗ ସ୍ୱାମୀ ସେହି ସମୟରେ ଏକ ଶିବନ୍ଦିରରେ ଅବସ୍ଥାନ କରୁଥିଲେ । ବାହ୍ୟଜଗତ ପ୍ରତି ତାଙ୍କର କୌଣସି ସ୍ପୃହା ନ ଥିଲା; ବହୁବର୍ଷ ପୂର୍ବରୁ ଶ୍ରୀରାମକୃଷ୍ଣ ପରମହଂସ, ତାଙ୍କୁ ସାକ୍ଷାତ କରିଥିଲେ ଏବଂ ଠାର ମାଧ୍ୟମରେ ସେ ତାଙ୍କ ପ୍ରଶ୍ନର ଉତ୍ତର ଦେଇ କହିଥିଲେ, - ଜୀବ ଓ ବ୍ରହ୍ମ ଦୁଇଟି ସତ୍ତା ବୋଲି ଜଗତରେ ପ୍ରତୀୟମାନ ହୁଅନ୍ତି, କିନ୍ତୁ ସେହି ଦୁଇଟି ସତ୍ତା ବାସ୍ତବରେ ଏକ ଓ ଅଭିନ୍ନ । ସ୍ୱାମୀଜୀ ଆବେଗପୂର୍ଣ୍ଣ ଉତ୍ସାହ ସହିତ ମହାନ୍ ତ୍ୟାଗୀ ତୈଲଙ୍ଗ ସ୍ୱାମୀଙ୍କୁ ସାକ୍ଷାତ କଲେ ଏବଂ ଭକ୍ତିପୂତ ପ୍ରଣାମ ଜଣାଇଲେ । ସାକ୍ଷାତ ଶିବ ସଦୃଶ ସତେକି ସେ ଗଭୀର ଧ୍ୟାନରେ ମଗ୍ନ !

ବାରଣାସୀରେ ଅନ୍ୟ ଏକ ମହାଜ୍ଞାନୀ ସନ୍ନ୍ୟାସୀ ସ୍ୱାମୀ ଭାସ୍କରାନନ୍ଦଙ୍କୁ ସ୍ୱାମୀଜୀ ଭେଟିଲେ । ସେ ନିଜ ଆଶ୍ରମରେ ପ୍ରାୟତଃ ଉଲଗ୍ନ ଅବସ୍ଥାରେ କାଳାତିପାତ କରୁଥିଲେ । ସ୍ୱାମୀଜୀ ତାଙ୍କୁ ପ୍ରଣିପାତ କରି ଆଧ୍ୟାତ୍ମିକ ବିଷୟବସ୍ତୁ ଉପରେ ଆଲୋଚନା କଲେ; କିନ୍ତୁ ଆଲୋଚନାର ଦିଗ କାମିନୀ ଓ କାଞ୍ଚନ ତ୍ୟାଗ ସମ୍ବନ୍ଧିତ ବିଷୟବସ୍ତୁ ଅଭିମୁଖେ ମୁହାଁଇଲାରୁ ସ୍ୱାମୀ ଭାସ୍କରାନନ୍ଦ କହିଲେ ''କୌଣସି ବ୍ୟକ୍ତି ଏହି ଜଗତରେ ସମ୍ପୂର୍ଣ୍ଣ କାମିନୀ ଓ କାଞ୍ଚନ ତ୍ୟାଗ କରିପାରିବେ ନାହିଁ ।'' ସ୍ୱାମୀ ବିବେକାନନ୍ଦ ତାଙ୍କର ଏଭଳି ଯୁକ୍ତିକୁ ପ୍ରତ୍ୟାଖ୍ୟାନ କରି କହିଲେ, ''ମହାଶୟ, ଆପଣ ଏମିତି କ'ଣ କହୁଛନ୍ତି ? ଅନେକ ବ୍ୟକ୍ତି ନିଜ ଜୀବନରେ କାମିନୀ ଓ କାଞ୍ଚନ ତ୍ୟାଗ କରିଛନ୍ତି । ଏହା ତ ସନ୍ନ୍ୟାସୀ ଜୀବନର ମୂଳମନ୍ତ୍ର ଓ ଲକ୍ଷ୍ୟ । ତା'ବାଦେ ମୁଁ ଏଭଳି ଏକ ବ୍ୟକ୍ତିଙ୍କୁ ନିଜ ଜୀବନରେ ଦେଖିଛି ଯିଏ ସମ୍ପୂର୍ଣ୍ଣଭାବେ କାମିନୀ ଓ କାଞ୍ଚନ ତ୍ୟାଗ କରିଥିଲେ । ସ୍ୱାମୀ ଭାସ୍କରାନନ୍ଦଙ୍କ ଓଷ୍ଠରେ ଲହରିତ ହେଲା ମୃଦୁ ହସ ସେ ତତ୍‌କ୍ଷଣାତ୍ କହିଲେ, ''ତୁମେ ବାଳକ । ତୁମେ ବା କ'ଣ ଜାଣିଛ ? ନିଜ ଗୁରୁଦେବଙ୍କର ଜୀବନଚର୍ଯ୍ୟା, ନିଜ ଜୀବନର ଲକ୍ଷ୍ୟ ଏବଂ ସନ୍ନ୍ୟାସୀ

Digitized by srujanika@gmail.com

ଜୀବନର ମୌଳିକ ନୀତି ଓ ସିଦ୍ଧାନ୍ତ ପ୍ରତି ଆହ୍ୱାନଜନକ ମନ୍ତବ୍ୟ ଶୁଣି; ସ୍ୱାମୀଜୀ ଭୀଷଣ କ୍ରୋଧରେ ଉତ୍ୟକ୍ତ ହୋଇ ତାଙ୍କ ସହ ପ୍ରବଳ ଯୁକ୍ତିତର୍କରେ ମାତିଗଲେ । ଭାସ୍କରାନନ୍ଦ ଓ ତାଙ୍କର ଶିଷ୍ୟଗଣ ସ୍ୱାମୀଜୀଙ୍କର ଅଗ୍ନିବର୍ଷୀ ବାଗ୍ମୀତା ପରିଲକ୍ଷିତ କରି ବାକ୍‌ହୀନ ହୋଇ ଏହି ଦୀପ୍ତିମନ୍ତ ସନ୍ନ୍ୟାସୀଙ୍କୁ ଅପଲକ ନୟନରେ କେବଳ ଚାହିଁଲେ । କିନ୍ତୁ ସେଠାରେ ଉପସ୍ଥିତ ଭକ୍ତ, ଅନୁଗାମୀ ଓ ଭଦ୍ରବ୍ୟକ୍ତିଙ୍କ ଆଡ଼କୁ ଚାହିଁ ଭାସ୍କରାନନ୍ଦ କହିଲେ, ''ଦେଖୁଛ ଏହି ତେଜସ୍ୱୀ ଯୁବକଙ୍କୁ । ତାଙ୍କ ଜିହ୍ୱାରେ ସ୍ୱୟଂ ସରସ୍ୱତୀ ବିରାଜିତା । ତାଙ୍କର ମନ ଏକ ବିଶାଳ ଆଲୋକ ସମ ।'' ନିଜ ଗୁରୁଦେବଙ୍କ ପ୍ରତି ଅବିଶ୍ୱାସର ମନ୍ତବ୍ୟ ଶୁଣିବା ପରେ, ସ୍ୱାମୀଜୀ ତତ୍‌କ୍ଷଣାତ୍ ଉକ୍ତ ସ୍ଥାନ ଛାଡ଼ି ଚାଲି ଆସିଲେ ।

ଏହି ଦୁଇଜଣ ସନ୍ନ୍ୟାସୀ - ତୈଲଙ୍ଗ ସ୍ୱାମୀ ଓ ସ୍ୱାମୀ ଭାସ୍କରାନନ୍ଦଙ୍କ ସହ ସାକ୍ଷାତ, ସ୍ୱାମୀଜୀଙ୍କ ମନ ଓ ଚେତନାରେ ସୃଷ୍ଟି କଲା ଉତ୍ତାଳ ତରଙ୍ଗ । ସେ ସେଠାରୁ ସିଧା ବରାହନଗର ମଠକୁ ପ୍ରତ୍ୟାବର୍ତ୍ତନ କଲେ । ମନ ଓ ଚେତନାରେ ଉଠୁଥିବା ସହସ୍ର ତରଙ୍ଗକୁ ଶାନ୍ତ କରିବା ପାଇଁ ଗଭୀର ଧ୍ୟାନରେ ସେ ହେଲେ ମଗ୍ନ । ଧ୍ୟାନାବସ୍ଥାର ଏକ ଅନ୍ତର୍ଦୃଷ୍ଟିର ଉଦୟ ହେଲା । ସେ ଉପଲବ୍ଧି କଲେ - ବେଦାନ୍ତ ଦର୍ଶନ ଆତ୍ମାର ଦିବ୍ୟତା ଏବଂ ସକଳ ବସ୍ତୁର ଏକତ୍ୱ ସମ୍ବନ୍ଧରେ ଶିକ୍ଷା ଦିଏ; କିନ୍ତୁ ପରିତାପର ବିଷୟ ଯେ ଏହି ମହାନ୍ ସତ୍ୟ ଶାସ୍ତ୍ରର ଜୀର୍ଣ୍ଣ ପୃଷ୍ଠାରେ ସୀମିତ ହୋଇ ରହିଯାଇଛି । କେତେକ ହାତଗଣତି ବିଦ୍ୱାନ ଓ ପଣ୍ଡିତଙ୍କ ନିକଟରେ ଏହି ମହାନ ସତ୍ୟ ଆଜି କେବଳ ବନ୍ଦୀ ନୁହଁ, ଗିରିଗୁହା ଓ ଘଞ୍ଚ ଅରଣ୍ୟରେ ନିଃସଙ୍ଗ ସନ୍ନ୍ୟାସୀଙ୍କ ନିକଟରେ କାରାରୁଦ୍ଧ ହୋଇ ରହିଛି । ଯେଉଁ ସାଧାରଣ ଜନତା ଜୀବନ ମରଣ ସମସ୍ୟା ଭିତରେ ଉବୁଟୁବୁ ହୋଇ ସଂସାରରେ କାଳାତିପାତ କରୁଛନ୍ତି, ସେମାନେ ଏହି ପରମ ସତ୍ୟର ଆଲୋକ ଟିକିଏ ବି ପାଇ ପାରୁନାହାନ୍ତି । ଅଜ୍ଞାନ ଅନ୍ଧକାର ଭରା ସେମାନଙ୍କର ଜୀବନ ନିର୍ବାହ । ଯଦି ଏହି ମହାସତ୍ୟକୁ ସେମାନଙ୍କ ନିକଟରେ ଉନ୍ମୁକ୍ତ କରାଯାଏ, ତେବେ ସେମାନଙ୍କ ଜୀବନଯାତ୍ରା ସହଜ ଓ ସରଳ ହୋଇଯିବ । ଅଜ୍ଞାନରୁ ଜ୍ଞାନ ଅଭିମୁଖେ ସେମାନଙ୍କର ଯାତ୍ରା ଆରମ୍ଭ ହେବ ।

ସ୍ୱାମୀଜୀ ଏତାଦୃଶ ଅନ୍ତର୍ଦୃଷ୍ଟିରେ ମୁହୁର୍ମୁହୁ ଶିହରିତ ହେଲେ । ସେ ଗୁରୁଭାଇମାନଙ୍କୁ ନିଜର ମାନସ-ଦର୍ଶନର ଅନୁଭୂତିକୁ ଖୋଲିଦେଇ କହିଲେ, ''ଚାଲ, ବେଦାନ୍ତ ଦର୍ଶନର ଶକ୍ତିଶାଳୀ ବାଣୀ ପ୍ରତ୍ୟେକ ବ୍ୟକ୍ତି ନିକଟରେ ପହଞ୍ଚାଇବା । ବିଶେଷକରି ଅତ୍ୟାଚାରିତ, ନିଷ୍ପେଷିତ, ଦୁଃଖୀ, ଦରିଦ୍ର ଜନତାଙ୍କ ପାଖରେ ।'' ସ୍ୱାମୀଜୀଙ୍କ ଆହ୍ୱାନକୁ ତାଙ୍କର କେତେକ ଗୁରୁଭାଇ କର୍ଣ୍ଣପାତ ନ କରି, ନିଜ ନିଜର ମୋକ୍ଷ ନିମନ୍ତେ ଆଧ୍ୟାତ୍ମିକ ସାଧନାରେ ମଜ୍ଜି ରହିବାକୁ ଯୁକ୍ତି ବାଢ଼ିଲେ । ସ୍ୱାମୀଜୀଙ୍କୁ କିଏ ଆଉ ସମ୍ଭାଳେ । ସେ କ୍ରୋଧାନ୍ୱିତ ହୋଇ ବଜ୍ର କଣ୍ଠରେ କହିଲେ, ''ସମସ୍ତେ ଉପଦେଶ ଶୁଣାଉଛନ୍ତି ! ସେମାନେ ଯାହା ଅଜାଣତରେ କରନ୍ତି, ମୁଁ ତାହା ଜାଣତରେ କରିବି । ହଁ... ଗୁରୁଭାଇମାନେ ଏହି କାର୍ଯ୍ୟରେ ଯଦି ଅନ୍ତରାୟ ସୃଷ୍ଟି କରନ୍ତି, ତଥାପି ମୁଁ ମେହେନ୍ତର ଓ ଅପରିଷ୍କୃତ ସ୍ଥାନରେ ବସବାସ କରୁଥିବା ନୀଚ ଲୋକମାନଙ୍କ ପାଖରେ ପହଞ୍ଚି ବେଦାନ୍ତର ମହାନ୍ ସତ୍ୟକୁ ପ୍ରକାଶିତ ଓ ପ୍ରଚାର କରିବି ।''

Digitized by srujanika@gmail.com

- ୨ -

*''ହେ ଭାରତବର୍ଷ ! ଆଜି କେଉଁଠି ତୁମର ସୃଜନଶୀଳତା ? ପରାନୁବାଦ, ପରାନୁକରଣ, ପରମୁଖାପେକ୍ଷା ଭଳି ଦାସ ସୁଲଭ ଦୁର୍ବଳତା ତ୍ୟାଗ କରି ପୁଣି ଥରେ ଉଠ, ଜାଗ ଏବଂ ରଚନା କର ନୂତନ ଭାରତବର୍ଷ ।''*

ବାରାନଗର (ବରାହନଗର) ମଠରେ ଅଳ୍ପ କେତେଦିନ ରହି ସ୍ୱାମୀଜୀ ପୁନଶ୍ଚ ତାଙ୍କର ପରିବ୍ରାଜକ ଜୀବନ ଯାତ୍ରା ଆରମ୍ଭ କଲେ । କେତେଦିନ ବାରଣାସୀରେ ଅବସ୍ଥାନ କରି ଅଯୋଧ୍ୟା ଅଭିମୁଖେ ଯାତ୍ରା କଲେ । ଏହି ସମୟରେ ବିଖ୍ୟାତ ସଂସ୍କୃତ ବିଦ୍ୱାନ ବାବୁ **ପ୍ରମଦା ଦାସ ମିତ୍ରଙ୍କ** ସହ ତାଙ୍କର ସାକ୍ଷାତ ହୋଇଥିଲା । ପରବର୍ତ୍ତୀକାଳରେ ସ୍ୱାମୀଜୀ ତାଙ୍କ ନିକଟକୁ ଅନେକ ଚିଠି ଲେଖିଥିଲେ । ଏହି ବାରଣାସୀ ନଗରୀରୁ ସ୍ୱାମୀଜୀଙ୍କ ମନ ଅଯୋଧ୍ୟା ଦର୍ଶନ ନିମନ୍ତେ ଉଡ଼ିବୁଲିଲା । ବାଲ୍ୟକାଳରେ ରାମାୟଣ ପାଠକରି ସୀତା-ରାମଙ୍କର ଆଦର୍ଶ ପ୍ରତି ଆକୃଷ୍ଟ ହୋଇଥିଲେ । ଅଯୋଧ୍ୟାରେ ଉପନୀତ ହେବା ଉତ୍ତାରୁ ରାମାୟଣର ସ୍ମୃତି ତାଙ୍କ ମାନସପଟରେ ଜୀବନ୍ତ ହୋଇଉଠିଲା ଏବଂ ଅଯୋଧ୍ୟାର ପାଣି, ପବନ ଓ ଧୂଳିକଣା ସତେକି ରାମମୟ ସେ ଅନୁଭବ କଲେ ।

ତତ୍‌ପଶ୍ଚାତେ ସେ ଲକ୍ଷ୍ନୌ ଓ ଆଗ୍ରା ସହର ଅଭିମୁଖେ ଯାତ୍ରା କଲେ । ଲକ୍ଷ୍ନୌ ସହରରେ ଅବସ୍ଥିତ କାରୁକାର୍ଯ୍ୟ ଭରା ବହୁ ମନମୁଗ୍ଧକାରୀ ମସ୍‌ଜିଦ୍, କିଲ୍ଲା, ଗମ୍ବୁଜ ଭଳି ମୋଗଲ ବଂଶର କୀର୍ତ୍ତିରାଜି ଭାରତବର୍ଷର ଗୌରବମୟ ଇତିହାସ ପୃଷ୍ଠାକୁ ଲେଉଟାଇଲା ତାଙ୍କ ସ୍ମୃତିପଟରେ । ସହରର ବହୁ ପଥ ପଦଚାରଣ କରି ଗୈରିକ ବସ୍ତ୍ର ପରିହିତ ଯୁବ ସନ୍ନ୍ୟାସୀ ବିବେକାନନ୍ଦ ନିଜ ଭିତରେ ଉନ୍ମୋଚିତ ଇତିହାସର ପୃଷ୍ଠାକୁ କେବଳ ଲେଉଟାଇ ନ ଥିଲେ, ବରଂ ଭାରତୀୟଙ୍କର ସୃଜନଶୀଳତାକୁ ମନେମନେ ଭୂୟସୀ ପ୍ରଶଂସା କରୁଥିଲେ । ତାଜମହଲର ଚମତ୍କାର କାରୁକାର୍ଯ୍ୟ ତାଙ୍କ ଶିରା ପ୍ରଶିରାରେ କଳ୍ପନାର ସ୍ରୋତ ଛୁଟାଇ ଦେଉଥିଲା ଏବଂ ସେହି କଳ୍ପନା ସ୍ରୋତରେ ଭାସି ଭାସି ତାଙ୍କର ଅନ୍ତର୍ମନ ଚିତ୍କାର କରୁଥିଲା - ହେ ଭାରତବର୍ଷ, ଆଜି କେଉଁଠି ତୁମର ସୃଜନଶୀଳତା ? ପରାନୁବାଦ, ପରାନୁକରଣ, ପରମୁଖାପେକ୍ଷା ଭଳି ଦାସ ସୁଲଭ ଦୁର୍ବଳତା ତ୍ୟାଗ କରି ପୁଣି ଥରେ ଉଠ, ଜାଗ ଏବଂ ରଚନା କର ନୂତନ ଭାରତବର୍ଷ ।

ମନରେ ଅସରନ୍ତି କଳ୍ପନାର ରୂପରେଖ ଏବଂ ଭାରତବର୍ଷର ପୁନରୁତ୍ଥାନର ଚିନ୍ତାରାଶିକୁ ମନ ଭିତରେ ସାଇତି ରଖିବାର ବାରମ୍ବାର ପ୍ରଚେଷ୍ଟା ତାଙ୍କୁ ଅସ୍ଥିର ଓ ଅଧୀର କରୁଥିଲେ ହେଁ, ସମଗ୍ର ଭାରତବର୍ଷକୁ ନିଜ ଆଖିରେ ଦେଖିନେବାର ନିଶାରୁ ସେ ଆଦୌ ବିଚ୍ୟୁତ ନ ହୋଇ ଆଗ୍ରାରୁ ବୃନ୍ଦାବନ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସନ୍ନ୍ୟାସୀ ବୀରଦର୍ପରେ ହାତରେ ଯଷ୍ଟି ଧାରଣ କରି ମାଇଲ୍ ମାଇଲ୍ ଚାଲୁଥିଲେ ଏବଂ ଆଘ୍ରାଣ କରୁଥିଲେ ଗ୍ରାମ୍ୟ ପରିବେଶର ସରଳତା ଓ ସ୍ନିଗ୍ଧ ଶୀତଳତା । ମନରେ ଅଶୁମାରି ସ୍ୱପ୍ନକୁ କିପରି ସାକାର କରି ନୂତନ ଭାରତବର୍ଷ ଗଠନ

Digitized by srujanika@gmail.com

କରିବେ, ସେହି ଚିନ୍ତାରେ ସେ ବାରମ୍ବାର ପଦଚାରଣ ଭିତରେ ଅସ୍ଥିର ହୋଇ ଉଠୁଥିଲେ । ବୃନ୍ଦାବନ ଆଉ ଅଳ୍ପ ବାଟ ଥିଲା । ଇତ୍ୟବସରରେ ରାସ୍ତା ପାର୍ଶ୍ୱରେ ଉପବିଷ୍ଟ ଜଣେ ବ୍ୟକ୍ତିଙ୍କ ଉପରେ ତାଙ୍କ ଦୃଷ୍ଟି ପଡ଼ିଲା । ରାସ୍ତାପାର୍ଶ୍ୱସ୍ଥ ଏକ ବୃକ୍ଷ ମୂଳରେ ବ୍ୟକ୍ତିଜଣକ ଆରାମରେ ବସି ଚିଲମ୍ ଟାଣୁଥିଲା । କ୍ଳାନ୍ତି ମେଣ୍ଟାଇବା ସକାଶେ ଚିଲମ୍ ଟାଣିବାକୁ ତାଙ୍କ ମନରେ ଜାଗ୍ରତ ହେଲା ଏକ ଖିଆଲ୍ । ସ୍ୱାମୀଜୀ ଧୀରେ ଲୋକଟି ପାଖକୁ ଯାଇ ଚିଲମ୍ ଟାଣିବାର ଆଗ୍ରହ ପ୍ରକାଶ କଲେ । କିନ୍ତୁ ଲୋକଟି ତତ୍‌କ୍ଷଣାତ୍ ଦୂରେଇ ଯାଇ ଭୟଭୀତ କଣ୍ଠରେ କହିଲା, "ମହାଶୟ, ଆପଣ ଜଣେ ମହାନ୍ ସନ୍ଥ । ମୋତେ ସ୍ପର୍ଶ କରନ୍ତୁ ନାହିଁ, ଆପଣ ଅପବିତ୍ର ହୋଇଯିବେ, ମୁଁ ଜାତିରେ ମେହେନ୍ତର ।"

ଜାତିପ୍ରଥା ଛାପରେ ଆଚ୍ଛନ୍ନ ମନ ସଙ୍କୁଚିତ କଲା ହୃଦୟକୁ । ସେ କିଛି ନ ଭାବି ରାଜପଥରେ ଅଗ୍ରସର ହେଲେ । କିୟତ୍ ପଥ ଅତିକ୍ରାନ୍ତେ ସ୍ୱାମୀଜୀଙ୍କ ଚେତନାରେ ବିଦ୍ୟୁତ ଖେଳିଗଲା । ସେ ତତ୍‌କ୍ଷଣାତ୍ ଭାବିଲେ - ମୁଁ ସନ୍ନ୍ୟାସ ଗ୍ରହଣ କରିଛି । ଜାତି, ବର୍ଣ୍ଣ, କୁଳ ଭଳି ସମଗ୍ର ବନ୍ଧନ ମୁଁ ତ ଛିନ୍ନ କରିଛି । ତଥାପି ଜାତିପ୍ରଥା ଭଳି ଜଘନ୍ୟ ଛାପ ମୋ ମନରୁ ଏଯାବତ୍ ଅପସରି ଯାଇନି ? ମେହେନ୍ତର କହିବାରୁ ମୁଁ ଚାଲି ଆସିଲି ? ଓହୋଃ... ଯୁଗ ଯୁଗ ଧରି ମାନସପଟରେ ଅଙ୍କିତ ଜାତିପ୍ରଥା କଳଙ୍କର ଛାପ ଯୋଗୁଁ ମୋ ଭିତରେ ସୃଷ୍ଟି ହେଉଛି ଏଭଳି ଭେଦଭାବ ! ସେ ଚିନ୍ତାରେ ହେଲେ ଅସ୍ତବ୍ୟସ୍ତ । ତାଙ୍କର ପାଦ ଆଗକୁ ବଢ଼ିଲା ନାହିଁ । ପଛକୁ ଫେରି ଚାହିଁ ଦେଖିଲେ ଯେ ସେହି ବ୍ୟକ୍ତି ଜଣକ ପୂର୍ବଭଳି ଚିଲମ୍ ଟାଣିବାରେ ବ୍ୟସ୍ତ । ସେ ଫେରିଲେ ପଛକୁ । ଏଥର କିଛି ନ କହି ତା' ପାଖରେ ବସି ପଡ଼ିଲେ । ଲୋକଟି ଚିଇଁକି ଉଠି ହାତେ ବାଟ ଡେଇଁପଡ଼ିଲା ଏବଂ ଯୋଡ଼ ହସ୍ତରେ କାକୁତି ମିନତି ହୋଇ କହିଲା, "ମହାଶୟ, ମୁଁ ଜଣେ ଅସ୍ପୃଶ୍ୟ, ଆପଣ କିନ୍ତୁ ପବିତ୍ର ସନ୍ନ୍ୟାସୀ ।" ସ୍ୱାମୀଜୀ ଆଦୌ କର୍ଣ୍ଣପାତ କଲେ ନାହିଁ ତା'ର କଥା । ଅଇଁଠା ଚିଲମର ନଳୀକୁ ପାଟିରେ ପୂରାଇ ଧୂମପାନ କରିଗଲେ ଉଲ୍ଲାସ ମନରେ । ବ୍ୟକ୍ତିଟି ବିସ୍ମୟ ବିମୂଢ଼ ଚକ୍ଷୁରେ କେବଳ ଚାହିଁଥିଲା ସ୍ୱାମୀଜୀଙ୍କର ଧୂମପାନକୁ । କିନ୍ତୁ ସ୍ୱାମୀଜୀ, ଅଇଁଠା ଚିଲମର ନଳୀକୁ ପାଟିରେ ପୂରାଇ, ମହାନନ୍ଦରେ କେବଳ ଧୂମପାନ କରୁନ ଥିଲେ, ବରଂ ଅସ୍ପୃଶ୍ୟ ଓ ସେ ଏକ ବୋଲି ଏକାତ୍ମବୋଧ ସ୍ରୋତରେ ସନ୍ତରଣ କରୁଥିଲେ । ସେଥିପାଇଁ ତ ପରବର୍ତ୍ତୀ କାଳରେ ସ୍ୱାମୀଜୀଙ୍କ ମୁଖରୁ ନିଃସୃତ ହୋଇଥିଲା - "ଭୁଲ ନାହିଁ - ନୀଚଜାତି, ମୂର୍ଖ, ଦରିଦ୍ର, ଅଜ୍ଞ, ମୋଚି, ମେହେନ୍ତର ତୁମର ରକ୍ତ, ତୁମର ଭାଇ । ହେ ବୀର ! ସାହସ ଅବଲମ୍ବନ କର; ସଦର୍ପେ କହ - ମୁଁ ଭାରତବାସୀ, ଭାରତବାସୀ ମୋର ଭାଇ; କହ - ମୂର୍ଖ ଭାରତବାସୀ, ଦରିଦ୍ର ଭାରତବାସୀ, ବ୍ରାହ୍ମଣ ଭାରତବାସୀ, ଚଣ୍ଡାଳ ଭାରତବାସୀ ମୋର ଭାଇ ।"

ଶ୍ରୀରାମକୃଷ୍ଣଙ୍କର ଅନ୍ତରଙ୍ଗ ଭକ୍ତ **ବଳରାମ ବୋଷଙ୍କ**ର ପୂର୍ବ ପୁରୁଷ ବୃନ୍ଦାବନରେ ଗୋଟିଏ ମନ୍ଦିର ନିର୍ମାଣ କରିଥିଲେ । ତାହାର ନାମ କାଲାବାବୁ କୁଞ୍ଜ । ସେଠାରେ ସ୍ୱାମୀଜୀ କିଛିଦିନ ଅବସ୍ଥାନ କଲେ । ଏହି ଅବସ୍ଥାନ କାଳରେ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମ ତାଙ୍କ ହୃଦୟରେ ଜୀବନ୍ତ ହୋଇ ଉଠିଲା । ଗିରି ଗୋବର୍ଦ୍ଧନ ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ କରୁଥିବା ସମୟରେ

Digitized by srujanika@gmail.com

ସ୍ୱାମୀଜୀ ହଠାତ୍ ଏକ ଅଭିନବ ମାର୍ଗରେ ନିଜକୁ ବନ୍ଧନ କଲେ - ଭିକ୍ଷା ପାଇଁ କାହାର ଦ୍ୱାରସ୍ଥ ହେବେନାହିଁ । କାହା ପାଖରେ ହାତପାତିବେ ନାହିଁ । ଯଦି କେହି ଅନୁଗ୍ରହ ପୂର୍ବକ ତାଙ୍କୁ ଖାଇବାକୁ ଦିଏ ତେବେ ସେ ଗ୍ରହଣ କରିବେ ନଚେତ ନାହିଁ । ସ୍ୱାମୀଜୀଙ୍କର ଏମିତି ଅଦ୍ଭୁତ ଖିଆଲ ବେଳେ ବେଳେ ହୁଏ । କିନ୍ତୁ ପ୍ରତ୍ୟେକ ଖିଆଲ ପଛରେ କୌଣସି ନା କୌଣସି ଉଦ୍ଦେଶ୍ୟ ଥାଏ ।

ଏଭଳି ଶପଥ ତ ନେଇଗଲେ, କିନ୍ତୁ ଦ୍ୱିପ୍ରହର ବେଳକୁ କ୍ଷୁଧାରେ ସେ ଡହଳ ବିକଳ ହେଲେ । ତଥାପି କ୍ଷୁଧାର ଜ୍ୱଳନରେ ସେ ଚାଲୁଥିଲେ ପଥ । ଇତ୍ୟବସରରେ ପ୍ରବଳ ବର୍ଷା ଆରମ୍ଭ ହୋଇଗଲା । ବର୍ଷାରେ ଭିଜି ଚାଲୁଥିଲେ ବି ଆଗକୁ ଆଗକୁ । ପଦ ଅବଶ, କ୍ଳାନ୍ତ ଶରୀର ଭୋକରେ ଆଉଟପାଉଟ, ମୂର୍ଚ୍ଛିତ ପ୍ରାୟ । ତଥାପି ହାତପାତି କାହାକୁ ମାଗୁ ନଥିଲେ । ହଠାତ୍ ଏକ ଅଦ୍ଭୁତ ଘଟଣା ଘଟିଲା । ପଛରୁ ସେ କାହାର ଡାକ ଶୁଣିଲେ । ସେ କିନ୍ତୁ ପଛକୁ ଚାହିଁଲେ ନାହିଁ, ସେମିତି ସଅଳ ପାଦରେ ଆଗକୁ ଚାଲୁଥିଲେ । ପରନ୍ତୁ ଜଣେ ଭକ୍ତ ଖାଦ୍ୟ ହାତରେ ଧରି ପଛରୁ ଦୌଡ଼ୁଥିଲେ । ଯାହାହେଉ କୌଣସିମତେ ଉକ୍ତ ବ୍ୟକ୍ତି ସ୍ୱାମୀଜୀଙ୍କୁ ଟପିଯାଇ ତାଙ୍କ ସମ୍ମୁଖରେ ଠିଆ ହୋଇଗଲେ ଏବଂ ଖାଦ୍ୟ ତାଙ୍କ ହାତକୁ ବଢ଼ାଇ ଦେଲେ । ସ୍ୱାମୀଜୀ ସେହିଠାରେ ହିଁ ଭୋଜନ କଲେ । କିନ୍ତୁ ସ୍ୱାମୀଜୀ ତାଙ୍କୁ କିଛି ପ୍ରଶ୍ନ କରିବା ପୂର୍ବରୁ ଦେଖିଲେ ଯେ ଉକ୍ତ ଭକ୍ତ କ୍ଷୀପ୍ର ପାଦରେ ନିକଟସ୍ଥ ଅରଣ୍ୟ ମଧ୍ୟକୁ ପ୍ରବେଶ କରିସାରିଲେଣି ।

ସ୍ୱାମୀଜୀଙ୍କ ହୃଦୟରେ ଉଠିଲା ପ୍ରଚଣ୍ଡ ଭକ୍ତିସ୍ରୋତ । ଚକ୍ଷୁରୁ ବୋହିଲା ଲୋତକଧାରା । ଭକ୍ତିରେ ଗଦ୍‌ଗଦ୍ ହୋଇ ସେଇଠି ହିଁ ମୁଣ୍ଡ ନତ କରି ଶ୍ରୀରାଧାଙ୍କୁ ପ୍ରଣାମ ଜଣାଇଲେ । ସେଠାରୁ ସ୍ୱାମୀଜୀ ସିଧା ରାଧାକୁଣ୍ଡ ଅଭିମୁଖେ ପଦଯାତ୍ରା କଲେ । ରାଧାକୁଣ୍ଡର ପବିତ୍ର ଜଳରେ ସ୍ନାନ କରିବାକୁ ତାଙ୍କର ମନ ବଳିଲା । ସେତେବେଳେ ସ୍ୱାମୀଜୀଙ୍କର ପରିଧାନ ଥିଲା ଖଣ୍ଡିଏ କୌପିନୀ ମାତ୍ର । କୌପିନୀଟିକୁ ସଫାକରି ରାଧାକୁଣ୍ଡ ପାର୍ଶ୍ୱସ୍ଥ ଖରାରେ ଶୁଖାଇଲେ । ଯେହେତୁ ପରିଧାନ ନିମନ୍ତେ ତାଙ୍କ ପାଖରେ ନ ଥିଲା କୌଣସି ବସ୍ତ୍ର, ତେଣୁ କୌପିନୀଟି ଶୁଖିଲା ପର୍ଯ୍ୟନ୍ତ ଜଳରେ ସ୍ନାନ କରିବା ପାଇଁ ବାଧ ହେଲେ । ହଠାତ୍ ସେ ଦେଖିଲେ ଯେ ଯେଉଁ ସ୍ଥାନରେ କୌପିନୀଟିକୁ ସେ ଶୁଖାଇଥିଲେ, ସେହି ସ୍ଥାନରୁ କୌପିନୀଟି ଅନ୍ତର୍ଦ୍ଧାନ ହୋଇଯାଇଛି । ସ୍ୱାମୀଜୀ ଚତୁଃପାର୍ଶ୍ୱ ଅବଲୋକନ କଲେ, କିନ୍ତୁ ତାଙ୍କର ଦୃଷ୍ଟି ପଡ଼ିଲା ପାର୍ଶ୍ୱସ୍ଥ ଏକ ବୃକ୍ଷ ଡାଳରେ ଯେଉଁଠି ବାନରଟିଏ ସେହି କୌପିନୀଟି ହାତରେ ଧରି ଆରାମରେ ବସିଛି । ସେ ହାତଯୋଡ଼ି କୌପିନୀଟିକୁ ଫେରାଇ ଦେବା ଲାଗି ବାନରକୁ ବାରମ୍ବାର ଅନୁରୋଧ କଲେ, କିନ୍ତୁ ବାନର କିଛି ନଶୁଣିଲା ଭଳି ଜଳ ଜଳ ଆଖିରେ ତାଙ୍କୁ ଚାହିଁଥିଲା ।

ସ୍ୱାମୀଜୀ ଏକେତ କ୍ରୋଧୀ, କିନ୍ତୁ ତାଙ୍କରି କ୍ରୋଧ ଆହୁରି ପ୍ରଜ୍ୱଳିତ ହେଲା - ବାନର ଉପରେ କେବଳ ନୁହେଁ, ବରଂ ବୃନ୍ଦାବନବାସୀନୀ ତଥା ରାଧାକୁଣ୍ଡର ଅଧିଷ୍ଠାତ୍ରୀ ଦେବୀ ଶ୍ରୀରାଧାଙ୍କ ଉପରେ - ମା, ତୁମେ ଏଠାରେ ଥାଉ ଥାଉ ଆଜି ମୁଁ ଉଲଗ୍ନ । ଠିକ୍ ଅଛି ମା, ମୁଁ ଏଠାରୁ ଚାଲିଯାଉଛି ପାର୍ଶ୍ୱସ୍ଥ ଅରଣ୍ୟକୁ, କିନ୍ତୁ ମନେରଖ ମା, ସେଠାରେ ଭୋକ ଉପାସରେ ମରିବି ପଛେ ଫେରିବି ନାହିଁ । ସ୍ୱାମୀଜୀ ସିଧା ନିକଟସ୍ଥ ବଣକୁ ପଳାଇଗଲେ । ବଣ ଭିତରେ କିୟତ

Digitized by srujanika@gmail.com

ପଥ ଅତିକ୍ରମ କରିସାରିବା ପରେ, ସହସା ଜଣେ ଅପରିଚିତ ବ୍ୟକ୍ତିଙ୍କ ସହ ତାଙ୍କର ସାକ୍ଷାତ ହେଲା । ଉକ୍ତ ବ୍ୟକ୍ତି ଶ୍ରଦ୍ଧାସହକାରେ ତାଙ୍କୁ ଗୈରିକ ବସ୍ତ୍ର ସହ କିଛି ଖାଦ୍ୟ ଅର୍ପଣ କଲେ । ସ୍ୱାମୀଜୀ ତଟସ୍ଥ ହୋଇ ଚାହିଁଲେ ପରିଚିତ ବ୍ୟକ୍ତିଙ୍କୁ, ଯାହାଙ୍କ ମୁଖମଣ୍ଡଳ ଆନନ୍ଦ ଓ ଶ୍ରଦ୍ଧାରେ ହେଉଥିଲା ମୁହୁର୍ମୁହୁ ଆଲୋକିତ । ସ୍ୱାମୀଜୀ ଖାଦ୍ୟ ଓ ବସ୍ତ୍ର ଗ୍ରହଣ କଲେ । କି ଚମତ୍କାର ଘଟଣା । କେବଳ ଚମତ୍କାର ଘଟଣା ନୁହେଁ, ସ୍ୱାମୀଜୀ ଯେତେବେଳେ ରାଧାକୁଣ୍ଡ ନିକଟକୁ ଫେରିଆସିଲେ, ସେତେବେଳେ ଦେଖିଲେ ଯେ ତାଙ୍କର କୌପିନୀ ଖଣ୍ଡିକ ପୂର୍ବବତ୍ କୁଣ୍ଡ ପାର୍ଶ୍ୱରେ ସେମିତି ଶୁଖୁଛି । ଏତାଦୃଶ ଅତ୍ୟାଶ୍ଚର୍ଯ୍ୟ ଘଟଣା ତାଙ୍କ ଆତ୍ମ-ବିଶ୍ୱାସକୁ ସୁଦୃଢ଼ କଲା ଏବଂ ସେ ଉପଲବ୍ଧି କଲେ ଯେ ଈଶ୍ୱର ତାଙ୍କୁ ପ୍ରତି ପଦକ୍ଷେପରେ ଜଗି ରହିଛନ୍ତି ।

- ୩ -

*ଆସିଷ୍ଟାଣ୍ଟ ଷ୍ଟେସନମାଷ୍ଟର ଶରତ ଚନ୍ଦ୍ର ଗୁପ୍ତ ସ୍ୱାମୀ ବିବେକାନନ୍ଦଙ୍କର ପ୍ରଥମ ଶିଷ୍ୟ ହେବାର ଗୌରବ ଅର୍ଜନ କଲେ ଏବଂ ସ୍ୱାମୀଜୀ ତାଙ୍କୁ କହିଥିଲେ - "ପୁତ୍ର, ଏକ ମହାନ ବ୍ରତକୁ ପୂର୍ଣ୍ଣ କରିବା ମୋ ଜୀବନର ଲକ୍ଷ୍ୟ । ମୋ ରାଷ୍ଟ୍ରର ପୁନରୁତ୍ଥାନ ହିଁ ମୋର ବ୍ରତ । ଏହା କାର୍ଯ୍ୟକାରି ହେବା କ'ଣ ଏତେ ସହଜ ବ୍ୟାପାର !"*

ତତ୍‌ପଶ୍ଚାତେ ହରଦ୍ୱାର ଅଭିମୁଖେ ସ୍ୱାମୀଜୀ ଯାତ୍ରା କରିବା ପାଇଁ ମନସ୍ଥ କଲେ, ଭାବିଥିଲେ ଯେ ସେଠାରୁ ସେ କେଦାରନାଥ ଓ ବଦ୍ରିନାଥ ଯିବେ । ହରିଦ୍ୱାର ଯିବାପାଇଁ ସେ ଏକଦା **ହାଥ୍ରାସ୍** ରେଳ ଷ୍ଟେସନର ଏକ ନିର୍ଜନ ସ୍ଥାନରେ ଅପେକ୍ଷାରତ ଥିଲେ । ତାଙ୍କର ମନ ବିଚଳିତ ଓ ସେ କ୍ଷୁଧିତ । ଆସିଷ୍ଟାଣ୍ଟ ଷ୍ଟେସନ ମାଷ୍ଟର **ଶରତ ଚନ୍ଦ୍ର ଗୁପ୍ତ** ସେହି ସମୟରେ କାର୍ଯ୍ୟରତ ଥିଲେ । ସେ ବଙ୍ଗାଳୀ ହେଲେ ବି ଉତ୍ତର ପ୍ରଦେଶର ଜୋନପୁରରେ ତାଙ୍କର ଜନ୍ମ ଏବଂ ସେଠାରେ ସେ ଶିକ୍ଷା ପ୍ରାପ୍ତ ହୋଇଥିଲେ । ସ୍ୱାମୀଜୀଙ୍କର ତେଜସ୍ୱୀ ଚେହେରା ତାଙ୍କୁ ଆକର୍ଷିତ କଲା । ସେ ସ୍ୱାମୀଜୀଙ୍କ ପାଖରେ ପହଞ୍ଚି ପ୍ରଣାମ ଜଣାଇ କହିଲେ, "ସ୍ୱାମୀଜୀ, ଆପଣ ବୋଧହୁଏ କ୍ଷୁଧିତ ?" ସ୍ୱାମୀଜୀ ନିଃଶଙ୍କୋଚରେ କହିଲେ, "ହଁ" । ଶରତବାବୁ ତତ୍‌କ୍ଷଣାତ୍ କହିଉଠିଲେ "ସ୍ୱାମୀଜୀ, ଚାଲନ୍ତୁ ମୋ କ୍ୱାଟରକୁ ।" ଶରତବାବୁଙ୍କର ବାଳକ ସ୍ୱଭାବ ପରିଲକ୍ଷିତ କରି ସ୍ୱାମୀଜୀ ତାଙ୍କୁ କିଛି ସମୟ ଚାହିଁଲେ ଏବଂ କହିଲେ, "ମୋତେ ତୁମେ କ'ଣ ଖାଇବାକୁ ଦେବ ?" ଶରତବାବୁ ହଠାତ୍ ପାର୍ଶି କବିତାଟିଏ ଆବୃତ୍ତି କରି କହିଲେ "ହେ ମୋର ପ୍ରାଣସଖା, ମୋ ଘରକୁ ଆପଣ ଆସିଛନ୍ତି, ମୋ ହୃଦୟର ମାଂସ ଦେଇ ମୁଁ ଆପଣଙ୍କ ନିମନ୍ତେ ସବୁଠୁଁ ସ୍ୱାଦପୂର୍ଣ୍ଣ ଖାଦ୍ୟ ପ୍ରସ୍ତୁତ କରିବି ।" ସ୍ୱାମୀଜୀ ଶରତବାବୁଙ୍କର ଉତ୍ତର ଶୁଣି ଅତ୍ୟନ୍ତ ପ୍ରୀତ ହେବା ସଙ୍ଗେ ସଙ୍ଗେ ତାଙ୍କର ନିମନ୍ତ୍ରଣ ରକ୍ଷା କଲେ ।

ଶରତବାବୁଙ୍କ କ୍ୱାଟରରେ ସ୍ୱାମୀଜୀ ଅବସ୍ଥାନ କଲେ । ସ୍ୱାମୀଜୀଙ୍କ ଚକ୍ଷୁଦ୍ୱୟର ଔଜ୍ଜ୍ୱଲ୍ୟରେ ସେ ବାରମ୍ବାର ହେଉଥିଲେ ବିମୋହିତ । ତାଙ୍କ ପାଖରୁ ଅନେକ ଆଧ୍ୟାତ୍ମିକ ଜ୍ଞାନ ଶୁଣିବା ପରେ ସେ ଥରେ ସ୍ୱାମୀଜୀଙ୍କୁ ଗୂଢ଼ ଜ୍ଞାନ ପ୍ରଦାନ କରିବା ନିମନ୍ତେ ଅନୁରୋଧ କଲେ । ସ୍ୱାମୀଜୀ

Digitized by srujanika@gmail.com

ପ୍ରତ୍ୟୁତ୍ତରରେ ତାଙ୍କୁ ଏକ ବଙ୍ଗାଳୀ ଗୀତ ଶୁଣାଇଲେ - ଯଦି ତୁମେ ଆତ୍ମଜ୍ଞାନ ଉପଲବ୍ଧି କରିବାକୁ ଇଚ୍ଛୁକ, ତେବେ ତୁମେ ଯାଅ ଓ ତୁମର ଚନ୍ଦ୍ରମୁଖକୁ ପାଉଁଶରେ ଆଚ୍ଛାଦିତ କର, ନଚେତ୍ ତୁମ ବାଟରେ ତୁମେ ଚାଲି ଯାଅ ।'' ଶରତବାବୁ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ସ୍ୱାମୀଜୀ, ଆପଣଙ୍କ ସେବାରେ ମୁଁ ନିଜକୁ ସମର୍ପଣ କରିଛି । ସବୁକିଛି ତ୍ୟାଗ କରି ଆପଣଙ୍କୁ ଅନୁସରଣ କରିବା ପାଇଁ ଆଜି ମୁଁ ପ୍ରସ୍ତୁତ ।'' ଏତକ କହି ଶରତବାବୁ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ କିଛି ସମୟ ପରେ, ନିଜର ସରକାରୀ ପୋଷାକ ନିଜ ଦେହରୁ ଅନାବରଣ କରି, ମୁହଁରେ ପାଉଁଶ ବୋଳି, ସ୍ୱାମୀଜୀଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଏଠାରେ ଉଲ୍ଲେଖନୀୟ ଯେ ଶରତବାବୁଙ୍କର ଜ୍ୟେଷ୍ଠ ଭ୍ରାତା ବି ପୂର୍ବରୁ ସନ୍ନ୍ୟାସୀ ହୋଇ କେଉଁଆଡ଼େ ଚାଲିଯାଇଥିଲେ । ଶରତବାବୁଙ୍କର ଉତ୍ସାହ ଓ ସତ୍ୟନିଷ୍ଠ ସ୍ୱଭାବ ସ୍ୱାମୀଜୀଙ୍କୁ ବେଶ୍ ପ୍ରଭାବିତ କଲା ।

ଏକଦା ଶରତବାବୁ ସ୍ୱାମୀଜୀଙ୍କୁ ପ୍ରଶ୍ନ କଲେ, ''ସ୍ୱାମୀଜୀ, ଆପଣ ଏମିତି ଦୁଃଖି ଜଣାପଡୁଛନ୍ତି ? ସାମାନ୍ୟ ରହିଯାଇ ସ୍ୱାମୀଜୀ କହିଲେ, ''ପୁତ୍ର, ଏକ ମହାନ୍ ବ୍ରତକୁ ପୂର୍ଣ୍ଣ କରିବା ମୋ ଜୀବନର ଲକ୍ଷ୍ୟ । କିନ୍ତୁ ମୋର ସ୍ୱଳ୍ପ ଦକ୍ଷତା ଓ ଯୋଗ୍ୟତା ଅନୁଭବ କରି ମୁଁ ନୈରାଶ୍ୟ ସାଗରରେ ବୁଡିଯାଇଛି । ଏହି ବ୍ରତକୁ କାର୍ଯ୍ୟରେ ରୂପାନ୍ତର କରିବା ନିମନ୍ତେ ଅବଶ୍ୟ ମୋର ଗୁରୁଙ୍କଠାରୁ ଆଦେଶ ପାଇଛି । କିନ୍ତୁ ମୋ ରାଷ୍ଟ୍ରର ପୁନରୁତ୍ଥାନ ଭଳି ବ୍ରତକୁ କାର୍ଯ୍ୟକାରି କରିବା କ'ଣ ଏଡ଼େ ସହଜ ବ୍ୟାପାର ! ଆଧ୍ୟାତ୍ମିକତାରେ ଭଟ୍ଟା ପଡ଼ିଛି, ସମଗ୍ର ରାଷ୍ଟ୍ର ବୁଭୁକ୍ଷୁ ଜନତାରେ ପରିପୂର୍ଣ୍ଣ, ଭାରତବର୍ଷ ନିଶ୍ଚୟ ଗତିଶୀଳ ହେବ ଏବଂ ସମଗ୍ର ବିଶ୍ୱକୁ ଆଧ୍ୟାତ୍ମିକତା ଦ୍ୱାରା ଜୟ କରିବ ।'' ସ୍ୱାମୀଜୀଙ୍କର ଚକ୍ଷୁଦ୍ୱୟ ବିସ୍ତାରିତ ଓ ସମଗ୍ର ଶରୀର ରୋମାଞ୍ଚିତ ଦେଖି ଶରତବାବୁ ବିସ୍ମୟ-ବିମୂଢ଼ ହୋଇଗଲେ । ହସ୍ତଯୋଡ଼ି ନମ୍ରତା ସହକାରେ ଶରତବାବୁ କହିଲେ, ''ସ୍ୱାମୀଜୀ, ମୁଁ ଆପଣଙ୍କ ପାଖରେ ଶରଣ ପଶିଛି, କୁହନ୍ତୁ ଆପଣଙ୍କ ବ୍ରତର ରୂପାନ୍ତର ପାଇଁ ମୋତେ କ'ଣ କରିବାକୁ ପଡ଼ିବ ?''

ଜ୍ଞାନଦୀପ୍ତ ସନ୍ନ୍ୟାସୀ ବଜ୍ର କଣ୍ଠରେ ଆହ୍ୱାନ କଲେ, ''ଶରତ ତୁମେ ହସ୍ତରେ କମଣ୍ଡଳୁ ଓ ଭିକ୍ଷାଥାଳ ଧରି ଏହି ମହାନ କାର୍ଯ୍ୟରେ ଭାଗନେବାକୁ ପ୍ରସ୍ତୁତ ଅଛ ? ଶରତବାବୁ ସହସା କହି ଉଠିଲେ, ''ହଁ, ସ୍ୱାମୀଜୀ ।'' ସ୍ୱାମୀଜୀଙ୍କ ମୁଖମଣ୍ଡଳ ଶରତବାବୁଙ୍କର ସାହାସ ଓ ସଂକଳ୍ପ ପରିଲକ୍ଷିତ କରି ଆଲୋକିତ ହୋଇଉଠିଲା ।

ସ୍ୱାମୀଜୀ ଶରତବାବୁଙ୍କୁ ସାଥୀରେ ନେଇ ଋଷିକେଶ ଅଭିମୁଖେ ପ୍ରସ୍ଥାନ କଲେ । ଯାତ୍ରା ସମୟରେ ଶରତବାବୁ ବହୁ ବାଧାବିଘ୍ନ ସହ ଦୁଃଖ, କଷ୍ଟ, ଅନାହାରର ସମ୍ମୁଖୀନ ହୋଇ ଅଶେଷ ନିର୍ଯ୍ୟାତନା ଓ ବ୍ୟାଧିଗ୍ରସ୍ତ ହୋଇଥିଲେ ବି ସ୍ୱାମୀଜୀଙ୍କର ପଦାନୁସରଣ ନିଷ୍ଠାର ସହିତ କରିଥିଲେ । ଋଷିକେଶରେ ଗୁରୁ ଓ ଶିଷ୍ୟ ଉଭୟ ଭିକ୍ଷା ମାଗଣ କରି ଜୀବନ ନିର୍ବାହ କରୁଥିଲେ ହେଁ ସ୍ୱାମୀଜୀଙ୍କର ଅନ୍ତରାତ୍ମା ହିମାଳୟ ଭ୍ରମଣ ପାଇଁ ଉଡ଼ିବୁଲୁଥିଲା । କିନ୍ତୁ ଶରତବାବୁ ଭୀଷଣ ରୋଗରେ ଆକ୍ରାନ୍ତ ହୋଇପଡ଼ିବାରୁ ସ୍ୱାମୀଜୀ ବାଧହୋଇ ହାଥ୍ରାସ୍ ଫେରିଆସିଲେ । ବିଧିର ବିଧାନ ଅତି ବିଚିତ୍ର । ଶରତବାବୁ ଆରୋଗ୍ୟ ଲାଭ କଲା ଉତ୍ତାରୁ ସ୍ୱାମୀଜୀ ମେଲେରିଆ ଜ୍ୱରରେ

Digitized by srujanika@gmail.com

ଆକ୍ରାନ୍ତ ହେଲେ । ସ୍ୱାମୀଜୀଙ୍କର ଅସୁସ୍ଥତା ସମ୍ବାଦରେ ବାରାନଗର ମଠର ଗୁରୁଭାଇମାନେ ବ୍ୟସ୍ତ ହୋଇପଡ଼ିଲେ । ସ୍ୱାମୀଜୀ ଶେଷରେ ବାଧ ହୋଇ ଶରତବାବୁଙ୍କ ସହ କଲିକତା ଯାତ୍ରା କଲେ । ଇତ୍ୟବସରରେ ଶରତବାବୁ ରେଲୱେ ଚାକିରିରୁ ଇସ୍ତଫା ଦେଇ ସାରିଥିଲେ ଏବଂ ସ୍ୱାମୀଜୀଙ୍କର ପ୍ରଥମ ଶିଷ୍ୟଭାବେ ବାରାନଗର ମଠରେ ଯୋଗଦେଲେ । ସ୍ୱାମୀ ସଦାନନ୍ଦ ଭାବେ ତାଙ୍କର ସନ୍ନ୍ୟାସୀ ନାମକରଣ କରାଗଲା ।

ସ୍ୱାମୀ ବିବେକାନନ୍ଦଙ୍କର ପ୍ରଥମ ଶିଷ୍ୟ ହେବାର ଗୌରବ ଅର୍ଜନ କରିଥିବା ସ୍ୱାମୀ ସଦାନନ୍ଦଙ୍କର ପାର୍ଶିଭାଷାରେ ଦକ୍ଷତା ଥିଲା ଏବଂ ସୁଫିବାଦ ଦ୍ୱାରା ପ୍ରଭାବିତ ଥିଲେ । ସ୍ୱାମୀ ବିବେକାନନ୍ଦଙ୍କର ସେ କାୟମନୋବାକ୍ୟରେ ଅତି ଅନ୍ତରଙ୍ଗ ଅନୁଗାମୀ ଥିଲେ । ସ୍ୱାମୀ ବିବେକାନନ୍ଦ ବି ତାଙ୍କୁ ଅତ୍ୟଧିକ ସ୍ନେହ କରି କହୁଥିଲେ, ''ସଦାନନ୍ଦ ମୋ ଆତ୍ମାର ପୁତ୍ର । ସେ କୁଷ୍ଠରୋଗୀମାନଙ୍କୁ ଈଶ୍ୱର ଜ୍ଞାନରେ ସେବା କରନ୍ତି, ସେ ଏକଦା ରାତିସାରା ବସନ୍ତ ରୋଗୀଟିକୁ ନିଜେ କୁଣ୍ଢାଇ ତା'ର ଜ୍ୱରଗ୍ରସ୍ତ ଶରୀରକୁ ଶୀତଳ କରୁଥିଲେ । ପ୍ଲେଗ ଆକ୍ରାନ୍ତିତ ସହରରେ ଏକ ମେହେନ୍ତର ଦଳ ଗଠନ କରି ସଫାସୁତରାରେ ଦିନଦିନ ବିତାଇ ଥିଲେ । ସେ ଅସ୍ପୃଶ୍ୟକୁ ଭଲ ପାଆନ୍ତି ଏବଂ ସେମାନଙ୍କର ସୁଖ ଦୁଃଖରେ ଭାଗ ନିଅନ୍ତି... । ସେ ଜଣେ ମାନବ ସେବାର ଉତ୍ସର୍ଗୀକୃତ ସନ୍ନ୍ୟାସୀ ।

- ୪ -

*କାରଣ ସେ ବର୍ତ୍ତମାନ ପରିବ୍ରାଜକ, ଦେଖିବେ ସ୍ୱଚକ୍ଷୁରେ ଭାରତବର୍ଷର ବିଭିନ୍ନତାକୁ । ମନୁଷ୍ୟର ଅଜ୍ଞାନକୁ ତଥା ଦୁର୍ଦ୍ଦଶାକୁ । କେବଳ ସେତିକି ନୁହେଁ, ସେ ଦେଖିବେ ଭାରତବର୍ଷର ମହିମାମୟ ପରମ୍ପରା, ସାଧୁ, ସନ୍ନ୍ୟାସୀ ଓ ସନ୍ଥଗଣଙ୍କର ଉଚ୍ଚାଙ୍ଗ ଆଧ୍ୟାତ୍ମିକ ପାରଙ୍ଗମତା, ରାଜା, ମହାରାଜା, ସାମନ୍ତ ଓ ଧନୀଙ୍କର ଗରିବ ଓ ନିଃସ୍ୱ ପ୍ରତି ହେୟ ମନୋଭାବ, ଏଭଳି ଅନେକ କିଛି, ଯାହାଫଳରେ ତାଙ୍କ ମନରେ ବିଦ୍ରୋହର ଶିଖା ହୁତାଶନରେ ପରିଣତ ହେବ । ତାହାହିଁ ବର୍ତ୍ତମାନ ଘଟୁଛି ସ୍ୱାମୀଜୀଙ୍କ ମନରେ ।*

ଅବଶ୍ୟ ସ୍ୱାମୀଜୀ ୧୮୮୮ ମସିହାର ଶେଷ ଭାଗରେ ବାରାନଗର ମଠରେ ପହଞ୍ଚିଲେ, ଏଠାରେ ସେ ଏଥର ପ୍ରାୟ ବର୍ଷେ ରହିଲେ । ତାଙ୍କର ଅବସ୍ଥାନ କାଳରେ ସେ ଶ୍ରୀରାମକୃଷ୍ଣ ପରମହଂସଙ୍କର ଜନ୍ମସ୍ଥାନ କାମାରପୁକୁର ଓ ଦିବ୍ୟ ଜନନୀ ସାରଦା ଦେବୀଙ୍କର ଜନ୍ମସ୍ଥାନ ଜୟରାମବାଟି ଯାତ୍ରା କରିଥିଲେ । ୧୮୮୯ ଡିସେମ୍ବର ଶେଷଭାଗକୁ ସ୍ୱାମୀଜୀ ପୁନଶ୍ଚ ତାଙ୍କର ଭାରତଦର୍ଶନ ଯାତ୍ରା ଆରମ୍ଭ କଲେ । ବୈଦ୍ୟନାଥ ଧାମ ଓ ବାରାଣାସୀ ପରିଭ୍ରମଣ କରି ଏବଂ ଅନ୍ୟ ଗୁରୁଭାଇମାନଙ୍କୁ ବିଭିନ୍ନ ସ୍ଥାନରେ ସାକ୍ଷାତ କରି ଆଲ୍ଲାହାବାଦରେ ଉପନୀତ ହେଲେ । ଏଠାରେ ଜଣେ ମୁସଲମାନ ସନ୍ଥଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା, ଯା'ଙ୍କର ମୁଖମଣ୍ଡଳ ସେ ଅବଲୋକନ କରି ଜାଣିପାରିଥିଲେ ଯେ ସେ ଜଣେ ପରମହଂସ । ଏହିଠାରେ

Digitized by srujanika@gmail.com

ଗାଜିପୁରର ବିଖ୍ୟାତ ସନ୍ୟାସୀ ପାଓ୍ୱାହାରୀ ବାବାଙ୍କ ସମ୍ବନ୍ଧରେ ସେ ଅନେକ କିଛି ଶୁଣିବାକୁ ପାଇଲେ, ତାଙ୍କ ସମ୍ବନ୍ଧରେ ଅବଶ୍ୟ ସେ ଦକ୍ଷିଣେଶ୍ୱରରୁ ପ୍ରଥମେ ଜାଣିଥିଲେ । ତାଙ୍କୁ ସାକ୍ଷାତ କରିବା ପାଇଁ ସ୍ୱାମୀଜୀଙ୍କର ପ୍ରବଳ ଇଚ୍ଛା ଜାତ ହେଲା । ସେ ଗାଜିପୁର ଯାତ୍ରା କଲେ ଏବଂ ୧୮୯୦, ଜାନୁଆରୀ ୨୧ ତାରିଖରେ ସ୍ୱାମୀଜୀ ଗାଜିପୁରରେ ପହଞ୍ଚିଲେ ।

ପାଓ୍ୱାହାରୀ ବାବା ବାରଣାସି ନିକଟସ୍ଥ ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଯୁବାବସ୍ଥାରେ ହିନ୍ଦୁ ଦର୍ଶନର ବହୁ ଶାଖା ଉପରେ ଅଧ୍ୟୟନ କରି ଜ୍ଞାନଦୀପ୍ତ ସନ୍ୟାସୀ ହୋଇପାରିଥିଲେ । ପରବର୍ତ୍ତୀ କାଳରେ ସଂସାର ତ୍ୟାଗ କରି, ଯୋଗ ଓ ବେଦାନ୍ତରେ ଜ୍ଞାନ ଆହରଣ କରି, ଭାରତବର୍ଷରେ ବହୁ ସ୍ଥାନ ଏକ ପରିବ୍ରାଜକ ସନ୍ୟାସୀ ଭାବେ ଭ୍ରମଣ କରିଥିଲେ । ଶେଷରେ ଗାଜିପୁରସ୍ଥ ଗଙ୍ଗାନଦୀ କୂଳରେ ଆଶ୍ରମ ସ୍ଥାପନ କରି ସେଠାରେ ସେ ଏକ ନିଭୃତ ଗୁମ୍ଫାରେ ସର୍ବଦା ସମାଧିରେ ମଗ୍ନ ରହୁଥିଲେ । ଶ୍ରୀରାମକୃଷ୍ଣ ପରମହଂସଙ୍କୁ ଅବତାର ଭାବରେ ସେ ସମ୍ମାନ ଓ ପୂଜା କରୁଥିଲେ, ଏପରିକି ସେ ନିଜ କୋଠରିରେ ଶ୍ରୀରାମକୃଷ୍ଣଙ୍କର ଫଟୋଚିତ୍ରଟିଏ ରଖିଥିଲେ । ଦେହତ୍ୟାଗ ପୂର୍ବରୁ ସେ କାହାରିକୁ ସାକ୍ଷାତ ନ ଦେଇ କେବଳ ନିଜକୁ ଗୁମ୍ଫା ଭିତରେ ଆବଦ୍ଧ ରଖିଥିଲେ । ଏକଦା ଲୋକେ ଦେଖିବାକୁ ପାଇଲେ ଯେ ତାଙ୍କ ଗୁମ୍ଫା ଭିତରୁ ଧୂଆଁ ଉଠୁଛି ଏବଂ ମଣିଷ ପୋଡ଼ା ଗନ୍ଧ ଭାସି ଆସୁଛି । କବାଟ ଭାଙ୍ଗିଦେଲାରୁ ଲୋକେ ଦେଖିବାକୁ ପାଇଲେ ଯେ ବାବାଜୀ ଯଜ୍ଞକୁଣ୍ଡରେ ନିଜକୁ ଆହୂତି ପ୍ରଦାନ କରି ନିଜର ମର ଶରୀରକୁ ଭସ୍ମୀଭୂତ କରିଛନ୍ତି । ପରମାତ୍ମା ପରମେଶ୍ୱରଙ୍କ ସହ ମିଳନ ନିମନ୍ତେ, ଦେହର ଆଉ ଆବଶ୍ୟକ ନାହିଁ ବୋଲି ବିଚାରକରି, ସେ ଏତାଦୃଶ କାର୍ଯ୍ୟ କରିଥିଲେ ।

ପାଓ୍ୱାହାରୀ ବାବା ଜଣେ ବିସ୍ମୟ । ବିସ୍ମୟ ଏହି ଅର୍ଥରେ ଯେ ସଂସାରର ଚିରାଚରିତ ସନ୍ୟାସ ପରମ୍ପରାର ସେ ଥିଲେ ଉର୍ଦ୍ଧ୍ୱରେ । ଯେଉଁ ଆଶ୍ରମରେ ସେ ଅବସ୍ଥାନ କରୁଥିଲେ, ତାହାର ଚତୁଃପାର୍ଶ୍ୱ ଉଚ୍ଚ କାନ୍ଥ ଦ୍ୱାରା ଆବୃତ । ଅଳ୍ପ କେତୋଟି ଦ୍ୱାର ମାତ୍ର ସେଠାରେ ଥିଲା । ଚତୁଃ କାନ୍ଥ ଘେରା ଆଶ୍ରମ ଭିତରେ ଏକ ଲମ୍ବା ଗୁମ୍ଫା ରହିଥିଲା । ସେଠାରେ ସେ ପ୍ରାୟତଃ ସମାଧିସ୍ଥ ହେଉଥିଲେ । ଗୁମ୍ଫାଭିତରୁ ଯେତେବେଳେ ସେ ବାହାରି ଆସୁଥିଲେ, ସେତେବେଳେ ସେ ଅଧା ଖୋଲା କବାଟ ଫାଙ୍କରୁ ଭକ୍ତମାନଙ୍କୁ ଦର୍ଶନ ଦେଉଥିଲେ ଏବଂ ବେଳେବେଳେ ସେମାନଙ୍କ ସହ କଥାବାର୍ତ୍ତା ବି କରୁଥିଲେ । ସେ କ'ଣ ଖାଉଥିଲେ, ତାହା ବି ଅନ୍ୟମାନଙ୍କୁ ଜଣା ନ ଥିଲା । ସେଥିପାଇଁ ଲୋକେ ତାଙ୍କୁ ପବନହାରି ବାବା ବା ପାଓ୍ୱାହାରୀ ବାବା ବୋଲି ଡାକୁଥିଲେ । ସେ ଜଣେ ଦୀର୍ଘକାୟ ଉଚ୍ଚ ଓ ପୃଥୁଳ ଦେହଧାରୀ, ଏକ ଆଖିଆ ମଣିଷ । ତାଙ୍କର ରୂପ ଏଭଳି ସୁନ୍ଦର ଯେ ପ୍ରକୃତ ବୟସଠୁଁ ସେ କମ୍ ବୟସର ମଣିଷ ଭଳି ଦେଖା ଯାଉଥିଲେ । ତାଙ୍କର ମୁଖନିସୃତ ଭାଷାର ସ୍ୱର ଅତି ମଧୁର । କେତେବେଳେ କେମିତି ତାଙ୍କ ରଦ୍ଧଦ୍ୱାର ସମ୍ମୁଖରେ କିଛି ସିଝା ଆଳୁ ଓ ଘିଅ ରଖା ଯାଉଥିଲା, କିନ୍ତୁ ସେ ଯଦି ଗଭୀର ସମାଧିମଗ୍ନ ନ ଥିବେ, ତେବେ ରାତିରେ ଉଠି ଉକ୍ତ ଖାଦ୍ୟ ସେବନ କରନ୍ତି, ନଚେତ୍ ସେମିତି ସେଠାରେ ଖାଦ୍ୟତକ ପଡ଼ି ରହୁଥିଲା । ଏଠାରେ କହିବା ବାହୁଲ୍ୟ ଯେ ଯୋଗ ସାଧନାରେ ଏହି ଯୋଗଜନ୍ମା ଓ ଯୋଗସିଦ୍ଧ

Digitized by srujanika@gmail.com

ପୁରୁଷ ଯୋଗ ରାଜ୍ୟରେ କେବଳ ଭ୍ରମଣ କରୁଥିବାରୁ, ବାହ୍ୟଜଗତ ପ୍ରତି ତାଙ୍କର ଦୃଷ୍ଟି ସାମାନ୍ୟ ମାତ୍ର ଆକର୍ଷିତ ହେଉ ନ ଥିଲା । ତଥାପି ନିଷ୍ଠାପର ଭକ୍ତଗଣଙ୍କୁ ସମୟେ ସମୟେ ସାକ୍ଷାତ ଦେଉଥିଲେ ଏବଂ ଅଳ୍ପକଥା କହୁଥିଲେ କିନ୍ତୁ କଥାଗୁଡ଼ିକ ପ୍ରାୟତଃ ସାଙ୍କେତିକ ଥିଲା ।

ସ୍ୱାମୀ ବିବେକାନନ୍ଦ ବାବାଜୀଙ୍କୁ ଭେଟିବା ପାଇଁ ଅକ୍ଲାନ୍ତ ଚେଷ୍ଟା କଲେ, କିନ୍ତୁ ପ୍ରତିଥର ସେ ବିଫଳ ହେଲେ । ସ୍ୱାମୀଜୀ ଏହି ପରିପ୍ରେକ୍ଷୀରେ ସ୍ୱୟଂ କହିଛନ୍ତି - ଯାହାହେଉ ମହାଭାଗ୍ୟ ମୋର, ବାବାଜୀଙ୍କ ସହ ସାକ୍ଷାତ କରିବା ପାଇଁ ମୋତେ ଅନୁମତି ମିଳିଲା । ବାସ୍ତବିକ ସେ ଜଣେ ମହାନ୍ ସନ୍ଥ ! ଆଜିର ଏହି ନାସ୍ତିକ ଯୁଗରେ, ଭକ୍ତି ଓ ଯୋଗ ମଧ୍ୟରୁ ଜନ୍ମିତ ଏଭଳି ଏକ ଚମତ୍କାର ଶକ୍ତିର ମୂର୍ତ୍ତିମନ୍ତ ପ୍ରତୀକ ଦେଖିବା ବିରଳ । ତାଙ୍କଠାରେ ଆଶ୍ରୟ ଲାଗି ମୁଁ ଭିକ୍ଷା ମାଗିଲି, ସେ କିନ୍ତୁ ମୋତେ ଶରଣ ଦେଲେ ଯାହା ଅଳ୍ପ କେତେକ ଭାଗ୍ୟବାନଙ୍କୁ ପ୍ରାପ୍ତ ହୋଇଥାଏ । ସେଠାରେ କିୟତ୍‌କାଳ ଅବସ୍ଥାନ କରିବା ପାଇଁ ବାବାଜୀ ଇଚ୍ଛା ପ୍ରକଟ କଲେ ଯଦ୍ୱାରା ସେ ମୋ ପାଇଁ କିଛି ଉପକାର କରିପାରିବେ । ସାକ୍ଷାତ ସମୟରେ ବାବାଜୀଙ୍କର ସ୍ନେହ ଓ ତତ୍ତ୍ୱପୂର୍ଣ୍ଣ ଭାଷାର ମଧୁରତା ମୁଁ ଶୁଣି ବିସ୍ମୟବିମୂଢ଼ ହୋଇଗଲି । ସେ କୌଣସି ପ୍ରଶ୍ନର ଉତ୍ତର ସିଧାସଳଖ ଦେଉ ନ ଥିଲେ - ପ୍ରତି କଥାରେ କହୁଥିଲେ, ''ଏହି ସେବକ କ'ଣ ବା ଜାଣିଛି ?'' ତାଙ୍କର ଅନୁଗ୍ରହ ଲାଭ କରିବାଲାଗି ବାରମ୍ବାର ନିବେଦନ କଲାରୁ, ସେ ମୋତେ କହିଲେ, ''ବେଟା ଏଠାରେ ତୁମେ କିଛିଦିନ ରୁହ ।'' ଅବଶ୍ୟ ସେ ଏଭଳି ସିଧାସଳଖ ଭାଷାରେ ମୋତେ କହି ନ ଥିଲେ, କିନ୍ତୁ ତାଙ୍କର ସାଙ୍କେତିକ ଭାଷାରୁ ମୁଁ ଯାହା ଠଉରେଇଲି, ସେଥିରୁ ମୁଁ ଜାଣିଲି ଯେ ମୁଁ ଏଠାରେ କିଛିଦିନ ରହିବାକୁ ସେ ଚାହୁଁଛନ୍ତି ।

ବାବାଜୀଙ୍କର ଇଚ୍ଛାନୁସାରେ ସ୍ୱାମୀଜୀ ସେଠାରେ କିଛିଦିନ ରହିଲେ । ଉଭୟଙ୍କ ମଧ୍ୟରେ ଗଢ଼ିଉଠିଲା ଅନ୍ତରଙ୍ଗବନ୍ଧୁତ୍ୱ । ସ୍ୱାମୀ ବିବେକାନନ୍ଦ ଏଭଳି ଭାବେ ବାବାଜୀଙ୍କ ପ୍ରତି ମନ୍ତ୍ରମୋହିତ ହୋଇଥିଲେ ଯେ ସେ ସେଠାରେ ବହୁସମୟରେ ଭାବୁଥିଲେ - ଶ୍ରୀରାମକୃଷ୍ଣଙ୍କର ପ୍ରତ୍ୟକ୍ଷ ଆଶୀଷ ପ୍ରାପ୍ତ ହୋଇ ବି ମନରେ କାହିଁକି ଏପର୍ଯ୍ୟନ୍ତ କୌଣସି ପ୍ରକାର ଶାନ୍ତି ମୁଁ ଲାଭ କରିପାରୁନାହିଁ ??? ହଁ, ଏହି ବାବାଜୀ ଜଣେ ବ୍ରହ୍ମଜ୍ଞାନୀ, ତାଙ୍କ କୃପା ଓ ସାହାଯ୍ୟ ବଳରେ ମନରେ ଉଠୁଥିବା ଅଶାନ୍ତ ଝଡ଼କୁ ମୁଁ ଶାନ୍ତ କରିପାରିବି । ମୋର ସବୁପ୍ରକାର ବିଦ୍ରୋହ ମନ ଯାହା ମୋତେ ପ୍ରତିମୁହୂର୍ତ୍ତରେ ଅସ୍ଥିର ଓ ବିଚଳିତ କରୁଛି, ତାହାର ଅବସାନ ଏହି ମହାପୁରୁଷଙ୍କର ଯୋଗଶକ୍ତି ଦ୍ୱାରା ଘଟିବ ।'' ଏତାଦୃଶ ବିଶ୍ୱାସ ଓ ମାନସିକତା ନେଇ ସ୍ୱାମୀଜୀ ସେଠାରେ ସମୟ ବିତାଇଲେ ।

ସ୍ରଷ୍ଟା ଓ ସୃଷ୍ଟି ଉଭୟ ରହସ୍ୟମୟ, ନିଗୂଢ଼, ଦୁର୍ଜ୍ଞେୟ, ଦୁର୍ବୋଧ୍ୟ, ଜଟିଳ ଓ ଇନ୍ଦ୍ରିୟାତୀତ । ସାଧାରଣ ମନୁଷ୍ୟ ପକ୍ଷରେ ଏହା ଭେଦ କରିବା ଅସମ୍ଭବ । କେହି ଜଣେ ମହାପୁରୁଷ ଯଦି ଏହିସବୁ ନିଗୂଢ଼ ବସ୍ତୁକୁ ଶ୍ରଦ୍ଧା ସହକାରେ, ସରଳ ଭାବରେ ବୁଝାଇ ଦିଏ, ତଥାପି ସାଧାରଣ ମଣିଷ ବୁଝିବା ତ ଦୂରର କଥା, ବୁଝାଉଥିବା ବ୍ୟକ୍ତି ଉପରେ ସଂଶୟ କରିବା ଆରମ୍ଭ କରିଦେବେ । କାହିଁକିନା ପ୍ରକୃତି ନିରନ୍ତର ଚାହେଁ ଯେ ତାହାର ରହସ୍ୟକୁ କେହି ନ ଜାଣନ୍ତୁ କେହି

Digitized by srujanika@gmail.com

ନ ବୁଝନ୍ତୁ । ଯେତେ ମନୁଷ୍ୟଙ୍କୁ ନିଜର ସ୍ୱରୂପ ଚିହ୍ନିବା ପ୍ରକ୍ରିୟାରୁ ଦୂରରେ ରଖିବ, ସେତେ ଭଲଭାବରେ ପ୍ରକୃତିର ପ୍ରସାରଣ ଘଟିବ । ଅବଶ୍ୟ ଏଭଳି କଥା ସ୍ୱାମୀ ବିବେକାନନ୍ଦଙ୍କ ଭଳି ସନ୍ନ୍ୟାସୀଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ, ତଥାପି ସ୍ୱାମୀଜୀ ଯେ ଜଣେ ମନୁଷ୍ୟ, ତାହା ଭୁଲିଯିବା ଉଚିତ ନୁହେଁ । ସ୍ୱାମୀଜୀଙ୍କ ଭିତରେ ରହିଥିବା ମାନବୀୟ ଗୁଣଗୁଡ଼ିକ, ଶ୍ରୀରାମକୃଷ୍ଣଙ୍କର ମହାଶକ୍ତି ପ୍ରବେଶ ସତ୍ତ୍ୱେ, ସମ୍ପୂର୍ଣ୍ଣଭାବେ ଏପର୍ଯ୍ୟନ୍ତ ଭସ୍ମୀଭୂତ ହୋଇନାହିଁ । କାରଣ ସେ ବର୍ତ୍ତମାନ ପରିବ୍ରାଜକ, ଦେଖିବେ ସ୍ୱଚକ୍ଷୁରେ ଭାରତବର୍ଷର ବିଭିନ୍ନତାକୁ ମନୁଷ୍ୟର ଅଜ୍ଞାନକୁ ତଥା ଦୁର୍ଦ୍ଦଶାକୁ । କେବଳ ସେତିକି ନୁହେଁ, ସେ ଦେଖିବେ ଭାରତବର୍ଷର ମହିମାମୟ ପରମ୍ପରା, ସାଧୁ, ସନ୍ନ୍ୟାସୀ ଓ ସନ୍ଥଗଣଙ୍କର ଉଚ୍ଚାଙ୍ଗ ଆଧ୍ୟାତ୍ମିକ ପାରଙ୍ଗମତା, ରାଜା, ମହାରାଜା, ସାମନ୍ତ ଓ ଧନୀଙ୍କର ଗରିବ ଓ ନିଃସ୍ୱ ପ୍ରତି ହେୟ ମନୋଭାବ, ଏଭଳି ଅନେକ କିଛି, ଯାହାଫଳରେ ତାଙ୍କ ମନରେ ବିଦ୍ରୋହର ଶିଖା ହୁତାସନରେ ପରିଣତ ହେବ । ତାହାହିଁ ବର୍ତ୍ତମାନ ଘଟୁଛି ସ୍ୱାମୀଜୀଙ୍କ ମନରେ ।

ସ୍ୱାମୀଜୀଙ୍କର ଏହି ବାବାଜୀଙ୍କୁ ଭେଟିବାର ପ୍ରତୀକ୍ଷା ସମୟରେ ଏକ ଅଦ୍ଭୁତ ଘଟଣା ଘଟିଲା । ଏକଦା ଗଭୀର ରାତ୍ରିରେ, ବାବାଜୀଙ୍କ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇ, ତାଙ୍କୁ ଭେଟିବା ପାଇଁ ସ୍ୱାମୀଜୀ ପ୍ରସ୍ତୁତ ହେଲେ । ବାବାଜୀଙ୍କୁ ଗୁରୁଭାବେ ବରଣ କରି ବ୍ରହ୍ମ ଦର୍ଶନ ଓ ଜ୍ଞାନ ପ୍ରାପ୍ତି କରିବା କାମନାରେ ସେ ସେଦିନ ଶିହରିତ ହେଉଥିଲେ । ଇତ୍ୟବସରରେ ହଠାତ୍ ଏକ ପ୍ରଶ୍ନ ତାଙ୍କୁ ମାଡ଼ିବସିଲା - ଶ୍ରୀରାମକୃଷ୍ଣ ପରମହଂସଙ୍କୁ ସେ ଅନୁସରଣ କରିବେ ନା ବାବାଜୀଙ୍କୁ ??? ଦୁଇଜଣଙ୍କ ମଧ୍ୟରୁ ଜଣଙ୍କୁ ନିର୍ବାଚନ କରିବାକୁ ପଡ଼ିବ ? ଏହି ଦ୍ୱିବିଧ ଚିନ୍ତାରେ ସେ ଏଭଳି ଘାରି ହେଲେ ଯେ ଗଭୀର ରାତ୍ରରେ ବାବାଜୀଙ୍କୁ ଦର୍ଶନ କରିବାର ସମସ୍ତ ଉତ୍ସାହ ତାଙ୍କ ମନରୁ ମଉଳିଗଲା । ସେ ଯନ୍ତ୍ରଣାରେ କେବଳ ଛଟପଟ ହେଲେ ନାହିଁ ବରଂ ସନ୍ଦେହ ଓ ସଂଶୟାଚ୍ଛନ୍ନ ହେଲା ତାଙ୍କର ମନ ଓ ହୃଦୟ । ସେ ସେଠାରେ ତଳକୁ ମୁହଁ ପୋତି ବସି ପଡ଼ିଲେ, ବାବାଜୀଙ୍କ ନିକଟକୁ ଯିବାପାଇଁ ତାଙ୍କର ପାଦ ଚଳିଲା ନାହିଁ । ଚକ୍ଷୁଦ୍ୱୟରୁ ଝରିଲା ଝରଝର ଅଶ୍ରୁ । ହୃଦୟଟା ଫାଟି ଯାଉଥିଲା, ମନଟା ମହାବାତ୍ୟାରେ ଦିଗଭ୍ରଷ୍ଟ ହେଉଥିଲା ।

ହଠାତ୍ ପାଖରେ କାହାର ଉପସ୍ଥିତି ସେ ଅନୁଭବ କଲେ । ମୁଣ୍ଡ ଉଠାଇ ଅଶ୍ରୁପୂର୍ଣ୍ଣ ନୟନରେ ଚାହିଁଲେ । ସମ୍ମୁଖରେ ଏକ ଦିବ୍ୟରୂପ ଦଣ୍ଡାୟମାନ । ଦକ୍ଷିଣେଶ୍ୱର ନିବାସୀ ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସ, ସେହି ସମାଧିସ୍ଥ ଚକ୍ଷୁ, ମୃଦୁ ହାସ୍ୟ, ଲହରିତ ଅଧର, ଜ୍ୟୋତିର୍ମୟ ରୂପରେ ଚାହିଁଥିଲେ ସ୍ୱାମୀଜୀଙ୍କୁ । ପ୍ରସ୍ତରଖୋଦିତ ଏକ ନିଶ୍ଚଳ ଓ ଅଥର୍ବ ମୂର୍ତ୍ତି ସଦୃଶ ଘଣ୍ଟାଏରୁ ଅଧିକ କାଳ କେବଳ ବସିଥିଲେ ହେ ବସିଥିଲେ । ରାତି ପାହିଲା । ସକାଳର ଶୀତଳ ମୃଦୁ ହିଲ୍ଲୋଳରେ ସେ ପ୍ରକୃତିସ୍ଥ ହେଲେ । ତଥାପି ସ୍ୱାମୀଜୀଙ୍କର ତାର୍କିକ ଓ ଆଧୁନିକ ଶିକ୍ଷାରେ ଶିକ୍ଷିତ ମନ ଏତାଦୃଶ ଦିବ୍ୟ ରୂପର ଆବିର୍ଭାବ ଉପରେ ପ୍ରଶ୍ନ କଲା - ଗତ ଗଭୀର ରାତ୍ରିରେ ଗୁରୁଦେବଙ୍କର ଯେଉଁ ଦିବ୍ୟରୂପ ମୁଁ ଦର୍ଶନ କଲି, ତାହା କ'ଣ ମୋ ମନର ଭ୍ରମ ନା ମୋ ଦୁର୍ବଳ ମନର ପରିପ୍ରକାଶ ? ଜ୍ଞାନ ନିକଟକୁ ଅଜ୍ଞାନ ପଥ ଓଗାଳେ, ସତ୍ୟ ନିକଟକୁ ଅସତ୍ୟ ପଥ ଓଗାଳେ, ଏହା ବୋଧହୁଏ ପ୍ରକୃତିର ଅପ୍ରତିରୋଧ୍ୟ ନିୟମ ।

Digitized by srujanika@gmail.com

ସ୍ୱାମୀଜୀ ମନକୁ ବୁଝାଇ ପାରିଲେ ନାହିଁ । ମନ ଭିତରେ ବିଦ୍ରୋହର ସମ୍ମୁଖୀନ ହେଲେ । ପରଦିନ ରାତ୍ରିରେ ସେ ପୁନଶ୍ଚ ବାବାଜୀଙ୍କୁ ଭେଟିବା ପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ବିଚରା ସ୍ୱାମୀଜୀ ଆଉ କ'ଣ କରିବେ ? ପାଦେ ଆଗେଇ ପାରିଲେ ନାହିଁ । ଶ୍ରୀରାମକୃଷ୍ଣ ପରମହଂସଙ୍କର ଦିବ୍ୟ ଜ୍ୟୋତିର୍ମୟ ରୂପ ଉଦ୍‌ଭାସିତ ହେଲା ସମ୍ମୁଖରେ । ଏହି ରୂପ ଦର୍ଶନ କେବଳ ଦୁଇଥର ଭିତରେ ସୀମିତ ନ ଥିଲା, ସ୍ୱାମୀଜୀ ସର୍ବୋମୋଟ ଏକୋଇଶ ଦିନଧରି ବାବାଜୀଙ୍କ ନିକଟକୁ ଯିବାପାଇଁ ଚେଷ୍ଟା କରିଥିଲେ, ପ୍ରତ୍ୟେକଥର ଏହି ଦିବ୍ୟ ଜ୍ୟୋତିର୍ମୟ ରୂପ ତାଙ୍କର ସମ୍ମୁଖରେ ଉଦ୍‌ଭାସିତ ହୋଇ ପଥ ଓଗାଳି ଥିଲେ । ସର୍ବଶେଷରେ ସ୍ୱାମୀଜୀ ନିଜକୁ ଅଧିକ ସମ୍ଭାଳିବା ଲାଗି ସାମର୍ଥ ହେଲେ ନାହିଁ । ଭୂପତିତ ହୋଇ ବାରମ୍ବାର ମୁଣ୍ଡ ପିଟି ଅଶ୍ରୁସିକ୍ତ ଚକ୍ଷୁରେ କହିଲେ, ''ହେ ଗୁରୁଦେବ ଶ୍ରୀରାମକୃଷ୍ଣ । ମୁଁ ଆଉ କାହାପାଖକୁ ଯିବିନାହିଁ । ତୁମେ ହିଁ ମୋର କେବଳ ଆରାଧ । ମୁଁ ତୁମର ଦାସ । ମୋର ମାନସିକ ଦୁର୍ବଳତା ସକାସେ ମୋତେ କୃପାକରି କ୍ଷମା କରନ୍ତୁ ।''

ବେଦନାଗ୍ରସ୍ତ ହୃଦୟର ଶାନ୍ତକରଣ ନିମନ୍ତେ ଏଭଳି ହେୟ ମନୋବୃତ୍ତି ? ଏହା କ'ଣ ପଳାୟନ ପନ୍ଥା ନୁହେଁ କି ? ନରେନ୍ଦ୍ରଙ୍କ ଭଳି ସ୍ୱାଧୀନଚେତା ଯୁବକ ଓ ସ୍ୱାମୀ ବିବେକାନନ୍ଦଙ୍କ ଭଳି ଆଶିଷପ୍ରାପ୍ତ ସନ୍ୟାସୀ ଯିଏ ନିଜର ଗୁରୁଙ୍କ ପାଇଁ ସମସ୍ତ କିଛି ତ୍ୟାଗ କରି କଠୋର ସନ୍ୟାସୀ ବ୍ରତରେ ଦୀକ୍ଷିତ, ଏଭଳି ବିଚଳିତ ମନ ତାଙ୍କର କିପରି ସମ୍ଭବ ହୋଇପାରିଲା ? ଯେକୌଣସି ବ୍ୟକ୍ତି ମନରେ ଏଭଳି ପ୍ରଶ୍ନ ଉଦ୍ରେକ ହେବା ସ୍ୱଭାବିକ । କିନ୍ତୁ ଶ୍ରୀରାମକୃଷ୍ଣ ଅନ୍ତିମ ସମୟରେ ସ୍ୱାମୀଜୀଙ୍କୁ ଯେଉଁ ସତର୍କ ବାଣୀ ଶୁଣାଇ ଥିଲେ, ତାହା ଯଦି ଏଠାରେ ସ୍ମରଣ କରିବା, ତେବେ ସ୍ୱାମୀଜୀଙ୍କର ଏତାଦୃଶ ସାମୟିକ ଦ୍ୱିଧାଗ୍ରସ୍ତ ସଂଶୟ ମନକୁ ଭଲ ଭାବରେ ବୁଝିହେବ । ଶ୍ରୀରାମକୃଷ୍ଣ କହିଥିଲେ, ''ଦେଖ ନରେନ୍, ତୋର ନିର୍ବିକଳ୍ପ ସମାଧିର ଚାବିକାଠି ମୋ ପାଖରେ ରହିଲା । ଯେତେବେଳେ ମୋ କାର୍ଯ୍ୟ ସମ୍ପୂର୍ଣ୍ଣ ହେବ, ସେତେବେଳେ ନିର୍ବିକଳ୍ପ ରାଜ୍ୟର ଚାବି ଖୋଲିଦେବି ଏବଂ ପୁନଶ୍ଚ ସେଠାକୁ ପ୍ରବେଶ କରିବୁ ।''

ଏକଦା ଶ୍ରୀରାମକୃଷ୍ଣ ତାଙ୍କୁ କହି ନ ଥିଲେ କି ଜୀବ ପ୍ରତି ଦୟା ପ୍ରଦର୍ଶନ କରିବାକୁ ତୁ କିଏ ? ଜୀବ ପ୍ରତି ଦୟା ପ୍ରଦର୍ଶନ ନ କରି ଶିବ ଜ୍ଞାନରେ ଜୀବ ସେବା କରିବା ମନୁଷ୍ୟର ମହାନ୍ ଧର୍ମ । ସେତେବେଳେ ନରେନ୍ଦ୍ର ଭାବବିହ୍ୱଳିତ କଣ୍ଠରେ ଶ୍ରୀରାମକୃଷ୍ଣଙ୍କୁ କହି ନ ଥିଲେ କି - ଠାକୁର, ଆଜି ମୁଁ ଏକ ମହାନ୍ ସତ୍ୟ ଉପଲବ୍ଧି କରିଛି । ସମଗ୍ର ବିଶ୍ୱରେ ଏହି ମହାନ୍ ସତ୍ୟକୁ ପ୍ରଚାର କରିବି ।'' ବର୍ତ୍ତମାନ ଯଦି ସେ ପାଓ୍ୱାହାରୀ ବାବାଙ୍କର ପଥ ଅନୁସରଣ କରିଥାନ୍ତେ, କ'ଣ ସ୍ୱାମୀଜୀଙ୍କର ଅବସ୍ଥା ହୋଇଥାନ୍ତା ? କେଉଁ ଏକ ନିଭୃତ ଗୁମ୍ଫାରେ ସମାଧିସ୍ଥ ହୋଇ, ନିଜର ଶରୀରକୁ ଅଗ୍ନିଆବୃତ କରି ଦେହତ୍ୟାଗ କରିଥାନ୍ତେ ? ଅଦ୍ୱୈତ ବେଦାନ୍ତର ସାରମର୍ମ ଶିବ ଜ୍ଞାନେ ଜୀବସେବାର ମହାମନ୍ତ୍ର ଯାହା ଦିନେ ଅରଣ୍ୟରେ ଋଷି ମୁନିଙ୍କ ପାଖରେ ସୀମିତ ଥିଲା, ତାହା ଘରେ ଘରେ ପହଞ୍ଚାଇବାର ଯେଉଁ ସଂକଳ୍ପ ସେ ନେଇଥିଲେ, ତାହା ଯେ ଅଧୁରା ରହିଯାଇଥାନ୍ତା ?

Digitized by srujanika@gmail.com

- ୫ -

*ସନ୍ନ୍ୟାସୀଙ୍କ ଚକ୍ଷୁରେ ଲୋତକ ପରିଲକ୍ଷିତ କରି ବିଦ୍ୱାନ ପ୍ରମଦାବାବୁ କହିଲେ, "ସ୍ୱାମୀଜୀ, ଆପଣ ଜଣେ କଠୋର ବୈଦାନ୍ତିକ, ଆପଣଙ୍କ ଚକ୍ଷୁରେ ଲୋତକ ଶୋଭାପାଏ ନାହିଁ ।" କିନ୍ତୁ ସ୍ୱାମୀଜୀ ତତ୍‌କ୍ଷଣାତ୍ କହିଲେ, "ଦୟାକରି ଆପଣ ସେପରି କୁହନ୍ତୁ ନାହିଁ । ଆମେ ଶୁଷ୍କ ସନ୍ନ୍ୟାସୀ ନୋହୁଁ । ଆପଣ କ'ଣ ଭାବୁଛନ୍ତି ଯେହେତୁ ଜଣେ ବ୍ୟକ୍ତି ସନ୍ନ୍ୟାସୀ, ତେଣୁ ତା'ର ହୃଦୟ ନାହିଁ ?" ସ୍ୱାମୀଜୀ ସେଠାରେ ଅଧିକକାଳ ନରହି କଲିକତା ଅଭିମୁଖେ ଯାତ୍ରା କଲେ ।*

ଶ୍ରୀରାମକୃଷ୍ଣଙ୍କୁ ଦିବ୍ୟ ଦର୍ଶନରେ ଦେଖି ସ୍ୱାମୀଜୀ ବିଶେଷଭାବେ ପ୍ରଭାବିତ ହେଲେ । ସେ ବର୍ତ୍ତମାନ ନିଜର ଗୁରୁଦେବଙ୍କୁ ସ୍ପଷ୍ଟ ଭାବରେ ବୁଝିପାରିଲେ ଶ୍ରୀରାମକୃଷ୍ଣ ସ୍ୱୟଂ ଆଧ୍ୟାତ୍ମିକତାର ପୂର୍ଣ୍ଣ ପ୍ରକାଶନ; ଯେଉଁ ବ୍ୟକ୍ତି ତାଙ୍କ ପାଦପଦ୍ମରେ ଆଶ୍ରିତ ଏବଂ ଆଶୀଷ ପ୍ରାପ୍ତ, ତାହା ପାଇଁ କୌଣସି ପ୍ରକାର ଆଧ୍ୟାତ୍ମିକ ସହାୟତାର ଆବଶ୍ୟକ ନାହିଁ । ସ୍ୱାମୀଜୀ ନିଜ ଭିତରେ ସନ୍ତୋଷ ଅନୁଭବ କଲେ ଏବଂ ବିକ୍ଷିପ୍ତ ମନ ଏକାଗ୍ର ଧ୍ୟାନରେ ସମାହିତ ହେଲା । ଗାଜିପୁର ତ୍ୟାଗ କରି ସ୍ୱାମୀଜୀ ବାରଣାସି ଯାତ୍ରା କଲେ । ସେଠାରେ ଗୁରୁଭାଇ ସ୍ୱାମୀ ଅଖଣ୍ଡାନନ୍ଦଙ୍କ ସହ ଭେଟ ହେଲା ଏବଂ ଶ୍ରୀରାମକୃଷ୍ଣଙ୍କର ପରମ ଗୃହୀ ଭକ୍ତ **ବଳରାମ ବୋଷ**ଙ୍କର ଏପ୍ରିଲ ୧୩, ୧୮୯୦ରେ ଦେହାନ୍ତର ସମ୍ବାଦ ଶୁଣି ସ୍ୱାମୀଜୀ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ ହୋଇପଡ଼ିଲେ । **ବଳରାମ ବୋଷ**ଙ୍କ ସହିତ ମଧୁର ସମ୍ପର୍କର ସ୍ମୃତି ତାଙ୍କ ମାନସପଟରେ ନାଚି ଉଠିଲା, ଚକ୍ଷୁଦ୍ୱୟ ଅଶ୍ରୁପୂର୍ଣ୍ଣ ହେଲା ସେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ । ସନ୍ନ୍ୟାସୀଙ୍କ ଚକ୍ଷୁରେ ଲୋତକ ପରିଲକ୍ଷିତ କରି ବିଦ୍ୱାନ ପ୍ରମଦାବାବୁ କହିଲେ, "ସ୍ୱାମୀଜୀ, ଆପଣ ଜଣେ କଠୋର ବୈଦାନ୍ତିକ, ଆପଣଙ୍କ ଚକ୍ଷୁରେ ଲୋତକ ଶୋଭାପାଏ ନାହିଁ ।" କିନ୍ତୁ ସ୍ୱାମୀଜୀ ତତ୍‌କ୍ଷଣାତ୍ କହିଲେ, "ଦୟାକରି ଆପଣ ସେପରି କୁହନ୍ତୁ ନାହିଁ । ଆମେ ଶୁଷ୍କ ସନ୍ନ୍ୟାସୀ ନୋହୁଁ । ଆପଣ କ'ଣ ଭାବୁଛନ୍ତି ଯେହେତୁ ଜଣେ ବ୍ୟକ୍ତି ସନ୍ନ୍ୟାସୀ, ତେଣୁ ତା'ର ହୃଦୟ ନାହିଁ ?" ସ୍ୱାମୀଜୀ ସେଠାରେ ଅଧିକକାଳ ନରହି କଲିକତା ଅଭିମୁଖେ ଯାତ୍ରା କଲେ ।

ବାରାନଗର ମଠରେ ସ୍ୱାମୀଜୀ ଅବସ୍ଥାନ କଲେ । ପରିଭ୍ରମଣ କାଳରେ ଆମାଶୟ ଓ ଜ୍ୱର ବ୍ୟାଧିରେ ସେ ବାରମ୍ବାର ପୀଡ଼ିତ ହୋଇଥିବାରୁ ତାଙ୍କର ସ୍ୱାସ୍ଥ୍ୟରେ ଅବନତି ଘଟିଥିଲା । ଗୁରୁଭାଇମାନଙ୍କ ସହ ଏଠାରେ ଶାନ୍ତିରେ ବାସ କରିବା ସହିତ ପରିବ୍ରାଜକ ଜୀବନର ଅନୁଭୂତିକୁ ସେମାନଙ୍କ ସହ ବିତରଣ କଲେ । କିନ୍ତୁ ସ୍ୱାମୀଜୀଙ୍କ ଜୀବନରେ ଶାନ୍ତି ଆସିବ କେଉଁଠୁ ? ମଠର ଖର୍ଚ୍ଚ ବହନ କରୁଥିଲେ ବଳରାମ ବାବୁ ଓ ସୁରେନ୍ଦ୍ରନାଥ ମିତ୍ର । ବଳରାମବାବୁଙ୍କ ଦେହାନ୍ତ ପରେ ସୁରେନ୍ଦ୍ର ନାଥ ମିତ୍ରଙ୍କର ବି ଦେହାନ୍ତ ୧୮୯୦ ଏପ୍ରିଲରେ ହୋଇଗଲା । କିଏ

Digitized by srujanika@gmail.com

ମଠର ଖର୍ଚ୍ଚ ବହନ କରିବ ? ସନ୍ନ୍ୟାସୀଗଣ କେଉଁଠାରେ ରହିବେ ? ଏହି ଚିନ୍ତାରେ ଉଦ୍‌ବିଗ୍ନ ହୋଇ ଗିରୀଶଚନ୍ଦ୍ର ଘୋଷ, ମହେନ୍ଦ୍ରନାଥ ଗୁପ୍ତ ଓ ଅନ୍ୟାନ୍ୟ ଭକ୍ତଙ୍କର ସହଯୋଗ ଲୋଡ଼ିଲେ । ଯାହାହେଉ ସେମାନେ ପ୍ରାଚୁର୍ଯ୍ୟଶାଳୀ ନ ଥିଲେ ବି ସାହାଯ୍ୟ ପାଇଁ ଆଗେଇ ଆସିଲେ । ମଠର ଖର୍ଚ୍ଚ ଓ ପରିଚାଳନା ସୁନ୍ଦରଭାବେ ସମ୍ପାଦିତ ହେଲା ।

ଇତ୍ୟବସରରେ ସ୍ୱାମୀଜୀଙ୍କର ସ୍ୱାସ୍ଥ୍ୟରେ ଉନ୍ନତି ଘଟିଲା, ସେ ସୁସ୍ଥ ହେଲେ । କିନ୍ତୁ ହିମାଳୟ ଦର୍ଶନ ନିମନ୍ତେ ତାଙ୍କର ମନ ଉଚ୍ଛନ୍ନ ହେଲା । ସେ ଏଥର ପାଓ୍ୱାହାରୀ ବାବା କିମ୍ବା ଅନ୍ୟ କୌଣସି ସନ୍ଥଙ୍କ ନିକଟକୁ ଯିବେ ନାହିଁ । ହିମାଳୟର ସୌନ୍ଦର୍ଯ୍ୟମୟ ବିଶାଳତାକୁ ଉପଭୋଗ କରିବେ, ଭବିଷ୍ୟତ ରୂପରେଖ ଯାହା ତାଙ୍କ ମନ ଭିତରେ ବସା ବାନ୍ଧିଥିଲା, ତା'ର କାର୍ଯ୍ୟକାରିତାର ପଥଚିତ୍ର ସେ ସେଠାରେ ଆଙ୍କିବେ । ସେ ନିଜର ଭବିଷ୍ୟତ ରୂପରେଖ ସମ୍ବନ୍ଧରେ କାହାକୁ କହିଲେ ନାହିଁ । ଯାତ୍ରା ଆରମ୍ଭ ପୂର୍ବରୁ ସେ ଦିବ୍ୟଜନନୀ ସାରଦା ଦେବୀଙ୍କୁ ଦର୍ଶନ କରିବା ନିମନ୍ତେ ସ୍ୱାମୀ ଅଖଣ୍ଡାନନ୍ଦଙ୍କ ସହ ଉପନୀତ ହେଲେ । ମା'ଙ୍କର ପାଦପଦ୍ମରେ ଭକ୍ତିପୂତ ପ୍ରଣାମ ଜଣାଇ ସ୍ୱାମୀଜୀ କହିଲେ, ''ମା, ସର୍ବୋଚ୍ଚ ଜ୍ଞାନ ଆହରଣ ନକରିବା ପର୍ଯ୍ୟନ୍ତ ମୁଁ ଆଉ ଫେରିବି ନାହିଁ ।'' ଦିବ୍ୟଜନନୀ ସାରଦା ଦେବୀ ଶ୍ରୀରାମକୃଷ୍ଣଙ୍କ ନାଁରେ ଆଶୀର୍ବାଦ କରି କହିଲେ, ''ବାବା, ଯାତ୍ରା ଆରମ୍ଭ ପୂର୍ବରୁ ତୁମେ ନିଜ ମା'ଙ୍କୁ ଘରେ ଦର୍ଶନ କରିବ ନାହିଁ କି ?'' ସ୍ୱାମୀଜୀ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ମା, ତୁମେ ହିଁ ମୋର କେବଳ ମା'' । ମା' ବୁଝିଗଲେ ସ୍ୱାମୀଜୀଙ୍କର ଅନ୍ତରାତ୍ମାର ସ୍ୱର, ସେ ପୁନର୍ବାର ସ୍ୱାମୀଜୀଙ୍କୁ ଆଶୀର୍ବାଦ ଦେଇ ସ୍ୱାମୀ ଅଖଣ୍ଡାନନ୍ଦଙ୍କୁ ଚାହିଁ କହିଲେ, ''ପୁତ୍ର, ନରେନ୍‌ର ଦାୟିତ୍ୱ ତୁମ ହାତରେ ସମର୍ପି ଦେଉଛି । ତୁମେ ତ ପର୍ବତାଞ୍ଚଳରେ ଜୀବନ ନିର୍ବାହ ବିଷୟରେ ଅଭ୍ୟସ୍ତ, ନରେନ୍ ଭୋକ ଉପାସରେ ଯେପରି ଛଟପଟ ନ ହୁଏ, ତା'ର ବ୍ୟବସ୍ଥା କରିବ ।'' ଜୁଲାଇ ୧୮୯୦ରେ ସ୍ୱାମୀ ଅଖଣ୍ଡାନନ୍ଦଙ୍କ ସହ ସ୍ୱାମୀଜୀ ହିମାଳୟ ଯାତ୍ରା କଲେ ।



Digitized by srujanika@gmail.com

॥ ଚଉଦ ॥

# ହିମାଳୟ ଏବଂ ଉତ୍ତର ଓ ପଶ୍ଚିମ ଭାରତ ପରିଭ୍ରମଣ - ଭାରତବର୍ଷର ବୈଚିତ୍ର୍ୟମୟ ଶୋଭାରାଶି ଦର୍ଶନ

କଲିକତା ନଗରୀରୁ ଗଙ୍ଗାନଦୀ କୂଳେ କୂଳେ ସନ୍ନ୍ୟାସୀଦ୍ୱୟ ପଦଚାରଣ କଲେ ମୁକ୍ତ ପବନରେ, ନିର୍ଜନତାରେ ଏବଂ ଦର୍ଶନ କଲେ ଭାରତବର୍ଷର ବୈଚିତ୍ର୍ୟମୟ ଶୋଭାରାଶି । ଭିକ୍ଷା ମାଗଣରେ ଯାହାମିଳୁଥିଲା, ତାହାହିଁ ଥିଲା ସେମାନଙ୍କର କ୍ଷୁଧା ନିବାରଣ ନିମନ୍ତେ ଯଥେଷ୍ଟ । ସ୍ୱାମୀଜୀ ଓ ସ୍ୱାମୀ ଅଖଣ୍ଡାନନ୍ଦଙ୍କର ଏହି ପରିବ୍ରାଜ କାଳରେ ପ୍ରଥମ ରହଣି ଥିଲା ଭାଗଲପୁର । ସେମାନେ ବ୍ରାହ୍ମ ସମାଜର ଅନୁଗାମୀ ମନ୍ମଥବାବୁଙ୍କ ଘରେ ପହଞ୍ଚିଲେ । ଏହି ଯୁବ ସନ୍ନ୍ୟାସୀ ଦ୍ୱୟଙ୍କର ତେଜସ୍ୱୀ ରୂପ ଅବଲୋକନ କରି ମନମୋହନ ବାବୁ ତଟସ୍ଥ ହୋଇଗଲେ । ପରବର୍ତ୍ତୀ କାଳରେ ସ୍ୱାମୀ ବିବେକାନନ୍ଦଙ୍କର ଜଣେ ଶିଷ୍ୟଙ୍କ ନିକଟକୁ ଲିଖିତ ଏକ ପତ୍ରରେ ନିଜର ପ୍ରଥମ ସାକ୍ଷାତର ଅନୁଭୂତି ବର୍ଣ୍ଣନା କରି ଲେଖିଥିଲେ :

"**୧୮୯୦ ଅଗଷ୍ଟ** ମାସର ଏକ ସକାଳ । ସ୍ୱାମୀ ବିବେକାନନ୍ଦ, ସ୍ୱାମୀ ଅଖଣ୍ଡାନନ୍ଦଙ୍କ ସହ ଅପ୍ରତ୍ୟାଶିତ ଭାବେ ମୋ ଗୃହରେ ପଦାର୍ପଣ କଲେ । ସାଧାରଣ ସନ୍ନ୍ୟାସୀ ଭାବି ସେମାନଙ୍କ ସହ ମୁଁ ଆଦୌ ଆଲୋଚନା କଲି ନାହିଁ, ବରଂ ବୁଦ୍ଧଧର୍ମ ଉପରେ ଏକ ଇଂରାଜୀ ପୁସ୍ତକଟିଏ ପଢ଼ିବାକୁ ଲାଗିଲି । ହଠାତ୍ ସ୍ୱାମୀଜୀ କେଉଁ ପୁସ୍ତକ ପଢୁଛି ବୋଲି ମୋତେ ପଚାରିଲେ । ମୁଁ କହିଲି, ବୁଦ୍ଧଧର୍ମ, ଆପଣ ଇଂରାଜୀ ଜାଣନ୍ତି ?" ସ୍ୱାମୀଜୀ କହିଲେ, "ହଁ ଟିକିଏ ଜାଣିଛି ।" ତତ୍ ପଶ୍ଚାତେ ସ୍ୱାମୀଜୀ ମୋ ସହ ବିଭିନ୍ନ ଇଂରାଜୀ ଓ ଭାରତୀୟ ଶାସ୍ତ୍ରରୁ ବହୁ ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱ ଉଦ୍ଧାର କରି ଏଭଳି ଭାବେ ବୁଦ୍ଧଧର୍ମ ଉପରେ ଆଲୋଚନାରେ ମଗ୍ନ ହେଲେ ଯେ ମୁଁ ସାଙ୍ଗେ ସାଙ୍ଗେ ଅନୁଭବ କଲି ଯେ ସେ ମୋ ଠୁଁ ହଜାରେ ଗୁଣରେ ବିଦ୍ୱାନ ଓ ଜ୍ଞାନୀ । ... ତତ୍‌ପଶ୍ଚାତେ ଭାରତୀୟ ଶାସ୍ତ୍ର, ବେଦ, ବେଦାନ୍ତ ଓ ଉପନିଷଦ ଉପରେ ତାଙ୍କର ମନ୍ତବ୍ୟ, ଇଂରାଜୀ ଓ ସଂସ୍କୃତ ଭାଷାରେ ଅନର୍ଗଳ ଆଲୋଚନା ମୋତେ ମନ୍ତ୍ରମୁଗ୍ଧ କଲା । ତାଙ୍କର ଉପସ୍ଥିତି ମୋର ମନ ଓ ଚେତନାକୁ କଲା ଆଲୋକିତ । ଇଏ ଯେ ଜଣେ ସାଧାରଣ ସନ୍ନ୍ୟାସୀ ନୁହଁନ୍ତି ମୋର ହୃଦ୍‌ବୋଧ ହେଲା ।" ସ୍ୱାମୀଜୀ ସେଠାରେ ସାତଦିନ ରହି ପୁନର୍ବାର ତାଙ୍କର ଯାତ୍ରା ଆରମ୍ଭ କଲେ ।

ବୈଦ୍ୟନାଥରେ ଉପନୀତ ହୋଇ ଦେବଦେବ ମହାଦେବଙ୍କୁ ସେମାନେ ଦର୍ଶନ କଲେ । ସେଠାରେ ବ୍ରାହ୍ମସମାଜର ସ୍ୱନାମଧନ୍ୟ ପ୍ରଚାରକ, ଖ୍ୟାତନାମା ସମାଜ ସଂସ୍କାରକ ଓ

Digitized by srujanika@gmail.com

ଜାତୀୟ ନେତା **ବାବୁ ରାଜନାରାୟଣ ବୋଷଙ୍କ**ସହ ସ୍ୱାମୀଜୀଙ୍କର ଭେଟ ହୋଇଥିଲା । ସ୍ୱାମୀଜୀଙ୍କର ଉଭୟ ବଙ୍ଗଳା ଓ ଇଂରାଜୀ ଭାଷାରେ ଦକ୍ଷତା ଓ ଭାରତୀୟ ସଂସ୍କୃତି ପ୍ରୀତି ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ଗାଜିପୁର ବାଟଦେଇ ସେମାନେ ବାରଣାସିରେ ପହଞ୍ଚିଲେ । ପ୍ରମଦା ବାବୁଙ୍କ ଗୃହରେ ସ୍ୱାମୀଜୀ ଅବସ୍ଥାନ କରି ଅନେକ ଶାସ୍ତ୍ରୀୟ ଆଲୋଚନା କରିବା ଅନ୍ତେ, ଯେତେବେଳେ ସେ ହିମାଳୟ ଅଭିମୁଖେ ଯାତ୍ରା ଆରମ୍ଭ କଲେ, ସେ ଖୁବ୍ ଉତ୍ତେଜିତ କଣ୍ଠରେ ପ୍ରମଦାବାବୁଙ୍କୁ କହିଥିଲେ, ''ମୁଁ ବର୍ତ୍ତମାନ କାଶି ଛାଡୁଛି ଏବଂ ଯେପର୍ଯ୍ୟନ୍ତ ମୁଁ ଗୋଟିଏ ବୋମା ସଦୃଶ ଏହି ସମାଜରେ ବିସ୍ଫୋରିତ ନ ହୋଇଛି ଏବଂ ସମାଜ ଏକ ଶ୍ୱାନ ସମ ମୋତେ ଅନୁସରଣ ନ କରିଛି, ସେତେବେଳ ପର୍ଯ୍ୟନ୍ତ ମୁଁ ଆଉ ଏଠାକୁ ଫେରିବି ନାହିଁ ।''

ସ୍ୱାମୀ ଅଖଣ୍ଡାନନ୍ଦଙ୍କ ସହ ସ୍ୱାମୀଜୀ ଅଯୋଧ୍ୟାରେ ଉପନୀତ ହେଲେ । ସେଠାରେ ବୈଷ୍ଣବ ସମ୍ପ୍ରଦାୟର ଜଣେ ମହାନ୍ ଭକ୍ତ ଓ ତ୍ୟାଗୀ ସନ୍ନ୍ୟାସୀଙ୍କ ସହ ସାକ୍ଷାତ ହେଲା । ଉକ୍ତ ବୈଷ୍ଣବ ମହନ୍ତଙ୍କ ସସ୍କୃତି ଓ ପାର୍ଶି ଭାଷାରେ ପାରଙ୍ଗମ ଥିଲେ । ମନ୍ଦିର ଓ ବହୁ ସମ୍ପତ୍ତିର ସେ ଥିଲେ ତତ୍ତ୍ୱାବଧାରକ । ଭକ୍ତି ସମ୍ବନ୍ଧରେ ସେ ସ୍ୱାମୀଜୀଙ୍କ ସହ ଆଲୋଚନା କଲେ । ତାଙ୍କର ଭାକ୍ତିକ ବ୍ୟାଖ୍ୟା ଶ୍ରବଣ କରି ସ୍ୱାମୀଜୀ ମନ୍ତବ୍ୟ ଦେଇଥିଲେ -: ଗଙ୍ଗାଧର (ସ୍ୱାମୀ ଅଖଣ୍ଡନନ୍ଦଙ୍କର ପୂର୍ବ ନାଁ) ଜଣେ ପବିତ୍ର ସନ୍ନ୍ୟାସୀଙ୍କୁ ମୋତେ ଦର୍ଶନ କରାଇଛ ।'' ଅଯୋଧ୍ୟାରୁ ସ୍ୱାମୀଜୀ ଉତ୍ତରାଞ୍ଚଳ ହିମାଳୟ ପାର୍ବତେୟ ଅଞ୍ଚଳରେ ଅବସ୍ଥିତ ନୈନତାଲରେ ପହଞ୍ଚିଲେ । ସେଠାରୁ ସେମାନେ ପଦଯାତ୍ରାରେ ଆଲମୋଡ଼ା ଅଭିମୁଖେ ଯାତ୍ରା କରିଲେ, ଲକ୍ଷ୍ୟଥିଲା ବଦ୍ରିନାଥ ଦର୍ଶନ ।

- ୧ -

*ଓହୋଃ ଗଙ୍ଗାଧର, ଆଜି ଦିନଟି ମୋର ସବୁଠାରୁ ଭଲ ଦିନ । ଏହି ବୃକ୍ଷର ଛାୟା ତଳେ ଉପବେଶନ କରି ମୋ ଜୀବନର ସବୁଠୁଁ କଠିନ ସମସ୍ୟା ସମାଧାନ କରିବାରେ ମୁଁ ସକ୍ଷମ ହୋଇଛି । ଅଣୁ ପରମାଣୁ ଭିତରେ ଦର୍ଶନ କରିଛି ବିଶ୍ୱବ୍ରହ୍ମାଣ୍ଡ । ଅଣୁ ଓ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଏକ ଓ ଅଭିନ୍ନ ।*

କପର୍ଦ୍ଦକଶୂନ୍ୟ ସନ୍ନ୍ୟାସୀଦ୍ୱୟ ହିମାଳୟ ପର୍ବତମାଳାର ମନୋରମ ଦୃଶ୍ୟରେ ମୋହିତ ହୋଇ ପାହାଡ଼ିଆ ଅଙ୍କାବଙ୍କା ପ୍ରସ୍ତର ଓ ଆରଣ୍ୟକ ପଥରେ ଚାଲୁଥିଲେ ଆଗକୁ ଆଗକୁ । ଯୁଗ ଯୁଗ ଧରି ହିମାଳୟ ଆକର୍ଷଣ କରିଛି ବହୁ ଋଷି, ମୁନି, ତପସ୍ୱୀ, ସାଧୁ, ସନ୍ଥ ଓ ସନ୍ନ୍ୟାସୀଙ୍କୁ । ସ୍ୱାମୀଜୀ ଏଥିରୁ ବାଦ୍ ଯିବେ କିପରି ? ସଙ୍ଗରେ ଗୁରୁଭାଇ ସ୍ୱାମୀ ଅଖଣ୍ଡାନନ୍ଦଙ୍କୁ ନେଇ ଅଗ୍ରସର ହେଉଥିଲେ ହିମାଳୟସ୍ଥ ବଦ୍ରିକା ଆଶ୍ରମ ଦର୍ଶନରେ । ଯାତ୍ରାକାଳରେ ଦୁଇ ଯୁବ ସନ୍ନ୍ୟାସୀ ସିଦ୍ଧାନ୍ତ କରିଥିଲେ ଯେ ନୈନତାଲ ଓ ଆଲମୋଡ଼ା ମଧ୍ୟରେ ରହିଥିବା ଦୂରତ୍ୱ ପଦବ୍ରଜରେ ଅତିକ୍ରମ କରିବେ । ବାଟରେ ଯାହା ମିଳିବ, ତାହା ହିଁ ଖାଇବେ । କାହାକୁ ହାତପତାଇ ମାଗିବେ ନାହିଁ । ଅବଶ୍ୟ ହାତରେ ନ ଥିଲା ଗୋଟିଏ ପଇସା, କିନ୍ତୁ ହୃଦୟ ଓ ମନରେ ଥିଲା ଅସୀମ ସାହସ ଓ

Digitized by srujanika@gmail.com

ଧୈର୍ଯ୍ୟ । ଦୂରତା ହ୍ରାସ କରିବା ନିମନ୍ତେ ସ୍ୱାମୀଜୀ ଓ ସ୍ୱାମୀ ଅଖଣ୍ଡାନନ୍ଦ ଚାଲୁଥିଲେ ଭୀଷଣ ଅରଣ୍ୟ ପଥରେ । ଯାତ୍ରାର ତୃତୀୟ ଦିନରେ ସେମାନେ ପହଞ୍ଚିଲେ **କାକ୍ରିଘାଟ** ନିକଟରେ ଯେଉଁଠି କୋଶୀ ନଦୀ ଅନ୍ୟ ଏକ ପାର୍ବତୀୟ ସୁଆଲ ନଦୀ ସହ ମିଶିଛି । ସେମାନେ ସେଠାରେ ଏକ ଓସ୍ତ ବୃକ୍ଷ ତଳେ ରାତ୍ରିଯାପନ କଲେ ।

ସ୍ଥାନଟିର ମନୋରମ ଦୃଶ୍ୟ ସ୍ୱାମୀଜୀଙ୍କୁ ମୁଗ୍ଧ କଲା । ନଦୀରେ ଅବଗାହନ କରି ସେହି ଅଶ୍ୱତ୍ଥ ବୃକ୍ଷ ତଳେ ସ୍ୱାମୀଜୀ ଗଭୀର ଧ୍ୟାନରେ ମଗ୍ନ ହେଲେ । ବହୁ ସମୟ ପରେ ସ୍ୱାମୀଜୀଙ୍କର ଧ୍ୟାନ ଭଗ୍ନ ହେଲା । ତାଙ୍କର ମୁଖମଣ୍ଡଳ ଦିବ୍ୟ ଭାବନାରେ ଆଲୋକିତ । ସ୍ୱାମୀଜୀ ଗୁରୁ ଗମ୍ଭୀର ସ୍ୱରରେ କହିଲେ, ''ଓହୋଃ ଗଙ୍ଗାଧର ! ଆଜି ଦିନଟି ମୋର ସବୁଠାରୁ ଭଲ ଦିନ । ଏହି ବୃକ୍ଷର ଛାୟା ତଳେ ଉପବେଶନ କରି ମୋ ଜୀବନର ସବୁଠୁଁ କଠିନ ସମସ୍ୟା ସମାଧାନ କରିବାରେ ମୁଁ ସକ୍ଷମ ହୋଇଛି । ଅଣୁ ପରମାଣୁ ଭିତରେ ଦର୍ଶନ କରିଛି ବିଶ୍ୱବ୍ରହ୍ମାଣ୍ଡ । ଅଣୁ ଓ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଏକ ଓ ଅଭିନ୍ନ । ଗୋଟିଏ କ୍ଷୁଦ୍ର ବାଲିକଣା ଯେଉଁ ପ୍ରଣାଳୀ ଓ ନିୟମରେ ସୃଷ୍ଟ ଓ ଗଠିତ, ପ୍ରକାଣ୍ଡ ପ୍ରକାଣ୍ଡ ସୂର୍ଯ୍ୟ, ନକ୍ଷତ୍ର ଏପରିକି ସମୁଦାୟ ଜଗତ ଓ ବ୍ରହ୍ମାଣ୍ଡ ଗଠନରେ ବି ସେହି ଏକା ପ୍ରଣାଳୀ ଏବଂ ଏକା ନିୟମ । ଅର୍ଥାତ୍ ଗୋଟିଏ ପରମାଣୁ ଯେଉଁ କୌଶଳରେ ନିର୍ମିତ, ସମୁଦାୟ ଜଗତ ବି ସେହି କୌଶଳରେ ନିର୍ମିତ । ଯେପରି ଦେହ ପଞ୍ଜୁରୀରେ ଆତ୍ମା ଆବଦ୍ଧ, ଠିକ୍ ସେପରି ପରମାତ୍ମା ଏହି ଦୃଶ୍ୟମାନ ପ୍ରକୃତି ଭିତରେ ଆବଦ୍ଧ, ଆତ୍ମାକୁ ଘୋଡ଼ାଇ ରଖିଛି ସକଳ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ-ପ୍ରକୃତି । ମାନସିକ ବସ୍ତୁ ନିରପେକ୍ଷ ଗୁଣ ଦ୍ୱାରା ହିଁ ଏହି ବିଶ୍ୱ ନିୟମକୁ ବୁଝି ହେବ । ଶିବା (କାଳୀ) ଶିବଙ୍କୁ ଆଲିଙ୍ଗନ କରୁଛନ୍ତି । ଏହା କଳ୍ପନା ନୁହେଁ । ଜଣକୁ ଅନ୍ୟ ଜଣେ ଆବୃତ କରୁଛି ଯେଭଳି ଧାରଣା ଓ ଭାଷା ଭିତରେ ସମ୍ପର୍କ କିନ୍ତୁ ବାସ୍ତବରେ ତାହା ଗୋଟିଏ ଜିନିଷ ।

ଏତାଦୃଶ ଦିବ୍ୟ ଉପଲବ୍ଧି ଯୋଗୁଁ ସ୍ୱାମୀଜୀଙ୍କ ମୁଖମଣ୍ଡଳରେ ଆନନ୍ଦର ଲହରି ଖେଳୁଥିଲା । ସତେକି ସମଗ୍ର ଜଗତ ତାଙ୍କ ଦୃଷ୍ଟିରେ ମଧୁମୟ ହୋଇଉଠୁଛି । ଚତୁର୍ଦ୍ଦିଗରେ ସେ ଦେଖୁଛନ୍ତି ଏକଇ ସତ୍ତାର ଲୀଳା । ଗୁରୁଭାଇ ସ୍ୱାମୀ ଅଖଣ୍ଡାନନ୍ଦ ବିସ୍ମିତ ନୟନରେ କେବଳ ଶୁଣୁଥିଲେ ସ୍ୱାମୀଜୀଙ୍କର ମୁଖନିଃସୃତ ଅମୃତଧାରା ଏବଂ ଭାବୁଥିଲେ, ''କିଏ ଏହି ସନ୍ନ୍ୟାସୀ, ଯାହାଙ୍କର ଦୃଷ୍ଟି ହିମାଳୟ ସଦୃଶ୍ୟ ବିଶାଳରୁ ବିଶାଳତମ ଅଭିମୁଖେ ଧାବିତ ହେଉଛି !!! ଶ୍ରୀରାମକୃଷ୍ଣଙ୍କ ଭାଷାରେ ବ୍ରହ୍ମ ଓ ଶକ୍ତି ଏକ ଓ ଅଭିନ୍ନ, ଯେପରି ଅଗ୍ନି ଓ ତା'ର ଦାହିକା ଶକ୍ତି । ଜଗତଜନନୀ କାଳୀ ପ୍ରକୃତି ରୂପରେ ସମଗ୍ର ଜଗତକୁ ଚଳଚଞ୍ଚଳ କରନ୍ତି, କିନ୍ତ ବ୍ରହ୍ମ ନିସ୍ତେଜ ହୋଇ ଶିବଙ୍କ ଭଳି ଶୟନରତ, ଯେପରି ସମୁଦ୍ରର ଢେଉ ଓ ଜଳ । ଶକ୍ତିଙ୍କୁ ବ୍ରହ୍ମରୁ, କାଳୀଙ୍କୁ ଶିବରୁ, ଢେଉ ଜଳରୁ ଓ ଦାହିକାଶକ୍ତି ଅଗ୍ନିରୁ ପୃଥକ କରିହେବ ନାହିଁ । ଦକ୍ଷିଣେଶ୍ୱର ମନ୍ଦିର ବେଢ଼ାରେ ଗୁରୁଦେବଙ୍କ ନିକଟରେ ବସି ଯେଉଁ ବ୍ରହ୍ମ ଓ ଶକ୍ତିଙ୍କର ନିତ୍ୟ ଓ ଲୀଳା ସମ୍ପର୍କରେ ସ୍ୱାମୀଜୀ ଶୁଣିଥିଲେ, ତାହା ହିଁ ସେ ଅଣୁ ଓ ବ୍ରହ୍ମାଣ୍ଡ ଭିତରେ ଅବଲୋକନ କଲେ ।

କିୟତ ସମୟାନ୍ତେ ସେମାନେ ଆଲମୋଡ଼ା ଅଭିମୁଖେ ଅଗ୍ରସର ହେଲେ । କିନ୍ତୁ ପ୍ରବଳ କ୍ଷୁଧାରେ ଏହି ସନ୍ନ୍ୟାସୀଦ୍ୱୟ ପୀଡ଼ିତ, କ୍ଲାନ୍ତ ଓ ଦୁର୍ବଳ । ବହୁ ସମୟ ଧରି କିଛି ଖାଇ ନ

Digitized by srujanika@gmail.com

ଥିଲେ । ଭୋକରେ ପେଟ ଜଳୁଥିଲା । ପାଦ ଆଗକୁ ଚଳୁ ନଥିଲା । ବାଧ ହୋଇ ପଥ ପାର୍ଶ୍ୱସ୍ଥ ଏକ ମୁସଲମାନ କବର ସ୍ଥାନ ନିକଟରେ ବସିପଡ଼ିଲେ । କ୍ଷୁଧାର ଜ୍ୱଳନ ଓ ପଥଶ୍ରମରେ ପୀଡ଼ିତ ସ୍ୱାମୀଜୀ ଅଚେତ ପ୍ରାୟ ହୋଇ ଭୂମିରେ ପତିତ ହେଲେ । ସ୍ୱାମୀ ଅଖଣ୍ଡାନନ୍ଦ ଦୌଡ଼ିଲେ ନିକଟସ୍ଥ ନଦୀରୁ ଜଳ ଆଣିବା ପାଇଁ । କବର ସ୍ଥାନର ରକ୍ଷକ ଜୁଲ୍ ଫକୀର ଅଲ୍ଲୀ, ଯିଏ ଜଣେ ଫକୀର, ସ୍ୱାମୀଜୀଙ୍କର ଦୁର୍ଦ୍ଦଶା ଦେଖି, ଦୌଡ଼ି ଆସିଲେ । ସେ ଦେଖିଲେ ସ୍ୱାମୀଜୀ ଭୀଷଣ କ୍ଷୁଧିତ । ଫକୀରଙ୍କ ପାଖରେ କେତୋଟି କାକୁଡ଼ି ବ୍ୟତୀତ କିଛି ବି ନଥିଲା । ସଙ୍କୁଚିତ ମନରେ ସେ ସ୍ୱାମୀଜୀଙ୍କୁ କାକୁଡ଼ି ଯାଚିଲେ । ସ୍ୱାମୀଜୀ କାକୁଡ଼ି ଖାଇବାକୁ ସମ୍ମତ ହେଲେ ଏବଂ ତାଙ୍କୁ ଖୁଆଇ ଦେବାପାଇଁ ଫକୀରଙ୍କୁ ଅନୁରୋଧ କଲେ । ସ୍ୱାମୀଜୀଙ୍କର କଥା ଶୁଣି ଫକୀର ଆଶ୍ଚର୍ଯ୍ୟ ହେଲେ ଏବଂ ବିନୟ ସହକାରେ କହିଲେ, "ଆପଣ ଜଣେ ସନ୍ନ୍ୟାସୀ । ମୁଁ ଜଣେ ମ୍ଳେଛ ମୁସଲମାନ । ଆପଣଙ୍କ ପବିତ୍ର ଦେହକୁ କିପରି ଛୁଇଁ ପାରିବି ? ସ୍ୱାମୀଜୀଙ୍କ ଓଠରେ ହସଟିଏ ଖେଳିଗଲା । ଧୀର ସ୍ୱରରେ ସ୍ୱାମୀଜୀ କହିଲେ, "ଭାଇ, ସେଥିରେ କିଛି ଯାଆଆସେ ନାହିଁ । ଆମେ ଦୁହେଁ ଭାଇ ଭାଇ ।" ସ୍ୱାମୀଜୀଙ୍କର ବିଶାଳ ହୃଦୟ ଓ ପ୍ରଶସ୍ତ ମନ ଫକୀରଙ୍କର ହୀନମନ୍ୟତାକୁ ଭାଙ୍ଗି ଚୂରମାର କରିଦେଲା । ଫକୀର ତରବରରେ ଉଠିପଡ଼ି, ନିଜ ହାତରେ ସ୍ୱାମୀଜୀଙ୍କୁ କାକୁଡ଼ି ଖୁଆଇ ଦେଲେ । ଆନନ୍ଦ ଚିତ୍ତରେ ସ୍ୱାମୀଜୀ କାକୁଡ଼ିତକ ଖାଇଲେ । ସ୍ୱାମୀଜୀ କ୍ଷୁଧା ଜ୍ୱାଳାରୁ ମୁକ୍ତ ହେଲେ ଏବଂ କାକୁଡ଼ି ଖୁଆଇ ଜୀବନ ରକ୍ଷା କରିଥିବାରୁ ସେ ଫକୀରଙ୍କୁ ପ୍ରଶଂସା ସହ ଧନ୍ୟବାଦ ଜ୍ଞାପନ କଲେ ।

ଉକ୍ତ ଘଟଣାଟି ସାମାନ୍ୟ ଓ ଗୁରୁତ୍ୱହୀନ ହୋଇପାରେ କିନ୍ତୁ ଘଟଣା ପଶ୍ଚାତରେ ଯେଉଁ ମହାନ୍ ଭାବ ରହିଛି, ତାହା ହାସଲ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । ଅଶ୍ୱତ୍ଥ ବୃକ୍ଷ ମୂଳରେ ଉପବେଶନ କରି ଯେଉଁ ଦିବ୍ୟ ଅନୁଭୂତି ସ୍ୱାମୀଜୀ ହାସଲ କରିଥିଲେ, ସେହି ଅନୁଭୂତିକୁ ନିତିଦିନିଆ ଜୀବନରେ ପ୍ରୟୋଗ କରି ଆନନ୍ଦସାଗରରେ ବୁଡ଼ିଗଲେ । ପ୍ରତ୍ୟେକ ଜୀବନରେ କିଛି ଛୋଟବଡ଼ ଅନୁଭୂତି ଆସିଥାଏ । କିନ୍ତୁ ସେହି ଅନୁଭୂତି ବା ଉପଲବ୍ଧିକୁ ବାସ୍ତବ ଜୀବନରେ ପ୍ରୟୋଗ କରି ସଫଳହେବା ସମସ୍ତଙ୍କ ଭାଗ୍ୟରେ ଜୁଟେ ନାହିଁ । କାରଣ ସେମାନଙ୍କର ଅନୁଭୂତି ଓ ପ୍ରୟୋଗ ଭିତରେ ବିରାଟ ଫାଙ୍କ ରହିଥାଏ । କିନ୍ତୁ ଏତାଦୃଶ ପାର୍ଥିବ ଫାଙ୍କ ସ୍ୱାମୀଜୀଙ୍କ ଦୃଷ୍ଟିରେ ନ ଥିଲା । ଯେତେବେଳେ ଅଶ୍ୱତ୍ଥ ବୃକ୍ଷ ମୂଳରେ ଧ୍ୟାନରତ ହୋଇ ଉପଲବ୍ଧି କଲେ ଯେ ଅଣୁ ପରମାଣୁ ଓ ବିଶ୍ୱ ବ୍ରହ୍ମାଣ୍ଡ ଗୋଟିଏ ନିୟମରେ ନିର୍ମିତ, ସେତେବେଳେ ସମସ୍ତ ଦୃଶ୍ୟମାନ ଓ ଅଦୃଶ୍ୟମାନ ବସ୍ତୁ ତାଙ୍କ ଦୃଷ୍ଟିରେ ହୋଇଉଠିଲେ ଏକ ଓ ଅଭିନ୍ନ । ପାର୍ଥକ୍ୟ ଭଳି କ୍ଷୁଦ୍ର ଦୁର୍ବଳ ଚିନ୍ତା ଯାହା ମଣିଷର ନିମ୍ନ ଚେତନା ସ୍ତରରେ ବସା ବାନ୍ଧି ରହିଥାଏ, ତାହା ଏହି ଏକତ୍ୱ ଭାବର ଆନନ୍ଦ ପ୍ରବାହରେ ବିଲୁପ୍ତ ହେଲା । ଏହି ପ୍ରଚଣ୍ଡ ପ୍ରବାହରେ ସାମାନ୍ୟ ସାମାଜିକ ଓ ଧାର୍ମିକ କଟକଣାର ସ୍ଥିତି ଆସିବ ବା କେଉଁଠି ? ସେଠିତ ସବୁ ଏକାକାର ।

ସାତବର୍ଷ ଅତିକ୍ରାନ୍ତେ ଯେତେବେଳେ ବିଶ୍ୱ ପ୍ରସିଦ୍ଧ ସ୍ୱାମୀ ବିବେକାନନ୍ଦ ଆଲମୋଡ଼ା ପରିଭ୍ରମଣରେ ଆସିଥିଲେ ଏବଂ ହଜାର ହଜାର ଜନତା ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ

Digitized by srujanika@gmail.com

କରୁଥିଲେ, ସେତେବେଳେ ସ୍ୱାମୀଜୀଙ୍କର ଦୃଷ୍ଟି ଶୋଭାଯାତ୍ରା ଗହଳି ଭିତରୁ ଫକୀରଙ୍କ ଉପରେ ପଡ଼ିଲା । ଅବଶ୍ୟ ଫକୀର ତାଙ୍କୁ ଚିହ୍ନି ପାରିଲେ ନାହିଁ । କିନ୍ତୁ ସ୍ୱାମୀଜୀ ଅତ୍ୟନ୍ତ ଆନନ୍ଦିତ ହୋଇ ନିକଟସ୍ଥ ବ୍ୟକ୍ତିଗଣଙ୍କୁ କହିଲେ, ''ଦେଖ,ସେହି ଫକୀର ଦିନେ ମୋର ପ୍ରାଣ ବଞ୍ଚାଇ ଥିଲେ ।'' ଫକୀରଙ୍କ ନିକଟକୁ ସ୍ୱୟଂ ସ୍ୱାମୀଜୀ ଯାଇ, ତାଙ୍କୁ ଆଶୀର୍ବାଦ ଦେବା ସଙ୍ଗେ ସଙ୍ଗେ କିଛି ଟଙ୍କା ତାଙ୍କୁ ପ୍ରଦାନ କରିଥିଲେ ।

ଆଲମୋଡ଼ାରେ ସ୍ୱାମୀଜୀ ଲାଲା **ବଦ୍ରି ସାହାଙ୍କ** ଗୃହରେ ଅବସ୍ଥାନ କଲେ । ଇତ୍ୟବସରରେ ସ୍ୱାମୀ ସାରଦାନନ୍ଦ ଓ ସ୍ୱାମୀ କୃପାନନ୍ଦ (ବୈକୁଣ୍ଠନାଥ ସାନ୍ୟାଲ, ଶ୍ରୀରାମକୃଷ୍ଣ ପରମହଂସଙ୍କର ଜଣେ ଗୃହୀଭକ୍ତ) ସେଠାରେ ହିମାଳୟ ଭ୍ରମଣ କରି ପହଞ୍ଚିଲେ ଏବଂ ସ୍ୱାମୀଜୀଙ୍କୁ ଦର୍ଶନ କରି ଆନନ୍ଦିତ ହେଲେ । ସେଠିକାର ପର୍ବତ ଶିଖର ଦେଶରେ ଏକ ନିର୍ଜନ ଗୁମ୍ଫା ରହିଥିଲା । ସ୍ୱାମୀଜୀ ଉକ୍ତ ଗୁମ୍ଫା ମଧ୍ୟକୁ ପ୍ରବେଶ କରି ଦିନ ଓ ରାତି କଷ୍ଟସାଧ ସାଧନା ଓ ତପସ୍ୟାରେ ମଗ୍ନ ରହିଲେ । ପରମସତ୍ୟ ଜାଣିବା ପାଇଁ ସେ ସଂକଳ୍ପ ନେଲେ । ଗୁମ୍ଫାର ନିର୍ଜନତା ଓ ନୀରବତା ସ୍ୱାମୀଜୀଙ୍କର ମନକୁ ଆଧ୍ୟାତ୍ମିକ ରାଜ୍ୟର ଉଚ୍ଚତମ ଶିଖରେ ଉପନୀତ କରାଇଲା । ତାଙ୍କର ମୁଖମଣ୍ଡଳ ଦିବ୍ୟ ଜ୍ୟୋତିରେ ଉଦ୍‌ଭାସିତ । ସଂସାରର ସମସ୍ତ ବସ୍ତୁ ତ୍ୟାଗକରି ଏହି ନିର୍ଜନ ଓ ନୀରବତା ଭିତରେ ହଜି ଯିବାକୁ ତାଙ୍କର ମନ ଚାହୁଁଥିଲା । କିନ୍ତୁ ଶ୍ରୀରାମକୃଷ୍ଣଙ୍କର କାର୍ଯ୍ୟ ଅଧୁରା ରହିଯିବା ଭୟରେ ସେ ଆତଙ୍କିତ ହୋଇଉଠିଲେ । ସେ ପୁନଶ୍ଚ ଲାଲା ବଦ୍ରି ସାହାଙ୍କ ଗୃହକୁ ଫେରିଆସିଲେ । ନିର୍ଜନ ଗୁମ୍ଫାରୁ ସେ ସିନା ଫେରିଆସିଲେ, କିନ୍ତୁ ତାଙ୍କପାଇଁ ଏକ ନିଷ୍ଠୁର ସମ୍ବାଦ ସେଠାରେ ଅପେକ୍ଷା କରିଥିଲା । କଲିକତାରୁ ନିଜର ଭାଇ ଟେଲିଗ୍ରାମ ପଠାଇଥିଲେ ଯେ ତାଙ୍କର ଭଗ୍ନୀ ଆତ୍ମହତ୍ୟା କରିଛନ୍ତି । ଏହି ଦୁଃସମ୍ବାଦରେ ସ୍ୱାମୀଜୀ ଦୁଃଖରେ ଭାଙ୍ଗି ପଡ଼ିଲେ, କିନ୍ତୁ ଏତାଦୃଶ ଦୁଃଖାଭିଭୂତ ମନରେ ସେ ଭାରତୀୟ ନାରୀଙ୍କ ଉପରେ ଶୋଷଣ ଓ ଅତ୍ୟାଚାରର ଦୃଶ୍ୟ ଦର୍ଶନ କଲେ । ଭାରତୀୟ ନାରୀ ସମାଜର ଉତ୍ଥାନ ଓ ପ୍ରଗତି ପାଇଁ ସେ ଏକ ନୂତନ ସଂକଳ୍ପ ନେଲେ । ଯୁଗଯୁଗ ଧରି ସେମାନଙ୍କ ଉପରେ ହେଉଥିବା ଅତ୍ୟାଚାର ବିରୁଦ୍ଧରେ ତାଙ୍କ ମନ ପ୍ରଚଣ୍ଡ ବେଗରେ ବିଦ୍ରୋହ କରିଉଠିଲା । ସେମାନେ ଶୋଷଣମୁକ୍ତ ନ ହେଲେ ନୂତନ ଭାରତ ପ୍ରତିଷ୍ଠା ହୋଇପାରିବ ନାହିଁ ବୋଲି ସେ ଦୃଢ଼ଚିତ୍ତ ହେଲେ ।

- ୨ -

*ମୁଁ ଯେତେବେଳେ ଅଚେତାବସ୍ଥାରେ ଥିଲି, ସେତେବେଳେ ଜୀବନର ଏକ ନିର୍ଦ୍ଦିଷ୍ଟ ମହାନ ମିଶନ୍ ମୋ ମାନସାକାଶରେ ଉଦ୍‌ଭାସିତ ହେଲା । ମୁଁ ତାହା ଜଳଜଳ ଦେଖି ପାରୁଥିଲି । ଯେପର୍ଯ୍ୟନ୍ତ ସେହି ମିଶନର କାର୍ଯ୍ୟ ସମ୍ପୂର୍ଣ୍ଣ ନ ହୋଇଛି, ମୋତେ ବିଶ୍ରାମ ମିଳିବ ନାହିଁ ।*

ସ୍ୱାମୀଜୀ ଅନ୍ୟ ଗୁରୁଭାଇଙ୍କ ସହ ବଦ୍ରିକାଶ୍ରମ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ଗଡ଼ୱାଲ ଓ କର୍ଣ୍ଣପ୍ରୟାଗଠାରେ ପହଞ୍ଚିବା ଉତ୍ତାରୁ ଜାଣିବାକୁ ପାଇଲେ ଯେ ବଦ୍ରିନାଥ ଓ କେଦାରନାଥ

Digitized by srujanika@gmail.com

ଅଭିମୁଖେ ପଥ ସରକାର ଦୁର୍ଭିକ୍ଷ ସକାଶେ ବନ୍ଦ କରିଦେଇଛନ୍ତି । ଅନନ୍ୟୋପାୟ ହୋଇ ବଦ୍ରିକାଶ୍ରମ ଅଭିମୁଖେ ଯାତ୍ରା ବାତିଲ କଲେ ଏବଂ ରୁଦ୍ରପ୍ରୟାଗ, ଶ୍ରୀନଗର, ତେହେରି, ରାଜପୁର, ମୁସୋରୀ ଦେଇ ହୃଷିକେଶରେ ପହଞ୍ଚିଲେ । ହିମାଳୟ ପାର୍ବତୀୟ ଶ୍ରେଣୀରେ ବହୁ ମାସ ପଦଚାରଣ କରି ସ୍ୱାମୀଜୀ ଅତ୍ୟନ୍ତ କ୍ଳାନ୍ତ ଓ ଅବଶ ହୋଇପଡ଼ିଲେ । ଋଷିକେଶସ୍ଥିତ ଚନ୍ଦନେଶ୍ୱର ମହାଦେବ ମନ୍ଦିର ନିକଟରେ ଗୋଟିଏ କୁଟୀର ନିର୍ମାଣ କରି ସ୍ୱାମୀଜୀ ଅନ୍ୟ ଗୁରୁଭ୍ରାତାଙ୍କ ସହ ଅବସ୍ଥାନ କଲେ ।

ଋଷିକେଶର ପ୍ରାକୃତିକ ସୌନ୍ଦର୍ଯ୍ୟ ଏବଂ ଗଙ୍ଗାନଦୀର ମର୍ମର ଶବ୍ଦ ସ୍ୱାମୀଜୀଙ୍କର ମନକୁ ଶୁଦ୍ଧ ଆଧ୍ୟାତ୍ମିକ ସାଧନା ଅଭିମୁଖେ ନେଇଗଲା; ସେଠାରେ ପୁନଶ୍ଚ ସାଧନା ଓ ତପସ୍ୟାରେ ନିମଗ୍ନ ହେବାକୁ ମନ ବଳିଲା । କିନ୍ତୁ ତାହା ଆଉ ସମ୍ଭବ ହେଲାନାହିଁ । ସ୍ୱାମୀଜୀ ଭୀଷଣ ଅସୁସ୍ଥ ହୋଇପଡ଼ିଲେ । ପ୍ରଚଣ୍ଡ ଜ୍ୱର ଓ ଡିପ୍‌ଥେରିଆ ରୋଗରେ ହେଲେ ପୀଡ଼ିତ । ତାଙ୍କର ସ୍ୱାସ୍ଥ୍ୟ ଦିନକୁ ଦିନ ଅତି ଖରାପ ହେବାକୁ ଲାଗିଲା । ଏପରି ଏକ ସମୟ ଉପସ୍ଥିତ ହେଲା ଯେ ସ୍ୱାମୀଜୀଙ୍କର ନାଡ଼ି ମିଳିଲା ନାହିଁ ଏବଂ ତାଙ୍କର ସମଗ୍ର ଦେହ ହେମାଳ ହୋଇଗଲା । ଗୁରୁଭାଇମାନେ ଭୟରେ କମ୍ପିଉଠିଲେ; ସ୍ୱାମୀଜୀ ସତରେ କ'ଣ ସେମାନଙ୍କୁ ଛାଡ଼ି ଚାଲିଯିବେ ? ଏହି ଅସହାୟ ପରିସ୍ଥିତିରେ କେବଳ ଶ୍ରୀଠାକୁରଙ୍କୁ ପ୍ରାର୍ଥନା କରିବା ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ବିକଳ୍ପ ପନ୍ଥା ନ ଥିଲା । ଚିରାଫଟା କମ୍ବଳ ଉପରେ ସ୍ୱାମୀଜୀ କେବଳ ଅଚେତ ହୋଇ ପଡ଼ି ରହିଥିଲେ । ସେହି ସମୟରେ ଚିକିତ୍ସାର ସୁବିଧା ସେଠାରେ ଉପଲବ୍ଧ ନ ଥିଲା । ଗୁରୁଭାଇଗଣ ଭୋ ଭୋ କାନ୍ଦି ଉଠିଲେ । ସ୍ୱାମୀ ତୁରିୟାନନ୍ଦ ବାଷ୍ପରୁଦ୍ଧ କଣ୍ଠରେ କେବଳ ମନ୍ତ୍ର ଆବୃତ୍ତି କରୁଥିଲେ ।

ଏହି ଦୁଃଖଦ ପରିସ୍ଥିତିରେ ଜଣେ ଅଜଣା ସନ୍ନ୍ୟାସୀ କମ୍ବଳଟିଏ ଘୋଡ଼ି ହୋଇ ହଠାତ୍ ସେଠାରେ ପହଞ୍ଚିଲେ । ଅପଲକ ନୟନରେ ଶୋକାକୁଳ ସନ୍ନ୍ୟାସୀମାନଙ୍କୁ ଚାହିଁ କହିଲେ, "ତୁମେମାନେ କାହିଁକି କାନ୍ଦୁଛ ?" ଏତକ କହି ନିଜେ ଧରିଥିବା ଏକ ଥଳିରୁ ସେ ମହୁ ଓ ପିପଳ ଚୂର୍ଣ୍ଣ ବାହାର କରି ଗୋଟିଏ ଗିନାରେ ଫେଣ୍ଟିଲେ ଏବଂ ଜୋର ଜବରଦସ୍ତି ସ୍ୱାମୀଜୀଙ୍କ ମୁହଁରେ ଭର୍ତ୍ତି କରି ତାଙ୍କୁ ପିଆଇ ଦେଲେ । ତତ୍‌ପଶ୍ଚାତେ ସନ୍ନ୍ୟାସୀ ମହୋଦୟ ସେଠାରୁ ସଙ୍ଗେସଙ୍ଗେ ପ୍ରସ୍ଥାନ କଲେ । କି ଆଶ୍ଚର୍ଯ୍ୟ । ସତେକି ଉକ୍ତ ସନ୍ନ୍ୟାସୀ ଈଶ୍ୱର ପ୍ରେରିତ ଦେବଦୂତ ! ସ୍ୱାମୀଜୀଙ୍କ ଚେତା ଫେରିଆସିଲା ଏବଂ ତାଙ୍କର ଶରୀର ଉଷୁମ ଲାଗିଲା । କିୟତ୍ ସମୟାନ୍ତେ ସ୍ୱାମୀଜୀ ଆଖି ଖୋଲିଲେ ଏବଂ କିଛି କହିବାକୁ ଉଦ୍ୟତ ହେଲେ । ତାଙ୍କର ସ୍ୱର ଏପରି କ୍ଷୀଣ ଥିଲା ଯେ ଜଣେ ଗୁରୁଭାଇ ସ୍ୱାମୀଜୀଙ୍କ ମୁହଁରେ କାନ ପାରିଲେ । ସ୍ୱାମୀଜୀଙ୍କ ମୁଖରୁ ମୃଦୁ ଓ ସ୍ପଷ୍ଟ ସ୍ୱର ଭାସି ଆସୁଥିଲା, "ଉଲ୍ଲସିତ ହୁଅରେ ମୋ ବାଳକଗଣ, ମୁଁ ମରିବି ନାହିଁ ।" ସେ ଧୀରେ ଧୀରେ ସୁସ୍ଥ ହେଲେ ।

ସ୍ୱାମୀଜୀ ଆରୋଗ୍ୟ ଲାଭ କଲାଉତ୍ତାରୁ କହିଲେ, "ମୁଁ ଯେତେବେଳେ ଅଚେତାବସ୍ଥାରେ ଥିଲି, ସେତେବେଳେ ଜୀବନର ଏକ ନିର୍ଦ୍ଦିଷ୍ଟ ମହାନ ମିଶନ୍ ମୋ ମାନସାକାଶରେ ଉଦ୍‌ଭାସିତ ହେଲା । ମୁଁ ତାହା ଜଳଜଳ ଦେଖି ପାରୁଥିଲି । ଯେପର୍ଯ୍ୟନ୍ତ ସେହି ମିଶନର କାର୍ଯ୍ୟ ସମ୍ପୂର୍ଣ୍ଣ ନ

Digitized by srujanika@gmail.com

ହୋଇଛି, ମୋତେ ବିଶ୍ରାମ ମିଳିବ ନାହିଁ ।'' ଗୁରୁଭାଇମାନେ ମଧ୍ୟ ସ୍ୱାମୀଜୀଙ୍କ ଭିତରେ ଏକ ମହାଶକ୍ତି ଠୁଳ ହୋଇ ରହିଛି ବୋଲି ଅନୁଭବ କରିପାରୁଥିଲେ । ସେହି ମହାଶକ୍ତିର ପ୍ରକାଶ ପାଇଁ ସ୍ୱାମୀଜୀ ଭିତରେ ଭିତରେ ଖାଲି ଦଗ୍ଧିଭୂତ ହେଉଥିଲେ । ବହୁଜନ ହିତାୟ ଓ ବହୁଜନ ସୁଖାୟ ନିମନ୍ତେ ସେହି ମହାଶକ୍ତିର ଉନ୍ମେଷ ଘଟିବ । କିନ୍ତୁ ସମୟ ଓ ପରିବେଶ ଅନୁକୂଳ ହେଲେ ତ ? ଗୁରୁଭାଇମାନେ ନିଶ୍ଚିତ ଯେ ଶ୍ରୀରାମକୃଷ୍ଣଙ୍କର ମହାଶକ୍ତି ସ୍ୱାମୀଜୀଙ୍କ ମାଧ୍ୟମରେ ପ୍ରକାଶିତ ହେବ । ତେଣୁ ସ୍ୱାମୀଜୀଙ୍କର ଯତ୍ନ ନିହାତି ଆବଶ୍ୟକ । ସେମାନେ ତାଙ୍କ ପାଖେପାଖେ ଜଗି ରହିଛନ୍ତି, ସତେକି ଏକ ପ୍ରଚଣ୍ଡ ଆଲୋକରେ ସେମାନେ ନିରନ୍ତର ଆଲୋକିତ ।

ସ୍ୱାମୀଜୀଙ୍କର ଋଷିକେଶ ଅବସ୍ଥାନ କାଳରେ, ଟେହଡ଼ିର ମହାରାଜା ଆଜ୍‌ମିର ଅଭିମୁଖେ ଯାତ୍ରା ପଥରେ ଋଷିକେଶରେ ସ୍ୱଳ୍ପ ସମୟ ପାଇଁ ଅଟକିଲେ । ସ୍ୱାମୀଜୀଙ୍କର ଅସୁସ୍ଥତା ସମ୍ବନ୍ଧରେ ଜାଣି, ସେ ତାଙ୍କୁ ଦିଲ୍ଲୀର ଜଣେ ମୁସଲମାନ ହାକିମଙ୍କୁ ସାକ୍ଷାତ କରିବା ପାଇଁ ପରାମର୍ଶ ଦେଲେ । ସେ ମଧ୍ୟ ସ୍ୱାମୀଜୀଙ୍କୁ କିଛି ଅର୍ଥ ଦେଲେ ଏବଂ ତତ୍‌ସହିତ ମୁସଲମାନ ହାକିମ (ଚିକିତ୍ସକ)ଙ୍କ ଉଦ୍ଦେଶ୍ୟରେ ଏକ ଲିଖିତ ପତ୍ର ଦେଲେ, ଯଦ୍ଦ୍ୱାରା ସ୍ୱାମୀଜୀ ତାଙ୍କୁ ସହଜରେ ଭେଟି ପାରିବେ । ମହାରାଜାଙ୍କର ସହାନୁଭୂତି ଓ ନିଃସ୍ୱାର୍ଥପର ସହାୟତା ପାଇଁ ସ୍ୱାମୀଜୀ ତାଙ୍କୁ ଧନ୍ୟବାଦ ଅର୍ପଣ କଲେ । ସେଠାରୁ ସ୍ୱାମୀଜୀ ହରିଦ୍ୱାର ଅଭିମୁଖେ ଯାତ୍ରା କଲେ ଏବଂ ସ୍ୱାମୀ ବ୍ରହ୍ମାନନ୍ଦ ଯିଏ ସେଠାରେ ରହି ସାଧନାରେ ମଗ୍ନ ଥିଲେ, ତାଙ୍କୁ ସାକ୍ଷାତ କରି ଆନନ୍ଦରେ ଉଲ୍ଲସିତ ହୋଇପଡ଼ିଲେ । ହରିଦ୍ୱାରରୁ ବିଦାୟ ନେଇ ସ୍ୱାମୀଜୀ ମିରଠରେ ପହଞ୍ଚିଲେ ଏବଂ ଗୁରୁଭାଇ ସ୍ୱାମୀ ଅଖଣ୍ଡାନନ୍ଦଙ୍କୁ ସେଠାରେ ଦେଖି ଅତ୍ୟନ୍ତ ଖୁସି ହେଲେ । ମିରଠରେ ସ୍ୱାମୀଜୀ ସ୍ୱାମୀ ବ୍ରହ୍ମାନନ୍ଦ, ସ୍ୱାମୀ ସାରଦାନନ୍ଦ, ସ୍ୱାମୀ ଦୟାନନ୍ଦ, ସ୍ୱାମୀ ଅଖଣ୍ଡାନନ୍ଦ, ସ୍ୱାମୀ ଅଦ୍ୱୈତାନନ୍ଦ ଓ ସ୍ୱାମୀ କୃପାନନ୍ଦଙ୍କ ସହ କିଛିଦିନ ବାସ କଲେ ।

ମିରଠ ଅବସ୍ଥାନ ସମୟରେ ସ୍ୱାମୀଜୀ ଏକ ବଜ୍ର ଶପଥ ନେଲେ । ଗୁରୁଭାଇମାନଙ୍କୁ ସ୍ପଷ୍ଟ ଭାଷାରେ କହିଲେ, ''ଦେଖ, ଭବିଷ୍ୟତର କାର୍ଯ୍ୟପନ୍ଥା ନିମିତ୍ତ ମୁଁ ଈଶ୍ୱରଙ୍କଠାରୁ ଆଦେଶ ପ୍ରାପ୍ତ ହୋଇଛି । ମୋ ସାଙ୍ଗରେ ଏଣିକି କେହି ଯିବେନାହିଁ । ମୁଁ ଏକୁଟିଆ ଯିବି । ତୁମେମାନେ ମୋ ସାଙ୍ଗରେ ଯାତ୍ରା କରିବାରୁ ମୋର ଆଧ୍ୟାତ୍ମିକ ସାଧନାରେ ବ୍ୟାଘାତ ଘଟୁଛି । ସ୍ୱାମୀ ଅଖଣ୍ଡାନନ୍ଦଙ୍କୁ ଚାହିଁ ସ୍ୱାମୀଜୀ ପୁନଶ୍ଚ କହିଲେ, ''ଟେହଡ଼ିରେ ତୁମେ ଅସୁସ୍ଥ ହୋଇପଡ଼ିଲ; ତେଣୁ ସେଠାରେ ମୁଁ ସାଧନା ଠିକ୍‌ଭାବରେ କରିପାରିଲି ନାହିଁ । ମୁ ଦେଖୁଛି ଯେଉଁଠି ମୁଁ ଆଧ୍ୟାତ୍ମିକ ସାଧନାରେ ମଗ୍ନ ରହିବାକୁ ଚେଷ୍ଟା କରୁଛି, ସେଠାରେ ସ୍ୱୟଂ ପରମହଂସ କିଛି ନା କିଛି ବାଧା ସୃଷ୍ଟି କରୁଛନ୍ତି । ବର୍ତ୍ତମାନ ମୁଁ ଏକୁଟିଆ ଯିବି । ମୁଁ କେଉଁଠି ରହିବି, କେଉଁଠିକୁ ଯିବି, ସେ ବିଷୟରେ ମୁଁ କିଛି କହିବି ନାହିଁ ।'' ସ୍ୱାମୀ ଅଖଣ୍ଡାନନ୍ଦ ତତ୍‌କ୍ଷଣାତ୍ କହି ଉଠିଲେ, ''ତୁମେ ଯଦି ପାତାଳକୁ ଯିବ, ତୁମର ପିଛା ମୁଁ ଛାଡ଼ିବି ନାହିଁ ।'' ସ୍ୱାମୀଜୀ ତାଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ସେ ନିଶ୍ଚୟ ଦିନେ ସମସ୍ତଙ୍କୁ ପୁନଶ୍ଚ ଭେଟିବେ । ସମସ୍ତ ଗୁରୁଭାଇ ସ୍ୱାମୀଜୀଙ୍କର ବଜ୍ର ଶପଥ ଉପରେ ନୀରବ ରହିଲେ ।

Digitized by srujanika@gmail.com

- ୩ -

*କୌଣସି ପଥ ଅନୁସରଣ ନ କରି ଆଗେଇ ଯାଅ । କାହାକୁ ଭୟ କରନାହିଁ, କୌଣସି ଜିନିଷ ପ୍ରତି ଆସକ୍ତି ରଖନାହିଁ । ଗଣ୍ଡାଭଳି ନିଃସଙ୍ଗ ହୋଇ ଭ୍ରମଣ କର, ସିଂହ ଯେପରି ଶବ୍ଦରେ କମ୍ପିତ ହୁଏନାହିଁ, ପବନ ଯେପରି ଜାଲରେ ପଡ଼େନାହିଁ, ପଦ୍ମ ପତ୍ର ଯେପରି ଜଳରେ ସିକ୍ତ ହୁଏନାହିଁ, ସେପରି ଏକୁଟିଆ ଯାତ୍ରା କର ।*

**୧୮୯୧ ଜାନୁଆରୀ** ଶେଷବେଳକୁ ସ୍ୱାମୀ ବିବେକାନନ୍ଦ ଗୁରୁଭାଇମାନଙ୍କଠାରୁ ବିଦାୟ ନେଇ ଏକୁଟିଆ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ । ଦିଲ୍ଲୀରେ ଉପନୀତ ହୋଇ ସେ ସମସ୍ତ ଦର୍ଶନୀୟ ସ୍ଥାନ ପଦବ୍ରଜରେ ବୁଲି ବୁଲି ଦେଖିଲେ ଏବଂ ଭାରତବର୍ଷର ଐତିହାସିକ ପୃଷ୍ଠ ଭୂମିର ଅତୀତ ଇତିହାସ ତାଙ୍କ ମାନସପଟରେ ଜୀବନ୍ତ ହୋଇଉଠିଲା, ମାତ୍ର ତାଙ୍କର ଦିଲ୍ଲୀ ଭ୍ରମଣର ଦଶଦିନ ପୂର୍ତ୍ତି ହୋଇଛି କି ନାହିଁ, ମିରଠରୁ ଗୁରୁଭାଇ ସନ୍ନ୍ୟାସୀଗଣ ଦିଲ୍ଲୀରେ ପହଞ୍ଚିଲେ । ସ୍ୱାମୀଜୀ ସେତେବେଳକୁ ନିଜର ନାଁ ସ୍ୱାମୀ ବିଭିଦିଶାନନ୍ଦକୁ ପରିବର୍ତ୍ତନ କରି ଦେଇଥିଲେ । ସ୍ୱାମୀଜୀଙ୍କ ସହ ଅଚାନକ ସାକ୍ଷାତ ହେବାରୁ ଗୁରୁଭାଇମାନେ ସିନା ଆନନ୍ଦିତ ହେଲେ କିନ୍ତୁ ସ୍ୱାମୀଜୀ ପ୍ରଚଣ୍ଡ ଭାବେ ବିରକ୍ତ ହୋଇ କଠୋର ଶବ୍ଦରେ କହିଲେ, ''ଭାଇମାନେ, ମୁଁ ତୁମମାନଙ୍କୁ କହିଥିଲି, ମୋତେ ଏକୁଟିଆ ଛାଡ଼ିଦିଅ । ମୋର ବିରାଟ କାର୍ଯ୍ୟ ରହିଛି, ମୋତେ ଅନୁସରଣ କରନାହିଁ । ବର୍ତ୍ତମାନ ତୁମକୁ ଆଦେଶ ଦେଉଛି ଯେ ମୋତେ କେହି ଅନୁସରଣ କରନାହିଁ । ମୁଁ ବର୍ତ୍ତମାନ ଦିଲ୍ଲୀ ତ୍ୟାଗ କରୁଛି, ଯିଏ ମୋତେ ଅନୁସରଣ କରିବ, ସେ ବିପଦରେ ପଡ଼ିବ । ସବୁ ପୁରାତନ ସମ୍ପର୍କକୁ ଏହି ମୁହୂର୍ତ୍ତରେ ମୁଁ ଛିନ୍ନ କରୁଛି । ମୋତେ ଆତ୍ମା ଯେଉଁଠିକୁ ପଥ ପ୍ରଦର୍ଶନ କରିବ, ମୁଁ ସେଠାକୁ ଯାତ୍ରା କରିବି । ସେହି ସ୍ଥାନ ପଛକେ ମରୁଭୂମି, ପାର୍ବତ୍ୟାଞ୍ଚଳ, ଅରଣ୍ୟ କିମ୍ବା ଜନଗହଳି ସହର ହୋଇଥାଉ, ମୋର ଚିନ୍ତା ନାହିଁ ।''

ସ୍ୱାମୀଜୀଙ୍କର କ୍ରୋଧାନ୍ୱିତ ମୁଖମଣ୍ଡଳ ଅବଲୋକନ କରି ଗୁରୁଭାଇଗଣ ସ୍ତବ୍ଧ ହୋଇଗଲେ । ସେମାନେ ଜାଣିଛନ୍ତି ଯେ ସ୍ୱାମୀଜୀଙ୍କ ମନ ଓ ହୃଦୟ ନିଜର ଲକ୍ଷ୍ୟ ପୂରଣ ନିମନ୍ତେ ନିରନ୍ତର ବିଦ୍ରୋହରତ ଏବଂ ଅଧିକ ସମୟ ତାଙ୍କ ସହ ଯୁକ୍ତିତର୍କ ନ କରି ନୀରବ ରହିଲେ । ଅଶ୍ରୁପୂର୍ଣ୍ଣ ନୟନ ଓ ବେଦନାଗ୍ରସ୍ତ ହୃଦୟରେ ସେମାନେ ସ୍ୱାମୀଜୀଙ୍କୁ ବିଦାୟ ଦେଲେ । ସ୍ୱାମୀଜୀ ସର୍ବବନ୍ଧନ ଛିନ୍ନ କରି ଐତିହାସିକ ରାଜପୁତନା (ବର୍ତ୍ତମାନ ରାଜସ୍ଥାନ) ଅଭିମୁଖେ ଅଗ୍ରସର ହେଲେ । ନିଃସଙ୍ଗତା ହିଁ ତାଙ୍କର ସାଥୀ । ବୌଦ୍ଧଗ୍ରନ୍ଥ ଧମ୍ମପଦ'ର ସେହି ଅମର ଗାଥା ବାରମ୍ବାର ସ୍ମରିତ ହେଉଥିଲା ତାଙ୍କ ମାନସପଟରେ : କୌଣସି ପଥ ଅନୁସରଣ ନ କରି ଆଗେଇ ଯାଅ । କାହାକୁ ଭୟ କରନାହିଁ, କୌଣସି ଜିନିଷ ପ୍ରତି ଆସକ୍ତି ରଖନାହିଁ । ଗଣ୍ଡାଭଳି ନିଃସଙ୍ଗ ହୋଇ ଭ୍ରମଣ କର, ସିଂହ ଯେପରି ଶବ୍ଦରେ କମ୍ପିତ ହୁଏନାହିଁ, ପବନ ଯେପରି ଜାଲରେ ପଡ଼େନାହିଁ, ପଦ୍ମ ପତ୍ର ଯେପରି ଜଳରେ ସିକ୍ତ ହୁଏନାହିଁ, ସେପରି ଏକୁଟିଆ ଯାତ୍ରା କର ।''

**୧୮୯୧ ଫେବୃଆରୀ** ଆରମ୍ଭରେ ସ୍ୱାମୀଜୀ ଆଲୱାରରେ ଅବତରଣ କଲେ । ପ୍ରଥମ ସାକ୍ଷାତ ହେଲା ଜଣେ ଅପରିଚିତ ଡାକ୍ତର **ଗୁରୁଚରଣ ଲାସ୍କା**ରଙ୍କ ସହିତ । ସ୍ୱାମୀଜୀ ନମ୍ରତା

Digitized by srujanika@gmail.com

ସହ ରହିବା ପାଇଁ କୌଣସି ସ୍ଥାନ ସମ୍ବନ୍ଧରେ ପଚାରିବାରୁ, ଡାକ୍ତର ସନ୍ନ୍ୟାସୀଙ୍କର ତେଜସ୍ୱୀ ଚେହେରା ଓ ଶାଳୀନତାରେ ମୋହିତହୋଇ ଆଲୱାର ବଜାରରେ ଏକ ଗୃହର ବ୍ୟବସ୍ଥା ତତ୍‌କ୍ଷଣାତ୍ କରିଦେଲେ । ସ୍ୱାମୀଜୀଙ୍କର ସମ୍ବଳ ମାତ୍ର ଥିଲା ଗୋଟିଏ କମ୍ବଳ, କିଛି ପୁସ୍ତକ, ଗୋଟିଏ କମଣ୍ଡଳୁ ଓ ଗୋଟିଏ ଯଷ୍ଟି । ହାଇସ୍କୁଲର ଜଣେ ଉର୍ଦ୍ଦୁ ଓ ପାର୍ଶି ଭାଷାରେ ଦକ୍ଷ ଶିକ୍ଷକ ମୌଲବୀ ସାହେବ ଡାକ୍ତର ଲାସ୍କାରଙ୍କ ନିମନ୍ତ୍ରଣ କ୍ରମେ ସ୍ୱାମୀଜୀଙ୍କୁ ସାକ୍ଷାତ କରିବା ପାଇଁ ସେଠାରେ ପହଞ୍ଚିଲେ । ସ୍ୱାମୀଜୀଙ୍କ ସହ ଆଳାପ ଆଲୋଚନା କରିବା ପରେ, ତାଙ୍କର କୋରାନ୍‌ରେ ପାଣ୍ଡିତ୍ୟ ଦେଖି ମୌଲବି ସାହେବ ମୁଗ୍ଧ ହୋଇଗଲେ । ବହୁ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନ୍ ସ୍ୱାମୀଜୀଙ୍କ ର ପ୍ରବଚନ ଶୁଣିବା ନିମନ୍ତେ ସେଠାରେ ଭିଡ଼ ଜମାଇଲେ । ଉର୍ଦ୍ଦୁ ସଂଗୀତ, ହିନ୍ଦି ଭଜନ, ବଙ୍ଗଳା କୀର୍ତ୍ତନ ସହ କୋରାନ, ବାଇବେଲ, ବେଦ, ଉପନିଷଦ ଓ ଅନ୍ୟାନ୍ୟ ଶାସ୍ତ୍ରରୁ ଅନେକ ପଂକ୍ତି ଉଦ୍ଧୃତ କରି ସ୍ୱାମୀଜୀ ସଭିଙ୍କର ହୃଦୟକୁ ଆନନ୍ଦିତ କଲେ ।

ସ୍ୱାମୀଜୀଙ୍କର ଆଧ୍ୟାତ୍ମିକ ଚେତନାର ସ୍ପର୍ଶରେ ଆଲୋକିତ ହୋଇ ମୌଲବି ସାହେବଙ୍କ ମନରେ ଏକ ଇଚ୍ଛା ଉଦ୍ରେକ ହେଲା, ସ୍ୱାମୀଜୀଙ୍କୁ ଆମନ୍ତ୍ରଣ କରି ନିଜ ଘରେ ଖୁଆଇବେ । ସ୍ୱାମୀଜୀ ଜଣେ ମହାନ ସନ୍ନ୍ୟାସୀ, ତାଙ୍କର ଜାତି, ବର୍ଣ୍ଣ, ଧର୍ମର ଭେଦ ଭାବ ନାହିଁ, ସେ ନିଶ୍ଚୟ ଅନୁରୋଧ ରକ୍ଷା କରିବେ । କିନ୍ତୁ ସେ ଯେଉଁ ପଣ୍ଡିତଙ୍କ ଗୃହରେ ବାସ କରୁଛନ୍ତି, ସେହି ପଣ୍ଡିତ ମହାଶୟ ତାଙ୍କର ନିମନ୍ତ୍ରଣ ଉପରେ ଆପତ୍ତି କରିପାରନ୍ତି ବୋଲି ମୌଲବୀ ଚିନ୍ତା କଲେ । ମୌଲବୀ ସାହେବ ସ୍ୱାମୀଜୀଙ୍କ ଦିବ୍ୟ ଜ୍ଞାନରେ ଏଭଳି ତନ୍ମୟ ହୋଇଥିଲେ ଯେ ସେ ଏକ ସନ୍ଧ୍ୟାରେ ପଣ୍ଡିତଙ୍କ ପାଖରେ ପହଞ୍ଚି ଯୋଡ଼ ହସ୍ତରେ କହିଲେ, ''ପଣ୍ଡିତଜୀ, କାଲି ସକାଳୁ ମୋ ଘରେ ଭୋଜନ କରିବା ପାଇଁ ମୁଁ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କରିବାକୁ ଚାହୁଁଛି । ଆପଣ ଦୟାକରି ଅନୁମତି ପ୍ରଦାନ କରନ୍ତୁ । ଆପଣମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ମୋ ବୈଠକଖାନାର ସମସ୍ତ ଆସବାବପତ୍ରକୁ ଜଣେ ବ୍ରାହ୍ମଣ ଦ୍ୱାରା ସଫା କରାଇ ଦେବି । ଯେଉଁ ଖାଦ୍ୟ ପ୍ରସ୍ତୁତ ହେବ, ତାହା ଜଣେ ବ୍ରାହ୍ମଣ ପୂଜାରୀ ଦ୍ୱାରା ରନ୍ଧିତ ହେବ ଏବଂ ଯେଉଁ ବାସନକୁଶନରେ ଖାଦ୍ୟ ପରିବେଷିତ ହେବ, ତାହା ବ୍ରାହ୍ମଣ ଘରୁ ଆଣିବି । ଏହି ଯବନ ଦୂରରୁ ଠିଆ ହୋଇ କେବଳ ସ୍ୱାମୀଜୀଙ୍କର ଭୋଜନ ଲକ୍ଷ୍ୟକରି ଧନ୍ୟ ହେବ ।''

ମୌଲବୀ ସାହେବଙ୍କର ଭାଷା ଓ ଆଚରଣ ଏଭଳି ନମ୍ର ଓ ଶାଳୀନ ଥିଲା ଯେ, ପଣ୍ଡିତ ମହାଶୟ ଭାବବିହ୍ୱଳିତ ହୋଇ ତାଳି ମାରି କହିଲେ, ''ବନ୍ଧୁ, ସ୍ୱାମୀଜୀ ଜଣେ ସାଧୁ । ତାଙ୍କ ପାଖରେ ଜାତି, ଧର୍ମ ଆସିଲା କେଉଁଠୁ ? ଏଭଳି କଷ୍ଟ ସ୍ୱୀକାର କରିବା ଆପଣଙ୍କ ପକ୍ଷରେ ଆବଶ୍ୟକ ନାହିଁ । ଆପଣ ତାଙ୍କୁ ନିଜ ଘରେ ଖୁଆଇ ପାରନ୍ତି, ମୁଁ ବି ଆପଣଙ୍କ ହାତରୁ ଖାଇବା ପାଇଁ କୁଣ୍ଠାବୋଧ କରିବି ନାହିଁ ।'' ମୌଲବୀ ସାହେବ ସ୍ୱାମୀଜୀଙ୍କୁ ଆମନ୍ତ୍ରଣ କରି ନିଜ ଘରେ ମହାନନ୍ଦରେ ଖୁଆଇଲେ, କେବଳ ସେତିକି ନୁହେଁ ତାଙ୍କ ଦେଖାଦେଖି ବହୁ ମୁସଲମାନ ଭଦ୍ରବ୍ୟକ୍ତି ସ୍ୱାମୀଜୀଙ୍କୁ ଆଦରରେ ନିଜ ନିଜ ଘରେ ଭୋଜନ କରାଇ ଧନ୍ୟ ହେଲେ । ମୌଲବୀ ସାହେବଙ୍କୁ ସ୍ୱାମୀଜୀ କହିଲେ, ''ଭାଇ, କୋରାନ ଏକ ଚମତ୍କାର ଧର୍ମଶାସ୍ତ୍ର । ଏଗାରଶହ ବର୍ଷ ପୂର୍ବେ ଏହା ଯେମିତି ଥିଲା, ବର୍ତ୍ତମାନ ବି ସେମିତି ରହିଛି । କୋରାନ୍ ତାହାର ମୌଳିକତା ବଜାୟି ରଖିଛି ଏବଂ ସମସ୍ତ ପ୍ରକ୍ଷେପତାରୁ ଏହା ମୁକ୍ତ ।''

Digitized by srujanika@gmail.com

ସାଧାରଣତଃ ରାଜସ୍ଥାନୀମାନେ କୃଷ୍ଣଭକ୍ତ । ଶୁଦ୍ଧ ଅଦ୍ୱୈତ ବେଦାନ୍ତୀ ସ୍ୱାମୀଜୀ କୃଷ୍ଣ ପ୍ରେମରେ ମଗ୍ନ ହେବାର ଲୋକେ କ୍ୱଚିତ ଦେଖିବାର ସୁଯୋଗ ପାଇଥିଲେ । ଏକଦା ଆଲୱାର ସହରର ଭକ୍ତଗଣଙ୍କୁ ଉଦ୍‌ବୋଧନ ଦେଉଥିବା ସମୟରେ, ରାଧାକୃଷ୍ଣଙ୍କର ପ୍ରେମ ବର୍ଣ୍ଣନା କରୁ କରୁ ସ୍ୱାମୀଜୀଙ୍କର କଣ୍ଠ ବାଷ୍ପରୁଦ୍ଧ, ନୟନ ଅଶ୍ରୁପୂର୍ଣ୍ଣ ଏବଂ ଶରୀର ଭାବ ସମାଧିରେ କାଠ ସଦୃଶ ହୋଇଗଲା । ତାଙ୍କର ମୁଖମଣ୍ଡଳ ଦିବ୍ୟ ଆଭାରେ ଆଲୋକିତ ହେଲା, ଶ୍ରୋତାଗଣ ଅନୁଭବ କଲେ ସତେକି ସ୍ୱାମୀଜୀ ଗୋପୀ ଭଳି କୃଷ୍ଣ ପ୍ରେମରେ ନିମଜ୍ଜିତ ! ବହୁ ରାଜସ୍ଥାନୀ ସ୍ୱାମୀଜୀଙ୍କର ରାଧାଭାବ ଅବଲୋକନ କରି ବିସ୍ମିତ କେବଳ ହୋଇ ନ ଥିଲେ, ବରଂ ଅଶ୍ରୁମୋଚନରେ ନିଜର ବକ୍ଷସ୍ଥଳ ସିକ୍ତ କରିଥିଲେ ।

ସ୍ୱାମୀଜୀଙ୍କର ସ୍ୱଳ୍ପଦିନ ଅବସ୍ଥାନକାଳରେ ତାଙ୍କର ଖ୍ୟାତି ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହେଲା । ଆଲୱାର ରାଜ୍ୟର ଦିୱାନ ମେଜର **ରାମଚନ୍ଦ୍ରଜୀ** ସ୍ୱାମୀଜୀଙ୍କର ଆଧ୍ୟାତ୍ମିକ ଜ୍ଞାନ ଓ ବଜ୍ରକଣ୍ଠ ବାଣୀରେ ମୋହିତହୋଇ ନିଜ ବାସଭବନକୁ ନିମନ୍ତ୍ରଣ କଲେ । ସ୍ୱୟଂ ଆଲୋଚନା କରିବା ଉତ୍ତାରୁ, ତାଙ୍କର ବିଶ୍ୱାସ ହେଲା ଯେ ସ୍ୱାମୀଜୀ ଜଣେ ସାଧାରଣ ସନ୍ନ୍ୟାସୀ ନୁହଁନ୍ତି ଏବଂ ଦିବ୍ୟ ଜ୍ଞାନରେ ଔଜଲ୍ୟମାନ ଏକ ସତ୍ତା । ଇଂରାଜୀ ଭାଷାରେ ତାଙ୍କର ପାରଙ୍ଗମତା ଅତୁଳନୀୟ । ଆଲୱାର ମହାରାଜା ମଙ୍ଗଳ ସିଂହ ପାଶ୍ଚାତ୍ୟ ଦର୍ଶନ, ସାହିତ୍ୟ ଓ ସଂସ୍କୃତିରେ ପ୍ରଭାବିତ ହୋଇ ପାଶ୍ଚାତ୍ୟ ପରମ୍ପରାନୁସାରେ ଜୀବନ ନିର୍ବାହ କରୁଥିଲେ ଏବଂ ଭାରତୀୟ ଧର୍ମ ଓ ସଂସ୍କୃତି ପ୍ରତି ବିମୁଖ ଥିଲେ । ସ୍ୱାମୀଜୀଙ୍କ ସହ ଆଲୋଚନା ତାଙ୍କର ଦୃଷ୍ଟିକୋଣକୁ ପରିବର୍ତ୍ତନ କରିପାରେ ଭାବି ସେ ସ୍ୱାମୀଜୀଙ୍କ ସହ ସାକ୍ଷାତ କରିବାକୁ ପ୍ରସ୍ତାବ ବାଢ଼ିଲେ । ରାଜପ୍ରାସାଦରେ ମହାରାଜା ମଙ୍ଗଳ ସିଂହ ସେହି ସମୟରେ ବିରାଜମାନ କରୁଥିଲେ, ଦିୱାନଙ୍କ ପ୍ରସ୍ତାବ ଗ୍ରହଣ କଲେ ଏବଂ ଦିୱାନଙ୍କ ଗୃହରେ ପରବର୍ତ୍ତୀ ଦିନ ଉପନୀତ ହେଲେ ।

- ୪ -

*ଭକ୍ତ ମୂର୍ତ୍ତି ମାଧ୍ୟମରେ ଭଗବାନଙ୍କୁ ଉପାସନା କରେ । ହଁ, ମନେରଖନ୍ତୁ ମହାରାଜ, ପଥର, ମାଟି, କାଠ ଓ ଧାତୁକୁ ମଣିଷ ପୂଜା କରେ ନାହିଁ । ଅନେକ ସ୍ଥାନ ମୁଁ ଭ୍ରମଣ କରିଛି । କୌଣସି ହିନ୍ଦୁ କେବେ କହୁଥିବାର ମୁଁ ଶୁଣିନାହିଁ, ''ହେ ଧାତୁ, ହେ, ପଥର, ହେ କାଠ, ହେ ମାଟି, ମୁଁ ତୁମକୁ ପୂଜା କରୁଛି । ମୋ ପ୍ରତି ପ୍ରସନ୍ନ ହୁଅ । ବୁଝିଲେ ମହାରାଜ, ଅନନ୍ତ ଭାବମୟ ଭଗବାନ ହେଉଛନ୍ତି ଏକ - ଭକ୍ତଗଣ ତାଙ୍କୁ ହିଁ ନିଜ ନିଜର ଭାବ ଅନୁଯାୟୀ ବିଭିନ୍ନ ରୂପରେ ପୂଜାର୍ଚ୍ଚନା କରନ୍ତି ।*

ଭାରତୀୟ ପରମ୍ପରାନୁସାରେ ମହାରାଜା ମଙ୍ଗଳ ସିଂହ ସ୍ୱାମୀଜୀଙ୍କୁ ପ୍ରଣାମ ଜଣାଇ ଆସନରେ ଉପବେଶନ କଲେ ଏବଂ ରାଜ ପରିଷଦର ଉଚ୍ଚ ପଦାଧିକାରୀଗଣ ନିଜ ନିଜ ଆସନ

Digitized by srujanika@gmail.com

ଗ୍ରହଣ କଲେ । ମହାରାଜ ଆଲୋଚନା ଆରମ୍ଭ କରି ସ୍ୱାମୀଜୀଙ୍କୁ ଲକ୍ଷ୍ୟ କରି କହିଲେ, ''ସ୍ୱାମୀଜୀ ମହାରାଜ, ଶୁଣିଛି ଯେ ଆପଣ ଜଣେ ମହାପଣ୍ଡିତ ଓ ବିଦ୍ୱାନ । ଅବଶ୍ୟ ଆପଣ ସହଜରେ ବହୁ ଅର୍ଥ ଉପାର୍ଜନ କରିପାରିବେ । ତଥାପି ଦ୍ୱାର ଦ୍ୱାର ବୁଲି ଆପଣ ଭିକ ମାଗୁଛନ୍ତି କାହିଁକି ?'' ମହାରାଜାଙ୍କର ଏତାଦୃଶ ଅଯଥା ପ୍ରଶ୍ନ ଶୁଣି ସ୍ୱାମୀଜୀ ନିର୍ଭୀକ ଓ ସ୍ପଷ୍ଟ ଶବ୍ଦରେ ଉତ୍ତର ଦେଲେ, ''ମହାରାଜ, ଆପଣ ରାଜ୍ୟର ରାଜା ହୋଇ କାହିଁକି ଅକାରଣେ ସାହେବମାନଙ୍କ ସହ ଶିକାରରେ ସମୟ ନଷ୍ଟ କରୁଛନ୍ତି, ଯଦ୍ଦ୍ୱାରା ଆପଣ ରାଜ୍ୟ ଓ ପ୍ରଜାଙ୍କର ଉଚିତ ସେବା କରିବାରେ ଅବହେଳା କରୁନାହାନ୍ତି କି ?'' ସ୍ୱାମୀଜୀଙ୍କର ରୋକଠୋକ ଉତ୍ତର ରାଜକର୍ମଚାରୀଗଣଙ୍କୁ ସ୍ତବ୍ଧ କରିଦେଲା ଏବଂ ସେମାନେ ଭାବି ନେଇଥିଲେ ଯେ ମହାରାଜା ନିଶ୍ଚିତଭାବେ ସ୍ୱାମୀଜୀଙ୍କୁ ତିରସ୍କାର କରିବେ । କିନ୍ତୁ ତାହା ଘଟିଲା ନାହିଁ ବରଂ ମହାରାଜ କିୟତ୍ ସମୟ ନୀରବ ରହି ଉତ୍ତର ଦେଲେ, ''ଅବଶ୍ୟ ମୁଁ ତାହା କାହିଁକି କରେ କହି ପାରିବି ନାହିଁ, କିନ୍ତୁ ଏତିକି କହିବି ଯେ ଶିକାର ମୋତେ ଭଲ ଲାଗେ ।'' ସ୍ୱାମୀଜୀଙ୍କ ଅଧରରେ ମୃଦୁ ହସ ରେଖାଟିଏ ଖେଳିଗଲା, ସେ ତତ୍‌କ୍ଷଣାତ୍ କହି ଉଠିଲେ, ''ହଁ ମହାରାଜ, ମୁଁ ବି ନିଶ୍ଚୟ ଭିକ୍ଷୁ ଭଳି ବୁଲି ବୁଲି ଭିକ୍ଷା ମାଗଣ କରିବାକୁ ଭଲପାଏ, ତେଣୁ ଭିକ ମାଗୁଛି ।

ସ୍ୱାମୀଜୀଙ୍କର ପ୍ରତ୍ୟୁତ୍ପନ୍ନ ବୁଦ୍ଧିକୁ ମନେ ମନେ ପ୍ରଶଂସା କରି ମହାରାଜ ପରବର୍ତ୍ତୀ ପ୍ରଶ୍ନ ପଚାରିଲେ, ''ସ୍ୱାମୀଜୀ, ମୂର୍ତ୍ତିପୂଜାରେ ମୋର ଆଦୌ ବିଶ୍ୱାସ ନାହିଁ । ତେବେ ମୋର କି ପ୍ରକାର ଦୁର୍ଗତି ହେବ ? ସ୍ୱାମୀ ବିବେକାନନ୍ଦଙ୍କ ଭିତରେ ପ୍ରଚଣ୍ଡ ଅଗ୍ନି ହୁତାଶନରେ ପରିଣତ ହେଲା । ସେ ବିରକ୍ତି ପ୍ରକାଶ କରି କହିଲେ, ''ମହାରାଜ, ଆପଣ ମୋତେ ଉପହାସ କରୁନାହାନ୍ତି ତ ?'' ସ୍ୱାମୀଜୀଙ୍କ କପାଳରେ କୁଞ୍ଚିତ ରେଖା ପରିଲକ୍ଷିତ କରି ମହାରାଜ ବିଚଳିତ ହୋଇ କହିଉଠିଲେ, ''ନା ନା ସ୍ୱାମୀଜୀ ମହାରାଜ । ଏହା ମୋର ହୃଦୟର କଥା । ମୁଁ ଆପଣଙ୍କୁ ବିଦ୍ରୂପ କରୁନାହିଁ । ମାଟି, ପଥର ଓ ଧାତୁ ନିର୍ମିତ ମୂର୍ତ୍ତିକୁ ମୁଁ ସାଧାରଣ ମଣିଷ ଭଳି ପୂଜା କରିପାରେ ନାହିଁ । ସେଥିପାଇଁ କ'ଣ ମୋତେ ପରକାଳରେ ଅଶେଷ ଦୁଃଖ ଭୋଗ କରିବାକୁ ପଡ଼ିବ ?'' ସ୍ୱାମୀଜୀଙ୍କ ଦୟାର୍ଦ୍ର ହୃଦୟ କରୁଣାରେ ଉଦ୍‌ବେଳିତ ହେଲା ସେ ଆଶ୍ୱାସନା ପ୍ରଦାନ କରି କହିଲେ, ''ମହାରାଜ, ପ୍ରତ୍ୟେକ ବ୍ୟକ୍ତି ନିଜର ରୁଚି ଓ ବିଶ୍ୱାସ ଅନୁସାରେ ପୂଜାର୍ଚ୍ଚନା ଓ ଉପାସନା କଲେ ପରକାଳରେ ଶାନ୍ତି ନ ପାଇବ କାହିଁକି ? ଆପଣ ମୂର୍ତ୍ତିପୂଜାରେ ବିଶ୍ୱାସ କରନ୍ତି ନାହିଁ, ସେଥିରେ କିଛି ଅସୁବିଧା ନାହିଁ ।''

ସ୍ୱାମୀଜୀଙ୍କର ଏତାଦୃଶ ଯୁକ୍ତି ଉପସ୍ଥିତ ଅନେକ ଭକ୍ତଙ୍କୁ ବିସ୍ମିତ କଲା । ସେମାନେ ଭାବିବାକୁ ଲାଗିଲେ ଯେ ମହାରାଜଙ୍କର ମୂର୍ତ୍ତିପୂଜା ବିରୋଧୀ ମନୋଭାବ ସ୍ୱାମୀଜୀ କାହିଁକି ଗ୍ରହଣ କରିନେଲେ । ଇତ୍ୟବସରରେ ଦିୱାନଙ୍କ ବୈଠକଖାନାର କାନ୍ଥରେ ଟଙ୍ଗା ହୋଇଥିବା ମହାରାଜଙ୍କର ପ୍ରତିକୃତି ଉପରେ ସ୍ୱାମୀଜୀଙ୍କ ଦୃଷ୍ଟି ପଡ଼ିଲା । ସ୍ୱାମୀଜୀ ହଠାତ୍ ଫଟୋଟିକୁ ତାଙ୍କ ପାଖକୁ ଆଣିବାକୁ କହିଲେ । ଜଣେ କର୍ମଚାରୀ କାନ୍ଥରୁ ଫଟୋଟି ଆଣି ସ୍ୱାମୀଜୀଙ୍କ ହସ୍ତରେ ଅର୍ପଣ କଲେ । ମହାରାଜାଙ୍କର ପ୍ରତିକୃତି ହସ୍ତରେ ଧାରଣ କରି ସ୍ୱାମୀଜୀ ଉପସ୍ଥିତ ରାଜକର୍ମଚାରୀ ଓ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ପ୍ରଶ୍ନ କଲେ, ''ଏହି ଫଟୋ କାହାର ?'' ଦିୱାନ ଉତ୍ତର ଦେଲେ, ''ଆମ

Digitized by srujanika@gmail.com

ମହାରାଜାଙ୍କର !'' ମହାରାଜ ମଙ୍ଗଳସିଂହ ଉତ୍କଣ୍ଠା ସହକାରେ ଚାହିଁଥିଲେ ସ୍ୱାମୀଜୀଙ୍କୁ । ହଠାତ୍ ସ୍ୱାମୀଜୀ ଦିଓ୍ୱାନଙ୍କୁ କହିଲେ, ''ଦିଓ୍ୱାନଜୀ, ଏହି ଫଟୋ ଉପରେ ଛେପ ପକାନ୍ତୁ ।''

ସ୍ୱାମୀଜୀଙ୍କର ଏଭଳି ଅବାନ୍ତର କଥାଶୁଣି ଦିଓ୍ୱାନ କେବଳ ନୁହନ୍ତି, ବରଂ ଉପସ୍ଥିତ ରାଜକର୍ମଚାରୀ ଓ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ମୁହଁ ଭୟରେ କଳା ପଡ଼ିଗଲା ଏବଂ ମହାରାଜଙ୍କ କ୍ରୋଧର ବିସ୍ଫୋରଣ ଘଟିବା ଆଶଙ୍କାରେ ଶିହରିତ ହୋଇପଡ଼ିଲେ । ନିସ୍ତବ୍ଧ ସମବେତ ଜନତାଙ୍କୁ ଚାହିଁ ସ୍ୱାମୀଜୀ ବାରମ୍ବାର ପ୍ରଶ୍ନ କରୁଥିଲେ, ''ଠିକ୍ ଅଛି । ଦିଓ୍ୱାନ ତ କରିପାରିବେ ନାହିଁ । ଆପଣମାନଙ୍କ ଭିତରୁ କେହି ଜଣେ ଏହି ଫଟୋ ଉପରେ ଛେପ ପକାଇ ପାରିବେ କି ? ଏହାତ ଖଣ୍ଡିଏ ଟୁକୁରା କାଗଜ ମାତ୍ର ! ଛେପ ପକାଇବାରେ ଆପଣଙ୍କର କି ଅସୁବିଧା ହେବ ?''

ସ୍ୱାମୀଜୀଙ୍କର ଏଭଳି ବାରମ୍ବାର ଅଯଥା ଆହ୍ୱାନକୁ ଲକ୍ଷ୍ୟକରି ଦିଓ୍ୱାନଜୀ ଭୟ ଓ ଆତଙ୍କରେ ଥରେ ମହାରାଜାଙ୍କ ମୁହଁକୁ ତ ଥରେ ସ୍ୱାମୀଜୀଙ୍କ ମୁହଁକୁ ଚାହୁଁଥିଲେ । ଶେଷରେ ନିଜକୁ ଆଉ ସମ୍ଭାଳି ନ ପାରି ଦିଓ୍ୱାନଜୀ ଚିତ୍କାର କରି କହି ଉଠିଲେ, ''ସ୍ୱାମୀଜୀ, ଆପଣ କ'ଣ କହୁଛନ୍ତି ? ଏହି ଫଟୋ ପରା ଆମ ମହାରାଜାଙ୍କର । ଏହା ଉପରେ ମୁଁ କେମିତି ଛେପ ପକାଇ ପାରିବି ? ସ୍ୱାମୀଜୀ ହସି ଉଠି କହିଲେ, ''ସେଠୁ କ'ଣ ହେଲା ? ଏହି ଫଟୋରେ ତ ମହାରାଜ ସ୍ୱୟଂ ଶରୀରରେ ବିଦ୍ୟମାନ ନାହାନ୍ତି । ଏହି ଫଟୋଟି ବି ମହାରାଜାଙ୍କର ରକ୍ତମାଂସ ଦେହ ନୁହେଁ । ମହାରାଜାଙ୍କ ଭଳି ଏହି ଚିତ୍ରଟି ଚଳଚଞ୍ଚଳ ହେଉନାହିଁ କିମ୍ବା କଥା କହୁନାହିଁ । ଏହା ତ ଖଣ୍ଡିଏ କାଗଜ । ତଥାପି ଏହି କାଗଜ ଖଣ୍ଡିକ ଉପରେ ଛେପ ପକାଉ ନାହାନ୍ତି ? ଅବଶ୍ୟ ତା'ର କାରଣ ମୋତେ ଭଲଭାବରେ ଜଣା । ଆପଣମାନେ ଅନୁଭବ କରୁଛନ୍ତି ଯେ ଫଟୋଟି ମହାରାଜାଙ୍କର ରୂପ ବହନ କରୁଛି । ଅର୍ଥାତ୍ ଫଟୋ ଉପରେ ଛେପ ପକାଇଲେ ଆପଣମାନଙ୍କର ପ୍ରଭୁ ଯିଏ ସ୍ୱୟଂ ମହାରାଜା, ତାଙ୍କର ଅସମ୍ମାନ ହେବ, ନୁହେଁ କି ?

ଏତକ କହି ସ୍ୱାମୀଜୀ ମହାରାଜାଙ୍କୁ ଚାହିଁଲେ ଏବଂ ମୃଦୁ ସ୍ୱରରେ କହିଲେ, ''ମହାରାଜ ! ଦେଖନ୍ତୁ, ଗୋଟିଏ ପକ୍ଷରେ ଚିନ୍ତା କଲେ, ଏହି ପ୍ରତିକୃତିରେ ଆପଣଙ୍କର ଅସ୍ତିତ୍ୱ ନାହିଁ, କିନ୍ତୁ ଅନ୍ୟପକ୍ଷରେ ଚିନ୍ତାକଲେ ଆପଣଙ୍କ ଅସ୍ତିତ୍ୱ ଅଛି । ସେଥିପାଇଁ ଆପଣଙ୍କର ଅନୁରକ୍ତ ଓ ବିଶ୍ୱସ୍ତ ସେବକଗଣ ଫଟୋଟିରେ ଛେପ ପକାଇବା ପାଇଁ କୁଣ୍ଠାବୋଧ କଲେ । ଏହି ଫଟୋଟି ଯେ ଆପଣଙ୍କର ଛାୟା ସେମାନଙ୍କର ମନରେ ଦୃଢ଼ ଧାରଣା । ଆପଣଙ୍କୁ ଯେପରି ସେମାନେ ସମ୍ମାନ ଦିଅନ୍ତି, ଠିକ୍ ସେପରି ସେମାନେ ଏହି ଫଟୋକୁ ସମ୍ମାନ ଦିଅନ୍ତି । ସେହିଭଳି କାଠ, ପଥର, ମାଟି ଓ ଧାତୁରେ ଈଶ୍ୱରଙ୍କର ଅସ୍ତିତ୍ୱକୁ ନିଜ ନିଜର ମାନସିକତାନୁସାରେ ଆକାର ଦେଇ ମୂର୍ତ୍ତିଭାବରେ ଭକ୍ତଗଣ ପୂଜାର୍ଚ୍ଚନା କରନ୍ତି । ଅବଶ୍ୟ ଏହି ମୂର୍ତ୍ତିଗୁଡ଼ିକ ସ୍ୱୟଂ ଈଶ୍ୱର ନୁହନ୍ତି । କିନ୍ତୁ ଏମାନଙ୍କ ଉପରେ ଆଖିପଡ଼ିବା ମାତ୍ରକେ ଭକ୍ତଙ୍କ ମନ ଓ ହୃଦୟରେ ସେହି ପରମେଶ୍ୱର ପରମାତ୍ମାଙ୍କ ଅସ୍ତିତ୍ୱ ଉଦିତ ହୁଏ । ଭକ୍ତ ମୂର୍ତ୍ତି ମାଧ୍ୟମରେ ଭଗବାନଙ୍କୁ ଉପାସନା କରେ । ହଁ, ମନେରଖନ୍ତୁ ମହାରାଜ, ପଥର, ମାଟି, କାଠ ଓ ଧାତୁକୁ ମଣିଷ ପୂଜା କରେ ନାହିଁ । ଅନେକ ସ୍ଥାନ ମୁଁ ଭ୍ରମଣ କରିଛି । କୌଣସି ହିନ୍ଦୁ କେବେ କହୁଥିବାର ମୁଁ ଶୁଣିନାହିଁ, ''ହେ ଧାତୁ, ହେ, ପଥର, ହେ କାଠ, ହେ ମାଟି, ମୁଁ ତୁମକୁ ପୂଜା କରୁଛି । ମୋ ପ୍ରତି ପ୍ରସନ୍ନ ହୁଅ । ବୁଝିଲେ ମହାରାଜ, ଅନନ୍ତ

Digitized by srujanika@gmail.com

ଭାବମୟ ଭଗବାନ ହେଉଛନ୍ତି ଏକ - ଭକ୍ତଗଣ ତାଙ୍କୁ ହିଁ ନିଜ ନିଜର ଭାବ ଅନୁଯାୟୀ ବିଭିନ୍ନ ରୂପରେ ପୂଜାର୍ଚ୍ଚନା କରନ୍ତି ।''

ଏତକ କହୁ କହୁ ସ୍ୱାମୀଜୀଙ୍କ ମୁଖମଣ୍ଡଳ ଅପୂର୍ବ ଦିବ୍ୟଆଭାରେ ହେଲା ଉଦ୍‌ଭାସିତ । ମହାରାଜା ମଙ୍ଗଳ ସିଂହ, ଯିଏ ଅତି ମନୋଯୋଗ ସହିତ ସ୍ୱାମୀଜୀଙ୍କ ଭାବାର୍ଥ ଶୁଣୁଥିଲେ, କୃତଜ୍ଞତା ଦୃଷ୍ଟିରେ ହାତଯୋଡ଼ି କହିଲେ, ''ସ୍ୱାମୀଜୀ ମହାରାଜ, ଆପଣଙ୍କ ଦୟାରୁ ମୂର୍ତ୍ତିପୂଜା ସମ୍ବନ୍ଧରେ ଏକ ଅଭିନବ ଅନୁଭୂତି ମୁଁ ଆଜି ଲାଭ କଲି । ବାସ୍ତବିକ, ଆପଣ ଆଜି ଯାହା କହିଲେ, ତାହା ମୁଁ ନିଜେ ଅଙ୍ଗେ ନିଭାଇଛି ଯେ ମୁଁ ବି ଏପର୍ଯ୍ୟନ୍ତ ଜଣକୁ ହେଲେ କାଠ, ପଥର, ମାଟି ଓ ଧାତୁର ଉପାସନା କରୁଥିବାର ମଣିଷ ଦେଖିନାହିଁ । ମୂର୍ତ୍ତିପୂଜାର ପ୍ରକୃତ ରହସ୍ୟ ମୁଁ ବୁଝି ନ ଥିଲି କିମ୍ବା ବୁଝିବାକୁ ଚେଷ୍ଟା କରି ନ ଥିଲି । ଆଜି ଆପଣ ମୋର ଜ୍ଞାନ ଚକ୍ଷୁ ଖୋଲି ଦେଇଛନ୍ତି । ଦୟାକରି ମୋର ଦୋଷ କ୍ଷମା କରି ମୋ ପ୍ରତି କରୁଣା କରନ୍ତୁ ।'' ସ୍ୱାମୀଜୀ ସସ୍ନେହେ କହିଲେ, ''ହେ ରାଜନ୍, ଏକମାତ୍ର ଭଗବାନଙ୍କ ବିନା ଆଉ କାହାର କୃପା ପ୍ରଦାନ କରିବାର ଅଧିକାର ନାହିଁ । ଆପଣ ତାଙ୍କଠାରେ ଶରଣାପନ୍ନ ହୁଅନ୍ତୁ । ସେ ନିଶ୍ଚୟ ଆପଣଙ୍କୁ କୃପା କରିବେ ।''

ଉକ୍ତ ଘଟଣା ପଶ୍ଚାତରେ ଏକ ମହତ୍ ବାଣୀ ସ୍ୱାମୀଜୀଙ୍କର ଥିଲା । ଭଗବାନଙ୍କ ରୂପ ନେଇ କଳହ କରିବା ଉଚିତ ନୁହେଁ । ସେ ସାକାର, ସେ ବି ନିରାକାର । ଭକ୍ତର ମନ ଓ ହୃଦୟ ଅନୁସାରେ ସେ ସବୁକିଛି ହୋଇପାରିବେ । ମହାରାଜ ମଙ୍ଗଳ ସିଂହଙ୍କର ଅନ୍ତରାତ୍ମା ହେଲା ଆଲୋକିତ, ସେ ନିଃସଙ୍କୋଚରେ ଦେଓ୍ୱାନଙ୍କୁ କହିଲେ, ''ଦେଓ୍ୱାନଜୀ, ଜୀବନରେ ଏଭଳି ମହାନ ଆତ୍ମାର ସଂସ୍ପର୍ଶରେ କେବେ ମୁଁ ଆସି ନ ଥିଲି । ତାଙ୍କୁ ଆପଣଙ୍କ ଘରେ କିଛିଦିନ ରଖନ୍ତୁ ।'' ଦେଓ୍ୱାନ କହିଲେ, ''ମହାରାଜ, ମୁଁ ତାହା ପ୍ରାଣପଣେ ଚେଷ୍ଟା କରିବି, କିନ୍ତୁ ମୁଁ ଏଥିରେ ସଫଳ ହେବି କି ନାହିଁ ଜାଣେ ନାହିଁ । ସେ ଜଣେ ଜ୍ୱଳନ୍ତ ଓ ସ୍ୱାଧୀନ ଚରିତ୍ରର ସନ୍ୟାସୀ ।'' ସ୍ୱାମୀଜୀଙ୍କୁ ନିଜ ଘରେ ଅଧିକ କାଳ ରହିବାକୁ ଦେଓ୍ୱାନ ବହୁ ଅନୁରୋଧ ଓ ବିନୟ କଲେ, କିନ୍ତୁ ଗୋଟିଏ ସର୍ତ୍ତରେ ସ୍ୱାମୀଜୀ କିଛି ଦିନ ରହିବାକୁ ରାଜି ହେଲେ - ଯେଉଁ ଅଶିକ୍ଷିତ, ନିଃସ୍ୱ, ଗରିବ ଜନତା ତାଙ୍କୁ ସାକ୍ଷାତ କରିବାକୁ ଆସୁଛନ୍ତି, ସେମାନେ ଶିକ୍ଷିତ ଓ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଭଳି ଅବାଧ ଓ ସ୍ୱାଧୀନଭାବେ ତାଙ୍କୁ ସାକ୍ଷାତ କରିପାରିବେ । ଦିଓ୍ୱାନ, ସ୍ୱାମୀଜୀଙ୍କର ବିଶାଳ ହୃଦୟ ଓ ପ୍ରସାରିତ ମନ, ବୁଝିପାରି ସହମତ ହେଲେ ।

ଆଲଓ୍ୱାର ଅବସ୍ଥାନକାଳରେ, ବହୁ ବ୍ୟକ୍ତି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସ୍ୱାମୀଜୀଙ୍କ ସାନିଧ୍ୟ ଲାଭ କଲେ । ଇଂରାଜୀ ସହ ସଂସ୍କୃତ ପଢ଼ିବାଲାଗି ଯୁବବର୍ଗଙ୍କୁ ସ୍ୱାମୀଜୀ ପରାମର୍ଶ ଦେଇ କହିଥିଲେ, ''ହେ ମୋର ପ୍ରାଣ ଯୁବବର୍ଗ, ସଂସ୍କୃତ ଅଧ୍ୟୟନ କର, କିନ୍ତୁ ପାଶ୍ଚାତ୍ୟ ବିଜ୍ଞାନ ବି ପଢ଼ । ନିର୍ଭୁଲ ଭାବରେ ପଢ଼ । ସମୟ ଆସିବ ଯେତେବେଳେ ତୁମେ ଆମର ଗୌରବମୟ ଇତିହାସକୁ ବିଜ୍ଞାନ ଉପରେ ଆଧାରିତ କରି ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରିପାରିବ । ବର୍ତ୍ତମାନ ଭାରତୀୟ ଇତିହାସ ବିଶୃଙ୍ଖଳିତ । ହଁ ସମୟାନୁକ୍ରମିକ ସଠିକତା ଭାବରେ ରଚିତ ହୋଇ ନାହିଁ । ଆମ ରାଷ୍ଟ୍ରର ଇତିହାସ ଇଂରାଜୀମାନଙ୍କ ଦ୍ୱାରା ରଚିତ, ସେମାନେ ଆମର ଦୋଷ ଦୁର୍ବଳତା ଓ ପତନ

Digitized by srujanika@gmail.com

କେବଳ ଲୋକ ଗୋଚରକୁ ଆଣିଛନ୍ତି, ଯଦ୍ୱାରା ଆମ ମନ ଦୁର୍ବଳ ହୋଇଯାଇଛି । ଯେଉଁ ବିଦେଶୀ ଆମ ରାଷ୍ଟ୍ରର ଧର୍ମ, ସଂସ୍କୃତି, ଦର୍ଶନ, ପରମ୍ପରା ଓ ଆଚରଣ ଅଳ୍ପ ବୁଝିଛନ୍ତି, ସେମାନେ ନିରପେକ୍ଷ ହୋଇ ଆମର ଇତିହାସ କିପରି ରଚନା କରିପାରିବେ ? ଅନେକ ମିଥ୍ୟା, କଳ୍ପନା, ଧାରଣା, ଅବାସ୍ତବ ବ୍ୟାଖ୍ୟା ସେଥିରେ ପୂରାଇ ଦେଇଛନ୍ତି । ତାହା ସତ୍ତ୍ୱେବି ପ୍ରାଚୀନ ଇତିହାସରେ ଗବେଷଣା କରିବାର ପଥ ବି ସେମାନେ ଆମକୁ ଶିଖାଇଛନ୍ତି । ବେଦ, ବେଦାନ୍ତ, ଉପନିଷଦ ଓ ପୁରାଣସମୂହକୁ ନିର୍ଭୁଲ ଭାବେ ଅଧ୍ୟୟନ କରି, ସେଗୁଡ଼ିକର ସଠିକ ବ୍ୟାଖ୍ୟା କରି ଇତିହାସ ରଚନା କର ଯାହା କୋଟି କୋଟି ମାନବକୁ ସକାରାତ୍ମକ ଦିଗଦର୍ଶନ ପ୍ରଦାନ କରିବ । ଭାରତୀୟ ସ୍ୱୟଂ ଭାରତର ଇତିହାସ ରଚନା କରିବା ଆବଶ୍ୟକ ।

ଆଲୱାରର ଯୁବ ସମ୍ପ୍ରଦାୟଙ୍କ ଉତ୍ସାହ ବିଶେଷ ଭାବେ ସ୍ୱାମୀଜୀଙ୍କୁ ଅନୁପ୍ରାଣିତ କରୁଥିଲା । ଭାରତବର୍ଷ ମହିମାମୟ ଆସନରେ ପୁନଃଉପବିଷ୍ଟ କରିବା ପାଇଁ ସ୍ୱାମୀଜୀଙ୍କର ଅଗ୍ନିବର୍ଷୀ ଆହ୍ୱାନ ଯୁବମାନସକୁ ପ୍ରଜ୍ୱଳିତ କରିଥିଲା । ସ୍ୱାମୀଜୀ ପରବର୍ତ୍ତୀ କାଳରେ (ଏପ୍ରିଲ ୩୦, ୧୮୯୧) ଆଲୱାରର ଗୋବିନ୍ଦ ସହାୟଙ୍କ ନିକଟକୁ ପତ୍ର ଲେଖିଥିଲେ - ତୁମେ ସଂସ୍କୃତ ଅଧ୍ୟୟନ କରୁଛ କି ? କେତେଦୂର ଅଗ୍ରସର ହୋଇଛ ? ମୁଁ ଭାବୁଛି ତୁମେ ପ୍ରଥମ ଖଣ୍ଡ ସମାପ୍ତ କରିସାରିଥିବ... ଶିବ ଆରାଧନା ମନୋଯୋଗ ସହକାରେ କରୁଛ ? ଯଦି କରୁନାହଁ, ଅବିଳମ୍ବେ କର । ପ୍ରଥମେ ଈଶ୍ୱରଙ୍କର ରାଜ୍ୟ ପ୍ରାପ୍ତି ପାଇଁ ପ୍ରୟାସ କର, ସବୁ ଭଲ ଜିନିଷ ଆପେ ଆପେ ଆସିଯିବ । ପ୍ରଥମେ ଈଶ୍ୱରଙ୍କଠାରେ ଶରଣାଗତ ହୁଅ, ତୁମେ ଯାହା ଚାହିଁବ ତାହା ନିଶ୍ଚୟ ମିଳିବ... ହେ ମୋର ବାଳକ ଗଣ, ସିଦ୍ଧାନ୍ତ ଓ ସୂତ୍ର ଭିତରେ ଧର୍ମ ରହେ ନାହିଁ, କିନ୍ତୁ ଅଭ୍ୟାସରେ ରହିଥାଏ । ନିଜେ ଭଲ ହେବା ଏବଂ ଭଲ କାର୍ଯ୍ୟ କରିବା ହିଁ ଧର୍ମର ସାରତତ୍ତ୍ୱ । ଯେଉଁମାନେ 'ହେ ଈଶ୍ୱର ହେ ଈଶ୍ୱର' କହି କ୍ରନ୍ଦନରତ, ସେମାନେ ଧର୍ମର ସାରତତ୍ତ୍ୱ ବୁଝିପାରିବେ ନାହିଁ । ହେ ଆଲୱାରର ଯୁବଗଣ, ତୁମେମାନେ ବହୁତ ଭଲ ପିଲା, ମୋର ଆଶା, ଆଗାମୀ ଭବିଷ୍ୟତରେ ତୁମମାନଙ୍କ ମଧ୍ୟରୁ ଅନେକ ଯୁବକଯୁବତୀ ସମାଜର ଅଳଙ୍କାର ସାଜିବେ ଏବଂ ରାଷ୍ଟ୍ରର ଗର୍ବ ହେବେ ।''

ଯୁବବର୍ଗଙ୍କ ପ୍ରତି ସ୍ୱାମୀଜୀଙ୍କର ଅଖଣ୍ଡ ବିଶ୍ୱାସ ରହିଥିଲା । ଯୁବକମାନଙ୍କୁ କିପରି ଶ୍ରଦ୍ଧା କରୁଥିଲେ ଆଲୱାରର ଏକ ଘଟଣାରୁ ତାହା ବେଶ୍ ବୁଝିହେବ । ସ୍ୱାମୀଜୀଙ୍କର ମୁଖନିଃସୃତ ବାଣୀ ଶୁଣିବାପାଇଁ ବହୁ ଲୋକ ତାଙ୍କ ନିକଟକୁ ଆସୁଥିଲେ । ସେମାନଙ୍କ ମଧ୍ୟରୁ ଥିଲେ ଜଣେ ବୃଦ୍ଧ । ପ୍ରତିଦିନ ସ୍ୱାମୀଜୀଙ୍କର ପ୍ରବଚନ ଶୁଣିବାପରେ ଏକଦା ହାତ ଯୋଡ଼ି କହୁଥିଲେ, ''ହେ ସ୍ୱାମୀଜୀ, ମୋ ପ୍ରତି ଦୟା କରନ୍ତୁ, ମୋତେ ପଥ ଦେଖାନ୍ତୁ ।'' ବୃଦ୍ଧଙ୍କର ଅନୁନୟ ଓ ବିନୟ ପ୍ରାର୍ଥନା ଶୁଣି ସ୍ୱାମୀଜୀ କେତେକ ନିର୍ଦ୍ଦିଷ୍ଟ ସାଧନ ଭଜନ ଅଭ୍ୟାସ କରିବାଲାଗି ତାଙ୍କୁ ପରାମର୍ଶ ଦେଲେ । କିନ୍ତୁ ଜନୈକ ବୃଦ୍ଧ ଅଭ୍ୟାସରେ ମନଯୋଗ ନ କରି ପୂର୍ବ ଭଳି ସ୍ୱାମୀଜୀଙ୍କୁ କୃପା ଭିକ୍ଷା ବାରମ୍ବାର କଲେ । ସ୍ୱାମୀଜୀ ବୃଦ୍ଧଙ୍କର ଅଦ୍ଭୁତ ଆଚରଣରେ ବିରକ୍ତ ହୋଇ, ତାଙ୍କ ପ୍ରତି ଆଦୌ ଦୃଷ୍ଟି ନିକ୍ଷେପ କଲେନାହିଁ । ଶେଷରେ ବୃଦ୍ଧ ହେଲେ କ୍ରୋଧାନ୍ୱିତ ଏବଂ ଆଉ ସେଠାକୁ ପୁନର୍ବାର ନ ଆସିବାର ଶପଥ ନେଇ ସ୍ଥାନ ତ୍ୟାଗ କଲେ । ବାଳକ ସମ ସ୍ୱାମୀଜୀ ଉଚ୍ଚ ସ୍ୱରରେ ହସି ଉଠିଲେ ।

Digitized by srujanika@gmail.com

ସ୍ୱାମୀଜୀଙ୍କର ଏତାଦୃଶ ବ୍ୟବହାର ପରିଲକ୍ଷିତ କରି ଜଣେ ଯୁବକ ପ୍ରଶ୍ନ କଲେ, ''ସ୍ୱାମୀଜୀ, ସେହି ବୃଦ୍ଧଙ୍କ ଉପରେ ଆପଣ ଏଭଳି କଠୋର କାହିଁକି ହେଲେ ?'' ସ୍ୱାମୀଜୀ ସସ୍ନେହେ କହିଲେ, ''ପୁତ୍ର, ମୁଁ ତୁମମାନଙ୍କ ନିମନ୍ତେ ମୋର ଜୀବନକୁ ବଳି ଦେବାପାଇଁ ପ୍ରସ୍ତୁତ, କାରଣ ତୁମେମାନେ ମୋର ଉପଦେଶ ଅନୁସରଣ କରିବା ପାଇଁ ସକ୍ଷମ । କିନ୍ତୁ ଉକ୍ତ ବୃଦ୍ଧ ଜୀବନର ଦଶଭାଗରୁ ନଅଭାଗ ଇନ୍ଦ୍ରିୟଲାଳସା ପଛରେ ଅପଚୟ କରି ସାରିଲେଣି; ସେ ବର୍ତ୍ତମାନ ଉଭୟ ଆଧାତ୍ମିକ ଓ ସାଂସାରିକ ଜୀବନ ପାଇଁ ଅନୁପଯୁକ୍ତ; ତଥାପି ସେ ଭାବୁଛନ୍ତି ଯେ ଏଭଳି ପଚାରିଉଚାରି ସହଜରେ ଭଗବାନଙ୍କର କରୁଣା ଲାଭ କରିପାରିବେ । ପରମସତ୍ୟ ଲାଭ କରିବାକୁ ହେଲେ ବ୍ୟକ୍ତିଗତ ସ୍ତରରେ ଅନେକ ପରିଶ୍ରମ କରିବାକୁ ପଡ଼ିବ । ପରିଶ୍ରମକାତର ମନୁଷ୍ୟ ପ୍ରତି ଈଶ୍ୱର କିପରି କୃପା କରିପାରିବେ ? ଯାହାପାଖରେ ବିରତ୍ୱ ନାହିଁ, ସେ କେବଳ ତମଗୁଣରେ ପରିପୂର୍ଣ୍ଣ । ଧନୁର୍ଦ୍ଧର ବୀର ଅର୍ଜୁନ, ମହାଭାରତ ପ୍ରାରମ୍ଭରେ ସାହସ ହରାଇବାରୁ ସେ ଦୁର୍ବଳତା ଓ କାପୁରୁଷତା ଜାଲରେ ପତିତ ହେଲେ, କିନ୍ତୁ ଯୋଗୀବର କୃଷ୍ଣ ଅର୍ଜୁନଙ୍କୁ ଅନାସକ୍ତ ଓ ପବିତ୍ର ହୃଦୟ, କର୍ମରେ ତ୍ୟାଗଭାବ ଓ ଆତ୍ମ ସମର୍ପଣ ଭଳି ସାତ୍ୱିକ ଗୁଣସମ୍ପନ୍ନ ହୋଇ ଯୁଦ୍ଧରେ ନିଜର କର୍ମ ସମ୍ପାଦନ କରିବାକୁ ଉତ୍ସାହିତ କରିଥିଲେ । ତୁମେ ଶକ୍ତିବାନ ହୁଅ, ମନୁଷ୍ୟ ହୁଅ । ପ୍ରତ୍ୟେକ ଦୁଷ୍ଟ ବ୍ୟକ୍ତି ଯିଏ ଶକ୍ତିଶାଳୀ ଓ ବୀର, ତାଙ୍କୁ ମୁଁ ସମ୍ମାନ କରେ, କାରଣ ତା'ର ବଳ ଦିନେ ତାଙ୍କୁ ଦୁଷ୍ଟାମି ତ୍ୟାଗ କରିବାଲାଗି ଉତ୍ସାହ ପ୍ରଦାନ କରିବ; ଏପରିକି ନିଜର ସ୍ୱାର୍ଥ ସାଧନ ପାଇଁ ଦିନେ ସମସ୍ତ କାର୍ଯ୍ୟକୁ ସେ ତ୍ୟାଗ କରିପାରିବ । ଘଟଣାକ୍ରମେ ସେ ଦିନେ ସତ୍ୟପାଖରେ ଉପନୀତ ହୋଇପାରିବ ।

ଐତିହାସିକ ଆଲୱାରରେ ସାତ ସପ୍ତାହ ରହଣି ପରେ, ସ୍ୱାମୀଜୀ ପୁନଶ୍ଚ ଭ୍ରମଣଶୀଳ ଜୀବନ ବିତାଇବା ନିମନ୍ତେ ବ୍ୟଗ୍ର ହୋଇଉଠିଲେ । **୧୮୯୧ ମାର୍ଚ୍ଚ ୨୮** ତାରିଖରେ ଶୁଭେଚ୍ଛୁ ଓ ଭକ୍ତଗଣଙ୍କଠାରୁ ବିଦାୟ ନେଇ ସ୍ୱାମୀଜୀ **ପାଣ୍ଡୁପୋଲ** ଅଭିମୁଖେ ଯାତ୍ରା କଲେ । ପାଣ୍ଡୁପୋଲସ୍ଥିତ ହନୁମାନ ମନ୍ଦିର ଦର୍ଶନ କଲେ । ସାଥୀରେ ଥିଲେ କେତେଜଣ ଅନୁଗାମୀ ଶିଷ୍ୟ । ହନୁମାନ ହିଁ ଶିବଙ୍କର ଅଂଶ । ସେ ଅଖଣ୍ଡ ବ୍ରହ୍ମଚାରୀ । ହନୁମାନଙ୍କ ଦର୍ଶନରେ ସ୍ୱାମୀଜୀ ହେଲେ ବିଭୋର । ସେଠାରେ ସେ ରାତ୍ରିଯାପନ କଲେ । ନୀଳକଣ୍ଠ ମହାଦେବଙ୍କୁ ଦର୍ଶନ କଲେ । ଅନୁଗାମୀ ଶିଷ୍ୟଗଣଙ୍କୁ ସମୁଦ୍ର ମନ୍ଥନ କାଳରେ ନୀଳକଣ୍ଠ ମହାଦେବଙ୍କ ବିଷପାନର ଉପାଖ୍ୟାନ ପଶ୍ଚାତରେ ରହିଥିବା ପ୍ରକୃତ ଭାବାର୍ଥ ଅତି ପ୍ରାଞ୍ଜଳ ଭାବରେ ବୁଝାଇ ସ୍ୱାମୀଜୀ କହିଲେ, - ବତ୍ସଗଣ ! ସାଂସାରିକ ଜୀବନ ଓ ଚେତନାର ଚାରିକାନ୍ଥ ଭିତରେ ରହି ମାୟାଚ୍ଛନ୍ନ ଜୀବନ ସମୁଦ୍ରକୁ ମଣିଷ ମନ୍ଥନ କରି ନିଜର ଇନ୍ଦ୍ରିୟ ସୁଖ ସନ୍ତୁଷ୍ଟକାରୀ ଧନରତ୍ନ ସଂଗ୍ରହ କରିଥାଏ ଏବଂ ସେଗୁଡ଼ିକୁ ନେଇ ଶାନ୍ତି ଓ ସନ୍ତୋଷରେ ବାସ କରିଥାଏ । କିନ୍ତୁ ମୃତ୍ୟୁ ରୂପକ ବିଷ ଏହି ମନ୍ଥନରୁ ବାହାରି ଶେଷରେ ତା'ର ସମସ୍ତ ସୁଖ ଓ ଆନନ୍ଦ ସମାପ୍ତ କରିଦିଏ । ଏଥିରୁ ରକ୍ଷା ପାଇବା ନିମନ୍ତେ ସେ ଯୋଗୀ, ମହାପୁରୁଷର ଦ୍ୱାରସ୍ଥ ହୁଏ । ସମୁଦ୍ର ମନ୍ଥନରୁ ଆବିର୍ଭୂତ ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଅଶ୍ୱ, ପୁଷ୍ପକ ବିମାନ, ରମ୍ଭା, ଉର୍ବଶୀ ଭଳି ଅନେକ ମନମୁଗ୍ଧକାରୀ ଅମୂଲ୍ୟ ବସ୍ତୁ ଦେବଗଣ ପରସ୍ପର ଭିତରେ ବାଣ୍ଟି ନେଉଥିବା ବେଳେ, ଦେବଦେବ ମହାଦେବ ସେସବୁ ପ୍ରତି ଦୃଷ୍ଟି ନ ଦେଇ ବିଭୋର ଥିଲେ ଅଷ୍ଟାଙ୍ଗ ଯୋଗ

Digitized by srujanika@gmail.com

ସାଧନାରେ । ସେହିଭଳି ସାଧାରଣ ମନୁଷ୍ୟ ସାଂସାରିକ ଭୋଗ୍ୟବସ୍ତୁର ଉପଭୋଗରେ ମଗ୍ନ ଥିବା ସମୟରେ ଯୋଗୀ ମହାପୁରୁଷଗଣ କାମିନୀ-କାଞ୍ଚନ ମୋହଠାରୁ ବହୁ ଉର୍ଦ୍ଧ୍ୱରେ ରୁହନ୍ତି ।

ସମୁଦ୍ର ମନ୍ଥନରୁ ବିଷ ନିର୍ଗତ ହେବାରୁ ଦେବଗଣ ତ୍ରାହି ତ୍ରାହି କରୁଣ ଆର୍ତ୍ତନାଦରେ କମ୍ପିତ କଲେ ଗଗନ ପବନ । ମହଦେବଙ୍କର ହୃଦୟ ହେଲା ବିଗଳିତ ସେମାନଙ୍କର କରୁଣ ବିଳାପରେ - ପାନ କଲେ ହଳାହଳ ବିଷ, ସାଜିଲେ ନୀଳକଣ୍ଠ । ସେହିଭଳି ସଂସାରୀ ଯେତେବେଳେ ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧିରେ ଆତଙ୍କିତ ହୋଇ ଯୋଗୀ ଓ ମହାପୁରୁଷଙ୍କ ନିକଟରେ ଦ୍ୱାରସ୍ଥ ହୁଏ, ସେତେବେଳେ ସେମାନେ ଦୟାପରବେଶ ହୋଇ ସବୁ ଦୁଃଖ ପାନ କରନ୍ତି, ସବୁ ଦୁଃଖ ନିର୍ଯ୍ୟାତନା ଏବଂ ଅଜ୍ଞାନର ମାୟାକୁ ପରାଭୂତ କରି ଦେଖାଇ ଦିଅନ୍ତି ଅମୃତର ପଥ । ସ୍ୱାମୀଜୀ ଉକ୍ତ ଉଦାହରଣ ମାଧ୍ୟମରେ ବୋଧହୁଏ ଭାରତବାସୀଙ୍କୁ ଆହ୍ୱାନ କରି କହୁଛନ୍ତି, "ହେ ଅମୃତର ସନ୍ତାନ ! ଉଠ, ଜାଗ, ତୁମର ଆର୍ତ୍ତନାଦ ଓ କରୁଣ ଚିତ୍କାର ମୁଁ ଶୁଣିପାରିଛି । ତୁମର ମାୟା ଆବରଣ ମୁଁ ଭାଙ୍ଗି ଚୁରମାର କରିଦେବି । ତୁମର ସମସ୍ତ ଦୁଃଖ, କଷ୍ଟ, ନିର୍ଯ୍ୟାତନା ପାନ କରି ମୁଁ ନୀଳକଣ୍ଠ ସାଜିବାକୁ ପ୍ରସ୍ତୁତ ଅଛି । ତୁମେମାନେ ଜୀବ ନୁହେଁ, ତୁମକୁ ମୁଁ ଶିବରେ ପରିଣତ କରିବି ।"

- ୫ -

*ମୁଁ ଜଣେ ସନ୍ୟାସୀ, ଆପଣଙ୍କର ସମସ୍ତ ସାମାଜିକ ପରମ୍ପରାଠାରୁ ମୁଁ ଉର୍ଦ୍ଧ୍ୱରେ । ଏପରିକି ମୁଁ ଜଣେ ମେହେନ୍ତର ସହ ଭୋଜନ କରିପାରିବି । ଯେଉଁ ଈଶ୍ୱର ଏହା ନିଷେଧ କରିଛନ୍ତି, ତାଙ୍କୁ ମୁଁ ଭୟ କରେନାହିଁ । ଯେଉଁ ଶାସ୍ତ୍ର ଏହାକୁ ମାନ୍ୟତା ପ୍ରଦାନ କରିଛି, ସେହି ଶାସ୍ତ୍ରକୁ ମୁଁ ଭୟ କରେ ନାହିଁ । କିନ୍ତୁ ଆପଣଙ୍କ ଭଳି ଲୋକ ଓ ଆପଣଙ୍କର ସମାଜକୁ ମୁଁ ଭୟକରେ । କାରଣ ଆପଣମାନଙ୍କର ଈଶ୍ୱର ଓ ଶାସ୍ତ୍ର ସମ୍ବନ୍ଧରେ ଜ୍ଞାନ ନାହିଁ । ସବୁ ସ୍ଥାନରେ ମୁଁ ବ୍ରହ୍ମଙ୍କର ଦର୍ଶନ କରୁଛି, ଏପରିକି କ୍ଷୁଦ୍ରତମ କୀଟ ଭିତରେ । ମୋ ପକ୍ଷରେ ଉଚ୍ଚ ଓ ନିଚ ଭଳି କିଛି ବି ନାହିଁ । ଶିବ ଶିବ ।*

ସ୍ରୋତଗାମୀ ଜଳ ଆଗକୁ ଆଗକୁ ମାଡ଼ିଯାଏ । ସନ୍ୟାସୀ ବି ତଦ୍ରୂପ । ସ୍ୱାମୀଜୀ ଟ୍ରେନ ଯୋଗେ ଜୟପୁରରେ ପହଞ୍ଚିଲେ । ଏଠାରେ ଜଣେ ବିଖ୍ୟାତ ବ୍ୟାକରଣବିତ୍ ପଣ୍ଡିତଙ୍କ ସହ ସାକ୍ଷାତ ହେଲା । ପଣ୍ଡିତଙ୍କ ନିକଟରୁ ସଂସ୍କୃତ ବ୍ୟାକରଣ ଓ ସୂତ୍ର ଶିକ୍ଷାଲାଭ କଲେ । ସ୍ୱାମୀଜୀଙ୍କର ସ୍ୱଳ୍ପଦିନ ଭିତରେ କଠିଣ ବ୍ୟାକରଣ ଓ ସୂତ୍ର ଉପରେ ପାରଙ୍ଗମତା ଲକ୍ଷ୍ୟକରି ପଣ୍ଡିତଜୀ ସ୍ତବ୍ଧ ହୋଇଗଲେ । କିନ୍ତୁ ସ୍ୱାମୀଜୀ ଏହି ପରିପ୍ରେକ୍ଷୀରେ କହିଥିଲେ, "ମନ ଯଦି ଉତ୍ସାହ ସହିତ କୌଣସି ଶିକ୍ଷାପ୍ରାପ୍ତ କରିବାକୁ ଚାହେଁ, ତାହା ନିଶ୍ଚିତ ଫଳପ୍ରଦ ହେବ - ଏପରିକି ପର୍ବତ ବି ଅଣୁରେ ପରିଣତ ହୋଇପାରିବ ।" ଇତ୍ୟବସରରେ ଜୟପୁର ରାଜ୍ୟର ସେନାଧ୍ୟକ୍ଷ ସର୍ଦ୍ଦାର ହରି ସିଂହଙ୍କ ସହ ସ୍ୱାମୀଜୀଙ୍କର ବନ୍ଧୁତ୍ୱ ଗଢ଼ି ଉଠିଲା । ସେ ଥିଲେ ଜଣେ ଅଦ୍ୱୈତବାଦୀ ଓ ଈଶ୍ୱରଙ୍କର

Digitized by srujanika@gmail.com

ସାକାର ରୂପ ଓ ମୂର୍ତ୍ତି ଉପାସନା ସେ ବିଶ୍ୱାସ କରୁ ନ ଥିଲେ । ସ୍ୱାମୀଜୀଙ୍କ ସହ ପ୍ରତିଦିନ ଘଣ୍ଟା ଘଣ୍ଟା ଆଧ୍ୟାତ୍ମିକ ଆଲୋଚନା ଅବଶ୍ୟ ତାଙ୍କର ଚେତନାକୁ ଦୀପ୍ତିମନ୍ତ କରୁଥିଲା, କିନ୍ତୁ ତାଙ୍କର ମୂର୍ତ୍ତିପୂଜା ବିରୋଧୀ ଧାରଣାକୁ ପ୍ରଭାବିତ କରିପାରୁ ନ ଥିଲା ।

ଏକ ସଂଧ୍ୟାରେ ରାଜପଥରେ ଉଭୟ ସ୍ୱାମୀଜୀ ଓ ସେନାଧ୍ୟକ୍ଷ ହରିସିଂହ ପଦଚାରଣ କରୁଥିଲେ । ସେହି ପଥରେ ଦଳେ ଭକ୍ତ ଶ୍ରୀକୃଷ୍ଣଙ୍କର ମୂର୍ତ୍ତି ବହନ କରି, ସୁଲଳିତ କଣ୍ଠରେ ଭଜନ କରି ଏକ ଶୋଭାଯାତ୍ରାରେ ପଥ ଅତିକ୍ରମ କରୁଥିଲେ । ସ୍ୱାମୀଜୀ ହଠାତ୍ ହରିସିଂହକୁ ସ୍ପର୍ଶ କରି କହିଉଠିଲେ, ''ସେନାଧ୍ୟକ୍ଷ ମହାଶୟ, ହେଇ ଦେଖନ୍ତୁ ଜୀବନ୍ତ ଈଶ୍ୱରଙ୍କୁ ।'' ହରିସିଂହ ଚାହିଁଲେ ଶ୍ରୀକୃଷ୍ଣଙ୍କର ଅପରୂପ ମୂର୍ତ୍ତିକୁ । ଆଖି ଲାଖିଗଲା ସେଇଠି । ପଲକ ପଡ଼ିଲା ନାହିଁ । ସ୍ଥିର ଓ ଅଚଳ ହୋଇ ହେଲେ ଦଣ୍ଡାୟମାନ । ଚକ୍ଷୁରୁ ଝରିଲା ଅଶ୍ରୁ, ଚିବୁକ ହେଲା ସିକ୍ତ, କିଯତ ସମୟାନ୍ତେ ପ୍ରକୃତିସ୍ଥ ହେଲେ ସେନାଧ୍ୟକ୍ଷ ଏବଂ ଭାବବିହ୍ୱଳିତ ସ୍ୱରରେ କହି ଉଠିଲେ, ''ସ୍ୱାମୀଜୀ, ଧନ୍ୟ ମୋର ଜୀବନ, ଆପଣଙ୍କର ସାମାନ୍ୟ ସ୍ପର୍ଶ ମୋତେ ନେଇଗଲା ଅଚିନ୍ତନୀୟ ରାଜ୍ୟକୁ । ଆପଣଙ୍କ ସହ ଘଣ୍ଟା ଘଣ୍ଟା ଆଲୋଚନା କରି ମୁଁ ଯାହା ବୁଝିପାରି ନ ଥିଲି, ଆଜି ଆପଣଙ୍କର ସ୍ପର୍ଶ ମାଧ୍ୟମରେ ମୁଁ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଭିତରେ ଦେଖିପାରିଲି ପରମ ସତ୍ୟ ପରମାତ୍ମାଙ୍କୁ । ଧନ୍ୟ ଧନ୍ୟ ମୋର ଜୀବନ ସ୍ୱାମୀଜୀ ।

ଆଧ୍ୟାତ୍ମିକ ଜ୍ଞାନରେ ସ୍ୱାମୀଜୀ ଯେପରି ଔଜ୍ଜ୍ୱଲ୍ୟମାନ, ସେପରି ବି ଥଟ୍ଟା ତାମସାରେ । କେତେକ ଆଧ୍ୟାତ୍ମିକ ଜିଜ୍ଞାସୁ ସ୍ୱାମୀଜୀଙ୍କ ସମ୍ମୁଖରେ ବସି ଏକଦା ଶୁଣୁଥିଲେ ସାଧନାର ପଥ । ଏହି ସମୟରେ ରାଜ୍ୟର ପ୍ରସିଦ୍ଧ ବିଦ୍ୱାନ୍ ପଣ୍ଡିତ **ସୁରଜ ନାରାୟଣ** ସ୍ୱାମୀଜୀଙ୍କୁ ସାକ୍ଷାତ କରିବା ପାଇଁ ସେଠାରେ ପହଞ୍ଚିଲେ । ଆଲୋଚନାରେ ଭାଗ ନେଇ ପଣ୍ଡିତଜୀ କହିଲେ, ''ସ୍ୱାମୀଜୀ, ମୁଁ ଜଣେ ବୈଦାନ୍ତିକ । ହିନ୍ଦୁଧର୍ମର ଅବତାରବାଦରେ ମୋର ବିଶ୍ୱାସ ନାହିଁ । ଆମେ ସମସ୍ତେ ବ୍ରହ୍ମ । ଜଣେ ଅବତାର ଓ ମୋ ଭିତରେ କ'ଣ ପ୍ରଭେଦ ରହିଛି ?'' ସ୍ୱାମୀଜୀ କହିଲେ, ''ହଁ, ଆପଣ ଯାହା କହିଲେ ସତ୍ୟ । ହିନ୍ଦୁମାନେ ମାଛ, କଇଁଚ, ବାର୍‌ହାଙ୍କୁ ଅବତାର ଭାବେ ପରିଗଣିତ କରନ୍ତି । ଆପଣ ବି କହୁଛନ୍ତି ଯେ ଆପଣ ଜଣେ ବି ଅବତାର । ତେବେ ଏହିମାନଙ୍କ ଭିତରୁ ଆପଣ କେଉଁଟା ହେବାପାଇଁ ଚାହୁଁଛନ୍ତି ?'' ସ୍ୱାମୀଜୀଙ୍କର ଏତାଦୃଶ ଉପହାସାତ୍ମକ ମନ୍ତବ୍ୟ ଶୁଣି ଉପସ୍ଥିତ ଜନତା ହସରେ ଫାଟିପଡ଼ିଲେ । ପଣ୍ଡିତ ବି ନୀରବ ହୋଇଗଲେ । କେବଳ ଶୁଷ୍କ ଜ୍ଞାନ ଓ ତର୍କରେ ମନୁଷ୍ୟ ଶାସ୍ତ୍ରର ନିହିତ ପରମଜ୍ଞାନକୁ ଉପଲବ୍ଧି କରିପାରିବ ନାହିଁ, ସେଥିପାଇଁ ସାଧନା ଓ ଅଭ୍ୟାସ ଆବଶ୍ୟକ, ଯାହା ଉକ୍ତ ପ୍ରଶ୍ନ ମାଧ୍ୟମରେ ସ୍ୱାମୀଜୀ ଉପସ୍ଥାପନ କଲେ ।

ଆଜମିର୍ ଅଭିମୁଖେ ସ୍ୱାମୀଜୀ ଯାତ୍ରା କଲେ । ହିନ୍ଦୁ ଓ ମୁସଲମାନଙ୍କର ସମନ୍ୱୟ ସ୍ଥଳୀ । ମୁସଲମାନ ସୁଫି ସନ୍ଥ ମୈନୁଦ୍ଦିନ୍ ଚିଷ୍ଟିଙ୍କର ସମାଧିସ୍ଥଳ ପରିଦର୍ଶନ କରି ବ୍ରହ୍ମା ମନ୍ଦିର ଦର୍ଶନ କଲେ । ସ୍ୱାମୀଜୀଙ୍କର ପରବର୍ତ୍ତୀ ଭ୍ରମଣ ସ୍ଥାନ ଥିଲା ମାଉଣ୍ଟ ଆବୁ । ଜୈନମାନଙ୍କର **ଦିଲଓ୍ୱାର** ମନ୍ଦିରର ସୌନ୍ଦର୍ଯ୍ୟ ଓ କାରୁକାର୍ଯ୍ୟ ତାଙ୍କୁ ମୁଗ୍ଧ କଲା । ମାଉଣ୍ଟ ଆବୁର ପାହାଡ଼ିଆ ଅଞ୍ଚଳରେ ଏକ ପରିତ୍ୟକ୍ତ ଗୁମ୍ଫା ଉପରେ ସ୍ୱାମୀଜୀଙ୍କର ଦୃଷ୍ଟି ପଡ଼ିଲା । ସେହି ଗୁମ୍ଫାଟିକୁ ନିଜର ବାସସ୍ଥଳୀ କରି ଆଧ୍ୟାତ୍ମିକ ସାଧନା ଆରମ୍ଭ କଲେ । ଦିନ ପରେ ଦିନ ବିତିଲା । ସଂସାର ପ୍ରତି

Digitized by srujanika@gmail.com

ଆଦୌ ଆକର୍ଷଣ ନ ଥିଲା । ଦୈବାତ୍ ସେହି ରାଜ୍ୟର ଯୁବରାଜଙ୍କର ଜଣେ ଓକିଲ ଗୁମ୍ଫା ନିକଟସ୍ଥ ପଥରେ ଚାଲି ଚାଲି ଯାଉଥିବାବେଳେ, ସ୍ୱାମୀଜୀଙ୍କ ଉପରେ ଦୃଷ୍ଟିପଡ଼ିଲା । ତାଙ୍କର ତେଜସ୍ୱୀ ରୂପରେ ଓକିଲ ସାହେବ ଆକର୍ଷିତ ହେଲେ ଏବଂ ଟାଣି ହୋଇଗଲେ ସ୍ୱାମୀଜୀଙ୍କ ନିକଟକୁ । ସ୍ୱାମୀଜୀଙ୍କ ସହ କିୟତ୍ ସମୟ ବାର୍ତ୍ତାଳାପ ଭରିଦେଲା ତାଙ୍କ ମନରେ ଶାନ୍ତି ଓ ସନ୍ତୋଷ । ସେ ପ୍ରତିଦିନ ଗୁମ୍ଫା ପାଖକୁ ଆସି ସ୍ୱାମୀଜୀଙ୍କ ଠାରୁ ଶୁଣିଲେ ଅନେକ ଆଧ୍ୟାତ୍ମିକ ଉପଦେଶନ । ଓକିଲ ସାହେବ ଶେଷରେ ସ୍ୱାମୀଜୀଙ୍କୁ ନିଜ ଗୃହକୁ ନିମନ୍ତ୍ରଣ କରି, ତାଙ୍କର ରହିବାର ସମସ୍ତ ସୁବିଧା ଖଞ୍ଜି ଦେଲେ । ବହୁ ରାଜା, ମନ୍ତ୍ରୀ, ରାଜ କର୍ମଚାରୀ, ଓକିଲ ସାହେବଙ୍କ ବାସଭବନକୁ ଆସି ସ୍ୱାମୀଜୀଙ୍କ ମୁଖନିଃସୃତ ବାଣୀ ଶୁଣି ଧନ୍ୟ ହେଲେ ।

କ୍ଷେତ୍ରୀ (ଖେତଡ଼ି) ରାଜାଙ୍କର ବ୍ୟକ୍ତିଗତ ସଚିବ ମୁନ୍‌ସି ଜଗମୋହନ ଲାଲ ଓକିଲ ସାହେବଙ୍କର ନିମନ୍ତ୍ରିତ କ୍ରମେ ତାଙ୍କ ବାସଭବନରେ ପହଞ୍ଚିଲେ । ଜଗମୋହନଙ୍କର ପ୍ରଥମ ପ୍ରଶ୍ନ ଥିଲା, "ସ୍ୱାମୀଜୀ, ଆପଣ ଜଣେ ହିନ୍ଦୁ । ମୁସଲମାନଙ୍କ ଘରେ ଆପଣ କିପରି ରହୁଛନ୍ତି ? ଏଠାରେ ଯବନଙ୍କ ସ୍ପର୍ଶରେ ଆପଣଙ୍କ ଖାଦ୍ୟ ଅପବିତ୍ର ହେଉଛି ।" ଏଭଳି ପ୍ରଶ୍ନ ସ୍ୱାମୀଜୀଙ୍କୁ ଖୁବ୍ ଉତ୍କ୍ଷିପ୍ତ କଲା ଏବଂ କ୍ରୋଧରେ ଜର୍ଜରିତ ହୋଇ ସ୍ୱାମୀଜୀ କହିଲେ, "ମହାଶୟ, ଆପଣ କହିବାର ଅର୍ଥ କ'ଣ ? ମୁଁ ଜଣେ ସନ୍ନ୍ୟାସୀ, ଆପଣଙ୍କର ସମସ୍ତ ସାମାଜିକ-ପରମ୍ପରାଠାରୁ ମୁଁ ଉର୍ଦ୍ଧ୍ୱରେ । ଏପରିକି ମୁଁ ଜଣେ ମେହେନ୍ତର ସହ ଭୋଜନ କରିପାରିବି । ଯେଉଁ ଈଶ୍ୱର ଏହା ନିଷେଧ କରିଛନ୍ତି, ତାଙ୍କୁ ମୁଁ ଭୟ କରେନାହିଁ । ଯେଉଁ ଶାସ୍ତ୍ର ଏହାକୁ ମାନ୍ୟତା ପ୍ରଦାନ କରିଛି, ସେହି ଶାସ୍ତ୍ରକୁ ମୁଁ ଭୟ କରେ ନାହିଁ । କିନ୍ତୁ ଆପଣଙ୍କ ଭଳି ଲୋକ ଓ ଆପଣଙ୍କର ସମାଜକୁ ମୁଁ ଭୟକରେ । କାରଣ ଆପଣମାନଙ୍କର ଈଶ୍ୱର ଓ ଶାସ୍ତ୍ର ସମ୍ବନ୍ଧରେ ଜ୍ଞାନ ନାହିଁ । ସବୁ ସ୍ଥାନରେ ମୁଁ ବ୍ରହ୍ମଙ୍କର ଦର୍ଶନ କରୁଛି, ଏପରିକି କ୍ଷୁଦ୍ରତମ କୀଟ ଭିତରେ । ମୋ ପକ୍ଷରେ ଉଚ୍ଚ ଓ ନିଚ୍ଚ ଭଳି କିଛି ବି ନାହିଁ । ଶିବ ଶିବ ।" ସ୍ୱାମୀଜୀଙ୍କର ଅଗ୍ନିବର୍ଷୀ ଉଚ୍ଚାରଣ ଜଗମୋହନଲାଲଙ୍କୁ ହତ୍‌ବାକ୍ କରିଦେଲା । ଯାହାହେଉ କ୍ଷେତ୍ରୀକୁ ଆସିବା ନିମନ୍ତେ ସେ ସ୍ୱାମୀଜୀଙ୍କୁ ସେଠାରେ ନିମନ୍ତ୍ରଣ କଲେ ।

କ୍ଷେତ୍ରୀର ମହାରାଜା ଅଜିତ୍ ସିଂହଙ୍କର ବାରମ୍ବାର ନିମନ୍ତ୍ରଣ ସ୍ୱାମୀଜୀଙ୍କୁ କ୍ଷେତ୍ରୀ ଯିବାପାଇଁ ଅବଶ କରିଦେଲା । ସ୍ୱାମୀଜୀ କ୍ଷେତ୍ରୀ ରାଜପ୍ରାସାଦରେ ଉପନୀତ ହେଲେ । ରାଜା ଅଜିତ୍ ସିଂହ କେବଳ ଆଧ୍ୟାତ୍ମିକ ବିଷୟବସ୍ତୁ ଉପରେ ସ୍ୱାମୀଜୀଙ୍କ ସହ ଆଲୋଚନା କଲେନାହିଁ, ପ୍ରଶାସନ ଓ ଆଇନ୍ ସମ୍ବନ୍ଧରେ ମଧ୍ୟ ଆଲୋଚନା କଲେ । ସ୍ୱାମୀଜୀଙ୍କର ଅଗାଧ ପାଣ୍ଡିତ୍ୟ ଓ ଉଚ୍ଚାଙ୍ଗ ଆଧ୍ୟାତ୍ମିକ ଜ୍ଞାନ ଦେଖି ରାଜା ବିମୁଗ୍ଧ ହୋଇପଡ଼ିଲେ । ତାଙ୍କର ପ୍ରତ୍ୟେକ ପ୍ରଶ୍ନର ସଠିକ୍ ଓ ନିର୍ଭୁଲ ଉତ୍ତର ସ୍ୱାମୀଜୀଙ୍କଠାରୁ ପାଉଥିଲେ । ସ୍ୱାମୀଜୀ ରାଜପ୍ରାସାଦରେ ରହୁଥିବାବେଳେ, ରାଜା ଅଜିତ୍ ସିଂହ ଏକାନ୍ତରେ ନିଜର ଦୁଃଖ ପ୍ରକାଶ କରି ଛଳଛଳ ଆଖିରେ କହିଲେ, "ସ୍ୱାମୀଜୀ ମହାରାଜ, ଏପର୍ଯ୍ୟନ୍ତ ଉତ୍ତରାଧିକାର ସୂତ୍ରରେ ମୋର ପୁତ୍ର ଲାଭ ହୋଇନାହିଁ । ଆପଣ ମୋତେ କୃପା କରନ୍ତୁ ଯେମିତି ମୋର ପୁତ୍ର ଜାତ ହେବ । ସ୍ୱାମୀଜୀ, ଆପଣ ଯଦି ମୋତେ ଆଶୀର୍ବାଦ କରିବେ, ନିଶ୍ଚୟ ମୁଁ ଏକ ପୁତ୍ରର ଜନକ ହୋଇପାରିବି ।" ରାଜାଙ୍କର ବିଶ୍ୱାସ ଓ ଆକୁଳ ପ୍ରାର୍ଥନା ସ୍ୱାମୀଜୀଙ୍କ ହୃଦୟକୁ ବିଗଳିତ କଲା । ସେ ସେହି ମୁହୂର୍ତ୍ତରେ ରାଜାଙ୍କୁ ଆଶୀର୍ବାଦ କଲେ ।

*Digitized by srujanika@gmail.com*

କ୍ଷେତ୍ରୀ ରାଜପ୍ରାସାଦର ଏକ ଅତିଥିଶାଳାରେ ରହୁଥିଲେ ସ୍ୱାମୀଜୀ । ଅଳ୍ପଦିନ ଭିତରେ ରାଜା ସ୍ୱାମୀଜୀଙ୍କର ଅନ୍ତରଙ୍ଗ ହୋଇଗଲେ ଯେ ସେ ସ୍ୱୟଂ ରାଜା ବୋଲି ତାଙ୍କର ଜ୍ଞାନ ରହିଲା ନାହିଁ । ଶ୍ରଦ୍ଧା ଓ ଭକ୍ତିରେ ରାଜା ଖାଲି ଉବୁଟୁବୁ ହେଲେ, ଏପରିକି ସ୍ୱାମୀଜୀଙ୍କ ଶୟନକକ୍ଷରେ ସ୍ୱୟଂ ଉପବେଶନ କରି ତାଙ୍କର ପାଦ ଘଷି ଦେଉଥିଲେ । ରାଜବାଟିରେ ଅବସ୍ଥାନ କରି, ରାଜାଙ୍କର ସ୍ନେହ ଓ ଶ୍ରଦ୍ଧାରେ ମଜ୍ଜି, ଦୁଃଖୀ, ଦରିଦ୍ରଙ୍କୁ ଯେ ସ୍ୱାମୀଜୀ ଭୁଲିଗଲେ ତାହା ନୁହେଁ, ବରଂ ସେହି ସମୟରେ ସେ ଗରିବ ଓ ନିଃସ୍ୱ ପ୍ରଜାଙ୍କ ଗୃହକୁ ଯାଇ ସେମାନଙ୍କ ଦ୍ୱାରା ପ୍ରଦତ୍ତ ଭୋଜନ ମହା ଆନନ୍ଦରେ ଗ୍ରହଣ କରୁଥିଲେ ଏବଂ ସେମାନଙ୍କ ସହ ବିଭିନ୍ନ ଧର୍ମାଲୋଚନାରେ ମଗ୍ନ ରହୁଥିଲେ । ଏକଦା ମହାରାଜ ରାତ୍ରିରେ ରାଜପ୍ରାସାଦରେ ନୃତ୍ୟ ଗୀତର ଆସର ଆୟୋଜନ କଲେ । ନିମନ୍ତ୍ରିତ ହୋଇଥିଲେ ଅନେକ ଅତିଥି । ଜଣେ ସୁଗାୟିକାଙ୍କୁ ଭଜନ ଗାନ କରିବାକୁ ଆମନ୍ତ୍ରଣ କରାଯାଇଥିଲା । ମହାରାଜା ସ୍ୱୟଂ ଆସି ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କଲେ । ଏତାଦୃଶ ନିମନ୍ତ୍ରଣ ସ୍ୱାମୀଜୀଙ୍କୁ ଭଲ ଲାଗିଲା ନାହିଁ । ପରମୁହୂର୍ତ୍ତରେ ସେ ମହାରାଜାଙ୍କ ନିକଟକୁ ସମ୍ବାଦ ପ୍ରେରଣ କଲେ - ମହାରାଜ, ମୁଁ ଜଣେ ସନ୍ୟାସୀ, ଏଭଳି ଇନ୍ଦ୍ରିୟୋଦ୍ଦିପକ ନୃତ୍ୟ ଗୀତ ଆସରରେ ମୁଁ ଯୋଗ ଦେଇପାରିବି ନାହିଁ, ମୋତେ କ୍ଷମା କରିବେ ।

ମହାରାଜ କେବଳ ଦୁଃଖିତ ହେଲେ ନାହିଁ, ବରଂ ଏହି ସମ୍ବାଦ ଶୁଣି ଖୋଦ୍ ଗାୟିକା ଦୁଃଖରେ ଭାଙ୍ଗିପଡ଼ିଲେ । ସେ ଭାବିଥିଲେ ଯେ ଜଣେ ମହାନ୍ ସନ୍ୟାସୀଙ୍କ ସମ୍ମୁଖରେ ଭଜନ ଗାନ କରି ନିଜକୁ କୃତାର୍ଥ ମଣିବେ । କିନ୍ତୁ ତାହା ହେଲା ନାହିଁ । ନିଜର ହୃଦୟର ବ୍ୟଥା ପ୍ରକାଶ କରି ସୁରଦାସଙ୍କର ଭକ୍ତିପୂର୍ଣ୍ଣ ଭଜନଟିଏ ଉଚ୍ଚ ସ୍ୱରରେ ଓ ସୁଲଳିତ କଣ୍ଠରେ ଗାନ କଲେ । ''ହେ ଈଶ୍ୱର, ମୋର ମନ୍ଦଗୁଣ ଦେଖନି, ତୁମର ନାଁ ସେଥିପାଇଁ ସମଦର୍ଶୀ । ମନ୍ଦିରସ୍ଥ ମୂର୍ତ୍ତିରେ ରହିଛି ଖଣ୍ଡିଏ ଲୁହା, କଂସେଇ ହାତରେ ବି ରହିଛି ଲୁହାର ଛୁରି । ଉଭୟ କିନ୍ତୁ ପରଶମଣି ସ୍ପର୍ଶରେ ସୁନା ପାଲଟିଯାଏ । ତେଣୁ ହେ ଈଶ୍ୱର, ମୋର ମନ୍ଦଗୁଣ ପ୍ରତି ନଜର ଦିଅନି ।''

- ୬ -

*ଆହାଃ... କି ସୁସ୍ୱାଦ ଭୋଜନ ! ଦେବ ଦେବ ଇନ୍ଦ୍ର ଅମୃତ ପାନ କରି ଏଭଳି ଆନନ୍ଦ ହୋଇ ନ ଥିବେ, ଆଜି ମୁଁ ଯେମିତି ମୋ ମୋଚି ଭାଇ ହସ୍ତରୁ ଭୋଜନ କରି ଆନନ୍ଦିତ ହୋଇଛି । ଆହାଃ... ଲକ୍ଷ ଲକ୍ଷ ପବିତ୍ର ହୃଦୟବାନ୍ ବ୍ୟକ୍ତି ଦାରିଦ୍ର୍ୟ କଷାଘାତରେ ଜର୍ଜରିତ ହୋଇ ବାସ କରୁଛନ୍ତି ଭଗ୍ନ କୁଟିରରେ ଏହି ଭାରତବର୍ଷରେ । ଅସ୍ପୃଶ୍ୟ କହି ସେମାନଙ୍କୁ ଆମେ ଘୃଣା କରୁଛେ । ସମାଜର ବଡ଼ପଣ୍ଡା ସାଜିଥିବା ଉଚ୍ଚ ଜାତି ଭିତରେ ଏଭଳି ହୃଦୟବାନ ବ୍ୟକ୍ତି ପାଇପାରିବେ କି ?*

ଗାୟିକାଙ୍କର ସୁଲଳିତ କଣ୍ଠସ୍ୱର ରାତ୍ରିର ନିସ୍ତବ୍ଧତାକୁ ଭଙ୍ଗକରି ଚତୁର୍ଦ୍ଦିଗରେ ବ୍ୟାପୃତ ହେଲା । ରାଜାପ୍ରସାଦ, ରାଜୋଦ୍ୟାନ, ରାଜପଥ, ଆକାଶ, ବୃକ୍ଷଲତା, ପଶୁପକ୍ଷୀ ସବୁକିଛି

Digitized by srujanika@gmail.com

ସୁଲଳିତ କଣ୍ଠସ୍ୱରରେ ଏକାକାର ହେଲେ । ସ୍ୱାମୀଜୀ କେମିତି ବା ଏଥିରୁ ଛାଡ଼ ପାଇବେ ? ତାଙ୍କର ମନ ସୁଲଳିତ ସଙ୍ଗୀତର ମୂର୍ଚ୍ଛନାରେ, ଗଭୀର ଭାବନାରେ ବୁଡ଼ିଗଲା । ଗାୟିକାଙ୍କର ଭଜନ ସ୍ୱାମୀଜୀଙ୍କୁ ଚେତାଇ ଦେଲା - ଏକଇ ବ୍ରହ୍ମ ସବୁରି ଭିତରେ କରୁଛନ୍ତି ଲୀଳା । ଯିଏ ସେଠାରେ, ସେ ମଧ୍ୟ ଏଠାରେ । ସ୍ୱାମୀଜୀ ଭାବିଲେ - ଗାୟିକାଙ୍କର ଭଜନ ଶୁଣିବାକୁ ଗଲିନାହିଁ, ବଡ଼ ଅପରାଧ କଲି । ଗାୟିକା ଭିତରେ ଲୀଳା କରୁଛନ୍ତି ବି ସେହି । ତେବେ ମୁଁ କାହିଁକି ପୁରୁଷ ଓ ନାରୀ ଭେଦଭାବ ଜାଲରେ ପଡ଼ିଗଲି ? ତତ୍‌କ୍ଷଣାତ୍ ତାଙ୍କର ଅନ୍ତରାତ୍ମା ଜ୍ଞାନାଲୋକିତ ହୋଇଉଠିଲା । ସେ ଉପଲବ୍ଧି କଲେ ସେହି ଏକ ଅଗ୍ନି ଭୁବନରେ ପ୍ରବିଷ୍ଟ ହୋଇ ଯେପରି ବାହ୍ୟବସ୍ତୁର ରୂପଭେଦରେ ବିଭିନ୍ନ ରୂପ ଧାରଣ କରେ, ସେପରି ଏକ ସର୍ବଭୂତାତ୍ମା ନାନା ବସ୍ତୁ ଭିତରେ ସେହି ସେହି ବସ୍ତୁ ରୂପ ଧାରଣ କରିଛନ୍ତି ଏବଂ ସମୁଦାୟ ବାହାରେ ବି ଅଛନ୍ତି । ଗାୟିକା ଓ ମୋ ଭିତରେ ସେହି ଏକ ବ୍ରହ୍ମ ।

ଗାୟିକାଙ୍କ ହୃଦୟସ୍ପର୍ଶୀ ସୁଲଳିତ କଣ୍ଠ ସ୍ୱରରେ ସେ ତନ୍ମୟ ହୋଇଗଲେ । ନିଜ କକ୍ଷରୁ ସଅଳ ପାଦରେ ସ୍ୱାମୀଜୀ ପହଞ୍ଚିଲେ ସଂଗୀତ ଆସର ସ୍ଥାନରେ । ସ୍ୱାମୀଜୀଙ୍କର ଉପସ୍ଥିତି ସମବେତ ଦର୍ଶକମଣ୍ଡଳୀକୁ କେବଳ ଉତ୍ସାହିତ କଲାନାହିଁ ବରଂ ଗାୟିକାଙ୍କ ହୃଦୟରେ ଉଠିଲା ଭକ୍ତିର ଊର୍ମିମାଳା । ଅଶ୍ରୁପୂର୍ଣ୍ଣ ନୟନରେ ହୃଦୟରୁ ଜଣାଇଲେ ଶତସହସ୍ର ପ୍ରଣାମ ।

ବାସ୍ତବିକ ଏକ ତୀକ୍ଷ୍ଣ ଛୁରୀରେ ରୂପାନ୍ତରିତ ହେବା ପୂର୍ବରୁ ଲୁହା ପଥରଟିକୁ ଅନେକ ସ୍ତର ଦେଇ ଗତି କରିବାକୁ ପଡ଼ିଥାଏ । କେତେବେଳେ ଅଗ୍ନିରେ ଆଉଟା ହୁଏତ, ପୁଣି କେତେବେଳେ ଲୌହସ୍ତମ୍ଭ ଉପରେ ଖୁବ୍ ପିଟାଯାଏ । ତଥାପି କାର୍ଯ୍ୟ ସରେ ନାହିଁ । କାଳେ କଳଙ୍କି ଲାଗିଯିବ । ମଝିରେ ମଝିରେ ଝାମା ପଥରରେ ଘଷି ଶାଣ ଦିଆଯାଏ । ମଣିଷର ମନଟା ଠିକ୍ ସେମିତି । ଅସଂଖ୍ୟ କୁସଂସ୍କାର ଛାପ ଦ୍ୱାରା ଆଚ୍ଛାଦିତ, ଏହି ଛାପରୁ ମୁକ୍ତି ମିଳିବା ଭାରି କଷ୍ଟ । ମନକୁ ସ୍ୱାଧୀନ ଓ ମୁକ୍ତ କରିବାକୁ ହେଲେ ନିଆଁରେ ଆଉଟେଇବାକୁ ପଡ଼େ । କେତେବେଳେ ତାକୁ ଖୁବ୍ ପ୍ରହାର କରିବାକୁ ପଡ଼େ । ସାଂସାରିକ ଛାପ ଏପରି ବହଳିଆ ଭାବେ ଲାଗିଯାଇଥାଏ ଯେ ଜ୍ଞାନାଗ୍ନିରେ ଆଉଟି ହେଇ ଏବଂ ବିବେକ-ବୈରାଗ୍ୟ ମୂଷଳ ଦ୍ୱାରା ପ୍ରହାର ଖାଇ ମନ ବେଳେ ବେଳେ ଛାପମୁକ୍ତ ହୁଏନାହିଁ । ଏହା ଜନ୍ମ ଜନ୍ମାନ୍ତରର ଛାପ । ବହୁ କଷ୍ଟରେ ଜ୍ଞାନାଗ୍ନିରେ ଦଗ୍ଧ ହୋଇ ତୀକ୍ଷ୍ଣ ହୁଏ । ତଥାପି ଛାପର ଟିକିଏ ଆଭାସ ରହିଯାଏ । ଆଭାସରୁ ସମ୍ପୂର୍ଣ୍ଣ ମୁକ୍ତ ହେବାକୁ ହେଲେ ମଝିରେ ମଝିରେ ମନକୁ ପଜେଇବାକୁ ପଡ଼େ । ପଜେଇବା ପ୍ରକ୍ରିୟା ଜୀବନସାରା ଜାରି ରଖିବାକୁ ହୁଏ । ନଚେତ କଳଙ୍କି ଲାଗିଯିବ ।

ସ୍ୱାମୀଜୀଙ୍କ ଭଳି ଜ୍ଞାନଦୀପ୍ତ ସନ୍ନ୍ୟାସୀ ଯା'ଙ୍କର କୁସଂସ୍କାର ଛାପ ନିମିଷକ ମଧ୍ୟରେ ଅବତାର ପୁରୁଷ ଶ୍ରୀରାମକୃଷ୍ଣ ପରମହଂସଙ୍କ ସ୍ପର୍ଶରେ ମନରୁ ଦୂରୀଭୂତ ହୋଇଥିଲା, ତଥାପି ସେ ମନକୁ ବିବେକ-ବୈରାଗ୍ୟ ରୂପକ ପଥରରେ ପଜାଉଥିଲେ, କାଳେ ନୂଆକରି ପୁଣି ଛାପ ଲାଖିଯିବ !

ରାଜସ୍ଥାନର ବିଭିନ୍ନ ସ୍ଥାନ ଭ୍ରମଣ କଲେ । ନିଆଁହୁଳାଟିଏ ଭଳି ଯେଉଁ ସ୍ଥାନକୁ ଯାଉଥିଲେ, ସେହି ସ୍ଥାନର ଯୁବସମ୍ପ୍ରଦାୟଙ୍କର ଯୁବମାନସକୁ ସେ ପ୍ରଜ୍ୱଳିତ କରୁଥିଲେ । ସେମାନଙ୍କର ଜାତିପ୍ରଥା, ଉଚ୍ଚନୀଚ ଭାବ, ଧର୍ମାନ୍ଧତା, କାପୁରୁଷତା, ହୀନମନ୍ୟତା ଭଳି କୁସଂସ୍କାରାଚ୍ଛନ୍ନ ମାନସିକତାକୁ

Digitized by srujanika@gmail.com

ଜାଳିପୋଡ଼ି ଦେଉଥିଲା ତାଙ୍କର ଅଗ୍ନିବର୍ଷୀ ବାଣୀ ଏବଂ ଭାରତବର୍ଷର ସନାତନ ଧର୍ମର ବୈଦାନ୍ତିକ ଚିନ୍ତାଧାରା ସେମାନଙ୍କ ଭିତରେ ଦୀପ୍ତିମନ୍ତ ହୋଇଉଠୁଥିଲା । ଏକଦା ସ୍ୱାମୀଜୀ ରାଜପୁତନାର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରବଚନ ଦେଉଥିଲେ । ତାଙ୍କର ପ୍ରବଚନ ଶୁଣିବା ପାଇଁ ପ୍ରତିଦିନ ଛୁଟୁଥିଲେ ଅସଂଖ୍ୟ ଜନତା । ସେଠାରେ କ୍ରମାଗତ ଭାବେ ତିନିଦିନ ଧରି ସେ ପ୍ରବଚନ ସଙ୍ଗେସଙ୍ଗେ ବିଭିନ୍ନ ପ୍ରଶ୍ନର ଉତ୍ତର ବି ଦେଉଥିଲେ । ଜନତାର ଭିଡ଼ କମିଗଲା ତୃତୀୟ ଦିନରେ । ସମସ୍ତେ ଚାଲିଗଲା ପରେ ଜଣେ ହରିଜନ ଶ୍ରୋତା ସ୍ୱାମୀଜୀଙ୍କ ପାଖକୁ ଆସି ବିନୀତ କଣ୍ଠରେ କହିଲେ, "ସ୍ୱାମୀଜୀ ! ତିନିଦିନ ହେଲା ମୁଁ ଲକ୍ଷ୍ୟକରୁଛି - ଆପଣ ଅନ୍ନ ସ୍ପର୍ଶ କରି ନାହାନ୍ତି, ପାଣି ମୁନ୍ଦେ ବି ପିଇ ନାହାନ୍ତି, ନିଶ୍ଚିତ ଭାବେ ଆପଣ କ୍ଳାନ୍ତ ଓ ଅବଶ ।"

ନିସ୍ୱ ଦରିଦ୍ର ହରିଜନର ସ୍ନେହୀ ନିବେଦନ ଓ ଦୟାର୍ଦ୍ର ହୃଦୟ ଦେଖି ସ୍ୱାମୀଜୀ ଭାବବିହ୍ୱଳିତ କଣ୍ଠରେ କହିଲେ, "ଭାଇ, ମୋତେ କିଛି ଖାଇବାକୁ ଦେଇପାରିବ ?" ସ୍ୱାମୀଜୀଙ୍କର ଆଗ୍ରହ ପରିଲକ୍ଷିତ କରି ଲୋକଟି କହିଲା, "ସ୍ୱାମୀଜୀ, ଆପଣଙ୍କୁ ଖୁଆଇବା ପାଇଁ ମୋର ହୃଦୟ ଆନନ୍ଦରେ ନାଚି ଉଠୁଛି, କିନ୍ତୁ ଜାତିରେ ମୁଁ ମୋଚି ଓ ଅସ୍ପୃଶ୍ୟ । ଆପଣଙ୍କୁ ଖୁଆଇଛି ବୋଲି ମହାରାଜା ଜାଣିଲେ ମୋତେ କଠୋର ଦଣ୍ଡ ଦେବେ । ମୁଁ ଆପଣଙ୍କୁ ଅଟା, ଡାଲି ସହ ରୋଷାଇ ଉପକରଣ ଯୋଗାଇ ଦେଉଛି, ଆପଣ ନିଜେ ରାନ୍ଧି ଖାଆନ୍ତୁ । ସ୍ୱାମୀଜୀ ଏତାଦୃଶ ନିଷ୍ଠୁର ବାସ୍ତବତା ଦେଖି ବିଚଳିତ ହୋଇଉଠିଲେ ଏବଂ ସାମାଜିକ ପାତରଅନ୍ତର ବିରୋଧରେ ସେ କ୍ରୋଧରେ ଜଳି ଉଠିଲେ ।

"ନା... ନା । ତୁମରି ହାତରୁ ମୁଁ ଖାଇବି । ଦରିଦ୍ର ନାରାୟଣର ହସ୍ତ ଆଜି ଖୁଆଇବ ଏହି ଗୃହତ୍ୟାଗୀ ସନ୍ନ୍ୟାସୀକୁ ।" ସ୍ୱାମୀଜୀ ଅଡ଼ି ବସିଲେ । ଅନନ୍ୟୋପାୟ ହୋଇ ମୋଚି ପ୍ରସ୍ତୁତ କଲେ ମୋଟା ରୋଟି ଓ ତରକାରି । ସ୍ୱାମୀଜୀ ରୋଟି ଓ ତରକାରୀ ପେଟପୂରା ଭୋଜନ କରି କହିଲେ, "ଆହାଃ... କି ସୁସ୍ୱାଦ ଭୋଜନ ! ଦେବ ଦେବ ଇନ୍ଦ୍ର ଅମୃତ ପାନ କରି ଏଭଳି ଆନନ୍ଦ ହୋଇ ନ ଥିବେ, ଆଜି ମୁଁ ଯେମିତି ମୋ ମୋଚି ଭାଇ ହସ୍ତରୁ ଭୋଜନ କରି ଆନନ୍ଦିତ ହୋଇଛି । ଆହାଃ... ଲକ୍ଷ ଲକ୍ଷ ପବିତ୍ର ହୃଦୟବାନ୍ ବ୍ୟକ୍ତି ଦାରିଦ୍ର୍ୟ କଷାଘାତରେ ଜର୍ଜରିତ ହୋଇ ବାସ କରୁଛନ୍ତି ଭଗ୍ନ କୁଟୀରରେ ଏହି ଭାରତବର୍ଷରେ । ଅସ୍ପୃଶ୍ୟ କହି ସେମାନଙ୍କୁ ଆମେ ଘୃଣା କରୁଛେ । ସମାଜର ବଡ଼ପଣ୍ଡା ସାଜିଥିବା ଉଚ୍ଚ ଜାତି ଭିତରେ ଏଭଳି ହୃଦୟବାନ ବ୍ୟକ୍ତି ପାଇପାରିବେ କି ? ଭାରତର ପ୍ରାଣ ଏହି ଅସ୍ପୃଶ୍ୟ, ଦୀନ, ଦରିଦ୍ର, କାଙ୍ଗାଳମାନଙ୍କ ଭିତରେ ତିଷ୍ଠି ରହିଛି । ମହାରାଜା ଜାଣିଲେ କଠୋର ଦଣ୍ଡ ଦେବେ ଭଳି ଭୟ ଯେପରି ଗ୍ରାସଛି ମୋଚିକୁ, ଠିକ୍ ସେପରି କୋଟି କୋଟି ଅସ୍ପୃଶ୍ୟ ମନରେ ରହିଛି ଉଚ୍ଚ ଜାତି ପ୍ରତି ଭୟ । 'ଶିବ ଜ୍ଞାନେ ଜୀବ ସେବା'ର ମହାମନ୍ତ୍ରକୁ ରାଜା, ମହାରାଜା, ଜମିଦାର, ସାମନ୍ତ ଓ ଉଚ୍ଚବର୍ଗଙ୍କ ପାଖରେ ପହଞ୍ଚାଇବାକୁ ହେବ, ସେମାନେ ବୁଝିଲେ ହୁଏତ ଯୁଗ ଯୁଗ ଧରି ଜାତିପ୍ରଥାର ଅବସାନ ପ୍ରକ୍ରିୟା ଆରମ୍ଭ ହେବ ।

ସ୍ୱାମୀଜୀ ପରବର୍ତ୍ତୀକାଳରେ ଉକ୍ତ ମୋଚିର ବଦାନ୍ୟତା ସମ୍ବନ୍ଧରେ କ୍ଷେତ୍ରୀ ମହାରାଜାଙ୍କୁ କହି, ତାଙ୍କର ଆର୍ଥିକ ଉନ୍ନତି କରାଇବାର ବ୍ୟବସ୍ଥା କରିଥିଲେ ।



Digitized by srujanika@gmail.com

॥ ପନ୍ଦର ॥

# ପଶ୍ଚିମ ଭାରତର ଅହମ୍ମଦାବାଦ, ଜୁନାଗଡ଼, ପ୍ରଭାସ କ୍ଷେତ୍ରାଦି ସ୍ଥାନ ପରିଭ୍ରମଣ - ବହୁ ବାଧାବିଘ୍ନ ସତ୍ତ୍ୱେ କପର୍ଦ୍ଦକଶୂନ୍ୟ ସନ୍ନ୍ୟାସୀଙ୍କ ପାଦ ଅବଶ ହେଉ ନ ଥିଲା

ରାଜସ୍ଥାନ ଭ୍ରମଣଉତ୍ତାରୁ ସ୍ୱାମୀଜୀ ପଶ୍ଚିମ ଭାରତର ପ୍ରସିଦ୍ଧ ସ୍ଥାନ ଅହମ୍ମଦାବାଦରେ ପହଞ୍ଚିଲେ । ଜୈନ ମନ୍ଦିରଗୁଡ଼ିକ ପ୍ରତି ଆକୃଷ୍ଟ ହୋଇ ଜୈନଧର୍ମର ସାରତତ୍ତ୍ୱ ବହୁ ଜୈନ ବିଦ୍ୱାନଙ୍କଠାରୁ ଶିଖିଲେ । ମୁସଲମାନ, ହିନ୍ଦୁ ଓ ଜୈନ ସମ୍ପ୍ରଦାୟର ବହୁ ବ୍ୟକ୍ତି ସ୍ୱାମୀଜୀଙ୍କଠାରୁ ବେଦାନ୍ତର ଅମୃତଗାଥା ଶ୍ରବଣ କରି ଉତ୍ସାହିତ ହେଲେ । ତତ୍‌ପଶ୍ଚାତେ ସ୍ୱାମୀଜୀ ୱାଧୱାନ ସହରରେ ପଦଚାରଣ କରି ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗଣ କରି ନିଜର କ୍ଷୁଧା ନିବାରଣ କଲେ ଏବଂ ଯେଉଁଠି ଯେମିତି ସୁବିଧା ମିଳୁଥିଲା, ସେଠାରେ ସେ ଶୟନ କରୁଥିଲେ ।

ଅଳ୍ପ ଦୂରରେ ଅବସ୍ଥିତ ଲିମ୍ବଡ଼ି ସହରରେ ବିଭିନ୍ନ ସ୍ଥାନ ଭ୍ରମଣ କରୁଥିବା ସମୟରେ ସେ ଜାଣିବାକୁ ପାଇଲେ ଯେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ କେତେକ ସାଧୁ ବାସ କରୁଛନ୍ତି । ଖାଦ୍ୟ ଓ ରହିବାର ସୁବିଧା ମିଳିବା ଆଶାରେ ସ୍ୱାମୀଜୀ ସେଠାରେ ପହଞ୍ଚିଲେ । ସ୍ଥାନଟି ଖୁବ୍ ନିର୍ଜନ । ସେଠିକାର ସାଧୁମାନେ ସ୍ୱାମୀଜୀଙ୍କୁ ସ୍ୱାଗତ କଲେ ଏବଂ ସେମାନଙ୍କ ଗହଣରେ କିଛିଦିନ ରହିବାକୁ ଅନୁରୋଧ କଲେ । ପଦଯାତ୍ରାରେ ଅତ୍ୟନ୍ତ କ୍ଳାନ୍ତ ଓ କ୍ଷୁଧିତ ହେଇଥିବାରୁ ସେମାନଙ୍କ ଆମନ୍ତ୍ରଣ ରକ୍ଷାକରି ସ୍ୱାମୀଜୀ ସେଠାରେ ଅବସ୍ଥାନ କଲେ । କିଛିଦିନ ରହିବା ଅନ୍ତେ ସ୍ୱାମୀଜୀ ସ୍ଥାନଟିର ରହସ୍ୟ ଓ ସାଧୁମାନଙ୍କର ଚରିତ୍ର ସମ୍ବନ୍ଧରେ ଅବଗତ ହୋଇ ଅତି ଭୟଭୀତ ହୋଇପଡ଼ିଲେ । ସାଧୁମାନେ ଥିଲେ ପତିତୋନ୍ମୁଖ ଯୌନ ପୂଜକ । ଯେଉଁ କୋଠରିରେ ସେ ରହୁଥିଲେ, ସେହି କୋଠରିର ସଂଲଗ୍ନ କୋଠରିରୁ ପୁରୁଷ ଓ ନାରୀମାନଙ୍କର ତାନ୍ତ୍ରିକ ମନ୍ତ୍ର ଉଚ୍ଚାରଣ ଓ ପ୍ରାର୍ଥନା ଶୁଣିବାକୁ ପାଇଲେ ।

ସେଠାରୁ ପଳାଇଯିବାକୁ ସେ ଉଦ୍ୟତ ହେଲେ । କିନ୍ତୁ କୋଠରିର ଦ୍ୱାରପଟ୍ଟ ତାଲା ପଡ଼ିଥିଲା ଏବଂ ଜଣେ ଜଗୁଆଳି ବସି ରହିଥିଲା ଦୁଆର ମୁହଁରେ । ପରାକ୍ରମୀ ସନ୍ନ୍ୟାସୀ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ମନ ଭିତରେ ସ୍ମରଣ କଲେ ଗୁରୁଦେବଙ୍କୁ । କିୟତ୍ ସମୟ ଅତିକ୍ରାନ୍ତେ ସେଠିକାର ସାଧୁ ସମ୍ପ୍ରଦାୟର ମୁଖ୍ୟ ପୂଜକ ସ୍ୱାମୀଜୀଙ୍କୁ ଡକାଇ ପଠାଇ କହିଲେ, "ସ୍ୱାମୀଜୀ, ତୁମେ ଜଣେ

Digitized by srujanika@gmail.com

ମହାନ୍ ସନ୍ନ୍ୟାସୀ ଏବଂ ତୁମର ରୂପ ତେଜସ୍ୱୀ । ଯାହା ଜଣାପଡୁଛି ତୁମେ ବହୁବର୍ଷ ହେଲା ବ୍ରହ୍ମଚର୍ଯ୍ୟ ପାଳନ କରି ସଫଳ ହୋଇପାରିଛ । ବର୍ତ୍ତମାନ ତୁମେ ତୁମର ବହୁବର୍ଷ ତପସ୍ୟାର ଫଳ ଆମକୁ ପ୍ରଦାନ କର । ସ୍ୱତନ୍ତ୍ର ସାଧନା ନିମନ୍ତେ ତୁମର ବ୍ରହ୍ମଚର୍ଯ୍ୟ ଆମେ ଭଙ୍ଗ କରିବୁ ଏବଂ ଲାଭ କରିବୁ ଏହି ସାଧନାରୁ ଉଚ୍ଚତମ ମାନସିକ ଶକ୍ତି ।''

ସ୍ୱାମୀଜୀ ଏତାଦୃଶ କିମ୍ଭୂତକିମାକାର ଜଘନ୍ୟ ଉପାସନାର ପଦ୍ଧତି ଶୁଣି ବିସ୍ମୟ କେବଳ ହେଲେନାହିଁ ବରଂ ଅଧୀର ଓ ବିଚଳିତ ହୋଇଉଠିଲେ । କିନ୍ତୁ ନିଜର ଉଦ୍‌ବେଗ ପ୍ରକାଶ ନ କରି କଥାଟାକୁ ଅତି ସରଳ ଭାବରେ ନେଲେ । ସେଠାରୁ ସେ ନିଜ କୋଠରିକୁ ପଳାଇ ଆସିଲେ, ତାଙ୍କର ଉପସ୍ଥିତି ବୁଦ୍ଧି ଅତି ଚମତ୍କାର । ଏଭଳି ଜଘନ୍ୟ ପରିସ୍ଥିତିରୁ ରକ୍ଷା ନିମନ୍ତେ ଉପାୟ ଚିନ୍ତା କଲେ । ଅବଶ୍ୟ ସେହି ଅଞ୍ଚଳରେ ତାଙ୍କର ଅନେକ ପ୍ରଶଂସକ ଭକ୍ତ ଥିଲେ । ସେମାନଙ୍କ ମଧ୍ୟରୁ ଏକ ବାଳକ ଭକ୍ତ ପ୍ରାୟତଃ ପ୍ରତିଦିନ ସ୍ୱାମୀଜୀଙ୍କୁ ଭେଟିବାକୁ ଆସୁଥିଲେ । ଦୈବାତ୍ ଉକ୍ତ ବାଳକ ସେଠାରେ ପହଞ୍ଚିଲେ । ସ୍ୱାମୀଜୀ ସମସ୍ତଙ୍କ ଅଲକ୍ଷ୍ୟରେ ଲିମ୍ବଡ଼ି ରାଜ୍ୟର ଯୁବରାଜ 'ଠାକୁର ସାହେବ'ଙ୍କ ନିକଟକୁ ସମସ୍ତ ଘଟଣା ଦର୍ଶାଇ ଖଣ୍ଡିଏ ପତ୍ର ପୂର୍ବରୁ ଲେଖିସାରିଥିଲେ । ଉକ୍ତ ପତ୍ରଟି ବାଳକକୁ ହସ୍ତାନ୍ତର କଲେ । କ୍ଷୀପ୍ର ପାଦରେ ବାଳକ ସେଠାରୁ ପ୍ରସ୍ଥାନ କଲେ ।

ଯୁବରାଜ ଠାକୁର ସାହେବ ଚିଠି ଖଣ୍ଡିକ ପାଇ ଅବିଳମ୍ବେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । ରାଜପ୍ରାସାଦର ଦଳେ ପ୍ରହରୀ ଅସ୍ତ୍ରଶସ୍ତ୍ର ସହିତ ବ୍ୟଭିଚାରୀ ସାଧୁମାନଙ୍କ କବଳରୁ ସ୍ୱାମୀଜୀଙ୍କୁ ଉଦ୍ଧାର ନିମନ୍ତେ ପଠାଇ ଦେଲେ । ଉଚିତ ସମୟରେ ଉଚିତ କାର୍ଯ୍ୟାନୁଷ୍ଠାନ ଯୋଗୁଁ ସ୍ୱାମୀଜୀ ମୁକ୍ତ ହୋଇ ଲିମ୍ବଡ଼ି ରାଜପ୍ରାସାଦକୁ ଫେରିଆସିଲେ । ଠାକୁର ସାହେବ **ଯଶୱନ୍ତ ସିଂହଙ୍କର** ଭକ୍ତିପୂର୍ଣ୍ଣ ଆତିଥ୍ୟ ଗ୍ରହଣ କରି, ସ୍ୱାମୀଜୀ କିଛିଦିନ ସେଠାରେ ରହିଲେ ଏବଂ ବେଦାନ୍ତର ମଧୁମୟ ବାଣୀ ପ୍ରଚାର କଲେ । ପୁରୀ ଗୋବର୍ଦ୍ଧନ ମଠର ଶଙ୍କରାଚାର୍ଯ୍ୟ ସେହି ସମୟରେ ସେଠାରେ ଅବସ୍ଥାନ କରୁଥିଲେ ଏବଂ ସ୍ୱାମୀଜୀଙ୍କର ବେଦାନ୍ତ ଦର୍ଶନ ଶ୍ରବଣ କରି ମୁଗ୍ଧ ହେଲେ ।

- ୧ -

*ଏହି ରାଜା, ମହାରାଜା, ସାମନ୍ତ, ଶିକ୍ଷିତ, ଜମିଦାର, ପଣ୍ଡିତଙ୍କ ଭଳି ଧନିକ ଶ୍ରେଣୀ ଯେଉଁମାନେ ଗରିବ ଓ ନିସ୍ୱ ପ୍ରତି ହେୟ ମନୋଭାବ ପ୍ରଦର୍ଶନ କରି ବିଳାସ ବ୍ୟସନରେ କାଳାତିପାତ କରୁଛନ୍ତି, ସେମାନଙ୍କୁ ସଚେତନ କରିବାଲାଗି ଚେଷ୍ଟା କଲେ, ଭାରତବର୍ଷର କୋଟି କୋଟି ଜନତା ସୁଖ ଓ ଶାନ୍ତିରେ ବାସ କରିପାରିବେ । ସେହି ଲକ୍ଷ୍ୟର ପୂର୍ତ୍ତି ନିମନ୍ତେ ମୁଁ ଜଣେ ସନ୍ନ୍ୟାସୀ ହୋଇ ବି ରାଜପ୍ରାସାଦରେ ରହିବାକୁ ବାଧ ହେଉଛି ।*

ଜୁନାଗଡ଼ ଅଭିମୁଖେ ଯାତ୍ରା ସମୟରେ ଭାବନଗର ଓ **ସିହର**ରେ ଅଳ୍ପଦିନ ପାଇଁ ରହିଥିଲେ । ଜୁନାଗଡ଼ରେ ଉପନୀତ ହୋଇ ରାଜ୍ୟର ଦିୱାନ **ହରିଦାସ ବିହାରୀଦାସ**

Digitized by srujanika@gmail.com

ଦେଶାଇଙ୍କର ଆତିଥ୍ୟ ଗ୍ରହଣ କଲେ । ବହୁ ଲୋକ ସ୍ୱାମୀଜୀଙ୍କର ସାନିଧ୍ୟ ଲାଭ କରି ଆଧ୍ୟାତ୍ମିକ ଜ୍ଞାନରେ ଦୀପ୍ତିମନ୍ତ ହେଲେ । ଏଠାରେ ସ୍ୱାମୀଜୀ ଯୀଶୁଖ୍ରୀଷ୍ଟଙ୍କ ସମ୍ବନ୍ଧରେ ଚମତ୍କାର ବ୍ୟାଖ୍ୟା କରି କହିଥିଲେ - ଯୀଶୁଖ୍ରୀଷ୍ଟଙ୍କର ପ୍ରଭାବ ପାଶ୍ଚାତ୍ୟ ଜଗତର ନୈତିକତାର ମୂଳଦୁଆକୁ ସୁଦୃଢ଼ କରିଥିଲା । ରାଫେଲଙ୍କର ଚିତ୍ର, ସେଣ୍ଟ ଫ୍ରାନ୍‌ସିସ୍ ଅଫ୍ ଆସିସ୍‌ଙ୍କର ଭକ୍ତି, ଗୋଥିକ କାଥେଡ୍ରାଲ୍ସ, କ୍ରୁସେଡ୍, ପାଶ୍ଚାତ୍ୟ ରାଜନୈତିକ ପଦ୍ଧତି, ଖ୍ରୀଷ୍ଟିଆନ ସମ୍ପ୍ରଦାୟର ଶୃଙ୍ଖଳା ଏବଂ ଧାର୍ମିକ ଜୀବନଧାରା ଭଳି ମଧ୍ୟଯୁଗୀୟ ଇୟୁରୋପର ମହାନତା ଯୀଶୁ ସନ୍ୟାସୀଙ୍କ ଉପଦେଶନ ଓ ବାଣୀ ଦ୍ୱାରା ପରସ୍ପର ଛନ୍ଦି ହୋଇଯାଇଥିଲେ । କିନ୍ତୁ ଭାରତବର୍ଷର ସନାତନ ଧର୍ମ ବିଶ୍ୱରେ ଅନନ୍ୟ, କାରଣ ସମଗ୍ର ବିଶ୍ୱର ଆଧ୍ୟାତ୍ମିକ ବିକାଶରେ ଏହା ସବୁ ଧର୍ମକୁ ପଥ ପ୍ରଦର୍ଶନ କରିଛି । ବର୍ତ୍ତମାନ ସମୟ ଆସିଛି, ଭାରତର ଆଧ୍ୟାତ୍ମିକ ଭଣ୍ଡାରକୁ ସମଗ୍ର ବିଶ୍ୱବାସୀଙ୍କ ଭିତରେ ପ୍ରଚାର ଓ ପ୍ରସାର କରି ବିଶ୍ୱରେ ସର୍ବଧର୍ମ ସମନ୍ୱୟ ପ୍ରତିଷ୍ଠା କରିବାକୁ ପଡ଼ିବ । ସେଥିପାଇଁ ଯୁବ ସମ୍ପ୍ରଦାୟର ତ୍ୟାଗ ଓ ସେବା ମନୋଭାବ ନିହାତି ଆବଶ୍ୟକ ।

ପଶ୍ଚିମ ଭାରତ ଭ୍ରମଣକାଳରେ ସ୍ୱାମୀଜୀ ଅଧିକାଂଶ ସମୟ ରାଜା, ମହାରାଜ ଓ ଦିୱାନମାନଙ୍କର ରାଜପ୍ରାସାଦ ଓ ବାସଭବନରେ ଅବସ୍ଥାନ କରୁଥିଲେ । ଜଣେ ଗୃହତ୍ୟାଗୀ କପର୍ଦ୍ଦକ ଶୂନ୍ୟ ସନ୍ୟାସୀଙ୍କର ଏତାଦୃଶ ରହଣିକୁ ବହୁଲୋକ କଠୋର ଭାଷାରେ ସମାଲୋଚନା କରିବାକୁ ପଶ୍ଚାତପଦ ହେଉ ନ ଥିଲେ । କେତେକ ଅନ୍ତରଙ୍ଗ ଅନୁଗାମୀ ସ୍ୱାମୀଜୀଙ୍କୁ ଏଥିପାଇଁ ପ୍ରଶ୍ନ କରିବାରୁ ସ୍ୱାମୀଜୀ ସ୍ପଷ୍ଟ କହିଥିଲେ, ''ମୁଁ ଜାଣିଶୁଣି ସେମାନଙ୍କ ଆତିଥ୍ୟ ଗ୍ରହଣ କରୁଛି । ପ୍ରକୃତ ସ୍ୱଧର୍ମଆଡ଼କୁ ସେମାନଙ୍କର ମନ ଆକର୍ଷଣ କରୁଛି । ସେମାନେ ଜାଗ୍ରତ ହେଲେ, କୋଟି କୋଟି ଦରିଦ୍ର, ନିସ୍ୱ, କାଙ୍ଗାଳ ପ୍ରଜାଙ୍କର ସେବା କରିବେ । ପ୍ରଜାର ରକ୍ଷକ ରାଜା । ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଭିନ୍ନ କଲ୍ୟାଣକାରୀ ଅନୁଷ୍ଠାନ ସେମାନେ ରାଜ୍ୟରେ ପ୍ରତିଷ୍ଠା କରିବେ । ବର୍ତ୍ତମାନର ପ୍ରଜା କେବଳ ଉପକୃତ ହେବେନାହିଁ, ବରଂ ଭବିଷ୍ୟତ ବଂଶଧର ସୁଖ ଓ ସମୃଦ୍ଧିରେ ବାସ କରିବା ନିମନ୍ତେ ସୁଯୋଗ ସୃଷ୍ଟି ହେବ । ସାମାଜିକ, ଅର୍ଥନୈତିକ, ପ୍ରଶାସନିକ ଓ ନୈତିକ ମୂଲ୍ୟବୋଧ ପ୍ରତି ଜନ ସଚେତନତା ବୃଦ୍ଧି ପାଇବ । ଏହି ରାଜା, ମହାରାଜା, ସାମନ୍ତ, ଶିକ୍ଷିତ, ଜମିଦାର, ପଣ୍ଡିତଙ୍କ ଭଳି ଧନୀକ ଶ୍ରେଣୀ ଯେଉଁମାନେ ଗରିବ ଓ ନିଃସ୍ୱ ପ୍ରତି ହେୟ ମନୋଭାବ ପ୍ରଦର୍ଶନ କରି ବିଳାସ ବ୍ୟସନରେ କାଳାତିପାତ କରୁଛନ୍ତି, ସେମାନଙ୍କୁ ସଚେତନ କରିବାଲାଗି ଚେଷ୍ଟା କଲେ, ଭାରତବର୍ଷର କୋଟି କୋଟି ଜନତା ସୁଖ ଓ ଶାନ୍ତିରେ ବାସ କରିପାରିବେ । ସେହି ଲକ୍ଷ୍ୟର ପୂର୍ତ୍ତି ନିମନ୍ତେ ମୁଁ ଜଣେ ସନ୍ୟାସୀ ହୋଇ ବି ରାଜପ୍ରାସାଦରେ ରହିବାକୁ ବାଧ୍ୟ ହେଉଛି ।

ଗୁଜରାଟର କୁଚ୍, ଭୁଜ୍, ପୋରବନ୍ଦର, ବିରବଳ, ପ୍ରଭାସ କ୍ଷେତ୍ର, ସୋମନାଥ ମନ୍ଦିର, ନଦିଆନ, ବରୋଦା ଏବଂ ମହାରାଷ୍ଟ୍ରର ପୁନା, କୋଲାପୁର ପ୍ରଭୃତି ସ୍ଥାନ ପରିଭ୍ରମଣ କରି ତତ୍‌କାଳୀନ ଭାରତର ଅବସ୍ଥା ନିଜ ଆଖିରେ ଦେଖିନେଲେ । ମହାରାଷ୍ଟ୍ର ଭ୍ରମଣ କାଳରେ, ସେ ଥରେ ପୁନାକୁ ଟ୍ରେନ୍ ଯୋଗେ ଯାତ୍ରା କରୁଥିବା ସମୟରେ, ତିନିଜଣ ମରାଠି ଯୁବକ ସନ୍ୟାସ ଧର୍ମ ସମ୍ବନ୍ଧରେ ଏକ ଜୀବନ୍ତ ଆଲୋଚନାରେ ମଗ୍ନଥିବାର ଦୃଶ୍ୟ ସ୍ୱାମୀଜୀଙ୍କୁ ବେଶ୍ ଆମୋଦିତ

Digitized by srujanika@gmail.com

କରିଥିଲା । ସେହି କମ୍ପାର୍ଟମେଣ୍ଟରେ ନୀରବରେ ବସି ସେମାନଙ୍କ ତର୍କର ଦିଗଗୁଡ଼ିକୁ ଅତ୍ୟନ୍ତ ଉତ୍ସାହ ସହିତ ଲକ୍ଷ୍ୟ କରୁଥିଲେ । ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କର ଯୁକ୍ତିଥିଲା - ପାଶ୍ଚାତ୍ୟ ଜୀବନନିର୍ବାହ ଶୈଳୀ ସର୍ବୋତ୍ତମ ଏବଂ ରାନାଡ଼େଙ୍କର ସମାଜ ସଂସ୍କାର ଭଳି ଅନ୍ୟାନ୍ୟ ସାମାଜିକ ସଂସ୍କାର ଭାରତ ପାଇଁ ଆବଶ୍ୟକ ଓ ସ୍ୱାଗତଯୋଗ୍ୟ । ଭାରତୀୟ ସଂସ୍କୃତିର ସନ୍ନ୍ୟାସ ମାର୍ଗ କେବଳ ଛଳନାରେ ପରିପୂର୍ଣ୍ଣ ନୁହେଁ ବରଂ ଅଯଥା ସମୟ ଅପଚୟ ଓ ନିଷ୍ଫଳ ଚେଷ୍ଟା । କିନ୍ତୁ ତୃତୀୟ ଜଣକ ସେମାନଙ୍କର ଯୁକ୍ତି ଖଣ୍ଡନ କରି ସନ୍ନ୍ୟାସୀ ସମ୍ପ୍ରଦାୟର ଆବଶ୍ୟକତା, ତ୍ୟାଗ, ସମର୍ପଣ ମନୋଭାବ ସହ ପୂଣ୍ୟ ଜୀବନଧାରା ଓ ଧାର୍ମିକ ଦିଗ୍‌ଦର୍ଶନ ସମ୍ପର୍କରେ ବଳିଷ୍ଠ ଯୁକ୍ତି ବାଢୁଥିଲେ । ସ୍ୱାମୀଜୀ ସେମାନଙ୍କର ଯୁକ୍ତି ଓ ପ୍ରତି-ଯୁକ୍ତି ଶୁଣିବା ପରେ ତୃତୀୟ ଯୁବକଙ୍କ ପକ୍ଷ ନେଇ ଆଲୋଚନାରେ ଭାଗନେଲେ । ସେ ଅତ୍ୟନ୍ତ ବିନମ୍ର ସହକାରେ ତିନିଜଣ ଯୁବକଙ୍କୁ କହିଲେ, ସନ୍ନ୍ୟାସୀ ଚତୁର୍ଦ୍ଦିଗ ଭ୍ରମଣକରି ଭାରତୀୟ ଉଚ୍ଚାଦର୍ଶକୁ ରାଷ୍ଟ୍ରର କୋଣ ଅନୁକୋଣରେ ପ୍ରଚାର ଓ ପ୍ରସାର କରନ୍ତି । ଏହି ସନ୍ନ୍ୟାସୀମାନେ ଭାରତୀୟ ସଂସ୍କୃତିର ମୂର୍ତ୍ତିମନ୍ତ ପ୍ରକାଶ ଏବଂ ଗୁରୁଶିଷ୍ୟ ପରମ୍ପରାର ମହାନତାକୁ ସେମାନେ ରାଷ୍ଟ୍ରର ଦୁର୍ଭାଗ୍ୟ ଓ ବିପଦ ସମୟରେ ଅକ୍ଷୁଣ୍ଣ ରଖିଥାନ୍ତି । ଅବଶ୍ୟ କେତେକ ସ୍ୱାର୍ଥନ୍ୱେଷୀ, ଛଳନାକାରୀ ଓ ଛଦ୍ମବେଶୀ ସନ୍ନ୍ୟାସୀ ଲାଗି ସନ୍ନ୍ୟାସ ଧର୍ମକୁ ସମ୍ପୂର୍ଣ୍ଣ ରୂପେ ନିନ୍ଦିତ କରିହେବ ନାହିଁ ।'' ସନ୍ନ୍ୟାସୀଙ୍କର ତେଜପୂର୍ଣ୍ଣ ବ୍ୟାଖ୍ୟା ଓ ଅନର୍ଗଳ ଇଂରାଜୀ ଉଚ୍ଚାରଣ ତିନିଜଣ ମରାଠି ଯୁବକଙ୍କୁ ପ୍ରଭାବିତ କଲା ।

ପୁନା ରେଳଷ୍ଟେସନରେ ଗାଡ଼ି ପହଞ୍ଚିବା ଉତ୍ତାରୁ, ତୃତୀୟ ଯୁବକ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କରି ନିଜ ଗୃହକୁ ପାଛୋଟି ନେଲେ । ଯୁବକଙ୍କର ବେଦ ଓ ଶାସ୍ତ୍ରରେ ଗଭୀର ପାଣ୍ଡିତ୍ୟ ଦେଖି ସେ ଅତୀବ ଆନନ୍ଦିତ ହେଲେ ଏବଂ ବେଦର ରହସ୍ୟ ତାଙ୍କ ସମ୍ମୁଖରେ ଉନ୍ମୋଚନ କଲେ । ସ୍ୱାମୀଜୀ ଏଠାରେ କିଛିଦିନ ଅବସ୍ଥାନକରି ଯୁବକଙ୍କୁ କହିଲେ, ''ବନ୍ଧୁ, ତୁମେ ଭାରତବର୍ଷର ରାଜନୈତିକ କ୍ଷେତ୍ରରେ ଜାତୀୟ ସଚେତନତା ଓ ଜାଗରଣ ସୃଷ୍ଟି କର ଏବଂ ମୁଁ ଧର୍ମ ମାଧ୍ୟମରେ ଜନତାଙ୍କ ମଧ୍ୟରେ ସୃଷ୍ଟି କରିବି ସଚେତନତା । ଏହି ଯୁବକ ସ୍ୱାମୀଜୀଙ୍କଠାରୁ ବୟସରେ ସାତବର୍ଷ ବଡ଼ ଥିଲେ । ତାଙ୍କର ନାଁ ବାଲ ଗଙ୍ଗାଧର ତିଳକ ଯିଏ କେବଳ ମହାରାଷ୍ଟ୍ରରେ ନୁହେଁ, ସମଗ୍ର ଭାରତବର୍ଷରେ ''ସ୍ୱରାଜ୍ୟ ମୋର ଜନ୍ମଗତ ଅଧିକାର''ର ସ୍ଲୋଗାନ ଦେଇ ଜନତାଙ୍କ ଭିତରେ ଜାଗରଣ ସୃଷ୍ଟି କରିଥିଲେ । ତିଳକ ଓ ସ୍ୱାମୀ ବିବେକାନନ୍ଦଙ୍କ ମଧ୍ୟରେ କଥୋପକଥନ ଭାରତବର୍ଷର ଉତ୍ଥାନ ଭିତରେ କେବଳ ସୀମିତ ନ ଥିଲା ବରଂ ଏହି ରାଷ୍ଟ୍ରଭକ୍ତଦ୍ୱୟଙ୍କର ବିଶାଳ ଦୃଷ୍ଟି ସମଗ୍ର ମାନବ ସମାଜର ମୁକ୍ତି ପାଇଁ ଉଦ୍ଦିଷ୍ଟ ଥିଲା । ଅବଶ୍ୟ ସ୍ୱାମୀ ବିବେକାନନ୍ଦ ତିଳକଙ୍କଠାରୁ ବିଦାୟ ନେବାପରେ, ସେମାନଙ୍କ ଭିତରେ ପୁନର୍ବାର ଇତିମଧ୍ୟରେ ସାକ୍ଷାତ ସମ୍ଭବ ହୋଇ ନ ଥିଲା, କିନ୍ତୁ ବାଲ ଗଙ୍ଗାଧର ତିଳକ ଏହି କର୍ମଯୋଗୀ ବିଦ୍ରୋହୀ ସନ୍ନ୍ୟାସୀଙ୍କର ପ୍ରଜ୍ୱଳିତ ଚିନ୍ତାଧାରାରେ ଅଗ୍ନିଭଳି ତେଜିୟାନ ହୋଇଥିଲେ । ଏଠାରେ ସ୍ମରଣଯୋଗ୍ୟ ଯେ ପରବର୍ତ୍ତୀ କାଳରେ କଲିକତାଠାରେ ଯେତେବେଳେ ଡିସେମ୍ବର, **୧୯୦୧**ରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହୋଇଥିଲା, ବାଳ ଗଙ୍ଗାଧର ତିଳକ ବେଲୁଡ଼ ମଠକୁ ଯାଇ ସ୍ୱାମୀ ବିବେକାନନ୍ଦଙ୍କୁ ପୁନର୍ବାର ସାକ୍ଷାତ କରିଥିଲେ ।

*Digitized by srujanika@gmail.com*

- ୨ -

*ଅତ୍ୟଧିକ କ୍ଲାନ୍ତ ଓ ଅବଶ ହୋଇ ସେ ଯେତେବେଳେ କୌଣସି ଏକ ସ୍ଥାନରେ ଲୋକଙ୍କଠାରୁ ରାତ୍ରିଯାପନ ନିମନ୍ତେ ଆଶ୍ରୟ ପାଇଁ ପ୍ରାର୍ଥନା କରିଛନ୍ତି ଲୋକେ ତାଙ୍କୁ "ସନ୍ୟାସୀ ଓ ଡକାୟତମାନଙ୍କୁ ଆମେ ଆଶ୍ରୟ ଦେଉନାହୁଁ" କହି ତଡ଼ି ଦେଇଛନ୍ତି । ଏହିସବୁ ଅପମାନସୂଚକ ଆଚରଣ ଭିତରେ ବି ସ୍ୱାମୀଜୀଙ୍କର ଚାଲିଚଳନ ଓ ଲୋକମାନଙ୍କ ସହ ମିଳାମିଶା ଉପରେ ବ୍ରିଟିଶ ସରକାର ବେଳେବେଳେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ଗୋଇନ୍ଦା ପୋଲିସମାନେ ତାଙ୍କୁ ଅନୁସରଣ କରୁଥିଲେ ।*

ଭାବନଗର ମହାରାଜାଙ୍କର ପରିଚୟପତ୍ର ନେଇ କୋଲ୍‌ହାପୁର ମହାରାଜଙ୍କୁ ସାକ୍ଷାତ କଲେ । ମହାରାଣୀ ସ୍ୱାମୀଜୀଙ୍କୁ ନୂତନ ଗୈରିକ ବସ୍ତ୍ର ପ୍ରଦାନ କରି ତାଙ୍କର ଶରଣାପନ୍ନ ହେଲେ । ଇତ୍ୟବସରରେ ସବ୍‌ଡିଭିଜନାଲ ଫରେଷ୍ଟ ଅଫିସର ହରିପଦ ମିତ୍ରଙ୍କ ସହ ସ୍ୱାମୀଜୀଙ୍କର ଅକ୍ଟୋବର **୧୮, ୧୮୯୨**ରେ ସାକ୍ଷାତ ହେଲା । ତାଙ୍କର ଗଭୀର ଜ୍ଞାନ ଲକ୍ଷ୍ୟ କରି ସେ ବିସ୍ମୟାଭୂତ ହୋଇପଡ଼ିଲେ, କେବଳ ଧାର୍ମିକ ଶାସ୍ତ୍ରରେ ତାଙ୍କର ଜ୍ଞାନ ସୀମିତ ନ ଥିଲା ବରଂ ସାହିତ୍ୟ, ଇତିହାସ ଓ ବିଜ୍ଞାନରୁ ବହୁବାକ୍ୟ ଉଦ୍ଧୃତ କରି ପ୍ରାଞ୍ଜଳ ଭାବରେ ବୁଝାଇ ପାରୁଥିଲେ । ତାଙ୍କର ଅସାଧାରଣ ସ୍ମୃତିଶକ୍ତି ସମ୍ବନ୍ଧରେ ହରିପଦ ବାବୁ ପ୍ରଶ୍ନ କରିବାରୁ ସ୍ୱାମୀଜୀ କହିଥିଲେ, "ଶରୀରର ଶକ୍ତି ନିୟନ୍ତ୍ରିତ ହେଲେ ମନର ଶକ୍ତି ଆବିର୍ଭୂତ ହୁଏ । ଶାରୀରିକ ଶକ୍ତି ସଞ୍ଚୟ କରିପାରିଲେ, ଏହା ମାନସିକ ଓ ଆଧ୍ୟାତ୍ମିକ ଶକ୍ତିରେ ପରିଣତ ହୁଏ । ବିଷୟବାସନାରେ ବୁଡିରହି ଏହି ଶକ୍ତିକୁ ଉପଭୋଗ ଓ ଇନ୍ଦ୍ରିୟ ଲାଳସାରେ ଅପଚୟ କଲେ, ମନର ଧାରଣକ୍ଷମ ଶକ୍ତି ଉଭେଇ ଯାଏ । ଯେଉଁ କାର୍ଯ୍ୟ ତୁମେ କରୁଛ, ସେହି କାର୍ଯ୍ୟରେ ତୁମର ସମଗ୍ର ମନ, ହୃଦୟ ଓ ଆତ୍ମାକୁ ନିୟୋଜିତ କର । ଦେଖିବ, ଅଖଣ୍ଡ ଶକ୍ତି ତୁମ ଭିତରେ ଜାଗ୍ରତ ହେବ । ଏକ ଧାର୍ମିକ ଜୀବନ ଅତିବାହିତ କର, ଉଚ୍ଚ ଚିନ୍ତାକର, ସର୍ବଦା ପ୍ରଫୁଲ୍ଲ ରୁହ । ଇନ୍ଦ୍ରିୟ ସୁଖରେ ମାତିଯାଅ ନାହିଁ, ଏହା ତୁମର ଶରୀରକୁ ଶେଷରେ କଷ୍ଟ ଦେବ, ଯେଉଁଥି ପାଇଁ ତୁମେ ଅନୁତାପ ଅଗ୍ନିରେ ଦଗଧିଭୂତ ହେବ । ହଁ, ମୃତ୍ୟୁ ବିଷୟରେ କେବେ ଚିନ୍ତା କରନାହିଁ । ତୁମ ଓ ମୋ ଭଳି ମନୁଷ୍ୟର ମୃତ୍ୟୁ ହେଲେ କିଛି ହେବନାହିଁ । ପୃଥିବୀ କ'ଣ ତା'ର ଅକ୍ଷ ଚାରିପଟେ ଆଉ ବୁଲିବ ନାହିଁ ?

ହରିପଦ ବାବୁ ସେତେବେଳେ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଏବଂ ମୋଟା ଅଙ୍କର ଦରମା ପାଉଥିଲେ । ବେଳେବେଳେ ସେ ତାଙ୍କର ଇଂରେଜ ଉଚ୍ଚ କର୍ମକର୍ତ୍ତାଙ୍କ ଦ୍ୱାରା ଅପମାନିତ ଓ ମୃଦୁ ଭର୍ତ୍ସିତ ହୋଇ କ୍ରୋଧରେ ଫାଟି ପଡୁଥିଲେ । ତାଙ୍କର ଏତାଦୃଶ ବିରକ୍ତିକର ଆଚରଣ ଦେଖି ସ୍ୱାମୀଜୀ କହିଲେ, "ଦେଖନ୍ତୁ ହରିପଦ ବାବୁ । ଆପଣ ଏହି ଚାକିରିଟି ଅର୍ଥ ଉପାର୍ଜନ ପାଇଁ ନିଜ ଇଚ୍ଛାରେ ଗ୍ରହଣ କରିଛନ୍ତି । ଆପଣ ଅଯଥାରେ ସେମାନଙ୍କର ଭର୍ତ୍ସନାକୁ ହୃଦୟଭିତରକୁ ନେଇ କାହିଁକି ମନ ଦୁଃଖ କରୁଛନ୍ତି ? ମନୁଷ୍ୟର ତ ଅନେକ ଦୁଃଖ ରହିଛି, ପୁଣି ଏହି ଛୋଟ ଛୋଟ ଘଟଣାକୁ ଚିନ୍ତା କରି, ଦୁଃଖର ପରିମାଣ ବୃଦ୍ଧିକରି କହୁଛନ୍ତି "ଓହୋଃ...

Digitized by srujanika@gmail.com

କିଭଳି ଦାସତ୍ୱରେ ମୁଁ ଛନ୍ଦି ହୋଇଯାଇଛି । ହଁ, ଆପଣଙ୍କୁ ତ କେହି ଏହି ଦାସତ୍ୱରେ ବାନ୍ଧି ନାହାନ୍ତି ? ଆପଣ ଚାକିରିରୁ ଇସ୍ତଫା ଦେଇ ମୁକ୍ତ ହୋଇଯାଆନ୍ତୁ ନା ? ଆପଣ କାହିଁକି ନିଜ ଉଚ୍ଚପଦସ୍ଥ ଅଧିକାରୀଙ୍କ ଉପରେ ଅକାରଣେ କ୍ରୋଧାନ୍ୱିତ ହେଉଛନ୍ତି ? ଆପଣଙ୍କ ଇସ୍ତଫାରେ ସେମାନେ କ'ଣ ଡରିଯିବେ ? ଶହଶହ ଯୁବକ ଚାକିରି ଅପେକ୍ଷାରେ ବସି ରହିଛନ୍ତି, ସେମାନେ ତୁମ ସ୍ଥାନରେ ପ୍ରବେଶ କରିବେ । ଆପଣ ସେସବୁ ଚିନ୍ତା ନ କରି କେବଳ ନିଜର କର୍ତ୍ତବ୍ୟ ଓ ଦାୟିତ୍ୱ ପ୍ରତି ଧ୍ୟାନ ଦିଅନ୍ତୁ । ନିଜେ ଭଲ ହୁଅନ୍ତୁ, ଦେଖିବେ ସମସ୍ତ ଜଗତ ମଧୁମୟ ହୋଇଉଠିବ ! ଅନ୍ୟମାନଙ୍କ ଭିତରେ କେବଳ ଭଲ ଦେଖନ୍ତୁ । କାହାରି ଦୋଷ ତ୍ରୁଟି ଦେଖନାହିଁ, ଆପଣ ଯାହାଙ୍କୁ ଘୃଣା କରନ୍ତି, ତାଙ୍କ ପ୍ରତି କରୁଣା ପ୍ରଦର୍ଶନ କରନ୍ତୁ, କିଛିଦିନ ଅନ୍ତେ ଆପଣ ଦେଖିବେ ଯେ ସେମାନେ ଆପଣଙ୍କର ଅତି ଆପଣାର ଲୋକ ହୋଇଯାଇଛନ୍ତି । ଆମ ମନର ଅବସ୍ଥା ଅନ୍ୟମାନଙ୍କ ଆଚରଣରେ କେବଳ ପ୍ରତିଫଳିତ ହୁଏ ।'' ହରିପଦବାବୁ ଏକଲୟରେ ମନ୍ତ୍ରମୁଗ୍ଧ ହୋଇ ସ୍ୱାମୀଜୀଙ୍କ ମୁଖନିଃସୃତ ବାଣୀ ଶୁଣି ଧନ୍ୟ ହେଲେ ।

ସେହିଭଳି ସ୍ୱାମୀଜୀଙ୍କର ଦେଶଭକ୍ତି ଦେଖି ହରିପଦବାବୁ ଏକଦା ବିସ୍ମିତ ହୋଇଥିଲେ । ଏକ ସଂଧ୍ୟାରେ ସ୍ୱାମୀଜୀ ସମ୍ବାଦପତ୍ର ପଢୁଥିବା ସମୟରେ କଲିକତାରେ ଜଣଙ୍କର ଅନାହାର ମୃତ୍ୟୁ ସମ୍ବାଦ ତାଙ୍କର ହୃଦୟକୁ ଅତିମାତ୍ରାରେ ବିଷାଦଗ୍ରସ୍ତ କରିଦେଲା । ହରିପଦ ବାବୁ ବିଷାଦର କାରଣ ସମ୍ବନ୍ଧରେ ପ୍ରଶ୍ନ କରିବାରୁ ସ୍ୱାମୀଜୀ ବ୍ୟର୍ଥଭରା କଣ୍ଠରେ ଉତ୍ତର ଦେଲେ, ''ଦେଖ ହରିପଦ ବାବୁ, ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକରେ ବହୁ ଦାତବ୍ୟ ଅନୁଷ୍ଠାନ ଓ ଅର୍ଥର ବ୍ୟବସ୍ଥା ରହିଥିବା ସତ୍ତ୍ୱେ, ସେଠାରେ ବି ସମାଜର ଅବହେଳା ଯୋଗୁଁ ଲୋକ ମୃତ୍ୟୁବରଣ କରୁଛନ୍ତି । କିନ୍ତୁ ଆମ ରାଷ୍ଟ୍ରରେ ଯେଉଁଠି ପୁଣ୍ୟ ଓ ଧର୍ମକୁ ସର୍ବଦା ଉଚ୍ଚ ଆସନରେ ରଖାଯାଇଛି, ସେଠାରେ ପ୍ରତ୍ୟେକ ଭିକାରୀକୁ ଅନ୍ତତ ପକ୍ଷେ ଗଣ୍ଡିଏ ଖାଇବାକୁ ମିଳିଥାଏ, ଯଦ୍ୱାରା ସେମାନେ ଅନାହାରରେ ମୃତ୍ୟୁବରଣ କରନ୍ତି ନାହିଁ । ହଁ ଦୁର୍ଭିକ୍ଷ ପରିସ୍ଥିତିରେ ଅବଶ୍ୟ ବହୁ ଲୋକ ପ୍ରାଣ ହରାନ୍ତି । କିନ୍ତୁ ଦୁର୍ଭିକ୍ଷ ବ୍ୟତୀତ କେହି ଜଣେ ଆମ ଦେଶରେ ଅନାହାରରେ ମରନ୍ତି ନାହିଁ ।'' ହରିପଦ ବାବୁଙ୍କୁ ବୋଧହୁଏ ସ୍ୱାମୀଜୀଙ୍କ ମନ୍ତବ୍ୟ ଭଲ ଲାଗିଲା ନାହିଁ, ସେ ହଠାତ୍ କହିଉଠିଲେ, ''ସ୍ୱାମୀଜୀ, ଭିକାରୀକୁ ମୁଠାଏ ଭିକ୍ଷା ଦେବା କ'ଣ ଅର୍ଥର ଅପବ୍ୟୟ ନୁହେଁ କି ? ଇଂରାଜୀ ଶିକ୍ଷା ମୋତେ ପ୍ରେରଣା ଦେଇଛି ଯେ ଏତାଦୃଶ ଭିକ୍ଷା ସେମାନଙ୍କର ଚରିତ୍ରକୁ ଅଧଃପତନ କରୁଛି ଏବଂ ଭିକ୍ଷା ଉପାର୍ଜିତ ଧନରାଶିକୁ ଗଞ୍ଜେଇ, ଅଫିମ ଭଳି ନିଶା ସେବନରେ ଖର୍ଚ୍ଚ କରୁଛନ୍ତି । ତାହା ପରିବର୍ତ୍ତେ, ସଂଗଠିତ ଦାତବ୍ୟ ଅନୁଷ୍ଠାନକୁ ଅର୍ଥ ଦାନ କରିବା ଶ୍ରେୟସ୍କର ।

ସ୍ୱାମୀଜୀ ତତ୍‌କ୍ଷଣାତ୍ କହିଉଠିଲେ, ''ଭିକାରି ଦାନ ଅର୍ଥରେ କ'ଣ କଲା, କ'ଣ କଲାନାହିଁ, ସେଥିପାଇଁ ଆପଣ ଏଭଳି ବ୍ୟସ୍ତ ଓ ଚିନ୍ତିତ ହେଉଛନ୍ତି କାହିଁକି ? ଆପଣଙ୍କ ଭଳି ବ୍ୟକ୍ତି ସେମାନଙ୍କୁ ଭିକ୍ଷା ଦେବା ଉଚିତ ଯଦ୍ୱାରା ଚୋରି ଓ ଡକାୟତି କାର୍ଯ୍ୟରୁ ସେମାନେ ନିବୃତ ରହିବେ । ମନେକରାଯାଉ ସେହି ଭିକାରି ଗଞ୍ଜେଇ ସେବନ କରି ସମସ୍ତ ଅର୍ଥ ଉଡ଼ାଇ ଦେଲା, ତା'ର କ୍ଷତି ହେବ, ଆପଣଙ୍କର ନୁହେଁ । କିନ୍ତୁ ଯଦି ଅଭାବ ଅନାଟନରେ ପଡ଼ି ଚୋରି ଓ ଡକାୟତି କଲା, ତେବେ ସମଗ୍ର ସମାଜ କ୍ଷତିଗ୍ରସ୍ତ ହେବ ।

Digitized by srujanika@gmail.com

ପରିଭ୍ରମଣ କାଳରେ ସ୍ୱାମୀଜୀ ବହୁ ବାଧାବିଘ୍ନ ଓ ଆତ୍ମ-ନିର୍ଯ୍ୟାତନାର ଦୁଃଖ ପ୍ରତି ମୁହୂର୍ତ୍ତରେ ସହନ କରୁଥିଲେ । ଘୋର ଅରଣ୍ୟର ନିର୍ଜନ ପଥୁରିଆ ରାସ୍ତାରେ, ଭୀଷଣ ଅନାହାରରେ, ଜନସମୁଦ୍ର ନଗରରେ, ନିର୍ଜନ ଗୁମ୍ଫାରେ, ରାଜପ୍ରାସାଦରେ, ଦରିଦ୍ର କୁଟୀରରେ, ମନ୍ଦିର ଓ ମଠରେ, କୃଷକର ପର୍ଣ୍ଣ କୁଟୀରରେ ଏବଂ ବୃକ୍ଷଛାୟାତଳେ ସେ କେତେ ଯେ ରଜନୀ ବିତାଇଛନ୍ତି ! ଟଙ୍କାଟିଏ ହାତପତାଇ ସେ କାହାକୁ ମାଗୁ ନ ଥିଲେ କିମ୍ବା କେହି ଉଦାରଚିତ୍ତ ବ୍ୟକ୍ତି ଯଦି ତାଙ୍କୁ ଟଙ୍କା ଦେଉଥିଲେ, ସଞ୍ଚୟ ଅର୍ଥରେ ସେ ଗ୍ରହଣ କରୁ ନ ଥିଲେ । ଭିକ୍ଷା ମାଗଣରୁ ଯେଉଁ ଖାଦ୍ୟ ମିଳୁଥିଲା, ସେଥିରେ ଭଲ ମନ୍ଦ ବିଚାର ନ କରି ପ୍ରସନ୍ନ ଚିତ୍ତରେ ସେବନ କରୁଥିଲେ, ଯା'ଫଳରେ ସେ ବହୁବାର ପେଟ ଯନ୍ତ୍ରଣାରେ କଳବଲ ବି ହେଉଥିଲେ । ଏକଦା ସ୍ୱାମୀଜୀ ଅତ୍ୟଧିକ ପଦଚାରଣ ଫଳରେ କ୍ଷୁଧିତ ହୋଇପଡ଼ିଲେ । ଜଣେ ଗରମ ଖାଦ୍ୟ ଓ ପ୍ରଚୁର ଲଙ୍କା ଦ୍ୱାରା ପ୍ରସ୍ତୁତ ବ୍ୟଞ୍ଜନ ସ୍ୱାମୀଜୀଙ୍କୁ ପରଷି ଦେଇଥିଲେ । କିନ୍ତୁ କ୍ଷୁଧିତାବସ୍ଥାରେ ସ୍ୱାମୀଜୀ ସିନା ଭୋଜନ କଲେ କିନ୍ତୁ ତାଙ୍କ ପାଟି ଓ ପେଟ ଏଭଳି ଜଳୁଥିଲାଯେ ସେ କିୟଦ୍‌ଦିବସ ବେଦନାଗ୍ରସ୍ତ ହୋଇପଡ଼ିଲେ । କେବଳ ଭୋଜନ ପରିପ୍ରେକ୍ଷୀରେ ନୁହେଁ ବରଂ ଆଶ୍ରୟ କ୍ଷେତ୍ରରେ ବି ଲୋକଙ୍କର ଘୃଣା କେତେକ ସ୍ଥାନରେ ସମ୍ମୁଖୀନ ହୋଇଛନ୍ତି । ଅତ୍ୟଧିକ କ୍ଳାନ୍ତ ଓ ଅବଶ ହୋଇ ସେ ଯେତେବେଳେ କୌଣସି ଏକ ସ୍ଥାନରେ ଲୋକଙ୍କଠାରୁ ରାତ୍ରିଯାପନ ନିମନ୍ତେ ଆଶ୍ରୟ ପାଇଁ ପ୍ରାର୍ଥନା କରିଛନ୍ତି ଲୋକେ ତାଙ୍କୁ ''ସନ୍ୟାସୀ ଓ ଡକାୟତମାନଙ୍କୁ ଆମେ ଆଶ୍ରୟ ଦେଉନାହୁଁ'' କହି ତଡ଼ି ଦେଇଛନ୍ତି । ଏହିସବୁ ଅପମାନସୂଚକ ଆଚରଣ ଭିତରେ ବି ସ୍ୱାମୀଜୀଙ୍କର ଚାଲିଚଳନ ଓ ଲୋକମାନଙ୍କ ସହ ମିଳାମିଶା ଉପରେ ବ୍ରିଟିଶ ସରକାର ବେଳେବେଳେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ଗୋଇନ୍ଦା ପୋଲିସମାନେ ତାଙ୍କୁ ଅନୁସରଣ କରୁଥିଲେ ।

- ୩ -

*''ଆହାଃ... ବାଘ ବି କ୍ଷୁଧାର୍ତ୍ତ, ମୁଁ ବି କ୍ଷୁଧିତ । ମୋର ଏହି ଶରୀର ସଂସାରର କୌଣସି କାର୍ଯ୍ୟରେ ଲାଗିଲା ନାହିଁ । ହୁଏତ ଏହି ଦେହଟା ବାଘର କ୍ଷୁଧା ନିବାରଣ କଲେ, ମୋ ଜୀବନ ଧନ୍ୟ ହେବ ।''*

ସ୍ୱାମୀଜୀଙ୍କର ଭାରତବର୍ଷକୁ ଜାଗ୍ରତ କରିବାର ଦୃଢ଼ ସଂକଳ୍ପ ଏହିସବୁ ଦୁଃଖ ଓ ଯାତନା କେବେ ବି ତାଙ୍କର ଅଗ୍ନିବର୍ଷୀ ମନକୁ ନିସ୍ତବ୍ଧ କରିପାରି ନ ଥିଲା । ସମାଜର ପ୍ରତ୍ୟେକ କୁସଂସ୍କାରକୁ ବିଲୁପ୍ତ କରିବା ପାଇଁ ତାଙ୍କ ମନ ନିରନ୍ତର ବିଦ୍ରୋହ ଅଗ୍ନିରେ ପ୍ରଜ୍ୱଳିତ ହେଉଥିଲା । ତଥାପି ସେ ଜଣେ ମଣିଷ । ବେଳେବେଳେ ସେ ବି ବୃଥା ଭାବନା ଓ ନୈରାଶ୍ୟରେ ବୁଡ଼ି ଯାଉଥିଲେ, ଯାହା ଗୋଟିଏ ଘଟଣାରୁ ବୁଝିହେବ : ସ୍ୱାମୀଜୀ ବୁଲୁଥିଲେ ପରିବ୍ରାଜକ ବେଶରେ ସମଗ୍ର ଭାରତବର୍ଷ । ଭିକମାଗି କ୍ଷୁଧା ନିବାରଣ କରୁଥିଲେ । ହଠାତ୍ ତାଙ୍କ ମନରେ ଏକ ଭାବନା ଜନ୍ମ ନେଲା - ସେ ଆଉ କାହାରିଠାରୁ ଭିକ୍ଷା ଗ୍ରହଣ କରିବେ ନାହିଁ । କାରଣ, ତାଙ୍କର ଭଗବତ ଦର୍ଶନ ହେଲା ନାହିଁ । ଦେହ ଧାରଣ କରି ଲାଭ କ'ଣ ? ଏତାଦୃଶ ବ୍ୟର୍ଥ ଚିନ୍ତାରେ ତାଙ୍କର ମନ କଳା

*Digitized by srujanika@gmail.com*

ପଡ଼ିଗଲା ଏବଂ ଆଗପଛ ବିଚାର ନ କରି ସେ ଏକ ଘନ ଅରଣ୍ୟ ମଧ୍ୟକୁ ପଳାୟନକଲେ । ଦିନସାରା ପଥଶ୍ରମ ଓ ଅନାହାର ଯୋଗୁଁ ସ୍ୱାମୀଜୀ ଅଧିକ ଦୁର୍ବଳ ହୋଇପଡ଼ିଥିଲେ । ଅନନ୍ୟୋପାୟ ହୋଇ ଗୋଟିଏ ବୃକ୍ଷ ମୂଳରେ ସେ ବସିପଡ଼ିଲେ । ରାତି ଘନେଇ ଆସିଲା । ସେ ଅତି ଦୁର୍ବଳ ଓ କ୍ଲାନ୍ତ । ବୃକ୍ଷ ମୂଳରେ ନିଜର ଦେହକୁ ଲୋଟାଇ ଦେଇ ଏବଂ ମନ ପରମେଶ୍ୱର ପରମାତ୍ମାଙ୍କ ନିକଟରେ ସମର୍ପଣକରି ନୀରବରେ ଶୂନ୍ୟ ଚକ୍ଷୁରେ ଚାହିଁ ରହିଲେ । ଠିକ୍ ଏହି ସମୟରେ ଗୋଟିଏ ବାଘ ତାଙ୍କ ଆଡ଼କୁ ଧୀରେ ଧୀରେ ଆଗେଇ ଆସୁଥିବାର ସେ ଦେଖିଲେ ।

କିୟତ୍ ମୁହୂର୍ତ୍ତ ଅତିକ୍ରାନ୍ତେ ମହାବଳ ବାଘ ଅଧିକ ଅଗ୍ରସର ନ ହୋଇ, କିଛି ଦୂରରେ ସ୍ୱାମୀଜୀଙ୍କୁ ଅପଲକ ନୟନରେ ଚାହିଁ ବସିରହିଲା । କିନ୍ତୁ ତା'ର ବଳିଷ୍ଠ ଲାଞ୍ଜକୁ ବ୍ୟାଘ୍ର ପ୍ରବୃତ୍ତି ଅନୁସାରେ ଭୂମିରେ ପିଟୁଥିଲା । ନିର୍ଜନ ଘୋର ଅରଣ୍ୟରେ ବାଘର ଅଚାନକ ଉପସ୍ଥିତି ସ୍ୱାମୀଜୀଙ୍କୁ ଅତ୍ୟନ୍ତ ଆନନ୍ଦିତ କଲା । ତାଙ୍କ ମୁଖରୁ ବାହାରିପଡ଼ିଲା - ''ଆହାଃ... ବାଘ ବି କ୍ଷୁଧାର୍ତ୍ତ, ମୁଁ ବି କ୍ଷୁଧିତ । ମୋର ଏହି ଶରୀର ସଂସାରର କୌଣସି କାର୍ଯ୍ୟରେ ଲାଗିଲା ନାହିଁ । ହୁଏତ ଏହି ଦେହଟା ବାଘର କ୍ଷୁଧା ନିବାରଣ କଲେ, ମୋ ଜୀବନ ଧନ୍ୟ ହେବ ।'' ସ୍ୱାମୀଜୀ ଧୀର, ନିଶ୍ଚଳ ଓ ଶାନ୍ତ ଦୃଷ୍ଟିରେ ବାଘକୁ ଚାହିଁ ରହିଲେ, କେତେବେଳେ ବାଘଟି ତାଙ୍କ ଉପରକୁ ଲମ୍ଫ ପ୍ରଦାନ କରିବ । କିଛି ସମୟପରେ ବାଘ ଧୀରେଧୀରେ ସେହି ସ୍ଥାନରୁ ପଛକୁ ପଳାୟନ କଲା । ଇତ୍ୟବସରରେ ଉଷାକାଳ ହେଲା ଉପସ୍ଥିତ ।

ସୂର୍ଯ୍ୟଙ୍କର ସୁନେଲି କିରଣ ବୃକ୍ଷରାଜି ଉପରେ ବିଚ୍ଛୁରିତ ହେବାରୁ ସ୍ୱାମୀଜୀ ନିଜ ଭିତରେ ଉପଲବ୍ଧି କଲେ ଏକ ଅପୂର୍ବ ଉନ୍ମାଦନା । ମନରୁ ସମସ୍ତ ବ୍ୟର୍ଥ ଭାବନା ଓ ନୈରାଶ୍ୟ ଦୂରିଭୂତ ହେଲା ଏବଂ ଜଗତର ଅଶେଷ କଲ୍ୟାଣ କରିବା ଲାଗି ନିଜ ଭିତରେ ସଞ୍ଚରିତ ହେଲା ଏକ ପ୍ରଚଣ୍ଡ ମନୋବଳ । ହୃଦୟରେ ଯନ୍ତ୍ରୀରୂପରେ ବିରାଜିତ ଶ୍ରୀରାମକୃଷ୍ଣ ପରମହଂସ । ସେ ଜାଣିଥିଲେ ନରେନ୍ଦ୍ର ଅଳ୍ପାୟୁ । ତଥାପି ତାଙ୍କ ସମ୍ମୁଖରେ ରହିଛି ଅସମାପ୍ତ କାର୍ଯ୍ୟ । ତାଙ୍କର ଅସମାପ୍ତ କାର୍ଯ୍ୟ ସମାପ୍ତ କରି ଜଗତର ଦୁଃଖ ମୋଚନ ପାଇଁ ସେ ନେଇ ଆସିଛନ୍ତି ଋଷିପ୍ରତିମ ନରେନ୍ଦ୍ରଙ୍କୁ ଏହି ଧରାଧାମକୁ । ଜୀବନରେ ଦୁଃଖ କ'ଣ ନରେନ୍ଦ୍ର ଜାଣି ନ ଥିଲେ । ବାଲ୍ୟକାଳରୁ ଯିଏ ଦୁଃଖର ସ୍ୱାଦ ଚାଖିନାହିଁ, ସେ ଅନ୍ୟର ଦୁଃଖ ବୁଝିବ କେମିତି ? ଅନ୍ୟର ଦୁଃଖ ଲାଘବ କେମିତି କରିବ ? ଦୁଃଖ, କଷ୍ଟ ଓ ବେଦନାର ସ୍ୱାଦ ଆସ୍ୱାଦନ କରାଇବା ନିମନ୍ତେ ନରେନ୍ଦ୍ରଙ୍କୁ ଠେଲିଦେଇଛନ୍ତି ଦାରିଦ୍ର୍ୟ ଭିତରକୁ, ଯନ୍ତ୍ରଣା ଭିତରକୁ, ଯାହାଫଳରେ ସେ ଭଲଭାବରେ ହୃଦୟଙ୍ଗମ ବର୍ତ୍ତମାନ କଲେଣି କ୍ଷୁଧାର ତୀବ୍ର ଜ୍ୱଳନ, ନୀଚ ଜାତିର ନିର୍ଯ୍ୟାତନା, ବନ୍ଧୁ ସ୍ୱଜନ ପରିତ୍ୟକ୍ତ ଜୀବନର କରୁଣ ସ୍ୱର, ଜମିଦାର, ସାହୁକାର ଓ ଧନୀକ ଶ୍ରେଣୀର ଶୋଷଣ ଓ ଅତ୍ୟାଚର, ଶିକ୍ଷିତ ବ୍ୟକ୍ତିଙ୍କର ଅହଂକାର ଓ ଗର୍ବ, ଧର୍ମାନ୍ଧଙ୍କର ଅନ୍ଧ ବିଶ୍ୱାସ ଓ ଧର୍ମୋନ୍ମାଦନା ଏବଂ ସର୍ବୋପରି ରାଜା ମହାରାଜାଙ୍କର ବିଳାସବ୍ୟସନ ଓ ଆମୋଦ ପ୍ରମୋଦ ଜୀବନନିର୍ବାହ ଓ ପରାଧୀନ ଭାରତବର୍ଷର କରୁଣ ବିଳାପ ।



Digitized by srujanika@gmail.com

## ।। ଷୋହଳ ।।

# ଭାରତବର୍ଷର ଶେଷ ଶିଳାଖଣ୍ଡ
# କନ୍ୟାକୁମାରୀରେ ସ୍ୱାମୀଜୀ

ପଶ୍ଚିମ ଭାରତ ଭ୍ରମଣାନ୍ତେ ସ୍ୱାମୀଜୀ ଦକ୍ଷିଣ ଭାରତ ମଇଶୁର ରାଜ୍ୟସ୍ଥ ବାଙ୍ଗାଲୋରରେ ପହଞ୍ଚିଲେ । ବାଙ୍ଗାଲୋର ମ୍ୟୁନିସ୍‌ପାଲ୍ ମେଡ଼ିକାଲ ଅଫିସର **ଡାକ୍ତର ପି. ପାଲପୁ** ସ୍ୱାମୀଜୀଙ୍କୁ ପ୍ରଥମେ ନିଜ ବାସଭବନକୁ ନିମନ୍ତ୍ରଣ କଲେ । କେରଳ ରାଜ୍ୟର ସେ ଜଣେ ଅଧିବାସୀ । **ଏଜ୍‌ହାଭା** ସମ୍ପ୍ରଦାୟର ସେ ଜଣେ ବ୍ୟକ୍ତି ହୋଇଥିବାରୁ ଉଚ୍ଚବର୍ଗ ହିନ୍ଦୁମାନଙ୍କ ଦ୍ୱାରା ସେ ବହୁ ଅପମାନ ଓ ଲାଞ୍ଛନାର ଶିକାର ହୋଇଥିଲେ । ଆବଶ୍ୟକ ଶିକ୍ଷା ପ୍ରାପ୍ତି କରିବାଉତ୍ତାରୁ ଅସ୍ପୃଶ୍ୟ ହୋଇଥିବା ଯୋଗୁଁ ସେ ତ୍ରାଭାଙ୍କୋର ରାଜ୍ୟରେ ଖଣ୍ଡିଏ ଚାକିରି ପାଇପାରିଲେ ନାହିଁ । କିନ୍ତୁ ପରବର୍ତ୍ତୀକାଳରେ ମଇଶୁର ରାଜ୍ୟରେ ସେ ଖଣ୍ଡିଏ ଚାକିରି ପାଇଲେ । ଡାକ୍ତର ପାଲ୍‌ପୁଙ୍କର ହୃଦୟସ୍ପର୍ଶୀ ଅତ୍ୟାଚାର କାହାଣୀ ଶୁଣି ସ୍ୱାମୀଜୀ ଉତ୍‌କ୍ଷିପ୍ତ ହୋଇ ତାଙ୍କୁ କହିଥିଲେ, ''ଆପଣ କାହିଁକି ବ୍ରାହ୍ମଣମାନଙ୍କ ନିକଟକୁ ଯାଉଛନ୍ତି ? ତୁମ ନିଜ ଜାତି ଭିତରେ ରହିଥିବା କେତେକ ମହତ୍ ବ୍ୟକ୍ତିଙ୍କ ପାଖକୁ ଯାଅ ଏବଂ ସେମାନଙ୍କ ପଦାନୁସରଣ କର । ସ୍ୱାମୀଜୀଙ୍କର ତେଜପୂର୍ଣ୍ଣ ଭାଷା ଓ କାରୁଣ୍ୟ ହୃଦୟ ଡାକ୍ତର ପାଲ୍‌ପୁଙ୍କୁ ପ୍ରଭାବିତ କଲା । ଏଜ୍‌ହାଭା ସମ୍ପ୍ରଦାୟର ମାର୍ଗଦର୍ଶୀ ଓ ନେତା ଶ୍ରୀ ନାରାୟଣ ଗୁରୁଙ୍କୁ ଅନୁସରଣ କରି ସେ ଜୀବନରେ ଶାନ୍ତି ଲାଭ କରିଥିଲେ ।

ମଇଶୁର ରାଜ୍ୟର ଦିୱାନ ଶ୍ରୀ କେ. ଶେଷାଦ୍ରି ଆୟାରଙ୍କ ସହ ସ୍ୱାମୀଜୀଙ୍କର ପରିଚିତ ହେଲା । ସ୍ୱାମୀଜୀଙ୍କର ଚୁମ୍ବକୀୟ ବ୍ୟକ୍ତିତ୍ୱ ଓ ଦିବ୍ୟଶକ୍ତି ଅବଲୋକନ କରି ଆୟାରଙ୍କର ମନରେ ବିଶ୍ୱାସ ଜାତ ହେଲା ଯେ ଏହି ନବଯୁବକ ସନ୍ୟାସୀ ଭବିଷ୍ୟତରେ ଏକ ଇତିହାସ ରଚନା କରିବେ । ସେ ତତ୍‌କ୍ଷଣାତ୍ ମଇଶୁର ମହାରାଜା ଶ୍ରୀ **ଚାମ ରାଜେନ୍ଦ୍ର ୱାଦିୟାରଙ୍କ** ରାଜପ୍ରାସାଦକୁ ସ୍ୱାମୀଜୀଙ୍କୁ ନେଇ ତାଙ୍କ ସହ ପରିଚୟ କରାଇ ଦେଲେ । ସ୍ୱାମୀଜୀଙ୍କର ସାନ୍ନିଧ ଲାଭ ମହାରାଜାଙ୍କର ସୁପ୍ତ ଦେଶପ୍ରେମକୁ ପ୍ରଜ୍ୱଳିତ କଲା । ଏକଦା ରାଜକର୍ମଚାରୀଙ୍କ ଉପସ୍ଥିତିରେ ମହାରାଜା ପ୍ରଶ୍ନ କଲେ, ''ସ୍ୱାମୀଜୀ ମୋର ରାଜ ପରିଷଦର କର୍ମକର୍ତ୍ତାଙ୍କ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ? ସ୍ୱାମୀଜୀ ପ୍ରତ୍ୟୁତ୍ତରରେ କହିଲେ, ''ଠିକ୍ ଅଛି, ମୁଁ ଭାବୁଛି ଯେ ମଣିମାଙ୍କର ହୃଦୟ ଅତି ମହାନ୍ କିନ୍ତୁ ଆପଣ ଦୁର୍ଭାଗ୍ୟବଶତଃ ଏଭଳି ରାଜପରିଷଦ କର୍ମକର୍ତ୍ତାଙ୍କ ଦ୍ୱାରା ପରିବେଷ୍ଟିତ ଯେ ସବୁ ରାଜ୍ୟର ରାଜକର୍ମଚାରୀଙ୍କ ଭଳି ଏମାନେ ମଧ୍ୟ ।

Digitized by srujanika@gmail.com

ମହାରାଜ ସ୍ୱାମୀଜୀଙ୍କର ଏତାଦୃଶ ସାହସିକ ମନ୍ତବ୍ୟ ଶୁଣି ହଠାତ କହିଉଠିଲେ ''ନା ନା ସ୍ୱାମୀଜୀ, ମୋ ଦେଓ୍ୱାନ ଅନ୍ତତଃପକ୍ଷେ ଏମିତି ନୁହନ୍ତି । ସେ ବିଚକ୍ଷଣ ବୁଦ୍ଧି ସମ୍ପନ୍ନ ବ୍ୟକ୍ତି ଓ ବିଶ୍ୱାସୀ ମଧ୍ୟ ।'' ସ୍ୱାମୀଜୀ କହିଲେ, ''କିନ୍ତୁ ମହାନୁଭବ, ଦିଓ୍ୱାନ ଏଭଳି ଜଣେ ବ୍ୟକ୍ତି ଯିଏ ମହାରାଜଙ୍କଠାରୁ ଅର୍ଥ ଝଡ଼ାଏ ଏବଂ ରାଜନୈତିକ ଏଜେଣ୍ଟଙ୍କୁ ଅର୍ଥ ଦେଇ ବଶ କରେ ।'' ମହାରାଜ ଏଭଳି ସ୍ପଷ୍ଟୋକ୍ତି ସ୍ୱାମୀଜୀଙ୍କଠାରୁ ଶୁଣି ବାଧହୋଇ ବିଷୟବସ୍ତୁ ପରିବର୍ତ୍ତନ କଲେ । କିନ୍ତୁ ପରବର୍ତ୍ତୀ ସମୟରେ ମହାରାଜା ସ୍ୱାମୀଜୀଙ୍କୁ ଏକାନ୍ତରେ ନିଜ କକ୍ଷରେ କହିଲେ, ''ସ୍ୱାମୀଜୀ ମହାରାଜ, ଅତ୍ୟଧିକ ଖୋଲାକଥା ସର୍ବଦା ନିରାପଦ ନୁହେଁ, ଆପଣ ଯେପରି ରାଜ ପରିଷଦରେ ଖୋଲାଖୋଲିଭାବରେ ମନ୍ତବ୍ୟ ପ୍ରଦାନ କରିଲେ, ସେପରି ଯଦି ସର୍ବଦା କରନ୍ତି, ତାହାହେଲେ ଆପଣଙ୍କୁ ଅଲକ୍ଷ୍ୟରେ ବିଷପାନ କରାଇ ମାରି ଦିଆଯାଇପାରେ ।'' ସ୍ୱାମୀଜୀ ଗର୍ଜି ଉଠିଲେ, ''କ'ଣ ହେଲା ! ଆପଣ କ'ଣ ଭାବୁଛନ୍ତି ଯେ ନିଜର ଜୀବନ ରକ୍ଷା ପାଇଁ ଜଣେ ସତ୍ୟବାନ ସନ୍ୟାସୀ ସତ୍ୟ କହିବାକୁ ଭୟ କରିବ ? ମନେକରନ୍ତୁ କାଲି ଆପଣଙ୍କର ପୁତ୍ର ମୋତେ ପଚାରିବେ, ''ସ୍ୱାମୀଜୀ, ମୋ ପିତାଙ୍କ ବିଷୟରେ ଆପଣ କ'ଣ ଭାବନ୍ତି ?'' ମୁଁ ଜାଣିଛି ଆପଣ ଅନେକ ସୁଗୁଣରେ ପରିପୂର୍ଣ୍ଣ, ଆପଣଙ୍କ ପୁତ୍ରକୁ କ'ଣ ସେଗୁଡ଼ିକ ନ କହି ନୀରବ ରହିବି ? ମୁଁ କ'ଣ ତାଙ୍କୁ ଆପଣଙ୍କ ସମ୍ବନ୍ଧରେ ମିଥ୍ୟା କହିବି ? କେବେ ନୁହେଁ ।'' ସ୍ୱାମୀଜୀଙ୍କର ସ୍ପଷ୍ଟୋକ୍ତି ଶୁଣି ମହାରାଜ ନିରବ ରହିଲେ ।

- ୧ -

*ଭାରତ ପାଖରେ ରହିଛି ଦାର୍ଶନିକ ଓ ଆଧ୍ୟାତ୍ମିକ ଶକ୍ତି ଓ ଜ୍ଞାନର ଭଣ୍ଡାର, ଏହା ଭିତରେ ବି ରହିଛି ବୈଜ୍ଞାନିକ ଦୃଷ୍ଟିକୋଣ ଓ ସଂସ୍କାରଧର୍ମୀ ବୀଜ । ବେଦାନ୍ତର ଶିକ୍ଷା ଓ ପ୍ରଚାର ପାଶ୍ଚାତ୍ୟ ଜଗତରେ ନିହାତି ଆବଶ୍ୟକ । ସେଥିପାଇଁ ମୋତେ ଆମେରିକା ଯିବାକୁ ହେବ ।*

ଦେଶଭକ୍ତି ଏଭଳି ଏକ ଆବେଗତା ଯାହା ରାଷ୍ଟ୍ରର ଭୌଗୋଳିକ ସୀମାରେଖା ମଧ୍ୟରେ ବସବାସ କରୁଥିବା ଜନତାଙ୍କୁ କେବଳ ସ୍ନେହପାଶରେ ବାନ୍ଧି ରଖେନାହିଁ ବରଂ ଏହା ପରିବ୍ୟାପ୍ତ ହୋଇ ସମଗ୍ର ମାନବଜାତିକୁ ଆପଣେଇ ନେବାର ପ୍ରୟାସ କରେ ଯେଉଁଠି ସମସ୍ତ ପ୍ରକାର ଭୌଗଳିକ ସୀମା ଓ ସରହଦ ଆପଣାଛାଏଁ ବିଲୁପ୍ତ ହୋଇଯାଏ । ମଇଶୁର ରାଜ୍ୟର ପ୍ରଧାନ ମନ୍ତ୍ରୀ ସ୍ୱାମୀଜୀଙ୍କର ରାଷ୍ଟ୍ରଭକ୍ତିରେ ବିମୁଗ୍ଧ ହୋଇ ତାଙ୍କୁ କେତେକ ଉପହାର ପ୍ରଦାନ କରିବା ପାଇଁ ମନସ୍ଥ କଲେ । ଗୋଟିଏ ବ୍ଲାଙ୍କ ଚେକ୍ ବହି ନିଜର ବ୍ୟକ୍ତିଗତ ସଚିବଙ୍କ ହାତରେ ଟେକିଦେଇ କହିଲେ, ''ବନ୍ଧୁ, ସ୍ୱାମୀଜୀଙ୍କୁ ବଜାର ନେଇଯାଅ, ସେ ଯାହା ଚାହିଁବେ ତାହା କିଣି ତାଙ୍କୁ ଦେବ ।'' କିନ୍ତୁ ସ୍ୱାମୀଜୀ ମହା ବୈରାଗ୍ୟ ଚେତନାରେ ଉଦ୍ବୁଦ୍ଧ, ତାଙ୍କର କ'ଣ ଆବଶ୍ୟକ ହୋଇପାରେ ? ଅବଶ୍ୟ ବଜାର ଯାଇଥିଲେ, କିନ୍ତୁ ବାଳକ ସମ ବଜାରରେ ବୁଲିସାରିବା ପରେ

Digitized by srujanika@gmail.com

ସ୍ୱାମୀଜୀ କହିଲେ, ହଁ, ଯଦି ଦିୱାନ ଚାହୁଁଛନ୍ତି ମୋତେ କିଛି ଉପହାର ଦେବାପାଇଁ , ତେବେ ଏହି ବଜାରରେ ମିଳୁଥିବା ସବୁଠୁ ଉତ୍ତମ ସିଗାରେଟ ମୋତେ ପ୍ରଦାନ କର ।'' ଦିୱାନଙ୍କର ବ୍ୟକ୍ତିଗତ ସଚିବ ବିସ୍ମିତ ନୟନରେ ଚାହିଁ ସିଗାରେଟ ଚୁପ୍‌ଚାପ୍ କିଣି ଦେଲେ ସିନା, କିନ୍ତୁ ସ୍ୱାମୀଜୀଙ୍କୁ କିଛି କହିବାକୁ ସାହସ କଲେନାହିଁ ।

ମଇଶୁର ମହାରାଜାଙ୍କ କ୍ଷେତ୍ରରେ ବି ତାହା ଘଟିଥିଲା । ମହାରାଜ ଯେତେବେଳେ ସ୍ୱାମୀଜୀଙ୍କୁ ପଚାରିଲେ, ''ସ୍ୱାମୀଜୀ, ମୁଁ ଆପଣଙ୍କ ପାଇଁ କ'ଣ କରିପାରେ ?'' ସେତେବେଳେ ସ୍ୱାମୀଜୀ ସିଧାସଳଖ ଉତ୍ତର ନ ଦେଇ ସେ ତାଙ୍କର ଭବିଷ୍ୟତ ମିଶନର ରୂପରେଖ ସମ୍ବନ୍ଧରେ ଘଣ୍ଟାଏ କାଳ ମହାରାଜାଙ୍କ ସହ ଆଲୋଚନା କରିଥିଲେ । ନିଜ ମିଶନ ସମ୍ବନ୍ଧରେ ଏତିକି ମାତ୍ର ସେ କହିଥିଲେ, ''ଭାରତ ପାଖରେ ରହିଛି ଦାର୍ଶନିକ ଓ ଆଧ୍ୟାତ୍ମିକ ଶକ୍ତି ଓ ଜ୍ଞାନର ଭଣ୍ଡାର, ଏହା ଭିତରେ ବି ରହିଛି ବୈଜ୍ଞାନିକ ଦୃଷ୍ଟିକୋଣ ଓ ସଂସ୍କାରଧର୍ମୀ ବୀଜ । ବେଦାନ୍ତର ଶିକ୍ଷା ଓ ପ୍ରଚାର ପାଶ୍ଚାତ୍ୟ ଜଗତରେ ନିହାତି ଆବଶ୍ୟକ । ସେଥିପାଇଁ ମୋତେ ଆମେରିକା ଯିବାକୁ ହେବ । ଶିଳ୍ପ ଓ ଅନ୍ୟ ବୈଷୟିକ ଜ୍ଞାନବିଜ୍ଞାନର ଶିକ୍ଷା, ପାଶ୍ଚାତ୍ୟ ଜଗତ ଆମକୁ ଯୋଗାଇଦେବା ଉଚିତ ନୁହେଁ କି ?'' ଭବିଷ୍ୟତ ମିଶନ ରୂପରେଖ ସମ୍ବନ୍ଧରେ ସ୍ୱାମୀଜୀ ନିଜର ଏକଳି ଅନେକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟପନ୍ଥା ମହାରାଜାଙ୍କୁ କହିଥିଲେ । ମହାରାଜ ଅତୀବ ପ୍ରୀତ ହୋଇ ସ୍ୱାମୀଜୀଙ୍କର ସ୍ୱରକୁ ଫୋନଗ୍ରାଫିକ୍ ମାଧ୍ୟମରେ ରେକର୍ଡ କରାଇ ନେଇଥିଲେ ଯାହା ସେ ନିଜେ ରାଜପ୍ରାସାଦରେ ସାଇତି ରଖିଲେ ।

ମଇଶୁର ରାଜପ୍ରାସାଦରୁ ବିଦାୟ ନେବା ସମୟରେ, ମହାରାଜ, ଦିୱାନ ଓ ରାଜପରିଷଦ କର୍ମକର୍ତ୍ତାବୃନ୍ଦ ସ୍ୱାମୀଜୀଙ୍କୁ ଉଚ୍ଛ୍ୱସିତ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ଦିୱାନ କେତୋଟି ଟଙ୍କା ବିଦ୍ୟା ସ୍ୱାମୀଜୀଙ୍କ ହସ୍ତରେ ପ୍ରଦାନ କରିବାକୁ ଚାହିଁବାରୁ ସ୍ୱାମୀଜୀ ତାହା ଗ୍ରହଣ ନ କରି ବି ନମ୍ର କଣ୍ଠରେ କହିଲେ, ''ମହାଶୟ, ଯଦି ଆପଣ କିଛି ଦେବାକୁ ଇଚ୍ଛୁକ, ତେବେ ମୋ ପାଇଁ ଖଣ୍ଡଏ ଦ୍ୱିତୀୟ ଶ୍ରେଣୀ ରେଲୱେ ଟିକଟ କାଟି ଦିଅନ୍ତୁ ।'' ଦିୱାନ ଦ୍ୱିତୀୟ ଶ୍ରେଣୀ ରେଲୱେ ଟିକେଟଟିଏ ସ୍ୱାମୀଜୀଙ୍କ ହସ୍ତରେ ଅର୍ପଣ କରିଥିଲେ ।

କୋଚିନ ଓ ତ୍ରାଭାଙ୍କର ରାଜ୍ୟସମୂହ ସ୍ୱାମୀଜୀଙ୍କର ପରବର୍ତ୍ତୀ ଭ୍ରମଣ ଥିଲା । କୋଚିନ, ଏର୍ଣ୍ଣାକୁଲମ୍, ତ୍ରିଚୁର ଭଳି ଅନେକ ସ୍ଥାନ ସେ ଭ୍ରମଣ କରିଥିଲେ । ଛଟାମ୍ପି ସ୍ୱାମୀଙ୍କର ଶିଷ୍ୟ ନାରାୟଣ ଗୁରୁ ସମାଜର ଅବହେଳିତ ଓ ନିର୍ଯ୍ୟାତିତ ଜନତାଙ୍କର ଉତ୍ଥାନ ନିମନ୍ତେ ଏକ ନିରବ ବିପ୍ଲବର ସଙ୍ଗଠନ କରିଥିଲେ । ଛଟାମ୍ପି ସ୍ୱାମୀ ଓ ନାରାୟଣ ଗୁରୁଙ୍କୁ ସ୍ୱାମୀଜୀ ଭେଟିଥିଲେ । ଶିକ୍ଷା ମାଧ୍ୟମରେ ଅବହେଳିତ ଓ ନିର୍ଯ୍ୟାତିତ ଜନତାଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ଉନ୍ନତି ହୋଇପାରିବ ବୋଲି ସେ ଛଟାମ୍ପି ସ୍ୱାମୀଙ୍କୁ ପରାମର୍ଶ ଦେଇଥିଲେ । ସେମାନଙ୍କର ନିରବ ବିପ୍ଳବ ସ୍ୱାମୀଜୀଙ୍କୁ ଅନୁପ୍ରାଣିତ କରିଥିଲା ଏବଂ ଛଟାମ୍ପି ସ୍ୱାମୀ ବିବେକାନନ୍ଦଙ୍କ ପ୍ରେରଣାପୂର୍ଣ୍ଣ ଓ ଚିନ୍ତାଧାରାକୁ ଉଚ୍ଚ ପ୍ରଶଂସା କରିଥିଲେ । ଜାତିପ୍ରଥାର ଉତ୍କଟ ରୂପ ସ୍ୱାମୀଜୀଙ୍କୁ ଅତ୍ୟନ୍ତ ବିଚଳିତ କରିଥିଲା । ତ୍ରିଭାନ୍ଦ୍ରମରେ ପ୍ରଫେସର ସୁନ୍ଦରାରାମ ଆୟାରଙ୍କ ଗୃହରେ ଅବସ୍ଥାନ କରୁଥିବା ସମୟରେ ସ୍ୱାମୀଜୀ କହିଥିଲେ, ସମଗ୍ର ଭାରତବର୍ଷ ମୁଁ ପାଦରେ ଭ୍ରମଣ କରି, ନିଜ ଆଖିରେ

*Digitized by srujanika@gmail.com*

ଦେଖିଛି କୋଟି କୋଟି ଜନତାଙ୍କର ଅଜ୍ଞତା, ଯନ୍ତ୍ରଣା ଓ ଦାରିଦ୍ର୍ୟ । ମୋ ଆତ୍ମା ବାରମ୍ବାର ଦଗ୍ଧିଭୂତ ହେଉଛି ଏବଂ ସେମାନଙ୍କର ଏଭଳି ଦୁଃଖଦ ଅବସ୍ଥାର ପରିବର୍ତ୍ତନ ପାଇଁ ମୋର ଇଚ୍ଛା ଜ୍ୱଳନ୍ତ ଅଗ୍ନିସମ ତେଜିଆନ ହୋଇଉଠୁଛି । ଏହାକୁ କର୍ମଫଳ ବୋଲି କେହି କୁହନ୍ତୁ ନାହିଁ । ଯଦି ଏହି ଦୁଃଖଦ ଅବସ୍ଥା ସେମାନଙ୍କର କର୍ମ ବୋଲି କେହି ଭାବନ୍ତି, ତେବେ ସେମାନଙ୍କୁ ଏଥିରୁ ରକ୍ଷାକରିବା ବି ଆମର କର୍ମ । ଯଦି ଈଶ୍ୱରଲାଭ ପାଇଁ ତୁମେ ଇଚ୍ଛୁକ, ତେବେ ମନୁଷ୍ୟର ସେବା କର । ନାରାୟଣଙ୍କ ନିକଟରେ ପହଞ୍ଚିବାକୁ ହେଲେ, ଦରିଦ୍ର ନାରାୟଣଙ୍କ ସେବା କର ।

ସନ୍ନ୍ୟାସୀ ଜୀବନ ବହୁ ଘାତ ପ୍ରତିଘାତ ଦେଇ ବିତିଥାଏ । କିନ୍ତୁ ଭର୍ତ୍ସନା ଓ ଅପମାନର ବି ସେମାନେ ସମ୍ମୁଖୀନ ହେବାକୁ ପଡ଼ିଥାଏ । ସ୍ୱାମୀ ବିବେକାନନ୍ଦ ବି ଏଭଳି ଅନେକ ଅପମାନ ଓ ବ୍ୟଙ୍ଗାତ୍ମକ ଦୃଶ୍ୟ ସେ ନିଜେ ପରିବ୍ରାଜକ କାଳରେ ଅଙ୍ଗେ ନିଭେଇଛନ୍ତି । ଏଠାରେ ସ୍ମରଣୀୟଯେ ଉତ୍ତର ପ୍ରଦେଶର **ଟେରିଘାଟ** ରେଳ ଷ୍ଟେସନରେ ଏକଦା ସ୍ୱାମୀଜୀ ଟ୍ରେନ୍‌ରୁ ଅବତରଣ କଲେ । ଗୈରିକ ବସ୍ତ୍ର ଓ ତୃତୀୟ ଶ୍ରେଣୀ ରେଳ ଟିକେଟଟିଏ ଥିଲା ତାଙ୍କର ସମ୍ବଳ । ତୃଷ୍ଣା ନିବାରଣ ପାଇଁ ତାଙ୍କ ପାଖରେ ଜଳପାତ୍ର ବି ନ ଥିଲା ।  ମୁଣ୍ଡ ଫଟା ଖରା । ତୃତୀୟ ଶ୍ରେଣୀ ଯାତ୍ରୀ ବିଶ୍ରାମାଗାରର ଗୋଟିଏ ଖୁଣ୍ଟକୁ ଭରା ଦେଇ ସ୍ୱାମୀଜୀ ବସି ପଡ଼ିଲେ । ଜଣେ ବେପାରୀ ଯିଏ ଗତ ରାତିରେ ସ୍ୱାମୀଜୀଙ୍କ ସହ ଟ୍ରେନ୍‌ରେ ଯାତ୍ରା କରିଥିଲେ, ସେ ମଧ୍ୟ ନିକଟସ୍ଥ ଏକ ଆଶ୍ରୟସ୍ଥଳ ଛାୟାରେ ବସି ପୁରି ଓ ତରକାରି ମହାଆନନ୍ଦରେ ଭୁରି ଭୋଜନ କରୁଥିଲେ । ଗତ ରାତିରେ ସେହି ବେପାରି ଜଳ କ୍ରୟ କରି ସ୍ୱାମୀଜୀଙ୍କ ଆଡ଼କୁ ଚାହିଁ ଜଳ ପାନ କରୁଥିବାବେଳେ ପାଣି ମୁନ୍ଦିଏ ପିଇବା ପାଇଁ ସ୍ୱାମୀଜୀଙ୍କ ଗଳା ସେତେବେଳେ ଶୁଖି ଯାଉଥିଲା । ଭଦ୍ରତା ଦୃଷ୍ଟିରୁ ସେ ତ ତାଙ୍କୁ ଜଳପାନ କରିବା ପାଇଁ କହିଲେ ନାହିଁ, ବରଂ ପରିହାସ ଛଳରେ ସ୍ୱାମୀଜୀଙ୍କୁ କହିଥିଲେ, ''ତୁମେ ଜଣେ ସନ୍ନ୍ୟାସୀ, ଟଙ୍କା ପଇସା ତ୍ୟାଗ କରିଛ । ତୁମେ ପାଣି କିଣି ପାରିବ ନାହିଁ । ଦେଖ ମୁଁ ପାଣି କିଣି କିଭଳି ଆରାମରେ ପିଇ ପାରୁଛି । ମୁଁ ଯେପରି ଅର୍ଥ ଉପାର୍ଜନ କରୁଛି, ତୁମେ ସେଭଳି କାହିଁକି କରୁନାହଁ ? ଆରାମ୍‌ରେ ଜୀବନ ବିତିବ ।'' ସ୍ୱାମୀଜୀ ତା'ର ନିରର୍ଥକ ଉପଦେଶ ଶୁଣି ନିରବ ରହିଥିଲେ ।

ବର୍ତ୍ତମାନ ସେହି ବଣିକ ତାଙ୍କ ସମ୍ମୁଖରେ ଛାଇତଳେ ଚେକା ପକାଇ ପୁରି, ତରକାରି ଓ ଲଡୁ ଖାଉଥିଲେ ଏବଂ ମଝିରେ ମଝିରେ ବିଦ୍ରୁପପୂର୍ଣ୍ଣ ଚାହାଣିରେ ସ୍ୱାମୀଜୀଙ୍କୁ ଚାହୁଁଥିଲେ । ସ୍ୱାମୀଜୀଙ୍କର କୌଣସି ପ୍ରତିକ୍ରିୟା ନ ଦେଖି ବଣିକ କହି ଉଠିଲେ ''ଦେଖ ହୋ ସନ୍ନ୍ୟାସୀ ପୁରି ଓ ଲଡୁ ବହୁତ ସୁଆଦିଆ ହୋଇଛି ।  । ତୁମେ ଅର୍ଥ ଉପାର୍ଜନ କରିବାକୁ ଚାହଁ ନାହିଁ । ତେଣୁ ତୁମକୁ ଶୁଖିଲା କଣ୍ଠ ଓ ଭୋକିଲା ପେଟରେ ରହିବାକୁ ପଡ଼ିବ ।'' ଏତାଦୃଶ ବିଦ୍ରୁପ ମନ୍ତବ୍ୟ ଶୁଣି ବି ସ୍ୱାମୀଜୀ ଶାନ୍ତ ଚିତ୍ତରେ ନିଜର ଥକ୍କା ମେଣ୍ଟାଇଥିଲେ ଏବଂ ବଣିକ ମହାଶୟଙ୍କର ଭୁରି ଭୋଜନ ପ୍ରତି ତିଳେମାତ୍ର ତାଙ୍କର ଦୃଷ୍ଟି ନ ଥିଲା ।

ଏହି ସମୟରେ ଏକ ଅଦ୍ଭୁତ ଘଟଣା ଘଟିଲା । ସେହି ଅଞ୍ଚଳର ଜଣେ ବ୍ୟକ୍ତି ଏକ ଖାଦ୍ୟ ପୁଡ଼ିଆ ଓ ପାଣିପାତ୍ର ହାତରେ ଧରି ହଠାତ୍ ପହଞ୍ଚିଗଲେ । କିୟଦ୍ ଦୂରରେ ଏକ ପରିଷ୍କାର ସ୍ଥାନରେ ଭୂମିରେ ଚଟେଇ ବିଛାଇ ଏବଂ ଖାଦ୍ୟ ସାମଗ୍ରୀ ଥୋଇ, ଡାକ ଛାଡ଼ିଲେ ''ବାବାଜୀ ମହାଶୟ,

Digitized by srujanika@gmail.com

ଏଠାକୁ ଆସନ୍ତୁ । ଆପଣଙ୍କ ପାଇଁ ମୁଁ ଭୋଜନ ନେଇ ଆସିଛି ।'' ସ୍ୱାମୀଜୀ ନିର୍ବାକ ହୋଇଗଲେ ଏବଂ ମନେ ମନେ ଭାବିଲେ ଏହାର ଅର୍ଥ କ'ଣ ! କିଏ ଏହି ଆଗନ୍ତୁକ ! ଆଗନ୍ତୁକ ଶ୍ରଦ୍ଧା ସହ ବାରମ୍ବାର ଡାକ ଛାଡୁଥିବା ବେଳେ ବଣିକ ବିଚରା ଫାଙ୍କା ଚାହାଁଣିରେ ଆନାଇଥିଲା ବିଧି ନିର୍ଦ୍ଦେଶିତ ଘଟଣାକୁ । ସ୍ୱାମୀଜୀ ଦଣ୍ଡାୟମାନ ହେଲେ ଏବଂ ଧୀରେ ପଦଚାରଣ କରି ଆଗନ୍ତୁକଙ୍କ ନିକଟରେ ପହଞ୍ଚି କହିଲେ, ''ଭାଇ, ଭୁଲରେ ମୋତେ ଆପଣ ଡାକୁଛନ୍ତି ! ବୋଧହୁଏ ଆପଣ ଅନ୍ୟ କୌଣସି ସନ୍ୟାସୀ ପାଇଁ ଖାଦ୍ୟ ଆଣିଛନ୍ତି । କାହିଁକିନା ମୁଁ ତ ଆପଣଙ୍କୁ କେବେ ବି ଭେଟି ନାହିଁ ।''

ଆଗନ୍ତୁକ ଉଚ୍ଚ ସ୍ୱରରେ କହିଲେ, ''ନା, ନା, ମୁଁ ଆପଣଙ୍କୁ ଦେଖିଛି । ଆପଣ ସେହି ବାବାଜୀ ଯାହାଙ୍କୁ ମୁଁ ଆଜି ଅପରାହ୍ନରେ ଶୋଇଥିବା ସମୟରେ ସ୍ୱପ୍ନରେ ଦେଖିଥିଲି । ଦେଖନ୍ତୁ ଆଜ୍ଞା, ମୋର ଏଠାରେ ଏକ ମିଠେଇ ଦୋକାନ ରହିଛି । ସବୁଦିନ ଭଳି ଆଜି ଅପରାହ୍ନରେ ବିଶ୍ରାମ ନେଉଥିବାବେଳେ, ମୋ ଆଖି ଲାଗିଗଲା । ମୁଁ ସ୍ୱପ୍ନରେ ଦେଖିଲି ଯେ ଶ୍ରୀରାମ ହାତଠାରି ମୋତେ କହୁଛନ୍ତି, ''ଦେଖ ବାବାଜୀଙ୍କୁ, ସେ ଦୁଇ ଦିନ ହେଲା କିଛି ଖାଇ ନାହାନ୍ତି ।'' ସ୍ୱପ୍ନ ଭାବି ମୁଁ ଶୋଇପଡ଼ିଲି । କିନ୍ତୁ କୃପାଳୁ ଶ୍ରୀରାମ ପୁନଶ୍ଚ ଆବିର୍ଭାବ ହେଲେ ଏବଂ ମୋତେ ଉଠାଇ କହିଲେ, ''ଯାଅ ଡେ଼ରି କରନା'' । ନିଦରୁ ଉଠି ଆପଣଙ୍କ ପାଇଁ ଗରମ ଗରମ ପୁରି, ତରକାରି ତିଆରି କଲି ଏବଂ ଲଡୁ ଓ ଥଣ୍ଡା ପାଣି ସହ ମୁଁ ସେସବୁ ନେଇଆସିଛି । ଆପଣ ଏଠାରେ ବସନ୍ତୁ । ଆପଣଙ୍କୁ ଭାରି ଭୋକ । ଶୀଘ୍ର ଖାଆନ୍ତୁ ନା ! ସ୍ୱାମୀଜୀଙ୍କ ହୃଦୟ ଆଗନ୍ତୁକ ପ୍ରତି କୃତଜ୍ଞତାରେ ପରିପୂର୍ଣ୍ଣ ହୋଇଉଠିଲା ଏବଂ ସେ ଆଗନ୍ତୁକଙ୍କୁ ଧନ୍ୟବାଦ ଦେଇ ତାଙ୍କର ଭୋଜନ ଗ୍ରହଣ କଲେ । ସ୍ୱାମୀଜୀଙ୍କ ଚକ୍ଷୁଦ୍ୱୟ ଅଶ୍ରୁରେ ଭରିଗଲା । ତାଙ୍କର ଛଳଛଳ ଅଶ୍ରୁଳ ଚକ୍ଷୁ ଦେଖି ଆଗନ୍ତୁକ କହିଲେ, ''ବାବାଜୀ ମହାଶୟ, ମୋତେ ଧନ୍ୟବାଦ ଦିଅନ୍ତୁ ନାହିଁ । ଏହା ହିଁ ଶ୍ରୀରାମଜୀଙ୍କର କୃପା । ଏତାଦୃଶ ଦିବ୍ୟ ନାଟକର ଭାବପୂର୍ଣ୍ଣ ଦୃଶ୍ୟ ବଣିକ ଯାତ୍ରୀଙ୍କର ମୋହ ଭଙ୍ଗ କଲା । ସେ ନିଜ ଆସନରୁ ଉଠି, ସ୍ୱାମୀଜୀଙ୍କ ପାଦରୁ ଧୂଳି ନେଇ କମ୍ପିତ ଯୋଡ଼ ହସ୍ତରେ କହି ଉଠିଲେ, ''ସ୍ୱାମୀଜୀ, ମୋତେ କ୍ଷମା କରନ୍ତୁ ।''

- ୨ -

*ବନ୍ଧୁଗଣ, ଅତୀତରେ ଏଭଳି ବହୁ ନିର୍ବୋଧଙ୍କୁ ଦେଖିଛି, ମୋ ପାଇଁ ଏହା ନୂଆ ନୁହେଁ । ଏଭଳି ଅପମାନଜନକ ଶବ୍ଦ ଜଣେ ନିସ୍ୱ ସନ୍ୟାସୀଙ୍କ ମୁଖରୁ ଶୁଣି ଦୁଇ ଇଂରେଜ କ୍ରୋଧରେ ଜର୍ଜରିତ ହୋଇପଡ଼ିଲେ, କିନ୍ତୁ ସ୍ୱାମୀଜୀଙ୍କର ବଳିଷ୍ଠ ଶରୀର ଓ ଅଦମ୍ୟ ମନୋବଳ ପରିଲକ୍ଷିତ କରି ସେମାନଙ୍କର କ୍ରୋଧ ପାଣିଫାଟିଗଲା । ସେ ଦୁହେଁ ସେମାନଙ୍କର ଲଜ୍ଜାକର ମନ୍ତବ୍ୟ ପାଇଁ ସ୍ୱାମୀଜୀଙ୍କଠାରୁ କ୍ଷମା ଭିକ୍ଷା ମାଗିଲେ ।*

ଅନ୍ୟ ଏକ ଘଟଣା । ସ୍ୱାମୀଜୀ ରାଜପୁତନାର ବିଭିନ୍ନ ଦର୍ଶନୀୟ ସ୍ଥାନ ଭ୍ରମଣ ସମୟରେ, ସେ ଏକଦା ରେଳରେ ଯାତ୍ରା କରୁଥିଲେ । ସେ ଯେଉଁ ଡବାରେ ବସିଥିଲେ, ସେହି ଡବାରେ

Digitized by srujanika@gmail.com

ଦୁଇଜଣ ଇଂରାଜୀ ଭଦ୍ରଲୋକ ଉପସ୍ଥିତ ଥିଲେ, ସନ୍ନ୍ୟାସୀଙ୍କର ବେଶଭୂଷା ଉପରେ ଥଟ୍ଟା ପରିହାସ କରି ବିଭିନ୍ନ ମନ୍ତବ୍ୟ ପ୍ରକାଶ କରିବାରେ ବ୍ୟସ୍ତ ଥିଲେ । ସନ୍ନ୍ୟାସୀ ଇଂରାଜୀ ଜାଣି ନଥିବେ ଓ ସେ ଜଣେ ଗାଉଁଲି ଅଜ୍ଞ ବୋଲି ସେମାନେ ମନରେ ଧରି ନେଇଥିଲେ । ସେମାନଙ୍କର କଥାବାର୍ତ୍ତା ଶୁଣି ସ୍ୱାମୀଜୀଙ୍କର କୌଣସି ପ୍ରତିକ୍ରିୟା ମୁଖମଣ୍ଡଳରେ ପ୍ରକାଶିତ ହେଉ ନ ଥିଲା । ଷ୍ଟେସନ୍‌ରେ ଟ୍ରେନ୍ ପହଞ୍ଚିବାରୁ ସ୍ୱାମୀଜୀ ଷ୍ଟେସନ ମାଷ୍ଟରଙ୍କୁ ଇଂରାଜୀରେ ପଚାରିଲେ, "ମହାଶୟ, ଦୟାକରି ପାଣି ଗ୍ଲାସଟିଏ ମୋତେ ଦେଇ ପାରିବେ ?" ସନ୍ନ୍ୟାସୀ ଇଂରାଜୀ ଜାଣିଛନ୍ତି ଏବଂ ସେମାନଙ୍କର ଅଭଦ୍ରୋଚିତ ମନ୍ତବ୍ୟ ସନ୍ନ୍ୟାସୀ ବୁଝି ପାରିଥିବେ ଜାଣି ଦୁଇ ଇଂରାଜୀ ଭଦ୍ରଲୋକ କିୟଦ୍ ସମୟ ହତବାକ୍ ହୋଇଗଲେ । ତଥାପି ମନରେ ସାହସବାନ୍ଧି ଇଂରାଜୀ ଭଦ୍ରଲୋକ ସ୍ୱାମୀଜୀଙ୍କୁ ପଚାରିଲେ, "ଆପଣ ଇଂରାଜୀ ଜାଣିଛନ୍ତି, କିନ୍ତୁ ଆମ କଥାବାର୍ତ୍ତା ଶୁଣିବା ପରେ କୌଣସି ଅସନ୍ତୋଷ ପ୍ରକାଶ କଲେ ନାହିଁ ?

ସ୍ୱାମୀଜୀଙ୍କ ଅଧରରେ ଲହରିତ ହେଲା ମୃଦୁ ହାସ୍ୟ । ସେ କହିଲେ, "ବନ୍ଧୁଗଣ, ଅତୀତରେ ଏଭଳି ବହୁ ନିର୍ବୋଧଙ୍କୁ ଦେଖିଛି, ମୋ ପାଇଁ ଏହା ନୂଆ ନୁହେଁ ।" ଏଭଳି ଅପମାନଜନକ ଶବ୍ଦ ଜଣେ ନିସ୍ୱ ସନ୍ନ୍ୟାସୀଙ୍କ ମୁଖରୁ ଶୁଣି ଦୁଇ ଇଂରେଜ କ୍ରୋଧରେ ଜର୍ଜରିତ ହୋଇପଡ଼ିଲେ, କିନ୍ତୁ ସ୍ୱାମୀଜୀଙ୍କର ବଳିଷ୍ଠ ଶରୀର ଓ ଅଦମ୍ୟ ମନୋବଳ ପରିଲକ୍ଷିତ କରି ସେମାନଙ୍କର କ୍ରୋଧ ପାଣିଫାଟିଗଲା । ସେ ଦୁହେଁ ସେମାନଙ୍କର ଲଜ୍ଜାକର ମନ୍ତବ୍ୟ ପାଇଁ ସ୍ୱାମୀଜୀଙ୍କଠାରୁ କ୍ଷମା ଭିକ୍ଷା ମାଗିଲେ ।

ଏକଦା ସ୍ୱାମୀଜୀ ଟ୍ରେନ୍‌ରେ ଏକ ଲମ୍ବା ଯାତ୍ରା କରୁଥିଲେ । ସ୍ୱାମୀଜୀ ଯେଉଁ ଡବାରେ ବସିଥିଲେ, ସେହି ଡ଼ବାରେ ଜଣେ ଶିକ୍ଷିତ ତାନ୍ତ୍ରିକ ସ୍ୱାମୀଜୀଙ୍କ ପାଖରେ ବସିଥିଲେ । ତନ୍ତ୍ରବିଦ୍ୟା ସମ୍ବନ୍ଧରେ ସେ ସ୍ୱାମୀଜୀଙ୍କୁ ବହୁ ପ୍ରଶ୍ନ ପଚାରୁଥିଲେ - ସେ ହିମାଳୟ ଯାଇଥିଲେ କି ନାହିଁ, ସେଠାରେ ତନ୍ତ୍ରବିଦ୍ୟାର ପାରଙ୍ଗମ ମହାତ୍ମାମାନଙ୍କୁ ଭେଟିଛନ୍ତି କି ନାହିଁ - ଏଭଳି ଅନେକ ପ୍ରଶ୍ନ । ସ୍ୱାମୀଜୀ ପ୍ରଶ୍ନକର୍ତ୍ତାଙ୍କୁ ହତୋତ୍ସାହ ନ କରି ସବୁ ଚୁପ୍‌ଚାପ୍ ଶୁଣିଯାଉଥିଲେ । ବାରମ୍ବାର ସେ ପ୍ରଶ୍ନ କଲାରୁ ସ୍ୱାମୀଜୀ ଏଭଳି ମହାତ୍ମାମାନଙ୍କର ଚମତ୍କାରିତା ସମ୍ବନ୍ଧରେ ନାଟକୀୟ ଭଙ୍ଗୀରେ ବର୍ଣ୍ଣନା କଲେ ଯେ ପ୍ରଶ୍ନକର୍ତ୍ତା ବିସ୍ମୟବିମୂଢ଼ ହୋଇଗଲେ । ଯାହାହେଉ ସ୍ୱାମୀଜୀଙ୍କର ବର୍ଣ୍ଣନା ତାଙ୍କୁ ମୁଗ୍ଧ କଲା ଏବଂ ସେ ସ୍ୱାମୀଜୀଙ୍କୁ ଭୋଜନ ନିମନ୍ତେ ନିମନ୍ତ୍ରଣ କଲେ । ଯେହେତୁ ସେ ଦିନସାରା କିଛି ଖାଇ ନ ଥିଲେ, ତେଣୁ ବିନା ଦ୍ୱିଧାରେ ସେ ଖାଦ୍ୟଗ୍ରହଣ କଲେ । ବ୍ୟକ୍ତିଜଣକ ଯାଦୁବିଦ୍ୟା ଜାଲରେ ଛନ୍ଦି ହୋଇଯାଇଛନ୍ତି ବୋଲି ସ୍ୱାମୀଜୀଙ୍କର ହୃଦବୋଧ ହେଲା । ଉକ୍ତ ସହଯାତ୍ରୀର ଅଜ୍ଞାନ ଦୂର କରିବା ନିମନ୍ତେ ସ୍ୱାମୀଜୀଙ୍କର ଦୟାର୍ଦ୍ର ହୃଦୟ ଘୁମୁରି ଉଠିଲା ।

ଭୋଜନାନ୍ତେ ସ୍ୱାମୀଜୀ ସ୍ପଷ୍ଟ ଭାଷାରେ ତାଙ୍କୁ କହିଲେ, "ଆପଣ ନିଜକୁ ଜଣେ ବିଦ୍ୱାନ ଓ ଜ୍ଞାନାଲୋକିତ ବୋଲି ବାହାସ୍ଫୋଟ ମାରୁଛନ୍ତି, ତଥାପି ଆପଣ କେମିତି ଏଭଳି କାଳ୍ପନିକ ଓ ମନଗଢ଼ା କାହାଣୀସବୁ ଶୁଣିଗଲେ ?" ଉକ୍ତ ବ୍ୟକ୍ତି ମସ୍ତକ ଅବନତ କରି ଠିଆହେଲେ ଏବଂ ତାଙ୍କ ମୁଖରୁ କୌଣସି ଶବ୍ଦ ନିର୍ଗତ ହେଲାନାହିଁ । ସ୍ୱାମୀଜୀ କହିଲେ, "ବନ୍ଧୁ, ଆପଣ ବୁଦ୍ଧିମାନ । ନିଜର ବୁଦ୍ଧି ବ୍ୟବହାର କରିବା ଶ୍ରେୟ ହେବ । ସମ୍ମୋହନଶକ୍ତିର ପ୍ରଦର୍ଶନ ସହ ଆଧ୍ୟାତ୍ମିକତାର

Digitized by srujanika@gmail.com

କୌଣସି ସମ୍ବନ୍ଧ ନାହିଁ । ଯାଦୁବିଦ୍ୟାକୁ ଅନୁଶୀଳନ କଲେ, ତୁମେ ଜାଣିପାରିବ ଯେ ଯିଏ ଏହି ବିଦ୍ୟାର ଅଧିକାରୀ, ସେ ନିଜର କାମନା ଓ ଅହଙ୍କାରର ଦାସ ବ୍ୟତୀତ କିଛି ବି ନୁହେଁ । ଚରିତ୍ର ନିର୍ମାଣରେ ଆଧ୍ୟାତ୍ମିକତା ସାହାଯ୍ୟ କରିଥାଏ ଯାହାକୁ ପ୍ରକୃତଶକ୍ତି କୁହାଯାଏ । ଏହା କାମନା ଓ ଲାଳସାକୁ ସମୂଳେ ବିନାଶ କରେ । ଏହି ସମ୍ମୋହନ ଶକ୍ତି ପଛରେ ଧାବମାନ ହେଲେ, ଜୀବନର କୌଣସି ସମସ୍ୟାର ସମାଧାନ ହୁଏନାହିଁ, ଏହା ଶକ୍ତିର ଅପଚୟ ଏବଂ ସ୍ୱାର୍ଥପରତା ରୂପରେ ପରିଣତ ହୋଇ ମନର ଅଧୋଃଗତି ଅଭିମୁଖେ ମନୁଷ୍ୟକୁ ବାଟ କଢ଼ାଇ ନିଏ । ଯାଦୁବିଦ୍ୟା ଯୋଗୁଁ ଆମ ଦେଶର ଆଜି ଏହି ଅଧଃପତନ । ସାଧାରଣ ଜ୍ଞାନ, ସାର୍ବଜନୀନ ଉତ୍ସାହ ଏବଂ ଦର୍ଶନ ଓ ଧର୍ମ ଆମକୁ ମନୁଷ୍ୟ କରି ଗଢ଼ି ତୋଳିପାରିବ । ସ୍ୱାମୀଜୀଙ୍କର ଉପଦେଶରେ ବ୍ୟକ୍ତିଜଣକ ଭିତରେ ସଚେତନା ସୃଷ୍ଟି କଲା ଏବଂ ଭବିଷ୍ୟତରେ ତାଙ୍କର ଉପଦେଶକୁ ଜୀବନର ବ୍ରତ ଭାବେ ଗ୍ରହଣ କରି ଅବଶିଷ୍ଟ ଜୀବନ ବିତାଇବେ ବୋଲି ସେ ପ୍ରତିଶ୍ରୁତି ଦେଲେ ।

ତ୍ରିଭାନ୍ଦ୍ରମରୁ ପ୍ରସ୍ଥାନ କରି ସ୍ୱାମୀଜୀ ନଗରକୋଏଲରେ ପହଞ୍ଚିଲେ । ନଗର କୋଏଲଠାରୁ କନ୍ୟାକୁମାରୀ ମାତ୍ର ବାର ମାଇଲ୍ । ତିନି ସମୁଦ୍ର ବଙ୍ଗୋପସାଗର, ଆରବ ସାଗର ଓ ଭାରତ ମହାସାଗରର ଏହିଠାରେ ମିଳନ ଘଟିଛି । ହିନ୍ଦୁମାନଙ୍କର ପବିତ୍ର ସ୍ଥାନ । ଏଠାକାର ଅଧିଷ୍ଠାତ୍ରୀ ଦେବୀଙ୍କର ନାମ କନ୍ୟାକୁମାରୀ । ଜଗଜ୍ଜନନୀ ଏକ କୁମାରୀ ରୂପରେ ଏଠାରେ ଅବତୀର୍ଣ୍ଣ ହୋଇ ତପସ୍ୟା କରିଥିଲେ ବୋଲି ଲୋକଙ୍କର ବିଶ୍ୱାସ । ସୁନ୍ଦର ମନ୍ଦିରରେ ମା'ଙ୍କର ଉପାସନା ବୈଦିକ ରୀତିରେ ଅନୁଷ୍ଠିତ ହୁଏ । ଦେବୀକନ୍ୟା ଏଠାରେ ଦେବଦେବ ମହାଦେବଙ୍କୁ ଲାଭ କରିବାର ବ୍ରତ ପାଳନ କରିଥିଲେ । ଦେବୀଙ୍କୁ ଦର୍ଶନ କରିବାର ଦୁର୍ବାର ଇଚ୍ଛା ସ୍ୱାମୀଜୀଙ୍କ ମନରେ ଜାଗ୍ରତ ହେଲା । ନଗରକୋଏଲରୁ ସ୍ୱାମୀଜୀ ପଦବ୍ରଜରେ କନ୍ୟାକୁମାରୀ ଯାତ୍ରା କଲେ । ବର୍ତ୍ତମାନ ସମଗ୍ର ଭାରତବର୍ଷ ପ୍ରାୟ ଭ୍ରମଣ କରିସାରିଲେଣି । ଅନେକ ଅନୁଭୂତିରେ ସେ ବର୍ତ୍ତମାନ ଜଣେ ରୂପାନ୍ତରିତ ଅନୁଭୂତି ସମ୍ପନ୍ନ ବ୍ୟକ୍ତି । ଭାରତମାତାଙ୍କର ମୁକୁଟ ସଦୃଶ ହିମାଳୟ ଦର୍ଶନ ସେ କରିଥିଲେ, ବର୍ତ୍ତମାନ ତାଙ୍କର ପଦ୍ମପାଦ ଯାହାକୁ ତିନିସମୁଦ୍ର ନିରନ୍ତର ଧୌତ କରୁଛନ୍ତି, ସେହି ପାଦଦ୍ୱୟକୁ ସେ ଦେଖିବେ ଏବଂ ଅଜାଡ଼ିଦେବେ ଭକ୍ତିର ସହସ୍ର ଫୁଲ ହାର ।

ସମଗ୍ର ଭାରତବର୍ଷ ପୂର୍ବରୁ ପଶ୍ଚିମ ଏବଂ ଉତ୍ତରରୁ ଦକ୍ଷିଣ ପରିଭ୍ରମଣ କରି ଉପନୀତ ହେଲେ ବହ୍ନିମାନ ବିଦ୍ରୋହୀ ବୀର ସ୍ୱାମୀ ବିବେକାନନ୍ଦ ଭାରତବର୍ଷର ଶେଷପ୍ରାନ୍ତ କନ୍ୟାକୁମାରୀରେ । ମାତା ପାର୍ବତୀଙ୍କର ପୀଠସ୍ଥଳୀ । ଦକ୍ଷିଣେଶ୍ୱର ସ୍ମୃତି ଜାଗ୍ରତ ହେଲା ତାଙ୍କ ମାନସପଟରେ । ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସ ଜଗଜ୍ଜନନୀ କାଳୀଙ୍କର ଉପାସନା ଦକ୍ଷିଣେଶ୍ୱରରେ ସମ୍ପାଦନ କରି ଭକ୍ତି ଓ ପ୍ରେମ ମାଧ୍ୟମରେ ମାତୃଶକ୍ତିର ଅବତରଣ କରାଇଲେ ଧରାପୃଷ୍ଠରେ । ତାଙ୍କୁ ବି ଚିହ୍ନାଇ ଦେଇଥିଲେ । ଦକ୍ଷିଣେଶ୍ୱର ମନ୍ଦିରରେ ମା କାଳୀଙ୍କର ଚିନ୍ମୟୀରୂପ ଦର୍ଶନ କରି ସେ ଜଗଜ୍ଜନନୀଙ୍କର ଅସ୍ତିତ୍ୱ ସ୍ୱୀକାର କରିଥିଲେ । ଆଜି ଉପନୀତ ମାତୃପୀଠ କନ୍ୟାକୁମାରୀରେ । ପରିବ୍ରାଜକ ଜୀବନର ସମସ୍ତ ଅନୁଭୂତିକୁ ମା କନ୍ୟାକୁମାରୀଙ୍କ ପାଦପଦ୍ମରେ ସମର୍ପି ଦେଲେ । ଅନ୍ତର ଖୋଲି ପ୍ରାର୍ଥନା କଲେ - ମା, କହିଦିଅ କିପରି ତୁମର କାର୍ଯ୍ୟ ମୁଁ ସମ୍ପାଦନ କରିବି ? ଲକ୍ଷ୍ୟ ବତାଇ ଦିଅ, ବତାଇ ଦିଅ ମା ସାରା ବିଶ୍ୱକୁ ମୁଁ କ'ଣ ଶିକ୍ଷା ଦେବି ?

Digitized by srujanika@gmail.com

- ୩ -

*ଭାରତର ଦୁର୍ଗତିର କାରଣ ହେଉଛି ଯେ ଯଥାର୍ଥ ଧର୍ମ କେବେ ବି ସାର୍ବଜନୀନ ଓ ସକ୍ରିୟ ଭାବରେ ଅନୁସରିତ ହୋଇନାହିଁ । ଧର୍ମକୁ ଯଥାର୍ଥରେ ଅନୁସରଣ କରି, ଜୀବନ ନିର୍ବାହରେ ଉକ୍ତ ଧର୍ମକୁ ରୂପାନ୍ତରିତ କରିଲେ କେଉଁ ଜାତିର କେବେ ବି ଅଧଃପତନ ହେବନାହିଁ । ସେଥିପାଇଁ ସେବା ଓ ତ୍ୟାଗ ଆବଶ୍ୟକ । ଯଦି ଜାତୀୟ ଜୀବନ ସେବା ଓ ତ୍ୟାଗର ମହାମନ୍ତ୍ରରେ ଦୀକ୍ଷିତ ହୋଇ ଅନୁସରିତ ହେବ, ତେବେ ସବୁକିଛି ଠିକ୍ ଭାବରେ ଗତିକରିବ ।*

ଏମନ୍ତ ଚିନ୍ତାଗ୍ରସ୍ତ ଥିବାବେଳେ, ସ୍ୱାମୀଜୀ ଚାହିଁଲେ ଭାରତ ମହାସାଗରର ଅଥଳ ଜଳରାଶିକୁ । ସମୁଦ୍ର କୂଳରୁ କିୟଦ୍ ଦୂରରେ ଭାରତର ଶେଷ ଶିଳାଖଣ୍ଡ ଅବସ୍ଥିତ । ସେଠାରୁ ଦୃଶ୍ୟମାନ ହେଉଥିଲା ମାତା କନ୍ୟାକୁମାରୀଙ୍କର ମନ୍ଦିରର କେତ । ଉତ୍ତାଙ୍ଗ ଲହରିମାଳା କୂଳରେ ପିଟି ହେଉଥିଲା । ଏକେତ ଶୀତ ଋତୁ । ଶୀତଳ ପବନରେ ସେ କମ୍ପମାନ ହେଉଥିଲେ ବାରମ୍ବାର । ତାଙ୍କ ପାଖରେ ପଇସାଟିଏ ନ ଥିଲା । ନାବିକ କେବେ ବି ବିନା ଅର୍ଥରେ ତାଙ୍କୁ ଶିଳାଖଣ୍ଡ ନିକଟରେ ପହଞ୍ଚାଇ ଦେବ ନାହିଁ । ସ୍ୱାମୀଜୀ ପୁନଶ୍ଚ ଚାହିଁଲେ ମହାସମୁଦ୍ରକୁ । ତୀକ୍ଷ୍ଣପଥର ଖଣ୍ଡ ଜଳଭିତରୁ ମୁଣ୍ଡଟେକି ଅନାଇଥିଲେ, ବଡ଼ ବଡ଼ ସାର୍କ ମାଛ ନିର୍ବିଘ୍ନରେ କରୁଥିଲେ ସନ୍ତରଣ । ମା'ଙ୍କୁ ଦର୍ଶନ କରିବାର ଆବେଗତା ତୀବ୍ର ହେଉଥିଲା ତାଙ୍କ ମନରେ । ଅଧିକ ଚିନ୍ତା ନ କରି ସାହସୀ ବିବେକାନନ୍ଦ ଜଳମଧକୁ ଲମ୍ଫ ପ୍ରଦାନ କଲେ । ନାବିକ ଗଣ ଚିତ୍କାର କରି ଉଠିଲେ, "ହେ ସନ୍ୟାସୀ, ରହିଯାଅ । ଭୟଙ୍କର ସାର୍କ ଓ ମୁନିଆ ପଥର ଖଣ୍ଡ ଲୁଚି ରହିଛି ଜଳରେ । ତୁମର ପ୍ରାଣ ଚାଲିଯିବ ।" ସ୍ୱାମୀଜୀ ଚିତ୍କାର ପ୍ରତି କର୍ଣ୍ଣପାତ ନ କରି ବୀରଦର୍ପରେ ଅଗାଧ ଜଳରାଶିରେ ସନ୍ତରଣ କରି ଅଗ୍ରସର ହେଉଥିଲେ ଶିଳାଖଣ୍ଡ ଅଭିମୁଖେ ।

ଭାରତବର୍ଷର ଶେଷ ଶିଳାଖଣ୍ଡରେ ପହଞ୍ଚିଗଲେ ସ୍ୱାମୀଜୀ । ମାତା କନ୍ୟାକୁମାରୀଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରି ନିବେଦନ କଲେ ହୃଦୟରେ ଜମାଟ ବାନ୍ଧିଥିବା ସମସ୍ତ କୋହ ଓ ବେଦନା । ସବୁ ବ୍ୟଥା ଓ ଦୁଃଖର ଜ୍ୱଳନ ମାତାଙ୍କର ପାଦପଦ୍ମରେ ସମର୍ପଣ କରି ଉପବିଷ୍ଟ ହେଲେ ସ୍ୱାମୀଜୀ । ଅପଲକ ନୟନରେ ମା'ଙ୍କୁ ଚାହୁଁ ଚାହୁଁ କ୍ରମଶଃ ମୁଦ୍ରିତ ହେଲା ତାଙ୍କର ଚକ୍ଷୁଯୁଗଳ । ସେ ହେଲେ ଧ୍ୟାନ ମଗ୍ନ । ଈଶ୍ୱର ସାକାର କିମ୍ବା ନିରାକାର ସିଦ୍ଧାନ୍ତ ଉପରେ ଆଜି କେନ୍ଦ୍ରିଭୂତ ନୁହେଁ ତାଙ୍କର ଧ୍ୟାନ । ତାଙ୍କର ଧ୍ୟାନର ବସ୍ତୁ ଥିଲା ଭାରତବର୍ଷ - ବହୁ ଧର୍ମର ଜନ୍ମସ୍ଥାନ-ମିଳନକ୍ଷେତ୍ର - ପୁଣ୍ୟତୀର୍ଥ ଭାରତବର୍ଷ । ଭାରତର ଗୌରବମୟ ଆଧ୍ୟାତ୍ମ ମହିମୋଜ୍ଜ୍ୱଳ ଅତୀତ । ବର୍ତ୍ତମାନର ଦୁଃଖ, ଦାରିଦ୍ର୍ୟ, ହୀନବୀର୍ଯ୍ୟ, ହୃତଗୌରବ, ହୃତାଧ୍ୟାତ୍ମ ସମ୍ପଦ ଏବଂ ଆପାତ - ତିମିରାଛନ୍ନ ଅନିଶ୍ଚିତ ଭବିଷ୍ୟତ । ଭାରତବର୍ଷର ଏତାଦୃଶ ସୁପ୍ତ ଗୌରବ କିପରି ପୁନର୍ବାର ସୁପ୍ରତିଷ୍ଠିତ ହେବ । ଯଦି ସମ୍ଭବ ହୁଏ, ତେବେ କିପରି ? ତାଙ୍କର ଦିବ୍ୟ ଦର୍ଶନରେ ଭାରତବର୍ଷର

Digitized by srujanika@gmail.com

ସମୁଜ୍ଜ୍ୱଳ ଅତୀତ ଓ ଭବିଷ୍ୟତ ଭାସିଉଠିଲା । ତାହା ସହ ଉଦ୍‌ଭାସିତ ହେଲା ହତଶ୍ରୀ ଭାରତର କରୁଣ ରୂପ । ଧର୍ମକ୍ଷେତ୍ର ଓ କର୍ମକ୍ଷେତ୍ର ଭାରତବର୍ଷ ଆଜି ଦୁର୍ଭିକ୍ଷ, ମହାମାରୀ, ଦୈନ୍ୟ, ଦୁଃଖ ଓ ଶୋକରେ ଜର୍ଜରିତ ।

ଗୋଟିଏ ପକ୍ଷରେ ପ୍ରବଳ ବିଳାସବ୍ୟସନ ମୋହରେ ଉନ୍ମତ୍ତ ଏବଂ କ୍ଷୀଣ ମଦ-ଗର୍ବିତ ଧନୀକ ଶ୍ରେଣୀ ଦରିଦ୍ରମାନଙ୍କୁ ନିଷ୍ପେଷିତ କରି ବିଳାସ ତୃଷ୍ଣାରେ ପରିତୃପ୍ତ । ଅନ୍ୟପକ୍ଷରେ ଅନାହାରରେ ଜୀର୍ଣ୍ଣଶୀର୍ଣ୍ଣ, ଛିନ୍ନବସନ, ଯୁଗ ଯୁଗାନ୍ତର ନିରାଶ ବ୍ୟଞ୍ଜିତ-ବଦନ ନରନାରୀ, ବାଳକ ବାଳିକାଗଣ ହା-ଅନ୍ନ, ହା- ରାବରେ ଗଗନ ବିଦୀର୍ଣ୍ଣରତ । ଉପଯୁକ୍ତ ଶିକ୍ଷା ଅଭାବରେ ନିଜ ଜାତି ପୁରୋହିତ ବର୍ଗର ହୃଦୟହୀନ ନିଷ୍ଠୁର ବ୍ୟବହାର ଯୋଗୁଁ ସନାତନ ଧର୍ମ ପ୍ରତି ବୀତସ୍ପୃହ । କେବଳ ତାହା ନୁହଁ, ହଜାର ହଜାର ହିନ୍ଦୁ ନିଜ ଧର୍ମକୁ ଅପରାଧୀ ମନେକରି ଅନ୍ୟଧର୍ମ ଗ୍ରହଣ କରିବାକୁ ଆଜି ଉଦ୍ୟତ । ଏତାଦୃଶ ନୈରାଶ୍ୟ ମଧ୍ୟରେ ବି ସ୍ୱାମୀଜୀ ଦେଖିଲେ ଭାରତୀୟ ଧର୍ମର ଭବିଷ୍ୟତ ସମ୍ଭାବନାପୂର୍ଣ୍ଣ । ଭାରତର ମେରୁଦଣ୍ଡ ହିଁ ଧର୍ମ ।

ଶାନ୍ତ ସମାହିତ ହୃଦୟ ଭିତରୁ ସେ ଶୁଣିଲେ, - ଯେଉଁ ପ୍ରଗାଢ଼ ଆଧ୍ୟାତ୍ମିକ ଉପଲବ୍ଧି ପ୍ରଭାବରେ ଭାରତବର୍ଷ ଏକଦା ବିଭିନ୍ନ ସଂସ୍କୃତି ଓ ଧର୍ମର ଜନ୍ମଭୂମି ଓ ମିଳନ - ସ୍ଥଳୀରେ ପରିଣତ ହୋଇଥିଲା, ସେହି ଏକମାତ୍ର ଉପଲବ୍ଧି ବଳରେ ପୁନର୍ଭ୍ୟୁଦ୍‌ଥାନ ଓ ପୁନଃ ପ୍ରତିଷ୍ଠା ସମ୍ଭବପର ହେବ । ଭାରତର ଦୁର୍ଗତିର କାରଣ ହେଉଛି ଯେ ଯଥାର୍ଥ ଧର୍ମ କେବେ ବି ସାର୍ବଜନୀନ ଓ ସକ୍ରିୟ ଭାବରେ ଅନୁସରିତ ହୋଇନାହିଁ । ଧର୍ମକୁ ଯଥାର୍ଥରେ ଅନୁସରଣ କରି, ଜୀବନ ନିର୍ବାହରେ ଉକ୍ତ ଧର୍ମକୁ ରୂପାନ୍ତରିତ କରିଲେ କେଉଁ ଜାତିର କେବେ ବି ଅଧଃପତନ ହେବନାହିଁ । ସେଥିପାଇଁ ସେବା ଓ ତ୍ୟାଗ ଆବଶ୍ୟକ । ଯଦି ଜାତୀୟ ଜୀବନ ସେବା ଓ ତ୍ୟାଗର ମହାମନ୍ତ୍ରରେ ଦୀକ୍ଷିତ ହୋଇ ଅନୁସରିତ ହେବ, ତେବେ ସବୁକିଛି ଠିକ୍ ଭାବରେ ଗତିକରିବ । ତ୍ୟାଗ ଭାରତବର୍ଷରେ ସର୍ବଦା ଏକ ଆଲୋକ ସୃଷ୍ଟିକାରୀ ଶକ୍ତି ଭାବରେ ରହିଆସିଛି । ନିଷ୍ପେଷିତ, ଅତ୍ୟାଚାରିତ, ଶୋଷିତ ଓ ପତିତ ଜନତାଙ୍କୁ ଏହି ଜଟିଳ ପରିସ୍ଥିତିରେ ତ୍ୟାଗୀ ମାନେହିଁ ଉଦ୍ଧାର କରିପାରିବେ ।

ସ୍ୱାମୀଜୀଙ୍କ ଚିତ୍ତାକାଶରେ ଉଦ୍‌ଭାସିତ ହେଲା ସମଗ୍ର ଭାରତବାସୀଙ୍କର ଉର୍ଦ୍ଧାୟନର ଉପାଦାନ ଓ କୌଶଳ । ସେ ଜଳଜଳ ଦେଖିପାରିଲେ ତାଙ୍କର ଗୁରୁପ୍ରଦତ୍ତ ଜୀବନବ୍ରତ କିଭଳି ଭାବେ ଉଦ୍‌ଯାପିତ ହେବ । ମାତା କନ୍ୟାକୁମାରୀଙ୍କ କରୁଣା ଝରିପଡ଼ିଲା । ବ୍ରହ୍ମମୟୀ ଜାଗ୍ରତ ହେଲେ ତାଙ୍କ ହୃଦୟପଦ୍ମରେ । ସ୍ୱାମୀଜୀ ଇତ୍ୟବସରରେ ବୁଝିପାରିଲେ ଶ୍ରୀରାମକୃଷ୍ଣଙ୍କର ଏକ କଥା ପ୍ରସଙ୍ଗର ବାଣୀକୁ - "ନରେନ୍, ଖାଲି ପେଟରେ ଧର୍ମ ହୁଏନା । ସମସ୍ତଙ୍କ ପାଇଁ ମୁଠେ ଦାନା ଓ ଖଣ୍ଡେ କନା ଦରକାର । ସେଥିପାଇଁ ମଣିଷ ତିଆରି କରିବାକୁ ପଡ଼ିବ ।" ମନୁଷ୍ୟ ଭିତରେ ଲୁକ୍‌କାୟିତ ଦିବ୍ୟତ୍ୱକୁ ପ୍ରଜ୍ୱଳିତ କରିବାକୁ ପଡ଼ିବ । କେବଳ ତ୍ୟାଗ ଓ ସେବା ଦ୍ୱାରା ମନୁଷ୍ୟ ଭିତରେ ଦେବତ୍ତ୍ୱ ପ୍ରକାଶିତ ହେବ । ଏହି ଦୁଇଟିର ଅଭାବ ଅନ୍ତର୍ନିହିତ ଦେବତ୍ୱକୁ ବିକଶିତ କରିପାରିବ ନାହିଁ । ଉପଯୁକ୍ତ ଶିକ୍ଷା ଓ ପ୍ରଶିକ୍ଷଣ ମନୁଷ୍ୟ ଭିତରେ ଉଦ୍ରେକ କରିବ ସେବା ଓ ତ୍ୟାଗ ମନୋଭାବ ।

Digitized by srujanika@gmail.com

ଶ୍ରୀରାମକୃଷ୍ଣଙ୍କର "ନରେନ୍ଦ୍ର ଶିକ୍ଷା ଦେବ" ବୋଲି ଯେଉଁ ଲିଖିତ ଆଦେଶନାମା ପାଇଥିଲେ, ତାହା ସେ ବର୍ତ୍ତମାନ ବୁଝିପାରିଲେ । ଶିବ ଜ୍ଞାନେ ଜୀବ ସେବାର ପ୍ରକୃତ ରହସ୍ୟ ସମଗ୍ର ମାନବ ନିକଟରେ ପହଞ୍ଚାଇବାକୁ ପଡ଼ିବ । ବିଶେଷତଃ ଭାରତବାସୀଙ୍କ ପାଖରେ । ମେଷ ପଲରେ ବଢ଼ିଥିବା ସିଂହ ଶାବକକୁ ନିଜ ସ୍ୱରୂପ ଚିହ୍ନାଇବା ଭଳି ଭାରତୀୟଙ୍କୁ ଏହି ରହସ୍ୟ ବୁଝାଇବାକୁ ପଡ଼ିବ । ତେବେ ଯାଇ ଭାରତର ସମଗ୍ର ଜନତା ମେଷପଲ ଆବରଣରୁ ସିଂହନାଦ କରି ଉଠିବ । ସ୍ୱାମୀ ବିବେକାନନ୍ଦ ଚକ୍ଷୁ ଖୋଲିଲେ । ମୁଖମଣ୍ଡଳ ଜ୍ୟୋତିର୍ମୟ ଓ ଖେଳୁଥିଲା ଆନନ୍ଦର ଢେଉ । ହୃଦୟ ଅମାପ ଶକ୍ତିରେ ପରିପୂର୍ଣ୍ଣ । ମାତା କନ୍ୟାକୁମାରୀଙ୍କୁ ପୁନଶ୍ଚ ପ୍ରଣାମ ଜଣାଇ, ବିଦାୟ ନେଲେ ଶେଷ ଶିଳାଖଣ୍ଡରୁ ।

ଭାରତ ଭୂଖଣ୍ଡରେ ପୁନଶ୍ଚ ପାଦ ଦେବା ବେଳକୁ ସ୍ୱାମୀଜୀ ପୂର୍ବଭଳି ନୈରାଶ୍ୟବାଦୀ ସନ୍ନ୍ୟାସୀ ନ ଥିଲେ । ଦୀପ୍ତିମନ୍ତ ଆଶ୍ଚର୍ଯ୍ୟ ପୁରୁଷ - ଭାରତ ଆତ୍ମା ସ୍ୱାମୀ ବିବେକାନନ୍ଦରେ ସମ୍ପୂର୍ଣ୍ଣ ରୂପାନ୍ତରିତ । ତାଙ୍କ ଭିତରେ 'ବିଲେ'ର ଶିଶୁ ସୁଲଭତା, ନରେନ୍ଦ୍ରର ସଂଶୟାଚ୍ଛନ୍ନ ହୃଦୟ ଏବଂ ସ୍ୱାମୀ ବିବିଦିଶାନନ୍ଦ ଓ ସ୍ୱାମୀ ସଚ୍ଚିଦାନନ୍ଦ ଭାବେ ପରିଚିତ ପରିବ୍ରାଜକ ଜୀବନର ଅନୁସନ୍ଧିତ୍ସୁ ମନ ବିଲୁପ୍ତ ଚିରଦିନ ପାଇଁ । ଅନ୍ତିମ ମୁହୂର୍ତ୍ତରେ ଶ୍ରୀରାମକୃଷ୍ଣ ପରମହଂସ ଯେଉଁ ସର୍ବସ୍ୱ ଶକ୍ତି ଦାନ କରି ଫକିର ହୋଇଯାଇଥିଲେ, ସେହି ମହାଶକ୍ତି ସମ୍ପୂର୍ଣ୍ଣ କବଳିତ କରିଛି ବର୍ତ୍ତମାନ ସ୍ୱାମୀ ବିବେକାନନ୍ଦଙ୍କୁ । ସେ ବର୍ତ୍ତମାନ ଆଉ ନିଜର ହୋଇ ରହିନାହାନ୍ତି । ତାଙ୍କୁ ବର୍ତ୍ତମାନ କେହି ବି କସ୍ମିନକାଳେ ପ୍ରଭାବିତ କୌଣସି ଉପାୟରେ କରିପାରିବେ ନାହିଁ । ଏଠାରେ ସ୍ମରଣଯୋଗ୍ୟ ଯେ ପରିବ୍ରାଜକ ଜୀବନକାଳରେ ଗାଜିପୁରର ସିଦ୍ଧ ସନ୍ନ୍ୟାସୀ ପାଓ୍ୱାହାରୀ ବାବାଙ୍କର ଅଦ୍ଭୁତ ତ୍ୟାଗ ଅବଲୋକନ କରି ହୋଇଥିଲେ ପ୍ରଭାବିତ । ସେ ତାଙ୍କ ଠାରୁ ଦୀକ୍ଷା ଗ୍ରହଣ କରିବାର ସଂକଳ୍ପ ନେଲାରୁ ଦେଖିଲେ ଶ୍ରୀରାମକୃଷ୍ଣଙ୍କୁ ସ୍ୱପ୍ନରେ । ଶ୍ରୀରାମକୃଷ୍ଣ ତାଙ୍କୁ ସ୍ମରଣ କରାଇ ଦେଇଥିଲେ "ନରେନ୍, ମୋ ବ୍ୟତୀତ ତୁ କାହାର ହୋଇପାରିବୁ ନାହିଁ । ତୋର ଚାବିକାଠି ପରା ମୋ ହାତରେ ।" ଭାବ ଉନ୍ମାଦନାରେ ବଶବର୍ତ୍ତୀ ହୋଇ ଯାହା କରିବାକୁ ଯାଉଥିଲେ, ତାହା କରି ପାରି ନ ଥିଲେ । ଆଜି ସେ ଖୁବ୍ ଶାନ୍ତ । ନୂଆ ରୂପ, ନୂଆ ମନ । ଶ୍ରୀରାମକୃଷ୍ଣଙ୍କର ବାକ୍ୟଯନ୍ତ୍ର ମାତ୍ର ।

ସ୍ୱାମୀଜୀ ଏହି ଶିଳାଖଣ୍ଡ ଉପରେ ତିନି ରାତି ବିତାଇ ଥିଲେ । ବିଦେଶ ଗମନର ଯେଉଁ ଇଚ୍ଛା ଭିତରେ ଉଦ୍ରେକ ହୋଇଥିଲା, ତାହା ଏହିଠାରେ ଦୃଢ଼ିଭୂତ ହେଲା । ଧ୍ୟାନବସ୍ଥାରେ ସେ ଏକ ଅଲୌକିକ ଘଟଣା ଦର୍ଶନ କଲେ । ଭାରତ ମହାସାଗରରେ ଅଥଳ ଜଳରାଶି ଉପରେ ଶ୍ରୀରାମକୃଷ୍ଣ ପରମହଂସ ଜ୍ୟୋତିର୍ମୟ ରୂପରେ ଚାଲି ଯାଉଥିଲେ ଏବଂ ହାତଠାରି ତାଙ୍କ ପଶ୍ଚାତରେ ଗମନ କରିବାକୁ ନରେନ୍ଦ୍ରଙ୍କୁ ନିର୍ଦ୍ଦେଶ ଦେଉଥିଲେ । ଏତାଦୃଶ ଦିବ୍ୟଦର୍ଶନ ହେତୁ ସ୍ୱାମୀଜୀ ନିଶ୍ଚିତ ହୋଇଥିଲେ ଯେ ଗୁରୁଦେବଙ୍କର କାର୍ଯ୍ୟ ନିମନ୍ତେ ତାଙ୍କୁ ବିଦେଶ ଯିବାକୁ ପଡ଼ିବ । ସ୍ୱାମୀଜୀ ଏହି ଶିଳାଖଣ୍ଡରେ ୧୮୯୨ ୨୪ ରୁ ୨୬ ତାରିଖ ପର୍ଯ୍ୟନ୍ତ ଧ୍ୟାନସ୍ଥ ଥିବାର ଅନୁମାନ କରାଯାଏ ।



Digitized by srujanika@gmail.com

॥ ସତର ॥

# ରାମେଶ୍ୱରମ୍, ମାନ୍ଦ୍ରାଜ ଓ ହାଇଦ୍ରାବାଦ ଅଭିମୁଖେ ଯାତ୍ରା

ରାମେଶ୍ୱରମ୍ ଅଭିମୁଖେ ସ୍ୱାମୀଜୀ ପଦବ୍ରଜରେ ଯାତ୍ରା ଆରମ୍ଭ କଲେ । ମଦୁରାଇରେ ପହଞ୍ଚି ରାମନାଡ଼ର ରାଜା ଭାସ୍କର ସେତୁପତିଙ୍କୁ ସାକ୍ଷାତ କଲେ । ଗରିବମାନଙ୍କର ଶିକ୍ଷା, କୃଷିର ବିକାଶ ଏବଂ ସର୍ବୋପରି ଭାରତର ସମସ୍ୟା ଓ ସମ୍ଭାବ୍ୟତା ସମ୍ବନ୍ଧରେସେ ଆଲୋଚନା କଲେ । ସ୍ୱାମୀଜୀଙ୍କର ପ୍ରଚଣ୍ଡ ଜ୍ଞାନ ଓ ଅନୁଭୂତିରେ ବିମୁଗ୍ଧ ହୋଇ ଆମେରିକାରେ ଅନୁଷ୍ଠିତ ହେବାକୁ ଥିବା ବିଶ୍ୱ ଧର୍ମ ମହାସମ୍ମିଳନୀର ଭାରତକୁ ପ୍ରତିନିଧିତ୍ୱ କରିବା ପାଇଁ ତାଙ୍କୁ ସେ ଅନୁରୋଧ କଲେ, କେବଳ ଅନୁରୋଧ ନୁହେଁ, ସେଥିପାଇଁ ଖର୍ଚ୍ଚ ଭାର ବହନ କରିବାକୁ ସେ ପ୍ରସ୍ତାବ ଦେଲେ । ରାଜାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ସ୍ୱାମୀଜୀଙ୍କ ସମ ବ୍ୟକ୍ତିତ୍ୱ ଭାରତର ଆଧାତ୍ମିକ ଜ୍ଞାନର ଭଣ୍ଡାରକୁ ବିଶ୍ୱ ଦରବାରରେ ଉପସ୍ଥାପନ କରିବା ପାଇଁ ଜଣେ ଉତ୍ତମ ବ୍ୟକ୍ତି । ସ୍ୱାମୀଜୀ ତାଙ୍କର ପ୍ରସ୍ତାବ ସମ୍ବନ୍ଧରେ ରାଜାଙ୍କୁ ଏତିକି ମାତ୍ର କହିଥିଲେ ଯେ ଠିକଣା ସମୟରେ ସେ ତାଙ୍କର ନିଷ୍ପତ୍ତି ଜଣାଇବେ । ରାଜାଙ୍କୁ ଆଶ୍ୱାସନା ଦେଇ ସ୍ୱାମୀଜୀ ରାମେଶ୍ୱରମ୍ ଅଭିମୁଖେ ଅଗ୍ରସର ହେଲେ । ରାମେଶ୍ୱରମ୍ ଓ ଧାନୁସ୍କୋଡ଼ି ସ୍ଥାନ ରାଜା ରାମନାଡ଼ ରାଜ୍ୟର ଅଂଶ ହୋଇଥିବାରୁ, ତାଙ୍କ ରହିବାର ବନ୍ଦୋବସ୍ତ ରାଜା ନିଜେ କରାଇ ଦେଇଥିଲେ ।

ରାମେଶ୍ୱରମ୍‌ରେ ପହଞ୍ଚି ତ୍ରେତୟା ଯୁଗରେ ଶ୍ରୀରାମଙ୍କ ଦ୍ୱାରା ପ୍ରତିଷ୍ଠିତ ଶିବଙ୍କୁ ଦର୍ଶନ କଲେ । ଚତୁଃଧାମ ମଧ୍ୟରୁ ରାମେଶ୍ୱରମ୍ ଅନ୍ୟତମ । ପଶ୍ଚିମ ଭାରତ ଭ୍ରମଣ ବେଳେ ଦ୍ୱାରକା ଭ୍ରମଣ କରିସାରିଥିଲେ । କିନ୍ତୁ ହିମାଳୟ ଭ୍ରମଣ କାଳରେ ବଦ୍ରିନାଥ ଧାମ ଦର୍ଶନ ନ କରିପାରି ଫେରି ଆସିଥିଲେ ଋଷିକେଶକୁ । ପୁରୀଧାମକୁ ଯିବା ନିମନ୍ତେ ପ୍ରଥମେ ସେ ପୂର୍ବଭାରତ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ ହେଁ, ବ୍ୟକ୍ତିଗତ ସମସ୍ୟା ଯୋଗୁଁ ସେ ପୁରୀ ଯାଇପାରି ନ ଥିଲେ ।

**୧୮୯୩** ମସିହା ପ୍ରାରମ୍ଭ କାଳରେ ସ୍ୱାମୀଜୀ ହାତରେ ଯଷ୍ଟି ଓ କମଣ୍ଡଳୁ ଧରି ରାମେଶ୍ୱରମ୍‌ରୁ ମାନ୍ଦ୍ରାଜ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ବର୍ତ୍ତମାନ ତାଙ୍କର ବୟସ ଏକତିରିଶ । ମାନ୍ଦ୍ରାଜ ଯିବା ବାଟରେ ସ୍ୱାମୀଜୀ ପଣ୍ଡିଚେରୀରେ କିଛିଦିନ ରହିଥିଲେ । ଏଠାରେ ଜଣେ ଧର୍ମାନ୍ଧ ବ୍ରାହ୍ମଣ ପଣ୍ଡିତଙ୍କ ସହ ହିନ୍ଦୁଧର୍ମ ଓ ଏହାର ସଂସ୍କାର ସମ୍ବନ୍ଧରେ ଉତ୍ତେଜିତ ବିତର୍କ ହୋଇଥିଲା । ସ୍ୱାମୀଜୀଙ୍କ ପ୍ରଗତିଶୀଳ ଚିନ୍ତାଧାରାକୁ କଠୋର ସମାଲୋଚନା କରି ହିନ୍ଦୁମାନଙ୍କର ଦରିଆପାରି ବିଦେଶ ଯାତ୍ରାକୁ ମ୍ଳେଛମାନଙ୍କର ଯାତ୍ରା ବୋଲି କହିବାକୁ ସେ ପଶ୍ଚାତପଦ ହେଲେ ନାହିଁ । ସ୍ୱାମୀଜୀ ଗର୍ଜିଉଠି

*Digitized by srujanika@gmail.com*

ସେଦିନ କହିଥିଲେ, ''ପଣ୍ଡିତ ମହାଶୟ, ଆପଣ କ'ଣ କହୁଛନ୍ତି ? ପ୍ରତ୍ୟେକ ଶିକ୍ଷିତ ହିନ୍ଦୁ ହିନ୍ଦୁଧର୍ମର ବିଷୟବସ୍ତୁକୁ ପରୀକ୍ଷା କରିବାର ଦାୟିତ୍ୱ ବହନ କରିବା ଉଚିତ । ଅତୀତର ସୀମିତ ନିଗଡ଼ ମଧ୍ୟରୁ ସେଥିପାଇଁ ଆମକୁ ବାହାରିବାକୁ ହେବ ଏବଂ ବର୍ତ୍ତମାନ ଯେଉଁ ଦିଗକୁ ବିଶ୍ୱ ପ୍ରଗତି ପଥରେ ଅଗ୍ରସର ହେଉଛି, ସେହିପଥ ଅଭିମୁଖେ ଆମର ଦୃଷ୍ଟି ପ୍ରସାରିତ ହେବା ଉଚିତ । ଆମର ସାମାଜିକ ଜୀବନଯାତ୍ରାରେ ଯେଉଁସବୁ ପ୍ରଥା ଓ ପରମ୍ପରା ପ୍ରତିବନ୍ଧ ସୃଷ୍ଟି କରୁଛି କିମ୍ବା ଆମର ଦାର୍ଶନିକ ଦୃଷ୍ଟିକୋଣକୁ ବିଶୃଙ୍ଖଳିତ କରୁଛି, ବର୍ତ୍ତମାନ ଉପଯୁକ୍ତ ସମୟ ଉପସ୍ଥିତ, ସେହିସବୁ ପ୍ରତ୍ୟାଖ୍ୟାନ କରି ଗୋଟିଏ ପାଦ ଆଗକୁ ଅଗ୍ରସର ହେବାକୁ ପଡ଼ିବ ।

ନିଷ୍ପେଷିତ ଓ ପତିତ ଜନତାଙ୍କର ଉତ୍‌ଥାନ ସମ୍ବନ୍ଧରେ ସ୍ୱାମୀଜୀ କହିଲେ, ''ସମୟ ଆଗତପ୍ରାୟ, ଶୂଦ୍ରମାନେ ଜାଗରିତ ହେବେ ଏବଂ ସେମାନଙ୍କର ଅଧିକାର ଦାବି କରିବେ । ବର୍ତ୍ତମାନ ପ୍ରତ୍ୟେକ ଶିକ୍ଷିତ ଭାରତୀୟଙ୍କ କର୍ତ୍ତବ୍ୟ ଓ ଦାୟିତ୍ୱ ଯେ ଶିକ୍ଷା ପ୍ରଦାନ, ସାମାଜିକ ନ୍ୟାୟ ଓ ସମାନତା ଆଦର୍ଶର ପ୍ରସାର, ପୁରୋହିତ ଓ ବ୍ରାହ୍ମଣଙ୍କର ଅତ୍ୟାଚାରର ମୂଳୋତ୍ପାଟନ ଓ ଜାତିପ୍ରଥା ବିଲୋପ ମାଧ୍ୟମରେ ଅଶିକ୍ଷିତ, ଅତ୍ୟାଚାରିତ ଓ ନିଷ୍ପେଷିତ ଜାତିକୁ ଉଚ୍ଚସ୍ତରକୁ ଉନ୍ନୀତ କରାଇବାକୁ ପଡ଼ିବ ।'' ଅହଙ୍କାରୀ ପଣ୍ଡିତ କାହୁଁବା ବୁଝିପାରିବ ତେଜସ୍ୱୀ ସନ୍ୟାସୀଙ୍କର ପ୍ରଗତିଶୀଳ ବକ୍ତବ୍ୟ । ସେ ଅପମାନସୂଚକ ଭାଷାରେ କହିଲେ, ''ତୁମ ଭଳି ଜଣେ ବୁଲାଟିଆ ସନ୍ୟାସୀକୁ କ'ଣ ବା ଜଣା ? ତୁମେ ବାଳକ । କଦାପି ହେବ ନାହିଁ, କଦାପି ହେବନାହିଁ ।'' ସ୍ୱାମୀଜୀ ଭଲଭାବରେ ଜାଣିଛନ୍ତି ଯେ ଏହି ଧର୍ମାନ୍ଧ ବ୍ରାହ୍ମଣ ପଣ୍ଡିତଙ୍କ ଭଳି ଲକ୍ଷ ଲକ୍ଷ ପଣ୍ଡିତଙ୍କର ସଙ୍କୁଚିତ ଦୃଷ୍ଟିକୋଣ ଯୋଗୁଁ ଆଜି ଭାରତବର୍ଷର ଅବସ୍ଥା ରସାତଳଗାମୀ ।

- ୧ -

*ଏକ ସାଂଧ ଭ୍ରମଣ କାଳରେ, ଅର୍ଦ୍ଧ-କ୍ଷୁଧିତ କୈବର୍ତ୍ତ ସନ୍ତାନଗଣ ଆଣ୍ଠୁଏ ପାଣିରେ ସେମାନଙ୍କର ମାତୃଗଣଙ୍କ ସହ କାର୍ଯ୍ୟ କରୁଥିବାର କରୁଣଦୃଶ୍ୟ ଅବଲୋକନ କରି ସ୍ୱାମୀଜୀଙ୍କ ହୃଦୟ ବିଷାଦଗ୍ରସ୍ତ ହୋଇଗଲା । ଅଶ୍ରୁଭରା ଚକ୍ଷୁ ଓ ବାଷ୍ପରୁଦ୍ଧ କଣ୍ଠରେ ଚିତ୍କାର କରି କହିଉଠିଲେ, ''ହେ ଭଗବାନ, ଆପଣ କାହିଁକି ଏଭଳି ଦୁଃଖୀରଙ୍କିଙ୍କୁ ସୃଷ୍ଟି କରିଛନ୍ତି ? ଏତାଦୃଶ କରୁଣ ଦୃଶ୍ୟ ଦେଖିପାରିବି ନାହିଁ । ହେ ଭଗବାନ, ଏମାନଙ୍କର ଦୁଃଖଦୁର୍ଦ୍ଦଶା କେତେଦିନ ? ପ୍ରଭୁ କେତେଦିନ ?''*

ସ୍ୱାମୀଜୀ ମାଦ୍ରାଜରେ ଉପନୀତ ହେବାରୁ ଚାରିଆଡ଼େ ପ୍ରଚାର ହୋଇଥିଲା ଯେ ଜଣେ ବିଚକ୍ଷଣ ବୁଦ୍ଧିସମ୍ପନ୍ନ ଇଂରାଜୀ କହୁଥିବା ସନ୍ୟାସୀ ମାଦ୍ରାଜରେ ଅବସ୍ଥାନ କରୁଛନ୍ତି । ବହୁ ଶିକ୍ଷିତ ପ୍ରଗତିଶୀଳ ବ୍ୟକ୍ତି ସ୍ୱାମୀଜୀଙ୍କୁ ଦର୍ଶନ କରିବା ନିମନ୍ତେ ସେଠାରେ ପହଞ୍ଚିଲେ । ଶ୍ରୀ ଏମ୍.ସି. ଆଲସିଙ୍ଗା, ଶ୍ରୀ ଜି. ଭେଙ୍କେଟରଙ୍ଗା ରାଓ, ଶ୍ରୀ ଡି.ଆର.ବାଲାଜି ରାଓଙ୍କ ଭଳି ଶିକ୍ଷିତ ବ୍ୟକ୍ତି

Digitized by srujanika@gmail.com

ଯେଉଁମାନେ ପରବର୍ତ୍ତୀ କାଳରେ ସ୍ୱାମୀଜୀଙ୍କର ଅନ୍ତରଙ୍ଗ ଭକ୍ତ ହୋଇପାରିଥିଲେ, ସେମାନେ ଇତ୍ୟବସରରେ ସ୍ୱାମୀଜୀଙ୍କର ସଂସ୍ପର୍ଶରେ ଆସିଥିଲେ । ମାନ୍ଦ୍ରାଜସ୍ଥିତ ମନ୍ମଥନାଥ ଭଟ୍ଟାଚାର୍ଯ୍ୟଙ୍କ ବାସ ଭବନରେ ସ୍ୱାମୀଜୀ ରହିଥିଲେ । ବହୁ କଲେଜ ଛାତ୍ର ସ୍ୱାମୀଜୀଙ୍କୁ ସାକ୍ଷାତ କରି ଧର୍ମ, ସାହିତ୍ୟ, ବିଜ୍ଞାନ, ଦର୍ଶନ ସମ୍ବନ୍ଧରେ ନାନାପ୍ରକାର ପ୍ରଶ୍ନ ପଚାରୁଥିଲେ । ଏକଦା ଭି. ସୁବ୍ରମଣ୍ୟ ଆୟାର ଦଳେ କଲେଜ ଛାତ୍ରଙ୍କୁ ସାଙ୍ଗରେ ଧରି ଭଟ୍ଟାଚାର୍ଯ୍ୟଙ୍କ ବାସଭବନରେ ପହଞ୍ଚିଲେ । ସେତେବେଳେ ସ୍ୱାମୀଜୀ ଅର୍ଦ୍ଧୋନ୍ମିଳିତ ଚକ୍ଷୁ ଓ ଗଭୀର ଭାବନାରେ ବୁଡି ଧୀରେ ଧୀରେ ହୁକ୍କା ଟାଣୁଥିଲେ । ସେମାନଙ୍କ ଭିତରୁ ଜଣେ ଛାତ୍ର ପ୍ରଶ୍ନ କଲେ, ''ସ୍ୱାମୀଜୀ ମହାଶୟ, ଈଶ୍ୱର କ'ଣ ?

ସ୍ୱାମୀଜୀ ଆଖି ଉଠାଇ ଚାହିଁଲେ ଏବଂ କହିଲେ, ''ଠିକ୍‌ଅଛି, କହିଲ ବନ୍ଧୁ ଶକ୍ତି କ'ଣ ? ସମସ୍ତେ ନୀରବ ରହିଲେ । ସ୍ୱାମୀଜୀ ସେମାନଙ୍କର ନୀରବତା ଲକ୍ଷ୍ୟକରି କହି ଉଠିଲେ, ''ଏହା ପୁଣି କ'ଣ ? ଶକ୍ତି ଭଳି ଏକ ସହଜ ଶବ୍ଦର ବର୍ଣ୍ଣନା ତୁମେ କରି ପାରୁନାହିଁ ? ପ୍ରତିଦିନ ତୁମ ଜୀବନରେ ତାହା ବ୍ୟବହାର କରୁଛ, ତଥାପି କହିପାରୁନ ? ତେବେ ମୋତେ ଈଶ୍ୱରଙ୍କୁ ବର୍ଣ୍ଣନା କରିବା ପାଇଁ ପ୍ରଶ୍ନ କରୁଛ ?'' ଛାତ୍ରମାନେ ଆଉ ବା କ'ଣ ତାଙ୍କୁ ପଚାରିଥା'ନ୍ତେ । ସେମାନେ ସେଠାରୁ ଧୀରେ ପ୍ରସ୍ଥାନ କଲେ । କିନ୍ତୁ ଯୁବକ ସୁବ୍ରମଣ୍ୟ ଆୟାର ସ୍ୱାମୀଜୀଙ୍କର ଉତ୍ତରରେ ବିଶେଷ ଖୁସି ହେଲେ । ସେ ସ୍ୱାମୀଜୀଙ୍କ ପାଖରେ ବସି ରହିଲେ । ପରବର୍ତ୍ତୀ ମୁହୂର୍ତ୍ତରେ ସେ ସ୍ୱାମୀଜୀ ଓ ତାଙ୍କର ଶିଷ୍ୟଗଣଙ୍କ ସହ ସମୁଦ୍ର ତଟରେ ଭ୍ରମଣ କରିବା ପାଇଁ ଯାଇଥିଲେ । ସମୁଦ୍ର କୂଳରେ ପହଞ୍ଚି ସ୍ୱାମୀଜୀ ସୁବ୍ରମଣ୍ୟ ଆୟାରଙ୍କୁ ଉପହାସରେ କହିଲେ, ''ବାଳକ, ତୁମେ କୁସ୍ତିକସରତ କର ? ଆୟାର ''ହଁ'' କହିବାରୁ ସ୍ୱାମୀଜୀ ତାଙ୍କ ସହ କୁସ୍ତି କସରତ କରିବାକୁ କହିଲେ । ସେହିଦିନଠାରୁ ସୁବ୍ରମଣ୍ୟ ଆୟାର ସ୍ୱାମୀଜୀଙ୍କୁ 'ପହଲ୍‌ବାନ ସ୍ୱାମୀ' ବୋଲି ସମ୍ବୋଧନ କରିବାକୁ ଲାଗିଲେ ।

ମାନ୍ଦ୍ରାଜ ରହଣି କାଳରେ ତାଙ୍କର ମନ ଓ ଚିନ୍ତା କେତେକ ଦୁଷ୍ଟ ଶକ୍ତିର ତରଙ୍ଗ ଦ୍ୱାରା ବାରମ୍ବାର ବାଧାପ୍ରାପ୍ତ ହେଉଛି ବୋଲି ସେ ଅନୁଭବ କଲେ । ଅଶରୀରୀ ଦୁଷ୍ଟ ଶକ୍ତିମାନେ ତାଙ୍କୁ ନାନାପ୍ରକାର କଥା କହି ତାଙ୍କର ମନକୁ ବିଭ୍ରମ ଓ ବିବ୍ରତ କରୁଥିଲେ । କିନ୍ତୁ ସେମାନଙ୍କର କଥାଗୁଡ଼ିକ ଯେ ସମ୍ପୂର୍ଣ୍ଣ ମିଥ୍ୟା ତାହା ସ୍ୱାମୀଜୀ ପରେ ଜାଣିପାରିଲେ । ସ୍ୱାମୀଜୀଙ୍କୁ ସେମାନେ ବାରମ୍ବାର ବିବ୍ରତ କରୁଥିବାରୁ, ଏକଦା ସ୍ୱାମୀଜୀ ସେମାନଙ୍କ ସହ କଥାବାର୍ତ୍ତା କରି ଜାଣିଲେ ଯେ ଉକ୍ତ ଅଶରୀରୀ ଦୁଷ୍ଟଶକ୍ତିମାନେ ଯନ୍ତ୍ରଣାରେ ଜର୍ଜରିତ । ସ୍ୱାମୀଜୀ ସେମାନଙ୍କର ନିର୍ଯାତିତ ଅବସ୍ଥାରୁ ତ୍ରାହି କରିବା ଉଦ୍ଦେଶ୍ୟରେ ସେ ସମୁଦ୍ର କୂଳରେ ଅନ୍ନ ଓ ଶସ୍ୟ ସ୍ଥାନରେ ବାଲୁକା ପିଣ୍ଡ ପ୍ରଦାନ କରି, ଭକ୍ତି ସହକାରେ ସେମାନଙ୍କର ମୋକ୍ଷ ନିମନ୍ତେ ଆନ୍ତରିକ ପ୍ରର୍ଥନା କଲେ । ଏହି ଅତୃପ୍ତ ଆତ୍ମାମାନେ କାଳେ ଶାନ୍ତି ପାଇବେ ? ଯାହାହେଉ, ସ୍ୱାମୀଜୀଙ୍କର ବାଲୁକା ତର୍ପଣ ପରେ, ଅତୃପ୍ତ ଆତ୍ମାମାନେ ଶାନ୍ତ ହୋଇଗଲେ ।

ମାନ୍ଦ୍ରାଜରେ ବାସ କରୁଥିବା ସମୟରେ ସ୍ୱାମୀଜୀଙ୍କର ଦୀପ୍ତିମନ୍ତ ଭାବନାରାଶି ଅନର୍ଗଳ ଭାଷାରେ ରୂପାନ୍ତରିତ ହୋଇ ନିଃସୃତ ହେଲା ମୁଖରୁ । ବେଦ ବେଦାନ୍ତର ବୈଜ୍ଞାନିକ ବ୍ୟାଖ୍ୟା

Digitized by srujanika@gmail.com

ଏବଂ ଈଶ୍ୱରୋପଲବ୍ଧି ପ୍ରତ୍ୟେକ ବ୍ୟକ୍ତି ଜୀବନରେ ସମ୍ଭବ ବୋଲି ଦୃଢ଼ମତ ପୋଷଣ ତାଙ୍କ ଅଗାଧ ଜ୍ଞାନର କେବଳ ପରିପ୍ରକାଶ ନ ଥିଲା ବରଂ ବହୁ ଶ୍ରୋତାଙ୍କୁ ଆଧ୍ୟାତ୍ମିକ ଜ୍ଞାନରେ ପ୍ରଜ୍ୱଳିତ କରୁଥିଲା । କେତେବେଳେ ବାଲ୍ମିକୀ, କାଳିଦାସ ଏବଂ ଭବଭୂତିଙ୍କ ବିଷୟରେ କହୁଥିଲେ ତ କେତେବେଳେ ହୋମର, ଭିରଜିଲ୍, ସେକ୍ସପିୟର, ବାଇରନ୍‌ଙ୍କ ବିଷୟରେ କହି ଶ୍ରୋତାଙ୍କୁ ମୁଗ୍ଧ କରୁଥିଲେ । ବହୁ ଲୋକଙ୍କ ସହ ସାକ୍ଷାତ ଓ ଆଲୋଚନା ସ୍ୱାମୀଜୀଙ୍କୁ ଅବଶ ଓ କ୍ଲାନ୍ତି କରିଦେଲା, ଯା'ଫଳରେ ସନ୍ଧ୍ୟାବେଳେ ସମୁଦ୍ରକୂଳରେ ଭ୍ରମଣ କରି କ୍ଲାନ୍ତି ମେଣ୍ଟାଉ ଥିଲେ । ଏକ ସାଂଧ ଭ୍ରମଣ କାଳରେ, ଅର୍ଦ୍ଧ-କ୍ଷୁଧିତ କୈବର୍ତ୍ତ ସନ୍ତାନଗଣ ଆଣ୍ଠୁଏ ପାଣିରେ ସେମାନଙ୍କର ମାତୃଗଣଙ୍କ ସହ କାର୍ଯ୍ୟ କରୁଥିବାର କରୁଣଦୃଶ୍ୟ ଅବଲୋକନ କରି ସ୍ୱାମୀଜୀଙ୍କ ହୃଦୟ ବିଷାଦଗ୍ରସ୍ତ ହୋଇଗଲା । ଅଶ୍ରୁଭରା ଚକ୍ଷୁ ଓ ବାଷ୍ପରଦ୍ଧ କଣ୍ଠରେ ଚିତ୍କାର କରି କହିଉଠିଲେ, ''ହେ ଭଗବାନ, ଆପଣ କାହିଁକି ଏଭଳି ଦୁଃଖିରଙ୍କିଙ୍କୁ ସୃଷ୍ଟି କରିଛନ୍ତି ? ଏତାଦୃଶ କରୁଣ ଦୃଶ୍ୟ ଦେଖିପାରିବି ନାହିଁ । ହେ ଭଗବାନ, ଏମାନଙ୍କର ଦୁଃଖଦୁର୍ଦ୍ଦଶା କେତେଦିନ ? ପ୍ରଭୁ କେତେଦିନ ?'' ସ୍ୱାମୀଜୀଙ୍କର ସାଥୀ ସାଂଧଭ୍ରମଣକାରୀ ଅବାକ୍ ହୋଇ ତାଙ୍କୁ କେବଳ ଚାହିଁଥିଲେ ।

ବୁଦ୍ଧିଜୀବୀମାନେ ତାଙ୍କୁ ପ୍ରଶ୍ନ କରୁଥିଲେ ''ସ୍ୱାମୀଜୀ, ଆପଣ କୁହନ୍ତି ଯେ ଆପଣ ସ୍ୱୟଂ ପରଂବ୍ରହ୍ମ । କିନ୍ତୁ ଯେତେବେଳେ ଆପଣ ଭୁଲ କରିବେ ଏବଂ ସତ୍ୟପଥରୁ ବିଚ୍ୟୁତ ହେବେ, ସେତେବେଳେ କିଏ ଆପଣଙ୍କୁ ନିବୃତ କରିବ ? ସ୍ୱାମୀଜୀ ସେମାନଙ୍କ ପ୍ରଶ୍ନର ଠିକଣା ଜବାବ ଦେଇ କହୁଥିଲେ, ''ଯଦି ମୁଁ ପ୍ରକୃତରେ ବିଶ୍ୱାସ କରେ ଯେ ମୁଁ ଓ ଈଶ୍ୱର ଏକ ଓ ଅଭିନ୍ନ, ତେବେ ମୁଁ ତ କେବେ ଭୁଲ କରିପାରିବି ନାହିଁ, ନିବୃତର ଆବଶ୍ୟକ ନାହିଁ । ଜଣେ ଶ୍ରୋତା ସ୍ୱାମୀଜୀଙ୍କର ବକ୍ତବ୍ୟକୁ ପରିହାସ କରି କହିଉଠିଲେ, ''ମଣିଷର ମନ ବୁଦ୍ଧିର ଅତୀତ ବ୍ରହ୍ମକୁ କିଏ ଜାଣିପାରିବ, ସେତ ଅଜ୍ଞେୟ । ତତ୍‌କ୍ଷଣାତ୍ ସ୍ୱାମୀଜୀ କହିଲେ, ''ମୁଁ ସେହି ଅଜ୍ଞେୟଙ୍କୁ ଜାଣେ ।''

ମାନ୍ଦ୍ରାଜ ରହଣିକାଳରେ ସ୍ୱାମୀଜୀ ପାଶ୍ଚାତ୍ୟ ରାଷ୍ଟ୍ରକୁ ଗମନ କରିବାର ଇଚ୍ଛା ପ୍ରକଟ କରି ଅନୁଗାମୀମାନଙ୍କୁ କହିଲେ, - ଆମର ଧର୍ମକୁ ପ୍ରଚାର ଓ ପ୍ରସାର କରିବାର ସମୟ ବର୍ତ୍ତମାନ ଉପସ୍ଥିତ । ଋଷିମାନଙ୍କର ହିନ୍ଦୁଧର୍ମକୁ ଗତିଶୀଳ କରିବାର ସମୟ ଆସିଛି । ଆମ ଧର୍ମର ପ୍ରାଚୀନ ଦୁର୍ଗକୁ ବିଦେଶୀମାନେ ଧ୍ୱଂସ କରିଦେବାର ଦୃଶ୍ୟକୁ ଆମେ ନିରବରେ ଦେଖିପାରିବା କି ? ଏହାର ଦୁର୍ଭେଦ୍ୟତା ସହ ଆମେ କ'ଣ ସନ୍ତୁଷ୍ଟ ରହିବା ? ଆମେ ନିଷ୍କ୍ରିୟ ରହିବା ନା ଅତୀତରେ ଅନ୍ୟ ଦେଶମାନଙ୍କରେ ନିଜ ଧର୍ମର ଗୌରବ ପ୍ରଚାର କରିବା ଭଳି ସକ୍ରିୟ ହେବା ? ଆମର ସଙ୍କୁଚିତ ସାମାଜିକ ଗୋଷ୍ଠୀ ଏବଂ ପ୍ରାଦେଶିକ ମନୋଭାବ ଭିତରେ ସୀମିତ ରହିବା ନା ବିଶ୍ୱଭାବନାର ସ୍ରୋତରେ ସାମିଲ ହୋଇ ଭାରତର ହିତ ନିମନ୍ତେ ସେମାନଙ୍କୁ ପ୍ରଭାବିତ କରିବା ? ଆମକୁ ପୁନର୍ବାର ଜାଗିବାକୁ ହେଲେ, ଆମେ ଶକ୍ତିଶାଳୀ ଓ ଐକ୍ୟବଦ୍ଧ ହେବାକୁ ପଡ଼ିବ ଏବଂ ଆମର ପ୍ରାଣଶକ୍ତିକୁ କେନ୍ଦ୍ରିଭୂତ କରିବାକୁ ହେବ ।''

Digitized by srujanika@gmail.com

ପାଶ୍ଚାତ୍ୟ ଦେଶକୁ ଗମନ କରିବା ପାଇଁ ଅର୍ଥ ଆବଶ୍ୟକ । ଏତେ ପରିମାଣର ଅର୍ଥ ଆସିବ କେଉଁଠୁ ? ଏତଦ୍‌ବ୍ୟତୀତ, ରାମନାଡ଼ର ରାଜା ଯାହାଙ୍କ ଉପରେ ତାଙ୍କର ବିଦେଶ ଗମନର ବ୍ୟୟ ବହନ କରିବାର ଆଶା ରଖିଥିଲେ, ସେ ବର୍ତ୍ତମାନ ସ୍ୱାମୀଜୀଙ୍କ ଉପରେ ସନ୍ଦେହ ପ୍ରକାଶ କଲେ । ରାଜାଙ୍କର ସନ୍ଦେହର କାରଣ ଥିଲା ଯେ ଏହି ଯୁବ ସନ୍ନ୍ୟାସୀ ଉଚ୍ଚ ଶିକ୍ଷିତ ଏବଂ ବଙ୍ଗାଳୀ ହୋଇଥିବାରୁ ସେ ରାଜନୀତିରେ ପ୍ରବେଶ କରିପାରନ୍ତି । ରାଜାଙ୍କର ସନ୍ଦେହ ଏବଂ ଅର୍ଥ ମିଳିବାର ଅନିଶ୍ଚିତତା ସ୍ୱାମୀଜୀଙ୍କ ଭିତରେ ଭରିଦେଲା ବ୍ୟର୍ଥ ଭାବନା । ସେ ଅବଶ୍ୟ ନୈରାଶ୍ୟ ସାଗରରେ ବୁଡ଼ିଗଲେ କିନ୍ତୁ ଆତ୍ମବିଶ୍ୱାସ ହରାଇଲେ ନାହିଁ । ନୈରାଶ୍ୟ ଭିତରେ ଅନେକ ପ୍ରଶ୍ନ ତାଙ୍କ ଭିତରେ ଉଙ୍କି ମାରିଲା - ମୁଁ କ'ଣ ମୋର ଉତ୍ସାହ ଦ୍ୱାରା ବଶୀଭୂତ ? ନିଜ ଇଚ୍ଛାରେ ମୁଁ କ'ଣ ବିଦେଶ ଯିବାକୁ ଚାହୁଁଛି ? ସେ ବିଶେଷ କିଛି ଭାବି ନ ପାରି କେବଳ ଜଗଜ୍ଜନନୀଙ୍କୁ ପ୍ରାର୍ଥନା କରି କହିଲେ, "ମା, ତୁମର ଇଚ୍ଛା ପ୍ରକଟ କର । ମୁଁ କେବଳ ଯନ୍ତ୍ର ମାତ୍ର, କିନ୍ତୁ ତୁମେ ହିଁ ଯନ୍ତ୍ରୀ ।" ଆନ୍ତରିକ ପ୍ରାର୍ଥନା ତାଙ୍କ ଭିତରେ ସୃଷ୍ଟି କଲା ପ୍ରଚଣ୍ଡ ଶକ୍ତି ଏବଂ ସେ ଭାବିଲେ ଯେ ସେ ତ ମା'ଙ୍କର କେବଳ ଯନ୍ତ୍ର । ସେ କାହିଁକି ଅର୍ଥ ପାଇଁ ଚିନ୍ତା କରିବେ ? ବଡ଼ ଆଶ୍ଚର୍ଯ୍ୟର ଘଟଣା ଯେ ଭକ୍ତମାନେ ଆଦାୟକରି ଯେଉଁ ଟଙ୍କା ତାଙ୍କୁ ପ୍ରଦାନ କରିଥିଲେ, ସେସବୁ ଟଙ୍କା ଶିଷ୍ୟମାନଙ୍କୁ ଫେରାଇ ଦେଇ ସ୍ୱାମୀଜୀ କହିଲେ, "ପିଲାମାନେ, ଜଗଜ୍ଜନନୀଙ୍କ ଇଚ୍ଛା କେବଳ ପୂରଣ ହେବ । ମୁଁ ବିଦେଶ ଯିବି କି ନାହିଁ ସେ ତାହାର ବ୍ୟବସ୍ଥା କରିବେ । ଯଦି ତାଙ୍କର ଇଚ୍ଛା ଥାଏ, ଟଙ୍କା ଆପଣାଛାଏଁ ଆସିବ । ତେଣୁ ଏହି ଟଙ୍କା ତୁମେ ନେଇଯାଅ ଓ ଗରିବ ଓ ନିଃସ୍ୱ ଭିତରେ ବାଣ୍ଟି ଦିଅ ।" ଶିଷ୍ୟମାନେ ତାହା ହିଁ କଲେ, ସ୍ୱାମୀଜୀ ଆଶ୍ୱସ୍ତ ହେଲେ ।

- ୨ -

*ମହାନୁଭବ, ଯେହେତୁ ମାନବୀୟ ଅନୁଭୂତି ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଏବଂ ମାନବୀୟ ଚିନ୍ତାରୁ ମନୁଷ୍ୟ ଉର୍ଦ୍ଧ୍ୱକୁ ଗମନ କରି ଈଶ୍ୱରଙ୍କର ନିରାକାରତ୍ୱକୁ ସହଜରେ ବୁଝିବା ସମ୍ଭବ ନୁହେଁ, ତେଣୁ ମନୁଷ୍ୟ ତାହାର ସୀମିତ ଇନ୍ଦ୍ରିୟାନୁଭୂତି ଭିତରେ ଈଶ୍ୱରଙ୍କର ସାକାର ରୂପକୁ ନିଜେ ଗଢ଼ି ତୋଳେ । ସବୁ ଧର୍ମ ଈଶ୍ୱର ଲାଭର ଗୋଟଏ ଗୋଟିଏ ପଥ । ଯିଏ ଯେଉଁ ଭାବରେ ତାଙ୍କର ଉପାସନା ଆନ୍ତରିକସହକାରେ କରିବ, ସେ ନିଶ୍ଚୟ ସେହି ଏକ ଓ ଅଭିନ୍ନ ସ୍ଥଳରେ ଉପନୀତ ହେବ ହିଁ ହେବ ।*

ଫେବୃଆରୀ ୧୦, ୧୮୯୨ରେ ସ୍ୱାମୀଜୀ ହାଇଦ୍ରାବାଦରେ ପହଞ୍ଚିଲେ । ପଣ୍ଡିତ, ଓକିଲ, ଧନୀ ବଣିକ, ସାମନ୍ତ, ରାଜ କର୍ମଚାରୀଙ୍କ ସମେତ ପାଞ୍ଚଶହ ସାଧାରଣ ଜନତା ହାତରେ ପୁଷ୍ପଗୁଚ୍ଛ ଓ ପୁଷ୍ପମାଲ୍ୟ ଧାରଣ କରି ଷ୍ଟେସନ ପ୍ଲାଟଫର୍ମରେ ସ୍ୱାମୀଜୀଙ୍କୁ ଉଚ୍ଛ୍ୱସିତ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ । ପ୍ରଥମ ଶ୍ରେଣୀ ଡବାରୁ ଏହି ଗୈରିକ ବସ୍ତ୍ରଧାରୀ ଯୁବ ସନ୍ନ୍ୟାସୀ ହସ୍ତରେ କମଣ୍ଡଳୁ

Digitized by srujanika@gmail.com

ଧାରଣ କରି ଅବତରଣ କଲେ, ସେତେବେଳେ ଶତଶତ ଜନତା ଯେପରି ଜଣେ ମହାରାଜାଙ୍କୁ ଜୟଜୟକାର ଧ୍ୱନିରେ ସ୍ୱାଗତ କରନ୍ତି, ଠିକ୍ ସେପରି ସ୍ୱାମୀଜୀଙ୍କୁ ସ୍ୱାଗତ କଲେ । ସ୍ୱାମୀଜୀ ହାଇଦ୍ରାବାଦ ନିଜାମଙ୍କର ସୁପରିଟେଣ୍ଡେଣ୍ଟ ଇଞ୍ଜିନିୟର ବାବୁ ମଧୁସୁଦନ ଚାଟାର୍ଜିଙ୍କ ବାସଭବନରେ ଅବସ୍ଥାନ କଲେ । ହାଇଦ୍ରାବାଦର ନିଜାମଙ୍କ ନିମନ୍ତ୍ରଣ କ୍ରମେ ସେ ତାଙ୍କର ରାଜପ୍ରାସାଦକୁ ଯାଇଥିଲେ । ବହୁ ରାଜକର୍ମଚାରୀଙ୍କ ଉପସ୍ଥିତିରେ ନୱାବଙ୍କ ସହ ସ୍ୱାମୀଜୀ ପ୍ରାୟ ଦୁଇଘଣ୍ଟା କାଳ ହିନ୍ଦୁ, ଖ୍ରୀଷ୍ଟ ଓ ଇସଲାମ୍ ଧର୍ମର ମୌଳିକ ତତ୍ତ୍ୱ ଉପରେ ନିଜର ମତ ବ୍ୟକ୍ତ କରିଥିଲେ । ନୱାବ ମୁସଲମାନ ହୋଇଥିବାରୁ ଈଶ୍ୱରଙ୍କ ମାନବ ରୂପକୁ ଅବଶ୍ୟ ଗ୍ରହଣ କରି ପାରିଲେ ନାହିଁ କିନ୍ତୁ ସ୍ୱାମୀଜୀଙ୍କର ନିରାକାର ଧାରଣା ବ୍ୟାଖ୍ୟା ନୱାବଙ୍କୁ ବିମୋହିତ କଲା । ସ୍ୱାମୀଜୀ, ନୱାବଙ୍କର ମନୋଭାବ ବୁଝିପାରି ଈଶ୍ୱରଙ୍କ ଧାରଣାର ବିବର୍ତ୍ତନ ସମ୍ବନ୍ଧରେ ଆଲୋକପାତ କରି କହିଲେ ''ମହାନୁଭବ, ଯେହେତୁ ମାନବୀୟ ଅନୁଭୂତି ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଏବଂ ମାନବୀୟ ଚିନ୍ତାରୁ ମନୁଷ୍ୟ ଊର୍ଦ୍ଧ୍ୱକୁ ଗମନ କରି ଈଶ୍ୱରଙ୍କର ନିରାକାରତ୍ୱକୁ ସହଜରେ ବୁଝିବା ସମ୍ଭବ ନୁହେଁ, ତେଣୁ ମନୁଷ୍ୟ ତାହାର ସୀମିତ ଇନ୍ଦ୍ରିୟାନୁଭୂତି ଭିତରେ ଈଶ୍ୱରଙ୍କର ସାକାର ରୂପକୁ ନିଜେ ଗଢ଼ି ତୋଳେ । ସବୁ ଧର୍ମ ଈଶ୍ୱର ଲାଭର ଗୋଟିଏ ଗୋଟିଏ ପଥ । ଯିଏ ଯେଉଁ ଭାବରେ ତାଙ୍କର ଉପାସନା ଆନ୍ତରିକସହକାରେ କରିବ, ସେ ନିଶ୍ଚୟ ସେହି ଏକ ଓ ଅଭିନ୍ନ ସ୍ଥଳରେ ଉପନୀତ ହେବ ହିଁ ହେବ ।

ସ୍ୱାମୀଜୀଙ୍କର ବାଗ୍ମୀତା, ଜ୍ଞାନ ଓ ବ୍ୟାଖ୍ୟା ଶୁଣି ନୱାବଙ୍କର ଚକ୍ଷୁଦ୍ୱୟ ଉଜ୍ଜ୍ୱଳ ହୋଇ ଉଠିଲା ଏବଂ ନମ୍ରତା ସହକାରେ ନିଜର ଅଭିଳାଷ ପ୍ରକାଶ କରି କହିଲେ, ''ସ୍ୱାମୀଜୀ ମହାରାଜ, ମୁଁ ବାସ୍ତବରେ ଧନ୍ୟ । ଆପଣଙ୍କର ବିଦେଶ ଯାତ୍ରା ପାଇଁ ମୁଁ ଏକ ହଜାର ମୁଦ୍ରା ପ୍ରଦାନ କରୁଛି, ଆପଣ ସାଦରେ ଗ୍ରହଣ କଲେ ମୁଁ କୃତଜ୍ଞ ହେବି ।'' ସ୍ୱାମୀଜୀ ନିଜର ଅନିଚ୍ଛା ପ୍ରକାଶ କରି କହିଲେ, ''ମହାନୁଭବ, ସମୟ ସେଥିପାଇଁ ଆସିନାହିଁ । ଯେତେବେଳେ ଈଶ୍ୱରଙ୍କ ନିକଟରୁ ନିର୍ଦ୍ଦେଶ ଆସିବ, ସେତେବେଳେ ଆପଣଙ୍କୁ ଏହି ସଂକ୍ରାନ୍ତରେ ମୁଁ ଅବଗତ କରାଇବି । ଏତଦ୍‌ବ୍ୟତୀତ, ହାଇଦ୍ରାବାଦ୍ ନିଜାମଙ୍କର ପ୍ରଧାନମନ୍ତ୍ରୀ ସାର୍ ଆସମାନ୍ ଜାହା, ରାଜ୍ୟର ପେସ୍କାର ମହାରାଜା ନରେନ୍ଦ୍ର କ୍ରିଷ୍ଣ ବାହାଦୁର ଏବଂ ମହାରାଜା ସିଓ ରାଜ ବାହାଦୁର ଭଳି ଅନେକ ମହତ ବ୍ୟକ୍ତି ଆମେରିକା ଯାତ୍ରା ଉପଲକ୍ଷେ ସାହାଯ୍ୟ କରିବା ପାଇଁ ସ୍ୱାମୀଜୀଙ୍କୁ ପ୍ରତିଶ୍ରୁତି ଦେଲେ । ମେହେବୁବ୍ କଲେଜରେ ପଣ୍ଡିତ ରତନଲାଲଙ୍କ ସଭାପତିତ୍ୱରେ ଏକ ସଭା ଆୟୋଜିତ ହୋଇଥିଲା । ଏବଂ ସ୍ୱାମୀଜୀ ''ମାଇଁ ମିଶନ ଟୁ ଦି ୱେଷ୍ଟ'' ସମ୍ବନ୍ଧରେ ଏକ ବକ୍ତୃତା ପ୍ରଦାନ କରିଥିଲେ । ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମେତ କେତେକ ଇୟୁରୋପୀୟ ବି ଉକ୍ତ ସଭାରେ ଯୋଗ ଦେଇଥିଲେ । ହାଇଦ୍ରାବାଦ ଅବସ୍ଥାନ ବେଳେ ସ୍ୱାମୀଜୀ ମକ୍କା ମସଜିଦ୍, ଚାରମିନାର୍, ଫଲକନାମା, ନିଜାମ ରାଜବାଟି, ବସିରବାଗ୍ ଭଳି ଅନେକ ଦର୍ଶନୀୟ ସ୍ଥାନ ଭ୍ରମଣ କରିଥିଲେ ।

ହାଇଦ୍ରାବାଦରେ ବାସ କରୁଥିବା ସମୟରେ ସ୍ୱାମୀଜୀ ଜାଣିବାକୁ ପାଇଲେ ଯେ ଜଣେ ବ୍ରାହ୍ମଣ ନିଜର ମାନସିକ ଶକ୍ତି ବଳରେ ଅନେକ ବସ୍ତୁ ଶୂନ୍ୟରୁ ଉଦ୍ଭବ କରିପାରନ୍ତି । ଅବଶ୍ୟ ଉକ୍ତ ବ୍ରାହ୍ମଣ ଜଣେ ଭଦ୍ରଲୋକ ଏବଂ ସେଠାରେ ବ୍ୟବସାୟ କରି ନିଜର ଗୁଜୁରାଣ

Digitized by srujanika@gmail.com

ମେଣ୍ଟାଉଥିଲେ । ଏକଦା ସ୍ୱାମୀଜୀ ଉତ୍ସାହିତ ହୋଇ ତାଙ୍କୁ ସାକ୍ଷାତ କରିବା ପାଇଁ ଯାଇଥିଲେ । ସେଠାରେ ପହଞ୍ଚି ସ୍ୱାମୀଜୀ କହିଲେ, "ପଣ୍ଡିତ ମହାଶୟ, ଆପଣ ଯେଉଁ କୌଶଳ ପ୍ରୟୋଗ କରି ବସ୍ତୁ ଉତ୍ପନ୍ନ କରିପାରୁଛନ୍ତି, ସେହି କୌଶଳର ଗୋପନୀୟତା ମତେ କହିବେ ?" ସେହି ସମୟରେ ବ୍ରାହ୍ମଣ ଜ୍ୱରରେ ଆକ୍ରାନ୍ତ ଥିଲେ । କୌଣସି ପବିତ୍ର ସନ୍ନ୍ୟାସୀ ରୋଗୀର ଶରୀର ସ୍ପର୍ଶ କଲେ, ରୋଗ ଆପେ ଆପେ ଭଲ ହୋଇଯାଏ ବୋଲି ବ୍ରାହ୍ମଣଙ୍କର ବିଶ୍ୱାସ ଥିଲା । ତେଣୁ ବ୍ରାହ୍ମଣ ହଠାତ୍ କହିଲେ, "ମହାଶୟ, ଆପଣ ଦୟାପରବଶ ହୋଇ ମୋ ମୁଣ୍ଡରେ ହାତ ରଖନ୍ତୁ, ମୋ ଜ୍ୱର ଭଲ ହୋଇଯିବ ।" ସ୍ୱାମୀଜୀ କହିଲେ, "ଠିକ୍ ଅଛି, ମୋତେ ଆପଣଙ୍କର କୌଶଳ କୁହନ୍ତୁ ।" ଏତିକ କହି ବ୍ରାହ୍ମଣଙ୍କ ମସ୍ତକରେ ସ୍ୱାମୀଜୀ ହସ୍ତ ରଖିଲେ ।

ତତ୍‌ପଶ୍ଚାତେ, ବ୍ରାହ୍ମଣ ନିଜର କୌଶଳ ପ୍ରୟୋଗ କଲେ । ସ୍ୱାମୀଜୀଙ୍କ ସମେତ ପଚିଶ ଜଣ ବ୍ୟକ୍ତି ସେଦିନ ସେଠାରେ ଉପସ୍ଥିତ ଥିଲେ । ବ୍ରାହ୍ମଣ ସେମାନଙ୍କୁ ଚାହିଁ କହିଲେ, "କେଉଁ କେଉଁ ବସ୍ତୁ ଆପଣ ଚାହାଁନ୍ତି, ସେଗୁଡ଼ିକୁ ଖଣ୍ଡିଏ କାଗଜରେ ଲେଖି ମୋତେ ଦିଅନ୍ତୁ ।" ସେମାନେ ଖଣ୍ଡିଏ କାଗଜରେ ଅଙ୍ଗୁର, କମଳା ଏବଂ ଅନ୍ୟାନ୍ୟ ଫଳ ଗୁପ୍ତରେ ଲେଖି, ବ୍ରାହ୍ମଣଙ୍କ ହାତକୁ ବଢ଼ାଇ ଦେଲେ । ବ୍ରାହ୍ମଣ ନିଜ ଆସନ ତଳୁ ଗୋଟିଏ ଗୋଟିଏ ସଦ୍ୟ ଫଳ ବାହାର କରି ସେମାନଙ୍କ ହାତକୁ ବଢ଼ାଇ ଦେଲେ । ଉପସ୍ଥିତ ସମସ୍ତ ବ୍ୟକ୍ତି ସଦ୍ୟ ଫଳ ଖାଇ ଆଶ୍ଚର୍ଯ୍ୟ ହେଲେ । ସ୍ୱାମୀଜୀ ଯେତେବେଳେ ତାଙ୍କୁ ପଚାରିଲେ ଯେ ଏହା କିପରି ସମ୍ଭବ ହେଲା ? ପଣ୍ଡିତ କହିଲେ ଯେ ଏହା କେବଳ ହାତ ସଫେଇ ମାତ୍ର । କିନ୍ତୁ ବ୍ରାହ୍ମଣ ସତ୍ୟ କହିବାକୁ ରାଜି ନୁହଁନ୍ତି ବୋଲି ସ୍ୱାମୀଜୀ ବୁଝିଗଲେ ।

ସ୍ୱାମୀଜୀ ହାରିଯିବାର ବ୍ୟକ୍ତି ନୁହଁନ୍ତି । ବ୍ରାହ୍ମଣଙ୍କର ଏତାଦୃଶ ହସ୍ତ କୌଶଳକୁ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରି ସେ ଏକ ସିଦ୍ଧାନ୍ତରେ ଉପନୀତ ହୋଇ କହିଥିଲେ - ଏହା ଏକ ଅନ୍ତର୍ନିହିତ ଚରିତ୍ର । ପ୍ରତ୍ୟେକ ମନ ସାର୍ବଜନୀନ ମନର ଏକ ଅଂଶ । ସୁତରାଂ ପ୍ରତ୍ୟେକ ମନ ଅନ୍ୟ ମନ ସହିତ ସଂଯୁକ୍ତ । ଜଣେ ଯୋଗୀ ଉପଯୁକ୍ତ ଭାବେ ନିଜର ମନର ଏହି ସ୍ୱତନ୍ତ୍ର ଶକ୍ତିକୁ ଅଭ୍ୟାସ ଓ ସଂଗ୍ରହ କରିପାରିଲେ, ସେ ଅନ୍ୟ ମନକୁ ପ୍ରଭାବିତ କରି ନିଜ ଇପ୍‌ସିତ ବସ୍ତୁ ସୃଷ୍ଟି କରିପାରିବ ।" ଅବଶ୍ୟ ଏହା ନିଜର ଆନ୍ତରିକ ଅଭ୍ୟାସ ଉପରେ ନିର୍ଭର କରେ ଏବଂ ସମସ୍ତ ଅଲୌକିକ ଘଟଣା ସେ ନିର୍ବିଘ୍ନରେ ଘଟାଇ ପାରିବ ।

**୧୮୯୩ ଫେବୃଆରୀ ୧୭ ତାରିଖରେ** ସ୍ୱାମୀଜୀ ହାଇଦ୍ରାବାଦରୁ ବିଦାୟ ନେଲେ । ତାଙ୍କର ପବିତ୍ର, ସରଳତା, ଅକ୍ଷୁଣ୍ଣ ଆତ୍ମ-ସଂଯମ ଏବଂ ଗଭୀର ଧ୍ୟାନ ହାଇଦ୍ରାବାଦର ନାଗରିକଙ୍କ ମନରେ ଅଲିଭା ଛାପ ପକାଇ ପାରିଥିଲା, ଯେଉଁଥିପାଇଁ ପ୍ରାୟ ଏକ ହଜାରରୁ ଅଧିକ ଲୋକ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇବା ପାଇଁ ରେଳଷ୍ଟେସନରେ ସମବେତ ହୋଇଥିଲେ । ମାନ୍ଦ୍ରାଜରେ ପହଞ୍ଚି ପୁନଶ୍ଚ ସେ ଧାର୍ମିକ ପ୍ରବଚନ ଓ ଆଧ୍ୟାତ୍ମିକ ଆଲୋଚନାରେ ବୁଡ଼ିଗଲେ । ଏହି ସମୟ ଭିତରେ ଆମେରିକା ଯିବାର ଇଚ୍ଛା ଦୃଢ଼ୀଭୂତ ହେଲାଣି । ମାନ୍ଦ୍ରାଜର ଭକ୍ତ ଓ ଶିଷ୍ୟଗଣ ଅର୍ଥ ଆଦାୟ କାର୍ଯ୍ୟରେ ଲାଗିଯାଇଥାନ୍ତି । ସ୍ୱାମୀଜୀ ବିଶେଷକରି ମଧ୍ୟବିତ୍ତ

Digitized by srujanika@gmail.com

ଜନତାଙ୍କୁ ଆମେରିକା ଯାତ୍ରା ସମ୍ବନ୍ଧରେକହୁଥିଲେ, ''ଯଦି ଜଗଜ୍ଜନନୀଙ୍କର ଇଚ୍ଛା ଯେ ମୁଁ ବିଦେଶ ଯିବି, ତେବେ ମୁଁ ସଂଗୃହିତ ଅର୍ଥ ରଖିବି, କିନ୍ତୁ ମନେରଖ, ମୁଁ ପାଶ୍ଚାତ୍ୟ ଦେଶ ଯାଉଛି - କେବଳ ନିଃସ୍ୱ ଓ ଦରିଦ୍ର ଜନତାଙ୍କର ସହାୟତା ପାଇଁ ।'' ମାନ୍ଦ୍ରାଜବାସୀ ସ୍ୱାମୀଜୀଙ୍କର ଦୂରଦର୍ଶିତା ବୁଝିପାରିଥିଲେ ଏବଂ ଶିକ୍ଷିତ ଯୁବଗଣ ଉତ୍ସାହୀ ଯୁବକ ଆଲସିଙ୍ଗା ପେରୁମଲଙ୍କ ନେତୃତ୍ୱରେ ଦ୍ୱାର ଦ୍ୱାର ବୁଲି ଲୋକଙ୍କ ପାଖରୁ ଅର୍ଥ ସଂଗ୍ରହ କରୁଥିଲେ । ସେହି ବର୍ଷ ଏପ୍ରିଲ ମାସ ବେଳକୁ ମଇଶୁର ମହାରାଜା ରାମନାଡ଼ର ରାଜା ଓ ଜୁନାଗଡ଼ର ରାଜା ସାହାଯ୍ୟ ପଠାଇଲେ ।

ଆମେରିକା ଯାତ୍ରା ଯେତେ ପାଖେଇ ଆସୁଥିଲା, ସେତେ ସ୍ୱାମୀଜୀଙ୍କ ମନ ନିଜର ଗୁରୁଦେବଙ୍କ ଆଶୀଷ ପ୍ରାପ୍ତି ନିମନ୍ତେ ବ୍ୟାକୁଳିତ ହୋଇ ଉଠୁଥିଲା । ସେ ବ୍ୟାକୁଳିତ ହୃଦୟରେ ଶ୍ରୀରାମକୃଷ୍ଣଙ୍କର ପ୍ରତ୍ୟକ୍ଷ ନିର୍ଦ୍ଦେଶକୁ ଆପେକ୍ଷା କରୁଥିଲେ । ଇତ୍ୟବସରରେ ଏକ ଦିବ୍ୟ ସ୍ୱପ୍ନ ତାଙ୍କର ଅଥୟ ମନକୁ ଶାନ୍ତ କଲା - ରାତ୍ରିରେ ସେ ଅର୍ଦ୍ଧ-ଜାଗ୍ରତ ଅବସ୍ଥାରେ ଶୋଇଥିଲେ । ଶ୍ରୀରାମକୃଷ୍ଣଙ୍କର ଏକ ଜ୍ୟୋର୍ତିମୟ ରୂପ କୂଳରୁ ମହାସାଗରର ଅଥଳ ଜଳରାଶି ଉପରେ ଚାଲିଚାଲି ଯାଉଥିଲେ ଏବଂ ତାଙ୍କୁ ଅନୁସରଣ କରିବା ପାଇଁ ସେ ହାତଠାରି ନିର୍ଦ୍ଦେଶ ଦେଉଥିଲେ । ଶାନ୍ତି ଓ ଆନନ୍ଦ ତାଙ୍କ ସମଗ୍ର ଶରୀରକୁ କଲା ଆଚ୍ଛାଦିତ । ସେ ଅନୁଭବ କଲେ ସତେ ଯେପରି ତାଙ୍କର ଗୁରୁଦେବ କହୁଛନ୍ତି ''ଯାଅ'' । ଏଭଳି ଦିବ୍ୟ ଅନୁପ୍ରେରଣାରେ ତାଙ୍କର ସମସ୍ତ ସଂଶୟ ଦୂରିଭୂତ ହେଲା ଏବଂ ସେ ହୃଦୟଙ୍ଗମ କଲେ ଯେ ଏଭଳି ସାଙ୍କେତିକ ସ୍ୱପ୍ନ ଦୈବସମ୍ଭୂତ ।

## - ୩ -

*ଦିବ୍ୟ ଜନନୀ ସାରଦାଦେବୀଙ୍କର ଦିବ୍ୟଦର୍ଶନ : ନରେନ୍ଦ୍ରଙ୍କ ଶରୀର ଭିତରକୁ ଶ୍ରୀରାମକୃଷ୍ଣ ପ୍ରବେଶ କଲେ ଏବଂ ସ୍ୱୟଂ ଶ୍ରୀରାମକୃଷ୍ଣ ପରମହଂସ ନରେନ୍ଦ୍ରଙ୍କ ମାଧ୍ୟମରେ ଜଗତର କଲ୍ୟାଣ ପାଇଁ ବହୁ କାର୍ଯ୍ୟ ସମ୍ପାଦନ କରିବେ ।*

ଆମେରିକା ଯାତ୍ରାର ଇଚ୍ଛା ଯେତେବେଳେ ଧୀରେ ଧୀରେ ଆକୃତି ନେଉଥିଲା, ସେତେବେଳେ ସ୍ୱାମୀଜୀ ଏକ ରାତ୍ରିରେ କରୁଣ ସ୍ୱପ୍ନଟିଏ ଦେଖି ବିଚଳିତ ହୋଇଉଠିଲେ । ସ୍ୱାମୀଜୀ ମନ୍ମଥବାବୁଙ୍କ ବାସଭବନରେ ଅବସ୍ଥାନ କରୁଥିଲେ । ସ୍ୱପ୍ନରେ ଦେଖିଲେ ଯେ ତାଙ୍କର ମା ଭୁବନେଶ୍ୱରୀ ଦେବୀଙ୍କର କାଳ ହୋଇଯାଇଛି । ମା ଏଭଳି ଏକ ମମତାର ସଂପର୍କ, ଯାହା ପ୍ରତ୍ୟେକ ସନ୍ତାନକୁ ପ୍ରଭାବିତ କରିଥାଏ । ଏପରିକି ସ୍ୱୟଂ ଭଗବାନ ଯଦି ମନୁଷ୍ୟ ରୂପରେ ଏହି ମର୍ତ୍ତ୍ୟ ମଣ୍ଡଳରେ ଜନ୍ମଗ୍ରହଣ କରନ୍ତ, ସେ ବି ମା'ର ମମତାରେ ବନ୍ଧା । ଏହା ପ୍ରକୃତିର ନିୟମ । ସ୍ୱାମୀଜୀ ପ୍ରଥମେ ଜଣେ ମଣିଷ, ସେ ବି ମା'ର ପୁଅଟିଏ । ତାବାଦେ ସେ ସନ୍ନ୍ୟାସୀ । ମାତୃପ୍ରେମ ଓ ମମତାର ଡୋରକୁ ସେ କ'ଣ ଛିଣ୍ଡାଇ ପାରିବେ ? ମନ ତାଙ୍କର ହେଲା ବିଷାଦଗ୍ରସ୍ତ । କଲିକତାରୁ ଖବର ଅପେକ୍ଷାରେ ସେ ବାରମ୍ବାର ବିଚଳିତ ହୋଇ ପଡୁଥିଲେ ।

Digitized by srujanika@gmail.com

ସ୍ୱାମୀଜୀଙ୍କର ବିଚଳିତ ମନର ଅବସ୍ଥା ପରିଲକ୍ଷିତ କରି ମନ୍ମଥବାବୁ ସହରଠାରୁ କିୟତଦୂରରେ ରହୁଥିବା ଜଣେ ତାନ୍ତ୍ରିକ ନିକଟକୁ ଯିବା ପାଇଁ ପ୍ରସ୍ତାବ ଦେଲେ । ସ୍ୱାମୀଜୀ ମା'ଙ୍କ ପାଇଁ ଏଭଳି ବିଚଳିତ ଥିଲେ ଯେ ସେ ସାଙ୍ଗେସାଙ୍ଗେ ପ୍ରସ୍ତାବ ଗ୍ରହଣ କରିନେଲେ ।

ମନ୍ମଥବାବୁ ଓ ଆଲସିଙ୍ଗାଙ୍କ ସହ ସ୍ୱାମୀଜୀ ଏକ ଶ୍ମଶାନରେ ପହଞ୍ଚିଲେ । ପିଶାଚ ଭଳି ଦେଖାଯାଉଥିବା ଜଣେ କୃଷ୍ଣକାୟ ବ୍ୟକ୍ତି ଶ୍ମଶାନରେ ବସିଥିଲେ, ପୂଜାପାଠରେ ବ୍ୟସ୍ତ ଥିଲେ । ତାଙ୍କର ନାମ ଗୋବିନ୍ଦ ଚେଟ୍ଟୀ । ସେଠାରେ ଉପସ୍ଥିତଥିବା ତାଙ୍କର ଜଣେ ଶିଷ୍ୟ ତାମିଲ୍‌ରେ କହିଲେ ଯେ ସେ ଜଣେ ପ୍ରେତବିଦ୍ ଏବଂ ଭୂତପ୍ରେତ ଉପରେ ରହିଛି ତାଙ୍କର ଅଖଣ୍ଡ କ୍ଷମତା । ଆଲସିଙ୍ଗା ତାମିଲରେ ଗୋବିନ୍ଦ ଚେଟ୍ଟୀଙ୍କୁ ସ୍ୱାମୀଜୀଙ୍କର ସମସ୍ୟା ସମ୍ବନ୍ଧରେ ଅବଗତ କରାଇଲେ । ସମସ୍ତ ବିଷୟ ଶୁଣି ଗୋବିନ୍ଦ ଚେଟ୍ଟୀ ପେନସିଲ୍‌ରେ କେତେକ ରୂପ ଆଙ୍କିଦେଲେ ଏବଂ ଏକାଗ୍ର ଚିତ୍ତରେ ଉପବିଷ୍ଟ ହୋଇ ସ୍ୱାମୀଜୀଙ୍କର ପିତା, ପିତାମହ, ପ୍ରପିତାମହଙ୍କ ନାମ ନିର୍ଭୁଲ ଶବ୍ଦରେ ପ୍ରକାଶ କଲେ । ସେ ସ୍ୱାମୀଜୀଙ୍କୁ ଚାହିଁ କହିଲେ, "ଶ୍ରୀରାମକୃଷ୍ଣ ପରମହଂସ ପରିଭ୍ରମଣ ସମୟରେ ପ୍ରତ୍ୟେକ ମୁହୂର୍ତ୍ତରେ ଆପଣଙ୍କୁ ଜଗି ରହିଛନ୍ତି । ବିଦେଶରେ ଧର୍ମ ପ୍ରଚାର କରିବା ପାଇଁ ଆପଣ ନିଜ ଦେଶରୁ ପ୍ରସ୍ଥାନ କରିବେ । ଆପଣଙ୍କ ମା ଭଲରେ ଅଛନ୍ତି, ସେଥିପାଇଁ ଆପଣ ଚିନ୍ତା କରିବା ଉଚିତ ନୁହେଁ ।" ସ୍ୱାମୀଜୀଙ୍କ ମନ ସତେଜ ହୋଇଉଠିଲା ଏବଂ ଗୋବିନ୍ଦ ଚେଟ୍ଟୀଙ୍କୁ ଧନ୍ୟବାଦ ପ୍ରଦାନ କରି ସାଥୀମାନଙ୍କ ସହ ସହରକୁ ଫେରିଆସିଲେ । ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ସେ ମନ୍ମଥବାବୁଙ୍କ ବାସ ଭବନରେ ପାଦ ଦେଲା ବେଳକୁ କଲିକତାରୁ ପ୍ରେରିତ ଟେଲିଗ୍ରାମଟିଏ ତାଙ୍କ ହାତକୁ ବଢ଼ାଇ ଦିଆଗଲା ଯେଉଁଥିରେ ଲେଖାଥିଲା "ମା ଭଲରେ ଅଛନ୍ତି ।"

ଥିଓସୋଫିକାଲ ସୋସାଇଟି ବା ବ୍ରହ୍ମବିଦ୍ୟା ସମିତି ତତ୍‌କାଳୀନ ଭାରତୀୟ ସମାଜରେ ଏକ ପ୍ରସିଦ୍ଧ ଧାର୍ମିକ ସଂଗଠନ । ସ୍ୱାମୀଜୀ ମାନ୍ଦ୍ରାଜସ୍ଥିତ ଏହି ସମିତିରେ ଦୁଇଥର ବକ୍ତୃତା ପ୍ରଦାନ କରିଥିଲେ ଏବଂ ଉଭୟ ଭାରତୀୟ ଓ ଇୟୁରୋପୀୟ ଶିକ୍ଷିତ ବ୍ୟକ୍ତିମାନେ ସ୍ୱାମୀଜୀଙ୍କର ଧାର୍ମିକ ଓ ଆଧ୍ୟାତ୍ମିକ ବ୍ୟାଖ୍ୟାନ ଶ୍ରବଣ କରି ବିମୁଗ୍ଧ ହୋଇଥିଲେ । ବହୁ ଆମେରିକାବାସୀ ଏହି ସମିତିର ପୃଷ୍ଠପୋଷକ ଥିବାରୁ, ସ୍ୱାମୀଜୀ ଆମେରିକାଗ୍ରସ୍ତ ବେଳେ ସେମାନଙ୍କଠାରୁ ସହାୟତା ମିଳିବା ଆଶାରେ ସେ ଏକଦା ଥିଓସୋଫିକାଲ ସୋସାଇଟିର ଦଳପତି **କଲୋନେଲ୍ ଓଲ୍‌କୋଟଙ୍କୁ** ସାକ୍ଷାତ କରି ନିଜର ଅଭିଳାଷ ବ୍ୟକ୍ତ କଲେ । ଓଲକୋଟ୍ ସାହେବ ସମସ୍ତ ବିଷୟ ଶୁଣିବା ପରେ ସେ ସ୍ୱାମୀଜୀଙ୍କୁ ପ୍ରଶ୍ନ କଲେ, "ଠିକ୍ ଅଛି, ଆପଣଙ୍କୁ ଆମେ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇଦେବୁ । କିନ୍ତୁ ଗୋଟିଏ ସର୍ତ୍ତ । ଆପଣ ଆମ ସମିତିରେ ଯୋଗ ଦେବେ ।" ସ୍ୱାମୀଜୀ ଏଭଳି ସ୍ୱାର୍ଥପର ପ୍ରଶ୍ନରେ ଉତ୍‌କ୍ଷିପ୍ତ ହୋଇ କହିଲେ, "ନା, ମୋ ପାଇଁ ଏହା କିପରି ସମ୍ଭବ ହେବ ? ଆପଣମାନଙ୍କର ଅଧିକାଂଶ ସିଦ୍ଧାନ୍ତ ଓ ତତ୍ତ୍ୱରେ ମୋର ବିଶ୍ୱାସ ନାହିଁ । ଆପଣମାନଙ୍କ ପାଇଁ ମୁଁ କିଛି କରିପାରିବି ନାହିଁ ।" ସ୍ୱାମୀଜୀଙ୍କର ରୋକଠୋକ୍ ଜବାବ ଓଲକୋଟ୍‌ଙ୍କୁ ବିସ୍ମିତ କଲା ଏବଂ ସେ କୌଣସି ପ୍ରକାର ସାହାଯ୍ୟ ଦେବାପାଇଁ ସଫା ମନା କରିଦେଲେ ।

Digitized by srujanika@gmail.com

ଆମେରିକା ଯାତ୍ରା କରିବାର ସିଦ୍ଧାନ୍ତକୁ ରୂପ ଦେବା ପୂର୍ବରୁ ସ୍ୱାମୀ ବିବେକାନନ୍ଦଙ୍କ ମାନସପଟରେ ଜାଗି ଉଠିଲା ଦିବ୍ୟ ଜନନୀଙ୍କର ସାରଲ୍ୟ ରୂପ । ପରିବ୍ରାଜକ ଜୀବନ ଆରମ୍ଭ କରିବା ପୂର୍ବରୁ ତାଙ୍କଠାରୁ ଗ୍ରହଣ କରିଥିଲେ ଆଶୀର୍ବାଦ । ବର୍ତ୍ତମାନ ତାଙ୍କ ବିନା ଆଶୀର୍ବାଦ ଓ ଅନୁମତିରେ ସେ କେମିତି ଆମେରିକା ଯାଇପାରିବେ ? ସେ ଲେଖିଲେ ମା'ଙ୍କ ପାଖକୁ ପତ୍ର ଏବଂ ଅପେକ୍ଷା କଲେ ଚାତକ ଭଳି ପତ୍ରର ପ୍ରତ୍ୟୁତ୍ତରକୁ । ପତ୍ର ପହଞ୍ଚିଲା ମା'ଙ୍କ ନିକଟରେ । ପତ୍ରର ବିଷୟବସ୍ତୁ ପଠନ ମାଧ୍ୟମରେ ତାଙ୍କ ସମ୍ମୁଖରେ ଉନ୍ମୋଚିତ ହେଲାରୁ ମା'ଙ୍କ ମନ ଏକ ଅବର୍ଣ୍ଣନୀୟ ରାଜ୍ୟକୁ ଆରୋହଣ କଲା । ସେ ପୂର୍ବରୁ ଦେଖିଥିବା ଏକ ଦିବ୍ୟ ଦର୍ଶନ, ପୁନର୍ବାର ତାହା ସ୍ମୃତିପଟରେ ଜାଗି ଉଠିଲା - ''ନରେନ୍ଦ୍ରଙ୍କ ଶରୀର ଭିତରକୁ ଶ୍ରୀରାମକୃଷ୍ଣ ପ୍ରବେଶ କଲେ ଏବଂ ସ୍ୱୟଂ ଶ୍ରୀରାମକୃଷ୍ଣ ପରମହଂସ ନରେନ୍ଦ୍ରଙ୍କ ମାଧ୍ୟମରେ ଜଗତର କଲ୍ୟାଣ ପାଇଁ ବହୁ କାର୍ଯ୍ୟ ସମ୍ପାଦନ କରିବେ ।'' ଦିବ୍ୟ ଜନନୀ ବୁଝିପାରିଲେ ଯେ ନରେନ୍ଦ୍ର ଶ୍ରୀଠାକୁରଙ୍କ କାର୍ଯ୍ୟ ନିମନ୍ତେ ଆମେରିକା ଯିବା ଉଚିତ । ସେ ତତ୍‌କ୍ଷଣାତ୍ ନିଜର ଆଶୀର୍ବାଦ ତଥା ସ୍ୱୀକୃତି ପ୍ରଦାନ କଲେ ।

ସ୍ୱାମୀଜୀ ଦିବ୍ୟ ଜନନୀଙ୍କଠାରୁ ପତ୍ର ପାଇ ଆନନ୍ଦରେ ନୃତ୍ୟ କଲେ, ତାଙ୍କର ମୁଖମଣ୍ଡଳ ଅବର୍ଣ୍ଣନୀୟ ଆନନ୍ଦ ଉଲ୍ଲାସାଲୋକରେ ହେଲା ଉଦ୍‌ଭାସିତ । ମା'ଙ୍କର ଆଶୀର୍ବାଦ ଓ ଅନୁମତି ସେ ପାଇଛନ୍ତି । ବୀର ହନୁମାନ ମାତା ଠାକୁରାଣୀ ସୀତାଙ୍କୁ ଠାବ କରିବା ପାଇଁ ସମୁଦ୍ର ଲଂଘନ କରିଥିଲେ, ବର୍ତ୍ତମାନ ଆମେରିକାରେ ଗୁରୁଦେବଙ୍କର ବାଣୀ, ସନାତନ ଧର୍ମ ଓ ବେଦାନ୍ତ ପ୍ରଚାର କରିବାପାଇଁ ସେ ବର୍ତ୍ତମାନ ସମୁଦ୍ର ପାରି ହେବେ । ଶ୍ରୀରାମକୃଷ୍ଣଙ୍କର ଭବିଷ୍ୟତ ବାଣୀ ''ନରେନ୍ ଶିକ୍ଷାଦେବ'' ଶିହରିତ ହେଲା ତାଙ୍କର ପ୍ରତ୍ୟେକ ତନ୍ତୁରେ । ''ସ୍ୱାମୀ ବିବେକାନନ୍ଦ ଆମେରିକା ଓ ପାଶ୍ଚାତ୍ୟ ଦେଶକୁ ଯାତ୍ରା କରିବେ ନାହିଁ, ସ୍ୱୟଂ ଶ୍ରୀରାମକୃଷ୍ଣ ପରମହଂସ ଯିବେ ସ୍ୱାମୀ ବିବେକାନନ୍ଦଙ୍କ ରୂପରେ । ସେ ଯନ୍ତୀ ଓ ମୁଁ ଯନ୍ତ୍ର'' ସ୍ୱାମୀଜୀ ଭାବିଲେ ।



Digitized by srujanika@gmail.com

॥ ଅଠର ॥

# ପୁନଶ୍ଚ କ୍ଷେତ୍ରୀ ରାଜାଙ୍କର ଅତିଥି ଏବଂ ଆମେରିକା ଯାତ୍ରା ପାଇଁ ସଜବାଜ

ମାନ୍ଦ୍ରାଜ ଭକ୍ତଗଣ ସ୍ୱାମୀଜୀଙ୍କର ଆମେରିକା ଯାତ୍ରା ଉପଲକ୍ଷେ ସମସ୍ତ ପ୍ରକାର ଆୟୋଜନରେ ବ୍ୟସ୍ତ । ଚିକାଗୋ ସହରରେ ଅନୁଷ୍ଠିତ ହେବାକୁ ଥିବା ବିଶ୍ୱଧର୍ମ ସମ୍ମିଳନୀରେ ସେ କେବଳ ଯୋଗଦେବେ ନାହିଁ ବରଂ ଭାରତୀୟ ସନାତନ ଧର୍ମର ପ୍ରତିନିଧିତ୍ୱ କରିବେ । ଇତ୍ୟବସରରେ କ୍ଷେତ୍ରୀ ମହାରାଜ ଅଜିତ୍ ସିଂହଙ୍କର ବ୍ୟକ୍ତିଗତ ସଚିବ ମୁନ୍‌ସି ଜଗମୋହନ ଲାଲ ମାନ୍ଦ୍ରାଜରେ ପହଞ୍ଚିଲେ । ସେ ଆସିଛନ୍ତି ଏକ ଲକ୍ଷ୍ୟ ନେଇ - ସ୍ୱାମୀଜୀଙ୍କୁ କ୍ଷେତ୍ରୀ ନେଇଯିବେ । ଏଠାରେ ସ୍ମରଣଯୋଗ୍ୟ ଯେ ଦୁଇବର୍ଷ ପୂର୍ବେ ସ୍ୱାମୀଜୀ କ୍ଷେତ୍ରୀରେ ରହିଥିବା ବେଳେ, ମହାରାଜା ଅଜିତ୍ ସିଂହଙ୍କୁ ଏକ ସନ୍ତାନ ପ୍ରାପ୍ତ ହେବାର ଆଶୀର୍ବାଦ ଦେଇଥିଲେ । ତାହା ସତ୍ୟ ପ୍ରମାଣିତ ହେଲା । ରାଜବଂଶର ଉତ୍ତରାଧିକାରୀ ଜନ୍ମ ହେଲେ । ମହାରାଜା ଅତୀବ ଆନନ୍ଦିତ ହୋଇ ସ୍ୱାମୀଜୀଙ୍କର ସାନିଧ ଲାଭ ପାଇଁ ବ୍ୟାକୁଳ ହୋଇଉଠିଲେ । ପୁତ୍ରପ୍ରାପ୍ତି ଉପଲକ୍ଷେ ଏକ ଉତ୍ସବ ପାଳନ ନିମନ୍ତେ ମହାରାଜା ଏକ ଯୋଜନା ପ୍ରସ୍ତୁତ କଲେ ଯେଉଁଠି ସ୍ୱୟଂ ସ୍ୱାମୀଜୀ ଉପସ୍ଥିତ ରହିବେ । ସେଥିପାଇଁ ସେ ମୁନ୍‌ସି ଜଗମୋହନଲାଲଙ୍କୁ ପଠାଇଛନ୍ତି । ତାଙ୍କ ହାତରେ ବି ସେ ଖବର ଦେଇଥିଲେ ଯେ ସ୍ୱାମୀଜୀଙ୍କର ଆମେରିକା ଯାତ୍ରା ନିମନ୍ତେ ନିଜ ବ୍ୟକ୍ତିଗତ ପାଣ୍ଠିରୁ ଅର୍ଥ ଦାନ କରିବେ ।

ସ୍ୱାମୀଜୀଙ୍କର ଅନ୍ୱେଷଣରେ ମୁନ୍‌ସିଜୀ ସିଧା ମନ୍ମଥନାଥ ଭଟ୍ଟାଚାର୍ଯ୍ୟଙ୍କ ବାସ ଭବନରେ ପହଞ୍ଚିଲେ । ମୁନ୍‌ସିଜୀ ଯେତେବେଳେ ମନ୍ମଥବାବୁଙ୍କ ସେବକଙ୍କୁ ''ସ୍ୱାମୀଜୀ କାହାନ୍ତି'' ବୋଲି ପଚାରିଲେ, ସେ ଉତ୍ତର ଦେଲେ ''ସ୍ୱାମୀଜୀ ସମୁଦ୍ରକୁ ଯାଇଛନ୍ତି ।'' ମୁନ୍‌ସିଜୀ ବିବ୍ରତ ହୋଇ ଭାବିଲେଯେ ବୋଧହୁଏ ସ୍ୱାମୀଜୀ ପାଶ୍ଚାତ୍ୟ ଦେଶ ଚାଲିଗଲେଣି । ମନ ତାଙ୍କର ଦୁଃଖରେ ବୁଡିଗଲା । ଏହି ସମୟରେ ମୁନ୍‌ସୀଜୀଙ୍କ ଦୃଷ୍ଟି ସ୍ୱାମୀଜୀଙ୍କର ଶୁଖୁଥିବା ଗେରୁଆ ବସ୍ତ୍ର ଉପରେ ପଡ଼ିଲା । ସେ ଆଶ୍ୱସ୍ତ ହେଲେ । ଯାହାହେଉ ଏକ ଘୋଡ଼ାଗାଡ଼ିରେ ସେଠାରେ ପହଞ୍ଚିଲା ଏବଂ ସ୍ୱାମୀଜୀ ସେଥିରୁ ଓହ୍ଲାଇଲେ । ମୁନସିଜୀଙ୍କୁ ହଠାତ୍ ଦେଖି ସ୍ୱାମୀଜୀ ଅତୀବ ଆନନ୍ଦିତ ହେଲେ । ମୁନ୍‌ସୀଜୀ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ମହାରାଜାଙ୍କର ବାର୍ତ୍ତା ଉପସ୍ଥାପନା କଲେ । କିନ୍ତୁ ସ୍ୱାମୀଜୀ ମୃଦୁ ସ୍ୱରରେ କହିଲେ, ମୋର ପ୍ରିୟ ମୁନ୍‌ସିଜୀ, ମେ ୩୧ ତାରିଖରେ ଆମେରିକା ଯିବା ପାଇଁ ସମସ୍ତ ଆୟୋଜନ ହୋଇସାରିଛି । ଆଉ ମାତ୍ର ଦେଢ଼ମାସ ବାକି ରହିଲା । ବର୍ତ୍ତମାନ

Digitized by srujanika@gmail.com

ମହାରାଜାଙ୍କୁ ସାକ୍ଷାତ ମୁଁ କିପରି କରିପାରିବି ? ମୁନ୍‌ସୀଜୀ ବଡ଼ ବ୍ୟସ୍ତ ହୋଇ କହିଲେ, ''ସ୍ୱାମୀଜୀ ମହାରାଜ, ଯେମିତି ହେଉ ପଛେ ଆପଣ ଗୋଟିଏ ଦିନ ପାଇଁ କ୍ଷେତ୍ରୀ ଚାଲନ୍ତୁ । ଯଦି ଆପଣ ନ ଯା'ନ୍ତି, ମହାରାଜା ନୈରାଶ୍ୟରେ ଭାଙ୍ଗି ପଡ଼ିବେ । ପାଶ୍ଚାତ୍ୟ ରାଷ୍ଟ୍ର ଯିବାପାଇଁ ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ମହାରାଜା ସ୍ୱୟଂ ସମସ୍ତ ବ୍ୟବସ୍ଥା କରିଦେବେ । କେବଳ ମୋ ସାଥୀରେ ଆପଣ ଚାଲନ୍ତୁ ।'' ମହାରାଜାଙ୍କର ଅଟଳ ବିଶ୍ୱାସ ତଥା ମୁନ୍‌ଜୀଙ୍କର ଆନ୍ତରିକ ଭକ୍ତି ସ୍ୱାମୀଜୀଙ୍କୁ ମୁଗ୍ଧ କଲା । ସେ ବାଧହୋଇ ମାନ୍ଦ୍ରାଜ କୂଳରୁ ଆମେରିକା ଯାତ୍ରା ପରିବର୍ତ୍ତେ ବମ୍ବେରୁ ଯିବାପାଇଁ ସ୍ଥିର କଲେ ।

କ୍ଷେତ୍ରୀ ଅଭିମୁଖେ ଯାତ୍ରା ଆରମ୍ଭ ଉଦ୍ଦେଶ୍ୟରେ ମାନ୍ଦ୍ରାଜରୁ ଟ୍ରେନ୍ ଚଢ଼ିଲେ । ମାନ୍ଦ୍ରାଜ ଭକ୍ତଗଣ ଶହଶହ ସଂଖ୍ୟାରେ ଷ୍ଟେସନର ପ୍ଲାଟ୍‌ଫର୍ମରେ ସମବେତ ହେଲେ । ସ୍ୱାମୀଜୀଙ୍କ ପାଦ ସହସ୍ର ବ୍ୟକ୍ତିଙ୍କର ପ୍ରଣିପାତରେ ପୁଲକିତ ହୋଇଉଠିଲା । ଅଶ୍ରୁପୂର୍ଣ୍ଣ ନୟନରେ ଶହ ଶହ ଭକ୍ତଙ୍କର ସାଷ୍ଟାଙ୍ଗ ପ୍ରଣିପାତର ଦୃଶ୍ୟ ଏବଂ ଜୟ ଶ୍ରୀରାମକୃଷ୍ଣ ଧ୍ୱନି ଉପସ୍ଥିତ ଜନତାଙ୍କୁ ଭାବବିହ୍ୱଳିତ କରିଦେଲା । ସ୍ୱାମୀଜୀ ଟ୍ରେନ ଡବାର ଦ୍ୱାର ଦେଶରେ ଦଣ୍ଡାୟମାନ ହୋଇ, ଦକ୍ଷ ହସ୍ତ ପ୍ରସାରିତ କରି ଆଶୀର୍ବାଦ ଅଜାଡ଼ି ଦେଲେ ଭକ୍ତଗଣଙ୍କ ଉପରେ । ଟ୍ରେନ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ଭକ୍ତଗଣ କେବଳ ଚାହିଁଥିଲେ ହେଁ ଚାହିଁଥିଲେ ଏବଂ ଅନୁଭୂତ ହେଉଥିଲା ସେମାନଙ୍କ ହୃଦୟରେ ସେବା ଓ ତ୍ୟାଗର ମହାମନ୍ତ୍ର ।

- ୧ -

*କେବଳ ସେତିକି ନୁହେଁ, ଭାରତୀୟଙ୍କ ଉପରେ ବିଦେଶୀମାନଙ୍କର ହେୟ ମନୋଭାବ ପ୍ରତି ଥିଲା ଏହା ଏକ ବିଦ୍ରୋହାତ୍ମକ ଜବାବ । ଭାରତୀୟଙ୍କର ଦୁଃଖ, ବେଦନା ଓ ଯନ୍ତ୍ରଣାସମୂହ ତାତିଲା ରକ୍ତ ପାଲଟି ସ୍ୱାମୀଜୀଙ୍କ ଶିରା ପ୍ରସିରା ଓ ଧମନୀରେ ପ୍ରବାହିତ ହେଉଥିଲା । ସମଗ୍ର ଭାରତବାସୀଙ୍କ ମନ ଓ ହୃଦୟରେ ସାହସ ସଞ୍ଚାର କରିବାର ଦାୟିତ୍ୱ ସତେକି ତାଙ୍କୁ ସମର୍ପି ଦିଆଯାଇଛି ?*

ସ୍ୱାମୀଜୀ କ୍ଷେତ୍ରୀରେ ପ୍ରାୟ ତିନି ସପ୍ତାହ ଅବସ୍ଥାନ କଲେ । ମହାରାଜା ସ୍ୱାମୀଜୀଙ୍କର ସାନିଧ୍ୟ ଲାଭ କରି ଧନ୍ୟ ହେଲେ । ଉତ୍ସବ ଆଡ଼ମ୍ବର ସହକାରେ ପାଳିତ ହେଲା । ନବଜାତ ରାଜକୁମାରଙ୍କୁ ସ୍ୱାମୀଜୀ ଆଶୀର୍ବାଦ କଲେ । ମହାରାଜା, ଆମେରିକା ଯାତ୍ରା ପାଖେଇ ଆସୁଥିବାରୁ, ବେଶିଦିନ ରହିବାକୁ ସ୍ୱାମୀଜୀଙ୍କ ଉପରେ ଚାପ ପ୍ରୟୋଗ କଲେ ନାହିଁ, ଯଦିଓ ସ୍ୱାମୀଜୀଙ୍କୁ ବିଦାୟ ଦେବାପାଇଁ ମନ ତାଙ୍କର ଆଦୌ ମାନୁ ନ ଥିଲା । ଯାହାହେଉ, ଉଚ୍ଛ୍ୱସିତ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରି ସେ ସ୍ୱାମୀଜୀଙ୍କୁ ରାଜପ୍ରାସାଦରୁ ବିଦାୟ ଦେଲେ । ସ୍ୱାମୀଜୀ, ରାଜାଙ୍କର ମାଉଣ୍ଟ୍ ଆବୁଠାରେ ଅବସ୍ଥିତ ଗ୍ରୀଷ୍ମକାଳୀନ ଭବନରେ ବାସ କଲେ ଏବଂ ସେଠାରୁ ବମ୍ବେ ଅଭିମୁଖେ ଟ୍ରେନ୍ ଚଢ଼ିଲେ ।

Digitized by srujanika@gmail.com

ମାଉଣ୍ଟଆବୁ ରେଳଷ୍ଟେସନରେ ଯେତେବେଳେ ସ୍ୱାମୀଜୀ ଟ୍ରେନ୍‌ରେ ବସିଲେ, ସେତେବେଳେ ଏକ ଅପ୍ରିତିକର ଘଟଣା ଲକ୍ଷ୍ୟକରି ତାଙ୍କ ମନ ବିଦ୍ରୋହ ଅଗ୍ନିରେ ପ୍ରଜ୍ଜ୍ୱଳିତ ହେଲା । ସ୍ୱାମୀଜୀଙ୍କର ଜଣେ ବଙ୍ଗାଳି ଭକ୍ତ, ତାଙ୍କ ପାଖରେ ବସିଥିବାର ଦେଖି ଇଂରାଜୀ ଟିକେଟ୍ କଲେକ୍ଟର ଉକ୍ତ ଭକ୍ତଙ୍କୁ ଡବାରୁ ବାହାରି ଯିବା ପାଇଁ ଅତି ଅଶାଳୀନ ଓ କଠୋର ଭାଷାରେ କହିଲେ । ରେଳବାଇ ନିୟମ ଉଲଘନ କରିଥିବାରୁ ଏମନ୍ତ କଟୁଭାଷା ସେ ବ୍ୟବହାର କଲେ । ଉକ୍ତ ବଙ୍ଗାଳୀ ଭକ୍ତ ଜଣେ ରେଳବାଇ କର୍ମଚାରୀ । ସେ ନମ୍ରତା ସହ ଟିକେଟ କଲେକ୍ଟରଙ୍କୁ କହିଲେଯେ ସେ ଏମିତି କୌଣସି ନିୟମ ଉଲଘନ କରିନାହାନ୍ତି, ଯା'ଫଳରେ ତାଙ୍କୁ ଡବାରୁ ବାହାରିଯିବାକୁ ପଡ଼ିବ । ଇଂରାଜୀ ଟିକେଟ କଲେକ୍ଟର ଭୀଷଣ କ୍ରୋଧାନ୍ୱିତ ହୋଇପଡ଼ିଲେ । ଦେଶଭକ୍ତିରେ ଉଚୁଟୁବୁ ସ୍ୱାମୀଜୀ ଇଂରାଜୀ ଟିକେଟ କଲେକ୍ଟରଙ୍କର ଭାରତୀୟମାନଙ୍କ ପ୍ରତି ତାଚ୍ଛଲ୍ୟ ଭାବ ଓ ଅପମାନଜନକ ବ୍ୟବହାର ପରିଲକ୍ଷିତ କରି ଅଗ୍ନିବାଣ ହୋଇଗଲେ । ବାଧହୋଇ ସେ ହସ୍ତକ୍ଷେପ କଲେ । କିନ୍ତୁ ଇଂରାଜୀ ଟିକେଟ କଲେକ୍ଟର ସ୍ୱାମୀଜୀଙ୍କ ଆଡ଼କୁ ଚାହିଁ କଠୋର ସ୍ୱରରେ କହିଲେ, ''ତୁମ୍ କାହେ ବାତ୍ କର୍‌ତେ ହୋ ?'' ସାଧାରଣତଃ ହିନ୍ଦିରେ 'ତୁମ୍' ଶବ୍ଦ ଅନ୍ତରଙ୍ଗ ବନ୍ଧୁ କିମ୍ବା ଅଧଃସ୍ତନ ବ୍ୟକ୍ତିଙ୍କୁ ସମ୍ବୋଧନ କରାଯାଏ କିନ୍ତୁ ''ଆପ'' ଶବ୍ଦ ସାଧାରଣ ଓ ବରିଷ୍ଠ ବ୍ୟକ୍ତିଙ୍କୁ ସମ୍ବୋଧିତ ହୋଇଥାଏ ।

ସ୍ୱାମୀଜୀ ପ୍ରଚଣ୍ଡ କ୍ରୋଧ ପ୍ରକାଶ କରି ଗର୍ଜି ଉଠିଲେ, 'ତୁମ୍'ର ଅର୍ଥ ଆପଣ କ'ଣ ବୁଝନ୍ତି ? ଆପଣ ଭଦ୍ର ବ୍ୟବହାର କରିବା ଶିଖି ନାହାନ୍ତି ? ଆପଣ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଯାତ୍ରୀଗଣଙ୍କୁ ସହାୟତା କରୁଛନ୍ତି, କିନ୍ତୁ ଯାତ୍ରୀମାନଙ୍କ ସହ କିପରି ବ୍ୟବହାର କରାଯାଏ ଆପଣ ଜାଣିନାହାଁନ୍ତି ? ଆପଣ ଯାତ୍ରୀଙ୍କୁ 'ଆପଣ' କାହିଁକି କହୁନାହାଁନ୍ତି ? ଟିକେଟ କଲେକ୍ଟର ନିଜର ଭୁଲ ବୁଝିପାରି କହିଲେ, ''ଆଚ୍ଛା, ମୋର ଭୁଲ ହୋଇଗଲା । ମୁଁ ହିନ୍ଦି ଭାଷା ଭଲ ଭାବରେ ଜାଣିନାହିଁ । ମୁଁ କେବଳ ଏହି ଲୋକଟାକୁ (ଦିସ୍ ମ୍ୟାନ) କହୁଥିଲି ଯେ... । ସ୍ୱାମୀଜୀ ପୁନଶ୍ଚ ବିରକ୍ତି ପ୍ରକାଶ କରି କହିଲେ, ''ଆପଣ କହିଲେ ଯେ ହିନ୍ଦି ଭଲ ଭାବରେ ଜାଣିନାହାନ୍ତି । ବର୍ତ୍ତମାନ ମୁଁ ଯାହା ଦେଖିଲି, ଆପଣ ବି ଆପଣଙ୍କର ମାତୃଭାଷା ଇଂରାଜୀ ଭଲ ଭାବରେ ଜାଣିନାହାନ୍ତି । ଯେଉଁ ବ୍ୟକ୍ତିଙ୍କୁ ଆପଣ 'ଦିସ୍ ମ୍ୟାନ' କହୁଛନ୍ତି, ସେ ଜଣେ ଭଦ୍ରଲୋକ । ଆପଣ ଭଦ୍ରଲୋକ ବୋଲି ସମ୍ବୋଧନ କରି ପାରୁନାହାଁନ୍ତି ?''

ଇଂରାଜୀ ଟିକେଟ କଲେକ୍ଟର ସ୍ୱାମୀଜୀଙ୍କର ଯୁକ୍ତି ଓ କହିବାର ଶୈଳୀ ଦେଖି କେବଳ ହତବାକ୍ ହେଲେ ନାହିଁ ବରଂ ଲଜିତ ହୋଇ ଉକ୍ତ ଡବାରୁ ଚାଲିଗଲେ । ଏହି ଘଟଣାଟି ଗୁରୁତ୍ୱପୂର୍ଣ୍ଣ ବୋଲି ପ୍ରତୀୟମାନ ହେଉ ନ ଥିଲେ ବି, ଏହା ଭିତରେ ରହିଛି ଏକ ବାର୍ତ୍ତା । ପ୍ରତ୍ୟେକ ବ୍ୟକ୍ତିର ଆତ୍ମ-ସମ୍ମାନ ରହିଛି । ଯିଏ ଯେଉଁ ପଦବୀ ଏବଂ ବୃତ୍ତି ଅବଲମ୍ବନ କରିଥାଉ ପଛକେ, ସମସ୍ତଙ୍କୁ ସମ୍ମାନଦେବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । କେବଳ ସେତିକି ନୁହେଁ, ଭାରତୀୟଙ୍କ ଉପରେ ବିଦେଶୀମାନଙ୍କର ହେୟ ମନୋଭାବ ପ୍ରତି ଥିଲା ଏହା ଏକ ବିଦ୍ରୋହାତ୍ମକ ଜବାବ । ଭାରତୀୟଙ୍କର ଦୁଃଖ, ବେଦନା ଓ ଯନ୍ତ୍ରଣାସମୂହ ତାତିଲା ରକ୍ତ ପାଲଟି ସ୍ୱାମୀଜୀଙ୍କ ଶିରା ପ୍ରଶିରା ଓ ଧମନୀରେ ପ୍ରବାହିତ ହେଉଥିଲା । ସମଗ୍ର ଭାରତବାସୀଙ୍କ ମନ ଓ ହୃଦୟରେ ସାହସ ସଞ୍ଚାର କରିବାର ଦାୟିତ୍ୱ ସତେକି ତାଙ୍କୁ ସମର୍ପି ଦିଆଯାଇଛି ?

Digitized by srujanika@gmail.com

ମୁନସି ଜଗମୋହନଲାଲଙ୍କ ସହିତ ସ୍ୱାମୀ ବିବେକାନନ୍ଦ ଯାତ୍ରା କଲେ ବମ୍ବେ ଅଭିମୁଖେ । ତାଙ୍କର ପରିବ୍ରାଜକ ଜୀବନର ସମାପ୍ତ ଘଟିବ ଭାରତବର୍ଷର ପଶ୍ଚିମ କୂଳସ୍ଥ ବମ୍ବେରେ । ସମଗ୍ର ଭାରତବର୍ଷ ସେ ବର୍ତ୍ତମାନ ଭ୍ରମଣ କରିସାରିଛନ୍ତି । ନିଃସ୍ୱ, କାଙ୍ଗାଳ, ଦରିଦ୍ର ଗୃହରେ ଅତିଥି ହୋଇ ସେ ଅଙ୍ଗେ ନିଭାଇଲେ କାଙ୍ଗାଳର ଉତ୍କଟ ଦାରିଦ୍ର୍ୟ । ରାଜା, ମହାରାଜା, ସାମନ୍ତ, ଜମିଦାରଙ୍କ ପ୍ରାସାଦରେ ରହି ହୃଦୟଙ୍ଗମ କଲେ ବିଳାସବ୍ୟସନର ଶତସହସ୍ର ଉପଭୋଗର ମୁଖ ଏବଂ ଗରିବ ପ୍ରତି ସେମାନଙ୍କର ହେୟ ମନୋଭାବ । ଜ୍ଞାନୀ, ବିଦ୍ୱାନ, ପଣ୍ଡିତ, ଶିକ୍ଷିତମାନଙ୍କ ସହ ଆଲୋଚନା କରି ଜାଣିଲେ ସେମାନଙ୍କର ସର୍ବଗ୍ରାସୀ ଅହଙ୍କାର ଓ ଗର୍ବ । ବିଭିନ୍ନ ଧର୍ମର ବଡ଼ପଣ୍ଡାଙ୍କ ସହ ମିଶି ଅବଗତ ହେଲେ ଧର୍ମାନ୍ଧତା ଓ ଧର୍ମୋନ୍ମଦନାର ଭୟାବହତା । ବ୍ରାହ୍ମଣ, କ୍ଷେତ୍ରୀୟ, ଚଣ୍ଡାଳ ସମ ଅନେକ ସମ୍ପ୍ରଦାୟ ଓ ଜାତିସମୂହଙ୍କ ସହ ସଂସ୍ପର୍ଶରେ ଆସି ଦେଖିଲେ ଜାତିପ୍ରଥାର କରାଳ ରୂପ । ଗାଁ, ସହର, ନଗର, ବଣ, ପାହାଡ଼, ପର୍ବତ, ମରୁଭୂମିରେ ଭ୍ରମଣ କରି ସ୍ୱଚକ୍ଷୁରେ ଦେଖି ନେଲେ ଭାରତବର୍ଷର ଦୁରାବସ୍ଥା । ସାଧୁ, ସନ୍ନ୍ୟାସୀ, ପଣ୍ଡିତ, ବିଦ୍ୱାନଙ୍କର ଦ୍ୱାରସ୍ଥ ହୋଇ ଶିକ୍ଷାଲାଭ କଲେ ବିଭିନ୍ନ ଦର୍ଶନ ଓ ତତ୍ତ୍ୱ, ଛାତ୍ର, ଶିକ୍ଷକ, ପ୍ରଶାସକ, କୃଷକ କାରିଗର, ବୁଦ୍ଧିଜୀବୀଙ୍କ ଭିତରେ ଅବଲୋକନ କଲେ ପରାଙ୍ମୁଖତା ଓ ପରାନୁକରଣର କାଳିମା ।

କାଳଜୟୀ ବେଦ, ଉପନିଷଦ ଓ ବେଦାନ୍ତ ବାଣୀ ଆଜି ବିସ୍ମୃତ ଭାରତୀୟଙ୍କ ମନ ଓ ଚେତନାରେ । ଅନ୍ଧବିଶ୍ୱାସ, କୁସଂସ୍କାର ଆଚ୍ଛନ୍ନ ସେମାନଙ୍କୁ କରିଛି । ପ୍ରାଚୀନ କୁସଂସ୍କାର ଓ ଅନ୍ଧବିଶ୍ୱାସ ଏକ ବିରାଟ ଆନୁଷ୍ଠାନିକ ବେପାରରେ ପରିଣତ ହୋଇଛି । ଏହା ଧୀରେ ଧୀରେ ବିରାଟ ଆକାର ଧାରଣ କରି ଭାରତର ଜୀବନୀଶକ୍ତିକୁ ଧ୍ୱଂସ କରିଦେଇଛି । ଏହା ଭାରତୀୟମାନଙ୍କୁ କଠୋର ଭାବେ ଧରି ରଖିଛି ଏବଂ ସେମାନଙ୍କର ଜୀବନୀଶକ୍ତିର ମଜ୍ଜାରେ ମଜ୍ଜାରେ ପ୍ରବିଷ୍ଟ ହୋଇ ଜନ୍ମରୁ ହିଁ ସେମାନଙ୍କୁ କ୍ରୀତଦାସରେ ପରିଣତ କରିଛି । ଭଣ୍ଡାମି, ବିଭ୍ରମ, ପ୍ରହେଳିକା ସମ କୁସଂସ୍କାରରେ ଆଚ୍ଛନ୍ନ ହୋଇଛି ଧର୍ମ । କ୍ରୀତଦାସତ୍ୱରେ ପରିଣତ ଭାରତୀୟ ନିଜର ପ୍ରକୃତ ସ୍ୱରୂପକୁ ଭୁଲିଯାଇ ରାଜା ମହାରାଜା, ସାମନ୍ତ, ଧନୀ, ବାଦ୍‌ସାହା, ଜମିଦାର ଓ ଉଚ୍ଚବର୍ଗ ଜାତି ନିକଟରେ ସମର୍ପଣ କରିଛି । ଏହା ନ ହୋଇଥିଲେ ବିଦେଶୀ ବଣିକ ନିକଟରେ ଏହି ପରାକ୍ରମୀ ଭାରତୀୟ କ'ଣ ନିଜକୁ ବିକ୍ରି କରି ଦେଇଥାନ୍ତା !!!

- ୨ -

*ଯେତେଦିନ ପର୍ଯ୍ୟନ୍ତ ଭାରତର କୋଟି କୋଟି ଜନତା କ୍ଷୁଧାର୍ତ୍ତ ରହିଥିବେ ଏବଂ ଧନିକ ଗୋଷ୍ଠୀ ଅର୍ଥ ଉପାର୍ଜନ କରି ଜାକ୍‌ଜମକରେ ଜୀବନ ନିର୍ବାହ କରୁଥିବେ, ସେତେଦିନ ପର୍ଯ୍ୟନ୍ତ ଭାରତର ଭାଗ୍ୟ ଆକାଶରେ ମହାନନ୍ଦର ଅରୁଣୋଦୟ ହେବନାହିଁ ।*

ବିଦ୍ରୋହାଗ୍ନିରେ ସେ ବାରମ୍ବାର ଦଗ୍ଧିଭୂତ ହେଉଛନ୍ତି । ତଥାପି ନୈରାଶ୍ୟ ସାଗରରେ ସଂପୂର୍ଣ୍ଣ ବୁଡି ନ ଯାଇ ଆଶାର ଦୀପକୁ ପ୍ରଜ୍ୱଳିତ କରି ଭାବୁଛନ୍ତି - ହାୟରେ ହତଭାଗ୍ୟ

Digitized by srujanika@gmail.com

ଭାରତୀୟ ! ତୁମର ଦୁର୍ଦ୍ଦଶା ପାଇଁ ତୁମେ ନିଜେ ହିଁ ଦାୟୀ । ତୁମକୁ ଚେତାଇବାକୁ ପଡ଼ିବ । ଉଠେଇବାକୁ ପଡ଼ିବ । ତେବେଯାଇ ନିଜର ସ୍ୱରୂପ ତୁମେ ଚିହ୍ନିପାରିବ । ଭାରତର ହୃତ ଗୌରବ ପୁନର୍ବାର ଫେରିଆସିବ । ଭାରତମାତା ମୁକ୍ତ ହେବ । ସ୍ୱାଧୀନ ହେବ । ବେଦାନ୍ତର ବିଜୟ ପତାକା ସାରା ବିଶ୍ୱରେ ଉଡ଼ିବ । ଯେତେଦିନ ପର୍ଯ୍ୟନ୍ତ ଭାରତର କୋଟି କୋଟି ଜନତା କ୍ଷୁଧାର୍ତ୍ତ ରହିଥିବେ ଏବଂ ଧନୀକ ଗୋଷ୍ଠୀ ଅର୍ଥ ଉପାର୍ଜ୍ଜନ କରି ଜାକ୍‌ଜମକରେ ଜୀବନ ନିର୍ବାହ କରୁଥିବେ, ସେତେଦିନ ପର୍ଯ୍ୟନ୍ତ ଭାରତର ଭାଗ୍ୟ ଆକାଶରେ ମହାନନ୍ଦର ଅରୁଣୋଦୟ ହେବନାହିଁ ।

ଦକ୍ଷିଣେଶ୍ୱରରେ ରହିଥିବା ସମୟରେ ଶ୍ରୀଗୁରୁଦେବଙ୍କ ପାଖରୁ 'ଶିବ ଜ୍ଞାନେ ଜୀବ ସେବା'ର ମହାମନ୍ତ୍ର ପାଇଥିଲେ । ସାରା ଭାରତବର୍ଷ ଭ୍ରମଣ କରି ଦେଖିଲେ ଦୁଃଖୀ, ଦରିଦ୍ର, କାଙ୍ଗାଳଙ୍କର ମୁମୂର୍ଷୁ ହା-ଅନ୍ନ ଚିତ୍କାର । ତାଙ୍କର ବୈଦାନ୍ତିକ ହୃଦୟ ଓ ମନ ଦୁଃଖ ନୈରାଶ୍ୟରେ ଦୋହଲିଗଲା । ଏହା ନ ଥିଲା ଗରିବ, ଦୁଃଖିମାନଙ୍କର ଲାଞ୍ଛନା ବରଂ ଏହାଥିଲା ସ୍ୱୟଂ ଶିବଙ୍କର ଲାଞ୍ଛନା । ଯେଉଁ ମଣିଷକୁ ଶିବ ଜ୍ଞାନରେ ପୂଜା କରି, ତା'ର ଆର୍ଥିକ, ମାନସିକ ଓ ଆଧାତ୍ମିକ ଉନ୍ନତି ସାଧନ କରିବା ପାଇଁ ଦକ୍ଷିଣେଶ୍ୱର ରାଜାଧିରାଜ ଗୁରୁଙ୍କଠାରୁ ମହାମନ୍ତ୍ର ଗ୍ରହଣ କରିଥିଲେ, ଆଜି ସେହି କୋଟି କୋଟି ଶିବ କିପରି ଲାଞ୍ଛିତ ଏହି ଭାରତବର୍ଷରେ ! ମନେ ପଡ଼ିଗଲା ଶ୍ରୀରାମକୃଷ୍ଣଙ୍କ ସସ୍ନେହ ବାଣୀ - ''ଆରେ ମାଟିର ପ୍ରତିମା ଏଠାରେ ପୂଜା ହୁଏ । ଜୀଅନ୍ତା ମଣିଷର ନୁହେଁ ।'' ସେହିଦିନ ବୁଝିପାରିଥିଲେ ସ୍ୱାମୀଜୀ । ମଣିଷର ଦୁଃଖ ଦୂର କରିବାକୁ ହେବ । କିନ୍ତୁ କି ଭାବେ ? ସେ ନିଜେ ଯେ ଭିକ୍ଷୁକ କପର୍ଦ୍ଦକ ଶୂନ୍ୟ ସନ୍ନ୍ୟାସୀ, ଅନେକ ଧନୀ, ରାଜା, ମହାରାଜାଙ୍କ ଦ୍ୱାରସ୍ଥ ହୋଇଛନ୍ତି । କିନ୍ତୁ ପାଇଛନ୍ତି କ'ଣ ? ଗୋଟିଏ ସତ୍ୟ ସେ ଆବିଷ୍କାର କରିଛନ୍ତି - ସମସ୍ତେ ଦୁଃଖୀ । ଯାହାର ଅଛି ସେ ଦୁଃଖି, ଯାହାର ନାହିଁ ସେ ବି ଦୁଃଖୀ ।

ଏଠାରେ ସ୍ମରଣଯୋଗ୍ୟ ଯେ ଶ୍ରୀରାମକୃଷ୍ଣ ଜୀବର ଦୁଃଖ ଦୂର କରିବାର ବ୍ରତ ସ୍ୱାମୀଙ୍କୁ ଦେଇ ନ ଥିଲେ ବରଂ ଦେଇଥିଲେ 'ନରେନ୍ଦ୍ର ଶିକ୍ଷା ଦେବ' ବୋଲି ସ୍ୱହସ୍ତ ଲିଖିତ ଆଦେଶନାମା । ଅର୍ଥାତ୍ ଜୀବର ଦୁଃଖ ଦୂରୀଭୂତ ହେବ ଶିକ୍ଷା ମାଧ୍ୟମରେ । କିନ୍ତୁ କି ଶିକ୍ଷା ଦେବେ ? ଅବଶ୍ୟ ଶ୍ରୀରାମକୃଷ୍ଣ ସ୍ୱାମୀଜୀଙ୍କୁ ଦେଇଥିଲେ ସୂତ୍ରାକାର ବ୍ରତ ଓ ଆଦେଶ । ତାହା ସଂଚରଣ କଲେ ନିଜର ଅମେୟ ଆଧାତ୍ମିକ ଶକ୍ତି ବଳରେ । ସ୍ୱାମୀଜୀ ସ୍ୱକୀୟ ସାଧନା-ପ୍ରତିଭା ଦ୍ୱାରା ଓ ମହାମାୟାଙ୍କର କୃପାଫଳରେ ଆବିଷ୍କାର କଲେ ପାଇଥିବା ବ୍ରତର କ୍ଷେତ୍ର-ପରିଧି । ସେ ଏହି ସତ୍ୟ ଆବିଷ୍କାର କଲେ ଯେ ଶ୍ରୀରାମକୃଷ୍ଣ ସମଗ୍ର ମାନବ ଜାତିର କଲ୍ୟାଣ ନିମନ୍ତେ ଅବତୀର୍ଣ୍ଣ । ଅତଏବ ସେ ଦେଇଥିବା ବ୍ରତର ପ୍ରୟୋଗଭୂମି ହେବ ସମଗ୍ର ଜଗତ । ଶିକ୍ଷା ମାଧ୍ୟମରେ ବ୍ରତ ଉଦ୍‌ଯାପିତ କରିବାକୁ ହେବ । କିନ୍ତୁ କି ଶିକ୍ଷା ଦେବେ ? ଏହି ପ୍ରଶ୍ନର ଉତ୍ତର ପାଇବା ପାଇଁ ତାଙ୍କୁ ଭ୍ରମଣ କରିବାକୁ ପଡ଼ିଲା ସମଗ୍ର ଭାରତବର୍ଷ । ଭାରତର ସବୁ ସ୍ତରର ଲୋକଙ୍କୁ ସେ ଦେଖିଲେ । ଏହି ପରିପ୍ରେକ୍ଷୀରେ ଶ୍ରୀରାମକୃଷ୍ଣଙ୍କର ଭବିଷ୍ୟତ ବାଣୀ ମନେ ପଡ଼େ - ନରେନ୍ ଯେତେବେଳେ ବାହାର ଲୋକଙ୍କ ସହିତ ମିଶିବ, ସେତେବେଳେ ସେ ସମସ୍ତଙ୍କୁ ଭଲପାଇବ । ସମସ୍ତଙ୍କୁ ଆପଣେଇ ନେଇ ସେ ଏକ ହୋଇଯିବ, ବିଦ୍ୱେଷ ଭାବ ରହିବ

Digitized by srujanika@gmail.com

ନାହିଁ । ଇଏ ସାକାର ମାନେ, ନିରାକାର ମାନେନା - ଇଏ ନିରାକାର ମାନେ, ସାକାର ମାନେନା - ଇଏ ହିନ୍ଦୁ, ସିଏ ଖ୍ରୀଷ୍ଟିଆନ ଓ ମୁସଲମାନ, ଏଭଳି ନାକଟେକା ଘୃଣା ସେ କରେନାହିଁ । ତାଙ୍କୁ ଯେମିତି ଯିଏ ବୁଝିଛି । ସମସ୍ତଙ୍କର ଭିନ୍ନ ଭିନ୍ନ ସ୍ୱଭାବ ଓ ପ୍ରକୃତି ଜାଣି, ସେମାନଙ୍କ ସଙ୍ଗରେ ମିଶିବ । ସେମାନଙ୍କୁ ଭଲ ପାଇବ ।

ପରିଭ୍ରମଣ କାଳରେ ସ୍ୱାମୀଜୀ ସମସ୍ତଙ୍କ ସାଙ୍ଗରେ ସବୁ ସ୍ତର, ସବୁଧର୍ମ, ସବୁ ଅଧର୍ମର ଲୋକଙ୍କ ସହିତ ମିଶିଲେ । ସେମାନଙ୍କର ଦୁଃଖ, ସୁଖ, ଆଶା - ନିରାଶା, ବେଦନା-ସମସ୍ୟାର ଅଂଶୀଦାର ହେଲେ । ନିଜ ଧ୍ୟାନମନ୍ଦିରରେ ସ୍ୱରୂପକୁ ଦେଖିଲେ । ବିପଦ ଆପଦ ଆସିଛି, କ୍ଷୁଧିତ ରହିବାକୁ ପଡ଼ିଛି, କିନ୍ତୁ ତାଙ୍କର ମାନବପ୍ରତି ପ୍ରେମ ପ୍ରଶାନ୍ତ ମହାସାଗର ଭଳି ପ୍ରସାରିତ ହୋଇଛି । ଯେଉଁ ମାନବକୁ ପୂଜା କରିବାର ମନ୍ତ୍ର ଶ୍ରୀରାମକୃଷ୍ଣଙ୍କଠାରୁ ପାଇଥିଲେ, ସେହି ମନ୍ତ୍ରର ସାକାର ରୂପ ପରିଭ୍ରମଣ କାଳରେ ପ୍ରତ୍ୟେକ ମଣିଷ ଭିତରେ ଦର୍ଶନ କଲେ ।

ବମ୍ବେରେ ଟ୍ରେନରୁ ଅବତରଣ କଲେ ସ୍ୱାମୀଜୀ । ସେ ବମ୍ବେରୁ ଆମେରିକା ଯାତ୍ରା କରିବେ ବୋଲି ଜାଣିଥିଲେ ମାଡ୍ରାଜର ଭକ୍ତ ଆଲସିଙ୍ଗା ପେରୁମଲ । ସ୍ୱାମୀଜୀ ଓ ମୁନ୍‌ସି ଜଗମୋହନଲାଲଙ୍କୁ ଷ୍ଟେସନରେ ପେରୁମଲ ସ୍ୱାଗତ ଜଣାଇଲେ । ପେରୁମଲଙ୍କର ନିଷ୍ଠା ଓ ଭକ୍ତି ଦେଖି ସ୍ୱାମୀଜୀ ଉଲ୍ଲସିତ ହୋଇଉଠିଲେ । କ୍ଷେତ୍ରୀ ମହାରାଜାଙ୍କର ନିର୍ଦ୍ଦେଶାନୁସାରେ ମୁନ୍‌ସିଜୀ ସ୍ୱାମୀଜୀଙ୍କ ନିମନ୍ତେ ଗୈରିକ ବସ୍ତ୍ର, ପଗଡ଼ି ଓ ଆବଶ୍ୟକୀୟ ପରିଧାନ କ୍ରୟ କରି ସ୍ୱାମୀଜୀଙ୍କୁ ପ୍ରଦାନ କଲେ । ଜାପାନ ଦେଇ ଆମେରିକା ଅଭିମୁଖେ ଯାତ୍ରୀବାହୀ ଜାହାଜ **ପି ଏଣ୍ଡ ଓ ଷ୍ଟିମର ପେନିନ୍‌ସୁଲାରରେ** ଗୋଟିଏ ପ୍ରଥମ ଶ୍ରେଣୀ ଟିକଟର ବ୍ୟବସ୍ଥା କରିବା ସହିତ ଜାପାନରୁ ଅନ୍ୟ ଏକ ଜାହାଜ **'ଏମ୍ପ୍ରେସ୍ ଅଫ୍ ଇଣ୍ଡିଆ'**ରେ ମଧ୍ୟ ତଦ୍ରୂପ ଟିକେଟର ବ୍ୟବସ୍ଥା କରିଦେଲେ । ଉକ୍ତ ଜାହାଜ ବ୍ରିଟିସ୍ କାଲୋମ୍ବିଆର ଭେଙ୍କୋଭର ପର୍ଯ୍ୟନ୍ତ ଯାତ୍ରା କରିବ । ମହାରାଜାଙ୍କର ଇଚ୍ଛା ଥିଲା ଯେ ତାଙ୍କର ଗୁରୁ ଏକ ରାଜା ଭଳି ରାଜକୀୟ ଠାଣୀରେ ବିଦେଶ ଗମନ କରିବେ । ଥୋମାସ୍ କୁକ୍ ଏଣ୍ଡ ସନ୍ସ ମାଧ୍ୟମରେ ମୁନ୍‌ସୀଜୀ ସମସ୍ତ ସୁବିଧା ସ୍ୱାମୀଜୀଙ୍କର ଯାତ୍ରା ନିମନ୍ତେ ଯୋଗାଇ ଦେଲେ । ଧନ୍ୟ କ୍ଷେତ୍ରୀ ମହାରାଜା । ଇତିହାସ ପୃଷ୍ଠାରେ ଏଭଳି ଜଣେ ଦେଶପ୍ରେମୀ ମହାରାଜାଙ୍କର ଅଦମ୍ୟ ଭକ୍ତି ସ୍ୱର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହେଲା ।



Digitized by srujanika@gmail.com

॥ ଉଣେଇଶ ॥

# ଆମେରିକା ଯାତ୍ରା - ବିଶ୍ୱଧର୍ମ ସମ୍ମିଳନୀରେ ଯୋଗ ଦେବେ

**୧୮୯୩ ମେ ୩୧** ତାରିଖ ଭାରତ ଇତିହାସରେ ଏକ ଶୁଭ ମୁହୂର୍ତ୍ତ । ବିଶ୍ୱ ଦରବାରରେ ଭାରତୀୟତା ଓ ସନାତନ ଧର୍ମର ମୂଳତତ୍ତ୍ୱକୁ ପୁନଃପ୍ରକାଶ କରିବା ପାଇଁ ଜଣେ ଗୃହତ୍ୟାଗୀ ଅନାମଧେୟ ସନ୍ୟାସୀ ଆରୋହଣ କଲେ ଜାହାଜ । ମୁନ୍‌ସୀ ଜଗମୋହନ ଓ ଆଲିସିଙ୍ଗା ପେରୁମଲ ଜାହାଜ ଓ ସମୁଦ୍ରତଟ ଭିତରେ ନିର୍ମିତ ସେତୁର ମଧ୍ୟବର୍ତ୍ତୀ ସ୍ଥାନ ପର୍ଯ୍ୟନ୍ତ ସ୍ୱାମୀଜୀଙ୍କ ସହିତ ବିଦାୟ ଜଣାଇବା ପାଇଁ ଯାଇଥିଲେ । କିନ୍ତୁ ଜଳ ଯାତ୍ରାର ଘଣ୍ଟା ଧ୍ୱନି ବାଜିବାରୁ ସେ ଦୁହେଁ ଅଶ୍ରୁଳ ନୟନରେ ଚାହିଁଥିଲେ ଜାହାଜରେ ଦଣ୍ଡାୟମାନ ସ୍ୱାମୀଜୀଙ୍କୁ । ତାଙ୍କ ପାଦରେ ପ୍ରଣିପାତ ଜଣାଇ ଜାହାଜରୁ ପ୍ରସ୍ଥାନ କଲେ । ଜାହାଜ ଧୀରେ ଧୀରେ ଅଗ୍ରସର ହେଲା । ଜ୍ଞାନଦୀପ୍ତ ସନ୍ୟାସୀ ଆମେରିକା ଅଭିମୁଖେ ଯାତ୍ରା କଲେ । ମହାସାଗରର ଘନ ନୀଳ ଫେନରାଶି ଅତିକ୍ରମ କରି ଚାଲୁଥାଏ ଜାହାଜ । କୂଳ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ଅପଲକ ନୟନରେ ଚାହିଁଥିଲେ ଭାରତବର୍ଷକୁ । ଶ୍ରୀରାମକୃଷ୍ଣ ପରମହଂସ, ଦିବ୍ୟଜନନୀ ସାରଦା ଦେବୀ ଏବଂ ଗୁରୁଭାଇମାନଙ୍କର ଚିତ୍ର ବାରମ୍ବାର ତାଙ୍କ ମାନସପଟରେ ଝଲସି ଉଠୁଥିଲା । ବିଶ୍ୱର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଚିତ୍ର ବି ସିନେମାର ରିଲ୍ ଭଳି ତାଙ୍କ ସ୍ମୃତିରେ ଦୃଶ୍ୟମାନ ହେଉଥିଲା । କର୍ମଭୂମି ଭାରତବର୍ଷ ଛାଡ଼ି ସେ ଆଜି ଯାଉଛନ୍ତି ଭୋଗଭୂମିର ଦେଶକୁ । କିନ୍ତୁ ଭୋଗ ପାଇଁ ନୁହେଁ, କର୍ମ ପାଇଁ ।

ଜାହାଜ କଲୋମ୍ବୋରେ ପହଞ୍ଚିଲା । ସେଠାରେ ଜାହାଜ ଗୋଟିଏ ଦିନ ରହିଲା । ସ୍ୱାମୀଜୀ ଏହାର ସୁଯୋଗନେଇ ସହରର ଦର୍ଶନୀୟ ସ୍ଥାନ ପରିଦର୍ଶନ କଲେ । ଗୌତମ ବୁଦ୍ଧଙ୍କର ବିଶାଳ ଶୟନରତ ଠାଣି ମୁଗ୍ଧ କଲା ସ୍ୱାମୀଜୀଙ୍କୁ । ସେଠାରୁ ଜାହାଜ ଯାତ୍ରାକରି ମଳୟ ଦ୍ୱୀପପୁଞ୍ଜରେ ପହଞ୍ଚିଲା । ଜାହାଜର ପରବର୍ତ୍ତୀ ରହଣି ସ୍ଥାନ ଥିଲା ହଂକଂ । ଜାହାଜ ଏଠାରେ ତିନିଦିନ ଅଟକିଲା । ଏଠାରେ ଅବସ୍ଥିତ କେତେକ ବୌଦ୍ଧ ମଠ ଦେଖିବାକୁ ସେ ଇଚ୍ଛା ପ୍ରକଟ କଲେ । କିନ୍ତୁ ଚୀନଭାଷୀ ଅନୁବାଦକ ଏଭଳି ପରିଦର୍ଶନ ବିପଦ୍‌ଜନକ ବୋଲି ସ୍ୱାମୀଜୀଙ୍କୁ ସତର୍କ କରାଇଦେଲେ । କାରଣ କୌଣସି ବିଦେଶୀଙ୍କୁ ବୌଦ୍ଧ ମଠ ପରିଦର୍ଶନ ପାଇଁ ସେମାନେ ଅନୁମତି ପ୍ରଦାନ କରନ୍ତି ନାହିଁ । ସ୍ୱାମୀଜୀ ଜିଦ୍ ଧରିଲେ । ଚାଲିଲେ ଏକ ବୌଦ୍ଧ ମଠକୁ । କେତେକ ଯାତ୍ରୀ ତାଙ୍କର ପଶ୍ଚାଦାନୁସରଣ କଲେ । କିଛିଦୂର ଅତିକ୍ରାନ୍ତେ ସ୍ୱାମୀଜୀ ଦେଖିବାକୁ ପାଇଲେଯେ

Digitized by srujanika@gmail.com

କେତେକ ବୌଦ୍ଧ ଭିକ୍ଷୁ ଅସ୍ତ୍ରଧରି ସେମାନଙ୍କୁ ଆକ୍ରମଣ କରିବାଲାଗି ଅଗ୍ରସର ହେଉଛନ୍ତି । ସବୁ ଯାତ୍ରୀ ଭୟଭୀତ ହୋଇ ଜାହାଜ ଅଭିମୁଖେ ପଳାୟନ କଲେ । କିନ୍ତୁ ସ୍ୱାମୀଜୀ ସାହସର ସହିତ ସେଠାରେ ଦଣ୍ଡାୟମାନ ହୋଇ ଉଚ୍ଚସ୍ୱରରେ କହିଉଠିଲେ, ''ଭିକ୍ଷୁଗଣ ! ମୁଁ ଜଣେ ଭାରତୀୟ ସନ୍ନ୍ୟାସୀ !'' ଗୌତମ ବୁଦ୍ଧଙ୍କର ଶାନ୍ତ ଓ ଗମ୍ଭୀର ରୂପ ସ୍ୱାମୀଜୀଙ୍କ ଚେହେରା ସହ ମିଶିଯାଉଥିଲା । ସେ ବୁଦ୍ଧଙ୍କ ଭଳି ପ୍ରତୀୟମାନ ହେଉଥିଲେ । ଅଗ୍ନିରେ ଜଳ ପତିତ ହେଲାଭଳି, ଧାବମାନ ଭିକ୍ଷୁଙ୍କ ମନରୁ କ୍ରୋଧ ଅପସରି ଗଲା । ସେମାନେ ଧୀର ପାଦରେ ଆଗେଇ ଆସି ଭକ୍ତି ଓ ଶ୍ରଦ୍ଧା ସହକାରେ ତାଙ୍କୁ ପ୍ରଣାମ କଲେ ଏବଂ ବୌଦ୍ଧ ମଠ ଭିତରକୁ ପାଛୋଟି ନେଲେ । ବୌଦ୍ଧ ମଠ ଦର୍ଶନ କରି ସ୍ୱାମୀଜୀଙ୍କ ହୃଦୟରେ ଭରିଉଠିଲା ଭାରତର ଅତୀତ ଗୌରବମୟ ଇତିହାସ । ସ୍ତମ୍ଭୀଭୂତ ହେଲେ ବୌଦ୍ଧକୀର୍ତ୍ତି ଦେଖି ।

ସ୍ୱାମୀଜୀଙ୍କର ବୁଦ୍ଧ ସମ ରୂପ ଭିକ୍ଷୁମାନଙ୍କୁ ଏଭଳି ତନ୍ମୟ କରିଥିଲା ଯେ କେତେକ ଭକ୍ତ ହସ୍ତଯୋଡ଼ି କହିଲେ, ''ହେ ଭାରତୀୟ ଭିକ୍ଷୁ, ଆସୁରିକ ଶକ୍ତି ଓ ଅତୃପ୍ତ ଅନିଷ୍ଟକାରୀ ଆତ୍ମାଙ୍କର କବଳରୁ ଆମକୁ ରକ୍ଷା କରନ୍ତୁ ।'' ସ୍ୱାମୀଜୀ ଅବଶ୍ୟ ଚମତ୍କାରିତା ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ସେମାନଙ୍କର ମନକୁ ବୁଝାଇବା ପାଇଁ ପକେଟରୁ ଖଣ୍ଡିଏ କାଗଜ ବାହାର କରି ସଂସ୍କୃତରେ 'ଓଁ' ଲେଖିଦେଇ ବଢ଼ାଇଦେଲେ । ସେମାନେ ଆନନ୍ଦିତ ହୋଇ ତାଙ୍କୁ ବାରମ୍ବାର ପ୍ରଣାମ ଜଣାଇଲେ । ସ୍ୱାମୀଜୀ ଜାହାଜକୁ ଫେରି ଆସିଲେ ।

- ୧ -

*ସ୍ୱାମୀଜୀ ଟାଟାଜୀଙ୍କୁ କହିଲେ, ''ଆପଣ ଜାପାନରେ ଦିଆସିଲି କାରଖାନା ପ୍ରତିଷ୍ଠା କରିଛନ୍ତି । ଜାପାନରୁ ଦିଆସିଲି ଆମଦାନି କରି ଭାରତବର୍ଷର ଚାହିଦା ପୂରଣ କରୁଛନ୍ତି । ପ୍ରତିବଦଳରେ ଆପଣ ଅର୍ଥ ଉପାର୍ଜନ କରୁଛନ୍ତି । ଆପଣ ଯଦି ଭାରତରେ ଦିଆସିଲି କାରଖାନା ପ୍ରତିଷ୍ଠା କରନ୍ତେ, ଆପଣ ଲାଭାନ୍ୱିତ ହେବା ସଙ୍ଗେ ସଙ୍ଗେ ଭାରତର ଅଗଣିତ ଜନତା କର୍ମନିଯୁକ୍ତି ପାଇ ପାରନ୍ତେ ଏବଂ ଭାରତର ଅର୍ଥ ଭାରତରେ ରହିଯାଆନ୍ତା ।*

ହଂକଂରୁ ଜାହାଜ ଯାତ୍ରାକରି ଜାପାନର ନାଗାସାକି ବନ୍ଦରରେ ପହଞ୍ଚିଲା । ଜାପାନର ଓସାକା, କ୍ୟୋଟୋ ଏବଂ ଟୋକିଓ ଭଳି ତିନୋଟି ମୁଖ୍ୟ ସହର ବୁଲି ଦେଖିଲେ । ଜାପାନୀଙ୍କର ଦେଶପ୍ରେମ ଓ କର୍ମକୁଶଳତା ମୁଗ୍ଧ କଲା ସ୍ୱାମୀଜୀଙ୍କୁ । ଜାପାନ ଓ ଜାପାନୀଙ୍କର ସ୍ୱଚ୍ଛ ଜୀବନ ଶୈଳୀ ସମ୍ବନ୍ଧରେ ସେ ଏକ ପତ୍ରରେ ଲେଖିଥିଲେ ''ବହୁ ଯୁବକ ଓ ଯୁବତୀ ଜାପାନ ଭ୍ରମଣ କରି ଫେରିଯାଆନ୍ତୁ ବୋଲି ମୁଁ ଚାହେଁ । ଭାରତ ଏପର୍ଯ୍ୟନ୍ତ ସବୁ ଉଚ୍ଚ ଓ ଶ୍ରେଷ୍ଠତ୍ୱର ସ୍ୱପ୍ନପୁରୀ ବୋଲି ଜଗତରେ ବିଖ୍ୟାତ । ଆଉ ତୁମେ ? ନିରର୍ଥକ ଓ ଅସାର କଥା କହି ବହୁମୂଲ୍ୟ ସମୟ

Digitized by srujanika@gmail.com

ଅପଚୟ କରିବା ବ୍ୟତୀତ ଆଉ କ'ଣ ତୁମେ କରିଛ ? ହଜାର ହଜାର ବର୍ଷ ଧରି ଅନ୍ଧବିଶ୍ୱାସରେ ବୁଡିରହି କିପରି ଜାତିପ୍ରଥା ଭଳି କଳଙ୍କ ଉପରେ ତର୍କ ବିତର୍କ କରି ସମୟ ବିତାଇଛ, ତାହା ଏହି ଜାପାନୀମାନଙ୍କ ବୀରତ୍ୱକୁ ଦେଖି ତୁମେ ଭଲଭାବରେ ଜାଣିପାରିବ । ଆସ, ଜାପାନୀଙ୍କୁ ଦେଖି ନିଅ, ତୁମର ମୁହଁ ଲଜ୍ଜାରେ ତଳକୁ ନଇଁଯିବ... ।''

ଜାପାନର ରାଜପଥରେ ଗୈରିକ ବସ୍ତ୍ର ପରିହିତ ସ୍ୱାମୀଜୀ ଯେତେବେଳେ ପଦଚାରଣ କରୁଥିଲେ, ସେତେବେଳେ ସେଠିକାର ଜନତା ଗ୍ରୀବା ଉତ୍ତୋଳନ କରି, ଚକିତ ନୟନରେ ବୁଦ୍ଧଙ୍କ ଭଳି ଦେଖାଯାଉଥିବା ଏହି ସନ୍ନ୍ୟାସୀଙ୍କ ବିଷୟରେ ଭାବୁଥିଲେ ସତେକି ଜଗତର କଲ୍ୟାଣ ପାଇଁ ଶାକ୍ୟସିଂହ ଗୌତମବୁଦ୍ଧ ଏହି ଧରାପୃଷ୍ଠରେ ପୁନର୍ବାର ଅବତୀର୍ଣ୍ଣ । ଜାପାନୀମାନଙ୍କର ଶିଳ୍ପ ଓ ବିଜ୍ଞାନ-କାରିଗରୀ ବିଦ୍ୟା ସ୍ୱାମୀଜୀଙ୍କୁ ବିଶେଷ ଭାବେ ପ୍ରଭାବିତ କଲା । ଭାରତବର୍ଷ କିପରି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଅଗ୍ରଗତି କରିପାରିବ, ସେହି ଚିନ୍ତାରେ ସ୍ୱାମୀଜୀ ଘାରି ହେଉଥିଲେ । ଇତ୍ୟବସରରେ ତାଙ୍କର ସାକ୍ଷାତ ହେଲା ଶିଳ୍ପପତି ଜାମସେଦଜୀ ଟାଟାଙ୍କ ସହିତ । ଯେଉଁ ଜାହାଜରେ ସ୍ୱାମୀଜୀ ଯାତ୍ରା କରୁଥିଲେ ସେହି ଜାହାଜରେ ସେ ମଧ୍ୟ ଥିଲେ ଯାତ୍ରୀ । ସ୍ୱାମୀଜୀଙ୍କର ତେଜବନ୍ତ ରୂପ ଓ ଜ୍ଞାନ ଦେଖି ସେ ଖୁବ୍ ଆକର୍ଷିତ ହୋଇପଡ଼ିଲେ । ସେ ବି ଚିକାଗୋସ୍ଥିତ ଆଧୁନିକ ଶିଳ୍ପ ଓ ପ୍ରଯୁକ୍ତିବିଦ୍ୟା ଉପରେ ଆଧାରିତ ପ୍ରଦର୍ଶନୀରେ ଭାଗ ନେବାକୁ ଆମେରିକା ଅଭିମୁଖେ ଯାତ୍ରା କରୁଥିଲେ । ଦୁହିଁଙ୍କ ମଧ୍ୟରେ ଆରମ୍ଭ ହେଲା ବାର୍ତ୍ତାଳାପ । ଦିଆସିଲି କାରଖାନା ପରିଦର୍ଶନ କରିବା ପରେ ତାଙ୍କ ଭିତରେ ଯେଉଁ ଭାବପ୍ରବଣତା ସୃଷ୍ଟି ହୋଇଥିଲା, ତାହା କ୍ରମଶଃ କଥାବାର୍ତ୍ତା ଭିତରେ ସ୍ୱାମୀଜୀଙ୍କ ମୁଖରୁ ପ୍ରକଟିତ ହେଲା ।

ବର୍ତ୍ତମାନ ଯୁଗର ଆବଶ୍ୟକତା ଅନୁଯାୟୀ ଜାପାନୀମାନେ ପୂର୍ଣ୍ଣମାତ୍ରାରେ ସଚେତନ । ସେମାନେ ନିଜେ ବନ୍ଧୁକ, ଗୋଳାବାରୁଦ ନିର୍ମାଣ କରି ସୈନ୍ୟବାହିନୀ, ନୌବାହିନୀକୁ ଉନ୍ନତ ଓ ସୁଦୃଢ଼ କରିପାରିଛନ୍ତି । ଜଣେ ଜାପାନୀ ଇଞ୍ଜିନିୟର ପ୍ରାୟ ଏକମାଇଲ ଲମ୍ବ ସୁଡ଼ଙ୍ଗ ନିର୍ମାଣ କରିବାରେ ସକ୍ଷମ ହୋଇଛନ୍ତି ! ଦିଆସିଲି କାରଖାନା ଦେଖିବାକୁ ଚମତ୍କାର ହୋଇଛି ଏବଂ ନିଜ ଦେଶରେ ସବୁକିଛି ନିର୍ମାଣ କରିବା ନିମନ୍ତେ ସେମାନେ ପ୍ରୟାସୀ । ଚୀନ ଓ ଜାପାନ ଭିତରେ ଅନେକ ଜାହାଜ ଯାତାୟତ କରୁଛି ଏବଂ ବହୁ ଶୀଘ୍ର ବମ୍ବେ ଓ ୟୋକୋହମା ମଧ୍ୟରେ ଜାହାଜ ଚଳାଚଳ କରିବ ।

ସ୍ୱାମୀଜୀ ଟାଟାଜୀଙ୍କୁ କହିଲେ, ''ଆପଣ ଜାପାନରେ ଦିଆସିଲି କାରଖାନା ପ୍ରତିଷ୍ଠା କରିଛନ୍ତି । ଜାପାନରୁ ଦିଆସିଲି ଆମଦାନି କରି ଭାରତବର୍ଷର ଚାହିଦା ପୂରଣ କରୁଛନ୍ତି । ପ୍ରତିବଦଳରେ ଆପଣ ଅର୍ଥ ଉପାର୍ଜନ କରୁଛନ୍ତି । ଆପଣ ଯଦି ଭାରତରେ ଦିଆସିଲି କାରଖାନା ପ୍ରତିଷ୍ଠା କରନ୍ତେ, ଆପଣ ଲାଭାନ୍ୱିତ ହେବା ସଙ୍ଗେସଙ୍ଗେ ଭାରତର ଅଗଣିତ ଜନତା କର୍ମନିଯୁକ୍ତି ପାଇ ପାରନ୍ତେ ଏବଂ ଭାରତର ଅର୍ଥ ଭାରତରେ ରହିଯାଆନ୍ତା । ଟାଟାଜୀ ଜଣେ ସନ୍ନ୍ୟାସୀଙ୍କ ଠାରୁ ଶିଳ୍ପୀକରଣ ପରାମର୍ଶ ଶୁଣି ଆନନ୍ଦରେ ଉଲ୍ଲସିତ ହୋଇପଡ଼ିଲେ । ସେ ଉତ୍ସାହପୂର୍ଣ୍ଣ ସ୍ୱରରେ

Digitized by srujanika@gmail.com

କହିଲେ, ''ସ୍ୱାମୀଜୀ, ଭାରତରେ ଏକ ଇସ୍ପାତ କାରଖାନା ପ୍ରତିଷ୍ଠା କରିବାକୁ ନିଷ୍ପତ୍ତି ନେଇଛି ।'' ସ୍ୱାମୀଜୀ ତତ୍‌କ୍ଷଣାତ୍ ତାଙ୍କ ସ୍ୱର ସହିତ ସ୍ୱର ମିଳାଇ କହିଲେ, ''ଜାମସେଦ୍‌ଜୀ - ବର୍ତ୍ତମାନ ଆହ୍ୱାନର ଦୁଇଟି ଦିଗ ରହିଛି - ପ୍ରଯୁକ୍ତିବିଦ୍ୟାର ବିନିର୍ମାଣ ଏବଂ ଇସ୍ପାତ ବିଜ୍ଞାନର ଅଧ୍ୟୟନ । ବିଦେଶରୁ ପ୍ରଯୁକ୍ତିବିଦ୍ୟା ଅଣାଯିବ ଏବଂ ବିଜ୍ଞାନ ଉପରେ ଆମ ଦେଶରେ ଗବେଷଣା ହେବ ।'' ସ୍ୱାମୀଜୀଙ୍କର ମାନସ ଦର୍ଶନରୁ ସେ ଖିଅଟିଏ ପାଇଗଲେ । ବାଙ୍ଗାଲୋରଠାରେ ଇଣ୍ଡିଆନ ଇନଷ୍ଟିଚ୍ୟୁଟ ଅଫ୍ ସାଇନ୍ସ ପ୍ରତିଷ୍ଠାର ବୀଜ ପ୍ରଥମେ ସ୍ୱାମୀଜୀ ଜାମସେଦଜୀଙ୍କ ମନରେ ବପନ କରିଥିଲେ ।

ଆଗାମୀ ବିଂଶ ଶତାବ୍ଦୀରେ ଭାରତକୁ ଏକ ଶିଳ୍ପ ସମୃଦ୍ଧ ରାଷ୍ଟ୍ରରେ ପରିଣତ କରିବା ପାଇଁ ଏହା ଥିଲା ସ୍ୱାମୀଜୀଙ୍କର ଏକ ବଳିଷ୍ଠ ଆହ୍ୱାନ । ଶ୍ରୀରାମକୃଷ୍ଣଙ୍କଠାରୁ ଯେଉଁ ମହତ୍ ଉପଦେଶ ''ଖାଲି ପେଟରେ ଧର୍ମ ହୁଏନାହିଁ'' ଲାଭ କରିଥିଲେ, ତା'ର ସାକାର ରୂପ ପରିପ୍ରକାଶ ହେଲା ଉକ୍ତ ଆହ୍ୱାନରେ । ଭାରତର କୋଟି କୋଟି ଜନତାର ଅର୍ଥନୈତିକ ଉନ୍ନତି ସକାଶେ ସେ ଆଜି ଭିକାରୀ ସାଜି ଯାଉଛନ୍ତି ସୁଦୂର ଆମେରିକା । ଭାରତମାତାର ଅଗଣିତ ସନ୍ତାନଙ୍କୁ ଯୋଗାଇ ଦେବେ ଖାଦ୍ୟ ଓ ବସ୍ତ୍ର । ପାଇଗଲେ ଜାମସେଦ୍‌ଜୀଙ୍କୁ । ହୃଦୟର ବ୍ୟଥା ଅଜାଡ଼ି ଦେଇ କହିଲେ, ''ଶିଳ୍ପ ପ୍ରତିଷ୍ଠା କରି ଭାରତବର୍ଷରେ ଅର୍ଥନୈତିକ ମେରୁଦଣ୍ଡ ସୁଦୃଢ଼ କର ।'' ଏହି ଆହ୍ୱାନ ଜାମସେଦ୍‌ଜୀ ଟାଟାଙ୍କ ପାଇଁ ଉଦ୍ଦିଷ୍ଟ ନ ଥିଲା ବରଂ ନବଭାରତ ନିର୍ମାଣ ପାଇଁ ଶିଳ୍ପୀକରଣ ଯେ ଅପରିହାର୍ଯ୍ୟ ତାହା ଥିଲା ଏହି ଆହ୍ୱାନର ମୂଳମନ୍ତ୍ର । ଏହି ମହାମାନବଙ୍କର ଆହ୍ୱାନରେ ଅନୁପ୍ରାଣିତ ହୋଇ ଜାମସେଦ୍‌ଜୀ ଟାଟା ପ୍ରତିଷ୍ଠା କଲେ ଭାରତରେ ଟାଟା ଆଇରନ୍ ଏଣ୍ଡ ଷ୍ଟିଲ୍ ଲିମିଟେଡ୍, ଟାଟା ଇନଷ୍ଟିଚ୍ୟୁଟ ଅଫ୍ ଫଣ୍ଡାମେଣ୍ଟାଲ ରିସର୍ଚ୍ଚ ଏବଂ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସାଇନ୍ସ ।''

**୧୮୯୩ ଜୁଲାଇ ୨୫ ତାରିଖରେ** ଜାହାଜ କାନାଡ଼ାର ବ୍ରିଟିସ୍ କଲୋମ୍ବିଆର ଭେଙ୍କୋଭରରେ ପହଞ୍ଚିଲା । ସେଠାରୁ ସେ ଟ୍ରେନ୍‌ରେ ଚିକାଗୋ ଅଭିମୁଖେ ଯାତ୍ରା କଲେ । ଚିକାଗୋ ଷ୍ଟେସନରେ ଅବତରଣ କଲେ ସ୍ୱାମୀଜୀ । ଅପରଚିତ ସ୍ଥାନ, ତାହା ସହିତ ଥିଲା ଅନେକ ନିତ୍ୟବ୍ୟବହୃତ ଜିନିଷପତ୍ର । ଏକେତ କେଉଁଠିକୁ ଯିବେ ସେ ନିଜେ ଜାଣିନାହାନ୍ତି, ତାବାଦେ ତାଙ୍କର ପରିଧାନ ଏଭଳି ଯେ ପିଲା କେବଳ ନୁହେଁ ବୟସ୍କ ବ୍ୟକ୍ତି ମଧ୍ୟ ପରିହାସମୂଳକ ଇଙ୍ଗିତ କରି ତାଙ୍କ ପଛେ ପଛେ ଧାଉଁଥିଲେ । ଷ୍ଟେସନରେ ଜିନିଷପତ୍ର ରଖିବା ପାଇଁ ଭଡ଼ା ଅତ୍ୟଧିକ ହୋଇଥିବାରୁ ଜିନିଷପତ୍ର ରଖିପାରିଲେ ନାହିଁ । ପ୍ରବଳ ଥଣ୍ଡାରେ ତାଙ୍କ ଦେହ କାଲୁଆ ପଡ଼ିଯାଉଥିଲା । ତାଙ୍କର ସମସ୍ତ ଉତ୍ସାହ ନୈରାଶ୍ୟରେ ପରିଣତ ହେଲା । ଯେତିକି ପରିମାଣର ମୁଦ୍ରା ତାଙ୍କ ପାଖରେ ଥିଲା, ତାହା ଚଳିବା ପାଇଁ ପର୍ଯ୍ୟାପ୍ତ ନ ଥିଲା । ମାନସିକ ଦୁଃଶ୍ଚିନ୍ତାରେ ଘାରି ହେଉଥିଲେ ବି ତାଙ୍କର ପ୍ରଚଣ୍ଡ ଆତ୍ମ-ବିଶ୍ୱାସ ଭରିଦେଉଥିଲା ମନରେ ଅମାପ ଶକ୍ତି ଓ ସାହସ । ଯାହାହେଉ ଶେଷରେ ନିକଟସ୍ଥ ଏକ ହୋଟେଲରେ ସେ ଅବସ୍ଥାନ କଲେ ଯଦିଓ ଦୈନିକ ଖର୍ଚ୍ଚ ସେଠାରେ ଆକାଶ ଛୁଆଁ ଥିଲା ।

Digitized by srujanika@gmail.com

- ୨ -

*ସ୍ୱାମୀଜୀ ନିଜର ଅସୁବିଧା ଦର୍ଶାଇ କହିଲେ, ''ମହାଶୟ, ମୋ ପାଖରେ କୌଣସି ପରିଚୟ ପତ୍ର ନାହିଁ । ମୁଁ ସେଠାକୁ କିପରି ବା ଯାଇପାରିବି ?'' ପ୍ରଫେସର ରାଇଟ୍ ବିସ୍ମୟରେ ଗର୍ଜି ଉଠିଲେ, ''କ'ଣ ହେଲା ! ଆପଣଙ୍କୁ ପରିଚୟପତ୍ର ମାଗିବାର ଅର୍ଥ ସୂର୍ଯ୍ୟଙ୍କୁ କିରଣ ପ୍ରଦାନ କରିବାର ଅଧିକାର ସମ୍ବନ୍ଧରେ ପ୍ରଶ୍ନ କରିବା ସହ ସମାନ ।*

ପରବର୍ତ୍ତୀ ଦିନ ଚିକାଗୋସ୍ଥିତ ବିଶ୍ୱ ବାଣିଜ୍ୟ ମେଳା ଦେଖିବାକୁ ଗଲେ । ଏଠାରେ ଉଲ୍ଲେଖନୀୟ ଯେ ମିଚିଗାନ୍ ହ୍ରଦ ନିକଟସ୍ଥ **ଜାକସନ୍ ପାର୍କରେ** ବିଶ୍ୱ ବାଣିଜ୍ୟ ମେଳା ଅନୁଷ୍ଠିତ ହେଉଥିଲା । କଲମ୍ବସ୍ ଆମେରିକା ଆବିଷ୍କାର କରିବାର ଚାରିଶତ ବର୍ଷ ପୂର୍ତ୍ତି ଉପଲକ୍ଷେ ଉକ୍ତ ମେଳାର ହୋଇଥିଲା ଆୟୋଜନ । ଏହି ମେଳା ୧୯୯୩ ମେ ଏକ ତାରିଖରେ ଆରମ୍ଭ ହୋଇଥିଲା ଏବଂ ନଭେମ୍ବର ପର୍ଯ୍ୟନ୍ତ ଚାଲିଥିଲା । ବିଜ୍ଞାନ କଳା ଓ ଶିଳ୍ପରେ ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକର ଅଗ୍ରଗତିକୁ ପ୍ରଦର୍ଶନ କରିବାର ଉଦ୍ଦେଶ୍ୟ ଏହି ମେଳାର ଲକ୍ଷ୍ୟ ଥିଲା । ଏହି ପରିପ୍ରେକ୍ଷୀରେ ବିଶ୍ୱଧର୍ମ ସମ୍ମିଳନୀ ଆୟୋଜିତ ହେବାର କାର୍ଯ୍ୟକ୍ରମ ବି ଥିଲା । ସ୍ୱାମୀଜୀ ଏଗାରଦିନ ଚିକାଗୋରେ ଅବସ୍ଥାନ କରିଥିଲେ ଏବଂ ପ୍ରତିଦିନ ମେଳାକୁ ଯାଇ ବିଭିନ୍ନ ପ୍ରକାର ବୈଜ୍ଞାନିକ ଉଦ୍ଭାବନର ସାମଗ୍ରୀ ଉତ୍ସାହ ସହ ନିରୀକ୍ଷଣ କରୁଥିଲେ । ଇତ୍ୟବସରରେ ସେ ଜାଣିବାକୁ ପାଇଲେ ଯେ ବିଶ୍ୱ ଧର୍ମ ସମ୍ମିଳନୀର କାର୍ଯ୍ୟସୂଚୀ ସେପ୍ଟେମ୍ବର ମାସର ଦ୍ୱିତୀୟ ସପ୍ତାହକୁ ଘୁଞ୍ଚାଇ ଦିଆଯାଇଛି । ଏତଦ୍‌ବ୍ୟତୀତ, ବିଶ୍ୱ ସମ୍ମିଳନୀରେ ଜଣେ ପ୍ରତିନିଧି ଭାବେ ଯୋଗଦେବା ନିମନ୍ତେ ଉପଯୁକ୍ତ ବ୍ୟକ୍ତିଙ୍କଠାରୁ ପରିଚୟ ପତ୍ର ଆବଶ୍ୟକ । କିନ୍ତୁ ସେତେବେଳକୁ ସମ୍ମିଳନୀରେ ଯୋଗଦେବାର ସମୟ ଅତିକ୍ରମ ହୋଇଯାଇଥିଲା ।

ଏତାଦୃଶ ସମ୍ବାଦରେ ସ୍ୱାମୀଜୀ ଦୁଃଖରେ ଭାଙ୍ଗି ପଡ଼ିଲେ । ଆମେରିକା ଭଳି ପ୍ରାଚୁର୍ଯ୍ୟଶାଳୀ ରାଷ୍ଟ୍ରରେ କିଏ ବା ତାଙ୍କର ପରିଚିତ ବ୍ୟକ୍ତି ଯିଏ ତାଙ୍କର ପରିଚୟ ପ୍ରଦାନ କରିପାରିବେ ? ଉତ୍ସାହର ସ୍ରୋତ କ୍ରମଶଃ ତାଙ୍କ ଭିତରେ ଧିମେଇ ଗଲା । ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ଯଦି ବା ସେ ରୁହନ୍ତି ଏବଂ ବିଶ୍ୱ ସମ୍ମିଳନୀରେ ଜଣେ ଦର୍ଶକ ଭାବେ ଯୋଗ ଦିଅନ୍ତି, ତେବେ ଏତେ ଦିନ ରହିବା ପାଇଁ ଅର୍ଥ କେଉଁଠୁ ଆସିବ ? ଏହିଭଳି ପ୍ରଶ୍ନ ଭିତରେ ସେ କ୍ରମଶଃ ହତୋତ୍ସାହ ହୋଇପଡ଼ିଲେ । ତଥାପି ଧୈର୍ଯ୍ୟଚ୍ୟୁତ ତାଙ୍କର ଘଟିଲା ନାହିଁ । ବରଂ ଅତିଶୀଘ୍ର ସାହାଯ୍ୟ ପଠାଇବା ଲାଗି ସେ ମାଡ୍ରାଜ ବନ୍ଧୁଗଣଙ୍କ ନିକଟକୁ ତାର ପଠାଇଲେ । କେବଳ ସେତିକି ନୁହେଁ, ଏକ ସରକାରୀ ଧାର୍ମିକ ସଂସ୍ଥାକୁ ସହାୟତା ଯୋଗାଇ ଦେବା ପାଇଁ ଦରଖାସ୍ତ ବି କଲେ । କାଳେ ସେମାନଙ୍କ ତରଫରୁ ସାହାଯ୍ୟ ମିଳିଯିବ, କିନ୍ତୁ ସରକାରୀ ଧାର୍ମିକ ସଂସ୍ଥା **ସ୍ୱାଧୀନତା** ପସନ୍ଦ କରନ୍ତି ନାହିଁ । ହିନ୍ଦୁ ସନ୍ୟାସୀଙ୍କ ଭଳି ଜଣେ ଶଇତାନକୁ ସେମାନେ କାହିଁକି ସାହାଯ୍ୟ କରିବେ ? ଧାର୍ମିକ ସଂସ୍ଥାର

Digitized by srujanika@gmail.com

ମୁଖ୍ୟ ଦରଖାସ୍ତ ଅଗ୍ରାହ୍ୟ କରି ଜବାବ ପଠାଇଥିଲେ ''ଶୀତ ପ୍ରକୋପରେ ଶଇତାନର ମୃତ୍ୟୁ ହେଉ ।'' କ୍ଷତ ସ୍ଥାନରେ ଲବଣ ପ୍ରୟୋଗ ଭଳି ଏତାଦୃଶ ଜବାବ୍ ଅନୁଭୂତ ହେଲେ ବି ସ୍ୱାମୀଜୀଙ୍କ ଭିତରେ କୌଣସି ପ୍ରତିକ୍ରିୟା ସୃଷ୍ଟି ହେଲାନାହିଁ । କାରଣ ସେମାନଙ୍କ ଈଶ୍ୱର-ଶଇତାନର ଭ୍ରାନ୍ତ ଧାରଣା ତତ୍ତ୍ୱ ତାଙ୍କୁ ଭଲଭାବେ ଜଣା । ବରଂ ସେ ସେମାନଙ୍କୁ ମନେମନେ କ୍ଷମା ପ୍ରଦାନ କଲେ ।

ଏହି ସମୟରେ ସେ ଜାଣିବାକୁ ପାଇଲେ ଯେ ବୋଷ୍ଟନ, ଆମେରିକାର ଏକ ପ୍ରାଚୀନ ସାଂସ୍କୃତିକ ସହର ଯେଉଁଠାରେ ଚିକାଗୋ ସହର ଅପେକ୍ଷା ଅଳ୍ପ ଖର୍ଚ୍ଚରେ ବାସ କରିହେବ । ତେଣୁ ବାରଦିନ ଚିକାଗୋରେ ବିତାଇବା ପରେ, ଟ୍ରେନ ଯୋଗେ ସେ ବୋଷ୍ଟନ ଅଭିମୁଖେ ଯାତ୍ରା କଲେ । ଟ୍ରେନ୍‌ରେ ଯାତ୍ରା କରୁଥିବା ସମୟରେ, ଜଣେ ବୟସ୍କ ଭଦ୍ର ମହିଳା ସ୍ୱାମୀଜୀଙ୍କର ତେଜସ୍ୱୀ ରୂପ ଓ ଭଦ୍ର ଆଚରଣ ଲକ୍ଷ୍ୟକରି ବହୁତ ଖୁସି ହେଲେ ଏବଂ ସ୍ୱାମୀଜୀଙ୍କ ସହ କଥାବାର୍ତ୍ତା ହେଲେ । ସେ ଜଣେ ହିନ୍ଦୁ ସନ୍ନ୍ୟାସୀ ଏବଂ ଚିକାଗୋଠାରେ ଅନୁଷ୍ଠିତ ହେବାକୁ ଥିବା ବିଶ୍ୱଧର୍ମ ସମ୍ମିଳନୀରେ ଯୋଗଦେବା ସଙ୍ଗେସଙ୍ଗେ ବେଦାନ୍ତର ସାରମର୍ମ ପ୍ରଚାର କରିବା ତାଙ୍କର ଲକ୍ଷ୍ୟ ବୋଲି ସ୍ୱାମୀଜୀ ଉକ୍ତ ମହିଳାଙ୍କୁ ଜଣାଇଲେ । ମହିଳାଙ୍କ ନାଁ ମିସ୍ **କାଥେରିନ୍ ଆବୋଟ୍ ସାନ୍‌ବୋର୍ଣ୍ଣ** । ସ୍ୱାମୀଜୀଙ୍କର ଭଦ୍ରୋଚିତ ଆଚରଣ ଏବଂ ବେଦାନ୍ତ ଭଳି ନୂତନ ଧର୍ମର ପ୍ରଚାର କରିବାର ଆଭିମୁଖ୍ୟ ମିସ୍ କାଥେରିନ୍‌ଙ୍କୁ ମୁଗ୍ଧ କଲା । ସେ ନମ୍ରତା ସହକାରେ କହିଲେ, ''ମହାଶୟ, ମୋ ବାସଭବନରେ ରହିବାକୁ ଆପଣଙ୍କୁ ଆମନ୍ତ୍ରଣ କରୁଛି । ହୋଇପାରେ ଆପଣଙ୍କ ସପକ୍ଷରେ କୌଣସି ଘଟଣା ଅନୁକୂଳ ହେବ ।'' ସ୍ୱାମୀଜୀ ତତ୍‌କ୍ଷଣାତ୍ ରାଜି ହେଲେ ଏବଂ ବୋଷ୍ଟନ ସହରରୁ ଅଳ୍ପ ଦୂରରେ ଅବସ୍ଥିତ **ମାସାଚୁ୍ୟସେଟ୍**ରେ ଭଦ୍ର ମହିଳାଙ୍କ ବାସଭବନ **''ବ୍ରିଜି ମିଡ଼ୋଇ୍''**ରେ ଅବସ୍ଥାନ କଲେ ।

ମିସ୍ କାଥେରିନ୍‌ଙ୍କ ବାସଭବନରେ ସ୍ୱାମୀଜୀ ଅବସ୍ଥାନ କରୁଥିବା ସମୟରେ ଅନେକ ସୁଯୋଗ ଆପଣାଛାଏଁ ଉନ୍ମୋଚିତ ହେବାକୁ ଲାଗିଲା । ଆମେରିକାର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସହ ତାଙ୍କର ସାକ୍ଷାତ ଆଲୋଚନା ହେଲା । ସେ ବି ଏକ ମହିଳା ସଭାରେ ତାଙ୍କର ପ୍ରଥମ ବକ୍ତୃତା ପ୍ରଦାନ କଲେ । ଦିବ୍ୟଜନନୀ ମେରୀଙ୍କର ପୁତ୍ର ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର ସନ୍ତାନମାନଙ୍କ ଗହଣରେ ସେ ବାସ କରୁଛନ୍ତି ବୋଲି ତାଙ୍କର ହୃଦବୋଧ ହେଲା । ପ୍ରଭୁ ଯୀଶୁଙ୍କୁ ସେ ସହସ୍ର ପ୍ରଣାମ ଜଣାଇଲେ । ଆମେରିକାର ଶୀତକ୍ଲିଷ୍ଟ ଜଳବାୟୁରେ ସ୍ୱାମୀଜୀଙ୍କର ବସ୍ତ୍ର ଅନୁକୂଳ ନୁହେଁ ବୋଲି ମିସ୍ କାଥରିନ୍ ଅନୁଭବ କରି ଆମେରିକୀୟ ଠାଣିରେ ଶୀତବସ୍ତ୍ର ପରିଧାନ କରିବା ପାଇଁ ସ୍ୱାମୀଜୀଙ୍କୁ ପରାମର୍ଶ ଦେଲେ । ସ୍ୱାମୀଜୀ ତାଙ୍କର ପରାମର୍ଶ ବିନାଦ୍ୱିଧାରେ ଗ୍ରହଣ କରିବାଉତ୍ତାରୁ, ଉକ୍ତ ଭଦ୍ରମହିଳା ସ୍ୱାମୀଜୀଙ୍କ ନିମନ୍ତେ ଏକ ଲମ୍ବା କୋଟ ତିଆରି କରିଦେଲେ । ସ୍ୱାମୀଜୀ ଅବଶ୍ୟ ଅଧିକାଂଶ ସମୟରେ ତାହା ପରିଧାନ କଲେ କିନ୍ତୁ ସଭାସମିତିରେ ଯୋଗଦେବା ସମୟରେ ସେ ତାଙ୍କର ଗୈରିକ ବସ୍ତ୍ର ପରିଧାନ କରୁଥିଲେ । ମହିଳା କାରାଗାରାର ସୁପରିନ୍‌ଟେଣ୍ଡେଣ୍ଟ **ମିସେସ୍ ଜହନସନ୍**ଙ୍କ ସହିତ ତାଙ୍କର ପରିଚୟ କରାଇଦେବାରୁ ସ୍ୱାମୀଜୀ ଏକଦା କାରାଗାର ବୁଲିବାକୁ ଯାଇଥିଲେ । ସେଠାରେ ମହିଳା ବନ୍ଦୀମାନଙ୍କୁ ନାନାପ୍ରକାର ସଂସ୍କାରମୂଳକ ପ୍ରଶିକ୍ଷଣ ପ୍ରଦାନ କରାଯାଉଥିଲା । ସ୍ୱାମୀଜୀ ଏତାଦୃଶ ସଂସ୍କାରମୂଳକ ପ୍ରୟାସ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

Digitized by srujanika@gmail.com

ବିଧିର ବିଧାନ ବଡ଼ ବିଚିତ୍ର । ମିସ୍ କାଥେରିନ୍ ଆବୋଟ୍ ସାନବର୍ଣ୍ଣଙ୍କର ଭାଗ୍ୟ ଦେବୀ ସଦୃଶ ହଠାତ୍ ଆବିର୍ଭାବ ସ୍ୱାମୀଜୀଙ୍କର ସମସ୍ତ ନୈରାଶ୍ୟକୁ କେବଳ ଧୌତ କଲାନାହିଁ ବରଂ ବିଶ୍ୱ ଧର୍ମ ସମ୍ମିଳନୀରେ ଯୋଗଦେବା ପାଇଁ କଣ୍ଟକିତ ପଥକୁ ପରିଷ୍କାର କରିଦେଲା । ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟର ଗ୍ରୀକ୍ ଭାଷାର ବିଖ୍ୟାତ ଅଧ୍ୟାପକ **ଡକ୍ଟର ଜନ୍ ହେନ୍ରି ରାଇଟ୍‌ଙ୍କ** ସହ ଉକ୍ତ ଭଦ୍ରମହିଳା ସ୍ୱାମୀଜୀଙ୍କୁ ପରିଚିତ କରାଇଦେଲେ । ସ୍ୱାମୀଜୀଙ୍କର ଅଗାଧ ପାଣ୍ଡିତ୍ୟ ଓ ଆଧ୍ୟାତ୍ମିକତାରେ ପ୍ରଭାବିତ ହୋଇ ସେ ତାଙ୍କ ଗୃହକୁ ନିମନ୍ତ୍ରଣ କଲେ । ଦୁଇଜଣଙ୍କ ମଧ୍ୟରେ ଗଭୀର ଆଲୋଚନା ପ୍ରଫେସରଙ୍କୁ ଏଭଳି ମନ୍ତ୍ର ମୁଗ୍ଧ କଲା ଯେ ସେ ଉଲ୍ଲସିତ ହୋଇ କହିଲେ, ‘‘ସ୍ୱାମୀଜୀ, ବିଶ୍ୱଧର୍ମ ସମ୍ମିଳନୀ ଏକ ଉତ୍କୃଷ୍ଟ ସ୍ଥାନ ଯେଉଁଠି ଆପଣଙ୍କୁ ସମଗ୍ର ଆମେରିକାରେ ପରିଚିତ କରାଇ ହେବ ।’’

ସ୍ୱାମୀଜୀ ନିଜର ଅସୁବିଧା ଦର୍ଶାଇ କହିଲେ, ‘‘ମହାଶୟ, ମୋ ପାଖରେ କୌଣସି ପରିଚୟ ପତ୍ର ନାହିଁ । ମୁଁ ସେଠାକୁ କିପରି ବା ଯାଇପାରିବି ?’’ ପ୍ରଫେସର ରାଇଟ୍ ବିସ୍ମୟରେ ଗର୍ଜି ଉଠିଲେ, ‘‘କ’ଣ ହେଲା ! ଆପଣଙ୍କୁ ପରିଚୟପତ୍ର ମାଗିବାର ଅର୍ଥ ସୂର୍ଯ୍ୟଙ୍କୁ କିରଣ ପ୍ରଦାନ କରିବାର ଅଧିକାର ସମ୍ବନ୍ଧରେ ପ୍ରଶ୍ନ କରିବା ସହ ସମାନ ।’’ ସେହି ମୁହୂର୍ତ୍ତରେ ତାଙ୍କୁ ପ୍ରତିଶ୍ରୁତି ଦେଲେ ଯେ ହିନ୍ଦୁଧର୍ମର ପ୍ରତିନିଧି ଭାବରେ ଧର୍ମ ସମ୍ମିଳନୀରେ ଯୋଗ ଦେବାପାଇଁ ସମସ୍ତ ଆୟୋଜନ ସେ ନିଜେ କରିବେ । ସେ ସଙ୍ଗେସଙ୍ଗେ ବିଶ୍ୱଧର୍ମ ସମ୍ମିଳନୀର ପ୍ରତିନିଧି ଚୟନ ସମିତିର ଅଧ୍ୟକ୍ଷଙ୍କ ନିକଟକୁ ପତ୍ର ଲେଖିଲେ ‘‘ଏହି ବ୍ୟକ୍ତି ଯିଏ ଆମର ସମସ୍ତ ପ୍ରଫେସରଙ୍କ ଅପେକ୍ଷା ଅଧିକ ଜ୍ଞାନୀ ।’’ ପ୍ରଫେସର ଜାଣିଥିଲେ ଯେ ସ୍ୱାମୀଜୀଙ୍କ ପାଖରେ ଅର୍ଥର ଅଭାବ ରହିଛି । ସେଥିପାଇଁ ଚିକାଗୋ ପର୍ଯ୍ୟନ୍ତ ଭଡ଼ା ସ୍ୱାମୀଜୀଙ୍କୁ ପ୍ରଦାନ କରିବା ସହ ପ୍ରାଚ୍ୟ ରାଷ୍ଟ୍ରର ପ୍ରତିନିଧିମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ବାସଗୃହରେ ସ୍ୱାମୀଜୀଙ୍କ ରହିବାର ସମସ୍ତ ବ୍ୟବସ୍ଥା କରିଦେବା ପାଇଁ କମିଟିର ଅଧ୍ୟକ୍ଷ ଡକ୍ଟର **ଜୋହନ୍ ହେନ୍ରି** ବାରୋସ୍‌ଙ୍କ ନିକଟକୁ ଏକ ପରିଚୟ ପତ୍ର ଲେଖିଥିଲେ ।

ପ୍ରଫେସର ରାଇଟ୍‌ଙ୍କର ପରିଚୟ ପତ୍ର ସ୍ୱାମୀଜୀଙ୍କର ଆତ୍ମ ବିଶ୍ୱାସକୁ ଦୃଢ଼ୀଭୂତ କଲା । ଦୈବୀଶକ୍ତିର ପ୍ରକଟନ ବୋଲି ଏହାକୁ ସେ ଗ୍ରହଣ କଲେ ଏବଂ ବିଶ୍ୱ ଧର୍ମ ସମ୍ମିଳନୀରେ ଯୋଗ ଦେବାର ଯେଉଁ ଲକ୍ଷ୍ୟ ନେଇ ସେ ବିଦେଶ ଭୂମିକୁ ଆସିଛନ୍ତି, ତାହା ନିଶ୍ଚୟ ପୂରଣ ହେବ । ଚିକାଗୋ ଅଭିମୁଖେ ଯାତ୍ରା କରିବା ପୂର୍ବରୁ ସେ ଏକ ସପ୍ତାହ ନିଯୁ ଇଂଲଣ୍ଡରେ ବିତାଇଲେ । **ଆନିସ୍କ୍ୱାମ୍‌**ଠାରେ ଅବସ୍ଥିତ ଏକ ଗ୍ରାମୀଣ ଗୀର୍ଜାରେ ସେ ଭାଷଣ ପ୍ରଦାନ କଲେ । ଭାରତରେ ଧାର୍ମିକ ଶିକ୍ଷା ପରିବର୍ତ୍ତେ ଔଦ୍ୟୋଗିକ ଶିକ୍ଷାର ଆବଶ୍ୟକତା ସମ୍ବନ୍ଧରେ ଅନର୍ଗଳ ବକ୍ତୃତା ପ୍ରଦାନ କରି ସମବେତ ଜନତାଙ୍କୁ ମୁଗ୍ଧ କରିଦେଲେ । ଅବଶ୍ୟ ସଭା ସ୍ଥଳରେ ଦୁଇଜଣ ପାଦ୍ରିଙ୍କର ବାରମ୍ବାର ଅଯଥା ପ୍ରଶ୍ନ ଯୋଗୁଁ ବ୍ୟାଘାତ ଉପୁଜୁଥିଲା କିନ୍ତୁ ତାଙ୍କର ଶାନ୍ତ ଚିତ୍ତ ଆଦୌ ବିଚଳିତ ହେଉ ନ ଥିଲା । ସେ ଭଲଭାବରେ ଜାଣିଛନ୍ତି ଯେ ଏଭଳି ବିରୋଧାଚରଣର ସମ୍ମୁଖୀନ ବହୁବାର ଭବିଷ୍ୟତରେ ସେ ହେବେ ।

Digitized by srujanika@gmail.com

- ୩ -

*ଅଦ୍ଭୁତ ବେଶଭୂଷା ଏବଂ କ୍ଲାନ୍ତ ଅବଶରୂପ ସକାଶେ ତାଙ୍କୁ ଗୃହକର୍ତ୍ତାଙ୍କର ଚାକରମାନଙ୍କ ଦ୍ୱାରା ଅପମାନିତ ହେବାକୁ ପଡ଼ିଲା ଏବଂ କେହି କେହି ଘରଦ୍ୱାର ବନ୍ଦ କରି ତାଙ୍କୁ ଅତି ଲଜ୍ଜିତ କରାଉଥିଲେ । ତାଙ୍କର ହୃଦୟ ଦୁଃଖାଭିଭୂତ, ଏବଂ ମନ ବିଷାଦଗ୍ରସ୍ତ, ସେ ଆଉ ଭିକ ମାଗିପାରିଲେ ନାହିଁ । ଅଧିକ ଅପମାନ ସହ୍ୟ କରିବା ଲାଗି ତାଙ୍କଠାରେ ଶକ୍ତି ବି ନ ଥିଲା । ଈଶ୍ୱରଙ୍କ ଉପରେ ସମସ୍ତ ଭାର ଅର୍ପଣ କରି, ରାସ୍ତା ପାର୍ଶ୍ୱସ୍ଥ ଏକ ସ୍ଥାନରେ ହାଲିଆ ହୋଇ ବସିପଡ଼ିଲେ ।*

ବିଶ୍ୱ ଧର୍ମ ସମ୍ମିଳନୀରେ ଯୋଗଦେବା ପାଇଁ ସ୍ୱାମୀଜୀ ଚିକାଗୋ ଅଭିମୁଖେ ଟ୍ରେନ୍ ଚଢ଼ିଲେ । ଚିକାଗୋ ଭଳି ଅପରିଚିତ ସ୍ଥାନରେ ବିଶ୍ୱ ଧର୍ମ ସମ୍ମିଳନୀର ସାଧାରଣ ସମିତିର ଅଧକ୍ଷ ଡକ୍ଟର ଜୋହନ୍ ହେନ୍ରି ବାରୋସ୍‌ଙ୍କ କାର୍ଯ୍ୟାଳୟ କିପରି ଠାବ କରକିପାରିବେ ସେହି ଚିନ୍ତାରେ ସେ ଘାରି ହେଉଥିଲେ । ଯାହାହେଉ ଟ୍ରେନ୍ ଯାତ୍ରା ସମୟରେ ତାଙ୍କର ଜଣେ ବଣିକ ସହ ପରିଚୟ ହେଲା ଏବଂ ସେ ଉକ୍ତ କାର୍ଯ୍ୟଳୟ ସ୍ଥାନରେ ପହଞ୍ଚାଇ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । କିନ୍ତୁ ଟ୍ରେନ୍ ଯେତେବେଳେ ଚିକାଗୋ ଷ୍ଟେସନରେ ପହଞ୍ଚିଲା, ସେତେବେଳେ ଉକ୍ତ ବଣିକ ମହାଶୟ ଏପରି ବ୍ୟସ୍ତ ଥିଲେ ଯେ ସ୍ୱାମୀଜୀଙ୍କୁ ଉକ୍ତ ସ୍ଥାନର ସଠିକ ଠିକଣା ନ ବତାଇ ଜନଗହଳି ଭିତରେ କେଉଁଠାରେ ହଜିଗଲେ । ବୋଧହୁଏ ସେ ନିଜର ପ୍ରତିଶ୍ରୁତି କାର୍ଯ୍ୟବ୍ୟସ୍ତତା ଭିତରେ ଭୁଲିଯାଇଥିଲେ । ଟ୍ରେନ୍‌ରୁ ଅବତରଣ କରି ନିଜ ଥଳିରୁ ଠିକଣାଟି ଖୋଜିବାକୁ ସେ ଦେଖିଲେ ଯେ ତାହାବି ସେ ହଜାଇ ଦେଇଛନ୍ତି । ଅତ୍ୟନ୍ତ ବ୍ୟସ୍ତ ହୋଇ ସେଠିକାର କେତେ ଜଣ ଲୋକଙ୍କୁ ସ୍ଥାନ ସମ୍ବନ୍ଧରେ ପଚାରି ବୁଝିଲେ । ସହରର ଉତ୍ତର-ପୂର୍ବ ଭାଗରେ ଉକ୍ତ ସ୍ଥାନ ଅବସ୍ଥିତ ଯେଉଁଠାରେ ଅଧିକାଂଶ ଜର୍ମାନୀ ବାସ କରନ୍ତି । କିଏ ତାଙ୍କ ଭାଷା ବୁଝିବ ? ରାତ୍ରିର ଘନ ଅନ୍ଧକାର ଘୋଟି ଆସୁଥିଲା । ଅନନ୍ୟୋପାୟ ହୋଇ ଷ୍ଟେସନରେ ବସିପଡ଼ିଲେ । ଏକ ବିରାଟ ଖାଲି କାଠ ବାକ୍ସ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ରାତ୍ରି ବିତାଇବା ପାଇଁ ଜିନିଷପତ୍ର ସହ ଉକ୍ତ କାଠ ବାକ୍ସ ଭିତରେ ପ୍ରବେଶ କଲେ ଏବଂ ଏକ ଅସ୍ପୃଶ୍ୟ, ଅଜଣା, ନିରାଶ୍ରୟ ଓ ଘୃଣିତ ବ୍ୟକ୍ତି ଭଳି ଶୟନ କଲେ । ମାତ୍ର ଦୁଇଦିନ ପରେ ଯେଉଁ ସନ୍ନ୍ୟାସୀ ବିଶ୍ୱ ଧର୍ମ ସମ୍ମିଳନୀ କକ୍ଷରେ ସିଂହ ସଦୃଶ ଗର୍ଜନ କରି ସମଗ୍ର ବିଶ୍ୱରେ ସ୍ୱାମୀ ବିବେକାନନ୍ଦ ଭାବେ ବିଖ୍ୟାତ ହେବେ, ସେହି ସନ୍ନ୍ୟାସୀ ଆଜି ରାତ୍ରି ବିତାଉଛନ୍ତି ଏକ ପରିତ୍ୟକ୍ତ କାଠ ବାକ୍ସ ଭିତରେ । ଭାଗ୍ୟର କି ବିଡ଼ମ୍ବନା !

ସକାଳ ହେଲା । ସ୍ୱଚ୍ଛ ଜଳର ବାସ୍ନା ଯେଉଁଆଡୁ ଭାସି ଆସୁଥିଲା ସେହି ଆଡ଼କୁ ସେ ପଦଚାରଣ କଲେ । ଅଳ୍ପ ସମୟ ଭିତରେ 'ଲେକ୍ ସୋର୍ ଡ୍ରାଇଭ୍' ଯେଉଁଠି କୋଟିପତି ବ୍ୟବସାୟୀ, ବଣିକ, ରାଜକୁମାରଙ୍କ ଭଳି ଧନିକ ଶ୍ରେଣୀଙ୍କର ବାସଭବନସମୂହ ଅବସ୍ଥିତ, ସେଠାରେ ସେ

Digitized by srujanika@gmail.com

ଉପନୀତ ହେଲେ । ସେ ବର୍ତ୍ତମାନ ଅତ୍ୟନ୍ତ କ୍ଷୁଧିତ ଏବଂ ଜଣେ ସଚ୍ଚା ସନ୍ନ୍ୟାସୀ ଭଳି ଦ୍ୱାର ଦ୍ୱାର ବୁଲି ଭିକ ମାଗିଲେ । ଭିକ୍ଷା ମାଗଣ ଭିତରେ ବି ବିଶ୍ୱ ଧର୍ମ ସମ୍ମିଳନୀର ଠିକଣା ଲୋକଙ୍କ ପାଖରୁ ବୁଝିନେଲେ । ଅଦ୍ଭୁତ ବେଶଭୂଷା ଏବଂ କ୍ଲାନ୍ତ ଅବଶରୂପ ସକାଶେ ତାଙ୍କୁ ଗୃହକର୍ତ୍ତାଙ୍କର ଚାକରମାନଙ୍କ ଦ୍ୱାରା ଅପମାନିତ ହେବାକୁ ପଡ଼ିଲା ଏବଂ କେହି କେହି ଘରଦ୍ୱାର ବନ୍ଦ କରି ତାଙ୍କୁ ଅତି ଲଜ୍ଜିତ କରାଉଥିଲେ । ତାଙ୍କର ହୃଦୟ ଦୁଃଖାଭିଭୂତ ଏବଂ ମନ ବିଷାଦଗ୍ରସ୍ତ, ସେ ଆଉ ଭିକ ମାଗିପାରିଲେ ନାହିଁ । ଅଧିକ ଅପମାନ ସହ୍ୟ କରିବା ଲାଗି ତାଙ୍କଠାରେ ଶକ୍ତି ବି ନ ଥିଲା । ଈଶ୍ୱରଙ୍କ ଉପରେ ସମସ୍ତ ଭାର ଅର୍ପଣ କରି, ରାସ୍ତା ପାର୍ଶ୍ୱସ୍ଥ ଏକ ସ୍ଥାନରେ ହାଲିଆ ହୋଇ ବସିପଡ଼ିଲେ ।

ରାସ୍ତାର ବିପରୀତ ପାର୍ଶ୍ୱରେ ଅବସ୍ଥିତ ଏକ ଆଧୁନିକ ବାସଭବନର ଦ୍ୱାର ଉନ୍ମୁକ୍ତ ହେଲା । ଭାଗ୍ୟଦେବୀଙ୍କର ଉପହାରଟିଏ ପୁନଶ୍ଚ ସ୍ୱାମୀଜୀଙ୍କ ଉପରେ ଅଜାଡ଼ି ପଡ଼ିଲା । ଜଣେ ଭଦ୍ରମହିଳା ଘର ଭିତରୁ ବାହାରି ସ୍ୱାମୀଜୀଙ୍କ ନିକଟକୁ ଆସିଲେ । ତାଙ୍କର ରାଜକୀୟ ଚାହାଣି ଭରା ଚକ୍ଷୁ ଅବଲୋକନ କରି ମୃଦୁ ସ୍ୱରରେ କହିଲେ, "ମହାଶୟ, ବିଶ୍ୱ ଧର୍ମ ସମ୍ମିଳନୀର ଆପଣ କ'ଣ ଜଣେ ପ୍ରତିନିଧି ?" ଉକ୍ତ ରମଣୀଙ୍କର ସ୍ନେହପୂର୍ଣ୍ଣ ସମ୍ବୋଧନରେ ବିମୋହିତ ହୋଇ ସେ ତାଙ୍କର ସମସ୍ତ ଦୁଃଖ ପ୍ରକାଶ କଲେ । ତତ୍‌କ୍ଷଣାତ୍ ସେ ସ୍ୱାମୀଜୀଙ୍କୁ ନିଜ ବାସଭବନକୁ ପାଛୋଟି ନେଲେ ଏବଂ ଖାଦ୍ୟ, ପେୟ ଓ ରହିବାର ସମସ୍ତ ସୁବିଧା ଯୋଗାଇ ଦେବା ସଙ୍ଗେସଙ୍ଗେ ସେ ନିଜେ ତାଙ୍କୁ ବିଶ୍ୱ ଧର୍ମ ସମ୍ମିଳନୀ କାର୍ଯ୍ୟାଳୟକୁ ନେଇଯିବେ ବୋଲି ପ୍ରତିଶ୍ରୁତି ଦେଲେ । ଏହି ବଦାନ୍ୟ ମହିଳାଙ୍କର ନାମ ମିସେସ୍ **ଜର୍ଜ ଡବ୍ଲ୍ୟୁ** ହେଲେ । ସେ ନିଜେ, ତାଙ୍କର ସ୍ୱାମୀ ଓ ପିଲାମାନେ ସ୍ୱାମୀଜୀଙ୍କର ଅନ୍ତରଙ୍ଗ ବନ୍ଧୁ ହୋଇଗଲେ । ସ୍ୱାମୀଜୀଙ୍କୁ ସାଙ୍ଗରେ ନେଇ ମିସେସ୍ ହେଲେ ବିଶ୍ୱଧର୍ମ ସମ୍ମିଳନୀ କାର୍ଯ୍ୟାଳୟକୁ ଯାଇଥିଲେ ଏବଂ ବିଶ୍ୱଧର୍ମ ସମ୍ମିଳନୀର ଅଧ୍ୟକ୍ଷ ଡକ୍ଟର ଜେ. ଏଚ୍. ବାରୋସ୍‌ଙ୍କ ସହ ତାଙ୍କୁ ପରିଚୟ କରାଇ ଦେଲେ । ଡକ୍ଟର ବାରୋସ୍ ସ୍ୱାମୀଜୀଙ୍କୁ ସ୍ୱାଗତ ଜଣାଇ ପ୍ରାଚ୍ୟ ଦେଶର ପ୍ରତିନିଧିଙ୍କ ନିମନ୍ତେ ଉଦ୍ଦିଷ୍ଟ ହୋଟେଲରେ ରହିବାର ବ୍ୟବସ୍ଥା କରିଦେଲେ । ସ୍ୱାମୀଜୀ ବର୍ତ୍ତମାନ ନିଜର ଲକ୍ଷ୍ୟ ସ୍ଥଳରେ ଉପନୀତ, ଯେଉଁଠାରୁ ଆରମ୍ଭ ହେବ ଇତିହାସର ଆଉ ଗୋଟିଏ ପୃଷ୍ଠା ।



Digitized by srujanika@gmail.com

॥ କୋଡ଼ିଏ ॥

# ଚିକାଗୋ ବିଶ୍ୱଧର୍ମ ସମ୍ମିଳନୀ - ସ୍ୱାମୀଜୀଙ୍କ ମୁଖରୁ ନିଃସୃତ ହେଲା ଅଗ୍ନିର ଜିହ୍ୱା ସଦୃଶ ଶବ୍ଦମାଳା

୧୮୯୩ ସେପ୍ଟେମ୍ବର ୧୧ ତାରିଖ ପୂର୍ବାହ୍ନ ସମୟ । ଭାବଗାମ୍ଭୀର୍ଯ୍ୟ ସହିତ ବିଶ୍ୱଧର୍ମ ସମ୍ମିଳନୀ ଆରମ୍ଭ ହେଲା । କ୍ରାଇଷ୍ଟୋଫର୍ କୋଲମ୍ବସ୍‌ଙ୍କ ଦ୍ୱାରା ଆମେରିକା ଆବିଷ୍କୃତ ହେବାର ଚାରିଶତ ବର୍ଷ ପୂର୍ତ୍ତି ଉପଲକ୍ଷେ ଏକ ପ୍ରଦର୍ଶନୀ ଆୟୋଜିତ ହୋଇଥିଲା । ପାଶ୍ଚାତ୍ୟ ଜଗତରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଅଗ୍ରଗତି ସମ୍ବନ୍ଧରେ ଲୋକମାନଙ୍କୁ ଅବଗତ କରାଇବାର ଥିଲା ଏହାର ଉଦ୍ଦେଶ୍ୟ । କିନ୍ତୁ ମାନବ ସଂସ୍କୃତିର ଧର୍ମ ଏକ ମହତ୍ୱପୂର୍ଣ୍ଣ ଅଂଶ ହୋଇଥିବାରୁ, ଏକ ବିଶ୍ୱଧର୍ମ ସମ୍ମିଳନୀ ଏହି ପ୍ରଦର୍ଶନୀ ସହିତ ଅନୁଷ୍ଠିତ ହେଉଥିଲା; ଯାହାର ଲକ୍ଷ୍ୟ ଥିଲା - ଖ୍ରୀଷ୍ଟଧର୍ମ ଆଧୁନିକ ମାନବ ସଭ୍ୟତାକୁ କିପରି ସମୃଦ୍ଧ ଓ ବିକଶିତ କରିବାରେ ସାହାଯ୍ୟ କରିଛି, ତାହାର ପ୍ରଚାର ଓ ପ୍ରସାର ଏହି ସମ୍ମିଳନୀ ମାଧମରେ ଉଦ୍‌ଘୋଷିତ ହେବ । ଏତଦ୍‌ବ୍ୟତୀତ, ବିଶ୍ୱର ଅନ୍ୟ ପ୍ରମୁଖ ଧର୍ମର ତତ୍ତ୍ୱ ଓ ସିଦ୍ଧାନ୍ତ ପ୍ରକଟିତ ହେବାର ସୁଯୋଗ ମଧ ଏଠାରେ ମିଳିବ ଯାହା ମାନବ ସମାଜ ମଧରେ ସମନ୍ୱୟ ସୃଷ୍ଟି କରିବ ।

ଚିକାଗୋର **ମିସିଗାନ** ଏଭେନ୍ୟୁଠାରେ ନବ ନିର୍ମିତ ଆର୍ଟ ଇନ୍‌ଷ୍ଟିଚ୍ୟୁଟରେ ବିଶ୍ୱଧର୍ମ ସମ୍ମିଳନୀ ଅନୁଷ୍ଠିତ । ସତର ଦିନ ଧରି ଏଠାରେ ସଭା ଚାଲିଥିଲା । ବିଶ୍ୱର ବିଖ୍ୟାତ ବ୍ୟକ୍ତି, ବୈଜ୍ଞାନିକ, ଶିଳ୍ପପତି, ଇଞ୍ଜିନିୟର, ଡାକ୍ତର, ସାହିତ୍ୟିକ, ଦାର୍ଶନିକ, ଶିଳ୍ପୀ, କଳାକାର ଏବଂ ବିଭିନ୍ନ ବୃତ୍ତିର ପ୍ରତିଷ୍ଠିତ ବ୍ୟକ୍ତି ସମେତ ବିଭିନ୍ନ ଧର୍ମର ଧର୍ମଗୁରୁମାନେ ଏହି ବିଶାଳ କକ୍ଷରେ ସମବେତ ହୋଇଥିଲେ । ଏହି କକ୍ଷର ନାମ କୋଲମ୍ବସ ହଲ୍ । ମଞ୍ଚର ମଧ୍ୟବର୍ତ୍ତୀ ସ୍ଥାନରେ ପାଶ୍ଚାତ୍ୟ ଜଗତର ରୋମାନ କାଥୋଲିକ୍ ଚର୍ଚ୍ଚର ଉଚ୍ଚତମ ଧର୍ମଗୁରୁ **କାର୍ଡ଼ିନାଲ ଗିବନ୍ସ** ଉପବିଷ୍ଟ ଥିଲେ । ତାଙ୍କର ଦକ୍ଷ ଓ ବାମ ପାର୍ଶ୍ୱରେ ବ୍ରାହ୍ମ ସମାଜର ମୁଖ୍ୟ ପ୍ରତାପ ଚନ୍ଦ୍ର ମଜୁମଦାର, ବମ୍ବେର **ନଗରକାର**, ଶ୍ରୀଲଙ୍କା ବୌଦ୍ଧଧର୍ମର ପ୍ରତିନିଧି ଧର୍ମପାଳ, ଜୈନଧର୍ମର ପ୍ରତିନିଧି ଗାନ୍ଧୀ, ଥିଓସୋଫିକାଲ ସୋସାଇଟିର ଚକ୍ରବର୍ତ୍ତୀ ଓ ଆନି ବେସାନ୍ତଙ୍କ ଭଳି ପ୍ରାଚ୍ୟ ରାଷ୍ଟ୍ରଗୁଡ଼ିକର ଧର୍ମଗୁରୁଗଣ ଆସୀନ ଥିଲେ । ସେମାନଙ୍କ ମଝିରେ ଉପବିଷ୍ଟ ଥିଲେ ଏହି ଯୁବ ସନ୍ନ୍ୟାସୀ । କୌଣସି ଧର୍ମ ଓ ସଂପ୍ରଦାୟକୁ ସେ ପ୍ରତିନିଧିତ୍ୱ କରୁ ନ ଥିଲେ, କିନ୍ତୁ ସମସ୍ତ ଧର୍ମ ଓ ସଂପ୍ରଦାୟର ଭାରତବର୍ଷକୁ ସେ କରୁଥିଲେ ପ୍ରତିନିଧିତ୍ୱ । ମୁଣ୍ଡରେ ପଗଡ଼ି, ଦେହରେ ଗୈରିକ ବସନ, ରାଜକୀୟ

Digitized by srujanika@gmail.com

ଠାଣିରେ ଚାହିଁଥିଲେ ସମବେତ ଜନତାଙ୍କୁ । ତାଙ୍କର କୃଷ୍ଣବର୍ଣ୍ଣ ଚକ୍ଷୁଯୁଗଳ ରକ୍ତିମା ଅଧର ଏବଂ ଦାର୍ଶନିକ ମୁଖମଣ୍ଡଳ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା ବାରମ୍ବାର ।

ବିଶାଳ ଜନସମୁଦ୍ର ସମ୍ମୁଖରେ ଉପବେଶନ କରି ସେଦିନ ସ୍ୱାମୀ ବିବେକାନନ୍ଦ ଯାହା ଭାବୁଥିଲେ, ତାହା ପରବର୍ତ୍ତୀ କାଳରେ ସ୍ୱୟଂ ବର୍ଣ୍ଣନା କରି କହିଥିଲେ - ଛଅରୁ ସାତ ହଜାର ପୁରୁଷ ଓ ମହିଳା କକ୍ଷରେ ଉପସ୍ଥିତ ଥିଲେ । ଦେଶର ସର୍ବୋତ୍ତମ ସଂସ୍କୃତିକୁ ସେମାନେ ପ୍ରତିନିଧିତ୍ୱ କରୁଥିଲେ । ବିଶ୍ୱର ସବୁ ରାଷ୍ଟ୍ରର ପଣ୍ଡିତ ଓ ବିଦ୍ୱାନଗଣ ମଞ୍ଚାସୀନ ଥିଲେ । ଏଭଳି ବିଶାଳ ମହତ୍ ଲୋକାରଣ୍ୟ ସମ୍ମୁଖରେ ଜୀବନରେ ମୁଁ କେବେ ବକ୍ତୃତା ପ୍ରଦାନ କରି ନ ଥିଲି । ସଙ୍ଗୀତର ମୂର୍ଚ୍ଛନା ତଥା ପ୍ରାରମ୍ଭିକ ଭାଷଣ ସହିତ ସଭାକାର୍ଯ୍ୟ ଆରମ୍ଭ ହେଲା । ଜଣକ ପରେ ଜଣକଙ୍କୁ ପରିଚିତ କରାଇ ଦିଆଗଲା । ପ୍ରତ୍ୟେକ ବକ୍ତା କ୍ରମାନ୍ୱୟରେ ନିଜର ବକ୍ତବ୍ୟ ପ୍ରଦାନ କରୁଥିଲେ । ମୋ ଛାତି ସେତେବେଳକୁ ଧଡ଼ପଡ଼ ହେଉଥିଲା ଏବଂ ଜିଭ ଶୁଖିଯାଉଥିଲା । ମୁଁ ଏଭଳି ଅସ୍ଥିର ଓ ଉଦ୍‌ବିଗ୍ନ ହୋଇପଡ଼ିଥିଲି ଯେ ପୂର୍ବାହ୍ନ କାର୍ଯ୍ୟକ୍ରମରେ ବକ୍ତବ୍ୟ ପ୍ରଦାନ କରିବା ପାଇଁ ସାହାସ ବାନ୍ଧି ପାରି ନ ଥିଲି । ଚକ୍ରବର୍ତ୍ତୀ ଓ ମଜୁମଦାର ଲିଖିତ ଭାଷଣ ପଢ଼ିଥିଲେ, ସେମାନେ ବି ପ୍ରସ୍ତୁତ ହୋଇ ସଭାସ୍ଥଳକୁ ଆସିଥିଲେ । ମୁଁ ଗୋଟିଏ ନିର୍ବୋଧ, ପ୍ରସ୍ତୁତି ବିନା ସେଠାରେ ପହଞ୍ଚି ଥିଲି ।''

ପ୍ରତ୍ୟେକ ବକ୍ତା ଜଣକ ପରେ ଜଣେ ବକ୍ତୃତା ମାଧ୍ୟମରେ ନିଜର ମତ ଉପସ୍ଥାପନ କଲେ । ସ୍ୱାମୀଜୀଙ୍କର ଯେତେବେଳେ ପାଳି ପଡୁଥାଏ, ସେତେବେଳେ ଅଧ୍ୟକ୍ଷଙ୍କୁ ବିନମ୍ର ସହକାରେ ପ୍ରତ୍ୟେକ ପାଳିରେ କହୁଥିଲେ, ''ମହାଶୟ, ବର୍ତ୍ତମାନ ନୁହେଁ ।'' ଶେଷରେ ଅଧ୍ୟକ୍ଷ ବି ବିଚଳିତ ହୋଇପଡ଼ିଲେ । ପୂର୍ବାହ୍ନ ସଭା, ଇତିମଧ୍ୟରେ ଅନ୍ତ ହେଲା । ସ୍ୱାମୀଜୀ କହିପାରିଲେ ନାହିଁ ।

- ୧ -

*ଯେଉଁ ଧର୍ମ ବିଶ୍ୱକୁ ସହନଶୀଳତା ଶିଖାଇଛି, ସେହି ଧର୍ମର ଜଣେ ବ୍ୟକ୍ତି ହୋଇଥିବାରୁ ମୁଁ ବିଶେଷ ଗର୍ବିତ, ଆମେ କେବଳ ସହନଶୀଳତାରେ ବିଶ୍ୱାସ କରୁନା, ବରଂ ସବୁଧର୍ମ ଈଶ୍ୱର ପ୍ରାପ୍ତି ପାଇଁ ସତ୍ୟ ବୋଲି ବିଶ୍ୱାସ କରୁ ।*

ଅପରାହ୍ନ ସଭାର ଶେଷଭାଗରେ ସ୍ୱାମୀ ବିବେକାନନ୍ଦ ବକ୍ତୃତା ମଞ୍ଚ ନିକଟକୁ ଆସିଲେ । **ଡକ୍ଟର ବାରୋସ୍** ତାଙ୍କୁ ପରିଚିତ କରାଇ ଦେଲେ । ଜ୍ଞାନଦାୟିନୀ ସରସ୍ୱତୀଙ୍କୁ ମନେ ମନେ ପ୍ରଣାମ ଜଣାଇଲେ । ତାଙ୍କର ମୁଖମଣ୍ଡଳ ଅଗ୍ନି ସମ ପ୍ରଜ୍ୱଳିତ ହେଉଥିଲା । ସମ୍ମୁଖସ୍ଥ ବିଶାଳ ଜନତାଙ୍କ ଉପରେ ତାଙ୍କର ଚକ୍ଷୁଦ୍ୱୟ ମୁହୂର୍ତ୍ତକ ଭିତରେ ବୁଲି ଆସିଲା । ସ୍ୱାମୀଜୀଙ୍କ ମୁଖରୁ ନିଃସୃତ ହେଲା - ଆମେରିକାର ଭଗ୍ନୀ ଓ ଭ୍ରାତୃଗଣ ।'' ଅଧିକ କହିବା ପୂର୍ବରୁ ସମଗ୍ର ସଭା କକ୍ଷରେ ଖେଳିଗଲା ଆନନ୍ଦ ଉଲ୍ଲାସ । ସହସ୍ର କରତାଳିରେ ପ୍ରକମ୍ପିତ ହେଲା ସଭାସ୍ଥଳ । ଶହ ଶହ ଶ୍ରୋତା ଅଭିନନ୍ଦନ ଜଣାଇ ଉଠିପଡ଼ିଲେ ନିଜ ନିଜ ଆସନରୁ । ସସ୍ନେହ ଭଉଣୀ ଓ ଭାଇ

Digitized by srujanika@gmail.com

ସମ୍ବୋଧନରେ ଉନ୍ମାଦ ହୋଇପଡ଼ିଲେ ସବୁରି । କିଏ ଏହି ଗୈରିକ ବସନ ପରିହିତ ସନ୍ନ୍ୟାସୀ !!! ସମସ୍ତେ ଗ୍ରୀବା ଉତ୍ତୋଳନ କରି ଅପଲକ ନୟନରେ ଚାହିଁଥିଲେ ଏହି ଯୁବସନ୍ନ୍ୟାସୀଙ୍କୁ । ଦୁଇମିନିଟ୍ ଧରି ସ୍ୱାମୀଜୀ କିଛି କହି ପାରିଲେ ନାହିଁ । କେମିତି ବା ସେ କହିଥାନ୍ତେ ? ଆନନ୍ଦ ଉଲ୍ଲାସ ଓ କରତାଳି ଭିତରେ କେହି କିଛି କହି ପାରିବେକି ? ଆମେରିକାର ଭଉଣୀ ଓ ଭାଇ ସମ୍ବୋଧନ ଭାରତୀୟ ବୈଦିକ ସଂସ୍କୃତିର **ବସୁଧୈବଃ କୁଟୁମ୍ବକମ୍**ର ଆପ୍ତ ବାକ୍ୟକୁ ବିଶ୍ୱ ସମ୍ମୁଖରେ ଉନ୍ମୋଚିତ କଲା ।

ସଭାଗୃହରେ ନିରବତା ରାଜତ୍ୱ କଲା ଉତ୍ତାରୁ ସ୍ୱାମୀଜୀଙ୍କ ମୁଖରୁ ନିଃସୃତ ହେଲା ଅଗ୍ନିର ଜିହ୍ୱା ସଦୃଶ ଶବ୍ଦମାଳା । ସମବେତ ଜନତାଙ୍କର ସୁପ୍ତ ଚୈତନ୍ୟକୁ ପ୍ରଜ୍ୱଳିତ କଲା । ଧର୍ମ ସମ୍ମିଳନୀରେ ତାଙ୍କୁ କହିବାର ସୁଯୋଗ ଦେଇଥିବାରୁ, ପୃଥିବୀର ସର୍ବ ପ୍ରାଚୀନ ସନ୍ନ୍ୟାସୀ ସମ୍ପ୍ରଦାୟ, ସବୁଧର୍ମର ଜନନୀ ସନାତନ ଧର୍ମ ଏବଂ ହିନ୍ଦୁଧର୍ମର ଅନେକ ସଂପ୍ରଦାୟ ଓ ଜାତିର କୋଟି କୋଟି ଜନତାଙ୍କ ପକ୍ଷରୁ ସେ ଆନ୍ତରିକ ଧନ୍ୟବାଦ ପ୍ରଦାନ କଲେ । ଧନ୍ୟବାଦ ମାଧମରେ ସ୍ୱାମୀଜୀ କହିଲେ ଯେ ଧର୍ମ ସମ୍ମିଳନୀରେ ସେ ଏକ ଧର୍ମ ଏକ ଗୋଷ୍ଠୀ ଏବଂ ଏକ ସମ୍ପ୍ରଦାୟର ପ୍ରତିନିଧିତ୍ୱ କରୁନାହାନ୍ତି ବରଂ ବିଶ୍ୱର ପ୍ରାଚୀନତମ ରାଷ୍ଟ୍ରର ଧର୍ମ ଓ ସଂସ୍କୃତି, ବିଭିନ୍ନ ସନ୍ଥ ଓ ପରମ୍ପରା ଏବଂ ସର୍ବଧର୍ମର ଉତ୍ପତ୍ତି ଓ ସମନ୍ୱୟସ୍ଥଳୀ ଭାରତବର୍ଷର ସେ ହେଉଛନ୍ତି ପ୍ରତିନିଧି । ସେହି ମହିମା ମଣ୍ଡିତ ଭାରତବର୍ଷ ପକ୍ଷରୁ ସେ ଧନ୍ୟବାଦ ଦେଉଥିଲେ ଯାହା ସବୁପ୍ରକାର ସାମ୍ପ୍ରଦାୟିକ ନିଗଡ଼ର ସୀମା ଅତିକ୍ରାନ୍ତ କରିପାରିଥିଲା ।

ଭାରତବର୍ଷ ସମ୍ବନ୍ଧରେ କହିଲାବେଳକୁ ସ୍ୱାମୀଜୀଙ୍କର ଦୃଷ୍ଟି ଖୁବ୍ ପ୍ରସାରିତ ଓ ବିଶାଳ ହୋଇଯାଉଥିଲା । ତାଙ୍କର ବ୍ୟକ୍ତିକୈନ୍ଦ୍ରିକ ଦୃଷ୍ଟି ଏଠାରେ ସମ୍ପୂର୍ଣ୍ଣଭାବେ ବିଲୀନ ହୋଇଯାଇଥିଲା ଏକ ବିଶାଳ ଭାରତୀୟ ଦୃଷ୍ଟି ଓ ଦିବ୍ୟ ଚକ୍ଷୁରେ । ସମଗ୍ର ବିଶ୍ୱକୁ ସେ ଏକ ବୋଲି ଅବଲୋକନ କଲେ । ତତ୍‌କ୍ଷଣାତ୍ ତାଙ୍କ ମୁଖରୁ ବେଦାନ୍ତର ମଧୁମୟ ବାଣୀ ଝଙ୍କୃରିତ ହେଲା । ''ଯେଉଁ ଧର୍ମ ବିଶ୍ୱକୁ ସହନଶୀଳତା ଶିଖାଇଛି, ସେହି ଧର୍ମର ଜଣେ ବ୍ୟକ୍ତି ହୋଇଥିବାରୁ ମୁଁ ବିଶେଷ ଗର୍ବିତ, ଆମେ କେବଳ ସହନଶୀଳତାରେ ବିଶ୍ୱାସ କରୁନା, ବରଂ ସବୁଧର୍ମ ଈଶ୍ୱର ପ୍ରାପ୍ତି ପାଇଁ ସତ୍ୟ ବୋଲି ବିଶ୍ୱାସ କରୁ ।''

ସବୁ ଧର୍ମ ଯେ ସତ୍ୟ, ତାହା ପ୍ରମାଣିତ କରିବା ପାଇଁ ଭାରତବର୍ଷର ଅବଦାନ ସମ୍ବନ୍ଧରେ ସେ ବିଶ୍ୱ ସମ୍ମିଳନୀ କକ୍ଷରେ ଶ୍ରୋତାବର୍ଗଙ୍କୁ ସ୍ମରଣ କରାଇ ଦେଉଥିଲେ - ''ମୁଁ ସେହି ମହାନ ରାଷ୍ଟ୍ର ଭାରତବର୍ଷକୁ ପ୍ରତିନିଧିତ୍ୱ କରୁଛି ଯେଉଁ ରାଷ୍ଟ୍ର ପୃଥିବୀର ସବୁ ଦେଶ ଓ ଧର୍ମ ଦ୍ୱାରା ବିତାଡ଼ିତ ଓ ନିର୍ଯ୍ୟାତିତ ଶରଣାର୍ଥୀଙ୍କୁ ଆଶ୍ରୟ ଦେଇ ଗୌରବାନ୍ୱିତ ହୋଇଛି, ମୁଁ ସେଥିପାଇଁ ପୁନର୍ବାର ଗର୍ବିତ । ମୁଁ ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ଘୋଷଣା କରୁଛି - ଯେଉଁ ସମୟରେ ଅତ୍ୟାଚାରୀ ରୋମୀୟଗଣ ଇସ୍ରାୟେଲର ପବିତ୍ର ମନ୍ଦିରଗୁଡ଼ିକୁ ଧ୍ୱଂସ କରି ଦେଇଥିଲେ, ସେହି ସମୟରେ ଦକ୍ଷିଣ ଭାରତକୁ ଭୟଭୀତ ହୋଇ ପଳାଇ ଆସିଥିବା ଇହୁଦି ଶରଣାର୍ଥୀଗଣଙ୍କୁ ଆଶ୍ରୟ ପ୍ରଦାନ କରି ଭାରତବର୍ଷ ନିଜର ସର୍ବଧର୍ମ ସମନ୍ୱୟ ଚରିତ୍ରକୁ ସାର୍ଥକ କରିଥିଲା ।

Digitized by srujanika@gmail.com

କେବଳ ସେତିକି ନୁହେଁ ସ୍ୱାମୀଜୀ ପୁନଶ୍ଚ ଭାରତବର୍ଷର ସହନଶୀଳତା ଓ ସବୁଧର୍ମକୁ ଆପଣେଇ ନେବାର ପରମ୍ପରା ଦୋହରାଇ କହିଲେ - ମୁଁ ସେହି ଧର୍ମପାଇଁ ଗର୍ବିତ ଯିଏ ମହାନ ଜୋରାଷ୍ଟ୍ରିଆନ ରାଷ୍ଟ୍ରର ଧର୍ମାବଲମ୍ବୀମାନଙ୍କୁ ନିଜ ଦେଶରେ ଆଶ୍ରୟ ଦେଇ ଏକ ପୁରାତନ ଧର୍ମକୁ ଏହି ପୃଥିବୀ ପୃଷ୍ଠରେ ତିଷ୍ଠି ରହିବାର ସ୍ୱାଧୀନତା ଦେଇ ପାରିଥିଲା । ସ୍ୱାମୀଜୀ ଯାହାସବୁ କହିଥିଲେ, ସେଗୁଡ଼ିକ ତାଙ୍କର ମନଗଢ଼ା କଥା ନ ଥିଲା କିମ୍ବା ଉପସ୍ଥିତ ଶ୍ରୋତାଙ୍କ ମନକୁ ଆକର୍ଷିତ କରିବା ପାଇଁ ଭାଷାର ଚାତୁର୍ଯ୍ୟ ବ୍ୟବହାର କରି ନଥିଲେ । ବରଂ ଅତି ପ୍ରାଚୀନ ସଂସ୍କୃତ ଶ୍ଳୋକଟିଏର ମର୍ମାର୍ଥକୁ ଆବୃତ୍ତି କରି ଘୋଷଣା କରିଥିଲେ ''ଯେପରି ନଦୀଗୁଡ଼ିକ ବିଭିନ୍ନ ସ୍ଥାନରୁ ଉତ୍ପତ୍ତି ଲାଭ କରି ଶେଷରେ ସମୁଦ୍ରରେ ମିଶି ଏକାକାର ହୋଇଯାଆନ୍ତି, ଠିକ୍ ସେପରି ମନୁଷ୍ୟ ନିଜ ନିଜର ସ୍ୱଭାବବଶତଃ ବିଭିନ୍ନ ପଥ, ତାହା ବକ୍ର କିମ୍ବା ସିଧା ହୋଇଥାଉ, ବାଛି ନିଅନ୍ତି ଏବଂ ଏକ ଇଶ୍ୱରଙ୍କ ନିକଟରେ ସେସବୁ ପଥଗୁଡ଼ିକର ସମାପ୍ତି ଘଟିଥାଏ । ବିଶ୍ୱରେ ଯେତେ ଧର୍ମରହିଛି, ସେଗୁଡ଼ିକ ଇଶ୍ୱର ଲାଭ ପାଇଁ ଗୋଟିଏ ଲେଖାଏଁ ପଥ । କୌଣସି ଧର୍ମ ମୁଖ୍ୟ ନୁହେଁ କିମ୍ବା କୌଣସି ଧର୍ମ ଗୌଣ ନୁହେଁ । ଯେହେତୁ ଭାରତବର୍ଷ ଏହି ମହାନ୍ ସତ୍ୟ ଉପଲବ୍ଧି କରିଛି, ତେଣୁ ସବୁ ଧର୍ମକୁ ଏଠାରେ ସାଧନାର ପଥ ମିଳିଯାଇଛି । ସ୍ୱାମୀଜୀ ଏଠାରେ ତାହା ହିଁ ଶ୍ରୋତାମାନଙ୍କୁ ମନେ ପକାଇ ଦେଲେ ।

ସ୍ୱାମୀଜୀ ଭଗବତ ଗୀତାର ଶ୍ଳୋକ ଆବୃତ୍ତି କରି ବଜ୍ର କଣ୍ଠରେ ଘୋଷଣା କଲେ, ''ଯିଏ ଯେଉଁଭାବେ ମୋତେ ଉପାସନା କରେ, ସେହିଭାବେ ମୁଁ ତା ନିକଟରେ ଉପନୀତ ହୋଇଥାଏ । ମନୁଷ୍ୟ ବିଭିନ୍ନ ପଥ ଅନୁସରଣ କରେ କିନ୍ତୁ ସବୁ ପଥ ମୋଠାରେ ହିଁ ସମାପ୍ତି ଘଟିଥାଏ ।'' ବିଭିନ୍ନତା ଭିତରେ ଏକତା ପରିଲକ୍ଷିତ କରିବା ହିଁ ମାନବଧର୍ମ ଯାହା ମନୁଷ୍ୟକୁ ଇଶ୍ୱରାଭିମୁଖୀ କରାଇଥାଏ । ବିଶ୍ୱରେ ପ୍ରମୁଖ ଧର୍ମଗୁଡ଼ିକୁ ନେଇ ଧର୍ମ ସମ୍ମିଳନୀ ଆୟୋଜିତ ହୋଇଥିବାରୁ ସ୍ୱାମୀଜୀ ଏହାକୁ ଶତକଣ୍ଠରେ ପ୍ରଶଂସା କରି କହିଲେ, ''ଅତୀତରେ ଏଭଳି ସମ୍ମିଳନୀ କୋଟିଏ ହୋଇଛି । ବିଭିନ୍ନ ଧର୍ମର ପ୍ରବକ୍ତାଗଣ ଏଠାରେ ଏକତ୍ରିତ । ବେଦ ଓ ସନାତନ ଧର୍ମର ମୂଳତତ୍ତ୍ୱ **''ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି''**ର ବାସ୍ତବ ରୂପରେଖ ଏଠାରେ ପ୍ରତିଫଳିତ । ଆଜିର ବିଶ୍ୱଧର୍ମ ସମ୍ମିଳନୀ ଭଗବତ ଗୀତାର ପରିପ୍ରକାଶ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

- ୨ -

*ଆଜି ଏହି ଧର୍ମ ସମ୍ମିଳନୀର ଆରମ୍ଭରେ ଯେଉଁ ଘଣ୍ଟା ବାଦନ କରାଯାଉଥିଲା, ସେହି ଘଣ୍ଟା ଧ୍ୱନି ସମସ୍ତ ପ୍ରକାର ଧର୍ମାନ୍ଧତା, ତରବାରୀ ଓ କଲମ ଦ୍ୱାରା ଧର୍ମାନ୍ତରୀକରଣର ନିର୍ଯ୍ୟାତନା ଏବଂ ଅନ୍ୟ ଧର୍ମ ପ୍ରତି ମାନବର ରହିଥିବା ଅସୂୟା ଓ ପ୍ରତିକୂଳ ମନୋଭାବ ପାଇଁ ମୃତ୍ୟୁ ଧ୍ୱନିରେ ପରିଣତ ହେଉ ?*

ଧର୍ମର ସକାରାତ୍ମକ ଦିଗ ଆଧ୍ୟାତ୍ମିକତାକୁ ସ୍ୱାମୀଜୀ ଏଠାରେ ଇଶ୍ୱର ଲାଭର ପଥ କହିଛନ୍ତି । ଧର୍ମ ମାନେ ହିଁ ଆତ୍ମୋପଲବ୍ଧି । ଏତାଦୃଶ ଆତ୍ମ-ଉପଲବ୍ଧି ପାଇଁ ଧର୍ମ ସହାୟକ

Digitized by srujanika@gmail.com

ହୋଇଥାଏ । ସବୁ ଧର୍ମ ଗୋଟିଏ ଗୋଟିଏ ପଥ ମାତ୍ର । କାହାକୁ ଅର୍ଥ, ବାହୁ ବଳ ଓ ସଲାସୂତ୍ରରା କରି ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମରେ ଦୀକ୍ଷିତ କରିବାର ପ୍ରୟାସ ହିଁ ଧର୍ମର ନକାରାତ୍ମକ ଦିଗ । ସ୍ୱାମୀଜୀ ଧର୍ମର ଏହି ନକାରାତ୍ମକ ଦିଗକୁ ଭୀଷଣ ସମାଲୋଚନା କରି ଏବଂ **ସାମ୍ପ୍ରଦାୟିକତା,** ଧର୍ମାନ୍ଧତା ଓ ଧର୍ମୋନ୍ମାଦନ ଏହି ସୁନ୍ଦର ପୃଥିବୀକୁ କିଭଳି ଭାବେ ନର୍କରେ ପରିଣତ କରିଛି, ତାହାର ଏକ ଟିପ୍ପଣି ଦବାପାଇଁ ସେଠାରେ ଆଦୌ ପଶ୍ଚାଦ୍‌ପଦ ହୋଇ ନଥିଲେ - ''ସେମାନଙ୍କର ନାରକୀୟ ଧର୍ମୋନ୍ମାଦତା ସମସ୍ତ ପୃଥିବୀକୁ ହିଂସା ମୁଖକୁ ଠେଲି ଦେଇଛି, ମାନବ ଶୋଣିତରେ ଧରିତ୍ରୀ ହୋଇଛି ସିକ୍ତ ଏବଂ କେତେ ରାଷ୍ଟ୍ର ଓ ସଭ୍ୟାତାକୁ ବିଲୋପ କରିଛି ଏବଂ ନୈରାଶ୍ୟ ସାଗରରେ ଭସାଇ ଦେଇଛି । ସତରେ ଯଦି ତାହା ହୋଇନଥାନ୍ତା, ବର୍ତ୍ତମାନର ମାନବ ସମାଜଠୁଁ କେତେ ଗୁଣରେ ସୁନ୍ଦର ଓ ଉନ୍ନତ ମାନବସମାଜ ଆମ ପୃଥିବୀ ପୃଷ୍ଠାରେ ଗଢ଼ି ଉଠିଥାନ୍ତା ! ଧର୍ମ ନାଁରେ ସାମାଜିକ ମୂଲ୍ୟବୋଧ, ସାଂସ୍କୃତିକ ମୂଲ୍ୟବୋଧ ଓ ମାନବିକ ମୂଲ୍ୟବୋଧର କଣ୍ଠରୋଧକୁ ସ୍ୱାମୀଜୀ କଠୋର ଭାଷାରେ ସମାଲୋଚନା କରିଥିଲେ ଏବଂ ମନୁଷ୍ୟ କୌଣସି ଧର୍ମ, ଜାତି ଓ ରାଷ୍ଟ୍ରଶକ୍ତି ସମ୍ମୁଖରେ ଜୋରଜବରଦସ୍ତି ବଳି ନ ପଡୁ ତାହା ସେ ସ୍ପଷ୍ଟ ଭାବରେ ଏଠାରେ ସମସ୍ତଙ୍କୁ ସ୍ମରଣ କରାଇ ଦେଉଥିଲେ ।

ଧର୍ମ ମହାସମ୍ମିଳନୀ ଅୟୋଜନ ନିଶ୍ଚିତଭାବେ ଧର୍ମ ବିଦ୍ୱେଷ ମନୋଭାବ ପରିହାର ନିମନ୍ତେ ମନରେ ନୂତନ ଆଶା ସଞ୍ଚାର କରିବ ବୋଲି ସ୍ୱାମୀଜୀଙ୍କର ଅଟଳ ବିଶ୍ୱାସ ଥିଲା । ଧର୍ମ ସମ୍ମିଳନୀର ଅୟୋଜନ ତଥା ଉପସ୍ଥିତ ପ୍ରତିନିଧି ଓ ଜନତାଙ୍କୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରି ସ୍ୱାମୀଜୀ ଚେତାବନୀ ଶୁଣାଇଲେ, ''ଆଜି ଏହି ଧର୍ମ ସମ୍ମିଳନୀର ଆରମ୍ଭରେ ଯେଉଁ ଘଣ୍ଟା ବାଦନ କରାଯାଉଥିଲା, ସେହି ଘଣ୍ଟା ଧ୍ୱନି ସମସ୍ତ ପ୍ରକାର ଧର୍ମାନ୍ଧତା, ତରବାରୀ ଓ କଲମ ଦ୍ୱାରା ଧର୍ମାନ୍ତରୀକରଣର ନିର୍ଯ୍ୟାତନା ଏବଂ ଅନ୍ୟ ଧର୍ମ ପ୍ରତି ମାନବର ରହିଥିବା ଅସୂୟା ଓ ପ୍ରତିକୂଳ ମନୋଭାବ ପାଇଁ ମୃତ୍ୟୁ ଧ୍ୱନିରେ ପରିଣତ ହେଉ ?

ତାଙ୍କର ସ୍ୱଳ୍ପକାଳୀନ ବକ୍ତୃତା ସମାପ୍ତ ହେଲାରୁ ଦଳ ଦଳ ନାରୀ ସ୍ୱାମୀଜୀଙ୍କ ସାନିଧ ଲାଭ କରିବାକୁ ହେଲେ ଅଗ୍ରସର, ସତେକି ଯୀଶୁଖ୍ରୀଷ୍ଟ ପୁଣି ଥରେ ଭକ୍ତମାନଙ୍କ ଗହଣରେ ହୋଇଛନ୍ତି ଆବିର୍ଭାବ !!! ଚତୁର୍ଦ୍ଦିଗ ଜୟଜୟକାର । ଯଶ କୀର୍ତ୍ତିରେ ସମଗ୍ର ଚିକାଗୋ ସହର ହୋଇଉଠିଲା ଉଲ୍ଲସିତ ଓ ମୁଖରିତ । ଶ୍ରୀରାମକୃଷ୍ଣଙ୍କର ସବୁ ଦେଇ ଫକିର ହେବାର ଦିବ୍ୟଶକ୍ତି ସ୍ୱାମୀଜୀଙ୍କ ମାଧ୍ୟମରେ ପୁନଃ ପ୍ରକାଶିତ ହେଲା । ସ୍ୱାମୀଜୀଙ୍କ ବକ୍ତୃତା'ର ସ୍ୱର ତୀକ୍ଷ୍ଣ ଶର ଭଳି ସବୁରିଙ୍କ ହୃଦୟରେ ପ୍ରବେଶ କଲା । ଏହା କୌଣସି ସାଧାରଣ ମଣିଷର ବକ୍ତୃତା ନୁହେଁ । ସାଧାରଣ ମଣିଷର 'ଭଉଣୀ ଓ ଭାଇ' ସମ୍ବୋଧନରେ କସ୍ମିନକାଳେ ମଣିଷ ଏଭଳି ଉନ୍ମାଦ ହେବ ନାହିଁ । ସ୍ୱାମୀ ବିବେକାନନ୍ଦ ଏକ ବ୍ୟକ୍ତି ନୁହେଁ । ସେ ଭାରତର ଆତ୍ମା । ହଜାର ହଜାର ବର୍ଷର ପ୍ରାଚୀନ ସଂସ୍କୃତିର ମୂର୍ତ୍ତିମନ୍ତ ପ୍ରତୀକ । ବେଦ, ବେଦାନ୍ତ, ଉପନିଷଦର ନିର୍ଯ୍ୟାସ । ହିନ୍ଦୁଧର୍ମ, ଖ୍ରୀଷ୍ଟଧର୍ମ, ଇସଲାମ ଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ, ଶିଖଧର୍ମ ଓ ଅନ୍ୟାନ୍ୟ କେତେ ଧର୍ମର ତତ୍ତ୍ୱକୁ ନିଜେ ସାଧନା କରି ପ୍ରମାଣିତ କରିଥିବା ଅବତାର ପୁରୁଷ ଶ୍ରୀରାମକୃଷ୍ଣ ପରମହଂସଙ୍କର ସେ ଥିଲେ ମୁଖ ।

Digitized by srujanika@gmail.com

- ୩ -

*''ହଁ, ହିନ୍ଦୁ ଆପଣମାନଙ୍କୁ ପାପୀ ବୋଲି କସ୍ମିନକାଳେ ସମ୍ବୋଧନ କରିପାରିବ ନାହିଁ । ଆପଣ ଅମୃତର ସନ୍ତାନ, ଶାଶ୍ୱତ, ଆନନ୍ଦ ପବିତ୍ର ଓ ଶୁଦ୍ଧ ସତ୍ତାର ଅଂଶ । ପୃଥିବୀ ପୃଷ୍ଠରେ ଆପଣ ଦିବ୍ୟସତ୍ତା, ଆପଣଙ୍କୁ ପାପୀ କହିହେବ ? ମନୁଷ୍ୟଙ୍କୁ ପାପୀ କହିବା ପାପ, ଏହା ମାନବତା ଉପରେ ଏକ ଘୋର ଅପମାନ ।*

ଭାରତବର୍ଷକୁ ବିକୃତଭାବେ କେତେକ ନ୍ୟସ୍ତସ୍ୱାର୍ଥୀ ଧାର୍ମିକଗଣ ସମସ୍ତ ପାଶ୍ଚାତ୍ୟ ଜଗତରେ ଚିତ୍ରଣ କରିଥିଲେ । ଅସଭ୍ୟ ବର୍ବର ଜାତି, ବୃକ୍ଷ, ଲତା, ପଥର, ମାଟି ଗୋଡ଼ି ଓ ପଶୁଙ୍କୁ ପୂଜା କରୁଥିବା ଧର୍ମ ଭାବେ ଚିତ୍ରିତ ଏହି ହିନ୍ଦୁ ଧର୍ମର ପ୍ରତିନିଧି ସ୍ୱାମୀଜୀଙ୍କ ମୁଖରୁ ଯେତେବେଳେ ଶୁଣିବାକୁ ପାଇଲେ ବିଶ୍ୱ ଭ୍ରାତୃତ୍ୱର ପ୍ରେମପୂର୍ଣ୍ଣ ସମ୍ବୋଧନ, ସେତେବେଳେ ସେମାନେ ଚକିତ ହୋଇ ଚାହିଁଲେ - କିଏ ଏହି ଯୁବସନ୍ନ୍ୟାସୀ, ଭଉଣୀ ଓ ଭାଇ କହି ସମ୍ବୋଧନ କରୁଛି ? ଆହାଃ... ଏ ପର୍ଯ୍ୟନ୍ତ କେହି ତ ଆମକୁ ଏଭଳି ସ୍ନେହପୂର୍ଣ୍ଣ ଭାଷାରେ ସମ୍ବୋଧନ କରି ନାହାଁନ୍ତି, ବରଂ ନିଜ ନିଜ ଧର୍ମର ମହାନତା ଓ ବଡ଼ିମା ପ୍ରତିପାଦନ କରି କହିଗଲେ ପୃଥିବୀର ସବୁଧର୍ମର ପ୍ରତିନିଧିଗଣ । କେହିତ କହି ନ ଥିଲେ ସବୁ ଧର୍ମକୁ ସମ୍ମାନ ଦେଇ ଆପଣାର କରିନେବାର ସାମର୍ଥତା ! ଉପସ୍ଥିତ ସାତହଜାର ବୁଦ୍ଧିଜୀବୀ ଶ୍ରୋତା ଭାରତ ଆତ୍ମାର ଆହ୍ୱାନରେ ଭାବବିହ୍ୱଳିତ ହୋଇଗଲେ । ସହସ୍ର ହୃଦୟରେ ଜ୍ଞାନାଲୋକ ପ୍ରଜ୍ୱଳିତ ହେଲା । ଚିକାଗୋ ଧର୍ମ ମହାସଭାରୁ ବିଶ୍ୱଭ୍ରାତୃତ୍ୱର ଏକ ନବଧର୍ମର ଅୟାରମ୍ଭ ହେଲା ।

ସତରଦିନ ଧରି ଧର୍ମସଭା ଚାଲିଲା । ଦଶ କିମ୍ବା ବାରଟି ବକ୍ତୃତା ସେ ଧର୍ମସଭାରେ ପ୍ରଦାନ କଲେ । ପ୍ରତ୍ୟେକ ବକ୍ତୃତାରେ ସେ ନୂଆ ନୂଆ ଯୁକ୍ତି ବାଢ଼ିଲେ, କିନ୍ତୁ ସମସ୍ତ ବକ୍ତୃତାରେ ତାଙ୍କର ଆତ୍ମ-ବିଶ୍ୱାସର ପ୍ରଚଣ୍ଡ ଶକ୍ତି ପ୍ରକାଶିତ ହେଉଥିଲା । ବେଦାନ୍ତର ରହସ୍ୟତମ ତତ୍ତ୍ୱ ପ୍ରକଟିତ ହେଲା ।'' କୌଣସି ନିର୍ଦ୍ଦିଷ୍ଟ ଧାର୍ମିକ ମତବାଦ ନୁହେଁ ବରଂ ପ୍ରତ୍ୟେକ ମନୁଷ୍ୟ ଭିତରେ ରହିଛି ଦିବ୍ୟତ୍ୱ ଯାହା ଅସୀମ ସମ୍ଭାବ୍ୟତାରେ ପରିପୂର୍ଣ୍ଣ । ସକଳ ମାନବ ଅମୃତର ସନ୍ତାନ । ପାପୀଭଳି ଶବ୍ଦ ମନୁଷ୍ୟ ପାଇଁ ଆଦୌ ପ୍ରଯୁଜ୍ୟ ନୁହେଁ - ''ହଁ, ହିନ୍ଦୁ ଆପଣମାନଙ୍କୁ ପାପୀ ବୋଲି କସ୍ମିନକାଳେ ସମ୍ବୋଧନ କରିପାରିବ ନାହିଁ । ଆପଣ ଅମୃତର ସନ୍ତାନ, ଶାଶ୍ୱତ, ଆନନ୍ଦ ପବିତ୍ର ଓ ଶୁଦ୍ଧ ସତ୍ତାର ଅଂଶ । ପୃଥିବୀ ପୃଷ୍ଠରେ ଆପଣ ଦିବ୍ୟସତ୍ତା, ଆପଣଙ୍କୁ ପାପୀ କହିହେବ ? ମନୁଷ୍ୟଙ୍କୁ ପାପୀ କହିବା ପାପ, ଏହା ମାନବତା ଉପରେ ଏକ ଘୋର ଅପମାନ । ଉଠ, ଜାଗ, ହେ ସିଂହଗଣ, ନିଜକୁ ମେଷ ବୋଲି ଭାବିବାର ଆବରଣ ଭିତରୁ ବାହାରି ଆସ । ଆପଣମାନେ ଅମୃତ ଓ ଶାଶ୍ୱତ ଆତ୍ମା । ମୁକ୍ତ ଆତ୍ମା ହିଁ ଶାଶ୍ୱତ । ଆପଣ ବସ୍ତୁ ନୁହଁନ୍ତି ଆପଣ ଶରୀର ନୁହଁନ୍ତି । ବସ୍ତୁ ଆପଣଙ୍କର ଦାସ, କିନ୍ତୁ ଆପଣ ବସ୍ତୁର ଦାସ ନୁହଁନ୍ତି ।''

ଉପସ୍ଥିତ ଭଦ୍ରମଣ୍ଡଳୀ ଆମର ପ୍ରାଚୀନ ବେଦ ବିଷୟରେ କହୁଛି ଶୁଣନ୍ତୁ । ବେଦ କେବେ ଈଶ୍ୱରଙ୍କ ଅକ୍ଷମଣୀୟ ନିୟମର ଭୟାବହତା ବିଷୟରେ ପଦେ କଥା ଘୋଷଣା କରେନାହିଁ,

Digitized by srujanika@gmail.com

ଘୋଷଣା କରେ ନାହିଁ ବି କର୍ମ ଓ କର୍ମଫଳର ଏକ ଅସରନ୍ତି ନର୍କ ରୂପକ କାରାଗାର । କିନ୍ତୁ ଘୋଷଣା କରେ ଯେ ଜଗତର ସମସ୍ତ ନିୟମ ଉର୍ଦ୍ଧ୍ୱରେ, ପ୍ରତ୍ୟେକ ବସ୍ତୁ ଓ ଶକ୍ତି ଭିତରେ ଓ ମାଧ୍ୟମରେ ବିରାଜିତ ଏକ ହିଁ ସତ୍ତା, ଯାହାଙ୍କର ନିର୍ଦ୍ଦେଶରେ ବାୟୁ ପ୍ରବାହିତ ହୁଏ, ଅଗ୍ନି ପ୍ରଜ୍ୱଳିତ ହୁଏ, ମେଘ ବର୍ଷିତ ହୁଏ ଏବଂ ମୃତ୍ୟୁ ବୀରଦର୍ପରେ ପୃଥିବୀ ପୃଷ୍ଠରେ ପାହୁଣ୍ଡ ପକାଏ । ତାଙ୍କର ସ୍ୱରୂପ କ'ଣ ? ସେ ସବୁଠାରେ ବିରାଜିତ, ସେ ଶୁଦ୍ଧ, ନିରାକାର, ସର୍ବଜ୍ଞାତା ଓ କୃପାଳୁ । ତାଙ୍କୁ ହିଁ କେବଳ ଜାଣିଲେ, ଜନ୍ମ ମୃତ୍ୟୁ ଜରା ବ୍ୟାଧିର ଚକ୍ରରୁ ମନୁଷ୍ୟ ବର୍ତ୍ତିଯିବ ।

ସ୍ୱର୍ଗ ଓ ନର୍କ କଳ୍ପନାର ଉର୍ଦ୍ଧ୍ୱରେ ଏକ ନିର୍ଗୁଣ ସତ୍ତାର ଚିନ୍ତନ ଯେ ବେଦାନ୍ତରେ ସମ୍ଭବ, ତାହା ବ୍ୟାଖ୍ୟା କରୁଥିବାବେଳେ ହିନ୍ଦୁମାନଙ୍କର ମୂର୍ତ୍ତିପୂଜା ଓ ସାକାର ଉପାସନା ନିରାକାରବାଦର ପରିପନ୍ଥୀ ବୋଲି ପାଶ୍ଚାତ୍ୟବାସୀଙ୍କ ଧାରଣାକୁ ପ୍ରତିହତ କରି ସ୍ୱାମୀଜୀ କହିଥିଲେ, ''ଆପଣମାନେ ହିନ୍ଦୁଧର୍ମର ବହୁ ଈଶ୍ୱରବାଦ ସମ୍ବନ୍ଧରେ ନିଶ୍ଚୟ ଭାବୁଥିବେ ? ମନୁଷ୍ୟର ମନକୁ ଶୁଦ୍ଧ ଓ ପବିତ୍ର ରଖିବା ପାଇଁ ନିମ୍ନ ଚେତନା ସ୍ତରରେ ବିଭିନ୍ନ ପ୍ରକାର ଧାର୍ମିକ ଉପାସନା, ପ୍ରାର୍ଥନା ଓ କ୍ରିୟାକର୍ମର ଆବଶ୍ୟକତା ରହିଛି ଯାହା ମାଧ୍ୟମରେ ବ୍ୟକ୍ତି ଆଧ୍ୟାତ୍ମିକ ଏକାଗ୍ରତା ହାସଲ କରିବାରେ ସାହାଯ୍ୟ କରିଥାଏ । କିନ୍ତୁ ଦିବ୍ୟତ୍ୱର ମୂର୍ତ୍ତିପୂଜା ଭଳି ଏକ ପ୍ରତୀକ ସମ୍ମୁଖରେ କୌଣସି ପ୍ରକାର ପୌତ୍ତଳିକ ମାନସିକତା ବ୍ୟକ୍ତି ନିକଟରେ ନ ଥାଏ । ହିନ୍ଦୁଧର୍ମ କୌଣସି ଏକ ନିର୍ଦ୍ଦିଷ୍ଟ ମତବାଦର ଅସ୍ତିବାଚକ କିମ୍ବା ନାସ୍ତିବାଚକ ଉପରେ କେନ୍ଦ୍ରିଭୂତ ନୁହେଁ ବରଂ ଆତ୍ମୋପଲବ୍ଧିରେ ବିଶ୍ୱାସ କରେ । ରୂପ, ପ୍ରତୀକ ଓ ଧାର୍ମିକ କର୍ମ କେବଳ ଭାରା ସଦୃଶ । ଏହା ଆଧ୍ୟାତ୍ମିକତାର ଶିଶୁକୁ ହାତଧରି ଆଗକୁ ଆଗ ନେଇ ଆଧ୍ୟାତ୍ମିକ ଉପଲବ୍ଧିର ଏକ ପୂର୍ଣ୍ଣ ମାନବରେ ପରିଣତ କରାଇଥାଏ । ତଥାପି ହିନ୍ଦୁଧର୍ମରେ ଏଭଳି ସ୍ତର ଦେଇ ଗତିକରିବା ସମସ୍ତଙ୍କ ଲାଗି ଆବଶ୍ୟକ ନାହିଁ । ଯିଏ ଯେଉଁ ମାର୍ଗରେ ଗମନ କରିପାରେ । କିନ୍ତୁ ଲକ୍ଷ୍ୟ ଏକ - ଈଶ୍ୱରୋପଲବ୍ଧି, ବିଭିନ୍ନତା ଭିତରେ ଐକ୍ୟଦର୍ଶନ ହିନ୍ଦୁଧର୍ମର ମୂଳଲକ୍ଷ୍ୟ ।

- ୪ -

*ଜଣେ ଖ୍ରୀଷ୍ଟିୟାନକୁ ହିନ୍ଦୁ ଓ ବୌଦ୍ଧ ହେବାର ଆବଶ୍ୟକତା ନାହିଁ । ଜଣେ ହିନ୍ଦୁ କିମ୍ବା ବୌଦ୍ଧକୁ ଖ୍ରୀଷ୍ଟିୟାନ ହେବାର ବି ଯଥାର୍ଥତା ନାହିଁ । କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ଯେଉଁ ଧର୍ମରେ ଦୀକ୍ଷିତ ଥାଉ ପଛେ, ଅନ୍ୟ ଧର୍ମ ପ୍ରତି ବିଦ୍ୱେଷ ଭାବ ପ୍ରକଟ ନକରି, ନିଜ ଧର୍ମ ଅନୁଯାୟୀ ଜୀବନଧାରଣ କରୁ । ମୁକ୍ତି ଅଭିମୁଖେ ଯାତ୍ରା କରୁ ଆଗାମୀ ଦିନରେ ସବୁ ଧର୍ମର ବିଜୟ ପତାକା ଉପରେ, ସମସ୍ତ ପ୍ରତିବନ୍ଧ ସତ୍ତ୍ୱେ, ଲିଖିତ ହେବ ''ସହାୟତା - ସଂଘର୍ଷ ନୁହେଁ, ସଂପୂର୍ଣ୍ଣ ଗ୍ରହଣ - ଧ୍ୱଂସ ନୁହେଁ, ସମନ୍ୱୟ ଓ ଶାନ୍ତି - କଳହ ନୁହେଁ ।*

ସଙ୍କୁଚିତ ଧାର୍ମିକ ଦୃଷ୍ଟିକୋଣ ଉପରେ କୁଠାରଘାତ କରି ପୁନଶ୍ଚ ଏକ ଜ୍ୱାଳାମୟ ବକ୍ତବ୍ୟରେ ବେଦ ଶ୍ରୋତାଗଣଙ୍କୁ ତଟସ୍ଥ କରି ସ୍ୱାମୀଜୀ କହିଲେ, ''ବନ୍ଧୁଗଣ, ଆପଣ ଏଭଳି ଏକ ଧର୍ମ

Digitized by srujanika@gmail.com

ପ୍ରଦାନ କରନ୍ତୁ, ବିଶ୍ୱର ସମସ୍ତରାଷ୍ଟ୍ର ଆପଣଙ୍କୁ ଅନୁସରଣ କରିବ । ଅଶୋକଙ୍କର ରାଜପରିଷଦ ବୌଦ୍ଧଧର୍ମୀଙ୍କର ପରିଷଦ ଥିଲା । ଆକବରଙ୍କର ରାଜପରିଷଦ, କେବଳ ଏକ ବୈଠକ - ସଭା ବ୍ୟତୀତ କିଛି ବି ନ ଥିଲା । ପ୍ରତ୍ୟେକ ଧର୍ମ ଈଶ୍ୱର ଲାଭ ନିମନ୍ତେ ଗୋଟିଏ ଗୋଟିଏ ପଥ ବୋଲି ବିଶ୍ୱରେ ଘୋଷଣା କରିବାର ଦାୟିତ୍ୱ ବର୍ତ୍ତମାନ ଆମେରିକା ଉପରେ ନ୍ୟସ୍ତ ।

ତାଙ୍କର ମୁଖନିଃସୃତ ଶବ୍ଦର ପ୍ରଭାବ ଏମନ୍ତ ଶକ୍ତିଶାଳୀ ଯେ ଧର୍ମ ସମ୍ମିଳନୀର ଉପବିଷ୍ଟ ଶ୍ରୋତା ଓ କର୍ମଚାରୀଙ୍କୁ କେବଳ ଉତ୍ସାହିତ କରି ନ ଥିଲା, ସମଗ୍ର ଆମେରିକା ସମେତ ପାଶ୍ଚାତ୍ୟ ଜଗତରେ ଆଲୋଡ଼ନ ସୃଷ୍ଟି କଲା । ଧର୍ମ ମହାସମ୍ମିଳନୀର ଅନ୍ତିମ ଦିବସରେ ସ୍ୱାମୀଜୀ ଚେତାବନୀ ଶୁଣାଇ କହିଲେ, ''ଜଣେ ଖ୍ରୀଷ୍ଟିୟାନକୁ ହିନ୍ଦୁ ଓ ବୌଦ୍ଧ ହେବାର ଆବଶ୍ୟକତା ନାହିଁ । ଜଣେ ହିନ୍ଦୁ କିମ୍ବା ବୌଦ୍ଧକୁ ଖ୍ରୀଷ୍ଟିୟାନ ହେବାର ବି ଯଥାର୍ଥତା ନାହିଁ । କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ଯେଉଁ ଧର୍ମରେ ଦୀକ୍ଷିତ ଥାଉ ପଛେ, ଅନ୍ୟ ଧର୍ମ ପ୍ରତି ବିଦ୍ୱେଷ ଭାବ ପ୍ରକଟ ନକରି, ନିଜ ଧର୍ମ ଅନୁଯାୟୀ ଜୀବନଧାରଣ କରୁ । ମୁକ୍ତି ଅଭିମୁଖେ ଯାତ୍ରା କରୁ । ଆଗାମୀ ଦିନରେ ସବୁ ଧର୍ମର ବିଜୟ ପତାକା ଉପରେ, ସମସ୍ତ ପ୍ରତିବନ୍ଧ ସତ୍ତ୍ୱେ, ଲିଖିତ ହେବ ''ସହାୟତା - ସଂଘର୍ଷ ନୁହେଁ, ସଂପୂର୍ଣ୍ଣ ଗ୍ରହଣ - ଧ୍ୱଂସ ନୁହେଁ, ସମନ୍ୱୟ ଓ ଶାନ୍ତି - କଳହ ନୁହେଁ ।''

ଆହାଃ କି ଚମତ୍କାର ବାଣୀ । ସବୁରି ହୃଦୟ କିଣି ନେଲା । ଏହି ଅପରିଚିତ ସନ୍ନ୍ୟାସୀ ଏକ ନବ ବ୍ୟବସ୍ଥାର ଧର୍ମଦୂତ ଭାବେ ହେଲେ ବିଖ୍ୟାତ । ଆମେରିକାର ଚତୁର୍ଦ୍ଦିଗରେ ତାଙ୍କର ନାମ ଓ ଯଶ ପ୍ରସାରିତ ହେଲା । ସ୍ୱାମୀଜୀଙ୍କର ପ୍ରତିକୃତି ଆମେରିକାର ସହରଗୁଡ଼ିକରେ ଶୋଭା ପାଇଲା । ସମ୍ବାଦପତ୍ରଗୁଡ଼ିକରେ ତାଙ୍କୁ ଅଭିନନ୍ଦନ ଜଣାଇ କେତେଯେ ସମ୍ବାଦ ପରିବେଷିତ ହେଲା ତାହାର ଇୟତ୍ତା ନାହିଁ । ସଭା ସମିତିରେ ବକ୍ତୃତା ଦେବାପାଇଁ ଆସିଲା ଅନେକ ନିମନ୍ତ୍ରଣ, ଜୟ ଜୟକାର ଧ୍ୱନିରେ ଭାରତଆତ୍ମା ହେଲେ ପୁଲକିତ । ଏହି ଗୌରବ ଓ ସଫଳତା କ'ଣ ଥିଲା ସ୍ୱାମୀ ବିବେକାନନ୍ଦଙ୍କ ଭଳି ଏକ ବ୍ୟକ୍ତି ବିଶେଷଙ୍କର ? ନା - ସେ କେହି ନୁହେଁ ବିଶ୍ୱଜନନୀଙ୍କର ସେ ଏକ ଯନ୍ତ୍ର । ତାଙ୍କ ମଧ୍ୟରେ ବିରାଜିତ ଶ୍ରୀରାମକୃଷ୍ଣ ପରମହଂସଙ୍କର ଗଚ୍ଛିତ ସକଳ ଦୁଃଖନାଶନ ଶିକ୍ଷାଦାୟକ ମହାଶକ୍ତି । ସେ ନିମିତ୍ତ ମାତ୍ର । ଶ୍ରୀରାମକୃଷ୍ଣ ପରମହଂସଙ୍କର ସର୍ବଧର୍ମ ସମନ୍ୱୟ ବାଣୀର ହୁଙ୍କାର ଶବ୍ଦ । ମହାତ୍ୟାଗୀ ଶଙ୍କରଙ୍କର ଡମ୍ବରୁ ଡିବି ଡିବି ଶବ୍ଦରେ ଅଜ୍ଞାନ ଦୂର ହେଲାଭଳି, ସର୍ବଧର୍ମ ସମନ୍ୱୟ ବାଣୀ ପୁନର୍ବାର ଉଦ୍‌ଘୋଷିତ ହେଲା ସ୍ୱାମୀଜୀଙ୍କ ମୁଖରୁ । ଅଜ୍ଞାନର ପରଳ ଅପସରି ଗଲା, ଆଲୋକିତ ହେଲା ସମଗ୍ର ମାନବ ଆତ୍ମା ।

ଯଶ କୀର୍ତ୍ତିରେ ସାଧାରଣତଃ ମଣିଷ ଭାବବିହ୍ୱଳିତ ହୋଇଯାଏ । କିନ୍ତୁ ସ୍ୱାମୀଜୀଙ୍କ ହୃଦୟରେ ନ ଥିଲା ଏତାଦୃଶ ଭାବବିହ୍ୱଳତାର ଚିହ୍ନ । ସେ ଜାଣିଛନ୍ତି ଯେ ସେ କିଛି କହି ନାହାଁନ୍ତି । ସବୁ ଶ୍ରୀରାମକୃଷ୍ଣଙ୍କର ଇଚ୍ଛା । ବିଶ୍ୱଧର୍ମ ସମ୍ମିଳନୀରେ ସେ ଯେଉଁଦିନ ବିଶ୍ୱ ବିଖ୍ୟାତ ହେଲେ, ସେହି ରାତ୍ରିରେ ଏକ ଧନୀ ପରିବାରରେ ଅତିଥି ହୋଇଥିଲେ । ଜାକଜମକ ପୂର୍ଣ୍ଣ ପରିବେଶ । ସ୍ୱାମୀଜୀଙ୍କ ପାଇଁ ଆୟୋଜିତ ହୋଇଥିଲା ସୁସ୍ୱାଦ ଖାଦ୍ୟପେୟ ଏବଂ ବିଳାସୋଦ୍ଦୀପକ ଶଯ୍ୟା । ଭୋଜନାନ୍ତେ ସେ ଉକ୍ତ ବିଳାସପୂର୍ଣ୍ଣ ଶଯ୍ୟାରେ ଶୟନ ମାତ୍ରକେ ଭାରତବର୍ଷର ଜନତାଙ୍କର ଦୁଃଖ, ଦୈନ୍ୟ, ଦୁର୍ଦ୍ଦଶାର କଥା ମନେପଡ଼ିଗଲା । ତାଙ୍କର ବିଶାଳ ହୃଦୟ ଯନ୍ତ୍ରଣାରେ ହେଲା ଛଟପଟ । ଚକ୍ଷୁରେ

Digitized by srujanika@gmail.com

ଭରିଗଲା ଲୋତକ । ଶଯ୍ୟାରେ ଶୋଇପାରିଲେ ନାହିଁ । କଣ୍ଟକାବୃତ ସମ ବୋଧ ହେଲା । ଅନନ୍ୟୋପାୟ ହୋଇ ଉଚ୍ଚସ୍ୱରରେ କ୍ରନ୍ଦନ କଲେ । ଶୟନକକ୍ଷ ଦୁଃଖରେ ଘୁମୁରି ଉଠିଲା । ସେ କାନ୍ଦି କାନ୍ଦି ନିଜକୁ କହୁଥିଲେ - ମା, ଯେତେବେଳେ ମୋ ଭାରତବର୍ଷର ଅଗଣିତ ଜନତା ଦାରିଦ୍ର୍ୟ କଷାଘାତରେ ଜର୍ଜରିତ, ମୁଁ କିପରି ଯଶ କୀର୍ତ୍ତିରେ ପୁଲକିତ ହୋଇ ବିଳାସବ୍ୟସନରେ ନିଜକୁ ସମର୍ପି ଦେବି !!! ଗରିବ ଭାରତବାସୀ ଦୁଃଖ ନିର୍ଯ୍ୟାତନାରେ ସଢୁଥିବା ସମୟରେ ଏଠିକାର ଜନତା ବ୍ୟକ୍ତିଗତ ସ୍ୱାଚ୍ଛନ୍ଦ୍ୟ ପାଇଁ ଅଜସ୍ର ଅର୍ଥ ବ୍ୟୟ କରୁଛନ୍ତି । ମା, ଭାରତର ଜନତାଙ୍କୁ କିଏ ଉଠାଇବ ? କିଏ ସେମାନଙ୍କ ମୁହଁରେ ଅନ୍ନ ଦେବ ? ଦେଖାଇଦିଅ ମା, ମୁଁ କିପରି ସେମାନଙ୍କର ସେବା କରିପାରିବି ?

- ୫ -

*ଭାରତବର୍ଷର ସବୁସ୍ଥାନରେ ଆପଣମାନେ ଗୀର୍ଜା ନିର୍ମାଣ କରୁଛନ୍ତି, କିନ୍ତୁ ବନ୍ଧୁଗଣ ମନେରଖ, ପ୍ରାଚ୍ୟର ଜରୁରୀ ଆବଶ୍ୟକତା ଧର୍ମ ନୁହେଁ - ସେମାନଙ୍କ ପାଖରେ ଯଥେଷ୍ଟ ଧର୍ମ ରହିଛି - ସେମାନଙ୍କର ଆବଶ୍ୟକତା ଖଣ୍ଡିଏ ରୋଟି ଯାହା ପାଇଁ କୋଟି କୋଟି ଜନତାର ଶୁଷ୍କକଣ୍ଠ ଆର୍ତ୍ତନାଦ କରୁଛି । ସେମାନେ ରୋଟି ମାଗୁଛନ୍ତି, କିନ୍ତୁ ଆପଣମାନେ ସେମାନଙ୍କୁ ପଥର ଦେଉଛନ୍ତି ।*

ତାଙ୍କ ଜୀବନରେ ଏକ ବିଶେଷ ଆନନ୍ଦ ଓ ଗୌରବମୟ ଦିବସରେ ସ୍ୱଦେଶବାସୀଙ୍କ ପାଇଁ କିପରି ତାଙ୍କ ହୃଦୟ ବେଦନାଗ୍ରସ୍ତ ହୋଇପଡ଼ିଥିଲା, ତାହା ବେଶ୍ ଅନୁମେୟ । ସ୍ୱଦେଶର ଦୁଃଖ ଦୂର କରିବା ଥିଲା ତାଙ୍କ ଅନ୍ତରର ଧର୍ମ ଓ ବ୍ରତ । ସଭାରେ ବକ୍ତୃତା ଦେବା ଥିଲା କେବଳ ବାହାର କାର୍ଯ୍ୟ । ଭାରତବାସୀଙ୍କୁ ଆହ୍ୱାନ କରି ଖଣ୍ଡିଏ ପତ୍ରରେ ସେ ଲେଖିଥିଲେ - ଆସ, ପୁରୋହିତଗଣଙ୍କ ଶକ୍ତି ଓ କ୍ଷମତାଶୀଳ ବ୍ୟକ୍ତିଙ୍କ ଅତ୍ୟାଚରରେ ନିପୀଡ଼ିତ ଭାରତର କୋଟି କୋଟି ପଦଦଳିତ ଦୁଃଖି ଦରିଦ୍ରଙ୍କ ପାଇଁ ଦିନରାତି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବା । ବଡ଼ ଲୋକ ଓ ଧାର୍ମିକ ନିକଟରେ ମୁଁ ଧର୍ମ ପ୍ରଚାର କରିବା ପାଇଁ ଆସି ନାହିଁ । ମୁଁ ତତ୍ତ୍ୱ ଜିଜ୍ଞାସୁ ନୁହେଁ, ଦାର୍ଶନିକ ନୁହେଁ, ନା ମୁଁ ଜଣେ ସାଧୁ । ମୁଁ ଗରିବ । ଗରିବଙ୍କୁ ଭଲପାଏ । ଏହି ଆମେରିକାରେ ଯାହାଙ୍କୁ ଗରିବ କୁହାଯାଏ, ସେମାନଙ୍କୁ ମୁଁ ଦେଖିଛି । ଆମ ଦେଶର ଗରିବମାନଙ୍କ ତୁଳନାରେ ଏମାନଙ୍କ ଅବସ୍ଥା ବହୁତ ଭଲ, କିନ୍ତୁ ସେମାନଙ୍କର ହୃଦୟ କେବେ ବି ଗରିବଙ୍କ ପାଇଁ କାନ୍ଦେ ନାହିଁ । ଭାରତର ଚିରପତିତ କୋଡ଼ିଏ କୋଟି ପୁରୁଷ ଓ ମହିଳାଙ୍କ ପାଇଁ କାହାର ହୃଦୟ କାନ୍ଦେ କୁହ ? ସେମାନେ ଅନ୍ଧକାରରୁ ଆଲୋକକୁ ଆସିପାରୁ ନାହାଁନ୍ତି । ଉପଯୁକ୍ତ ଶିକ୍ଷା ଲାଭ କରିପାରି ନାହାନ୍ତି । କୁହ, ସେମାନଙ୍କ ପାଖକୁ କିଏ ଆଲୋକ ନେଇଯିବ ? ସେମାନେ ହିଁ ତୁମର ଦେବତା ଓ ଇଷ୍ଟ । ସେମାନଙ୍କ ପାଇଁ କାର୍ଯ୍ୟ କର । ପ୍ରାର୍ଥନା କର । ଈଶ୍ୱର ତୁମକୁ ପଥ ଦେଖାଇବେ । ଯା'ର ହୃଦୟ ଗରିବ ପାଇଁ କ୍ରନ୍ଦନ କରେ, ସେ ହିଁ ମହାତ୍ମା, ଅନ୍ୟମାନେ ଦୁରାତ୍ମା । ସେମାନଙ୍କର କଲ୍ୟାଣ ନିମନ୍ତେ

Digitized by srujanika@gmail.com

ଆମର ଜୀବନ ଉତ୍ସର୍ଗୀତ ହେଉ । ସେମାନଙ୍କ ପାଇଁ ମୋ ପ୍ରାଣରେ ଏପରି ମହାଭାବ ଉଠୁଛି, ତାହା ମୁଁ ପ୍ରକାଶ କରିବା ପାଇଁ ଅକ୍ଷମ । ଯେତେଦିନ ପର୍ଯ୍ୟନ୍ତ ଭାରତର କୋଟି କୋଟି ଲୋକ ଦାରିଦ୍ର୍ୟ ଓ ଅଜ୍ଞାନ ଅନ୍ଧକାରରେ ବୁଡ଼ି ରହିଛନ୍ତି, ଏବଂ ଶିକ୍ଷିତ ଓ ଧନୀଗଣ ଯେଉଁମାନେ ସେମାନଙ୍କର ପରିଶ୍ରମ ଓ ଅର୍ଥରେ ଧନୀ ଓ ଶିକ୍ଷିତ ହୋଇଛନ୍ତି, କିନ୍ତୁ ସେମାନଙ୍କର କଲ୍ୟାଣ ନିମନ୍ତେ ଅର୍ଥ ବ୍ୟୟ କରୁନାହାନ୍ତି, ସେମାନଙ୍କୁ ମୁଁ ଦେଶଦ୍ରୋହୀ ବୋଲି ଆଖ୍ୟା ଦେବି ।''

ସ୍ୱାମୀ ବିବେକାନନ୍ଦଙ୍କର ସାହସୀ ଓ ତେଜସ୍ୱୀ ବକ୍ତୃତା ଯିନା ବୁଦ୍ଧିଜୀବୀ ଓ ସାଧାରଣ ଜନତାଙ୍କୁ ଆଲୋକିତ କଲା କିନ୍ତୁ ଖ୍ରୀଷ୍ଟିଆନ ଧର୍ମ ପ୍ରଚାରକ, ଏପରିକି କେତେକ ଭାରତୀୟ ଧର୍ମ ପ୍ରଚାରକଙ୍କର ଗାତ୍ରୋଦାହ  ହେଲା । ଧର୍ମାନ୍ଧ ପ୍ରଚାରକଗଣ ସ୍ୱାମୀଜୀଙ୍କୁ ବଦନାମ କରିବା ପାଇଁ ବୁଲି ବୁଲି ଘୋଷଣା କଲେ ''ସ୍ୱାମୀ ବିବେକାନନ୍ଦ ଆତ୍ମାର ମହିମା ସମ୍ବନ୍ଧରେ ଯେଉଁସବୁ ତଥ୍ୟ ପ୍ରଦାନ କଲେ, ତାହା ଅଧିକାଂଶ ଭାରତୀୟଙ୍କୁ ଜଣାନାହିଁ । ମୂର୍ତ୍ତିପୂଜାର ସୂକ୍ଷ୍ମ ଦାର୍ଶନିକ ତତ୍ତ୍ୱ ବ୍ୟାଖ୍ୟା କରି ପାଶ୍ଚାତ୍ୟ ଜଗତକୁ ବିବେକାନନ୍ଦ ଭୁଆଁ ବୁଲାଇଛନ୍ତି । ଉକ୍ତ ଦାର୍ଶନିକ ତତ୍ତ୍ୱକୁ ଭାରତୀୟ ପୌତ୍ତଳିକଗଣ ସ୍ୱପ୍ନରେ ମଧ ଭାବି ପାରିବେ ନାହିଁ ।'' ସେମାନଙ୍କର ଆକ୍ରମଣାତ୍ମକ ପ୍ରଚାର ଏଭଳି ଦ୍ୱେଷପୂର୍ଣ୍ଣ ଥିଲା ଯେ ସ୍ୱାମୀଜୀଙ୍କର ଚରିତ୍ର ସଂହାର କରି କହୁଥିଲେ, ''ସ୍ୱାମୀ ବିବେକାନନ୍ଦ ନିଚ କୁଳରେ ଜନ୍ମ, ତାଙ୍କୁ ଜାତିରୁ ବହିଷ୍କାର କରାଯାଇଛି ଏବଂ ହିନ୍ଦୁଧର୍ମ ଉପରେ କହିବାଲାଗି ତାଙ୍କର ଅଧିକାର ନାହିଁ । ଜଣେ ଭାରତୀୟ ଭଦ୍ରଲୋକ ଉତ୍‌କ୍ଷିପ୍ତ ହୋଇ ବିଶ୍ୱଧର୍ମ ସମ୍ମିଳନୀର କର୍ମକର୍ତ୍ତାଙ୍କୁ କହିଥିଲେ ଯେ ଏଭଳି ଜଣେ ଚରିତ୍ରହୀନ ଯୁବ ସନ୍ୟାସୀଙ୍କୁ ବିଶ୍ୱ ସମ୍ମିଳନୀରେ ଅଂଶଗ୍ରହଣ କରିବାଲାଗି  ଦିଆ ନ ଯାଉ । କର୍ମକର୍ତ୍ତାଗଣ ଏତାଦୃଶ ପରାମର୍ଶ ଅବଶ୍ୟ ଅଗ୍ରାହ୍ୟ କରି ଦେଇଥିଲେ ।

ସ୍ୱାମୀଜୀଙ୍କର ବିଦ୍ରୋହୀ ମନ ଏତାଦୃଶ ମନ୍ତବ୍ୟରେ ଅଗ୍ନିସମ ଜଳି ଉଠିଥିଲା । ସେପ୍ଟେମ୍ବର ପଚିଶ ତାରିଖରେ ସେ ଯେତେବେଳେ ହିନ୍ଦୁ ଧର୍ମ ଉପରେ ଅଗ୍ନିବର୍ଷୀ ଭାଷଣ ସମ୍ମିଳନୀକକ୍ଷରେ ପ୍ରଦାନ କରୁଥିଲେ, ସେତେବେଳେ ଭାଷଣ ମଝିରେ ରହିଯାଇ ଉପସ୍ଥିତ ହଜାର ହଜାର ଶ୍ରୋତାବର୍ଗଙ୍କୁ ନମ୍ରତା ସହକାରେ ପ୍ରଶ୍ନ କଲେ, ''ମହାଶୟ, ଆପଣମାନଙ୍କ ଭିତରୁ ଯାହାର ହିନ୍ଦୁଧର୍ମ ଓ ଶାସ୍ତ୍ର ଉପରେ ପ୍ରତ୍ୟକ୍ଷ ଜ୍ଞାନ ରହିଛି, ଦୟାକରି ହାତ ଟେକନ୍ତୁ ।'' ବଡ଼ ଆଶ୍ଚର୍ଯ୍ୟର ଘଟଣା ଯେ ସାତହଜାର ଶ୍ରୋତାଙ୍କ ମଧ୍ୟରୁ ମାତ୍ର ତିନି ଚାରୋଟି ହାତ ଉପରକୁ ଉଠିଥିଲା । ସ୍ୱାମୀଜୀ ତାଚ୍ଛଲ୍ୟରେ କହିଉଠିଲେ, ''ହିନ୍ଦୁଧର୍ମ ସମ୍ବନ୍ଧରେ କୌଣସି ଜ୍ଞାନ ନ ଥିଲାବେଳେ, ସେମାନେ କିପରି ମୋର ଧର୍ମ ଉପରେ କଟୁ ମନ୍ତବ୍ୟ ପ୍ରକାଶ କରିପାରୁଛନ୍ତି ? ବିଶ୍ୱଧର୍ମ ମହାସମ୍ମିଳନୀରେ ଭାରତର ଅଗଣିତ ଦରିଦ୍ର ଓ ପତିତଙ୍କ ତରଫରୁ ସ୍ୱାମୀଜୀ ପ୍ରତିନିଧିତ୍ୱ କରିଥିଲେ । ଏହି ଦରିଦ୍ର ଓ ପତିତମାନଙ୍କୁ ଖ୍ରୀଷ୍ଟିଆନ ପାଦ୍ରିମାନେ ଅର୍ଥଲୋଭରେ ଧର୍ମାନ୍ତରିତ କରିବାରେ ଲାଗିଛନ୍ତି । ଏହି ପରିପ୍ରେକ୍ଷୀରେ ସ୍ୱାମୀଜୀ ବଜ୍ର ନିନାଦ କଣ୍ଠରେ ସେଦିନ କହିଥିଲେ :

''ଖ୍ରୀଷ୍ଟିଆନମାନେ ଗଠନମୂଳକ ସମାଲୋଚନାର ସମ୍ମୁଖୀନ ହେବା ନିମନ୍ତେ ପ୍ରସ୍ତୁତ ରହିବା ଉଚିତ । ଆପଣମାନେ ଖ୍ରୀଷ୍ଟିଆନ, ଆପଣ କାହିଁକି ପୌତ୍ତଳିକର ଆତ୍ମାର ଉଦ୍ଧାର ନିମନ୍ତେ

Digitized by srujanika@gmail.com

ପାଦ୍ରିମାନଙ୍କୁ ପଠାଇ ଆନନ୍ଦ ଲାଭ କରୁଛନ୍ତି ? ଅନାହାରରୁ ସେମାନଙ୍କୁ ରକ୍ଷା କରିବା ପାଇଁ କାହିଁକି ତ ଚେଷ୍ଟା କରୁନାହାନ୍ତି ? ଭାରତରେ ଦୁର୍ଭିକ୍ଷବେଳେ ହଜାର ହଜାର ଲୋକ ଅନାହାରରେ ପ୍ରାଣ ହରାଉଛନ୍ତି, ତଥାପି ତ ଖ୍ରୀଷ୍ଟିଆନମାନେ କିଛି କରୁନାହାନ୍ତି । ଭାରତବର୍ଷର ସବୁସ୍ଥାନରେ ଆପଣମାନେ ଗୀର୍ଜା ନିର୍ମାଣ କରୁଛନ୍ତି, କିନ୍ତୁ ବନ୍ଧୁଗଣ ମନେରଖ, ପ୍ରାଚ୍ୟର ଜରୁରୀ ଆବଶ୍ୟକତା ଧର୍ମ ନୁହେଁ - ସେମାନଙ୍କ ପାଖରେ ଯଥେଷ୍ଟ ଧର୍ମ ରହିଛି - ସେମାନଙ୍କର ଆବଶ୍ୟକତା ଖଣ୍ଡିଏ ରୋଟି ଯାହା ପାଇଁ କୋଟି କୋଟି ଜନତାର ଶୁଷ୍କକଣ୍ଠ ଆର୍ତ୍ତନାଦ କରୁଛି । ସେମାନେ ରୋଟି ମାଗୁଛନ୍ତି, କିନ୍ତୁ ଆପଣମାନେ ସେମାନଙ୍କୁ ପଥର ଦେଉଛନ୍ତି । ବୁଭୁକ୍ଷୁଙ୍କୁ ଧର୍ମ ଉପଦେଶ ଦେବା ହିଁ ସବୁଠୁଁ ବଡ଼ ଅପମାନ । ଭାରତରେ ଯଦି ଜଣେ ପୁରୋହିତ ଅର୍ଥ ପାଇଁ ଧର୍ମ ପ୍ରଚାର କରେ, ତେବେ ଲୋକେ ତାଙ୍କ ଉପରକୁ ଛେପ ଛାଟିବେ । ମୋ ଦେଶର ଦରିଦ୍ର ଜନତାଙ୍କ ପାଇଁ ସାହାଯ୍ୟ ମାଗିବା ଲାଗି ମୁଁ ଏଠାକୁ ଆସିଛି, କିନ୍ତୁ ମୁଁ ଭଲଭାବରେ ବର୍ତ୍ତମାନ ହୃଦୟଙ୍ଗମ କରିସାରିଲିଣି ଯେ ଗୋଟିଏ ଖ୍ରୀଷ୍ଟଧର୍ମୀ ରାଷ୍ଟ୍ରରେ ପୌତ୍ତଳିକଙ୍କ କଲ୍ୟାଣ ନିମନ୍ତେ ଖ୍ରୀଷ୍ଟିଆନଙ୍କଠାରୁ ଅର୍ଥ ମାଗିବା କିଭଳି କଷ୍ଟ ବ୍ୟାପାର ?

ବିଶ୍ୱଧର୍ମ ସମ୍ମିଳନୀରେ ପାଦ୍ରୀ ଓ ଅନ୍ୟ ଈର୍ଷାନ୍ୱିତ ଧର୍ମ ପ୍ରଚାରକଗଣ ଯେଉଁମାନେ ହିନ୍ଦୁମାନଙ୍କୁ ପୌତ୍ତଳିକ, ଅମାନୁଷିକ ଓ ଅସଭ୍ୟ ବୋଲି କହି ଜନମାନସରେ କୁତ୍ସାରଟନା କରୁଥିଲେ, ସେମାନଙ୍କୁ ମୁହଁତୋଡ଼ ଜବାବ ଦେଇ ସ୍ୱାମୀ ବିବେକାନନ୍ଦ ସିଂହ ସଦୃଶ ଗର୍ଜନ କରି କହିଥିଲେ "ମନେପଡୁଛି ମୋର ବାଲ୍ୟ କାଳର କଥା । ଜଣେ ଖ୍ରୀଷ୍ଟଧର୍ମାବଲମ୍ବୀ ପ୍ରଚାରକ ଏକ ଜନ ସମାବେଶକୁ ଉଦ୍‌ବୋଧନ ଦେଉଥିଲେ । ଯିଶୁଖ୍ରୀଷ୍ଟ ଓ ଖ୍ରୀଷ୍ଟଧର୍ମ ସମ୍ବନ୍ଧରେ ବହୁ ସୁନ୍ଦର କଥାମାନ ସମବେତ ଜନତାଙ୍କୁ ଶୁଣାଉଥିଲେ । ତାହାରି ଭିତରେ ସେ କହିଲେ, ଯଦି ମୁଁ ତୁମର ମୂର୍ତ୍ତିକୁ ଖଣ୍ଡିଏ ବାଡ଼ିରେ ପ୍ରହାର କରେ, ସେ କ'ଣ କରି ପାରିବେ ?" ଅବଶ୍ୟ ଏତାଦୃଶ କଟୁ ସମାଲୋଚନା ହିନ୍ଦୁଧର୍ମର ମୂର୍ତ୍ତିପୂଜା ବିରୋଧରେ ଉଦ୍ଦିଷ୍ଟ ଥିଲା । ପାଦ୍ରୀ ମହାଶୟଙ୍କର ଏମନ୍ତ ବିଦ୍ୱେଷପୂର୍ଣ୍ଣ କଥା ଶୁଣି ଜନଗହଳି ମଧ୍ୟରୁ ଜଣେ ବ୍ୟକ୍ତି ତତ୍‌କ୍ଷଣାତ୍ କହିଲେ, "ହଇହୋ ପାଦ୍ରୀ ମହାଶୟ, ମୁଁ ଯଦି ତୁମର ଈଶ୍ୱରଙ୍କୁ ଗାଳିଗୁଲଜ କରେ, ତେବେ ତୁମର ଈଶ୍ୱର କ'ଣ କରିପାରିବେ ?" ପାଦ୍ରୀ ହଠାତ୍ କହିଲେ, "ତୁମେ ଈଶ୍ୱରଙ୍କ ଦ୍ୱାରା ଦଣ୍ଡିତ ହେବ ।" ଉକ୍ତ ବ୍ୟକ୍ତିଙ୍କୁ କିଏ ସମ୍ଭାଳେ ! ସେ କହି ଉଠିଲେ, "ହଁ, ଆମର ମୂର୍ତ୍ତି ବି ତୁମର ମୃତ୍ୟୁପରେ ତୁମକୁ ଦଣ୍ଡିତ କରିବେ ।"

ସ୍ୱାମୀଜୀ ବିଦେଶ ଭୂମିରେ ସାହସର ସହିତ ଏପରି କହୁଥିଲେ ଯେ ସତେକି ଭୟ ଏକ ଶବ୍ଦ ତାଙ୍କ ଅଭିଧାନରେ ନ ଥିଲା ! ସେ ସେଠାକୁ ରାଜନୀତି କରିବାକୁ ଯାଇ ନଥିଲେ କିମ୍ବା ଅନ୍ୟ ବକ୍ତାଙ୍କ ଭଳି "ଖ୍ରୀଷ୍ଟଧର୍ମ ଓ ପାଶ୍ଚାତ୍ୟ ସଭ୍ୟତା ଆମ୍ଭକୁ ଅନେକ କିଛି ଶିଖାଇଛି" ବୋଲି ତୋସାମଦକାରୀ ବାକ୍ୟ ସେ ଉଚ୍ଚାରଣ କରୁ ନ ଥିଲେ । ମୂର୍ତ୍ତିପୂଜା ପାଇଁ ସେ ଆଦୌ ଲଜ୍ଜିତ ନ ଥିଲେ ବରଂ ଏହାକୁ ଆଧାର କରି ସେ ବାରମ୍ବାର ପାଶ୍ଚାତ୍ୟ ଧର୍ମ ଉପରେ ଆକ୍ରମଣ ଜାରି

Digitized by srujanika@gmail.com

ରଖିଥିଲେ । ସେ ଭଲଭାବରେ ଜାଣିଥିଲେ ଯେ ଇହୁଦି, ଖ୍ରୀଷ୍ଟ ଓ ଇସଲାମ ଧର୍ମ ବ୍ୟତୀତ ବିଶ୍ୱର ସମସ୍ତ ଧର୍ମାବଲମ୍ବୀଙ୍କୁ ଅଧର୍ମୀ, ପୌତ୍ତଳିକ ଓ ନର୍କଗାମୀ ବୋଲି ଆଖ୍ୟାୟିତ କରି ସେମାନେ ପ୍ରଚଣ୍ଡ ଘୃଣା କରନ୍ତି ଏବଂ ସେମାନଙ୍କୁ ବଳ, କୌଶଳ ଓ ପ୍ରଲୋଭନ ଦେଖାଇ ଧର୍ମାନ୍ତରିତ କରିପାରିଲେ ସ୍ୱର୍ଗରାଜ୍ୟରେ ସେମାନଙ୍କ ନିମନ୍ତେ ଖଣ୍ଡିଏ ସ୍ଥାନ ମିଳିଯିବ ବୋଲି ବି ବିଶ୍ୱାସ କରନ୍ତି । ଏତାଦୃଶ ଧର୍ମୋନ୍ମାଦନା ପ୍ରତି ତାଚ୍ଛଲ୍ୟ ପ୍ରକାଶ କରି ସ୍ୱାମୀଜୀ ଉପସ୍ଥିତ ଶ୍ରୋତାବର୍ଗଙ୍କୁ ରୋକ୍‌ଠୋକ୍ ଭାଷାରେ କହିଥିଲେ :

ମନୁଷ୍ୟ ସମାଜ ପାଇଁ ଅନ୍ଧବିଶ୍ୱାସ ଏକ ପ୍ରଚଣ୍ଡ ଶତ୍ରୁ । କିନ୍ତୁ ଧର୍ମାନ୍ଧତା ତାହାଠୁଁ ପ୍ରଚଣ୍ଡ ଭାବେ ଭୟଙ୍କର ଓ କ୍ଷତିକାରକ । ଜଣେ ଖ୍ରୀଷ୍ଟିଆନ ଗୀର୍ଜା କୁ କାହିଁକି ଯାଏ ? କ୍ରସ୍ କାହିଁକି ପବିତ୍ର ? ପ୍ରାର୍ଥନା ବେଳେ ଆକାଶକୁ କାହିଁକି ଚାହାଁନ୍ତି ? କାଥୋଲିକ୍ ଚର୍ଚ୍ଚରେ ଅନେକ ମୂର୍ତ୍ତି କାହିଁକି ରହିଛି ? ପ୍ରୋଟେଷ୍ଟାଣ୍ଟ ପ୍ରାର୍ଥନା କରିବା ସମୟରେ ଅନେକ ରୂପ ମନରେ କାହିଁକି ଚିନ୍ତା କରନ୍ତି ? ଭ୍ରାତୃଗଣ, ଆମେ ପବନ ବିନା ଯେପରି ମୁହୂର୍ତ୍ତେ ବଞ୍ଚିପାରିବା ନାହିଁ, ସେପରି ଆମେ କୌଣସି ମାନସିକ ରୂପ ବିନା ଚିନ୍ତା କରିପାରିବା ନାହିଁ । **ଭାବାନୁସଙ୍ଗ** ନିୟମାନୁସାରେ ଭୌତିକ ରୂପ ମାନସିକ ଧାରଣାକୁ ଉଦ୍ଦୀପିତ କରେ ଏବଂ ମାନସିକ ଧାରଣା ବି ଭୌତିକ ରୂପକୁ ଉଦ୍ଦୀପିତ କରିଥାଏ । ସେଥିପାଇଁ ଉପାସନା ସମୟରେ ହିନ୍ଦୁ ଏକ ବାହ୍ୟ ପ୍ରତୀକ ବ୍ୟବହାର କରିଥାଏ । ସେ ଆପଣଙ୍କୁ କହିବେ ଯେ ଯେଉଁ ସତ୍ତାକୁ ସେ ପ୍ରାର୍ଥନା କରନ୍ତି, ସେହି ସତ୍ତାଙ୍କ ଉପରେ ନିଜ ମନକୁ ଏକାଗ୍ର କରିବାରେ ଏହା ସାହାଯ୍ୟ କରେ । ମୂର୍ତ୍ତି ଈଶ୍ୱର ନୁହଁନ୍ତି ବୋଲି ଆପଣ ଯେପରି ଭାବନ୍ତି ଠିକ୍ ସେପରି ସେ ବି ଜାଣନ୍ତି ଯେ ଯେଉଁ ମୂର୍ତ୍ତିକୁ ସେ ପୂଜା କରନ୍ତି ସେହି ମୂର୍ତ୍ତି ସର୍ବବ୍ୟାପୀ ନୁହଁନ୍ତି । କୁହନ୍ତୁ ତ, ବିଶ୍ୱର କେତେଜଣ ସର୍ବବ୍ୟାପୀର ଅର୍ଥ ବୁଝନ୍ତି ? ଏହା କେବଳ ଏକ ଶବ୍ଦ, ଏକ ପ୍ରତୀକ । ଈଶ୍ୱର କ'ଣ ବାହ୍ୟ ଆୟତନ ବିଶିଷ୍ଟ ? ଯଦି ନାହିଁ, ତେବେ ଆମେ ସେହି ଶବ୍ଦ ସର୍ବବ୍ୟାପୀକୁ ବାରମ୍ବାର ବ୍ୟବହାର କରିବା ସମୟରେ, ଆମ ମନରେ କେବଳ ବିସ୍ତୃତ ଆକାଶ କିମ୍ବା ମହାଶୂନ୍ୟର କଳ୍ପନା ବ୍ୟତୀତ ଅନ୍ୟ କିଛି ଉଦିତ ହୁଏନାହିଁ ।

- ୬ -

*ଖ୍ରୀଷ୍ଟଧର୍ମର ସମୃଦ୍ଧି ଓ ବିକାଶ ନିଜ ଭାଇମାନଙ୍କର ଗଳାକାଟିବା ମାଧ୍ୟମରେ ଘଟିଛି । ଏଭଳି ମୂଲ୍ୟ ଦେଇ ହିନ୍ଦୁମାନେ ଜନ୍ମିନକାଳେ ସମୃଦ୍ଧି ଲାଭ କରିପାରିବେ ନାହିଁ । ଆଜି ମୁଁ ଏଠାରେ ବସିଛି ଏବଂ ଶୁଣିଛି ଅସହିଷ୍ଣୁତାର ବିକଟାଳ ସ୍ୱର । ରକ୍ତ ଓ ତରବାରୀକୁ ହିନ୍ଦୁ ଅବଲମ୍ବନ କରିପାରିବ ନାହିଁ, କାରଣ ହିନ୍ଦୁଧର୍ମ ପ୍ରେମର ନିୟମ ଉପରେ ପ୍ରତିଷ୍ଠିତ ।*

ବିଶ୍ୱ ଧର୍ମ ସମ୍ମିଳନୀ କକ୍ଷରେ ସ୍ୱାମୀଜୀଙ୍କର ଖୋଲାଖୋଲି ସମାଲୋଚନା ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ଧର୍ମ ସମ୍ମିଳନୀକୁ ଆରୋପୀୟ ସ୍ଥିତିରେ ପକାଇଥିଲା । କିନ୍ତୁ ଶାଳୀନତାର ପତଳା

Digitized by srujanika@gmail.com

ପର୍ଦ୍ଦା ଅବଶ୍ୟ ଉକ୍ତ ସ୍ଥିତିକୁ ଘୋଡ଼ାଇ ରଖିପାରି ଥିଲା । ତଥାପି ଏହି ପର୍ଦ୍ଦା ପଶ୍ଚାତରେ ଈର୍ଷାନୁଭବ ବିରାଜମାନ କରୁଥିଲା । **ରେଭେରେଣ୍ଡ ଜୋସେଫ୍ କୁକ୍** ହିନ୍ଦୁମାନଙ୍କୁ କଠୋର ଭାଷାରେ ଭର୍ତ୍ସନା କରିଥିଲେ ହେଁ, ଅନ୍ୟପକ୍ଷରେ ସେ ନିଜେ ଅତ୍ୟଧିକ ଭର୍ତ୍ସିତ ହୋଇଥିଲେ । ସେ କହିଥିଲେ ଯେ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି ହୋଇ ନ ଥିଲା ବୋଲି କହିବା ଅକ୍ଷମଣୀୟ ଅପରାଧ ଏବଂ ବିଶ୍ୱ ବ୍ରହ୍ମାଣ୍ଡର ଏକ ଆରମ୍ଭ ଥିଲା ବୋଲି କହିବା ବି ଉଦ୍ଭଟତା ବ୍ୟତୀତ କିଛି ନୁହେଁ । ବିଶୋପ **ଜେ.ପି.ନ୍ୟୁମ୍ୟାନ** ଖୁବ୍ ଈର୍ଷାନ୍ୱିତ ହୋଇ ବିଷୋଦ୍‌ଗାର କରି କହିଥିଲେ ଯେ ଖ୍ରୀଷ୍ଟ ଧର୍ମପ୍ରଚାରକୁ କଦର୍ଥ କରି ପ୍ରାଚ୍ୟବାସୀ ସଂଯୁକ୍ତ ରାଷ୍ଟ୍ରର ସମସ୍ତ ଖ୍ରୀଷ୍ଟଧର୍ମୀଙ୍କୁ ଅପମାନିତ କରିଛନ୍ତି । କିନ୍ତୁ ପ୍ରାଚ୍ୟ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦ ଏତାଦୃଶ ମିଥ୍ୟାରୋପ ଶୁଣି ଆଦୌ ଉତ୍ତେଜିତ ନ ହୋଇ, ମୃଦୁ ହାସ୍ୟମଣ୍ଡିତ ମୁଖମଣ୍ଡଳରେ 'ଏହା ବିଶୋପ ମହାଶୟଙ୍କର ଅଜ୍ଞତା' ବୋଲି ଉତ୍ତର ଦେଇଥିଲେ ।

ପ୍ରାଚ୍ୟବାସୀଙ୍କର ସେ ଥିଲେ ମୁଖ୍ୟ ମୁଖପାତ୍ର । ବିଶୋପଗଣଙ୍କର ସମସ୍ତ ବିଷୋଦ୍‌ଗାର ପାନ କରି ଏବଂ କୌଣସି ପ୍ରକାର ପ୍ରତିକ୍ରିୟା ପ୍ରକାଶ ନ କରି ଧର୍ମ ସମ୍ମିଳନୀର ସେପ୍ଟେମ୍ବର ୩୦ ତାରିଖ ଦିନ ଅନୁଷ୍ଠିତ ଅଧିବେଶନରେ ସ୍ୱାମୀଜୀ ଏକ ସଂକ୍ଷିପ୍ତ ବକ୍ତବ୍ୟ ପ୍ରଦାନ କରି କହିଥିଲେ, ''ବିଦ୍ୱାନ ଶ୍ରୋତାଗଣ ମୋ ବକ୍ତବ୍ୟ ଦୟାପରବେଶ ହୋଇ ଶୁଣିଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି, କେବଳ ସେତିକି ନୁହେଁ ଧର୍ମରେ ଦ୍ୱନ୍ଦ୍ୱ ଉପୁଜାଇବା ଭଳି ପ୍ରତ୍ୟେକ ଭାବନାକୁ ସେମାନେ ଯେପରି ପ୍ରଶଂସା କରିଛନ୍ତି ସେଥିପାଇଁ ସେମାନେ ଧନ୍ୟବାଦାର୍ହ । ବେଳେବେଳେ ଅବଶ୍ୟ କେତେକ ଅଳ୍ପ ଶ୍ରୁତିକଟୁ ଭାଷା ଶୁଣିବାକୁ ମିଳିଥିଲା । ତଥାପି ସେମାନେ ନିଜର ଚମତ୍କାର ତୁଳନାତ୍ମକ ଚିନ୍ତାଧାରା ଦ୍ୱାରା ସାଧାରଣ ସମନ୍ୱୟକୁ ସୁମଧୁର କରି ରଖି ପାରିଛନ୍ତି, ସେଥିପାଇଁ ମୁଁ ବିଶେଷ ଧନ୍ୟବାଦ ଅର୍ପଣ କରୁଛି ।'' ଉପରୋକ୍ତ ମନ୍ତବ୍ୟ ଉଦାରବ୍ୟକ୍ତି, ବୁଦ୍ଧିଜୀବୀ ଏବଂ ବୈଜ୍ଞାନିକ ଦୃଷ୍ଟିକୋଣ ସମ୍ପନ୍ନ ବ୍ୟକ୍ତିଙ୍କ ହୃଦୟକୁ ସ୍ପର୍ଶ କରିଥିଲା । କାରଣ ତାଙ୍କର ବାଣୀ ସମସ୍ତ ପ୍ରକାର ସଂକୀର୍ଣ୍ଣତା ଅତିକ୍ରମ କରି ଏକ ସାର୍ବଜନୀନ ମନ୍ତ୍ରରେ ପରିଣତ ହୋଇଯାଇଥିଲା । ତାହା ନ ହୋଇଥିଲେ ପାର୍ଲିଆମେଣ୍ଟ ଅଫ୍ ରିଲିଜନ୍‌ର ଜଣେ ବରିଷ୍ଠ କର୍ମକର୍ତ୍ତା ସମ୍ମାନସ୍ପଦ **ମେରୱିନ୍-ମେରି ସ୍ନେଲ୍** ଯିଏ ବିଜ୍ଞାନ ବିଭାଗର ଏକ ସଭାରେ ସଭାପତିତ୍ୱ କରିଥିଲେ, ସେ କ'ଣ ଏଭଳି ମନ୍ତବ୍ୟ ଦେଇ ପାରିଥାନ୍ତେ ? ''ହିନ୍ଦୁଧର୍ମ ଯେଭଳି ଭାବେ ବିଶ୍ୱଧର୍ମ ସମ୍ମିଳନୀ ତଥା ଆମେରିକାବାସୀଙ୍କ ମନରେ ଗଭୀର ଛାପ ପକାଇ ପାରିଥିଲା, ସେଭଳିଭାବେ ଅନ୍ୟ କୌଣସି ଧର୍ମ କରିପାରି ନ ଥିଲା... । ହିନ୍ଦୁଧର୍ମର ସର୍ବଶ୍ରେଷ୍ଠ ଓ ଅସାଧାରଣ ପ୍ରତିନିଧି ସ୍ୱାମୀ ବିବେକାନନ୍ଦ ଯିଏ ବିଶ୍ୱଧର୍ମ ସମ୍ମିଳନୀରେ ସବୁଠାରୁ ପ୍ରଭାବଶାଳୀ ଏବଂ ଲୋକପ୍ରିୟ ବକ୍ତାଭାବରେ ଉଦ୍‌ଭାସିତ ହୋଇଥିଲେ ସେ ଉଭୟ ଧର୍ମ ସମ୍ମିଳନୀ ଓ ବିଜ୍ଞାନ ବିଭାଗୀୟ ସଭାମାନଙ୍କରେ ବାରମ୍ବାର ବକ୍ତୃତା ପ୍ରଦାନ କରୁଥିଲେ । ଶ୍ରୋତାଗଣ ତାଙ୍କୁ କରତାଳିରେ ପ୍ରତ୍ୟେକ ସଭାକୁ ସ୍ୱାଗତ କରୁଥିଲେ ଯାହା ଅନ୍ୟ ବକ୍ତାଙ୍କ ପାଇଁ ସ୍ୱପ୍ନ ଥିଲା । ଯେ ଯୁଆଡ଼େ ଯାଉଥିଲେ, ତାଙ୍କଠାରୁ ପଦେ କଥା ଶୁଣିବା ପାଇଁ ଲୋକେ ତାଙ୍କ ଚାରିପାଖେ ଘେରି

Digitized by srujanika@gmail.com

ଯାଉଥିଲେ । ଏପରିକି ପ୍ରାଚୀନପନ୍ଥୀ ଖ୍ରୀଷ୍ଟିଆନମାନେ କହୁଥିଲେ, ''ମଣିଷ ଭିତରେ ସେ ବାସ୍ତବରେ ଜଣେ ରାଜକୁମାର ।''

ଡକ୍ଟର ଆନି ବେସାନ୍ତ ଧର୍ମ ସମ୍ମିଳନୀରେ ଉପସ୍ଥିତ ଥିଲେ ଏବଂ ସ୍ୱାମୀଜୀଙ୍କ ପ୍ରତି ଅଜାଡ଼ି ପଡୁଥିବା ପ୍ରଶଂସା ଓ ଅଭିନନ୍ଦନର ପୁଷ୍ପଗୁଡ଼ିକୁ ଗୋଟାଇ ଏକ ସୁନ୍ଦର ହାର ପ୍ରସ୍ତୁତ କରି କହିଥିଲେ, 'ପୀତ ଓ ଗୈରିକ ବସ୍ତ୍ର ପରିହିତ, ଏକ ଆକର୍ଷଣୀୟ ରୂପ, ଭାରତର ସୂର୍ଯ୍ୟ ସମ ଚିକାଗୋ'ର ଗରିଷ୍ଠ ବାୟୁମଣ୍ଡଳରେ ଉଦ୍‌ଭାସିତ ହେଲେ । ସିଂହ ସଦୃଶ ମସ୍ତକ, କଟାକ୍ଷ ଚକ୍ଷୁଯୁଗଳ, କମ୍ପିତ ଅଧର ହେଉଥିଲା ସଦା ଚଳଚଞ୍ଚଳ । ବିଶ୍ୱଧର୍ମ ସମ୍ମିଳନୀର ପ୍ରତିନିଧିଙ୍କ ପାଇଁ ଉଦ୍ଦିଷ୍ଟ କକ୍ଷରେ ମୁଁ ତାଙ୍କୁ ଯେତେବେଳେ ପ୍ରଥମେ ସାକ୍ଷାତ କଲି, ସେତେବେଳେ ମୋର ଏତାଦୃଶ ଧାରଣା ସ୍ୱାମୀ ବିବେକାନନ୍ଦଙ୍କ ସମ୍ବନ୍ଧରେ ସୃଷ୍ଟ ହୋଇଥିଲା । ସମସ୍ତେ ତାଙ୍କୁ ସନ୍ନ୍ୟାସୀ ବୋଲି ସମ୍ବୋଧିତ କରୁଥିଲେ, କିନ୍ତୁ ବାସ୍ତବରେ ସେ ଥିଲେ ଯୋଦ୍ଧା-ସନ୍ନ୍ୟାସୀ । ସର୍ବ ପ୍ରାଚୀନତମ ଧର୍ମର ପ୍ରତିନିଧି ଏବଂ ଦେଶର ଗର୍ବ, ନିଜ ଜାତିର ଗର୍ବର ଅନ୍ତର୍ନିହିତ ଏକ ରୂପ । ଅହଙ୍କାରୀ ଓ ଜିଦ୍‌ଖୋର ପାଶ୍ଚାତ୍ୟ ଜଗତ ସମ୍ମୁଖରେ ଭାରତ ତା'ର ପ୍ରତିନିଧି ତଥା ପୁତ୍ର ଦ୍ୱାରା ଲଜ୍ଜିତ ହେବାକୁ ପଡ଼ି ନ ଥିଲା । ଭାରତମାତାର ବାଣୀ ସେ ସେଠାରେ ବ୍ୟକ୍ତ କରିଥିଲେ ଏବଂ ସେ ଭାରତ ନାଁରେ ବକ୍ତୃତା ପ୍ରଦାନ କରିଥିଲେ । ମଣିଷ ଭିତରେ ସେ ଥିଲେ ଜଣେ ମଣିଷ, ନିଜର କର୍ତ୍ତବ୍ୟ ସମ୍ଭାଳିବା ପାଇଁ ସେ ଥିଲେ ଦୃଢ଼ ଓ ସଂକଳ୍ପବଦ୍ଧ । ସମ୍ମାନ, ଅନ୍ତର୍ନିହିତ ମୂଲ୍ୟବୋଧ ଓ କ୍ଷମତା ଅବଶ୍ୟ ସେଠାରେ ଥିଲା । କିନ୍ତୁ ପ୍ରାଚ୍ୟର ଅତୁଳନୀୟ ସୂକ୍ଷ୍ମ ଆଧ୍ୟାତ୍ମିକତା, ଯାହା ଭାରତର ପ୍ରାଣକେନ୍ଦ୍ର ଏବଂ ଆତ୍ମା ସମ୍ବନ୍ଧିତ ଅଦ୍ଭୁତ ଶିକ୍ଷା ଭଳି ଆଧ୍ୟାତ୍ମିକ ବାଣୀର ଗଭୀର ସୌନ୍ଦର୍ଯ୍ୟତା ଦ୍ୱାରା ସେଗୁଡ଼ିକ ନିଷ୍ପ୍ରଭ ହୋଇଗଲା । କେହି ଜଣେ ବ୍ୟକ୍ତି ସମ୍ମିଳନୀ କକ୍ଷରୁ ବାହାରି ଆସି କହିଲେ, ''ଏହି ବ୍ୟକ୍ତିଙ୍କୁ ଆମେ ପୌତ୍ତଳିକ ଓ ପାପୀ ବୋଲି କହୁ !!! ଆମେ ଏହି ଯୁବକର ଦେଶକୁ ଧର୍ମପ୍ରଚାରକ ପଠାଉଛୁ !!! ଏହି ପରିପ୍ରେକ୍ଷୀରେ ମୁଁ କହିବି ଯେ ସେମାନେ ଯଦି ଆମ ଦେଶକୁ ଧର୍ମପ୍ରଚାରକ ପଠାନ୍ତେ ବହୁତ ଭଲ ହୁଅନ୍ତା !!!

ସେପ୍ଟେମ୍ବର ୨୦ ତାରିଖର ଚିକାଗୋ ଟ୍ରିବୁନ୍ ପାର୍ଲିଆମେଣ୍ଟ ଅଫ୍ ରିଲିଜନ୍ ସମ୍ବନ୍ଧରେ ଲେଖିଥିଲେ, ''ହିନ୍ଦୁ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦ ମଞ୍ଚର କେନ୍ଦ୍ରସ୍ଥଳୀରେ ଦଣ୍ଡାୟମାନ ହେବାରୁ ଉଚ୍ଚ କରତାଳିରେ ସମଗ୍ର ସଭାକକ୍ଷ ପ୍ରକମ୍ପିତ ହେଲା । ତାଙ୍କର ଶରୀର ଗୈରିକ ବସନାବୃତ ଏବଂ ମସ୍ତକରେ ପୀତବର୍ଣ୍ଣ ପଗଡ଼ି । ତାଙ୍କର ସୁନ୍ଦର ମୁଖମଣ୍ଡଳରେ ଲହରିତ ହେଉଥିଲା ମଧୁମୟ ହାସ୍ୟ ଓ ଚକ୍ଷୁଦ୍ୱୟ ଜ୍ୱଳନ୍ତ ଆଭାରେ ଜାଜ୍ୱଲ୍ୟମାନ । ସେ କହିଲେ, 'ଆମେ ପ୍ରାଚ୍ୟ ଜଗତରୁ ଆସିଛୁ, ପ୍ରତ୍ୟେକ ଦିନ ଆମେ ଏଠାରେ ବସିଛୁ । ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପାଇଁ ଆମକୁ କୁହାଯାଉଛି । କାରଣ ଖ୍ରୀଷ୍ଟଧର୍ମାବଲମ୍ବୀ ରାଷ୍ଟ୍ରଗୁଡ଼ିକ ସମୃଦ୍ଧ । କିନ୍ତୁ ଆମେ ଆତ୍ମ-ନିରୀକ୍ଷଣ କରି ଜାଣିପାରିଛୁ ଯେ ସମଗ୍ର ବିଶ୍ୱରେ ଇଂଲଣ୍ଡ ସବୁଠାରୁ ଅଧିକ ସମୃଦ୍ଧ ଖ୍ରୀଷ୍ଟିଆନ ରାଷ୍ଟ୍ର ଯାହାର ପାଦ ୨୫୦,୦୦୦,୦୦୦ ଏସୀୟବାସୀଙ୍କ ଗ୍ରୀବା ଚାପି ଧରିଛି । ଆମେ ଇତିହାସର ପୃଷ୍ଠା

Digitized by srujanika@gmail.com

ଲେଉଟାଇ ଜାଣିବାକୁ ପାଇଲୁ ଯେ ଖ୍ରୀଷ୍ଟଧର୍ମୀ ଇୟୁରୋପର ସମୃଦ୍ଧି ସ୍ପେନ୍‌ରୁ ଆରମ୍ଭ ହୋଇଥିଲା । କିନ୍ତୁ ସ୍ପେନ୍‌ର ସମୃଦ୍ଧି ମେକ୍ସିକୋ ଆକ୍ରମଣରୁ ଆରମ୍ଭ ହେଲା । ଖ୍ରୀଷ୍ଟଧର୍ମର ସମୃଦ୍ଧି ଓ ବିକାଶ ନିଜ ଭାଇମାନଙ୍କର ଗଳାକାଟିବା ମାଧ୍ୟମରେ ଘଟିଛି । ଏଭଳି ମୂଲ୍ୟ ଦେଇ ହିନ୍ଦୁମାନେ କସ୍ମିନକାଳେ ସମୃଦ୍ଧି ଲାଭ କରିପାରିବେ ନାହିଁ । ଆଜି ମୁଁ ଏଠାରେ ବସିଛି ଏବଂ ଶୁଣିଛି ଅସହିଷ୍ଣୁତାର ବିକଟାଳ ସ୍ୱର । ରକ୍ତ ଓ ତରବାରୀକୁ ହିନ୍ଦୁ ଅବଲମ୍ବନ କରିପାରିବ ନାହିଁ, କାରଣ ହିନ୍ଦୁଧର୍ମ ପ୍ରେମର ନିୟମ ଉପରେ ପ୍ରତିଷ୍ଠିତ ।''

ସ୍ୱାମୀଜୀ ହିନ୍ଦୁଧର୍ମର ସୂକ୍ଷ୍ମ ତତ୍ତ୍ୱ ପୃଥିବୀର ଶ୍ରେଷ୍ଠ ଲୋକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି କହିଥିଲେ, ''ବାହ୍ୟପୂଜା ବା ମୂର୍ତ୍ତିପୂଜା ହିନ୍ଦୁଧର୍ମରେ ପ୍ରଥମ ଅବସ୍ଥା; ଅଳ୍ପ ଉନ୍ନତି ଘଟିଲେ ମାନସିକ ପ୍ରାର୍ଥନା ହୁଏ ପରବର୍ତ୍ତୀ ଅବସ୍ଥା; କିନ୍ତୁ ଈଶ୍ୱର ସାକ୍ଷାତକାର ହିଁ ଉଚ୍ଚତମ ଅବସ୍ଥା ।'' ଯେଉଁ ଏକାଗ୍ର ସାଧକ ଜାନୁପାତି ଦେବ ବିଗ୍ରହଙ୍କ ସମ୍ମୁଖରେ ପୂଜା କରନ୍ତି, ଲକ୍ଷ୍ୟ କରନ୍ତୁ, ସେ ଆପଣଙ୍କୁ କ'ଣ କହୁଛନ୍ତି - ''ସୂର୍ଯ୍ୟ ତାଙ୍କୁ ପ୍ରକାଶ କରିପାରେ ନାହିଁ; ଚନ୍ଦ୍ର, ତାରା ଏବଂ ବିଦ୍ୟୁତ ମଧ୍ୟ ତାଙ୍କୁ ପ୍ରକାଶ କରିପାରେ ନାହିଁ, ତେବେ ଏହି ଅଗ୍ନି ତାଙ୍କୁ କିପରି ପ୍ରକାଶ କରିବ ? ଏମାନେ ସମସ୍ତେ ହିଁ ତାଙ୍କ ଆଲୋକରେ ପ୍ରକାଶିତ । ସେ କାହାରି ଦେବବିଗ୍ରହଙ୍କୁ ଗାଳି ଦିଅନ୍ତି ନାହିଁ, କିନ୍ତୁ ପ୍ରତିମା ପୂଜା ପାପ ବୋଲି ମଧ୍ୟ ଭାବନ୍ତି ନାହିଁ । ଏହାକୁ ଜୀବନର ଏକ ପ୍ରୟୋଜନୀୟ ଅବସ୍ଥା ବୋଲି ସ୍ୱୀକାର କରନ୍ତି । ଶିଶୁମଧ୍ୟରେ ହିଁ ପୂର୍ଣ୍ଣମାନବର ସମ୍ଭାବନା ନିହିତ । ଜଣେ ବୃଦ୍ଧଙ୍କ ପକ୍ଷରେ ଶୈଶବ ଓ ଯୌବନ ପାପ ବୋଲି କହିବା କ'ଣ ଉଚିତ ହେବ ?

- ୭ -

*ମୁଁ ଯାହା ଏହି ଦେଶରେ ଶୁଣିଛି, ତାହା ଖାଲି ଛଳନା ଓ କପଟତା । ଏହିସବୁ ସମୃଦ୍ଧି କ'ଣ ଯୀଶୁଖ୍ରୀଷ୍ଟଙ୍କ ପାଖରୁ ଆସିଛି ? ଯେଉଁମାନେ ଯୀଶୁଖ୍ରୀଷ୍ଟଙ୍କ ନାଁ ନିଅନ୍ତି, ସେମାନେ କୌଣସି କଥାକୁ ପରବାୟ ନ କରି, କେବଳ ଧନ ଅର୍ଜନ କରିବା ଶ୍ରେୟ ମଣନ୍ତି । ଆପଣମାନଙ୍କ ଭିତରେ ମସ୍ତକ ରଖିବା ପାଇଁ ଯୀଶୁଖ୍ରୀଷ୍ଟ ଖଣ୍ଡିଏ ପଥର ବି ପାଇବେ ନାହିଁ - ଆପଣମାନେ ପ୍ରକୃତରେ ଖ୍ରୀଷ୍ଟିଆନ ନୁହଁନ୍ତି । ଭଲ ଦଶା ଯଦି ଅଛି, ଫେରିଯାଆନ୍ତୁ ସେହି ମହାନ୍ ଦେବଶିଶୁ ଯୀଶୁଖ୍ରୀଷ୍ଟଙ୍କ ପାଖକୁ*

ଚିକାଗୋସ୍ଥିତ ବିଶ୍ୱଧର୍ମ ସମ୍ମିଳନୀରେ ସ୍ୱାମୀ ବିବେକାନନ୍ଦ ଦୁଇଟି ଐତିହାସିକ କାର୍ଯ୍ୟ ସମ୍ପାଦନ କରିଥିଲେ । ପ୍ରଥମତଃ, ବେଦାନ୍ତର ସାର୍ବଜନୀନ ''ବିଶ୍ୱ ଭ୍ରାତୃତ୍ୱବାଦର ବାଣୀ ବିଶ୍ୱ ସମ୍ମୁଖରେ ପୁନଃ ପ୍ରକାଶ କଲେ ଏବଂ ଧର୍ମାନ୍ଧତାର ଭୟାବହତା ବିଜ୍ଞାନର ଅଗ୍ରଗତି ସତ୍ତ୍ୱେ ମାନବସମାଜକୁ ଧ୍ୱଂସମୁଖକୁ ନିଶ୍ଚୟ ଟାଣି ନେବ ବୋଲି ବିଶ୍ୱବାସୀଙ୍କୁ ସତର୍କ କରାଇ ଦେଲେ । ଦ୍ୱିତୀୟତଃ, ହିନ୍ଦୁଧର୍ମ ବିରୋଧରେ ପ୍ରଚାରିତ ନାନାପ୍ରକାର ମିଥ୍ୟା ଆରୋପକୁ ଖଣ୍ଡନ

Digitized by srujanika@gmail.com

କରି ଦୃଢ଼ କଣ୍ଠରେ ହିନ୍ଦୁଧର୍ମର ସ୍ୱରୂପ ତଥା ମୂଳତତ୍ତ୍ୱକୁ ବେଦାନ୍ତ ଚିନ୍ତାଧାରାରେ ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରିଥିଲେ । ସେହି ସମୟରେ ଆମେରିକାର ଜନସଂଖ୍ୟା ପ୍ରାୟ **ଛଅ କୋଟି** ଥିଲା । ମୋଟ ଜନସଂଖ୍ୟାର ଏକ ତୃତୀୟାଂଶ ଖ୍ରୀଷ୍ଟିଆନ । ପୁନଶ୍ଚ ଖ୍ରୀଷ୍ଟଧର୍ମ କାଥୋଲିକ୍, ପ୍ରୋଟେଷ୍ଟାଣ୍ଟ, ପ୍ରେସ୍ ବାଇଟେରିଆନ୍, ସିରିଆନ୍ ଖ୍ରୀଷ୍ଟିଆନ ଭଳି ସଂପ୍ରଦାୟରେ ବିଭକ୍ତ । ସାଧାରଣ ଜନତା ସାଧାରଣତଃ ମୃତ୍ୟୁପରେ ସ୍ୱର୍ଗ ଓ ନର୍କର ବିଶ୍ୱାସରେ ବନ୍ଧା ଏବଂ ପ୍ରାଚୁର୍ଯ୍ୟ ଭିତରେ ଜୀବନଧାରଣ କରିଥା'ନ୍ତି । ଖ୍ରୀଷ୍ଟଧର୍ମର ସୂକ୍ଷ୍ମତତ୍ତ୍ୱ ପ୍ରତି ସେମାନେ ଅଜ୍ଞ । ମୃତ୍ୟୁ ପରେ ଜ୍ୱଳନ୍ତ ଅଗ୍ନିରେ ଦଗ୍ଧିଭୂତ ହେବାର ଭୟ ସେମାନଙ୍କୁ ବିଶେଷଭାବେ ଘାରିଥାଏ । ଅଜ୍ଞାନ ଅନ୍ଧକାର ଭିତରେ ଘାଣ୍ଟି ହେଉଥିଲେ ବି ଖ୍ରୀଷ୍ଟଧର୍ମୀ ହୋଇଥିବାରୁ ନର୍କ ଯନ୍ତ୍ରଣାରୁ ତ୍ରାହି ପାଇଯିବେ ବୋଲି ମୋନଙ୍କର ଦୃଢ଼ ବିଶ୍ୱାସ ରହିଥାଏ । ଏହି ଲୋକମାନେ ସ୍ୱାମୀ ବିବେକାନନ୍ଦଙ୍କ ଭାଷଣ ଶୁଣିବା ପରେ ଅତ୍ୟନ୍ତ କ୍ରୋଧାନ୍ୱିତ ଓ ଈର୍ଷାନ୍ୱିତ ହୋଇ ତାଙ୍କ ନାମରେ ଅପପ୍ରଚାର ଚଳାଇଲେ ।

କିନ୍ତୁ ଖ୍ରୀଷ୍ଟିଆନଙ୍କ ଭିତରେ ଯେଉଁମାନେ ଚିନ୍ତାଶୀଳ ଓ ଉଦାର ବ୍ୟକ୍ତିଥିଲେ, ସେମାନେ ସ୍ୱାମୀଜୀଙ୍କର ବକ୍ତୃତାରେ ତନ୍ମୟ ହୋଇ ତାଙ୍କୁ ସମ୍ମାନ ଜଣାଇଲେ । ସେମାନେ ସ୍ୱାମୀଜୀଙ୍କର ପ୍ରତ୍ୟେକ ବକ୍ତୃତା ଶୁଣିବା ପାଇଁ ଉତ୍‌କଣ୍ଠା ସହକାରେ ଚାହିଁ ବସୁଥିଲେ ଏବଂ ତାଙ୍କ ସହ ଅନେକ ମତ-ବିନିମୟ ମଧ୍ୟ କରୁଥିଲେ । ଏତଦ୍‌ବ୍ୟତୀତ ଅଧିକାଂଶ ଆମେରିକାବାସୀ ଡାରଉଇନଙ୍କର ବିବର୍ତ୍ତନବାଦ ତତ୍ତ୍ୱ ଏବଂ ହାର୍ବର୍ଟ ସ୍ପେନ୍ସରଙ୍କ ଅବିଜ୍ଞେୟବାଦ ଏବଂ ନୂତନ ବୈଜ୍ଞାନିକ ଉଦ୍ଭାବନ ଦ୍ୱାରା ପ୍ରଭାବିତ ହୋଇଥିଲେ । ସେମାନେ ଧର୍ମ ବିଶ୍ୱାସ କରୁ ନ ଥିଲେ ହେଁ ସ୍ୱାମୀଜୀଙ୍କର ବକ୍ତୃତା ସେମାନଙ୍କର ତାର୍କିକ ମନକୁ ମୁଗ୍ଧ କରିଥିଲା । ସେମାନେ ସ୍ୱାମୀଜୀଙ୍କୁ ଆମନ୍ତ୍ରିତ କରି ତାଙ୍କର ବେଦାନ୍ତର ଯୁକ୍ତି ଓ ଉପନିଷଦୀୟ ଦୃଷ୍ଟିକୋଣ ଶୁଣୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ବି ତାଙ୍କର ଅନୁଗାମୀ ହୋଇଥିଲେ ।

ପ୍ରଶଂସକ ଓ ନିନ୍ଦୁକଙ୍କ ମତ ଯାହାହେଉ ପଛକେ, ବିଶ୍ୱ ଧର୍ମ ସମ୍ମିଳନୀରେ ସ୍ୱାମୀ ବିବେକାନନ୍ଦଙ୍କର ବ୍ୟକ୍ତିତ୍ୱ ଓ ବାଣୀ ଉପସ୍ଥିତ ପ୍ରତ୍ୟେକ ଧର୍ମର ପ୍ରତିନିଧି ତଥା ଶ୍ରୋତାଗଣଙ୍କ ଆତ୍ମାକୁ ଅନ୍ତତଃପକ୍ଷେ ଗୋଟିଏ ପ୍ରବାହ ଆଲୋକିତ କରିଥିଲା ଯାହା ସମସ୍ତେ ନିଃସନ୍ଦେହରେ ଅନୁଭବ କରିଥିଲେ, ତାହା ହେଉଛି ସାର୍ବଜନୀନ ସହିଷ୍ଣୁତା ଏବଂ ସାର୍ବଜନୀନ ପରିତ୍ରାଣ । ସେଥିପାଇଁ ଭାରତ ଗର୍ବିତ । ଆମେରିକାର ସମ୍ବାଦପତ୍ରଗୁଡ଼ିକ ସ୍ୱାମୀଜୀଙ୍କର ଏତାଦୃଶ ଅପୂର୍ବ ମାନବୀୟ ଅମୃତଧାରା ସମ୍ବନ୍ଧରେ ଲେଖିଥିଲେ : ହିନ୍ଦୁ ପ୍ରତିନିଧି ସ୍ୱାମୀ ବିବେକାନନ୍ଦଙ୍କର ଉଦ୍‌ବୋଧନ ବାସ୍ତବରେ ବିଶ୍ୱ ଧର୍ମ ସମ୍ମିଳନୀକୁ ସାଫଲ୍ୟ ମଣ୍ଡିତ କରିପାରିଛି । ହିନ୍ଦୁଧର୍ମର ବିଶ୍ୱବ୍ୟାପକତା ଓ ସହିଷ୍ଣୁତାକୁ ଯେଭଳି ଭାବେ ସ୍ୱାମୀ ବିବେକାନନ୍ଦ ବିଶ୍ୱ ସମ୍ମୁଖରେ ଉପସ୍ଥାପନା କଲେ, ସେଭଳି କେବେ ସ୍ପଷ୍ଟ ଭାବରେ କେହି ଅତୀତରେ କରି ନ ଥିଲେ । ଆମେ ନିଃସନ୍ଦେହ ଯେ ବିଶ୍ୱ ଧର୍ମ ସମ୍ମିଳନୀରେ ଉପସ୍ଥିତ ଅନ୍ୟ ଧର୍ମର ଗୁରୁ, ଧର୍ମ ପ୍ରଚାରକ, ଧର୍ମ ସଂଘର ଅନୁଗାମୀ ଯେଉଁମାନେ ତାଙ୍କର ମୁଖ ନିଃସୃତ ବାଣୀ ଶୁଣିଥିଲେ, ସେମାନେ ଏବଂ ସେମାନଙ୍କର ଧର୍ମ ନିଶ୍ଚିତଭାବେ ପ୍ରଭାବିତ ହେବ ।

Digitized by srujanika@gmail.com

ଖ୍ରୀଷ୍ଟଧର୍ମ ଓ ଧାର୍ମିକ ଛଳନା ବିରୋଧରେ ସ୍ୱାମୀଜୀ ଅତ୍ୟନ୍ତ ବିତସ୍ପୃହ ହୋଇ କହିଥିଲେ, ''ଆପଣମାନେ ନିଜ ଧର୍ମର ମହାନତା ଓ ସମୃଦ୍ଧି ସମ୍ବନ୍ଧରେ ଯେତେ ଡେଙ୍ଗୁରା ପିଟିଲେ ହେଁ, ମୋତେ ଗୋଟିଏ କଥା କୁହନ୍ତୁ, ଖ୍ରୀଷ୍ଟଧର୍ମ ତରବାରୀ ବିନା ସଫଳତା ଅର୍ଜନ କରିଛି କି ? ଆପଣମାନଙ୍କର ଧର୍ମ ପ୍ରାଚୁର୍ଯ୍ୟ ନାମରେ ପ୍ରଚାରିତ ହୋଇଛି । ମୁଁ ଯାହାଏହି ଦେଶରେ ଶୁଣିଛି, ତାହା ଖାଲି ଛଳନା ଓ କପଟତା । ଏହିସବୁ ସମୃଦ୍ଧି କ'ଣ ଯୀଶୁଖ୍ରୀଷ୍ଟଙ୍କ ପାଖରୁ ଆସିଛି ? ଯେଉଁମାନେ ଯୀଶୁଖ୍ରୀଷ୍ଟଙ୍କ ନାଁ ନିଅନ୍ତି, ସେମାନେ କୌଣସି କଥାକୁ ପରବାୟ ନ କରି, କେବଳ ଧନ ଅର୍ଜନ କରିବା ଶ୍ରେୟ ମଣନ୍ତି । ଆପଣମାନଙ୍କ ଭିତରେ ମସ୍ତକ ରଖିବା ପାଇଁ ଯୀଶୁଖ୍ରୀଷ୍ଟ ଖଣ୍ଡିଏ ପଥର ବି ପାଇବେ ନାହିଁ - ଆପଣମାନେ ପ୍ରକୃତରେ ଖ୍ରୀଷ୍ଟିଆନ ନୁହଁନ୍ତି । ଭଲ ଦଶା ଯଦି ଅଛି, ଫେରିଯାଆନ୍ତୁ ସେହି ମହାନ୍ ଦେବଶିଶୁ ଯୀଶୁଖ୍ରୀଷ୍ଟଙ୍କ ପାଖକୁ,'' ସ୍ୱାମୀଜୀ କେଡ଼େ ବଡ଼ କଥା ଏଠାରେ ନ କହିଲେ !!! ଧନ୍ୟ ଆମେରିକାବାସୀ । କଟୁ ଓ ଅପ୍ରିୟ ସତ୍ୟ ଶୁଣିବା ପାଇଁ ଆପଣଙ୍କର ମେରୁ ସଦୃଶ ଧୈର୍ଯ୍ୟକୁ ଶତ ଶତ ଧନ୍ୟବାଦ ।



Digitized by srujanika@gmail.com

॥ ଏକୋଇଶ ॥

# ଆମେରିକା ଭୂଖଣ୍ଡରେ ବେଦାନ୍ତର ବିଜୟ ଝଣ୍ଡା ଉଡ଼ିଲା - ଭାରତବର୍ଷ ପୁନଃ ଆବିଷ୍କୃତ ହେଲା ।

ସ୍ୱାମୀ ବିବେକାନନ୍ଦ, ବିଶ୍ୱଧର୍ମ ସମ୍ମିଳନୀର ସମାପ୍ତି ପରେ ସମଗ୍ର ଆମେରିକା ରାଷ୍ଟ୍ରରେ ଜଣେ ଲୋକପ୍ରିୟ ସନ୍ୟାସୀ ଭାବେ ହଠାତ୍ ସୁପରିଚିତ ହୋଇଗଲେ । କେବଳ ସେତିକି ନୁହେଁ, ଧର୍ମ ସମ୍ମିଳନୀରେ ଯେତେବେଳେ ସେ କହିବାକୁ ଆରମ୍ଭ କଲେ, ସେତେବେଳେ ତାହା ହିନ୍ଦୁଧର୍ମର ଧାରଣା ଓ ମତ ମାତ୍ର ଥିଲା । କିନ୍ତୁ ତାଙ୍କର ବକ୍ତୃତାର ସମାପ୍ତି ଘଟିଲା ପରେ, ହିନ୍ଦୁଧର୍ମ ପୁନଃ-ସୃଷ୍ଟି ହୋଇଗଲା । ସମଗ୍ର ଆମେରିକା, ହଜାର ହଜାର ବର୍ଷର ବେଦାନ୍ତ ବାଣୀ, ସ୍ୱାମୀଜୀଙ୍କ କଣ୍ଠରୁ ଶୁଣି, ଆନନ୍ଦ ଉଲ୍ଲାସରେ ଶିହରିତ ହେବାକୁ ଲାଗିଲା । ତାଙ୍କ କଣ୍ଠରୁ ନିଃସୃତ କଥାଗୁଡ଼ାକ ସତେକି ସ୍ୱର୍ଗରାଜ୍ୟସ୍ଥ ଯୀଶୁଖ୍ରୀଷ୍ଟଙ୍କ ପିତାଙ୍କଠାରୁ ଛୁଟି ଆସୁଥିଲା !!! ଖ୍ରୀଷ୍ଟଧର୍ମାବଲମ୍ବୀ ଆମେରିକାବାସୀ ସତୃଷ୍ଣ ନୟନରେ ସେହି ଆପ୍ତବାକ୍ୟର ପ୍ରବାହକୁ ଚାହିଁଥିଲେ - ହେ ଅମୃତର ସନ୍ତାନଗଣ ! ମୋ ହିନ୍ଦୁ ଧର୍ମାନୁସାରେ - ମନୁଷ୍ୟ ପାପରୁ ସତ୍ୟ ଅଭିମୁଖେ ଯାତ୍ରା କରେ ନାହିଁ ବରଂ ସତ୍ୟରୁ ସତ୍ୟ ଅଭିମୁଖେ ଆରୋହଣ କରେ, ଅର୍ଥାତ୍ ନିମ୍ନସ୍ତରର ସତ୍ୟଠାରୁ ଉଚ୍ଚତମ ସ୍ତରର ସତ୍ୟ ଅଭିମୁଖେ ଯାତ୍ରା କରେ... । ଦିବ୍ୟତ୍ୱ ଉପଲବ୍ଧି କରି ମନୁଷ୍ୟ ଏଠାରେ ଦେବତା ପାଲଟେ । ସେହି ସମ୍ଭାବନାପୂର୍ଣ୍ଣ ସତ୍ୟ ଆମ ସମସ୍ତଙ୍କ ଭିତରେ ବିରାଜିତ । ମୃତ ଜଗତରେ ସେ ହିଁ ଏକ ଅମୃତ, ସେ ହିଁ ନିରନ୍ତର ପରିବର୍ତ୍ତନଶୀଳ ଜଗତର ଆଧାର, ସେ ହିଁ କେବଳ ଆତ୍ମା ଯାହାଙ୍କଠାରୁ ସମଗ୍ର ଆତ୍ମାର ହେଉଛି ପରିପ୍ରକାଶ । ସେହି ସତ୍ୟ ମନୁଷ୍ୟ ଭିତରେ ଉପଲବ୍ଧି ହେଲେ, ସେ ସେହି ପରମାତ୍ମା ସହ ଏକ ଓ ଅଭିନ୍ନ ହୋଇଯାଏ'' । ଏଭଳିକଥା ପୂର୍ବରୁ ସେମାନେ କାହାଠାରୁ ଶୁଣି ନ ଥିଲେ । ହିନ୍ଦୁଧର୍ମ ଏକ ନୂତନ ବେଶରେ ସମଗ୍ର ଆମେରିକାର ଜନତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲା ।

ତାଙ୍କର ବର୍ଦ୍ଧିତ ଲୋକପ୍ରିୟତା ଲକ୍ଷ୍ୟକରି ଆମେରିକାର ଗୋଟିଏ ଘରୋଇ କମ୍ପାନୀ ଆଗେଇ ଆସିଲା । ବିଭିନ୍ନ ସହରରେ ବକ୍ତୃତା ପ୍ରଦାନ ନିମନ୍ତେ ସ୍ୱାମୀଜୀଙ୍କୁ ପ୍ରସ୍ତାବ ଦେଲେ । ସ୍ୱାମୀଜୀ ଭାବିଲେ ଯେ ଉକ୍ତ ପ୍ରସ୍ତାବ ଏକ ସୁବର୍ଣ୍ଣ ସୁଯୋଗ ଯାହା ମାଧ୍ୟମରେ ବେଦାନ୍ତର ସାର୍ବଜନୀନ ଭାତୃଭାବ ସେ ଅନାୟସରେ ପ୍ରଚାର କରିପାରିବେ । ଏହା ବ୍ୟତୀତ ଭାରତବର୍ଷର ଦରିଦ୍ର ଜନତାଙ୍କ କଲ୍ୟାଣ ନିମନ୍ତେ ନିଜ ସ୍ୱପ୍ନର ସାକାର ଲାଗି ଅର୍ଥ ସଂଗ୍ରହ କରିପାରିବେ । ତେଣୁ

Digitized by srujanika@gmail.com

ଉକ୍ତ କମ୍ପାନୀ ସହ ଚୁକ୍ତିପତ୍ରରେ ସେ ଦସ୍ତଖତ କଲେ । ଏହି ଚୁକ୍ତି ଫଳରେ, ଆମେରିକାର ବିଭିନ୍ନ ରାଜ୍ୟରେ ଅବସ୍ଥିତ ମୁଖ୍ୟ ସହରଗୁଡ଼ିକରେ ବକ୍ତୃତା ପ୍ରଦାନ କଲେ । ସଭାମାନଙ୍କରେ ପ୍ରବେଶିକା ମୂଲ୍ୟ ଅତ୍ୟୋଧିକ କମ୍ପାନୀ ରଖିଥିଲେ ବି ବହୁ ସଂଖ୍ୟାର ଜନତା ତାଙ୍କ ବକ୍ତୃତା ଶୁଣିବା ପାଇଁ ସଭାଗୁଡ଼ିକରେ ଭିଡ଼ ଜମାଉଥିଲେ । ଏହି ବକ୍ତୃତା ମାଧ୍ୟମରେ ତାଙ୍କର ଦୁଇଟି ଉଦ୍ଦେଶ୍ୟ ପୂରଣ ହେଲା । ନିଜ ହିନ୍ଦୁଧର୍ମର ଉଦାର ବ୍ୟାଖ୍ୟା କରିବା ସହିତ ବିଶ୍ୱ ଭ୍ରାତୃତ୍ୱର ପ୍ରଚାର କଲେ ।

ଅବଶ୍ୟ ଧର୍ମ ମହାସମ୍ମିଳନୀ ଉଦ୍‌ଯାପିତଉତ୍ତାରୁ ସ୍ୱାମୀଜୀ ଚିକାଗୋରେ ବହୁ ମାସ ବିତାଇଥିଲେ । ଏଠାରେ ତାଙ୍କର ଅବସ୍ଥାନକାଳରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ଆଳାପ ଆଲୋଚନା ହୋଇଥିଲା । ଯେହେତୁ ବିଶ୍ୱବାଣିଜ୍ୟ ମେଳା ଏଠାରେ ଅନୁଷ୍ଠିତ ହୋଇଥିଲା, ସେଥିପାଇଁ ବହୁ ଲବ୍ଧପ୍ରତିଷ୍ଠ ବୈଜ୍ଞାନିକ, ପ୍ରଯୁକ୍ତି ବିଦ୍ୟାବିତ୍ ଓ ଇଞ୍ଜିନିୟରଙ୍କର ସମାବେଶ ହୋଇଥିଲା । ଏହାର ସୁଯୋଗ ନେଇ ସେ ଅନେକ ସଂଗ୍ରାହାଳୟ, ବିଶ୍ୱବିଦ୍ୟାଳୟ, ବିଦ୍ୟାଳୟ ଓ କଳାଭବନ ପରିଦର୍ଶନ କରି ପାଶ୍ଚାତ୍ୟ ଜୀବନର ଉତ୍ସାହ ନିରୀକ୍ଷଣ କରିଥିଲେ । ସେହି ସମୟରେ ଇଲେକ୍ଟ୍ରିକାଲ କଂଗ୍ରେସ ବି ଅନୁଷ୍ଠିତ ହୋଇଥିଲା ଏବଂ ବହୁ ପ୍ରସିଦ୍ଧ ବୈଜ୍ଞାନିକ ସେଥିରେ ଯୋଗ ଦେଇଥିଲେ । ଖ୍ୟାତନାମା ପ୍ରଫେସର **ଏଲିସା ଗ୍ରେ**, ଯିଏ ବୈଦ୍ୟୁତିକ ଉପକରଣର ଆବିଷ୍କାରକ, ସ୍ୱାମୀଜୀଙ୍କୁ ନିଜର ଚିକାଗୋସ୍ଥ **ହାଇଲେଣ୍ଡ** ପାର୍କରେ ଅବସ୍ଥିତ ବାସଭବନକୁ ରାତ୍ରଭୋଜନ ନିମନ୍ତେ ନିମନ୍ତ୍ରଣ କରିଥିଲେ । ବିଶିଷ୍ଟ ବୈଜ୍ଞାନିକ **ଆରିଟୋନ୍ ହୋପିଟାଲିଆ** ଏବଂ ଖ୍ୟାତନାମା ପଦାର୍ଥ ବୈଜ୍ଞାନିକ ପ୍ରଫେସର ହର୍‌ମାନ **ଭୋନ୍ ହେଲ୍‌ମୋଜ୍** ଓ **ଲର୍ଡ କେଲଭିନ୍** ଉକ୍ତ ରାତ୍ରିଭୋଜନରେ ମଧ୍ୟ ଆମନ୍ତ୍ରିତ ହୋଇଥିଲେ । ସ୍ୱାମୀଜୀଙ୍କ ସହିତ ବିଜ୍ଞାନ ସମ୍ବନ୍ଧରେ ଅନେକ ଚର୍ଚ୍ଚା ହେଲା । ସ୍ୱାମୀଜୀ ଜଣେ ଧର୍ମପ୍ରଚାରକ ବୋଲି ପ୍ରଥମରୁ ସେମାନଙ୍କର ଧାରଣା ଥିଲା, କିନ୍ତୁ ବିଦ୍ୟୁତ ବିଜ୍ଞାନ ଉପରେ ତାଙ୍କର ଗଭୀର ଜ୍ଞାନ ଦେଖି ସେମାନେ ତଟସ୍ଥ ହୋଇଗଲେ । ଏକ ସ୍ୱରରେ ସେମାନେ ସ୍ୱାମୀଜୀଙ୍କର ଭୌତିକ ଓ ଆଧ୍ୟାତ୍ମିକ ଜ୍ଞାନକୁ ପ୍ରଶଂସା ନ କରି ରହିପାରି ନ ଥିଲେ ।

- ୧ -

*ବିଖ୍ୟାତ ଅବିଜ୍ଞେୟବାଦୀ ଓ ସୁପରିଚିତ ବାଗ୍ମୀ ରବର୍ଟ ଇଙ୍ଗର୍ ସୋଲ୍ ସ୍ୱାମୀଜୀଙ୍କୁ କହିଲେ - ''ଆପଣ ଯଦି ଏହି ଦେଶକୁ ପଚାଶବର୍ଷ ପୂର୍ବରୁ ଧର୍ମପ୍ରଚାର କରିବା ପାଇଁ ଆସିଥାନ୍ତେ ଏବଂ ଆପଣ ଯେଉଳି ବର୍ତ୍ତମାନ ଧର୍ମ ଓ ଲୋକାଚାରକୁ ନିର୍ଭୀକ ଭାବେ ସମାଲୋଚନା କରୁଛନ୍ତି, ସେଭଳି ଯଦି ସେତେବେଳେ କରିଥାନ୍ତେ, ତେବେ ନିଶ୍ଚିତଭାବେ ଲୋକେ ଆପଣଙ୍କୁ ଫାଶିଖୁଣ୍ଟରେ ଝୁଲାଇ ଦେଇଥାନ୍ତେ, ନତୁବା ଆପଣଙ୍କୁ ଅଗ୍ନିରେ ଦଗ୍ଧିଭୂତ କରି ମାରି ଦେଇଥାନ୍ତେ ।''*

ସ୍ୱାମୀଜୀ ଏକ ବିସ୍ମୟ ବ୍ୟକ୍ତିତ୍ୱ, ତାଙ୍କର ଦୃଷ୍ଟିକୋଣ ପ୍ରଶାନ୍ତ ମହାସାଗର ଭଳି ବ୍ୟାପୃତ । କୌଣସି ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ, ତାହା ଭୌତିକ ହେଉ ବା ଆଧ୍ୟାତ୍ମିକ ହେଉ,

Digitized by srujanika@gmail.com

ତାଙ୍କର ଜ୍ଞାନକୁ ସୀମିତ କରିପାରିବ ନାହିଁ । ସେ ଥିଲେ ଏହି ଦୁଇଟି ଦିଗର ବହୁ ଉର୍ଦ୍ଧ୍ୱରେ । କେତେବେଳେ କେମିତି କେତେକ ଧାର୍ମିକ ବ୍ୟକ୍ତି ତାଙ୍କୁ ନାସ୍ତିକ ବୋଲି ଅଭିହିତ କରିଛନ୍ତି । କିନ୍ତୁ ସେମାନଙ୍କର ସମାଲୋଚନା ପ୍ରତି ସେ କର୍ଣ୍ଣପାତ କରିନାହାନ୍ତି । ଉଭୟ ଆସ୍ତିକ ଓ ନାସ୍ତିକର ପରିଭାଷା ତାଙ୍କ ପାଖରେ ଅର୍ଥହୀନ । ସତ୍ୟ ତ ଗୋଟିଏ । ବହୁ ରୂପରେ ପ୍ରକାଶିତ । ଗୋଟିଏ ରୂପକୁ ଦେଖି ଯିଏ ସେଇଠି ଅଟକି ଯାଏ ଏବଂ ସେହି ରୂପକୁ ଚରମ ସତ୍ୟ ବୋଲି ଭାବେ, ତାହାଲେ କଥା ସରିଲା । ସେ ପ୍ରକୃତ ବା ମୂଳ ସତ୍ୟରୁ ଦୂରେଇଯାଏ, ଯା'ଫଳରେ ଆରମ୍ଭ ହୁଏ ସବୁପ୍ରକାର ଯୁକ୍ତି, ତର୍କ, ସଂଘର୍ଷ, କଳହ ଏଭଳି ଅନେକ କିଛି । ବେଦ ଓ ଉପନିଷଦର 'ନେତି ନେତି' ପ୍ରକ୍ରିୟା ମନୁଷ୍ୟକୁ ପହଞ୍ଚାଇ ଦେଇଛି **'ଏକଂ ସଦ୍‌ବିପ୍ରା ବହୁଦା ବଦନ୍ତି'** ତତ୍ତ୍ୱ ନିକଟରେ । ସେହି ତତ୍ତ୍ୱର ପୂର୍ଣ୍ଣ ମାନବ ସିଏ । ସମସ୍ତ ଧର୍ମକୁ ଏକାଠି କରିବାର ଦାୟିତ୍ୱ ସତେକି ତାଙ୍କ ଉପରେ ଅର୍ପିତ !!! ସେଥିପାଇଁ ଆସ୍ତିକ ଓ ନାସ୍ତିକର ବିଦ୍ୱେଷ ଭାବ ତଥା ଉପହାସ ତାଙ୍କ ଉପରେ ପ୍ରଭାବ ବିସ୍ତାର କରିପାରିବ ନାହିଁ । ସେ ନିଜେ ହିଁ ଅମୃତର ସନ୍ତାନ ଏବଂ ସମଗ୍ର ମାନବ ତାଙ୍କ ମାନସରେ ଅମୃତର ସନ୍ତାନ ।

ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣସାପେକ୍ଷ ନୁହେଁ ବୋଲି ବିଶ୍ୱାସ କରୁଥିବା ବ୍ୟକ୍ତିଙ୍କର ସଂଖ୍ୟା ମାନବ ସମାଜରେ ସବୁ କାଳରେ କମ୍ ନୁହେଁ । ଏଭଳି ଅବିଜ୍ଞେୟବାଦୀଙ୍କର ସମ୍ମୁଖୀନ ସେ ଭାରତବର୍ଷରେ ବହୁବାର ହୋଇଥିଲେ, ସେମାନଙ୍କ ସହ ତର୍କ କରିଥିଲେ କିନ୍ତୁ କେବେ ବି ପରାଜିତ ଅନୁଭବ କରି ନ ଥିଲେ । କାହିଁକିନା ତାଙ୍କର ଆତ୍ମା ମାୟା ଦ୍ୱାରା ଆବୃତ ନ ଥିଲା । ଯେତେବେଳେ ବି ଆବୃତ ହେଉଥିଲା, ନିଜ ଭିତରେ ରହିଥିବା ଶ୍ରୀରାମକୃଷ୍ଣଙ୍କର ମହାଶକ୍ତି ସେତେବେଳେ ତାଙ୍କର ପ୍ରମାଦ ଓ ଭ୍ରାନ୍ତ ଧାରଣା ରୂପକ ମାୟାକୁ କାଟି ଫିଙ୍ଗି ଦେଉଥିଲା । ଚିକାଗୋ ଅବସ୍ଥାନ କାଳରେ ତାଙ୍କର ଜଣେ ବିଖ୍ୟାତ ଅବିଜ୍ଞେୟବାଦୀ ତଥା ସୁପରିଚିତ ବାଗ୍ମୀ ରବର୍ଟ ଇଙ୍ଗରସୋଲ୍‌ଙ୍କ ସହ ସାକ୍ଷାତ ହୋଇଥିଲା । ଦୁଇଜଣଙ୍କ ଭିତରେ ଧର୍ମ ଓ ଦର୍ଶନକୁ ଆଧାରିତ କରି ବହୁ ଆଲୋଚନା ଓ ସମାଲୋଚନା ସଂଘଟିତ ହୋଇଥିଲା । ଏକଦା ଆଲୋଚନା ଭିତରେ ସ୍ୱାମୀଜୀଙ୍କର ସ୍ପଷ୍ଟବାଦିତା ଓ ଖୋଲା ସମାଲୋଚନା ପରିଲକ୍ଷିତ କରି ଇଙ୍ଗରସୋଲ୍ ସତର୍କ ବାଣୀ ଶୁଣାଇ କହିଥିଲେ, ''ବନ୍ଧୁ ବିବେକାନନ୍ଦ, ଆପଣ ଯେତେବେଳେ ନୂତନ ମତ ଓ ତତ୍ତ୍ୱ ଉପସ୍ଥାପନ କରୁଛନ୍ତି ଏବଂ ଲୋକଙ୍କର ଭାବନା ଓ ଜୀବନ ପ୍ରଣାଳୀ ଉପରେ ସମାଲୋଚନା କରୁଛନ୍ତି, ସେତେବେଳେ ଅତି ସାହସୀ ଓ ଖୋଲା ହୃଦୟୀ ନ ହେବା ପାଇଁ ଯତ୍ନ କରନ୍ତୁ ।'' ସ୍ୱାମୀଜୀ ଏଭଳି ପରାମର୍ଶ ଶୁଣି ତାହାର କାରଣ ପଚାରିବାରୁ ଇଙ୍ଗରସୋଲ୍ କହିଲେ, ''ଆପଣ ଯଦି ଏହି ଦେଶକୁ ପଚାଶବର୍ଷ ପୂର୍ବରୁ ଧର୍ମପ୍ରଚାର କରିବା ପାଇଁ ଆସିଥାନ୍ତେ ଏବଂ ଆପଣ ଯେଭଳି ବର୍ତ୍ତମାନ ଧର୍ମ ଓ ଲୋକାଚାରକୁ ନିର୍ଭୀକ ଭାବେ ସମାଲୋଚନା କରୁଛନ୍ତି, ସେଭଳି ଯଦି ସେତେବେଳେ କରିଥାନ୍ତେ, ତେବେ ନିଶ୍ଚିତଭାବେ ଲୋକେ ଆପଣଙ୍କୁ ଫାଶିଖୁଣ୍ଟରେ ଝୁଲାଇ ଦେଇଥାନ୍ତେ, ନତୁବା ଆପଣଙ୍କୁ ଅଗ୍ନିରେ ଦଗ୍ଧିଭୂତ କରି ମାରି ଦେଇଥାନ୍ତେ ।''

ସ୍ୱାମୀଜୀ ଚକିତ ହୋଇ ତାଙ୍କୁ ଚାହିଁଲେ । ସେ ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ ଯେ ଆମେରିକା ଭଳି ଅତ୍ୟାଧୁନିକ ରାଷ୍ଟ୍ରରେ ଧର୍ମାନ୍ଧତା ଓ ଧର୍ମୋନ୍ମାଦନାର ପୈଶାଚିକ ଶକ୍ତି

Digitized by srujanika@gmail.com

ବସା ବାନ୍ଧିଛି । ଏଠାରେ ଉଲ୍ଲେଖନୀୟ ଯେ ଏହି ଦୁଇ ମହାନ୍ ବ୍ୟକ୍ତିଙ୍କର ଚିନ୍ତାଧାରା ଭିତରେ ରହିଛି ପାର୍ଥକ୍ୟ । ଇଙ୍ଗରସୋଲ ବିଶ୍ୱର ପ୍ରଚଳିତ ଧର୍ମର ଘୋର ବିରୋଧୀ ଏବଂ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣସାପେକ୍ଷ ନୁହେଁ ବୋଲି ବିଶ୍ୱାସ କରୁଥିବା ବ୍ୟକ୍ତି । ଅନ୍ୟପକ୍ଷରେ ସ୍ୱାମୀ ବିବେକାନନ୍ଦ ଥିଲେ ସର୍ବ ଧର୍ମରେ ବିଶ୍ୱାସ ରଖିଥିବା ଏକ ନୂତନ ତତ୍ତ୍ୱର ଉପସ୍ଥାପକ ଏବଂ ଯୀଶୁଖ୍ରୀଷ୍ଟଙ୍କର ପରମ ଭକ୍ତ । ତଥାପି ଏତାଦୃଶ ଆକାଶ ପାତାଳ ପାର୍ଥକ୍ୟ ସତ୍ତ୍ୱେ, ଦୁଇଜଣଙ୍କ ଭିତରେ ରହିଥିଲା ବନ୍ଧୁତ୍ୱ ଓ ମାନବଜାତିର କଲ୍ୟାଣ ନିମନ୍ତେ ଆନ୍ତରିକ ଇଚ୍ଛା ।

ଏହି ପରିପ୍ରେକ୍ଷୀରେ ସ୍ୱାମୀଜୀ ଇଙ୍ଗରସୋଲଙ୍କ ସହିତ ଏକ ଆଲୋଚନାକୁ ଆଧାରିତ କରି କହିଥିଲେ, ''ଏକଦା ଇଙ୍ଗରସୋଲ ମୋତେ କହିଲେ, ''ଏହି ପୃଥିବୀର ଅଧିକାଂଶ ବସ୍ତୁ ମୁଁ ବାହାର କରିବାରେ ବିଶ୍ୱାସ କରେ, କମଳାକୁ ଚିପୁଡ଼ି ରସ ବାହାର କରି ଶୁଷ୍କ କରିଦେବି, କାରଣ ଆମେ ଜାଣିଛୁ ଯେ ଏହି ପୃଥିବୀ ସବୁକିଛି ।'' ମୁଁ ତାହାର ଜବାବ ଦେଇ କହିଲି ''ଆପଣଙ୍କ ଅପେକ୍ଷା ଏହି ପୃଥିବୀର କମଳାକୁ ଚିପୁଡ଼ି ରସ ବାହାର କରିବାର ଏକ ଉତ୍ତମ ମାର୍ଗ ମୁଁ ଜାଣିଛି । ଏଥିରୁ ବହୁତ ରସ ମୋତେ ମିଳିଥାଏ । ମୁଁ ଭଲ ଭାବରେ ଜାଣେ ଯେ ମୋର ମୃତ୍ୟୁ ନାହିଁ, ତେଣୁ ମୁଁ ଆଦୌ ତରବର ନୁହେଁ । ଭୟ କ'ଣ ମୁଁ ଜାଣେ ନାହିଁ, ତେଣୁ ଚିପୁଡ଼ିବାରେ ମୁଁ ଆନନ୍ଦ ଲାଭ କରିଥାଏ । ମୋର କୌଣସି ଦାୟିତ୍ୱ ନାହିଁ, ପତ୍ନୀ, ସନ୍ତାନ ଓ ଧନ ସମ୍ପତ୍ତିର ବନ୍ଧନ ନାହିଁ; ତେଣୁ ମୁଁ ସମସ୍ତ ନର ଓ ନାରୀଙ୍କୁ ଭଲପାଏ । ପ୍ରତ୍ୟେକ ମୋ ପାଇଁ ଈଶ୍ୱର । ମନୁଷ୍ୟକୁ ଈଶ୍ୱର ଭାବେ ଭଲ ପାଇବାର ଆନନ୍ଦ କଥା ଟିକେ ଚିନ୍ତା କରନ୍ତୁ ! ଆପଣଙ୍କର କମଳାକୁ ଏହି ମାର୍ଗରେ ଚିପୁଡ଼ନ୍ତୁ ଏବଂ **ଦଶହଜାର ଗୁଣରୁ ଅଧିକ ଏଥିରୁ ପାଇ ପାରିବେ** । ପ୍ରତ୍ୟେକ ବୁନ୍ଦା ଗ୍ରହଣ କରନ୍ତୁ ।''

ଜଣେ କହୁଛନ୍ତି ଯେ ଏହି ସଂସାରରେ ଯେତେଦିନ ଥିବ ସବୁପ୍ରକାର ଉପଭୋଗ କରିନିଅ କାହିଁକିନା ମୃତ୍ୟୁପରେ ଆଉ କିଛି ନାହିଁ । ଈଶ୍ୱର ଫିଶ୍ୱର କେହି ନାହିଁ । ନିଜେ ଉପଭୋଗ କର ଏବଂ ଅନ୍ୟମାନଙ୍କୁ ଉପଭୋଗ କରିବାରେ ସାହାଯ୍ୟ କର । ଏହି ସଂସାର ଭୋଗ ଭୂମି । ଅନ୍ୟ ଜଣେ କହୁଛନ୍ତି ଯେ ଉପଭୋଗ କରିବାରେ କିଛି ଆପତ୍ତି ନାହିଁ । କିନ୍ତୁ ଉପଭୋଗ ସେବା ଓ ତ୍ୟାଗ ମାଧ୍ୟମରେ ହେଉ । ସେବା କାହାର କରିବ ? ଈଶ୍ୱରଙ୍କର । ଈଶ୍ୱର କିଏ ? ମନୁଷ୍ୟ, ସେ ହିଁ ଅମୃତର ସନ୍ତାନ । କାରଣ ଏହି ସଂସାର କର୍ମଭୂମି । ଦୁଇଜଣଙ୍କ ଭିତରେ ରହିଥିବା ପାର୍ଥକ୍ୟ ହେଉଛି କମଳା ଚିପୁଡ଼ିବା ପଦ୍ଧତି ।

ଆମେରିକା ଅବସ୍ଥାନ କାଳରେ ସ୍ୱାମୀଜୀ କେବଳ ଯେ ବୈଜ୍ଞାନିକ ଓ ଦାର୍ଶନିକମାନଙ୍କ ସହ ସଂପର୍କ ଓ ବନ୍ଧୁତ୍ୱ ସ୍ଥାପନ କରିଥିଲେ ତାହାନୁହେଁ ବରଂ ଶିଳ୍ପୀ ଓ କଳାକାରଙ୍କ ସହ ତାଙ୍କର ବନ୍ଧୁତ୍ୱ ହୋଇଥିଲା । ସେମାନଙ୍କ ମଧ୍ୟରୁ ଥିଲେ ପ୍ରସିଦ୍ଧ କଣ୍ଠଶିଳ୍ପୀ **ମାଡ଼ାମ ଏମ୍ମା କାଲ୍‌ଭେ** । ଚିକାଗୋ ସହରରେ ସ୍ୱାମୀଜୀ ବକ୍ତୃତା ପ୍ରଦାନ କାର୍ଯ୍ୟରେ ବ୍ୟସ୍ତ ଥିବା ସମୟରେ, ମାଡ଼ାମ୍ କାଲ୍‌ଭେଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା । ସେହି ସମୟରେ ମାଡ଼ାମ କାଲ୍‌ଭେ ବଡ଼ ଦୁଃଶ୍ଚିନ୍ତା ଓ ବ୍ୟର୍ଥ ଭାବନାରେ ସମୟ କାଟୁଥିଲେ । ସେ ସୁସ୍ଥ ନ ଥିଲେ । ସ୍ୱାମୀଜୀଙ୍କ

Digitized by srujanika@gmail.com

ସମ୍ବନ୍ଧରେ ତାଙ୍କର ବନ୍ଧୁମାନଙ୍କଠାରୁ ଶୁଣିଥିଲେ, ବନ୍ଧୁମାନଙ୍କର ସହାୟତା ନେଇ ସେ ସ୍ୱାମୀଜୀଙ୍କୁ ଏକଦା ଭେଟିବା ପାଇଁ ତାଙ୍କର ବାସସ୍ଥଳୀକୁ ଯାଇଥିଲେ । ମାଡ଼ାମ ଅତି ସୁନ୍ଦରଭାବେ ତାଙ୍କର ପ୍ରଥମ ସାକ୍ଷାତର କଥା ବର୍ଣ୍ଣନା କରିଛନ୍ତି :

- ୨ -

*ତୁମେ ଯେତେବେଳେ ମୋ ସହ ଯୋଗଦେଲ, ସେତେବେଳେ ତୁମେ ତୁମର ଭାଇ ଓ ଭଉଣୀମାନଙ୍କ ସହ ଯୋଗ ଦେଲ । ତୁମମାନଙ୍କ ଭଳି ଅସଂଖ୍ୟ ଭାଇ ଓ ଭଉଣୀ ରୂପକ ଜଳ ବିନ୍ଦୁରେ ମୁଁ ତ ଗଠିତ । ତୁମେ ନିଜେ ତ ମହାପାରାବାର ହୋଇଯାଇଛ ! ଯଦି ତୁମେ ମୋତେ ଛାଡ଼ି ଚାଲିଯିବାକୁ ଇଚ୍ଛୁକ, ତେବେ ତୁମେ ଏକ ସୂର୍ଯ୍ୟରଶ୍ମି ଉପରେ ଆରୋହଣ କରି ମେଘମାଳା ପାଖକୁ ଚାଲିଯାଅ । ସେଠାରୁ ତୁମେ ପୁନଶ୍ଚ ଏକ ଜଳବିନ୍ଦୁ ଭାବେ ତୃଷିତ ଧରିତ୍ରୀ ଉପରେ ଆଶୀର୍ବାଦ ଓ ବରଦାନ ହୋଇ ବର୍ଷିଯିବ ।*

''ମୁଁ ସିଧା ସ୍ୱାମୀଜୀଙ୍କ ଅଧ୍ୟୟନ କକ୍ଷକୁ ପ୍ରବେଶ କଲି । ଅବଶ୍ୟ ମୋର ବନ୍ଧୁମାନେ କହିଥିଲେ ଯେ ସ୍ୱାମୀଜୀ ମୋତେ ସ୍ୱାଗତ ନ କରିବା ପର୍ଯ୍ୟନ୍ତ ତାଙ୍କୁ ପ୍ରଥମେ କିଛି କହିବି ନାହିଁ । ତେଣୁ ତାଙ୍କ ସମ୍ମୁଖରେ କିୟଦ୍ ମୁହୂର୍ତ୍ତ ମୁଁ ନିରବରେ ଛିଡ଼ାହେଲି । ସେ ଶିଷ୍ଟ ଭାବରେ ଧ୍ୟାନସ୍ଥ ଥିଲେ । ତାଙ୍କ ମସ୍ତକର ଗୈରିକ ପଗଡ଼ିର ପୁଚ୍ଛ ଭୂମି ସ୍ପର୍ଶ କରୁଥିଲା । ମସ୍ତକରୁ ପଗଡ଼ି ଆଗକୁ ଝୁଙ୍କି ପଡ଼ିଥିଲା ଏବଂ ଚକ୍ଷୁଦ୍ୱୟ ଭୂମି ଅଭିମୁଖେ ନିବିଷ୍ଟ ଥିଲା । କିୟଦ୍ ମୁହୂର୍ତ୍ତ ଅତିକ୍ରାନ୍ତେ ସେ ଲମ୍ବା ନିଃଶ୍ୱାସଟିଏ ମାରି ଏବଂ ମସ୍ତକ ନ ଉଠାଇ କହିଲେ, ''ପୁତ୍ରୀ, ଏଭଳି ତୁମେ କାହିଁକି ବିଚଳିତ ! ଶାନ୍ତ ହୁଅ । ଏହା ନିହାତି ଆବଶ୍ୟକ ।'' ତତ୍‌ପଶ୍ଚାତେ, ଧୀର କିନ୍ତୁ ମୃଦୁ ସ୍ୱର ତାଙ୍କ ମୁଖରୁ ନିଃସୃତ ହେଲା । ମୁଁ ଆଶ୍ଚର୍ଯ୍ୟ ହେଲି ଯେ ଏହି ବ୍ୟକ୍ତି ମୋର ନାଁ ଜାଣିଛନ୍ତି, ଏବଂ ମୋର ମାନସିକ ଉଦ୍‌ବେଗ ସହ ମୋର ଗୁପ୍ତ ସମସ୍ୟା ବି ଜାଣିଛନ୍ତି । ସେ ମୋ ସମ୍ବନ୍ଧରେ ଯାହା କହିଲେ, ତାହା ଏପରିକି ମୋର ଅନ୍ତରଙ୍ଗ ସଂପର୍କୀୟଙ୍କୁ ମଧ୍ୟ ଜଣା ନ ଥିଲା । ଚମତ୍କାରିତା ଓ ଅତିନ୍ଦ୍ରୀୟ ଘଟଣା ଭଳି ମୋତେ ପ୍ରତୀୟମାନ ହେଲା ।

ମାଡ଼ାମ କାଲଭେ ବିସ୍ମିତ ଚାହାଁଣିରେ ପଚାରିଲେ, ''ମହାଶୟ, ଆପଣ ମୋ ସମ୍ବନ୍ଧରେ କିପରି ଏତେ କଥା ଜାଣିଲେ ? କିଏ ମୋ ବିଷୟରେ ଆପଣଙ୍କୁ କହିଛି ?'' ଅବଶ୍ୟ ମୋର ପ୍ରଶ୍ନ ଶିଶୁର ନିର୍ବୋଧତା ଭଳି ଥିଲା । ସେ ମୋତେ ମୃଦୁ ହାସ୍ୟଭରା ମୁଖମଣ୍ଡଳରେ କେବଳ ଚାହିଁଲେ । ସ୍ୱାମୀଜୀ କିୟଦ୍ ମୁହୂର୍ତ୍ତାନ୍ତେ କହିଲେ, ''ପୁତ୍ରୀ, ମୋତେ କେହି କହି ନାହାନ୍ତି, ତୁମେ କ'ଣ ଭାବୁଛ ଏହା ଆବଶ୍ୟକ ? ଖୋଲା ବହି ଭଳି ମୁଁ ତୁମକୁ ପଢ଼ିପାରୁଛି ।'' ଶେଷରେ ମୋର ସେଠାରୁ ପ୍ରସ୍ଥାନ କରିବାର ସମୟ ଉପସ୍ଥିତ ହେଲା । ମୁଁ ଯେତେବେଳେ ଠିଆହେଲି, ସେ ମୋତେ କହିଲେ, ''ପୁତ୍ରୀ, ସବୁକିଛି ଭୁଲିଯାଅ । ପୁଣି ଖୁସି ହୁଅ । ନିଜ ସ୍ୱାସ୍ଥ୍ୟର ଯତ୍ନ

Digitized by srujanika@gmail.com

ନିଅ । ଦୁଃଖ କଥା ମନେପକାଇ ନିରବରେ ସମୟ ବିତାଅ ନାହିଁ । ତୁମର ଭାବଚ୍ଛ୍ୱାସକୁ ବାହ୍ୟ କାର୍ଯ୍ୟରେ ରୂପାନ୍ତରଣ କର । ତୁମର ଆଧ୍ୟାତ୍ମିକ ସ୍ୱାସ୍ଥ୍ୟ ପାଇଁ ଏହା ଆବଶ୍ୟକ । ତୁମର କଳା ଏହା ଚାହେଁ ।

ତାଙ୍କର ଭାଷା ଓ ବ୍ୟକ୍ତିତ୍ୱ ମୋତେ ଗଭୀର ଭାବେ ଅନୁପ୍ରାଣିତ କଲା । ସତେକି ମୋ ମନରେ ଜମାଟ ବାନ୍ଧିଥିବା ସମସ୍ତ ବ୍ୟାଧିଗ୍ରସ୍ତ ଭାବନାକୁ ଶୂନ୍ୟ କରିଦେଇ ନିର୍ମଳ ଓ ଶାନ୍ତ ଭାବନା ରାଶି ସେହି ସ୍ଥାନରେ ଭରିଦେଲେ । ତାଙ୍କର ଶକ୍ତିଶାଳୀ ଇଚ୍ଛାଶକ୍ତିକୁ ମୋର ସହସ୍ର ପ୍ରଣାମ, ଯାହାଫଳରେ ମୁଁ ପୁନଶ୍ଚ ମୋର ଖୁସି ଓ ଆନନ୍ଦକୁ ଫେରିପାଇଲି । ମୋ ଉପରେ କୌଣସି ସମ୍ମୋହନଶକ୍ତି କିମ୍ବା ଯାଦୁର ପ୍ରଭାବ ସେ ବିସ୍ତାର କରି ନଥିଲେ । କିନ୍ତୁ ଏହା ଥିଲା ତାଙ୍କର ମାନସିକ ଶକ୍ତି ଏବଂ ଉଦ୍ଦେଶ୍ୟର ପବିତ୍ରତା ଓ ଗଭୀରତା ଯାହା ବିଶ୍ୱାସରେ ବିମଣ୍ଡିତ । ପରବର୍ତ୍ତୀ ସମୟରେ ମୁଁ ତାଙ୍କୁ ଯେତେବେଳେ ଭଲ ଭାବରେ ଜାଣିଲି, ସେତେବେଳେ ମୋର ହୃଦୟଙ୍ଗମ ହେଲା ଯେ ସେ ଜଣକର ବିଚଳିତ ଓ ଉଦ୍‌ବିଗ୍ନ ଭାବନା ଶାନ୍ତ କରାଇପାରିବେ ଯାହାଫଳରେ ସେହି ବ୍ୟକ୍ତି ତାଙ୍କର ଉପଦେଶନ ପୂର୍ଣ୍ଣ ଓ ଅଖଣ୍ଡ ଏକାଗ୍ରତା ସହ ଶୁଣିପାରିବ ।

ପ୍ରଶ୍ନଗୁଡ଼ିକର ଉତ୍ତର ଦେବା ସମୟରେ ସେ ଅନେକ ଶିକ୍ଷଣୀୟ ଗଳ୍ପ କିମ୍ବା କାବ୍ୟିକ ଉପମା ବ୍ୟବହାର କରୁଥିଲେ ଯାହା ମାଧ୍ୟମରେ ସେ ତାଙ୍କର କଥାକୁ ଅଧିକ ସ୍ପଷ୍ଟ କରିପାରୁଥିଲେ । ଏକଦା ଆମେ ଅମରତ୍ୱ ଓ ବ୍ୟକ୍ତି ସତ୍ତାର ଅସ୍ତିତ୍ୱ ଉପରେ ଆଲୋଚନା କରୁଥିଲୁ । ପୁନର୍ଜନ୍ମ ବିଶ୍ୱାସ ଉପରେ ସେ ବ୍ୟାଖ୍ୟା କରୁଥିଲେ, ଯାହା ତାଙ୍କ ଉପଦେଶନର ଥିଲା ମୌଳିକତା । ମୁଁ ହଠାତ୍ ଉଚ୍ଚ ସ୍ୱରରେ କହିଉଠିଲି, ''ମୁଁ ଅମରତ୍ୱର ଧାରଣା ସହ୍ୟ କରିପାରିବି ନାହିଁ । ମୋ ବ୍ୟକ୍ତିସତ୍ତାର କୌଣସି ଗୁରୁତ୍ୱ ନ ଥାଉ ପଛେ, ମୁଁ ତାହାକୁ ଯାବୁଡ଼ି ଧରିବି । ଏକ ଶାଶ୍ୱତ ଏକତ୍ୱ ଭିତରେ ମୁଁ ହଜିଯିବାକୁ ଚାହେଁ ନାହିଁ । ଏତାଦୃଶ ଭାବନାରେ ମୁଁ ସତରେ ଭୟଭୀତ ।''

ମୋର ଆଶଙ୍କା ଓ ଭୟ ଦୂର କରିବା ଲାଗି ସ୍ୱାମୀଜୀ ସୁନ୍ଦର କାହାଣୀଟିଏ କହିଲେ - ବିଶାଳ ମହାସାଗରରେ ଏକଦା ଜଳ ବିନ୍ଦୁଟିଏ ପତିତ ହେଲା । ଯେତେବେଳେ ଏହା ନିଜକୁ ମହାସମୁଦ୍ରରେ ଆବିଷ୍କାର କଲା, ସେତେବେଳେ ସେ କାନ୍ଦିବା ଆରମ୍ଭ କଲା ଏବଂ ତୁମେ ଯେପରି ବର୍ତ୍ତମାନ ଆପତ୍ତି କରୁଛ, ଠିକ୍ ସେଭଳି ସେ ବି ଆପତ୍ତି କଲା । ମହାପାରାବାର ଜଳବିନ୍ଦୁକୁ ଦେଖି ଖୁବ୍ ହସିଲା ଏବଂ ପଚାରିଲା, ''ତୁମେ କାହିଁକି କାନ୍ଦୁଛ ? ମୁଁ ତ କିଛି ବୁଝି ପାରୁନାହିଁ । ତୁମେ ଯେତେବେଳେ ମୋ ସହ ଯୋଗଦେଲ, ସେତେବେଳେ ତୁମେ ତୁମର ଭାଇ ଓ ଭଉଣୀମାନଙ୍କ ସହ ଯୋଗ ଦେଲ । ତୁମମାନଙ୍କ ଭଳି ଅସଂଖ୍ୟ ଭାଇ ଓ ଭଉଣୀ ରୂପକ ଜଳ ବିନ୍ଦୁରେ ମୁଁ ତ ଗଠିତ । ତୁମେ ନିଜେ ତ ମହାପାରାବାର ହୋଇଯାଇଛ ! ଯଦି ତୁମେ ମୋତେ ଛାଡ଼ି ଚାଲିଯିବାକୁ ଇଚ୍ଛୁକ, ତେବେ ତୁମେ ଏକ ସୂର୍ଯ୍ୟରଶ୍ମୀ ଉପରେ ଆରୋହଣ କରି ମେଘମାଳା ପାଖକୁ ଚାଲିଯାଅ । ସେଠାରୁ ତୁମେ ପୁନଶ୍ଚ ଏକ ଜଳବିନ୍ଦୁ ଭାବେ ତୃଷିତ ଧରିତ୍ରୀ ଉପରେ ଆଶୀର୍ବାଦ ଓ ବରଦାନ ହୋଇ ବର୍ଷିଯିବ ।''

Digitized by srujanika@gmail.com

ଆମେରିକା ସହରଗୁଡ଼ିକରେ ବକ୍ତୃତା ପ୍ରଦାନ କରିବା ପାଇଁ ସେ ଯେଉଁ କମ୍ପାନୀ ସହ ଚୁକ୍ତି କରିଥିଲେ, ସେହି କମ୍ପାନୀ ତାଙ୍କୁ ବିଭିନ୍ନ ସ୍ଥାନକୁ ନେଇ ଯାଉଥିଲେ । ଆବଶ୍ୟକତାନୁସାରେ, ସ୍ୱାମୀଜୀ ରେଳ ଯୋଗେ ବହୁ ସ୍ଥାନ ଭ୍ରମଣ କଲେ । ସେ ଟ୍ରେନ୍‌ରେ କାନାଡ଼ା ନିକଟବର୍ତ୍ତୀ ରାଜ୍ୟ ଏବଂ ଦକ୍ଷିଣ ଆମେରିକାର ସହରଗୁଡ଼ିକ ଭ୍ରମଣ କରିଥିଲେ । ଟ୍ରେନରେ ଦିନ ଓ ରାତି ବିତି ଯାଉଥିଲା । ଟ୍ରେନ୍‌ରୁ ଅବତରଣ କରି ସଭା ସମିତିରେ ବକ୍ତବ୍ୟ ପ୍ରଦାନ କରୁଥିଲେ । ସତେକି ସେ ଏକ ଯନ୍ତ୍ର ! ହୃଦୟସ୍ଥ ଯନ୍ତ୍ରୀ ଯିଏ ସ୍ୱୟଂ ଶ୍ରୀରାମକୃଷ୍ଣ ପରମହଂସ, ତାଙ୍କୁ ଏଭଳି କର୍ମମୁଖର କରି ରଖିଥିଲେ ଯେ ନିଜର ସ୍ୱାସ୍ଥ୍ୟର ଯତ୍ନ ନେଇପାରୁ ନ ଥିଲେ । ସର୍ବଧର୍ମ ସତ୍ୟ ବୋଲି ଗ୍ରହଣ କରିବାର ମାନସିକତାକୁ ସେ ପ୍ରଜ୍ୱଳିତ କରୁଥିଲେ, ବିଭିନ୍ନ ଜାତି ଓ ସଂପ୍ରଦାୟ ମଧ୍ୟରେ ରହିଥିବା ଏକତ୍ୱକୁ ଚିହ୍ନିବା ସକାଶେ ସମସ୍ତଙ୍କୁ ଅନୁପ୍ରାଣିତ କରୁଥିଲେ ଏବଂ ମନୁଷ୍ୟ ଭିତରେ ବିରାଜିତ ଦିବ୍ୟତ୍ୱକୁ ପ୍ରକାଶିତ କରୁଥିଲେ । ବିଶ୍ୱ ଭ୍ରାତୃତ୍ୱବାଦ ସମଗ୍ର ବିଶ୍ୱରେ ଶାନ୍ତି ସ୍ଥାପନ କରିପାରିବ ବୋଲି ଲୋକମାନଙ୍କୁ ଚେତାଇ ଦେଉଥିଲେ ।

ଯେଉଁ ସ୍ଥାନକୁ ସେ ଯାଉଥିଲେ, କେବଳ ହିନ୍ଦୁଧର୍ମର ଉପକାରିତା ସମ୍ବନ୍ଧରେ ସେ କହୁ ନ ଥିଲେ ବରଂ ଶ୍ରୀରାମକୃଷ୍ଣ ପରମହଂସଙ୍କ ଦ୍ୱାରା ପୁନଃପ୍ରମାଣିତ ଓ ସାଧିତ ବେଦାନ୍ତର ମୂଳତତ୍ତ୍ୱର ବୀଜକୁ ଆମେରିକା ମାଟିରେ ବପନ କରୁଥିଲେ । ଏହି ପରିପ୍ରେକ୍ଷୀରେ ସ୍ୱାମୀଜୀ ସ୍ୱୟଂ ଏକ ପତ୍ରରେ ଲେଖିଥିଲେ "ଠାକୁର (ଶ୍ରୀରାମକୃଷ୍ଣ)ଙ୍କର ବାଣୀ କେବଳ ପ୍ରଚାର କରୁଛି । ତାଙ୍କର ବୀଜ ବପନ କରୁଛି, ଯେଉଁଠି ସେହି ବୀଜ ପତିତ ହେବ, ଆଜି କିମ୍ବା ଶହେ ବର୍ଷ ଭିତରେ ନିଶ୍ଚୟ ଫଳପ୍ରସୂ ହେବ ହିଁ ହେବ ।" ସେ ହିଁ ତାଙ୍କ ଭିତରେ ଏକ ମହାଶକ୍ତି ଭାବରେ ଦିନରାତି କାର୍ଯ୍ୟରତ ବୋଲି ସେ ଅବଗତ ଥିଲେ । ସେ ପୁଣି କହୁଛନ୍ତି, "ତାଙ୍କର କୃପା ପାଇ ମୁ ତଟସ୍ଥ । ଯେଉଁ ସହରରେ ମୁଁ ପାଦ ଦେଉଛି, ସେହି ସହର କୋଳାହଳମୟ ହୋଇଯାଉଛି । ଲୋକେ ମତେ ତୁଫାନୀ ସାଧୁ ବୋଲି ସମ୍ବୋଧନ କରୁଛନ୍ତି । ମନେରଖ, ଏହା ହିଁ ତାଙ୍କର ଇଚ୍ଛା, ମୁଁ କେବଳ ଏକ ନିରବୟବ ସ୍ୱର ।"

ଚିକାଗୋର ବିଶ୍ୱଧର୍ମ ସମ୍ମିଳନୀରେ ଧର୍ମାନ୍ଧତା ଓ ଧର୍ମୋନ୍ମାଦନାରେ ବଶୀଭୂତ ଧାର୍ମିକଗଣଙ୍କର ମୁଖା ଖୋଲିଦେବାର ପ୍ରୟାସ ଏବଂ ପୌତ୍ତଳିକ ଅସଭ୍ୟ ଓ ବର୍ବରଭାବେ ହିନ୍ଦୁଧର୍ମକୁ ଲୋକ ସମ୍ମୁଖରେ ପାଦ୍ରୀମାନଙ୍କର ଅପପ୍ରଚାର ବିରୋଧରେ ଗଠନମୂଳକ ସମାଲୋଚନା ସଙ୍ଗେସଙ୍ଗେ ଧର୍ମ ସମ୍ମିଳନୀ ପରବର୍ତ୍ତୀ ସଭା ସମିତିରେ ବେଦାନ୍ତର ପ୍ରଚାର ଓ ପ୍ରସାର ଏକ ବିସ୍ଫୋରଣ ପରିସ୍ଥିତିକୁ ସ୍ୱାମୀଜୀଙ୍କୁ ଠେଲି ଦେଲା । ଆମେରିକୀୟ ଖ୍ରୀଷ୍ଟଧର୍ମ ପ୍ରଚାରକଗଣ ସ୍ୱାମୀଜୀଙ୍କ ବିରୋଧରେ ବିଷୋଦ୍‌ଗାର କରିବାକୁ ପଶ୍ଚାତପଦ ହେଲେ ନାହିଁ । ତାଙ୍କୁ ଜଣେ ଠକ ଏବଂ ପ୍ରତାରକ କେବଳ ନୁହେଁ, ସେ ଅନେକ ପତ୍ନୀ ଓ ସନ୍ତାନର ଜନକ ଏବଂ ସନ୍ନ୍ୟାସୀ ବେଶ ଧରି ଆମେରିକା ମାଟିରେ ତୁଚ୍ଛା ମିଛ କହୁଛନ୍ତି ବୋଲି ଦ୍ୱାର ଦ୍ୱାର ବୁଲି ସେମାନେ କହି ବୁଲିଲେ । ଭାରତର ପାଦ୍ରୀମାନେ ବି ଇର୍ଷାନ୍ୱିତ ହୋଇ ତାଙ୍କ ବିରୋଧରେ ମିଥ୍ୟା ଓ କପୋଳକଳ୍ପିତ

Digitized by srujanika@gmail.com

କାହାଣୀମାନ ରଚନା କରି ଜନମାନସକୁ ବିଭ୍ରାନ୍ତ କଲେ । କେବଳ ସେତିକି ନୁହେଁ ଭାରତର ବ୍ରାହ୍ମସମାଜର ମୁଖ୍ୟ ପ୍ରଚାରକ ପ୍ରତାପ ଚନ୍ଦ୍ର ମଜୁମଦାର, ଯିଏ ବିଶ୍ୱଧର୍ମ ସମ୍ମିଳନୀର ଜଣେ ପ୍ରତିନିଧି ଭାବେ ଯୋଗ ଦେଇଥିଲେ, ସେ ବି ସ୍ୱାମୀ ବିବେକାନନ୍ଦଙ୍କ ବିରୋଧରେ ମିଥ୍ୟାରୋପ କରି କହିଲେ - ନରେନ୍ ଆମେରିକାର ହୋଟେଲମାନଙ୍କରେ ରହୁଛି, ନିଷିଦ୍ଧ ଖାଦ୍ୟ ଭକ୍ଷଣ କରୁଛି ଏବଂ ବିଳାସ ବ୍ୟସନରେ ଜୀବନ ନିର୍ବାହ କରୁଛି ଭଳି ଅନେକ ଅବାନ୍ତର କାହାଣୀ । ଧର୍ମାନ୍ଧ ଓ ପ୍ରାଚୀନପନ୍ଥୀ ହିନ୍ଦୁଗଣ ଏତାଦୃଶ ଅପପ୍ରଚାରରେ ଅତ୍ୟନ୍ତ ଉତ୍ସାହିତ କେବଳ ହେଲେ ନାହିଁ ବରଂ ସ୍ୱାମୀ ବିବେକାନନ୍ଦଙ୍କର ଶିଷ୍ୟ ଓ ଗୁରୁଭାଇମାନେ, ଯେଉଁମାନେ ବାସ୍ତବତା ପ୍ରତି ଅବଗତ ନ ଥିଲେ, ସେମାନେ ଆଶ୍ଚର୍ଯ୍ୟରେ ମସ୍ତକ ଅବନତ କଲେ ।

ଭାରତର ଶୁଭେଚ୍ଛୁ ଓ ଶିଷ୍ୟଗଣ ଏତାଦୃଶ ସମ୍ବାଦରେ ବିଚଳିତ ହୋଇ ସ୍ୱାମୀଜୀଙ୍କ ପାଖକୁ ପତ୍ର ଲେଖିଲେ ଏବଂ ସମ୍ବାଦପତ୍ରଗୁଡ଼ିକରେ ପ୍ରକାଶିତ ସମ୍ବାଦ କାଟି ତାଙ୍କ ପାଖକୁ ପଠାଇଲେ । ଉକ୍ତ ପତ୍ର ଓ ବିଖଣ୍ଡିତ ସମ୍ବାଦପତ୍ରଗୁଡ଼ିକ ସ୍ୱାମୀଜୀଙ୍କର ହସ୍ତଗତ ହେଲା ଏବଂ ତାଙ୍କର ଉଦାର ହୃଦୟ କରୁଣାରେ ଭରିଗଲା । ସେ ନିଶ୍ଚୟ ସେଦିନ ଭାବିଥିବେ ଏବଂ ବାରମ୍ବାର କହିଥିବେ, "ହେ ଭାରତମାତା, ତୁମେ ଜାଗ୍ରତ ହେଲାବେଳେ, ତୁମର ବାଳୁଙ୍ଗା ସନ୍ତାନଗଣ ତୁମର ପଣତ କାନିକୁ ଟାଣି ଧରୁଛନ୍ତି, ଯାହାଫଳରେ ତୁମେ ଆଗେଇ ପାରୁନାହଁ । ତୁମେ ସେମାନଙ୍କ ପ୍ରତି ଦୟା ପ୍ରଦର୍ଶନ କର ମା । ନିଜର ପ୍ରତିକ୍ରିୟା ପ୍ରକାଶ କରି ମାନ୍ଦ୍ରାଜର ଜଣେ ଶିଷ୍ୟ (ଆଲସିଙ୍ଗା ପେରୁମଲ)ଙ୍କ ନିକଟକୁ ଜାନୁଆରି ୧୮୯୪, ୨୪ ତାରିଖ ପତ୍ରରେ ସ୍ୱାମୀଜୀ ଲେଖିଥିଲେ :

ତୁମର ଚିଠି ମୁଁ ପାଇଛି । ମୋ ବିଷୟରେ ଏତେ କଥା ତୁମମାନଙ୍କ ପାଖରେ ପହଞ୍ଚି ଜାଣି ମୁଁ ବାସ୍ତବରେ ବିସ୍ମିତ । ସମ୍ବାଦପତ୍ରରେ ଯେଉଁସବୁ ସମାଲୋଚନା ମୋ ବିରୁଦ୍ଧରେ ପ୍ରକାଶିତ ହୋଇଛି, ତାହା ଆମେରିକାବାସୀଙ୍କର ମନୋଭାବ ବୋଲି କେବେ ଭାବିବ ନାହିଁ । ସେହି ସମ୍ବାଦପତ୍ରଟି ଏଠିକାର ଅଧିକାଂଶ ଲୋକଙ୍କୁ ଅଜଣା, କାରଣ ଏହା ଗୀର୍ଜାର ଆଚାର୍ଯ୍ୟମାନଙ୍କର ମୁଖପତ୍ର । ସେମାନେ ଧର୍ମାନ୍ଧ । ଆମେରିକାବାସୀ ଓ ଏପରିକି ଅଧିକାଂଶ ପାଦ୍ରୀ ମୋ ପ୍ରତି ବନ୍ଧୁଭାବାପନ୍ନ ଓ ଅତିଥି ପରାୟଣ । ସମାଜ ଦ୍ୱାରା ଜଣେ ବ୍ୟକ୍ତି ସିଂହ ତୁଲ୍ୟ ସମାଦୃତ ହେବା ଫଳରେ ସମ୍ବାଦପତ୍ରଟି ଉକ୍ତ ବ୍ୟକ୍ତିକୁ ଆକ୍ରମଣ କରି ସାମାନ୍ୟ ଦୁର୍ନାମ କରିବାକୁ ଚାହେଁ । ଏଠିକାର ଜନତାଙ୍କୁ ତାହା ଜଣା ଏବଂ ସେମାନେ ଦୁର୍ନାମ ପ୍ରତି କର୍ଣ୍ଣପାତ କରନ୍ତି ନାହିଁ । ଅବଶ୍ୟ ଆମର ଭାରତୀୟ ଖ୍ରୀଷ୍ଟଧର୍ମ ପ୍ରଚାରକଗଣ ଏହାର ଫାଇଦା ଉଠାଇବେ । ଯଦି ସେମାନେ ଏହା କରନ୍ତି, ତେବେ ସେମାନଙ୍କୁ କୁହ, "ଦେଖ, ବର୍ତ୍ତମାନ ଏକ ଦଣ୍ଡାଜ୍ଞା ତୁମମାନଙ୍କ ଉପରେ ବର୍ଷିତ ହେବ ।" ସେମାନଙ୍କର ପ୍ରାଚୀନ ଅଟ୍ଟାଳିକାର ମୂଳଦୁଆ ଦୋଦୁଲ୍ୟମାନ ଏବଂ ସେମାନଙ୍କର ପାଗଳାମି ଚିତ୍କାର ସତ୍ତ୍ୱେ ଏହା ଭୂଲୁଣ୍ଠିତ ହେବ । ପ୍ରାଚ୍ୟ ଜଗତର ଧର୍ମ ପ୍ରବାହରେ ଯଦି ସେମାନଙ୍କର ରାଜକୀୟ ଜୀବନ ନିର୍ବାହର ପନ୍ଥା ଭାରତରେ ହ୍ରାସ ହେବ, ସେଥିପାଇଁ ସେମାନଙ୍କ ପ୍ରତି ମୋର ଦୟା ହେଉଛି । କିନ୍ତୁ ସେମାନଙ୍କର ଜଣେ ବି ପ୍ରଭାବଶାଳୀ ପାଦ୍ରୀ ମୋର ବିରୁଦ୍ଧାଚରଣ କରନ୍ତି ନାହିଁ । ହଁ, ମୁଁ ଯେତେବେଳେ ପୋଖରିରେ ପଶି ସାରିଛି, ଭଲ କରି ସ୍ନାନ କରିବି ।

Digitized by srujanika@gmail.com

- ୩ -

*ପ୍ରସାରଣ ହିଁ ଜୀବନ, ସଂକୋଚନ ହିଁ ମୃତ୍ୟୁ । ପ୍ରେମ ହିଁ ଜୀବନ ଏବଂ ଘୃଣା ହିଁ ମୃତ୍ୟୁ । ଆମେ ଯେଉଁଦିନ ଅନ୍ୟଜାତି ପ୍ରତି ଘୃଣା କରିବାକୁ ଆରମ୍ଭ କଲୁ, ସେହିଦିନଠାରୁ ଆମର ମୃତ୍ୟୁ ଆରମ୍ଭ ହେଲା । ଜୀବନ ରୂପକ ପ୍ରସାରଣ ଅଭିମୁଖେ ଯଦି ଆମେ ପ୍ରତ୍ୟାବର୍ତ୍ତନ ନ କରି ପାରିବା ତେବେ କୌଣସି ଶକ୍ତି ଆମର ମୃତ୍ୟୁକୁ ପ୍ରତିହତ କରିପାରିବ ନାହିଁ । ଯେଉଁ ବ୍ୟକ୍ତି ଅନ୍ୟକୁ କିଛି ଦେବାପାଇଁ ପ୍ରସ୍ତୁତ ନୁହଁନ୍ତି, ସେଭଳି ବ୍ୟକ୍ତି ସ୍ୱାଧୀନତା ଲାଭ ପାଇଁ ଉପଯୁକ୍ତ କି ?*

ଇଯେତ ଗଲା ଖ୍ରୀଷ୍ଟଧର୍ମ ପ୍ରଚାରକଗଣଙ୍କ ଉଦ୍ଦେଶ୍ୟରେ ସ୍ୱାମୀଜୀଙ୍କର ଅଗ୍ନିବର୍ଷୀ ପ୍ରତ୍ୟୁତ୍ତର, ହିନ୍ଦୁଧର୍ମର ପ୍ରାଚୀନପନ୍ଥୀମାନଙ୍କ ନିମନ୍ତେ ତାଙ୍କର ବିଦ୍ରୂପ ତତୋଧିକ ଅଗ୍ନିମୟ ଥିଲା । ଅନ୍ୟ ଏକ ଚିଠିରେ ସେ ଲେଖିଥିଲେ ଯେ ଯଦି ପାଶ୍ଚାତ୍ୟ ଖାଦ୍ୟ ସେବନ କରି ସେ ଜାତି ହରାଇଛନ୍ତି ବୋଲି ସେମାନେ ଚିନ୍ତିତ ଓ ବିଚଳିତ, ତେବେ ଭାରତରୁ ରୋଷେୟା ଓ ଖାଦ୍ୟସାମଗ୍ରୀ ଆମେରିକା ପଠାଇବାର ବ୍ୟବସ୍ଥା କରି ଦିଅନ୍ତୁ ନା ? ପୃଥିବୀର ସବୁ ଜାତିର ଲୋକଙ୍କ ସହ ଆମେ ମିଶିବା ଉଚିତ । ଯଦି ଏଥିପାଇଁ ସେମାନେ ଅର୍ଥ ଖର୍ଚ୍ଚ କରିବାକୁ ପ୍ରସ୍ତୁତ ନୁହଁନ୍ତି, ତେବେ ଏଭଳି ଅସାର ଓ ଅପ୍ରାସଙ୍ଗିକ ମନ୍ତବ୍ୟ ପ୍ରଦାନ କାହିଁକି କରୁଛନ୍ତି ? ପ୍ରତ୍ୟେକ ହିନ୍ଦୁ ଯିଏ ବିଦେଶ ଯାତ୍ରାକରି ବିଦେଶ ଭୂମିରେ ଅବସ୍ଥାନ କରେ, ସେହି ବ୍ୟକ୍ତି ଭାରତବର୍ଷରେ ଅନ୍ଧବିଶ୍ୱାସ କୁସଂସ୍କାର ଓ ସ୍ୱାର୍ଥକୁ ଜାବୁଡ଼ି ଧରି ରହିଥିବା ଶହ ଶହ ହିନ୍ଦୁ ଅପେକ୍ଷା ନିଜ ଜନ୍ମଭୂମି ପାଇଁ ଅଧିକ ସେବା କରିଥାଏ । ଏଭଳି ପ୍ରାଚୀନ ପନ୍ଥୀ ହିନ୍ଦୁ ନିଜେତ ଜୀବନଯାକ କିଛି ମହତ୍ କାର୍ଯ୍ୟ କରିପାରିବେ ନାହିଁ, ଅନ୍ୟମାନଙ୍କୁ ବି କରିବାକୁ ଗୋଡ଼ ଟାଣିବେ । ଖ୍ରୀଷ୍ଟିଆନ ମିସ୍‌ନାରି, ଧର୍ମାନ୍ଧ ହିନ୍ଦୁ, ଥିଓସୋଫିଷ୍ଟ, ସମାଜ ସଂସ୍କାରକ, ବ୍ରାହ୍ମସମାଜୀ ଏବଂ ପ୍ରତିକ୍ରିୟାଶୀଳ ରାଜନୈତିକ ବ୍ୟକ୍ତିମାନେ ସମସ୍ତେ ଏକଜୁଟ ହୋଇ ତାଙ୍କୁ ବିରୋଧ କଲେ । ଏତାଦୃଶ ଗୋଳମାଳିଆ ପରିସ୍ଥିତିରେ ସେ ହିମାଳୟ ସଦୃଶ ଦଣ୍ଡାୟମାନ ହୋଇ ସମସ୍ତ କୁସାରଟନାକୁ ଉଚିତ ଜବାବ ଦେଉଥିଲେ । ମାନ୍ଦ୍ରାଜସ୍ଥିତ ତାଙ୍କର ଜଣେ ଭକ୍ତ ଆଲସିଂଘା ପେରୁମଲଙ୍କ ନିକଟକୁ ୧୮୯୪ ଏପ୍ରିଲ ୯ ତାରିଖରେ ଏକ ଚିଠି ସେ ଲେଖିଥିଲେ -

''ଅବଶ୍ୟ ନୈଷ୍ଠିକ ପାଦ୍ରୀଗଣ ମୋର ବିରୋଧୀ; କିନ୍ତୁ ମୋତେ ଏତେ ସହଜରେ ଧରି ନ ପାରି, ସେମାନେ ମୋତେ ପ୍ରତ୍ୟେକ କ୍ଷେତ୍ରରେ ପ୍ରତିରୋଧ, ତିରସ୍କାର ଓ ଦୁର୍ନାମ କରିବାକୁ ଚେଷ୍ଟା କରୁଛନ୍ତି; ମଜୁମଦାର ସେମାନଙ୍କୁ ସହାୟତା କରୁଛନ୍ତି । ଈର୍ଷାରେ ଜଳି ବୋଧହୁଏ ସେ ପାଗଳ ହୋଇଗଲେଣି । ସେମାନଙ୍କୁ ସେ କହିଛନ୍ତି ଯେ ମୁଁ କାଳେ ଗୋଟିଏ ବଡ଼ ଠକ ଏବଂ ବଦମାସ୍ । ଏବଂ କଲିକତାରେ ସେ ପୁନଶ୍ଚ ବୁଲି ବୁଲି ପ୍ରଚାର କରୁଛନ୍ତି ଯେ ମୁଁ କାଳେ ଆମେରିକାର ସବୁଠାରୁ ପାପପୂର୍ଣ୍ଣ ଜୀବନ ବିତାଉଛି, ଏପରିକି ଦୁଶ୍ଚରିତ୍ର ଜୀବନ ! ଈଶ୍ୱର ତାଙ୍କୁ ଆଶୀର୍ବାଦ

Digitized by srujanika@gmail.com

କରନ୍ତୁ । ଭାଇ, କୌଣସି ଉତ୍ତମ କାର୍ଯ୍ୟ ବିନା ବାଧାବିଘ୍ନରେ ସମ୍ପାଦିତ ହୋଇପାରିବ ନାହିଁ । ଯେଉଁମାନେ ଅଧ୍ୟବସାୟୀ, ସେମାନେ ଶେଷରେ ବିଜୟୀ ହୁଅନ୍ତି । ତୁମେ ଯଦି ପାରିବ ଗୋଟିଏ ଜିନିଷ କର । ମାନ୍ଦ୍ରାଜରେ ଏକ ବିଶାଳ ସଭାର ଆୟୋଜନ କର, ରାମନାଡ଼ର ରାଜା କିମ୍ବା କୌଣସି ମହାନ୍ ବ୍ୟକ୍ତିଙ୍କୁ ଉକ୍ତ ସଭାରେ ସଭାପତିତ୍ୱ କରିବାକୁ କୁହ, ବିଶ୍ୱଧର୍ମ ସମ୍ମିଳନୀରେ ମୋର ହିନ୍ଦୁଧର୍ମ ତରଫରୁ ପ୍ରତିନିଧିତ୍ୱରେ ସନ୍ତୋଷ ପ୍ରକାଶ କରି ଏକ ବିବରଣୀ ଗୃହୀତ କରେଇ ନିଅ । ସେହି ବିବରଣୀର ନକଲ ଆମେରିକାର ସମ୍ବାଦପତ୍ର, "**ଚିକାଗୋ ହିରାଲ୍ଡ, ଇଣ୍ଟର ଓସନ୍, ଦି ନିୟୁୟର୍କ ସନ, କମର୍ସିଆଲ୍** ଆଡ଼ଭଟାଇଜର ଅଫ୍ ଡେଟ୍ରୋଏଟ୍ ନିକଟକୁ ପଠାଇଦିଅ । ତାହାର ନକଲ ବି ଚିକାଗୋସ୍ଥ ବିଶ୍ୱଧର୍ମ ସମ୍ମିଳନୀର ଅଧ୍ୟକ୍ଷ **ଡକ୍ଟର ବାରୋସ୍** ଏବଂ ଡେଟ୍ରୋଏଟର୍ **ମିସେସ୍ ଜେ. ଜେ. ବାଚଲେଙ୍କ** ନିକଟକୁ ପଠାଇ ଦେବ ।"

ସଭାଗୁଡ଼ିକ ସମ୍ଭବତଃ ଯେପରି ବିଶାଳ ହୋଇପାରିବ ସେଥିପାଇଁ ଚେଷ୍ଟା କରିବ ଏବଂ ନିଜର ଧର୍ମ ଓ ରାଷ୍ଟ୍ର ନିମନ୍ତେ ପ୍ରଭାବଶାଳୀ ବ୍ୟକ୍ତିମାନେ ଯେପରି ଉକ୍ତ ସଭାମାନଙ୍କରେ ଯୋଗଦେଇ ସାଫଲ୍ୟ ମଣ୍ଡିତ କରିବେ । ମଇଶୁର ମହାରାଜା ଓ ଦିୱାନ ଏବଂ କ୍ଷେତ୍ରୀ ମହାରାଜାଙ୍କ ଠାରୁ ଏହି ସଭାର ଆୟୋଜନ ଓ ଉଦ୍ଦେଶ୍ୟ ନିମନ୍ତେ ଅନୁମୋଦନ ପତ୍ର ଆଣିବ - ତୁମର ସାମର୍ଥ୍ୟାନୁସାରେ ସଭା ଯେପରି ବିଶାଳ ଓ ଶବ୍ଦମୁଖର ହେବ ଚେଷ୍ଟା କରିବ ।"

ସ୍ୱାମୀଜୀଙ୍କର ପତ୍ର ଉଭୟ ମାନ୍ଦ୍ରାଜ ଓ କଲିକତାରେ ଚହଳ ସୃଷ୍ଟି କଲା । ମିଥ୍ୟା ଓ ଭ୍ରାନ୍ତ ପ୍ରଚାର ବିରୋଧରେ ତାଙ୍କର ବିଦ୍ରୋହୀ ମନ କିପରି ତେଜିଆନ ହୋଇଉଠୁଥିଲା, ତାହା ଭାରତର ଜନତା ପୂର୍ଣ୍ଣ ପ୍ରାଣରେ ହୃଦୟଙ୍ଗମ କରିପାରିଲେ । ବିଶାଳ ସଭା ଗୋଟିଏ ପରେ ଗୋଟିଏ ଉଭୟ ମାନ୍ଦ୍ରାଜ ଓ କଲିକତାରେ ଅନୁଷ୍ଠିତ ହେଲା । ହଜାର ହଜାର ସଂଖ୍ୟାରେ ଲୋକ ସଭାରେ ଯୋଗଦେଲେ । ବିଶ୍ୱଧର୍ମ ସମ୍ମିଳନୀରେ ସ୍ୱାମୀଜୀଙ୍କର ପ୍ରତିନିଧିତ୍ୱକୁ କେବଳ ହିନ୍ଦୁଧର୍ମ ପାଇଁ ନୁହେଁ ବରଂ ସମଗ୍ର ଭାରତବର୍ଷର ଗର୍ବ ଭାବେ ଗୃହିତ ହେଲା । ସହସ୍ର ଜନତା ଭାରତର ସୁପୁତ୍ର ସ୍ୱାମୀ ବିବେକାନନ୍ଦଙ୍କୁ ଆନ୍ତରିକ ଶୁଭେଚ୍ଛାଜ୍ଞାପନ କଲେ । ଭାରତ ଓ ବିଦେଶର ସମ୍ବାଦପତ୍ରରେ ସଭାଗୁଡ଼ିକର ସମ୍ବାଦ ଓ ବିବରଣୀ ପ୍ରକାଶିତ ହେଲା । ସ୍ୱାମୀଜୀଙ୍କର ନିର୍ଦ୍ଦେଶକ୍ରମେ ସମସ୍ତ ବିବରଣୀ ଓ ଖବରକାଗଜର ନକଲ ସହିତ ପତ୍ର ଆମେରିକାର ବିଶିଷ୍ଟ ବ୍ୟକ୍ତି ଓ ସମ୍ବାଦପତ୍ର କାର୍ଯ୍ୟାଳୟକୁ ସେମାନେ ପଠାଇ ଦେଲେ । ଏହିସବୁ ଆମେରିକାରେ ହସ୍ତଗତ ହେଲାରୁ, ଖ୍ରୀଷ୍ଟଧର୍ମୀ ପାଦ୍ରୀମାନଙ୍କର ମିଥ୍ୟା ଓ ଭ୍ରାନ୍ତ ପ୍ରଚାର ଲୋକ ସମ୍ମୁଖରେ ଉନ୍ମୁକ୍ତ ହୋଇଗଲା । ସ୍ୱାମୀଜୀ ଏହି ପ୍ରକ୍ରିୟା ମାଧ୍ୟମରେ ପାଦ୍ରୀମାନଙ୍କୁ କେବଳ ଯେ ନିରବ କରିଦେଲେ ତାହା ନୁହେଁ ବରଂ ଭାରତବର୍ଷରେ ଭାରତୀୟଙ୍କର ବିବେକକୁ ଜାଗ୍ରତ କରାଇଲେ ।

ମାନ୍ଦ୍ରାଜ ଓ କଲିକତାର ଶିଷ୍ୟତଥା ସାଧାରଣ ଜନତାଙ୍କର ଏତାଦୃଶ ମହାନୁଭବତା ଲକ୍ଷ୍ୟକରି ଏକ ଚିଠିରେ ପ୍ୟାରିମୋହନ ମୁଖାର୍ଜୀଙ୍କ ନିକଟକୁ **୧୮୯୪ ନଭେମ୍ବର, ୧୮** ତାରିଖ ଚିଠିରେ ସ୍ୱାମୀଜୀ ଲେଖିଥିଲେ - ପ୍ରଦାନ ଓ ଗ୍ରହଣ (ଦେବା ଓ ନେବା) ଏକ ନିୟମ; ଏବଂ ଭାରତବର୍ଷ ଯଦି ପୁନର୍ବାର ଉଠିବାକୁ ଚାହେଁ, ତେବେ ଏହା ନିହାତି ଆବଶ୍ୟକ ଯେ ଭାରତ ନିଜର ବହୁମୂଲ୍ୟ ସମ୍ପଦକୁ ବାହାର କରି, ପୃଥିବୀର ଅନ୍ୟ ଦେଶଗୁଡ଼ିକରେ ବିଞ୍ଚି ଦେବ

Digitized by srujanika@gmail.com

ଏବଂ ପ୍ରତି ବଦଳରେ ଅନ୍ୟ ଦେଶ ଯାହା ଦେବେ, ତାହା ଗ୍ରହଣ କରିବା ପାଇଁ ପ୍ରସ୍ତୁତ ରହିବ । ପ୍ରସାରଣ ହିଁ ଜୀବନ, ସଂକୁଚନ ହିଁ ମୃତ୍ୟୁ । ପ୍ରେମ ହିଁ ଜୀବନ ଏବଂ ଘୃଣା ହିଁ ମୃତ୍ୟୁ । ଆମେ ଯେଉଁଦିନ ଅନ୍ୟଜାତି ପ୍ରତି ଘୃଣା କରିବାକୁ ଆରମ୍ଭ କଲୁ, ସେହିଦିନଠାରୁ ଆମର ମୃତ୍ୟୁ ଆରମ୍ଭ ହେଲା । ଜୀବନ ରୂପକ ପ୍ରସାରଣ ଅଭିମୁଖେ ଯଦି ଆମେ ପ୍ରତ୍ୟାବର୍ତ୍ତନ ନ କରି ପାରିବା ତେବେ କୌଣସି ଶକ୍ତି ଆମର ମୃତ୍ୟୁକୁ ପ୍ରତିହତ କରିପାରିବ ନାହିଁ । ଯେଉଁ ବ୍ୟକ୍ତି ଅନ୍ୟକୁ କିଛି ଦେବାପାଇଁ ପ୍ରସ୍ତୁତ ନୁହଁନ୍ତି, ସେଭଳି ବ୍ୟକ୍ତି ସ୍ୱାଧୀନତା ଲାଭ ପାଇଁ ଉପଯୁକ୍ତ କି ? ଅଯଥା, ଅଳିକ ଓ ଅସାର କାର୍ଯ୍ୟରେ ନିଜର ଶକ୍ତି ଅପଚୟ କରିବା ପରିବର୍ତ୍ତେ, ଶାନ୍ତ ଓ ପୌରୁଷତ୍ୱରେ କର୍ମ କରିବା ଉଚିତ । ମୋର ସମ୍ପୂର୍ଣ୍ଣ ବିଶ୍ୱାସ ରହିଛି - ଯେଉଁ ବ୍ୟକ୍ତି ଯାହା ବି ଚାହିଁବ, ତାହାର ପ୍ରାପ୍ତି କ୍ଷେତ୍ରରେ ବିଶ୍ୱର କୌଣସି ଶକ୍ତି ପ୍ରତିରୋଧ କରିପାରିବ ନାହିଁ । ନିଃସନ୍ଦେହରେ ଅତୀତ ନିଶ୍ଚିତ ଗୌରବମୟ, କିନ୍ତୁ ମୁଁ ବିଶ୍ୱାସ କରେ ଯେ ଭବିଷ୍ୟତ ତାହାପେକ୍ଷା ଅଧିକ ଗୌରବମୟ ହେବ ।

- ୪ -

*ବୌଦ୍ଧ ଓ ବ୍ରାହ୍ମଣଙ୍କର ଏହି ବିଚ୍ଛେଦ ହିଁ ଭାରତବର୍ଷର ଅବନତିର କାରଣ । ଏଥିପାଇଁ ଆଜି ଭାରତବର୍ଷ ତିରିଶ କୋଟି ଭିକ୍ଷୁଙ୍କର ବାସଭୂମିରେ ପରିଣତ ହୋଇଛି, ଏହିହେତୁ ସହସ୍ର ବର୍ଷ ଧରି ସେ ବିଜେତାମାନଙ୍କର ଦାସତ୍ୱ କରୁଛନ୍ତି । ଅତଏବ ଆସନ୍ତୁ ଆମେ ବ୍ରାହ୍ମଣର ଅପୂର୍ବ ଧୀଶକ୍ତି ସହିତ ଲୋକଗୁରୁ ବୁଦ୍ଧଙ୍କର ହୃଦୟ, ମହାନ୍ ଆତ୍ମା ଏବଂ ଅସାଧାରଣ ଲୋକକଲ୍ୟାଣକାରୀ ଶକ୍ତିକୁ ଯୁକ୍ତ କରିଦେବା ।*

ବୌଦ୍ଧ ଧର୍ମାବଲମ୍ବୀ ଏଚ୍. ଧର୍ମପାଳ, **ସମ୍ପାଦକ ମହାବୋଧି ସମିତି**, କଲିକତା, ମଧ୍ୟ ଚିକାଗୋର ବିଶ୍ୱଧର୍ମ ସମ୍ମିଳନୀରେ ଜଣେ ବୌଦ୍ଧଧର୍ମର ପ୍ରତିନିଧି ଭାବେ ଅଂଶଗ୍ରହଣ କରିଥିଲେ । ସ୍ୱାମୀଜୀ ଧର୍ମ ସମ୍ମିଳନୀର ଷୋଡ଼ଶ ଦିବସରେ (**୨୬ ସେପ୍ଟେମ୍ବର ୧୮୯୩**) ଯେଉଁ ବକ୍ତବ୍ୟ ''ବୌଦ୍ଧଧର୍ମ ସହିତ ହିନ୍ଦୁଧର୍ମର ସମ୍ବନ୍ଧ'' ବିଷୟବସ୍ତୁ ଉପରେ ପ୍ରଦାନ କରିଥିଲେ, ତାହା ଶୁଣି ଧର୍ମପାଳ ମହାଶୟ ଅତ୍ୟନ୍ତ ଆନନ୍ଦିତ ଓ ବିମୋହିତ ହୋଇଯାଇଥିଲେ । କିନ୍ତୁ ବ୍ରାହ୍ମଧର୍ମର ପ୍ରତିନିଧି ପ୍ରତାପଚନ୍ଦ୍ର ମଜୁମଦାର ଆମେରିକା ଭୂମିରେ ଈର୍ଷାରେ ଜଳି ଯାହାତ ଭର୍ତ୍ସନା ଓ ଅପମାନର ଫୁଲହାର ସ୍ୱାମୀଜୀଙ୍କୁ ପିନ୍ଧାଇଲେ, ସେ କଥା ନ କହିଲେ ଭଲ, କିନ୍ତୁ କଲିକତା ପ୍ରତ୍ୟାବର୍ତ୍ତନ କରିବା ପରେ, ସେ ଅତ୍ୟଧିକ ଈର୍ଷା ଓ ଅସୂୟା ଭାବାପନ୍ନ ହୋଇ ସ୍ୱାମୀଜୀଙ୍କ ଚରିତ୍ର ସଂହାର କାର୍ଯ୍ୟରେ ଲାଗିପଡ଼ିଲେ । କିନ୍ତୁ ଧର୍ମପାଳ କଲିକତା ପ୍ରତ୍ୟାବର୍ତ୍ତନ କରିବା ପରେ, ଶତମୁଖରେ ପ୍ରଶଂସା କରି କହିଥିଲେ ଯେ ଯଦି ଚିକାଗୋର ବିଶ୍ୱଧର୍ମ ସମ୍ମିଳନୀ ସଫଳ ହୋଇଥାଏ, ତେବେ ସ୍ୱାମୀ ବିବେକାନନ୍ଦ ସେଥିପାଇଁ ଦାୟୀ । ଧର୍ମପାଳ ସ୍ୱାମୀଜୀଙ୍କର ଗୁରୁଭାଇମାନଙ୍କୁ ଭେଟିବା ପାଇଁ ଆଲାମ ବଜାର ମଠକୁ ଯାଇଥିଲେ ଏବଂ ସ୍ୱାମୀଜୀଙ୍କର ସଫଳତାର ଏକ ସଂକ୍ଷିପ୍ତ ବିବରଣୀ ଅତ୍ୟନ୍ତ ଉଲ୍ଲସିତ କଣ୍ଠରେ ଉପସ୍ଥାପନ କରିଥିଲେ, ଯାହାର

*Digitized by srujanika@gmail.com*

କିୟଦାଂଶ ଇଣ୍ଡିଆନ୍ ମିରର୍ ପତ୍ରିକାରେ ପ୍ରକାଶିତ ହୋଇଥିଲା : ଆମେରିକାର ଜନତା ହିନ୍ଦୁ ପ୍ରତିନିଧି ସ୍ୱାମୀ ବିବେକାନନ୍ଦଙ୍କୁ ଯେଉଁ ସମ୍ମାନ ପ୍ରଦାନ କରିଛନ୍ତି ସେଥିପାଇଁ ସମଗ୍ର ହିନ୍ଦୁ ଗର୍ବିତ ହେବା ବାଞ୍ଛନୀୟ । ପ୍ରତ୍ୟେକ ହିନ୍ଦୁ ତାଙ୍କ ନିକଟକୁ ଶୁଭେଚ୍ଛା ପଠାଇବା ଉଚିତ ।

କଲିକତାସ୍ଥିତ ମିନର୍ଭା ଥିଏଟର ସଭା କକ୍ଷରେ (ମେ, ୧୪, ୧୮୯୪) ସ୍ୱାମୀ ବିବେକାନନ୍ଦ ଏବଂ ଆମେରିକାରେ ହିନ୍ଦୁଧର୍ମ'' ଶିର୍ଷକ ଏକ ବକ୍ତୃତା ଧର୍ମପାଲ ପ୍ରଦାନ କଲେ । ଉକ୍ତ ସଭାରେ ଜାପାନର ବୌଦ୍ଧଧର୍ମ ଗୁରୁ ସମ୍ମାନୀୟ **ଉଡୋକି** ବି ବକ୍ତୃତା ଦେଇଥିଲେ । ତାଙ୍କର ବକ୍ତବ୍ୟ ଶୁଣିବା ପାଇଁ ସଭାକକ୍ଷ ପୂର୍ଣ୍ଣ ହୋଇଥିଲା । ଧର୍ମ ମହାସମ୍ମିଳନୀରେ ସ୍ୱାମୀଜୀଙ୍କର ବିଭିନ୍ନ ବିଷୟବସ୍ତୁ ଉପରେ ପ୍ରଦତ୍ତ ଭାଷଣର ସାରାଂଶ, ଆମେରିକା ଜନତାଙ୍କର ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା ଓ ସମାଦାରର ଚିତ୍ର ଏବଂ ହିନ୍ଦୁଧର୍ମର ମୌଳିକତାର ଉନ୍ମୋଚନ ସମ୍ବନ୍ଧରେ ଯେତେବେଳେ ଧର୍ମପାଲ ଅଗଣିତ ଜନତାଙ୍କ ସମ୍ମୁଖରେ ପ୍ରକଟ କଲେ, ସେତେବେଳେ ସଭାକକ୍ଷରେ ଆନନ୍ଦ ଲହରି ଖେଳିଗଲା । ଜାପାନର ବୌଦ୍ଧଧର୍ମ ଗୁରୁ ଉଡୋକି ବି ସ୍ୱାମୀଜୀଙ୍କର ଓଜସ୍ୱିନୀ ଭାଷଣ, ହିନ୍ଦୁଧର୍ମ ସପକ୍ଷରେ ତାଙ୍କର ତାର୍କିକ ତତ୍ତ୍ୱ ଉପସ୍ଥାପନ କରିବାର ଶୈଳୀ ଏବଂ ତାଙ୍କ ପ୍ରତି ଆମେରିକାବାସୀଙ୍କର ସ୍ନେହପୂର୍ଣ୍ଣ ଶ୍ରଦ୍ଧା ଓ ସମ୍ମାନ ଅତି ସୁନ୍ଦରଭାବେ ସେଦିନ ଉପସ୍ଥାପନା କରିଥିଲେ । ଧର୍ମପାଲ ଓ ଉଡୋକିଙ୍କ ବକ୍ତୃତା ମାଧମରେ ଚିକାଗୋ ଧର୍ମ ମହାସଭାର ପ୍ରକୃତ ଚିତ୍ର ତଥା ସ୍ୱାମୀଜୀଙ୍କର ବିସ୍ମୟକର ଭୂମିକା ସମ୍ବନ୍ଧରେ ଲୋକେ ଅବଗତ ହେଲେ । ସମଗ୍ର କଲିକତା ନଗରୀ ସ୍ୱାମୀଜୀଙ୍କର ସଫଳତା କାହାଣୀରେ ଉତ୍ସବମୁଖର ହୋଇଗଲା । ସ୍ୱାମୀଜୀଙ୍କ ବିରୋଧରେ ବାବୁ ପ୍ରତାପ ଚନ୍ଦ୍ର ମଜୁମଦାରଙ୍କ ଦ୍ୱାରା ରଚିତ ଓ ପ୍ରଚାରିତ ସମ୍ବାଦ ଯେ ସମ୍ପୂର୍ଣ୍ଣ ମିଥ୍ୟା ଓ କପୋଳକଳ୍ପିତ ତାହା ଭାରତବର୍ଷର ଜନତା ବୁଝିପାରିଲେ । କଲିକତାର ସମ୍ବାଦପତ୍ରଗୁଡ଼ିକ ବି ଧର୍ମପାଲ ଓ ଉଡୋକିଙ୍କର ବକ୍ତବ୍ୟକୁ ମୁଖ୍ୟ ସମ୍ବାଦ ଭାବେ ପ୍ରକାଶିତ କଲେ ଏବଂ ସେହି ସମ୍ବାଦପତ୍ରର ନକଲ ଆମେରିକା ପଠାଇ ଦେଇଥିଲେ ।

ଏଠାରେ ସ୍ମରଣଯୋଗ୍ୟ ଯେ ''ବୌଦ୍ଧଧର୍ମ ସହିତ ହିନ୍ଦୁଧର୍ମର ସମ୍ବନ୍ଧ'' ଶୀର୍ଷକ ବିଷୟବସ୍ତୁ ଉପରେ ସ୍ୱାମୀଜୀଙ୍କ ବକ୍ତୃତା ବିଶ୍ୱଧର୍ମ ସମ୍ମିଳନୀରେ ଉପସ୍ଥିତ ସମସ୍ତ ବୌଦ୍ଧାଧର୍ମାବଲମ୍ବୀଙ୍କୁ କେବଳ ବିମୋହିତ କରି ନ ଥିଲା, ବରଂ ଅନ୍ୟ ଧର୍ମାବଲମ୍ବୀ ତଥା ସମବେତ ଆମେରିକୀୟ ବୁଦ୍ଧିଜୀବୀଙ୍କୁ (ଯେଉଁମାନେ ଆଶଙ୍କା କରିଥିଲେ ଯେ ସ୍ୱାମୀଜୀ ବୋଧହୁଏ ବୌଦ୍ଧଧର୍ମ ବିପକ୍ଷରେ ବକ୍ତବ୍ୟ ଉପସ୍ଥାପନ କରିବେ) ହତଚକିତ କରି ଦେଇଥିଲା । ସ୍ୱାମୀଜୀ କହିଥିଲେ - ''ଆପଣମାନେ ସମସ୍ତେ ଶୁଣିଛନ୍ତି ଯେ ମୁଁ ବୌଦ୍ଧ ନୁହେଁ, ତଥାପି ଏକ ଭାବରେ ମୁଁ ବୌଦ୍ଧ । ଚୀନ, ଜାପାନ ଓ ସିଂହଳ ସେହି ମହାନ୍ ଗୁରୁ ବୁଦ୍ଧଙ୍କର ଉପଦେଶ ଅନୁସରଣ କରନ୍ତି, କିନ୍ତୁ ଭାରତ ତାଙ୍କୁ ଈଶ୍ୱରାବତାର ବୋଲି ପୂଜା କରେ । ଆପଣମାନେ ବର୍ତ୍ତମାନ ଶୁଣିଲେ ଯେ ମୁଁ ବୌଦ୍ଧଧର୍ମର ସମାଲୋଚନା କରିବାକୁ ଉଠିଛି, କିନ୍ତୁ ମୁଁ ଚାହେଁ ଯେ ଆପଣମାନେ ଏହା ପୂର୍ବୋକ୍ତ ଅର୍ଥରେ ହିଁ ଗ୍ରହଣ କରିବେ । ଯାହାଙ୍କୁ ମୁଁ ଈଶ୍ୱରାବତାର ବୋଲି ପୂଜା କରେ, ତାଙ୍କ ବିରୋଧରେ ସମାଲୋଚନା କରିବା ମୋର ଅଭିପ୍ରାୟ ନୁହେଁ ।''

Digitized by srujanika@gmail.com

ସ୍ୱାମୀଜୀ ଏଭଳି ଅନେକ ପ୍ରଶଂସାର ଫୁଲହାର ମହାକାରୁଣିକ ଗୌତମ ବୁଦ୍ଧଙ୍କ ଉପରେ ଅଜାଡ଼ି ଦେବାପରେ, ସଭାମଞ୍ଚରେ ଯେଉଁ ସକଳ ବୌଦ୍ଧଧର୍ମାବଲମ୍ବୀ ପ୍ରତିନିଧି ଉପବିଷ୍ଟ ଥିଲେ, ସେମାନଙ୍କ ଆଡ଼କୁ ଚାହିଁ ସ୍ୱାମୀଜୀ ଶେଷରେ କହିଲେ, ''ହେ ମୋର ବୌଦ୍ଧ ଭ୍ରାତାଗଣ । ବୌଦ୍ଧଧର୍ମ ଛଡ଼ା ହିନ୍ଦୁଧର୍ମ ବଞ୍ଚି ରହିପାରେ ନାହିଁ; ହିନ୍ଦୁଧର୍ମକୁ ଛାଡ଼ି ବୌଦ୍ଧଧର୍ମ ମଧ୍ୟ ବଞ୍ଚି ପାରେ ନାହିଁ । ଅତଏବ ଉପଲବ୍ଧି କରନ୍ତୁ ଯେ ଆମମାନଙ୍କର ଏହି ବିଯୁକ୍ତ ବିଚ୍ଛିନ୍ନଭାବ ସ୍ପଷ୍ଟ ଦେଖାଇ ଦେଉଛି ଯେ ବ୍ରାହ୍ମଣର ଧୀ-ଶକ୍ତି ଓ ଦର୍ଶନ ଶାସ୍ତ୍ରର ସାହାଯ୍ୟ ନ ନେଇ ବୌଦ୍ଧମାନେ ଦୃଢ଼ତା ଲାଭ କରିପାରନ୍ତି ନାହିଁ ଏବଂ ବ୍ରାହ୍ମଣ ମଧ୍ୟ ବୌଦ୍ଧର ହୃଦୟ ଛଡ଼ା ତିଷ୍ଠି ରହିପାରେନା । ବୌଦ୍ଧ ଓ ବ୍ରାହ୍ମଣଙ୍କର ଏହି ବିଚ୍ଛେଦ ହିଁ ଭାରତବର୍ଷର ଅବନତିର କାରଣ । ଏଥିପାଇଁ ଆଜି ଭାରତବର୍ଷ ତିରିଶ କୋଟି ଭିକ୍ଷୁକର ବାସଭୂମିରେ ପରିଣତ ହୋଇଛି, ଏହିହେତୁ ସହସ୍ର ବର୍ଷ ଧରି ସେ ବିଜେତାମାନଙ୍କର ଦାସତ୍ୱ କରୁଛନ୍ତି । ଅତଏବ ଆସନ୍ତୁ ଆମେ ବ୍ରାହ୍ମଣର ଅପୂର୍ବ ଧୀଶକ୍ତି ସହିତ ଲୋକଗୁରୁ ବୁଦ୍ଧଙ୍କର ହୃଦୟ, ମହାନ୍ ଆତ୍ମା ଏବଂ ଅସାଧାରଣ ଲୋକକଲ୍ୟାଣକାରୀ ଶକ୍ତିକୁ ଯୁକ୍ତ କରିଦେବା ।''

ସ୍ୱାମୀ ବିବେକାନନ୍ଦ, ନିଜ ଦେଶରୁ ଜନତାଙ୍କର ସହଯୋଗ ଏବଂ ହିନ୍ଦୁଧର୍ମର ସେ ଜଣେ ଉପଯୁକ୍ତ ପ୍ରତିନିଧି ବୋଲି ନିଜ ଧର୍ମଗୁରୁମାନଙ୍କର ସ୍ୱୀକୃତି ଲାଭ ଅଭାବରେ ବିଦେଶ ଭୂମିରେ ସେ ବାରମ୍ବାର ଅପମାନିତ ଓ ଭର୍ତ୍ସିତ ହେଉଛନ୍ତି ଭଳି ସମ୍ବାଦ କଲିକତା ଓ ମାଡ୍ରାଜର ବୁଦ୍ଧିଜୀବୀ ଏବଂ ଭକ୍ତଗଣଙ୍କୁ ଏକ ଯୋଜନାବଦ୍ଧ କାର୍ଯ୍ୟ ଅଭିମୁଖେ ଉତ୍ସାହିତ କଲା । ସ୍ୱାମୀଜୀଙ୍କର ବିଶ୍ୱ ଧର୍ମ ସମ୍ମିଳନୀରେ ସଫଳତାକୁ ଆଧାର କରି ବହୁ ସଭାସମିତି କଲିକତା, ମାନ୍ଦ୍ରାଜ ଓ ବାଙ୍ଗାଲୋରରେ ଅନୁଷ୍ଠିତ ହେଲା । ସ୍ୱାମୀଜୀ ହିନ୍ଦୁଧର୍ମର ପ୍ରକୃତ ପ୍ରତିନିଧି ଭାବେ ପ୍ରସ୍ତାବ ଗୃହୀତ ହେଲା । ସମ୍ବାଦପତ୍ରରେ ପ୍ରକାଶିତ ସମ୍ବାଦ ସହ ବହୁ ବୁଦ୍ଧିଜୀବୀଙ୍କର ବ୍ୟକ୍ତିଗତ ପତ୍ରସବୁ ଚିକାଗୋର ବିଶ୍ୱଧର୍ମ ସମ୍ମିଳନୀର ଅଧକ୍ଷ ଡକ୍ଟର ବାରୋ, ପ୍ରଫେସର ଜୋନ୍ ହେନ୍ରି ରାଇଟ୍, ମିଷ୍ଟର ଜି. ଡବ୍ଲ୍ୟୁ ହେଲେ ଏବଂ ଅନ୍ୟ ମାନ୍ୟଗଣ୍ୟ ବ୍ୟକ୍ତି ସହ ଆମେରିକାର ସମ୍ବାଦପତ୍ର ନିକଟକୁ ପଠାଇ ଦିଆଗଲା । କେବଳ ସେତିକି ନୁହେଁ, ସ୍ୱାମୀଜୀଙ୍କର ବହୁ ଭକ୍ତ, ବନ୍ଧୁ ଓ ଶୁଭେଚ୍ଛୁ ତାଙ୍କୁ ଭାରତ ପ୍ରତ୍ୟାବର୍ତ୍ତନ କରିବା ପାଇଁ ମଧ୍ୟ ପତ୍ର ମାଧ୍ୟମରେ ଅନୁରୋଧ କରିଥିଲେ । ସ୍ୱାମୀଜୀ ନିଜ ଦେଶରୁ ପ୍ରଶଂସା, ସ୍ୱୀକୃତି ତଥା ସମ୍ମାନର ସ୍ରୋତ ପରିଲକ୍ଷିତ କରି ବିଶେଷ ସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ମାନ୍ଦ୍ରାଜର ଭକ୍ତ ଆଲସିଙ୍ଗାଙ୍କ ପାଖକୁ ୧୮୯୪, ଏପ୍ରିଲ ୯ ତାରିଖରେ ଲେଖିଥିଲେ ''ମୁଁ ଭାରତବର୍ଷ ପ୍ରତ୍ୟାବର୍ତ୍ତନ କରିବା ଲାଗି ସେକ୍ରେଟେରି ସାହେବ ଲେଖିଛନ୍ତି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । କିନ୍ତୁ ମୋ ଭାଇ ! ଆମକୁ ଆଲୋକ ପ୍ରଜ୍ୱଳିତ କରିବାକୁ ହେବ, ଯା'ର ଉଜ୍ଜ୍ୱଳତା ଭାରତବର୍ଷ ଉପରେ ବିଚ୍ଛୁରିତ ହେବ । ଅତଏବ୍ ଆମେ ଏହି କ୍ଷେତ୍ରରେ ଅତ୍ୟନ୍ତ ବ୍ୟଗ୍ର ହେବା ଆବଶ୍ୟକ ନାହିଁ । ପ୍ରଭୁଙ୍କର କରୁଣା ଯୋଗୁଁ ସବୁକିଛି ଆସିବ ।'' ସେ ଭଲଭାବରେ ଜାଣିଥିଲେ ଯେ ଭାରତର ଗରିବ କିମ୍ବା ଧନୀ, କେହି ବି ମାତୃଭୂମିର ବିକାଶ କାର୍ଯ୍ୟର ଯୋଜନାକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ତାଙ୍କୁ ଆର୍ଥିକ ସହାୟତା ଯୋଗାଇ ଦେବେନାହିଁ । ଆମେରିକାରେ ରହିଲେ, ଅନ୍ତତଃପକ୍ଷେ ସେ ନିଜର ସ୍ୱପ୍ନ ସାକାର କରିବା ପାଇଁ କିଛି ଅର୍ଥ ସଂଗ୍ରହ କରିପାରିବେ । ତଥାପି ନିଜ ଜନ୍ମଭୂମିରୁ ପାଇଥିବା ଶୁଭେଚ୍ଛା ଓ ସମର୍ଥନ ତାଙ୍କ ଭିତରେ ଆତ୍ମ-ସନ୍ତୋଷ ଭରିଦେଇଥିଲା, ଏଇଥିପାଇଁ ଯେ ଭାରତବାସୀଙ୍କ ଭିତରେ ଏକ ନବଜାଗରଣ ଉଦୟ ଘଟାଇ ପାରିଥିଲେ ।

Digitized by srujanika@gmail.com

ଭାରତର ବହୁ ସମ୍ବାଦପତ୍ରରେ ସ୍ୱାମୀଜୀଙ୍କର ହିନ୍ଦୁଧର୍ମ ପକ୍ଷରୁ ପ୍ରତିନିଧିତ୍ୱର ସଫଳତାକୁ ଆଧାର କରି ପ୍ରଶଂସାସୂଚକ ପ୍ରସ୍ତାବ ଏବଂ ସ୍ୱାମୀଜୀଙ୍କୁ ହିନ୍ଦୁଧର୍ମର ଉପଯୁକ୍ତ ପ୍ରବକ୍ତା ଅଭିହିତ କରି ବହୁ ପ୍ରତିଷ୍ଠିତ ଆମେରିକୀୟ ବ୍ୟକ୍ତି ଓ ବୁଦ୍ଧିଜୀବୀଙ୍କ ନିକଟକୁ ରାଜା, ଦିଓ୍ୱାନ ଓ ଭଦ୍ର ବ୍ୟକ୍ତିଙ୍କ ଦ୍ୱାରା ଲିଖିତ ବ୍ୟକ୍ତିଗତ ପତ୍ର ଆମେରିକାର ସାଧାରଣ ଜନମାନସକୁ ମଧ୍ୟ ପ୍ରଭାବିତ କରିଥିଲା । ସ୍ୱାମୀଜୀ ଏହି ଅବସରରେ ସେତେବେଳେ ଶ୍ରୀମତୀ ହେଲେଙ୍କ ନିକଟକୁ ଏକ ପତ୍ରରେ ନିଜର ମତ ପ୍ରକାଶ କରି ଲେଖିଥିଲେ - ମୁଁ ଭାବୁନାହିଁ ଯେ ପ୍ରଭୁ ଏହି ସେବକକୁ ତା'ର ଦେଶବାସୀଙ୍କର ପ୍ରଶଂସାରେ ଗର୍ବରେ ଉଦ୍‌ଫୁଲ୍ଲିତ ହେବାକୁ ଅନୁମତି ଦେବେ । ମୁଁ ଆନନ୍ଦିତ ଯେ ସେମାନେ ମୋ କାର୍ଯ୍ୟ ନିମନ୍ତେ ମୋତେ ପ୍ରଶଂସା କରିନାହାନ୍ତି ବରଂ ଭର୍ତ୍ସନା ଦ୍ୱାରା ଜଣେ ବ୍ୟକ୍ତି ଉନ୍ନତି ଲାଭ କରିପାରେ ନାହିଁ କିନ୍ତୁ ପ୍ରଶଂସା ଦ୍ୱାରା କେବଳ ବ୍ୟକ୍ତି କାହିଁକି ରାଷ୍ଟ୍ର କରିପାରେ ବୋଲି ମୋର ଧାରଣାକୁ ବଳବତ୍ତର କରିଛି । ବର୍ତ୍ତମାନ ଭାବନ୍ତୁ, କିଭଳି ଅଯଥାରେ ମୋ ଦରିଦ୍ର ରାଷ୍ଟ୍ର ମସ୍ତକରେ କେତେ ଭର୍ତ୍ସନା ଓ ଅପମାନ ବର୍ଷିତ ହୋଇଛି ତାହା କେଉଁଥି ପାଇଁ ? ସେମାନେ କସ୍ମିନକାଳେ ଖ୍ରୀଷ୍ଟଧର୍ମାବଲମ୍ବୀ, ସେମାନଙ୍କର ଧର୍ମ ଏବଂ ପ୍ରଚାରକମାନଙ୍କୁ ଆଘାତ କରି ନାହାନ୍ତି । ସେମାନେ ସର୍ବଦା ସମସ୍ତଙ୍କ ପ୍ରତି ବନ୍ଧୁ ଭାବାପନ୍ନ । ତେଣୁ ମା', ଆପଣ ଦେଖନ୍ତୁ, ଗୋଟିଏ ବିଦେଶୀ ରାଷ୍ଟ୍ର ଯାହା ବି ଭଲ କଥାଟିଏ କୁହେ, ତାହା ଭାରତରେ ବହୁ ଶକ୍ତିଶାଳୀ ହୋଇଥାଏ । ଏଠାରେ ଆମେରିକାବାସୀଙ୍କର ମୋର ସାମାନ୍ୟ କାର୍ଯ୍ୟର ପ୍ରଶଂସା ସେମାନଙ୍କୁ ବହୁଭାବରେ ଉପକୃତ କରିଛି । ଦିନରାତି ସେମାନଙ୍କ ଉପରେ କଟୁଭାଷା ବର୍ଷଣ ନ କରି, ଅନ୍ତତଃପକ୍ଷେ କୋଟି କୋଟି ନିନ୍ଦିତ ନିସ୍ୱ ଭାରତବାସୀଙ୍କ ଉଦ୍ଦେଶ୍ୟରେ ଭଲ କଥା ପଦଟିଏ, ଶୁଭେଚ୍ଛାଟିଏ ପଠାନ୍ତୁ । ଏହା ହିଁ ମୋର ପ୍ରତ୍ୟେକ ରାଷ୍ଟ୍ର ନିକଟରେ ବିନୀତ ପ୍ରାର୍ଥନା । ଯଦି ପାରନ୍ତି, ସେମାନଙ୍କୁ ସାହାଯ୍ୟ କରନ୍ତୁ, ଯଦି ପାରିବେ ନାହିଁ, ଦୟାକରି କଟୁ ଭାଷା ଓ ଭର୍ତ୍ସନାରୁ ନିବୃତ ରୁହନ୍ତୁ ।''

ଏଠାରେ ସ୍ୱାମୀଜୀଙ୍କର ଦୁଇଟି ବଳିଷ୍ଠ ମନୋଭାବକୁ ଅନୁଭବ କରିହେବ । ସେ ଭଲ ଭାବରେ ଜାଣିଥିଲେ ଯେ ନିଜର ଦୁର୍ବଳତା ନ ଜାଣି ଏବଂ ଅନ୍ୟଠାରୁ ଶିକ୍ଷା ଗ୍ରହଣ ନ କରି କୌଣସି ପ୍ରଗତି ହାସଲ କରିବା ସମ୍ଭବ ନୁହେଁ । ତେଣୁ ଗୋଟିଏ ଦିଗରେ ଭାରତୀୟମାନଙ୍କ ସମ୍ମୁଖରେ ନିଜର ଦୁର୍ବଳତାକୁ କଠୋର ଭାଷାରେ ସମାଲୋଚନା କଲେ, ଅର୍ଥାତ୍ ନିଜ ଲୋକମାନଙ୍କ ଉପସ୍ଥିତିରେ ଆତ୍ମ ସମୀକ୍ଷା ମାଧ୍ୟମରେ ଭାରତର ଦୋଷ ଦୁର୍ବଳତାକୁ ପ୍ରକାଶ କଲେ । ଅନ୍ୟ ଦିଗରେ, ଶତ୍ରୁମାନଙ୍କ ସମ୍ମୁଖରେ ଆମେ ଏକାଠି ହୋଇ ଲଢ଼େଇ କରିବାର ଯଥାର୍ଥତା ପ୍ରତିପାଦନ କଲେ । ହିନ୍ଦୁଧର୍ମର ବିରୋଧିଙ୍କ ସମ୍ମୁଖରେ ମୂର୍ତ୍ତିପୂଜାର ଏକ ଦାର୍ଶନିକ ତତ୍ତ୍ୱ ଉପସ୍ଥାପନ କଲେ ଏବଂ ନିଜ ଲୋକଙ୍କ ସମ୍ମୁଖରେ ଆମର ଦୋଷ ତ୍ରୁଟିକୁ ପ୍ରକାଶ କରି ସିଂହ ସଦୃଶ ଗର୍ଜନ କଲେ । ସେହି କାରଣରୁ ଭଦ୍ର ଓ **ସାମନ୍ତ ସମାଜ** ଓ ବୁଦ୍ଧିଜୀବୀ ଗୋଷ୍ଠୀ ତାଙ୍କୁ ନିଜର ଜଣେ ଧାର୍ମିକ ଓ ସାଂସ୍କୃତିକ ନେତା ଭାବେ ଗ୍ରହଣ କରିଥିଲେ । ବର୍ତ୍ତମାନ ବି ଲୋକେ ସେହି ଭାବରେ ତାଙ୍କୁ ଗ୍ରହଣ କରନ୍ତି ।



Digitized by srujanika@gmail.com

।। ବାଇଶ ।।

# ନିନ୍ଦା ଓ ପ୍ରଶଂସାକୁ ଖାତିରି ନାହିଁ - ସ୍ୱାମୀଜୀଙ୍କର ଆମେରିକାରେ ତୁଫାନୀ ଗସ୍ତ - ପ୍ରଖ୍ୟାତ ଶିଳ୍ପପତି ରକ୍‌ଫେଲର୍‌ଙ୍କ ସହ ସାକ୍ଷାତ

ସମଗ୍ର ଆମେରିକା ରାଷ୍ଟ୍ରର କୋଣ ଅନୁକୋଣ ଭ୍ରମଣ ସମୟରେ ସ୍ୱାମୀଜୀଙ୍କର ଏକ ନିର୍ଦ୍ଦିଷ୍ଟ ବାସସ୍ଥାନ ନ ଥିଲା । ଏଠାରେ ଉଲ୍ଲେଖନୀୟ ଯେ ଚିକାଗୋରେ ଅବସ୍ଥାନ ସମୟରେ ସେ ମିଷ୍ଟର ଓ **ମିସେସ୍ ଲିୟୋନ**ଙ୍କ ବାସଭବନରେ ରହୁଥିଲେ । ପରବର୍ତ୍ତୀ କାଳରେ ହେଲେଙ୍କ ଗୃହ ତାଙ୍କର ବାସସ୍ଥଳୀ ହୋଇଥିଲା । ହେଲେ ପରିବାର ତାଙ୍କୁ ପୁତ୍ର ଓ ଭ୍ରାତା ସଦୃଶ ଆଚରଣ କରୁଥିଲେ । ତଥାପି ସେ ଯେଉଁ ସ୍ଥାନରେ ରହୁଥିଲେ ବି ମଝିରେ ଦୁଇବାର ଲିୟୋନଙ୍କ ଗୃହକୁ ଫେରି ଆସୁଥିଲେ । ମିଷ୍ଟର ଓ ମିସେସ୍ **ଲିୟୋନ**ଙ୍କର ନାତୁଣୀ **କର୍ଣ୍ଣେଲିଆ କୋଙ୍ଗର୍** ସ୍ୱାମୀଜୀଙ୍କର ବ୍ୟକ୍ତିତ୍ୱ, ଚରିତ୍ର ଓ ଆଚରଣ ଉପରେ ଆଲୋକପାତ କରି ନିଜର ପୁସ୍ତକ **'ମେମୋୟର୍ସ ଅଫ୍ ସ୍ୱାମୀ ବିବେକାନନ୍ଦ'**ରେ ଲେଖିଥିଲେ -

ସେ ମୋ ଆଈଙ୍କର ବିଶେଷଭାବେ ଅନ୍ତରଙ୍ଗ ଥିଲେ । ନିଜ ମା'ଙ୍କ ଭଳି ସେ ତାଙ୍କୁ ଭଲ ପାଉଥିଲେ । ମୋ ଆଈ ଅନେକ ସମୟରେ ତାଙ୍କ ସହ ଥଟ୍ଟା ତାମସା କରୁଥିଲେ । ମୋ ମା'ଙ୍କ ସହ ମୁଁ ଆଈଙ୍କ ଘରେ ସେତେବେଳେ ରହୁଥିଲି । ମୋର ବୟସ ମାତ୍ର ଥିଲା ଛଅ ବର୍ଷ । ମୋ ଆଈ ଓ ମା ସ୍ୱାମୀଜୀଙ୍କର ଅଧିକାଂଶ ବକ୍ତୃତା ଶୁଣିବାକୁ ଯାଉଥିଲେ । ମୋ ମା' ଯୁବତୀ ଅବସ୍ଥାରେ ବୈଧବ୍ୟର ଯନ୍ତ୍ରଣା ଭୋଗ କରୁଥିବା ସମୟରେ ସ୍ୱାମୀଜୀ ତାଙ୍କୁ ଆଧ୍ୟାତ୍ମିକ ଜ୍ଞାନରେ ପ୍ରଜ୍ୱଳିତ କରୁଥିଲେ । ତାଙ୍କର ଉଜ୍ଜ୍ୱଳ ଚକ୍ଷୁ, ମନମୁଗ୍ଧକର ସ୍ୱର ଓ ହାସ୍ୟ ମୁଖମଣ୍ଡଳ ଏବେ ବି ମୋ ମାନସପଟରେ ଜୀବନ୍ତ । ଭାରତବର୍ଷ, ମର୍କଟ, ମୟୂର, ଉଡ଼ନ୍ତା ସବୁଜ ଶୁଆଶାରି, ବଟବୃକ୍ଷ, ବିଭିନ୍ନ ପୁଷ୍ପ, ଫଳ ଓ ପନିପରିବା ସମ୍ବନ୍ଧରେ ଅନେକ କାହାଣୀ ମୋତେ ସେ ଶୁଣାଉଥିଲେ । ସେ ଆମ ଘରକୁ ଆସିଲେ, ମୁଁ ତାଙ୍କ ପାଖରୁ ଗପ ଶୁଣିବା ପାଇଁ ଦୌଡ଼ି ଯାଉଥିଲି । ତାଙ୍କ କୋଳରେ ବସୁଥିଲି । ସେ ସର୍ବଦା ମୋ ପାଇଁ ଆଶ୍ଚର୍ଯ୍ୟମାନବ ଥିଲେ । ବାଲ୍ୟ ଚପଳତା ଯୋଗୁଁ ମୁଁ ତାଙ୍କ କୋଠରିକୁ ପ୍ରବେଶ କଲାମାତ୍ରେ, ଦେଖିବାକୁ ପାଉଥିଲି ଯେ ସେ ଗଭୀର ଧ୍ୟାନମଗ୍ନ । ମୁଁ ଚୁପ୍‌ଚାପ୍

Digitized by srujanika@gmail.com

ଠିଆ ହେଉଥିଲି । କାରଣ ମୁଁ ଜାଣିଥିଲି ଯେ ଧ୍ୟାନାବସ୍ଥାରେ ତାଙ୍କୁ ହଇରାଣ କରିବା ଉଚିତ ନୁହେଁ ।

ଯେତେବେଳେ ସେ ସଭା ସମିତିରେ ବକ୍ତୃତା ପ୍ରଦାନ କରୁଥିଲେ, ଶ୍ରୋତାଗଣ ତାଙ୍କୁ ମୁଦ୍ରା ଅର୍ପଣ କରୁଥିଲେ । ସେ ନିଜ ରୁମାଲରେ ମୁଦ୍ରାକୁ ଗଣ୍ଠି ପକାଇ ବାଳକବତ୍ ଆମ ଘରକୁ ଫେରି ଆସୁଥିଲେ । ମୋ ଆଈଙ୍କ କୋଳରେ ମୁଦ୍ରାଗୁଡ଼ିକୁ ଅଜାଡ଼ି ଦେଉଥିଲେ ଏବଂ ତାଙ୍କ ପାଇଁ ସଞ୍ଚୟ କରି ରଖିବାକୁ ସେ କହୁଥିଲେ । ମୋ ଆଈ ବିଭିନ୍ନ ମୁଦ୍ରା ତାଙ୍କୁ ଚିହ୍ନାଇ ଦେଉଥିଲେ ଏବଂ କିପରି ଗଣାଯାଏ ତାଙ୍କୁ ଶିଖାଇ ଦେଉଥିଲେ ।

ଏକଦା ସେ ମୋ ଆଈଙ୍କୁ କହିଲେ ଯେ ଆମେରିକାରେ ଗୋଟିଏ ପ୍ରଲୋଭନ ଦ୍ୱାରା ସେ ଅତ୍ୟନ୍ତ ପ୍ରଭାବିତ । ମୋ ଆଈ ତାଙ୍କ ସହ ଟିକିଏ ପରିହାସ କରନ୍ତି । ସ୍ୱାମୀଜୀଙ୍କର ଏତାଦୃଶ ପ୍ରଲୋଭନ କଥା ଶୁଣି କହିଲେ, ''ସ୍ୱାମୀଜୀ କିଏ ସେହି ନାରୀ ?'' ସେ ହସରେ ଫାଟିପଡ଼ି କହିଲେ ''ଓହୋ, ସେ ନାରୀ ନୁହେଁ, ଏହା ଆମେରିକାର ସଂଗଠନ ।'' ଆମେରିକା ସଂଗଠନଗୁଡ଼ିକ ଅତି ଚମତ୍କାର । ଭାରତୀୟ ମାନସିକତା ଅନୁସାରେ ଏଭଳି ଅନୁଷ୍ଠାନ ଗଠନ କରିବାକୁ ସେ ଚାହୁଁଥିଲେ ଯଦ୍ୱାରା ସେ ତାଙ୍କର ସ୍ୱପ୍ନକୁ ସଂଗଠନ ମାଧ୍ୟମରେ ସାକାର କରିପାରିବେ । ବ୍ୟକ୍ତି ଆଜି ଅଛି, କାଲି ରହିବ ନାହିଁ । ସଂଗଠନ ଲୋକଙ୍କର କଲ୍ୟାଣମୂଳକ କାର୍ଯ୍ୟ କରିବା ପାଇଁ ବହୁ ବର୍ଷ ଧରି ତିଷ୍ଠି ରହିପାରିବ । ସେଥିପାଇଁ ଆମେରିକା ସଂଗଠନଗୁଡ଼ିକର କାର୍ଯ୍ୟପ୍ରଣାଳୀ ସେ ନିରୀକ୍ଷଣ କରୁଥିଲେ ।

ସ୍ୱାମୀଜୀଙ୍କର ଏଭଳି ଗତିଶୀଳ ଓ ମନମୁଗ୍ଧକାରୀ ରୂପ ଥିଲା ଯେ ବହୁ ନାରୀ ତାଙ୍କ ପ୍ରତି ଆକର୍ଷିତ ହୋଇପଡୁଥିଲେ । ସେ ସେତେବେଳେ ଯୁବକ । ତଥାପି ତାଙ୍କର ମହାନ ଆଧ୍ୟାତ୍ମିକ ଓ ତେଜସ୍ୱୀ ମନ ଓ ବୁଦ୍ଧି ସଂସାର ପ୍ରତି ଆଦୌ ନ ଥିଲା ଆକୃଷ୍ଟ । ସ୍ୱାମୀଜୀଙ୍କର ସରଳତାର ସୁଯୋଗ ନେଇ କୌଣସି ନାରୀ ତାଙ୍କୁ ଅସୁବିଧାରେ ପକାଇ ଦେଇପାରେ ଭାବି ମିସେସ୍ ଲିୟୋନ ତାଙ୍କୁ ଏକଦା ସତର୍କ କରାଇ ଦେଇଥିଲେ । ମିସେସ୍ ଲିୟୋନ୍ଙ୍କର ଆଶଙ୍କା ଓ ସତର୍କବାଣୀ ସ୍ୱାମୀଜୀଙ୍କୁ କେବଳ ସ୍ପର୍ଶ କଲାନାହିଁ ବରଂ ଆମୋଦିତ କଲା । ମିସେସ୍ ଲିୟୋନଙ୍କ ହାତକୁ ଜାବୁଡ଼ି ଧରି ସେ କହିଲେ, ''ହେ ମୋର ଆମେରିକୀୟ ମା, ଆପଣ ମୋ ପାଇଁ ଆଦୌ ଭୟଭୀତ ହୁଅନ୍ତୁ ନାହିଁ । ଅତୀତରେ ମୁଁ ବଟବୃକ୍ଷ ତଳେ, କୃଷକ ପ୍ରଦତ୍ତ ଅନ୍ନ ମୁଠିଏ ଥାଳରେ ଧରି, ବହୁ ସମୟରେ ଶୟନ କରୁଥିଲି, ମୁଁ ମଧ୍ୟ କେବେ କେବେ ମହାରାଜାଙ୍କ ରାଜପ୍ରାସାଦରେ ଶୟନ କରୁଥିଲି । ମହାରାଜାଙ୍କ ଦ୍ୱାରା ଜଣେ ପରିଚାରିକା ମୟୂର ପଙ୍ଖାରେ ମୋତେ ରାତ୍ରିସାରା ବିଞ୍ଚି ଦେଉଥିଲେ । ମୁଁ ଏତାଦୃଶ ପ୍ରଲୋଭନ ପ୍ରତି ଅଭ୍ୟସ୍ତ, ସେଥିପାଇଁ ଆପଣ ଆଦୌ ଭୟଭୀତ ହୁଅନ୍ତୁ ନାହିଁ । ସ୍ୱାମୀଜୀଙ୍କ ପାଇଁ ବୃକ୍ଷତଳ ଛାୟା, କୃଷକ ପ୍ରଦତ୍ତ ମୁଠାଏ ଅନ୍ନ, ରାଜପ୍ରାସାଦର ବିଳାସବ୍ୟସନ ବାତାବରଣ ଭିତରେ ଅବସ୍ଥାନ, ଏବଂ ଏଭଳି ଅନେକ କିଛିର ଅର୍ଥ ନାହିଁ । କାରଣ

Digitized by srujanika@gmail.com

ତାଙ୍କର ମନ ସଂସାରାଭିମୁଖୀ ନୁହେଁ, ଏକ ଉଚ୍ଚଚେତନାରେ ସମାସୀନ ବୋଲି ମିସେସ୍ ଲିୟୋନ୍ ବୁଝିପାରିଲେ ।

ତାହା ନ ହୋଇଥିଲେ, ଉପାର୍ଜିତ ଧନରାଶିକୁ ଶିଶୁଟିଏ ଭଳି ମିସେସ୍ ଲିୟେନଙ୍କ ପଣତରେ ଅଜାଡ଼ି ଦେଇଥାନ୍ତେ !!! ଧନସଂଗ୍ରହ ନିଜ ପାଇଁ ନୁହେଁ, ଭାରତର ଦରିଦ୍ର କାଙ୍ଗାଳର କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ । ସବୁତକ ଉପାର୍ଜିତ ଧନରାଶି ସେ ଭାରତ ପଠାଇଦେଲେ । ଏକ ବଳିଷ୍ଠ ସଂଗଠନ ଜନ୍ମ ନେବ, ସେବା ଓ ତ୍ୟାଗର ଚକ୍ର ଘୂରିବ । କିନ୍ତୁ କୌଣସି ଅନୈତିକ କାର୍ଯ୍ୟରୁ ଉଦ୍ଭବ ଧନ ସେ କେବେ ବି ଗ୍ରହଣ କରୁ ନ ଥିଲେ । ଆମେରିକା ଅବସ୍ଥାନ କାଳରେ ଏକ ଧନଶାଳୀ ସୁନ୍ଦରୀ ରମଣୀ ସ୍ୱାମୀଜୀଙ୍କର ରୂପ, ବ୍ୟକ୍ତିତ୍ୱ ଓ ଅନର୍ଗଳ ବକ୍ତୃତା ପ୍ରଦାନ ଶୈଳୀରେ ବିମୋହିତ ହୋଇ ଏକଦା ଆପଣାର ଅପର୍ଯ୍ୟପ୍ତ ଧନ ସହିତ ନିଜକୁ ସ୍ୱାମୀଜୀଙ୍କ ନିକଟରେ ସମର୍ପଣ କରିବାର ଅଭିଳାଷ ପ୍ରକାଶ କଲେ । ସ୍ଥିତପ୍ରଜ୍ଞ ସ୍ୱାମୀଜୀ ଉକ୍ତ ରମଣୀଙ୍କୁ ଧନ୍ୟବାଦ ଅର୍ପଣ କରି ସହାସ୍ୟ ବଦନରେ କହିଥିଲେ, ''ଭଗ୍ନୀ, ଆପଣଙ୍କର ଧନ ଓ ଆପଣଙ୍କୁ ଗ୍ରହଣ କରିବା ପାଇଁ ମୁଁ ଅକ୍ଷମ । କାରଣ ମୁଁ ଜଣେ ସନ୍ନ୍ୟାସୀ । ନିଜ ଦେହ, ମନ ଆତ୍ମା ସହ ସବୁକିଛି ମୋର ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସଙ୍କ ଚରଣଯୁଗଳରେ ସମର୍ପି ଦେଇଛି । ମୋର ବୋଲି କିଛି ଆଉ ମୋ ପାଖରେ ନାହିଁ । ତାହାବାଦେ, ମୁଁ ଜଣେ ସନ୍ନ୍ୟାସୀ; ବିବାହ ମୋ ପାଇଁ ଅର୍ଥହୀନ । ସଂସାରର ସମଗ୍ର ନାରୀଜାତି ମୋର ମା ।'' ସ୍ୱାମୀଜୀଙ୍କର ଅନାସକ୍ତ ଏବଂ ପ୍ରଲୋଭନ-ବିମୁଖ ମାନସିକତା ଦେଖି ରମଣୀ ତଟସ୍ଥ ହେଲେ । ସବୁ ସ୍ଥାନ ଓ ସବୁ ପରିବେଶରେ ସେ ଜଣେ ସଚ୍ଚା ସନ୍ନ୍ୟାସୀ । ଯେଉଁ ବ୍ୟକ୍ତି କାମିନୀ କାଞ୍ଚନର ଭୁବନମୋହିନୀ ମାୟାର ବହୁ ଊର୍ଦ୍ଧ୍ୱରେ, ତାଙ୍କୁ କିଏ ବା ଧରି ରଖିପାରିବ ? ସେ ତ ମୁକ୍ତ ପବନ ।

- ୧ -

*ମିଷ୍ଟର ରକ୍‌ଫେଲର୍, ଯେଉଁ ଧନସମ୍ପତ୍ତି ଆପଣ ଠୁଳ କରିଛନ୍ତି, ତାହା ଆପଣଙ୍କର ନୁହେଁ । ଆପଣ ଗୋଟିଏ ମାଧମ ଏବଂ ଆପଣଙ୍କ ମାଧମରେ ଅଗଣିତ ଦୁଃଖୀ, ଦରିଦ୍ରଙ୍କର କଲ୍ୟାଣ ପାଇଁ ଧନରାଶି ବିନିଯୋଗ କରିବାର ସୁଯୋଗ ପ୍ରଦାନ କରାଯାଇଛି । ଜଗତରେ ଭଲ କାମ କରିବା ଆପଣଙ୍କର ପରମ କର୍ତ୍ତବ୍ୟ । ଆପଣଙ୍କ ଦ୍ୱାରା ବହୁ ନିସ୍ୱ ଜନତା ଉପକୃତ ହେବେ । ବିଳମ୍ବ କରନ୍ତୁ ନାହିଁ ।*

ଚିକାଗୋ ସହରସ୍ଥ ଜନୈକ ଶୁଭେଚ୍ଛୁଙ୍କ ଗୃହରେ ସ୍ୱାମୀଜୀ ଅବସ୍ଥାନ କରୁଥିବା ସମୟରେ, ପ୍ରଖ୍ୟାତ ଶିଳ୍ପପତି **ଜୋହନ୍ ଡି. ରକ୍‌ଫେଲର୍**ଙ୍କ ସହ ସାକ୍ଷାତାଲୋଚନା ହୋଇଥିଲା । ସ୍ୱାମୀଜୀଙ୍କର ଅସାଧାରଣ ଜ୍ଞାନ ଓ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଜନୈକ ଶୁଭେଚ୍ଛୁଙ୍କଠାରୁ ରକ୍‌ଫେଲର୍ ବହୁ କଥା ଶୁଣିଥିଲେ । ତାଙ୍କର ବିଚକ୍ଷଣ ଧର୍ମୀୟ ବ୍ୟାଖ୍ୟା ଓ ତାର୍କିକ ଅନୁଶୀଳନ

Digitized by srujanika@gmail.com

ଅତି ଚମତ୍କାର ବୋଲି ସେ ତାଙ୍କର ସହଯୋଗୀ ବନ୍ଧୁଙ୍କଠାରୁ ବହୁବାର ଶୁଣିଥିଲେ । ସ୍ୱାମୀଜୀଙ୍କ ସହ ସାକ୍ଷାତ କରିବା ପାଇଁ ସେ ବି ତାଙ୍କୁ ଅନେକବାର ପରାମର୍ଶ ଦେଇଥିଲେ । କିନ୍ତୁ କାର୍ଯ୍ୟବ୍ୟସ୍ତତା ଭେଟିବାର ପଥ ପରିଷ୍କାର କରି ପାରି ନ ଥିଲା । ସେହି ସମୟରେ ରକ୍‌ଫେଲର୍ ବ୍ୟବସାୟ ଜଗତରେ ଶୀର୍ଷ ସ୍ଥାନରେ ଉପନୀତ ହୋଇ ନ ଥିଲେ, କିନ୍ତୁ ସେ ଥିଲେ ଜଣେ ପ୍ରଚଣ୍ଡ ଦୃଢ଼ମନା ଓ ପ୍ରଭାବଶାଳୀ ବ୍ୟକ୍ତି । ସେ କାହାରି ଦ୍ୱାରା ସହଜରେ ପ୍ରଭାବିତ ହୁଅନ୍ତି ନାହିଁ । ସ୍ୱାମୀଜୀଙ୍କୁ ସେ ସାକ୍ଷାତ କରିବାର ଇଚ୍ଛା ନ ଥିଲେ ବି, ଏକଦା ନିଜର ଏକ ଭାବାବେଗ ଦ୍ୱାରା ପ୍ରଭାବିତ ହୋଇ, ନିଜର ସହଯୋଗୀ ବନ୍ଧୁଙ୍କ ଦ୍ୱାରଦେଶରେ ଅଚାନକ ଉପସ୍ଥିତ ହେଲେ । ତାଙ୍କର ବନ୍ଧୁଙ୍କ ଗୃହରେ ସ୍ୱାମୀଜୀ ବାସ କରୁଥିଲେ । ସ୍ୱାମୀଜୀଙ୍କ କକ୍ଷର ଦ୍ୱାର ନିକଟରେ ସେ ପହଞ୍ଚିବାଉତ୍ତାରୁ, ଖାନସାମା ତାଙ୍କୁ ଗୃହ ଭିତରକୁ ପାଛୋଟି ନେଲେ ।

କକ୍ଷରେ ସ୍ୱାମୀଜୀ ପୁସ୍ତକ ଉପରେ ଦୃଷ୍ଟି ନିକ୍ଷେପ କରି ଅଧ୍ୟୟନରତ ଥିଲେ । ସତେକି ଗଭୀର ଅଧ୍ୟୟନରେ ମଗ୍ନ ! ରକ୍‌ଫେଲର୍ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ । କିନ୍ତୁ ସ୍ୱାମୀଜୀ ମସ୍ତକଉଠାଇ ତାଙ୍କୁ ଚାହିଁଲେ ନାହିଁ, ସ୍ୱାଗତୋକ୍ତି ତ ଦୂରର କଥା । କିୟତ୍‌ମୁହୂର୍ତ୍ତାନ୍ତେ, ସ୍ୱାମୀଜୀ ମସ୍ତକ ନତ କରି ରକ୍‌ଫେଲରଙ୍କର ଅତୀତ ଜୀବନ ଓ ସମସ୍ୟାବହୁଳ ଜୀବନ ସମ୍ବନ୍ଧରେ ଅନେକ କଥା କହିଗଲେ । ସତେକି ସେ ତାଙ୍କ ବିଷୟରେ ସବୁ ଜାଣିଛନ୍ତି ? ସ୍ୱାମୀଜୀ କହୁଥିଲେ, "ମିଷ୍ଟର ରକ୍‌ଫେଲର୍, ଯେଉଁ ଧନସମ୍ପତ୍ତି ଆପଣ ଠୁଳ କରିଛନ୍ତି, ତାହା ଆପଣଙ୍କର ନୁହେଁ । ଆପଣ ଗୋଟିଏ ମାଧ୍ୟମ ଏବଂ ଆପଣଙ୍କ ମାଧ୍ୟମରେ ଅଗଣିତ ଦୁଃଖୀ, ଦରିଦ୍ରଙ୍କର କଲ୍ୟାଣ ପାଇଁ ଧନରାଶି ବିନିଯୋଗ କରିବାର ସୁଯୋଗ ପ୍ରଦାନ କରାଯାଇଛି । ଜଗତରେ ଭଲ କାମ କରିବା ଆପଣଙ୍କର ପରମ କର୍ତ୍ତବ୍ୟ । ଆପଣଙ୍କ ଦ୍ୱାରା ବହୁ ନିଶ୍ୱ ଜନତା ଉପକୃତ ହେବେ । ବିଳମ୍ବ କରନ୍ତୁ ନାହିଁ ।"

ସ୍ୱାମୀଜୀଙ୍କର ଏତାଦୃଶ ମନ୍ତବ୍ୟ ରକ୍‌ଫେଲର୍‌ଙ୍କ ଭିତରେ ଦୁଇଟି ପ୍ରତିକ୍ରିୟା ସୃଷ୍ଟିକଲା । ପ୍ରଥମେ ସେ ଆଶ୍ଚର୍ଯ୍ୟ ହେଲେ ଯେ ଜଣେ ଅପରିଚିତ ହିନ୍ଦୁ ସନ୍ୟାସୀ ତାଙ୍କ ବିଷୟରେ ଅନେକ କଥା କିପରି ଜାଣିଲେ, ସେ କ'ଣ ସର୍ବଜ୍ଞ ? ଦ୍ୱିତୀୟରେ କ୍ରୋଧ ତାଙ୍କ ଭିତରେ ଗର୍ଜିଉଠିଲା - ଏଇଥିପାଇଁଯେ ଭଦ୍ରତା ଦୃଷ୍ଟିରୁ ତାଙ୍କୁ ସେ ସ୍ୱାଗତ କଲେ ନାହିଁ । ତାବାଦେ ଜଣେ ନଗଣ୍ୟ ସନ୍ୟାସୀ, ସାହସ ତ କମ୍ ନୁହେଁ । ଭିକାରିଟିଏ ପୁଣି ବିଶ୍ୱର ଜଣେ ଧନୀ ଶିଳ୍ପପତିଙ୍କୁ ପରାମର୍ଶ ଦେଉଛନ୍ତି ! ଧନ ସେ କ'ଣ କରିବେ, କେମିତି ଖର୍ଚ୍ଚ କରିବେ, ତାଙ୍କର କହିବାର କ'ଣ ଅଛି ? ଏଭଳି ଅନେକ ଗର୍ବ ଓ ଅହଙ୍କାର ଜନିତ ଚିନ୍ତାରେ ସେ ବୁଡ଼ିଗଲେ । ମନେ ମନେ ବିରକ୍ତ ହୋଇ, ସ୍ୱାମୀଜୀଙ୍କ ଆଡ଼କୁ ନ ଚାହିଁ, ତତ୍‌କ୍ଷଣାତ୍ ସେଠାରୁ କ୍ଷିପ୍ର ପାଦରେ ପ୍ରସ୍ଥାନ କଲେ । ସ୍ୱାମୀଜୀ ସେମିତି ଟେବୁଲସ୍ଥ ପୁସ୍ତକ ଉପରେ ମସ୍ତକ ଅବନତ କରି ପଠନରତ ଥିଲେ ।

ରକ୍‌ଫେଲର କ୍ରୋଧରେ ବଶବର୍ତ୍ତୀ ହୋଇ ସିନା ପଳାଇ ଆସିଲେ, କିନ୍ତୁ ତାଙ୍କ ଭିତରେ ଘଟିଲା ଏକ ଅସାଧାରଣ ପରିବର୍ତ୍ତନ । ଏକ ସପ୍ତାହାନ୍ତେ ଅନାହୂତ ଭାବେ ପୁନଶ୍ଚ ପହଞ୍ଚିଲେ

Digitized by srujanika@gmail.com

ସ୍ୱାମୀଜୀଙ୍କ କକ୍ଷର ଦ୍ୱାରଦେଶରେ । ପୂର୍ବବତ୍ ସ୍ୱାମୀଜୀ ନିଜ ଆସନରେ ଉପବିଷ୍ଟ, ଏବଂ ଲେଖନୀରେ ନିମଜ୍ଜିତ । ରକ୍‌ଫେଲର୍ ସିଧା ପଶିଲେ କକ୍ଷ ଭିତରକୁ ଏବଂ କାଗଜ ଖଣ୍ଡିଏ ଥୋଇଦେଲେ ତାଙ୍କ ଟେବୁଲ ଉପରେ । ସେହି ଖଣ୍ଡିକ କାଗଜରେ ଥିଲା ଏକ ଟ୍ରଷ୍ଟ ଗଠନ କରିବାର ଯୋଜନା । ଅଜସ୍ର ଅର୍ଥ ସେହି ଟ୍ରଷ୍ଟକୁ ଦାନ କରିବେ । ଅସହାୟ ବ୍ୟକ୍ତିଗଣ ସେହି ଅର୍ଥରେ ଉପକୃତ ହେବେ । ରକ୍‌ଫେଲର୍ ସ୍ୱାମୀଜୀଙ୍କୁ କହିଲେ, ''ମହାଶୟ, ଏଥର ଆପଣ ନିଶ୍ଚୟ ସନ୍ତୁଷ୍ଟ ହେବେ । ଆଶା କରେ ଯେ ମୋର ଏତାଦୃଶ ମହତ୍ କାର୍ଯ୍ୟ ନିମନ୍ତେ ଆପଣ ମୋତେ ଧନ୍ୟବାଦ ଦେବେ ।''

ତଥାପି ସ୍ୱାମୀଜୀ ତାଙ୍କୁ ନ ଚାହିଁ ଟେବୁଲ ଉପରୁ କାଗଜ ଖଣ୍ଡିକ ଉଠାଇ ପଢ଼ିଲେ । ଏବଂ କହିଲେ, ''ମହାଶୟ, ବରଂ ଆପଣ ମୋତେ ଧନ୍ୟବାଦ ଦେବା ଉଚିତ ।'' ସ୍ୱାମୀଜୀ ଅଧିକ କିଛି କହି ନ ଥିଲେ । ଏହି ସାକ୍ଷାତ ଅବଶ୍ୟ ସୃଷ୍ଟି କରିଥିଲା ''ରକ୍‌ଫେଲର୍ ଟ୍ରଷ୍ଟ'' ଯାହା ମାଧ୍ୟମରେ ଅସଂଖ୍ୟ ଅସହାୟ ଜନତା ଲାଭାନ୍ୱିତ ହୋଇ ଆସୁଛନ୍ତି । ଧନକୁବେର ଆମେରିକା ଦେଶର କାହିଁକି ବା କିଛି ତାଙ୍କୁ ପ୍ରଲୋଭିତ କରିବ ? ସେ ତ ସର୍ବତ୍ୟାଗୀ ସନ୍ୟାସୀ, ସବୁ ବିଷପାନ କରି ନୀଳକଣ୍ଠ ସାଜିଛନ୍ତି ଜଗତର କଲ୍ୟାଣ ପାଇଁ । ତାଙ୍କୁ କିଏ ବା ଧନ ଓ କ୍ଷମତାରେ ବଶୀଭୂତ କରିପାରିବ ?

ଆମେରିକାରେ ବାସ କରୁଥିବା ବେଳେ କାମିନୀ ଓ କାଞ୍ଚନ ଯେପରି ତାଙ୍କୁ ବଶୀଭୂତ କରିପାରି ନ ଥିଲା, ସେହିଭଳି ବିଦେଶୀ ରାଷ୍ଟ୍ରରେ ଭୟ ତାଙ୍କୁ କେବେ ବି ଆଚ୍ଛାଦିତ କରି ନ ଥିଲା । ସ୍ୱାମୀ ବିବେକାନନ୍ଦଙ୍କ ଅଭିଧାନରେ ଭୟ ଭଳି ଏକ ଶବ୍ଦର ସ୍ଥାନ ନାହିଁ । ତାଙ୍କର ନିର୍ଭୀକତା ଏବଂ ଜ୍ଞାନୋପଲବ୍ଧିକୁ ପରୀକ୍ଷା କରିବା ପାଇଁ କେତେକ ବ୍ୟକ୍ତି ଆଗେଇ ଆସିଲେ । ହିନ୍ଦୁଧର୍ମ ସମ୍ବନ୍ଧରେ ସ୍ୱାମୀଜୀ ଯାହା କହୁଛନ୍ତି ତାହା ତାଙ୍କର ମନଗଢ଼ା କଥା କିମ୍ବା କପୋଳୋକଳ୍ପିତ ଭାଷାର ଚାତୁର୍ଯ୍ୟ ଜାଣିବା ପାଇଁ ଏକ ଅଭିନବ କୌଶଳର ସୂତ୍ରପାତ କଲେ । ଆମେରିକାର ମଧ୍ୟ-ପଶ୍ଚିମ ଭାଗରେ ଅବସ୍ଥିତ ଏକ କ୍ଷୁଦ୍ର ସହରରେ ବକ୍ତୃତା ପ୍ରଦାନ ନିମନ୍ତେ ସେମାନେ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କଲେ । ସହରସ୍ଥ ଏକ ଛକ ଜାଗାରେ ସଭାର ଆୟୋଜନ କରାଯାଇଥିଲା । ସ୍ୱାମୀଜୀ ସେଠାରେ ପହଞ୍ଚିବାଉତ୍ତାରୁ, ଆୟୋଜକଗଣ କାଠରେ ନିର୍ମିତ ଏକ ମଞ୍ଚ ଉପରକୁ ତାଙ୍କୁ ପାଛୋଟି ନେଲେ । ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ ସେ ବକ୍ତୃତା ଦେବା ଆରମ୍ଭ କଲେ ଏବଂ କ୍ରମଶଃ ବକ୍ତୃତା ମଧ୍ୟରେ ସେ ହଜିଗଲେ । ଏହି ସମୟରେ ହଠାତ୍ ଏକ ପ୍ରଚଣ୍ଡ କାନଫଟା ବିସ୍ଫୋରଣରେ ସମଗ୍ର ସଭାସ୍ଥଳୀ ପ୍ରକମ୍ପିତ ହୋଇଉଠିଲା । ଉପସ୍ଥିତ ଶ୍ରୋତା ଭୟରେ ଗ୍ରୀବା ଉତ୍ତୋଳନ କରି ବିସ୍ଫୋରଣ ଅଭିମୁଖେ ଚାହିଁଲେ । କିନ୍ତୁ ସ୍ୱାମୀଜୀ ସ୍ଥିର ଓ ଶାନ୍ତ । ସେ ବକ୍ତୃତା ଦେଇ ଚାଲୁଥିଲେ । ସତେକି ସେଠାରେ କିଛି ଘଟିନାହିଁ । ଅନ୍ତର୍ଚେତନାର ଗଭୀରତମ ପ୍ରଦେଶରେ ତାଙ୍କର ମନ ସେତେବେଳେ ସମାସୀନ । ଏତାଦୃଶ ବିସ୍ଫୋରଣର ନାଟକ ଯେଉଁମାନେ ରଚନା କରିଥିଲେ, ସେମାନେ ବିଶ୍ୱବିଦ୍ୟାଳୟର ବୁଦ୍ଧିଜୀବୀ କର୍ମଚାରୀ

Digitized by srujanika@gmail.com

ଥିଲେ । ସ୍ୱାମୀଜୀଙ୍କର ଅବିଚଳିତ ମନାବସ୍ଥା ଓ ନିର୍ଭୀକତା ପରିଲକ୍ଷିତ କରି ସେମାନେ କେବଳ ତଟସ୍ଥ ହେଲେ ନାହିଁ ବରଂ ବକ୍ତୃତା ଅନ୍ତେ ସ୍ୱାମୀଜୀଙ୍କ ଚାରି ପାଖରେ ଘେରିଯାଇ ଗୋଟିଏ ସ୍ୱରରେ କହି ଉଠିଲେ, ''ଆପଣ ଜଣେ ବାସ୍ତବରେ ଭଲ ଲୋକ ।'' ସ୍ୱାମୀଜୀ ସେମାନଙ୍କୁ ଚାହିଁ ମୃଦୁ ମୃଦୁ ହସିଲେ କିନ୍ତୁ କିଛି କହିଲେ ନାହିଁ । କ'ଣ ବା କହିଥାନ୍ତେ ? ସଭ୍ୟ ପାଶ୍ଚାତ୍ୟ ଜଗତରେ ପ୍ରାଚ୍ୟବାସୀଙ୍କ ନିମନ୍ତେ ଏଭଳି ବର୍ବରତା ପ୍ରଦର୍ଶନ କରିବା ନୂଆ ନୁହେଁ ବୋଲି ସେ ତ ପୂର୍ବରୁ ଭଲଭାବେ ଜାଣିଛନ୍ତି ।

- ୨ -

*ମୁଁ କେବଳ ଖ୍ରୀଷ୍ଟଧର୍ମର ଦୋଷତ୍ରୁଟିକୁ କଠୋର ଭାଷାରେ ଭର୍ତ୍ସନା କରୁଛି, ଯୀଶୁଖ୍ରୀଷ୍ଟ ଓ ଖ୍ରୀଷ୍ଟଧର୍ମକୁ ନୁହେଁ, ହଁ, ମୁଁ ଜଣେ ସରଳ ବ୍ୟକ୍ତି । ମୁଁ ଆପଣମାନଙ୍କୁ ସତ୍ୟ କହିବାକୁ ଚାହେଁ । ଆପଣମାନଙ୍କୁ ମୁଁ ଖୋସାମତି କରିବା ପାଇଁ ଏଠାକୁ ଆସିନାହିଁ, ଏହା ମୋର ବ୍ୟବସାୟ ନୁହେଁ । ମୋର ଯଦି ସେହିପ୍ରକାର ଉଦ୍ଦେଶ୍ୟ ଥା'ନ୍ତା, ତେବେ ନିୟୁର୍କର ଫିଫ୍‌ଥ୍ ଆଭେନ୍ୟୁରେ ଏକ ଅତ୍ୟାଧୁନିକ ଗୀର୍ଜା ଖୋଲିଥା'ନ୍ତି ।*

ଆମେରିକାର ପ୍ରାଚୁର୍ଯ୍ୟଶାଳୀ ସଭ୍ୟତା ଭିତରେ ବର୍ବରତା ଲୁଚି ରହିଛି ବୋଲି ସ୍ୱାମୀଜୀଙ୍କୁ ଅଜଣା ନ ଥିଲା । ସେମାନଙ୍କର ବର୍ବରତା ବିଭିନ୍ନ ରୂପ ଓ ଠାଣିରେ ପ୍ରକାଶିତ ହେଉଥିଲା । ଏହି ବର୍ବରତାର ବହୁରୂପ ଭିତରୁ ବିଦ୍ରୂପ ଏକ ରୂପ । ବିଦ୍ରୂପର କରାଳ ରୂପ ସେ ବହୁବାର ଅଙ୍ଗେ ନିଭେଇଛନ୍ତି କିନ୍ତୁ ଧୈର୍ଯ୍ୟଚ୍ୟୁତ କେବେ ହୋଇନାହାନ୍ତି । ଭାରତରେ ଅସ୍ପୃଶ୍ୟ ଯେପରି ଏକ ସାମାଜିକ ବ୍ୟାଧି, ସେପରି ଆମେରିକାରେ ବର୍ଣ୍ଣବୈଷମ୍ୟ । କଳା-ଗୋରା ଭେଦଭାବରେ ସଭ୍ୟ ଆମେରିକା ଜର୍ଜରିତ । ସ୍ୱାମୀଜୀଙ୍କର ଦେହରଙ୍ଗ ଆମେରିକୀୟଙ୍କ ଭଳି ଶ୍ୱେତବର୍ଣ୍ଣ ହୋଇ ନ ଥିବାରୁ, କେତେକ ଲୋକ ତାଙ୍କୁ ନିଗ୍ରୋ ଭାବି ହୋଟେଲରେ ରହିବା ପାଇଁ ଅନୁମତି ନେଉ ନ ଥିଲେ । ଏକଦା ଜଣେ ନିଗ୍ରୋ କୁଲି, ସ୍ୱାମୀଜୀଙ୍କୁ ଏକ ସଭାରେ ସମ୍ବର୍ଦ୍ଧିତ ହେଉଥିବାର ଦେଖି, ତାଙ୍କ ନିକଟକୁ ଗର୍ବ ସହକାରେ ପହଞ୍ଚି କହିଲେ, ''ସ୍ୱାମୀଜୀ, ମୁଁ ବାସ୍ତବରେ ଆଜି ଗର୍ବିତ, ଆମ ଭିତରୁ ଆଜି ଆପଣ ଜଣେ ମହାନ୍ ବ୍ୟକ୍ତି, ଲୋକେ ଆପଣଙ୍କୁ ସମ୍ମାନ ଦେଉଛନ୍ତି । ସେଥିପାଇଁ ଆପଣଙ୍କ ସହ ମୁଁ କରମର୍ଦ୍ଦନ କରିବାକୁ ଚାହେଁ ।'' ଉକ୍ତ ନିଗ୍ରୋଙ୍କର ଆନନ୍ଦ ପରିଲକ୍ଷିତ କରି ସ୍ୱାମୀଜୀ ଭାବବିହ୍ୱଳିତ ହୋଇ କରତାଳି କଲେ ଏବଂ ଆନ୍ତରିକତା ସହକାରେ ତାଙ୍କ ସହ କରମର୍ଦ୍ଦନ କରି ବାଷ୍ପରୁଦ୍ଧ କଣ୍ଠରେ କହିଲେ, ''ଭାଇ, ତୁମକୁ ମୋର ଅଶେଷ ଧନ୍ୟବାଦ ।''

ରାସ୍ତାରେ ଚାଲିଯାଉଥିବା ସମୟରେ ତାଙ୍କର ବେଶଭୂଷା ଦେଖି କିଏ ତାଙ୍କର ପଗଡ଼ି ଟାଣି ଦେଇଛି ତ, ସଭାରେ ଭାଷଣ ଦେବା ପୂର୍ବରୁ, ପ୍ରତୀକ୍ଷା କକ୍ଷରେ ଭଙ୍ଗା ଚେୟାରଟିଏ

Digitized by srujanika@gmail.com

ବସିବା ପାଇଁ ତାଙ୍କୁ ଦେଇଛି । ତାଙ୍କର ବକ୍ତୃତା ଶୁଣି କିଏ ତାଙ୍କୁ ପାପୀ ବୋଲି ସମ୍ବୋଧିତ କରି ତିରସ୍କାର କରିଛି ତ, କିଏ ତାଙ୍କୁ ନିଗ୍ରୋ ଭାବି ତାଙ୍କର ଜିନିଷପତ୍ର ହୋଟେଲରୁ ବାହାରକୁ ଫୋପାଡ଼ି ଦେଇଛି । ଏତାଦୃଶ ବର୍ଣ୍ଣବୈଷମ୍ୟ ନୀତିକୁ ତାଚ୍ଛଲ୍ୟ କରି ସ୍ୱାମୀଜୀ କହିଥିଲେ ''ମୁଁ ଯେତିକି ମାତ୍ରାରେ ମୋର ଗୌରବର୍ଣ୍ଣ ଆର୍ଯ୍ୟ ପୂର୍ବପୁରୁଷଙ୍କଠାରେ କୃତଜ୍ଞ, ସେତିକି ମାତ୍ରାରେ ମୋ ଲୋହିତବର୍ଣ୍ଣ ମଙ୍ଗୋଲିୟ ଓ କୃଷ୍ଣବର୍ଣ୍ଣ ନିଗ୍ରୋ ପୂର୍ବପୁରୁଷଙ୍କ ନିକଟରେ କୃତଜ୍ଞ ।'' ସମସ୍ତ ପ୍ରକାର ବିଦ୍ରୂପ ଓ ପରିହାସକୁ ସେ ସହ୍ୟ କରି ନେଇଥିବାର ଦେଖି ତାଙ୍କର ଜଣେ ଆମେରିକୀୟ ଶିଷ୍ୟ କହିଥିଲେ, ''ସ୍ୱାମୀଜୀ, କିଛି ଲୋକ ଆପଣଙ୍କୁ ନିଗ୍ରୋ ବୋଲି ଭାବୁଛନ୍ତି । ଆପଣ କାହିଁକି ସେମାନଙ୍କୁ ନିଜର ପରିଚୟ ପ୍ରଦାନ କରୁନାହାଁନ୍ତି ?'' ସ୍ୱାମୀଜୀ କହିଲେ, ''କ'ଣ ହେଲା ? ଅନ୍ୟଜଣଙ୍କୁ ତଳେ ପକାଇ ମୁଁ କ'ଣ ଉପରକୁ ଉଠିବି ? ସେଥିପାଇଁ ମୁଁ ଏହି ପୃଥିବୀପୃଷ୍ଠକୁ ଆସିନାହିଁ ।''

ଖ୍ରୀଷ୍ଟଧର୍ମୀ ପାଦ୍ରୀ ତାଙ୍କୁ ଘୃଣା ଦୃଷ୍ଟିରେ ଦେଖି ଅକଥନୀୟ ଚରିତ୍ର ସଂହାର ପ୍ରଚାର କାର୍ଯ୍ୟରେ ନିମଗ୍ନ ରହିଥିଲେ ମଧ, ବହୁ ଖ୍ରୀଷ୍ଟଧର୍ମୀ ପାଦ୍ରୀ ତାଙ୍କୁ ଗୀର୍ଜାରେ ବକ୍ତୃତା ଦେବାପାଇଁ ଆମନ୍ତ୍ରଣ କରୁଥିଲେ । ସ୍ୱାମୀଜୀ ସ୍ୱୟଂ ନୀଚମନା ଧର୍ମାନ୍ଧଙ୍କୁ କଠୋର ଭାଷାରେ ଭତ୍ସନା କରୁଥିଲେ କିନ୍ତୁ ଯୀଶୁ ଓ ତାଙ୍କର ବାଣୀ ପ୍ରତି ଥିଲା ଅପ୍ରତିହତ ସମ୍ମାନ ଓ ଭକ୍ତି । ସ୍ୱାମୀଜୀଙ୍କ ଏମନ୍ତ ସ୍ୱଭାବ ପରିଲକ୍ଷିତ କରି ଜଣେ ପ୍ରଖ୍ୟାତ ସମାଦୃତ ପାଦ୍ରୀ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ, ''ସ୍ୱାମୀଜୀ, ଆପଣ ଜଣେ ହିନ୍ଦୁ କିନ୍ତୁ ଯୀଶୁଖ୍ରୀଷ୍ଟ ଓ ତାଙ୍କ ବାଣୀକୁ ଆପଣ ସୁନ୍ଦରଭାବେ ବୁଝିପାରିଛନ୍ତି । ଅବଶ୍ୟ ଏହା ବଡ଼ ଆଶ୍ଚର୍ଯ୍ୟ ।'' ସ୍ୱାମୀଜୀ ତତ୍‌କ୍ଷଣାତ୍ ଉତ୍ତର ଦେଲେ ''କାହିଁକି, ଯୀଶୁଖ୍ରୀଷ୍ଟ ଥିଲେ ପ୍ରାଚ୍ୟବାସୀ ! ତେଣୁ ପ୍ରାଚ୍ୟବାସୀମାନେ ସହଜରେ ଏବଂ ଠିକ୍ ଭାବରେ ତାଙ୍କୁ ବୁଝିପାରିବେ । ମୁଁ କେବଳ ଖ୍ରୀଷ୍ଟଧର୍ମର ଦୋଷତ୍ରୁଟିକୁ କଠୋର ଭାଷାରେ ଭର୍ତ୍ସନା କରୁଛି, ଯୀଶୁଖ୍ରୀଷ୍ଟ ଓ ଖ୍ରୀଷ୍ଟଧର୍ମକୁ ନୁହେଁ, ହଁ, ମୁଁ ଜଣେ ସରଳ ବ୍ୟକ୍ତି । ମୁଁ ଆପଣମାନଙ୍କୁ ସତ୍ୟ କହିବାକୁ ଚାହେଁ । ଆପଣମାନଙ୍କୁ ମୁଁ ଖୋସାମତି କରିବା ପାଇଁ ଏଠାକୁ ଆସିନାହିଁ; ଏହା ମୋର ବ୍ୟବସାୟ ନୁହେଁ । ମୋର ଯଦି ସେହିପ୍ରକାର ଉଦ୍ଦେଶ୍ୟ ଥା'ନ୍ତା, ତେବେ ନିୟୁର୍କସ୍ଥ ଫିଫ୍‌ଥ୍ ଆଭେନ୍ୟୁରେ ଏକ ଅତ୍ୟାଧୁନିକ ଗୀର୍ଜା ଖୋଲିଥା'ନ୍ତି । ଆପଣମାନେ ସମସ୍ତେ ମୋର ସନ୍ତାନ । ଆପଣମାନଙ୍କର ଭ୍ରମ, ତ୍ରୁଟି, ଦୁର୍ବଳତା ଓ ଅହଙ୍କାର ଦର୍ଶାଇ, ଈଶ୍ୱରଙ୍କ ପଥରେ ଗମନ କରିବା ପାଇଁ ଆପଣମାନଙ୍କର ଆତ୍ମାକୁ ମୁଁ ପ୍ରଜ୍ଜ୍ୱଳିତ କରିବାକୁ ଚାହେଁ ।'' ସ୍ୱାମୀଜୀଙ୍କର ଆଲୋକିତ ଶବ୍ଦର ଝଙ୍କାର ଉକ୍ତ ପାଦ୍ରୀ ମହାଶୟଙ୍କର ଚେତନାକୁ ସ୍ପର୍ଶ କଲା ।

ସ୍ୱାମୀଜୀଙ୍କର ସ୍ପଷ୍ଟବାଦିତା ଏବଂ ଅହଙ୍କାରଶୂନ୍ୟ ସମାଲୋଚନା ଆମେରିକାର ଧର୍ମଜଗତରେ ଚହଳ ସୃଷ୍ଟି କଲା । ସମସ୍ତ ସମ୍ବାଦପତ୍ରର ପ୍ରଥମ ପୃଷ୍ଠା ତାଙ୍କର ବକ୍ତୃତାରେ ବିମଣ୍ଡିତ ହେଲା । ସାମ୍ବାଦିକ ଓ ସମ୍ବାଦପତ୍ରର ସମ୍ପାଦକ ମାନେ ତାଙ୍କୁ ଘେରିଯାଇ, ତାଙ୍କ ଜୀବନର ଲକ୍ଷ୍ୟ, ହିନ୍ଦୁଧର୍ମ ଓ ଦର୍ଶନ, ପାଶ୍ଚାତ୍ୟ ସଭ୍ୟତା ପ୍ରତି ତାଙ୍କର ଦୃଷ୍ଟିକୋଣ, ଖାଦ୍ୟରେ ରୁଚି,

Digitized by srujanika@gmail.com

ଭାରତର ପ୍ରଥା ଓ ଲୋକଙ୍କର ଚାଲିଚଳନ, ଭାରତର ରାଜନୈତିକ ଅବସ୍ଥା ଏବଂ ବହୁ ବିଷୟବସ୍ତୁ ସମ୍ବନ୍ଧରେ ପ୍ରଶ୍ନ କଲେ । ସବୁ ପ୍ରଶ୍ନର ଉତ୍ତର ସମ୍ବାଦପତ୍ର ଗୁଡ଼ିକର ଶିରୋନାମାରେ ପ୍ରକାଶିତ ହେଲା । ତାଙ୍କର ଭୟଶୂନ୍ୟ ମନର ଗହନ କଥାର ପ୍ରକଟୀକରଣ ଆମେରିକୀୟବାସୀଙ୍କୁ କେବଳ ସ୍ତବ୍ଧ କଲାନାହିଁ ବରଂ ଏହି ପ୍ରାଚ୍ୟ ସନ୍ୟାସୀଙ୍କର ସ୍ପଷ୍ଟବାଦିତା ସେମାନଙ୍କୁ ବି ମୁଗ୍ଧ କଲା ।

- ୩ -

*କିନ୍ତୁ ଯେତେବେଳେ ଆପଣଙ୍କର ଧର୍ମଯାଜକ ଆମକୁ ସମାଲୋଚନା କରନ୍ତି, ସେତେବେଳେ ସେମାନେ ମନେରଖିବା ଉଚିତ, ଯଦି ସମଗ୍ର ଭାରତବର୍ଷର ଜନତା ଏକହୋଇ ଠିଆ ହେବ ଏବଂ ଭାରତ ମହାସାଗରର ଅତଳ ପ୍ରଦେଶରୁ କାଦୁଅ ଆଣି ସମଗ୍ର ପାଶ୍ଚାତ୍ୟ ରାଷ୍ଟ୍ର ସମୂହକୁ ଫୋପାଡ଼ିବେ, ଯାହା ଆପଣ ବର୍ତ୍ତମାନ ତା'ର କ୍ଷୁଦ୍ରାଂଶ ଆମ ଉପରକୁ ଫୋପାଡୁଛନ୍ତି, ତାହା ସେତେବେଳେ ଆଉ କ୍ଷୁଦ୍ର ହୋଇ ରହିବ ନାହିଁ । ତେବେ କେଉଁଥି ପାଇଁ ଆପଣ ଏହା କରୁଛନ୍ତି ?*

ଆମେରିକା ଭୂମିରେ ଠିଆ ହୋଇ, ଜଣେ ପ୍ରାଚ୍ୟ ସନ୍ୟାସୀ ଯିଏ ଖ୍ରୀଷ୍ଟଧର୍ମୀ ନୁହେଁ, ବରଂ ସେମାନଙ୍କର ନାକଟେକା ହିନ୍ଦୁ ସନ୍ୟାସୀ, ଏଭଳି ସ୍ପଷ୍ଟ ଭାଷାରେ ଆମେରିକା ରାଷ୍ଟ୍ରଧର୍ମକୁ ସର୍ବ ସମ୍ମୁଖରେ ସମାଲୋଚନା କରି ପାରିବେ, ତାହା ଭାବିଲେ ବର୍ତ୍ତମାନ ବି ଅବିଶ୍ୱାସ ଲାଗୁଛି । କିନ୍ତୁ ଏହା ସତ୍ୟ । ୧୮୯୪ ଫେବୃଆରୀରେ ଡେଟ୍ରୋଏଟ୍ ସହରରେ ସେ ଯେଉଁ ବକ୍ତୃତା ପ୍ରଦାନ କରିଥିଲେ, ତାହା ତାଙ୍କର ନିର୍ଭିକତା ଓ ସ୍ପଷ୍ଟବାଦିତାର ପରିଚାୟକ । ସେ କହିଥିଲେ, ''ଗୋଟିଏ ଜିନିଷ ମୁଁ ଆପଣମାନଙ୍କୁ କହିବି, ଏହା କୌଣସିପ୍ରକାର ନିର୍ଦ୍ଦୟ ସମାଲୋଚନା ବୋଲି ମୁଁ ମନେକରେ ନାହିଁ । ଆପଣମାନେ କିଛି ଲୋକଙ୍କୁ ପ୍ରଶିକ୍ଷଣ ଦେଉଛନ୍ତି, ଶିକ୍ଷିତ କରୁଛନ୍ତି, ବସ୍ତ୍ରପ୍ରଦାନ କରୁଛନ୍ତି, ଅର୍ଥ ବି ଦେଉଛନ୍ତି - କ'ଣ ପାଇଁ ? ସେମାନେ ମୋ ଦେଶକୁ ଆସିବେ, ଏବଂ ମୋର ପୂର୍ବପୁରୁଷ, ମୋ ଧର୍ମ ଏବଂ ମୋ ଦେଶର ସବୁକିଛିକୁ ଅଭିଶାପ ଦେବେ ଏବଂ ଗାଳିଦେବେ । ସେମାନେ ଆମ ମନ୍ଦିର ନିକଟରେ ପହଞ୍ଚିବେ ଏବଂ କହିବେ, ''ତୁମେ ପୌତ୍ତଳିକଗୁଡ଼ାକ, ତୁମେ ନର୍କକୁ ଯିବ । ... କିନ୍ତୁ ହିନ୍ଦୁ ନିରିହ ଓ ଶାନ୍ତ ସ୍ୱଭାବୀ; ସେ ହସିଦିଏ ଏବଂ ଚାଲିଯାଉଥିବା ସମୟରେ କହୁଥାଏ ''ଏହି ନିର୍ବୋଧଗୁଡ଼ାକ ସେମିତି ବକ୍‌ବକ୍ ହେଉଥାନ୍ତୁ'' । ତାହା ହିଁ ଆପଣଙ୍କ ଚିନ୍ତାଧାରା ।

ଆମକୁ ଗାଳି ଓ ଭର୍ତ୍ସିତ କରିବା ଲାଗି ପ୍ରଶିକ୍ଷଣ ଦେଉଥିବା ବ୍ୟକ୍ତିଗଣଙ୍କୁ ମୁଁ ଯଦି ଭଲ ଉଦ୍ଦେଶ୍ୟ ରଖି ସାମାନ୍ୟତମ ସମାଲୋଚନା କରେ, ତାହାଲେ କଥା ସରିଲା । ଆପଣମାନେ

Digitized by srujanika@gmail.com

ଡେଇଁପଡ଼ି ଚିତ୍କାର କରିବେ, ''ଆମକୁ ଛୁଅଁନାହିଁ, ଆମେ ଆମେରିକାବାସୀ, ଆମେ କେବଳ ପୃଥିବୀର ପୌତ୍ତଳିକ ଓ ବିଧର୍ମୀମାନଙ୍କୁ ସମାଲୋଚନା, ଅଭିଶାପ ଓ ଭର୍ତ୍ସନା କରିପାରିବୁ, କିନ୍ତୁ ଆମ ଦେହରେ କେହି ହାତ ଲଗାଇ ପାରିବେ ନାହିଁ, ଆମେ ସମ୍ବେଦନଶୀଳ ବୃକ୍ଷ ।'' ଆପଣମାନଙ୍କୁ ଯାହା ଭଲ ଲାଗେ, ତାହା କରନ୍ତୁ । କିନ୍ତୁ ଆମେ ଯେପରି ଜୀବନ ନିର୍ବାହ କରୁ, ସେଥିରେ ଆମେ ସନ୍ତୁଷ୍ଟ; ଯାହାହେଉ ଆମେ ଗୋଟିଏ ଜିନିଷରେ ଆପଣମାନଙ୍କ ଅପେକ୍ଷା ଭଲରେ ଅଛୁ - ତାହା ହେଲା - ଏଭଳି ଭୟଙ୍କର ଦ୍ରବ୍ୟ ଗିଳିବା ପାଇଁ ଆମର ପିଲାମାନଙ୍କୁ କେବେ ଆମେ ଶିକ୍ଷା ଦେଉନା :

''ଅବଶ୍ୟ ଯେଉଁଠି ପ୍ରତ୍ୟେକ **ବିସ୍ତୃତ ଦୃଶ୍ୟ** ଆମୋଦଦାୟକ, ସେଠାରେ ମନୁଷ୍ୟ କେବଳ ଦୁଷ୍ଟ । କିନ୍ତୁ ଯେତେବେଳେ ଆପଣଙ୍କର **ଧର୍ମଯାଜକ** ଆମକୁ ସମାଲୋଚନା କରନ୍ତି, ସେତେବେଳେ ସେମାନେ ମନେରଖିବା ଉଚିତ, ଯଦି ସମଗ୍ର ଭାରତବର୍ଷର ଜନତା ଏକହୋଇ ଠିଆ ହେବ ଏବଂ ଭାରତ ମହାସାଗରର ଅତଳ ପ୍ରଦେଶରୁ କାଦୁଅ ଆଣି ସମଗ୍ର ପାଶ୍ଚାତ୍ୟ ରାଷ୍ଟ୍ର ସମୂହକୁ ଫୋପାଡ଼ିବେ, ଯାହା ଆପଣ ବର୍ତ୍ତମାନ ତା'ର କ୍ଷୁଦ୍ରାଂଶ ଆମ ଉପରକୁ ଫୋପାଡୁଛନ୍ତି, ତାହା ସେତେବେଳେ ଆଉ କ୍ଷୁଦ୍ର ହୋଇ ରହିବ ନାହିଁ । ତେବେ କେଉଁଥି ପାଇଁ ଆପଣ ଏହା କରୁଛନ୍ତି ?

ପାଶ୍ଚାତ୍ୟ ରାଷ୍ଟ୍ରର କୌଣସି ବ୍ୟକ୍ତିଙ୍କୁ ଧର୍ମାନ୍ତରିତ କରିବା ପାଇଁ ଗୋଟିଏ ହେଲେ ଧର୍ମ ପ୍ରଚାରକ ଆମେ ପଠାଇଥିଲୁ କି ? ଆମେ ଆପଣଙ୍କୁ ସ୍ୱାଗତ ସର୍ବଦା କରିଥାଉ, କିନ୍ତୁ ଆମକୁ ନିଜ ଧର୍ମରେ ରହିବା ପାଇଁ ଅନୁମତି ଦିଅନ୍ତୁ । ଆପଣମାନେ ନିଜର ଧର୍ମକୁ ଆକ୍ରମଣାତ୍ମକ ବୋଲି ଘୋଷଣା କରନ୍ତି । ଆପଣମାନେ ଆକ୍ରମଣଶୀଳ, କିନ୍ତୁ ଆପଣ କେତେଜଣଙ୍କୁ ଧର୍ମାନ୍ତରିତ କରିଛନ୍ତି ? ବିଶ୍ୱର ପ୍ରତ୍ୟେକ ଛ'ଜଣ ବ୍ୟକ୍ତି ଚୀନବାସୀ, ଜଣେ ବୌଦ୍ଧଧର୍ମୀ; ତା'ପରେ ଜାପାନୀ, ତିବ୍ବତୀୟ ଓ ରୁଷୀୟ ଏବଂ ସାଇବେରିଆ ଏବଂ ବର୍ମା ଏବଂ ଥାଇଲେଣ୍ଡର ଅଧିବାସୀ ଅଛନ୍ତି; ଆପଣଙ୍କୁ ଏହା ଶୁଣିଲେ ରୁଚିକର ହେବନାହିଁ ଯେ ଖ୍ରୀଷ୍ଟୀୟ ନୈତିକତା, କାଥୋଲିକ୍ ଚର୍ଚ୍ଚ ଏବଂ ଅନେକ କିଛି ସେମାନଙ୍କ ପାଖରୁ ଆପଣ ଶିଖିଛନ୍ତି । ଏହା କିପରି ସମ୍ଭବ ହେଲା ? ବୁନ୍ଦାଏ ରକ୍ତପାତ ବିନା ? ଆପଣ ଯେତେ ବାହାସ୍ଫୋଟ ମାରିଲେ ବି ଏହା ସତ୍ୟ ଯେ ତରବାରୀ ବିନା ଖ୍ରୀଷ୍ଟଧର୍ମ ସଫଳ ହୋଇଛି କି ? ସମଗ୍ର ବିଶ୍ୱରେ ଗୋଟିଏ ସ୍ଥାନ ମୋତେ କୁହନ୍ତୁ ଯେଉଁଠି ତରବାରୀ ବିନା ଖ୍ରୀଷ୍ଟଧର୍ମ ସଫଳ ହେଇଛି । ଖ୍ରୀଷ୍ଟଧର୍ମର ସମଗ୍ର ଇତିହାସରେ ଗୋଟିଏ ସ୍ଥାନ ମୁଁ ଜାଣିବାକୁ ଚାହେଁ, ଦୁଇଟା ନୁହେଁ । ମୋତେ ଭଲଭାବରେ ଜଣା, ଆପଣଙ୍କର ପୂର୍ବପୁରୁଷଗଣ କିପରି ଧର୍ମାନ୍ତରିତ ହୋଇଥିଲେ । ସେମାନେ ବାଧହୋଇ ଧର୍ମାନ୍ତରିତ ହୋଇଥିଲେ, ଯେଉଁମାନେ ଚାପର ବଶବର୍ତ୍ତୀ ହୋଇ ନ ଥିଲେ, ସେମାନଙ୍କୁ ହତ୍ୟା କରାଯାଇଥିଲା ।

ସ୍ୱାମୀଜୀ ମଧ୍ୟ ସେଠାରେ ସୂଚାଇ ଦେଇଥିଲେ ଯେ ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକର ସେନାବାହିନୀ ଉଭୟ ଆକ୍ରମଣ ଏବଂ ଖ୍ରୀଷ୍ଟଧର୍ମ ପ୍ରଚାର ଏକା ସାଙ୍ଗରେ ଅନ୍ୟ ରାଷ୍ଟ୍ରଗୁଡ଼ିକ ଉପରେ

Digitized by srujanika@gmail.com

କରୁଥିଲେ । ପରାଜିତ ରାଷ୍ଟ୍ରରେ ନିଜର ଶାସନ ଓ ଧର୍ମପ୍ରଚାର କରୁଥିଲେ । ଅଧିକାଂଶ ଲୋକ ସାଂସାରିକ ପ୍ରଲୋଭନରେ ବଶବର୍ତ୍ତୀ ହୋଇ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିଲେ । ଏତାଦୃଶ ପରିସ୍ଥିତି ଉପରେ ନିଜର କଠୋର ମନ୍ତବ୍ୟ ପ୍ରକାଶ କରି ସ୍ୱାମୀଜୀ କହିଥିଲେ, ''ଏଭଳି ଜିନିଷ ଭାଙ୍ଗି ଚୁରମାର୍ ହୋଇଯାଏ, କାରଣ ସେଗୁଡ଼ିକ ବାଲି ଉପରେ ନିର୍ମିତ । ସେଗୁଡ଼ିକ ବହୁ ସମୟ ଧରି ତିଷ୍ଠି ରହିପାରିବ ନାହିଁ । ପ୍ରତ୍ୟେକ ବସ୍ତୁ ଯାହା ସ୍ୱାର୍ଥପରତା ଉପରେ ଆଧାରିତ, ଯାହା ଉଚ୍ଚ ପ୍ରତିଯୋଗିତା ମାଧମରେ ପ୍ରାପ୍ତ ଏବଂ ଯାହାର ଲକ୍ଷ୍ୟ ଉପଭୋଗ ନିମନ୍ତେ ଉଦ୍ଦିଷ୍ଟ ଆଜି ନୁହେଁ ତ କାଲି ତାହା ଭୁଷୁଡ଼ି ପଡ଼ିବ ହିଁ ପଡ଼ିବ । ଯଦି ଆପଣ ତିଷ୍ଠି ରହିବାକୁ ଚାହାଁନ୍ତି, ତେବେ ଯୀଶୁଖ୍ରୀଷ୍ଟଙ୍କ ନିକଟକୁ ଫେରିଯାଅ । ନା ଆପଣ ଖ୍ରୀଷ୍ଟଧର୍ମୀ ନା ଆପଣ ଏକ ରାଷ୍ଟ୍ର । ଯୀଶୁଙ୍କ ପାଖକୁ ଫେରିଯାଅ, ତାଙ୍କରି ନିକଟକୁ ପ୍ରତ୍ୟାବର୍ତ୍ତନ କର, ଯାହାଙ୍କର ମସ୍ତକ ରଖିବାକୁ କୌଣସି ସ୍ଥାନ ନାହିଁ । ବିଳାସବ୍ୟସନ ନାଁରେ ଆପଣଙ୍କ ଧର୍ମ ପ୍ରଚାରିତ । ଭାଗ୍ୟର କି ବିଡ଼ମ୍ବନା । ଯଦି ବଞ୍ଚିବାକୁ ଚାହଁ, ବର୍ତ୍ତମାନ ପଥର ବିପରୀତ ଦିଗରେ ଗମନ କର । ଏକାସଙ୍ଗରେ ତୁମେ ଈଶ୍ୱର ଓ ଧନକୁବେରଙ୍କର ସେବା କରିପାରିବ ନାହିଁ । ସମସ୍ତ ଏହି ସମୃଦ୍ଧି - କ'ଣ ଖ୍ରୀଷ୍ଟଙ୍କ ପାଖରୁ ଆସିଛି ? ନିଶ୍ଚିତ ଭାବରେ ଖ୍ରୀଷ୍ଟ ଏଭଳି ଧାର୍ମିକ ବିରୁଦ୍ଧାଚରଣ ମତକୁ ସ୍ୱୀକାର କରି ନ ଥାନ୍ତେ । ଏହି ଆଶ୍ଚର୍ଯ୍ୟଜନକ ସମୃଦ୍ଧି ସହିତ ଖ୍ରୀଷ୍ଟଙ୍କର ଆଦର୍ଶକୁ ଯଦି ଆପଣେଇ ନେବେ, ତେବେ ଭଲ କଥା, କିନ୍ତୁ ଯଦି ନ କରିପାରିବେ, ତେବେ ତାଙ୍କ ନିକଟକୁ ଫେରିଯିବା ଭଲ ହେବ ଏବଂ ଏହିସବୁ ଛଳନା ତ୍ୟାଗକର । ଖ୍ରୀଷ୍ଟଙ୍କ ବିନା ରାଜପ୍ରାସାଦରେ ରହିବା ଅପେକ୍ଷା ଖ୍ରୀଷ୍ଟଙ୍କ ନିକଟରେ ଜୀର୍ଣ୍ଣଶୀର୍ଣ୍ଣ ବସ୍ତ୍ରରେ ରହିବା ପାଇଁ ପ୍ରସ୍ତୁତ ହୋଇଯାଅ ।

- ୪ -

*ଭାରତବର୍ଷର ଯେପରି ମୁଁ ଜଣେ ମନୁଷ୍ୟ ଠିକ୍ ସେପରି ସମଗ୍ର ବିଶ୍ୱର ମଧ୍ୟ, ସେଥିରେ କୌଣସି ପ୍ରତାରଣା ନାହିଁ । ମୋ ଉପରେ କେଉଁ ରାଷ୍ଟ୍ରର ସ୍ୱତନ୍ତ୍ର ଅଧିକାର ରହିଛି ? ମୁଁ କେବେ କୌଣସି ରାଷ୍ଟ୍ରର ଦାସ ହୋଇପାରିବି ? ମନୁଷ୍ୟ କିମ୍ବା ଈଶ୍ୱର କିମ୍ବା ରାକ୍ଷସ ଅପେକ୍ଷା ଏକ ଉଚ୍ଚତମ ଶକ୍ତି ମୋ ପଶ୍ଚାତରେ ରହିଛି ବୋଲି ମୁଁ ଦେଖିପାରୁଛି । ମୁଁ କାହାର ସାହାଯ୍ୟ ଚାହେଁ ନାହିଁ । ଜୀବନସାରା ଅନ୍ୟମାନଙ୍କୁ ମୁଁ ସାହାଯ୍ୟ କରିଆସୁଛି । ମନେରଖ, ମୁଁ କାହାର ନିର୍ଦ୍ଦେଶରେ କାର୍ଯ୍ୟ କରେନାହିଁ, ମୋ ପାଖରେ ଉଗ୍ର ସ୍ୱଦେଶଭକ୍ତି ନାହିଁ । ମୁଁ କୌଣସି ରାଜନୀତିରେ ବିଶ୍ୱାସ କରେନାହିଁ । ବିଶ୍ୱରେ ଈଶ୍ୱର ଏବଂ ସତ୍ୟ କେବଳ ରାଜନୀତି, ଅନ୍ୟ ସବୁ ତୁଚ୍ଛ ପଦାର୍ଥ ।*

ସ୍ୱାମୀଜୀଙ୍କର ଏଭଳି ଅନର୍ଗଳ ବକ୍ତୃତା ଅବଶ୍ୟ କେତେକ ଖ୍ରୀଷ୍ଟଧର୍ମ ପ୍ରଚାରକଙ୍କୁ ଭୟଙ୍କର ଭାବେ କ୍ରୋଧାନ୍ୱିତ କରିଥିଲା, ଯାହାଫଳରେ ସବୁଦିଗରୁ ସେମାନେ ତାଙ୍କ ନାମରେ କୁତ୍ସାରଟନା

Digitized by srujanika@gmail.com

କରି ତାଙ୍କୁ ଜନସାଧାରଣ ସମ୍ମୁଖରେ ଘୃଣିତ ଓ ଅପମାନିତ କରିଥିଲେ, ତଥାପି ଆମେରିକାବାସୀ ସେମାନଙ୍କର କୁତ୍ସାରଟନା ଓ ଅପପ୍ରଚାରରେ ପ୍ରଭାବିତ ନ ହୋଇ ସ୍ୱାମୀଜୀଙ୍କ ଭିତରେ ସତ୍ୟର ପ୍ରକଟନକୁ ହୃଦୟଙ୍ଗମ କରି ପାରିଥିଲେ । ଭାରତବର୍ଷର ଧାର୍ମିକ ଓ ସାଂସ୍କୃତିକ ଚିତ୍ର ଯାହା ପୂର୍ବରୁ ଅତି ବୀଭତ୍ସ ଭାବେ ହୋଇଥିଲା ପ୍ରଚାରିତ, ତାହାର ବାସ୍ତବ ଚିତ୍ର ସ୍ୱାମୀଜୀଙ୍କ ନିଃସୃତ ବାକ୍ୟରେ ପ୍ରଥମଥର ପ୍ରକଟିତ ଦେଖି ଓ ବୁଝିପାରି ଆମେରିକାବାସୀଙ୍କର ମନରେ ଭାରତୀୟତା ଓ ହିନ୍ଦୁଧର୍ମ ବିପକ୍ଷରେ ନେଶି ହୋଇଥିବା ଭୁଲ ବୁଝାମଣାର ଛାପ ବିଲୁପ୍ତ ହେଲା । ଏଠାରେ ସ୍ୱାମୀଜୀ ଜଣେ ବ୍ୟକ୍ତି ନୁହେଁ ବରଂ ସତ୍ୟର ପ୍ରକାଶନ । ଊନବିଂଶ ଶତାବ୍ଦୀର ଆମେରୀକାବାସୀଙ୍କର ହିନ୍ଦୁଧର୍ମ ସମ୍ବନ୍ଧରେ ଭ୍ରାନ୍ତ ଓ କପୋଳକଳ୍ପିତ ଧାରଣାର ଅନ୍ଧକାରକୁ ଏହି ସତ୍ୟ ପ୍ରକାଶନ ଆଲୋକିତ କରିଦେଲା । ଏହାର ସତ୍ୟତା ସ୍ୱାମୀଜୀଙ୍କର ଏକ ପତ୍ରରେ (ମେ, ୧୮୯୫) ସ୍ପଷ୍ଟ ପ୍ରମାଣିତ । ମୁଁ ଏଭଳି ଜଣେ ମଣିଷ ଯିଏ ନିଜର ମାତୃଭୂମିକୁ ଏଠାରେ ସାହସର ସହିତ ପ୍ରତିରକ୍ଷଣ କରୁଛି । ସେମାନଙ୍କୁ ମୁଁ ଏଭଳି ଧାରଣା ପ୍ରଦାନ କରିଛି, ଯାହା ସେମାନେ କସ୍ମିନକାଳେ ଜଣେ ହିନ୍ଦୁ ପାଖରୁ ଆଶା କରି ନ ଥିଲେ ।'' ଏହା ବିବେକାନନ୍ଦଙ୍କର ଭାଷା ନୁହେଁ, ସ୍ୱୟଂ ଈଶ୍ୱରଙ୍କର ।

ଯେଉଁ ସଭାଗୁଡ଼ିକରେ ସେ ବକ୍ତୃତା ପ୍ରଦାନ କରୁଥିଲେ, ସେଠାରେ ଶହ ଶହ ନୁହେଁ, ବେଳେବେଳେ ହଜାର ହଜାର ସଂଖ୍ୟାରେ ଜନତା ଏକତ୍ରିତ ହେଉଥିଲେ ଏହି ପ୍ରଫେଟ୍‌ଙ୍କର ଦିବ୍ୟ ସତ୍ୟରେ ପରିପୂର୍ଣ୍ଣ ଶବ୍ଦ ସ୍ରୋତରେ ଅବଗାହନ କରିବାକୁ । ଖ୍ରୀଷ୍ଟଧର୍ମୀ ପ୍ରଚାରକଙ୍କର ଚିରାଚରିତ ବକ୍ତୃତା ଶୁଣି ଶୁଣି ସେମାନଙ୍କର କାନ ବଧିରା ପଡ଼ିଯାଇଥିଲା, କିନ୍ତୁ ସ୍ୱାମୀଜୀଙ୍କର ବାଣୀ ସେମାନଙ୍କର ଆତ୍ମାକୁ ଜୀବନ୍ତ ଓ ଚଳଚଞ୍ଚଳ କେବଳ କଲାନାହିଁ ବରଂ ସେମାନଙ୍କର ଆଧାତ୍ମିକ ଆଶା ପୂରଣ କଲା । ତାଙ୍କର ଚୁମ୍ବକୀୟ ଶକ୍ତି ଏବଂ ବକ୍ତୃତା ଉପସ୍ଥାପନ କରିବାର କଳା ଭିତରେ ପରମ ସତ୍ୟ ପ୍ରକଟିତ । ତେଣୁ ତାଙ୍କ ବକ୍ତୃତାରେ ପରମ ଆନନ୍ଦ ଭରି ରହିଥିଲା ଯାହା ଶ୍ରୋତାମାନଙ୍କର ଅନ୍ତରାତ୍ମାକୁ ଆଲୋକିତ କରିପାରୁଥିଲା । ସେ ଥିଲେ ଜଣେ ଶାଶ୍ୱତ ସ୍ୱର । ନିଜର ଜନ୍ମଭୂମି ଭାରତବର୍ଷକୁ ଅତ୍ୟଧିକ ଭଲ ପାଉଥିଲେ କିନ୍ତୁ ଭାରତବର୍ଷରେ ରାଷ୍ଟ୍ରପ୍ରେମ ନିଗଡ଼ ଭିତରେ ସେ ଆଦୌ ବନ୍ଦୀ ନ ଥିଲେ । ସମଗ୍ର ମାନବ ଜାତିର ପ୍ରତିନିଧି ଭାବେ ସର୍ବଦା ସେମାନଙ୍କର ହିତ ନିମନ୍ତେ ଚଳଚଞ୍ଚଳ ଥିଲେ । ହିନ୍ଦୁ ରକ୍ଷଣଶୀଳବାଦୀଙ୍କ ଦ୍ୱାରା ସମାଲୋଚିତ ହେବା ପରିପ୍ରେକ୍ଷୀରେ ସେ ନିଜର ମନକଥା ଖୋଲି କହିଥିଲେ :

''ତୁମେ କ'ଣ ଭାବୁଛ ଯେ ଜାତିପ୍ରଥା ଉତ୍ପୀଡ଼ିତ ଅନ୍ଧବିଶ୍ୱାସ, ନିର୍ଦ୍ଦୟତା, ଛଳନାପୂର୍ଣ୍ଣ ନାସ୍ତିକ କାପୁରୁଷତାର ଶିକ୍ଷିତ ହିନ୍ଦୁମାନଙ୍କ ମଧ୍ୟରୁ ଜଣେ ହୋଇ ମୁଁ ଜନ୍ମ ହୋଇଛି ଏବଂ ସେହି କଳଙ୍କମୟ ପରିସ୍ଥିତିରେ ମୃତ୍ୟୁବରଣ କରିବି ? ମୁଁ କାପୁରୁଷତାକୁ ଘୃଣା କରେ । କାପୁରୁଷ ଓ ଭୟାଳୁଙ୍କ ସହ ମୋର କୌଣସି ସମ୍ପର୍କ ନାହିଁ । ଭାରତବର୍ଷର ଯେପରି ମୁଁ ଜଣେ ମନୁଷ୍ୟ ଠିକ୍ ସେପରି ସମଗ୍ର ବିଶ୍ୱର ମଧ୍ୟ, ସେଥିରେ କୌଣସି ପ୍ରତାରଣା ନାହିଁ । ମୋ ଉପରେ କେଉଁ ରାଷ୍ଟ୍ରର

Digitized by srujanika@gmail.com

ସ୍ୱତନ୍ତ୍ର ଅଧିକାର ରହିଛି ? ମୁଁ କେବେ କୌଣସି ରାଷ୍ଟ୍ରର ଦାସ ହୋଇପାରିବି ? ମନୁଷ୍ୟ କିମ୍ବା ଈଶ୍ୱର କିମ୍ବା ରାକ୍ଷସ ଅପେକ୍ଷା ଏକ ଉଚ୍ଚତମ ଶକ୍ତି ମୋ ପଶ୍ଚାତରେ ରହିଛି ବୋଲି ମୁଁ ଦେଖିପାରୁଛି । ମୁଁ କାହାର ସାହାଯ୍ୟ ଚାହେଁ ନାହିଁ । ଜୀବନସାରା ଅନ୍ୟମାନଙ୍କୁ ମୁଁ ସାହାଯ୍ୟ କରିଆସୁଛି । ମନେରଖ, ମୁଁ କାହାର ନିର୍ଦ୍ଦେଶରେ କାର୍ଯ୍ୟ କରେନାହିଁ, ମୋ ପାଖରେ ଉଗ୍ର ସ୍ୱଦେଶଭକ୍ତି ନାହିଁ । ମୁଁ କୌଣସି ରାଜନୀତିରେ ବିଶ୍ୱାସ କରେନାହିଁ । ବିଶ୍ୱରେ ଈଶ୍ୱର ଏବଂ ସତ୍ୟ କେବଳ ରାଜନୀତି, ଅନ୍ୟ ସବୁ ତୁଚ୍ଛ ପଦାର୍ଥ ।

ସ୍ୱାମୀଜୀ ସମସ୍ତ ପ୍ରକାର କୁତ୍ସାରଟନା ଓ ବିରୋଧ ସତ୍ତ୍ୱେ ଅବିଚଳିତ ଭାବେ ଆମେରିକାର ସହର ଓ ପଲ୍ଲୀରେ ନିଜର ମାନସଦର୍ଶନ ଓ ବ୍ରତର ପ୍ରକଟୀକରଣ କାର୍ଯ୍ୟରେ ଥିଲେ ନିମଜ୍ଜିତ । ତାଙ୍କର ଭାଷା ଅତ୍ୟନ୍ତ ଦାର୍ଶନିକ, ଧାର୍ମିକ ଓ ଆଧ୍ୟାତ୍ମିକ ହୋଇଥିବାରୁ ବହୁ ବିଖ୍ୟାତ ବ୍ୟକ୍ତି ତାଙ୍କ ନିକଟକୁ ଆସୁଥିଲେ । ଏପରିକି ତାଙ୍କଠାରୁ ବ୍ୟକ୍ତିଗତ ସ୍ତରରେ ଉପଦେଶ ଓ ପରାମର୍ଶ ଗ୍ରହଣ କରୁଥିଲେ । ଧର୍ମର ଶାଶ୍ୱତ ସତ୍ୟ ପ୍ରଚାର କରିବା ଏବଂ ଜିଜ୍ଞାସୁଙ୍କୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ କରିବା ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ବହୁଶୀଘ୍ର ସତ୍ୟନିଷ୍ଠ, ଜିଜ୍ଞାସୁ, ଆଧ୍ୟାତ୍ମିକ, ନିଷ୍କଳଙ୍କ ଆମେରିକୀୟ ବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବାକୁ ଆଗେଇ ଆସିଲେ । ସେହି ଆଧ୍ୟାତ୍ମିକ ଜିଜ୍ଞାସୁମାନଙ୍କୁ ସ୍ୱୟଂ ପ୍ରଶିକ୍ଷଣ ଯୋଗାଇ ଦେଇ ଆମେରିକାରେ ଭବିଷ୍ୟ ବେଦାନ୍ତ ପ୍ରଚାରକ ସୃଷ୍ଟି କରିବାର ପ୍ରକ୍ରିୟା ଆରମ୍ଭ କରିଦେଲେ ।

ଆମେରିକା ଅବସ୍ଥାନ କାଳରେ ସ୍ୱାମୀଜୀ ଅନୁଭବ କରୁଥିଲେ ନିଜ ଭିତରେ ଏକ ପ୍ରଚଣ୍ଡ ଶକ୍ତି; ଯଦ୍ୱାରା କୌଣସି ବ୍ୟକ୍ତିକୁ ସ୍ପର୍ଶ କରିବା ମାତ୍ରେ ପରିବର୍ତ୍ତିତ ହୋଇଯାଉଥିଲା ସେହି ବ୍ୟକ୍ତିର ଜୀବନ । ଅନେକ ଦୂରରେ ଘଟୁଥିବା କୌଣସି ଘଟଣାକୁ ସ୍ପଷ୍ଟ ଭାବରେ ସେ ଦେଖି ପାରୁଥିଲେ । ଆମେରିକାର ଅନେକ ଶିଷ୍ୟ ବି ସ୍ୱାମୀଜୀଙ୍କର ଏତାଦୃଶ ପ୍ରଚଣ୍ଡ ଯୋଗଶକ୍ତି ଓ ମାନସଶକ୍ତିକୁ ଉପଲବ୍ଧି କରିଥିଲେ । ଦିନକର ଘଟଣା, ଚିକାଗୋସ୍ଥିତ ଏକ ଧନୀ ବ୍ୟକ୍ତି ସ୍ୱାମୀଜୀଙ୍କର ଯୋଗଶକ୍ତି ଉପରେ ସନ୍ଦେହ ପ୍ରକାଶ କରି କହିଥିଲେ, "ସ୍ୱାମୀଜୀ, ଆପଣଙ୍କର ଯୋଗଶକ୍ତି ଯଦି ସତ୍ୟ, ତାହାଲେ ମୋର ମାନସିକ ଅବସ୍ଥା ଓ ଅତୀତ ଜୀବନ ସମ୍ବନ୍ଧରେ କିଛି କୁହନ୍ତୁ ? ସ୍ୱାମୀଜୀ ଅବଶ୍ୟ ତା'ର ଅବାଞ୍ଛିତ ଆହ୍ୱାନକୁ ଏଡ଼ାଇ ଦେଲେ ମାତ୍ର କିନ୍ତୁ ପରମୁହୂର୍ତ୍ତରେ ସେହି ଧନୀ ବ୍ୟକ୍ତିଙ୍କୁ ଅପଲକ ନୟନରେ ସ୍ଥିର ହୋଇ କିୟତ୍ ମୁହୂର୍ତ୍ତ ଅବଲୋକନ କଲେ । ଏକ ଅଖଣ୍ଡ ଶକ୍ତି ସ୍ୱାମୀଜୀଙ୍କ ଚକ୍ଷୁରୁ ନିର୍ଗତ ହୋଇ ଉକ୍ତ ଧନୀ ବ୍ୟକ୍ତିଙ୍କ ସର୍ବାଙ୍ଗରେ ତୀକ୍ଷ୍ଣ ଶର ଭଳି ଭେଦ କଲା । ଉକ୍ତ ବ୍ୟକ୍ତି ଭୟଭୀତ ହୋଇ କହିଉଠିଲେ, "ସ୍ୱାମୀଜୀ, ଆପଣ କ'ଣ କରୁଛନ୍ତି ? ମୋର ଆତ୍ମା ମନ୍ଥିତ ହୋଇ ଜୀବନର ଅତୀତ ରହସ୍ୟ ଯେ ଉଦ୍‌ଭାସିତ ହୋଇଉଠୁଛି !" ସ୍ୱାମୀଜୀ ଶାନ୍ତ ହେଲେ । ସେ ହତଭାଗା ଜାଣି ନ ଥିଲେ ଯେ ସେ କାହାକୁ ପରୀକ୍ଷା କରୁଛନ୍ତି !! ସ୍ୱାମୀଜୀଙ୍କ ଭିତରେ ବିରାଜିତ ସେହି ଅନନ୍ତ ଭଗବତ ଶକ୍ତି ଯାହା ଅନ୍ତିମ ସମୟରେ ଅର୍ପଣ କରି ଶ୍ରୀରାମକୃଷ୍ଣ ଫକିର ହୋଇଯାଇଥିଲେ ।

Digitized by srujanika@gmail.com

ସାଧାରଣତଃ ସନ୍ଥ, ସନ୍ନ୍ୟାସୀ ଓ ମହାପୁରୁଷମାନେ କେବେ ବି ସାଧାରଣ ଲୋକଙ୍କ ସମ୍ମୁଖରେ ସେମାନଙ୍କର ଆଧ୍ୟାତ୍ମିକ ଶକ୍ତି ଓ ରହସ୍ୟ ପ୍ରକାଶ କରନ୍ତି ନାହିଁ । ଶ୍ରୀମଦ୍ ଭଗବଦ୍ ଗୀତାରେ ପରମପୁରୁଷ ଭଗବାନ ଶ୍ରୀକୃଷ୍ଣ ଯୁଦ୍ଧ ଭୂମିରେ ଯେଉଁସବୁ ତତ୍ତ୍ୱ ଅର୍ଜୁନଙ୍କୁ କହିଥିଲେ, ସେସବୁର ପ୍ରଘଟନ ନ କରିବାକୁ ସେ ସତର୍କ କରାଇଥିଲେ । କାରଣ ନିମ୍ନ ଚେତନା ସ୍ତରରେ ଅବସ୍ଥିତ ମନୁଷ୍ୟର ସେସବୁ ଗୂଢ଼ ତତ୍ତ୍ୱକୁ ଧାରଣ କରିବାର ସାମର୍ଥ୍ୟ ନ ଥାଏ । କିନ୍ତୁ ଏଠାରେ ନିଜ ଭିତରେ ଅବସ୍ଥିତ ଅନନ୍ତ ଭଗବଦ୍ ଶକ୍ତିକୁ ଗୋପନ ରଖୁଥିଲେ ହେଁ କେତେବେଳେ କେମିତି କଥା ଛଳରେ ସେ ପ୍ରକାଶ କରି ଦେଉଥିଲେ । ସ୍ୱାମୀଜୀ ଏକଦା କହିଥିଲେ ଯେ କାଲି କେଉଁ ବିଷୟରେ ବକ୍ତୃତା ଦେବେ ଏବଂ କ'ଣ କହିବେ, ସେସବୁ ଘନ ରାତ୍ରିର ନିସ୍ତବ୍ଧତା ଭିତରୁ ସେ ଉପଲବ୍ଧି କରି ପାରୁଥିଲେ । ସତେକି କିଏ ଜଣେ ଖୁବ୍ ଦୂରରୁ କହୁଛି କିମ୍ବା ତାଙ୍କ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ବକ୍ତୃତା ଦେଉଛି ଏବଂ ସେ ଏକ ଶ୍ରୋତା ଭାବେ ଶୋଇରହି ଶୁଣୁଛନ୍ତି କିମ୍ବା ଦୁଇଟି ସ୍ୱର ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ତର୍କ କରି ଭିନ୍ନ ମତ ପୋଷଣ କରୁଛନ୍ତି । ଯାହାସବୁ ଘନରାତ୍ରିର ଗଭୀରତା ଭିତରେ ସେ ଶୁଣୁଥିଲେ, ସେହି କଥା ହିଁ ଘଟୁଥିଲା ଆଗାମୀ କାଲିର ବକ୍ତୃତା ସଭାରେ । କି ଆଶ୍ଚର୍ଯ୍ୟ ଘଟଣା । ହଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ତାହା ସବୁ ଥିଲା ଶ୍ରୀରାମକୃଷ୍ଣ ପରମହଂସଙ୍କର କ୍ରିୟା, ଯାହା ସ୍ୱାମୀଜୀଙ୍କ ଭିତରେ ନିରନ୍ତର କାର୍ଯ୍ୟ କରୁଥିଲା ।

ବୋଷ୍ଟନ୍ ସହରରେ ଅନୁଷ୍ଠିତ ଏକ ସଭାରେ ଶ୍ରୀରାମକୃଷ୍ଣ ପରମହଂସଙ୍କ ସମ୍ବନ୍ଧରେ କିଛି କହିବାକୁ ଶ୍ରୋତାଗଣ ତାଙ୍କୁ ଅନୁରୋଧ କଲେ । ସ୍ୱାମୀଜୀ ପ୍ରଥମେ ସ୍ୱୀକୃତି ପ୍ରଦାନ କରିଥିଲେ କିନ୍ତୁ ସମ୍ମୁଖସ୍ଥ ଶ୍ରୋତାଗଣଙ୍କ ଉପରେ ଆଖି ବୁଲାଇ ଆଣିବାଉଭାରୁ, ନିଜର ଗୁରୁଦେବ ଯିଏ ପବିତ୍ରତା ଏବଂ ସେବା ଓ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ, ତାଙ୍କ ବିଷୟରେ କହିବାକୁ ମନ ବଳିଲା ନାହିଁ । ଉପସ୍ଥିତ ଭଦ୍ରମଣ୍ଡଳି ଯେ ସାଂସାରିକ ବିଷୟବାସନା ଓ କୃତ୍ରିମ ଆଚରଣ ଓ ଛଳନାରେ ପରିପୂର୍ଣ୍ଣ, ତାଙ୍କର ଗୁରୁଦେବଙ୍କର ଈଶ୍ୱରୀୟ ଗୁଣ ଓ ବାଣୀକୁ ସେମାନେ ଗ୍ରହଣ କରିବା ତ ଦୂରର କଥା, ବୁଝିପାରିବା ପାଇଁ ସମର୍ଥ ହେବେ ନାହିଁ, ତେଣୁ ନ କହିବା ଶ୍ରେୟସ୍କର ହେବ ବୋଲି ସେ ମନସ୍ଥ କରିନେଲେ । ତା'ପରିବର୍ତ୍ତେ, ସେ ପାଶ୍ଚାତ୍ୟ ଜଗତର ଭୌତିକ ସଂସ୍କୃତି ଓ ଚାକଚକ୍ୟ ଜୀବନପ୍ରଣାଳୀ ବିରୋଧରେ ଅତି କଠୋର ଭାଷାରେ ଏକ ସୁନ୍ଦର ବକ୍ତୃତା ସେଠାରେ ପ୍ରଦାନ କଲେ ।

ଉପସ୍ଥିତ ଜନତା, ସ୍ୱାମୀଜୀଙ୍କର ଏତାଦୃଶ ବକ୍ତବ୍ୟ ଶୁଣି ବୀତସ୍ପୃହ ହୋଇପଡ଼ିଲେ ଏବଂ ବିରକ୍ତି ପ୍ରକାଶ କଲେ । କେତେକ ଶ୍ରୋତା କ୍ରୋଧରେ ଜର୍ଜରିତ ହୋଇ ସଭାସ୍ଥଳ ଛାଡ଼ି ଚାଲିଗଲେ । ସ୍ୱାମୀଜୀ ମଧ୍ୟ ଏହି ସଭାର ଗତିବିଧି ଓ ଶ୍ରୋତାମାନଙ୍କର ବିରକ୍ତିକର ମନୋଭାବ ଦେଖି ଜୀବନରେ ଏକ ଶିକ୍ଷା ଲାଭ କଲେ । ସଭାପରେ ସ୍ୱାମୀଜୀ ଗୃହକୁ ଫେରିଆସି, ନିଜର ଭାଷଣରେ ଅନେକ ଭଦ୍ରବ୍ୟକ୍ତିଙ୍କ ହୃଦୟରେ ଦୁଃଖ ପହଞ୍ଚାଇଥିବାରୁ ବାଳକଟିଏ ଭଳି କାନ୍ଦି କାନ୍ଦି

Digitized by srujanika@gmail.com

କାନ୍ଦି ଉଠିଲେ । ଶ୍ରୀରାମକୃଷ୍ଣ ଜୀବନରେ କୌଣସି ବ୍ୟକ୍ତିଙ୍କୁ ନିନ୍ଦା କରିବା ତ ଦୂରର କଥା, ଏପରିକି ଦୁଷ୍ଟ ଲୋକକୁ ମଧ୍ୟ କଠୋର ଭାଷା କହି ନ ଥିଲେ । ବହୁ ସୁ-ହୃଦୟ ବ୍ୟକ୍ତି ଶ୍ରୀରାମକୃଷ୍ଣଙ୍କ ଲୀଳା ଶୁଣିବା ପାଇଁ ଆଗ୍ରହାନ୍ୱିତ ଥିଲେ, କିନ୍ତୁ ତାହା ନ କହି ପାଶ୍ଚାତ୍ୟ ସଂସ୍କୃତିକୁ ନିନ୍ଦା କରିବା ଫଳରେ ସେମାନେ ନିଶ୍ଚିତଭାବେ ଆହତ ହୋଇଥିଲେ । ଏଭଳି ଅନୁତାପ ଜ୍ୱାଳାରେ ଘାରି ହୋଇ ନିଜକୁ ଧିକ୍କାର କଲେ ଏବଂ ଶ୍ରୀରାମକୃଷ୍ଣଙ୍କର ଶିଷ୍ୟ ହେବାପାଇଁ ଅନୁପଯୁକ୍ତ ବୋଲି ନିଜକୁ ଭାବିଲେ । ଆତ୍ମ-ନିରୀକ୍ଷଣ ମଣିଷର ଏକ ମହାନ୍ ଅସ୍ତ୍ର । ସ୍ୱାମୀଜୀ ଏହି ଅସ୍ତ୍ର ସାହାଯ୍ୟରେ ନିଜକୁ ବହୁବାର ସଂଶୋଧନ କରୁଥିଲେ ଯାହା ସାଧାରଣ ମଣିଷ ଭିତରେ କ୍ୱଚିତ ଦେଖାଯାଏ । ଯାହାହେଉ ଏତାଦୃଶ ଅଶ୍ରୁମୋଚନ ତାଙ୍କର ଅନୁତାପାଗ୍ନିକୁ ନିର୍ବାପିତ କଲା ।



Digitized by srujanika@gmail.com

॥ ତେଇଶ ॥

# ଖ୍ରୀଷ୍ଟଧର୍ମ ପ୍ରଚାରକଗଣଙ୍କ ପ୍ରତି ଧିକ୍କାର

ବକ୍ତୃତା ପ୍ରଦାନ ନିମନ୍ତେ ସ୍ୱାମୀଜୀ ଯେଉଁ **ସ୍ଲେଟୋନ୍ ଲିସେୟମ୍** ଲେକ୍‌ଚର୍ ବ୍ୟୁରୋ ସହ ଚୁକ୍ତିବଦ୍ଧ ହୋଇଥିଲେ, ସେହି କମ୍ପାନୀ ତାଙ୍କ ନାଁରେ ଅର୍ଥ ଆଦାୟ କରି ତାଙ୍କୁ ଏକ ସର୍କସର ପଶୁ ଭଳି ଶୋଷଣ କରିବାରେ ଲାଗିଛି ବୋଲି ସେ ବୁଝିପାରିଲେ । ତତ୍‌କ୍ଷଣାତ୍ ଆମେରିକାର ବନ୍ଧୁ ଓ ଶୁଭେଚ୍ଛୁଙ୍କର ସହାୟତାରେ ସେ ଚୁକ୍ତି ରଦ୍ଦ କଲେ । ତତ୍‌ପଶ୍ଚାତ୍ ସ୍ୱାଧୀନ ଭାବେ ବିଭିନ୍ନ ସ୍ଥାନ ଭ୍ରମଣ କରି ବକ୍ତୃତା ପ୍ରଦାନ କଲେ । ମାନବ ସଭ୍ୟତା ଭିତରେ ଯୁଗ ଯୁଗ ଧରି ଯେଉଁ ମଇଳା ଓ ଆବର୍ଜନା ଜମିଥିଲା, ସେହିଗୁଡ଼ିକ ଏହି ତୁଫାନୀ ସନ୍ନ୍ୟାସୀଙ୍କର ପ୍ରଚଣ୍ଡ ବାତ୍ୟା ଫଳରେ ପରିଷ୍କୃତ ହେବାକୁ ଆରମ୍ଭ କଲା । କିନ୍ତୁ ଏହି ଭାଷଣ ଅଭିଯାନରେ ସେ ଅତ୍ୟନ୍ତ କ୍ଳାନ୍ତ ଓ ଅବଶ ହୋଇପଡ଼ିଥିଲେ । **'ହେଲେ ଭଗ୍ନୀ'**ଙ୍କ ନିକଟକୁ ନିଜ ମନର ବ୍ୟଥା ଜଣାଇ ସ୍ୱାମୀଜୀ ଲେଖିଥିଲେ -

''ସତ କହିବାକୁ ଗଲେ, ଯେତେ ଅଧିକ ଲୋକପ୍ରିୟତା ଓ ଭାଷଣ ଦେବାର ସୁଯୋଗ ପାଉଛି, ସେତେ ଅଧିକରୁ ଅଧିକ ମୁଁ ବିରକ୍ତ ହୋଇପଡୁଛି । ସବୁ ଠିକ୍ ଅଛି, କିନ୍ତୁ ମୁଁ ଜାଣେନାହିଁଯେ ମୋର ହୃଦୟ କାହିଁକି ଦୁଃଖରେ ଆଚ୍ଛାଦିତ ହୋଇପଡୁଛି । ବକ୍ତୃତା ଦେଇ ଦେଇ ମୁଁ ହାଲିଆ ହୋଇଗଲିଣି ଏବଂ ସବୁଗୁଡ଼ିକ ଖାଲି ଅସାର କଥା । ଶହଶହ ବିଭିନ୍ନ ମଣିଷ ରୂପକ ପଶୁଗୁଡ଼ିକ ସହ ସଂଗ ଲାଭ ମୋତେ ବିଚଳିତ କରିଛି । ପ୍ରକୃତରେ ମୋର ରୁଚି କ'ଣ ତାହା ମୁଁ ତୁମକୁ କହିବି ! ମୁଁ ଲେଖିପାରିବି ନାହିଁ ଏବଂ ମୁଁ କହିପାରିବି ନାହିଁ, କିନ୍ତୁ ମୁଁ ଗଭୀର ଭାବରେ ଚିନ୍ତା କରିପାରିବି; ଯେତେବେଳେ ମୁଁ ଉତ୍ତପ୍ତ ହୁଏ, ସେତେବେଳେ ମୋ ମୁଖରୁ ଅଗ୍ନି ବର୍ଷଣ ହୁଏ । ଏହା କେବଳ ଅଳ୍ପ ଲୋକଙ୍କ ସମ୍ମୁଖରେ ହେବା ଉଚିତ । ସେମାନେ ମୋର ଚିନ୍ତାଧାରାକୁ ପ୍ରଚାର ଓ ପ୍ରସାର କରନ୍ତୁ, କିନ୍ତୁ ମୁଁ କରିବି ନାହିଁ । ଏହା କେବଳ ଶ୍ରମର ବିଭାଗୀକରଣ । ଗୋଟିଏ ବ୍ୟକ୍ତି ଯଦି ଏକା ସାଙ୍ଗରେ ଭାବିବ ଏବଂ ଚିନ୍ତାଧାରାକୁ ପ୍ରସାରଣ କରିବ, ତେବେ ସେ ସଫଳ ହୋଇପାରିବ ନାହିଁ ।''

ସ୍ୱାମୀଜୀଙ୍କର ଉପରୋକ୍ତ ମନ୍ତବ୍ୟ ସ୍ପଷ୍ଟଭାବରେ ସୂଚାଇଦିଏ ଯେ ସେ ବାସ୍ତବରେ ଅସଂଖ୍ୟ ବକ୍ତୃତା ପ୍ରଦାନ କରି ଶାରିରୀକ ସ୍ତରରେ ଅତ୍ୟନ୍ତ କ୍ଳାନ୍ତ ହୋଇପଡ଼ିଥିଲେ । ତଥାପି ତାଙ୍କର ଉତ୍ସାହ ମଉଳି ନ ଥିଲା । ସେ ଚାହିଁଥିଲେ ଏଭଳି ନିଷ୍ଠାବାନ୍ ବ୍ୟକ୍ତି, ଯେଉଁମାନେ ବେଦାନ୍ତର ଶିକ୍ଷା ପ୍ରଦାନ କରିବେ ଏବଂ ପାଶ୍ଚାତ୍ୟ ଜଗତରେ ଭ୍ରମଣ କରି ବେଦାନ୍ତର ମୂଳତତ୍ତ୍ୱକୁ ପ୍ରଚାର କରିପାରିବେ । ସେହି ନିଷ୍ଠାବାନ ବ୍ୟକ୍ତିଙ୍କୁ ସେ ସ୍ୱଚ୍ଛ ଦର୍ପଣ ଭାବେ ଅଭିହିତ କରନ୍ତି, କାରଣ

Digitized by srujanika@gmail.com

ସେମାନଙ୍କର ସ୍ୱଚ୍ଛତା ପ୍ରତିଫଳିତ ହେବ । ସ୍ୱାମୀଜୀଙ୍କର କେତେଜଣ ପ୍ରଶଂସକ ଓ ଭକ୍ତ ତାଙ୍କର ସମସ୍ତ ଯତ୍ନ ନେଉଥିଲେ ଏବଂ ତାଙ୍କର ନିର୍ଦ୍ଦେଶାନୁସାରେ କାର୍ଯ୍ୟ କରୁଥିଲେ । ସେ ବିଶେଷ ଭାବରେ ଆମେରିକାର ମହିଳାମାନଙ୍କ ପ୍ରତି କୃତଜ୍ଞ ଥିଲେ ଏବଂ ସେମାନଙ୍କୁ ପ୍ରଶଂସା କରି ସେ ଆମେରିକାରୁ ବହୁ ପତ୍ର ଭାରତୀୟ ଭକ୍ତମାନଙ୍କ ନିକଟକୁ ପଠାଇ ଥିଲେ ।

ସେ ଏକ ଚିଠିରେ ଲେଖିଥିଲେ, ''ଏଠିକାର ମହିଳାଙ୍କ ଭଳି ପବିତ୍ର, ସ୍ୱାଧୀନ, ଆତ୍ମ-ବିଶ୍ୱାସୀ ଏବଂ ଦୟାଳୁ ବିଶ୍ୱରେ କୌଣସି ସ୍ଥାନରେ ମିଳିବେ ନାହିଁ । ମହିଳାମାନେ ଏହି ରାଷ୍ଟ୍ରର ପ୍ରାଣ ଓ ଆତ୍ମା । ସବୁ ବିଦ୍ୟା ଓ ସଂସ୍କୃତି ସେମାନଙ୍କ ଭିତରେ ବିଦ୍ୟମାନ । ଆମେରିକୀୟମାନେ ମହିଳାଙ୍କୁ ଅତ୍ୟନ୍ତ ସମ୍ମାନ କରନ୍ତି କାରଣ ସେମାନଙ୍କ ଜୀବନରେ ମହିଳା ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ନାରୀପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦାନ ଆଚରଣ ଏଠାରେ ଉତ୍କୃଷ୍ଟତାରେ ପହଞ୍ଚିଛି । ଏହି ରାଷ୍ଟ୍ରର ନାରୀମାନଙ୍କୁ ଦେଖି ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି । ସେମାନେ ଲକ୍ଷ୍ମୀ, ସରସ୍ୱତୀ ଓ ଜଗଜ୍ଜନନୀଙ୍କର ମାନୁଷୀରୂପ, ଅବତରିତ ଏହି ଦେଶରେ । ଜଗଜ୍ଜନନୀଙ୍କର ଏଭଳି ମାନବୀରୂପ ମାଡୋନାଙ୍କ (ମା ମେରୀ) ଭଳି ହଜାର ହଜାର ନାରୀ ଯଦି ମୁଁ ମୃତ୍ୟୁ ପୂର୍ବରୁ ଭାରତରେ ସୃଷ୍ଟି କରିପାରିବି, ତେବେ ମୁଁ ଟିକିଏ ଶାନ୍ତିରେ ଶେଷ ନିଶ୍ୱାସ ତ୍ୟାଗ କରିପାରନ୍ତି । ତେବେ ଯାଇ ଆମ ଦେଶବାସୀଙ୍କର ନାଁ ସାର୍ଥକ ହୁଅନ୍ତା ।

- ୧ -

*ଆମେରିକାର ମହିଳାମାନଙ୍କୁ ସ୍ୱାମୀଜୀଙ୍କର ଉଚ୍ଚ ପ୍ରଶଂସା - ଚରିତ୍ର ଓ ଆତ୍ମାର ସେମାନେ ବିଚାରବନ୍ତ ମହିଳା, ସେମାନେ ସ୍ୱଚ୍ଛ ଦର୍ପଣ ଏବଂ ପ୍ରତିଫଳନକୁ ସହଜରେ ଧରିପାରନ୍ତି ।*

ଆମେରିକା ମହିଳାଙ୍କର ସୌନ୍ଦର୍ଯ୍ୟ, ଆଚରଣ, ବିଦ୍ୟା, ସଂସ୍କାର, କାରୁଣ୍ୟ, ଦୟା, ପବିତ୍ରତା, ସ୍ୱାଧୀନ ଚିନ୍ତା, ଆତ୍ମ ବିଶ୍ୱାସ ସ୍ୱାମୀଜୀଙ୍କୁ ସ୍ପର୍ଶ କରିଥିଲା, ଯା'ଫଳରେ ସେହି ନାରୀମାନଙ୍କୁ ଯୀଶୁଖ୍ରୀଷ୍ଟଙ୍କର ମା ମେରୀ (ମାଡ଼ୋନା) ଯିଏ ସ୍ୱୟଂ ଜଗଜ୍ଜନନୀଙ୍କର ମାନୁଷୀ ରୂପ ବୋଲି ତାଙ୍କର ବିଶ୍ୱାସ ଥିଲା, ସହ ତୁଳନା କରିବାକୁ ପଛାଇ ନ ଥିଲେ । ୧୯୯୪ ମସିହାରେ କ୍ଷେତ୍ରୀ ମହାରାଜାଙ୍କ ପାଖକୁ ଖଣ୍ଡିଏ ଚିଠିରେ ଲେଖିଥିଲେ - ଆମେରିକାର ମହିଳାଗଣ !!! ଆପଣଙ୍କର ଋଣ ମୁଁ ଶହେ ଜନ୍ମରେ ବି ଶୁଝି ପାରିବି ନାହିଁ । ଗତ ବର୍ଷ ଗ୍ରୀଷ୍ମକାଳରେ ଏହି ଦେଶକୁ ଆସିଥିଲି, ନାମ, ଖ୍ୟାତି, ଧନ, ଯଶହୀନ ସୂଦୂର ଦେଶର ପ୍ରଚାରକ ଭାବେ ବନ୍ଧୁହୀନ, ଅସହାୟ ଏବଂ ପ୍ରାୟ ନିଃସ୍ୱ ଅବସ୍ଥାରେ ମୁଁ ଭ୍ରମଣ କରୁଥିଲି । କିନ୍ତୁ ଆମେରିକୀୟ ମହିଳାମାନେ ମୋ ସହ ବନ୍ଧୁତା ସ୍ଥାପନ କଲେ, ମୋତେ ଖାଇବାକୁ ଦେଲେ ଘରେ ଆଶ୍ରୟ ଦେଲେ, ପୁତ୍ର ଭ୍ରାତା ଭଳି ମୋତେ ଆଦର କଲେ । ଯେତେବେଳେ ସେମାନଙ୍କର ଖ୍ରୀଷ୍ଟଧର୍ମ ପ୍ରଚାରକ ଏବଂ ଧର୍ମଯାଜକଗଣ ମୋତେ ହିନ୍ଦୁ (ପୌତ୍ତଳିକ ଓ ଅଧର୍ମୀ) ବୋଲି କହି ଅପମାନିତ କରୁଥିଲେ ଏବଂ ମୋତେ ତ୍ୟାଗ କରିବା ପାଇଁ ସେମାନଙ୍କୁ ପ୍ରବର୍ତ୍ତାଉ ଥିଲେ ଏବଂ ସେମାନଙ୍କର ନିକଟତମ ବନ୍ଧୁମାନେ ମୋ ଭଳି ଏକ ଅପରିଚିତ ବିଦେଶୀ ଓ ଭୟାନକ ଚରିତ୍ରର ମଣିଷ ବୋଲି ଚିତ୍ରଣ କରି ସେମାନଙ୍କୁ ମୋ

Digitized by srujanika@gmail.com

ଠାରୁ ଦୂରେଇ ଯିବା ପାଇଁ ପରାମର୍ଶ ଦେଉଥିଲେ, ସେତେବେଳେ ଏହି ମହିଳାମାନେ ପର୍ବତ ସମାନ ଅଟଳ ରହି ମୋତେ ସବୁପ୍ରକାର ସାହାଯ୍ୟ କରିଥିଲେ । ଚରିତ୍ର ଓ ଆତ୍ମାର ସେମାନେ ବିଚାରବନ୍ତ ମହିଳା, ସେମାନେ ସ୍ୱଚ୍ଛ ଦର୍ପଣ ଏବଂ ପ୍ରତିଫଳନକୁ ସହଜରେ ଧରି ପାରୁଥିଲେ ।

ଏତିକିମାତ୍ର ପ୍ରଶଂସାରେ ସେ ଅଟକି ଯାଇ ନ ଥିଲେ । ସ୍ୱାମୀଜୀ ଶତମୁଖରେ ସେମାନଙ୍କୁ ପ୍ରଶଂସା କରି ଚିଠିରେ ଲେଖିଥିଲେ - ସେମାନଙ୍କର ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ବାସଗୃହ କେତେ ଯେ ମୁଁ ନ ଦେଖିଛି !!! କେତେ ମା'ଙ୍କର ଶୁଦ୍ଧ ଓ ପବିତ୍ର ଚରିତ୍ର ଏବଂ ପିଲାମାନଙ୍କ ପ୍ରତି ସେମାନଙ୍କର ନିଃସ୍ୱାର୍ଥପର ପ୍ରେମ ମୁଁ ବର୍ଣ୍ଣନା କରିପାରିବି ନାହିଁ । ଡିଆନା ମନ୍ଦିର ଉପରେ ଲମ୍ୱମାନ କୋଣାକୃତି ତୁଷାର କଣା ସଦୃଶ କେତେ କନ୍ୟା ଓ ପବିତ୍ର କୁମାରୀ ଏବଂ ସଂସ୍କୃତି, ଶିକ୍ଷା ଓ ଆଧ୍ୟାତ୍ମିକତାରେ ପରିପୂର୍ଣ୍ଣ ସେମାନେ ମୁଁ ନ ଦେଖିଛି !!! ପକ୍ଷ ବିହୀନ ଦେବକନ୍ୟାଗଣ କ'ଣ ମହିଳା ରୂପରେ ଆମେରିକାରେ ଅବତୀର୍ଣ୍ଣ ? ଅବଶ୍ୟ ସବୁଜାଗାରେ ଭଲ ମନ୍ଦ ରହିଛି କିନ୍ତୁ ଗୋଟିଏ ରାଷ୍ଟ୍ର ମନ୍ଦ ଦ୍ୱାରା କେବେ ବିଚାରିତ ହେବନାହିଁ, ସେମାନେ ତ ଧାନ ଭିତରେ ବାଲୁଙ୍ଗା, ବହୁ ପଛରେ ପଡ଼ିଥା'ନ୍ତି । କିନ୍ତୁ ମହତ୍ ଓ ପବିତ୍ର ବ୍ୟକ୍ତି ରାଷ୍ଟ୍ରୀୟ ଜୀବନ ସ୍ରୋତର ପରିଚାୟକ; ସେମାନେ ସ୍ୱଚ୍ଛ ଓ ଶକ୍ତିଶାଳୀ ହୋଇ ନିରନ୍ତର ପ୍ରବାହିତ ହୁଅନ୍ତି ।

ଆମେରିକୀୟ ସ୍ୱାଧୀନ ଚେତା ନାରୀଙ୍କୁ ଦେଖି ସ୍ୱାମୀଜୀଙ୍କର ଭାରତୀୟ ନାରୀଙ୍କର ଦୁର୍ଦ୍ଦଶାଗ୍ରସ୍ତ ଚିତ୍ର ମାନସପଟରେ ଜାଗ୍ରତ ହେଲା । ବିଶେଷକରି ନିଜ ଭଉଣୀ ଏକ ଦୁଃଖଦ ପରିସ୍ଥିତିର ଶିକାର ହୋଇ କିଭଳି ଆତ୍ମହତ୍ୟା କରିଥିଲେ, ସେହି ସ୍ମୃତି ତାଙ୍କୁ ବାରମ୍ୱାର କଷ୍ଟ ଦେଉଥିଲା । ସେ ଜାଣନ୍ତି ଯେ ଭାରତରେ ନାରୀ ନିର୍ଯ୍ୟାତନା ପାଇଁ ବହୁ ହିନ୍ଦୁ ପରିବାରର ପୁରୁଷ ପ୍ରାଧାନ୍ୟ ମନୋଭାବ ତଥା ନାରୀକୁ ଦୁର୍ବଳା ଭାବିବାର ମାନସିକତା ଦାୟୀ । ଭାରତୀୟ ନାରୀ ଜାଗ୍ରତ ହେଲେ, ରାଷ୍ଟ୍ରର ହୃତଗୌରବ ଫେରି ଆସିବ । ଏହାଥିଲା ତାଙ୍କର ମତ । ବକ୍ତୃତା ପ୍ରଦାନରୁ ଯେଉଁ ଅର୍ଥ ସେ ଉପାର୍ଜନ କରିଥିଲେ, ତାହାର କିୟଦାଂଶ ସେ କଲିକତାସ୍ଥ ବାରାନଗରର ଏକ ବିଧବା ସଂଘକୁ ପଠାଇ ଦେଲେ । କେବଳ ସେତିକି ନୁହେଁ, ହିନ୍ଦୁ ନାରୀଙ୍କର ବୌଦ୍ଧିକ ପୁନରୁତ୍ଥାନ ନିମନ୍ତେ ପାଶ୍ଚାତ୍ୟ ନାରୀଙ୍କୁ ଶିକ୍ଷକ ଭାବେ ଭାରତକୁ ପଠାଇବା ପାଇଁ ସେ ମନରେ ସଂକଳ୍ପ ନେଲେ ।

- ୨ -

*ମାନବିକତାର ମର୍ଯ୍ୟାଦାକୁ ହିନ୍ଦୁଧର୍ମ ଯେଭଳି ଉଚ୍ଚ ସ୍ୱରରେ ପ୍ରଶଂସା କରେ କିମ୍ବା ଗର୍ବ ସହକାରେ ପ୍ରଚାର କରେ, ସେଭଳି ଭାବେ କୌଣସି ଧର୍ମ ଏହି ପୃଥିବୀପୃଷ୍ଠରେ କରେନାହିଁ । ହିନ୍ଦୁଧର୍ମ ଏଭଳି ଭଙ୍ଗୀରେ ଗରିବ ଓ ନିଚ୍ଚ ଲୋକଙ୍କ ବେକ ଉପରେ ପାହୁଣ୍ଡ ପକାଇ ଚାଲେ, ବିଶ୍ୱର କୌଣସି ଧର୍ମ ଏଭଳି କରେ ନାହିଁ । ହଁ, ଏଥିପାଇଁ ଧର୍ମର କୌଣସି ଦୋଷ ନାହିଁ, ଦୋଷ ରହିଛି ଆଚାରନିଷ୍ଠ ପ୍ରାଚୀନ ଧର୍ମ ସଂପ୍ରଦାୟ ଓ ଧର୍ମାନ୍ଧଙ୍କ ଭିତରେ ।*

Digitized by srujanika@gmail.com

ଆମେରିକା ସଂସ୍କୃତିର ମୌଳିକତା ପ୍ରତି ସ୍ୱାମୀଜୀଙ୍କର ଖୁବ୍ ସମ୍ମାନ ଥିଲା । ଆମେରିକାର ଅର୍ଥନୀତି, ଔଦ୍ୟୋଗିକ ସଂଗଠନ, ଶିକ୍ଷାନୁଷ୍ଠାନ, ସଂଗ୍ରାହାଳୟ, କଳାମନ୍ଦିର ଓ ସାର୍ବଜନୀନ ଅନୁଷ୍ଠାନ ସମ୍ବନ୍ଧରେ ସେ ଏଠାରେ ଗଭୀର ଅଧ୍ୟୟନ କରିଥିଲେ । ଏଠାରେ ଗୋଟିଏ କଥା ମନେରଖିବାକୁ ହେବ ଯେ ଏହି ଗୈରିକ ବସ୍ତ୍ର ପରିହିତ ସନ୍ନ୍ୟାସୀ କେବଳ ମନୁଷ୍ୟର ଆଧାତ୍ମିକ ଦିଗକୁ ଅନୁଶୀଳନ କରି ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି ଚକ୍ରରୁ ନିସ୍ତାର ପାଇବା ପାଇଁ ମନୁଷ୍ୟକୁ ସଦ୍‌ମାର୍ଗ ପ୍ରଦର୍ଶନ କରୁ ନ ଥିଲେ, ବରଂ ଜୀବୀତାବସ୍ଥାରେ ମନୁଷ୍ୟ କିପରି ସାଂସାରିକ ଦୁଃଖରୁ ନିବୃତ୍ତି ଅନ୍ତତଃପକ୍ଷେ ସୁସ୍ଥ ଜୀବନନିର୍ବାହ କରିପାରିବ ସେଥିପ୍ରତି ତାଙ୍କର ମନ ବ୍ୟାକୁଳିତ ହେଉଥିଲା । ତେଣୁ ସେ ବିଜ୍ଞାନର ଅଗ୍ରଗତି, ସ୍ୱାସ୍ଥ୍ୟରକ୍ଷା, ଅନୁଷ୍ଠାନ ଏବଂ ସାମାଜିକ କଲ୍ୟାଣ କାର୍ଯ୍ୟକୁ ଅତ୍ୟନ୍ତ ପ୍ରଶଂସା କରୁଥିଲେ । ସେ ସ୍ୱୟଂ ହୃଦବୋଧ କରିଛନ୍ତି ଯେ ଆତ୍ମାର ଦିବ୍ୟତ୍ୱ ଏବଂ ମନୁଷ୍ୟର ଭ୍ରାତୃତ୍ୱବୋଧ ଭଳି ମହତ୍ ଧାରଣାଗୁଡ଼ିକ ବର୍ତ୍ତମାନର ଭାରତବର୍ଷରେ କେବଳ ପୁସ୍ତକର ସୂତ୍ର ଓ ସିଦ୍ଧାନ୍ତ ଭାବେ ରହିଯାଇଛି, କିନ୍ତୁ ସେଗୁଡ଼ିକୁ ଜୀବନରେ କିପରି ପ୍ରୟୋଗ କରିହେବ, ସେଥିପାଇଁ ଆମେରିକାବାସୀ ଏଠାରେ ଆଗ୍ରହ ପ୍ରଦର୍ଶନ କରୁଛନ୍ତି ।

ଆମେରିକାର ଧନୀକ ଗୋଷ୍ଠୀଙ୍କର ସମାଜସେବା ନିମିତ୍ତ ଉଦାର ମନୋଭାବ ଓ ଆଗ୍ରହ ସେ ଯେତେବେଳେ ଭାରତୀୟଙ୍କ ଔଦାସ୍ୟ ମନୋଭାବ ସହ ତୁଳନା କରନ୍ତି, ସେତେବେଳେ ତାଙ୍କର ମନ ଖୁବ୍ ନୈରାଶ୍ୟ ସାଗରରେ ବୁଡିଯାଏ । ଏକ ପତ୍ରରେ ନିଜର କ୍ରୋଧ ପ୍ରକଟିତ କରି ଲେଖିଥିଲେ "ମାନବିକତାର ମର୍ଯ୍ୟାଦାକୁ ହିନ୍ଦୁଧର୍ମ ଯେଭଳି ଉଚ୍ଚ ସ୍ୱରରେ ପ୍ରଶଂସା କରେ କିମ୍ବା ଗର୍ବ ସହକାରେ ପ୍ରଚାର କରେ, ସେଭଳି ଭାବେ କୌଣସି ଧର୍ମ ଏହି ପୃଥିବୀପୃଷ୍ଠରେ କରେନାହିଁ । ହିନ୍ଦୁଧର୍ମ ଏଭଳି ଭଙ୍ଗୀରେ ଗରିବ ଓ ନିଚ୍ଚ ଲୋକଙ୍କ ବେକ ଉପରେ ପାହୁଣ୍ଡ ପକାଇ ଚାଲେ, ବିଶ୍ୱର କୌଣସି ଧର୍ମ ଏଭଳି କରେ ନାହିଁ । ହଁ, ଏଥିପାଇଁ ଧର୍ମର କୌଣସି ଦୋଷ ନାହିଁ, ଦୋଷ ରହିଛି ଆଚାରନିଷ୍ଠ ପ୍ରାଚୀନ ଧର୍ମ ସଂପ୍ରଦାୟ ଓ ଧର୍ମାନ୍ଧଙ୍କ ଭିତରେ ।"

ଆମେରିକାର ପ୍ରାଚୁର୍ଯ୍ୟ ଓ ସ୍ୱାଧୀନଚେତା ନାଗରିକଙ୍କର ଉଦାର ମାନବତା ଏବଂ ଗରିବ ଓ ନିଃସ୍ୱଙ୍କୁ ସାହାଯ୍ୟ ଯୋଗେଇଦେବାର ମାନସିକତା ପରିଲକ୍ଷିତ କରି ସ୍ୱାମୀଜୀ ତଟସ୍ଥ ହୋଇଗଲେ । ଏହି ମାଟିରେ ଯେଉଁ ବେଦାନ୍ତର ବୀଜ ସେ ବୁଣୁଛନ୍ତି, ତାହା ପରିପୁଷ୍ଟ ହୋଇ ଦିନେ ବୃକ୍ଷରେ ପରିଣତ ହେବ ବୋଲି ସ୍ୱାମୀଜୀଙ୍କର ଥିଲା ଦୃଢ଼ ବିଶ୍ୱାସ । ବେଦ, ଉପନିଷଦ ଓ ବେଦାନ୍ତରେ ବର୍ଣ୍ଣିତ ମାନବଜାତିକୁ ଉର୍ଦ୍ଧ୍ୱଚେତନା ଅଭିମୁଖେ ପଥପ୍ରଦର୍ଶନ କରିବାର ସଦ୍‌ମାର୍ଗ ଅତି ଆନ୍ତରିକ ଓ ନିଷ୍ଠା ସହକାରେ ଏହି ବିଦେଶ ଭୂମି ଆମେରିକାର ବହୁ ଲୋକଙ୍କ ଦ୍ୱାରା ଆଦୃତ ଓ ପ୍ରଶଂସିତ ହେଉଥିବାର ଦେଖି ସ୍ୱାମୀଜୀ କେବଳ ବିସ୍ମିତ ହେଲେ ନାହିଁ ବରଂ ଏହି ଲୋକମାନଙ୍କ ମନରେ ଭାରତବର୍ଷ ଓ ହିନ୍ଦୁଧର୍ମ ବିପକ୍ଷରେ ଯେଉଁ କପୋଳକଳ୍ପିତ ଓ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଥିଲା, ତାହା ମହାଦ୍ରୁମ ଭଳି ଭୂମିଶାୟିତ ହେଉଥିବାର ଦେଖି ତାଙ୍କ ମନ ଅପୂର୍ବ ଆନନ୍ଦରେ ଭରି ଯାଉଥିଲା ।

Digitized by srujanika@gmail.com

- ଘ -

*ଦାରିଦ୍ର୍ୟ ଓ ଅଜ୍ଞାନରେ ନିରନ୍ତର ବୁଡି ରହିଥିବା ତିରିଶ କୋଟି ଭାରତୀୟ ନର ଓ ନାରୀଙ୍କ ପାଇଁ ଭାରତବର୍ଷରେ କିଏ ଚିନ୍ତା କରେ ମୋତେ କୁହ ତ ? ଏଥିରୁ ନିସ୍ତାର ପାଇବା ପାଇଁ ପଥ କେଉଁଠି ? ସେମାନଙ୍କ ପାଇଁ କିଏ ଚିନ୍ତା କରେ ? ଏହି ସମଗ୍ର ଜନତା ଆମର ଈଶ୍ବର - ସେମାନଙ୍କ ପାଇଁ ଭାବ, କାର୍ଯ୍ୟକର ଏବଂ ନିରନ୍ତର ପ୍ରାର୍ଥନା କର - ଈଶ୍ବର ତୁମମାନଙ୍କୁ ପଥ ଦେଖାଇବେ । ଯାହାର ହୃଦୟ ଗରିବଙ୍କ ପାଇଁ ଦୁଃଖରେ କାନ୍ଦେ, ସେମାନଙ୍କୁ ମୁଁ ମହାତ୍ମା ବୋଲି କୁହେ, ନଚେତ ସେମାନେ ଦୁରାତ୍ମା... । ଯେ ପର୍ଯ୍ୟନ୍ତ କୋଟି କୋଟି ଲୋକେ ଅନାହାର ଓ ଅଜ୍ଞାନରେ ସଢୁଥିବେ, ସେପର୍ଯ୍ୟନ୍ତ ସେମାନଙ୍କ ପରିଶ୍ରମ ଓ ଅର୍ଥରେ ଶିକ୍ଷିତ ହୋଇ ସେମାନଙ୍କ ପ୍ରତି ଦୃଷ୍ଟି ଦେଉ ନ ଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ମୁଁ ଦେଶଦ୍ରୋହୀ ବୋଲି ଆଖ୍ୟା ଦେବି... ।*

ସେ ଜଳ ଜଳ ତାଙ୍କ ମାନସପଟରେ ଦର୍ଶନ କରିପାରୁଥିଲେଯେ ଯେଉଁ ବେଦାନ୍ତ ସବୁ ଧାର୍ମିକ ମତର ଊର୍ଦ୍ଧ୍ୱରେ ଏବଂ କୌଣସି ଧର୍ମଦ୍ୱାରା ଏପର୍ଯ୍ୟନ୍ତ କଳୁଷିତ ହୋଇନାହିଁ ଏବଂ ଭବିଷ୍ୟତରେ ପଦ୍ମପତ୍ର ଜଳସିକ୍ତ ନ ହେବା ଭଳି ଏହା କଦାପି କଳୁଷିତ ହେବନାହିଁ, ସେହି ବେଦାନ୍ତ ଧର୍ମ ଓ ବିଜ୍ଞାନକୁ ସାଥିରେ ନେଇ ଏହି ପୃଥିବୀ ପୃଷ୍ଠରେ ଶାନ୍ତି ଓ ମୈତ୍ରୀଭାବ ସୃଷ୍ଟି କରି ଅଗ୍ରସର ହେବ । ଏହି କାର୍ଯ୍ୟର ପ୍ରକ୍ରିୟାକୁ ଏଠାରେ ସହଜ ଓ ସରଳ କରିବା ପାଇଁ ଭାରତୀୟ ଯୁବକ ଓ ଯୁବତୀ ଆବଶ୍ୟକ । କିନ୍ତୁ ବର୍ତ୍ତମାନର କୁସଂସ୍କାରାଚ୍ଛନ୍ନ ଭାରତ ବହୁ ସଂଖ୍ୟାରେ ଯୁବବର୍ଗଙ୍କୁ ଉତ୍ପନ୍ନ କରି ପାରିବ ନାହିଁ । ପ୍ରଥମେ ଭାରତବର୍ଷର ବିକଟାଳ ଜାତିପ୍ରଥା ଏବଂ ଗରିବ ଓ ନିଶ୍ୱଙ୍କ ପ୍ରତି ଶୋଷଣ ଓ ଅତ୍ୟାଚାର ଭଳି ଦୁର୍ବଳତାକୁ ବିଲୋପିତ କରିବାକୁ ପଡ଼ିବ, ଯଦ୍ୱାରା ଭାରତ ପୁନଶ୍ଚ ବେଦାନ୍ତ ପ୍ରଚାର ଓ ପ୍ରସାର କରି ବିଶ୍ୱର ନେତୃତ୍ୱ ନେଇପାରିବ ବୋଲି ସ୍ୱାମୀଜୀ ଚିନ୍ତା କଲେ ।

୧୮୯୪ରେ ଆମେରିକାରୁ ପ୍ରେରିତ ସ୍ୱୟଂ ଲିଖିତ ଏକ ପତ୍ରରୁ ସ୍ୱାମୀଜୀଙ୍କ ମନ ଭାରତବର୍ଷର ପୁନରୁତ୍ଥାନ ପାଇଁ କିପରି କାନ୍ଦୁ ଥିଲା, ତାହା ସହଜରେ ବୁଝି ହେବ । ଦାରିଦ୍ର୍ୟ, ଧାର୍ମିକ ଓ ପୁରୋହିତଗଣଙ୍କର ପ୍ରତାରଣା ଓ ଅତ୍ୟାଚରରେ ଜର୍ଜରିତ ଭାରତର କୋଟି କୋଟି ନିଷ୍ପୀଡ଼ିତ ଜନତାଙ୍କ ପାଇଁ, ଆସ ଆମେ ପ୍ରତ୍ୟେକ ଦିନରାତି ପ୍ରାର୍ଥନା କରିବା । ଉଚ୍ଚବର୍ଗ ଓ ଧନୀକ ଶ୍ରେଣୀଙ୍କ ଅପେକ୍ଷା ସେମାନଙ୍କୁ ଧର୍ମଶିକ୍ଷା ପ୍ରଦାନ କରିବା ପାଇଁ ମୁଁ ଅଧିକ ଯତ୍ନବାନ । ମୁଁ ଜଣେ ଦାର୍ଶନିକ ନୁହେଁ, ଧର୍ମତତ୍ତ୍ୱ ବିଶାରଦ ନୁହେଁ, ନୁହେଁ ବି ସନ୍ନ୍ୟାସୀ । କିନ୍ତୁ ମୁଁ ଜଣେ ଗରିବ । ମୁଁ ଗରିବକୁ ଭଲ ପାଏ... । ଦାରିଦ୍ର୍ୟ ଓ ଅଜ୍ଞାନରେ ନିରନ୍ତର ବୁଡି ରହିଥିବା ତିରିଶ କୋଟି ଭାରତୀୟ

Digitized by srujanika@gmail.com

ନର ଓ ନାରୀଙ୍କ ପାଇଁ ଭାରତବର୍ଷରେ କିଏ ଚିନ୍ତା କରେ ମୋତେ କୁହ ତ ? ଏଥିରୁ ନିସ୍ତାର ପାଇବା ପାଇଁ ପଥ କେଉଁଠି ? ସେମାନଙ୍କ ପାଇଁ କିଏ ଚିନ୍ତା କରେ ? ଏହି ସମଗ୍ର ଜନତା ଆମର ଈଶ୍ୱର - ସେମାନଙ୍କ ପାଇଁ ଭାବ, କାର୍ଯ୍ୟକର ଏବଂ ନିରନ୍ତର ପ୍ରାର୍ଥନା କର - ଈଶ୍ୱର ତୁମମାନଙ୍କୁ ପଥ ଦେଖାଇବେ । ଯାହାର ହୃଦୟ ଗରିବଙ୍କ ପାଇଁ ଦୁଃଖରେ କାନ୍ଦେ, ସେମାନଙ୍କୁ ମୁଁ ମହାତ୍ମା ବୋଲି କୁହେ, ନଚେତ ସେମାନେ ଦୁରାତ୍ମା... । ଯେ ପର୍ଯ୍ୟନ୍ତ କୋଟି କୋଟି ଲୋକେ ଅନାହାର ଓ ଅଜ୍ଞାନରେ ସଢ଼ୁଥିବେ, ସେପର୍ଯ୍ୟନ୍ତ ସେମାନଙ୍କ ପରିଶ୍ରମ ଓ ଅର୍ଥରେ ଶିକ୍ଷିତ ହୋଇ ସେମାନଙ୍କ ପ୍ରତି ଦୃଷ୍ଟି ଦେଉ ନ ଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ମୁଁ ଦେଶଦ୍ରୋହୀ ବୋଲି ଆଖ୍ୟା ଦେବି... ।

ଆମେରିକାର ବିଳାସବ୍ୟସନ ଓ ସ୍ୱଚ୍ଛଳ ପରିବେଶରେ ଭାରତର ଚିତ୍ର ତାଙ୍କ ସ୍ମୃତିପଟରୁ ଆଦୌ ବିସ୍ମୃତ ହୋଇ ନ ଥିଲା । ପରିବ୍ରାଜକ ଜୀବନରେ ହିମାଳୟରୁ କନ୍ୟାକୁମାରୀ ଭ୍ରମଣ କରିବାବେଳେ ସେ ଦେଖିଥିଲେ ଗରିବ ଓ ନିଶ୍ୱଙ୍କର ଯନ୍ତ୍ରଣା ଓ ଦୁର୍ଦ୍ଦଶା । ଏଠାରେ ଏକ ନୂଆ ମହାଦେଶର ସମୃଦ୍ଧି ତାଙ୍କର ଆତ୍ମାକୁ ଦୋହଲାଇ ଦେଲା ଏବଂ ଭାରତବାସୀଙ୍କର ଉନ୍ନତି ନିମନ୍ତେ ତାଙ୍କର ଅନ୍ତରାତ୍ମା କାନ୍ଦି ଉଠିଲା । ନୈରାଶ୍ୟରେ ନୁହେଁ, ପ୍ରଚଣ୍ଡ ଆଶାର ବାତ୍ୟା ତାଙ୍କ ମାନସଦର୍ଶନରେ ପ୍ରବାହିତ ହେଲା । ନିଜ ଆଖିରେ ସେ ଦେଖିଲେ ଯେ ମାନବିକ ଚେଷ୍ଟା, ବୁଦ୍ଧି ଓ ଆଗ୍ରହ ଯୋଗୁଁ ଆମେରିକା ମାଟିରୁ ଦାରିଦ୍ର୍ୟ, ଅନ୍ଧବିଶ୍ୱାସ, ଅନାହାର, ବ୍ୟାଧି ଓ ଅନ୍ୟ ପ୍ରତିବନ୍ଧ ଧୀରେ ଧୀରେ ହଟିଯାଉଛି । ତାହା ମଧ ଭାରତବର୍ଷରେ ସମ୍ଭବ ହୋଇପାରିବ । ଭାରତୀୟ ଶିକ୍ଷିତ ଓ ସଚେତନ ହେଲେ, ଭାରତମାତା ପୁଣି ଥରେ ଆଲୋକମୟ ରତ୍ନ ସିଂହାସନରେ ଉପବିଷ୍ଟ ହେବେ । ଏହି ବିଶ୍ୱାସର ମହାବାତ୍ୟା ତାଙ୍କୁ ଅସ୍ଥିର କରିଦେଲା ଯାହାଫଳରେ ସେ ଏକ ଚିଠି ୧୮୯୩ ମସିହାରେ ଭାରତର ଜଣେ ଭକ୍ତଙ୍କ ପାଖକୁ ଲେଖି ନିଜର ମନ କଥା ଜଣାଇଥିଲେ ।

''ମୋ ବାଳକଗଣ, ଅଣ୍ଟାରେ ଲୁଗା ଭିଡ଼ି କାର୍ଯ୍ୟ କରିବାକୁ ପ୍ରସ୍ତୁତ ହୁଅ ! ଏହା କରିବା ପାଇଁ ମୁଁ ଈଶ୍ୱରଙ୍କ ଦ୍ୱାରା ଆହୂତ... । ତୁମ ଭିତରେ ଆଶା ବିରାଜିତ, ଦୁର୍ବଳ ଓ ନିଚ ଭିତରେ ବି, କିନ୍ତୁ ବିଶ୍ୱାସରେ ପରିପୂର୍ଣ୍ଣ ହୁଅ । ଦୁସ୍ଥଙ୍କ ପାଇଁ ଚିନ୍ତାକର ଏବଂ ସାହାଯ୍ୟ ପାଇଁ ଅନ୍ୱେଷଣ କର - ଏହା ନିଶ୍ଚିତ ଆସିବ । ଏହି ଭାର ହୃଦୟ ଏବଂ ଏହି ଚିନ୍ତା ମୁଣ୍ଡରେ ବୋହି ବାରବର୍ଷ କାଳ ମୁଁ ଭ୍ରମଣ କରିଛି । ତଥାକଥିତ ଧନୀ ଓ ମହାନବ୍ୟକ୍ତିଙ୍କ ନିକଟକୁ ଦ୍ୱାର ଦ୍ୱାର ବୁଲି ମୁଁ ଯାଇଛି । ଦୁଃଖଭରା ହୃଦୟରେ ଅଧା ପୃଥିବୀ ଅତିକ୍ରମ କରି, ସାହାଯ୍ୟ ପାଇଁ ଏହି ଅଦ୍ଭୁତ ଦେଶକୁ ଆସିଛି । ଈଶ୍ୱର ବାସ୍ତବରେ ମହାନ୍ । ମୁଁ ଜାଣେ, ସେ ମୋତେ ସାହାଯ୍ୟ କରିବେ ।

ଏହି ଭୂମିରେ ପ୍ରଚଣ୍ଡ ଶୀତ ଓ ଅନାହାରରେ ମୁଁ ମୃତ୍ୟୁବରଣ କରିପାରେ, କିନ୍ତୁ ଗରିବ, ଅଜ୍ଞ, ନିର୍ଯ୍ୟାତିତଙ୍କ ନିମନ୍ତେ ଏହି ସହାନୁଭୂତି, ଏହି ସଂଘର୍ଷ ମୁଁ ତୁମଭଳି ଯୁବକମାନଙ୍କୁ ଅର୍ପଣ କରୁଛି । ତାଙ୍କ ସମ୍ମୁଖରେ ମସ୍ତକ ଅବନତ କର ଏବଂ ଏକ ମହାନ୍ ବଳିଦାନ କର - ସେମାନଙ୍କ ନିମନ୍ତେ ନିଜର ସମଗ୍ର ଜୀବନକୁ ଉତ୍ସର୍ଗୀକୃତ କର । ସେହି ଗରିବ, ନୀଚ ନିଷ୍ପେଷିତଙ୍କ ପାଇଁ ତ ସେ ମଝିରେ ମଝିରେ ଅବତରଣ କରନ୍ତି, କାହିଁକିନା ସେ ସେମାନଙ୍କୁ ଭାରି ଭଲ ପାଆନ୍ତି । ଶପଥ

Digitized by srujanika@gmail.com

ନିଅ ଯେ ପ୍ରତିଦିନ ରସାତଳଗାମୀ ହେଉଥିବା ଏହି ତିରିଶକୋଟି ଜନତାଙ୍କ ଉଦ୍ଦେଶ୍ୟରେ କାର୍ଯ୍ୟ କରିବା ପାଇଁ ତୁମର ସମଗ୍ର ଜୀବନ ଉତ୍ସର୍ଗୀକୃତ କରିବ । ଈଶ୍ୱରଙ୍କର ଜୟ ହେଉ ! ଆମେ ନିଶ୍ଚୟ କୃତକାର୍ଯ୍ୟ ହେବା । ଶହଶହ ବ୍ୟକ୍ତି ଏହି ସଂଘର୍ଷରେ ଯୋଗ ଦେବେ - ଶହଶହ ବ୍ୟକ୍ତି ଏହାକୁ ଆଗେଇ ନେବାପାଇଁ ପ୍ରସ୍ତୁତ ହେବେ । ବିଶ୍ୱାସ - ସହାନୁଭୂତି, ପ୍ରଜ୍ୱଳିତ ବିଶ୍ୱାସ ଏବଂ ପ୍ରଜ୍ୱଳିତ ସହାନୁଭୂତି ! ଜୀବନ କିଛି ନୁହେଁ, ମୃତ୍ୟୁ କିଛି ନୁହେଁ - ଅନାହାର କିଛି ନୁହେଁ, ଶୀତ ବି କିଛି ନୁହେଁ । ଈଶ୍ୱରଙ୍କ ଜୟ ହେଉ । ଆଗେଇ ଚାଲ ଭାଇ, ପ୍ରଭୁ ଆମର ସେନାଧ୍ୟକ୍ଷ । ପଶ୍ଚାତରେ କିଏ ପଡ଼ିଗଲା ବୋଲି ପଛକୁ ଚାହଁ ନାହିଁ - ଆଗେଇ ଯାଅ - ଆଗେଇ ଯାଅ ଭାଇ ।

ଭାରତବର୍ଷକୁ ଭଲପାଉଥିବା ବ୍ୟକ୍ତିଙ୍କ ଭିତରେ ସ୍ୱାମୀ ବିବେକାନନ୍ଦ ଥିଲେ ଶ୍ରେଷ୍ଠତମ । ଦେହରେ ସନ୍ନ୍ୟାସୀର ପୋଷାକ, ଆତ୍ମା ପରମାତ୍ମାଙ୍କ ସହ ମିଶିବା ପାଇଁ ସଦା ତତ୍ପର, କିନ୍ତୁ ମନ ତାଙ୍କର ବିଦ୍ରୋହ ନିଆଁରେ ନିରନ୍ତର ପ୍ରଜ୍ୱଳିତ । ସେ ଭଲ ଭାବରେ ଭାରତୀୟ ଜନ ମାନସିକତାକୁ ଚିହ୍ନି ପାରିଛନ୍ତି ଯେ ନିଜ ଦେଶର ଜୀବନ ପ୍ରବାହ ସମ୍ପୂର୍ଣ୍ଣଭାବେ ନିଃଶେଷ ହୋଇପାରିବ ନାହିଁ, କିନ୍ତୁ ସେହି ଜୀବନ-ସ୍ରୋତ ଅଜ୍ଞାନ ଓ ଦାରିଦ୍ର୍ୟର ଉତ୍କଟ ଓଜନରେ କେବଳ ଚାପି ହୋଇଯାଇଛି । ଭାରତ ବର୍ତ୍ତମାନ ମଧ୍ୟ ମହାନ ସନ୍ଥ ଓ ସନ୍ନ୍ୟାସୀ ଉତ୍ପନ୍ନ କରିପାରୁଛି ଏବଂ ସମଗ୍ର ପାଶ୍ଚାତ୍ୟ ଜଗତ ଚାତକ ପରି ସେମାନଙ୍କର ଆତ୍ମାର ବାଣୀକୁ ଚାହିଁ ବସିଛନ୍ତି । କିନ୍ତୁ ସେହି ମୂଲ୍ୟବାନ ଆଧ୍ୟାତ୍ମିକ ରତ୍ନ, ରତ୍ନବାକ୍ସ ଅଭାବରେ, ମଇଳା ଗଦାରେ ଲୁଚି ରହିଛି । ପାଶ୍ଚାତ୍ୟ ଦେଶ ସୁସ୍ଥ ସମାଜ ଗଠନ କରି, ଅବଶ୍ୟ ରତ୍ନବାକ୍ସ ନିର୍ମାଣ କରିପାରିଛନ୍ତି, କିନ୍ତୁ ସେଥିରେ ରଖିବା ପାଇଁ ସେମାନଙ୍କ ପାଖରେ ରତ୍ନ ନାହିଁ । ସେହି ମୂଲ୍ୟବାନ ରତ୍ନ ଭାରତ ସେମାନଙ୍କୁ ଯୋଗାଇ ଦେବ ।

- ୪ -

*ବିଜ୍ଞାନ ଐକତ୍ୱର ଅନୁସନ୍ଧାନ କରିବା ବ୍ୟତୀତ ଅଧିକ କିଛି ନୁହେଁ । ଶୁଦ୍ଧ ଐକତ୍ୱ ନିକଟରେ ବିଜ୍ଞାନ ଉପନୀତ ହେବାକ୍ଷଣି, ଏହାର ଅନୁସନ୍ଧାନ କାର୍ଯ୍ୟର ସମାପ୍ତି ଘଟିଥାଏ । ଯେତେବେଳେ ରସାୟନ ବିଜ୍ଞାନ ଆବିଷ୍କାର କରିବ ଯେ ଗୋଟିଏ ଉପାଦାନରୁ ଅନ୍ୟ ସମସ୍ତ ଉପାଦାନ ଗଠିତ ହୋଇପାରିବ, ସେତେବେଳେ ଏହା ଅଧିକ ଅଗ୍ରସର ହୋଇପାରିବ ନାହିଁ ।*

ଅନ୍ୟପକ୍ଷରେ ସ୍ୱାମୀଜୀ ଅନୁଭବ କଲେ ଯେ ପାଶ୍ଚାତ୍ୟ ଜଗତର ଭୌତିକ ସଂସ୍କୃତିରେ ରହିଛି ସେମାନଙ୍କର ବିନାଶ ନିମନ୍ତେ ବୀଜ । ସେଥିପାଇଁ ସେ ପାଶ୍ଚାତ୍ୟ ଜଗତକୁ ଏହାର ଭୟାବହତା ସମ୍ବନ୍ଧରେ ବାରମ୍ବାର ସତର୍କ କରାଇ ଦେଲେ । ପଶ୍ଚିମ ଦିଗବଳୟରେ ଉଜ୍ଜ୍ୱଳ ଆଲୋକ ଏକ ନୂତନ ସକାଳର ପୂର୍ବ ଲକ୍ଷଣ ହୋଇ ନ ପାରେ, ଏହା ବିଶାଳ ଜୁଇର ରକ୍ତିମ ଅଗ୍ନିଜିହ୍ୱାରେ

Digitized by srujanika@gmail.com

ପରିଣତ ହୋଇପାରିବ । ଲକ୍ଷ୍ୟହୀନ ଅସରନ୍ତି ଅଭିଯାନ ଭଳି ଅବିରତ କାର୍ଯ୍ୟର ଧୂଆଁଳିଆ ଜାଲରେ ପାଶ୍ଚାତ୍ୟ ଜଗତ ଛନ୍ଦିହୋଇ ପଡ଼ିଛି । ଏକ ଉଚ୍ଚ ଆଧ୍ୟାତ୍ମିକ ଲକ୍ଷ୍ୟ ଏବଂ ସାର୍ବଜନୀନ ସହାନୁଭୂତି ବିନା ଭୌତିକ ସୁଖ ଓ ସମୃଦ୍ଧି ପଶ୍ଚାତରେ ସେମାନେ ଧାବମାନ ଏବଂ ଏହି ମୃଷା ଦୌଡ଼ ଦିନେ ଇର୍ଷା ଓ ଘୃଣାରେ ଅଗ୍ନିମୁଖୀ ହୋଇ ସେମାନଙ୍କୁ ବିନାଶ ଆଡ଼କୁ ନେଇଯିବ ।

କିନ୍ତୁ ସ୍ୱାମୀଜୀ ଥିଲେ ମାନବତା'ର ପ୍ରେମିକ । ଈଶ୍ୱରଙ୍କ ସର୍ବୋଚ୍ଚ ପ୍ରକାଶନ ହେଉଛି ମନୁଷ୍ୟ ଏବଂ ଏହି ଈଶ୍ୱର ବିଭିନ୍ନ ଉପାୟରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ କ୍ରୁଶବିଦ୍ଧ ହେଉଛନ୍ତି । ତେଣୁ ଆମେରିକାରେ ଦୁଇଟି କାର୍ଯ୍ୟ ସମ୍ପାଦନ କରିବାର ଥିଲା ତାଙ୍କର ଲକ୍ଷ୍ୟ । ସେ ଆମେରିକାରୁ ଅର୍ଥ, ବୈଜ୍ଞାନିକ ଜ୍ଞାନ ଓ କୌଶଳ ଭାରତର ଜନତାଙ୍କର ପୁନରୁତ୍ଥାନ ନିମନ୍ତେ ବୈଷୟିକ ସାହାଯ୍ୟ ଆଣିବେ ଏବଂ ପ୍ରତିବଦଳରେ ସେ ଭାରତର ସର୍ବପ୍ରାଚୀନ ଶାଶ୍ୱତ ଆଧ୍ୟାତ୍ମିକ ଜ୍ଞାନ ସେମାନଙ୍କୁ ଶିକ୍ଷା ଦେବେ ଯା'ଫଳରେ ସେମାନଙ୍କ ଭୌତିକ ଅଗ୍ରଗତିରେ ରହିଥିବା ଆଧ୍ୟାତ୍ମିକତାର ଅଭାବକୁ ପୂରଣ କରିବ । ଏହି ଆଧ୍ୟାତ୍ମିକ ଜ୍ଞାନ ଲାଭରେ ସେମାନଙ୍କର ଭୌତିକ ସୁଖରୁ ମନ ଏକ ଉର୍ଦ୍ଧ୍ୱ ଚେତନା ଅଭିମୁଖେ ଧାବିତ ହେବ । ଏଠାରେ କହିବା ବାହୁଲ୍ୟ ଯେ ସ୍ୱାମୀଜୀ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଏବଂ ବିଜ୍ଞାନ ଓ ଧର୍ମ ଭିତରେ ଏକ ସମନ୍ୱୟ ପ୍ରତିଷ୍ଠା କରିବାର ବ୍ରତ ଗ୍ରହଣ କରିଥିଲେ । କାରଣ ବହୁ ଜନହିତାୟ ବହୁ ଜନସୁଖାୟ ମହାମନ୍ତ୍ରରେ ସେ ଦକ୍ଷିଣେଶ୍ୱରରୁ ଦୀକ୍ଷିତ ଏବଂ ସେ ସେହି ମହାବାକ୍ୟର ଏକ ଆକୃତି ବିହୀନ ସ୍ୱର ଭାବେ ଏଠାରେ ବାତ୍ୟା ସଦୃଶ କାର୍ଯ୍ୟରତ ।

ଭାରତରେ ଜାତିପ୍ରଥା ଭିତରୁ ଉଦ୍ଭବ ସାମାଜିକ ଓ ଅର୍ଥନୈତିକ ଅସମତା ଭାରତୀୟ ଜୀବନଧାରାକୁ ଅସ୍ତବ୍ୟସ୍ତ କରିଦେଇଥିଲା ଏବଂ ହିନ୍ଦୁମାନେ ଯେଉଁଦିନ 'ମ୍ଳେଚ୍ଛ' ଶବ୍ଦ ଉଦ୍ଭାବନ କଲେ ସେହି ଦିନଠାରୁ ଅନ୍ୟମାନଙ୍କ ସହ ଭାବ-ବିନିମୟ କରିବାର ଦ୍ୱାର କେବଳ ସବୁଦିନ ପାଇଁ ବନ୍ଦ ହେଲାନାହିଁ ବରଂ ଭାରତର ଗୌରବମୟ ଆକାଶରେ ଉଦ୍‌ଭାସିତ ଭାଗ୍ୟରବି ଅଜ୍ଞାନ ଅନ୍ଧକାର ରୂପକ କଳା ମେଘମାଳା ଦ୍ୱାରା ଆଚ୍ଛାଦିତ ହୋଇଗଲେ ବୋଲି ସ୍ୱାମୀଜୀ ଅନୁଭବ କଲେ ।

ବିଜ୍ଞାନ ଓ ଧର୍ମ ଦୁଇଟି ପୃଥକ ମାର୍ଗ, କିନ୍ତୁ ସ୍ୱାମୀଜୀଙ୍କ ଦିବ୍ୟଦୃଷ୍ଟିରେ ଏହି ଦୁଇଟି ମାର୍ଗ ''ଭୌତିକ ଅଦ୍ୱିତବାଦ ଓ ଆଧ୍ୟାତ୍ମିକ ଅଦ୍ୱୈତବାଦ'' ଭାବେ ହୋଇଛି ପ୍ରତିଭାତ । କାରଣ ଏହି ଦୁଇଟିର ଲକ୍ଷ୍ୟ, ନଦୀଦ୍ୱୟର ସାଗରରେ ମିଳନ ଭଳି, ଏକ ଶାଶ୍ୱତ ରାଜ୍ୟରେ ମିଳିତ ହେବେ, ଯେଉଁଠି ରହିଛି ଐକତ୍ୱ, ଦ୍ୱିତୀୟ ନାସ୍ତି । ଭୌତିକ ବସ୍ତୁ ଭିତରେ ବିଜ୍ଞାନ ଖୋଜୁଛି ଐକ୍ୟତ୍ୱକୁ, ମନ ଓ ଚେତନା ଭିତରେ ଧର୍ମ ଖୋଜୁଛି ବି ଐକତ୍ୱକୁ । ଐକତ୍ୱ ନ ମିଳିବା ପର୍ଯ୍ୟନ୍ତ ସେମାନଙ୍କର ଅନୁସନ୍ଧାନ ଓ ଅନ୍ୱେଷଣ ଚାଲିଥିବ । ବିଶ୍ୱଧର୍ମ ମହାସମ୍ମିଳନୀ ସଭା କକ୍ଷରେ 'ହିନ୍ଦୁଧର୍ମ' ସମ୍ବନ୍ଧରେ ବକ୍ତୃତା ପ୍ରଦାନ କରୁଥିବାବେଳେ ସେ ଏହି ଗୂଢ଼ ରହସ୍ୟ ଉନ୍ମୋଚନ କରିଥିଲେ ।

''ବିଜ୍ଞାନ ଐକତ୍ୱର ଅନୁସନ୍ଧାନ କରିବା ବ୍ୟତୀତ ଅଧିକ କିଛି ନୁହେଁ । ଶୁଦ୍ଧ ଐକତ୍ୱ ନିକଟରେ ବିଜ୍ଞାନ ଉପନୀତ ହେବାକ୍ଷଣି, ଏହାର ଅନୁସନ୍ଧାନ କାର୍ଯ୍ୟର ସମାପ୍ତି ଘଟିଥାଏ ।

Digitized by srujanika@gmail.com

ଯେତେବେଳେ ରସାୟନ ବିଜ୍ଞାନ ଆବିଷ୍କାର କରିବ ଯେ ଗୋଟିଏ ଉପାଦାନରୁ ଅନ୍ୟ ସମସ୍ତ ଉପାଦାନ ଗଠିତ ହୋଇପାରିବ, ସେତେବେଳେ ଏହା ଅଧିକ ଅଗ୍ରସର ହୋଇପାରିବ ନାହିଁ । ଗୋଟିଏ ଶକ୍ତିରୁ ଅନ୍ୟ ସମସ୍ତ ଶକ୍ତି ଯେ ସୃଷ୍ଟି ହୋଇଛି ତାହା ନୁହେଁ ବରଂ ଏହି ଶକ୍ତିଗୁଡ଼ିକ ସେହି ଗୋଟିଏ ମାତ୍ର ଶକ୍ତିର ପ୍ରକାଶନ ବୋଲି ପଦାର୍ଥ ବିଜ୍ଞାନ ଯେଉଁ ମୁହୂର୍ତ୍ତରେ ଆବିଷ୍କାର କରିବ, ସେହି ମୁହୂର୍ତ୍ତରେ ଏହା ଆଉ ଅଗ୍ରସର ହୋଇପାରିବ ନାହିଁ । କାରଣ ପଦାର୍ଥ ବିଜ୍ଞାନ ତା'ର ଆବିଷ୍କାର ପ୍ରକ୍ରିୟାର ଅନ୍ତିମସ୍ଥଳୀରେ ସେତେବେଳେ ପହଞ୍ଚି ସାରିଥିବ । ଯେତେବେଳେ ଧର୍ମ ଆବିଷ୍କାର କରିବ ଯେ 'ସେ' ହିଁ ମୃତ ଜଗତରେ ଏକମାତ୍ର ଜୀବନ, ସଦା ପରିବର୍ତ୍ତନଶୀଳ ଜଗତର 'ସେ'ହିଁ ଏକମାତ୍ର ଚିରନ୍ତନ ଆଧାର, ଯିଏ 'ସେ' ହିଁ ଏକ ଆତ୍ମା ଏବଂ ସମସ୍ତ ଆତ୍ମା ତାଙ୍କର ହିଁ କେବଳ ମାୟାଚ୍ଛନ୍ନ ପ୍ରକାଶନ, ସେତେବେଳେ ଧର୍ମ ପରମ ଉତ୍କର୍ଷ ସ୍ତରରେ ପହଞ୍ଚି ଶୁଦ୍ଧ ହୋଇଯିବ । ବହୁବିଧ ଓ ଦ୍ୱୈତ ମାଧ୍ୟମରେ ପରମ ଐକତ୍ୱରେ ଏହା ଉପନୀତ ହେବ । ସେଠାରୁ ଧର୍ମ ଆଉ ପାଦେ ଆଗେଇ ପାରିବ ନାହିଁ, ବିଜ୍ଞାନ ବି ନୁହେଁ । ସମସ୍ତ ବିଜ୍ଞାନର ଏହା ହିଁ ଅନ୍ତିମ ଲକ୍ଷ୍ୟ ।

ଆମେରିକାର ମିସିସିପିଠାରୁ ଆରମ୍ଭ କରି ଆଟଲାଣ୍ଟିକ୍ ପର୍ଯ୍ୟନ୍ତ ବିଶାଳ ଓ ବିସ୍ତୀର୍ଣ୍ଣ ଭୂଖଣ୍ଡରେ ବହୁ ସଭାସମିତି, ଘରୋଇ ବୈଠକ ଏବଂ ଶ୍ରେଣୀଗୃହ ଶିକ୍ଷା କାର୍ଯ୍ୟକ୍ରମରେ ସ୍ୱାମୀଜୀ ଏକ ଭ୍ରମଣଶୀଳ ଯନ୍ତ୍ର ଭାବେ ବକ୍ତୃତା ପ୍ରଦାନରେ ମଗ୍ନ ରହିଲେ । ସେ ଡେଟ୍ରୋଏଟ୍‌ରେ ଛଅ ସପ୍ତାହ ରହିଲେ; ମିସିଗାନ୍‌ର ପୂର୍ବତନ ଗଭର୍ଣ୍ଣରଙ୍କର ବିଧବାପତ୍ନୀ **ମିସେସ୍ ଜୋହନ୍ ବେଗ୍‌ଲେଙ୍କ** ଗୃହରେ ଅତିଥି ଭାବେ କିଛିଦିନ ରହିଥିଲେ ଏବଂ ପୁନଶ୍ଚ ସଂଯୁକ୍ତ ଆମେରିକାର ପୂର୍ବତନ ସିନେଟ୍‌ର ତଥା ୱାର୍ଲ୍ଡ ଫେୟାର କମିଶନ **ଥୋମାସ୍ ଡବ୍ଲିୟୁ ପାଲମର୍‌ଙ୍କ** ଘରେ କିଛିଦିନ ବି ରହିଥିଲେ । ଏଠାରେ ମିସ୍ **ଗ୍ରୀନ୍‌ଷ୍ଟିଡ଼େଲ** ଏକ ସଭାରେ ସ୍ୱାମୀଜୀଙ୍କର ବକ୍ତୃତା ଶୁଣି ଏଭଳି ତନ୍ମୟ ହୋଇଯାଇଥିଲେ ଯେ ସେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏହି ମହିଳାଙ୍କ ନାଁ ପରବର୍ତ୍ତୀ କାଳରେ ସିଷ୍ଟର କ୍ରିଷ୍ଟାଇନ୍ ହୋଇଥିଲା, ଯିଏ କଲିକତାରେ ରହି ଶିକ୍ଷା ପ୍ରସାର କ୍ଷେତ୍ରରେ ନିଜର ସମଗ୍ର ଜୀବନ ଉତ୍ସର୍ଗ କରିଥିଲେ । ତତ୍‌ପଶ୍ଚାତେ ସେ ନିୟୁୟର୍କ, ଚିକାଗୋ ଓ ବୋଷ୍ଟନ ଭ୍ରମଣ କରି ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେଲେ । ୧୮୯୪ ଗ୍ରୀଷ୍ମଋତୁରେ ମାସାଚ୍ୟୁସେଟ୍ ସ୍ଥିତ ଗ୍ରୀନ୍‌ଏକର୍‌ଠାରେ "ମାନବ ଅଧିବେଶନ" ଅନୁଷ୍ଠିତ ହୋଇଥିଲା ଯେଉଁଠି ବହୁ ଖ୍ରୀଷ୍ଟିଆନ ବୈଜ୍ଞାନିକ, ଆଧ୍ୟାତ୍ମିକବାଦୀ ଚମତ୍କାରିତାରେ ବିଶ୍ୱାସ ରଖିଥିବା ସାଧକ, ସମ୍ମୋହନ ବିଦ୍ୟାବିତ୍ ଏବଂ ଧାର୍ମିକ ବ୍ୟକ୍ତି ଯୋଗ ଦେଇଥିଲେ । ସ୍ୱାମୀଜୀ ବି ସେହି ଅଧିବେଶନରେ ଅଂଶ ଗ୍ରହଣ କଲେ ।

ଗ୍ରୀନ୍‌ଏକର୍ ଅଧିବେଶନରେ ବହୁ ପ୍ରସିଦ୍ଧ ବ୍ୟକ୍ତି ସମ୍ମୋହନ ବିଦ୍ୟା ଓ ଚମତ୍କାରିତା ସମ୍ବନ୍ଧରେ ବକ୍ତୃତା ଦେଇଥିଲେ । ରୋଗ ଭଲ କରି ଦେବାର ବିଭିନ୍ନ ବିଶ୍ୱାସ ଭିତ୍ତିକ ପଦ୍ଧତି ଓ ଚମତ୍କାରିତା ଉପରେ ମିଷ୍ଟର ଉଡ୍ ନିଜର ବକ୍ତବ୍ୟ ପ୍ରଦାନ କରିଥିଲେ । କିନ୍ତୁ ଏହି ଅଧିବେଶନର କାର୍ଯ୍ୟକ୍ରମ ସ୍ୱାମୀଜୀଙ୍କୁ ସନ୍ତୁଷ୍ଟ କରି ନ ଥିଲା । କାରଣ ସମ୍ମୋହନ ବିଦ୍ୟା ଓ ଚମତ୍କାରିତା ପ୍ରତି

Digitized by srujanika@gmail.com

ତାଙ୍କର ତିଳେମାତ୍ର ଉତ୍ସାହ ନ ଥିଲା । ବରଂ ନିଜ ଶୈଳୀରେ ସେ ଶିବିରାର୍ଥୀମାନଙ୍କୁ ଶିବୋହମ୍‌ର ଗୁଢ଼ାର୍ଥ ବୁଝାଇ, ଶିବୋହମ୍, ଶିବୋହମ୍, ଧ୍ୱନି ଉଚ୍ଚାରଣ କରି ରାତ୍ରି ବିତାଇଥିଲେ । ଏଠାରେ ବ୍ରୁକ୍‌ଲିନ୍ ଏଥିକାଲ୍ ଏସୋସିଏସନ୍‌ର ପ୍ରେସିଡ଼େଣ୍ଟ ଏବଂ ଗ୍ରୀନ୍‌ଏକର୍ ଦ୍ୱାରା ଆୟୋଜିତ ସ୍କୁଲ୍ ଅଫ୍ କମ୍ପାରିଟିଭ୍ ରିଲିଜନ୍‌ର ଡାଇରେକ୍ଟର ଡକ୍ଟର **ଲୁଇସ୍ ଜି. ଜେନ୍ସଙ୍କ** ସହ ସ୍ୱାମୀଜୀଙ୍କର ବନ୍ଧୁତା ହୋଇଥିଲା । ପରବର୍ତ୍ତୀ ଶରଦ୍ ଋତୁରେ ସେ **ବାଲ୍‌ଟିମୋର**, ୱାସିଙ୍ଗଟନ୍ ଓ ନିୟର୍କର ବହୁ ସଭାରେ ଭାଷଣ କାର୍ଯ୍ୟକ୍ରମରେ ଯୋଗ ଦେଲେ । ବହୁ ଧନୀ ତଥା ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଗୃହରେ ସେ ଅତିଥି ଭାବେ ରହୁଥିଲେ । ଇତ୍ୟବସରରେ ସ୍ୱାମୀଜୀଙ୍କ ମନ ଓ ଚିନ୍ତାରେ ଏକ ବିରାଟ ପରିବର୍ତ୍ତନ ଘଟିଲା । ସେ ଆଉ ଭାଷଣବାଜିରେ ସମୟ ନଷ୍ଟ ନ କରିବା ପାଇଁ ମନସ୍ଥ କଲେ । କେତେକ ଶିଷ୍ୟଙ୍କୁ ନିର୍ଦ୍ଦିଷ୍ଟ ଆଧ୍ୟାତ୍ମିକ ମାର୍ଗରେ ଯାତ୍ରୀ ହେବା ନିମନ୍ତେ ପ୍ରଶିକ୍ଷଣ ଦେବା ପାଇଁ ତାଙ୍କର ମନ ବ୍ୟଗ୍ର ହୋଇଉଠିଲା । ଅଳ୍ପ କେତେକ ଅନିସନ୍ଧିତ୍ସୁଙ୍କର ଚରିତ୍ର ନିର୍ମାଣ ଏହି ଘରୋଇ ପ୍ରଶିକ୍ଷଣ ଶିକ୍ଷା ମାଧ୍ୟମରେ ହୋଇପାରିବ ବୋଲି ସେ ଭାବିଲେ । ଏହିଭଳି ଚିନ୍ତାରେ ସେ ମଗ୍ନ ଥିବାବେଳେ ଏକ ସୁବର୍ଣ୍ଣ ସୁଯୋଗ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲା ।

ଗ୍ରୀନ୍‌ଏକର ଅଧିବେଶନ କାଳରେ ପରିଚିତ ହୋଇଥିବା ବନ୍ଧୁ ଡକ୍ଟର **ଲୁୟିସ୍ ଜେନ୍ସ ବ୍ରୁକ୍‌ଲିନ୍** ଏଥିକାଲ ଏସୋସିଏସନ୍ ସମ୍ମୁଖରେ ହିନ୍ଦୁଧର୍ମ ଉପରେ କ୍ରମାଗତ ବକ୍ତୃତା ପ୍ରଦାନ ନିମନ୍ତେ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କଲେ । **୧୯୯୪ ଡିସେମ୍ବର ୩୧** ସଂଧ୍ୟାରେ ବହୁ ମହିଳା ସମେତ ବହୁ ଡାକ୍ତର, ଓକିଲ, ବିଚାରପତି ଓ ଶିକ୍ଷକଙ୍କ ଭଳି ଉତ୍ସାହିତ ଶ୍ରୋତାମଣ୍ଡଳୀଙ୍କ ସମ୍ମୁଖରେ ସେ ତାଙ୍କର ପ୍ରଥମ ବକ୍ତୃତା ଭାରତୀୟ ଧର୍ମ ଉପରେ ଉପସ୍ଥାପନ କଲେ । ଭାଷଣ କକ୍ଷ ଜନସମୁଦ୍ରରେ ଉଚ୍ଛୁଳି ପଡ଼ିଥିଲା । ତାଙ୍କର ଜ୍ୱାଳାମୟ ଭାଷାରେ ପରିପୂର୍ଣ୍ଣ ବିଷୟବସ୍ତୁ ଏମନ୍ତ ଚିତାକର୍ଷକ ଥିଲା ଯେ ଉପସ୍ଥିତ ଶ୍ରୋତାମଣ୍ଡଳୀ ଏକ ସ୍ୱରରେ ମନ୍ତବ୍ୟ ଦେଇଥିଲେ ଯେ ସ୍ୱାମୀ ବିବେକାନନ୍ଦ ତାଙ୍କ ନାମ ଓ ଯଶଠାରୁ ଅଧିକ ମହାନ୍ । ବେଦର ପ୍ରାଚୀନ ଋଷିଙ୍କର ସ୍ୱର ଏହା ଥିଲା । ସମଗ୍ର ଶ୍ରୋତା ମନ୍ତ୍ରମୁଗ୍ଧ ହୋଇ ସେହି ସ୍ୱରରେ ବୁଡ଼ିଯାଇଥିଲେ । ସଭା ଅନ୍ତେ ବ୍ରୁକ୍‌ଲିନ୍‌ରେ ନିୟମିତ ଶ୍ରେଣୀଗୃହ ଶିକ୍ଷାର ବ୍ୟବସ୍ଥା କରିବା ପାଇଁ ସେମାନେ ସ୍ୱାମୀଜୀଙ୍କୁ ଅନୁରୋଧ କଲେ, ସ୍ୱାମୀଜୀ ବି ରାଜି ହେଲେ । ଯାହାହେଉ, **ପାଉଚ୍ ମେନସନ୍** ଭଳି ଏକ ପ୍ରସିଦ୍ଧ ସ୍ଥାନ, ଯେଉଁଠି ଏଥିକାଲ୍ ଅସୋସିଏସନ୍‌ର ସଭା ଅନୁଷ୍ଠିତ ହେଉଥିଲା, ସେଠାରେ ସ୍ୱାମୀଜୀ ଅନେକ ସାର୍ବଜନୀନ ବକ୍ତୃତା ପ୍ରଦାନ କରିବା ସଙ୍ଗେସଙ୍ଗେ ଶ୍ରେଣୀଗୃହ ଶିକ୍ଷା ପ୍ରଦାନ କଲେ । ଏପରିକି ଗରିବ ଛାତ୍ରମାନେ ନିୟୁର୍କ ସହରରେ ଘର ଭଡ଼ାନେଇ ଶ୍ରେଣୀଗୃହ ଶିକ୍ଷା କାର୍ଯ୍ୟକ୍ରମର ଆୟୋଜନ କଲେ ଏବଂ ସ୍ୱାମୀଜୀ ଭାରତବର୍ଷର ଶ୍ରେଣୀ ଶିକ୍ଷକ ଭାବେ ଶିଷ୍ୟମାନଙ୍କୁ ପଢ଼ାଇଲେ । ତାଙ୍କର ଶିକ୍ଷାପ୍ରଦାନ ଏମନ୍ତ ଭାବୋଦ୍ଦିପକ ଥିଲା ଯେ ବହୁ ଛାତ୍ରଛାତ୍ରୀ ଭିଡ଼ ଯୋଗୁଁ ଶ୍ରେଣୀକୁ ନ ଯାଇ ପାରି ଦୁଆର ମୁହଁରେ ବସି ତାଙ୍କର ବକ୍ତୃତା ଶୁଣୁଥିଲେ । ଛାତ୍ରଛାତ୍ରୀମାନଙ୍କର ଉତ୍ସାହ ଅବଲୋକ କରି ସେ ଅତ୍ୟନ୍ତ ଆନନ୍ଦିତ ହେଲେ ।

Digitized by srujanika@gmail.com

- ୫ -

*ଏହିସବୁ ନନ୍‌ସେନ୍ସ କଥାରେ ମୁଁ କାହିଁକି ନିଜକୁ ଆବଦ୍ଧ କରିବି ? ସବୁ ସାଂସାରିକ ନନ୍‌ସେନ୍ସ ଛଳନା ହୃଦୟଙ୍ଗମ କରି ମୁଁ ତ ସନ୍ନ୍ୟାସୀ ହୋଇଛି, ମୋ ଆଚରଣକୁ ସଜାଡ଼ିବା ପାଇଁ ମୋ ପାଖରେ ସମୟ ନାହିଁ । ବାର୍ତ୍ତା ପ୍ରଦାନ କରିବା ପାଇଁ ମୋ ପାଖରେ ଯଥେଷ୍ଟ ସମୟ ବି ନାହିଁ । ନିଜ ଭଙ୍ଗୀରେ ମୁଁ କାର୍ଯ୍ୟ କରିବି । ତୁମର ସଂକୀର୍ଣ୍ଣ ଓ ସୀମିତ ପାରମ୍ପରିକ ଜୀବନ ପ୍ରବାହ ଭିତରକୁ ମୁଁ କ'ଣ ଟାଣି ହୋଇଯିବି ? କଦାପି ନୁହେଁ ।*

କେତେକ ବଛାବଛା ଅନିସନ୍ଧିତ୍ସୁ ଶିଷ୍ୟଙ୍କୁ ନେଇ ସ୍ୱାମୀଜୀ ଏକ ଶ୍ରେଣୀଗୃହ ଶିକ୍ଷାର ଆୟୋଜନ କଲେ । ଶ୍ରେଣୀଗୃହ ମାଧ୍ୟମରେ ସେ ଏକ ଭାରତୀୟ ପୁରାତନ ଋଷିଭଳି ଶିଷ୍ୟମାନଙ୍କ ନିକଟରେ ବସି ଶିକ୍ଷା ଦାନକଲେ । ବେଦାନ୍ତର ସୂକ୍ଷ୍ମତମ ସତ୍ୟକୁ ଜାଣିବା ପାଇଁ ସ୍ୱାମୀଜୀ ସେମାନଙ୍କୁ 'ଜ୍ଞାନଯୋଗ' ପଢ଼ାଇଲେ ଏବଂ ଆତ୍ମ-ସଂଯମ, ଏକାଗ୍ରତା ଓ ଧ୍ୟାନର ବିଦ୍ୟା ଜାଣିବା ପାଇଁ 'ରାଜଯୋଗ' ଶିକ୍ଷା ଦେଲେ । ସରଳ ଖାଦ୍ୟ ସେବନ ନିମନ୍ତେ ପରାମର୍ଶ ଦେବା ସଙ୍ଗେସଙ୍ଗେ ବ୍ରହ୍ମଚର୍ଯ୍ୟ ରକ୍ଷା କରିବାର ଉଦ୍ଦେଶ୍ୟ ଓ ମହତ୍ତ୍ୱ ସେମାନଙ୍କୁ ବୁଝାଇଲେ । କୌଣସି ପ୍ରକାର ସମ୍ମୋହନ ଶକ୍ତି ଓ ଚମତ୍କାରୀ ବିଦ୍ୟାରେ ବଶବର୍ତ୍ତୀ ନ ହେବାପାଇଁ ସେ ଛାତ୍ରଛାତ୍ରୀଙ୍କୁ ସତର୍କ କରାଇ ଦେଲେ । ଯୋଗର ବହୁ ରହସ୍ୟମୟ ବିଦ୍ୟାର ଉଦ୍‌ଘାଟନ ଶ୍ରେଣୀ ଶିକ୍ଷା ମାଧ୍ୟମରେ ସେ ଶିଷ୍ୟମାନଙ୍କ ସମ୍ମୁଖରେ ଉନ୍ମୋଚନ କଲେ ।

**୧୮୯୫, ଜୁନ୍** ବେଳକୁ ସ୍ୱାମୀଜୀ ତାଙ୍କର ବିଖ୍ୟାତ ପୁସ୍ତକ "ରାଜଯୋଗ" ରଚନା କରିସାରିଥିଲେ । ହାରଭାର୍ଡ ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ଦାର୍ଶନିକ ଉଇଲିୟମ୍ ଜେମ୍‌ସ ଉକ୍ତ ପୁସ୍ତକ ପଢ଼ି ସ୍ୱାମୀଜୀଙ୍କୁ ଶତ କଣ୍ଠରେ ପ୍ରଶଂସା କରିଥିଲେ । ପାତଞ୍ଜଳି ଯୋଗସୂତ୍ରର ଏହା ଥିଲା ଇଂରାଜୀ ଅନୁବାଦ । ନିଜର ମତ ଓ ବ୍ୟାଖ୍ୟା ଉକ୍ତ ପୁସ୍ତକରେ ସେ ଉପସ୍ଥାପନ କରିଛନ୍ତି । ଏହି ପୁସ୍ତକର ଦୁଇଟି ଉଦ୍ଦେଶ୍ୟ ପୂରଣ ହୋଇଛି । ପ୍ରଥମତଃ, ସ୍ୱାମୀଜୀ ପୁସ୍ତକରେ ଦର୍ଶାଇଛନ୍ତି ଯେ ଯେପରି ବୈଜ୍ଞାନିକ ସତ୍ୟ, ପରୀକ୍ଷଣ, ପର୍ଯ୍ୟବେକ୍ଷଣ ଓ ପୁନଃପରୀକ୍ଷଣ ଉପରେ ଆଧାରିତ, ଠିକ୍ ସେପରି ଧାର୍ମିକ ଅନୁଭୂତି ବି । ଆଧ୍ୟାତ୍ମିକ ଅନୁଭୂତିକୁ ଅଯୌକ୍ତିକ କହି ପ୍ରତ୍ୟାଖ୍ୟାନ କରିବା ଉଚିତ ନୁହେଁ । ଦ୍ୱିତୀୟତଃ, ସ୍ୱାମୀଜୀ ଏକାଗ୍ରତାର ବିଭିନ୍ନ ସ୍ତର ଓ ଶୃଙ୍ଖଳା ପ୍ରାଞ୍ଜଳଭାବେ ବୁଝାଇଛନ୍ତି ଯାହା ସହଜରେ ବୋଧଗମ୍ୟ, କିନ୍ତୁ ସେଥିରେ ବି ସେ ସତର୍କ କରାଇ ଦେଉଛନ୍ତି ଯେ ଉପଯୁକ୍ତ ଗୁରୁଙ୍କ ବିନା ଏହି ସାଧନା କରିବା ଉଚିତ ନୁହେଁ ।

ବ୍ରୁକ୍‌ଲିନ୍‌ର ଶିଷ୍ୟା **ମିସ୍ ଏଲେନ୍ ୱାଲଡୋ** 'ରାଜଯୋଗ' ରଚନା କ୍ଷେତ୍ରରେ ତାଙ୍କୁ ସାହାଯ୍ୟ କରିଥିଲେ । ସର୍ବସାଧାରଣ ସଭା ଏବଂ ଶ୍ରେଣୀଗୃହ ଶିକ୍ଷାରେ ବହୁ ବକ୍ତୃତା ପ୍ରଦାନ

Digitized by srujanika@gmail.com

ସହିତ ରାଜଯୋଗ ରଚନାର ପରିଶ୍ରମ ତାଙ୍କୁ ଶାରିରୀକ ଓ ମାନସିକ ସ୍ତରରେ କ୍ଲାନ୍ତ ଓ ଦୁର୍ବଳ କରିଦେଲା । ଜଣେ ଲେଖକ ଭାବରେ ନିଜର ପୁସ୍ତକ ପଠିତ ଜ୍ଞାନକୁ ଆଧାରିତ କରି ସ୍ୱାମୀଜୀ ଏହି ଅମୂଲ୍ୟ ପୁସ୍ତକ ବ୍ୟାଖ୍ୟା କରି ନ ଥିଲେ, ମହର୍ଷି ପାତଞ୍ଜଳୀଙ୍କର ପ୍ରତ୍ୟେକ ଯୋଗସୂତ୍ରକୁ ନିଜେ ସାଧନା କରି ଯେଉଁ ଅନୁଭୂତି ସେ ପାଇଥିଲେ, ତାହା ଥିଲା ତାଙ୍କ ବ୍ୟାଖ୍ୟାର ଆଧାର । ଏହି ପରିପ୍ରେକ୍ଷୀରେ ମିସ୍ ଏଲେନ୍ ୱାଲ୍‌ଡ଼ୋ ଯିଏ ସ୍ୱାମୀଜୀଙ୍କର ରାଜଯୋଗ ପୁସ୍ତକର କ୍ଷୀପ୍ର ଲେଖିକା ଥିଲେ, ସେ କୁହନ୍ତି, ''ଯୋଗସୂତ୍ର ଉପରେ ବ୍ୟାଖ୍ୟାର ଶୃତଲିଖନ ଡାକୁଥିବା ବେଳେ, ସ୍ୱାମୀଜୀ ଅଧିକାଂଶ ସମୟରେ ଗଭୀର ସମାଧିରେ କିମ୍ବା ଆତ୍ମ ଚିନ୍ତନରେ ମଗ୍ନ ହୋଇପଡୁଥିଲେ । ମୁଁ ସେଥିପାଇଁ ତାଙ୍କ ସମ୍ମୁଖରେ ନିରବ ହୋଇ ବହୁ ସମୟ ବସି ରହୁଥିଲି । ସେହି ଅବସ୍ଥାରୁ ସେ ପୁନର୍ବାର ଫେରିଆସି ଅତି ସୁନ୍ଦର ଭାବେ ସୂତ୍ରର ଉଜ୍ଜ୍ୱଳ ବ୍ୟାଖ୍ୟା କରୁଥିଲେ । ମୁଁ ସର୍ବଦା ଦୁଆତରେ କଲମ ପୂରାଇ ବସୁଥିଲି । ବହୁ ସମୟ ଗଭୀର ଧ୍ୟାନରେ ମଗ୍ନ ରହିବେ ବୋଲି ମୁଁ ଭାବୁଥିବାବେଳେ, ହଠାତ୍ ସେ ନିରବତା ଭଙ୍ଗ କରି କେତେବେଳେ ଅଳ୍ପ କିମ୍ବା ଲମ୍ବା ସମୟ ଧରି ବ୍ୟାଖ୍ୟାର ଶ୍ରୁତଲିଖନ ଡାକୁଥିଲେ ।'' ମିସ୍ ଏଲେନ୍‌ଙ୍କର ଉପରୋକ୍ତ ମନ୍ତବ୍ୟ ସୂଚାଇ ଦିଏ ଯେ ସ୍ୱାମୀଜୀ ଦିନର ଚବିଶ ଘଣ୍ଟା ଭିତରେ କିପରି କର୍ମମୁଖର ଓ ବ୍ୟସ୍ତତା ଭିତରେ ଜୀବନ ନିର୍ବାହ କରୁଥିଲେ, ତାହା ସହଜରେ ଅନୁମେୟ । ରାଜଯୋଗକୁ ବ୍ୟାଖ୍ୟା କରି ବିଦେଶ ମାଟିରେ ହିନ୍ଦୁଧର୍ମର ପ୍ରଚାର କରିବା ଏବଂ ତ୍ୟାଗଭଳି ଏକ ଉଚ୍ଚ ଆଦର୍ଶକୁ ଆଧାର କରି ବ୍ୟକ୍ତିର ଜୀବନ ନିର୍ମାଣ କରିବା ଅତ୍ୟନ୍ତ କଷ୍ଟଦାୟକ ବ୍ୟାପାର ତାଙ୍କ ପକ୍ଷରେ ଥିଲା ।

ତାଙ୍କର ଏତାଦୃଶ ସଂଘର୍ଷମୟ ଜୀବନ ସହିତ ଲୋକପ୍ରିୟତା ଲକ୍ଷ୍ୟକରି କେତେକ ଶିଷ୍ୟ ଓ ଅନୁଗାମୀ, ବିଶେଷକରି ମହିଳା ଉତ୍ସାହିତ ହୋଇ ଆମେରିକା ଚାଲିଚଳନ ଅନୁସାରେ ଆରାମଦାୟକ ସ୍ୱଚ୍ଛଳ ଜୀବନ ବିତାଇବାକୁ ତାଙ୍କୁ ପରାମର୍ଶ ଦେଲେ । ସମସ୍ତ ସୁବିଧାରେ ପରିପୂର୍ଣ୍ଣ ବାସଗୃହ, ତଥା ବିଳାସପୂର୍ଣ୍ଣ ପୋଷାକ ଇତ୍ୟାଦି ଉକ୍ତ ପରାମର୍ଶରେ ଅନ୍ତର୍ଭୁକ୍ତ ଥିଲା, ଯଦ୍ୱାରା ସ୍ୱାମୀଜୀ ସମାଜର ବହୁ ଲୋକଙ୍କୁ ପ୍ରଭାବିତ କରି ପାରିବେ । ଅବଶ୍ୟ ସେମାନଙ୍କର ଏତାଦୃଶ ପରାମର୍ଶ ତତ୍‌କାଳୀନ ପ୍ରଚଳିତ ସଭ୍ୟସମାଜରେ ନିଜକୁ ଖାପ୍ ଖୁଆଇ ଚଳିବା ନିମନ୍ତେ ଉଦ୍ଦିଷ୍ଟ ଥିଲା । ଭାରତର ସର୍ବତ୍ୟାଗୀ ସନ୍ୟାସୀଙ୍କର ମନୋଭାବ ସେମାନେ କିପରି ବୁଝିପାରିବେ ! ଏତାଦୃଶ ପରାମର୍ଶ ସ୍ୱାମୀଜୀଙ୍କୁ ଭଲ ଲାଗିଲା ନାହିଁ ସେ ବିରକ୍ତ ହୋଇ କହିଥିଲେ, ''ଏହିସବୁ ନନ୍‌ସେନ୍ସ କଥାରେ ମୁଁ କାହିଁକି ନିଜକୁ ଆବଦ୍ଧ କରିବି ? ସବୁ ସାଂସାରିକ ନନ୍‌ସେନ୍ସ ଛଳନା ହୃଦୟଙ୍ଗମ କରି ମୁଁ ତ ସନ୍ୟାସୀ ହୋଇଛି, ମୋ ଆଚରଣକୁ ସଜାଡ଼ିବା ପାଇଁ ମୋ ପାଖରେ ସମୟ ନାହିଁ । ବାର୍ତ୍ତା ପ୍ରଦାନ କରିବା ପାଇଁ ମୋ ପାଖରେ ଯଥେଷ୍ଟ ସମୟ ବି ନାହିଁ । ନିଜ ଭଙ୍ଗୀରେ ମୁଁ କାର୍ଯ୍ୟ କରିବି । ତୁମର ସଂକୀର୍ଣ୍ଣ ଓ ସୀମିତ ପାରମ୍ପରିକ ଜୀବନ ପ୍ରବାହ ଭିତରକୁ ମୁଁ କ'ଣ ଟାଣି ହୋଇଯିବି ? କଦାପି ନୁହେଁ ।'' କେବଳ ସେତିକି ନୁହେଁ ସେ ନିଜର ବିରକ୍ତି ପ୍ରକାଶ କରି ଜଣେ ଭକ୍ତ ପାଖକୁ ଲେଖିଥିଲେ, ''ମୁଁ ଚାହେଁ, ଓହୋଃ, ମୁଁ ଚାହେଁ ମୋର ସେହି ଜୀର୍ଣ୍ଣଶୀର୍ଣ୍ଣ ବସ୍ତ୍ର, ମୋର ଲଣ୍ଡିତ ମସ୍ତକ, ବୃକ୍ଷ ତଳେ ମୋର ଶୟନ ଏବଂ ଭିକ୍ଷାରୁ ମୋର ଆହାର ।''

Digitized by srujanika@gmail.com

ତାଙ୍କର କ୍ଲାନ୍ତ ମନ ଓ ଅବଶ ଶରୀର ବୃକ୍‌ଲିନ୍ ଶ୍ରେଣୀଗୃହ ଶିକ୍ଷାକୁ ପ୍ରତିହତ କରି ପାରିଲା ନାହିଁ । 'ଉପନିଷଦ' ଓ 'ଆତ୍ମାର ତତ୍ତ୍ୱ' ଭଳି ଅନେକ ଭାରତୀୟ ଚିନ୍ତାଧାରାକୁ ଅତିସୁନ୍ଦର ଓ ସାବଲୀଳ ଭାଷାରେ ତର୍ଜମା କରି ଶ୍ରୋତାଙ୍କ ସମ୍ମୁଖରେ ଉପସ୍ଥାପନ କରୁଥିଲେ । ସ୍ୱାମୀଜୀଙ୍କର ବକ୍ତୃତା ଅବଶ୍ୟ ଭାରତ ଓ ହିନ୍ଦୁଧର୍ମ ସମ୍ବନ୍ଧରେ ଜମାଟବାନ୍ଧି ଥିବା ଆମେରିକୀୟ ମନକୁ ପରିଷ୍କାର କରୁଥିଲା, କିନ୍ତୁ ତାଙ୍କର ଧାରଣା ଓ ମତ ବି ଅଧିକାଂଶରେ ବହୁ ଖ୍ରୀଷ୍ଟଧର୍ମୀ ଗଡ଼ୀବାଦୀଙ୍କୁ କ୍ରୋଧାନ୍ୱିତ କରୁଥିଲା । ସେ ବହୁ ସମୟରେ ବିବାଦୀୟ ହୋଇପଡୁଥିଲେ ଯାହାର ସୁଯୋଗ ନେଇ ଖ୍ରୀଷ୍ଟଧର୍ମୀ ପାଦ୍ରୀମାନେ ସ୍ୱାମୀଜୀଙ୍କ ବିରୁଦ୍ଧରେ ନାନାପ୍ରକାର କୁତ୍ସାରଟନା ଜନ ସମ୍ମୁଖରେ କରୁଥିଲେ । ଭାରତୀୟ ସଂସ୍କୃତି, ଧର୍ମ, ପରମ୍ପରା, ଆଦର୍ଶ ବିଶେଷକରି ଭାରତୀୟ ନାରୀମାନଙ୍କର ସୁ-ଆଚରଣ ଓ ସର୍ବଂସହାର ଜୀବନ ସମ୍ବନ୍ଧରେ ସ୍ୱାମୀଜୀ ଯେଉଁ ଚିତାକର୍ଷକ ବକ୍ତୃତା ପ୍ରଦାନ କରୁଥିଲେ, ତାହା ବିରୁଦ୍ଧରେ ରମାବାଈଙ୍କ ସମ୍ପ୍ରଦାୟ ଭାରତୀୟ ନାରୀଙ୍କ ସମ୍ବନ୍ଧରେ ସ୍ୱାମୀଜୀ ତାହା ମିଛ କହୁଛନ୍ତି ବୋଲି ପ୍ରଚାର କଲେ । ଏହି ପଣ୍ଡିତା ରମାବାଈ ଜଣେ ଭାରତୀୟ ବିଧବା, ଯିଏ ଖ୍ରୀଷ୍ଟଧର୍ମରେ ଧର୍ମାନ୍ତରିତ ହୋଇ ଖ୍ରୀଷ୍ଟଧର୍ମ ପ୍ରଚାର ଓ ପ୍ରସାର କାର୍ଯ୍ୟରେ ବ୍ୟସ୍ତ । ସେ ବି ବିଶ୍ୱଧର୍ମ ମହାସଭାରେ ଉପସ୍ଥିତ ଥିଲେ । ବହୁ ନିଃସନ୍ତାନ ହିନ୍ଦୁ ଯୁବତୀ କିପରି ଭାରତବର୍ଷରେ ଅତ୍ୟାଚାରିତ ଓ ନିଷ୍ପେଷିତ, ସେହି ସମ୍ବନ୍ଧରେ ଅନେକ କପୋଳକଳ୍ପିତ କାହାଣୀ ରଚନା କରି ସେ ଆମେରିକା ଜନମାନସକୁ ବିଭ୍ରାନ୍ତ କରୁଥିଲେ ।

ପଣ୍ଡିତା ରମାବାଈଙ୍କର କୁତ୍ସାରଟନା ସ୍ୱାମୀଜୀଙ୍କୁ ବିଶେଷ ଭାବେ ଆଶ୍ଚର୍ଯ୍ୟାନ୍ୱିତ କଲା । ଏକ ଭାରତୀୟ ନାରୀ କିପରି ନିଜ ଜନ୍ମଭୂମିର ଗୌରବକୁ ପଦାନତ କରି ପାଶ୍ଚାତ୍ୟ ଜଗତରେ ନିଜର ନାମ ଓ ପ୍ରତିଷ୍ଠା ଅର୍ଜନ କରିବାରେ ମଗ୍ନ, ସେଥିପାଇଁ ସେ କେବଳ ଆଶ୍ଚର୍ଯ୍ୟ ହୋଇ ନ ଥିଲେ ବରଂ ମନ ତାଙ୍କର ଅତ୍ୟନ୍ତ ବ୍ୟଥିତା ହୋଇପଡ଼ିଲା । ସେ **ମିସେସ୍ ବୁଲ୍**ଙ୍କ ନିକଟକୁ ଏକ ପତ୍ରରେ ଲେଖିଥିଲେ : ରମାବାଈଙ୍କ ସମ୍ପ୍ରଦାୟ ଯେଉଁ କୁତ୍ସାରଟନା ମୋ ବିରୋଧରେ ବୁଲି ବୁଲି ଲୋକଙ୍କ କାନରେ ପୂରାଉଛନ୍ତି, ତାହା ଶୁଣି ମୁଁ ବାସ୍ତବରେ ବିସ୍ମିତ । ଡେଟ୍ରୋଏଟ୍‌ର ମିସେସ୍ **ବାଗ୍‌ଲେ** କାଳେ ମୋର ଚାରିତ୍ରିକ ଦୁର୍ବଳତା ଯୋଗୁଁ ତାଙ୍କର ଜଣେ ବାଳିକା-ଚାକରାଣୀକୁ ବହିଷ୍କାର କରିଛନ୍ତି ବୋଲି ସେମାନେ ପ୍ରଚାର କରୁଛନ୍ତି । ଦେଖନ୍ତୁ ମିସେସ୍ ବୁଲ, ଯେଉଁ ବ୍ୟକ୍ତି ଯେତେ ସଦାଚାର ଜୀବନ-ନିର୍ବାହ କଲେ ମଧ୍ୟ କିଛି ଲୋକ ସର୍ବଦା ତାଙ୍କ ସୁନାମରେ ମିଥ୍ୟାର କାଳିମା ବୋଳିବେ ହିଁ ବୋଳିବେ । ଚିକାଗୋରେ ଥିବାବେଳେ ପ୍ରତିଦିନ ମୁଁ ଏଭଳି ମିଥ୍ୟାପ୍ରଚାର ଓ କୁତ୍ସାରଟନାର ସମ୍ମୁଖୀନ ହେଉଥିଲି । ଏବଂ ଏହି ମହିଳାମାନେ ଖ୍ରୀଷ୍ଟଧର୍ମୀଙ୍କର ଖ୍ରୀଷ୍ଟଧର୍ମୀ ଅଟନ୍ତି ।''

ମିସେସ୍ ବାଗ୍‌ଲେ ଯେତେବେଳେ ଶୁଣିବାକୁ ପାଇଲେ ଯେ ତାଙ୍କୁ କେନ୍ଦ୍ରକରି କେତେକ ନ୍ୟସ୍ତସ୍ୱାର୍ଥୀ ଖ୍ରୀଷ୍ଟଧର୍ମୀ ସ୍ୱାମୀଜୀଙ୍କ ବିରୋଧରେ ମିଥ୍ୟାପ୍ରଚାର କରିବାରେ ବ୍ୟସ୍ତ ଏବଂ ଜଣେ ବାଳିକା ଚାକରାଣୀଙ୍କୁ ସେ ବହିଷ୍କାର କରିଛନ୍ତି ବୋଲି ଅପପ୍ରଚାର କରୁଛନ୍ତି, ସେତେବେଳେ ସେସବୁକୁ ଖଣ୍ଡନ କରି ଏକ ଦୀର୍ଘପତ୍ର **୧୮୯୪ ଜୁନ୍ ୨୨** ତାରିଖରେ ଲେଖିଥିଲେ । କିନ୍ତୁ

Digitized by srujanika@gmail.com

ପଣ୍ଡିତା ରମାବାଈଙ୍କର ଗୋଷ୍ଠୀ ପୁନଶ୍ଚ ତଦ୍ରୂପ ମିଥ୍ୟାପ୍ରଚାର ସମ୍ବାଦ ତାଙ୍କର କର୍ଣ୍ଣଗୋଚର ହେବା କ୍ଷଣି ସେ ପୁଣି ଖଣ୍ଡିଏ ପତ୍ର **୧୮୯୫ ମାର୍ଚ୍ଚ ୨୦** ତାରିଖରେ ଲେଖିଥିଲେ ।

''ସ୍ୱାମୀ ବିବେକାନନ୍ଦଙ୍କ ସମ୍ବନ୍ଧରେ ଯେଉଁ ପ୍ରଚାର ଚାଲିଛି, ତାହା ମୂଳରୁ ଶେଷ ପର୍ଯ୍ୟନ୍ତ ଖାଲି ମିଛ ହିଁ ମିଛ । ଏଭଳି ମିଥ୍ୟାଠାରୁ ଅଧିକ ମିଥ୍ୟା କିଛି ହୋଇପାରିବ ନାହିଁ । ଆମମାନଙ୍କ ଗହଣରେ ସେ ଯେଉଁ ଛ'ସପ୍ତାହ ବିତାଇଥିଲେ, ସେହି ସମୟ ଭିତରେ ତାଙ୍କର ସାନିଧ ଆମେ ଖୁବ୍ ଉପଭୋଗ କରିଥିଲୁ । ଡେଟ୍ରୋଏଟ୍‌ରେ ସମସ୍ତ ଭଦ୍ର କ୍ଲବ୍ ତାଙ୍କୁ ଆମନ୍ତ୍ରଣ କରୁଥିଲେ ଏବଂ ବହୁ ସମ୍ଭ୍ରାନ୍ତଘରେ ସେ ଭୋଜନ କରୁଥିଲେ । ସବୁ ସ୍ଥାନରେ ସେ ସମ୍ମାନୀତ ଓ ସମାଦୃତ ହୋଇଥିଲେ... ମୋ ଘରେ ବହୁ ବର୍ଷ ହେଲା ଚାକର ଅଛନ୍ତି କାହାକୁ ମୁଁ ଏ ପର୍ଯ୍ୟନ୍ତ ବାହାର କରିନାହିଁ । ଯେଉଁ ଡେଟ୍ରୋଏଟ୍‌ର ବାଳିକା-ଚାକରାଣୀଙ୍କ ବିଷୟରେ କହୁଛନ୍ତି, ସେ କିଏ ମୁଁ ଜାଣିନାହିଁ । ମୁଁ ଏତିକି ଜାଣେ ଯେ ଯେଉଁ ଅବାନ୍ତର କାହାଣୀ ରଚନା କରାଯାଇଛି, ତାହା ତୁଚ୍ଛ ମିଛ । ଆମେ ସମସ୍ତେ ସ୍ୱାମୀ ବିବେକାନନ୍ଦଙ୍କୁ ଭଲ ଭାବରେ ଜାଣିଛୁ । ଏଭଳି ମିଥ୍ୟାପ୍ରଚାର କରିବାକୁ ସେମାନେ କିଏ ?''

- ୬ -

*ଯେପର୍ଯ୍ୟନ୍ତ ଭାରତବର୍ଷ ନିଜର ଧର୍ମ ପ୍ରତି ନିଷ୍ଠାବାନ ରହିଥିବ, ଏତାଦୃଶ ଗୁଜବ ଓ କୁତ୍ସାରଟନାର କୌଣସି ଅର୍ଥ ନାହିଁ । କିନ୍ତୁ ଯେତେବେଳେ ଏହି ଭୟଙ୍କର ନିରୀଶ୍ୱରବାଦୀଗଣ ପାଶ୍ଚାତ୍ୟ ଛଳନା ଓ ନାସ୍ତିକତା ଭାରତକୁ ପଠାନ୍ତି, ସେତେବେଳେ ଭାରତମାତା ହୃଦୟ ଆଘାତପ୍ରାପ୍ତ ହୁଏ । ବୋଝ ବୋଝ ଭର୍ତ୍ସନା ଓ ତିରସ୍କାର ଭର୍ତ୍ତି ଗାଡ଼ି ଏବଂ ନିନ୍ଦାଭରା ଜାହାଜ ପଠାଇବା ପରିବର୍ତ୍ତେ, ଅନନ୍ତ ପ୍ରେମର ଝରଣା ସେଠାକୁ ପ୍ରବାହିତ ହେଉ । ଆମେ ସମସ୍ତେ ମନୁଷ୍ୟ ହେବା ଉଚିତ ।*

ଯେମିତି ମା' ସେମିତି ଝିଅ । ସ୍ୱାମୀଜୀଙ୍କ ବିରୋଧରେ କୁତ୍ସାରଟନା ସମ୍ବାଦରେ ବିଚଳିତ ହୋଇ ମିସେସ୍ **ବାଗ୍‌ଲେଙ୍କର କନ୍ୟା ହେଲେନ୍** ଖଣ୍ଡିଏ ଚିଠିରେ ଲେଖିଥିଲେ, ''ଆର୍''ଙ୍କ ଦ୍ୱାରା ଏହି ମିଥ୍ୟା କାହାଣୀ ପ୍ରଚାର ହୋଇନାହିଁ ଜାଣି ମୁଁ ଆନନ୍ଦିତ । ଯଦି ସମ୍ଭବ ହୁଏ, ମୁଁ ମିସେସ୍ 'ଏସ୍'ଙ୍କୁ ସାକ୍ଷାତ କରିବି ଏବଂ ମୁଁ ତାଙ୍କୁ ପଚାରିବି ଯେ ଏପରି ମନ୍ତବ୍ୟ ଦେବାପାଇଁ ସେ କିଏ ? ଅବଶ୍ୟ ମୁଁ ଏହା ଚୁପ୍‌ଚାପ୍ କରିବି, କିନ୍ତୁ ସ୍ୱାମୀ ବିବେକାନନ୍ଦଙ୍କ ସମ୍ବନ୍ଧରେ କିଏ ଏଭଳି ମିଥ୍ୟା ଆରୋପ ଆରମ୍ଭ କରିଛି, ସେ ବିଷୟରେ ସମ୍ଭବତଃ ଜାଣିବା ପାଇଁ ମୁଁ ପ୍ରୟାସ ଜାରି ରଖିବି । ଏଭଳି କଥା ଶୀଘ୍ର ପ୍ରସାରିତ ହୋଇଥାଏ ଏବଂ ଥରେ ଏହାର ମୂଳୋତ୍ପାଟନ ହୋଇଗଲେ, ଏପରି କାହାଣୀ ପ୍ରଚାର କରିବା ପୂର୍ବରୁ ଏହି ମହିଳାମାନେ ଆଉ ଏତାଦୃଶ କାର୍ଯ୍ୟ କରିବା ପାଇଁ

Digitized by srujanika@gmail.com

ଭାବିବେ ନାହିଁ । ଏଭଳି କଥାକୁ ଯଦି ସେମାନେ ଅନୁସନ୍ଧାନ କରିବେ, ତେବେ ସେମାନେ 'ଏହା କିପରି ମିଥ୍ୟା' ଜାଣିପାରିବେ ।'' ବାସ୍ତବରେ ସ୍ୱାମୀଜୀଙ୍କ ନାମ, ଯଶ ଓ ଖ୍ୟାତି ଆକାଶରେ ଯେତେ କୁତ୍ସାରଟନା, ନିନ୍ଦା ଓ ଘୃଣାର କଳାବାଦଲ ଈର୍ଷାନ୍ୱିତ ବ୍ୟକ୍ତିଙ୍କ ଦ୍ୱାରା ସୃଷ୍ଟି ହେଉଥିଲା, ତା'ଠାରୁ ଅଧିକ ମାତ୍ରାର ଶକ୍ତିଶାଳୀ ଥିଲା ପ୍ରଶଂସକ ଅନୁଗାମୀ ଓ ସାଧାରଣ ଜନତାଙ୍କର ସମ୍ମାନ, ସ୍ନେହ ଓ ପ୍ରେମ ଯାହା ଏକ ମହାବାତ୍ୟା ସଦୃଶ ସମସ୍ତ ପ୍ରକାର କଳାବାଦଲକୁ ଉଡ଼ାଇ ନେଉଥିଲା ଏବଂ ଏକ ଅଗ୍ନିବର୍ଷୀ ମାର୍ତ୍ତଣ୍ଡ ଭଳି ସ୍ୱାମୀଜୀ ବିଦେଶ ଭୂମିରେ ଉଦ୍‌ଭାସିତ ହେଉଥିଲେ ।

ନିନ୍ଦୁକମାନଙ୍କର ଏତାଦୃଶ କୁକାର୍ଯ୍ୟ ପ୍ରତି ସ୍ୱାମୀଜୀଙ୍କର ସେତେବେଳେ କିପ୍ରକାର ଭାଷା ଥିଲା, ତାହା ଜାଣିଲେ ଆଜି ବି ପ୍ରତ୍ୟେକ ବ୍ୟକ୍ତିକୁ ଆଶ୍ଚର୍ଯ୍ୟ ସାଗରରେ ଭସାଇ ଦିଏ । **୧୮୯୫ ଏପ୍ରିଲ୍ ୭** ତାରିଖରେ ବୃକ୍‌ଲିନ୍‌ର **ପାଉଚ୍ ମେନସନ୍‌**ଠାରେ ଅନୁଷ୍ଠିତ ସଭାରେ ସ୍ୱାମୀଜୀ ''ହିନ୍ଦୁମାନଙ୍କର କେତେକ ପ୍ରଥା : ସେମାନେ ଏହାକୁ କିଭଳି ଦୃଷ୍ଟିରେ ଦେଖନ୍ତି ଏବଂ ଏହା କିପରି ଭୁଲଭାବେ ବ୍ୟାଖ୍ୟା କରାଯାଏ'' ବିଷୟବସ୍ତୁ ଉପରେ ଏକ ଓଜସ୍ୱିନୀ ବକ୍ତୃତା ପ୍ରଦାନ କଲେ । ଭାରତବର୍ଷ ସପକ୍ଷରେ ସେ ଦୃଢ଼କଣ୍ଠରେ କହିବା ସଙ୍ଗେସଙ୍ଗେ ହିନ୍ଦୁଧର୍ମ ଓ ସଂସ୍କୃତିକୁ ଜାଣିଶୁଣି କଦର୍ଥ କରି ପ୍ରଚାର କରିବାର ପାଶ୍ଚାତ୍ୟବାସୀଙ୍କର ହୀନ ଚକ୍ରାନ୍ତକୁ ନିର୍ଭୀକତା ସହ କଠୋର ସମାଲୋଚନା କରିଥିଲେ । ଭାଷଣ ଶେଷ ଭାଗରେ ସେ କହିଥିଲେ, ''ଯେପର୍ଯ୍ୟନ୍ତ ଭାରତବର୍ଷ ନିଜର ଧର୍ମ ପ୍ରତି ନିଷ୍ଠାବାନ ରହିଥିବ, ଏତାଦୃଶ ଗୁଜବ ଓ କୁତ୍ସାରଟନାର କୌଣସି ଅର୍ଥ ନାହିଁ । କିନ୍ତୁ ଯେତେବେଳେ ଏହି ଭୟଙ୍କର ନିରୀଶ୍ୱରବାଦୀଗଣ ପାଶ୍ଚାତ୍ୟ ଛଳନା ଓ ନାସ୍ତିକତା ଭାରତକୁ ପଠାନ୍ତି, ସେତେବେଳେ ଭାରତମାତା ହୃଦୟ ଆଘାତପ୍ରାପ୍ତ ହୁଏ । ବୋଝ ବୋଝ ଭର୍ତ୍ସନା ଓ ତିରସ୍କାର ଭର୍ତ୍ତି ଗାଡ଼ି ଏବଂ ନିନ୍ଦାଭରା ଜାହାଜ ପଠାଇବା ପରିବର୍ତ୍ତେ, ଅନନ୍ତ ପ୍ରେମର ଝରଣା ସେଠାକୁ ପ୍ରବାହିତ ହେଉ । ଆମେ ସମସ୍ତେ ମନୁଷ୍ୟ ହେବା ଉଚିତ ।'' ପଣ୍ଡିତା ରମାବାଈ ଗୋଷ୍ଠୀକୁ ଅବଶ୍ୟ ସ୍ୱାମୀଜୀ ପ୍ରତ୍ୟକ୍ଷ ଭାବେ ସମାଲୋଚନା କରି ନ ଥିଲେ, କିନ୍ତୁ ଏହି ବକ୍ତୃତାର ଭାଷା ଏଭଳି ଶକ୍ତିଶାଳୀ ଓ ହୃଦୟସ୍ପର୍ଶୀ ଥିଲା ଯାହା ସେମାନଙ୍କୁ ନିରବ କରି ଦେଇଥିଲା ।

ଏଠାରେ ଉଲ୍ଲେଖନୀୟ ଯେ **ଶ୍ରୀମତୀ ବୁଲ୍‌**ଙ୍କ ବାସଭବନରେ ସ୍ୱାମୀଜୀଙ୍କର ବକ୍ତୃତା ''ଭାରତୀୟ ନାରୀଙ୍କ ଆଦର୍ଶ'' ବହୁ ମହିଳାଙ୍କୁ ଅନୁପ୍ରାଣିତ କରିଥିଲା । କେମ୍ବ୍ରିଜର ଭଦ୍ରମହିଳାଗଣ ଉତ୍ସାହିତ ହୋଇ କଲିକତାରେ ରହୁଥିବା ସ୍ୱାମୀଜୀଙ୍କ ମାତାଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ । ମେରିଙ୍କ କୋଳରେ ଯୀଶୁ ଉପବିଷ୍ଟ ଅଙ୍କିତ ଏକ ସୁନ୍ଦର ଚିତ୍ର ବି ସେହି ଚିଠିରେ ସଂଲଗ୍ନ କରିଥିଲେ । ଅବଶ୍ୟ ସେହି ସମୟରେ ଖ୍ରୀଷ୍ଟମାସ ଆସନ୍ନ । ଭାରତୀୟ ମାତୃତ୍ୱର ଧାରଣା ଓ ଆଦର୍ଶକୁ ଶତମୁଖରେ ପ୍ରଶଂସା କରି ସେମାନେ ଲେଖିଥିଲେ - ସମ୍ମାନୀୟା ମହାଶୟା ! ଏହି ଖ୍ରୀଷ୍ଟମାସ ଉତ୍ସବର ଆନନ୍ଦ ଲହରି ଅବସରରେ, ମେରିଙ୍କ ପୁତ୍ରଙ୍କର ବିଶ୍ୱ ପ୍ରତି ଅବଦାନ ଯେତେବେଳେ ପାଳିତ ଏବଂ ଆମେମାନେ ଉତ୍ସବ ମୁଖର, ସେତେବେଳେ ତାଙ୍କୁ ସ୍ମରଣ କରିବାର ସମୟ ଉପସ୍ଥିତ ବୋଲି ପ୍ରତୀୟମାନ ହେଉଛି । ଆପଣଙ୍କ ପୁତ୍ର ଆମ ଗହଣରେ ଉପସ୍ଥିତ,

Digitized by srujanika@gmail.com

ସେଥିପାଇଁ ଆମେ ଆପଣଙ୍କ ନିକଟକୁ ଶୁଭେଚ୍ଛା ପଠାଉଛୁ । ଆମ ଗହଣରେ ନର, ନାରୀ, ଶିଶୁଙ୍କ ପ୍ରତି ତାଙ୍କର ପ୍ରଭୂତ ସେବା ଆପଣଙ୍କ ପାଦରେ ଅର୍ପଣ କରି ସେ ଭାରତବର୍ଷରେ ମାତୃତ୍ୱର ଆଦର୍ଶ ଆମକୁ ବକ୍ତବ୍ୟ ମାଧ୍ୟମରେ ପ୍ରଦାନ କରିଛନ୍ତି । ଯେଉଁମାନେ ତାଙ୍କର ମାତୃ ପୂଜା ସମ୍ବନ୍ଧରେ ଶୁଣିଛନ୍ତି, ସେମାନଙ୍କ ପାଇଁ ଏହା ଏକ ପ୍ରେରଣା ଓ ଜାଗରଣ ନିଶ୍ଚିତ ହେବ । ଆପଣଙ୍କର ମହାନ୍ ଜୀବନ ଓ କାର୍ଯ୍ୟ ଯାହା ଆମେ ଆପଣଙ୍କ ପୁତ୍ର ପାଖରୁ ଶୁଣିଛୁ, ସେଥିପାଇଁ ପ୍ରିୟ ମହାଶୟା ଆମର କୃତଜ୍ଞତା ସାଦରେ ଗ୍ରହଣ କରନ୍ତୁ ।'' ଯେଉଁଠାରେ ସ୍ୱାମୀଜୀ ଭାଷଣ ଦେଉଥିଲେ, ସେଠାରେ ନିଜର ମା'ଙ୍କର ତ୍ୟାଗ ଓ ସେବା ସମ୍ବନ୍ଧରେ ଶ୍ରୋତାମାନଙ୍କୁ କହି ଭାରତୀୟ ନାରୀଙ୍କର ଗାରିମା ପ୍ରକଟ କରୁଥିଲେ । ବିଶେଷକରି ଆମେରିକାର ମହିଳା ଯେଉଁମାନେ ଭାରତୀୟ ନାରୀଙ୍କର ପତିବ୍ରତା ଓ ସହନଶୀଳତା ସମ୍ବନ୍ଧରେ ଜାଣି ନ ଥିଲେ, ସେମାନେ ସ୍ୱାମୀଜୀଙ୍କର ମାତୃପ୍ରଶଂସା ମାଧ୍ୟମରେ ଭାରତୀୟ ନାରୀଙ୍କର ପ୍ରକୃତ ଚିତ୍ର ପାଇ ପାରିଥିଲେ ।

**୧୮୯୫** ଜାନୁଆରି ମାସର ଶେଷଭାଗରେ ସ୍ୱାମୀଜୀ ନ୍ୟୁୟର୍କ ନଗରୀସ୍ଥିତ ଏକ ଛୋଟ ଲଜିଙ୍ଗରେ ଅବସ୍ଥାନ କଲେ ଏବଂ ଏହାର ଚତୁଃପାର୍ଶ୍ୱରେ ବସବାସ କରୁଥିଲେ ଗରିବ ଓ ଆଡ଼ମ୍ୱରହୀନ ପ୍ରତିବେଶୀ । ସେ ବର୍ତ୍ତମାନ ଅତ୍ୟନ୍ତ କ୍ଳାନ୍ତ ଏବଂ ଯଶକୀର୍ତ୍ତି ପ୍ରତି ବୀତସ୍ପୃହ । କେତେକ ଉତ୍ସାହୀ ଓ ନିଷ୍ଠାବାନ ବ୍ୟକ୍ତିଙ୍କୁ ଭାରତୀୟ ଦର୍ଶନ ଓ ବେଦାନ୍ତରେ ପ୍ରଶିକ୍ଷିତ କରିବାର ଅଭିଳାଷ ନେଇ ସେ ନିଜ ଗୃହରେ ଶ୍ରେଣୀଗୃହ ଶିକ୍ଷା ବିନା ଶୁଳ୍କରେ ଆରମ୍ଭ କଲେ । ଭାରତୀୟ ପ୍ରାଚୀନ ଶିକ୍ଷାଦାନ ପଦ୍ଧତିରେ ସେ ଏଠାରେ ପ୍ରତିଦିନ ଶିକ୍ଷା ପ୍ରଦାନ କଲେ, ବହୁ ବ୍ୟକ୍ତି ଏତାଦୃଶ ଅଭୂତପୂର୍ବ ଓ ଅସାଧାରଣ ଶିକ୍ଷାପ୍ରାପ୍ତ କରି ବେଦାନ୍ତର ସହନଶୀଳତା ଓ ଧର୍ମ ସମନ୍ୱୟର ରହସ୍ୟ ବୁଝିପାରିଲେ ।

ଅନ୍ୟପକ୍ଷରେ ନିଜ ଶୈଳୀରେ ବିଶ୍ୱବାସୀଙ୍କ ଉଦ୍ଦେଶ୍ୟରେ ଶିକ୍ଷା ଓ ବାଣୀ ପ୍ରଦାନ କରୁଥିଲେ ହେଁ ମନ ତାଙ୍କର ତତ୍‌କାଳୀନ ସମାଜର ହାବଭାବ ପରିଲକ୍ଷିତ କରି ବିଦ୍ରୋହାତ୍ମକ ମନରେ ପରିଣତ ହୋଇଯାଉଥିଲା । ବୋଧହୁଏ ସ୍ୱାମୀଜୀଙ୍କ ଭିତରେ ଏକ ଅନୁଭବ ବା ଚିନ୍ତା ସର୍ବଦା ମୁଣ୍ଡ ଟେକୁଥିଲା, ଯାହା ଫଳରେ ସେ ଅତ୍ୟଧିକ ବ୍ୟଗ୍ର ହୋଇପଡୁଥିଲେ । ସେହି ଚିନ୍ତା ଥିଲା - ମଣିଷ ଜାତିର ଉତ୍‌ଥାନ । ବିଭିନ୍ନ ଧର୍ମ ଓ ଜାତିର ଉଗ୍ର ବିବିଧତା ଏବଂ ଛଳନାପୂର୍ଣ୍ଣ ମାନସିକତାର ବିଲୋପୀକରଣ । ଏକ ବିଶ୍ୱଭ୍ରାତୃତ୍ୱର ଉଦୟ । ଯେତେ ଶୀଘ୍ର ଏହାର ଉଦୟ ଘଟିବ, ସେତେଶୀଘ୍ର ମଣିଷ ଟିକେ ଶାନ୍ତିରେ ନିଶ୍ୱାସ ମାରିବ । ଏହି ସ୍ୱପ୍ନକୁ ସାକାର କରିବାର ଚିନ୍ତାରେ ସେ ଯେତେବେଳେ ମଗ୍ନ ହୋଇ ନିଜର ଗତି କ୍ଷିପ୍ରତର କରି ଦେଉଥିଲେ, ସେତେବେଳେ ସଂସାରର ଅନେକ ପ୍ରତିବନ୍ଧ ତାଙ୍କର ବାଟ ଓଗାଳୁଥିଲେ, ସତେକି ତାଙ୍କର ଅଳ୍ପ ଆୟୁଷ ଜୀବନ ଭିତରେ ଏହା ସମ୍ଭବ ହୋଇପାରିବ ନାହିଁ । ଏହି ସମ୍ଭବ ଓ ଅସମ୍ଭବ ସଂଘର୍ଷ ଭିତରେ ସେ ବେଳେବେଳେ ସବୁ ସ୍ୱପ୍ନ ଓ ସାଂସାରିକ ଚିନ୍ତାକୁ ମନ ଭିତରୁ ଫିଙ୍ଗି, ଆଞ୍ଜୁଳାଏ ପବନ ହୋଇ ପତ୍ୟେକ ମଣିଷର କାନେ କାନେ ମୁକ୍ତିର ସଙ୍ଗୀତ ଶୁଣାଉଥିଲେ । ନ୍ୟୁୟର୍କଠାରେ ରହୁଥିବା

Digitized by srujanika@gmail.com

ବେଳେ ଶ୍ରୀମତୀ **ମେରୀ ହେଲ୍‌ଙ୍କ** ନିକଟକୁ **୧୮୯୫ ଫେବୃଆରୀ ୧** ତାରିଖରେ ଲେଖିଥିବା ପତ୍ର ପାଠ କଲେ, ଜଣେ ସହଜରେ ବୁଝିପାରିବ ତାଙ୍କର ମୁକ୍ତି ଗାଥା ।

ହେ ମୋର ଆତ୍ମା, ଆଉ ସ୍ୱପ୍ନ ନୁହେଁ, ସ୍ୱପ୍ନ ଦେଖନାହିଁ । ଗୋଟିଏ ଶବ୍ଦରେ ବାଣୀଟିଏ ଦେବାର ଅଛି । ସଂସାର ପ୍ରତି ମଧୁର ହେବା ଲାଗି ମୋ ପାଖରେ ସମୟ ନାହିଁ ଏବଂ ମଧୁର ହେବାର ପ୍ରତ୍ୟେକ ପଦକ୍ଷେପ ମୋତେ କପଟୀ କରିଦିଏ । ସାମୁଦ୍ରିକ ଜେଲି ମାଛ ଭଳି ଏହି ନିର୍ବୋଧ ସଂସାରରେ ବଞ୍ଚିବାକୁ ଚାହେଁ ନାହିଁ, ତାହା ମୋ ନିଜ ଦେଶ ହେଉ କିମ୍ବା ବିଦେଶୀ ରାଷ୍ଟ୍ର ହେଉ, ତା'ର ପ୍ରତ୍ୟେକ ଆବଶ୍ୟକତାରେ ନିଜକୁ ସମର୍ପଣ କରି ବଞ୍ଚିବା ଅପେକ୍ଷା ଶହସ୍ରବାର ମୃତ୍ୟୁବରଣ ମୋ ପକ୍ଷରେ ଶ୍ରେୟସ୍କର । ଆପଣ ଶ୍ରୀମତୀ ବୁଲ୍‌ଙ୍କ ଭଳି ମୋତେ ଭୁଲ ବୁଝନ୍ତି । କାରଣ ଆପଣ ଭାବନ୍ତି ଯେ ମୋର ଏକ କାର୍ଯ୍ୟ ଅଛି, ତାହା ଏକବାରେ ଭୁଲ; ସୂର୍ଯ୍ୟଙ୍କ ତଳେ କିମ୍ବା ସୂର୍ଯ୍ୟଙ୍କ ଉର୍ଦ୍ଧ୍ୱରେ ମୋର କୌଣସି କାର୍ଯ୍ୟ ନାହିଁ । ମୋ ପାଖରେଏକ ବାର୍ତ୍ତା ରହିଛି ଏବଂ ମୁଁ ଏହାକୁ ନିଜ ଭଙ୍ଗୀରେ ପ୍ରଦାନ କରିବି । ମୋ ବାର୍ତ୍ତାକୁ ନା ମୁଁ ହିନ୍ଦୁକରଣ କରିବି ନା ଖ୍ରୀଷ୍ଟକରଣ କରିବି, ନା ପୃଥିବୀର କୌଣସି ମତରେ ଏହାକୁ ରଙ୍ଗିତ କରିବି । ମୋ ନିଜ ମତାନୁସାରେ ଏହାକୁ ରଙ୍ଗିତ କରିବି ଏବଂ ବାସ୍ ସେତିକି ।

ମୁକ୍ତି ହିଁ ମୋର ସମସ୍ତ ଧର୍ମ, ଏଥିରେ ଯେକୌଣସି ବସ୍ତୁ ବାଧା ସୃଷ୍ଟି କରିବ, ମୁଁ ତାହା ବିରୁଦ୍ଧରେ ସଂଗ୍ରାମ କରିବି କିମ୍ବା ପଳାୟନ କରିବି । ଧିକ୍ ଧିକ୍ ଧର୍ମଯାଜକଗଣଙ୍କୁ, ମୁଁ ଶାନ୍ତ କରିବାକୁ ଚାହେଁ । ଭଉଣୀ, ଏହା ଭ୍ରାନ୍ତଧାରଣା ବୋଲି ଭାବନାହିଁ । ତୁମେମାନେ ଶିଶୁ ଏବଂ ଶିଶୁମାନେ ଶିଖିବା ଉଚିତ । ତୁମେ ସେହି ଝରଣାର ଜଳ ଏପର୍ଯ୍ୟନ୍ତ ପାନ କରିନାହଁ, ଏହି ଝରଣା ବୁଦ୍ଧିକୁ ନିର୍ବୁଦ୍ଧି, ମୃତକୁ ଅମୃତ, ଏହି ସଂସାରକୁ ଶୂନ୍ୟ ଏବଂ ମାନବକୁ ଈଶ୍ୱରରେ ପରିଣତ କରିଦିଏ । ସେମାନେ ଯାହାକୁ ସଂସାର କୁହନ୍ତି, ସେହି ନିର୍ବୋଧତା ଜାଲରୁ ତୁମେ ବାହାରି ଆସ । ତେବେଯାଇ ମୁଁ ତୁମକୁ ବାସ୍ତବରେ ସାହସୀ ଓ ମୁକ୍ତ ବୋଲି ସମ୍ବୋଧନ କରିବି । ଯଦି ତୁମେ ନ ପାର, ଯେଉଁମାନେ ଏହି ଅସତ୍ୟ ଈଶ୍ୱର, ସମାଜକୁ ଭୂମିଶାୟୀ କରିବାକୁ ସାହସ କରନ୍ତି ଏବଂ ଏହାର ଅପ୍ରଶମିତ ଭ୍ରାନ୍ତ ଧାରଣାକୁ ପଦଦଳିତ କରନ୍ତି, ସେମାନଙ୍କୁ ସ୍ୱାଗତ କର; ଯଦି ସେମାନଙ୍କୁ ସ୍ୱାଗତ କରିପାରୁନାହଁ, ତେବେ ନୀରବରେ ପ୍ରାର୍ଥନା କର କିନ୍ତୁ ସାଲିସ୍ ଭଳି ଭ୍ରାନ୍ତ ଅସାରତା ରୂପକ ପଙ୍କ ଭିତରକୁ ସୁନ୍ଦର ଓ ମଧୁର ହୋଇ ଟାଣିବାକୁ ପୁନଶ୍ଚ ଚେଷ୍ଟା କରନାହିଁ ।''

ମୁଁ ଏହି ସଂସାର, ଏହି ସ୍ୱପ୍ନ, ଗୀର୍ଜା ଓ ଛଳଚାତୁରିର ଏହି ଭୟଙ୍କର ଦିବାସ୍ୱପ୍ନ, ଏହାର ପୁସ୍ତକ ଓ ଅସାଧୁତା, ଏହାର ସୁନ୍ଦର ମୁଖମଣ୍ଡଳ ଓ ଅସତ୍ୟ ହୃଦୟ, ଏହାର ବାହ୍ୟ ସଦାଚାରୀୟ ଆର୍ତ୍ତନାଦ ଏବଂ ଅନ୍ତରାଳରେ ଶୂନ୍ୟତା ଓ ଅସାରତା ଏବଂ ସର୍ବୋପରି ଏହାର ପବିତ୍ର ବ୍ୟବସାୟତାକୁ ଘୃଣା କରେ, କ'ଣ ହେଲା ? ସାଂସାରିକ ବଦ୍ଧ ଭୃତ୍ୟଙ୍କ ଦୃଷ୍ଟିକୋଣ ଅନୁସାରେ କିଏ ମୋର ଆତ୍ମାକୁ ମାପିବ ? ଧିକ୍, ଭଉଣୀ ତୁମେ ସନ୍ୟାସୀଙ୍କୁ ଜାଣିନାହଁ । ସେ ବେଦର ମସ୍ତକ ଉପରେ

*Digitized by srujanika@gmail.com*

ଦଣ୍ଡାୟମାନ ।'' କାରଣ ଗୀର୍ଜା, ମନ୍ଦିର, ସମ୍ପ୍ରଦାୟ, ଧର୍ମ, ଧର୍ମଯାଜକ, ଶାସ୍ତ୍ର ଏବଂ ଏତାଦୃଶ ସମସ୍ତ ବିଷୟରୁ ସେ ମୁକ୍ତ ।''

**୧୮୯୫** ଜୁନ୍ ବେଳକୁ ସ୍ୱାମୀଜୀ ଅତ୍ୟଧିକ ପରିଶ୍ରମ ଯୋଗୁଁ କ୍ରମଶଃ ଦୁର୍ବଳ ଅନୁଭବ କଲେ, ତଥାପି ଯେଉଁ ଲକ୍ଷ୍ୟ ନେଇ ଆମେରିକା ଭୂମିରେ ପ୍ରଥମେ ପାଦ ଥାପିଥିଲେ, ସେହି ଲକ୍ଷ୍ୟ ପୂର୍ତ୍ତି ଦିଗରେ ବହୁ ପଥ ଅତିକ୍ରମ କରିସାରିଲେଣି ବୋଲି ତାଙ୍କର ହୃଦ୍‌ବୋଧ ହେଲା, ଯେଉଁଥିପାଇଁ ତାଙ୍କର ବିଦ୍ରୋହୀ ମନ ସାମାନ୍ୟ ଶାନ୍ତ ହେଲା ଭଳି ମନେ ହୁଏ । କ୍ଷେତ୍ରୀ ମହାରାଜଙ୍କ ପାଖକୁ ସେ **୧୮୯୫** ଜୁଲାଇ ୯ ତାରିଖରେ ଖଣ୍ଡିଏ ଚିଠି ଲେଖିଥିଲେ, ''ଏହି ଦେଶରେ ମୁଁ ଗୋଟିଏ ବୀଜ ବପନ କରିଥିଲି । ଏହା ଏକ ଛୋଟ ଗଛରେ ପରିଣତ ହେଲେଣି ଏବଂ ଆଶା କରେ ଖୁବ୍ ଶୀଘ୍ର ଏହା ବଡ଼ ହେବ । ମୋ ଶିଷ୍ୟଙ୍କ ସଂଖ୍ୟା ଅଳ୍ପ କେତେ ଶହରେ ପହଞ୍ଚିଲାଣି । ମୁଁ ଏଠାରେ ବହୁ ସନ୍ୟାସୀ ସୃଷ୍ଟି କରିବି, ତେବେଯାଇ ସେମାନଙ୍କ ଉପରେ ଏଠିକାର କାର୍ଯ୍ୟ ସମର୍ପଣ କରି ମୁଁ ଭାରତ ପ୍ରତ୍ୟାବର୍ତ୍ତନ କରିବି । ଖ୍ରୀଷ୍ଟଧର୍ମୀ ପୁରୋହିତ ଗଣ ମୋତେ ଯେତେ ବିରୋଧ କରନ୍ତି, ତାହାଠୁ ଅଧିକ ପରିମାଣରେ ସେମାନଙ୍କ ରାଷ୍ଟ୍ରରେ ଏକ ଚିରନ୍ତନ ଚିହ୍ନ ଛାଡ଼ିଦେବା ପାଇଁ ମୁଁ ସଂକଳ୍ପବଦ୍ଧ ହେଉଛି ।''



Digitized by srujanika@gmail.com

॥ ଚବିଶ ॥

# ସେଣ୍ଟ ଲରେନ୍ସ ନଦୀକୂଳସ୍ଥ ସହସ୍ର ଦ୍ୱୀପପୁଞ୍ଜ ଉଦ୍ୟାନରେ ପ୍ରେରଣାପୂର୍ଣ୍ଣ ପ୍ରଶିକ୍ଷଣ

ଇତ୍ୟବସରରେ ସ୍ୱାମୀଜୀଙ୍କ ଭଗ୍ନ ଓ କ୍ଲାନ୍ତ ସ୍ୱାସ୍ଥ୍ୟାବସ୍ଥା ପରିଲକ୍ଷିତ କରି, ନିୟୁର୍କର ଜଣେ ଶିଷ୍ୟା କୁମାରୀ ଏଲିଜାବେଥ୍ ଡୁଚର୍, ସେଣ୍ଟ୍ ଲରେନ୍ସ ନଦୀକୂଳରେ ଅବସ୍ଥିତ ଥାଉଜେଣ୍ଡ ଆଇଲାଣ୍ଡ ପାର୍କଠାରେ ସ୍ଥାପିତ ତାଙ୍କର ଗ୍ରୀଷ୍ମକାଳୀନ କୁଟୀରକୁ ନେଇଯିବା ପାଇଁ ଇଚ୍ଛାପ୍ରକଟ କଲେ । ସେଠାରେ ସ୍ୱାମୀଜୀ ଆରାମରେ ବିଶ୍ରାମ ନେଇପାରିବେ । ସ୍ୱାମୀଜୀ କୃତଜ୍ଞତା ସହକାରେ ତାଙ୍କର ପ୍ରସ୍ତାବ ଗ୍ରହଣ କରିନେଲେ । ନିୟୁର୍କସ୍ଥିତ ଶ୍ରେଣୀରେ ଯେଉଁ କେତେକ ଅନୁସନ୍ଧିତ୍ସୁ ଛାତ୍ରଛାତ୍ରୀ ସ୍ୱାମୀଜୀଙ୍କଠାରୁ ଶିକ୍ଷା ଗ୍ରହଣ କରୁଥିଲେ, ସେମାନେ ଉକ୍ତ ପ୍ରସ୍ତାବକୁ ସ୍ୱାଗତ କରିବା ସହିତ ଥାଉଜେଣ୍ଡ ଆଇଲାଣ୍ଡ ପାର୍କ ଯିବାପାଇଁ ବି ଆଗଭର ହୋଇଉଠିଲେ । କୁମାରୀ ଡୁଚର୍ ନିଜ ଗୁରୁଙ୍କ ସମ୍ମାନାର୍ଥେ କୁଟୀରକୁ ଲାଗି ଏକ ସୁନ୍ଦର ବିଶାଳ କକ୍ଷ ନିର୍ମାଣ କରିଦେଲେ । ଉକ୍ତ କୁଟୀର ଏକ ପାହାଡ଼ର ଶୀର୍ଷ ସ୍ଥାନରେ ନିର୍ମିତ ହୋଇଥିଲା । ସ୍ଥାନଟି ଏପରି ଉଚ୍ଚ ସ୍ଥାନରେ ରହିଥିଲା ଯେ ଯେଉଁଠାରୁ ନଦୀର ପ୍ରସିଦ୍ଧ ସହସ୍ର ଦ୍ୱୀପର ଆକର୍ଷଣୀୟ ସୌନ୍ଦର୍ଯ୍ୟ ଦୃଶ୍ୟମାନ ହେଉଥିଲା । ଶିଷ୍ୟମାନଙ୍କ ରହିବା ପାଇଁ କୋଠରି ଏବଂ ବକ୍ତୃତାକକ୍ଷ ଭଳି ସମସ୍ତ ସୁବିଧାରେ ପରିପୂର୍ଣ୍ଣ କେବଳ ନ ଥିଲା ବରଂ ସ୍ୱାମୀଜୀଙ୍କ ବ୍ୟକ୍ତିଗତ ବ୍ୟବହାର ପାଇଁ ଉପର ତାଲାରେ ଏକ ସୁନ୍ଦର କକ୍ଷର ବ୍ୟବସ୍ଥା ହୋଇଥିଲା । କୁମାରୀ ଡୁଚର ସ୍ୱୟଂ ସବୁ ବ୍ୟବସ୍ଥାର ଆୟୋଜନ କରିଥିଲେ, ଯେପରି ନିଜ ଗୁରୁ ଓ ଶିଷ୍ୟମାନଙ୍କର ଅସୁବିଧା ନ ହୁଏ ।

ଏହି କୁଟୀର ଚତୁଃପାର୍ଶ୍ୱରେ କେବଳ ଘଞ୍ଚ ଜଙ୍ଗଲ । କୁଟୀରରେ ରହି ଜଣେ ତଳକୁ ଚାହିଁଲେ, କେବଳ ଦୃଶ୍ୟ ହେବ ବୃକ୍ଷରାଜିର ସବୁଜ ପତ୍ରଭରା ଅଗ୍ରଭାଗ, ଯାହା ସମୁଦ୍ରର ଢେଉ ଭଳି ହେଉଥିଲା ତରଙ୍ଗାୟିତ । ଏହା ଏକ ପବିତ୍ର ଆଶ୍ରମ ସମ ପ୍ରତୀୟମାନ ହେଉଥିଲା, ସତେକି ଘନ ବନାନୀ ମଧ୍ୟଭାଗରେ ଅବସ୍ଥିତ । ଏହା ଥିଲା ଜନବସତିଠାରୁ ବହୁ ଦୂରରେ । ପତ୍ରର ମର୍ମର ଶବ୍ଦ, ପକ୍ଷୀର କାକଳି, ଝିଙ୍କାରିର ଶବ୍ଦ ଏବଂ ଲହରିତ ମୃଦୁ ପବନ ସହିତ ନଦୀର ସର୍ପିଳ ଗତି ଦ୍ୱାରା ସୃଷ୍ଟ ଅସଂଖ୍ୟ ଦ୍ୱୀପ ସମୂହର ସୁନ୍ଦର ଦୃଶ୍ୟ ଅତୀବ ଆକର୍ଷଣୀୟ । କୁଟୀର ଉପରେ ନକ୍ଷତ୍ରଖଚିତ ଅନନ୍ତ ଆକାଶ ଚାନ୍ଦୁଆ ଭଳି ଝୁଲନ୍ତ, ତା' ଭିତରୁ ଶୁକ୍ଲପକ୍ଷରେ ଚନ୍ଦ୍ରର ଦୃଶ୍ୟ ଅତୀବ ମନୋରମ ଥିଲା । ଏତାଦୃଶ ପ୍ରାକୃତିକ ପରିବେଶ ସ୍ୱାମୀଜୀଙ୍କୁ କେବଳ ବିମୋହିତ

Digitized by srujanika@gmail.com

କଲା ନାହିଁ ବରଂ ତାଙ୍କର ଚିନ୍ତା ଓ ଚେତନା ବାରମ୍ବାର ଉଡ଼ିଯାଇଥିଲା ସେହି ଅନନ୍ତ ଅଭିମୁଖେ ଯାହା ପ୍ରତି ସେ ମୂଳରୁ ଥିଲେ ଆକୃଷ୍ଟ ।

ଏହି ଗ୍ରୀଷ୍ମକାଳୀନ ଆଧ୍ୟାତ୍ମିକ ସାଧନା ନିବାସରେ ପ୍ରଥମେ ଚାରିଜଣ ଶିଷ୍ୟଙ୍କୁ ନେଇ ସ୍ୱାମୀଜୀ ଶିକ୍ଷା ପ୍ରଦାନ କାର୍ଯ୍ୟକ୍ରମ ଆରମ୍ଭ କଲେ, ଯେଉଁ ସାତ ସପ୍ତାହ ଶିକ୍ଷା କାର୍ଯ୍ୟକ୍ରମ ଚାଲିଲା, ସେହିସବୁ ଶ୍ରେଣୀରେ ଦଶଜଣରୁ କମ୍ ଶିଷ୍ୟ ନ ଥିଲେ । ଏହି ରହଣିକାଳରେ ମାଡାମ **ମେରି ଲୁଇସ୍** ଏବଂ ମିଷ୍ଟର **ଲିଓନ୍ ଲେଣ୍ଡସବର୍ଗ** ସନ୍ନ୍ୟାସଧର୍ମରେ ଦୀକ୍ଷିତ ହୋଇଥିଲେ । ମେରି ଲୁଇସ୍ ଜଣେ ଫରାସୀ ବଂଶୋଦ୍ଭବ ହେଲେ ବି ଆମେରିକାରେ ତାଙ୍କର ଜନ୍ମ । ଭୌତିକବାଦୀ, ସମାଜବାଦୀ, ନିର୍ଭୀକ ଓ ପ୍ରଗତିଶୀଳ ମହିଳାଭାବେ ସେ ଆମେରିକାରେ ସୁପରିଚିତ । ସ୍ୱାମୀଜୀ ତାଙ୍କର ସନ୍ନ୍ୟାସ ନାମ ଦେଇଥିଲେ ଅଭୟାନନ୍ଦ । ଲିଓନ ଲେଣ୍ଡସ୍‌ବର୍ଗ ଜଣେ ଋଷୀୟ ଇହୁଦି ଏବଂ ନିୟୁର୍କ ସମ୍ବାଦପତ୍ରର ଜଣେ ଖ୍ୟାତନାମା ବରିଷ୍ଠ କର୍ମଚାରୀ । ତାଙ୍କର ସନ୍ନ୍ୟାସ ନାମ ହୋଇଥିଲା କୃପାନନ୍ଦ । ଉଭୟ ଦାରିଦ୍ର୍ୟ ଓ ବ୍ରହ୍ମଚର୍ଯ୍ୟର ଶପଥ ଗ୍ରହଣ କରିଥିଲେ । ସହସ୍ର ଦ୍ୱୀପ ଉଦ୍ୟାନରେ **୧୮୯୫ ଜୁନ୍ ୧୯** (ବୁଧବାର)ରେ ବାଇବେଲ୍‌ରୁ ସେଣ୍ଟ ଜୋହାନ୍‌ଙ୍କର ବାଣୀ ଉଦ୍ଧୃତ କରି ଶିକ୍ଷାପ୍ରଦାନ ଆରମ୍ଭ ହୋଇଥିଲା । କାରଣ ସମସ୍ତ ଶିଷ୍ୟଶିଷ୍ୟା ଖ୍ରୀଷ୍ଟଧର୍ମୀ ହୋଇଥିବାରୁ, ବାଇବେଲ୍‌ର ପଂକ୍ତି ଉଚ୍ଚାରଣ କରି ସ୍ୱାମୀଜୀ ନିଜର ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ।

- ୧ -

*ସୃଷ୍ଟିର ପ୍ରାରମ୍ଭରେ ଶବ୍ଦ ଥିଲା, ଏବଂ ଶବ୍ଦ ଈଶ୍ୱରଙ୍କ ନିକଟରେ ରହିଥିଲା ଏବଂ ଶବ୍ଦ ହିଁ ଈଶ୍ୱର ଥିଲେ ।'' ହିନ୍ଦୁ ଏହାକୁ ମାୟା କୁହନ୍ତି, ଈଶ୍ୱରଙ୍କର ପ୍ରକାଶ, କାରଣ ଏହା ହିଁ ଈଶ୍ୱରଙ୍କର ଶକ୍ତି । ଆମେ ଯାହା ପ୍ରକୃତି ବୋଲି କହୁଁ, ତାହାହିଁ ଜଗତ ମାଧ୍ୟମରେ ସେହି ନିର୍ଗୁଣ ପରମସତ୍ତା ବ୍ରହ୍ମଙ୍କର ପ୍ରତିଫଳନ ।*

ପରବର୍ତ୍ତୀ କ୍ଲାସ୍‌ଗୁଡ଼ିକରେ ଭଗବତ ଗୀତା, ଉପନିଷଦ, ବେଦାନ୍ତ ସୂତ୍ର, ନାରଦୀୟ ଭକ୍ତି ସୂତ୍ର ଏବଂ ଅନ୍ୟ ହିନ୍ଦୁଶାସ୍ତ୍ର ବ୍ୟାଖ୍ୟା କରି ଭାରତୀୟ ଦର୍ଶନ ଅତିପ୍ରାଞ୍ଜଳ ଭାବରେ ସେମାନଙ୍କୁ ବୁଝାଇଥିଲେ । ବେଦାନ୍ତର ତିନୋଟି ମୁଖ୍ୟ ଦିଗ ଉପରେ ସେ ଚର୍ଚ୍ଚା କରିଥିଲେ : ଆଦି ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତବାଦ, ରାମାନୁଜଙ୍କର ବିଶିଷ୍ଟ ଦ୍ୱୈତବାଦ ଏବଂ ମାଧବଙ୍କର ଦ୍ୱୈତବାଦ । ଯେହେତୁ ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତବାଦର ସୂକ୍ଷ୍ମତତ୍ତ୍ୱ ଶିଷ୍ୟଙ୍କର ବୁଝିବା କ୍ଷେତ୍ରରେ କଷ୍ଟ ଥିଲା, ତେଣୁ ରାମାନୁଜଙ୍କର ବିଶିଷ୍ଟ ଦ୍ୱୈତବାଦ ସେମାନଙ୍କର ପ୍ରିୟ ବିଷୟ ହୋଇପାରିଥିଲା । ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସଙ୍କର ଜୀବନୀ ଓ ସାଧନା ତଥା ତାଙ୍କ ସହିତ ନିଜର ସଂପର୍କ ସମ୍ବନ୍ଧରେ ବହୁ କଥା ସେ ସେଠାରେ ଚର୍ଚ୍ଚା କରିଥିଲେ । ହିନ୍ଦୁ ପୁରାଣରୁ ଅନେକ ଗଳ୍ପ, ନିଜର ଉଚ୍ଚ ଦର୍ଶନ ଆଧାରିତ ଚିନ୍ତାଧାରାକୁ ବୁଝାଇବା ପାଇଁ ସେମାନଙ୍କ ସମ୍ମୁଖରେ ଉପସ୍ଥାପନା ବି କରୁଥିଲେ । ତାଙ୍କ ଆଲୋଚନାରେ ଈଶ୍ୱରୋପଲବ୍ଧି ହିଁ କେବଳ ମୁଖ୍ୟ ବିଷୟ ଥିଲା । ''କେବଳ ଈଶ୍ୱରଙ୍କୁ ଖୋଜ' ଏହା ବ୍ୟତୀତ ସେ ଅନ୍ୟକୌଣସି ବିଷୟ ଉପରେ ଏତେ ଗୁରୁତ୍ୱ ଦେଉ ନ ଥିଲେ । ନୈତିକତା

Digitized by srujanika@gmail.com

ହିଁ ଆଧ୍ୟାତ୍ମିକ ଜୀବନର ଆଧାର ବୋଲି ସେ ବାରମ୍ବାର ଶିଷ୍ୟମାନଙ୍କୁ କହୁଥିଲେ । ସତ୍ୟ, ଅହିଂସା, ବ୍ରହ୍ମଚର୍ଯ୍ୟ, ଅଚୌର୍ଯ୍ୟ, ପବିତ୍ରତା ଏବଂ ତପସ୍ୟା ବିନା ଆଧ୍ୟାତ୍ମିକ ପଥରେ ଜଣେ ଅଗ୍ରସର ହୋଇପାରିବ ନାହିଁ । ବ୍ରହ୍ମଚର୍ଯ୍ୟର ବିଷୟବସ୍ତୁ ତାଙ୍କୁ ସର୍ବଦା ଗଭୀରଭାବେ ଆନ୍ଦୋଳିତ କରୁଥିଲା ।

ସହସ୍ର ଦ୍ୱୀପ ଉଦ୍ୟାନସ୍ଥିତ କୁଟୀରର ନିର୍ଜନତା ଭିତରେ ସ୍ୱାମୀ ବିବେକାନନ୍ଦଙ୍କର ଅନ୍ତର୍ନିହିତ ଜ୍ୟୋତିର୍ମୟ ରୂପ ପ୍ରକଟିତ ହୋଇଥିବାର ଅନେକ ଭକ୍ତ ଅନୁଭବ କରିଥିଲେ । ତାଙ୍କର ସମାଧି ଅଭିମୁଖେ ନିରନ୍ତର ଧାବିତ ମନ ଓ ଚେତନା ଭିତରୁ ନିଃସୃତ ବାଣୀ ସତେକି ଏକ ଅଚିନ୍ତନୀୟ ରାଜ୍ୟରୁ ପ୍ରବାହମାନ ଥିଲା ! ଅନ୍ତେବାସୀ ଶିଷ୍ୟଗଣ ତାଙ୍କର ପ୍ରତ୍ୟେକ ଉଚ୍ଚାରିତ ଶବ୍ଦରେ ଅନୁଭବ କରୁଥିଲେ ଦିବ୍ୟତ୍ୱ ଓ ଶାଶ୍ୱତତା; ଏବଂ ସେହି ଦିବ୍ୟ ଶାଶ୍ୱତ ସ୍ରୋତ ସେମାନଙ୍କୁ ପ୍ରତି ମୁହୂର୍ତ୍ତରେ ଅନୁପ୍ରାଣିତ କରିଥିଲା - ମନୁଷ୍ୟ ଜୀବନର ରହସ୍ୟ ଜାଣିବା ପାଇଁ । **୧୮୯୫ ଜୁନ୍ ୧୯** ତାରିଖରେ ଶ୍ରେଣୀଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ ଦିବସରେ ସ୍ୱାମୀଜୀଙ୍କର ପ୍ରଥମ ଉଦ୍‌ବୋଧନକୁ ଜଣେ ଭକ୍ତ **କୁମାରୀ ଏସ୍.ଇ. ୱାଲଡ଼ୋ** ଅତି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି । ହସ୍ତରେ ପବିତ୍ର ବାଇବେଲ ଧାରଣ କରି ଶ୍ରେଣୀ କକ୍ଷରେ ସ୍ୱାମୀଜୀ ସକାଳେ ପହଞ୍ଚି କହିଲେ, ''ଆମେ ସମସ୍ତେ ଖ୍ରୀଷ୍ଟିଆନ୍, ତେଣୁ ଖ୍ରୀଷ୍ଟଧର୍ମୀ ପବିତ୍ର ଗ୍ରନ୍ଥ ପାଠ କରି କାର୍ଯ୍ୟାରମ୍ଭ କରିବା ବିଧେୟ ।''

''ସୃଷ୍ଟିର ପ୍ରାରମ୍ଭରେ ଶବ୍ଦ ଥିଲା, ଏବଂ ଶବ୍ଦ ଈଶ୍ୱରଙ୍କ ନିକଟରେ ରହିଥିଲା ଏବଂ ଶବ୍ଦ ହିଁ ଈଶ୍ୱର ଥିଲେ ।'' ହିନ୍ଦୁ ଏହାକୁ **ମାୟା** କୁହନ୍ତି, ଈଶ୍ୱରଙ୍କର ପ୍ରକାଶ, କାରଣ ଏହା ହିଁ ଈଶ୍ୱରଙ୍କର ଶକ୍ତି । ଆମେ ଯାହା ପ୍ରକୃତି ବୋଲି କହୁଁ, ତାହାହିଁ ଜଗତ ମାଧ୍ୟମରେ ସେହି ନିର୍ଗୁଣ ପରମସତ୍ତା ବ୍ରହ୍ମଙ୍କର ପ୍ରତିଫଳନ । ଶବ୍ଦଙ୍କର ଦୁଇଟି ଅଭିବ୍ୟକ୍ତି ରହିଛି - ପ୍ରଥମତଃ ସାଧାରଣ ପ୍ରକୃତି ଏବଂ ଦ୍ୱିତୀୟତଃ ଈଶ୍ୱରଙ୍କର ବିଶେଷ ମହାନ୍ ଅବତାର - କୃଷ୍ଣ, ବୁଦ୍ଧ, ଯୀଶୁ ଏବଂ ଶ୍ରୀରାମକୃଷ୍ଣ । ଯୀଶୁଖ୍ରୀଷ୍ଟ ପରଂବ୍ରହ୍ମଙ୍କର ବିଶେଷ ଅବତାର ଶ୍ରେଣୀରେ ଅନ୍ତର୍ଭୁକ୍ତ, ଯିଏ ଜ୍ଞାତ ଓ ଜ୍ଞେୟ । ନିର୍ଗୁଣ ପରମବ୍ରହ୍ମଙ୍କୁ ଜାଣିହେବ ନାହିଁ : ଆମେ ପିତାଙ୍କୁ ଜାଣିପାରିବା ନାହିଁ, କିନ୍ତୁ ପୁତ୍ରଙ୍କୁ ଜାଣିପାରିବା । ପରଂବ୍ରହ୍ମଙ୍କର ସାମାନ୍ୟ ଆଭାସ ଯୀଶୁଙ୍କ ସମ ମାନବ ମାଧ୍ୟମରେ ଆମେ କେବଳ ଦେଖିପାରିବା ।

- ୨ -

*ସଂସାରରେ ସର୍ବଦା ଦାନୀ ଭୂମିକାରେ ଅବତୀର୍ଣ୍ଣ ହୁଅ । ସବୁକିଛି ଦାନ କର ଏବଂ ପ୍ରତିବଦଳରେ କିଛି ଆଶା କରନାହିଁ । ପ୍ରେମ ଦାନ କର, ସହାୟତା କର, ସେବା କର, ତୁମ ଶକ୍ତି ଅନୁସାରେ ଛୋଟ ବସ୍ତୁଟିଏ ହେଉ ପଛକେ ତାହା ଦାନ କର, କିନ୍ତୁ ପ୍ରତିବଦଳରେ କିଛି ମାଗ ନାହିଁ ।*

ଖ୍ରୀଷ୍ଟଧର୍ମର ସମଗ୍ର ମୌଳିକ ପ୍ରକୃତି ଜୋହନ୍‌ଙ୍କର ପ୍ରଥମ ପାଞ୍ଚଟି ବାକ୍ୟରେ ନିହିତ: ପ୍ରତ୍ୟେକ ବାକ୍ୟ ଗଭୀର ଦର୍ଶନରେ ପରିପୂର୍ଣ୍ଣ ।

Digitized by srujanika@gmail.com

ଶୁଦ୍ଧ କେବେ ଅଶୁଦ୍ଧ ହୁଏନାହିଁ । ଅନ୍ଧକାର ଭିତରେ ଅବଶ୍ୟ ଏହା ଅବସ୍ଥାନ କରିଥାଏ, କିନ୍ତୁ ଅନ୍ଧକାର ଦ୍ୱାରା ଏହା ଆଦୌ ପ୍ରଭାବିତ ହୁଏନାହିଁ । ଈଶ୍ୱରଙ୍କ କରୁଣା ସମସ୍ତଙ୍କ ଉପରେ ବର୍ଷିତ, କିନ୍ତୁ ସେମାନଙ୍କର ଦୁଷ୍ଟାମି ଦ୍ୱାରା ଏହା ପ୍ରଭାବିତ ହୁଏନାହିଁ । ଆମ ଆଖିର ବ୍ୟାଧି ଯୋଗୁଁ ସୂର୍ଯ୍ୟ ବିକୃତ ଭାବରେ ଆମକୁ ଦୃଶ୍ୟମାନ ହୋଇପାରନ୍ତି କିନ୍ତୁ ସୂର୍ଯ୍ୟ ନୁହେଁ । ବାଇବେଲର ଅଣତିରିଶ ପଙ୍‌କ୍ତି କହେ - ''ସଂସାରର ଦୁଃଖ ସେ ହରଣ କରନ୍ତି'', ଅର୍ଥାତ୍ ଶୁଦ୍ଧ ହେବା ପାଇଁ ଖ୍ରୀଷ୍ଟ ଆମକୁ ମାର୍ଗ ଦର୍ଶନ କରିବେ । ମନୁଷ୍ୟକୁ ତା'ର ସ୍ୱରୂପ ଚିହ୍ନାଇ ଦେବା ପାଇଁ ଏବଂ ଆମେ ସମସ୍ତେ ଈଶ୍ୱର ବୋଲି କହିଦେବା ପାଇଁ, ଈଶ୍ୱର ସ୍ୱୟଂ ଖ୍ରୀଷ୍ଟ ହୋଇଥିଲେ । ଆମର ମାନବ ଆବରଣରେ ଦିବ୍ୟତ୍ୱ ଆଚ୍ଛାଦିତ, କିନ୍ତୁ ଦିବ୍ୟ ମାନବ, ଖ୍ରୀଷ୍ଟ ଓ ଆମେ ସମସ୍ତେ ଏକ ଓ ଅଭିନ୍ନ ।

ତ୍ରିମୂର୍ତ୍ତିବାଦରେ ବିଶ୍ୱାସ କରୁଥିବା ଖ୍ରୀଷ୍ଟ ଆମ ଉର୍ଦ୍ଧ୍ୱରେ; ତ୍ରିମୂର୍ତ୍ତିବାଦରେ ବିଶ୍ୱାସ କରୁଥିବା ଖ୍ରୀଷ୍ଟ କେବଳ ମାତ୍ର ଜଣେ ନୈତିକ ମାନବ; ଆମକୁ ସେ କୌଣସି ସାହାଯ୍ୟ କରିପାରିବେ ନାହିଁ । ଖ୍ରୀଷ୍ଟ ଯିଏ ଈଶ୍ୱରଙ୍କର ଅବତାର, ଯିଏ ନିଜର ସ୍ୱରୂପ ବିସ୍ମରଣ ହୋଇନାହାନ୍ତି, ସେହି ଖ୍ରୀଷ୍ଟ ଆମକୁ ସାହାଯ୍ୟ କରିପାରିବେ, ତାଙ୍କ ଭିତରେ କୌଣସି ଅଶୁଦ୍ଧତା ନାହିଁ । ଏହି ଅବତାରଗଣ ସର୍ବଦା ନିଜର ଦିବ୍ୟତ୍ୱ ପ୍ରତି ସଚେତନ ଥାନ୍ତି, ଜନ୍ମଠାରୁ ସେମାନେ ଏହା ଜାଣିଥାନ୍ତି । ସେମାନେ ଅଭିନେତା ସଦୃଶ, ନାଟକର ଅନ୍ତ ହେଲେ ସେମାନେ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଏମାନଙ୍କୁ ସଂସାରର କୌଣସି ବସ୍ତୁ ସ୍ପର୍ଶ କରିପାରେ ନାହିଁ; ଆମକୁ ଶିକ୍ଷା ଦେବା ପାଇଁ ସେମାନେ ଆମର ରୂପ ଏବଂ ସୀମାବନ୍ଧନ ନିର୍ଦ୍ଦିଷ୍ଟ ସମୟ ନିମନ୍ତେ ଧାରଣ କରିଥାନ୍ତି; କିନ୍ତୁ ବାସ୍ତବରେ ସେମାନେ କସ୍ମିନକାଳେ ସୀମାବନ୍ଧିତ ନୁହଁନ୍ତି, ସେମାନେ ସଦା ମୁକ୍ତ... ।

ସତ୍ୟର ନିକଟତର ଭଲ, ତଥାପି ଏହା ସତ୍ୟ ନୁହେଁ । ମନ୍ଦ ଦ୍ୱାରା ବିଚଳିତ ନ ହେବା ଶିଖିଲା ପରେ, ଭଲ ଦ୍ୱାରା ଆନନ୍ଦିତ ନ ହେବା ଆମେ ଶିଖିବା ଉଚିତ । ଆମେ ଉଭୟ ଭଲ ଓ ମନ୍ଦ ଉର୍ଦ୍ଧ୍ୱରେ ବୋଲି ଜାଣିବା ଉଚିତ । ସେହି ଦୁଇଟି ଦିଗକୁ ଆମେ ଭଲ ଭାବରେ ଜାଣିବା ଏବଂ ଉଭୟର ଆବଶ୍ୟକତା ରହିଛି ବୋଲି ତଦନୁସାରେ ଜୀବନ ନିର୍ବାହ କରିବା ।

ପ୍ରାଚୀନ ପାର୍ଶିଙ୍କଠାରୁ ଦ୍ୱୈତଭାବ ଆସିଛି । ଜୋରଷ୍ଟର ଶିକ୍ଷା ଦେଇଥିଲେ ସମଗ୍ର ସୃଷ୍ଟି ଦୁଇଟି ମୌଳିକ ନିୟମରୁ ଆସିଛି... ଗୋଟିଏ ହେଲା ଓର୍‌ମୁଜ (ଭଲ) ଏବଂ ଅନ୍ୟଟି ହେଲା ଅହରିମାନ (ମନ୍ଦ) । ବାସ୍ତବରେ ଭଲ ଓ ମନ୍ଦ ଏକ ଏବଂ ଏହା ଆମ ମନରେ ବିରାଜିତ । (କାରଣ ଉଭୟ ମାୟାର ଶୃଙ୍ଖଳ ଓ ଉତ୍ପାଦ) । ଯେତେବେଳେ ମନ ଆତ୍ମ-ସଂଯମତାରେ ସମାହିତ ହେବ, ଭଲ ଓ ମନ୍ଦ ଏହାକୁ ପ୍ରଭାବିତ କରିପାରିବ ନାହିଁ । ମୁକ୍ତ ହୁଅ, ଉଭୟ ଭଲ ଓ ମନ୍ଦ ଏହାକୁ ପ୍ରଭାବିତ କରିପାରିବ ନାହିଁ, ସେତେବେଳେ ଆମେ ମୁକ୍ତି ଓ ଆନନ୍ଦ ଉପଭୋଗ କରିପାରିବା । ମନ୍ଦ ହିଁ ଲୌହ ଶିକୁଳି, ଭଲ ହିଁ ସ୍ୱର୍ଣ୍ଣ ଶିକୁଳି; ଉଭୟ ହେଉଛି ଶିକୁଳି । ମୁକ୍ତ ହୁଅ, ସବୁଦିନ ପାଇଁ ତୁମେ ଜାଣିପାରିବ ଯେ ତୁମ ପାଇଁ କୌଣସି ଶିକୁଳି ନାହିଁ । ଲୌହ ଶିକୁଳିକୁ ହୁଗୁଳାଇବା ପାଇଁ ସ୍ୱର୍ଣ୍ଣ ଶିକୁଳି ଧାରଣ କର, ତାହା ହୋଇଗଲେ, ଉଭୟ ଲୌହ ଓ ସ୍ୱର୍ଣ୍ଣ ଶିକୁଳିକୁ ଫିଙ୍ଗିଦିଅ । ଆମ ମାଂସପେଶୀରେ କଣ୍ଟାଟିଏ ପଶିଛି, ସେହି କଣ୍ଟାବୁଦାରୁ ଆଉ ଗୋଟିଏ

Digitized by srujanika@gmail.com

କଣ୍ଟା ଆଣି ମାଂସପେଶୀରୁ ଉକ୍ତ କଣ୍ଟାଟିକୁ ବାହାର କର, ତାହାପରେ ଉଭୟ କଣ୍ଟାକୁ ଫିଙ୍ଗି ଦେଇ, ମୁକ୍ତ ହୋଇଯାଅ... ।

ସଂସାରରେ ସର୍ବଦା ଦାନୀ ଭୂମିକାରେ ଅବତୀର୍ଣ୍ଣ ହୁଅ । ସବୁକିଛି ଦାନ କର ଏବଂ ପ୍ରତିବଦଳରେ କିଛି ଆଶା କରନାହିଁ । ପ୍ରେମ ଦାନ କର, ସହାୟତା କର, ସେବା କର, ତୁମ ଶକ୍ତି ଅନୁସାରେ ଛୋଟ ବସ୍ତୁଟିଏ ହେଉ ପଛକେ ତାହା ଦାନ କର, କିନ୍ତୁ ପ୍ରତିବଦଳରେ କିଛି ମାଗ ନାହିଁ ଏବଂ କୌଣସି ସର୍ତ୍ତ ରଖନାହିଁ । କାହା ଉପରେ ଆଧିପତ୍ୟ ବିସ୍ତାର କର ନାହିଁ ଏବଂ କୌଣସି ସର୍ତ୍ତ ରଖ ନାହିଁ । ଈଶ୍ୱର ଆମପ୍ରତି ଯେପରି ବଦାନ୍ୟ ସେପରି ଆମେ ଆମର ବଦାନ୍ୟତାକୁ ବି ଦାନ କରିଦେବା ଉଚିତ ।

ଈଶ୍ୱର କେବଳ ମାତ୍ର ପ୍ରଦାନକାରୀ, ସଂସାରର ସମସ୍ତ ମନୁଷ୍ୟ କେବଳ ବ୍ୟବସାୟୀ । ତାଙ୍କର ଚେକ୍ ଆଣ, ଯାହା ସବୁ ଜାଗାରେ ଗ୍ରହଣୀୟ ଓ ସମ୍ମାନୀତ ହେବ ।

"ପ୍ରେମର ଅବ୍ୟାଖ୍ୟାକରଣୀୟ ଓ ଅବର୍ଣ୍ଣନୀୟ ହିଁ ଈଶ୍ୱର ଯାହାଙ୍କୁ ଜାଣିହେବ, କିନ୍ତୁ ବର୍ଣ୍ଣନା କରିହେବ ନାହିଁ ।

ଆମର ଦୁଃଖ ଓ ସଂଘର୍ଷ ଭିତରେ ସଂସାର ଏକ ଭୟଙ୍କର ସ୍ଥାନ ବୋଲି ପ୍ରତିଭାତ ହୁଏ । ଯେତେବେଳେ ଦୁଇଟି ଶ୍ୱାନଶିଶୁ ପରସ୍ପର କାମୁଡ଼ାକାମୁଡ଼ି ହୋଇ କ୍ରୀଡ଼ାରତ ଏବଂ ବେଳେବେଳେ ସେମାନଙ୍କ ଭିତରେ ଦନ୍ତାଘାତ ଘଟୁଥିଲେ ବି, ସେମାନଙ୍କର ଏହି ଦୃଶ୍ୟକୁ କ୍ରୀଡ଼ା ଭାବି ଆମେ ସେତେବେଳେ ବ୍ୟସ୍ତ ହୁଅନ୍ତି ନାହିଁ । ସେହିପରି ଆମର ସମସ୍ତ ସଂଘର୍ଷ ଈଶ୍ୱରଙ୍କ ଦୃଷ୍ଟିରେ କ୍ରୀଡ଼ା ସଦୃଶ । ଏହି ସଂସାର ତାଙ୍କର ଖେଳଘର ଏବଂ ଏହା ତାଙ୍କୁ ଆମୋଦ ପ୍ରଦାନ କରେ । କୌଣସି ସାଂସାରିକ ବସ୍ତୁ ତାଙ୍କୁ କ୍ରୋଧାନ୍ୱିତ କରେନାହିଁ ।

ମା', ତୁମର ଆଲୋକ ସନ୍ଥ ପାଇଁ ଅଟକି ଯାଏନାହିଁ, କିମ୍ୱା ଘାତକ ପାଇଁ ବି ଅଟକେ ନାହିଁ; ଏହା ଉଭୟ ପ୍ରେମିକ ଓ ଘାତକକୁ ଆଲୋକିତ କରେ । ସମସ୍ତ ବସ୍ତୁ ମାଧମରେ ଜଗଜ୍ଜନନୀ ସଦା ପ୍ରକାଶିତ । ଆଲୋକ ଯାହା ଉପରେ ବର୍ଷିତ, ତାହା ଦ୍ୱାରା ଏହା ଦୁଷିତ କିମ୍ୱା ଲାଭାନ୍ୱିତ ହୁଏନାହିଁ । ଆଲୋକ ସଦା ଶୁଦ୍ଧ ଓ ଅପରିବର୍ତ୍ତନୀୟ । "ପ୍ରତ୍ୟେକ ଜୀବ ଭିତରେ ରହିଛନ୍ତି "ମା" ଯିଏ ଶୁଦ୍ଧ, ପ୍ରେମମୟୀ, କେବେବି ପରିବର୍ତ୍ତିତ ହୁଅନ୍ତି ନାହିଁ । ସମସ୍ତ ଜୀବ ଓ ବସ୍ତୁ ଭିତରେ ମା ଆଲୋକ ଭାବେ ଅଭିବ୍ୟକ୍ତ, ତାଙ୍କୁ ଆମେ ପ୍ରଣାମ କରୁ ।" ସେ ବି ସମାନ ଭାବରେ ଦୁଃଖ, କ୍ଷୁଧା, ସୁଖ, ସୂକ୍ଷ୍ମ ଭିତରେ ବିରାଜିତା । "ମଧୁମକ୍ଷୀ ଯେତେବେଳେ ମଧୁ ପାନ କରେ, ସେତେବେଳେ ସ୍ୱୟଂ ପ୍ରଭୁ ମଧୁ ପାନ କରନ୍ତି । "ପ୍ରଭୁ ସମସ୍ତ ଭିତରେ ବିରାଜିତ ବୋଲି ଋଷିମାନଙ୍କର ଜ୍ଞାନ ଥିବାରୁ, ସେମାନେ ନିନ୍ଦା ଓ ପ୍ରଶଂସା ତ୍ୟାଗ କରନ୍ତି । ତାଙ୍କୁ ଜାଣ, କୌଣସି ଜିନିଷ ତୁମକୁ ଆଘାତ ଦେବ ନାହିଁ । କିପରି ? ତୁମେ କ'ଣ ମୁକ୍ତ ନୁହଁ ? ତୁମେ କ'ଣ ଆତ୍ମା ନୁହଁ ? ସେ ଆମ ଜୀବନର ଜୀବନ, ଆମ କର୍ଣ୍ଣର ଶ୍ରୁତି, ଆମ ଚକ୍ଷୁର ଦୃଷ୍ଟି ।

ପୋଲିସ୍ ଚୋରକୁ ଗୋଡ଼ାଇଲା ଭଳି ଆମେ ସଂସାରରେ ବାସ କରନ୍ତି, ସେଥିପାଇଁ ଏହି ଜଗତର ସୌନ୍ଦର୍ଯ୍ୟର କାଣିଚାଏ ଆମର ଦୃଷ୍ଟିଗୋଚର ହୁଏ । ବସ୍ତୁ ପ୍ରତି ଆସକ୍ତି ପଶ୍ଚାତରେ

Digitized by srujanika@gmail.com

ଆମର ଧାବମାନ ଯୋଗୁଁ ଏହି ସମସ୍ତ ଭୟର ଉତ୍ପତ୍ତି । ବସ୍ତୁ ପଶ୍ଚାତରେ ମନ ରହିଥିବାରୁ ବସ୍ତୁ ନିଜର ସାମଗ୍ରିକ କାୟା ବିସ୍ତାର କରିଥାଏ । ଆମେ ଯାହା ବି ଦେଖୁ, ତାହା ହିଁ ପ୍ରକୃତି ମାଧ୍ୟମରେ ପ୍ରକଟିତ ଈଶ୍ୱର ।

ପାଞ୍ଚହଜାର ବର୍ଷ ପୂର୍ବେ ଘୋର ଅରଣ୍ୟ ଭିତରେ ପ୍ରାଚୀନ ଋଷିଙ୍କ ନିକଟରେ ଶିଷ୍ୟଗଣ ଉପବିଷ୍ଟ ହୋଇ ଜ୍ଞାନ ଆହରଣ ସଦୃଶ ହାତଗଣତି ଶିଷ୍ୟ ଓ ଶିଷ୍ୟାଙ୍କ ମେଳରେ ସହସ୍ର ଦ୍ୱୀପ ଉଦ୍ୟାନସ୍ଥିତ କୁଟୀରରେ ସ୍ୱାମୀଜୀଙ୍କର ଅବସ୍ଥାନ ପ୍ରତୀୟମାନ ହେଉଥିଲା । ଏଠାରେ ସମସ୍ତେ ଏକ ଗୋଷ୍ଠୀ ଭାବରେ ରହି, ରୋଷେଇଠାରୁ ବାସନ ମାଜିବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟରେ ପ୍ରତ୍ୟେକ ସମାନ ଭାବରେ ଅଂଶଗ୍ରହଣ କରିବେ ଏବଂ କୌଣସି ସେବକ ନିଯୁକ୍ତି ହେବେ ନାହିଁ ବୋଲି ସଂକଳ୍ପ ସେମାନେ ପ୍ରଥମରୁ ନେଇଥିଲେ । ଏଭଳି ସଂକଳ୍ପ ପଶ୍ଚାତରେ ଏକ ଉଦ୍ଦେଶ୍ୟ ନିହିତ ଥିଲା - ବାହାର ଲୋକର ପ୍ରବେଶ ସେଠିକାର ଶାନ୍ତ ଓ ପବିତ୍ର ଗୃହକାର୍ଯ୍ୟରେ ବାଧା ସୃଷ୍ଟି କରିବ ନାହିଁ । ସ୍ୱାମୀଜୀ ସ୍ୱୟଂ ଜଣେ ଦକ୍ଷ ରୋଷେୟା ହୋଇଥିବାରୁ, ବହୁ ସମୟରେ ବିଭିନ୍ନ ପ୍ରକାର ଭାରତୀୟ ଖାଦ୍ୟ ପ୍ରସ୍ତୁତ କରି ଶିଷ୍ୟମାନଙ୍କର ମନ ମୋହିତ କରୁଥିଲେ । ଭାରତୀୟ ବ୍ୟଞ୍ଜନ ବିଭିନ୍ନ ମସଲା ଓ ଲଙ୍କାଯୁକ୍ତ ହୋଇଥିବାରୁ ଆମେରିକାର ଭକ୍ତଗଣ ସେଥିରେ ଆଦୌ ଅଭ୍ୟସ୍ତ ନ ଥିଲେ । କିନ୍ତୁ ସ୍ୱାମୀଜୀଙ୍କ ଭଳି ଅସାଧାରଣ ବ୍ୟକ୍ତିତ୍ୱ ଯେତେବେଳେ ଏହା ପ୍ରସ୍ତୁତ କରିଛନ୍ତି, ଭକ୍ତଗଣଙ୍କ ଆଖି ଓ ନାକରୁ ଜଳ ନିର୍ଗତ ହେଉଥିଲେ ବି ଶ୍ରଦ୍ଧା ଓ ଭକ୍ତି ସହକାରେ ସେମାନେ ଉକ୍ତ ଖାଦ୍ୟ ସେବନ କରୁଥିଲେ ।

ପରିହାସ କରିବାରେ ସ୍ୱାମୀଜୀ ଥିଲେ ଧୁରନ୍ଧର । ହୋଟେଲର ପରିଚାରକ ଭଳି ବକ୍ଷ ଦେଶରେ ଶ୍ୱେତବସ୍ତ୍ର ଝୁଲାଇ ଡାଇନିଙ୍ଗ୍ ଟେବୁଲ ଉପରେ ବିଭିନ୍ନ ଖାଦ୍ୟ ପରିବେଷଣ କରି ସେ ଭଦ୍ରତା ସହ ଶିଷ୍ୟଗଣଙ୍କୁ ଆମନ୍ତ୍ରିତ କରି କହୁଥିଲେ, ‘‘ଆସନ୍ତୁ, ରାତ୍ରଭୋଜନ ପ୍ରସ୍ତୁତ, ଭୋଜନ କରନ୍ତୁ ।’’ ଏତାଦୃଶ ବ୍ୟବହାର ସମସ୍ତ ଶିଷ୍ୟ ଶିଷ୍ୟାଙ୍କ ମଧ୍ୟରେ ହସର ଜୁଆର ଖେଳାଇ ଦେଉଥିଲା । ବକ୍ତୃତା କକ୍ଷରେ ସ୍ୱାମୀଜୀ ପୂର୍ବାହ୍ଣରେ ପହଞ୍ଚିଯାଉଥିଲେ ଏବଂ ଶିଷ୍ୟମାନଙ୍କ ସମ୍ମୁଖରେ ଭଗବତ ଗୀତା, ଉପନିଷଦ ଏବଂ ବ୍ୟାସଙ୍କର ବେଦାନ୍ତ - ସୂତ୍ର ସହ ନାରଦୀୟ ଭକ୍ତିସୂତ୍ର ଭଳି ଅନେକ ବିଷୟବସ୍ତୁ ଉପରେ କେବଳ ଶିକ୍ଷା ପ୍ରଦାନ କରୁ ନ ଥିଲେ ବରଂ ଏଭଳି ଆଧ୍ୟାତ୍ମିକ ପ୍ରବାହ ସୃଷ୍ଟି କରୁଥିଲେ ଯେ ସମସ୍ତ ଅନ୍ତେବାସୀଙ୍କର ଚିନ୍ତା ଓ ଚେତନା ଆଲୋକିତ ହେଉଥିଲା । ସେମାନଙ୍କ ମଧ୍ୟରୁ ଜଣେ ଅନ୍ତେବାସୀ **କୁମାରୀ ଏସ୍.ଇ. ୱାଲଡୋ** ସ୍ୱାମୀଜୀଙ୍କର ଶିକ୍ଷା ପ୍ରଦାନ ଶୈଳୀରେ ବିମୋହିତ ହୋଇ ଲେଖିଛନ୍ତି : ସ୍ୱାମୀଜୀଙ୍କ ସହ ଯେଉଁମାନେ ସପ୍ତାହ ସପ୍ତାହ ବିତାଉଥିଲେ ସେମାନେ ବାସ୍ତବରେ ଭାଗ୍ୟବାନ; ଆଧ୍ୟାତ୍ମିକ ବିକାଶ ପାଇଁ ଏହା ଥିଲା ଏକ ସୁଯୋଗ ଏବଂ ତାଙ୍କର ଶିକ୍ଷା ସବୁଦିନ ପାଇଁ ଏକ ଆଲୋକମୟ ସ୍ମୃତି ହୋଇ ସେମାନଙ୍କ ମନରେ ରହିଯାଇଥିଲା । ସ୍ୱାମୀଜୀଙ୍କୁ ଅନୁସରଣ କରି ଯେଉଁମାନେ ନିୟୁର୍କରୁ ଏଠାକୁ ଆସି ତାଙ୍କ ଶିକ୍ଷାଦାନ କାର୍ଯ୍ୟକ୍ରମରେ ଭାଗ ନେଇଥିଲେ, ସେମାନେ ଆନନ୍ଦ ଓ ଆନ୍ତରିକତା ସହ ସ୍ୱାମୀଜୀଙ୍କର ପ୍ରତ୍ୟେକ ମୁଖ ନିଃସୃତ ଶବ୍ଦ ଶୁଣି ଅନୁପ୍ରାଣିତ ହୋଇଥିଲେ । ତାଙ୍କର ପ୍ରତ୍ୟେକ ଉଚ୍ଚାରିତ ଶବ୍ଦ ଅଗ୍ନିବର୍ଷୀ ଥିଲା ।

Digitized by srujanika@gmail.com

- ୩ -

*ବିଶ୍ୱର ସବୁଠୁଁ ସୁନ୍ଦରୀ ନାରୀ ଯଦି ମୋତେ ସାମାନ୍ୟତମ ଅଭଦ୍ର କିମ୍ବା ନାରୀତ୍ୱହୀନ ଦୃଷ୍ଟିରେ ଚାହିଁବ, ତେବେ ସେ ତତ୍‌କ୍ଷଣାତ୍ ଏକ ଲୁକ୍‌କାୟିତ ସବୁଜ ବେଙ୍ଗରେ ପରିଣତ ହୋଇଯିବ । ଅବଶ୍ୟ ବେଙ୍ଗକୁ କେହି ପ୍ରଶଂସା କରେ ନାହିଁ... ।*

ଅନ୍ୟତମ ଅନ୍ତେବାସୀନୀ ଶ୍ରୀମତି ଫ୍ରୁଙ୍କେ ବି ସହସ୍ର ଦ୍ୱୀପ ଉଦ୍ୟାନସ୍ଥିତ କୁଟୀରରେ ତାଙ୍କର ମଧୁର ସ୍ମୃତି ସମ୍ବନ୍ଧରେ ସୁନ୍ଦରଭାବେ ବର୍ଣ୍ଣନା କରି କହିଛନ୍ତି : ସକାଳ ଆଠରୁ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ବିବେକାନନ୍ଦଙ୍କ ଠାରୁ ଶ୍ରେଣୀଗୃହ ଏବଂ ଭୋଜନ ଟେବୁଲରେ ଅନେକ ଉପାଦେୟ ବସ୍ତୁ ଶିକ୍ଷା ଲାଭ କରୁଥିଲୁ । ଏଭଳି ଆଶ୍ଚର୍ଯ୍ୟ ଏବଂ ଶୁଦ୍ଧ ପବିତ୍ର କଥା ଶୁଣିବି ବୋଲି ମୁଁ କେବେ ସ୍ୱପ୍ନରେ ଭାବି ନ ଥିଲି । ବିବେକାନନ୍ଦଙ୍କ ପାଖରେ ସର୍ବଦା ରହିବା ଏବଂ ତାଙ୍କ ଦ୍ୱାରା ଗ୍ରହଣୀୟହେବା ବାସ୍ତବରେ ଅତ୍ୟାଶ୍ଚର୍ଯ୍ୟ ଘଟଣା ! ଆହାଃ - ବିବେକାନନ୍ଦଙ୍କର କିଭଳି ସୂକ୍ଷ୍ମ ଶିକ୍ଷାଦାନ ! ସେଠାରେ ନ ଥିଲା କୌଣସି ଅସାର କଥା, ନ ଥିଲା ବି ଗ୍ରହ ନକ୍ଷତ୍ର କିମ୍ବା ସୈତାନ ସମ୍ବନ୍ଧରେ କାହାଣୀ । ଭରି ରହିଥିଲା ସେଥିରେ କେବଳ ଈଶ୍ୱର, ଯୀଶୁ, ବୁଦ୍ଧଙ୍କ କଥା । ମୁଁ ବର୍ତ୍ତମାନ ଅନୁଭବ କରେ ଯେ ଯେପରି ସତ୍ୟର ଝଲକ ପାଇଥିଲି, ସେପରି ଶାନ୍ତ ମୁହୂର୍ତ୍ତ କସ୍ମିନ କାଳେ ପୁନଶ୍ଚ ଲାଭ କରିପାରିବି ନାହିଁ... । ଆମେ ତାଙ୍କର ବିଷୟବସ୍ତୁକୁ ଲେଖି ରଖୁଥିଲୁ, କିନ୍ତୁ ବେଳେ ବେଳେ ତାଙ୍କର ମଧୁର ବାକ୍ୟ ଶ୍ରବଣରେ ଆମେ ଏମନ୍ତ ବିଭୋର ହୋଇଯାଉଥିଲୁ ଯେ ଲେଖିବାକୁ ଭୁଲିଯାଉଥିଲୁ । ତାଙ୍କର ସ୍ୱର ଥିଲା ଅତି ସୁନ୍ଦର, ଜଣେ ସହଜରେ ଏହି ଦିବ୍ୟ ସ୍ୱରରେ ନିଜକୁ ହଜାଇ ଦେଉଥିଲା । ମୋର ଏବଂ କ୍ରିଷ୍ଟାଇନ୍‌ର ଜନ୍ମ ସମୟରେ ବୋଧହୁଏ କେତେକ ସ୍ୱର୍ଗର ପରୀ ସିଂହାସନରେ ଅଧିଷ୍ଠିତ ଥିଲେ । ଅବଶ୍ୟ ଆମେ କର୍ମ ଓ ପୁନର୍ଜନ୍ମ ସମ୍ବନ୍ଧରେ ଏପର୍ଯ୍ୟନ୍ତ ଅଧିକ କିଛି ଜାଣିନାହୁଁ, ତଥାପି ସ୍ୱାମୀଜୀଙ୍କ ସହ ଆମର ସତ୍ତା ଅବସ୍ଥାନ କରିବା ଲକ୍ଷ୍ୟ ନେଇ ଆମେ କାର୍ଯ୍ୟାରମ୍ଭ କରିଛୁ ।

ଏକଦା ସନ୍ଧ୍ୟା ବର୍ଷାମୁଖର ଥିଲା । ବୈଠକଖାନାରେ ଆମେ ସମସ୍ତେ ଉପବେଶନ କରିଥିଲୁ । ସ୍ୱାମୀଜୀ ଶୁଦ୍ଧ ନାରୀ ସମ୍ବନ୍ଧରେ ଆମ ସହ ଆଲୋଚନା କରୁଥିଲେ ଏବଂ ସୀତାଙ୍କର କାହାଣୀ ଶୁଣାଉଥିଲେ । ବାପରେବାପ ସେ ଗୋଟିଏ ଗଳ୍ପ କିପରି କହିପାରନ୍ତି ! ତୁମେ ଥରେ ଏହା ଶୁଣ, ସମସ୍ତ ଚରିତ୍ର ବାସ୍ତବ ଭଳି ପ୍ରତୀୟମାନ ହେବ । ପାଶ୍ଚାତ୍ୟ ସମାଜର ବହୁ ରାଣୀ ଭଳି ସୁନ୍ଦରୀ ରମଣୀ, ବିଶେଷ କରି ଆକର୍ଷଣ ଓ ସମ୍ମୋହନ ବିଦ୍ୟାରେ ପାରଙ୍ଗମ ନାରୀମାନେ ତାଙ୍କ ଦୃଷ୍ଟିରେ କିଭଳି ପ୍ରତୀୟମାନ ହେବେ ବୋଲି ଏକ ଚିନ୍ତା ମୋ ମାନସ ପଟରେ ଉଙ୍କି ମାରିଲା । ମୁଁ ଅଧିକ ଏହି ବିଷୟ ଚିନ୍ତା କରିବା ପୂର୍ବରୁ ମୁଁ ଅନୁଭବ କଲି ଯେ ମୋର ମନ ଦ୍ୱନ୍ଦରେ ଆଚ୍ଛାଦିତ ହୋଇପଡୁଛି । ଇତ୍ୟବସରରେ ସ୍ୱାମୀଜୀ ତାଙ୍କର ବିସ୍ଫାରିତ ଚକ୍ଷୁ ଏବଂ ଗମ୍ଭୀର ମୁଖମଣ୍ଡଳ ସ୍ୱଚ୍ଛେ ଅତ୍ୟନ୍ତ ଶାନ୍ତ ଭାବରେ ମୋତେ ଚାହିଁଲେ ଏବଂ ଗମ୍ଭୀର ସ୍ୱରରେ କହିଲେ, ''ବିଶ୍ୱର ସବୁଠୁଁ ସୁନ୍ଦରୀ ନାରୀ ଯଦି ମୋତେ ସାମାନ୍ୟତମ ଅଭଦ୍ର କିମ୍ବା ନାରୀତ୍ୱହୀନ

Digitized by srujanika@gmail.com

ଦୃଷ୍ଟିରେ ଚାହିଁବ, ତେବେ ସେ ତତ୍‌କ୍ଷଣାତ୍ ଏକ ଲୁକ୍‌କାୟିତ ସବୁଜ ବେଙ୍ଗରେ ପରିଣତ ହୋଇଯିବ । ଅବଶ୍ୟ ବେଙ୍ଗକୁ କେହି ପ୍ରଶଂସା କରେ ନାହିଁ... ।''

ସାଂସାରିକ ମନୁଷ୍ୟର ଅବଗୁଣ ଏଭଳି ନିରର୍ଥକ ଭାବନା ସୃଷ୍ଟି କରିଥାଏ ବୋଲି ସନ୍ନ୍ୟାସୀ ଶ୍ରେଷ୍ଠ ସ୍ୱାମୀଜୀଙ୍କୁ ଜଣାଥିଲା । ନାରୀର ସୌନ୍ଦର୍ଯ୍ୟ ସତ୍ୟନିଷ୍ଠ ସନ୍ନ୍ୟାସୀର ମୁକ୍ତ ମନ ଓ ଚିନ୍ତାକୁ ଧରି ରଖିପାରିବ ନାହିଁ, କାରଣ ମୃଦୁ ପବନ ଭଳି ସେମାନେ ସଦା ପ୍ରବାହିତ । କେଉଁଠି ସେମାନେ ଅଟକି ରହିଯିବେ ନାହିଁ । ଶ୍ରୀମତୀ ଫୁନ୍‌କେଙ୍କୁ ସିନା ସ୍ୱାମୀଜୀ ଏଭଳି ମୃଦୁ ଆକ୍ଷେପ କରିଲେ କିନ୍ତୁ ପରମୁହୂର୍ତ୍ତରେ ଅର୍ଥାତ୍ ସକାଳର କ୍ଲାସ୍ ସମାପ୍ତି ପରେ ସ୍ୱାମୀଜୀ ତାଙ୍କ ଆଡ଼କୁ ସସ୍ନେହେ ଚାହିଁ କହିଲେ, ''ଶ୍ରୀମତୀ ଫୁନ୍‌କେ, ମୋତେ ଗୋଟିଏ ମଜାଳିଆ ଗପ କୁହ । ଏଠାରୁ ଆମର ବିଦାୟ ନେବାର ବେଳା ପାଖେଇ ଆସିଲାଣି, ଅମେମାନେ ବର୍ତ୍ତମାନ ମଜାଳିଆ କଥାବାର୍ତ୍ତା ହେବା ନା କ'ଣ କହୁଛ ?'' ସ୍ୱାମୀଜୀ ସବୁଦିନ ଭଳି ଶ୍ରୀମତି ଫୁନ୍‌କେ ଓ ଅନ୍ୟମାନଙ୍କ ସହ ଅପରାହ୍ନରେ ବହୁ ଦୂର ପର୍ଯ୍ୟନ୍ତ ପଦଚାରଣ କଲେ । ପାହାଡ଼ସ୍ଥ କୁଟୀରରୁ ଚାଲି ଚାଲି ତଳକୁ ଓହ୍ଲାଇ ଆସିଲେ ଏବଂ ନଦୀ ଅଭିମୁଖେ ଅମଡ଼ା ବାଟରେ ବି ଚାଲିଲେ । କେତେବେଳେ ବି ସବୁଜ ଘାସ ଉପରେ ବସି ସ୍ୱାମୀଜୀଙ୍କର ପ୍ରେରଣାପୂର୍ଣ୍ଣ କଥା ଶୁଣୁଥିଲେ । ଗୋଟିଏ ପକ୍ଷୀ, ଗୋଟିଏ ଫୁଲ, ଗୋଟିଏ ପ୍ରଜାପତି ତାଙ୍କ ମସ୍ତକ ଉପରେ ଉଡ଼ିଯାଉଥିଲେ, ଆହାଃ କି ସୁନ୍ଦର ଦୃଶ୍ୟ । ସେ ବି ବେଦ ଓ ଭାରତୀୟ ଶାସ୍ତ୍ରରୁ ଶ୍ଳୋକ ଆବୃତ୍ତି କରି ସେଠାରେ ଗାନ କରୁଥିଲେ ।

ଆଉ ଜଣେ ଅନ୍ତରଙ୍ଗ ଭକ୍ତ କ୍ରିଷ୍ଟାଇନ୍ **ଗ୍ରୀନ୍‌ଷ୍ଟିଡ୍‌େଲ** (ଭଗ୍ନୀ କ୍ରିଷ୍ଟାଇନ୍ ଭାବେ ପରବର୍ତ୍ତୀ କାଳରେ ପରିଚିତ) ସହସ୍ର ଦ୍ୱୀପପୁଞ୍ଜ ଉଦ୍ୟାନସ୍ଥ କୁଟୀରରେ ଅବସ୍ଥାନର ଅଦ୍ଭୁତ ସ୍ମୃତିଚାରଣ, ସ୍ୱାମୀଜୀଙ୍କର ବ୍ୟକ୍ତିତ୍ୱ ଓ ଆଧ୍ୟାତ୍ମିକ ଚିନ୍ତା ଓ ଚେତନାକୁ ଜାଣିବା ପାଇଁ ଏକ ଆଲୋକସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବନାହିଁ : ଏଠାରେ ସମବେତ ଶିବିରାର୍ଥୀ ଓ ଶିବିରାର୍ଥୀନୀଙ୍କ ଭିତରୁ କେତେଜଣ ଯୋଗୀ ସୃଷ୍ଟି କରିବାର ଲକ୍ଷ୍ୟ ସ୍ୱାମୀଜୀଙ୍କର ଥିଲା । ସ୍ୱାମୀଜୀ ଜାଣିଥିଲେ ଯେ ତାଙ୍କର ପ୍ରକୃତ କାର୍ଯ୍ୟ ଏହିଠାରୁ ବର୍ତ୍ତମାନ ଆରମ୍ଭ ହୋଇଛି ଏବଂ ସହସ୍ର ଦ୍ୱୀପପୁଞ୍ଜରେ ଯୋଗ ଦେଇଥିବା ସମସ୍ତ ଶିକ୍ଷାର୍ଥୀ ବାସ୍ତବରେ ତାଙ୍କର ଶିଷ୍ୟ । ଆମେ ସେଠାରେ **୧୮୯୫ ଜୁଲାଇ ଛଅ ତାରିଖ ଶନିବାର** ଦିନ ପହଞ୍ଚିଥିଲୁ । ସେ ଉପସ୍ଥିତ ବହୁ ଭକ୍ତଙ୍କୁ ଦୀକ୍ଷିତ କରିବା ପାଇଁ ମନସ୍ଥ କରିଥିଲେ । ଏହି ପରିପ୍ରେକ୍ଷୀରେ ସ୍ୱାମୀଜୀ କହିଥିଲେ, ''ଅବଶ୍ୟ ମୁଁ ତୁମମାନଙ୍କୁ ଭଲ ଭାବରେ ଜାଣିନାହିଁ, ତଥାପି ତୁମେମାନେ ଦୀକ୍ଷା ଗ୍ରହଣ କରିବାକୁ ପ୍ରସ୍ତୁତ ବୋଲି ମୁଁ ହୃଦୟଙ୍ଗମ କରିଛି । ଅତି ସଙ୍କୋଚିତ ସ୍ୱରରେ ପୁନଶ୍ଚ ସ୍ୱାମୀଜୀ କହିଥିଲେ, ''ମନୁଷ୍ୟ ମନକୁ ପଢ଼ିପାରିବା ଭଳି ମୋ ପାଖରେ ଏକ ଶକ୍ତି ରହିଛି, କିନ୍ତୁ ମୁଁ ତାହା କ୍ୱଚିତ ବ୍ୟବହାର କରିଥାଏ । ମୋତେ ଯଦି ଅନୁମତି ଦେବ, ତେବେ ମୁଁ ତୁମର ମନକୁ ପଢ଼ିବି, କାରଣ ଅନ୍ୟମାନଙ୍କ ସହିତ ତୁମର ଦୀକ୍ଷା ଗ୍ରହଣ ଆସନ୍ତା କାଲି ହେବ । ଆମେ ଆନନ୍ଦରେ ରାଜି ହେଲୁ । ସେ ବି ଆମର ମନାବସ୍ଥା ପଢ଼ିନେଲେ, ମନ୍ତ୍ର ପ୍ରଦାନ କରି ଆମକୁ ଶିଷ୍ୟାଭାବେ ଗ୍ରହଣ କଲେ । ପରବର୍ତ୍ତୀ ସମୟରେ ଆମର ମନର କଥାକୁ କିଭଳି ଭାବେ ପଢ଼ିପାରିଛନ୍ତି ବୋଲି ତାଙ୍କୁ ପଚାରିବାରୁ ସେ କହିଲେ, ''ତୁମେମାନେ

Digitized by srujanika@gmail.com

ବିଶ୍ୱସ୍ତ ହେବ ଏବଂ ଆଧ୍ୟାତ୍ମିକ ମାର୍ଗରେ ଅଗ୍ରସର ବି ହୋଇପାରିବ । ଆମ ମନରେ ଯେଉଁସବୁ ତରଙ୍ଗାୟିତ ଛବି ସେ ଦେଖିଥିଲେ, ସେସବୁ ପ୍ରତ୍ୟେକ ଛବିର ବ୍ୟାଖ୍ୟା ନ କରି କେବଳ ବର୍ଣ୍ଣନା କରିଥିଲେ ।''

ସ୍ୱାମୀ ବିବେକାନନ୍ଦ ବାସ୍ତବରେ ବହୁ ଯୋଗଶକ୍ତିରେ ପରିପୂର୍ଣ୍ଣ ମହାମାନବ ଥିଲେ, କିନ୍ତୁ ସେହି ଶକ୍ତିର ପ୍ରୟୋଗ ପ୍ରତି ସେ ସର୍ବଦା ବିମୁଖ ଥିଲେ । କାରଣ ସେ ଜାଣିଥିଲେ ଯେ ଏଭଳି ଯୋଗଶକ୍ତି ମନୁଷ୍ୟକୁ ଈଶ୍ୱର-ମାର୍ଗରେ ଗମନ କରିବା ପାଇଁ ପ୍ରତିବନ୍ଧକ ଭାବେ ଦଣ୍ଡାୟମାନ ହୋଇଥାଏ । ଭଗ୍ନୀ କ୍ରିଷ୍ଟାଇନ୍ ପୁନଶ୍ଚ ସ୍ୱାମୀଜୀଙ୍କର ଯୋଗଶକ୍ତି ବର୍ଣ୍ଣନା କରି କହିଥିଲେ, ''ସେ ତାଙ୍କର ଦିବ୍ୟ ଦର୍ଶନରେ ଦେଖିପାରିଥିଲେ ଯେ ଭବିଷ୍ୟତରେ ପ୍ରାଚ୍ୟ ଦେଶରେ ଆମେ ବହୁ ସ୍ଥାନ ଭ୍ରମଣ କରିବୁ । କେଉଁ ଗୃହରେ ଆମେ ବାସ କରିବୁ, କେଉଁ ବ୍ୟକ୍ତିମାନେ ଆମ ଗହଣରେ ରହିବେ, କେଉଁମାନଙ୍କ ପ୍ରଭାବରେ ଆମେ ପ୍ରଭାବିତ ହେବୁ ତା'ର ଏକ ସ୍ପଷ୍ଟ ଚିତ୍ର ସେ ବର୍ଣ୍ଣନା କରିଥିଲେ । ଏତାଦୃଶ ଭବିଷ୍ୟତବାଣୀ କିପରି ସମ୍ଭବ ବୋଲି ଆମେ ପ୍ରଶ୍ନ କରିବାରୁ ସ୍ୱାମୀଜୀ କହିଥିଲେ ଯେ ଏହି ଶକ୍ତିକୁ ଯେକୌଣସି ବ୍ୟକ୍ତି ଆୟତ୍ତ କରିପାରିବ । କହିବାକୁ ଗଲେ ଏହି ପଦ୍ଧତି ଅନ୍ତତଃପକ୍ଷେ ସରଳ । ପ୍ରଥମେ ମହାକାଶ କେତେ ବିଶାଳ, ନୀଳ ଏବଂ ସର୍ବବ୍ୟାପୀ ବୋଲି ଚିନ୍ତାକର । ଏଭଳି ଭାବେ ବହୁଦିନ ଧରି ଚିନ୍ତା କରି ଏହି ମହାକାଶ ଉପରେ ଧ୍ୟାନ କେନ୍ଦ୍ରିତ କଲେ, ଚିତ୍ରସବୁ ପ୍ରତିଭାତ ହେବ । ଏହି ଚିତ୍ରଗୁଡ଼ିକୁ ବ୍ୟାଖ୍ୟା କରିବାକୁ ହେବ । ଜଣେ ବ୍ୟକ୍ତି ବେଳେବେଳେ ଏହିସବୁ ଚିତ୍ର ଦେଖେ, କିନ୍ତୁ ବ୍ୟାଖ୍ୟା କରିବା ଜଣା ନ ଥାଏ । ଆମ ଭିତରୁ ଜଣେ ଭାରତ ସହ ଅଙ୍ଗାଅଙ୍ଗି ଭାବେ ଜଡ଼ିତ ହେବେ ବୋଲି ସେ ତାଙ୍କର ଦିବ୍ୟ ଦର୍ଶନରେ ଦେଖିପାରିଥିଲେ । ଭବିଷ୍ୟତରେ ଯେଉଁ କେତେକ ଗୁରୁତ୍ୱପର୍ଣ୍ଣ ତଥା ଛୋଟ ଛୋଟ ଘଟଣା ଆମ ଜୀବନରେ ଦେଖାଦେବ ଏବଂ ସାହସୀ ମନୋଭାବ, ସାମର୍ଥ୍ୟ, ଚରିତ୍ର ଭଳି ଯେଉଁ ବ୍ୟକ୍ତିତ୍ୱର ଗୁଣରେ ଆମେ ପୂର୍ଣ୍ଣ ହେବୁ, ସେସବୁ ତାଙ୍କ ମାନସଦର୍ଶନରେ ଜୀବନ୍ତ ହୋଇଉଠିଥିଲା । ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ, ଜଣକ ଭିତରେ କୌଣସି ପ୍ରକାର ଆତ୍ମ କ୍ଷୟ ଓ ଆତ୍ମ-ବିଶ୍ୱାସହୀନତା ଦେଖା ଦେବନାହିଁ । ପ୍ରତ୍ୟେକ ସାମୟିକ ସଂଶୟ ପ୍ରଶାନ୍ତ ପ୍ରତିଶ୍ରୁତି ଦ୍ୱାରା ବିଲୁପ୍ତ ହୋଇଯିବ ।

ଯେଉଁଭଳି ଭାବରେ ସପ୍ତାହପରେ ସପ୍ତାହ ସ୍ୱାମୀଜୀଙ୍କ ଉପସ୍ଥିତିରେ ବିତିଛି, ତାହା ବର୍ଣ୍ଣନା କରି ଲେଖି ହେବ ନାହିଁ । ଯେଉଁ ଉଚ୍ଚ ଚେତନା ରାଜ୍ୟରେ ଆମର ମନ ସେତେବେଳେ ଅଧିଷ୍ଠିତ ଥିଲା, ସେହି ଚେତନା ସ୍ତରକୁ ଜଣଙ୍କର ମନ ଉତ୍ତିଷ୍ଠିତ ନହେଲେ, ଆମର ଉକ୍ତ ଅବର୍ଣ୍ଣନୀୟ ଅନୁଭୂତିକୁ ସେ ବୁଝିପାରିବ ନାହିଁ । କେବଳ ଆନନ୍ଦ ହିଁ ଆନନ୍ଦ ସାଗରରେ ଆମେ ବୁଡିଥିଲୁ ! ତାଙ୍କର ଜ୍ୟୋର୍ତିମୟ ପ୍ରବାହ ଭିତରେ ଆମେ ବାସ କରୁଥିଲୁ ବୋଲି ଆମେ ସେତେବେଳେ ଅବଗତ ନ ଥିଲୁ । ପ୍ରେରଣାର ଡେଣାରେ ସେ ଆମକୁ ଏଭଳି ଉର୍ଦ୍ଧ୍ୱ ଜଗତକୁ ଉଡ଼ାଇ ନେଇଥିଲେ ଯାହା ଥିଲା ତାଙ୍କର ଶାଶ୍ୱତ ନିବାସ । ସେ ବି ନିଜ ମୁଖରେ କହିଥିଲେ ଯେ ସହସ୍ର ଦ୍ୱୀପପୁଞ୍ଜ ଉଦ୍ୟାନରେ ଅବସ୍ଥାନ ତାଙ୍କ ପାଇଁ ସର୍ବୋତ୍ତମ ଥିଲା । ଏହିଠାରେ

Digitized by srujanika@gmail.com

ହିଁ ତାଙ୍କର ଗୁରୁଦତ୍ତବାଣୀ କିପରି ପ୍ରଚାରିତ ହେବ ଏବଂ ବ୍ରତ କିପରି ପୂର୍ଣ୍ଣ ହେବ ତା'ର ଚିତ୍ର ପ୍ରକଟିତ ହୋଇଥିଲା ତାଙ୍କ ମାନସପଟରେ ।

ମୁକ୍ତିର ପଥ ଦେଖାଇ ଆମମାନଙ୍କୁ କିପରି ମୁକ୍ତ କରିବେ ହିଁ ଥିଲା ତାଙ୍କର ଦୁର୍ବାର ଇଚ୍ଛା । ଆହାଃ, ସେ ଭାବୋଚ୍ଛ୍ୱାସ କଣ୍ଠରେ କହିଥିଲେ, ''ମୁଁ ତୁମମାନଙ୍କୁ ଗୋଟିଏ ମାତ୍ର ସ୍ପର୍ଶରେ ମୁକ୍ତ କରିପାରନ୍ତି କି ?'' ଆମେରିକାର କାର୍ଯ୍ୟକୁ ଆଗେଇନେବା ନିମନ୍ତେ ଦଳେ ବ୍ୟକ୍ତିଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ପ୍ରଦାନ କରିବେ ବୋଲି ତାଙ୍କର ଦ୍ୱିତୀୟ ଇଚ୍ଛା ଥିଲା । ତାଙ୍କର ଛୋଟ ବାରଣ୍ଡାରେ ଦଣ୍ଡାୟମାନ ହୋଇ, ବୃକ୍ଷରାଜିର ଅଗ୍ରଭାଗ ଓ ସେଣ୍ଟ୍ ଲରେନ୍ସ ନଦୀର ସୌନ୍ଦର୍ଯ୍ୟକୁ ଅବଲୋକନ କରି ଆମକୁ ବକ୍ତୃତା ପ୍ରଦାନ ନିମନ୍ତେ ମଝିରେ ମଝିରେ ଆହ୍ୱାନ କରୁଥିଲେ । ଏହା ଥିଲା ଆମପାଇଁ ଅଗ୍ନି ପରୀକ୍ଷାର ମୁହୂର୍ତ୍ତ । ପ୍ରତ୍ୟେକ ଅନ୍ତେବାସୀଙ୍କୁ ପ୍ରୟାସ କରିବା ପାଇଁ ଏହା ଥିଲା ଆହ୍ୱାନ । ତାଙ୍କର ଆଦେଶ ଭିତରୁ ମୁକୁଳିବା ପାଇଁ ଦ୍ୱାର ନ ଥିଲା । ଏଭଳି ଅନ୍ତରଙ୍ଗ ମୁହୂର୍ତ୍ତଗୁଡ଼ିକ ଭିତରେ ବହୁସମୟରେ ରାତ୍ରିର ଗଭୀରତା ଯେତେ ଅଧିକ ବୃଦ୍ଧି ପାଉଥିଲା, ସେତେ ଅଧିକ ଭାବରେ ସେ ବହୁ ଉଚ୍ଚ ଚେତନା ସ୍ତରକୁ ଆରୋହଣ କରୁଥିଲେ । ରାତି ଦୁଇଟା ବାଜି ଯାଉଥିଲା । ଆମେ ରାତ୍ରିରେ ଚନ୍ଦ୍ର ଉଦୟ ଓ ଚନ୍ଦ୍ର ଅସ୍ତ ବି ଦେଖୁଥିଲୁ । ସ୍ଥାନ ଓ କାଳ ଆମପାଇଁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ।

ବ୍ରହ୍ମଚର୍ଯ୍ୟ ବା ଆତ୍ମ-ସଂଯମ ଏବଂ ସତୀତ୍ୱ ବା ପବିତ୍ରତା । ଏହି ଦୁଇଟି ଶ୍ରେଷ୍ଠ ମାନବୀୟ ଗୁଣ ଦ୍ୱାରା ସ୍ୱାମୀଜୀ ଗଭୀର ଭାବେ ଉଦ୍ଦୀପିତ । କୋଠରି ଭିତରେ ଗୋଟିଏ ପଟରୁ ଅନ୍ୟପଟକୁ ପଦଚାରଣ କରୁଥିବା ସମୟରେ, ସେ ଅଧିକରୁ ଅଧିକ ହୋଇପଡୁଥିଲେ ଉତ୍ତେଜିତ, କୌଣସି ଜଣକ ଆଗରେ ହଠାତ୍ ସେ ଠିଆ ହୋଇଯାଉଥିଲେ, ସତେକି କୋଠରିରେ କେହି ନାହାନ୍ତି । ଅତ୍ୟନ୍ତ ଉତ୍ସାହିତ ସ୍ୱରରେ କହୁଥିଲେ, ''ତୁମେ କ'ଣ ଦେଖିପାରୁନ, ସନ୍ନ୍ୟାସ ଧର୍ମରେ ପବିତ୍ରତାକୁ କାହିଁକି ଗୁରୁତ୍ୱ ଦିଆଯାଏ ? ସତୀତ୍ୱ ଓ ବ୍ରହ୍ମଚର୍ଯ୍ୟରୁ ଶ୍ରେଷ୍ଠ ଆଧ୍ୟାତ୍ମିକ ମାନବ ସୃଷ୍ଟି ହୁଏ । ତୁମେ କ'ଣ ଦେଖିପାରୁନାହଁ ଯେ ଏହା ପଶ୍ଚାତରେ ଏକ କାରଣ ରହିଛି ? ରୋମାନ୍ କାଥୋଲିକ୍ ଚର୍ଚ୍ଚ ବହୁ ମହାନ୍ ସନ୍ଥ ଓ ସନ୍ନ୍ୟାସୀ ସୃଷ୍ଟି କରିଛି - **ସେଣ୍ଟ ଫ୍ରାନ୍‌ସିସ୍ ଅଫ୍ ଆସିସି**, ଇଗ୍ନାସିୟସ ଲୟୋଲା, **ସେଣ୍ଟ ଟେରେସା, ଦୁଇ କାଥେରିନ୍** ଏବଂ ଅନେକ କିଛି । ସେମାନଙ୍କ ସହ ସମାନ ହେବାପାଇଁ ପ୍ରୋଟେଷ୍ଟାଣ୍ଟ ଚର୍ଚ୍ଚ କୌଣସି ଆଧ୍ୟାତ୍ମିକ ସନ୍ଥ ଉତ୍ପନ୍ନ କରିନାହିଁ । ଶ୍ରେଷ୍ଠ ଆଧ୍ୟାତ୍ମିକତା ଓ ପବିତ୍ରତା ମଧ୍ୟରେ ରହିଛି ସଂପର୍କ । ପୁରୁଷ ଓ ନାରୀ ପ୍ରାର୍ଥନା ଓ ଧ୍ୟାନ ମାଧ୍ୟମରେ ନିଜ ଶରୀରର ଅନ୍ତର୍ନିହିତ ଶକ୍ତିକୁ ଆଧ୍ୟାତ୍ମିକ ଶକ୍ତିରେ ରୂପାନ୍ତରିତ କରିଦିଅନ୍ତି । ଭାରତରେ ଏହା ସୁବିଦିତ ଏବଂ ଯୋଗୀମାନେ ଜାଣିଶୁଣି ଏହା ସାଧନା କରନ୍ତି । ଏହି ପରିବର୍ତ୍ତିତ ଶକ୍ତିକୁ ଓଜ କୁହାଯାଏ ଏବଂ ଏହା ମସ୍ତିଷ୍କରେ ସଞ୍ଚିତ । କୁଣ୍ଡଳିନୀର ସର୍ବନିମ୍ନ ସ୍ତର ''ମୂଳାଧାରରୁ ଏହା ଉଚ୍ଚତମ ସ୍ତରକୁ ଉଠିଥାଏ । ତାଙ୍କର ଏହି ମୁଖନିଃସୃତ କଥା ପଦେ ଆମର ସ୍ମୃତିକୁ ଆଲୋକିତ କଲା - ''ଏବଂ ମୋତେ ଯଦି ଉପରକୁ ଉଠାଇ ଦିଆଯିବ, ସମସ୍ତ ମନୁଷ୍ୟଙ୍କୁ ମୋ ପାଖକୁ ଟାଣି ଆଣିବି ।''

Digitized by srujanika@gmail.com

- ୪ -

*'ଜୀବନ ପ୍ରତି ଏହି କୁତ୍ସିତ ମୋହ' ବିଷୟକୁ ସେ ଯେତେବେଳେ ସ୍ପର୍ଶ କରନ୍ତି, ସେତେବେଳେ ବିଦ୍ୟାର୍ଥୀଗଣ ଅନୁଭବ କରନ୍ତି ସତେ ଯେପରି ଜନ୍ମ ମୃତ୍ୟୁ ଏବଂ ଶାଶ୍ୱତ ରାଜ୍ୟ ମଝିରେ ଅବସ୍ଥାପିତ ପର୍ଦ୍ଦା ଉଠିଯାଉଛି ଏବଂ ଏକ ଅବର୍ଣ୍ଣନୀୟ ଆନନ୍ଦସାଗରରେ ସମସ୍ତେ ମୁକ୍ତ ହୋଇଯାଉଛନ୍ତି । ଆଜାଦ୍, ଆଜାଦ୍ କହି ଜନ୍ତା ଭିତର ସିଂହ ଭଳି ସେ ଖାଲି କକ୍ଷର ଏକ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ ପଦଚାରଣ କରୁଥିଲେ; କିନ୍ତୁ ସେହି ଜନ୍ତାର ନ ଥିଲା ଲୌହ ବାଡ଼, କିନ୍ତୁ ବାଉଁଶର ବାଡ଼ ।*

ଏହି ମୂଲ୍ୟବାନ୍ ଶିକ୍ଷା ଉପରେ ଜୀବନ ଗଢ଼ିବାକୁ ସେ ଆମମାନଙ୍କୁ ଅତ୍ୟନ୍ତ ବିନୀତ ଭାବରେ ଅନୁରୋଧ କରୁଥିଲେ । ଯେଉଁମାନେ ବ୍ରହ୍ମଚର୍ଯ୍ୟ ଓ ସତୀତ୍ୱ କାୟମନୋବାକ୍ୟରେ ପାଳନ କରିବେ, ସେମାନଙ୍କୁ ନିଜର ଶିଷ୍ୟରେ ଅନ୍ତର୍ଭୁକ୍ତ କରିବାକୁ ସେ ଚାହୁଁଥିଲେ । ଯାହାର ଭାବପ୍ରବଣତା ନାହିଁ, ତା'ର ସଂଯମାଚରଣ କରିବାର ଆବଶ୍ୟକତା ନାହିଁ । ସେ କହୁଥିଲେ, "ପାଞ୍ଚ କିମ୍ବା ଛଅ ଜଣ ଭଳି ଅଳ୍ପ କେତେକ ଯୁବକ ଓ ଯୁବତୀ, ଯେଉଁମାନଙ୍କର ଯୌବନର ପ୍ରସ୍ଫୁଟିତ ପୁଷ୍ପ ଅବସ୍ଥା, ସେମାନେ ମୋର କେବଳ ଆବଶ୍ୟକ ।"

ସବୁବେଳେ ମୁକ୍ତି ଲାଭ କରିବା ପାଇଁ ସେ ଶିବିରାର୍ଥୀଙ୍କୁ ପରାମର୍ଶ ଦେଉଥିଲେ । ଯେତେବେଳେ ଏହି ମୁକ୍ତିର ଶବ୍ଦ ଉଚ୍ଚାରଣ କରୁଥିଲେ, ତାଙ୍କ ଆତ୍ମାର ଗଭୀରତମ ପ୍ରଦେଶରୁ ଉତ୍ତାଳ ତରଙ୍ଗମାଳାର ସ୍ରୋତ ବହମାନ ହେଉଥିଲା ଏବଂ ସମଗ୍ର ପରିବେଶ ଜୀବନ୍ତ ହୋଇଉଠୁଥିଲା । ସତେକି ଶରୀରର ଶୃଙ୍ଖଳ ଭାଙ୍ଗି ସମସ୍ତେ ମୁକ୍ତ ହୋଇଯିବେ ! 'ଜୀବନ ପ୍ରତି ଏହି କୁତ୍ସିତ ମୋହ' ବିଷୟକୁ ସେ ଯେତେବେଳେ ସ୍ପର୍ଶ କରନ୍ତି, ସେତେବେଳେ ବିଦ୍ୟାର୍ଥୀଗଣ ଅନୁଭବ କରନ୍ତି ସତେ ଯେପରି ଜନ୍ମ ମୃତ୍ୟୁ ଏବଂ ଶାଶ୍ୱତ ରାଜ୍ୟ ମଝିରେ ଅବସ୍ଥାପିତ ପର୍ଦ୍ଦା ଉଠିଯାଉଛି ଏବଂ ଏକ ଅବର୍ଣ୍ଣନୀୟ ଆନନ୍ଦସାଗରରେ ସମସ୍ତେ ମୁକ୍ତ ହୋଇଯାଉଛନ୍ତି । ଆଜାଦ୍, ଆଜାଦ୍ କହି ଜନ୍ତା ଭିତର ସିଂହ ଭଳି ସେ ଖାଲି କକ୍ଷର ଏକ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ ପଦଚାରଣ କରୁଥିଲେ; କିନ୍ତୁ ସେହି ଜନ୍ତାର ନ ଥିଲା ଲୌହ ବାଡ଼, କିନ୍ତୁ ବାଉଁଶର ବାଡ଼ ।" ଏଠାରେ ଉଲ୍ଲେଖନୀୟ ଯେ ଯେଉଁ କୁଟୀରର କୋଠରୀରେ ସ୍ୱାମୀଜୀ ପଢ଼ାଉଥିଲେ ଏବଂ ବାସ କରୁଥିଲେ, ତା'ର କାନ୍ଥ ଓ ବାଡ଼ ଥିଲା ବାଉଁଶରେ ନିର୍ମିତ ।

ଶିଷ୍ୟଗଣଙ୍କୁ ମୁକ୍ତିର ପଥ ପ୍ରଦର୍ଶନ କରିବା ସ୍ୱାମୀଜୀଙ୍କର ଥିଲା ଲକ୍ଷ୍ୟ । ସେଥିପାଇଁ ସେ ସେଠାରେ ଥରେ ଦୁଃଖଦ କଣ୍ଠରେ କହିଥିଲେ, "ଆହାଃ ଗୋଟିଏ ମାତ୍ର ସ୍ପର୍ଶରେ ମୁଁ ତୁମକୁ ମୁକ୍ତି ଦେଇପାରନ୍ତି କି !" ଦୁଇଜଣ ଶିଷ୍ୟା **ଶ୍ରୀମତୀ ଫୁନ୍କେ** ଏବଂ **କୁମାରୀ ଗ୍ରୀନ୍‌ଷ୍ଟିଡ଼େଲ** ପୂର୍ବରୁ ସ୍ୱାମୀଜୀଙ୍କ ଅଗ୍ନିବର୍ଷୀ ଓ ଆତ୍ମା ମନ୍ଥନକାରୀ ବକ୍ତୃତା ଶୁଣି ସ୍ୱାମୀଜୀଙ୍କୁ ଖୋଜିଖୋଜି ଶହଶହ ମାଇଲ ଅତିକ୍ରମ କରି ନିୟୁର୍କରୁ ଏଠାରେ ଏକ ଘନ ଅନ୍ଧକାର ମେଘୁଆ ରାତ୍ରିରେ

Digitized by srujanika@gmail.com

ପହଞ୍ଚିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ସ୍ୱାମୀଜୀଙ୍କୁ ଚାହିଁ କହିଥିଲେ ''ସତେକି ଯୀଶୁଖ୍ରୀଷ୍ଟ ହିଁ ଧରାପୃଷ୍ଠରେ ବିରାଜିତ ଏବଂ ଶିକ୍ଷା ଗ୍ରହଣ କରିବା ପାଇଁ ଆମେ ତାଙ୍କୁ ବିନୀତ ପ୍ରାର୍ଥନା କରିବୁ ବୋଲି ଆମେ ଆପଣଙ୍କ ପାଖକୁ ଆସିଛୁ ।'' ଅତ୍ୟଧିକ ସଦୟ ଦୃଷ୍ଟିରେ ସ୍ୱାମୀଜୀ ସେମାନଙ୍କୁ ଚାହିଁଲେ ଏବଂ ମୃଦୁ ସ୍ୱରରେ କହିଲେ, ''ତୁମମାନଙ୍କୁ ମୁକ୍ତି ପ୍ରଦାନ କରିବା ପାଇଁ ମୋ ପାଖରେ ଯୀଶୁଖ୍ରୀଷ୍ଟଙ୍କ ଭଳି ଶକ୍ତି ଥାନ୍ତା କି ! ଅବଶ୍ୟ ଦିନେ କୁମାରୀ ୱାଲଡ଼ୋ ଅତ୍ୟାଶ୍ଚର୍ଯ୍ୟ ହୋଇ କହି ପକାଇଥିଲେ ''ଏହା ପାଇଁ ଆମେ ଜୀବନରେ କ'ଣ ଯେ କରିଛୁ ଆମେ ଯୋଗ୍ୟ ହୋଇପାରିବୁ ?'' ଅନ୍ୟମାନେ ବି ସେଇୟା ଅନୁଭବ କରିଥିଲେ ।

ସହସ୍ର ଦ୍ୱୀପପୁଞ୍ଜ ଉଦ୍ୟାନସ୍ଥ କୁଟୀରର ଅନ୍ତେବାସୀ ଶିକ୍ଷାର୍ଥୀଗଣ ଏହିଠାରେ ଦେଖିଥିଲେ ସ୍ୱାମୀଜୀଙ୍କର ଆଧ୍ୟାତ୍ମିକ ପରିପ୍ରକାଶ । ତାଙ୍କର ଏଭଳି ଉଚ୍ଚ ଚେତନା ସ୍ତରରେ ଭ୍ରମଣରତ ମନକୁ କେହି ଧରି ପାରି ନ ଥିଲେ । କିନ୍ତୁ ସେ ଏଠାରେ ଧରାପଡ଼ିଗଲେ । ସ୍ୱାମୀଜୀଙ୍କର ବୟସ ଥିଲା ମାତ୍ର ବତିଶବର୍ଷ । ଏଠିକାର ସବୁ ଶିଷ୍ୟ ଶିଷ୍ୟାଙ୍କ ବୟସ, ଅବଶ୍ୟ ଜଣେ ଶିଷ୍ୟ ବ୍ୟତୀତ, ତାଙ୍କ ଅପେକ୍ଷା ଅଧିକ ଥିଲା । ତଥାପି ପ୍ରତ୍ୟେକ ତାଙ୍କୁ ପିତା କିମ୍ବା ମାତା ଦୃଷ୍ଟିରେ ଦେଖୁଥିଲେ । ତାଙ୍କର ବ୍ୟବହାର ଓ ଆଚରଣ ଥିଲା ଆଶାତୀତ ପରିପକ୍ୱ । ଗଭୀର ସମୁଦ୍ର ଭଳି ତାଙ୍କର ବ୍ୟକ୍ତିତ୍ୱ, କୌଣସି ପ୍ରଶଂସା କିମ୍ବା ନିନ୍ଦାର ଢେଉମାଳାରେ ସେ ହେଉ ନ ଥିଲେ ବିଚଳିତ । ବିଭିନ୍ନ ଶିଷ୍ୟ ତାଙ୍କୁ ଏଥିପାଇଁ କଳନା ନ କରିପାରି ବିଭିନ୍ନ ଦୃଷ୍ଟିରେ ଦେଖୁଥିଲେ । କେହି ତାଙ୍କର ପବିତ୍ରତା, କେହି ତାଙ୍କର ଶକ୍ତି, କେହି ତାଙ୍କର ବୌଦ୍ଧିକତା; କେହି ତାଙ୍କର ପ୍ରଶାନ୍ତ ଭାବମୂର୍ତ୍ତି ଦ୍ୱାରା ପ୍ରଭାବିତ ଓ ଆକର୍ଷିତ ହେଉଥିଲେ । ଏହିସବୁ ଦିବ୍ୟ ଗୁଣ ସେ ମାତ୍ର ବତିଶ ବର୍ଷ ବୟସରେ ଆୟତ୍ତ କରିପାରିଥିବାରୁ, ସେ ମନୁଷ୍ୟର ଗୁରୁ ହେବେ ନାହିଁ ତ ଅନ୍ୟ କିଏ ହେବ ? ତାଙ୍କର ଯୋଗଶକ୍ତି ଏଠାରେ ଅଦ୍ଭୁତ ତେଜରେ ଦୀପ୍ତିମନ୍ତ । ଦିନରେ ବାରରୁ ଚଉଦଟି ବକ୍ତୃତା ତାଙ୍କୁ ଦେବାକୁ ପଡୁଥିଲା । ଶାରୀରିକ ଓ ମାନସିକ ଦୁର୍ବଳତାରେ ସେ ଅବଶ ହୋଇପଡୁଥିଲେ, ଆସନ୍ତା କାଲି କେଉଁ ବିଷୟବସ୍ତୁ ଉପରେ ବକ୍ତୃତା ଦେବା ଚିନ୍ତାରେ ବିଚଳିତ ବି ହୋଉପଡୁଥିଲେ । କିନ୍ତୁ ଅର୍ଦ୍ଧରାତ୍ରିରେ, କାଲି ଯେଉଁ ବିଷୟ ସମ୍ବନ୍ଧରେ ତାଙ୍କୁ କହିବାକୁ ହେବ, ସେହି ବିଷୟରେ ଏକ ଉଚ୍ଚ ସ୍ୱର ଶୁଣିବାକୁ ପାଉଥିଲେ । କେତେବେଳେ ସେହି ସ୍ୱର ସେ ଦୂରରୁ ଶୁଣୁଥିଲେ, କେତେବେଳେ ବି ଅତି ନିକଟରୁ । ବଡ଼ ଆଶ୍ଚର୍ଯ୍ୟର କଥାଯେ ସେ ଯେଉଁ ତଥ୍ୟ ସ୍ୱର ମାଧ୍ୟମରେ ପାଉଥିଲେ, ସେହି ବିଷୟରେ ତାଙ୍କର ପୂର୍ବରୁ କୌଣସି ଜ୍ଞାନ ନ ଥିଲା । ସେ ଅନାୟସରେ ପରଦିନ ଶ୍ରେଣୀରେ ବକ୍ତୃତା ଦେଇ ପାରୁଥିଲେ ।

ତାଙ୍କ କୋଠରି ନିକଟସ୍ଥ କୋଠରିରେ ଯେଉଁ ଭକ୍ତଗଣ ଶୟନ କରୁଥିଲେ, ସେମାନେ ଅର୍ଦ୍ଧ ରାତ୍ରିରେ ସ୍ୱାମୀଜୀଙ୍କର କଥୋପକଥନ ସ୍ୱର ଶୁଣି ପରବର୍ତ୍ତୀ ସକାଳେ ସ୍ୱାମୀଜୀଙ୍କୁ ପଚାରୁଥିଲେ, ''ସ୍ୱାମୀଜୀ, ଗତ ରାତିରେ ଆପଣ କାହା ସଙ୍ଗରେ କଥା ହେଉଥିଲେ ? ଆପଣ ଉଚ୍ଚ ସ୍ୱର ଓ ଉତ୍ସାହ ସହିତ ଏଭଳି କଥାବାର୍ତ୍ତାରେ ମଗ୍ନ ଥିଲେ ଯେ ଆମେ ଆଶ୍ଚର୍ଯ୍ୟ ହୋଇ ଭାବୁଥିଲୁ ସ୍ୱାମୀଜୀ କାହା ସହ କଥା ହେଉଛନ୍ତି ? ସ୍ୱାମୀଜୀ ଏତାଦୃଶ ଘଟଣାକୁ ବୁଝାଇବାକୁ ଯାଇ କହିଥିଲେ,

Digitized by srujanika@gmail.com

"ଆତ୍ମାର ଶକ୍ତି ଓ ସାମର୍ଥ୍ୟର ଏହା ଅଭିବ୍ୟକ୍ତି, ଯାହାକୁ ସାଧାରଣତଃ ପ୍ରେରଣା ବୋଲି କୁହାଯାଇଥାଏ । କିନ୍ତୁ ଏହା ଚମତ୍କାରିତା ନୁହେଁ ବୋଲି ସେ ସ୍ପଷ୍ଟ ଭାବରେ ଭକ୍ତଗଣଙ୍କୁ ସତର୍କ କରାଇ ଦେଇଥିଲେ ।

- ୫ -

*ଗୁଣରହିତ ପଥରେ ମୁଁ ଯାତ୍ରୀ । କେଉଁ ନିୟମ ମୁଁ ପାଳନ କରିବି, କେଉଁ ନିୟମ ବା ମୁଁ ପାଳନ ନ କରିବି ?" ସେହି ଶୀର୍ଷସ୍ଥାନରୁ ଏହି ବିଶ୍ୱ ରାସ୍ତାର ଖାଲୁଆ ଜାଗାରେ ମେଞ୍ଚାଏ କାଦୁଆ ପାଣି ଜମିଥିବା ଭଳି ପ୍ରତୀୟମାନ । ହରି ଓମ୍ ତତ୍ ସତ୍ । ସେ ହିଁ ବିରାଜିତ, ଆଉ କେହି ନୁହେଁ । ମୁଁ ତାଙ୍କ ଭିତରେ ଏବଂ ସେ ମୋ ଭିତରେ । ସେହି ପ୍ରଭୁ ମୋର ଶାଶ୍ୱତ ଆଶ୍ରୟ । ଶାନ୍ତି ଶାନ୍ତି ଶାନ୍ତି ।*

ସହସ୍ର ଦ୍ୱୀପପୁଞ୍ଜ ଉଦ୍ୟାନସ୍ଥ କୁଟୀରର ମାଲିକାଣୀ ହେଉଛନ୍ତି କୁମାରୀ ଏଲିଜାବେଥ୍ ଡୁଚର୍, ଯେଉଁଠାରେ ତିନି ସପ୍ତାହ ଧରି ସ୍ୱାମୀଜୀ କେତେକ ନିର୍ଦ୍ଦିଷ୍ଟ ଆମେରିକାବାସୀଙ୍କୁ ଆଧ୍ୟାତ୍ମିକ ଶିକ୍ଷା ଦେଇଥିଲେ । କୁମାରୀ ଡୁଚର୍ ଜଣେ ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟଧର୍ମର ନୈଷ୍ଠିକ ଅନୁଗାମୀ । ନିଜ କୁଟୀରରେ ସ୍ୱାମୀ ବିବେକାନନ୍ଦଙ୍କ ପ୍ରବଚନ ଓ ଆଲୋଚନା ଶୁଣିବା ଉତ୍ତାରୁ ତାଙ୍କର ଧାର୍ମିକ ଧାରଣା, ବିଶ୍ୱାସ ଓ ମାାନସିକ ଛାପ ସମୂହ ଚହଲିଗଲା, ସତେକି ସେସବୁ ଧରାଶାୟି ହୋଇଯିବ ! ସେ ଏଭଳି ମାନସିକ ଦ୍ୱନ୍ଦ ଓ କିଂକର୍ତ୍ତବ୍ୟ ବିମୂଢ଼ତା ଜାଲରେ ଛନ୍ଦି ହୋଇପଡ଼ିଲେ ଯେ ଦୁଇ କିମ୍ୱା ତିନିଦିନ ଧରି ସେ କାହାରିକୁ ଦେଖା ଦେଲେ ନାହିଁ । ସ୍ୱାମୀଜୀ ବୁଝିଗଲେ ତାଙ୍କର ଅନ୍ତର୍ବେଦନା । ତାଙ୍କ ମୁଖରୁ ପଦଟିଏ ବାକ୍ୟ ଅନ୍ୟମାନଙ୍କ ସମ୍ମୁଖରେ ଝରିପଡ଼ିଲା, "ଏହା ଏକ ସାଧାରଣ ବ୍ୟାଧି ନୁହଁ ବୋଲି ତୁମେ କ'ଣ ଦେଖିପାରୁନାହଁ ? ତାଙ୍କ ମନରେ ଯେଉଁ ଝଡ଼ ଉଠିଛି, ତାହାର ପ୍ରତିକ୍ରିୟା ତାଙ୍କ ଶରୀରରେ ପ୍ରତିଫଳିତ, ସେ ଏହା ସହ୍ୟ କରିପାରିବେ ନାହିଁ ।" ସାପ ନିଜର କାତି ଛଡ଼ାଇ ଯେପରି ପୁନର୍ବାର ନିଜ ଧର୍ମରେ ଲାଗିଯାଏ, କୁମାରୀ ଡୁଚର୍ ଏକ ନୂଆ ମନ ଓ ଉଦ୍ଦୀପନା ସହ ପୁନଶ୍ଚ ସ୍ୱାମୀଜୀଙ୍କର ଶ୍ରେଣୀଗୃହ ଶିକ୍ଷାରେ ଯୋଗ ଦେଇଥିଲେ । ଏହି ମହାନ୍ ରହସ୍ୟବାଦୀ ସନ୍ୟାସୀଙ୍କ ସମଗ୍ର ଶରୀର ଓ ମନରୁ ନିର୍ଗତ ହେଉଥିଲା ପ୍ରଚଣ୍ଡ ଶକ୍ତି, ଏଠାରେ ଅବସ୍ଥାନ କରୁଥିବା ଶିଷ୍ୟା କିମ୍ୱା ଶିଷ୍ୟ ତାଙ୍କର ଅତି ନିକଟତର ହେବା ତ ଦୂରର କଥା, ଦୂରରୁ ସଙ୍କୁଚିତ ହୋଇଯାଉଥିଲେ ।

ଏହି ରହଣିକାଳରେ ଏକ ଦୁଃଖପୂର୍ଣ୍ଣ ସମ୍ୱାଦ ସ୍ୱାମୀଜୀଙ୍କର ହସ୍ତଗତ ହୋଇଥିଲା । **ଜୁନାଗଡ଼ର ଦିୱାନ ହରିଦାସ** ବିହାରିଦାସଙ୍କର ଦେହାନ୍ତ । ପରିବ୍ରାଜକ ଜୀବନ କାଳରେ ସ୍ୱାମୀଜୀ ତାଙ୍କଠାରୁ ଯେଉଁ ପ୍ରେମ ଓ ସାହାଯ୍ୟ ଲାଭ କରିଥିଲେ, ତାହା ସେ କେବେ ବିସ୍ମରଣ ହେବେ ନାହିଁ । **୧୮୯୫ ଜୁଲାଇ ୩୦** ତାରିଖରେ ଶ୍ରୀମତୀ ଏଲେନ୍ ହେଲେଙ୍କ ନିକଟକୁ ନିଜର ଦୁଃଖାନୁଭୂତି ବର୍ଣ୍ଣନା କରି ସେ ଏକ ପତ୍ର ଲେଖିଥିଲେ "ହେ ମା, ଦିୱାନଜୀ

Digitized by srujanika@gmail.com

ହରିଦାସ ବିହାରିଦାସଙ୍କର ଦେହାନ୍ତ ଖବର ପତ୍ର ପାଇ ମୁଁ ଅତ୍ୟନ୍ତ ଦୁଃଖାଭିଭୂତ ହୋଇପଡ଼ିଛି । ସେ ମୋର ପିତା ସଦୃଶ ଥିଲେ... । ମୋ ହୃଦୟ ଏଭଳି ଦୁଃଖରେ ପରିପୂର୍ଣ୍ଣ ଯେ ମୁଁ ଆପଣଙ୍କ ପାଖକୁ ଅଧିକ କିଛି ଲେଖିବା ପାଇଁ ଅସମର୍ଥ ।'' ଚତୁଃପାର୍ଶ୍ୱ ବେଷ୍ଟିତ ଛାତ୍ରଛାତ୍ରୀ ଗହଣରେ ଏକ ଉଚ୍ଚ ଆଧାତ୍ମିକ ପରିବେଶରେ ତାଙ୍କର ମନ ଓ ଚେତନା ଯେତେବେଳେ ଉର୍ଦ୍ଧ୍ୱଗାମୀ ଥିଲା, ସେହି ସମୟରେ ଦିଓ୍ୱାନଜୀଙ୍କର ଦେହାନ୍ତ କିଭଳି ତାଙ୍କର ହୃଦୟକୁ ବିଷାଦଗ୍ରସ୍ତ କରିଥିଲା, ତାହା ଉକ୍ତ ପତ୍ର ସୂଚାଇ ଦିଏ । ଏମନ୍ତ ବିଷାଦଗ୍ରସ୍ତ ମନ ଓ ହୃଦୟରେ ବି ତଥାପି ସେ ଚିଠିରେ ହେଲେଙ୍କ ନିକଟକୁ ଲେଖିଥିଲେ -

''ଏହି ସ୍ଥାନ ମୋତେ ଭାରି ଭଲ ଲାଗୁଛି... ମୋ ଆତ୍ମା ଅଦ୍ଭୁତ ଶାନ୍ତି ଓ ନିଶ୍ଚିତତାରେ ଏଠାରେ ପରିପୂର୍ଣ୍ଣ ହୋଇଉଠୁଛି । ମୋର କୌଣସି ଦାୟିତ୍ୱ ନାହିଁ ବୋଲି ପ୍ରତିଦିନ ମୁଁ ଅନୁଭବ କରୁଛି; ମୁଁ ନିରନ୍ତର ଶାଶ୍ୱତ ବିଶ୍ରାମ ଓ ଶାନ୍ତିରେ ରହିଛି । ଯାହା ବି ହେଉଛି ତାହା ସେ ପ୍ରଭୁ ହିଁ କରୁଛନ୍ତି । ଆମେ କେବଳ ଯନ୍ତ୍ରମାତ୍ର । ତାଙ୍କର ନାମ ଜୟ ହେଉ । ପୂର୍ବରୁ ଯେପରି କାମିନୀ, କାଞ୍ଚନ ଓ ପ୍ରତିଷ୍ଠା ଭଳି ତ୍ରୟ-ମାୟାରୁ ମୁଁ ସାମୟିକ ଭାବେ ମୁକ୍ତ ହୋଇଥିଲି, ପୁନଶ୍ଚ ଏଠାରେ ତାହା ମୁଁ ଅନୁଭବ କରୁଛି; ଭାରତରେ ଥିବାବେଳେ ମୋର ସମସ୍ତ ବିବେଧତା, ସମସ୍ତ ଭୁଲ ଓ ଠିକ୍, ସବୁ ମାୟା ଓ ଅଜ୍ଞାନ ଯେପରି ମୋ ଭିତରୁ ଅନ୍ତର୍ଦ୍ଧାନ ହୋଇଥିଲା, ଏଠାରେ ବି ସେଇୟା ମୁଁ ଅନୁଭବ କରେ । ଗୁଣରହିତ ପଥରେ ମୁଁ ଯାତ୍ରୀ । କେଉଁ ନିୟମ ମୁଁ ପାଳନ କରିବି, କେଉଁ ନିୟମ ବା ପାଳନ ନ କରିବି ?'' ସେହି ଶୀର୍ଷସ୍ଥାନରୁ ଏହି ବିଶ୍ୱ, ରାସ୍ତାର ଖାଲୁଆ ଜାଗାରେ ମେଞ୍ଚାଏ କାଦୁଆ ପାଣି ଜମିଥିବା ଭଳି ପ୍ରତୀୟମାନ । ହରି ଓମ୍ ତତ୍ ସତ୍ । ସେ ହିଁ ବିରାଜିତ, ଆଉ କେହି ନୁହେଁ । ମୁଁ ତାଙ୍କ ଭିତରେ ଏବଂ ସେ ମୋ ଭିତରେ । ସେହି ପ୍ରଭୁ ମୋର ଶାଶ୍ୱତ ଆଶ୍ରୟ । ଶାନ୍ତି ଶାନ୍ତି ଶାନ୍ତି ।''

ବହୁ ଅନୁପ୍ରାଣିତ ଶିକ୍ଷା ତିନି ସପ୍ତାହକାଳ ପ୍ରଦାନ କରି ଶିଷ୍ୟ ଓ ଶିଷ୍ୟାଙ୍କର ମନକୁ ପ୍ରଜ୍ୱଳିତ କଲା ଉତ୍ତାରୁ ସ୍ୱାମୀଜୀ ଏହିଠାରେ ତାଙ୍କର ବିଦାୟକାଳୀନ ଶେଷ ବକ୍ତୃତା **୧୮୯୫ ଅଗଷ୍ଟ ଛଅ** ତାରିଖରେ (ମଙ୍ଗଳବାର) ପ୍ରଦାନ କରି କହିଥିଲେ - 'ମୁଁ' ନ ରହିଲେ 'ତୁମେ' ବାହାରେ ରହିପାରିବ ନାହିଁ । ଏହିଠାରୁ କେତେକ ଦାର୍ଶନିକ ଅନ୍ତିମ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ବାହ୍ୟ ଜଗତ ନୋହିଲେ ତିଷ୍ଠିପାରି ନ ଥାନ୍ତା । ତେଣୁ, 'ତୁମେ' କେବଳ 'ମୁଁ'ରେ ବିରାଜିତ । ଅନ୍ୟମାନେ ତର୍କ କରିଥିଲେ ଯେ 'ମୁଁ' କେବଳ 'ତୁମେ' ମାଧ୍ୟମରେ ଜ୍ଞାତ ହୋଇପାରିବ ଏବଂ ସମାନ ତର୍କ ସହିତ । ଏହି ଦୃଷ୍ଟିକୋଣ ଦ୍ୱୟ ଆଂଶିକ ଭାବରେ ସତ୍ୟ; ପ୍ରତ୍ୟେକ ଗୋଟିଏ ପକ୍ଷରୁ ଭୁଲ ଏବଂ ପ୍ରତ୍ୟେକ ବି ଗୋଟିଏ ପକ୍ଷରୁ ଠିକ୍ । ପ୍ରକୃତି ଭିତରେ ଶରୀର ଯେପରି, ଭାବନା ବି ଏକ ବସ୍ତୁ ଠିକ୍ ସେପରି । ଉଭୟ ଭୌତିକ ବସ୍ତୁ ଓ ମନ ଏକ ଐକ୍ୟ ଭଳି ତୃତୀୟାବସ୍ଥାରେ ବିରାଜିତ ଯାହା ନିଜକୁ ଦ୍ୱିଭାଗ କରେ । ଏହି ଐକ୍ୟରେ ଆତ୍ମା, ଯାହା ବ୍ୟକ୍ତି ଭିତରେ ବିରାଜିତ ।

Digitized by srujanika@gmail.com

ଏକ ସତ୍ତା ବିରାଜିତ; ନିଜକୁ ଉଭୟ ମନ ଓ ଭୌତିକ ବସ୍ତୁରେ ପ୍ରକଟନ କରୁଛି । କେତେକ ସ୍ଥିରୀକୃତ ମାର୍ଗ ସହିତ ଏହାର ଦୃଶ୍ୟମାନ ଗତିକୁ ନିୟମ କୁହାଯାଏ । ଏକ ଐକ୍ୟ ଭାବେ ଏହା ମୁକ୍ତ, ବହୁ ବା ବିଭିନ୍ନତା ଭାବେ ଏହା ନିୟମ ଦ୍ୱାରା ବଦ୍ଧ । ତଥାପି ଏହିସବୁ ବନ୍ଧନ ଭିତରେ ମୁକ୍ତିର ଧାରଣା ସର୍ବଦା ବିରାଜିତ, ଏବଂ ଏହା ହିଁ ନିବୃତ୍ତି ଅର୍ଥାତ୍ ଆସକ୍ତିରୁ ବିକର୍ଷଣ । ସାଂସାରିକ ଜଞ୍ଜାଳ ପ୍ରତି କାମନା ମାଧ୍ୟମରେ ଯେଉଁ ଭୌତିକ ଶକ୍ତି ଆକର୍ଷଣ କରେ, ତାହା ପ୍ରବୃତ୍ତି ଭାବେ ପରିଚିତ ।

କର୍ମରେ ନୈତିକତା ଭୌତିକ ବସ୍ତୁରୁ ଆମକୁ ମୁକ୍ତ କରେ ଏବଂ ଏହାର ବିପରୀତ କାର୍ଯ୍ୟକଲେ ଆମକୁ ବନ୍ଧନରେ ପକାଇଥାଏ । ଏହି ଜଗତ ଅନନ୍ତ ବୋଲି ପ୍ରତୀୟମାନ, କାରଣ ସବୁକିଛି ବୃତ୍ତରେ ନିହିତ; ଏହା ଯେଉଁଠାରୁ ଆସିଥାଏ, ସେଠାକୁ ପ୍ରତ୍ୟାବର୍ତ୍ତନ କରେ । ବୃତ୍ତର ପୁନରାବୃତ୍ତି ହୁଏ, ତେଣୁ ଏଠାରେ କୌଣସି ସ୍ଥାନରେ ବିଶ୍ରାମ ନାହିଁ । ଆମେ ଏହା ଭିତରୁ ବାହାରିଯିବାକୁ ହେବ । ମୁକ୍ତି ହିଁ ଏକ ଲକ୍ଷ୍ୟ, ଆମକୁ ପ୍ରାପ୍ତି କରିବାକୁ ହେବ... ।

- ୬ -

*ଏକ ସ୍ୱପ୍ନରେ ମୁଁ ଗୋଟିଏ କୋକିଣିଆଳି ହୋଇଗଲି ଏବଂ ଗୋଟିଏ କୁକୁର ମୋତେ ଗୋଡ଼ାଇଲା ।'' ବର୍ତ୍ତମାନ ମୁଁ କିପରି ପଚାରିବି ଯେ କୁକୁରଟି ମୋତେ କାହିଁକି ଗୋଡ଼ାଉଛି । କୋକିଣିଆଳି ସ୍ୱପ୍ନର ଏକ ଅଂଶ ଥିଲା, ଏବଂ କୁକୁର ସେହି ପରିସ୍ଥିତିରେ ଗୋଡ଼ାଉଥିଲା; ଉଭୟ ଏକ ସ୍ୱପ୍ନରେ ଅନ୍ତର୍ଭୁକ୍ତ ଏବଂ ବାହାରେ ଏହାର ସ୍ଥିତି ନାହିଁ ।*

ମନ୍ଦ 'ରୂପ'ରେ ପରିବର୍ତ୍ତିତ ହୁଏ କିନ୍ତୁ ଗୁଣରେ ଏକାଭଳି । ପ୍ରାଚୀନ କାଳରେ ଶକ୍ତି ରାଜତ୍ୱ କରୁଥିଲା, ବର୍ତ୍ତମାନ ଏହା ବୁଦ୍ଧି । ଆମେରିକାରେ ଯେପରି ଦୁଃଖ ରହିଛି, ସେତେ ପରିମାଣରେ ଦୁଃଖ ଭାରତରେ ନାହିଁ । କାରଣ ଗରିବ ଲୋକ ଏଠାରେ ନିଜର ମନ୍ଦ ଅବସ୍ଥାରେ ବିରାଟ ବୈଷମ୍ୟ ଦେଖିଥାଏ ।

ଭଲ ଓ ମନ୍ଦ ଓତଃପ୍ରୋତ ଭାବରେ ଜଡ଼ିତ ଏବଂ ଗୋଟିଏ ଅନ୍ୟ ବିନା ରହିପାରିବ ନାହିଁ । ଏହି ଜଗତରେ ସର୍ବମୋଟ ଶକ୍ତି ଏକ ହ୍ରଦ ସଦୃଶ ପ୍ରତୀୟମାନ, ପ୍ରତ୍ୟେକ ଢେଉ ଅପରିହାର୍ଯ୍ୟ ଭାବରେ ଅବପାତ ଅଭିମୁଖେ ନେଇଯାଏ । ସର୍ବମୋଟ ଶକ୍ତି ଠିକ୍ ସେଭଳି, ଜଣକୁ ଖୁସି କରିବାକୁ ହେଲେ ଅନ୍ୟ ଜଣେ ଦୁଃଖୀ ହେବ । ବାହ୍ୟ ସୁଖ ଭୌତିକ ବସ୍ତୁ ଅଟେ ଏବଂ ଯୋଗାଣ ବି ସ୍ଥିରୀକୃତ, ତେଣୁ ଗୋଟିଏ ଶସ୍ୟ ଅନ୍ୟ ଜଣକ ପାଖରୁ ନ ନେଇ ଜଣେ ଧାରଣ କରିପାରିବ ନାହିଁ । କାହାରିକୁ କ୍ଷତି ନ ପହଞ୍ଚାଇ କେବଳ ଭୌତିକ ଜଗତାତୀତ ଆନନ୍ଦକୁ ଲାଭ କରି ହେବ । ଭୌତିକ ସୁଖ ହିଁ ଭୌତିକ ଦୁଃଖର ରୂପାନ୍ତରଣ ।

ଯେଉଁମାନଙ୍କର ଢେଉରେ ଜନ୍ମ ଏବଂ ଢେଉରେ ଅବସ୍ଥାନ କରି ଅବପାତ ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ, ସେମାନଙ୍କ ପାଇଁ ରହିଲା ଆଉ କ'ଣ ? ତୁମେ ସଂସାରକୁ ଉତ୍ତମ ଓ ସୁଖୀ

Digitized by srujanika@gmail.com

କରିପାରିବ ବୋଲି କେବେ ବି ଭାବ ନାହିଁ । ତେଲ କଳର ଷଣ୍ଢ, ସମ୍ମୁଖସ୍ଥ ବନ୍ଧା ହୋଇଥିବା ଘାସ ବିଡ଼ା ପାଖରେ କେବେ ପହଞ୍ଚିପାରିବ ନାହିଁ, ସେ କେବଳ ତେଲ ପେଢ଼ିବ । ତେଣୁ ଏହି ଆନନ୍ଦ ରୂପକ ଘାସବିଡ଼ା ପଶ୍ଚାତରେ ଆମେ ଧାବିତ ହୁଅନ୍ତି, ଯାହା ଆମକୁ ନିରନ୍ତର ଆକର୍ଷଣ କରୁଥାଏ ଏବଂ ଆମେ କେବଳ ପ୍ରକୃତିର କଳକୁ ପେଷଣ କରନ୍ତି, ତା'ପରେ ମୃତ୍ୟୁ ମୁଖରେ ପତିତ ହୁଅନ୍ତି, ଆମେ କେବେ ବି ସେହି ଉଚ୍ଚତମ ରାଜ୍ୟର କୌଣସି ଝଲକ ଧରିପାରିବା ନାହଁ; ଆମେ ସେଥିରେ ସନ୍ତୁଷ୍ଟ ରହିବା, କେବେ ବି ମୁକ୍ତି ପାଇ ପାରିବା ନାହିଁ । ଯେତେବେଳେ ମନୁଷ୍ୟ ଉପଲବ୍ଧି କରିବ ଯେ ସେ ଯେଉଁ ଭୌତିକ ସୁଖର ଅନ୍ୱେଷଣ କରୁଛି ସେସବୁ କେବଳ ଅସାର, ସେତେବେଳେ ଧର୍ମ ଆରମ୍ଭ ହୁଏ । ସମସ୍ତ ମାନବୀୟ ଜ୍ଞାନ ଏକ ଧର୍ମର ଅଂଶ ମାତ୍ର ।

ମାନବ ଭିତରେ ଉଭୟ ଭଲ ଓ ମନ୍ଦର ଭାରସାମ୍ୟ ଏଭଳି ରହିଛି, ଯାହାଫଳରେ ମନୁଷ୍ୟ ଚାହିଁଲେ ମୁକ୍ତ ହୋଇପାରିବ ।

ମୁକ୍ତ କେବେ ବି ବଦ୍ଧ ହୁଏନାହିଁ; ଯଦି ପଚାରିବ କିପରି ହେଲା, ବାସ୍ତବରେ ଏହା ଏକ ଅଯୌକ୍ତିକ ପ୍ରଶ୍ନ । ଯେଉଁଠାରେ ବନ୍ଧନ ନାହିଁ, ସେଠାରେ କାରଣ ଓ ପରିଣାମ ମଧ୍ୟ ନାହିଁ ।'' ଏକ ସ୍ୱପ୍ନରେ ମୁଁ ଗୋଟିଏ କୋକିଶିଆଳି ହୋଇଗଲି ଏବଂ ଗୋଟିଏ କୁକୁର ମୋତେ ଗୋଡ଼ାଇଲା ।'' ବର୍ତ୍ତମାନ ମୁଁ କିପରି ପଚାରିବି ଯେ କୁକୁରଟି ମୋତେ କାହିଁକି ଗୋଡ଼ାଉଛି । କୋକିଶିଆଳି ସ୍ୱପ୍ନର ଏକ ଅଂଶ ଥିଲା, ଏବଂ କୁକୁର ସେହି ପରିସ୍ଥିତିରେ ଗୋଡ଼ାଉଥିଲା; ଉଭୟ ଏକ ସ୍ୱପ୍ନରେ ଅନ୍ତର୍ଭୁକ୍ତ ଏବଂ ବାହାରେ ଏହାର ସ୍ଥିତି ନାହିଁ । ବନ୍ଧନରୁ ବାହାରିଯିବା ପାଇଁ ଉଭୟ ବିଜ୍ଞାନ ଓ ଧର୍ମ ଆମକୁ ସାହାଯ୍ୟ କରିବା ନିମନ୍ତେ ଏକ ପ୍ରଚେଷ୍ଟା; କେବଳ ଧର୍ମ ଅତି ପ୍ରାଚୀନ ଏବଂ ଏହା ଅତ୍ୟନ୍ତ ପବିତ୍ର ବୋଲି ଆମର ଅନ୍ଧବିଶ୍ୱାସ ରହିଛି, ଗୋଟିଏ ପକ୍ଷରେ ଏହା ନୈତିକତାକୁ ଏକ ମୁଖ୍ୟ କେନ୍ଦ୍ର ଭାବରେ ଗ୍ରହଣ କରିଛି କିନ୍ତୁ ବିଜ୍ଞାନ ନୁହେଁ ।

''ଯେଉଁମାନଙ୍କର ହୃଦୟ ପବିତ୍ର ସେମାନେ ଆଶୀଷପ୍ରାପ୍ତ । କାରଣ ସେମାନେ ଈଶ୍ୱରଙ୍କୁ ଦର୍ଶନ କରନ୍ତି ।'' ଯଦି ସମସ୍ତ ଶାସ୍ତ୍ର ଓ ଧର୍ମଯାଜକ ବିଲୁପ୍ତ ହୋଇଯିବେ, ତେବେ ଏହି ବାକ୍ୟ କେବଳ ଆମକୁ ରକ୍ଷା କରିପାରିବ । ହୃଦୟର ପବିତ୍ରତା ଈଶ୍ୱର ଦର୍ଶନ କରାଇପାରିବ । ବିଶ୍ୱ ବ୍ରହ୍ମାଣ୍ଡର ସମଗ୍ର ପରିଣାମର ଏହା ହିଁ ସାରାଂଶ । ପବିତ୍ରତା ଭିତରେ କୌଣସି ଦାସତ୍ୱ ବା ବନ୍ଧନ ନାହିଁ । ପବିତ୍ରତା ଦ୍ୱାରା ଅଜ୍ଞାନ ରୂପକ ଆବରଣ ହଟାଇ ଦିଅ, ତା'ପରେ ଆମେ ବାସ୍ତବରେ ଯାହା, ତାହା ପ୍ରକଟିତ ହେବ ଏବଂ ଜାଣିପାରିବା ଯେ ଆମେ କସ୍ମିନକାଳେ ଦାସତ୍ୱ ଶୃଙ୍ଖଳରେ ପତିତ ନୁହନ୍ତି । ସଂସାରର ସମସ୍ତ ପାପ ମଧ୍ୟରୁ ବହୁତ୍ୱ ଦେଖିବା ହିଁ ବୃହତ୍ତର ପାପ । ସମସ୍ତଙ୍କୁ ଏକ ଆତ୍ମା ବୋଲି ଦେଖ ଏବଂ ସଭିଙ୍କୁ ପ୍ରେମ କର; ସମସ୍ତ ପ୍ରକାର ବିଭେଦତା ଦୂରୀଭୂତ ହେଉ... ।

ନିଷ୍ଠୁର ମାନବ ପ୍ରକୃତି ଆମ ଶରୀରର ଏକ ଅଂଶ, ଯେପରି ଆମ ଶରୀରରେ କ୍ଷତ ଓ ଘାଆ । ଆମକୁ ଏହାର ସ୍ୱତନ୍ତ୍ର ଯତ୍ନ ନେବାକୁ ହେବ, ଏହା ଭଲ ହୋଇଯିବ; ନିଷ୍ଠୁର ବା

Digitized by srujanika@gmail.com

ଆସୁରିକ ପ୍ରକୃତିକୁ ସ୍ୱତନ୍ତ୍ର ଯତ୍ନ ଓ ସେବା କ୍ରମାଗତ ଭାବରେ କରିବା ଉଚିତ ଯେପର୍ଯ୍ୟନ୍ତ ସେ ସୁଖି ଓ ସୁସ୍ଥ ନ ହୋଇଛି ।

ଯେତେଦିନ ପର୍ଯ୍ୟନ୍ତ ଆମେ ଆକ୍ଷେପିକ ସଂସାର ସମ୍ବନ୍ଧରେ ଚିନ୍ତା କରୁଥିବା, ସେତେଦିନ ପର୍ଯ୍ୟନ୍ତ ଆମକୁ ବିଶ୍ୱାସ କରିବାକୁ ହେବ ଯେ ଆମର ଶରୀର ଓ ମନ ଆପେକ୍ଷିକ ବସ୍ତୁଦ୍ୱାରା ଆଘାତପ୍ରାପ୍ତ ହେବ ଏବଂ ସମାନ ଭାବରେ ସେଗୁଡ଼ିକ ଦ୍ୱାରା ଆମେ ବି ସାହାଯ୍ୟପ୍ରାପ୍ତ ହେବା । ଏହି ସାହାଯ୍ୟର ଧାରଣା ଅର୍ଥାତ୍ ବସ୍ତୁ ନିରପେକ୍ଷ ଭାବନାକୁ ଆମେ ଈଶ୍ୱର ବୋଲି କୁହନ୍ତି । ସହାୟତାର ସମସ୍ତ ଧାରଣାର ସମଷ୍ଟି ହିଁ ଈଶ୍ୱର ।

ସମସ୍ତ ଦୟାଶୀଳ, ଉତ୍ତମ ଓ ସହାୟତାର ସାରାଂଶ ଯୌଗିକବସ୍ତୁ ହିଁ ଈଶ୍ୱର, ତାହା ହିଁ ଏକମାତ୍ର ଭାବଧାରା । ଆତ୍ମା ଭାବେ ଆମର ଶରୀର ନାହିଁ; କହିବାକୁ ଗଲେ, ''ମୁଁ ଈଶ୍ୱର ଏବଂ ବିଷ ମୋର କିଛି କ୍ଷତି କରିପାରିବ ନାହିଁ'', ଏଭଳି ଭାବନା ଉଭଟ । ଗୋଟିଏ କ୍ଷୁଦ୍ର ଜଳାବର୍ତ୍ତ, ନଦୀର ବିଲୋପନରେ ତିଷ୍ଠି ରହିପାରିବ କି ? ସହାୟତା ପାଇଁ କ୍ରନ୍ଦନ କର, ତୁମେ ଏହା ପାଇବ; ଏବଂ ସର୍ବଶେଷରେ ତୁମେ ଜାଣିବ ଯେ ସାହାଯ୍ୟ ପାଇଁ କ୍ରନ୍ଦନ କରୁଥିବା ବ୍ୟକ୍ତି ଅନ୍ତର୍ଦ୍ଧାନ ହୋଇଯାଇଛି ଏବଂ ତା ସହ ସହାୟତାକାରୀ ମଧ୍ୟ ଉଭେଇ ଯାଇଛି, ନାଟକ ଶେଷ; କେବଳ ଆତ୍ମା ବିରାଜିତ ।

ଏହା ଥରେ ଜାଣିଗଲେ, ପୁନର୍ବାର ଆସ ଏବଂ ତୁମ ଇଚ୍ଛାରେ ଅଭିନୟ କର । ସେତେବେଳେ ଏହି ଦେହ କୌଣସି ମନ୍ଦ କାର୍ଯ୍ୟ କରିପାରିବ ନାହିଁ, କାରଣ ମନ୍ଦଶକ୍ତି ଗୁଡ଼ିକ ଭସ୍ମୀଭୂତ ହେଲେଯାଇ ମୁକ୍ତି ଆସିବ । ସବୁ ଧାତବୀୟ ମଇଳା ପୋଡ଼ି ପାଉଁଶ ହେଲେ ଯାଇ, ''ଉତ୍ତାପ ଓ ଧୂମରହିତ ପ୍ରଜ୍ୱଳିତ ଅଗ୍ନିଶିଖା ରହିବ ।''

ଅତୀତର ବେଗଶକ୍ତି ଶରୀର ଧାରଣ କରେ, କିନ୍ତୁ ଏହା କେବଳ ଭଲ କାମ କରିପାରିବ, କାରଣ ମୁକ୍ତିର ଆଗମନ ପୂର୍ବରୁ ମନ୍ଦସବୁ ଉଭେଇ ଯାଇଥାନ୍ତି । କ୍ରୁଶବିଦ୍ଧ ଚୋର କେବଳ ତା'ର ପୂର୍ବ କର୍ମର ଫଳ ଭୋଗ କରିଥାଏ । ସେ ଜଣେ ଯୋଗୀ ଥିଲେ ଏବଂ ସେଥିରୁ ସେ ପତିତ ହେଲେ, ତେଣୁ ପୁନର୍ବାର ତାଙ୍କୁ ଜନ୍ମଗ୍ରହଣ କରିବାକୁ ହେବ, ପୁନଶ୍ଚ ସେ ପତିତ ହେଲେ ଏବଂ ଜଣେ ଚୋର ହୋଇଗଲେ; କିନ୍ତୁ ପୂର୍ବରୁ କରିଥିବା ପୁଣ୍ୟ କର୍ମ ଯୋଗୁଁ ତାଙ୍କୁ ଭଲ ଫଳ ମିଳିଲା, ମୁକ୍ତିର ଆଗମନ ପୂର୍ବରୁ ସେ ଯୀଶୁଙ୍କୁ ଭେଟିଲେ ଏବଂ ଗୋଟିଏ ବାକ୍ୟ ତାଙ୍କୁ ମୁକ୍ତ କରିଦେଲା ।

ବୁଦ୍ଧ ତାଙ୍କର ମହାନ୍ ଶତ୍ରୁକୁ ମୁକ୍ତ କରିଦେଲେ, କାରଣ ସେହି ଦୁଷ୍ଟ ବ୍ୟକ୍ତି ବୁଦ୍ଧଙ୍କୁ ଏଭଳି ଘୃଣା କରୁଥିଲା ଯେ ସେ ସବୁବେଳେ ତାଙ୍କ ସମ୍ବନ୍ଧରେ ଚିନ୍ତା କରୁଥିଲା, ସେହି ଚିନ୍ତା ତା'ମନକୁ ଶୁଦ୍ଧ କରିଦେଲା ଏବଂ ସେ ବର୍ତ୍ତମାନ ମୁକ୍ତି ପାଇଁ ପ୍ରସ୍ତୁତ । ତେଣୁ ନିରନ୍ତର ଭଗବାନଙ୍କୁ ସ୍ମରଣ କର, ତାହା ତୁମକୁ ଶୁଦ୍ଧ କରିବ... ।

ସହସ୍ର ଦ୍ୱୀପପୁଞ୍ଜରୁ ସ୍ୱାମୀଜୀଙ୍କ ବିଦାୟ ମୁହୂର୍ତ୍ତ ଉପସ୍ଥିତ ହେଲା । ସେଦିନ ଥିଲା **୧୮୯୫, ଅଗଷ୍ଟ ୭** ତାରିଖ, ବୁଧବାର । ପ୍ରଭାତରେ ସ୍ୱାମୀଜୀ ଶ୍ରୀମତୀ ଫୁନ୍‌କେ ଓ ଭଗ୍ନୀ କ୍ରିଷ୍ଟାଇନ୍‌ଙ୍କ

Digitized by srujanika@gmail.com

ସହିତ ପଦଚାରଣ କଲେ । ସମ୍ମୁଖସ୍ଥ ପାହାଡ଼ ପର୍ଯ୍ୟନ୍ତ ପ୍ରାୟ ଅଧା ମାଇଲ ପଦବ୍ରଜରେ ଯାଇଥିଲେ । ଅରଣ୍ୟ ଓ ନିର୍ଜନତାରେ ପରିପୂର୍ଣ୍ଣ ଏକ ଝଙ୍କାଳିଆ ଗଛର ଛାୟାତଳେ ସେମାନେ ଉପବେଶନ କଲେ । ହଠାତ୍ ସ୍ୱାମୀଜୀ ସେମାନଙ୍କୁ କହିଲେ, ''ଚାଲ ଆମେ ଏଠାରେ ଧ୍ୟାନ କରିବା । ବୁଦ୍ଧ ଯେପରି ବୋଧିବୃକ୍ଷ ତଳେ ଉପବେଶନ କରି ଧ୍ୟାନସ୍ଥ ହୋଇଥିଲେ, ଆମେ ସେପରି ଏଠାରେ ଧ୍ୟାନ କରିବା ।'' ସ୍ୱାମୀଜୀ ଏତକ କହି ବୃକ୍ଷ ତଳେ ଧ୍ୟାନସ୍ଥ ହେଲେ । କି ଆଶ୍ଚର୍ଯ୍ୟ । ଧ୍ୟାନ ରୁ ସେ ଜନ୍ମ, ଧ୍ୟାନ ପ୍ରତି ନିରନ୍ତର ଆକୃଷ୍ଟ । ଶିଷ୍ୟାଦ୍ୱୟ ଦେଖିଲେ ଯେ ମୁହୂର୍ତ୍ତକ ମଧ୍ୟରେ ସ୍ୱାମୀଜୀ ବ୍ରୋଞ୍ଜ ମୂର୍ତ୍ତି ସଦୃଶ ସ୍ଥିର ଓ ଅଚଳ । ଜୀବନ ସତେକି ପିଣ୍ଡ ଛାଡ଼ି ବହୁ ଉର୍ଦ୍ଧ୍ୱକୁ ଉଡ଼ିଯାଇଛି !

ଇତ୍ୟବସରରେ କଳା ମେଘ ଘୋଟି ଆସିଲା ଏବଂ ଘଡ଼ଘଡ଼ି ଗର୍ଜନ ଓ ବିଜୁଳି ଆଲୋକରେ ଗଗନ ପବନ ହେଲା ପ୍ରକମ୍ପିତ । ପବନ ସହ ପ୍ରଚଣ୍ଡ ବର୍ଷା ବର୍ଷିଗଲା । କିନ୍ତୁ ସ୍ୱାମୀଜୀ ବ୍ରୋଞ୍ଜ ମୂର୍ତ୍ତି ଭଳି ଉପବିଷ୍ଟ, ସତେକି ତାଙ୍କ ଚତୁଃପାର୍ଶ୍ୱରେ କିଛି ଘଟୁ ନ ଥିଲା ! ଅନୋନ୍ୟପାୟ ହୋଇ ଶ୍ରୀମତୀ ଫୁନ୍‌କେ ଯଥା ସମ୍ଭବ ସ୍ୱାମୀଜୀଙ୍କ ମସ୍ତକ ଉପରେ ଛତା ବିସ୍ତାର କଲେ । ଛତା କ'ଣ ବେଗଗାମୀ ବର୍ଷା ଓ ପବନକୁ ସମ୍ଭାଳି ପାରିବ ? ଅନ୍ୟମାନେ ମଧ୍ୟ ମୁହୂର୍ତ୍ତକ ଭିତରେ ବର୍ଷାତୀ ଧରି ସେଠାରେ ପହଞ୍ଚିଗଲେ । ପ୍ରତ୍ୟାଗମନର ସମୟ ଉପସ୍ଥିତ ହେବାରୁ ସ୍ୱାମୀଜୀ ଚକ୍ଷୁ ଖୋଲିଲେ । ତାଙ୍କ ମୁଖମଣ୍ଡଳରେ ଲହରିତ ପ୍ରଶାନ୍ତି । ଶିଷ୍ୟାଦ୍ୱୟଙ୍କୁ ସ୍ମିତହାସ୍ୟ ବଦନରେ ଚାହିଁ କହିଲେ, ''ମୁଁ ପୁନଶ୍ଚ କଲିକତାରେ ବର୍ଷାରେ ଭିଜୁଥିବା ଅବସ୍ଥାରେ ରହିଥିଲି ବୋଲି ଅନୁଭବ କଲି ।'' ଏଠାରେ ସ୍ୱାମୀଜୀ କି ପ୍ରକାର ଅନୁଭୂତି ଲାଭ କରିଲେ, ତାହା ସ୍ପଷ୍ଟ ଭାବରେ ଅବଶ୍ୟ ସେମାନଙ୍କୁ କହି ନ ଥିଲେ । କିନ୍ତୁ ନିର୍ବିକଳ୍ପ ସମାଧିରେ ସେ ଏଠାରେ ବୁଡ଼ିଯାଇଥିଲେ, ଯାହା ଅନ୍ୟମାନଙ୍କୁ ଜ୍ଞାତ ନ ଥିଲା ।

ଏଠିକାର ଉଚ୍ଚ ଓ ଗୌରବମୟ ଅନୁଭୂତିର ଝଲକ ପ୍ରଦାନ କରି **୧୮୯୫ ଅଗଷ୍ଟ** ମାସରେ ସେ ଆଲସିଙ୍ଗା ପେରୁମଲଙ୍କ ପାଖକୁ ଏକ ପତ୍ର ଲେଖିଥିଲେ : ''ମୁଁ ମୁକ୍ତ, ମୋର ସମସ୍ତ ବନ୍ଧନ ଛିନ୍ନ । ଏହି ଦେହର ବିନାଶ ହେଉ କିମ୍ବା ନ ହେଉ, ମୋର ପରବାୟ ନାହିଁ... । ଶିକ୍ଷା ଦେବାକୁ ମୋ ପାଖରେ ଏକ ସତ୍ୟ ରହିଛି, ମୁଁ ଈଶ୍ୱରଙ୍କ ସନ୍ତାନ । ଏବଂ ସେ (ଭଗବାନ) ମୋତେ ଯେଉଁ ସତ୍ୟ ପ୍ରଦାନ କରିଛନ୍ତି, ତାହା ପୃଥିବୀର ସର୍ବୋତ୍ତମ ଓ ସାହସୀ ସହକର୍ମୀ ଯୋଗାଇ ଦେବ ।'' ସ୍ୱାମୀଜୀ ଏହିଠାରେ ରଚନା କରିଥିଲେ ''ତ୍ୟାଗର ମହିମାମୟ ଶକ୍ତି ''ସନ୍ନ୍ୟାସୀର ଗୀତି'' । ବର୍ତ୍ତମାନ ବି ସେହି ଗୀତିର ପଦଟିଏ ଆବୃତ୍ତି, ଜଣକ ମନରେ ଅପୂର୍ବ ତ୍ୟାଗର ଶିହରଣ ଖେଳାଇ ଦିଏ ।

ଭାଙ୍ଗିଦିଅ ଶୀଘ୍ର ଚରଣ ଶୃଙ୍ଖଳ - ସୁବର୍ଣ୍ଣ ନିର୍ମିତ ହେଲେ କି ଦୁର୍ବଳ
ଅଟନ୍ତି ସେମାନେ ତୁମରି ବନ୍ଧନେ ? - ଭାଙ୍ଗ ଶୀଘ୍ର ତେଣୁ ଭାଙ୍ଗ ପ୍ରାଣ ପଣେ ।
ଅନୁରାଗ-ଘୃଣା ଭଲ ମନ୍ଦ ଦ୍ୱନ୍ଦ - ତେଜହେ ଉଭୟେ ଉଭୟ ହିଁ ମନ୍ଦ

Digitized by srujanika@gmail.com

ଆଦର ଦାସରେ, କଷାଘାତ କର - ଦାସତ୍ୱ ତିଳକ ଭାଲର ଉପରେ;
ସ୍ୱାଧୀନତା-ବସ୍ତୁ କଦାପି ଜାଣେନା - ସ୍ୱାଧୀନ ଆନନ୍ଦ କଦାପି ବୁଝେନା ।
ତେଣୁ କହେ ଆହେ ସନ୍ୟାସୀ ପ୍ରବର - ଦୂର କର ତୁହେଁ ଅତୀବ ସତ୍ୱର;
କର କର ଗାନ କର ନିରନ୍ତର - ଓଁ ତତ୍ ସତ୍ ଓଁ ।

ସେଣ୍ଟ ଲରେନ୍ସ ନଦୀକୂଳରେ ସ୍ୱାମୀଜୀଙ୍କ ଅବସ୍ଥାନ ଏବଂ ନିର୍ବିକଳ୍ପ ସମାଧିରେ ଅବଗାହନ ମନେ ପକାଇ ଦିଏ ଗଙ୍ଗାନଦୀ କୂଳସ୍ଥ କାଶିପୁର ଉଦ୍ୟାନବାଟିରେ ତାଙ୍କର ପ୍ରଥମ ନିର୍ବିକଳ୍ପ ସମାଧିର ଘଟଣାକୁ । ସେଦିନ ତାଙ୍କ ପାଖରେ ରହିଥିଲେ ସ୍ୱୟଂ ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସ । ଆଜି ତାଙ୍କର ନିର୍ବିକଳ୍ପ ଅବସ୍ଥାର ଆଧାତ୍ମିକ ବାତାବରଣକୁ ଦେଖିଥିଲେ ଦୁଇଜଣ ଶିଷ୍ୟା, ସେଣ୍ଟ ଲରେନ୍ସ ନଦୀ, ଚତୁଃପାର୍ଶ୍ୱସ୍ଥ ଅରଣ୍ୟ ଓ ପାହାଡ଼ । କେତେଜଣ ହାତଗଣତି ଶିଷ୍ୟଶିଷ୍ୟାଙ୍କ ଉପରେ ବିଦେଶ ଭୂମିରେ ବେଦାନ୍ତ ଦର୍ଶନର ପ୍ରଚାର ଓ ପ୍ରସାରର ଦାୟିତ୍ୱ ଅର୍ପଣ କରି ସେ ସାମାନ୍ୟତମ ଆଶ୍ୱସ୍ତ ହେଲେ, ଯେପରି ଶ୍ରୀରାମକୃଷ୍ଣ ପରମହଂସ କାଶିପୁର ଉଦ୍ୟାନବାଟିରେ ତାଙ୍କୁ ମହାଶକ୍ତି ପ୍ରଦାନ କରି ଆଶ୍ୱସ୍ତ ହୋଇଥିଲେ । ସହସ୍ର ଦ୍ୱୀପପୁଞ୍ଜକୁ ବିଦାୟ ନେବା ଅବସରରେ ସ୍ୱାମୀଜୀ କହିଥିଲେ, ''ଏହି ଥାଉଜେଣ୍ଡ ଆଇଲାଣ୍ଡସ୍‌କୁ ମୁଁ ଆଶୀର୍ବାଦ କରୁଛି ।''



Digitized by srujanika@gmail.com

॥ ପଚିଶ ॥

# ଅଳ୍ପଦିନ ପାଇଁ ସ୍ୱାମୀଜୀଙ୍କର ପ୍ୟାରିସ ଓ ଲଣ୍ଡନ ଯାତ୍ରା - ମାର୍ଗେଟ ନୋବଲ୍ (ଭଗ୍ନୀ ନିବେଦିତା) ଏବଂ ଜୋସିଆ ଜେ ଗୁଡ୍‌ୱିନ୍ ସ୍ୱାମୀଜୀଙ୍କୁ ଅନୁସରଣ କଲେ

ସହସ୍ର ଦ୍ୱୀପ ଉଦ୍ୟାନରେ ଶିଷ୍ୟଗଣଙ୍କର ପ୍ରଶିକ୍ଷଣ ଓ ଦୀକ୍ଷା ପ୍ରଦାନ କାର୍ଯ୍ୟକ୍ରମ ସମାପ୍ତ କରି ୮ **ଅଗଷ୍ଟ ୧୮୯୫**ରେ ନିୟୁର୍କକୁ ପ୍ରତ୍ୟାବର୍ତ୍ତନ କଲେ । ସ୍ୱାମୀଜୀ ମନେ ମନେ ନିଷ୍ପତ୍ତି ନେଇଥିଲେ ଯେ ସେ ଇୟୁରୋପ ଭ୍ରମଣରେ ଯିବେ ଏବଂ ସେଠାରେ ବେଦାନ୍ତର ବୀଜ ବପନ କରିବେ । ବିଶ୍ୱଧର୍ମ ମହାସମ୍ମିଳନୀ ଦ୍ୱାରା ଆୟୋଜିତ ବ୍ରହ୍ମବିଦ୍ୟା ସଭାରେ **ସୁଶ୍ରୀ ଏଫ୍. ହେନ୍ରିଏଟା ମୁଲର** ବକ୍ତୃତା ପ୍ରଦାନ କରିଥିଲେ ଏବଂ ସ୍ୱାମୀଜୀଙ୍କର ଦୀପ୍ତିମନ୍ତ ବକ୍ତୃତା ଶୁଣି ସେ ଏଭଳି ବିମୋହିତ ହୋଇ ଥିଲେ ଯେ ତାଙ୍କ ସହ ବନ୍ଧୁତା ସ୍ଥାପନ କରିଥିଲେ । ସେହିଠାରେ ସେ ସ୍ୱାମୀଜୀଙ୍କୁ ଲଣ୍ଡନ ଆସିବା ପାଇଁ ଅନୁରୋଧ କରିଥିଲେ । ବ୍ରିଟିଶ ସମ୍ରାଜ୍ୟର କେନ୍ଦ୍ରସ୍ଥଳୀ ଲଣ୍ଡନରେ ଇଂରାଜୀମାନଙ୍କ ନିକଟରେ ବେଦାନ୍ତର ବାଣୀ ପହଞ୍ଚାଇବାର ଆବଶ୍ୟକତା ରହିଛି ବୋଲି ସେ ଅନୁଭବ କଲେ । ବର୍ତ୍ତମାନ ତାଙ୍କଠାରୁ ନିମନ୍ତ୍ରଣ ପତ୍ର ପାଇବା ପରେ ସେ ଲଣ୍ଡନ ଆସିବାପାଇଁ ମନ ବଳାଇଥିଲେ । **ଶ୍ରୀ ଇ.ଟି.ଷ୍ଟାର୍ଡି** ଯିଏ ଜଣେ ବ୍ରହ୍ମବିଦ୍ୟା ସମିତିର ଅନୁଗାମୀ, ସେ ବି ସ୍ୱାମୀଜୀଙ୍କୁ ତାଙ୍କର ଲଣ୍ଡନସ୍ଥ ଗୃହରେ ବାସ କରିବାକୁ ଅନୁରୋଧ ଜଣାଇଲେ ।

ଏତଦ୍‌ବ୍ୟତୀତ, ନିୟୁର୍କର ଧନୀକ ବ୍ୟବସାୟୀ **ଶ୍ରୀ ଫ୍ରାନ୍‌ସିସ୍ ଲେଗେଟ୍**, ଯାହାଙ୍କର ଆମେରିକା **ପେର୍ସିସ୍ଥିତ** ବାସଭବନରେ ସ୍ୱାମୀଜୀ ଆତିଥ୍ୟ ଗ୍ରହଣ କରିଥିଲେ, ସେ ବି ତାଙ୍କର ବିବାହ ଉତ୍ସବରେ ଯୋଗ ଦେବାପାଇଁ ସ୍ୱାମୀଜୀଙ୍କୁ ଆମନ୍ତ୍ରଣ କଲେ । **ଶ୍ରୀମତୀ ଉଇଲିୟମ୍ ଷ୍ଟରଜେସ୍** ଓ **ସୁଶ୍ରୀ ଯୋସେଫିନ୍** ଦୁଇଭଉଣୀ । ନିୟୁର୍କରେ ସ୍ୱାମୀଜୀଙ୍କ ବକ୍ତୃତା ଶୁଣି ତିନିଜଣଯାକ ସ୍ୱାମୀଜୀଙ୍କ ପ୍ରତି ଅତ୍ୟନ୍ତ ଆକର୍ଷିତ ହୋଇଥିଲେ ଏବଂ ସେମାନେ ତାଙ୍କର ଅନ୍ତରଙ୍ଗ ଅନୁଗାମୀ ପାଲଟି ଯାଇଥିଲେ । ଶ୍ରୀ ଲେଗେଟ୍ ପରବର୍ତ୍ତୀ ସମୟରେ ଶ୍ରୀମତୀ ଷ୍ଟରଜେସ୍‌କୁ ବିବାହ କରିଥିଲେ ଏବଂ ସେମାନଙ୍କର ବିବାହ ଉତ୍ସବ ପ୍ୟାରିସ୍‌ରେ ଅନୁଷ୍ଠିତ ହେଉଥିବାରୁ ସେମାନେ ସ୍ୱାମୀଜୀଙ୍କୁ ପ୍ୟାରିସ୍ ଆସିବା ପାଇଁ ନିମନ୍ତ୍ରଣ କଲେ । ସ୍ୱାମୀଜୀ ଏତାଦୃଶ ଆମନ୍ତ୍ରଣକୁ ସ୍ୱୀକାର କଲେ ଏବଂ ଶ୍ରୀ ଲେଗେଟ୍‌ଙ୍କ ସହିତ ନିୟୁର୍କରୁ **୧୮୯୫ ଅଗଷ୍ଟ** ମଧ୍ୟଭାଗରେ ପ୍ୟାରିସ୍ ଅଭିମୁଖେ ଯାତ୍ରା

Digitized by srujanika@gmail.com

କଲେ । ପ୍ୟାରିସ୍‌ଠାରେ ସେମାନଙ୍କର ବିବାହ ଉତ୍ସବରେ କେବଳ ଯୋଗ ଦେଇ ନ ଥିଲେ ବରଂ ମିୟୁଜିୟମ, ଗୀର୍ଜା, କାଥେଡ୍ରାଲ୍, ରାଜବାଟି ଏବଂ ଆର୍ଟ ଗ୍ୟାଲେରି ଭଳି ଅନେକ ଦର୍ଶନୀୟ ସ୍ଥାନ ଭ୍ରମଣ କରିବାକୁ ସେ ସୁଯୋଗ ପାଇଲେ ।

ଏହି ବିବାହ ଉତ୍ସବ **୧୮୯୫, ସେପ୍ଟେମ୍ବର ୯ ତାରିଖ ଏପିସ୍କୋପାଲ ଚର୍ଚ୍ଚ ଅଫ୍** ହୋଲି ଟ୍ରିନିଟିରେ ଅନୁଷ୍ଠିତ ହେଲା । ଗୈରିକ ବସନ ପରିହିତ ସ୍ୱାମୀଜୀ ଜଣେ ସାକ୍ଷୀ ଭାବେ ସେଠାରେ ଉପସ୍ଥିତ ଥିଲେ । ବିବାହ ବନ୍ଧନ ସହିତ ସମସ୍ତ ସାଂସାରିକ ବନ୍ଧନ ଛିନ୍ନ କରି ମହାନ୍ ତ୍ୟାଗ ପଥେ ପଥିକ ଯେଉଁ ସନ୍ୟାସୀ, ସିଏ ପୁଣି ବିବାହ ଉତ୍ସବରେ ଉପସ୍ଥିତ ! ସବୁପ୍ରକାର ସାମାଜିକ ପରମ୍ପରା ଓ ପ୍ରଥା ସେ ଭାଙ୍ଗି ଦେଲେ । କିନ୍ତୁ ତାଙ୍କର ଏଭଳି ସାଂସାରିକ ବନ୍ଧନ ଉତ୍ସବରେ ଉପସ୍ଥିତି ପଶ୍ଚାତରେ ଏକ ବାଣୀ ନିହିତ ଯାହା ସହଜରେ ବୁଝିହେବ ନାହିଁ । ବାଣୀଟି ଏହିପରି : ବହୁଜନ ହିତାୟ ବହୁଜନ ସୁଖାୟ ସନ୍ୟାସୀର ଧର୍ମ ଓ ଲକ୍ଷ୍ୟ । ଯେଉଁ ବ୍ୟକ୍ତି ପ୍ରକୃତ ସନ୍ୟାସୀ, ସେ ଅନ୍ୟମାନଙ୍କ ମଙ୍ଗଳ ପାଇଁ ପ୍ରେମପୂର୍ଣ୍ଣ ବନ୍ଧନରେ ବାନ୍ଧି ହୋଇ ଜୀବନ ଧାରଣ କରିଥାଏ । ତ୍ୟାଗକୁ ଯେପରି ସେ ଉଚ୍ଚ ପ୍ରଶଂସା କରୁଥିଲେ, ପବିତ୍ର ବିବାହକୁ ବି ସେପରି ସେ ଉଚ୍ଚ ସମ୍ମାନ ଦେଉଥିଲେ । ସେ ନିଜର ସ୍ୱାର୍ଥ ତ୍ୟାଗ ପାଇଁ କହୁଥିଲେ, ବସ୍ତୁ ତ୍ୟାଗ ପାଇଁ ନୁହେଁ । ବହୁ ସନ୍ୟାସୀ ସେ ଦେଖିଛନ୍ତି, ଯେଉଁମାନେ ସଂସାର ତ୍ୟାଗକରି, ଗୈରିକ ବସ୍ତ୍ର ପରିଧାନ କରି, ନିଜକୁ ବିଶିଷ୍ଟ ସନ୍ୟାସୀ ଭାବେ ଜନମାନସ ସମ୍ମୁଖରେ ଘୋଷଣା କରି ମଧ୍ୟ ଅହଙ୍କାର ଓ ସ୍ୱାର୍ଥପରତା ଭଳି କାର୍ଯ୍ୟରେ ମଗ୍ନ ଏବଂ ନିଜ ବ୍ୟକ୍ତିସତ୍ତାକୁ ତ୍ୟାଗ କରିପାରି ନାହାନ୍ତି । ଅନ୍ୟପକ୍ଷରେ ସେ ବି ଦେଖିଛନ୍ତି ଯେ ବହୁବ୍ୟକ୍ତି ବିବାହିତ ଜୀବନ ଭିତରେ ମଗ୍ନରହି ପବିତ୍ରତାକୁ ଜୀବନର ବ୍ରତ ଓ ପାଥେୟ କରି ବ୍ୟକ୍ତିସତ୍ତାର ସମସ୍ତ ପ୍ରଲୋଭନକୁ ତ୍ୟାଗ କରିପାରିଛନ୍ତି । ସୁତରାଂ ସେ ଜଗତକୁ ଦେଖାଇ ଦେଲେ ଯେ ସନ୍ୟାସ ଧର୍ମ ଓ ବିବାହ ଧର୍ମ ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ସଦୃଶ ଏବଂ ବ୍ୟକ୍ତିସତ୍ତାର ସମସ୍ତ ପ୍ରଲୋଭନର ତ୍ୟାଗ ହିଁ ଏହି ଦୁଇଟିର ଲକ୍ଷ୍ୟ ।

- ୧ -

*ଏବଂ ମୁଁ ଆଉ ଟିକିଏ ଆଗେଇ ଯାଇ କହିବି ଯେ ମନୁଙ୍କ ଅନୁଯାୟୀ ଯେଉଁ ସନ୍ତାନ ପାଶବିକ କାମନାରୁ ଜନ୍ମ ସେ ଆର୍ଯ୍ୟ ନୁହେଁ । କିନ୍ତୁ ଯାହାର ଗର୍ଭଧାରଣ ଓ ଯାହାର ମୃତ୍ୟୁ ବେଦର ନିୟମ ଅନୁସାରେ ସଂଘଟିତ ହୋଇଥାଏ, ସେହି ସନ୍ତାନ ହିଁ ଆର୍ଯ୍ୟ । ହଁ, ପ୍ରତ୍ୟେକ ଦେଶରେ ଏତାଦୃଶ ଆର୍ଯ୍ୟ ସନ୍ତାନ କମ୍ ଜନ୍ମଗ୍ରହଣ କରନ୍ତି, ଯାହାଫଳରେ ବହୁଳଭାବରେ ମନ୍ଦ ଦେଖାଯାଉଛି ।*

ପରବର୍ତ୍ତୀ କାଳରେ ବିବାହ ଭଳି ଏକ ମହତ୍‌ପୂର୍ଣ୍ଣ ସାମାଜିକ ଅନୁଷ୍ଠାନ ସମ୍ବନ୍ଧରେ ସ୍ୱାମୀଜୀ ଯେଉଁ ନିଜର ଦୃଷ୍ଟିକୋଣ ବ୍ୟକ୍ତ କରିଥିଲେ, ତାହା ଏଠାରେ ସ୍ମରଣଯୋଗ୍ୟ । ଯୌନ

Digitized by srujanika@gmail.com

ଲାଳସାକୁ ମୁଖ୍ୟ କେନ୍ଦ୍ରବିନ୍ଦୁ ଭାବେ ଗ୍ରହଣ କରି ଯେଉଁମାନେ ବିବାହ ବନ୍ଧନରେ ବାନ୍ଧି ହୁଅନ୍ତି, ସେଭଳି ବିବାହ ସମାଜରେ ବହୁ ବିଶୃଙ୍ଖଳା ସୃଷ୍ଟି କରିଥାଏ । କିନ୍ତୁ ବିବାହ ଯଦି ଏକ ଶୃଙ୍ଖଳିତ ତପସ୍ୟା ଭାବରେ ଗ୍ରହଣ କରାଯାଇ ପତି ଓ ପତ୍ନୀ ତ୍ୟାଗପୂତ ଜୀବନ ନିର୍ବାହ କରନ୍ତି, ତେବେ ବିବାହ ଏକ ମହାତ୍ୟାଗର ରୂପ ଗ୍ରହଣ କରିନିଏ ।

**ଆଧୁନିକୋତ୍ତର ବିବାହର ପରିଣାମ :** ଆପଣ ପାଶ୍ଚାତ୍ୟବାସୀଗଣ ଅତ୍ୟନ୍ତ ବ୍ୟକ୍ତିକୈନ୍ଦ୍ରିକ । ଯେହେତୁ ମୁଁ ଏହା ଭଲପାଏ, ତେଣୁ ମୁଁ ଏହା କରିବି; ମୁଁ ପ୍ରତ୍ୟେକକୁ କହୁଣିରେ ଠେଲି ଆଗକୁ ମାଡ଼ିଯିବି । କାହିଁକି ? କାରଣ ମୁଁ ଏହା ଭଲପାଏ । ମୁଁ ମୋର ତୃପ୍ତି ଚାହେଁ, ଏହି ମହିଳା ମୋତେ ବିବାହ କରିବେ । କାହିଁକି ? କାରଣ ସେ ମୋତେ ଭଲ ପାଆନ୍ତି । ସେଠାରେ ଏହା ସମାପ୍ତ ହୁଏ । ଏହି ସମଗ୍ର ଅନନ୍ତ ବିଶ୍ୱରେ ସେ ଓ ମୁଁ ରହିଛୁ, ମୁଁ ତାଙ୍କୁ ବିବାହ କରିବି ଏବଂ ସେ ମୋତେ ବିବାହ କରିବେ । ଏଥିରେ କୌଣସି ବ୍ୟକ୍ତି ଆଘାତପ୍ରାପ୍ତ ହେଉନାହାନ୍ତି, କୌଣସି ବ୍ୟକ୍ତି ବି ଦାୟୀ ନୁହଁନ୍ତି । ଆପଣମାନଙ୍କର ଜୋହନ ଓ ଜେନିସ୍ ଅରଣ୍ୟ ମଧ୍ୟକୁ ଯାଇପାରନ୍ତି ଏବଂ ସେଠାରେ ଜୀବନଯାପନ କରିପାରନ୍ତି କିନ୍ତୁ ସେମାନେ ଯେତେବେଳେ ସମାଜରେ ବାସ କରିବେ, ସେତେବେଳେ ସେମାନଙ୍କର ବିବାହ ଆମ ଉପରେ ଭଲ କିମ୍ବା ମନ୍ଦର ବିଶାଳ ବୋଝ ଭାବରେ ପରିଗଣିତ ହେବ । ସେମାନଙ୍କର ସନ୍ତାନ ପ୍ରକୃତ ରାକ୍ଷସ ହେବେ - ଦଣ୍ଡିଭୂତ କରିବେ, ହତ୍ୟା କରିବେ, ଡକାୟତି କରିବେ, ଚୋରି କରିବେ, ମଦ୍ୟପାନ କରିବେ, ଭ୍ରଷ୍ଟ ଓ ଅସୁନ୍ଦର ବ୍ୟକ୍ତି ହୋଇଯିବେ ।

**ଆର୍ଯ୍ୟମାନଙ୍କର ଆଦର୍ଶ ବିବାହ :** ଆମର ବିବାହ ପଦ୍ଧତି ପଶ୍ଚାତରେ ଯେଉଁ ଧାରଣା ରହିଛି ତାହା ହିଁ ଏକମାତ୍ର ଧାରଣା ଯାହା ମାଧ୍ୟମରେ ବାସ୍ତବ ସଭ୍ୟତା ନିର୍ମାଣ ହୋଇପାରିବ । ତାହା ବିନା ଅନ୍ୟ କିଛି ନାହିଁ । ଯଦି ଜଣେ ପୁରୁଷ କିମ୍ବା ମହିଳା, ନିଜର ବ୍ୟକ୍ତିଗତ ସୁଖ ଏବଂ ପାଶବିକ ପ୍ରବୃତ୍ତିର ତୃପ୍ତି ନିମନ୍ତେ ସମାଜ ସେମାନଙ୍କୁ ଅନୁମତି ପ୍ରଦାନ କରେ, ତାହାର ପରିଣାମ ହେବ ମନ୍ଦ - ମନ୍ଦ ସ୍ୱଭାବର ସନ୍ତାନ, ଦୁଷ୍ଟ ଓ ଦାନବ ପ୍ରକୃତିର ସନ୍ତାନ ଜନ୍ମ ନେବେ । ଆହାଃ ପ୍ରତ୍ୟେକ ଦେଶରେ ଗୋଟିଏ ପକ୍ଷରେ ମଣିଷ ଏଭଳି ନୃଶଂଶ ସନ୍ତାନ ଜନ୍ମ ଦେଉଛି, ଅନ୍ୟ ପକ୍ଷରେ ସେମାନଙ୍କର ନୃଶଂସତାର ଦମନ ପାଇଁ ପୋଲିସ୍ ଫୋର୍ସର ସଂଖ୍ୟା ବଢାଉଛି । ମନ୍ଦକୁ ଧ୍ୱଂସ କରିବା ପଥର ପ୍ରଶ୍ନ ତାହା ନୁହେଁ । ପ୍ରଶ୍ନ ହେଉଛି ମନ୍ଦର ଜନ୍ମକୁ କିପରି ପ୍ରତିରୋଧ କରି ପାରିବା ?

ଯେତେଦିନ ପର୍ଯ୍ୟନ୍ତ ଆପଣମାନେ ସମାଜରେ ବାସ କରୁଥିବେ, ସେତେଦିନ ପର୍ଯ୍ୟନ୍ତ ଆପଣଙ୍କର ବିବାହ ସମାଜର ପ୍ରତ୍ୟେକ ସଦସ୍ୟଙ୍କୁ ପ୍ରଭାବିତ କରୁଥିବ । ସୁତରାଂ ଆପଣ କାହାକୁ ବିବାହ କରିବେ ଏବଂ କାହାକୁ କରିବେ ନାହିଁ, ତାହା ସମାଜ ନିର୍ଦ୍ଦେଶ ପ୍ରଦାନ କରିବ । ଏତାଦୃଶ ମହାନ୍ ଧାରଣା ଏଠିକାର ବିବାହ ପଶ୍ଚାତରେ ରହିଛି ଯାହାକୁ ସେମାନେ ବର ଓ କନ୍ୟାର ଜ୍ୟୋତିଷ ଶାସ୍ତ୍ରୀୟ ଜାତି ବୋଲି କୁହନ୍ତି । ଏବଂ ମୁଁ ଆଉ ଟିକିଏ ଆଗେଇ ଯାଇ କହିବି ଯେ

Digitized by srujanika@gmail.com

ମନୁଙ୍କ ଅନୁଯାୟୀ ଯେଉଁ ସନ୍ତାନ ପାଶବିକ କାମନାରୁ ଜନ୍ମ ସେ ଆର୍ଯ୍ୟ ନୁହେଁ । କିନ୍ତୁ ଯାହାର ଗର୍ଭଧାରଣ ଓ ଯାହାର ମୃତ୍ୟୁ ବେଦର ନିୟମ ଅନୁସାରେ ସଂଘଟିତ ହୋଇଥାଏ, ସେହି ସନ୍ତାନ ହିଁ ଆର୍ଯ୍ୟ । ହଁ, ପ୍ରତ୍ୟେକ ଦେଶରେ ଏତାଦୃଶ ଆର୍ଯ୍ୟ ସନ୍ତାନ କମ୍ ଜନ୍ମଗ୍ରହଣ କରନ୍ତି, ଯାହାଫଳରେ ବହୁଳଭାବରେ ମନ୍ଦ ଦେଖାଯାଉଛି । ଏହାକୁ ଆମେ କଳିଯୁଗ ବୋଲି କହୁଁ । କିନ୍ତୁ ଏହି ସମସ୍ତ ଆଦର୍ଶକୁ ଆମେ ଭୁଲିଗଲୁଣି । ଏହା ସତ୍ୟ ଯେ ଏହିସବୁ ଧାରଣାକୁ ଆମେ ପୂର୍ଣ୍ଣମାତ୍ରାରେ କାଯ୍ୟକାରୀ କରିପାରିବୁ ନାହିଁ, ଏହା ମଧ୍ୟ ସତ୍ୟ ଯେ ଏହିସବୁ ଅଧିକାଂଶ ମହାନ୍ ଧାରଣାକୁ ଆମେ ବ୍ୟଙ୍ଗାତ୍ମକ ନାଟକରେ ପରିଣତ କରିସାରିଲୁଣି । ଏହା ଦୁଃଖଦାୟିକ ସତ୍ୟ ଯେ ପ୍ରାଚୀନ କାଳରେ ସେମାନେ ଯେପରି ଜୀବନ ନିର୍ବାହ କରୁଥିଲେ ବର୍ତ୍ତମାନର ପିତାମାତା ସେପରି କରୁନାହାଁନ୍ତି, ପୂର୍ବଭଳି ବର୍ତ୍ତମାନ ସମାଜ ବି ଶିକ୍ଷିତ ନୁହେଁ ଏବଂ ପୂର୍ବଭଳି ସମାଜର ମଧ୍ୟ ବ୍ୟକ୍ତି ପ୍ରତି ପ୍ରେମ ନାହିଁ ।

**ଏକ ତ୍ୟାଗର ରୂପ ହିଁ ବିବାହ :** ନୈତିକତା କ'ଣ ସମାଜର ମୂଳଦୁଆ ନୁହେଁ ? ବିବାହ ମାନେ ହିଁ ଅସତୀତ୍ୱ ଓ ଅପବିତ୍ରତାର ପରିତ୍ୟାଗ । ଅସଭ୍ୟ ବିବାହ କରେ ନାହିଁ । ମନୁଷ୍ୟ ବିବାହ କରେ, କାରଣ ସେ ପରିତ୍ୟାଗ କରେ । ଏହିଭଳି ଭାବେ ନିରନ୍ତର ତ୍ୟାଗ କରିଚାଲେ । ପରିତ୍ୟାଗ ! ପରିତ୍ୟାଗ ! ବଳିଦାନ ! ପ୍ରତ୍ୟାଖ୍ୟାନ କର । ଶୂନ ପାଇଁ ବି ନୁହେଁ, କୌଣସି ପାଇଁ ନୁହେଁ । କିନ୍ତୁ ଉଚ୍ଚତର ଜିନିଷ ଲାଭ କରିବା ପାଇଁ ।

ସ୍ୱାମୀଜୀଙ୍କୁ ଜଣେ ଭକ୍ତ ଏକଦା ପ୍ରଶ୍ନ କରିଥିଲେ ‘‘ସ୍ୱାମୀଜୀ, ବିବାହରେ କ'ଣ ସୁଖ ନାହିଁ ?'' ସ୍ୱାମୀଜୀ କହିଥିଲେ ‘‘ହଁ ଅଛି, ଯଦି ବିବାହ ଏକ ମହାନ୍ ତପସ୍ୟା ଭାବରେ ଗ୍ରହଣ କରାଯିବ - ଏବଂ ସବୁକିଛି ପରିତ୍ୟାଗ କରାଯିବ, ଏପରିକି ନୀତିକୁ ।

- ୨ -

*ମୁଁ କାହାର ନିର୍ଦ୍ଦେଶରେ କାଠ ପିତୁଳା ସଦୃଶ କାର୍ଯ୍ୟ କରିପାରିବି ନାହିଁ, କୌଣସି ବ୍ୟକ୍ତି ମୋ ଉପରେ ପ୍ରଭୁତ୍ୱ ଜାହିର କରିପାରିବ ନାହିଁ । ମୋ ଜୀବନର ବ୍ରତ ପ୍ରତି ମୁଁ ସଚେତନ; ମୋ ଉପରେ କେହି ଉତ୍କଟ ଦେଶପ୍ରୀତି ଲଦି ଦେଇପାରିବେ ନାହିଁ । ଭାରତ ଯେପରି ମୋ ପାଇଁ, ସମଗ୍ର ବିଶ୍ୱ ବି ସେପରି ମୋ ପାଇଁ, ସେଥିରେ କୌଣସି ପ୍ରତାରଣା କିମ୍ବା ଛଳନା ନାହିଁ... ମୋ ଉପରେ କୌଣସି ରାଷ୍ଟ୍ରର ସ୍ୱତନ୍ତ୍ର ଅଧିକାର ରହିଛି ? ମୁଁ କ'ଣ କୌଣସି ରାଷ୍ଟ୍ରର ଭୃତ୍ୟ ?*

ଆମେରିକାରୁ ପ୍ୟାରିସ୍ ଅଭିମୁଖେ ଯାତ୍ରା ଆରମ୍ଭ ପୂର୍ବରୁ ସେ ଭାରତର ଜଣେ ଶିଷ୍ୟଙ୍କ ପାଖରୁ ଖଣ୍ଡିଏ ଚିଠି ପାଇଥିଲେ । ଖ୍ରୀଷ୍ଟଧର୍ମୀ ପ୍ରଚାରକଗଣ ତାଙ୍କ ଚରିତ୍ର ସଂହାର କରି ପ୍ରଚାରପତ୍ର ବଣ୍ଟନ ମାଧ୍ୟମରେ ନାନାପ୍ରକାର କଦର୍ଯ୍ୟ ଓ ବୀଭତ୍ସ କୁସାରଟନା ଭାରତରେ କରୁଥିବାରୁ ଉକ୍ତ ଚିଠିରେ ତାଙ୍କୁ ସତର୍କ କରାଇ ଦିଆଯାଇଥିଲା । କେବଳ ସେତିକି ନୁହେଁ ପ୍ରାଚୀନପନ୍ଥୀ ହିନ୍ଦୁ ଓ

Digitized by srujanika@gmail.com

ବ୍ରାହ୍ମସମାଜୀ ବି ପ୍ରତ୍ୟେକ ମୁହୂର୍ତ୍ତରେ ତାଙ୍କ ବିରୁଦ୍ଧରେ ବିଶୋଦ୍‌ଗାର କରିବାରେ ଅତ୍ୟନ୍ତ ସକ୍ରିୟ ହୋଇପଡ଼ିଛନ୍ତି ବୋଲି ଉକ୍ତ ଚିଠିରେ ଉଲ୍ଲେଖ ଥିଲା । ବିବାହ ଉତ୍ସବରେ ଯୋଗଦେଇ ସ୍ୱାମୀଜୀ ପ୍ୟାରିସ୍‌ରୁ ବିଦାୟ ନେଇ ଲଣ୍ଡନ ଅଭିମୁଖେ ଯାତ୍ରା କରିବା ଅବ୍ୟହିତ ପୂର୍ବରୁ ସେ ଖଣ୍ଡିଏ ଚିଠି ଆଲସିଙ୍ଗା ପେରୁମଲଙ୍କ ନିକଟକୁ ଲେଖିଥିଲେ ଯାହା ଥିଲା ତାଙ୍କର ବିଦ୍ରୋହୀ ମନର ତୀବ୍ରତାର ପରିପ୍ରକାଶ ।

''ଖ୍ରୀଷ୍ଟଧର୍ମୀ ପ୍ରଚାରକଗଣଙ୍କର ଅସାର ଓ ଅବାନ୍ତର ସମାଲୋଚନାକୁ ତୁମେ ଗୁରୁତ୍ୱ ଦେଇଛ ଜାଣି ମୁଁ ବାସ୍ତବରେ ବିସ୍ମିତ... । ଯଦି ଭାରତର ଜନତା ଚାହାଁନ୍ତି ଯେ ମୁଁ ହିନ୍ଦୁ ଖାଦ୍ୟ ନିଷ୍ଠାର ସହିତ ଭୋଜନ କରିବି ଏବଂ ପାଶ୍ଚାତ୍ୟ ଖାଦ୍ୟ ବର୍ଜନ କରିବି, ତେବେ ଜଣେ ରୋଷେୟା ଓ କିଛି ଅର୍ଥ ମୋ ପାଖକୁ ପଠାଇବା ପାଇଁ ସେମାନଙ୍କୁ କୁହ । ସେମାନଙ୍କର କୌଣସି ସାମାନ୍ୟତମ ଦାନ ନ କରି ହାକିମ୍‌ଗିରି ପ୍ରଦର୍ଶନ କରିବା ଦେଖି ମୋତେ ହସ ମାଡୁଛି । ଅନ୍ୟପକ୍ଷରେ ଯଦି ପାଦ୍ରୀଗଣ କହୁଛନ୍ତି ଯେ ସନ୍ନ୍ୟାସୀର ଦୁଇଟି ଧର୍ମ ବ୍ରହ୍ମଚର୍ଯ୍ୟ ଓ ଦାରିଦ୍ର୍ୟ ମୁଁ ଭଙ୍ଗ କରିଛି, ତେବେ ସେମାନଙ୍କୁ କୁହ ଯେ ସେମାନେ ପ୍ରକୃତରେ ଡାହା ମିଥ୍ୟାବାଦୀ ।

ମନେରଖ ଗୋଟିଏ କଥା, ମୁଁ କାହାର ନିର୍ଦ୍ଦେଶରେ କାଠ ପିତୁଳା ସଦୃଶ କାର୍ଯ୍ୟ କରିପାରିବି ନାହିଁ, କୌଣସି ବ୍ୟକ୍ତି ମୋ ଉପରେ ପ୍ରଭୁତ୍ୱ ଜାହିର କରିପାରିବ ନାହିଁ । ମୋ ଜୀବନର ବ୍ରତ ପ୍ରତି ମୁଁ ସଚେତନ; ମୋ ଉପରେ କେହି ଉତ୍କଟ ଦେଶପ୍ରୀତି ଲଦି ଦେଇପାରିବେ ନାହିଁ । ଭାରତ ଯେପରି ମୋ ପାଇଁ, ସମଗ୍ର ବିଶ୍ୱ ବି ସେପରି ମୋ ପାଇଁ, ସେଥିରେ କୌଣସି ପ୍ରତାରଣା କିମ୍ବା ଛଳନା ନାହିଁ... ମୋ ଉପରେ କୌଣସି ରାଷ୍ଟ୍ରର ସ୍ୱତନ୍ତ୍ର ଅଧିକାର ରହିଛି ? ମୁଁ କ'ଣ କୌଣସି ରାଷ୍ଟ୍ରର ଭୃତ୍ୟ ?

ମନୁଷ୍ୟ କିମ୍ବା ଈଶ୍ୱର କିମ୍ବା ସୈତାନ ଅପେକ୍ଷା ଏକ ମହାନ ଶକ୍ତି ମୋ ପଶ୍ଚାତରେ କାର୍ଯ୍ୟରତ । ମୁଁ କାହାରିଠାରୁ ସହାୟତା ଚାହେଁ ନାହିଁ । ଅନ୍ୟମାନଙ୍କୁ ସାହାଯ୍ୟ କରି ମୋ ସମସ୍ତ ଜୀବନ ବିତାଇଛି... ।

ଧର୍ମ ହେଉ, ସାମାଜିକ ପରମ୍ପରା ଓ ପ୍ରଥା ହେଉ, ଅର୍ଥନୈତିକ ବୈଷମ୍ୟ ହେଉ, ଯେକୌଣସି କ୍ଷେତ୍ର ହେଉ, ଯେଉଁଠି ସେ ଦେଖିଛନ୍ତି ମାନବିକ ମୂଲ୍ୟବୋଧର ଅବକ୍ଷୟ ଏବଂ ମନୁଷ୍ୟ ଭିତରେ ଦିବ୍ୟତ୍ୱର ବିସ୍ମରଣ ଓ ଅବମାନନା ସେ ସିଂହ ସଦୃଶ ଗର୍ଜନ କରିଛନ୍ତି - ମନୁଷ୍ୟକୁ ଚେତେଇ ଦେବାପାଇଁ । ବେଳେବେଳେ ନିଜର ଚରିତ୍ର ସଂହାରର ବିଭ୍ରାନ୍ତକାରୀ ରୂପ ଅବଲୋକନ କରି ତାଙ୍କ ଚକ୍ଷୁରେ ଲୋତକ ଭରିଯାଇଛି । ତାଙ୍କର ଅଶ୍ରୁଳ ଚକ୍ଷୁ ଦେଖି ଆମେରିକାରେ ଜଣେ ଶୁଭେଚ୍ଛୁ ପ୍ରଶ୍ନ କରିଥିଲେ ''ସ୍ୱାମୀଜୀ, ଆପଣଙ୍କ ଆଖିରେ ଲୁହ ?'' ସ୍ୱାମୀଜୀ ବାଷ୍ପରୁଦ୍ଧ କଣ୍ଠରେ କହିଥିଲେ, ''ଓହୋଃ ! ଏହି ସଂସାରର ଖଳ ପ୍ରକୃତି କେତେ ଗଭୀର ! ବାପରେ ବାପ୍ ମଣିଷ ଧର୍ମ ନାଁରେ କେତେ ଦୂର ଯାଇପାରେ ? ଈଶ୍ୱରଙ୍କ ରାଜ୍ୟରେ ତାଙ୍କର ଅନ୍ୟ ଏକ ଅନୁଗାମୀ ଉପରେ କେତେ ସନ୍ଦେହ ଓ କୋପଦୃଷ୍ଟି ଜଣେ ବର୍ଷଣ କରିପାରେ !!!

Digitized by srujanika@gmail.com

ଇଂଲଣ୍ଡରେ ସ୍ୱାମୀଜୀ ପଦାର୍ପଣ କଲେ । ମିଷ୍ଟର ଷ୍ଟର୍ଡି, କୁମାରୀ ହେନ୍ରିଏଟା ମୁଲାର୍‌ଙ୍କ ସମେତ ବହୁ ଶୁଭେଚ୍ଛୁ ଓ ଶ୍ରଦ୍ଧାଳୁ ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ, କେମ୍ବ୍ରିଜର ରିଜେଣ୍ଟ ଷ୍ଟ୍ରିଟ୍ ସ୍ଥିତ ମୁଲରଙ୍କ ବାସଭବନରେ ସ୍ୱାମୀଜୀ ଅବସ୍ଥାନ କଲେ । ତତ୍‌ପଶ୍ଚାତେ ସ୍ୱାମୀଜୀ ଶ୍ରୀ ଓ ଶ୍ରୀମତୀ ଷ୍ଟର୍ଡିଙ୍କ ବାସଭବନରେ ଛଅ ସପ୍ତାହ ରହିଲେ । ଶ୍ରୀ ଷ୍ଟର୍ଡି ଜଣେ ବେଦାନ୍ତବାଦୀ ଏବଂ ଭାରତରେ ରହି ସେ ଭାରତୀୟ ସଂସ୍କୃତି ଓ ହିନ୍ଦୁଧର୍ମ ସଂକ୍ରାନ୍ତରେ ଅଧ୍ୟୟନ କରିଥିଲେ । ସ୍ୱାମୀଜୀଙ୍କର ସାନିଧ୍ୟ ଲାଭ କରି ଶ୍ରୀଯୁକ୍ତ ଷ୍ଟର୍ଡି ନିଜକୁ ଗୌରାବନ୍ୱିତ ମନେକଲେ । ନାରଦ-ଭକ୍ତି-ସୂତ୍ରକୁ ଇଂରାଜୀରେ ଅନୁବାଦ କାର୍ଯ୍ୟରେ ସେ ସାହାଯ୍ୟ କରିଥିଲେ । ଏଠାରେ ସ୍ୱାମୀଜୀ ସେପ୍ଟେମ୍ବର ଓ ଅକ୍ଟୋବର ଦୁଇମାସ ଧରି କେବଳ ଅଧ୍ୟୟନରେ ନିମଗ୍ନ ଥିଲେ । ତା'ପରେ ଆରମ୍ଭ ହେଲା ତାଙ୍କର ବକ୍ତୃତା କାର୍ଯ୍ୟକ୍ରମ । ଇଂଲଣ୍ଡର ବହୁ ଉଚ୍ଚ ପଦସ୍ଥ ଅଫିସର, ସେନା ବିଭାଗର କର୍ମରତ ଓ ଅବସରପ୍ରାପ୍ତ ଉଚ୍ଚପଦସ୍ଥ କର୍ମଚାରୀ, ଇଂରାଜୀ ଗୀର୍ଜାର ବହୁ ଉଚ୍ଚପଦସ୍ଥ ପୁରୋହିତ ଏବଂ ଭାରତରେ ନିଯୁକ୍ତି ପାଇ କାର୍ଯ୍ୟ କରିଥିବା ବହୁ ସରକାରୀ ଓ ସେନା ବିଭାଗର ଉଚ୍ଚପଦସ୍ଥ ଅଫିସରଗଣ ସ୍ୱାମୀଜୀଙ୍କର ଅସାଧାରଣ ଜ୍ଞାନ, ଆଧ୍ୟାତ୍ମିକ ଓ ଧର୍ମନିରପେକ୍ଷତା ଏବଂ ଆକର୍ଷଣୀୟ ଓ ଉଜ୍ଜ୍ୱଳ ବ୍ୟକ୍ତିତ୍ୱରେ ମଜ୍ଜିଯାଇ ତାଙ୍କ ସହ ବନ୍ଧୁତା ସ୍ଥାପନ କଲେ ।

- ୩ -

*ମୋର ଦୃଷ୍ଟି ବ୍ୟକ୍ତି ଉପରେ ନିବଦ୍ଧ କାହିଁକିନା ତାଙ୍କୁ ଶକ୍ତିଶାଳୀ କରିବା ମୋର ଲକ୍ଷ୍ୟ । ସେ ନିଜେ ହିଁ ଈଶ୍ୱର ବୋଲି ତାଙ୍କୁ ମୁଁ ଚେତାଇ ଦେବାକୁ ଚାହେଁ । ପ୍ରତ୍ୟେକ ମନୁଷ୍ୟ ଭିତରେ ଦିବ୍ୟତ୍ୱ ରହିଛି ମୁଁ ସମସ୍ତଙ୍କୁ କହିବାକୁ ଚାହେଁ ।*

ଶ୍ରୀଯୁକ୍ତ ଷ୍ଟର୍ଡି ମହାଶୟ ସମେତ କେତେକ ଉତ୍ସାହୀ ବନ୍ଧୁ ଲଣ୍ଡନ ସହରସ୍ଥିତ ପ୍ରିନ୍ସ ହଲ୍‌ରେ ଅକ୍ଟୋବର ୨୨ ତାରିଖ ସନ୍ଧ୍ୟାରେ ଏକ ସଭାର ଆୟୋଜନ କଲେ । ବିଷୟବସ୍ତୁ ଥିଲା "ଆତ୍ମ ଜ୍ଞାନ" । ଉକ୍ତ ସଭାରେ ଲଣ୍ଡନର ସବୁ ଶ୍ରେଣୀର ବିଖ୍ୟାତ ଓ ବିଶଷ୍ଟ ବ୍ୟକ୍ତିମାନେ ଯୋଗ ଦେଇଥିଲେ । ସ୍ୱାମୀଜୀଙ୍କର ଶକ୍ତିଶାଳୀ ବାଗ୍ମୀତା ଏବଂ ଭାବାତୀତ ଜ୍ଞାନର ଝଲକ୍‌ରେ ସେମାନଙ୍କ ଶରୀରରେ ବିଦ୍ୟୁତ ଖେଳି ଯାଇଥିଲା । ଇଂରାଜୀମାନଙ୍କର ଭଦ୍ରୋଚିତ ବ୍ୟବହାର ମଧ୍ୟ ଉଚ୍ଚମାନର ଥିଲା, ଯେଉଁଥିପାଇଁ ପ୍ରଶଂସାମୁଖର ହୋଇ ଭାରତବର୍ଷର ଗୁରୁଭାଇ ଓ ଭକ୍ତମାନଙ୍କ ପାଖକୁ ଅନେକ ପତ୍ର ସେ ଲେଖିଥିଲେ । ଇଂଲଣ୍ଡର ବିଖ୍ୟାତ ସମ୍ବାଦପତ୍ର "ଲଣ୍ଡନ ଡେଲି କ୍ରୋନିକ୍‌ଲ୍" ସ୍ୱାମୀଜୀଙ୍କ ଉପରେ ଲେଖିଥିଲେ, "ଲୋକପ୍ରିୟ ହିନ୍ଦୁ ସନ୍ନ୍ୟାସୀ ବିବେକାନନ୍ଦ ଯାହାଙ୍କର ଶରୀରଗଠନ ଓ ମୁଖମଣ୍ଡଳ ପ୍ରାଚୀନ ବୁଦ୍ଧ ସଦୃଶ ଜାଜ୍ଜ୍ୱଲ୍ୟମାନ । ସେ ଆମର ବ୍ୟବସାୟିକ ସମୃଦ୍ଧି, ଆମର ରକ୍ତାକ୍ତ ଯୁଦ୍ଧ ଏବଂ ଆମର ଧାର୍ମିକ ଅସହନଶୀଳତାକୁ କଠୋର ଭାଷାରେ ଭର୍ତ୍ସନା କରି ଘୋଷଣା କରିଥିଲେ ଯେ ଏଭଳି ମୂଲ୍ୟ ଦେଇ ନମ୍ର ହିନ୍ଦୁ କେବେ ବି ଆମର ଗର୍ବିତ ସଭ୍ୟତାକୁ ଧାରଣ କରିପାରିବ ନାହିଁ ।"

Digitized by srujanika@gmail.com

ୱେଷ୍ଟମିନିଷ୍ଟର ଗେଜେଟର ସମ୍ବାଦଦାତା ସ୍ୱାମୀଜୀଙ୍କ ସହ ବହୁ ସମୟ ଧରି ସାକ୍ଷାତକାର ନେଇଥିଲେ ଏବଂ ସ୍ୱାମୀଜୀ ତାଙ୍କୁ କହିଥିଲେ ଯେ ସେ କାହିଁକି ସଂସାର ତ୍ୟାଗ କରିଛନ୍ତି ଏବଂ ସନ୍ନ୍ୟାସୀର ଜୀବନ ଆପଣେଇ ନେଇଛନ୍ତି । ସେ ନିଜର ଗୁରୁଦେବଙ୍କ ସମ୍ବନ୍ଧରେ କହିଥିଲେ ଏବଂ ସେ କୌଣସି ସମ୍ପ୍ରଦାୟ ସୃଷ୍ଟି କରିବା, କୌଣସି ସାମ୍ପ୍ରଦାୟିକ ତତ୍ତ୍ୱ ଶିକ୍ଷାଦେବା ପାଇଁ ସେ ଆସି ନାହାଁନ୍ତି, କିନ୍ତୁ ବେଦାନ୍ତର ସାର୍ବଜନୀନ ନୀତିର ଏକ ସାଧାରଣ ରୂପରେଖ ପ୍ରଦାନ କରିବା ତାଙ୍କ ଜୀବନର ଲକ୍ଷ୍ୟ ଯାହାଫଳରେ ଜଣେ ନିଜର ଧାର୍ମିକ ମତ ଓ ସିଦ୍ଧାନ୍ତରେ ତାହା ପ୍ରୟୋଗ କରିପାରିବ । କୌଣସି ଗୂଢ଼, ଗୋପନୀୟ ଯାଦୁକାରୀ ସମାଜର ସେ ପ୍ରବର୍ତ୍ତକ ନ ଥିଲେ ଏବଂ ମନୁଷ୍ୟ ଜନ୍ମରୁ ପାପୀ ବୋଲି ବିଶ୍ୱାସ ଉପରେ ବି ତାଙ୍କର ବିଶ୍ୱାସ ନ ଥିଲା । ସତ୍ୟ ସ୍ୱୟଂ ମହିମାରେ ମହିମାନ୍ୱିତ... ମୁଁ ଏକ ଦର୍ଶନର ପ୍ରବକ୍ତା, ଯାହା ବିଶ୍ୱର ସମସ୍ତ ଧର୍ମର ଆଧାର ହୋଇପାରିବ ଏବଂ ସମସ୍ତ ଧର୍ମ ପ୍ରତି ମୋର ସମ୍ମାନ ଓ କରୁଣା ରହିଛି, କାହା ପ୍ରତି ମୋର ବିରୋଧି ମନୋଭାବ ନାହିଁ । ମୋର ଦୃଷ୍ଟି ବ୍ୟକ୍ତି ଉପରେ ନିବଦ୍ଧ କାହିଁକିନା ତାଙ୍କୁ ଶକ୍ତିଶାଳୀ କରିବା ମୋର ଲକ୍ଷ୍ୟ । ସେ ନିଜେ ହିଁ ଈଶ୍ୱର ବୋଲି ତାଙ୍କୁ ମୁଁ ଚେତାଇ ଦେବାକୁ ଚାହେଁ । ପ୍ରତ୍ୟେକ ମନୁଷ୍ୟ ଭିତରେ ଦିବ୍ୟତ୍ୱ ରହିଛି ମୁଁ ସମସ୍ତଙ୍କୁ କହିବାକୁ ଚାହେଁ । ଏହି ସାକ୍ଷାତକାର ଲଣ୍ଡନବାସୀଙ୍କୁ ବହୁ ପରିମାଣରେ ଉତ୍ସାହିତ କରିଥିଲା ।

ବିଭିନ୍ନ ସଭା, କ୍ଲବ, ବ୍ୟକ୍ତିଗତ ବୈଠକଖାନାରେ ବକ୍ତୃତା ପ୍ରଦାନ କରି ସ୍ୱାମୀଜୀ ଦିନ ଓ ରାତି ଭୁଲିଗଲେ । ହିନ୍ଦୁଧର୍ମ ବିଶେଷତଃ ବେଦାନ୍ତର ସାରମର୍ମ ବ୍ୟାଖ୍ୟା ବୁଦ୍ଧିଜୀବୀ ଓ ସାଧାରଣ ବର୍ଗକୁ ଚକିତ କଲା । ପୁଣିଥରେ ଗୌତମ ବୁଦ୍ଧଙ୍କ ଏହି ଧରିତ୍ରୀ ପୃଷ୍ଠରେ ଆବିର୍ଭାବ ଘଟିଛି ବୋଲି କେହି କେହି ବିଶ୍ୱାସ ବି କରିନେଲେ । ଶାସକ ଘରେ ଶାସିତକୁ କେହି ସମ୍ମାନ ଦେଇପାରିବ ? ହଁ, ଇଂରାଜୀମାନଙ୍କର ମନ କିଣିନେଲେ ସ୍ୱାମୀଜୀ । ଶାସକ ଓ ଶାସିତ ଭିତରେ ପାର୍ଥକ୍ୟ ଉଭେଇଗଲା । ସ୍ୱାମୀଜୀ ସେମାନଙ୍କ ହୃଦୟରେ ଦୀପ୍ତିମନ୍ତ ସୂର୍ଯ୍ୟସମ ପ୍ରତିଭାତ ହେଲେ । ଯେଉଁ ମାଟି ଜନ୍ ଷ୍ଟୁଆର୍ଟ ମିଲ୍ ଓ ହାର୍ବର୍ଟ ସ୍ପେନ୍ସରଙ୍କ ଭଳି ମହାନ ଦାର୍ଶନିକ ଦ୍ୱାରା ଆଲୋକିତ, ସେହି ମାଟିକୁ ସ୍ୱାମୀଜୀ ମଧ୍ୟ ସମ୍ମାନ ପ୍ରଦାନ କରିବାକୁ ଭୁଲି ଯାଇ ନ ଥିଲେ । ସେ ଦୁହିଁଙ୍କ ଦ୍ୱାରା ସେ ଛାତ୍ରାବସ୍ଥାରୁ ପ୍ରଭାବିତ ଓ ସ୍ତାବକ ମଧ୍ୟ ।

ଇଂଲଣ୍ଡରେ ବୁଦ୍ଧି ଓ ଧର୍ମ ଉପରେ ଏକ ବକ୍ତୃତା ପ୍ରଦାନ କରି ସେ କହିଥିଲେ - ଯେତେବେଳେ ମୁଁ କୁହେ ଯେ ମୁଁ ତୁମଠାରୁ ପୃଥକ, ସେତେବେଳେ ଜାଣିବ ଯେ ଏହା ମିଥ୍ୟା, ତାହା ମିଛ ଛଡ଼ା କିଛି ନୁହେଁ । ଏହି ବିଶ୍ୱବ୍ରହ୍ମାଣ୍ଡ ସହ ମୁଁ ଏକ ଓ ଅଭିନ୍ନ । ଏହା ମୋର ସକଳ ଇନ୍ଦ୍ରିୟ ପ୍ରତି ସ୍ୱୟଂ ପ୍ରମାଣିତ ଯେ ଜଗତ ସହ ମୁଁ ଏକ । ମୋ ଚତୁଃପାର୍ଶ୍ୱସ୍ଥ ବାୟୁ, ଉତ୍ତାପ, ଆଲୋକ ସହ ମୁଁ ଏକ ଓ ଅଭିନ୍ନ । ମୁଁ ସମଗ୍ର ବିଶ୍ୱବ୍ରହ୍ମାଣ୍ଡୀୟ ସତ୍ତା ସହ ଚିରସ୍ଥାୟୀ ଭାବରେ ଏକ, ଏହି ଜଗତ ଭାବରେ ପରିଚିତ, ଯିଏ ବି ଏହି ଜଗତ ନୁହେଁ ବୋଲି ଭ୍ରମିତ, କାହିଁକିନା ଏହା ହିଁ କେବଳ ସେ, ଅନ୍ୟ କିଛି ନୁହେଁ, ହୃଦୟରେ ବିରାଜିତ; ଶାଶ୍ୱତ ସତ୍ତା ହୋଇ ସେ କହନ୍ତି । ମୁଁ ପ୍ରତ୍ୟେକ ହୃଦୟରେ ବିରାଜିତ; ତାଙ୍କର ମୃତ୍ୟୁ ନାହିଁ, ତାଙ୍କର ଶୟନ ନାହିଁ, ସଦା ଜାଗ୍ରତ, ସେ ଅମର ଓ ଶାଶ୍ୱତ, ଯାହାଙ୍କର ଗୌରବ କସ୍ମିନକାଳେ ମଉଳିଯାଏ ନାହିଁ, ଯାହାଙ୍କର ଶକ୍ତି କେବେ ବି ବିଫଳ ହୁଏନାହିଁ । ମୁଁ ତାଙ୍କ ସହ ଏକ ଓ ଅଭିନ୍ନ ।

Digitized by srujanika@gmail.com

ଏହା ହିଁ ନୈର୍ବ୍ୟକ୍ତିକ ସମସ୍ତ ଉପାସନା, ତେବେ ପରିଣାମ କ'ଣ ? ମନୁଷ୍ୟର ସମଗ୍ର ଜୀବନ ପରିବର୍ତ୍ତିତ ହୋଇଯିବ । ଶକ୍ତି, ଶକ୍ତି, ଏହାକୁ ଆମେ ଜୀବନରେ ବହୁଳଭାବେ ଚାହୁଁ, ଯେଉଁଥିପାଇଁ ଆମେ ପାପ ବୋଲି କହିଥାଉ, ଦୁଃଖର ଗୋଟିଏ କାରଣ ଏବଂ ତାହା ହିଁ ଆମର ଦୁର୍ବଳତା । ଦୁର୍ବଳତାରୁ ଅଜ୍ଞାନ ଜନ୍ମ ନିଏ, ଅଜ୍ଞାନରୁ ଦୁଃଖ ଉଦ୍‌ଭବ ହୁଏ । ଏହା ଆମକୁ ଶକ୍ତିଶାଳୀ କରିବ । ତେବେ ଦୁଃଖ ହସରେ ଉଡ଼ିଯିବ, ଦୁଷ୍ଟର ହିଂସା ହାସ୍ୟମୁଖ ହେବ, ଏବଂ ତା'ପରେ ଭୟଙ୍କର ବ୍ୟାଘ୍ର ବ୍ୟାଘ୍ରର ପ୍ରକୃତି ପଶ୍ଚାତରୁ ପ୍ରକଟିତ ହେବ, ଏହାହିଁ ମୋର ଆତ୍ମା । ତାହାହିଁ ହେବ ପରିଣାମ । ସେହି ଆତ୍ମା ପରମସତ୍ତା ପ୍ରଭୁଙ୍କ ସହ ଏକ ହୋଇଯିବାରୁ ଶକ୍ତିମାନ ହୋଇ ଉଠିବ, ତାଙ୍କ ବ୍ୟତୀତ କେହି ଶକ୍ତିମାନ ନୁହଁନ୍ତି ।''

- ୪ -

*ତାଙ୍କର ପିତା ମୃତ୍ୟୁ ଶଯ୍ୟାରେ ଶାୟିତ ଥିବାସମୟରେ, ସେ ତାଙ୍କ ପତ୍ନୀ ଅର୍ଥାତ୍ ନିବେଦିତାଙ୍କର ମା'ଙ୍କୁ ଏକାନ୍ତରେ କହିଥିଲେ, ''ଯେତେବେଳେ ଈଶ୍ୱର ମାର୍ଗାରେଟ୍‌କୁ ଡାକିବେ, ସେତେବେଳେ ତାକୁ ଯିବାକୁ ଦେବ । ସେ ତା'ର ଡେଣା ବିସ୍ତାର କରିବ । ସେ ମହାନ୍ କାର୍ଯ୍ୟ ସମ୍ପାଦନ କରିବ ।''*

ସାମାଜିକ ଓ ଶୈକ୍ଷିକ ସଂସ୍କାରର ଜଣେ ପ୍ରବକ୍ତା ଏବଂ **ଫରଓ୍ୱାର୍ଡ଼ ଲୁକିଙ୍ଗ୍ ସିସାମେ** କ୍ଲବର ସମ୍ପାଦକ ସୁଶ୍ରୀ **ଇଶାବେଲ୍ ମାର୍ଗେସନ୍** ସ୍ୱାମୀଜୀଙ୍କୁ ନିଜ ଗୃହକୁ ଏକ ବକ୍ତୃତା ପ୍ରଦାନ ନିମନ୍ତେ ସନ୍ଧ୍ୟାରେ ନିମନ୍ତ୍ରଣ କଲେ । ଏହା ନଭେମ୍ବର ମାସ ଥିଲା । ଏହି ଉପଲକ୍ଷେ ସେ ବି ତାଙ୍କର ଅଳ୍ପ କେତେକ ବନ୍ଧୁଙ୍କୁ ନିମନ୍ତ୍ରଣ କରିଥିଲେ । ହିନ୍ଦୁ ଚିନ୍ତାଧାରା ଉପରେ ଏକ ବିସ୍ତୃତ ଆଲୋଚନା କରିବା ପୂର୍ବରୁ ସ୍ୱାମୀଜୀ ଚାହିଁଲେ ସମ୍ମୁଖସ୍ଥ ଉପବିଷ୍ଟ ଶ୍ରୋତାଗଣଙ୍କୁ । ସୁଲଳିତ କଣ୍ଠରେ ଗାନ କଲେ ସଂସ୍କୃତ ଶ୍ଳୋକ, ଓଠରେ ଖେଳୁଥିଲା ମନ୍ଦ ମନ୍ଦ ହାସ୍ୟ । ସମବେତ ଶ୍ରୋତାଙ୍କ ଭିତରୁ ଏକ ଲୟରେ ଚାହିଁଥିଲେ ଅନ୍ୟତମ ଶ୍ରୋତା କୁମାରୀ ମାର୍‌ଗେରେଟ୍ ନୋବଲ୍ । କୋଠରି ଭିତରେ ଉପସ୍ଥିତ ଶ୍ରୋତାସମୂହ ନିରବରେ ଶୁଣୁଥିଲେ, ସତେକି ସେମାନେ ସ୍ୱାମୀଜୀଙ୍କ ମନ୍ତ୍ରରେ ବଶୀଭୂତ । ତାଙ୍କର ଧ୍ୟାନାଭ୍ୟାସ ମୁଖମଣ୍ଡଳରେ ଝଟକୁଥିଲା ନମ୍ରତା, ମସ୍ତକର ଗୈରିକ ପଗଡ଼ି ତାଙ୍କର ବ୍ୟକ୍ତିତ୍ୱକୁ କରୁଥିଲା ଅଧିକ ଦୀପ୍ତିମନ୍ତ ।

ସ୍ୱାମୀଜୀ କହୁଥିଲେ - ଆମର ସମସ୍ତ ସଂଘର୍ଷ ଓ ଉଦ୍ୟମ ମୁକ୍ତି ନିମନ୍ତେ ଉଦ୍ଦିଷ୍ଟ । ଆମେ ଚାହୁଁନା ଦୁଃଖ କିମ୍ବା ସୁଖ କିନ୍ତୁ ଚାହୁଁ କେବଳ ମୁକ୍ତି ମୁକ୍ତି । ଅବଶ୍ୟ କୁମାରୀ ନୋବଲ୍ ସ୍ୱାମୀଜୀଙ୍କର ସ୍ୱର ଉପସ୍ଥାପନାର ଶୈଳୀ ଓ ବ୍ୟକ୍ତିତ୍ୱ ପ୍ରତି ହୋଇଥିଲେ ଆକର୍ଷିତ କିନ୍ତୁ ପ୍ରଥମେ ଧରି ପାରି ନ ଥିଲେ ସ୍ୱାମୀଜୀଙ୍କର ଚିନ୍ତାଧାରାର ଗୂଢ଼ତମ ରହସ୍ୟ । ତଥାପି ସ୍ୱାମୀଜୀଙ୍କର ଚୁମ୍ବକୀୟ ଶକ୍ତି

Digitized by srujanika@gmail.com

ତାଙ୍କ ମନ ଭିତରେ ରହିଥିବା ସମସ୍ତ ଭାବଧାରାକୁ ବାରମ୍ବାର ପ୍ରକମ୍ପିତ କରୁଥିଲା, ସେ ସେହିଠାରୁ ହିଁ ଉପଲବ୍ଧି କରିପାରୁଥିଲେ । କୁମାରୀ ନୋବଲଙ୍କ ଭିତରେ ସ୍ୱାମୀଜୀଙ୍କ ସହ ପ୍ରଥମ ଓ ପରବର୍ତ୍ତୀ ସାକ୍ଷାତର ଅନୁଭୂତି କିପରି ରୂପ ନେଇଥିଲା ଏବଂ ତାଙ୍କ ଜୀବନର ମୋଡ଼କୁ ବଦଳାଇ ଦେଇଥିଲା ଯଦ୍ୱାରା ସେ ପରବର୍ତ୍ତୀକାଳରେ ଭଗ୍ନୀ ନିବେଦିତା ନାମରେ ବିଖ୍ୟାତ ହୋଇ ପାରିଥିଲେ, ତାହା ବୁଝିହେବ କେବଳ ତାଙ୍କର ଲିଖିତ ଚିଠିରୁ (୧୯୦୪ରେ ସେ ତାଙ୍କର ବନ୍ଧୁଙ୍କ ପାଖକୁ ଲେଖିଥିଲେ):

ମନେକରାଯାଉ ସେ (ସ୍ୱାମୀଜୀ) ସେହି ସମୟରେ ଲଣ୍ଡନ ଆସି ନ ଥାନ୍ତେ ! ମୋ ଜୀବନ ନିଶ୍ଚିତଭାବେ ଏକ ଲକ୍ଷ୍ୟହୀନ ସ୍ୱପ୍ନ ସଦୃଶ ହୋଇ ଯାଇଥାନ୍ତା, କାରଣ ମୁଁ ସର୍ବଦା ଜାଣିଥିଲି ଯେ ମୁଁ କୌଣସି ଏକ ଜିନିଷ ପାଇଁ ଅପେକ୍ଷାରତ । ମୁଁ ସବୁବେଳେ ଭାବୁଥିଲି ଗୋଟିଏ ଡାକରା ମୋ ପାଖକୁ ଆସିବ । ଏବଂ ଶେଷରେ ଏହା ଆସିଲା । କିନ୍ତୁ ଜୀବନ ସମ୍ବନ୍ଧରେ ମୁଁ ଯଦି ବେଶି ଜାଣିଥାନ୍ତି, ଯେତେବେଳେ ସେହି ସମୟ ଉପସ୍ଥିତ ହେଲା, ମୁଁ ନିଶ୍ଚିତ ଭାବରେ ଏହା ସେତେବେଳେ ଚିହ୍ନିପାରିଥାନ୍ତି କି ନାହିଁ ମୋର ସନ୍ଦେହ ଥିଲା । ଭାଗ୍ୟବଶତଃ ମୁଁ ଅଳ୍ପ ଜାଣିଥିଲି ଏବଂ ମାନସିକ ବେଦନାରୁ ତ୍ରାହି ପାଇଲି... ମୋ ଭିତରେ ଏତାଦୃଶ ଜ୍ୱଳନ୍ତ ସ୍ୱର ସର୍ବଦା ରହିଥିଲା, କିନ୍ତୁ ଉଚ୍ଚାରିତ ହୋଇପାରୁ ନ ଥିଲା । ହାତରେ କଲମ ଧରି କେତେଯେ ସମୟ ମୁଁ ନ ବସିଛି, କିଛି ଲେଖିପାରୁ ନ ଥିଲି, କିଛି କହି ପାରୁ ନ ଥିଲି ଏବଂ ବାକ୍ୟରୁଦ୍ଧ ହୋଇଯାଉଥିଲି, ବର୍ତ୍ତମାନ ଏହାର ଶେଷ ହୋଇନାହିଁ । ମୋ ଜଗତ ମୁଁ ବର୍ତ୍ତମାନ ପାଇଯାଇଛି, ମୋର ଜଗତ ମୋତେ ଚାହୁଁଛି । ଧନୁର ଉପଯୁକ୍ତ ସ୍ଥାନରେ ତୀର ବର୍ତ୍ତମାନ ଲାଗିଛି । କିନ୍ତୁ ସେ ଯଦି ସେତେବେଳେ ନ ଆସିଥାନ୍ତେ ! ହିମାଳୟର ଶୀର୍ଷଦେଶରେ ଯଦି ସେ ଧ୍ୟାନସ୍ଥ ହୋଇଯାଇଥାନ୍ତେ... ମୁଁ ସବୁଦିନ ପାଇଁ ଏଠାରେ ନ ଥାନ୍ତି !''

ଭଗ୍ନୀ ନିବେଦିତା ଯେଉଁ ସ୍ୱର ବା ଡାକରା ଅପେକ୍ଷା କରୁଥିଲେ, ତାହା କ'ଣ ? ତାଙ୍କର ପିତା ମୃତ୍ୟୁ ଶଯ୍ୟାରେ ଶାୟିତ ଥିବାସମୟରେ, ସେ ତାଙ୍କ ପତ୍ନୀ ଅର୍ଥାତ୍ ନିବେଦିତାଙ୍କର ମା'ଙ୍କୁ ଏକାନ୍ତରେ କହିଥିଲେ, ''ଯେତେବେଳେ ଈଶ୍ୱର ମାର୍ଗାରେଟ୍‌ଙ୍କୁ ଡାକିବେ, ସେତେବେଳେ ତାଙ୍କୁ ଯିବାକୁ ଦେବ । ସେ ତା'ର ଡେଣା ବିସ୍ତାର କରିବ । ସେ ମହାନ୍ କାର୍ଯ୍ୟ ସମ୍ପାଦନ କରିବ ।'' ପିତାଙ୍କର ଏହି ଭବିଷ୍ୟତ ବାଣୀକୁ ସେ ଅପେକ୍ଷା କରିଥିଲେ ଯାହା ସ୍ୱାମୀଜୀଙ୍କୁ ପାଇବା ପରେ ତା'ର ସମାପ୍ତି ଘଟିଥିଲା । ସ୍ୱାମୀଜୀଙ୍କୁ ଗୁରୁଭାବେ ସେ ଗ୍ରହଣ କଲେ । ଆମେରିକା ଫେରିଯିବା ପାଇଁ ଆମେରିକାର ଭକ୍ତମାନଙ୍କ ପାଖରୁ ବହୁ ଚିଠି ପାଇଲେ । ଇଂଲଣ୍ଡରେ ତାଙ୍କର ଅବସ୍ଥାନ ଦୁଇମାସ ପାଇଁ ହୋଇଥିଲେ ବି ତାଙ୍କର ଅନ୍ତର୍ଦୃଷ୍ଟି ଇଂରାଜୀମାନଙ୍କର ଚରିତ୍ର ଓ ସ୍ୱଭାବକୁ ଭଲ ଭାବରେ ଚିହ୍ନି ପାରିଥିଲା । **୧୮.୧୧.୧୮୯୫**ରେ ଜଣେ ଭକ୍ତଙ୍କ ପାଖକୁ ସେ ଲେଖିଥିଲେ ''ଇଂଲଣ୍ଡରେ ମୋର କାର୍ଯ୍ୟ ଅତି ଚମତ୍କାର ହୋଇଛି । ମୁଁ ଏହା ଦେଖି ନିଜେ ଆଶ୍ଚର୍ଯ୍ୟାନ୍ୱିତ । ସମ୍ବାଦପତ୍ରରେ ଇଂରାଜୀମାନେ ବେଶି କୁହନ୍ତି ନାହିଁ, ବରଂ ସେମାନେ ନିରବରେ ବହୁ କାର୍ଯ୍ୟ କରନ୍ତି । ଆମେରିକା ଅପେକ୍ଷା ଇଂଲଣ୍ଡରେ ବହୁକାର୍ଯ୍ୟ କରିପାରିଛି ବୋଲି ମୁଁ ଭାବୁଛି ।

Digitized by srujanika@gmail.com

ଭାରତର ବାରାନଗର ମଠରୁ ଜଣେ ସନ୍ନ୍ୟାସୀଙ୍କୁ ଇଂଲଣ୍ଡ ଆସିବା ପାଇଁ ଇତିମଧ୍ୟରେ ଗୁରୁଭାଇମାନଙ୍କ ପାଖକୁ ସେ ଚିଠି ଲେଖିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଜଣେ ଗୁରୁଭାଇ ସନ୍ୟାସୀ ଲଣ୍ଡନରେ ରହି ତାଙ୍କର କାର୍ଯ୍ୟକୁ ଆଗେଇ ନେବେ । ଗୁରୁଭାଇଙ୍କର ଆଗମନ ବିଳମ୍ବ ହେବାରୁ ସ୍ୱାମୀଜୀ ଶ୍ରୀ ଷ୍ଟର୍ଡିଙ୍କ ଉପରେ ଦାୟିତ୍ୱ ଅର୍ପଣ କରି ଆମେରିକା ଯିବାପାଇଁ ପ୍ରସ୍ତୁତ ହେଲେ । ଶ୍ରୀ ଷ୍ଟର୍ଡି, ଜଣେ ସନ୍ନ୍ୟାସୀ ଭାରତରୁ ଆସିବା ପର୍ଯ୍ୟନ୍ତ, ନିୟମିତ ଭାବରେ ଲଣ୍ଡନରେ କ୍ଲାସ କରିବେ । ଏଭଳି ଆୟୋଜନ କରି ସ୍ୱାମୀଜୀ ଲଣ୍ଡନରେ ଦୁଇମାସ ବିତାଇ ଆମେରିକା ଅଭିମୁଖେ ଯାତ୍ରା କଲେ । ତାଙ୍କର ଅନୁପସ୍ଥିତିରେ ଶିଷ୍ୟ କୃପାନନ୍ଦ, ଅଭୟାନନ୍ଦ ଏବଂ କୁମାରୀ **ସର୍‌ହା ଇଲେନ୍ ୱାଲ୍‌ଡୋ** ରାଜଯୋଗର ଶିକ୍ଷା ଓ ଅଭ୍ୟାସର କ୍ଲାସ୍ ଆମେରିକାରେ ନିୟମିତ ଭାବରେ ସମ୍ପାଦନ କରୁଥିଲେ । ସ୍ୱାମୀଜୀ **୧୮୯୫ ଡିସେମ୍ବର ୬** ତାରିଖରେ ସୁସ୍ଥ ଶରୀର ଓ ଉତ୍ସାହ ସହ ନିୟୁର୍କରେ ପୁନଶ୍ଚ ପହଞ୍ଚିଲେ । ଏଠାରେ କୃପାନନ୍ଦ ପୂର୍ବରୁ ତାଙ୍କର ରହିବାର ସମସ୍ତ ସୁବିଧା କରିଦେଇଥିଲେ ।



Digitized by srujanika@gmail.com

॥ ଛବିଶ ॥

# ଏକ ସାର୍ବଜନୀନ ଧର୍ମର ଆଦର୍ଶ ହିଁ ବେଦାନ୍ତ - ପ୍ରାଚ୍ୟ ଓ ପାଶ୍ଚାତ୍ୟର ସେତୁବନ୍ଧ

ସ୍ୱାମୀଜୀଙ୍କର ପ୍ରତ୍ୟାବର୍ତ୍ତନ ସମସ୍ତ ଭକ୍ତଙ୍କ ମଧ୍ୟରେ ଆନନ୍ଦ ଲହରି ଖେଳାଇ ଦେଲା । ସ୍ୱାମୀଜୀଙ୍କ ଦ୍ୱାରା ପ୍ରତିଷ୍ଠିତ ନିୟୁର୍କ ବେଦାନ୍ତ ସୋସାଇଟିର କର୍ମକର୍ତ୍ତାଗଣ ତାଙ୍କର ବକ୍ତୃତା ଲିପିବଦ୍ଧ କରିବା ପାଇଁ ଜଣେ ଷ୍ଟେନୋଗ୍ରାଫର୍ ନିଯୁକ୍ତି କଲେ, କିନ୍ତୁ ସ୍ୱାମୀଜୀ ଯେଉଁ ବିଷୟ ଉପରେ ବକ୍ତୃତା ବା ଆଲୋଚନା କରୁଥିଲେ, ସେହି ବିଷୟରେ ଷ୍ଟେନୋଗ୍ରାଫରଙ୍କର ଉପଯୁକ୍ତ ଜ୍ଞାନ ନ ଥିବାରୁ, ବଡ଼ ଅସୁବିଧା ହେଲା । ସମସ୍ତ ଭକ୍ତଗଣ ବିଚଳିତ ହୋଇପଡ଼ିଲେ । ଶେଷରେ ଜଣେ ଯୁବକ ମିଳିଲେ । ତାଙ୍କ ନା ଜୋସିଆ ଜେ ଗୁଡ୍‌ୱିନ୍ । ସେ ଇଂଲଣ୍ଡରୁ ଆମେରିକା ଆସିଥିଲେ । ସେ ବି ଥିଲେ ଜଣେ ଅନୁଭୂତିସମ୍ପନ୍ନ କ୍ଷୀପ୍ରଲିପିକ ଏବଂ ସାମ୍ବାଦିକ ଭାବେ ତିନୋଟି ସମ୍ବାଦପତ୍ରର ସମ୍ପାଦନ ଦାୟିତ୍ୱ ତୁଲାଇଥିଲେ । ପନ୍ଦରଦିନ ପାଇଁ ସେ ନିଯୁକ୍ତ ହେଲେ, ସ୍ୱାମୀଜୀଙ୍କ ଭାବଧାରା ଓ ଭାଷାର ଉଚ୍ଚାରଣ ଧରିପାରୁଛନ୍ତି କି ନାହିଁ - କିନ୍ତୁ ପନ୍ଦରଦିନ ବିତିଲା ନାହିଁ, ସେ ସ୍ୱାମୀଜୀଙ୍କ ଜ୍ଞାନରେ ଆଲୋକିତ ହୋଇଗଲେ । ସ୍ୱାମୀଜୀଙ୍କ ଭାଷା, ବିଷୟବସ୍ତୁ ଓ ଉଚ୍ଚାରଣର ତୀବ୍ରତାକୁ ସୁନ୍ଦରଭାବେ ଲେଖିପାରିଲେ ।

କେବଳ ସେତିକି ନୁହେଁ, ସମସ୍ତ ସାଂସାରିକ ବନ୍ଧନ ତ୍ୟାଗକରି ସ୍ୱାମୀଜୀଙ୍କ ସେବାରେ ନିଜକୁ ନିୟୋଜିତ କଲେ । ବ୍ରହ୍ମଚର୍ଯ୍ୟ ସେ ପାଳନ କରିବା ପାଇଁ ସଂକଳ୍ପ ନେଲେ । ସ୍ୱାମୀଜୀଙ୍କର ଛାୟା ସଦୃଶ ପାଖେପାଖେ ରହିଲେ ଏବଂ ତାଙ୍କର ଭାଷଣ ଓ ଆଲୋଚନାକୁ ନିର୍ଭୁଲ ଭାବରେ ଲିପିବଦ୍ଧ କଲେ । ଏହି ବାବଦରେ କୌଣସି ପାରିଶ୍ରମିକ ଅର୍ଥ ସେ ନେଲେ ନାହିଁ । ସମଗ୍ର ଜୀବନ ଉତ୍ସର୍ଗ କଲେ ସ୍ୱାମୀଜୀଙ୍କ ସେବାରେ । ସ୍ୱାମୀଜୀ ତାଙ୍କ ଉପରେ ମୁଗ୍ଧ ହୋଇ କହୁଥିଲେ ''ମାଇଁ ଫେଥ୍‌ଫୁଲ୍ ଗୁଡ୍‌ୱିନ୍'' । ପରମଶିଷ୍ୟ ଆଲସିଙ୍ଗା ପେରୁମଲଙ୍କ ପାଖକୁ ଏକ ପତ୍ରରେ ସ୍ୱାମୀଜୀ ଲେଖିଥିଲେ, ''କ୍ଲାସ୍‌ରେ ମୋର ବକ୍ତୃତାକୁ ଲିପିବଦ୍ଧ କରିବା ପାଇଁ ସେମାନେ ଜଣେ କ୍ଷିପ୍ରଲିପିକ ନିଯୁକ୍ତି କରିଛନ୍ତି । ତୁମେ ତୁମର ପତ୍ରିକା (ବ୍ରହ୍ମବାଦିନ୍) ପାଇଁ ଯଥେଷ୍ଟ ଲେଖା ବର୍ତ୍ତମାନ ପାଇବ ।''

ବାସ୍ତବରେ ଗୁଡ୍‌ୱିନଙ୍କ ଭଳି ବ୍ୟକ୍ତି ଯଦି ଆମେରିକୀୟ ଶିଷ୍ୟଗଣ ଦ୍ୱାରା ନିଯୁକ୍ତି ପାଇ ନ ଥାନ୍ତେ, ତେବେ ସ୍ୱାମୀଜୀଙ୍କର ଭାବଧାରା ଓ ଉପଦେଶନ ଆଜି ଆମ ପାଇଁ ସ୍ୱପ୍ନ

Digitized by srujanika@gmail.com

ହୋଇଥାନ୍ତା !!! ଆମେରିକାବାସୀଙ୍କୁ କ୍ରମାଗତ ଭାବେ ଜ୍ଞାନାଲୋକିତ କରିବା କାର୍ଯ୍ୟରେ ସେ ନିମଗ୍ନ ସତ, କିନ୍ତୁ ଭାରତବାସୀ ଯେପରି ଏହି ଶିକ୍ଷା ପ୍ରକ୍ରିୟାରୁ ବଞ୍ଚିତ ନ ହୁଅନ୍ତି ସେଥିପାଇଁ ସେ ଏକ ପତ୍ରିକାର ପ୍ରକାଶନ ନିମନ୍ତେ ମାଦ୍ରାଜସ୍ଥ ଭକ୍ତଗଣଙ୍କୁ ସମର୍ପି ଥିଲେ ଦାୟିତ୍ୱ । ଆମେରିକାରୁ ଉପାର୍ଜିତ ଅର୍ଥରାଶି ମାଧ୍ୟରେ ସେ ପତ୍ରିକା ପ୍ରକାଶନ ପାଇଁ ପଠାଉଥିଲେ । ପତ୍ରିକାର ନାମକରଣ କରାଯାଇଥିଲା 'ବ୍ରହ୍ମବାଦୀନ୍' । ଏହା ସେପ୍ଟେମ୍ବର ୧୮୯୫ରୁ ଆରମ୍ଭ ହୋଇଥିଲା ।

- ୧ -

*ତତ୍‌କାଳୀନ ବିଖ୍ୟାତ ବିଦ୍ୟୁତଶକ୍ତି ବୈଜ୍ଞାନିକ ନିକୋଲା ଟେସଲା ସ୍ୱାମୀଜୀଙ୍କ ମୁଖରୁ ସାଂଖ୍ୟ ଦର୍ଶନର ବ୍ୟାଖ୍ୟା ଶୁଣି ଚକିତ କେବଳ ହୋଇ ନ ଥିଲେ, ବରଂ ସାଂଖ୍ୟ ଦର୍ଶନର ବିଶ୍ୱଉତ୍ପତ୍ତି ଓ ଏହାର କଳ୍ପ, ପ୍ରାଣ ଓ ଆକାଶ ତତ୍ତ୍ୱର ତାର୍କିକତା ପ୍ରତି ଅତୀବ ଆକୃଷ୍ଟ ହୋଇଥିଲେ । ସେ ସ୍ୱାମୀଜୀଙ୍କୁ କହିଥିଲେ, "ଆଧୁନିକ ବିଜ୍ଞାନ ବିଶ୍ୱବ୍ରହ୍ମାଣ୍ଡୀୟ ସମସ୍ୟାର ସମାଧାନ ପାଇଁ ଏହି ରହସ୍ୟ ନିଶ୍ଚିତ ଭାବରେ ସାହାଯ୍ୟ କରିବ । ମୁଁ ଭାବୁଛି ଏହାକୁ ଗଣିତ ମାଧ୍ୟମରେ ପ୍ରମାଣ କରିବି ।"*

ନବ ବିବାହିତ ଶ୍ରୀ ଓ ଶ୍ରୀମତୀ ଫ୍ରାନ୍‌ସିସ୍ ଲେଗେଟ୍‌ଙ୍କ ଆମନ୍ତ୍ରଣ କ୍ରମେ ସ୍ୱାମୀଜୀ ଗ୍ରୀଷ୍ମମାସ ଛୁଟି ସେମାନଙ୍କର ଉଲ୍‌ଷ୍ଟର କାଉଣ୍ଟି ସ୍ଥିତ 'ରିଜ୍‌ଲି ମେନୋରରେ ଦଶଦିନ ବିତାଇଥିଲେ । ପୁନଶ୍ଚ ନିୟୁର୍କ ଫେରିଆସି ନିୟମିତ କ୍ଲାସ୍‌ରେ ପଢ଼ାଇଲେ । ତାଙ୍କର ଅତି ଘନିଷ୍ଠ ଶିଷ୍ୟା କୁମାରୀ ସରାହା ଇଲେନ୍ ୱାଲଡ଼ୋ ପ୍ରତିଦିନ ରୋଷେଇ କରିବା ସହ ଗୃହର ପରିଷ୍କାର ପରିଚ୍ଛନ୍ନତା କାର୍ଯ୍ୟ ମଧ୍ୟ ଦେଖାଶୁଣା କରୁଥିଲେ । ପାତଞ୍ଜଳିଙ୍କର ଯୋଗସୂତ୍ର ଉପରେ ବ୍ୟାଖ୍ୟା ରଚନା କରିବାରେ ସେ ସ୍ୱାମୀଜୀଙ୍କୁ ସାହାଯ୍ୟ ବି କରୁଥିଲେ । ବହୁ ବିଖ୍ୟାତ ଦାର୍ଶନିକ, ବୈଜ୍ଞାନିକ ଏବଂ ନିୟୁର୍କର ସାମାଜିକ ପ୍ରତିନିଧି ସ୍ୱାମୀଜୀଙ୍କର କ୍ଲାସ୍‌ରେ ଘଣ୍ଟା ଘଣ୍ଟା ଧରି ବସି ଶୁଣୁଥିଲେ ତାଙ୍କର ଜ୍ଞାନଗର୍ଭକ ବକ୍ତୃତା ଏବଂ କ୍ଲାସ୍ ଶେଷରେ ଯେତେବେଳେ ସେମାନେ ଫେରୁଥିଲେ ନିଜ ନିଜର ଘରକୁ, ସେତେବେଳେ ନିଜ ହୃଦୟରେ ସତେକି ଏକ ନୂତନ ଅନ୍ତର୍ଦୃଷ୍ଟିର ଉଦୟ ଘଟିଛି ବୋଲି ଅନୁଭବ କରୁଥିଲେ ।

ତତ୍‌କାଳୀନ ବିଖ୍ୟାତ ବିଦ୍ୟୁତଶକ୍ତି ବୈଜ୍ଞାନିକ ନିକୋଲା ଟେସଲା ସ୍ୱାମୀଜୀଙ୍କ ମୁଖରୁ ସାଂଖ୍ୟ ଦର୍ଶନର ବ୍ୟାଖ୍ୟା ଶୁଣି ଚକିତ କେବଳ ହୋଇ ନ ଥିଲେ, ବରଂ ସାଂଖ୍ୟ ଦର୍ଶନର ବିଶ୍ୱଉତ୍ପତ୍ତି ଓ ଏହାର କଳ୍ପ, ପ୍ରାଣ ଓ ଆକାଶ ତତ୍ତ୍ୱର ତାର୍କିକତା ପ୍ରତି ଅତୀବ ଆକୃଷ୍ଟ ହୋଇଥିଲେ । ସେ ସ୍ୱାମୀଜୀଙ୍କୁ କହିଥିଲେ, "ଆଧୁନିକ ବିଜ୍ଞାନ ବିଶ୍ୱବ୍ରହ୍ମାଣ୍ଡୀୟ ସମସ୍ୟାର ସମାଧାନ ପାଇଁ ଏହି ରହସ୍ୟ ନିଶ୍ଚିତ ଭାବରେ ସାହାଯ୍ୟ କରିବ । ମୁଁ ଭାବୁଛି ଏହାକୁ ଗଣିତ ମାଧ୍ୟମରେ ପ୍ରମାଣ

Digitized by srujanika@gmail.com

କରିବି ।'' ଏହି ପରିପ୍ରେକ୍ଷୀରେ ସ୍ୱାମୀଜୀ ବି ଶ୍ରୀ ଇ.ଟି. ଷ୍ଟର୍ଡିଙ୍କ ପାଖକୁ ଖଣ୍ଡିଏ ଚିଠିରେ ଲେଖିଥିଲେ, ''ବୈଦାନ୍ତିକ ପ୍ରାଣ, ଆକାଶ ଓ କଳ୍ପ ତତ୍ତ୍ୱ ପ୍ରତି ଶ୍ରୀ ଟେସ୍‌ଲା ଅତ୍ୟନ୍ତ ବିମୋହିତ, ସେ ମତବ୍ୟକ୍ତ କରିଛନ୍ତି ଯେ ଆଧୁନିକ ବିଜ୍ଞାନ ଏହି ତତ୍ତ୍ୱକୁ କେବଳ ଗ୍ରହଣ କରିପାରିବ । ବର୍ତ୍ତମାନ ଆକାଶ ଓ ପ୍ରାଣ ମହାଜାଗତିକ ମହତ, ସାର୍ବଜନୀନ ଚିତ୍ତ ବ୍ରହ୍ମ ବା ଈଶ୍ୱରରୁ ସୃଷ୍ଟ । ଶ୍ରୀ ଟେସ୍‌ଲା ଭାବନ୍ତି ଯେ ଗଣିତ ସାହାଯ୍ୟରେ ବଳ ଓ ବସ୍ତୁକୁ ପ୍ରଚ୍ଛନ୍ନଶକ୍ତିରେ ହ୍ରାସ କରିହେବ ।''

ସ୍ୱାମୀଜୀଙ୍କର ଅଗ୍ନିବର୍ଷୀ ବୈଦାନ୍ତିକ ବାଣୀ ତୀର ସଦୃଶ ବିଦ୍ଧ କରୁଥିଲା ସେହିମାନଙ୍କ ହୃଦୟକୁ ଯେଉଁମାନଙ୍କ ହୃଦୟ ମୁକ୍ତ, ସ୍ୱଚ୍ଛ ଓ ପରମତତ୍ତ୍ୱ ଜାଣିବା ପାଇଁ ଆଗ୍ରହୀ ଥିଲା । ଫ୍ରାନ୍ସର ଖ୍ୟାତନାମା ଅଭିନେତ୍ରୀ **ସରାହ ବର୍ଣ୍ଣହାର୍ଡ** ସ୍ୱାମୀଜୀଙ୍କ ସହ ଏକମାତ୍ର ସାକ୍ଷାତକାରରେ ପ୍ରଶଂସାମୁଖର ହୋଇ ଉଠିଥିଲେ ଏବଂ ବେଦାନ୍ତର ସୂକ୍ଷ୍ମତତ୍ତ୍ୱ ଭିତରେ ନିଜକୁ ହଜାଇ ଦେଲେ । ସେହିଭଳି ସୁପରିଚିତ ତଥା ପ୍ରଭାବଶାଳୀ ଆଉଟଲୁକ୍ ପତ୍ରିକାର ମୁଖ୍ୟ ସମ୍ପାଦକ ତଥା ବ୍ରୁକଲିନ୍‌ର ପ୍ଲାୟମାଉଥ କଂଗ୍ରିଗେସନାଲ ଚର୍ଚ୍ଚର ଧର୍ମଯାଜକ ଡକ୍ଟର **ଲାଇମ୍ୟାନ୍ ଆବୋଟ୍** ସ୍ୱାମୀଜୀଙ୍କ ବୈଦାନ୍ତିକ ଆଲୋଚନା ଶୁଣି ଏଭଳି ବିମୁଗ୍ଧ ହୋଇଥିଲେ ଯେ ସେ ବ୍ୟକ୍ତିଗତ ଭାବରେ ମଧ୍ୟାହ୍ନ ଭୋଜନକୁ ଆମନ୍ତ୍ରଣ କରିଥିଲେ ଏବଂ ତାଙ୍କର ବାଣୀକୁ ଆଉଟ୍ ଲୁକ୍ ପତ୍ରିକାରେ ବିସ୍ତୃତ ଭାବରେ ପ୍ରକାଶ କରିଥିଲେ ।

- ୨ -

*ଆମେରିକା ମହାଦେଶରେ ସ୍ୱାମୀଜୀଙ୍କର ଲୋକପ୍ରିୟତାକୁ ଲକ୍ଷ୍ୟକରି ଆମେରିକୀୟ ସନ୍ନ୍ୟାସୀ କ୍ରିପାନନ୍ଦ କହିଥିଲେ - ଅବଶ୍ୟ ଭାରତ ସ୍ୱାମୀଜୀଙ୍କ ଉପରେ ନିଜର ମାଲିକତ୍ୱ ଜାହିର କରିପାରେ, କିନ୍ତୁ ଆମେରିକାବାସୀ ସଂଯୁକ୍ତ ଆମେରିକାର ଜାତୀୟ ଜ୍ଞାନକୋଷ ଲେଖିବାକୁ ପ୍ରସ୍ତୁତ, ଯେଉଁଥିରେ ସ୍ୱାମୀଜୀଙ୍କୁ ଆମେରିକାର ନାଗରିକ ଭାବେ ବର୍ଣ୍ଣନା କରିବ ।*

ଅସଂଖ୍ୟ କ୍ଲାସରେ ସ୍ୱାମୀଜୀଙ୍କର ବକ୍ତୃତା ଶ୍ରବଣ କରି ହଜାରହଜାର ଲୋକ ସ୍ୱାମୀଜୀଙ୍କର ଶିଷ୍ୟ ଭାବେ ନିଜକୁ ସ୍ୱେଚ୍ଛାକୃତ ଭାବରେ ଘୋଷଣା କରିଦେଲେ । କେତେକ ବି ବ୍ରହ୍ମଚର୍ଯ୍ୟ ନେବା ପାଇଁ ସଂକଳ୍ପବଦ୍ଧ ହେଲେ । ଲୋକଙ୍କ ପାଖରେ ପହଞ୍ଚିବାର ଆଶା ତାଙ୍କର ପୂରଣ ହେଲା । **୧୮୯୬ ଫେବୃୟାରୀ, ୨୦** ତାରିଖରେ ବହୁ ଯୁବକ ଓ ଯୁବତୀ ସ୍ୱାମୀଜୀଙ୍କଠାରୁ ମନ୍ତ୍ର ଗ୍ରହଣ କଲେ । ଜଣେ ଅନ୍ତରଙ୍ଗ ଭକ୍ତ ଡକ୍ଟର **ଷ୍ଟ୍ରିଟ୍** ସ୍ୱାମୀଜୀଙ୍କଠାରୁ ସନ୍ନ୍ୟାସ ଗ୍ରହଣ କରି ଯୋଗାନନ୍ଦ ନାମରେ ନାମିତ ହେଲେ । ସ୍ୱାମୀ ବିବେକାନନ୍ଦ ଇତି ମଧ୍ୟରେ ଜଣେ ପ୍ରଭାବଶାଳୀ ଆଧ୍ୟାତ୍ମିକ ମହାମାନବ ଭାବରେ ସମଗ୍ର ଆମେରିକା ଜନମାନସରେ ଉଦ୍‌ଭାସିତ ହୋଇ ସାରିଥିଲେ । ସମସ୍ତେ ତାଙ୍କୁ ଗୁରୁ (ମାଷ୍ଟର) ଭାବେ ସମ୍ବୋଧନ କରୁଥିଲେ । ବ୍ରହ୍ମବାଦିନ୍ ପତ୍ରିକାକୁ

Digitized by srujanika@gmail.com

ଲେଖିଥିବା ଖଣ୍ଡିଏ ଚିଠିରେ ଆମେରିକା ମହାଦେଶରେ ସ୍ୱାମୀଜୀଙ୍କର ଲୋକପ୍ରିୟତାକୁ ଲକ୍ଷ୍ୟକରି ଆମେରିକୀୟ ସନ୍ନ୍ୟାସୀ କ୍ରିପାନନ୍ଦ କହିଥିଲେ; ଅବଶ୍ୟ ଭାରତ ସ୍ୱାମୀଜୀଙ୍କ ଉପରେ ନିଜର ମାଲିକତ୍ୱ ଜାହିର କରିପାରେ, କିନ୍ତୁ ଆମେରିକାବାସୀ ସଂଯୁକ୍ତ ଆମେରିକାର ଜାତୀୟ ଜ୍ଞାନକୋଷ ଲେଖିବାକୁ ପ୍ରସ୍ତୁତ, ଯେଉଁଥିରେ ସ୍ୱାମୀଜୀଙ୍କୁ ଆମେରିକାର ନାଗରିକ ଭାବେ ବର୍ଣ୍ଣନା କରିବ । ସମୟ ଆସିବ ଯେତେବେଳେ ସାତଟି ସହରର ପ୍ରତ୍ୟେକ ସହର ମହାନ କବି ହୋମରଙ୍କୁ ଜନ୍ମ ଦେଇଥିବାର ଦାବୀ କଲାଭଳି ଆମର ଗୁରୁଦେବ (ସ୍ୱାମୀଜୀ)ଙ୍କୁ ସାତଟି ରାଷ୍ଟ୍ର ନିଜର ବୋଲି ଦାବୀ ଉପସ୍ଥାପନ କରିବ । ସୁତରାଂ ଭାରତ ବର୍ତ୍ତମାନ ସ୍ୱାମୀଜୀଙ୍କ ସମ ମହାନୁଭବ ସନ୍ତାନ ଜନ୍ମ ଦେଇଥିବାର ଯେଉଁ ଗର୍ବ କରୁଛି, ସେହି ଗର୍ବରୁ ସେ ବଞ୍ଚିତ ହେବ ।''

ସ୍ୱାମୀଜୀ ଇତିମଧ୍ୟରେ କର୍ମଯୋଗ, ରାଜଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗ ଉପରେ ତାଙ୍କର ବକ୍ତୃତା ସମାପ୍ତ କଲେ । ଶ୍ରୀ ଗୁଡଓ୍ୱିନ୍‌ଙ୍କ ସହାୟତାରେ ସେଗୁଡ଼ିକ ଲିପିବଦ୍ଧହୋଇ ପ୍ରକାଶିତ ହେଲା । ଅନୁଗାମୀ ଓ ଶିଷ୍ୟମାନଙ୍କୁ ନେଇ ବେଦାନ୍ତ ସୋସାଇଟି ଗଠିତ ହେଲା ଏବଂ ବେଦାନ୍ତର ପ୍ରସାର ଓ ପ୍ରଚାରର ବେଗ ବୃଦ୍ଧି ହେଲା । ଏହି ବେଦାନ୍ତ କେନ୍ଦ୍ରଗୁଡ଼ିକ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନସ୍ଥଳୀ ହେବ ବୋଲି ସ୍ୱାମୀଜୀ ଚାହିଁଥିଲେ ଯେଉଁଠାରେ ପାରସ୍ପରିକ ଭାବ-ବିନିମୟ ସମ୍ଭବ ହୋଇପାରିବ । ଏଥିନିମନ୍ତେ ଜଣେ ସନ୍ନ୍ୟାସୀ ଭାରତରୁ ଆସିବା ନିହାତି ଆବଶ୍ୟକ ବୋଲି ସ୍ୱାମୀଜୀ ଉପଲବ୍ଧି କଲେ ଏବଂ ଗୁରୁଭାଇମାନଙ୍କୁ ମଧ୍ୟ ନିଜର ଅଭିଳାଷ ଜଣାଇଦେଲେ ।

ଇତ୍ୟବସରରେ ସ୍ୱାମୀ ସାରଦାନନ୍ଦ ଜୁଲାଇ ୧୮୯୬ରେ ଲଣ୍ଡନରେ ପହଞ୍ଚି ଶ୍ରୀ ଷ୍ଟର୍ଡିଙ୍କ ଗୃହରେ ବାସ କରୁଥିଲେ । ସ୍ୱାମୀଜୀ ମଧ୍ୟ ଚାହିଁଥିଲେ ଯେ ଆମେରିକା ଓ ଇଂଲଣ୍ଡରୁ ବିଦେଶୀ ସନ୍ନ୍ୟାସୀ ଭାରତବର୍ଷରେ ରହି ଶିକ୍ଷାଦାନ ଓ ପ୍ରଚାର କାର୍ଯ୍ୟ କରିବେ । ଆମେରିକାରେ ଧାର୍ମିକ ଶିକ୍ଷା ପ୍ରଦାନ କରାଯିବ କିନ୍ତୁ ଭାରତରେ ବାସ୍ତବ ପ୍ରଶିକ୍ଷଣ, ବିଜ୍ଞାନ, ଶିଳ୍ପ, ଅର୍ଥନୀତି, ପ୍ରୟୋଗାତ୍ମକ ସାମାଜିକ ବିଜ୍ଞାନ, ସଂଗଠନ ପରିଚାଳନା ଓ ସହଯୋଗ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରାଯିବ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭଳି ଦୁଇଟି ଜଗତର ମିଳନ ସମ୍ବନ୍ଧରେ ସ୍ୱାମୀଜୀ ଦିନ ଓ ରାତି ଚିନ୍ତା କରୁଥିଲେ, ଏକ ସରଳ ଓ ସହଜ ମାର୍ଗ ଆବିଷ୍କାର କରିବା ପାଇଁ । ସ୍ୱାମୀଜୀ ଭବିଷ୍ୟତ ବାଣୀ ପ୍ରଦାନକରି କହିଥିଲେ ଯେ ସମୟ ବେଶି ଦୂର ନାହିଁ ଯେଉଁଠି ଦୁଇଟି ବିଶ୍ୱରେ ରହିଥିବା ପାର୍ଥକ୍ୟ ପର୍ଦ୍ଦାର ଅବସାନ ଘଟିବ ।

ଅବଶ୍ୟ ଏହି ଦୁଇଟି ବିଶ୍ୱର ମିଳନ ପାଇଁ ଗୋଟିଏ ଆଧାର ଆବଶ୍ୟକ ଯାହା ବେଦାନ୍ତ ପୂରଣ କରିବ, କାହିଁକିନା ଏହାର ବିସ୍ତୃତ ଏବଂ ସର୍ବପ୍ରକାର ବ୍ୟାଖ୍ୟାକୁ ନିଜର କରିନେବାର ଚରିତ୍ର ହିଁ ସର୍ବୋତ୍କୃଷ୍ଟ ଆଧାର ଭୂମି ହେବ । ଶ୍ରୀରାମକୃଷ୍ଣ ପରମହଂସଙ୍କର ମହାନ୍ ଜୀବନରେ କାହାରିକୁ ଭର୍ତ୍ସନା ବା ନିନ୍ଦା କରିବାର ଗୋଟିଏ ଶବ୍ଦ ମିଳିବ ନାହିଁ । ସେ ସମସ୍ତଙ୍କ ପାଇଁ ସବୁ ଦ୍ୱାର ମୁକ୍ତ କରିଦେଇଛନ୍ତି; ଯିଏ ଯେଉଁ ପଥରେ ନିଜର ରଚି ଅନୁସାରେ ଗମନ କରିପାରିବ । ଯୁଗୋପଯୋଗୀ ଧର୍ମ ଶିଖାଇବା ପାଇଁ ତାଙ୍କର ଆବିର୍ଭାବ ଘଟିଥିଲା ଯାହା ଥିଲା ଗଠନମୂଳକ କିନ୍ତୁ ଧ୍ୱଂସାତ୍ମକ ନୁହେଁ । ତାଙ୍କୁ ବୈଜ୍ଞାନିକ ଧର୍ମ ପ୍ରାପ୍ତ ହୋଇଥିଲା ଯାହା ବିଶ୍ୱାସ ଉପରେ ପ୍ରତିଷ୍ଠିତ ନୁହେଁ ବରଂ 'ଦେଖ' ଉପରେ ପର୍ଯ୍ୟବେଶିତ । ସେ କହୁଥିଲେ, ମୁଁ ଦେଖିଛି, ତୁମେ ବି

Digitized by srujanika@gmail.com

ଦେଖିପାରିବ । ଯେଉଁ ମାର୍ଗରେ ମୁଁ ଯାଇଛି, ସେହି ମାର୍ଗ ଅନୁସରଣ କର, ତୁମେ ବି ତାହା ଦର୍ଶନ କରିପାରିବ । ଈଶ୍ୱର ପ୍ରତ୍ୟେକ ନିକଟକୁ ଆସିବେ, ସମନ୍ୱୟ ସମସ୍ତଙ୍କ ପହୁଞ୍ଚ ଭିତରେ ବିଦ୍ୟମାନ ।''

''ମୋ ଗୁରୁଦେବ''ଙ୍କ ଉପରେ ବକ୍ତୃତା ପ୍ରଦାନ କରି **ମାର୍ଚ୍ଚ ୩, ୧୮୯୬**ରେ ଆମେରିକାର ଡେଟ୍ରୋଏଟ୍ ଗମନ କଲେ । ସାଙ୍ଗରେ ଥିଲେ ତାଙ୍କର ବିଶ୍ୱସ୍ତ ଗୁଡ଼ୱିନ୍ । **'ରିଚେଲିୟୁ'** ହୋଟେଲ୍‌ରେ ସେମାନେ ଅବସ୍ଥାନ କଲେ । ଡେଟ୍ରୋଏଟ୍‌ରେ ଦୁଇ ସପ୍ତାହ ରହି ବାଇଶଟି କ୍ଲାସ ନେଇଥିଲେ । କ୍ଲାସରେ ଲୋକଙ୍କ ଭିଡ଼ ଏଭଳି ଥିଲା ଯେ ବହୁ ଲୋକ ସିଡ଼ି ଘର ଓ ଲାଇବ୍ରେରିରେ ବସି ତାଙ୍କର ବକ୍ତୃତା ଶୁଣୁଥିଲେ । 'ପାଶ୍ଚାତ୍ୟ ଜଗତକୁ ଭାରତର ବାର୍ତ୍ତା' ଏବଂ 'ଏକ ସାର୍ବଜନୀନ ଧର୍ମର ଆଦର୍ଶ' ଉପରେ ତାଙ୍କର ବକ୍ତବ୍ୟ ଶହ ଶହ ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ ତଥା ଭାବବିହ୍ୱଳିତ କରିଦେଲା । କିନ୍ତୁ ଏହି ସମୟରେ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟାବସ୍ଥା ଏବଂ ମନାତୀତ ଅବସ୍ଥା ସମ୍ବନ୍ଧରେ ତାଙ୍କର ପରମ ଶିଷ୍ୟା ଶ୍ରୀମତୀ **ମେରୀ ଫୁନ୍‌କେ** ଲେଖିଥିଲେ: ଭକ୍ତି ସ୍ରୋତରେ ସ୍ୱାମୀଜୀ କେବଳ ଉବୁଟୁବୁ ହେଉଥିଲେ । ଏକପ୍ରକାର ଦିବ୍ୟ ଉନ୍ମାଦ ତାଙ୍କୁ ଗ୍ରାସ କରିଥିଲା, ସତେକି କରୁଣାମୟୀ ଜନନୀଙ୍କ ପାଇଁ ତାଙ୍କ ହୃଦୟ ଫାଟି ଯାଉଥିଲା... । ସେଦିନ ରାତିରେ ମୋ ଗୁରୁଦେବଙ୍କୁ ମୁଁ ଯେପରି ଦେଖିଥିଲି, ସେଭଳି କେବେ ବି ମୁଁ ତାଙ୍କୁ ପୂର୍ବରୁ ଦେଖି ନ ଥିଲି । ତାଙ୍କର ସୌନ୍ଦର୍ଯ୍ୟରେ ଏଭଳି କିଛି ପ୍ରତିଭାତ ହେଉଥିଲା ଯାହା ସଂସାରରେ ଦୃଶ୍ୟମାନ ନୁହେଁ । ସତେକି ରକ୍ତ ମାଂସର ବନ୍ଧନକୁ ଆତ୍ମା ଛିନ୍ନଭିନ୍ନ କରିଦେଇଛି ଏବଂ ପ୍ରଥମ କରି ଅନ୍ତିମତାର ଏକ ପୂର୍ବାଭାସ ମୁଁ ଦେଖିପାରିଲି । ବର୍ଷବର୍ଷର ଅକ୍ଲାନ୍ତ ପରିଶ୍ରମ ଏଭଳି ତାଙ୍କୁ ଅବଶ କରିଦେଇଥିଲା ଯେ ଏହି ସଂସାରରେ ବେଶିଦିନ ଜୀବନଧାରଣ କରିବା ପାଇଁ ତିଳେମାତ୍ର ଇଚ୍ଛା ତାଙ୍କର ନ ଥିଲା । ଏହି ଦୃଶ୍ୟ ନ ଦେଖିବା ପାଇଁ ମୁଁ ଚକ୍ଷୁ ମୁଦ୍ରିତ କରିବା ପାଇଁ ଚେଷ୍ଟା କଲି, କିନ୍ତୁ ମୋ ହୃଦୟରେ ସତ୍ୟକୁ ଜାଣିପାରିଲି; ସେ ବିଶ୍ରାମ ଚାହୁଁଥିଲେ କିନ୍ତୁ ପୁନଶ୍ଚ ଯିବାକୁ ହେବ ବୋଲି ଅନୁଭବ କଲେ ।''

ଗୁରୁଦେବଙ୍କର ଯେତେବେଳେ ଦାୟିତ୍ୱ ବହନ କରୁଛନ୍ତି, ଦେହ ଓ ମନ ଭାଙ୍ଗି ପଡୁଥିଲେ ବି କାର୍ଯ୍ୟ ଅଧାରୁ ସେ ଯାଇପାରିବେ ନାହିଁ । ଚାବିକାଠି ତ ଗୁରୁଦେବ ଶ୍ରୀରାମକୃଷ୍ଣଙ୍କ ହାତରେ । ପଞ୍ଜୁରି ଭିତରେ ଆବଦ୍ଧ ପକ୍ଷୀ ଭଳି ସେ ଛଟପଟ, କିନ୍ତୁ ଉଡ଼ି ଯାଇପାରିବେ ନାହିଁ । ଅତ୍ୟନ୍ତ ବ୍ୟସ୍ତ ଓ ବିଚଳିତ ହୋଇ ସ୍ୱାମୀଜୀ ନିଜ ସମ୍ବନ୍ଧରେ ଏଭଳି କଥା କହୁଥିଲେ ଯେ ସତେକି ସେ ମୁକ୍ତ ପବନ, କିଏ ତାଙ୍କୁ କାନ୍ଥ ଭିତରେ ଅଟକାଇ ଦେଇଛି । ''ଓହୋ'' - ଦେହ ଏକ ଭୟଙ୍କର ବନ୍ଧନ ! କେମିତି ଏହା ଭିତରେ ସବୁଦିନ ପାଇଁ ନିଜକୁ ଲୁଚାଇ ରଖିବି !! ଏତାଦୃଶ ବିଦ୍ରୋହୀ ମନ ନିଜ ଶରୀର ବିରୁଦ୍ଧରେ ବାରମ୍ବାର ସ୍ୱର ଉତ୍ତୋଳନ କରୁଥିଲେ ବି, ଡେଟ୍ରୋଏଟ୍‌ରୁ ବିଦାୟ ନେଇ ବୋଷ୍ଟନରେ ଉପନୀତ ହେଲେ । **୧୮୯୬ ମାର୍ଚ୍ଚ ୨୫** ତାରିଖରେ ବିଖ୍ୟାତ ବକ୍ତୃତା ''ବେଦାନ୍ତ ଦର୍ଶନ'' ହାରଭାର୍ଡ଼ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ସ୍ନାତକ ଛାତ୍ରଛାତ୍ରୀ ଓ ପ୍ରଫେସରମାନଙ୍କ ସମ୍ମୁଖରେ ସ୍ୱାମୀଜୀ ପ୍ରଦାନ କଲେ । ତାଙ୍କର ବକ୍ତବ୍ୟ ସଭିଙ୍କୁ ଏଭଳି ଅନୁପ୍ରାଣିତ କଲା ଯେ ବିଶ୍ୱବିଦ୍ୟାଳୟରେ ଚେୟାର **ଅଫ୍ ଇଷ୍ଟର୍ନ ଫିଲୋସଫି ତାଙ୍କୁ ପ୍ରଦାନ କଲେ ।** କିନ୍ତୁ

Digitized by srujanika@gmail.com

ସେ ସେମାନଙ୍କୁ ନମ୍ରତା ସହକାରେ ଜଣାଇଥିଲେ ଯେ ଏଭଳି ସମ୍ମାନ ସେ ଗ୍ରହଣ କରିପାରିବେ ନାହିଁ, କାରଣ ସେ ଜଣେ ସନ୍ନ୍ୟାସୀ । ହାରଭାର୍ଡ଼ ଡିଭିନିଟି ସ୍କୁଲର ଡିନ୍ ରେଭେରେଣ୍ଡ **ସି.ସି. ଏଭେରେଟ୍** ସ୍ୱାମୀଜୀଙ୍କର ବକ୍ତବ୍ୟ ଓ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମରେ ବିମୋହିତ ହୋଇ ଲେଖିଥିଲେ :

...ବିବେକାନନ୍ଦ ଉଚ୍ଚସ୍ତରର ଉତ୍ସାହ ତାଙ୍କ କାର୍ଯ୍ୟରେ ପ୍ରଦର୍ଶନ କରିଛନ୍ତି । ହିନ୍ଦୁ ବିଚାରଧାରା ଅତି ଆକର୍ଷଣୀୟ । ବେଦାନ୍ତ ପଦ୍ଧତି ଏଭଳି ଏକ ବିରଳ ଧର୍ମ ବିଶ୍ୱାସ ଯାହା ଅଧିକାଂଶ ଲୋକଙ୍କୁ ଅବାସ୍ତବ ଭଳି ପ୍ରତୀୟମାନ ହୁଏ । ଏହି ବିଶ୍ୱାସକୁ ଜଣେ ବୁଦ୍ଧିମାନ ବିଶ୍ୱାସୀ ବାସ୍ତବରେ ଜୀବନ୍ତ ରଖିପାରଛନ୍ତି । ଏହି ପଦ୍ଧତିକୁ ଗୋଟିଏ କୌତୂହଳ ବା ଖାମଖିଆଲି ଭାବନା ଭାବେ ବିବେଚନା କରିହେବ ନାହିଁ । ହେଗେଲ କହିଥିଲେ ଯେ ସ୍ପିନୋଜାବାଦ (**spinozism**) ସମସ୍ତ ଦର୍ଶନର ଆବଶ୍ୟକୀୟ ଆରମ୍ଭ । ବେଦାନ୍ତ ମାର୍ଗରେ ଏହା ଜୋର୍‌ଦେଇ କହିହେବ । ଆମେ ପାଶ୍ଚାତ୍ୟବାସୀ ବହୁତ୍ୱରେ ନିଜକୁ ବ୍ୟସ୍ତ ରଖୁ । କିନ୍ତୁ ବହୁତ୍ୱରେ ପ୍ରକୃତ ଅର୍ଥ ବା ଜ୍ଞାନ ଆମେ ଜାଣିପାରିବା ନାହିଁ ଯେପର୍ଯ୍ୟନ୍ତ ବହୁତ୍ୱରେ ଏକତ୍ୱ ସମ୍ବନ୍ଧରେ ଆମର ଜ୍ଞାନ ବିକଶିତ ହୋଇ ନାହିଁ । ଏକତ୍ୱ ହିଁ ବାସ୍ତବରେ ସତ୍ୟ ଯାହା ପ୍ରାଚ୍ୟ ଆମକୁ ଶିଖାଇ ପାରିବେ; ଏବଂ ଆମେ ବିବେକାନନ୍ଦଙ୍କଠାରେ କୃତଜ୍ଞ ରହିବୁ କାରଣ ସେ ଆମକୁ ଏହି ଶିକ୍ଷା ସୁନ୍ଦର ଭାବେ ପ୍ରଦାନ କରିଛନ୍ତି ।''

- ୩ -

*ବେଦାନ୍ତରେ ସମସ୍ତ ଧର୍ମ ନିହିତ । ବେଦାନ୍ତ ଦର୍ଶନରେ ତିନୋଟି ସ୍ତର ରହିଛି । ଦ୍ୱୈତ, ବିଶିଷ୍ଟ ଦ୍ୱୈତ ଓ ଅଦ୍ୱୈତ ଯାହା ଗୋଟିଏ ପରେ ଗୋଟିଏ ଆସେ । ମନୁଷ୍ୟ ଭିତରେ ଏହା ଆଧାତ୍ମିକ ବିକାଶର ତିନୋଟି ସ୍ତର ଭାବେ ବିଦ୍ୟମାନ । ପ୍ରତ୍ୟେକ ସ୍ତରର ଆବଶ୍ୟକତା ରହିଛି, ତାହା ହିଁ ହିନ୍ଦୁଧର୍ମ ।*

ପ୍ରଶ୍ନୋତ୍ତର ଅଧିବେଶନରେ ହାରଭାର୍ଡ଼ ୟୁନିଭରସିଟିର ସମସ୍ତ ଛାତ୍ର ଓ ଅଧ୍ୟାପକ ସମ୍ମୁଖରେ ସ୍ୱାମୀଜୀ କହିଥିଲେ - କେବଳ ଅଦ୍ୱୈତବାଦୀ କୌଣସି ଭାବରେ ସମ୍ମୋହିତ ହେବାପାଇଁ ଚେଷ୍ଟା କରେ ନାହିଁ କିମ୍ବା ଯତ୍ନ ନିଏ ନାହିଁ । ଏହି ମାର୍ଗରେ ଅବସ୍ଥାନ କରି ସେ ଅଳ୍ପବହୁତ ଜାଣିଛି ଯେ ସମ୍ମୋହନ ବା ମାୟା କେବଳ ଦ୍ୱୈତର ପ୍ରତ୍ୟେକ ରୂପରେ ଆସିଥାଏ । କିନ୍ତୁ ଅଦ୍ୱୈତବାଦୀ କୁହେ, ଏପରିକି ଜଗତକୁ ତ୍ୟାଗକର, ତୁମର ଶରୀର ଓ ମନକୁ ତ୍ୟାଗକର । ଯେପରି କିଛି ହିଁ ତୁମପାଖରେ ରହିବ ନାହିଁ, ତେବେଯାଇ ସମ୍ମୋହନ ଓ ମାୟାରୁ ମୁକ୍ତି ପାଇପାରିବ । ଯେତେବେଳେ ସ୍ୱାମୀଜୀଙ୍କୁ ଯୋଗଶକ୍ତି ଉପରେ ପ୍ରଶ୍ନ କରାଗଲା, ସେତେବେଳେ ସ୍ୱାମୀଜୀ ପ୍ରତ୍ୟୁତ୍ତରରେ କହିଥିଲେ - ଯୋଗଶକ୍ତିର ଉଚ୍ଚତମ ଭାବ କେବଳ ହିଁ ବୈଦାନ୍ତିକ ଚରିତ୍ର ଓ ନିଜ ଭିତରେ ଦିବ୍ୟତ୍ୱ ବିରାଜିତ ବୋଲି ନିରନ୍ତର ଚିନ୍ତା କରୁଥିବା ମନୁଷ୍ୟ ଭିତରେ ପ୍ରକଟିତ ହୋଇଥାଏ । ଯୋଗୀ ପାଓ୍ୱାହାରି ବାବା ଥିଲେ ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ପାଓ୍ୱାହାରି ବାବାଙ୍କୁ ଏକଦା ଗୋଟିଏ

*Digitized by srujanika@gmail.com*

ବିଷାକ୍ତ ନାଗ ଦଂଶନ କରିଥିଲା ଏବଂ ବିଷ ଜ୍ୱାଳାରେ ସେ ଭୂପତିତ ହେଲେ । ସଂନ୍ଧ୍ୟାବେଳେ ଯେତେବେଳେ ତାଙ୍କର ଚେତା ଲେଉଟିଲା, ଜଣେ ତାଙ୍କୁ କ'ଣ ହୋଇଥିଲା ବୋଲି ପଚାରିବାରୁ ବାବା କହିଥିଲେ - ମୋ ପ୍ରେମିକ ଠାରୁ ଜଣେ ଦୂତ ଆସିଥିଲେ । ସବୁପ୍ରକାର ଘୃଣା କ୍ରୋଧ ଓ ଈର୍ଷା ଏହି ବ୍ୟକ୍ତିଙ୍କ ଭିତରେ ବିଲୁପ୍ତ ହୋଇଥିଲା । ସେ ଏଭଳି ଅନନ୍ତ ପ୍ରେମରେ ନିମଗ୍ନ ଥିଲେ, ସଂସାରର କୌଣସି ଘଟଣା ତାଙ୍କ ଭିତରେ ପ୍ରତିକ୍ରିୟା ସୃଷ୍ଟି କରିପାରୁ ନ ଥିଲା । ଏହା ହିଁ ପ୍ରକୃତ ଯୋଗୀର ଲକ୍ଷଣ । ସେ କହିଥିଲେ ଯେ ଆଧ୍ୟାତ୍ମିକ ମୁକ୍ତିର ପ୍ରଦର୍ଶନ ଭିତରେ ନିହିତ ଶ୍ରେଷ୍ଠ ଆଧ୍ୟାତ୍ମିକ ଶକ୍ତି ଏବଂ ଆଧ୍ୟାତ୍ମିକ ଦର୍ଶନ ଓ ଅନ୍ତର୍ଦୃଷ୍ଟି ନିର୍ବିକଳ୍ପ ସମାଧିରେ ସମାପିତ ହୁଏ । ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ପ୍ରଫେସରମାନେ ତାଙ୍କୁ ସଭ୍ୟତାର ବୈଦାନ୍ତିକ ଦୃଷ୍ଟିକୋଣ କ'ଣ ବୋଲି ପ୍ରଶ୍ନ କରିବାରୁ ସ୍ୱାମୀଜୀ କହିଥିଲେ, ''ମନୁଷ୍ୟ ଭିତରେ ରହିଥିବା ଦିବ୍ୟତ୍ୱର ଅଭିବ୍ୟକ୍ତି ହିଁ ପ୍ରକୃତ ସଭ୍ୟତା ଏବଂ ସେହି ଦେଶ ସର୍ବୋତ୍ତମ ସଭ୍ୟ ଦେଶ ଯେଉଁଠାରେ ରହିଛି ସର୍ବୋଚ୍ଚ ଆଦର୍ଶର ବାସ୍ତବୀକରଣ ।''

ବୋଷ୍ଟନରେ ବାସ କରୁଥିବା ବେଳେ ସ୍ୱାମୀଜୀ ତାଙ୍କର ଅନେକ ପୁରାତନ ବନ୍ଧୁଙ୍କୁ ସାକ୍ଷାତ କରିଥିଲେ । ପ୍ରଫେସର ଜନ୍ ହେନ୍ରି ରାଇଟ୍ ସ୍ୱାମୀଜୀଙ୍କର ସାନିଧ୍ୟ ଲାଭ କରି ଅତୀବ ଆନନ୍ଦିତ ହେଲେ ଏବଂ ବହୁ ସମୟ ଧରି ସେ ତାଙ୍କ ସହ ଆଲୋଚନା କଲେ । ପ୍ରଫେସର ରାଇଟ୍ ପ୍ରଥମ ବ୍ୟକ୍ତି ଯିଏ ଆମେରିକା ଭୂମିରେ ପ୍ରଥମେ ସ୍ୱାମୀଜୀଙ୍କୁ ବିଶ୍ୱଧର୍ମ ସମ୍ମିଳନୀରେ ଭାଗ ନେବାପାଇଁ ସହାୟତାର ହାତ ବଢ଼ାଇଥିଲେ । ବହୁଦିନ ପରେ ସ୍ୱାମୀଜୀଙ୍କୁ ଦେଖି ଏଭଳି ଖୁସି ହୋଇଥିଲେ ଯେ ସେ ଉକ୍ତ ସାକ୍ଷାତ ସମ୍ବନ୍ଧରେ ତାଙ୍କ ପତ୍ନୀଙ୍କୁ ଏକ ଚିଠିରେ ଲେଖିଥିଲେ - ''ସ୍ୱାମୀଜୀ ବହୁତ ନମ୍ର, ବିଜ୍ଞ ଓ ମଧୁର ହୋଇଯାଇଛନ୍ତି । ବାସ୍ତବିକ ସେ ଖୁବ୍ ସୁନ୍ଦର ଓ ଆକର୍ଷଣୀୟ ଦେଖାଯାଉଛନ୍ତି । ସେ ପ୍ରଫେସର ଜେମ୍ସଙ୍କୁ ଟହଲାଇ ଦେଇଛନ୍ତି... ପ୍ରଫେସର ଜେମ୍ସ ବୋଷ୍ଟନ ଯାଇ ସ୍ୱାମୀଜୀଙ୍କର ବକ୍ତୃତା ଶୁଣୁଛନ୍ତି ।''

ଏଠାରେ କହିବା ବାହୁଲ୍ୟ ଯେ ହାଭାର୍ଡ଼ ବିଶ୍ୱବିଦ୍ୟାଳୟର ତତ୍କାଳୀନ ବିଶ୍ୱ ବିଖ୍ୟାତ ପ୍ରଫେସର ଉଇଲିୟମ ଜେମସ୍‌ଙ୍କ ପ୍ରଥମ ସାକ୍ଷାତ ସ୍ୱାମୀଜୀଙ୍କ ସହ ହୋଇଥିଲା ଶ୍ରୀମତୀ ଓଲେ ବୁଲ୍‌ଙ୍କ ବାସଭବନରେ ଆୟୋଜିତ ଏକ ନୈଶ ଭୋଜିରେ । ଦୁହେଁ ଗଭୀର ଆଲୋଚନାରେ ହେଲେ ମଗ୍ନ । ସମୟ ବୋଧହୁଏ ଅନ୍ତର୍ହିତ ହୋଇଥିଲା ସେଠାରୁ । ଅର୍ଦ୍ଧରାତ୍ରିରେ ସେମାନଙ୍କର ଆଲୋଚନାରେ ପୂର୍ଣ୍ଣଛେଦ ପଡ଼ିଲା । କିନ୍ତୁ ଶ୍ରୀମତୀ ବୁଲ୍ ଥିଲେ ବିଚକ୍ଷଣ ମହିଳା, ବୁଝିଗଲେ ଦୁହିଁଙ୍କର ମନୋଭାବ । ପ୍ରଫେସର ପ୍ରସ୍ଥାନ କଲା ଉତ୍ତାରୁ ସେ ସ୍ୱାମୀଜୀଙ୍କୁ ପଚାରିଲେ, ''ସ୍ୱାମୀଜୀ, ପ୍ରଫେସର ମହାଶୟ ଆପଣଙ୍କୁ କେମିତି ଲାଗିଲେ ?'' ସ୍ୱାମୀଜୀ କିନ୍ତୁ ଅନ୍ୟମନସ୍କ ହୋଇ କହିଲେ, ''ଅତି ଭଲ ଲୋକ, ଅତି ଭଲ ଲୋକ ।'' ପରବର୍ତ୍ତୀ ଦିନ ସ୍ୱାମୀଜୀ ଖଣ୍ଡିଏ ଚିଠି ଶ୍ରୀମତୀ ବୁଲ୍‌ଙ୍କୁ ବଢ଼ାଇ ଦେଇ କହିଲେ, ''ତୁମର ବୋଧହୁଏ ଆଗ୍ରହ ଅଛି ପଢ଼ିବାକୁ, ପଢ଼ ଏହି ଚିଠି ।'' ଶ୍ରୀମତୀ ବୁଲ୍‌ଙ୍କର ଚିଠି ଉପରେ ଯେମିତି ଦୃଷ୍ଟିପଡ଼ିଛି, ସେ ତତ୍‌କ୍ଷଣାତ୍ ଆଶ୍ଚର୍ଯ୍ୟ ହୋଇ କେବଳ ସ୍ୱାମୀଜୀଙ୍କୁ ଚାହିଁ ରହିଲେ, ମୁଖରୁ ଭାଷା ସ୍ଫୁରିଲା ନାହିଁ । ଉକ୍ତ ଚିଠିରେ ପ୍ରଫେସର କେବଳ ସ୍ୱାମୀଜୀଙ୍କୁ 'ମାଷ୍ଟର' ବୋଲି ସମ୍ବୋଧନ କରି ନ ଥିଲେ ବରଂ ନିଜ ଭବନକୁ ରାତ୍ରିଭୋଜନ

Digitized by srujanika@gmail.com

ପାଇଁ ତାଙ୍କୁ ସାଦରରେ ନିମନ୍ତ୍ରଣ କରିଥିଲେ । ପ୍ରଫେସର ଜେମସ୍ ପରବର୍ତ୍ତୀ ସମୟରେ ସ୍ୱାମୀଜୀଙ୍କର ଜଣେ ଅନୁରକ୍ତ ଅନୁଗାମୀ ହୋଇ ବେଦାନ୍ତକୁ କାୟମନୋବାକ୍ୟରେ ଗ୍ରହଣ କରିଥିଲେ ।

ବୋଷ୍ଟନରୁ ବିଦାୟ ନେଇ ସ୍ୱାମୀଜୀ ଚିକାଗୋରେ **ମାର୍ଚ୍ଚ ୩୦** ତାରିଖରେ ଉପନୀତ ହେଲେ । ପାଶ୍ଚାତ୍ୟ ରାଷ୍ଟ୍ରରେ ବହୁଦିନ ରହିବା ପରେ, ସେମାନଙ୍କର ମନୋଭାବ ଓ ଚିନ୍ତା ସହ ସେ ଭଲ ଭାବରେ ପରିଚିତ ହୋଇଗଲେଣି । ବେଦାନ୍ତ ହିଁ ଧର୍ମ ଯେଉଁଥିରେ ବିଶ୍ୱର ସମସ୍ତ ଧର୍ମ ଓ ବିଶ୍ୱାସ ସହାବସ୍ଥାନ କରିପାରିବେ ବୋଲି ସ୍ୱାମୀଜୀଙ୍କର ହୃଦବୋଧ ହେଲା । ଆଲସିଙ୍ଗା ପେରୁମଲ୍‌ଙ୍କ ନିକଟକୁ **୧୮୯୫ ମେ ଛଅ** ତାରିଖରେ ଲେଖିଥିବା ପତ୍ରରେ ସ୍ୱାମୀଜୀ କହିଥିଲେ - ବର୍ତ୍ତମାନ ମୋର ଆବିଷ୍କାର ସମ୍ବନ୍ଧରେ ତୁମକୁ କହିବି । ବେଦାନ୍ତରେ ସମସ୍ତ ଧର୍ମ ନିହିତ । ବେଦାନ୍ତ ଦର୍ଶନରେ ତିନୋଟି ସ୍ତର ରହିଛି । ଦ୍ୱୈତ, ବିଶିଷ୍ଟା ଦ୍ୱୈତ ଓ ଅଦ୍ୱୈତ ଯାହା ଗୋଟିଏ ପରେ ଗୋଟିଏ ଆସିଥାଏ । ମନୁଷ୍ୟ ଭିତରେ ଏହା ଆଧ୍ୟାତ୍ମିକ ବିକାଶର ତିନୋଟି ସ୍ତର ଭାବରେ ବିଦ୍ୟମାନ । ପ୍ରତ୍ୟେକ ସ୍ତରର ଆବଶ୍ୟକତା ରହିଛି, ଏହାହିଁ ଧର୍ମର ଆବଶ୍ୟକତା । ଭାରତରେ ବିଭିନ୍ନ ପରମ୍ପରା ଓ ଜାତି ଭିତରେ ବେଦାନ୍ତ ପ୍ରୟୋଗ ହୋଇଛି, ତାହା ହିଁ ହିନ୍ଦୁଧର୍ମ । ପ୍ରଥମ ସ୍ତର ହେଉଛି 'ଦ୍ୱୈତ' ଯାହା ଇୟୁରୋପ୍‌ର ଜାତିଗତ ଦୃଷ୍ଟିକୋଣରେ ପ୍ରୟୋଗ ହୋଇଛି । ତାହା ହିଁ ଖ୍ରୀଷ୍ଟଧର୍ମ; ଯାହା ସେମିଟିକ୍ ଜାତିରେ ପ୍ରୟୋଗ ହୋଇଛି, ତାହା ଇସ୍‌ଲାମ୍ ଧର୍ମ । ତା'ପରେ ଅଦ୍ୱୈତ, ଯୋଗ ଅନୁଭୂତି ଆକାରରେ ପ୍ରୟୋଗ ହେବାରୁ ଏହା ବୌଦ୍ଧଧର୍ମ ଓ ଅନ୍ୟାନ୍ୟ ଧର୍ମ । ବର୍ତ୍ତମାନ ଧର୍ମର ଅର୍ଥ ହିଁ ବେଦାନ୍ତ; ଏହାର ପ୍ରୟୋଗ, ବିଭିନ୍ନ ଆବଶ୍ୟକତା, ପାରିପାର୍ଶ୍ୱିକ ଅବସ୍ଥା ଏବଂ ଅନ୍ୟ ରାଷ୍ଟ୍ରର ବାତାବରଣ ଅନୁସାରେ ପରିବର୍ତ୍ତିତ ହେବ । ତୁମେ ଜାଣିବ ଯେ ଯେହେତୁ ଦର୍ଶନ ଏକ, କିନ୍ତୁ ଶାକ୍ତ, ଶୈବ ଏବଂ ଅନ୍ୟମାନେ ନିଜର ସିଦ୍ଧାନ୍ତ ଓ ରୂପ ଅନୁସାରେ ଏହାକୁ ପ୍ରୟୋଗ କରନ୍ତି । ବର୍ତ୍ତମାନ ତୁମ ପତ୍ରିକାରେ ଏହି ତିନୋଟି ସ୍ତର ସମ୍ବନ୍ଧରେ ଲେଖାମାନ ପ୍ରକାଶ କର, କିନ୍ତୁ ସେମାନଙ୍କର ସମନ୍ୱୟ ଯେ ଏକ ତାହା ଲେଖିବାକୁ ଭୁଲିବ ନାହିଁ । ଉପାସନା ପଦ୍ଧତିଗୁଡ଼ିକୁ ଏଥିରୁ ସମ୍ପୂର୍ଣ୍ଣ ପୃଥକ ରଖିବ । ଏହାର ଦର୍ଶନ ଓ ଆଧ୍ୟାତ୍ମିକତାର ଅଂଶ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କର, ଲୋକେ ତାଙ୍କର ପଦ୍ଧତି ଅନୁସାରେ ଏହାର ପ୍ରୟୋଗ କରିବେ ।''

- ୪ -

*ସହର ପଥରେ ତାଙ୍କ ସହ ଯିଏ ପଦଚାରଣ କରିବାର ସୁଯୋଗ ପାଉଥିଲେ, ସେମାନଙ୍କୁ ଆଶ୍ଚର୍ଯ୍ୟଜନକ ଭାବନା ରାଜ୍ୟକୁ ସେ ଟାଣି ନେଇଯାଉଥିଲେ । ସେ ତ ନିଜକୁ କେବେବି ଦେହ ବୋଲି ଭାବୁ ନ ଥିଲେ ବରଂ ଅନ୍ୟମାନେ ତାଙ୍କ ସାନିଧ୍ୟ ଲାଭ କରି ନିଜକୁ ବି ଦେହ ବୋଲି ନ ଭାବି ଆତ୍ମା ବୋଲି ଅନୁଭବ କରିପାରୁଥିଲେ ।*

ସ୍ୱାମୀଜୀଙ୍କର ମନ ଓ ଦୃଷ୍ଟିକୋଣ ଆଉ ତାଙ୍କର ନିଜର ହୋଇ ରହି ନ ଥିଲା । ବିଶ୍ୱ ମନର ଏକ କେନ୍ଦ୍ରବିନ୍ଦୁ ପାଲଟି ଯାଇଥିଲା । ବିଭିନ୍ନତା ଭିତରେ ସେ ସର୍ବଦା ଦେଖୁଥିଲେ ଏକତ୍ୱ ।

Digitized by srujanika@gmail.com

ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସଙ୍କର 'ଯେତେ ମତ ସେତେ ପଥ'ର ଶିକ୍ଷାର ଅଭିବ୍ୟକ୍ତି ବିଚ୍ଛୁରିତ ହୋଇ ପଡ଼ିଥିଲା ତାଙ୍କ ଶରୀର ଓ ମନର ପ୍ରତ୍ୟେକ ଅଣୁ ଓ ପରମାଣୁରେ । ଆମେରିକା ଅବସ୍ଥାନ କାଳରେ ସ୍ୱାମୀଜୀଙ୍କ ବ୍ୟକ୍ତିତ୍ୱର ଅନେକ ଦିଗ ହେଉଥିଲା ଉନ୍ମୋଚିତ ଯେଉଁଥିରେ ଏକଇ ସତ୍ୟର ପ୍ରକଟନ ସମସ୍ତ ସୂର୍ଯ୍ୟସମ ପ୍ରତିଭାତ । ସତେକି ଅଦ୍ୱୈତ ବ୍ରହ୍ମଙ୍କର ତେଜସ୍ୱିୟ ବିକିରଣରେ ସେ ପ୍ରଜ୍ୱଳିତ । ଜଣେ ଶିଷ୍ୟ ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱ ଅବଲୋକନ କରି ବିସ୍ମୟାଭୂତ ହୋଇ କହିଥିଲେ, ''ଗୋଟିଏ ଦିନର ପ୍ରତ୍ୟେକ ଘଣ୍ଟାରେ କେତେବେଳେ ନୂଆ ନୂଆ ଧାରଣା ଓ ଦୃଷ୍ଟିକୋଣ ତ କେତେବେଳେ ନୂତନ ମାନବୀୟ ମଧୁରତା, କେତେବେଳେ ବିଶାଳ ଆତ୍ମା ଓ ମନୁଷ୍ୟର ଦିବ୍ୟତ୍ୱ ଉପରେ ଆଲୋକିତ ଭାବନା ଓ ଅସୀମ ଆଶା ତାଙ୍କର ବ୍ୟକ୍ତିତ୍ୱରୁ ବିକିରଣ ହେଉଥିଲା । ସହର ପଥରେ ତାଙ୍କ ସହ ଯିଏ ପଦଚାରଣ କରିବାର ସୁଯୋଗ ପାଉଥିଲେ, ସେମାନଙ୍କୁ ଆଶ୍ଚର୍ଯ୍ୟଜନକ ଭାବନା ରାଜ୍ୟକୁ ସେ ଟାଣି ନେଇଯାଉଥିଲେ । ସେ ତ ନିଜକୁ କେବେବି ଦେହ ବୋଲି ଭାବୁ ନ ଥିଲେ ବରଂ ଅନ୍ୟମାନେ ତାଙ୍କ ସାନିଧ ଲାଭ କରି ନିଜକୁ ବି ଦେହ ବୋଲି ନ ଭାବି ଆତ୍ମା ବୋଲି ଅନୁଭବ କରିପାରୁଥିଲେ । ତଥାପି ତାଙ୍କର ମହାନୁଭବତାର ଚମତ୍କାର ଚେହେରା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା ।

ଶ୍ରୀମତି **ଫ୍ରାନ୍ସିସ୍ ଲେଗେଟ୍**ଙ୍କ ଭାଷାରେ - ମୋ ଜୀବନକାଳରେ ଦୁଇଜଣ ବିଖ୍ୟାତ ବ୍ୟକ୍ତିଙ୍କୁ ଦେଖିଛି ଯିଏ ନିଜର ମର୍ଯ୍ୟାଦା କ୍ଷୁଣ୍ଣ ନ କରି ଅନ୍ୟକୁ ତତ୍‌କ୍ଷଣାତ୍ ଉଦ୍‌ବେଗରୁ ମୁକ୍ତ କରିଦିଅନ୍ତି । ଜଣେ ହେଉଛନ୍ତି ଜର୍ମାନୀର ସମ୍ରାଟ ଓ ଅନ୍ୟ ଜଣକ ସ୍ୱାମୀ ବିବେକାନନ୍ଦ । ସେଇଥିପାଇଁ ତ ଆମେରିକାର ସମ୍ବାଦପତ୍ର ତାଙ୍କୁ ରାଜକୀୟ ସନ୍ନ୍ୟାସୀ (ଲର୍ଡ଼ଲି ମଙ୍କ୍) ବୋଲି ସମ୍ବୋଧନ କରି ଲେଖିଥିଲେ । ''ସ୍ୱାମୀଜୀଙ୍କର ଉପସ୍ଥିତି ଏଭଳି ଦୁର୍ଦମ୍ୟ ଶକ୍ତିରେ ଭରପୂର ଯାହା ବର୍ଣ୍ଣନା କରିବା ମୋ ପକ୍ଷରେ ଅସମ୍ଭବ । ସେ ନିଜ ଉପରେ ଧ୍ୟାନ କେନ୍ଦ୍ରିତ କରିପାରୁଥିଲେ : ଏବଂ ସେ ଯେତେବେଳେ ଗାମ୍ଭୀର୍ଯ୍ୟ ଓ ପ୍ରଗାଢ଼ତା ସହକାରେ କହୁଥିଲେ - ଅବଶ୍ୟ ଏହା ପ୍ରାୟ ଅବିଶ୍ୱାସ ଭଳି ପ୍ରତୀୟମାନ ହେଉଥିଲା - ତଥାପି ଶ୍ରୋତାଙ୍କ ମଧ୍ୟରେ କେତେଜଣ କ୍ଲାନ୍ତ ଓ ଅବଶ ହୋଇପଡୁଥିଲେ । ତାଙ୍କର ଭାବନା ଓ ତର୍କ ସେମାନଙ୍କୁ ଭୂପତିତ କରି ଦେଉଥିଲା । ଗୋଟିଏ ଘଟଣାରେ ଜଣେ ତାଙ୍କ ସହ ଯୁକ୍ତିତର୍କ କରୁଥିଲେ, କିନ୍ତୁ ଏଭଳି ସ୍ନାୟୁଗତ ଆଘାତ ସେ ପାଇଲେ ଯେ ତିନିଦିନ ଧରି ଶର୍ଯ୍ୟାଶାୟୀ ହୋଇଯାଇଥିଲେ । ତାଙ୍କର ବ୍ୟକ୍ତିତ୍ୱ ଉଭୟ ଭୟଙ୍କର ଓ ସୂକ୍ଷ୍ମ । ସେ ଯଦି ଚାହିଁବେ ଜଣକୁ ନିଃଶେଷ କରି ଦେଇପାରିବେ । ତାଙ୍କ ଭିତରେ ମଧ୍ୟ ନିହିତ ଥିଲା ବାଲ୍ୟ ସ୍ୱଭାବ ଓ ଧର୍ମଯାଜକ ସ୍ୱଭାବ ।



Digitized by srujanika@gmail.com

॥ ସତେଇଶ ॥

# ପୁନଶ୍ଚ ଇଂଲଣ୍ଡ ଯାତ୍ରା - ପ୍ରଖ୍ୟାତ ଦାର୍ଶନିକ ପ୍ରଫେସର ମେକ୍ସମୁଲରଙ୍କ ସହ ଆଳାପ ଆଲୋଚନା

ଏପ୍ରିଲ **୧୫, ୧୮୯୬**ରେ ସ୍ୱାମୀ ବିବେକାନନ୍ଦ ନିୟୁର୍କରୁ ବିଦାୟ ନେଇ ଲଣ୍ଡନ ଅଭିମୁଖେ ଜଳଯାତ୍ରା ଆରମ୍ଭ କଲେ । ଇଂଲଣ୍ଡର **ଲିଭିଙ୍ଗ୍‌ପୁଲ୍‌ରେ ପହଞ୍ଚି ରିଡ଼ିଙ୍ଗ** ସ୍ଥିତ ଶ୍ରୀ ଏଡ୍‌ୱାର୍ଡ଼ ଟି. ଷ୍ଟର୍ଡ଼ିଙ୍କ ଗୃହରେ ଅବସ୍ଥାନ କଲେ । ଗୁରୁଭାଇ ସନ୍ନ୍ୟାସୀ ସ୍ୱାମୀ ସାରଦାନନ୍ଦ ସେତେବେଳେକୁ ସେଠାରେ ପହଞ୍ଚି ସାରିଥାନ୍ତି । ସ୍ୱାମୀଜୀ ତାଙ୍କୁ ଦେଖି ଅତୀବ ଆନନ୍ଦିତ ହେଲେ କାହିଁକିନା ଦୀର୍ଘ ତିନିବର୍ଷ ହେଲା କୌଣସି ଗୁରୁଭାଇଙ୍କ ସହ ତାଙ୍କର ସାକ୍ଷାତ ହୋଇ ନ ଥିଲା । ଏତଦ୍‌ବ୍ୟତୀତ, ତାଙ୍କର ଅନୁଜ **ମହେନ୍ଦ୍ର ନାଥ** ଦତ୍ତ ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଆସିଥିଲେ । ତାଙ୍କ ସହ ସ୍ୱାମୀଜୀଙ୍କର ମଧ୍ୟ ସାକ୍ଷାତ ହେଲା । ଶ୍ରୀ ଜୋଶିହା ଜେ. ଗୁଡ୍‌ୱିନ୍ ବର୍ତ୍ତମାନ ସ୍ୱାମୀଜୀଙ୍କର ବ୍ୟକ୍ତିଗତ ସଚୀବ ଭାବେ ସର୍ବଦା ଛାଇ ପରି ତାଙ୍କ ପାଖେ ପାଖେ ରହିଥାନ୍ତି । ସୁଶ୍ରୀ ହେନ୍ରିଏଟା ମୁଲର୍ ଇଂଲଣ୍ଡରେ ସ୍ୱାମୀଜୀଙ୍କର ଅବସ୍ଥାନ ସମ୍ବନ୍ଧୀୟ ଯାବତୀୟ ଖର୍ଚ୍ଚ ତୁଲାଇଥିଲେ । ଶ୍ରୀ **ଜନ୍ ପି. ଫୋକ୍ସ** ଯାହାଙ୍କ ସହ ତାଙ୍କର ଆମେରିକାରେ ପରିଚୟ ହୋଇଥିଲା ସେ ବି ସ୍ୱାମୀଜୀଙ୍କ ସହ ରହିଥିଲେ । ମିସ୍ ମେକ୍‌ଲିଓଡ଼ ବି ସେଠାରେ ପହଞ୍ଚି ଯାଇଥିଲେ । ଏହିମାନଙ୍କୁ ନେଇ ଇଂଲଣ୍ଡରେ ସ୍ୱାମୀଜୀଙ୍କର ପରିବାର ଗଠିତ ହେଲା । ଇଂଲଣ୍ଡରେ ପୁନଶ୍ଚ ଆଧ୍ୟାତ୍ମିକ ସଭା ଅନୁଷ୍ଠିତ ହେଲା ଯେଉଁଥିରେ ସ୍ୱାମୀଜୀ ଭାଗ ନେଲେ ।

ନିର୍ଭିକତା ସ୍ୱାମୀଜୀଙ୍କର ଚରିତ୍ର । ଭୟ ରୂପକ ଏକ ମାନସିକତା ତାଙ୍କ ବାଟ ଓଗାଳି ପାରିବ ନାହିଁ । ଏକଦା ଏଠାରେ ଏଭଳି ଏକ ଘଟଣା ଘଟିଥିଲା, ଯାହା ତାଙ୍କର ନିର୍ଭୀକତାର ସ୍ପଷ୍ଟ ରୂପ ପ୍ରକାଶ କରିଥାଏ । ଏକଦା ସେ ମିସ୍ ମୁଲର୍ ଓ ଜଣେ ଇଂରାଜୀ ବନ୍ଧୁଙ୍କ ସହିତ ଲଣ୍ଡନର ବାହ୍ୟାଞ୍ଚଳରେ ଏକ ବିସ୍ତୀର୍ଣ୍ଣ ପଡ଼ିଆରେ ପଦଚାରଣ କରୁଥିଲେ । ହଠାତ୍ ଏକ ମାରଣା ଷଣ୍ଢ ସେମାନଙ୍କ ଆଡ଼କୁ ଭୟଙ୍କର ରୂପରେ ମାଡ଼ିଆସିଲା । ଇଂରାଜୀ ବନ୍ଧୁଜଣକ ଛାନିଆରେ ଦୌଡ଼ି ପାହାଡ଼ର ଅପରପାର୍ଶ୍ୱକୁ ଚାଲିଗଲେ । ସୁଶ୍ରୀ ମୁଲର୍ ପ୍ରାଣମୂର୍ଚ୍ଛା ଦୌଡ଼ି ଦୌଡ଼ି କିଛି ଦୂରରେ ଭୂପତିତ ହେଲେ । କିନ୍ତୁ ସ୍ୱାମୀଜୀ, ଷଣ୍ଢ କବଳରୁ ମିସ୍ ମୁଲର୍‌ଙ୍କୁ ରକ୍ଷା କରିବାର ଆଶା ନ ପାଇ, ହଠାତ୍ ମନେ ମନେ "ବୋଧହୁଏ ଏହାହିଁ ଶେଷ" ବୋଲି କହି ମିସ୍ ମୁଲର ଓ ଷଣ୍ଢ ମଝିରେ ଠିଆ ହୋଇ ହାତଯୋଡ଼ି କେବଳ ଷଣ୍ଢକୁ ଚାହିଁଲେ । ସେତେବେଳେ ତାଙ୍କର ମନ ଏଭଳି ଏକ

Digitized by srujanika@gmail.com

ଚିନ୍ତାରେ ମଗ୍ନ ଥିଲା ଅର୍ଥାତ ଷଣ୍ଢ ଯଦି ତା'ର ସିଙ୍ଘରେ ଆଘାତ କରେ ଅବସ୍ଥା କ'ଣ ହେବାର ଗୋଟିଏ ଅନୁମାନ କରି ସେହି ଅନୁସାରେ ନିଜର ଠିଆ ହେବାର ସ୍ଥିତିକୁ ଟାଣ କରିସାରିଥିଲେ । କିନ୍ତୁ ଘଟିଲା ଏକ ଆଶ୍ଚର୍ଯ୍ୟ ଘଟଣା, ଷଣ୍ଢ ଆଗକୁ ସାମାନ୍ୟ ମାଡ଼ିଆସି, ତା'ର ମୁହଁକୁ ଉପରକୁ ଉଠାଇ ଚାହିଁଲା ସ୍ୱାମୀଜୀଙ୍କୁ, ଏବଂ ତତ୍‌ପଶ୍ଚାତେ ଧୀରେ ଧୀରେ ପଛକୁ ହଟିଯାଇ, ପଳାୟନ କଲା । ଏହା କୌଣସି ଚମତ୍କାରିତା ନ ଥିଲା, ବରଂ ସ୍ୱାମୀଜୀଙ୍କର ନିର୍ଭୀକତାର ପ୍ରକଟୀକରଣ ପଶୁକୁ ଭୀତତ୍ରସ୍ତ କରି ଦେଇଥିଲା ।

- ୧ -

*ତାଙ୍କର ଶବ୍ଦଗୁଡ଼ିକ ତୀକ୍ଷ୍ଣ ଖଣ୍ଡା ସଦୃଶ ପାରମ୍ପରିକ ପାଣ୍ଡିତ୍ୟରେ ଆତ୍ମରକ୍ଷାର୍ଥ ବର୍ମକୁ ବିଦ୍ଧ କରୁଥିଲା; ତଥାପି ତାଙ୍କର ବକ୍ତୃତାରେ ନ ଥିଲା କୌଣସି ପ୍ରକାର ତିକ୍ତତା । ଏହି ସଂସ୍କୃତି ସମ୍ପନ୍ନ, ଦୟାଶୀଳ ହିନ୍ଦୁ ଓଠରେ ଲହରିତ ହାସ୍ୟ ତାଙ୍କର ସମସ୍ତ ସମାଲୋଚକଙ୍କୁ ନିରସ୍ତ୍ର କରି ଦେଉଥିଲା ଏବଂ ନିଜର ଚିହ୍ନ ସମସ୍ତଙ୍କ ମଧ୍ୟରେ ଛାଡ଼ି ଦେଉଥିଲେ ।*

ଅନେକ କ୍ଲବ, ସମିତି, ଶିକ୍ଷାନୁଷ୍ଠାନ ଓ ବ୍ୟକ୍ତିଗତ ବୈଠକଖାନାରେ ସ୍ୱାମୀଜୀ ପ୍ରତ୍ୟହ ବକ୍ତୃତା ପ୍ରଦାନ କରିବା ସଙ୍ଗେସଙ୍ଗେ ବହୁ ସାମ୍ବାଦିକ ତଥା ଆଧ୍ୟାତ୍ମିକ ଅନୁସନ୍ଧିତ୍ସୁଗଣ ସ୍ୱାମୀଜୀଙ୍କର ସାକ୍ଷାତକାର ନେଲେ । ଥିଓସୋଫି ସମିତିର ମୁଖ୍ୟ **ଆନି ବେସାନ୍ତ** ବି ଏକ ସଭାର ଆୟୋଜନ କରିଥିଲେ ଯେଉଁଠି ସ୍ୱାମୀଜୀ ଭକ୍ତିଯୋଗ ଉପରେ ଆଲୋଚନା କରିଥିଲେ । ଲଣ୍ଡନସ୍ଥ **ସିମାମେ** କ୍ଲବରେ ଅନୁଷ୍ଠିତ ଏକ ସଭାରେ ସ୍ୱାମୀଜୀ 'ଶିକ୍ଷା' ଉପରେ ସୁନ୍ଦର ଭାଷଣଟିଏ ପ୍ରଦାନ କରିଥିଲେ । ମିଷ୍ଟର **ଏରିକ୍ ହେମୋଣ୍ଡ** ଉକ୍ତ ବକ୍ତୃତା ଶୁଣି ଏପରି ବିମୋହିତ ହୋଇଥିଲେ ଯେ ପରବର୍ତ୍ତୀ ସମୟରେ ନିଜର ସ୍ମୃତି ଚାରଣ କରି ଲେଖିଥିଲେ - ''ତାଙ୍କର ଶବ୍ଦଗୁଡ଼ିକ ତୀକ୍ଷ୍ଣ ଖଣ୍ଡା ସଦୃଶ ପାରମ୍ପରିକ ପାଣ୍ଡିତ୍ୟରେ ଆତ୍ମରକ୍ଷାର୍ଥ ବର୍ମକୁ ବିଦ୍ଧ କରୁଥିଲା; ତଥାପି ତାଙ୍କର ବକ୍ତୃତାରେ ନ ଥିଲା କୌଣସି ପ୍ରକାର ତିକ୍ତତା । ଏହି ସଂସ୍କୃତି ସମ୍ପନ୍ନ, ଦୟାଶୀଳ ହିନ୍ଦୁ ଓଠରେ ଲହରିତ ହାସ୍ୟ ତାଙ୍କର ସମସ୍ତ ସମାଲୋଚକଙ୍କୁ ନିରସ୍ତ୍ର କରି ଦେଉଥିଲା ଏବଂ ନିଜର ଚିହ୍ନ ସମସ୍ତଙ୍କ ମଧ୍ୟରେ ଛାଡ଼ି ଦେଉଥିଲେ । ଶ୍ରୀରାମକୃଷ୍ଣଙ୍କର ଆତ୍ମା ଭାବେ ସେ ପ୍ରେରିତ, ଲୋକମାନଙ୍କ ହୃଦୟରେ ଛାପ ଛାଡ଼ିଦେବା ପାଇଁ ସେଥିରେ ସେ ପ୍ରଥମ ଚେଷ୍ଟାରେ ହେଲେ ସଫଳ । ଶିକ୍ଷକ ଛାତ୍ରର ପ୍ରେମ ପାଇଁ କାର୍ଯ୍ୟ କରିବା ଉଚିତ, ଆର୍ଥିକ ଲାଭ ପାଇଁ ନୁହେଁ, ଏପରିକି ଜୀବୀକା ପ୍ରତି ମୋହଗ୍ରସ୍ତ ହୋଇ ନୁହେଁ ।''

ଦଳଦଳ ଛାତ୍ର, ଶିକ୍ଷକ, ବୁଦ୍ଧିଜୀବୀ ଓ ସାଧାରଣ ବର୍ଗର ଜନତା ତାଙ୍କୁ ଘେରି ବସୁଥିଲେ, ବେଦାନ୍ତର ରହସ୍ୟ ଜାଣିବା ପାଇଁ କେବଳ ନୁହେଁ ସମାଜର ପ୍ରଚଳିତ ସାମାଜିକ ଓ ଅର୍ଥନୈତିକ

Digitized by srujanika@gmail.com

ବୈଷମ୍ୟ ଓ ଧର୍ମାନ୍ଧତା ବିରୋଧରେ ସୁଚିନ୍ତିତ ଆପ୍ତବାକ୍ୟ ଶୁଣିବା ପାଇଁ । ତାଙ୍କର ବକ୍ତୃତା ଯିଏ ଥରେ ଶୁଣୁଥିଲେ, ସେ ଅଧିକ ଶୁଣିବା ପାଇଁ ବ୍ୟଗ୍ର ହୋଇ ଉଠୁଥିଲେ । ଆମେରିକାରେ ଯେପରି ଖ୍ରୀଷ୍ଟଧର୍ମୀଙ୍କ କ୍ରୋଧର ସମ୍ମୁଖୀନ ସେ ହେଉଥିଲେ, ଇଂଲଣ୍ଡର ସେପରି ବିରୁଦ୍ଧଭାବ ପ୍ରକାଶ୍ୟରେ ନ ଥିଲେ ମଧ ଭିତରେ କିନ୍ତୁ କୁହୁଳିଥିଲା ଯାହା ସଭା ସମିତିରେ ବେଳେବେଳେ ପ୍ରଶ୍ନ ଓ ଅବାନ୍ତର ମନ୍ତବ୍ୟ ରୂପରେ ପ୍ରକାଶିତ ହେଉଥିଲା । ଗୋଟିଏ ସଭାରେ ସ୍ୱାମୀଜୀ ବକ୍ତୃତା ପ୍ରଦାନ ଶେଷ କରିବା ବେଳେ ଜଣେ ଶୁଭ୍ରକେଶୀ ସୁପରିଚିତ ଦାର୍ଶନିକ ସ୍ୱାମୀଜୀଙ୍କୁ ପ୍ରଶ୍ନ କଲେ, ''ଆପଣ ଚମତ୍କାର ବକ୍ତୃତା ପ୍ରଦାନ କଲେ । ସାର୍, ମୁଁ ସେଥିପାଇଁ ଆପଣଙ୍କୁ ମୋର ହୃଦୟରୁ ଧନ୍ୟବାଦ ପ୍ରଦାନ କରୁଛି, କିନ୍ତୁ ଆପଣ ଆମକୁ କିଛି ନୂଆ କଥା କହିଲେ ନାହିଁ ।'' ସ୍ୱାମୀଜୀଙ୍କର ଗଭୀର ଭାବପୂର୍ଣ୍ଣ ସ୍ୱର ଉତ୍ତର ରୂପରେ ସଭା କକ୍ଷରେ ତରଙ୍ଗାୟିତ ହେଲା - ''ସାର୍, ଆପଣଙ୍କୁ ମୁଁ ସତ୍ୟ କହିଛି । ସେହି ସତ୍ୟ ସ୍ମରଣାତୀତ ପାହାଡ଼ ଭଳି ପ୍ରାଚୀନ, ମାନବତା ଭଳି ପ୍ରାଚୀନ, ସୃଷ୍ଟି ଭଳି ପ୍ରାଚୀନ ଏବଂ ମହାନ୍ ଈଶ୍ୱର ଭଳି ପ୍ରାଚୀନ । ମୁଁ ଯଦି ଏଭଳି ଶବ୍ଦରେ ଆପଣଙ୍କୁ କହିଛି ଯାହା ଆପଣଙ୍କୁ ଭାବିବା ପାଇଁ ସକ୍ଷମ କଲା, ଆପଣଙ୍କର ଭାବନା ଶକ୍ତିରେ ମଗ୍ନ ରହିବା ପାଇଁ ପ୍ରେରଣା ପ୍ରଦାନ କଲା, ମୁଁ କ'ଣ ଆପଣଙ୍କୁ ଏହା କହିବାରେ ସାହାଯ୍ୟ କରିନାହିଁ କି ?''

ସଭାକକ୍ଷ ମଧ୍ୟରେ ''ଶୁଣ ହେ ଶୁଣ'' ସ୍ୱର ଗୁଞ୍ଜରିତ ହେବା ସହ ଶ୍ରୋତାଙ୍କ କର ତାଳିରେ ପରିବେଶ ମୁଖରିତ ହୋଇଉଠିଲା । ଉକ୍ତ ସଭାଗୃହରେ ଉପସ୍ଥିତ ଜଣେ ମହିଳା ଠିଆହୋଇ କହି ଉଠିଲେ, ''ମୋ ଜୀବନକାଳରେ ନିୟମିତ ଚର୍ଚ୍ଚ ସେବାରେ ବହୁବାର ଯୋଗ ଦେଇଛି । ସେମାନଙ୍କର ବିରକ୍ତିକର ଓ ପ୍ରାଣହୀନ ଚର୍ଚ୍ଚା ସମସ୍ତଙ୍କୁ ଶୁଷ୍କ ଓ ନିରର୍ଥକ କରିଦିଏ । ସେମାନଙ୍କ କଥା ଶୁଣିବାକୁ ମୁଁ ସେଠାକୁ ଯାଏ, କାରଣ ଅନ୍ୟମାନେ ସେମାନଙ୍କ ପାଖକୁ ଯାଆନ୍ତି । ସ୍ୱାମୀଜୀଙ୍କର ବକ୍ତୃତା ଶୁଣିବା ପରେ ଦେଖୁଛି ଯେ ଧର୍ମରେ ଆଲୋକର ବନ୍ୟା ଖେଳିଯାଇଛି । ଏହା ସତ୍ୟ; ଏହା ନିରନ୍ତର ରହିଛି; ଏହାର ଏକ ନୂତନ ଆନନ୍ଦ ସ୍ଫୁରିତ ଅର୍ଥ ରହିଛି ଏବଂ ମୋ ପାଇଁ ଏହା ଏକ ସମ୍ପୂର୍ଣ୍ଣ ରୂପାନ୍ତରିତ ଧର୍ମ ।

ସ୍ୱାମୀଜୀ ପୁନଶ୍ଚ କହିବାକୁ ଆରମ୍ଭ କଲେ, ''ମୁଁ ଆପଣମାନଙ୍କୁ କହିବି ଯେ ମୁଁ କିପରି ସତ୍ୟକୁ ଉପଲବ୍ଧି କଲି ।'' ଶ୍ରୀରାମକୃଷ୍ଣଙ୍କର ସାଂସାରିକ ଜୀବନ ଯାତ୍ରା, ତାଙ୍କର ସୂକ୍ଷ୍ମ ଓ ସରଳ ଚରିତ୍ର; ଧାର୍ମିକ ସ୍ତରରେ ତାଙ୍କର ସତ୍ୟ ପାଇଁ ଅପ୍ରତିହତ ଅନ୍ୱେଷଣ : ତାଙ୍କର ଅବିଷ୍କାର ଓ ସୂକ୍ଷ୍ମ ଘୋଷଣା ''ମୁଁ ଯେଉଁଠି, ସତ୍ୟ ସେଇଠି'' ସମ୍ବନ୍ଧରେ ବହୁ ବିଷୟ ଦ୍ୱାରା ଶ୍ରୋତାଗଣ ଆଲୋକିତ ହୋଇଥିଲେ । ସ୍ୱାମୀଜୀ ପୁନଶ୍ଚ କହିଲେ, ''ମୁଁ ସତ୍ୟକୁ ଠାବ କରିଛି କାରଣ ମୋ ହୃଦୟରେ ତାହା ପୂର୍ବରୁ ରହିଛି । ଆପଣମାନେ ନିଜକୁ ପ୍ରତାରିତ କରନ୍ତୁ ନାହିଁ । ଆପଣମାନେ କଳ୍ପନା କରନ୍ତୁ ନାହିଁ ଯେ ଗୋଟିଏ ଧର୍ମ ମତରେ ଆପଣ ତାହା ପାଇବେ କିମ୍ବା ଅନ୍ୟ ଗୋଟିଏ ଧର୍ମମତରେ ତାହା ଆପଣ ପାଇଯିବେ । ଏହା ଆପଣଙ୍କ ଭିତରେ ରହିଛି । ଆପଣଙ୍କର ଧର୍ମମତ ଏହା ଆପଣଙ୍କୁ ଦେବନାହିଁ, ଆପଣ ନିଜେ ହିଁ ଆପଣଙ୍କ ଧର୍ମ ମତକୁ ଦେବେ । ମନୁଷ୍ୟ ଓ ପୁରୋହିତଗଣ ଏହାର ବିଭିନ୍ନ ନାମକରଣ କରନ୍ତି । ସେମାନେ ଗୋଟିଏ ଜିନିଷ କିମ୍ବା ଅନ୍ୟ ଗୋଟିଏ ଜିନିଷରେ

Digitized by srujanika@gmail.com

ବିଶ୍ୱାସ ସ୍ଥାପନ କରିବାକୁ କୁହନ୍ତି । ଶୁଣନ୍ତୁ, ଆପଣଙ୍କ ଭିତରେ ଏହି ପରମ ସତ୍ୟ ବିରାଜିତ, ଏହି ଅମୂଲ୍ୟ ମୁକ୍ତା ଆପଣଙ୍କ ଭିତରେ ରହିଛି । ତାହା ଏକ ଓ ଅଭିନ୍ନ ଭାବେ ବିରାଜିତ । ଶୁଣନ୍ତୁ ମୋ କଥା : ତୁମେ ହିଁ ସେ । ତତ୍ ସତ୍ ।

- ୨ -

*ମୁଁ ତାଙ୍କୁ ଜଣେ ଭାଷାତତ୍ତ୍ୱବିତ୍ କିମ୍ବା ମେଧାବୀ ପଣ୍ଡିତ ଭାବେ ଦେଖି ନ ଥିଲି ବରଂ ଏକ ଆତ୍ମା ଯିଏ ପ୍ରତିଦିନ ବ୍ରହ୍ମଙ୍କ ସହ ଏକ ଓ ଅଭିନ୍ନ ହେବାର ଉପଲବ୍ଧି କରିପାରୁଥିଲେ, ଏକ ହୃଦୟ ଯିଏ ସାର୍ବଜନୀନ ସତ୍ତା ସହ ପ୍ରତି ମୁହୂର୍ତ୍ତରେ ଏକ ଓ ଅଭିନ୍ନ ଭାବେ ପ୍ରସାରିତ ହୋଇ ଯାଉଥିଲେ ବୋଲି ମୁଁ ତାଙ୍କୁ ଦେଖିପାରିଲି... ।*

ଲଣ୍ଡନରେ ଅବସ୍ଥାନ କରୁଥିବା ସମୟରେ ଅକ୍ସଫୋର୍ଡ଼ ୟୁନିଭରସିଟିର ପ୍ରାଚ୍ୟ ଦର୍ଶନର ପ୍ରଖ୍ୟାତ ପ୍ରଫେସର ମେକ୍ସମୁଲର୍ ସ୍ୱାମୀଜୀଙ୍କୁ ନିଜର ବାସଭବନକୁ ନିମନ୍ତ୍ରଣ କରିଥିଲେ । ଏହା **୧୮୯୬ ମେ ୨୮** ତାରିଖ ଥିଲା । ଦୁଇଟି ମହାନ୍ ମନର ମିଳନ ସେଦିନ ହୋଇଥିଲା । ସମଗ୍ର ବିଶ୍ୱ, ମହାମାନବ ଦ୍ୱୟଙ୍କର ଆଲୋଚନା ଓ କଥୋପକଥନରେ ନିଶ୍ଚିତ ଭାବେ ଆଲୋକିତ ହୋଇଛି । ଜଣେ ଅସ୍ତଗାମୀ ସୂର୍ଯ୍ୟ, ଅନ୍ୟ ଜଣେ ଦ୍ୱିପ୍ରହରର ମାର୍ତ୍ତଣ୍ଡ । ଅନନ୍ତ ଆକାଶରେ ଦୁଇଜଣଙ୍କର ମିଳନ ମାନବ ଇତିହାସରେ ଏକ ଅବିସ୍ମରଣୀୟ ଅସାଧାରଣ ଘଟଣା ହୋଇ ରହିଯାଇଛି । ସ୍ୱାମୀ ବିବେକାନନ୍ଦ ସ୍ୱୟଂ ବ୍ରହ୍ମବାଦିନ ପତ୍ରିକାକୁ *୬.୬.୧୮୯୬*ରେ ଉକ୍ତ ମିଳନର ଆନନ୍ଦଦାୟିକ ଓ ଶୁଭ ମୁହୂର୍ତ୍ତ ସମ୍ବନ୍ଧରେ ଲେଖିଥିଲେ :

... ପ୍ରଫେସର ମେକ୍ସମୁଲର କିଭଳି ଜଣେ ଅସାଧାରଣ ବ୍ୟକ୍ତିତ୍ୱ । ଅଳ୍ପ ଦିନ ତଳେ ମୁଁ ତାଙ୍କୁ ସାକ୍ଷାତ କରିଥିଲି । ତାଙ୍କୁ ସମ୍ମାନ ଜଣାଇବା ଲାଗି ଯାଇଥିଲି । କାହିଁକିନା ଯିଏ ଶ୍ରୀରାମକୃଷ୍ଣଙ୍କୁ ଭଲ ପାଏ, ସେହି ବ୍ୟକ୍ତିର ଯାହାବି ସମ୍ପ୍ରଦାୟ, ଧର୍ମମତ କିମ୍ବା ଜାତୀୟତା ହେଉଥାଉ ପଛକେ, ତାଙ୍କ ନିକଟକୁ ମୋର ଗମନ ଏକ ତୀର୍ଥ ଯାତ୍ରା ବୋଲି ମୁଁ ଭାବେ ।

ପ୍ରଥମେ ପ୍ରଫେସର ବ୍ରାହ୍ମସମାଜର ମୁଖ୍ୟ ପୁରୋଧା ସ୍ୱର୍ଗତ କେଶବଚନ୍ଦ୍ର ସେନ୍‌ଙ୍କ ଜୀବନରେ ହଠାତ୍ ଓ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ପଶ୍ଚାତରେ ନିହିତ ଶକ୍ତି ଏବଂ ପରେ ଶ୍ରୀରାମକୃଷ୍ଣଙ୍କର ଜୀବନୀ ଓ ଉପଦେଶନର ଜଣେ ଉତ୍ସୁକ ଶିଷ୍ୟ ଓ ପ୍ରଶଂସକ ହେବା ସମ୍ବନ୍ଧରେ ଜାଣିବା ପାଇଁ ଆଗ୍ରହାନ୍ୱିତ ହୋଇଥିଲେ । ''ଶ୍ରୀରାମକୃଷ୍ଣ ଆଜି ହଜାର ହଜାର ଲୋକଙ୍କ ଦ୍ୱାରା ପୂଜିତ, ପ୍ରଫେସର ମହାଶୟ'' ମୁଁ କହିଲି । ''ଏଭଳି ବ୍ୟକ୍ତିଙ୍କୁ ଯଦି ପୂଜା କରା ନ ଯିବ, ତେବେ ଆଉ କାହାକୁ କରାଯିବ ?'' ଥିଲା ପ୍ରଫେସରଙ୍କର ଉତ୍ତର । ପ୍ରଫେସର ନିଜେ ହିଁ ଜଣେ କାରୁଣ୍ୟ ହୃଦୟର ବ୍ୟକ୍ତି, ସେ ମୋତେ ଓ ମିଷ୍ଟର ଷ୍ଟର୍ଡ଼ିଙ୍କୁ ତାଙ୍କ ସହ ମଧ୍ୟାହ୍ନ ଭୋଜନ ପାଇଁ ଅନୁରୋଧ କଲେ । ସେ ଆମକୁ ଅକ୍ସଫୋର୍ଡ଼ ୟୁନିଭରସିଟିର ବହୁ କଲେଜ ତଥା **ବୋଡ୍‌ଲିଆନ୍** ଲାଇବ୍ରେରୀ ବୁଲାଇ

Digitized by srujanika@gmail.com

ଦେଖାଇଲେ । ସେ ଆମକୁ ରେଲଷ୍ଟେସନ ପର୍ଯ୍ୟନ୍ତ ବାଟେଇ ଦେବାପାଇଁ ଆସିଲେ ଏବଂ ଏହିସବୁ କାହିଁକି କରୁଛନ୍ତି ବୋଲି ପଚାରିବାରୁ ସେ କହିଲେ, ''ଶ୍ରୀରାମକୃଷ୍ଣ ପରମହଂସଙ୍କର ଶିଷ୍ୟଙ୍କ ସହ ସାକ୍ଷାତ କରିବାର ସୁଯୋଗ ପ୍ରତିଦିନ ମିଳେ ନାହିଁ ।''

ତାଙ୍କ ସହ ସାକ୍ଷାତ ମୋ ପାଇଁ ଥିଲା ସତ୍ୟର ପ୍ରକାଶ । ସେହି ସୁନ୍ଦର ଛୋଟ ଗୃହ, ଏହାର ସୁନ୍ଦର ବଗିଚା, ପକ୍ୱ ଶୁଭ୍ରକେଶୀ ଋଷି ମସ୍ତକ, ଶାନ୍ତ ଓ ମଙ୍ଗଳାକାଂକ୍ଷୀ ମୁଖମଣ୍ଡଳ, ଶିଶୁର କପାଳ ଭଳି ମସୃଣ ଯଦିଓ ସତୁରଟି ଶୀତଋତୁ ସେ ଅତିକ୍ରମ କରି ସାରିଥିଲେ, ତାଙ୍କ ଭିତରେ କେଉଁଠି ଲୁକ୍‌କାୟିତ ରହିଥିବା ଆଧ୍ୟାତ୍ମିକତାର ଗଭୀର ଖଣି ସୂଚିତ ହେଉଥିଲା ତାଙ୍କ ମୁଖମଣ୍ଡଳର ପ୍ରତ୍ୟେକ ରେଖାରେ; ପ୍ରେରଣାପୂର୍ଣ୍ଣ ଉତ୍ସାହ ଏବଂ ବିରୋଧ ଓ ଘୃଣାକୁ ପ୍ରତିହତ କରିବାର ତାଙ୍କର ଦୀର୍ଘ ଓ କଷ୍ଟଦାୟକ ସଂଗ୍ରାମୀ ଜୀବନରେ ସାଥୀ ଭାବରେ କାର୍ଯ୍ୟରତ ତାଙ୍କର ମହତ୍ ଭାବାପନ୍ନ ପତ୍ନୀ ଏବଂ ପ୍ରାଚୀନ ଋଷୀଙ୍କର ଭାବଧାରା ପ୍ରତି ତାଙ୍କର ଆଦର ଓ ସମ୍ମାନ - ବୃକ୍ଷରାଜି, ପୁଷ୍ପରାଜି, ଶାନ୍ତ ବାତାବରଣ ଓ ସ୍ୱଚ୍ଛ ଆକାଶ - ଏହି ସମସ୍ତ ଦୃଶ୍ୟ ବ୍ରହ୍ମର୍ଷି ଓ ରାଜର୍ଷି, ବାନପ୍ରସ୍ଥ, ଅରୁନ୍ଧତି ଓ ବଶିଷ୍ଠଙ୍କ ଭଳି ପ୍ରାଚୀନ ଭାରତର ଗୌରବ ଦିଗଗୁଡ଼ିକୁ ମୋର ମନ କଳ୍ପନାରେ ଭାସିଥିଲା ।

ମୁଁ ତାଙ୍କୁ ଜଣେ ଭାଷାତତ୍ତ୍ୱବିତ୍ କିମ୍ବା ମେଧାବୀ ପଣ୍ଡିତ ଭାବେ ଦେଖି ନ ଥିଲି ବରଂ ଏକ ଆତ୍ମା ଯିଏ ପ୍ରତିଦିନ ବ୍ରହ୍ମଙ୍କ ସହ ଏକ ଓ ଅଭିନ୍ନ ହେବାର ଉପଲବ୍ଧି କରିପାରୁଥିଲେ, ଏକ ହୃଦୟ ଯିଏ ସାର୍ବଜନୀନ ସତ୍ତା ସହ ପ୍ରତି ମୁହୂର୍ତ୍ତରେ ଏକ ଓ ଅଭିନ୍ନ ଭାବେ ପ୍ରସାରିତ ହୋଇ ଯାଉଥିଲେ ବୋଲି ମୁଁ ତାଙ୍କୁ ଦେଖିପାରିଲି... ।

...ଭାରତ ପ୍ରତି ତାଙ୍କର କିଭଳି ପ୍ରେମ ! ମୋ ମାତୃଭୂମି ପାଇଁ ତାଙ୍କ ଭଳି ଶହେରୁ ଏକ ଭାଗ ପ୍ରେମ ମୋର ନାହିଁ ମୁଁ ଭାବୁଛି । ଅସାଧାରଣତ୍ୱରେ ଭୂଷିତ ଏବଂ ଏକ ସଙ୍ଗରେ ଧାରଣ କରିଛନ୍ତି ଗଭୀର ସକ୍ରିୟ ମନ । ଏହା ସହିତ ସେ ପଚାଶବର୍ଷରୁ ଅଧିକ କାଳ ଭାରତୀୟ ଚିନ୍ତାଧାରାର ରାଜ୍ୟରେ ଅବସ୍ଥିତ ଓ ଭ୍ରମଣରତ ଏବଂ ଗଭୀର ଉତ୍ସାହ ଓ ଆନ୍ତରିକ ପ୍ରେମ ସହିତ ସଂସ୍କୃତ ସାହିତ୍ୟର ଅନନ୍ତ ଅରଣ୍ୟରେ ଆଲୋକ ଓ ଛାୟାର ସୂକ୍ଷ୍ମ ପରସ୍ପର ବିନିମୟ ନିରୀକ୍ଷଣ କରୁଥିଲେ । ସେସବୁ ଘଟଣା ତାଙ୍କ ଆତ୍ମାରେ ବିଲୟ ଓ ତାଙ୍କର ସମଗ୍ର ସତ୍ତାକୁ ରଞ୍ଜିତ କରିବା ପର୍ଯ୍ୟନ୍ତ ଉକ୍ତ ନିରୀକ୍ଷଣ ପ୍ରକ୍ରିୟା ଜାରି ରହିଥିଲା । ମେକ୍ସମୁଲର୍ ବେଦାନ୍ତୀଗଣଙ୍କର ବେଦାନ୍ତୀ ଥିଲେ ।

''ଆପଣ କେବେ ଭାରତବର୍ଷ ଆସିବେ ? ଯିଏ ଭାରତର ପୂର୍ବପୁରୁଷଙ୍କର ଚିନ୍ତାଧାରାକୁ ସତ୍ୟାଲୋକରେ ଉଦ୍‌ଭାସିତ କରିବା ଲାଗି ବହୁ କିଛି ତ୍ୟାଗ କରିଛନ୍ତି, ତାଙ୍କୁ ପ୍ରତ୍ୟେକ ହୃଦୟ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ସେଠାରେ ପ୍ରସ୍ତୁତ ରହିଛନ୍ତି ବୋଲି ମୁଁ ତାଙ୍କୁ କହିଲି । ବୟବୃଦ୍ଧ ଋଷିଙ୍କର ମୁଖମଣ୍ଡଳ ଆଲୋକିତ ହୋଇଉଠିଲା - ଚକ୍ଷୁଦ୍ୱୟ ଅଶ୍ରୁରେ ହେଲା ଛଳ ଛଳ, ଧୀର ଭାବରେ ମସ୍ତକ ହଲାଇ ଏବଂ ମୃଦୁ ଭାଷାରେ କହି ଉଠିଲେ : ସେଠାରୁ ମୁଁ ଆଉ ଫେରିବି ନାହିଁ; ସେଠାରେ ତୁମେ ମୋର ଶେଷକୃତ୍ୟ ସମାପନ କରିବ ।''

Digitized by srujanika@gmail.com

ପ୍ରଫେସର ମେକ୍ସମୁଲର୍‌ଙ୍କୁ ସ୍ୱାମୀଜୀ ଯେପରି ଏକ ମହାନ୍ ଦୀପ୍ତିମନ୍ତ ପ୍ରାଚୀନ ଋଷି ଭଳି ଅବଲୋକନ କରିଥିଲେ, ତାହାଠାରୁ ଅଧିକ ତେଜସ୍ୱୀ ଓ ମାନବ ସଭ୍ୟତାର ରକ୍ଷକ ଭାବେ ପ୍ରଫେସରଙ୍କ ଦୃଷ୍ଟିରେ ସ୍ୱାମୀଜୀ ଉଦ୍‌ଭାସିତ ହୋଇଥିଲେ । ପ୍ରଫେସର କହିଥିଲେ ଯେ ଶ୍ରୀରାମକୃଷ୍ଣ ନିଜେ ହିଁ ସ୍ୱାମୀଜୀଙ୍କୁ ତାଙ୍କ ପାଖକୁ ପଠାଇଥିଲେ । ତାଙ୍କ କହିବାର ଅର୍ଥ ହେଉଛି ଯେ ସେତେବେଳକୁ ପ୍ରଫେସର ମେକ୍ସମୁଲର ଶ୍ରୀରାମକୃଷ୍ଣଙ୍କ ଉପରେ ଏକ କ୍ଷୁଦ୍ର ପୁସ୍ତିକା ରଚନା କରିସାରିଥିଲେ । ଶ୍ରୀରାମକୃଷ୍ଣଙ୍କର ଜୀବନୀ ଓ ଉପଦେଶନ ଦ୍ୱାରା ସେତେବେଳକୁ ସେ ଜ୍ଞାନାଲୋକିତ । ଏହି ଦୁଇ ମହାନ୍ ଆତ୍ମାଙ୍କର ସାକ୍ଷାତ ଓ ଆଧ୍ୟାତ୍ମିକ ଆଲୋଚନାର ଗଭୀରତାକୁ ମାପି ହେବନାହିଁ । ନୋବେଲ ପୁରସ୍କାର ବିଜେତା ତଥା ଫରାସୀ ସାହିତ୍ୟିକ ଓ ଦାର୍ଶନିକ ରୋମାଁ ରୋଲା ଏହି ଦୁଇ ମହାନ ଆତ୍ମାର କଥୋପକଥନକୁ ବର୍ଣ୍ଣନା କରି କହିଥିଲେ "ସ୍ୱର୍ଣ୍ଣକାର କେବଳ ଅଳଙ୍କାରର ମୂଲ୍ୟ ବୁଝିପାରିବ ।" ପ୍ରଫେସର ମେକ୍ସମୁଲର ଓ ସ୍ୱାମୀଜୀଙ୍କ ଭିତରେ ଗଢ଼ିଉଠିଲା ଏକ ଅନାବିଳ ଓ ପବିତ୍ର ବନ୍ଧୁତ୍ୱ ଓ ସଂପର୍କ ଯାହା ସମୟର କଷଟି ପଥରରେ ବାରମ୍ବାର ପରୀକ୍ଷିତ ହୋଇ ବି ଏକ ପ୍ରେରଣାର ଉତ୍ସ ଭାବେ ଚିର ଭାସ୍ୱର ହୋଇ ରହିଛି ।

- ୩ -

*ଆଜି ମୁଁ ଯାହାକିଛି, ପୂର୍ବରୁ ଯାହାକିଛି ଥିଲି, ସେସବୁ କିଛି ନୁହେଁ ବରଂ ତାଙ୍କ ହାତରେ ମୁଁ କେବଳ ଯନ୍ତ୍ରଟିଏ, ଯାହାଙ୍କ ସେବାପାଇଁ ମୁଁ ସବୁକିଛି ପରିତ୍ୟାଗ କରିଛି - ମୋ ପ୍ରେମିକ, ମୋ ଆନନ୍ଦ, ମୋ ଜୀବନ ? ସେ ମୋର ଲୀଳାମୟ ପ୍ରିୟତମ । ମୁଁ ତାଙ୍କର କ୍ରୀଡ଼ନକ । ନା ବ୍ରହ୍ମାଣ୍ଡରେ ରହିଛି ଛନ୍ଦ ନା ବୁଦ୍ଧି । କେଉଁ ବୁଦ୍ଧି ତାଙ୍କୁ ବାନ୍ଧି ପାରିବ ? ସେ ହି ଲୀଳାମୟ ସତ୍ତା ଯିଏ ନିଜ ନାଟକରେ ସ୍ୱୟଂ ହସୁଛନ୍ତି ଓ କାନ୍ଦୁଛନ୍ତି ।*

ଲଣ୍ଡନରେ ସ୍ୱାମୀଜୀଙ୍କର ଆଧ୍ୟାତ୍ମିକ ଶିକ୍ଷା ବିଶେଷ କରି ବୈଦାନ୍ତିକ ମାର୍ଗର ଶିକ୍ଷା ସଫଳତାର ପାହାଚ ପରେ ପାହାଚ ଅତିକ୍ରମ କଲା । ସ୍ୱାମୀଜୀ ସେତେବେଳକୁ ଅନୁଭବ କଲେଣି ଯେ ସମଗ୍ର ବିଶ୍ୱରେ ଲଣ୍ଡନ ଏକ କେନ୍ଦ୍ରସ୍ଥଳୀ ହୋଇଥିବାରୁ ଭାରତର ଆତ୍ମା ଏଠାରେ ଅବସ୍ଥାନ କରୁଛି । ତେଣୁ ଭାରତୀୟ ଧର୍ମ ଓ ସଂସ୍କୃତିର ମୂଳଦୁଆ ଏଠାରେ ସ୍ଥାପନ କରିବାକୁ ହେବ । ଗୁରଭାଇ ସନ୍ନ୍ୟାସୀ ସ୍ୱାମୀ ଅଭେଦାନନ୍ଦଙ୍କୁ ଏଠାରେ ଶୀଘ୍ର ପହଞ୍ଚାଇବାକୁ ସେ କଲିକତା ମଠକୁ ପତ୍ର ଲେଖିଥିଲେ । କାରଣ ସ୍ୱାମୀ ସାରଦାନନ୍ଦ ଆମେରିକାର ଦାୟିତ୍ୱ ନେବା ଲାଗି ଇଂଲଣ୍ଡରୁ ସେତେବେଳେ ପ୍ରସ୍ଥାନ କରୁଥାନ୍ତି । ସଂଗଠନକୁ ଉଭୟ ଆମେରିକା ଓ ଇଂଲଣ୍ଡରେ ସୁଦୃଢ଼ କରିବା ଥିଲା ତାଙ୍କର ଲକ୍ଷ୍ୟ, ସେଥିପାଇଁ ସେ ଚିଠିରେ ଲେଖିଥିଲେ, "ସଂଗଠନର ଶକ୍ତି ଏବଂ ଆଜ୍ଞାନୁବର୍ତ୍ତିତା ହିଁ ଏହାର ଗୋପନୀୟତା ।"

Digitized by srujanika@gmail.com

ଏହିଠାରେ ସ୍ୱାମୀଜୀଙ୍କର ଆଧ୍ୟାତ୍ମିକ ଭାବନା ଓ ଚିନ୍ତା ସଂସାର ଠାରୁ ବହୁ ଉର୍ଦ୍ଧ୍ୱରେ ଉଡୁଥିଲା । ସବୁବେଳେ ତେଜସ୍ୱୀ ଓ ଭାବାତୀତ ଚିନ୍ତାରେ ମଗ୍ନ ହୋଇ ସମସ୍ତଙ୍କୁ ପ୍ରେମ ଓ କରୁଣାରେ ବୁଡାଇ ରଖୁଥିଲେ । ଲଣ୍ଡନରେ ରହୁଥିବା ସମୟରେ ସ୍ୱାମୀଜୀଙ୍କର ଚେତନା ଆଉ ଦେହ ଓ ମନ ଭିତରେ ରହିପାରୁ ନଥିଲା । ଅନନ୍ତ ଅଭିମୁଖେ ଧାବିତ ହେଉଥିବାରୁ, 'ତୋର ଓ ମୋର' ମନୋଭାବ ବ୍ୟକ୍ତି ସ୍ତରରୁ ରୂପାନ୍ତରିତ ହୋଇ ସାର୍ବଜନୀନ ସ୍ତରରେ ବାରମ୍ବାର ବୁଡି ଯାଉଥିଲା । ନିଜର ଆଧ୍ୟାତ୍ମିକ ଭାବ ସମୁଦ୍ରର ଉତ୍ତାଳ ତରଙ୍ଗରେ ଭାସି ଭାସି ଯେଉଁ ପ୍ରେମ ଓ କରୁଣା ସେ ସମସ୍ତଙ୍କ ଉପରେ ବର୍ଷଣ କରୁଥିଲେ, ତାହାର ଝଲକ ଏକ ଚିଠିରୁ ଅନୁମାନ କରିହେବ । ଲଣ୍ଡନରୁ **ଜୁଲାଇ ୧୮୯୬ ଛଅ** ତାରିଖରେ ସେ ଏକ ଚିଠି ଆମେରିକାର ମିଷ୍ଟର **ଫ୍ରାନ୍‌ସିସ୍ ଏବ୍ ଲେଗେଟ୍‌**ଙ୍କ ନିକଟକୁ ଲେଖିଥିଲେ ।

''ଲଣ୍ଡନରେ ମୋର କାର୍ଯ୍ୟ ନୀରବତା ସହ ସୁଚାରୁଭାବେ ସମ୍ପାଦିତ ହେଉଛି । ଅଧିକାଂଶ ପୁରୁଷ ଓ ମହିଳା ମୋ ପାଖକୁ ଆସୁଛନ୍ତି ଓ ମୋର କାର୍ଯ୍ୟ ସମ୍ବନ୍ଧରେ ପଚାରୁଛନ୍ତି । ଏହି ବ୍ରିଟିସ୍ ସାମ୍ରାଜ୍ୟ, ଏହାର ସମସ୍ତ ତ୍ରୁଟି ସତ୍ତ୍ୱେ, ଏକ ବିଶାଳ ଯନ୍ତ୍ର ଯାହା ଅନେକ ଧାରଣା ଓ ଦୃଷ୍ଟିକୋଣର ପ୍ରଚାର ନିମନ୍ତେ ତିଷ୍ଠି ରହିଛି । ଏହି ଯନ୍ତ୍ରର କେନ୍ଦ୍ରସ୍ଥଳୀରେ ମୋର ଧାରଣାକୁ ରଖିବା ପାଇଁ ମୁଁ ଚାହେଁ, ଯା'ଫଳରେ ସେଗୁଡ଼ିକ ସମଗ୍ର ବିଶ୍ୱରେ ପ୍ରସାରିତ ହେବ । ଅବଶ୍ୟ ସମସ୍ତ ମହାନ୍ କାର୍ଯ୍ୟର ଗତି ଧୀର ଏବଂ ବହୁ କଷ୍ଟ ଓ ସମସ୍ୟାର ସମ୍ମୁଖୀନ ହୋଇଥାଏ, ବିଶେଷକରି ଆମ କ୍ଷେତ୍ରରେ କାହିଁକିନା ହିନ୍ଦୁମାନେ ପରାଜିତ ଜାତି । ସେଥିପାଇଁ ତ ଏହା କରିବାକୁ ହେବ, କାରଣ ଆଧ୍ୟାତ୍ମିକ ଆଦର୍ଶ ସର୍ବଦା **ନିଷ୍ପୀଡ଼ିତ**ଠାରୁ ଜାତ । ଇହୁଦିମାନେ ରୋମ ସାମ୍ରାଜ୍ୟକୁ ଆଧ୍ୟାତ୍ମିକ ଆଦର୍ଶରେ ଅଭିଭୂତ କରିଦେଇଥିଲେ । ତୁମେ ଜାଣି ଖୁସି ହେବ ଯେ ଧୈର୍ଯ୍ୟ ଓ କରୁଣା ସହିତ ମୁଁ ପ୍ରତିଦିନ କିଛି ଶିଖୁଛି । ମୁଁ ଭାବୁଛି, ଦିବ୍ୟତ୍ୱ ଏପରିକି **ଉଦ୍ଧତ ଆଙ୍ଗ୍ଲୋ ଇଣ୍ଡିଆନ୍‌**ଙ୍କ ମଧ୍ୟରେ ଦର୍ଶନ କରିବା ଆରମ୍ଭ କରିଛି । ମୁଁ ଭାବୁଛି ଯେ ମୁଁ ଧୀରେ ଧୀରେ ସେହି ଅବସ୍ଥା ଅଭିମୁଖେ ଅଗ୍ରସର ହେଉଛି ଯେଉଁଠାରେ ସୈତାନକୁ ବି ମୁଁ ଭଲ ପାଇବାକୁ ସମର୍ଥ ହେବି, ଅବଶ୍ୟ ସୈତାନ ଭଳି ଏକ ସତ୍ତା ଯଦି ଥାଏ ।

ମୋର ବୟସ ଯେତେବେଳେ କୋଡ଼ିଏ, ମୁଁ ସେତେବେଳେ ଜଣେ ଅସଂବେଦନଶୀଳ ଓ ସାଲିସହୀନ ଉଗ୍ରଭାବାପନ୍ନ ଯୁବକ ଥିଲି । କଲିକତାର ନାଟକଶାଳା ନିକଟସ୍ଥ ରାସ୍ତାରେ ମୁଁ ଚାଲିବାକୁ ପସନ୍ଦ କରୁ ନଥିଲି । ବର୍ତ୍ତମାନ ତେତିଶବର୍ଷ ବୟସରେ ମୁଁ ସେହି ଗୃହରେ ବେଶ୍ୟାମାନଙ୍କ ସହ ବାସ କରିପାରିବି ଏବଂ ସେମାନଙ୍କୁ ପଦେ ଅପମାନସୂଚକ କଥାଟିଏ କହିବାକୁ ଚିନ୍ତା ବି କରିପାରିବି ନାହିଁ । ଏହା କ'ଣ ଅଧଃପତନ ? କିମ୍ବା ମୁଁ କ'ଣ ସାର୍ବଜନୀନ ପ୍ରେମ ଯିଏ ସ୍ୱୟଂ ପରମାତ୍ମା ତାଙ୍କ ଅଭିମୁଖେ ବିସ୍ତାରିତ ହୋଇଯାଉଛି ? ପୁନଶ୍ଚ ମୁଁ ଶୁଣିଛି ଯେ ଯିଏ ନିଜ ଚତୁଃପାର୍ଶ୍ୱରେ କୌଣସି ମନ୍ଦ ଦେଖେନାହିଁ, ସେ ଭଲ କାମ କରିପାରିବ ନାହିଁ - ସେ ଏକ ପ୍ରକାର ଅଦୃଷ୍ଟବାଦରେ ପତିତ ହୁଏ । ମୁଁ କିନ୍ତୁ ତାହା ଦେଖିପାରୁ ନାହିଁ ।

*Digitized by srujanika@gmail.com*

ଅନ୍ୟପକ୍ଷରେ କାର୍ଯ୍ୟର ଶକ୍ତି ବିଶାଳଭାବେ ବର୍ଦ୍ଧିତ ହେଉଛି ଏବଂ ବହୁଳଭାବେ ବି ଫଳପ୍ରଦ ହେଉଛି । କେତେକ ସମୟରେ ମୁଁ ଏକ ପ୍ରକାର ଭାବାତୀତ ଅବସ୍ଥାରେ ବୁଡିଯାଉଛି । ମୁଁ ଅନୁଭବ କରୁଛି ଯେ ମୁଁ ସମସ୍ତଙ୍କୁ ଆଶୀର୍ବାଦ କରିବି, ସମସ୍ତ ବସ୍ତୁକୁ ଭଲ ପାଇ ଆଲିଙ୍ଗନ କରିବି ଏବଂ ମୁଁ ଦେଖିପାରୁଛି ଯେ ମନ୍ଦ ବୋଲି କିଛି ନାହିଁ, ବରଂ ଏହା ଏକ ପ୍ରହେଳିକା । ମୋର ପ୍ରିୟ ଫ୍ରାନସିସ୍, ବର୍ତ୍ତମାନ ଏହି ମନୋଭାବରେ ମୁଁ ଏକ ଓ ଅଭିନ୍ନ ଏବଂ ମୋ ପ୍ରତି ତୁମର ଓ ମିସେସ୍ ଲେଗେଟଙ୍କ ପ୍ରେମ ଓ ଦୟା ବିଷୟ ଭାବିଲାକ୍ଷଣି ମୋ ଚକ୍ଷୁରେ ଆନନ୍ଦାଶ୍ରୁ ଭରି ଯାଉଛି । ଯେବେ ମୁଁ ଜନ୍ମ ହେଲି ସେହଦିନକୁ ମୁଁ ଆଶୀର୍ବାଦ କରୁଛି । ଏହି ସଂସାରରେ ମୁଁ ପାଇଛି ଅନେକ ଦୟା ଓ ପ୍ରେମ ଏବଂ ସେହି ଅନନ୍ତ ପ୍ରେମ ମୋର ସତ୍ତାକୁ ସୃଷ୍ଟି କରିଛି ଏବଂ ମୋର ଭଲ ଓ ମନ୍ଦ କର୍ମକୁ ସର୍ବଦା ଜଗି ରହିଛି (ଭୟଭୀତ ହେବନାହିଁ) । ଆଜି ମୁଁ ଯାହାକିଛି, ପୂର୍ବରୁ ଯାହାକିଛି ଥିଲି, ସେସବୁ କିଛି ନୁହେଁ ବରଂ ତାଙ୍କ ହାତରେ ମୁଁ କେବଳ ଯନ୍ତ୍ରଟିଏ, ଯାହାଙ୍କ ସେବାପାଇଁ ମୁଁ ସବୁକିଛି ପରିତ୍ୟାଗ କରିଛି - ମୋ ପ୍ରେମିକ, ମୋ ଆନନ୍ଦ, ମୋ ଜୀବନ ? ସେ ମୋର ଲୀଳାମୟ ପ୍ରିୟତମ । ମୁଁ ତାଙ୍କର କ୍ରୀଡ଼ନକ । ନା ବ୍ରାହ୍ମାଣ୍ଡରେ ରହିଛି ଛନ୍ଦ ନା ବୁଦ୍ଧି । କେଉଁ ବୁଦ୍ଧି ତାଙ୍କୁ ବାନ୍ଧି ପାରିବ ? ସେ ହି ଲୀଳାମୟ ସତ୍ତା ଯିଏ ନିଜ ନାଟକରେ ସ୍ୱୟଂ ହସୁଛନ୍ତି ଓ କାନ୍ଦୁଛନ୍ତି । ବିରାଟ କୌତୁକ, ବିରାଟ କୌତୁକ ଯାହା 'ଜୋ' କୁହନ୍ତି ।

ଏହି ସଂସାର ଏକ କୌତୁକ ଏବଂ ତାଙ୍କଭଳି ଜଣେ ସର୍ବଶ୍ରେଷ୍ଠ କୌତୁକୀ ତୁମେ ଦେଖି ନ ଥିବ । - ସେ ହେଉଛନ୍ତି ପରମପ୍ରେମିକ ଅନନ୍ତ ଓ ଅସୀମ ! କୌତୁକ କ'ଣ ଏହା ନୁହେଁ ! ଭ୍ରାତୃତ୍ୱ ଅଥବା ବନ୍ଧୁତ୍ୱ ଏହି ସଂସାରର ଖେଳ ପଡ଼ିଆରେ ବିଦ୍ୟାଳୟ ବିଦ୍ୟାର୍ଥୀ ଭଳି ଖେଳକୁଦରେ କ୍ରୀଡ଼ାରତ । ଏହା କ'ଣ ନୁହେଁ ? କାହାକୁ ପ୍ରଶଂସା କରିବ, କାହାକୁ ନିନ୍ଦା କରିବ, ଏହିସବୁ ତ ତାଙ୍କର ଖେଳ ! ସେମାନେ ସ୍ପଷ୍ଟୀକରଣ ଆବଶ୍ୟକ କରନ୍ତି, କିନ୍ତୁ ତାଙ୍କୁ କିପରି ତୁମେ ବର୍ଣ୍ଣନା କରିବ ? ସେ ମସ୍ତିଷ୍କ ରହିତ ସତ୍ତା, ତାଙ୍କର କୌଣସି ବୁଦ୍ଧି ନାହିଁ । କ୍ଷୁଦ୍ର ମସ୍ତିଷ୍କ ଓ ଟିକିଏ ବୁଦ୍ଧି ଦେଇ ସେ ଆମକୁ ବୋକା ବନାଉଛନ୍ତି ।

ଲଣ୍ଡନରେ ସ୍ୱାମୀଜୀଙ୍କ ସହ ଦୁଇମାସ ହେବ ତାଙ୍କର ଅନୁଜ ମହେନ୍ଦ୍ରନାଥ ରହୁଥିଲେ । ଆଇନ୍ ଅଧ୍ୟୟନ କରି ବାରିଷ୍ଟର ହେବାକୁ ତାଙ୍କର ଇଚ୍ଛା । କିନ୍ତୁ ସ୍ୱାମୀଜୀ ତାହା ଚାହୁଁ ନ ଥିଲେ । ସେ ଏହି ବିଷୟରେ ଶ୍ରୀମତୀ ବୁଲ୍‌ଙ୍କ ପାଖକୁ ଲେଖିଥିଲେ ''ଯେହେତୁ ମୋ ବାପା ବାରିଷ୍ଟର ଥିଲେ, ତେଣୁ ଆମ ରକ୍ତରୁ କେହି ଜଣେ ବାରିଷ୍ଟର ନ ହୁଅନ୍ତୁ ମୋର ଇଚ୍ଛା । ମୋ ଗୁରୁଦେବ ବି ଏହି ବୃତ୍ତିକୁ ଭଲ ପାଉ ନ ଥିଲେ । ମୁଁ ବିଶ୍ୱାସ କରେ ଯେ ଯେଉଁ ପରିବାରରେ ବହୁ ଓକିଲ ଥିବେ, ସେ ପରିବାର ଦୁଃଖ ପାଇବ । ଦ୍ୱିତୀୟରେ - ଦେଶ ଖାଲି ଓକିଲରେ ପୂର୍ଣ୍ଣ, ବିଶ୍ୱବିଦ୍ୟାଳୟରୁ ଶହ ଶହ ସଂଖ୍ୟାରେ ଓକିଲ ବାହାରୁଛନ୍ତି, ଖାଲି ଗୋଟିଏ ଫଳ ମିଳୁଛି - ସେମାନେ ଅନାହାରରେ ଷଡ଼ୁଛନ୍ତି । ବର୍ତ୍ତମାନ ମୋ ରାଷ୍ଟ୍ର ଆବଶ୍ୟକ କରେ ସାହସୀ ଓ ବୈଜ୍ଞାନିକ ମେଧାବୀ । ମୁଁ ଚାହୁଁଛି ମୋ ଭାଇ ଇଲେକ୍ଟ୍ରିକାଲ ବିଜ୍ଞାନ ପଢୁ... ।''

Digitized by srujanika@gmail.com

ସ୍ୱାମୀଜୀଙ୍କର ଏଭଳି ମାନସିକତାକୁ କେହି ଭୁଲ୍ ନ ବୁଝୁ ଯେ ଆଇନ୍ ବ୍ୟବସାୟକୁ ସେ ନିମ୍ନ ଦୃଷ୍ଟିରେ ଦେଖୁଥିଲେ । ତତ୍‌କାଳୀନ ଭାରତର ଅବସ୍ଥା ଓ ଭାରତୀୟଙ୍କର ପରାଜିତ ମନୋଭାବ କେବଳ ପ୍ରଚଣ୍ଡ ସାହସ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଆବଶ୍ୟକ କରୁଥିଲା । ଆଧ୍ୟାତ୍ମିକ ଜ୍ଞାନ ସିନା ମନୁଷ୍ୟକୁ ଧାର୍ମିକ ଅନ୍ଧବିଶ୍ୱାସ ଓ କୁସଂସ୍କାରରୁ ମୁକ୍ତି ଦେଇ ଏକ ପରମସତ୍ୟ ଅଭିମୁଖେ ବାଟ ଦେଖାଇବ କିନ୍ତୁ ବିଜ୍ଞାନ ମନୁଷ୍ୟର ସାଂସାରିକ ଜୀବନଶୈଳୀକୁ ଉନ୍ନୀତ କରାଇ ଏକ ଶୋଷଣବିହୀନ ସୁସ୍ଥ ସମାଜ ଗଠନ କରିପାରିବ । ସେଥିପାଇଁ ସ୍ୱାମୀଜୀ ଏଠାରେ କହୁଛନ୍ତି ସାହସୀ ଓ ବୈଜ୍ଞାନିକ ମୋ ଦେଶପାଇଁ ଆବଶ୍ୟକ । ଭାରତବର୍ଷର ଉତ୍କଟ ଦାରିଦ୍ର୍ୟ ତାଙ୍କୁ ପ୍ରତିମୁହୂର୍ତ୍ତରେ କଣ୍ଟାଭଳି ଫୋଡ଼ି ଦେଉଥିଲା ।

ଶରୀର ତାଙ୍କର ବିଶ୍ରାମହୀନ ପରିଶ୍ରମରେ ଦୁର୍ବଳ କ୍ଳାନ୍ତ ହୋଇପଡୁଥିଲା, ମନ ତାଙ୍କର ଆହୁରି ଅଧିକ କାର୍ଯ୍ୟ କରପାରୁ ନାହିଁ ଚିନ୍ତାରେ ଦଗ୍ଧିଭୂତ ହେଉଥିଲା । ହତାଶା ଓ ନୈରାଶ୍ୟ ଏଭଳି ବ୍ୟକ୍ତିଙ୍କୁ ପରାଜିତ କରିପାରିବ ନାହିଁ, ବରଂ ବିଦ୍ରୋହର ଅଗ୍ନି ତାଙ୍କୁ ସର୍ବଦା ପ୍ରଜ୍ଜ୍ୱଳିତ କରୁଥିଲା । କେତେ ସେ କାର୍ଯ୍ୟ କରିବେ ? ସେ ଥରେ ମଧ୍ୟାନ୍ନ ଭୋଜନ ପରେ ଆରାମ ଚେୟାରରେ ବସି ବିଶ୍ରାମ ନେଉଥିଲେ । ହଠାତ୍ ତାଙ୍କ ମୁଖମଣ୍ଡଳରେ ଖେଳିଗଲା ଯନ୍ତ୍ରଣା । ଦୀର୍ଘ ନିଶ୍ୱାସଟିଏ ମାରି ସେ ପରମଶିଷ୍ୟ ଫୋକ୍ସଙ୍କୁ କହିଲେ, ''ଆଚ୍ଛା ଫୋକ୍ସ, ମୋ ଛାତିରେ ଅସହ୍ୟ ଯନ୍ତ୍ରଣା ଅନୁଭବ କରୁଛି । ଜଣାପଡୁଛି ସତେକି ହୃଦ୍‌କ୍ରିୟା ବନ୍ଦ ହୋଇଯିବ ! ମୋ ବାପା ହୃଦ୍‌କ୍ରିୟା ବନ୍ଦ ଯୋଗୁଁ ମୃତ୍ୟୁବରଣ କଲେ । ମୋ ବଂଶର ଏହା ଏକ ବ୍ୟାଧି ।''

ଏଭଳି ମନ୍ତବ୍ୟରୁ ପ୍ରତୀୟମାନ ହେଉଛି ଯେ ଅତ୍ୟଧିକ ପରିଶ୍ରମ ତାଙ୍କୁ ଅବଶ କରିଦେଉଥିଲା । ଅନ୍ୟ ଏକ ଦିନରେ ସେ ଫୋକ୍ସଙ୍କୁ କହୁଛନ୍ତି, ''ବୁଝିଲ ଫୋକ୍ସ, ସେଣ୍ଟ ପାଲ ଜଣେ ଶିକ୍ଷିତ ଧାର୍ମିକ ଧର୍ମୋନ୍ମାଦ ବ୍ୟକ୍ତି ଥିଲେ; ମୁଁ ବି ଜଣେ ଶିକ୍ଷିତ ଧାର୍ମିକ ଧର୍ମୋନ୍ମାଦ ବ୍ୟକ୍ତି ଏବଂ ଦଳେ ମେଧାବୀ ଧର୍ମୋନ୍ମାଦ ବ୍ୟକ୍ତି ସୃଷ୍ଟି କରିବାକୁ ଚାହୁଁଛି । ତୁମେ ଦେଖିବ ଯେଉଁମାନେ ସାଧାରଣ ଧର୍ମୋନ୍ମାଦ - ସେମାନେ କୌଣସି କାର୍ଯ୍ୟରେ ଆସିବେ ନାହିଁ; ଏହା କେବଳ ଏକ ମସ୍ତିଷ୍କ ବ୍ୟାଧି ଯାହା ଭାରି କ୍ଷତିକାରକ । ଅବଶ୍ୟ ଯେତେବେଳେ ଜଣେ ଧାର୍ମିକ ପଣ୍ଡିତ ଧର୍ମୋନ୍ମାଦରେ ପରିଣତ ହୁଏ, ସେତେବେଳେ ସେ ଅନେକ କାର୍ଯ୍ୟ ସମ୍ପାଦନ କରିପାରେ । ପାଲ ଥିଲେ ଜଣେ ପଣ୍ଡିତ ଧର୍ମୋନ୍ମାଦ ବ୍ୟକ୍ତି ତେଣୁ ଗ୍ରୀକ୍ ଦର୍ଶନ ଓ ରୋମ୍ ସଭ୍ୟତାକୁ ଓଲଟାଇ ଦେଇ ପାରିଥିଲେ ।'' ଅନ୍ୟ ଦିନେ ପୁନଶ୍ଚ ସ୍ୱାମୀଜୀ ଫୋକ୍ସଙ୍କୁ କହୁଛନ୍ତି, ''ବେଦାନ୍ତ ସବୁଧର୍ମର ମୌଳିକତା ଶିକ୍ଷାଦିଏ । ଏହି ଦର୍ଶନ କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମର ଏକଚାଟିଆ ଦର୍ଶନ ନୁହେଁ, ସେଥିପାଇଁ ତ ବେଦାନ୍ତ ସାର୍ବଜନୀନ ଧର୍ମ ବିଶ୍ୱରେ ହେବ; ସାର୍ବଜନୀନ ସମ୍ପତ୍ତିରେ ଏହାକୁ ପରିଣତ କର । ବେଦାନ୍ତ ଦଳେ ସଂକୀର୍ଣ୍ଣମନା ବ୍ୟକ୍ତିଙ୍କର ଗୁପ୍ତ ସାଇତା ଧନ ହୋଇ ରହିବ ନାହିଁ ।

Digitized by srujanika@gmail.com

- ୪ -

*ସୂର୍ଯ୍ୟାଲୋକ ସଦୃଶ ଗୋଟିଏ ଧାରଣା ମୁଁ ଦେଖିପାରୁଛି, ଅଜ୍ଞାନ ଦ୍ୱାରା ଦୁଃଖ ଜାତ ହୁଏ ଏବଂ ଆଉ କୌଣସି ଦ୍ୱାରା ନୁହେଁ । ସଂସାରକୁ ଆଲୋକ କିଏ ପ୍ରଦାନ କରିବ ? ଅତୀତରେ ତ୍ୟାଗ ଏହି କାର୍ଯ୍ୟ କରିଥିଲା, ଆଗାମୀ ଯୁଗମାନଙ୍କରେ ବି ସେଇୟା ହେବ । ପୃଥିବୀର ସର୍ବଶ୍ରେଷ୍ଠ ବୀର ଓ ସର୍ବୋତ୍ତମ ବ୍ୟକ୍ତି ବହୁ ଜନହିତ ଏବଂ ବହୁଜନ ସୁଖ ପାଇଁ ସେମାନଙ୍କର ଜୀବନକୁ ଉତ୍ସର୍ଗ କରିବେ, ସମସ୍ତଙ୍କର କଲ୍ୟାଣ ପାଇଁ ମଧ । ଶାଶ୍ୱତ ପ୍ରେମ ଓ କାରୁଣ୍ୟ ସହିତ ଶହଶହ ବୁଦ୍ଧଙ୍କର ଆବଶ୍ୟକତା ରହିଛି ।*

ଲଣ୍ଡନରେ ବକ୍ତୃତାଗୁଡ଼ିକ ଅତି ଉଚ୍ଚକୋଟିର ଥିଲା । ସ୍ୱାମୀଜୀ ଜଣେ ବିଖ୍ୟାତ ଲୋକପ୍ରିୟ ନେତା ପାଲଟିଗଲେ । ରାଜନୀତିରେ ନୁହେଁ, ମଣିଷର ମନକୁ ବହୁ ଉର୍ଦ୍ଧ୍ୱକୁ ଉଡ଼ାଇ ନେଉଥିବା ଯୋଗସୂତ୍ର ମାଧ୍ୟମରେ । ରାଜଯୋଗର ତାଙ୍କର ସ୍ୱଚ୍ଛ ବାଖ୍ୟା ଇଂରାଜୀ ଲୋକଙ୍କ ଭୌତିକ ଉପଭୋଗବାଦୀ ମନକୁ ଚହଲାଇ ଦେଇ ଭରିଦେଲା ପବିତ୍ର ଆଧ୍ୟାତ୍ମିକତା । ଇଂଲଣ୍ଡର ସମ୍ଭ୍ରାନ୍ତ ବଂଶୀୟ ରାଜପରିବାରର ଉଚ୍ଚ କ୍ଷମତାଶାଳୀ ଡ୍ୟୁକ ବି ତାଙ୍କୁ ମଧ୍ୟାହ୍ନ ଭୋଜନ ପାଇଁ ଆମନ୍ତ୍ରଣ କରିଥିଲେ ଏବଂ ସେଠାରେ ସେ ଭୋଜନ କରିଥିଲେ । ଅନ୍ୟପକ୍ଷରେ ସାଧାରଣ ଲୋକର ଘରେ ବି ସେ ଭୋଜନ କରୁଥିଲେ । ରାଜା ଓ ପ୍ରଜା ଏବଂ ଧନୀ ଓ ଗରିବର ଭେଦଭାବ ଶୂନ୍ୟ ସନ୍ନ୍ୟାସୀ । ପ୍ରତ୍ୟେକ ମନୁଷ୍ୟ ଯେ ଅମୃତର ସନ୍ତାନ, ତାହା ତାଙ୍କର ପ୍ରତ୍ୟେକ ଆଚରଣରୁ ସ୍ପଷ୍ଟଭାବେ ବାରି ହୋଇଯାଉଥିଲା । ମିସ୍ ମାର୍ଗେଟ୍ ନୋବଲ୍ (ଭଗ୍ନୀ ନିବେଦିତା)ଙ୍କ ପାଖକୁ ଜୁଲ୍ ୭, ୧୮୯୬ରେ ନିଜ ଆଦର୍ଶର ଏକ ଝଲକ୍ ପ୍ରକାଶ କରି ଲେଖିଥିଲେ, "ଅଳ୍ପ କେତେକ ବାକ୍ୟରେ ମୋର ଆଦର୍ଶକୁ ବର୍ଣ୍ଣନା କରିହେବ, ତାହା ହେଲା : ମନୁଷ୍ୟକୁ ତା'ର ଦିବ୍ୟତ୍ୱ ସମ୍ବନ୍ଧରେ ସଚେତନ କରିବା ଏବଂ ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ କିପରି ଏହାକୁ ପ୍ରକାଶିତ କରିବାକୁ ହେବ, ତାହା ବତାଇ ଦେବା ।

ଅନ୍ଧବିଶ୍ୱାସର ଶୃଙ୍ଖଳରେ ବନ୍ଦୀ ଏହି ସଂସାର । ସେ ପୁରୁଷ ହେଉ କିମ୍ବା ମହିଳା ହେଉ, ପ୍ରତ୍ୟେକ ଅତ୍ୟାଚାରିତଙ୍କୁ ମୁଁ କରୁଣା ପ୍ରଦର୍ଶନ କରେ ଏବଂ ତାହାଠୁଁ ବେଶି ଅତ୍ୟାଚାରୀକୁ ।

ସୂର୍ଯ୍ୟାଲୋକ ସଦୃଶ ଗୋଟିଏ ଧାରଣା ମୁଁ ଦେଖିପାରୁଛି, ଅଜ୍ଞାନ ଦ୍ୱାରା ଦୁଃଖ ଜାତ ହୁଏ ଏବଂ ଆଉ କୌଣସି ଦ୍ୱାରା ନୁହେଁ । ସଂସାରକୁ ଆଲୋକ କିଏ ପ୍ରଦାନ କରିବ ? ଅତୀତରେ ତ୍ୟାଗ ଏହି କାର୍ଯ୍ୟ କରିଥିଲା, ଆଗାମୀ ଯୁଗମାନଙ୍କରେ ବି ସେଇୟା ହେବ । ପୃଥିବୀର ସର୍ବଶ୍ରେଷ୍ଠ ବୀର ଓ ସର୍ବୋତ୍ତମ ବ୍ୟକ୍ତି ବହୁ ଜନହିତ ଏବଂ ବହୁଜନ ସୁଖ ପାଇଁ ସେମାନଙ୍କର ଜୀବନକୁ ଉତ୍ସର୍ଗ କରିବେ, ସମସ୍ତଙ୍କର କଲ୍ୟାଣ ପାଇଁ ମଧ । ଶାଶ୍ୱତ ପ୍ରେମ ଓ କାରୁଣ୍ୟ ସହିତ ଶହଶହ ବୁଦ୍ଧଙ୍କର ଆବଶ୍ୟକତା ରହିଛି ।

Digitized by srujanika@gmail.com

ପୃଥିବୀର ଧର୍ମଗୁଡ଼ିକ ପ୍ରାଣହୀନ ଉପହାସ । ବର୍ତ୍ତମାନ ବିଶ୍ୱ ଯାହା ଚାହୁଁଛି, ତାହା ହେଉଛି ଚରିତ୍ର । ଯାହାର ଜୀବନ ଜ୍ୱଳନ୍ତ ପ୍ରେମ ଓ ନିଃସ୍ୱାର୍ଥପରତାରେ ପୂର୍ଣ୍ଣ, ସେଭଳି ବ୍ୟକ୍ତି ସଂସାର ଆବଶ୍ୟକ କରେ, ସେହି ପ୍ରେମ ମଣିଷର ପ୍ରତ୍ୟେକ ବାକ୍ୟକୁ ବଜ୍ର ନିନାଦ କରିବ ।

ଯାହାହେଉ ମୁଁ ନିଶ୍ଚିତ ଯେ ତୁମର ଅନ୍ଧବିଶ୍ୱାସ ନାହିଁ, ତୁମ ଭିତରେ ରହିଛି ବିଶ୍ୱକୁ ଆଗେଇ ନେବାର ଶକ୍ତି, ଅନ୍ୟମାନେ ବି ତୁମର ସହଯୋଗ କରିବେ । ସାହସୀ କଥା ଓ ସାହସପୂର୍ଣ୍ଣ କାର୍ଯ୍ୟ ଆମେ ଚାହୁଁ । ଜାଗ, ଜାଗ ମହାନ୍ ବ୍ୟକ୍ତିଗଣ ! ଦୁଃଖରେ ସଂସାର ଦଗ୍ଧିଭୂତ । ତୁମେ ଶୋଇପାରିବ ? ସୁପ୍ତ ଈଶ୍ୱରମାନେ ଜାଗ୍ରତ ହେବା ପର୍ଯ୍ୟନ୍ତ, ଅନ୍ତରରେ ନିହିତ ଈଶ୍ୱର ଡାକ ଶୁଣିବା ପର୍ଯ୍ୟନ୍ତ ଚାଲ ଆମେ କେବଳ ଡାକିବା । ଜୀବନରେ ଆଉ ଅଛି କ'ଣ ? ଏହାଠୁଁ ମହତ୍ତର କାର୍ଯ୍ୟ ଅଛି କ'ଣ... ମୁଁ କେବଳ କହିବି ଯେ ଜାଗ, ଜାଗ ।

ପ୍ରତ୍ୟେକ ଦେଶରେ କିଛି ଅବୁଝା ଲୋକ ରହିବେ । ସେମାନେ କେବଳ ଭଲ କାମ ଓ କଥାକୁ ବିଦ୍ରୁପ କରିଜାଣନ୍ତି । ଲଣ୍ଡନ ନଗରୀ ସେଥିରୁ ବାଦ୍ ହେବ କେମିତି ? କେତେକ ଇଂରାଜୀ ଲୋକ ଭାରତରେ ଚାକିରି କରି ଲଣ୍ଡନକୁ ଫେରିଥାନ୍ତି । ଭାରତୀୟଙ୍କ ପ୍ରତି ସେମାନଙ୍କର ମନୋଭାବ ଅତ୍ୟନ୍ତ ବିଦ୍ରୁପୋଦ୍ଦୀକ । ସମସ୍ତେ ଯେ ଭାରତୀୟଙ୍କ ପ୍ରତି ଅଭଦ୍ର ଆଚରଣ ପ୍ରଦର୍ଶନ କରନ୍ତି ତାହା ନୁହେଁ । ଏଭଳି ଜଣେ ଅସୂୟା ପ୍ରକୃତିର ଇଂରାଜୀ ବ୍ୟକ୍ତି ସ୍ୱାମୀଜୀଙ୍କର ବକ୍ତୃତା ସଭାରେ ଉପସ୍ଥିତ ଥିଲେ । ସ୍ୱାମୀଜୀ ସେଦିନ ରାଜଯୋଗ ଉପରେ ବକ୍ତୃତା ଦେଇ ଶ୍ରୋତାଗଣଙ୍କୁ ମନ୍ତ୍ରମୁଗ୍ଧ କରୁଥାନ୍ତି । ସ୍ୱାମୀ ସାରଦାନନ୍ଦ, ଶ୍ରୀ ଷ୍ଟର୍ଡ଼ି, ଶ୍ରୀ ଫୋକ୍ସ ଓ ଅନୁଜ ମହେନ୍ଦ୍ରନାଥ ସଭାକକ୍ଷର ଶେଷ ଧାଡ଼ିରେ ବସିଥିଲେ । ସ୍ୱାମୀଜୀ ମାତ୍ର ପାଞ୍ଚ ମିନିଟ୍ କହିଛନ୍ତି କି ନାହିଁ, ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ଅବସରପ୍ରାପ୍ତ ଆଙ୍ଗ୍ଲୋ-ଇଣ୍ଡିଆନ୍ ପାଗଳର ପ୍ରଳାପ ଭଳି ଚିତ୍କାର କରି କହି ଉଠିଲେ, ''ଓହୋଃ, ଆପଣଙ୍କୁ ଧନ୍ୟବାଦ ।

ବହୁ ଶ୍ରୋତା ବିସ୍ମୟରେ ମୁହଁ ବୁଲାଇ ତାଙ୍କ ଆଡ଼କୁ ଚାହିଁଲେ କିନ୍ତୁ କିଛି କହିଲେ ନାହିଁ । କାରଣ ସେମାନଙ୍କର ବକ୍ତୃତା ଶ୍ରବଣରେ ଆଗ୍ରହ ଥିଲା । ଉକ୍ତ ବ୍ୟକ୍ତି ବାରମ୍ବାର ଏଭଳି ଚିତ୍କାର ମଝିରେ ମଝିରେ କରିବାରୁ ସମବେତ ଅଧିକାଂଶ ଶ୍ରୋତା ବିରକ୍ତି ଓ କ୍ରୋଧରେ ଅଧୀର ହୋଇପଡ଼ିଲେ କିନ୍ତୁ ସ୍ୱାମୀଜୀ ଉକ୍ତ ବିଶୃଙ୍ଖଳା ଉଦ୍ରେକକାରୀ ବ୍ୟକ୍ତି ଆଡ଼କୁ ଥରେ ମାତ୍ର ଦୃଷ୍ଟି ନିକ୍ଷେପ ନ କରି ଅବିଚଳିତ ଭାବରେ ବକ୍ତୃତା ଦେଇ ଚାଲୁଥିଲେ । ଯେତେବେଳେ ସ୍ୱାମୀଜୀ ବୁଦ୍ଧଙ୍କୁ ପ୍ରଶଂସା କରି କହିଲେ ଯେ ସେହି ସମୟରେ ଭାରତରେ ଅନେକ ସନ୍ନ୍ୟାସୀ ଥିଲେ ଯେଉଁମାନେ ଉଚ୍ଚ ଆଧ୍ୟାତ୍ମିକ ଅନୁଭୂତି ଲାଭ କରିଥିଲେ, ସେତେବେଳେ ଉକ୍ତ ଅସୂୟାଭାବାପନ୍ନ ବ୍ୟକ୍ତି ଚିତ୍କାର କରି କହିଉଠିଲେ, ସେହି ସନ୍ନ୍ୟାସୀମାନେ ଚୋର ଓ ଠକ ଥିଲେ । ତଥାପି ସ୍ୱାମୀଜୀ ତା'ର ବିଦ୍ରୁପ କର୍ଣ୍ଣପାତ ନ କରି ବକ୍ତୃତା ପ୍ରଦାନରେ ମଗ୍ନ ରହିଲେ । କିନ୍ତୁ ଶ୍ରୀ ଷ୍ଟର୍ଡ଼ି ଓ ଶ୍ରୀ ଗୁଡ୍‌ୱିନ୍ କ୍ରୋଧାନ୍ୱିତ ହୋଇପଡ଼ିଲେ, ଅଥଚ ସେହି ବ୍ୟକ୍ତିର ମୁହଁ ବନ୍ଦ କରିପାରିଲେ ନାହିଁ ।

ଶେଷରେ ସେହି ବ୍ୟକ୍ତି ଜଣକ ସୀମା ଲଂଘନ କଲେ । ସ୍ୱାମୀଜୀ ଜଣେ ବଙ୍ଗାଳୀ ବାବୁ ବୋଲି ଉକ୍ତ ବ୍ୟକ୍ତି ଠଉରେଇ ନେଲେ । ସେ ବିଦ୍ରୁପ କରି ସଭା ମଝିରେ କହିଲେ, ''ସିପାହୀ

Digitized by srujanika@gmail.com

ବିଦ୍ରୋହ ସମୟରେ ଇଂରାଜୀମାନେ ବଙ୍ଗାଳୀଙ୍କୁ ରକ୍ଷା କରିଥିଲେ । ସ୍ୱାମୀଜୀଙ୍କୁ କିଏ ସମ୍ଭାଳେ ? ସେ ଉକ୍ତ ବିଦ୍ରୁପକାରୀ ଆଡ଼କୁ ବୁଲି ପଡ଼ିଲେ ଏବଂ ତାଙ୍କର ପ୍ରଶାନ୍ତ ଓ କାରୁଣ୍ୟ ମୁଖମଣ୍ଡଳ ଭୟଙ୍କର ହୋଇଉଠିଲା । ସିପାହୀ ବିଦ୍ରୋହର ଇତିହାସ ଅନର୍ଗଳ ଝରିପଡ଼ିଲା ତାଙ୍କ ମୁଖରୁ - ଇଂରାଜୀମାନଙ୍କର ଅତ୍ୟାଚାର ଓ ଶୋଷଣ ଏବଂ ଅମାନବୀୟ ମନ୍ଦକାର୍ଯ୍ୟର ଟକିନିଖି ହିସାବ ଶବ୍ଦ ଆକାରରେ ବିଛାଇ ହୋଇପଡ଼ିଲା ସଭା ଗୃହରେ । ଭାରତବର୍ଷ ନୁହେଁ ବରଂ ବହୁ ରାଷ୍ଟ୍ର କିପରି ଇଂରାଜୀ ଜାତି ଦ୍ୱାରା ଅତ୍ୟାଚାରିତ ଓ ନିଷ୍ପେଷିତ, ସେସବୁର ଇତିହାସ ପ୍ରକଟିତ ହେଲା ତାଙ୍କ ଶବ୍ଦ ସ୍ରୋତରେ । ଅଧଘଣ୍ଟାଏ ଧରି ସ୍ୱାମୀଜୀଙ୍କର ଶକ୍ତିଶାଳୀ ଏବଂ ପ୍ରଚଣ୍ଡ ଧିକ୍କାର ଉକ୍ତ ବିଦ୍ରୁପକାରୀ ବ୍ୟକ୍ତିକୁ ଏଭଳି ଲଜ୍ଜିତ ଓ ଆଘାତ କଲା ଯେ ନିଜର ଅବିଶ୍ରାନ୍ତ ଅଶ୍ରୁକୁ ପୋଛିବା ପାଇଁ ତିନୋଟି ରୁମାଲ ତାଙ୍କ ଲାଗି ଯଥେଷ୍ଟ ହୋଇ ନ ଥିଲା ।

ପୁଣି ସ୍ୱାମୀଜୀ ଚାହିଁଲେ ସମ୍ମୁଖସ୍ଥ ଶ୍ରୋତାମଣ୍ଡଳୀଙ୍କୁ । ଅତି ନମ୍ର ଓ ଶାନ୍ତ ଭାବରେ ସେ କହିଲେ, ''ହଁ, ଯୋଗର ପ୍ରତ୍ୟାହାର ଓ ଧାରଣା ବିଷୟବସ୍ତୁକୁ ମୁଁ ବର୍ତ୍ତମାନ ଫେରିଆସୁଛି । ବିଷୟବସ୍ତୁଟିକୁ ଯେଉଁଠି ସେ ଛାଡ଼ିଥିଲେ, ସେଠାରୁ ପୁନଶ୍ଚ ଆଲୋଚନା ଆରମ୍ଭ କଲେ । ସତେକି ସଭାଗୃହରେ କିଛି ଘଟିନାହିଁ କିମ୍ବା ସେ ଆଦୌ ଉତ୍ତେଜିତ ହୋଇନାହାନ୍ତି । ବକ୍ତୃତା ଶେଷରେ ଶ୍ରୋତାଗଣ ଠିଆହୋଇ ସ୍ୱାମୀଜୀଙ୍କୁ ଅଭିନନ୍ଦନ ଜଣାଇ ପଚାରିଲେ, ''ସ୍ୱାମୀଜୀ, ଆପଣ ଆଜି ଆମମାନଙ୍କୁ ସହନଶୀଳତା ଉପରେ ଏକ ଉଚ୍ଚ ଶିକ୍ଷା ପ୍ରଦାନ କରିଛନ୍ତି । ଆଜି ଆପଣଙ୍କୁ ଯେଭଳି ଭାବରେ ଉକ୍ତ ବ୍ୟକ୍ତି ଅପମାନିତ କଲେ, ଆମ କ୍ଷେତ୍ରରେ ଯଦି ଏହା ଘଟିଥାନ୍ତା, ଆମେ କେବେ ବି ବରଦାସ୍ତ କରିପାରି ନ ଥାନ୍ତୁ । ବାସ୍ତବରେ ଆପଣ ଜଣେ ସନ୍ଥ । ଆପଣ ସତରେ ଜଣେ ମହାମାନବ ।''

ଜଣେ ଅବସରପ୍ରାପ୍ତ କ୍ୟାପ୍‌ଟେନ୍ **ଜେମସ୍ ହେନ୍ରି ସେଭିୟର** ଓ ତାଙ୍କର ପତ୍ନୀ **ଚାରଲୋଟ୍** ସ୍ୱାମୀଜୀଙ୍କର ବଜ୍ର ନିନାଦ, ନିଃସ୍ୱାର୍ଥପର ପ୍ରେମ ଓ ଦୃଷ୍ଟିକୋଣ ଦ୍ୱାରା ବିମୁଗ୍ଧ ହୋଇ ତାଙ୍କପ୍ରତି ହେଲେ ଆକର୍ଷିତ । ସ୍ୱାମୀଜୀଙ୍କ ଅଗ୍ନିବର୍ଷୀ ଭାଷା ଓ ବୁଦ୍ଧଙ୍କ ସମ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ଏହି ଭାଗ୍ୟବାନ୍ ଦମ୍ପତି ତାଙ୍କର ଅନୁଗାମୀ ସାଜିଥିଲେ । ଯେଉଁ ଦିନ ବ୍ୟକ୍ତିଗତ ଭାବେ ଏହି ଦମ୍ପତି ତାଙ୍କୁ ଭେଟିଥିଲେ, ସେହି ପ୍ରଥମ ସାକ୍ଷାତରେ ସ୍ୱାମୀଜୀ ଶ୍ରମତୀ ସେଭିୟରଙ୍କୁ ପ୍ରଶ୍ନ କଲେ, ''ମା, ତୁମେ ଭାରତବର୍ଷ ଆସିବାକୁ ଇଚ୍ଛୁକ ? ମୋର ସର୍ବୋତ୍ତମ ଆଧ୍ୟାତ୍ମିକ ଉପଲବ୍ଧିକୁ ତୁମ ଉପରେ ମୁଁ ବର୍ଷଣ କରିବି ।'' ସେହି ଦିନଠାରୁ ଏହି ଦମ୍ପତି ସ୍ୱାମୀଜୀଙ୍କୁ କେବଳ ଗୁରୁ ଭାବରେ ନୁହେଁ ବରଂ ପୁତ୍ର ଭାବରେ ଗ୍ରହଣ କରି ନେଇଥିଲେ । ଅନ୍ୟପକ୍ଷରେ ସ୍ୱାମୀଜୀଙ୍କର ସାନିଧ୍ୟ ଲାଭ କରି ପତି-ପତ୍ନୀ ଦୁହେଁ କହିଥିଲେ ''ଏହି ମହାନ୍ ବ୍ୟକ୍ତି ଏବଂ ଏଭଳି ଦର୍ଶନ ପାଇବା ପାଇଁ ଆମେ ଜୀବନସାରା ଅନ୍ୱେଷଣ କରିଥିଲୁ ।'' ସ୍ୱାମୀଜୀଙ୍କର ତେଜସ୍ୱୀ ବ୍ୟକ୍ତିତ୍ୱ ଓ ଅଦ୍ୱୈତ ବେଦାନ୍ତ ସେମାନଙ୍କର ଅନ୍ୱେଷଣର ଲକ୍ଷ୍ୟ ଥିଲା । ଇଂଲଣ୍ଡରେ ସ୍ୱାମୀଜୀଙ୍କୁ ସହାୟତା କରିବା କ୍ଷେତ୍ରରେ ଏହି ସେଭିୟର ଦମ୍ପତିଙ୍କର ଅବଦାନ ଅବିସ୍ମରଣୀୟ ।



Digitized by srujanika@gmail.com

॥ ଅଠେଇଶ ॥

# ଇୟୁରୋପ ମହାଦେଶ ଭ୍ରମଣ - ସୁଇଜରଲ୍ୟାଣ୍ଡ, ଜର୍ମାନାଦି ରାଷ୍ଟ୍ରରେ ଅବସ୍ଥାନ ଏବଂ ବିଶ୍ୱ ବିଖ୍ୟାତ ଦର୍ଶନ ଶାସ୍ତ୍ର ଅଧ୍ୟାପକ ପାଲ୍ ଡୟସନ୍‌ଙ୍କ ସହ ସାକ୍ଷାତ - ବେଲୁନ୍‌ରେ ଆରୋହଣ କରି ସ୍ୱାମୀଜୀ ଆକାଶରେ ଉଡ଼ିଲେ

ଲଣ୍ଡନ ନଗରୀରେ ବେଦାନ୍ତ କେନ୍ଦ୍ର ପ୍ରତିଷ୍ଠିତ ହେଲା । ଇତ୍ୟବସରରେ ତାଙ୍କର ତିନିଜଣ ଅନ୍ତରଙ୍ଗ ଭକ୍ତ ସୁଶ୍ରୀ ହେନ୍ରିଏଟା ମୁଲର, କ୍ୟାପଟେନ୍ ସେଭିୟର ଏବଂ ଶ୍ରୀମତୀ ସେଭିୟର ସ୍ୱାମୀଜୀଙ୍କର ବିଶ୍ରାମ ପାଇଁ ଇୟୁରୋପ ମହାଦେଶ ଭ୍ରମଣ ନିମନ୍ତେ ପ୍ରସ୍ତାବ ବାଢ଼ିଲେ । ସୁଇଜରଲ୍ୟାଣ୍ଡର ଆଲ୍ପ ପର୍ବତମାଳା ଭ୍ରମଣ ପ୍ରସ୍ତାବ ଶୁଣିବା ମାତ୍ରେ ସ୍ୱାମୀଜୀ ବାଳକ ଭଳି ଆନନ୍ଦରେ ନାଚିଉଠି କହିଲେ, ''ଆହାଃ, ବରଫାବୃତ୍ତ ପାର୍ବତୀୟ ପଥରେ ପଦଚାରଣ କରିବାକୁ ମୋର ଇଚ୍ଛା । ଯାହାହେଉ ପଛକେ ଏକ ବିଶାଳ ବରଫ ଖଣ୍ଡକୁ ମୋତେ ଅତିକ୍ରମ କରିବାକୁ ହେବ ।'' **୧୮୯୬** ଜୁଲାଇ **୧୯** ତାରିଖରେ ସ୍ୱାମୀଜୀ ତାଙ୍କ ଭ୍ରମଣକାରୀ ଦଳଙ୍କ ସହିତ ଶିଷ୍ୟ ଓ ଭକ୍ତମାନଙ୍କଠାରୁ ବିଦାୟ ନେଇ ଲଣ୍ଡରୁ ପ୍ରସ୍ଥାନ କଲେ । ଇଂଲିସ୍ ଚେନାଲ ପାର୍ ହୋଇ ପ୍ୟାରିସ୍‌ରେ ରାତ୍ରିଯାପନ କଲେ । ସେଠାରୁ ପ୍ରସ୍ଥାନ କରି ଜେନେଭା'ର ଏକ ହୋଟେଲ୍‌ରେ ରହିଲେ । ସୁଇଜରଲ୍ୟାଣ୍ଡର ଶିଳ୍ପ, ହସ୍ତଶିଳ୍ପ ଓ କାରୁକାର୍ଯ୍ୟଗୁଡ଼ିକୁ ଏକ ପ୍ରଦର୍ଶନୀରେ ସ୍ୱାମୀଜୀ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ବିରାଟ ବେଲୁନ୍ ସବୁଠାରୁ ବେଶି ତାଙ୍କୁ ଆକର୍ଷଣ କଲା । ବେଲୁନ୍‌ରେ ଆରୋହଣ କରି ଆକାଶରେ ଉଡ଼ିବା ପାଇଁ ସ୍ୱାମୀଜୀଙ୍କ ଭିତରେ ରହିଥିବା ବାଲ୍ୟ ସ୍ୱଭାବ ମୁଣ୍ଡ ଟେକିଲା । କ୍ୟାପ୍‌ଟେନ୍ ସେଭିୟର ସ୍ୱାମୀଜୀଙ୍କର ଆଗ୍ରହ ପରିଲକ୍ଷିତ କରି ବେଲୁନ୍ ଆରୋହଣ ନିମନ୍ତେ ସମସ୍ତ ବ୍ୟବସ୍ଥା କରିଦେଲେ । ନିଜେ କ୍ୟାପଟେନ୍ ସ୍ୱାମୀଜୀଙ୍କୁ ନେଇ ବେଲୁନ୍ ଭିତରେ ପ୍ରବେଶ କଲେ । ଆକାଶ ନିର୍ମଳ ଥିଲା ଏବଂ ବାୟୁମଣ୍ଡଳ ବି ଅନୁକୂଳ ଥିଲା । ବେଲୁନ୍‌ଟି ଉପରକୁ କ୍ରମଶଃ ଉଠିଲା, ସ୍ୱାମୀଜୀଙ୍କର ଆନନ୍ଦ କହିଲେ ନ ସରେ । ବେଲୁନ୍ ଆରୋହଣର ଅନୁଭୂତି ତାଙ୍କର ବାଲ୍ୟ-ସ୍ୱଭାବକୁ ପରିତୃପ୍ତ କଲା ।

Digitized by srujanika@gmail.com

ତୁଷାରାବୃତ ପର୍ବତମାଳାର ଅଙ୍କାବଙ୍କା ପଥରେ ସ୍ୱାମୀଜୀ ପଦଚାରଣ କଲେ ଏବଂ **ଲେମାନ୍** ହ୍ରଦରେ ବି ସ୍ନାନ କରିଥିଲେ । ହିମାଳୟର ତୁଷାରାଞ୍ଚଳ ଭଳି **ଆଲ୍‌ପାଇନ୍‌ର** ତୁଷାରାଞ୍ଚଳ ଭ୍ରମଣ କରୁଥିବା ସମୟରେ ଏହାର ସୌନ୍ଦର୍ଯ୍ୟ ଓ ମନୋରମ ଦୃଶ୍ୟ ଦେଖି ସ୍ୱାମୀଜୀ ଆନନ୍ଦୋତ୍‌ଫୁଲ୍ଲ ହୋଇ କହି ଉଠିଥିଲେ, ''ମୁଁ ଏଭଳି ତୁଷାରାଚ୍ଛନ୍ନ ସ୍ଥାନରେ ଏକ ମଠ ପ୍ରତିଷ୍ଠା କରିବି ଏବଂ ଜୀବନର ସମସ୍ତ ଜଞ୍ଜାଳରୁ ଅବସର ନେଇ କେବଳ ଧ୍ୟାନରେ ମଗ୍ନ ହେବି ଯେଉଁଠାରେ ମୋର ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଶିଷ୍ୟଗଣ ଏକାଠି ଅବସ୍ଥାନ କରିପାରିବେ । ମୁଁ ସେମାନଙ୍କୁ କର୍ମୀ ଭାବେ ତାଲିମ ଦେବି । ପ୍ରାଚ୍ୟ ଶିଷ୍ୟମାନେ ବେଦାନ୍ତ ପ୍ରଚାର ପାଇଁ ପାଶ୍ଚାତ୍ୟ ଦେଶକୁ ଗମନ କରିବେ ଏବଂ ପାଶ୍ଚାତ୍ୟ ଶିଷ୍ୟମାନେ ଭାରତରେ ରହି ଭାରତୀୟମାନଙ୍କର କଲ୍ୟାଣ କାର୍ଯ୍ୟରେ ନିମଗ୍ନ ରହିବେ ।'' ସ୍ୱାମୀଜୀଙ୍କ ଭବିଷ୍ୟ ଯୋଜନା ତୀର ଭଳି କ୍ୟାପ୍‌ଟେନ୍ ସେଭିୟରଙ୍କୁ ବିଦ୍ଧ କଲା, ସେ ହଠାତ୍ ସ୍ୱାମୀଜୀଙ୍କ ସହ ସ୍ୱର ମିଳାଇ କହିଉଠିଲେ, ''ହଁ ହଁ ଗୋଟିଏ ମଠ ଆମପାଇଁ ନିହାତି ଆବଶ୍ୟକ । ମହାପୁରୁଷଙ୍କର ଚିନ୍ତନ ପ୍ରାୟ ନିଷ୍ଫଳ ହୁଏନାହିଁ । ତୁଷାରାବୃତ ଆଲପ୍ ପର୍ବତମାଳାରେ ସ୍ୱାମୀଜୀଙ୍କ ଚିନ୍ତାଧାରାର ସ୍ୱର ହିମାଳୟ ପର୍ବତମାଳାରେ କେତେମାସ ପରେ ରୂପ ନେଇଥିଲା । ଆଲମୋଡ଼ାରେ ଏକ ଅଦ୍ୱୈତ ମଠ ସ୍ୱାମୀଜୀଙ୍କ ଦ୍ୱାରା ସ୍ଥାପିତ ହେଲା ଯେଉଁଠି ସେଭିୟର ଦମ୍ପତି ରହିବାର ସୁଯୋଗ ପାଇଥିଲେ ।

- ୧ -

*ଉପନିଷଦରୁ ମନ୍ତ୍ର ସୁଲଳିତ କଣ୍ଠରେ ଗାନ କରୁଥିଲେ ଏବଂ ଇଂରାଜୀରେ ବୁଝାଇ ଦେଉଥିଲେ । ଆଲପ ପର୍ବତମାଳାର ପରିବେଶ ପ୍ରାଚୀନ ଋଷିଙ୍କର ମନ୍ତ୍ରୋଚ୍ଚାରଣରେ ଗୁଞ୍ଜରିତ ହେଉଥିଲା ।*

ସୁଶ୍ରୀ ମୁଲର୍‌ଙ୍କ ଅନୁରୋଧ କ୍ରମେ ସ୍ୱାମୀଜୀ ଓ ତାଙ୍କର ଦଳ **ଅପର୍ ରୋହନେ** ଭେଲିର ଏକ ଛୋଟ ଗ୍ରାମ **'ସାସ୍-ଫି'** ଅଭିମୁଖେ ଯାତ୍ରା କଲେ । ଦୁଇ ସପ୍ତାହ ସେଠାରେ ରହିଲେ । ଚତୁଃପାର୍ଶ୍ୱ ତୁଷାରାବୃତ ପର୍ବତ ଶିଖର ଦେଶ ଏବଂ ଚତୁର୍ଦ୍ଦିଗରେ ଶାନ୍ତି ବିରାଜିତ, ଗ୍ରାମ୍ୟ ଜୀବନ ଅତି ଚମତ୍କାର । ସଂସାରୀ ହଟ୍ଟଗୋଳ ଏଠାରେ ନାହିଁ । ସ୍ୱାମୀଜୀ ଆଧ୍ୟାତ୍ମିକ ସାଧନା ଓ ଧ୍ୟାନରେ ବାରମ୍ବାର ହେଉଥିଲେ ନିମଗ୍ନ । ପର୍ବତାଞ୍ଚଳ ତୁଷାରାଚ୍ଛନ୍ନ ପଥରେ ପଦଚାରଣ କରି ଚାହୁଁଥିଲେ ଅନନ୍ତ ଆକାଶକୁ ଏବଂ ରାଜକୀୟ ଠାଣୀରେ ଦଣ୍ଡାୟମାନ ପର୍ବତମାଳାକୁ । ଯତେକି ସେମାନଙ୍କ ଭଳି ସେ ମୁକ୍ତ । ସେ ଏକଦା ସାଥୀମାନଙ୍କ ଗହଣରେ ପ୍ରଭାତରେ ପ୍ରାତଃଭ୍ରମଣ କରୁଥିଲେ । ଉପନିଷଦରୁ ମନ୍ତ୍ର ସୁଲଳିତ କଣ୍ଠରେ ଗାନ କରୁଥିଲେ ଏବଂ ଇଂରାଜୀରେ ବୁଝାଇ ଦେଉଥିଲେ । ଆଲ୍‌ପ୍ ପର୍ବତମାଳାର ପରିବେଶ ପ୍ରାଚୀନ ଋଷିଙ୍କର ମନ୍ତ୍ରୋଚ୍ଚାରଣରେ ଗୁଞ୍ଜରିତ ହେଉଥିଲା । ସ୍ୱାମୀଜୀ ସେହି ପବିତ୍ର ପରିବେଶରେ କ୍ରମଶଃ ପଦଚାରଣ ଧ୍ୟାନରେ ବୁଡି ଯାଉଥିଲେ ।

Digitized by srujanika@gmail.com

ଇତ୍ୟବସରରେ କେତେବେଳେ ସେ ବହୁ ପଛରେ ପଡ଼ିଗଲେଣି ଅନ୍ୟମାନେ ଜାଣିପାରି ନ ଥିଲେ । କିନ୍ତୁ ହଠାତ୍ ସ୍ୱାମୀଜୀଙ୍କ ଉଚ୍ଚସ୍ୱର ଶୁଣି ସେମାନେ ପଛକୁ ଚାହିଁଲେ । ସ୍ୱାମୀଜୀ ଅତ୍ୟନ୍ତ ଉତ୍ତେଜିତ ସ୍ୱରରେ କହୁଥିଲେ ''ଈଶ୍ୱରଙ୍କ କୃପାରୁ ମୁଁ ଆଜି ରକ୍ଷା ପାଇଗଲି'' ଏବଂ ଧାବମାନ ହେଉଥିଲେ ସାଥୀମାନଙ୍କ ଅଭିମୁଖେ । ବନ୍ଧୁଗଣ ବ୍ୟସ୍ତ ହୋଇପଡ଼ିଲେ ଏବଂ ସ୍ୱାମୀଜୀଙ୍କୁ ଏକଲା ଏହି ଜନଶୂନ୍ୟ ପର୍ବତ୍ୟାଞ୍ଚଳରେ ଛାଡ଼ି ଆମକୁ ଚାଲି ଆସିଥିବାରୁ ଦୁଃଖରେ ଅଭିଭୂତ ହୋଇପଡ଼ିଲେ । ସ୍ୱାମୀଜୀ ସେମାନଙ୍କ ମନସ୍ତାପ ଲକ୍ଷ୍ୟ କରି କହିଲେ ଆପଣମାନେ ଆଗେଇ ଆସିବା ପରେ ମୁଁ ପଛରେ ପଡ଼ିଗଲି । ଉପନିଷଦର ମନ୍ତ୍ର ଉଚ୍ଚାରଣରେ ମୁଁ ତନ୍ମୟ ହୋଇଯାଇଥିଲି । ମୋର ଲୁହା ବାଡ଼ିଟିକୁ ଭୂମିରେ ଲଗାଇ ଧୀରେ ଧୀରେ ଏକ ବିଶାଳ ପଥର ଖଣ୍ଡ ଶୀର୍ଷଧାରରେ ପଦଚାରଣ କରୁଥିଲି । ହଠାତ୍ ବାଡ଼ିଟି ଗୋଟିଏ ପଥୁରିଆ ଫାଙ୍କରେ ଲାଗିଯିବାରୁ ବାଡ଼ିଟି ଭାଙ୍ଗିଗଲା । ମୁଁ ପ୍ରାୟତଃ ଏକ ମୁନିଆ ପଥର ଉପରେ ପଡ଼ିଯାଇଥାନ୍ତି । ନିଶ୍ଚିତ ଭାବରେ ଏହା ଚମତ୍କାରିତା ଯାହା ମୋତେ ରକ୍ଷା କଲା ।'' ସାଥୀଗଣ ଚକିତ ନୟନରେ ସ୍ୱାମୀଜୀଙ୍କୁ କେବଳ ଚାହିଁଲେ ଏବଂ ପ୍ରତି ପଦକ୍ଷେପରେ ସ୍ୱାମୀଜୀଙ୍କୁ ଜଗି ରହିବା ଲାଗି ସଂକଳ୍ପ କଲେ ।

ନିବାସସ୍ଥଳୀକୁ ପ୍ରତ୍ୟାବର୍ତ୍ତନ କରିବା ପଥରେ ଏକ ଛୋଟ ପାର୍ବତୀୟ ଉପାସନାସ୍ଥଳୀ ଉପରେ ସ୍ୱାମୀଜୀଙ୍କର ଦୃଷ୍ଟି ପଡ଼ିଲା । ସେ ମୃଦୁ ସ୍ୱରରେ କହିଲେ, ''ଚାଲ ଆମେ ସମସ୍ତେ କୁମାରୀ ମେରୀଙ୍କ ପାଦରେ ପୁଷ୍ପ ଅର୍ପଣ କରିବା !'' ଅନ୍ୟ ସାଥୀଙ୍କ ସହ ସ୍ୱାମୀଜୀ ଆଲ୍ପାଇନ୍ ପୁଷ୍ପ ତୋଳିଲେ । ତାଙ୍କର ମୁଖମଣ୍ଡଳ କୋମଳତାରେ ଆଲୋକିତ, ସେ ଶ୍ରୀମତୀ ସେଭିୟରଙ୍କୁ କହିଲେ, ''ମେରୀଙ୍କ ପାଦରେ, ମୋର କୃତଜ୍ଞତା ଓ ଭକ୍ତିର ସନ୍ତକ ଭାବେ ପୁଷ୍ପ ଅର୍ପଣ କର । ସେ ବି ଆମର ମା ।'' ମେରୀଙ୍କ ପାଦରେ ନିଜେ ଫୁଲ ଅଜାଡ଼ି ଦେବାକୁ ମନ ତାଙ୍କର ବ୍ୟାକୁଳିତ ହେଉଥିଲେ ବି, ସେ ଖ୍ରୀଷ୍ଟିଆନ୍ ହୋଇ ନ ଥିବାରୁ କାଳେ ସେଠିକାର ଖ୍ରୀଷ୍ଟଧର୍ମୀମାନେ କୌଣସି ସମସ୍ୟା ସୃଷ୍ଟି କରିପାରନ୍ତି ଭାବି, ପୁଷ୍ପାର୍ପଣରୁ ସେ ଓହରି ଯାଇଥିଲେ ।

ସୁଇଜରଲ୍ୟାଣ୍ଡରୁ ସ୍ୱାମୀଜୀ ସାଥୀମାନଙ୍କ ସହିତ ଜର୍ମାନୀର ହେଇଡଲବର୍ଗ ଅଭିମୁଖେ ଯାତ୍ରା କଲେ । ସେଠାରେ ବହୁ ପୁରାତନ ବିଶ୍ୱବିଦ୍ୟାଳୟ ସ୍ୱାମୀଜୀ ବୁଲି ଦେଖିଲା ପରେ ବର୍ଲିନରେ ପହଞ୍ଚିଲେ । ଏଠାରେ ସ୍ୱାମୀଜୀ ତିନିଦିନ ରହିଲେ । ବର୍ଲିନ୍‌ରେ ଅବସ୍ଥିତ ବହୁ ଐତିହାସିକ ଓ ବୌଦ୍ଧିକ ମହତ୍ୱପୂର୍ଣ୍ଣ ସ୍ଥାନ ପରିଦର୍ଶନ କଲେ । ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟ, ଜ୍ଞାନର ପ୍ରତ୍ୟେକ ବିଭାଗ ଦେଖି ସେ ବହୁତ ଖୁସୀ ହେଲେ । ବର୍ଲିନ ପରେ ପରବର୍ତ୍ତୀ ଭ୍ରମଣ ଡ୍ରେସଡ୍ରେନ ଅଭିମୁଖେ ହେବ ବୋଲି ସ୍ୱାମୀଜୀଙ୍କୁ କହିବାରୁ ସେ ଦ୍ୱିଧା ପ୍ରକାଶ କରି କହିଲେ ଯେ ପ୍ରଫେସର ଡୟସନ ଆମକୁ ଅପେକ୍ଷା କରିଥିବେ, ଆମେ ଅଧିକ ବିଳମ୍ୱ ନ କରି ଶୀଘ୍ର ସେଠାକୁ ଯିବା ।''

ଏଠାରେ ଉଲ୍ଲେଖନୀୟ ଯେ ସ୍ୱନାମଧନ୍ୟ ଜର୍ମାନ ପ୍ରାଚ୍ୟ ଜଗତବିଦ୍ ପାଲ୍ ଡୟସନ୍ ତଥା କିଏଲ୍ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ପ୍ରଫେସର, ସ୍ୱାମୀଜୀଙ୍କ ବକ୍ତୃତା ଓ ଚିନ୍ତାଧାରା ପଢ଼ି ଜାଣିପାରିଥିଲେ ଯେ ସ୍ୱାମୀଜୀ ଜଣେ ମୌଳିକ ଭାବୁକ ଏବଂ ଆଧାତ୍ମିକ ବିଦ୍ୱାନ । ବେଦାନ୍ତ

*Digitized by srujanika@gmail.com*

ଦର୍ଶନରେ ସେ ଥିଲେ ଜଣେ ଆଗ୍ରହୀ ବିଦ୍ୱାନ ଯିଏ ଭାରତବର୍ଷ ଭ୍ରମଣ କରି ଭାରତୀୟ ଦର୍ଶନ ପ୍ରତି ଆକର୍ଷିତ ଓ ପ୍ରଭାବିତ ହୋଇଥିଲେ । ଦାର୍ଶନିକ ପ୍ରଶ୍ନ ଉପରେ ସ୍ୱାମୀଜୀଙ୍କ ସହିତ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ନିମନ୍ତେ ସେ ଲଣ୍ଡନସ୍ଥିତ ଠିକଣାରେ ଏକ ପତ୍ର ପଠାଇ ସ୍ୱାମୀଜୀଙ୍କୁ ଆମନ୍ତ୍ରଣ କରିଥିଲେ । ତେଣୁ ସମସ୍ତ ଭ୍ରମଣ କାର୍ଯ୍ୟ ବାତିଲ୍ କରି ସ୍ୱାମୀଜୀ ତାଙ୍କର ଦଳ ସହିତ ସେପ୍ଟେମ୍ବର **୧୮୯୬ ଆଠ ତାରିଖରେ କିଏଲ୍‌ରେ** ପହଞ୍ଚିଲେ । ଡୟସନ୍‌ଙ୍କ ସହ ସ୍ୱାମୀଜୀଙ୍କର ସାକ୍ଷାତ ସମ୍ବନ୍ଧରେ ଶ୍ରୀମତୀ ସେଭିୟର ସୁନ୍ଦରଭାବେ ବର୍ଣ୍ଣନା କରିଥିଲେ ଯାହା ସ୍ୱାମୀଜୀଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରବୁଦ୍ଧ ଭାରତ ପତ୍ରିକାରେ **୧୯୦୫ ସେପ୍ଟେମ୍ବର** ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

... ଜର୍ମାନୀର ଏକ ସହର କିଏଲ୍, **ବାଲଟିକ୍‌**ରେ ଅତି ସୁନ୍ଦର ଭାବେ ଅବସ୍ଥିତ । ବିଶ୍ୱବିଦ୍ୟାଳୟର ଏକ ସମିତିରେ ଡକ୍ଟର ପାଲ୍ ଡୟସନ୍‌ଙ୍କ ସହ ଗୋଟିଏ ଦିନ ବିତିବାର ସୁଖ ସ୍ମୃତି ଏବେ ବି ଜୀବନ୍ତ । ସେ ଜଣେ ଦର୍ଶନଶାସ୍ତ୍ରର ପ୍ରଫେସର ଏବଂ ସମଗ୍ର ଇୟୁରୋପୀୟ ସଂସ୍କୃତ ବିଦ୍ୱାନଙ୍କ ମଧ୍ୟରେ ଏକ ବିରଳ ବ୍ୟକ୍ତିତ୍ୱ ।

ସ୍ୱାମୀଜୀ କିଏଲ୍‌ସ୍ଥିତ ଏକ ହୋଟେଲ୍‌ରେ ଅବସ୍ଥାନ କରୁଛନ୍ତି ଜାଣିବା ପରେ, ପ୍ରଫେସର ତତ୍‌କ୍ଷଣାତ୍ ପରବର୍ତ୍ତୀ ଦିନ ତାଙ୍କ ବାସଭବନରେ ସକାଳ ୧୦ ଘଟିକା ସମୟରେ ଜଳପାନ ନିମନ୍ତେ ସ୍ୱାମୀଜୀଙ୍କୁ ଏକ ଚିଠି ଦ୍ୱାରା ନିମନ୍ତ୍ରଣ କଲେ । ସ୍ୱାମୀଜୀଙ୍କ ସହ ମୁଁ ଏବଂ ମୋର ସ୍ୱାମୀ ଉକ୍ତ ଆମନ୍ତ୍ରଣରେ ଅନ୍ତର୍ଭୁକ୍ତ ଥିଲୁ । ପରଦିନ ଠିକ୍ ସକାଳ ୧୦ଟାରେ ଆମେ ତାଙ୍କ ବାସଭବନରେ ପଦାର୍ପଣ କଲୁ । ନିଜ ପାଠାଗାରରେ ପ୍ରଫେସର ଓ ତାଙ୍କର ପତ୍ନୀ ଆମକୁ ପ୍ରତୀକ୍ଷା କରିଥିଲେ । ଆମକୁ ସେଠାକୁ ପାଛୋଟି ନିଆଗଲା । ସ୍ୱାମୀଜୀଙ୍କର ଭ୍ରମଣ ଓ ଯୋଜନା ସମ୍ବନ୍ଧରେ ଅଳ୍ପ କଥାବାର୍ତ୍ତା ପରେ, ମୁଁ ଦେଖିଲି ଯେ ପ୍ରଫେସରଙ୍କର ଚକ୍ଷୁଦ୍ୱୟ ଟେବୁଲ୍ ଉପରେ ପଡ଼ିଥିବା ଗଦା ଗଦା ପୁସ୍ତକ ଉପରେ ନିବଦ୍ଧ ଏବଂ ଜ୍ଞାନାଲୋକିତ ପ୍ରଶଂସାସୂଚକ ପାଣ୍ଡିତ୍ୟ ମୁଖମଣ୍ଡଳରେ, ପୁସ୍ତକଗୁଡ଼ିକ ଉପରେ ସେ ଆଲୋଚନା ଆରମ୍ଭ କଲେ... । ଉପନିଷଦ ଓ ବେଦାନ୍ତ ସୂତ୍ର ସହିତ ଶଙ୍କରାଚାର୍ଯ୍ୟଙ୍କର ବ୍ୟାଖ୍ୟା ଉପରେ ଆଧାରିତ ବେଦାନ୍ତ ମାର୍ଗ, ସତ୍ୟ ନିମନ୍ତେ ତାଙ୍କର ଅନ୍ୱେଷଣରେ କେତେକ ବିଶାଳ ରାଜକୀୟ ସଂରଚନା ଓ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ମୂଲ୍ୟବାନ ସୃଷ୍ଟି ଏବଂ ଉଚ୍ଚତମ ଓ ପବିତ୍ରତମ ନୈତିକତା ହେଉଛି ବେଦାନ୍ତର ପରିଣାମ... ।

ପ୍ରଫେସର କଥାବାର୍ତ୍ତା ଭିତରେ ସୂଚନା ଦେଇଥିଲେ ଯେ ଆଧ୍ୟାତ୍ମିକତାର ଆଦି ଉତ୍ସ ଅଭିମୁଖେ ଏକ ଆନ୍ଦୋଳନ ପଶ୍ଚାତଗମନ କରୁଛି, ସେହି ଆନ୍ଦୋଳନ ଭବିଷ୍ୟତରେ ବୋଧହୁଏ ଭାରତକୁ ସମସ୍ତ ରାଷ୍ଟ୍ର ଓ ଜାତି ମଧ୍ୟରେ ଏକ ନେତୃତ୍ୱ ନେବାରେ ଭୂମିକା ପ୍ରଦାନ କରିବ, ଯାହା ପୃଥିବୀରେ ହେବ ସର୍ବୋଚ୍ଚ ଓ ମହାନ୍ ଆଧ୍ୟାତ୍ମିକ ମିଳନ କ୍ଷେତ୍ର ।

ଡକ୍ଟର ଡୟସନ୍ ନିଜେ କେତେକ ଅନୁବାଦ କାର୍ଯ୍ୟ କରିଥିଲେ, ସେଗୁଡ଼ିକ ପଢ଼ିବା ପାଇଁ ସ୍ୱାମୀଜୀ ଆଗ୍ରହାନ୍ୱିତ ହେଲେ । ବିଭିନ୍ନ ଦୁର୍ବୋଧ ପଂକ୍ତିର ସଠିକ ବ୍ୟାଖ୍ୟା ଓ ବୋଧଗମ୍ୟତା ଉପରେ ଏକ ଆଲୋଚନା ସେମାନଙ୍କ ଭିତରେ ଆରମ୍ଭ ହେଲା । ଡକ୍ଟର ଡୟସନ୍ କହିଲେ, ''ସଂଜ୍ଞାର ସ୍ୱଚ୍ଛତା ହିଁ ମୁଖ୍ୟ ଏବଂ ରଚନାଶୈଳୀର କମନୀୟତା ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ କଥା । କିନ୍ତୁ

Digitized by srujanika@gmail.com

ସ୍ୱାମୀଜୀଙ୍କ ସଦୃଶ ପ୍ରାଚ୍ୟ ଟୀକାକାର ବା ଭାଷ୍ୟକାରଙ୍କର ବଳିଷ୍ଠ ତଥା ପ୍ରାଞ୍ଜଳ ବ୍ୟାଖ୍ୟାକରଣ ଏବଂ ଦୃଢ଼ ବିଶ୍ୱାସ, ଅବଶ୍ୟ ତାହା ଜଟିଳ ଇନ୍ଦ୍ରିୟାନୁଭୂତିମୂଳକ ହୋଇଥିଲେ ବି, ଏହି ଜର୍ମାନୀ ବିଦ୍ୱାନଙ୍କର ହୃଦୟ ଓ ମନକୁ ଜୟ କରିପାରିଥିଲା ।

ଗଭୀର ଆଲୋଚନା ଭିତରେ ଆମେ ଦୁଇଥର ବିଦାୟ ନେବାକୁ ଚାହିଁଥିଲେ ମଧ୍ୟ ଉଭୟ ପ୍ରଫେସର ଓ ତାଙ୍କର ପତ୍ନୀ ଆମକୁ ବିଦାୟ ଦେବା ପରିବର୍ତ୍ତେ ମଧ୍ୟାହ୍ନ ଭୋଜନ ନିମନ୍ତେ ଏବଂ ସେମାନଙ୍କର କନ୍ୟାର ଚତୁର୍ଥ ଜନ୍ମୋତ୍ସବରେ ଯୋଗଦେବା ପାଇଁ ଆମକୁ ବାଧ୍ୟ କରିଥିଲେ । ସେମାନଙ୍କର ଆନ୍ତରିକତା ଓ ବଦାନ୍ୟ ଆତିଥ୍ୟରେ ବିମୋହିତ ହୋଇ ଅନୁରୋଧକୁ ଟାଳି ନ ପାରି, ସେମାନଙ୍କର ଖୁସିରେ ଆମେ ସାମିଲ୍ ହୋଇଥିଲୁ । କୁନିଝିଅ **ଏରିକା'**ର ଗୁଲୁଗୁଲିଆ କଥା ଓ ତା'ର ସମବୟସୀ ପିଲାମାନଙ୍କୁ ଚା ଓ କେକ୍ ବଣ୍ଟନ ସତରେ କେଡ଼େ ମନମୁଗ୍ଧକର ଥିଲା ! ଡକ୍ଟର ଏବଂ ଶ୍ରୀମତୀ ଡୟସନ୍‌ଙ୍କର ଅତିଥି ସତ୍କାର ଅତୀବ ଚମତ୍କାର ଥିଲା, ତାହାଠାରୁ ଅଧିକ ଆକର୍ଷଣୀୟ ଥିଲା ସେମାନଙ୍କର ସଦ୍ୟ ଭାରତବର୍ଷ ଭ୍ରମଣର କାହାଣୀ ଏବଂ ଭାରତର ପ୍ରାଚୀନ ଇତିହାସ ଓ ପୂଣ୍ୟତୋୟା ଗଙ୍ଗାନଦୀ ସମ୍ବନ୍ଧରେ ଜୀବନ୍ତ ଉପସ୍ଥାପନ... ।''

ପ୍ରଫେସର ଡୟସନ୍‌ଙ୍କ ବାସଭବନରେ ସ୍ୱାମୀଜୀ ସମୟ ଅତିବାହିତ କରୁଥିବା ସମୟରେ, ପ୍ରଫେସରଙ୍କ ପୁସ୍ତକ ଥାକରୁ ଖଣ୍ଡିଏ ପୁସ୍ତକ ବାହାର କରି ପଢ଼ିବାକୁ ଲାଗିଲେ । ସ୍ୱାମୀଜୀ ତନ୍ମୟ ହୋଇ ଏକ କବିତା ପୁସ୍ତକ ପୃଷ୍ଠା ପରେ ପୃଷ୍ଠା ଲେଉଟାଇ ପଢ଼ି ଚାଲିଲେ । ପ୍ରଫେସର ଡୟସନ ଇତ୍ୟବସରରେ କୌଣସି ବିଷୟ ସମ୍ବନ୍ଧରେ ତାଙ୍କୁ ପ୍ରଶ୍ନ କଲେ । କିନ୍ତୁ ସ୍ୱାମୀଜୀ ପୁସ୍ତକ ଅଧ୍ୟୟନରେ ଏମନ୍ତ ତନ୍ମୟ ଥିଲେଯେ ପ୍ରଫେସରଙ୍କର ବାରମ୍ବାର ପ୍ରଶ୍ନ ସତ୍ତ୍ୱେ ସେ କୌଣସି ଉତ୍ତର ଦେଇପାରି ନ ଥିଲେ । ପ୍ରଫେସର ହତ୍‌ବାକ୍ ହୋଇ କେବଳ ସ୍ୱାମୀଜୀଙ୍କୁ ଚାହିଁଥିଲେ । ଯେତେବେଳେ ସ୍ୱାମୀଜୀ ଜାଣିବାକୁ ପାଇଲେ ଯେ ପ୍ରଫେସର ମହାଶୟ ତାଙ୍କୁ ପ୍ରଶ୍ନ କରୁଛନ୍ତି, ସେତେବେଳେ ସେ ପ୍ରଫେସରଙ୍କୁ ଚାହିଁ କହିଲେ ''ସାର୍, କ୍ଷମା କରିବେ, ମୁଁ ପୁସ୍ତକ ପଠନରେ ଏଭଳି ମଜ୍ଜି ଯାଇଥିଲି ଯେ ଆପଣଙ୍କର କଥା ଶୁଣି ପାରିଲି ନାହିଁ ।''

ପ୍ରଫେସରଙ୍କୁ ସ୍ୱାମୀଜୀଙ୍କର ଏଭଳି ମନ୍ତବ୍ୟ ସନ୍ତୋଷ ପ୍ରଦାନ କଲା ନାହିଁ ଅଥବା ବିଶ୍ୱାସ ହେଲାନାହିଁ । କିନ୍ତୁ ସ୍ୱାମୀଜୀ ଯେତେବେଳେ ତାଙ୍କ ସହ ଆଲୋଚନା ବେଳେ ଉକ୍ତ ପୁସ୍ତକରୁ ପଂକ୍ତି ପରେ ପଂକ୍ତି ଉଦ୍ଧୃତ କରି ଏବଂ ସେଗୁଡ଼ିକୁ ବ୍ୟାଖ୍ୟା କରି ଆଲୋଚନାକୁ ଆଲୋକିତ କଲେ, ସେତେବେଳେ ପ୍ରଫେସର ବିସ୍ମୟାଭୂତ ହୋଇ କେବଳ ସ୍ୱାମୀଜୀଙ୍କୁ ଚାହିଁ ରହିଲେ । କିୟତ୍ ସମୟ ଅତିକ୍ରାନ୍ତେ ପ୍ରଫେସର ସାମାନ୍ୟ ପ୍ରକୃତିସ୍ଥ ହୋଇ ଅତି ନମ୍ର ଭାବରେ କହିଲେ, ''ସ୍ୱାମୀଜୀ, ଏଭଳି ଚମତ୍କାର ସ୍ମରଣଶକ୍ତି ଆପଣ କିପରି ପ୍ରଦର୍ଶନ କରିପାରିଲେ ?'' ସ୍ୱାମୀଜୀଙ୍କ ଅଧରରେ ହାସ୍ୟ ରେଖାଟିଏ ଲହରିତ ହେଲା । ସେ ତତ୍‌କ୍ଷଣାତ୍ ଏକାଗ୍ରତା ବିଷୟବସ୍ତୁ ଅଭିମୁଖ ଆଲୋଚନାକୁ କଢ଼େଇ ନେଲେ : ''ଭାରତୀୟ ଯୋଗୀଗଣ ଧ୍ୟାନ ଓ ଧାରଣା ଅଭ୍ୟାସ କରନ୍ତି । ମୋର ବ୍ୟକ୍ତିଗତ ଅନୁଭୂତିରୁ ମୁଁ ଜାଣିଛିଯେ ଜଣେ ଯୋଗୀ ଏକାଗ୍ରତାରେ ଏଭଳି ଉତ୍କର୍ଷତା ଲାଭ କରିପାରିବଯେ ବାହାରେ କ'ଣ ଘଟୁଛି ଜାଣିବା ତ ଦୂରର କଥା, ଯଦି ଖଣ୍ଡିଏ ଜ୍ୱଳନ୍ତ କାଠଟିଏ ତା'ର ଦେହରେ କେଞ୍ଚି ଦେବେ, ସେ ଜାଣିପାରିବେ ନାହିଁ ।''

Digitized by srujanika@gmail.com

- ୨ -

*ବିଶ୍ୱବିଖ୍ୟାତ ଦାର୍ଶନିକ ଡୟସନ୍‌ଙ୍କ ପାଶ୍ଚାତ୍ୟ ଚିନ୍ତାଧାରା ସ୍ୱାମୀଜୀଙ୍କ ମାଧ୍ୟମରେ ବେଦାନ୍ତର ଗୂଢ଼ ଓ ମୂଳତତ୍ତ୍ୱକୁ ବୁଝିବା ପାଇଁ ସରଳ କରିଦେଉଥିଲା ଏବଂ ସ୍ୱୟଂ ପ୍ରଫେସର ବେଦାନ୍ତ ମୂଳତତ୍ତ୍ୱର ମାନବୀ ରୂପକୁ ସ୍ୱାମୀଜୀଙ୍କ ଭିତରେ ଦେଖି ତଟସ୍ଥ ହୋଇଯାଇଥିଲେ ।*

ପ୍ରଫେସର ଡୟସନ୍ ସ୍ୱାମୀଜୀଙ୍କର ଅଲୌକିକ ଆଧ୍ୟାତ୍ମିକ ଜ୍ଞାନରେ ଏଭଳି ଆଲୋକିତ ଯେ ସେ ତାଙ୍କୁ ମୁହୂର୍ତ୍ତେ ନିଜ ପାଖରୁ ଛାଡ଼ିବା ପାଇଁ ଚାହୁଁ ନ ଥିଲେ । ଅଧିକ ଦିନ ତାଙ୍କୁ ଜର୍ମାନୀରେ ରଖିବାଲାଗି ତାଙ୍କର ସମସ୍ତ ଚେଷ୍ଟା ନିଷ୍ଫଳ ହେବାରୁ ସେ ନିଜେ ସ୍ୱାମୀଜୀଙ୍କ ସହ ହାମ୍‌ବର୍ଗରେ ଯୋଗଦେଲେ । ସେମାନେ ସମସ୍ତେ ହଲାଣ୍ଡ ରାଷ୍ଟ୍ର ଭ୍ରମଣ କଲେ । **ଆମ୍‌ଷ୍ଟେରଡାମ୍**ରେ ତିନିଦିନ ରହଣି ପରେ ଲଣ୍ଡନ ଅଭିମୁଖେ ଯାତ୍ରା କଲେ । ପ୍ରଫେସର ଲଣ୍ଡନ୍‌ରେ ଦୁଇ ସପ୍ତାହ ରହିଲେ ଏବଂ ପ୍ରତିଦିନ ସ୍ୱାମୀଜୀଙ୍କୁ ସାକ୍ଷାତ କରି ତାଙ୍କ ସହ ବିଭିନ୍ନ ଦାର୍ଶନିକ ବିଷୟରେ ଆଲୋଚନା କରିଥିଲେ ।

ବିଶ୍ୱବିଖ୍ୟାତ ଦାର୍ଶନିକ ଡୟସନ୍‌ଙ୍କ ପାଶ୍ଚାତ୍ୟ ଚିନ୍ତାଧାରା ସ୍ୱାମୀଜୀଙ୍କ ମାଧ୍ୟମରେ ବେଦାନ୍ତର ଗୂଢ଼ ଓ ମୂଳତତ୍ତ୍ୱକୁ ବୁଝିବା ପାଇଁ ସରଳ କରିଦେଉଥିଲା ଏବଂ ସ୍ୱୟଂ ପ୍ରଫେସର ବେଦାନ୍ତ ମୂଳତତ୍ତ୍ୱର ମାନବୀ ରୂପକୁ ସ୍ୱାମୀଜୀଙ୍କ ଭିତରେ ଦେଖି ତଟସ୍ଥ ହୋଇଯାଇଥିଲେ । ଏହି ସମୟରେ ସ୍ୱାମୀଜୀ ପୁନଶ୍ଚ **ଅକ୍ସଫୋର୍ଡ଼** ଯାଇ ଋଷିପ୍ରତିମ ଦାର୍ଶନିକ ମେକ୍ସମୁଲରଙ୍କୁ ସାକ୍ଷାତ କରିଥିଲେ । ଏହି ଦୁଇଜଣ ମହାନ୍ ବ୍ୟକ୍ତିତ୍ୱଙ୍କ ସାନିଧ୍ୟ ଲାଭ କରି ସ୍ୱାମୀଜୀ ବି ଉପକୃତ ହୋଇଥିଲେ । ପାଶ୍ଚାତ୍ୟର ଦାର୍ଶନିକୀୟ ଭାଷାତତ୍ତ୍ୱ ବିଜ୍ଞାନର ମହାନତା ଓ ଏହାର ଧୈର୍ଯ୍ୟଶୀଳ ଧୀଶକ୍ତି ଏବଂ ବିଜ୍ଞ ସାଧୁତା ତାଙ୍କ ସମ୍ମୁଖରେ ଅଭିବ୍ୟକ୍ତ ହୋଇପାରିଥିଲା । କେବଳ ସେତିକି ନୁହେଁ ଭାରତୀୟ ଭାଷା, ଇତିହାସ ଓ ସଂସ୍କୃତିକୁ ଏଭଳି ଅଧ୍ୟୟନ କରିବା, ଭଲ ପାଇବା ଓ ସମ୍ମାନ ଦେବା ଭଳି ବ୍ୟକ୍ତି ଭାରତ ଭୂମିରେ ଜନ୍ମ ହୋଇଥିବା ଦେଖିବାକୁ ମିଳିବେ ନାହିଁ । ଇୟୁରୋପ୍ ମହାଦେଶରେ ଏହି ଦୁଇଜଣ ପ୍ରଫେସର ଯେପରି ଭାରତୀୟ ଧର୍ମ ଓ ସଂସ୍କୃତିକୁ ଲୋକପ୍ରିୟ କରିପାରିଥିଲେ, ତାହା ଦେଖି ସ୍ୱାମୀଜୀ ସ୍ୱୟଂ ସ୍ତବ୍ଧ ହୋଇଯାଇଥିଲେ ।



Digitized by srujanika@gmail.com

॥ ଅଣତିରିଶ ॥

# ବେଦାନ୍ତ ଗର୍ଜନରେ ଲଣ୍ଡନ ସହର ଜ୍ଞାନାଲୋକିତ - ଭାରତୀୟ ଧର୍ମ ଓ ସଂସ୍କୃତି ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦ୍ୱାର ପାଶ୍ଚାତ୍ୟ ଜଗତରେ ଉନ୍ମୁକ୍ତ ହେଲା

ବର୍ତ୍ତମାନ ସ୍ୱାମୀଜୀ ତାଙ୍କର ଚାରିଭଉଣୀଙ୍କର ଭବିଷ୍ୟତ ପାଇଁ ଚିନ୍ତିତ ହେବାଭଳି ଜଣାପଡୁଥିଲେ । ଏହି ଚାରିଭଉଣୀ ଆମେରିକାବାସୀ, ସେମାନଙ୍କୁ ସ୍ୱାମୀଜୀ ଶ୍ରଦ୍ଧାରେ ''ଡିୟର ସିଷ୍ଟର'' ବୋଲି ସମ୍ବୋଧନ କରୁଥିଲେ । ଏମାନେ ହେଲେ: **ମେରି ଓ ହାରିଏଟ୍ ହେଲେ** ଏବଂ **ଇଶାବେଲ ଓ ହେରିଏଟ୍ ମେକକିଣ୍ଡଲେ** । ସେ ଉଇୟଲେଡ଼କିରେ ଥିବାବେଳେ ସମ୍ବାଦ ପାଇଲେ ଯେ ହେରିଏଟ୍ ହେଲେ ବିବାହ କରିବେ । ସ୍ୱାମୀଜୀ **୧୭ ସେପ୍ଟେମ୍ବର ୧୯୯୬**ରେ ଏକ ଚିଠି ହାରିଏଟ୍‌ଙ୍କ ନିକଟକୁ ଲେଖି ଶୁଭାଶୀର୍ବାଦ ବର୍ଷଣ କରିଥିଲେ, ''ଉମାଙ୍କ ସମ ତୁମେ ସତୀ ଓ ପବିତ୍ର ଜୀବନ ବିତାଅ - ତୁମର ପତି ଶିବଙ୍କ ସଦୃଶ ହୁଅନ୍ତୁ, ଯାହାଙ୍କର ଜୀବନ ଉମାଙ୍କ ଭିତରେ ବିରାଜିତ ।'' ସେହିଦିନ ବି ସ୍ୱାମୀଜୀ ଏକ ଲମ୍ବା ଚିଠି ମେରି ହେଲେଙ୍କ ନିକଟକୁ ଲେଖିଥିଲେ । ଏଠାରେ ଉଲ୍ଲେଖନୀୟ ଯେ ସର୍ବତ୍ୟାଗୀ ସନ୍ୟାସୀ ହୋଇ ବି ବିବାହ ଭଳି ଏକ ସାମାଜିକ ଅନୁଷ୍ଠାନ ପ୍ରତି ତାଙ୍କର ସମ୍ମାନ ଓ ଆସ୍ଥା ଥିଲା । କିନ୍ତୁ ବିବାହିତ ଜୀବନ ସୁସଂଗତ ଓ ଶୃଙ୍ଖଳିତ ହେବା ଆବଶ୍ୟକ । ଏଠାରେ ସ୍ୱାମୀଜୀଙ୍କର ଭ୍ରାତୃତ୍ୱର ଅମୃତଧାରା ଅଜାଡ଼ି ହୋଇ ପଡ଼ିଥିଲା ଭଉଣୀମାନଙ୍କ ଉପରେ ।

''ହାରିୟେଟ୍‌ର ଶୁଭ ସମ୍ବାଦବାହୀ ଚିଠି ମୁଁ ପାଇଛି, ତାହା ପଢ଼ି ଯେଉଁ ଆନନ୍ଦ ଲାଭ କଲି ତାହା ଭାଷାରେ ବର୍ଣ୍ଣନା କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ଆଜି ତା ପାଖକୁ ଖଣ୍ଡିଏ ଚିଠି ଲେଖିଛି । ତା'ର ବିବାହରେ ଯୋଗଦେଇ ପାରୁ ନ ଥିବାରୁ ମୁଁ ଦୁଃଖିତ, ତଥାପି ମୁଁ ସୂକ୍ଷ୍ମ ଶରୀରରେ ତାକୁ ସର୍ବବିଧ ଶୁଭେଚ୍ଛା ଓ ଆଶୀର୍ବାଦ ବର୍ଷଣ କରିବି । ଭଲକଥା, ମୁଁ ତୁମଠାରୁ ଓ ଅନ୍ୟ ଭଗିନୀଙ୍କଠାରୁ ଅନୁରୂପ ସମ୍ବାଦ ପାଇଲେ ମୋର ଆନନ୍ଦ ପୂର୍ଣ୍ଣ ହେବ । ଶୁଣ ମେରି, ଜୀବନରେ ଯେଉଁ ମହତ୍ ଶିକ୍ଷା ମୁଁ ପାଇଛି, ତାହା ମୁଁ ତୁମକୁ କହିବି । ତାହା ହେଉଛି : ତୁମର ଆଦର୍ଶ ଯେତେ ଉଚ୍ଚ ହେବ । ତୁମେ ସେତେ ଦୁଃଖୀ ହେବ - କାରଣ ଆଦର୍ଶରେ ଉପନୀତ ହେବ ଏହି ସଂସାରରେ ସମ୍ଭବ ନୁହେଁ ଅଥବା ଏହି ଜୀବନ କାଳରେ ବି ନୁହେଁ । ଏହି ସଂସାରରେ ଯିଏ ପରିପୂର୍ଣ୍ଣତା ଆକାଂକ୍ଷା କରେ, ସେ କେବଳ ପାଗଳ, କାରଣ ତାହା ହୋଇପାରିବ ନାହିଁ ।''

Digitized by srujanika@gmail.com

- ୧ -

*ବ୍ୟକ୍ତି ଯଦି ବଡ଼ ହେବାକୁ ଚାହାଁନ୍ତି, ତେବେ ସେମାନଙ୍କୁ ସଂଘର୍ଷ ଓ ଲଢ଼ାଇ କରିବାକୁ ହେବ - ସଂଘର୍ଷ ପାଇଁ ସଂଘର୍ଷ, ଆଉ ବାହାରକୁ ବାହାରି ଆସି ଲଢ଼େଇ । ସେମାନଙ୍କର କୌଣସି ଦାୟିତ୍ୱ ରହିବ ନାହିଁ - ବିବାହ ନୁହେଁ, ସନ୍ତାନ ନୁହେଁ, ସେହି ଗୋଟିଏ ଚିନ୍ତା ବ୍ୟତୀତ କୌଣସି ଅନାବଶ୍ୟକ ଆସକ୍ତି ନୁହେଁ, ସେହି ଆଦର୍ଶ ପାଇଁ ଜୀବନ-ଧାରଣ ଏବଂ ସେହି ଆଦର୍ଶ ପାଇଁ ମୃତ୍ୟୁବରଣ । ମୁଁ ଏହି ଶ୍ରେଣୀର ବ୍ୟକ୍ତି । ମୋର ଏକମାତ୍ର ଭାବାଦର୍ଶ ହେଲା 'ବେଦାନ୍ତ' ଏବଂ ମୁଁ 'ସଂଘର୍ଷ ପାଇଁ ପ୍ରସ୍ତୁତ' ।*

ସସୀମ ଜଗତରେ ତୁମେ କିପରି ଅସୀମର ସନ୍ଧାନ କରିପାରିବ ? ସୁତରାଂ ମୁଁ ତୁମକୁ କହୁଛି ଯେ ହାରିୟେଟ୍ ବେଶ୍ ସୁଖ ଓ ଶାନ୍ତିର ଜୀବନ ଲାଭ କରିବ, କାରଣ କଳ୍ପନାବିଳାସ ଓ ଭାବପ୍ରବଣତାର ବଶବର୍ତ୍ତୀ ହୋଇ ଜୀବନଯାପନ କରିବା ଭଳି ସେ ଏକ ନିର୍ବୋଧ ଝିଅ ନୁହେଁ । ଯେତିକି ପରିମାଣର ଭାବାବେଶରେ ଜୀବନ ମଧୁର ହୁଏ ଏବଂ ଯେତିକି ସାଧାରଣ ବୁଦ୍ଧି ଓ କୋମଳତା ଥିଲେ ଜୀବନର ଅବଶ୍ୟମ୍ଭାବୀ କର୍କଶତାଗୁଡ଼ିକ ମୃଦୁ ପାଲଟିଯାଏ - ସେତିକି ତା'ର ଅଛି । ଏହି ଗୁଣ ଆହୁରି ବେଶି ପରିମାଣରେ ରହିଛି **ହ୍ୟାରିୟେଟ୍ ମ୍ୟାକ୍ କିଣ୍ଡଲି** ଭିତରେ । ସେ ଜଣେ ଧୁରନ୍ଧର ଗୃହିଣୀ ହେବାଭଳି ଝିଅ, ମାତ୍ର ଏହି ଜଗତ ନିର୍ବୋଧ ବ୍ୟକ୍ତିମାନଙ୍କ ଦ୍ୱାରା ଏଭଳି ଭରପୂର ଯେ ଖୁବ୍ ଅଳ୍ପ ବ୍ୟକ୍ତି ରକ୍ତମାଂସର ଶରୀରକୁ ଅତିକ୍ରମ କରି ଆହୁରି ଗଭୀରତାରେ ପ୍ରବେଶ କରିପାରନ୍ତି । ତୁମ ସମ୍ବନ୍ଧରେ ଏବଂ **ଇସାବେଲ୍** ସମ୍ବନ୍ଧରେ କହିବାକୁ ଯାଇ ମୁଁ ତୁମକୁ ସତକଥା କହିବି ଏବଂ ମୋର ଭାଷା ସହଜ ଓ ସ୍ପଷ୍ଟ ।

ମେରୀ, ତୁମେ ଏକ ତେଜସ୍ୱୀ ଆରବ ଅଶ୍ୱ ସଦୃଶ ମହୀୟସୀ ଓ ଦୀପ୍ତିମୟୀ । ତୁମେ ରାଣୀ ପରି ଚମତ୍କାର ଦିଶିବ - ରୂପରେ ଓ ମାନସିକତାରେ । ତୁମେ ଜଣେ ତେଜସ୍ୱୀ, ବୀର, ଦୁଃସାହସୀ, ନିର୍ଭୀକ ପତି ପାଖରେ ଉଜ୍ଜ୍ୱଳ ଦୀପ୍ତିରେ ଶୋଭାମଣ୍ଡିତ ହେବ; କିନ୍ତୁ ସ୍ନେହର ଭଉଣୀ, ତୁମେ ଗୃହିଣୀ ଭାବରେ ଟିକିଏ ନିକୃଷ୍ଟ ହେବ । ଆମର ଦୈନନ୍ଦିନ ସଂସାରର ସ୍ୱଚ୍ଛଳଚାରୀ, ସାଂସାରିକ, ପରିଶ୍ରମୀ ଅଥଚ ଅମନୋଯୋଗୀ ପତି ବିଚରା ମାନଙ୍କର ଜୀବନକୁ ଦୁର୍ବିସହ କରିଦେବ । ଭଗିନୀ, ମନେରଖ, ଯଦିବା ଏକଥା ସତ୍ୟ ଯେ ବାସ୍ତବ ଜୀବନ ଉପନ୍ୟାସ ଅପେକ୍ଷା ବେଶି ରୋମାଞ୍ଚକର, କିନ୍ତୁ ସେପରି କ୍ୱଚିତ ଘଟିଥାଏ । ତେଣୁ ତୁମକୁ ମୋର ଉପଦେଶ, ଯେପର୍ଯ୍ୟନ୍ତ ତୁମର ଆଦର୍ଶକୁ ବାସ୍ତବ ଭୂମିକୁ ନ ଆଣିପାରିଛି, ସେପର୍ଯ୍ୟନ୍ତ ତୁମର ବିବାହ କରିବା ଠିକ୍ ହେବନାହିଁ । ଯଦି କର, ତାହା ଉଭୟଙ୍କ ପାଇଁ ଅଶାନ୍ତି ହେବ । କାହିଁକିନା କେତେମାସ ଭିତରେ ତୁମେ ଅକାରଣେ ଜଣେ ସାଧାରଣ ଭଲ ମଣିଷ ଓ ମାର୍ଜିତ ଯୁବକ ପ୍ରତି ରହିଥିବା ଶ୍ରଦ୍ଧା ହରାଇବ ଏବଂ 'ସେତେବେଳେ ସମଗ୍ର ଜୀବନ ନିରର୍ଥକ ଲାଗିବ । ଭଗିନୀ ଇସାବେଲ୍‌ଙ୍କ

Digitized by srujanika@gmail.com

ମନୋଭାବ ବି ତୁମପରି, ମାତ୍ର ଶିଶୁ ବିଦ୍ୟାଳୟ ତାଙ୍କୁ ଧୈର୍ଯ୍ୟ ଓ ସହନଶୀଳତା ଶିଖେଇଛି । ସମ୍ଭବତଃ ସେ ଜଣେ ଭଲ ଗୃହିଣୀ ହୋଇପାରିବେ ।

ଏହି ସଂସାରରେ ଦୁଇପ୍ରକାର ଲୋକ ଅଛନ୍ତି । ବଳିଷ୍ଠ, ଶାନ୍ତିପ୍ରିୟ, ପ୍ରକୃତି ନିକଟରେ ନତି ସ୍ୱୀକାର କରନ୍ତି, ବେଶି କଳହପ୍ରିୟ ନୁହନ୍ତି, କିନ୍ତୁ ସତ୍ୟାନୁସରଣାର୍ଥୀ, ସହୃଦୟ ଓ ମଧୁର ସ୍ୱଭାବ ଇତ୍ୟାଦି । ଏହି ସଂସାର ସେମାନଙ୍କ ପାଇଁ ଉଦ୍ଦିଷ୍ଟ, ସେମାନେ ସୁଖୀ ହେବାକୁ ଜନ୍ମ ଗ୍ରହଣ କରିଛନ୍ତି । ପୁନଶ୍ଚ ଅନ୍ୟ ପ୍ରକାର ଲୋକ ଅଛନ୍ତି : ସେମାନଙ୍କର ସ୍ନାୟୁ ଉଦ୍ଦୀପନା ପ୍ରବଣ, ଅତ୍ୟନ୍ତ କଳ୍ପନାବିଳାସୀ, ତୀବ୍ର ଅନୁଭୂତିସମ୍ପନ୍ନ ଏବଂ ସର୍ବଦା ଗୋଟିଏ ମୁହୂର୍ତ୍ତରେ ଉପରକୁ ଉଠନ୍ତି ଓ ଅନ୍ୟ ମୁହୂର୍ତ୍ତରେ ତଳକୁ ଖସନ୍ତି । ସେମାନଙ୍କ ଭାଗ୍ୟରେ ସୁଖ ନାହିଁ । ପ୍ରଥମ ଶ୍ରେଣୀଭୁକ୍ତ ବ୍ୟକ୍ତି ମଝାମଝି ଗୋଟିଏ ସୁଖସ୍ରୋତରେ ଭାସିଯାଆନ୍ତି । ଦ୍ୱିତୀୟ ଶ୍ରେଣୀଭୁକ୍ତ ବ୍ୟକ୍ତି ଆନନ୍ଦ ଓ ବେଦନା ମଝିରେ ଧାବିତ ହୁଅନ୍ତି । କିନ୍ତୁ ଏମାନେ ହେଲେ ପ୍ରତିଭାର ଉପାଦାନ । ପ୍ରତିଭା ଏକ ପ୍ରକାର ପାଗଳାମି । ଏତାଦୃଶ ଆଧୁନିକ ମତାବାଦ ମଧ୍ୟରେ ଅନ୍ତତଃପକ୍ଷେ ରହିଛି କିଛି ସତ୍ୟ ।

ଦ୍ୱିତୀୟ ଶ୍ରେଣୀଭୁକ୍ତ ବ୍ୟକ୍ତି ଯଦି ବଡ଼ ହେବାକୁ ଚାହାଁନ୍ତି, ତେବେ ସେମାନଙ୍କୁ ସଂଘର୍ଷ ଓ ଲଢ଼ାଇ କରିବାକୁ ହେବ - ସଂଘର୍ଷ ପାଇଁ ସଂଘର୍ଷ, ଆଉ ବାହାରକୁ ବାହାରି ଆସି ଲଢ଼େଇ । ସେମାନଙ୍କର କୌଣସି ଦାୟିତ୍ୱ ରହିବ ନାହିଁ - ବିବାହ ନୁହେଁ, ସନ୍ତାନ ନୁହେଁ, ସେହି ଗୋଟିଏ ଚିନ୍ତା ବ୍ୟତୀତ କୌଣସି ଅନାବଶ୍ୟକ ଆସକ୍ତି ନୁହେଁ, ସେହି ଆଦର୍ଶ ପାଇଁ ଜୀବନ-ଧାରଣ ଏବଂ ସେହି ଆଦର୍ଶ ପାଇଁ ମୃତ୍ୟୁବରଣ । ମୁଁ ଏହି ଶ୍ରେଣୀର ବ୍ୟକ୍ତି । ମୋର ଏକମାତ୍ର ଭାବାଦର୍ଶ ହେଲା 'ବେଦାନ୍ତ' ଏବଂ ମୁଁ 'ସଂଘର୍ଷ ପାଇଁ ପ୍ରସ୍ତୁତ' । ତୁମେ ଓ ଇସାବେଲ୍ ଏହି ଧାତୁରେ ଗଢ଼ା; କିନ୍ତୁ ମୁଁ ତୁମମାନଙ୍କୁ କହୁଛି, ଯଦିଓ କଥାଟା ଅପ୍ରିୟ, ତୁମେମାନେ ଜୀବନକୁ ବୃଥା ଅପଚୟ କରୁଛ । ତୁମେ ଗୋଟିଏ ଆଦର୍ଶକୁ ଧର, ବାହାରକୁ ଡେଇଁପଡ଼ ଏବଂ ସେହି ଆଦର୍ଶ ପାଇଁ ଜୀବନକୁ ଉତ୍ସର୍ଗ କର; କିମ୍ବା ଅଳ୍ପରେ ସନ୍ତୁଷ୍ଟ ରୁହ ଓ ବାସ୍ତବାଭିମୁଖୀ ହୁଅ; ଆଦର୍ଶକୁ ଛୋଟ କରି ବିବାହ କର ଓ ସୁଖରେ ଜୀବନଯାପନ କର । ହୁଏତ 'ଭୋଗ' ନୋହିଲେ 'ଯୋଗ' - ହୁଏତ ଏହି ଜୀବନଟାକୁ ଉପଭୋଗ କର, ଅଥବା ସବୁକିଛି ପରିତ୍ୟାଗ କରି ଯୋଗୀ ହୁଅ, ଦୁଇଟି ଏକ ସଙ୍ଗରେ ଲାଭ କରିବାର ସାଧ କାହାର ନାହିଁ । ବର୍ତ୍ତମାନ ଏହା ଲାଭ କରି ନ ପାରିଲେ, କେବେ ବି ହେବ ନାହିଁ, ଶୀଘ୍ର ଗୋଟିଏକୁ ବାଛି ନିଅ । କଥାରେ ଅଛି ଯେଉଁ ବ୍ୟକ୍ତି ଟିକିନିଖି ବିଚାର କରେ, ତା'ଭାଗ୍ୟରେ କିଛି ହୁଏ ନାହିଁ । ସେଥିସକାଶେ ଆନ୍ତରିକତା ଓ ଶୁଦ୍ଧତା ସହ ସଂଘର୍ଷ ନିମନ୍ତେ ପ୍ରସ୍ତୁତ ରହିବା ପାଇଁ ସଂକଳ୍ପବଦ୍ଧ ହୁଅ । ଦର୍ଶନ ବା ବିଜ୍ଞାନ, ଧର୍ମ ବା ବିଜ୍ଞାନ, ଧର୍ମ ବା ସାହିତ୍ୟ - ଯେକୌଣସି ଏକ ବିଷୟକୁ ଅବଲମ୍ବନ କର ଏବଂ ତୁମ ଜୀବନରେ ତାହା ହିଁ ତୁମର ଉପାସ୍ୟ ଦେବତା ହେଉ । ହୁଏତ ତୁମେ ସୁଖୀ ହେବ ନଚେତ ମହତ ହେବ । ଇସାବେଲ୍ ଓ ତୁମ ପ୍ରତି ମୋର ଟିକିଏ ହେଲେ ବି ସହାନୁଭୂତି ନାହିଁ; କାରଣ ତୁମେ ଦୁଇଜଣ ଏଥିରେ ନାହଁ କି ସେଥିରେ ନାହଁ । ତୁମେମାନେ ମଧ୍ୟ ହାରିୟେଟ୍ ପରି ଠିକ୍ ପଥ ବାଛି ନେଇ ସୁଖୀ ହୁଅ, କିମ୍ବା ମହୀୟସୀ ହୁଅ - ଏହା ମୁଁ ଦେଖିବାକୁ ଚାହେଁ ।

Digitized by srujanika@gmail.com

ମେରୀ, କେବଳ ଆନନ୍ଦମୟ, ପୋଷାକ ପରିଚ୍ଛଦ, ଅର୍ଥହୀନ ସାମାଜିକ ଚାଲିଚଳନ, ବାଲ୍ୟ ଚପଳତା ଭିତରେ ଗୋଟିଏ ଜୀବନକୁ ବିତାଇଦେବା ତୁମ ପକ୍ଷରେ ଶୋଭା ପାଏନାହିଁ । ଅଦ୍ଭୁତ ମସ୍ତିଷ୍କ ଓ କର୍ମ କୁଶଳତାର ବିନିଯୋଗ ନ କରି ସମୟ ନଷ୍ଟ କରିପକାଉଛ, ଯାହାର କୌଣସି ଯୁକ୍ତି ସଙ୍ଗତ କାରଣ ନାହିଁ । ମହାନ୍ ହେବାର ଉଚ୍ଚାକାଙ୍କ୍ଷା ତୁମକୁ ରଖିବାକୁ ହେବ । ମୁଁ ଜାଣେ, ମୋର ଏଭଳି କଠୋର ମନ୍ତବ୍ୟ ତୁମେ ଠିକ୍ ଭାବରେ ବୁଝିବ, କାରଣ ତୁମମାନଙ୍କୁ ମୁଁ 'ଭଗ୍ନୀ' ବୋଲି ସମ୍ବୋଧନ କରିଥାଏ ଏବଂ ଭଗ୍ନୀଠାରୁ ମୁଁ ଅଧିକ ତୁମମାନଙ୍କୁ ସ୍ନେହ କରେ । ଅନେକ ଦିନରୁ ଏହି କଥା ତୁମକୁ କହିବାର ମୋର ଥିଲା । ଅଭିଜ୍ଞତା ବଢୁଛି, ତେଣୁ କହିବାର ଆବେଗତାରେ ଏହିସବୁ କହି ପକାଇଲି । ହାରିୟେଟ୍‌ର ଖୁସୀ-ଖବର ମୋତେ ଏହିକଥା କହିବାକୁ ଉତ୍ସାହ ପ୍ରଦାନ କରିଛି । ତୁମେ ବିବାହ କରିଛ ଏବଂ ଏହି ସଂସାରରେ ଯେତିକି ସୁଖୀ ହେବାର କଥା ସେତିକି ସୁଖୀ ହୋଇଛ ବୋଲି ଶୁଣିଲେ ମୁଁ ଆନନ୍ଦିତ ହେବି ଅଥବା ମୁଁ ବି ଶୁଣିବାକୁ ଆଗ୍ରହୀ ଯେ ତୁମେ ସତରେ ମହତ୍ କାର୍ଯ୍ୟ କରୁଛ ।''

ବିବାହିତ ଜୀବନରେ ଜଣେ ପୁରୁଷ କିମ୍ବା ନାରୀ ମହତ୍ କାର୍ଯ୍ୟରେ ନିଜକୁ ନିୟୋଜିତ କରିପାରିବାର ଆଶା ସ୍ୱାମୀଜୀ ଚିଠି ମାଧ୍ୟମରେ ପ୍ରକଟ କରିଛନ୍ତି । କେବଳ ଇନ୍ଦ୍ରିୟ ସୁଖ ଭିତରେ ବିବାହିତ ଜୀବନ ବିତିଲେ ମାନବ ଜୀବନର ଶ୍ରେଷ୍ଠତା ବିଲୁପ୍ତ ହୋଇଯାଏ । ଜ୍ୟେଷ୍ଠଭ୍ରାତା ସଦୃଶ ଭଗ୍ନୀଦ୍ୱୟଙ୍କର ବିବାହିତ ଜୀବନକୁ ଉଚିତ ମାର୍ଗରେ ପରିଚାଳିତ କରିବା ପାଇଁ ସ୍ୱାମୀଜୀଙ୍କର ଦିଗ୍‌ଦର୍ଶନ ନିଶ୍ଚିତ ଭାବରେ ବର୍ତ୍ତମାନର ଯୁବପିଢ଼ି ନିମନ୍ତେ ଏକ ଆଲୋକସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବନାହିଁ । ଭୋଗ ଓ ଯୋଗ ଭିତରେ ଗୋଟିଏ ବିଷୟକୁ ଜୀବନରେ ବାଛିବାକୁ ହେବ ।

- ୨ -

*ବେଦାନ୍ତ ହିଁ ବିଜ୍ଞାନ ସହ ବିବାଦ ସୃଷ୍ଟି ନ କରି ବିଜ୍ଞାନକୁ ସାଥିରେ ଧରି ଭୌତିକ ଜଗତରେ ଶାନ୍ତି ପ୍ରତିଷ୍ଠା କରିପାରିବ କେବଳ ନୁହେଁ ବରଂ ମନୁଷ୍ୟକୁ ଇନ୍ଦ୍ରିୟାନୁଭୂତି ଜଗତରୁ ବହୁ ଊର୍ଦ୍ଧ୍ୱକୁ ନେଇଯାଇ ପରମସତ୍ୟ ସହ ମୁହାଁମୁହିଁ କରିଦେବ ତାହା କେବଳ ବି ନୁହେଁ, ପରମସତ୍ୟ ଓ ମନୁଷ୍ୟ ଭିତରେ ନିହିତ ବ୍ୟକ୍ତିସତ୍ତା ଏକ ଓ ଅଭିନ୍ନ ବୋଲି ପ୍ରମାଣିତ କରିବ । ସ୍ୱାମୀଜୀଙ୍କ ବେଦାନ୍ତର ଲକ୍ଷ୍ୟ ଏହାହିଁ ଥିଲା ।*

ଇତ୍ୟବସରରେ ସ୍ୱାମୀଜୀଙ୍କର ବକ୍ତୃତା ମାଧ୍ୟମରେ ପରମସତ୍ୟର ଅଭିବ୍ୟକ୍ତି ଲଣ୍ଡନ ନଗରୀର ସଚେତନ ନାଗରିକଙ୍କର ଜ୍ଞାନପିପାସୁ ମନକୁ ତୃପ୍ତ କରୁଥିଲା । ବେଦାନ୍ତର ଆଲୋକରେ ସମସ୍ତେ ଆଲୋକିତ । କିନ୍ତୁ ସ୍ୱାମୀଜୀ ବର୍ତ୍ତମାନ ଏଭଳି ପୂର୍ଣ୍ଣତାରେ ମଗ୍ନ ସତେକି ତାଙ୍କର ଜ୍ଞାନକୁମ୍ଭ ଅଚାନକ ପ୍ରବଳ ଜ୍ଞାନ ପ୍ରବାହରେ ଉଚ୍ଛୁଳି ପଡୁଛି । ତାଙ୍କର ଭାଷା ଓ ଭାବନାର ଚୁମ୍ବକୀୟ ଶକ୍ତି ସମଗ୍ର ଜନତାକୁ (ଅବଶ୍ୟ ଯାହାଙ୍କଠାରେ ରହିଛି ଆଧ୍ୟାତ୍ମିକ ଓ ଧାର୍ମିକ ସ୍ୱଭାବ) ଜାବୁଡ଼ି ଧରି

Digitized by srujanika@gmail.com

ରଖୁଥିଲା । ବେଦାନ୍ତର ଜୟଗାନ କରି ସ୍ୱାମୀ ''ପ୍ରାକ୍ଟିକାଲ ବେଦାନ୍ତ'' ଶୀର୍ଷକ ବିଷୟବସ୍ତୁ ଉପରେ ଜ୍ୱଳାମୟ ବକ୍ତବ୍ୟ ପ୍ରଦାନ କରି ଉପସ୍ଥିତ ଶ୍ରୋତାଗଣଙ୍କୁ ବିମୋହିତ କରି ଦେଇଥିଲେ । ତା'ର  ସାରାଂଶ ହେଲା ଯେ : (୧) ପ୍ରତ୍ୟେକ ସଂଗଠିତ ଧର୍ମ ବର୍ତ୍ତମାନ ବିଜ୍ଞାନଠାରୁ ଶକ୍ତ ଧକ୍କା ପାଇଲାଣି । କିନ୍ତୁ ବେଦାନ୍ତ ମାଧମରେ ଯେଉଁ ଧର୍ମ ବର୍ଣ୍ଣିତ ହୋଇଛି, ତାହା ଧର୍ମ ଓ ବିଜ୍ଞାନର ସମିଶ୍ରଣ ଅଟେ - ଧର୍ମ ଏଠାରେ ବିଜ୍ଞାନ ଭଳି ହୋଇଯାଏ ଏବଂ ବିଜ୍ଞାନକୁ ସୀମା ପର୍ଯ୍ୟନ୍ତ ନେଇଯାଏ, ଯେଉଁଠାରୁ ବିଜ୍ଞାନ ତା'ର ଭୌତିକ ଓ ବାହ୍ୟିକ ଆଧାରଭୂମି, ପ୍ରବେଶ କରିପାରିବ ନାହିଁ, (୨) ବ୍ୟକ୍ତିଗତ ଈଶ୍ୱର ବା ସାକାର ଈଶ୍ୱର ଧାରଣା ବେଦାନ୍ତ ବିଶ୍ୱାସ କରେନାହିଁ ଏବଂ ଏହା ଅଯୌକ୍ତିକ ଅବାନ୍ତର ଓ ନିରର୍ଥକ । କିନ୍ତୁ ନୈର୍ବେକ୍ତିକ ଈଶ୍ୱର ଅର୍ଥାତ୍ ନିରାକାର ଧାରଣା ଭଳି ଶ୍ରେଷ୍ଠତମ ଉଚ୍ଚଚିନ୍ତା ଯେତେବେଳେ ବେଦାନ୍ତ ବର୍ଣ୍ଣନା କରେ, ସେତେବେଳେ ଏହା ଯୌକ୍ତିକ ଓ ବୈଜ୍ଞାନିକ ହୋଇଯାଏ, (୩) ଯେଉଁ ଧର୍ମ ବେଦାନ୍ତ ମାଧମରେ ବୈଜ୍ଞାନିକ ହୋଇଯାଏ ଯାହା ଭିତରୁ ସ୍ପଷ୍ଟ ବାରିହୁଏ କିନ୍ତୁ ବାହାରୁ ନୁହେଁ । ଅର୍ଥାତ୍ ବସ୍ତୁର ଚରିତ୍ର ଏହାର ଚରିତ୍ରରୁ ହିଁ ବୁଝାପଡ଼ିଥାଏ ।'' ବେଦାନ୍ତ ହିଁ ବିଜ୍ଞାନ ସହ ବିବାଦ ସୃଷ୍ଟି ନ କରି ବିଜ୍ଞାନକୁ ସାଥିରେ ଧରି ଭୌତିକ ଜଗତରେ ଶାନ୍ତି  ପ୍ରତିଷ୍ଠା କରିପାରିବ କେବଳ ନୁହେଁ ବରଂ ମନୁଷ୍ୟକୁ ଇନ୍ଦ୍ରିୟାନୁଭୂତି ଜଗତରୁ ବହୁ ଉର୍ଦ୍ଧ୍ୱକୁ ନେଇଯାଇ ପରମସତ୍ୟ ସହ ମୁହାଁମୁହିଁ କରିଦେବ ତାହା କେବଳ ବି ନୁହେଁ, ପରମସତ୍ୟ ଓ ମନୁଷ୍ୟ ଭିତରେ ନିହିତ ବ୍ୟକ୍ତିସତ୍ତା ଏକ ଓ ଅଭିନ୍ନ ବୋଲି ପ୍ରମାଣିତ କରିବ । ସ୍ୱାମୀଜୀଙ୍କ ବେଦାନ୍ତର ଲକ୍ଷ୍ୟ ଏହାହିଁ ଥିଲା ।

କଲିକତାସ୍ଥିତ ଆଲମବଜାର ରାମକୃଷ୍ଣ ମଠର ସୁପରିଚାଳନାର ଚିତ୍ର ସ୍ୱାମୀଜୀଙ୍କ ମାନସ ଦର୍ଶନରେ ଉଦ୍‌ଭାସିତ ହେଲା । ଉକ୍ତ ମଠକୁ ସାଂଗଠନିକ ମାର୍ଗରେ ଚଳାଇବା ତାଙ୍କର ଲକ୍ଷ୍ୟ । ସେଥିପାଇଁ ସେ ନିଜର ଗୁରୁଭାଇ ସ୍ୱାମୀ ରାମକୃଷ୍ଣାନନ୍ଦଙ୍କ ନିକଟକୁ ଏପ୍ରିଲ **୨୭, ୧୮୯୬**ରେ ଖଣ୍ଡିଏ ଦୀର୍ଘ ପତ୍ର ଲେଖିଥିଲେ । ... ତୁମମାନଙ୍କୁ କିଛି କହିବା ପାଇଁ ମୁଁ ଚାହେଁ । ତୁମମାନଙ୍କ ଉପରେ କର୍ତ୍ତୃତ୍ୱ ଜାହିର କରିବା ଉଦ୍ଦେଶ୍ୟରେ ମୁଁ ଏହା କହୁନାହିଁ, ବରଂ ତୁମମାନଙ୍କର କଲ୍ୟାଣ ତଥା ପ୍ରଭୁଙ୍କର ଇଚ୍ଛା ପୂରଣ ନିମନ୍ତେ ଏହା ଉଦ୍ଦିଷ୍ଟ । କାହିଁକିନା ପ୍ରଭୁ (ଶ୍ରୀରାମକୃଷ୍ଣ) ଯେଉଁଥିପାଇଁ ଧରାପୃଷ୍ଠରେ ଅବତରଣ କରିଥିଲେ, ସେହି ଇଚ୍ଛାର ପୂର୍ତ୍ତି ନିମନ୍ତେ ମୁଁ ଏହା କରିବାକୁ ଚାହେଁ । ସେ ମୋ ଉପରେ ତୁମମାନଙ୍କର ଦାୟିତ୍ୱ ନ୍ୟସ୍ତ କରିଯାଇଛନ୍ତି ଏବଂ ସଂସାରର ମହାନ୍ ହିତ ଓ କଲ୍ୟାଣ ପାଇଁ ତୁମେମାନେ କାର୍ଯ୍ୟ କରିବ - ଯାହା ତୁମମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଜଣାନାହିଁ; ତୁମମାନଙ୍କ ପାଖକୁ ଲେଖିବାର ଏହା ହିଁ ମୋର ବିଶେଷ କାରଣ । ତୁମମାନଙ୍କ ମଧ୍ୟରୁ କାହାର ଯଦି କୌଣସି ପ୍ରକାର ଅହଂକାର ଓ ଈର୍ଷା ଜାତ ହୋଇଥାଏ ତେବେ ଏହା ଏକ ଅନୁଶୋଚନାର କାରଣ ହେବ । ଯେଉଁମାନେ ପରସ୍ପର ସହୃଦୟତା ସହିତ ଯେତେ କାଳ ସମ୍ଭବ ସେତେକାଳ ସହାବସ୍ଥାନ କରିପାରନ୍ତି ନାହିଁ, ସେମାନଙ୍କ ନିମନ୍ତେ ଆନ୍ତରିକ ସମ୍ପର୍କ ଏହି ଧରିତ୍ରୀରେ ସ୍ଥାପନ କରିବା କ'ଣ ସମ୍ଭବ ନୁହେଁ ? ନିୟମ ଦ୍ୱାରା ବଦ୍ଧ ହେବା ନିଶ୍ଚିତ ଭାବରେ ମନ୍ଦ ଏଥିରେ ସନ୍ଦେହ ନାହିଁ, କିନ୍ତୁ ଏହି ଅପରିପକ୍ୱ ଅବସ୍ଥାରେ ନିୟମ ଦ୍ୱାରା ପରିଚାଳିତ ହେବା ନିହାତି ଆବଶ୍ୟକ; ସେଥିପାଇଁ ତ ଠାକୁର କହୁଥିଲେ ଯେ ଚାରା ଗଛକୁ ବାଡ଼ ଦ୍ୱାରା

Digitized by srujanika@gmail.com

ଘେରାଇବାକୁ ହେବ, ଏଭଳି ଅନେକ କଥା । ଦ୍ୱିତୀୟରେ ଅଳସୁଆ ମନ ଅଯଥା କଥାରେ ଲିପ୍ତ ରୁହେ । ତେଣୁ ନିମ୍ନଲିଖିତ ସଂକେତ ମୁଁ ଲେଖୁଛି । ତୁମେ ଯଦି ସେଗୁଡ଼ିକୁ ଅନୁସରଣ କରିବ, ତୁମେ ନିଃସନ୍ଦେହରେ ଉନ୍ନତି କରିବ, ଯଦି ତୁମେ ଏହା ନ କର, ତେବେ ଆମର ସମସ୍ତ ପରିଶ୍ରମ ବୃଥା ଯିବ ।

- ୩ -

*ଯଦି ସ୍ୱାମୀଜୀଙ୍କର ଇଂଲଣ୍ଡର ଧର୍ମଶିକ୍ଷା କାର୍ଯ୍ୟକ୍ରମକୁ ଏକ ମିଶନାରୀ ଉଦ୍ୟମ ଭାବେ ଗ୍ରହଣ କରାଯାଏ, ତେବେ ତାହା ତତ୍କାଳୀନ ଅନ୍ୟ ମିଶନାରୀ କାର୍ଯ୍ୟ ସହିତ ତୁଳନା ଯୋଗ୍ୟ ହୋଇପାରିବ । କିନ୍ତୁ ତାଙ୍କର ଏତାଦୃଶ ମିଶନାରୀ କାର୍ଯ୍ୟ କୌଣସି ତିକ୍ତତା ସୃଷ୍ଟି କରି ନ ଥିଲା, କୌଣସି ସଂପ୍ରଦାୟ ମଧ୍ୟରେ ଘୃଣା ଜାତ କରାଇ ନ ଥିଲା । ଏହାର କାରଣ ଅତି ସରଳ ଏବଂ ଏହାର ଶକ୍ତି ବିଶାଳ ଥିଲା । ସ୍ୱାମୀଜୀ ଜଣେ ସାଂପ୍ରଦାୟିକ ବ୍ୟକ୍ତି ନ ଥିଲେ, ସେ ଥିଲେ ଜଣେ ଧର୍ମର ଅଗ୍ରଣୀ ବ୍ୟକ୍ତି, କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମର ନୁହେଁ ।*

ମଠର ପରିଚାଳନା ଓ ଦଶଟି ନିର୍ଦ୍ଦେଶାବଳୀ ସମ୍ବନ୍ଧରେ ବର୍ଣ୍ଣନା କରି ଲେଖିସାରିବା ପରେ ମଠର ମୁଖ୍ୟ ତିନୋଟି ବିଭାଗ ସମ୍ବନ୍ଧରେ ସ୍ୱାମୀଜୀ ଲେଖିଥିଲେ । ତାହା ହେଲା : (୧) ଅଧ୍ୟୟନ, (୨) ପ୍ରଚାର ଓ ପ୍ରସାର, (୩) ଧାର୍ମିକ ସାଧନା । ଲଣ୍ଡନ ଅବସ୍ଥାନ କାଳରେ ସ୍ୱାମୀ ଅଭେଦାନନ୍ଦଙ୍କ ପ୍ରଥମ ବକ୍ତୃତା ସ୍ୱାମୀଜୀଙ୍କୁ ମୁଗ୍ଧ କରିଥିଲା । ସେ ବର୍ତ୍ତମାନ ଆନନ୍ଦିତ ଯେ ତାଙ୍କର ଗୁରୁଭାଇମାନେ ତାଙ୍କଭଳି ଦକ୍ଷ ଓ ତାଙ୍କର ଅଧୁରା କାର୍ଯ୍ୟକୁ ବିନା ବାଧାବିଘ୍ନରେ ଆଗେଇ ନେଇପାରିବେ । ସ୍ୱାମୀ ସାରଦାନନ୍ଦଙ୍କର ଆମେରିକାରେ ସଫଳତା ବି ତାଙ୍କୁ ସନ୍ତୋଷ ପ୍ରଦାନ କରିପାରିଥିଲା । ବେଦାନ୍ତର ବିଜୟ ଝଣ୍ଡା ସମଗ୍ର ବିଶ୍ୱରେ ଧୀରେ ଧୀରେ ଉଡ୍ଡୟନ ହେବ ବୋଲି ସ୍ୱାମୀଜୀ ନିଜର ମାନସ ଦର୍ଶନରେ ଜଳଜଳ ଦେଖି ପାରିଥିଲେ । **ନଭେମ୍ବର ୨୧, ୧୮୯୬**ରେ ସ୍ୱାମୀଜୀ **କେମ୍ବ୍ରିଜ୍ ଇଣ୍ଡିଆନ୍ ମଜ୍‌ଲିସ୍** ତରଫରୁ ଆୟୋଜିତ ୟୁନିଭରସିଟି **ଆର୍ମ୍ସ** ହୋଟେଲରେ ଏକ ନୈଶ ଭୋଜିରେ ଏକ ସୁନ୍ଦର ବକ୍ତୃତା ପ୍ରଦାନ କରିଥିଲେ । ଦୁଇଜଣ ଭାରତୀୟ ପ୍ରଥିତଯଶା ଛାତ୍ର **ରାଜକୁମାର ରଣଜିତ୍ ସିଂହଜୀ ଓ ଅତୁଲ ଚନ୍ଦ୍ର ଚାଟାର୍ଜୀଙ୍କ** ନିମନ୍ତେ ଏହି ରାତ୍ର ଭୋଜନର ଆୟୋଜନ ହୋଇଥିଲା । ସ୍ୱାମୀ ବିବେକାନନ୍ଦଙ୍କୁ ସ୍ୱତନ୍ତ୍ର ଅତିଥି ଭାବେ ନିମନ୍ତ୍ରଣ କରାଯାଇଥିଲା । ସ୍ୱାମୀଜୀ ଏହି ନୈଶ ଭୋଜିରେ ଯାହା କହିଥିଲେ, ତାହା ଅତୀବ ହୃଦୟସ୍ପର୍ଶୀ :

ସ୍ୱାମୀ ବିବେକାନନ୍ଦ ଆନନ୍ଦ ମୁଖରିତ କରତାଳି ଭିତରେ କହିବାକୁ ଦଣ୍ଡାୟମାନ ହେଲେ । ''ମୋତେ କାହିଁକି ଏହି ନୈଶଭୋଜିର ସମ୍ମାନାର୍ଥେ କହିବାକୁ ନିର୍ବାଚିତ କରାଗଲା ମୁଁ

Digitized by srujanika@gmail.com

ତାହା ସଠିକ ଭାବେ ଜାଣିନାହିଁ । ମୋର ପୃଥୁଳ ଶରୀର ଭାରତର ଜାତୀୟ ପ୍ରାଣୀ ସାଦୃଶ୍ୟ ହୋଇଥିବାରୁ ମୋତେ ଯଦି ନିର୍ବାଚିତ କରିଥାନ୍ତି, ତାହା ହେଲେ କଥାଟା ଅଲଗା । ସଭା ହାସ୍ୟରୋଳରେ ଗର୍ଜିଉଠିଲା । ସାଂଧ୍ୟକାଳୀନ ସଭାର ଅତିଥିମାନଙ୍କୁ ସେ ବଧାଇ ଜଣାଇଲେ । ଶ୍ରୀ ଚାଟାର୍ଜୀ ଭାରତର ଅତୀତର ଐତିହାସିକଙ୍କର ତ୍ରୁଟି ସଂଶୋଧନ କରିବେ ବୋଲି ସଭାର ଅଧକ୍ଷଙ୍କର ମନ୍ତବ୍ୟକୁ ସେ ଅବଶ୍ୟ ସମର୍ଥନ ଜଣାଇଲେ । ଅତୀତ ମଧ୍ୟରୁ ଭବିଷ୍ୟତର ଉଦ୍ଭବ ନିଶ୍ଚିତ ହେବ । ଇୟୁରୋପୀୟମାନଙ୍କଠାରୁ ସେମାନେ ବହୁତ କିଛି ଶିଖିଛନ୍ତି କିନ୍ତୁ ସେମାନଙ୍କର ଅତୀତ, ଭାରତର ଗୌରବ ଯାହା ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଛି, ତାହା ପ୍ରେରଣା ଓ ଶିକ୍ଷାର ଉତ୍ସ ଭାବରେ ରହିଛି । ବସ୍ତୁର ଉତ୍‌ଥାନ ହୁଏ, ବସ୍ତୁର ପତନ ବି ହୁଏ । ସମଗ୍ର ସଂସାରରେ ଉତ୍‌ଥାନ ଓ ପତନ ଲାଗିରହିଛି । ଏବଂ ଭାରତର ଯେହେତୁ ବର୍ତ୍ତମାନ ପତନ ହୋଇଛି, ସେ ନିଶ୍ଚିତ ଭାବରେ ଉତ୍‌ଥିତ ହେବ । ସମୟ ଥିଲା ଯେତେବେଳେ ଭାରତ ମହାନ୍ ଦାର୍ଶନିକ ଏବଂ ପ୍ରଭାବଶାଳୀ ଧର୍ମଯାଜକ ଓ ପ୍ରଚାରକ ଉତ୍ପନ୍ନ କରିପାରିଥିଲା । ସେହି ଦିନଗୁଡ଼ିକର ସ୍ମୃତି ସେମାନଙ୍କର ଆଶା ଓ ବିଶ୍ୱାସକୁ ଆହୁରି ବଢ଼ାଇ ଦେବ । ଭାରତର ଇତିହାସରେ ଏହା ପ୍ରଥମ ନ ଥିଲା ଯେ ସେମାନେ ବହୁତ ନିମ୍ନସ୍ତରରେ ଥିଲେ । ଏହା ପୂର୍ବରୁ ଅବପାତ ଓ ଅଧୋଃଗତି ହୋଇଥିଲା କିନ୍ତୁ ଭାରତ ସର୍ବଶେଷରେ ବିଜୟ ଲାଭ କରିଥିଲା ଏବଂ ଠିକ୍ ସେଭଳିବି ଭବିଷ୍ୟତରେ ପୁନର୍ବାର ଉତ୍‌ଥିତ ହେବ ।''

ଏଠାରେ ସ୍ମରଣୀୟ ଯେ ସ୍ୱାମୀଜୀ ୟୁରୋପ ମହାଦେଶରେ ବିଶ୍ରାମ ନେଇ ଇଂଲଣ୍ଡକୁ ପ୍ରତ୍ୟାବର୍ତ୍ତନ କରିବା ପରେ, ସେ ବହୁସମୟ, ପ୍ରାୟ ତିନିମାସ ଧରି ଗଭୀର ଆଧ୍ୟାତ୍ମିକ ଉପଦେଶନ ପ୍ରଦାନ କାର୍ଯ୍ୟରେ ନିମଗ୍ନ ରହିଥିଲେ । ଅବଶ୍ୟ ତାଙ୍କର ଆଧ୍ୟାତ୍ମିକତା ପରିପୂର୍ଣ୍ଣ ଶିକ୍ଷା ଓ ଉପଦେଶନ ଲୋକଙ୍କ ଭିତରେ ଦ୍ରୁତଗତିରେ ପ୍ରଥମରୁ ଅଗ୍ରସର ହୋଇ ନ ଥିଲା କିନ୍ତୁ ଧୀରେ ଧୀରେ ପ୍ରାଚ୍ୟ ଚିନ୍ତାଧାରାକୁ ସାଧାରଣ ଜନତା ସ୍ୱାମୀଜୀଙ୍କ ସଦୃଶ ଶିକ୍ଷକ ମାଧ୍ୟମରେ ବୁଝିପାରିଥିଲେ । ବିଶେଷତଃ ବିଭିନ୍ନ ପାଶ୍ଚାତ୍ୟ ପଣ୍ଡିତ ଓ ବିଦ୍ୱାନ ଯେଉଁମାନେ ସ୍ୱାମୀଜୀଙ୍କର ବକ୍ତୃତା ଶୁଣିଥିଲେ, ସେମାନଙ୍କର ଦୃଷ୍ଟି ଭାରତର ବହୁ ପ୍ରାଚୀନ ବେଦାନ୍ତର ସାର୍ବଜନୀନ ଚିନ୍ତାଧାରା ଓ ଜ୍ଞାନ ପ୍ରତି ବହୁଳ ଭାବରେ ଆକର୍ଷିତ ହୋଇଥିଲା । ଯଦି ସ୍ୱାମୀଜୀଙ୍କର ଇଂଲଣ୍ଡର ଧର୍ମଶିକ୍ଷା କାର୍ଯ୍ୟକ୍ରମକୁ ଏକ ମିଶନାରୀ ଉଦ୍ୟମ ଭାବେ ଗ୍ରହଣ କରାଯାଏ, ତେବେ ତାହା ତତ୍‌କାଳୀନ ଅନ୍ୟ ମିଶନାରୀ କାର୍ଯ୍ୟ ସହିତ ତୁଳନା ଯୋଗ୍ୟ ହୋଇପାରିବ । କିନ୍ତୁ ତାଙ୍କର ଏତାଦୃଶ ମିଶନାରୀ କାର୍ଯ୍ୟ କୌଣସି ତିକ୍ତତା ସୃଷ୍ଟି କରି ନ ଥିଲା, କୌଣସି ସଂପ୍ରଦାୟ ମଧ୍ୟରେ ଘୃଣା ଜାତ କରାଇ ନ ଥିଲା । ଏହାର କାରଣ ଅତି ସରଳ ଏବଂ ଏହାର ଶକ୍ତି ବିଶାଳ ଥିଲା । ସ୍ୱାମୀଜୀ ଜଣେ ସାଂପ୍ରଦାୟିକ ବ୍ୟକ୍ତି ନ ଥିଲେ, ସେ ଥିଲେ ଜଣେ ଧର୍ମର ଅଗ୍ରଣୀ ବ୍ୟକ୍ତି, କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମର ନୁହେଁ ।'' କେବଳ ପାଶ୍ଚାତ୍ୟ ଜଗତକୁ କାହିଁକି, ସମଗ୍ର ବିଶ୍ୱକୁ ତାଙ୍କର ଦାନ ବାସ୍ତବରେ କ'ଣ ହୋଇପାରେ କିମ୍ବା କିଭଳି ଭାବେ ଅନୁଭୂତ ହୋଇପାରେ, ତାହାର କିୟତ୍ ଝଲକ୍ **ମେରୀ ହେଲେଙ୍କ** ନିକଟକୁ ନଭେମ୍ବର **୧୮୯୬, ୧** ତାରିଖରେ ଲେଖିଥିବା ପତ୍ରରୁ ଅନୁମାନ କରିହେବ । ( ୧୪ ଗ୍ରେକୋର୍ଟ ଗାର୍ଡେନ୍‌ସ୍, ଓ୍ୱେଷ୍ଟମିନିଷ୍ଟର, ଲଣ୍ଡନ - ୧ ନଭେମ୍ବର ୧୮୯୬) ।

Digitized by srujanika@gmail.com

''ପ୍ରିୟ ମେରୀ, ସୁନା, ରୂପା ଏସବୁ କିଛିମୋର ନାହିଁ । ତେବେ ମୋର ଯାହା ଅଛି,ତାହା ତୁମକୁ ମୁକ୍ତ ହସ୍ତରେ ଅର୍ପଣ କରୁଛି । ସ୍ୱର୍ଣ୍ଣର ସ୍ୱର୍ଣ୍ଣତ୍ୱ, ରୌପ୍ୟର ରୌପ୍ୟତ୍ୱ, ପୁରୁଷର ପୁରୁଷତ୍ୱ, ନାରୀର ନାରୀତ୍ୱ ହିଁ ଜ୍ଞାନ - ପ୍ରତ୍ୟେକ ବସ୍ତୁର ଯଥାର୍ଥ ସ୍ୱରୂପ ହିଁ ଈଶ୍ୱର ବା ବ୍ରହ୍ମ । ଏହି ବ୍ରହ୍ମଙ୍କୁ ହିଁ ଆମେ ଅନାଦି କାଳରୁ ବହିର୍ଜଗତ ମଧ୍ୟରେ ଉପଲବ୍ଧି କରିବାକୁ ଚେଷ୍ଟା କରୁଛେ; ଆଉ ଏଭଳି ପ୍ରୟାସବଶତଃ ଆମ ମନରୁ ଏହି ସକଳ କିମ୍ଭୁତକିମାକାର ଜୀବ ସୃଷ୍ଟି ହେଉଛନ୍ତି, ଯଥା - ପୁରୁଷ, ନାରୀ, ଶିଶୁ, ଶରୀର, ମନ, ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର ନକ୍ଷତ୍ରରାଜି, ଜଗତ, ପ୍ରେମ, ଘୃଣା, ଧନ, ସମ୍ପତ୍ତି ଏବଂ ଭୂତ, ପ୍ରେତ, ଗନ୍ଧର୍ବ, କିନ୍ନର, ଦେବତା, ଈଶ୍ୱର ଇତ୍ୟାଦି ।

- ୪ -

*ଜୀବନ-ମୃତ୍ୟୁ, ଭଲ-ମନ୍ଦ, ଜ୍ଞାନ ଅଜ୍ଞାନର ମିଶ୍ରଣ ହିଁ ମାୟା ଅଥବା ସାର୍ବଜନୀନ ପ୍ରକୃତି । ଅନନ୍ତକାଳ ଧରି ଏହି ସଂସାର ଜାଲ ଭିତରେ ସୁଖର ଅନ୍ୱେଷଣ ନିମନ୍ତେ ତୁମେ ଭ୍ରମଣ କରିପାର, ସେଥିରେ ବହୁତ ସୁଖ ମିଳିବ, କିନ୍ତୁ ବହୁତ ଦୁଃଖ ବି ପାଇବ । କେବଳ ଭଲଟି ପାଇବି, ମନ୍ଦଟି ପାଇବି ନାହିଁ - ଏତାଦୃଶ ଆଶା ବାଲ୍ୟସୁଲଭ ବୁଦ୍ଧିହୀନତା ମାତ୍ର ।*

ପ୍ରକୃତ କଥା ହେଉଛି ଯେ ବ୍ରହ୍ମ ହିଁ ଆମ ଭିତରେ ବିରାଜିତ ଏବଂ ଆମେ ହିଁ ସେ **(ସୋଽହଂ)**; ସେ ହିଁ ଶାଶ୍ୱତ ଜ୍ଞାତା, ସେ ହିଁ ବାସ୍ତବ ଅହଂମ୍ । ସେ କସ୍ମିନକାଳେ ଇନ୍ଦ୍ରିୟଗୋଚର ହେବେ ନାହିଁ; ଏବଂ ତାଙ୍କୁ ଅନ୍ୟବସ୍ତୁ ଭଳି ଇନ୍ଦ୍ରିୟଗୋଚର କରିବାର ଚେଷ୍ଟା କେବଳ ସମୟ ଓ ମେଧାଶକ୍ତିର ଅପଚୟ ମାତ୍ର । ଯେତେବେଳେ ଜୀବାତ୍ମା ଏହା ବୁଝିପାରେ, ସେତିକିବେଳେ ଏହି ଜଗତ୍ ପରିକଳ୍ପନା - ପ୍ରକ୍ରିୟା ଭିତରୁ ନିବୃତ୍ତ ହୁଏ ଏବଂ କ୍ରମଶଃ ଅଧିକତର ସ୍ୱୀୟ ଅନ୍ତରାତ୍ମା ପ୍ରତି ଆକର୍ଷିତ ହୁଏ । ଏହାର ନାମ କ୍ରମବକାଶ - ଶରୀର ପ୍ରତି ଆକର୍ଷଣ ହ୍ରାସ ହୁଏ ଏବଂ ମନ ଉଚ୍ଚରୁ ଉଚ୍ଚତର ସୋପାନକୁ ଉଦ୍‌ବୃତ ହୁଏ; ମନୁଷ୍ୟ ହିଁ ପୃଥିବୀର ଶ୍ରେଷ୍ଠତମ ବିକାଶ । ମନୁଷ୍ୟ ଶବ୍ଦ ସଂସ୍କୃତ 'ମନ୍' ଧାତୁରୁ ଆସିଛି - ସୁତରାଂ ଏହାର ଅର୍ଥ - ମନନଶୀଳ ପ୍ରାଣୀ - କେବଳ ଇନ୍ଦ୍ରିୟ ଦ୍ୱାରା ବିଷୟ ଗ୍ରହଣ ପ୍ରାଣୀ ନୁହେଁ । ଧର୍ମତତ୍ତ୍ୱରେ ଏହି କ୍ରମ ବିକାଶକୁ 'ତ୍ୟାଗ' ଆଖ୍ୟା ଦିଆଯାଇଛି । ସମାଜ ଗଠନ, ବିବାହ ପ୍ରଥାର ପ୍ରବର୍ତ୍ତନ, ସନ୍ତାନ ସନ୍ତତିଙ୍କ ପ୍ରତି ପ୍ରେମ, ଆମର ସତ୍‌କର୍ମ, ନୈତିକତା ଏବଂ ନୀତି ହିଁ ତ୍ୟାଗର ବିଭିନ୍ନ ରୂପ । ପ୍ରତ୍ୟେକ ସମାଜରେ ଆମର ଜୀବନଧାରଣ ଇଚ୍ଛା, ତୃଷ୍ଣା, କାମନାର ବଶବର୍ତ୍ତୀ । ଇଚ୍ଛା କିମ୍ବା ଅବାସ୍ତବ ଅହଂଭାବର ସମର୍ପଣ - ଅଥବା ନିଜ ଭିତରୁ ବାହାରିଯିବାର ପ୍ରଚେଷ୍ଟା ଇଯେ ସବୁ ଜ୍ଞାତାଙ୍କୁ ଜାଣିବାର ପ୍ରକ୍ରିୟା ମାତ୍ର । ସମାଜ ଓ ସାମାଜିକ ଗଠନର ସଂସାର ମଧ୍ୟରେ ଏହା ହିଁ ଏକ ଘଟଣାର ବିଭିନ୍ନ ଧାରା ଓ ସ୍ତର । ଆତ୍ମ ସମର୍ପଣ ଅଥବା ଇଚ୍ଛାର ଦମନର ସବୁଠାରୁ ସହଜ ଓ ଅନାୟାସ ପଥ ହେଉଛି ପ୍ରେମ ଏବଂ ଏହାର ବିପରୀତ ଘୃଣା ଅଟେ ।

Digitized by srujanika@gmail.com

ସାଧାରଣ ଜନତାଙ୍କ ନାନାପ୍ରକାର ସ୍ୱର୍ଗ, ନର୍କ ଓ ମହାକାଶରେ ବିରାଜିତ ଶାସନକର୍ତ୍ତାଙ୍କ ଗଳ୍ପ ଅଥବା କୁସଂସ୍କାର ଦ୍ୱାରା ଭ୍ରମିତ କରି ଏହି ଏକମାତ୍ର ଲକ୍ଷ୍ୟ ଆତ୍ମସମର୍ପଣ ପଥରେ ପରିଚାଳିତ କରାଯାଇଛି । କିନ୍ତୁ ଜ୍ଞାନୀ କୁସଂସ୍କାରରେ ବଶବର୍ତ୍ତୀ ନ ହୋଇ ବିଷୟବାସନା ବର୍ଜନ ଦ୍ୱାରା ଜ୍ଞାତସାରରେ ଏହି ପନ୍ଥାର ଅନୁବର୍ତ୍ତନ କରିଥାନ୍ତି ।

ଅତଏବ, ବାସ୍ତବ ସ୍ୱର୍ଗ କିମ୍ବା ଖ୍ରୀଷ୍ଟିଆନ ପୁରାଣୋକ୍ତ ସୁଖର ସହସ୍ରବର୍ଷର ଅସ୍ତିତ୍ୱ କେବଳ କଳ୍ପନାରେ ରହିଛି । କିନ୍ତୁ ଆଧ୍ୟାତ୍ମିକ ସ୍ୱର୍ଗ ଆମ ହୃଦୟରେ ପୂର୍ବରୁ ହିଁ ବିଦ୍ୟମାନ । ମୃଗ ନିଜ ନାଭିମଣ୍ଡଳରୁ ବର୍ହିଗତ କସ୍ତୁରିର ସୁଗନ୍ଧ ଜାଣି ନ ପାରି ବୃଥାରେ ଏଣେ ତେଣେ ଧାବିତ ହୁଏ, କିନ୍ତୁ ଶେଷରେ ଯେତେବେଳେ ସେ ଜାଣିପାରେ ଯେ କସ୍ତୁରିର ସୁଗନ୍ଧ ନିଜ ଭିତରେ ବିଦ୍ୟମାନ, ସେତେବେଳେ ତା'ର ବାହ୍ୟିକ ଅନ୍ୱେଷଣର ସମାପ୍ତି ଘଟେ ।

ବାସ୍ତବ ସମାଜ ଭଲ ଓ ମନ୍ଦର ସମିଶ୍ରଣ ହୋଇ ସର୍ବଦା ରହିବ, ମୃତ୍ୟୁ ରୂପକ ଛାୟା ମଧ୍ୟ ଚିରଦିନ ଏହି ପାର୍ଥିବ ଜୀବନର ଅନୁସରଣ କରିବ; ପୁଣି ଜୀବନ ଯେତେ ଦୀର୍ଘ ହେବ, ଏହି ଛାୟା ମଧ୍ୟ ସେତେ ଦୀର୍ଘ ହେବ । ସୂର୍ଯ୍ୟ ଯେତେବେଳେ ଆମ ମୁଣ୍ଡ ଉପରେ ରହନ୍ତି, ସେତିକିବେଳେ ଆମର ଛାୟା ପଡ଼େ ନାହିଁ । ଠିକ୍ ସେହିଭଳି ଯେତେବେଳେ ଇଶ୍ୱର ଓ ଶୁଭ ଓ ଅନ୍ୟାନ୍ୟ ସବୁ ମୋ ଭିତରେ ରହିଛନ୍ତି ବୋଲି ବୋଧହୁଏ, ସେତେବେଳେ ଆମର ଛାୟା ପଡ଼େ ନାହିଁ । ଠିକ୍ ସେହିଭଳି ଯେତେବେଳେ ଇଶ୍ୱର ଓ ଶୁଭ ଓ ଅନ୍ୟାନ୍ୟ ସବୁ ମୋ ଭିତରେ ରହିଛନ୍ତି ବୋଲି ବୋଧହୁଏ, ସେତେବେଳେ ଆଉ ଅମଙ୍ଗଳ ରହେ ନାହିଁ । ବସ୍ତୁନିଷ୍ଠ ଜୀବନରେ, ପ୍ରତ୍ୟେକ ଗୁଳିର ଧାତୁ ଖଣ୍ଡ ରହିବା ଭଳି ପ୍ରତ୍ୟେକ ଭଲ ସହିତ ମନ୍ଦ ଛାୟାଭଳି ରହିଛି । ପ୍ରତ୍ୟେକ ଉନ୍ନତି ସହିତ ସମସ୍ତରର ଅବନତି ମଧ୍ୟ ସଂଯୁକ୍ତ ହୋଇ ରହିଛି । ତାହାର କାରଣ ଏହିକି ଯେ ଭଲ ଓ ମନ୍ଦ ଦୁଇଟି ପୃଥକ ବସ୍ତୁ ନୁହେଁ, ବସ୍ତୁତ ଏକ; ପରସ୍ପର ମଧ୍ୟରେ କୌଣସି ପ୍ରକାରଗତ ପ୍ରଭେଦ ନାହିଁ, ପ୍ରଭେଦ କେବଳ ପରିମାଣଗତ ।

ଉଦ୍ଭିଦ, ପ୍ରାଣୀ, ଜୀବାଣୁ ଭଳି ଅନ୍ୟର ମୃତ୍ୟୁ ଉପରେ ଆମର ଜୀବନ ନିର୍ଭର କରେ । ଆମେ ପ୍ରାୟତଃ ଗୋଟିଏ ଭୁଲ ସର୍ବଦା କରି ଥାଉ, ତାହା ହେଲା ଯେ ଭଲ ଜିନିଷଟିକୁ ଆମେ କ୍ରମବର୍ଦ୍ଧମାନ ବୋଲି ମନେକରୁ, କିନ୍ତୁ ମନ୍ଦ ଜିନିଷର ପରିମାଣ ନିର୍ଦ୍ଦିଷ୍ଟ ବୋଲି ଭାବୁ । ଏଭଳି ଯୁକ୍ତିକୁ ଆଧାର କରି ଆମେ ସିଦ୍ଧାନ୍ତରେ ଉପନୀତ ହୋଇଯାଉ ଯେ ମନ୍ଦ କ୍ରମଶଃ ପ୍ରତିଦିନ ହ୍ରାସ ହେବ ଏବଂ ଏଭଳି ସମୟ ଦିନେ ଆସିବ ଯେତେବେଳେ ଭଲ କେବଳ ହିଁ ରହିବ । ଏହି ସିଦ୍ଧାନ୍ତଟି ଭ୍ରମାତ୍ମକ କାରଣ ଏହା ଏକ ମିଥ୍ୟା ଯୁକ୍ତି ଉପରେ ପ୍ରତିଷ୍ଠିତ । ସଂସାରରେ ଯଦି ଭଲଟି ବଢ଼ି ଚାଲିଛି, ତାହାଲେ ମନ୍ଦଟି ମଧ୍ୟ ବଢୁଛି । ମୋର ସ୍ୱଜାତୀୟ ଜନସାଧାରଣଙ୍କ ବାସନା ଅପେକ୍ଷା ମୋ ନିଜର ବାସନା ଅନେକ ବଢ଼ିଯାଇଛି । ମୋର ଆନନ୍ଦ ସେମାନଙ୍କ ଅପେକ୍ଷା ଅନେକ ବେଶି – କିନ୍ତୁ ମୋର ଦୁଃଖ ବି ଲକ୍ଷଗୁଣ ତୀବ୍ରତର ହୋଇଯାଇଛି ।

ଯେଉଁ ଶରୀର ସାହାଯ୍ୟରେ ତୁମେ ଭଲର ସାମାନ୍ୟମାତ୍ର ସଂସ୍ପର୍ଶ ଅନୁଭବ କରିପାରୁଛ, ତାହାହିଁ ତୁମକୁ ମନ୍ଦର ଅତି କ୍ଷୁଦ୍ରାଂଶ ଟିକକ ପର୍ଯ୍ୟନ୍ତ ଅନୁଭବ କରାଉଛି । ଏକ ସ୍ନାୟୁମଣ୍ଡଳୀ ହିଁ

Digitized by srujanika@gmail.com

ସୁଖଦୁଃଖ ଉଭୟର ଅନୁଭୂତି ବହନ କରେ ଏବଂ ଗୋଟିଏ ମନ ଉଭୟକୁ ଅନୁଭବ କରେ । ସଂସାରର ଉନ୍ନତି କହିଲେ ଯେପରି ଅଧିକ ସୁଖ ଭୋଗକୁ ବୁଝାଏ, ସେହିପରି ଅଧିକ ଦୁଃଖଭୋଗ ମଧ୍ୟ ବୁଝାଏ । ଜୀବନ-ମୃତ୍ୟୁ, ଭଲ-ମନ୍ଦ, ଜ୍ଞାନ ଅଜ୍ଞାନର ମିଶ୍ରଣ ହିଁ ମାୟା ଅଥବା ସାର୍ବଜନୀନ ପ୍ରକୃତି । ଅନନ୍ତକାଳ ଧରି ଏହି ସଂସାର ଜାଲ ଭିତରେ ସୁଖର ଅନ୍ୱେଷଣ ନିମନ୍ତେ ତୁମେ ଭ୍ରମଣ କରିପାର; ସେଥିରେ ବହୁତ ସୁଖ ମିଳିବ, କିନ୍ତୁ ବହୁତ ଦୁଃଖ ବି ପାଇବ । କେବଳ ଭଲଟି ପାଇବି, ମନ୍ଦଟି ପାଇବି ନାହିଁ - ଏତାଦୃଶ ଆଶା ବାଲ୍ୟସୁଲଭ ବୁଦ୍ଧିହୀନତା ମାତ୍ର ।

- ୫ -

*ବ୍ରାହ୍ମଣ ଯୁଗର ଜ୍ଞାନ, କ୍ଷତ୍ରିୟ ଯୁଗର ସଂସ୍କୃତି, ବୈଶ୍ୟ ଯୁଗର ବାଣିଜ୍ୟିକ ମନୋଭାବର ଶକ୍ତି ଏବଂ ଶୂଦ୍ର ଯୁଗର ସାମ୍ୟାଦର୍ଶର ସମିଶ୍ରଣ ଏବଂ ଏହି ଚାରିଯୁଗର ଅସୁବିଧାକୁ ବାଦ୍ ଦେଇ ଏଭଳି ଏକ ରାଷ୍ଟ୍ର ଗଠନ ଯଦି ସମ୍ଭବ ହୁଅନ୍ତା, ତେବେ ତାହା ଏକ ଆଦର୍ଶ ରାଷ୍ଟ୍ର ହୁଅନ୍ତା, କିନ୍ତୁ ଏହା କ'ଣ ସମ୍ଭବ ?*

ଦୁଇଟି ପଥ ଏଠାରେ ଉନ୍ମୁକ୍ତ - ଗୋଟିଏ ହେଲା - ସମସ୍ତ ଆଶା ଭରସା ତ୍ୟାଗ କରି ଏହି ସଂସାର ଯେପରି ଚାଲିଛି ସେହି ଭାବରେ ଏହାକୁ ଗ୍ରହଣ କରିବା ଅର୍ଥାତ୍ ମଝିରେ ମଝିରେ ସୁଖ ଆଶାରେ ସମସ୍ତ ଦୁଃଖ କଷ୍ଟକୁ ସହ୍ୟ କରିନେବା; ଅନ୍ୟଟି ହେଲା - ସୁଖକୁ ଦୁଃଖର ଅପରପାର୍ଶ୍ୱ ବୋଲି ଜାଣି ତା'ର ଅନ୍ୱେଷଣ ସମ୍ପୂର୍ଣ୍ଣ ପରିହାର କରି ସତ୍ୟର ଅନୁସନ୍ଧାନ କରିବା । ଯେଉଁମାନେ ଏହି ଭାବରେ ସତ୍ୟର ଅନୁସନ୍ଧାନ କରିବାକୁ ସାହସୀ, ସେମାନେ ସେହି ସତ୍ୟକୁ ସଦା ବିଦ୍ୟମାନ ଏବଂ ନିଜ ଭିତରେ ହିଁ ଅବସ୍ଥିତ ବୋଲି ଦେଖିବାକୁ ସମର୍ଥ ହୁଅନ୍ତି । ସେହି ସମୟରେ ଆମେ ମଧ୍ୟ ବୁଝିପାରୁ ଯେ ସେହି ଏକମାତ୍ର ସତ୍ୟ କିପରି ଆମର ବିଦ୍ୟା ଓ ଅବିଦ୍ୟା ରୂପକ ଦୁଇ ଆପେକ୍ଷିକ ଜ୍ଞାନର ଭିତର ଦେଇ ଆତ୍ମପ୍ରକାଶ କରୁଛି । ଆମେ ଏହା ବି ବୁଝିପାରୁ ସେହି ସତ୍ୟ ଆନନ୍ଦ ସ୍ୱରୂପ ଏବଂ ତାହା ଭଲ ଓ ମନ୍ଦ ଉଭୟ ରୂପରେ ସଂସାରରେ ପ୍ରକାଶିତ - ଆଉ ତତ୍ ସଙ୍ଗେ ସଙ୍ଗେ ସେହି ଯଥାର୍ଥ ସତ୍ୟକୁ ମଧ୍ୟ ଆମେ ଜାଣୁ ଯାହା ଜଗତରେ ଜୀବନ ଓ ମୃତ୍ୟୁ ରୂପରେ ଆତ୍ମ-ପ୍ରକାଶ କରୁଛି ।

ଅତଏବ ଆମେ ଉପଲବ୍ଧି କରିପାରିବା ଯେ ଜଗତରେ ପ୍ରତ୍ୟକ୍ଷ ଭାବେ ଘଟୁଥିବା ବିଭିନ୍ନ ପରିଦୃଷ୍ଟ ଘଟଣା ଏକ ଅଦ୍ୱିତୀୟ ସତ୍-ଚିତ୍-ଆନନ୍ଦ ସତ୍ତାର ଦୁଇ ବା ବହୁଭାଗରେ ବିଭକ୍ତ ପ୍ରତିଚ୍ଛାୟା ମାତ୍ର - ତାହା ମୋର ଏବଂ ଅନ୍ୟାନ୍ୟ ଯାବତୀୟ ବସ୍ତୁର ଯଥାର୍ଥ ସ୍ୱରୂପ । ସେତିକିବେଳେ ହିଁ ମନ୍ଦ ବ୍ୟତୀତ ଭଲ କାର୍ଯ୍ୟ କରିବା ସମ୍ଭବ, କାରଣ ଏତାଦୃଶ ବ୍ୟକ୍ତି ଉପଲବ୍ଧି କରିପାରନ୍ତି ଯେ କେଉଁ ଉପାଦାନରେ ଭଲ ମନ୍ଦ ଗଠିତ, ସୁତରାଂ ସେମାନେ ଏହି ଦୁଇଟିକୁ ନିଜର ଆୟତ୍ତରେ ରଖିପାରନ୍ତି ଯାହାଫଳରେ ନିଜ ଇଚ୍ଛାରେ ଗୋଟିଏକୁ କିମ୍ବା ଅନ୍ୟଟିକୁ ସେମାନେ ବ୍ୟକ୍ତ କରନ୍ତି । କିନ୍ତୁ ଆମେ ଜାଣିଛନ୍ତି ଯେ ଏଭଳି ବ୍ୟକ୍ତି କେବଳ

Digitized by srujanika@gmail.com

ଭଲକୁ ହିଁ ବ୍ୟକ୍ତ କରିଥାନ୍ତି । ଏହିଭଳି ବ୍ୟକ୍ତି ହିଁ ଜୀବନମୁକ୍ତ - ମୁକ୍ତାତ୍ମା ଯାହା ବେଦାନ୍ତ ସମେତ ଅନ୍ୟାନ୍ୟ ଦର୍ଶନର ଲକ୍ଷ୍ୟ ।

ମାନବସମାଜ କ୍ରମାନ୍ୱୟରେ ଚାରିଟି ବର୍ଣ୍ଣ ଦ୍ୱାରା ଶାସିତ ହୁଏ - ପୁରୋହିତ (ବ୍ରାହ୍ମଣ), ଯୋଦ୍ଧା (କ୍ଷତ୍ରିୟ), ବ୍ୟବସାୟୀ (ବୈଶ୍ୟ) ଏବଂ ଶ୍ରମିକ (ଶୂଦ୍ର) । ପ୍ରତ୍ୟେକ ରାଷ୍ଟ୍ରରେ ରହିଛି ଉଭୟ ଦୋଷଗୁଣ । ପୁରୋହିତ ଶାସନରେ ବଂଶଗତ ଭିତ୍ତି ରୂପକ ଘୋର ସଂକୀର୍ଣ୍ଣତା ରାଜତ୍ୱ କରେ - ପୁରୋହିତଙ୍କର ସ୍ୱଜନ ଏବଂ ସେମାନଙ୍କର ବଂଶଧର ଅଧିକାର ପାଇଁ ସୁରକ୍ଷାର ବାଡ଼ ଚତୁଃପାର୍ଶ୍ୱରେ ଘେରାଇଥା'ନ୍ତି - ସେମାନଙ୍କବ୍ୟତୀତ ଅନ୍ୟ କେହି ବିଦ୍ୟା ଲାଭ କରିପାରିବେ ନାହିଁ, କେବଳ ସେତିକି ନୁହେଁ ବିଦ୍ୟାଦାନ କରିବାରେ ଅନ୍ୟ କାହାର ଅଧିକାର ନାହିଁ । କିନ୍ତୁ ଏହି ଯୁଗର ଗୌରବ ଅତି ଚମତ୍କାର, ଏଇଥିପାଇଁ ଯେ ବିଭିନ୍ନ ବିଜ୍ଞାନର ଭିତ୍ତି ଏହି ସମୟରେ ସ୍ଥାପିତ ହୋଇଥାଏ - କାରଣ ବୁଦ୍ଧି ବଳରେ ଅନ୍ୟକୁ ଶାସନ କରିବାକୁ ହୁଏ ବୋଲି ପୁରୋହିତଗଣ ମନର ଉତ୍କର୍ଷ ସାଧନ କରିଥାନ୍ତି ।

କ୍ଷତ୍ରିୟ-ଶାସନ ଅତ୍ୟନ୍ତ ନିଷ୍ଠୁର ଓ ଅତ୍ୟାଚାରରେ ପୂର୍ଣ୍ଣ, କିନ୍ତୁ ସେମାନେ ଏକାଧିକାର ପ୍ରବଣତାର ବ୍ୟକ୍ତି ନୁହଁନ୍ତି । ଏହି ଯୁଗରେ କଳା ଓ ସାମାଜିକ ସଂସ୍କୃତିର ଚରମୋତ୍କର୍ଷ ସାଧିତ ହୋଇଥାଏ ।

ତତ୍‌ପଶ୍ଚାତେ ଆସେ ବୈଶ୍ୟର ଶାସନ ଯୁଗ । ଏହାର ନୀରବ ନିଷ୍ପେଷଣତା ଓ ରକ୍ତ ଶୋଷଣକାରୀ ଶକ୍ତି ଭିତରେ ରହିଛି ଅତ୍ୟନ୍ତ ଭୟାବହତା । ଏହାର ଉପକାରିତା ବି ରହିଛି ଯେହେତୁ ଜଣେ ବଣିକ ସ୍ୱୟଂ ବିଭିନ୍ନ ସ୍ଥାନକୁ ଗମନ କରେ, ତେଣୁ ଉଭୟ ପୁରୋହିତ ଓ କ୍ଷତ୍ରିୟ ଶାସନର ପୁଞ୍ଜୀଭୂତ ଭାବରାଶିକୁ ସେ ଚତୁର୍ଦ୍ଦିଗରେ ବିସ୍ତାର କରିପାରେ । ସେମାନେ କ୍ଷତ୍ରିୟ ଶାସନଠାରୁ ବହୁଗୁଣରେ କମ୍ ଏକାଧିକାର ପ୍ରବଣର ବ୍ୟକ୍ତି । କିନ୍ତୁ ଏମାନଙ୍କ ଶାସନରେ ସଂସ୍କୃତିର କ୍ଷୟ ଆରମ୍ଭ ହୋଇଥାଏ ।

ସର୍ବଶେଷରେ ଶୂଦ୍ର - ଶାସନ ଆସିବ । ଏହି ଯୁଗରେ ସୁବିଧା ରହିଛି ଯେ ଶାରୀରିକ ସୁଖ ସ୍ୱାଚ୍ଛନ୍ଦ୍ୟର ବିସ୍ତାର ହେବ, କିନ୍ତୁ ସଂସ୍କୃତିର ଅବନତି ଘଟିବ । ସାଧାରଣ ଶିକ୍ଷାର ପରିସର ଅବଶ୍ୟ ଖୁବ୍ ବଢ଼ିଯିବ, କିନ୍ତୁ ସମାଜରେ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ସଂଖ୍ୟା କ୍ରମଶଃ ହ୍ରାସ ପାଇବ ।

ବ୍ରାହ୍ମଣ ଯୁଗର ଜ୍ଞାନ, କ୍ଷତ୍ରିୟ ଯୁଗର ସଂସ୍କୃତି, ବୈଶ୍ୟ ଯୁଗର ବାଣିଜ୍ୟିକ ମନୋଭାବର ଶକ୍ତି ଏବଂ ଶୂଦ୍ର ଯୁଗର ସାମ୍ୟାଦର୍ଶର ସମିଶ୍ରଣ ଏବଂ ଏହି ଚାରିଯୁଗର ଅସୁବିଧାକୁ ବାଦ୍ ଦେଇ ଏଭଳି ଏକ ରାଷ୍ଟ୍ର ଗଠନ ଯଦି ସମ୍ଭବ ହୁଅନ୍ତା, ତେବେ ତାହା ଏକ ଆଦର୍ଶ ରାଷ୍ଟ୍ର ହୁଅନ୍ତା, କିନ୍ତୁ ଏହା କ'ଣ ସମ୍ଭବ ?

ଇତ୍ୟବସରରେ ପ୍ରଥମ ତିନୋଟି ଯୁଗର ପାଳି ଶେଷ ହୋଇଛି; ଏଥର ଶେଷ ଯୁଗର ସମୟ । ଶୂଦ୍ରଯୁଗ ନିଶ୍ଚୟ ଆସିବ - ଏହାକୁ କେହି ପ୍ରତିରୋଧ କରିପାରିବେ ନାହିଁ । ସ୍ୱର୍ଣ୍ଣ

Digitized by srujanika@gmail.com

ଅଥବା ରଜତ ମୁଦ୍ରା ପ୍ରଚଳିତ ହେ଼ଲେ କେଉଁ ପ୍ରକାର ଅସୁବିଧା ଘଟେ, ତାହା ମୁଁ ବିଶେଷ ଭାବରେ ଜାଣେ ନାହିଁ (ଆଉ ବିଶେଷ ଭାବରେ କେହି ଜାଣନ୍ତି ବୋଲି ମୁଁ ଭାବୁନାହିଁ) । କିନ୍ତୁ ଏହା ମୁଁ ବେଶ୍ ବୁଝିପାରେ ଯେ ସ୍ୱର୍ଣ୍ଣର ଭିତ୍ତିରେ ସମସ୍ତ ମୂଲ୍ୟ ଧାର୍ଯ୍ୟ କରିବା ଫଳରେ ଗରିବମାନେ ଆହୁରି ଗରିବ ଏବଂ ଧନୀମାନେ ଆହୁରି ଧନୀ ହେଉଛନ୍ତି । ବ୍ରାୟାନ ଯଥାର୍ଥରେ କହିଛନ୍ତି ‘‘ଆମେ ଏହି ସୁନାର କ୍ରୁଶରେ ବିଦ୍ଧ ହେବାକୁ ନାରାଜ ।’’ ରୂପା ଦରରେ ସବୁ ଦର ଧାର୍ଯ୍ୟ ହେଲେ ଗରିବମାନେ ଏହି ଅସମାନ ଜୀବନ ସଂଗ୍ରାମରେ ଅନେକ ପରିମାଣରେ ସୁବିଧା ପାଇବେ । ମୁଁ ଜଣେ ସମାଜବାଦୀ, ତା’ର କାରଣ ଏହା ନୁହେଁ ଯେ ମୁଁ ସେହି ସିଦ୍ଧାନ୍ତକୁ ସମ୍ପୂର୍ଣ୍ଣ ନିର୍ଭୁଲ ବୋଲି ମନେ କରେ , କେବଳ ନାହିଁ ମାମୁଁଠାରୁ କଣା ମାମୁଁ ଭଲ - ଏହି ପରିପ୍ରେକ୍ଷୀରେ ।

ଅନ୍ୟାନ୍ୟ ପଦ୍ଧତି ବି ସଂସାରରେ ପ୍ରବର୍ତ୍ତିତ ହୋଇଛି, ସେଥିରେ ମଧ୍ୟ ତ୍ରୁଟି ପରିଲକ୍ଷିତ ହୋଇଛି । ଅନ୍ତତଃ ଆଉ କିଛି ନ ହେଲେ ବି ଜିନିଷଟିର ଅଭିନବତ୍ୱ ଦୃଷ୍ଟିକୋଣରୁ ଏହି ଶେଷ ଯୁଗକୁ ଥରେ ପରୀକ୍ଷା କରାଯାଉ । ଗୋଟିଏ ବ୍ୟକ୍ତି ନିରନ୍ତର ସୁଖ ବା ଦୁଃଖ ଭୋଗ କରିବ, ତାହା ଅପେକ୍ଷା ସୁଖ ଦୁଃଖ ଯହିଁରେ ପର୍ଯ୍ୟାୟକ୍ରମେ ସମସ୍ତଙ୍କ ଭିତରେ ବିଭକ୍ତ ହୋଇପାରେ, ତାହା ହିଁ ଉତ୍ତମ । ସଂସାରରେ ଭଲମନ୍ଦର ସମଷ୍ଟି ଚିରକାଳ ସମାନ ରହିବ, ତେବେ ନୂତନ ନୂତନ ପ୍ରଣାଳୀରେ ଜୁଆଳିଟି ଗୋଟିଏ କାନ୍ଧରୁ କାଢ଼ି ଅନ୍ୟ ଗୋଟିଏ କାନ୍ଧରେ ଯାହା ଯୋଗ ହେବ ।

ଏହି ଦୁଃଖମୟ ସଂସାରରେ ସବୁ ହତଭାଗ୍ୟଙ୍କୁ ଦିନେ ଦିନେ ଆରାମ କରିବାକୁ ଦିଅ - ତେବେ ଯାଇ ସେମାନେ ଉପଯୁକ୍ତ ସମୟରେ ଏହି ତଥାକଥିତ ସୁଖ-ଭୋଗ ଟିକକ ପରେ ଏହି ଆମର ଜଗତ ପ୍ରପଞ୍ଚ ଶାସନତନ୍ତ୍ର ଓ ଅନ୍ୟାନ୍ୟ ବିରକ୍ତିକର ବିଷୟ ସବୁ ପରିହାର କରି ବ୍ରହ୍ମ ସ୍ୱରୂପକୁ ପ୍ରତ୍ୟାବର୍ତ୍ତନ କରିପାରିବ ।’’

ଆହାଃ କି ସୁନ୍ଦର କଥା । ଐତିହାସିକ ବସ୍ତୁବାଦ ଅନୁସାରେ, ସାଧାରଣ ଜନତା ତଥା ବାସ୍ତୁହରା ଶ୍ରମିକ ହିଁ ଇତିହାସ ରଚୟତା । ବିଶ୍ୱରେ ଯେତେ ବିପ୍ଳବ ସଂଘଟିତ ହୋଇଛି, ସବୁ ପଛରେ ରହିଛି ସେମାନଙ୍କ ଭାଗିଦାରୀ । କିନ୍ତୁ ପରିତାପର ବିଷୟ ଯେ ବିପ୍ଳବର ଉପକାରିତା ସେମାନଙ୍କୁ ମିଳିନାହିଁ, ମିଳିଥାଏ ଗୋଟିଏ ଶୋଷଣକାରୀ ଗୋଷ୍ଠୀକୁ । ସେଥିପାଇଁ ସେ ଏଭଳି ଏକ ରାଷ୍ଟ୍ରର ସ୍ୱପ୍ନ ଦେଖିଛନ୍ତି ଯେଉଁଥିରେ ଶୂଦ୍ରମାନଙ୍କ ଶାସନ ଚାଲିବ କିନ୍ତୁ ବ୍ରାହ୍ମଣ, କ୍ଷେତ୍ରିୟ ଓ ବୈଶ୍ୟଙ୍କ ଯୁଗର ଉପକାରିତା ସମୂହ ଉପଲବ୍ଧ ହେବ । ଗରିବ ଓ ନିସ୍ୱମାନଙ୍କର ନିଷ୍ପେଷିତ ଓ ଅତ୍ୟାଚରିତ ଜୀବନଯାତ୍ରା ତାଙ୍କୁ ଦୁଃଖାଭିଭୂତ କରିଛି, ତାଙ୍କୁ ବିଦ୍ରୋହୀ କରିଛି, ସେମାନଙ୍କୁ ସାମାଜିକ ଓ ଅର୍ଥନୈତିକ ନ୍ୟାୟ ପ୍ରଦାନ କରିବାକୁ ମନ ତାଙ୍କର ଉଚ୍ଛନ୍ନ ହୋଇଉଠିଛି । ତେଣୁ ସେ ଏକ ଶୂଦ୍ର ଶାସନ ପରିକଳ୍ପନା କରିପାରିଥିଲେ । କହିଲେ ଦେଖି, ସେ ଜଣେ କ’ଣ ପ୍ରଥମ ଶ୍ରେଣୀର ଚିନ୍ତାଶୀଳ ଜନନାୟକ ନୁହଁନ୍ତି ? ଜଣେ ଧର୍ମ ପ୍ରଚାରକ ସନ୍ୟାସୀ ପକ୍ଷରେ ଏଭଳି ଭବିଷ୍ୟବାଣୀ ପ୍ରଦାନ କରିବା ସମ୍ଭବ କି ?

Digitized by srujanika@gmail.com

- ୬ -

*ସ୍ୱାମୀ ବିବେକାନନ୍ଦଙ୍କର ମୁଖନିଃସୃତ ବାଣୀ ଆମ ପାଇଁ କେବଳ ତୃଷ୍ଣାରେ ଟଳମଳ ହେଉଥିବା ମନୁଷ୍ୟ ପାଇଁ ସ୍ୱଚ୍ଛ ଓ ସତେଜ ଜଳଧାରା ସଦୃଶ ନ ଥିଲା ବରଂ ଅର୍ଦ୍ଧ ଶତାବ୍ଦୀ ଧରି ଇୟୁରୋପର ବୌଦ୍ଧିକ ଜୀବନରେ ଯେଉଁ ଧାର୍ମିକ ଅନିଶ୍ଚିତତା ଓ ନୈରାଶ୍ୟ ସାଗରରେ ବୁଡିଯାଉଥିଲା, ଏବଂ ଖ୍ରୀଷ୍ଟଧର୍ମର ସିଦ୍ଧାନ୍ତରେ ବିଶ୍ୱାସରୁ ସତ୍ୟର ବୀଜକୁ ଆବୃତ କରିଥିବା ଖୋଳପାକୁ ଭାଙ୍ଗି ବାହାରି ଯିବା ପାଇଁ କୌଣସି ପଥ ମିଳୁ ନ ଥିଲା ସେମାନଙ୍କର ଅବିଶ୍ୱାସନୀୟ ଅନ୍ତର୍ଦୃଷ୍ଟିକୁ ବେଦାନ୍ତର ବୌଦ୍ଧିକ ଓ ଦାର୍ଶନିକ ଆଲୋକ ଆଲୋକିତ କରିପାରିଥିଲା । ଯେଉଁମାନେ ଅନ୍ଧକାର ପଥରେଗମନ କରୁଥିଲେ, ସେମାନେ ଦେଖି ପାରିଥିଲେ ଏକ ବିଶାଳ ଆଲୋକ... ।*

ସମଗ୍ର ବିଶ୍ୱ ପାଇଁ ସ୍ୱାମୀଜୀଙ୍କର ମିଶନର ସମାପ୍ତି ହୋଇନାହିଁ । ତାଙ୍କୁ ବହୁକାର୍ଯ୍ୟ, ମୃତ୍ୟୁ ପୂର୍ବରୁ କରିବାକୁ ଆହୁରି ବାକି ଅଛି । ବର୍ତ୍ତମାନ ତାଙ୍କର ଦୃଷ୍ଟି, ନିଜର ପ୍ରିୟ ମାତୃଭୂମି ଅଭିମୁଖେ ବାରମ୍ବାର ଧାବିତ । ଭାରତୀୟ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ହେବ । ଶେଷରେ ସେ ଭାରତକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ନିଷ୍ପତ୍ତି ନେଲେ । ଇଂଲଣ୍ଡର ଅନେକ ଶୁଭେଚ୍ଛୁ, ଶିଷ୍ୟ ଓ ଭକ୍ତ ଏକ ବିଦାୟ ସମ୍ବର୍ଦ୍ଧନା ସଭା ଡିସେମ୍ବର **୧୩, ୧୮୯୬ ପିକାଡିଲିସ୍ଥ ରୟାଲ ସୋସାଇଟି ଅଫ୍ ପେଣ୍ଟର୍ସରେ** ଆୟୋଜନ କଲେ । ନଗରୀର ସବୁ ଶ୍ରେଣୀର ଲୋକ ଏପରିକି ସହରାଞ୍ଚଳରୁ ଲୋକ ଉକ୍ତ ସଭାରେ ଯୋଗ ଦେଇଥିଲେ । ସ୍ୱାମୀ ଅଭେଦାନନ୍ଦ ବି ଉକ୍ତ ସଭାରେ ଉପସ୍ଥିତ ଥିଲେ । ସ୍ୱାମୀଜୀ ସଭାଗୃହକୁ ପ୍ରବେଶ କଲାମାତ୍ରେ ଜନତାରେ ପରିପୂର୍ଣ୍ଣ ସଭାଗୃହ ନୀରବତା ଲକ୍ଷ୍ୟ କରି ତାଙ୍କର ହୃଦୟ ଶାନ୍ତି ଓ ସନ୍ତୋଷରେ ଭରିଗଲା । କାହିଁକି କେଉଁଥିପାଇଁ ? ସେମାନଙ୍କର ପ୍ରେମ ଓ ଭଲପାଇବା ଦେଖି । ଲଣ୍ଡନରୁ ତାଙ୍କର ବିଦାୟ ସେମାନଙ୍କ ହୃଦୟରେ ଭରି ଦେଇଥିଲା ବିରହ ଯନ୍ତ୍ରଣା । ସେହି ଆନ୍ତରିକ ପ୍ରେମ ଓ ଭଲପାଇବା ଭିତରୁ ଜାତ ବିଦାୟ ଯନ୍ତ୍ରଣା ଦେଖି ସ୍ୱାମୀଜୀ ତଟସ୍ଥ ହୋଇଗଲେ । ସ୍ୱାମୀଜୀ ଯେତେବେଳେ ନିଜର ଶେଷ ବକ୍ତବ୍ୟ ବ୍ରିଟିସର୍ ଜନତାଙ୍କର ମହାନ୍ ମେଟ୍ରୋପଲିସ୍ ସମ୍ବନ୍ଧରେ ପ୍ରଦାନ କଲେ, ସମସ୍ତଙ୍କ ଚକ୍ଷୁ ଲୋତକରେ ହେଲା ଛଳଛଳ । ଯେଉଁମାନେ ସେହିଦିନ ତାଙ୍କର ମୁଖନିଃଶୃତ ବାଣୀ ଶୁଣିଥିଲେ, ସେମାନେ ସମସ୍ତେ ଏକ ନୈର୍ବ୍ୟକ୍ତିକ ରାଜ୍ୟରେ ବିଚରଣ କରୁଥିଲେ ବୋଲି ଅନୁଭବ କଲେ । ବେଦାନ୍ତ ଦର୍ଶନକୁ ସେ ଏଭଳି ବ୍ୟାଖ୍ୟା କରିଥିଲେ ଯେ ଉପସ୍ଥିତ ଶ୍ରୋତା ଉପଲବ୍ଧି କରିପାରିଥିଲେ ଜୀବନନିର୍ବାହ କରିବାର ଏକ ନୂତନ ଦିଗକୁ । ଉକ୍ତ ସଭାର ଟିପ୍ପଣୀ ଦେଇ ଭଗ୍ନୀ ନିବେଦିତା ପରବର୍ତ୍ତୀ କାଳରେ ଲେଖିଥିଲେ :

''ସ୍ୱାମୀ ବିବେକାନନ୍ଦଙ୍କର ମୁଖନିସୃତ ବାଣୀ ଆମ ପାଇଁ କେବଳ ତୃଷ୍ଣାରେ ଟଳମଳ ହେଉଥିବା ମନୁଷ୍ୟ ପାଇଁ ସ୍ୱଚ୍ଛ ଓ ସତେଜ ଜଳଧାରା ସଦୃଶ ନ ଥିଲା ବରଂ ଅର୍ଦ୍ଧ ଶତାବ୍ଦୀ ଧରି

Digitized by srujanika@gmail.com

ଇୟୁରୋପର ବୌଦ୍ଧିକ ଜୀବନରେ ଯେଉଁ ଧାର୍ମିକ ଅନିଶ୍ଚିତତା ଓ ନୈରାଶ୍ୟ ସାଗରରେ ବୁଡିଯାଉଥିଲା, ଏବଂ ଖ୍ରୀଷ୍ଟଧର୍ମର ସିଦ୍ଧାନ୍ତରେ ବିଶ୍ୱାସରୁ ସତ୍ୟର ବୀଜକୁ ଆବୃତ କରିଥିବା ଖୋଳପାକୁ ଭାଙ୍ଗି ବାହାରି ଯିବା ପାଇଁ କୌଣସି ପଥ ମିଳୁ ନ ଥିଲା ସେମାନଙ୍କର ଅବିଶ୍ୱାସନୀୟ ଅନ୍ତର୍ଦୃଷ୍ଟିକୁ ବେଦାନ୍ତର ବୌଦ୍ଧିକ ଓ ଦାର୍ଶନିକ ଆଲୋକ ଆଲୋକିତ କରିପାରିଥିଲା । ଯେଉଁମାନେ ଅନ୍ଧକାର ପଥରେଗମନ କରୁଥିଲେ, ସେମାନେ ଦେଖି ପାରିଥିଲେ ଏକ ବିଶାଳ ଆଲୋକ... । ସ୍ୱାମୀଜୀଙ୍କର ଉଦ୍‌ଘୋଷଣା "ମୁଁ ହିଁ ବ୍ରହ୍ମ" ଯାହା ପୂର୍ବରୁ ଏଠାରେ କେବେ କୁହାଯାଇ ନ ଥିଲା, ତାହା ବାସ୍ତବରେ ସେମାନଙ୍କୁ ଏକ ନୂତନ ଦିଗଦର୍ଶନ ଦେଲା ।"

ସ୍ୱାମୀଜୀ ମଧ୍ୟ ସଭାରେ ବ୍ରିଟିସ ନାଗରିକଙ୍କୁ ପ୍ରଶଂସା କରି ବଜ୍ର କଣ୍ଠରେ ଘୋଷଣା କରିଥିଲେ, "ଇଂରାଜୀ ଭୂମିରେ ପଦାର୍ପଣ କରିବା ସମୟରେ ମୋ ହୃଦୟରେ ଯେପରି ଇଂରାଜୀ ଜାତି ପ୍ରତି ଅଧିକ ଘୃଣାଭାବ ରହିଥିଲା, ସେପରି କାହାର ବି ନ ଥିବ, ଯାହା ମୋର ଇଂରାଜୀ ବନ୍ଧୁମାନେ ଭଲ ଭାବରେ ଜାଣିଥିଲେ । କିନ୍ତୁ ମୁଁ ଯେତେ ଅଧିକ ସମୟ ସେମାନଙ୍କ ଗହଣରେ ବିତାଇଲି ଏବଂ ଇଂରାଜୀ ଶାସନ କଳ କିପରି କ୍ରିୟାଶୀଳ, ତାହା ଯେତେବେଳେ ମୁଁ ଦେଖିଲି, ସେମାନଙ୍କ ଜାତୀୟ ଜୀବନ ସ୍ରୋତରେ ମୁଁ ଯେତେବେଳେ ମିଶିଲି ଏବଂ ଏହି ରାଷ୍ଟ୍ରର ହୃଦୟ ସ୍ପନ୍ଦନ କେଉଁଠାରେ ଅବସ୍ଥିତ ବୋଲି ମୁଁ ଯେତେବେଳେ ଜାଣିପାରିଲି, ସେତେବେଳେ ମୋର ସେମାନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ସହସ୍ର ଗୁଣରେ ବଢ଼ିଗଲା । ମୋର ଭ୍ରାତୃଗଣ, ଆଜି ସଭାରେ ଉପସ୍ଥିତ ଶ୍ରୋତାମଣ୍ଡଳୀ ଯେତିକି ପରିମାଣରେ ଇଂରାଜୀମାନଙ୍କୁ ଭଲ ପାଉଥିବେ, ତାହାଠାରୁ ମୁଁ ଅଧିକ ଇଂରାଜୀ ଜାତିକୁ ଆଜି ମୁଁ ଭଲ ପାଉଛି ।"

ପ୍ରାୟ ପାଞ୍ଚଶହ ଶ୍ରୋତା ସଭାରେ ଉପସ୍ଥିତ ଥିଲେ । ସମସ୍ତଙ୍କ ହୃଦୟକୁ ସ୍ୱାମୀଜୀ ଏଭଳି ଭାବେ କିଣି ନେଇଥିଲେ ଯେ ଯାହା ଏକ ଅଭୁଲା ସ୍ମୃତି ଭାବେ ସେମାନଙ୍କ ହୃଦୟରେ ସବୁ ଦିନ ପାଇଁ ରହିଯାଇଥିଲା । ଜଣେ ବିଶିଷ୍ଟ ରାଜନୈତିକ, ସାମ୍ବାଦିକ ବିପିନ୍ ଚନ୍ଦ୍ର ପାଲ୍, ଇଂଲଣ୍ଡରେ ସ୍ୱାମୀଜୀଙ୍କ ଯେଉଁ ପ୍ରଭାବ ଓ ଛାପ ଛାଡ଼ିଦେଇ ଯାଇଥିଲେ, ସେହି ସମ୍ବନ୍ଧରେ ସେ ଲଣ୍ଡନରୁ ଏକ ସଂକ୍ଷିପ୍ତ ବିବରଣୀ ଭାରତକୁ ପଠାଇଥିଲେ ଯାହା ୧୫.୭.୧୮୯୮ର ଇଣ୍ଡିଆନ୍ ମିରର୍‌ରେ ପ୍ରକାଶିତ ହୋଇଥିଲା ।

ଇଂଲଣ୍ଡ ଅବସ୍ଥାନ ସମୟରେ ସ୍ୱାମୀଜୀ କେବଳ ବକ୍ତୃତା ଦେଉ ନ ଥିଲେ, ବରଂ ଜଣେ ମନୋବିଜ୍ଞାନୀ ସମ ଭାରତୀୟଙ୍କ ପ୍ରତି ଇଂରାଜୀମାନଙ୍କର ରହିଥିବା ଅନୁଭୂତିକୁ ବିଶ୍ଳେଷଣ କରୁଥିଲେ ଏବଂ ତାହା ଯଦି ତାଙ୍କର ମନକୁ ଛୁଉଁଥିଲା, ସେ ସଙ୍ଗେ ସଙ୍ଗେ ତାହା ଗ୍ରହଣ କରିନେଇ ଭାରତର ଯୁବବର୍ଗଙ୍କ ସମ୍ମୁଖରେ ଉପସ୍ଥାପନ କରୁଥିଲେ, ଉଦ୍ଦେଶ୍ୟ ଥିଲା ଯେ ଭାରତର ଯୁବବର୍ଗ ସେହି ପ୍ରକାର ଅନୁଭୂତିରୁ ଶିକ୍ଷାଲାଭ କରି ଭାରତବର୍ଷକୁ ସୁନ୍ଦରଭାବେ ଭବିଷ୍ୟତ୍‌ରେ ଗଢ଼ିପାରିବେ । ଏଠାରେ ସୂଚନା ଯୋଗ୍ୟ ଯେ ସିପାହୀ ବିଦ୍ରୋହରେ ଅଂଶ ଗ୍ରହଣ କରିଥିବା ବ୍ରିଟିଶର ଜେନେରାଲ ଷ୍ଟ୍ରଙ୍ଗ୍‌ଙ୍କ ସହ ସ୍ୱାମୀଜୀଙ୍କର ବନ୍ଧୁତ୍ୱ ଗଢ଼ି ଉଠିଥିଲା, ସେ ସିପାହୀ ବିଦ୍ରୋହର କାହାଣୀ ତାଙ୍କୁ ଶୁଣାଇ ଥିଲେ ।

Digitized by srujanika@gmail.com

ମୋର ଜଣେ ଇଂରେଜୀ ବନ୍ଧୁ ଜେନେରାଲ ଷ୍ଟ୍ରଙ୍ଗଙ୍କ ସହ ଏକଦା ଆଲୋଚନା ହୋଇଥିଲା । ସିପାହୀ ବିଦ୍ରୋହ ସମୟରେ ସେ ଭାରତବର୍ଷରେ ଅବସ୍ଥାପିତ ହୋଉଥିଲେ । ସିପାହୀ ବିଦ୍ରୋହ ସମ୍ବନ୍ଧରେ ବହୁ କାହାଣୀ ସେ ମୋତେ ଶୁଣାଇଥିଲେ । ମୁଁ ତାଙ୍କୁ ପଚାରିଥିଲି, ସିପାହୀମାନଙ୍କ ପାଖରେ ବହୁ ବନ୍ଧୁକ, ଗୋଳାବାରୁଦ ତଥା ଅନ୍ୟାନ୍ୟ ଯୁଦ୍ଧ ସାମଗ୍ରୀ ଗଚ୍ଛିତ ଥିଲା, ଏପରିକି ସେମାନଙ୍କ ମଧ୍ୟରୁ ଅନେକ ତାଲିମପ୍ରାପ୍ତ ପ୍ରବୀଣ ସୈନିକ ଥିଲେ, ତଥାପି ସେମାନେ କାହିଁକି ଶୋଚନୀୟ ଭାବେ ପରାଜିତ ହେଲେ ? ଜେନେରାଲ ଷ୍ଟ୍ରଙ୍ଗ ଉତ୍ତର ଦେଇଥିଲେ - ଭାରତୀୟ ସିପାହୀଙ୍କର ନେତୃବୃନ୍ଦ ଆଗକୁ ନ ଯାଇ ବହୁ ପଛରେ ଏକ ନିରାପଦ ସ୍ଥାନରେ ଠିଆ ହୋଇ କେବଳ ଚିତ୍କାର କରି କହୁଥିଲେ, ''ସାହସୀ ପୁତ୍ରଗଣ, ଆକ୍ରମଣ କର, ଆଗକୁ ମାଡ଼ିଚାଲ ।'' କିନ୍ତୁ ସେନା ଅଫିସରମାନେ ଯଦି ଆଗରେ ଠିଆ ହୋଇ ନିର୍ଦ୍ଦେଶ ନ ଦେବେ ଏବଂ ମୃତ୍ୟୁର ସମ୍ମୁଖୀନ ନ ହେବେ, ତେବେ ସୈନ୍ୟମାନେ ସାହସର ସହିତ ଯୁଦ୍ଧ କରି ପାରିବେ ନାହିଁ କିମ୍ବା ସେମାନଙ୍କୁ ଅନୁସରଣ କରିବେ ନାହିଁ । ଜଣେ କ୍ୟାପଟେନ୍ ନିଜକୁ ବଳି ଦେବାପାଇଁ ପ୍ରଥମେ ପ୍ରସ୍ତୁତ ରହିବ । ଗୋଟିଏ ଆଦର୍ଶ ପାଇ ଯଦି ତୁମେ ତୁମର ପ୍ରାଣ ବିସର୍ଜନ କରିପାରିବ, ତେବେ ଯାଇ ତୁମେ ନେତୃତ୍ୱ ଗ୍ରହଣ କରିପାରିବ । କିନ୍ତୁ କୌଣସି ତ୍ୟାଗ ନ କରି ଆମେ ସମସ୍ତେ ନେତା ହେବାକୁ ଚାହାନ୍ତି, ଯାହାଫଳରେ ଆମକୁ କେବଳ ଶୂନ ମିଳେ - କେହି ଆମର କଥା ଶୁଣନ୍ତି ନାହିଁ ।

''ଇଂଲଣ୍ଡରେ ସ୍ୱାମୀଜୀଙ୍କ ପ୍ରଦତ୍ତ ବକ୍ତୃତାରୁ ଅଳ୍ପ ସୁଫଳ ମିଳିଛି ଏବଂ ତାଙ୍କର ବନ୍ଧୁ ଓ ଶୁଭେଚ୍ଛୁମାନେ ତାଙ୍କର କାର୍ଯ୍ୟକୁ ବଢ଼ାଇ ବହୁ ଅତିରଞ୍ଜିତ କରିଛନ୍ତି ବୋଲି ଭାରତର କେତେକ ଲୋକ ଭାବନ୍ତି । କିନ୍ତୁ ଏଠାରେ ପହଞ୍ଚି ମୁଁ ଦେଖିଲି ଯେ ପ୍ରତ୍ୟେକ ସ୍ଥାନରେ ସେ ଅଲିଭା ପ୍ରଭାବ ଛାଡ଼ି ଯାଇଛନ୍ତି । ଇଂଲଣ୍ଡର ବହୁ ଭାଗରେ ଭ୍ରମଣ କରି ଅନେକ ବ୍ୟକ୍ତିଙ୍କୁ ମୁଁ ଭେଟିଛି, ଯେଉଁମାନଙ୍କର ସ୍ୱାମୀଜୀଙ୍କ ପ୍ରତି ରହିଛି ଗଭୀର ସମ୍ମାନ ଓ ଶ୍ରଦ୍ଧା । ଅବଶ୍ୟ ମୁଁ ତାଙ୍କ ସଂପ୍ରଦାୟର ଅନୁଗାମୀ ନୁହେଁ ଏବଂ ଏହା ସତ୍ୟ ଯେ ତାଙ୍କ ମତସହ ମୋର ଅନେକ ପାର୍ଥକ୍ୟ ରହିଛି, ତଥାପି ମୁଁ କହିବି ଯେ ବିବେକାନନ୍ଦ ଏଠିକାର ବହୁ ମହାନ୍ ବ୍ୟକ୍ତିଙ୍କର ଆଖି ଖୋଲି ଦେଇଛନ୍ତି ଓ ହୃଦୟକୁ ବିଶାଳ କରି ଦେଇ ପାରିଛନ୍ତି । ତାଙ୍କର ଶିକ୍ଷା ଓ ଉପଦେଶ ଯୋଗୁଁ, ଏଠିକାର ବହୁ ବ୍ୟକ୍ତିଙ୍କର ବର୍ତ୍ତମାନ ଦୃଢ଼ବିଶ୍ୱାସ ହେଲେଣି ଯେ ପ୍ରାଚୀନ ହିନ୍ଦୁ ଶାସ୍ତ୍ରଗୁଡ଼ିକରେ ଅଦ୍ଭୁତ ଆଧ୍ୟାତ୍ମିକ ସତ୍ୟ ଲୁକ୍କାୟିତ ରହିଛି । ଏହି ଆଧ୍ୟାତ୍ମିକ ଭାବଧାରାକୁ ଯେ କେବଳ ସେ ଏଠାରେ ପ୍ରଚାରିତ କରିଛନ୍ତି, ତାହା ନୁହେଁ, ବରଂ ଇଂଲଣ୍ଡ ଓ ଭାରତ ମଧ୍ୟରେ ଏକ ସୁବର୍ଣ୍ଣ ସଂପର୍କ ପ୍ରତିଷ୍ଠା କରିପାରିଛନ୍ତି । ମିଷ୍ଟର ହାୱିସ୍‌ଙ୍କ ଦ୍ୱାରା ରଚିତ ''ଦି ଡେଡ୍ ପଲପିଟ୍''ର ''ବିବେକାନନ୍ଦଇଜିମ୍''ର ଉଦ୍ଧୃତାଂଶ ପଢ଼ିଲେ ଜଣେ ପରିଷ୍କାର ଭାବରେ ତାଙ୍କର କାର୍ଯ୍ୟକୁ ବୁଝିପାରିବ । ''ବିବେକାନନ୍ଦଙ୍କର ମତବାଦର ପ୍ରଚାର ଯୋଗୁଁ ଶହଶହ ଲୋକ ଖ୍ରୀଷ୍ଟଧର୍ମ ସହ ସଂପର୍କ ଛିନ୍ନ କରିଛନ୍ତି । ଏହି ରାଷ୍ଟ୍ରରେ ତାଙ୍କର କାର୍ଯ୍ୟ କିପରି ଗଭୀର ଓ ପ୍ରସାରିତ, ତାହା ନିମ୍ନୋକ୍ତ ଘଟଣାରୁ ସ୍ପଷ୍ଟ ହୋଇଯାଏ ।

''ଗତକାଲି ଲଣ୍ଡନର ଦକ୍ଷିଣ ଭାଗରେ ଅବସ୍ଥିତ ଜଣେ ବନ୍ଧୁଙ୍କୁ ଭେଟିବା ପାଇଁ ମୁଁ ସନ୍ଧ୍ୟାବେଳେ ଯାଇଥିଲି । ଯିବା ବାଟରେ ମୁଁ ରାସ୍ତା ଭୁଲିଗଲି ଏବଂ ମାର୍ଗର ଗୋଟିଏ କୋଣରେ

Digitized by srujanika@gmail.com

ଠିଆହୋଇ କେଉଁ ଦିଗକୁ ଯିବି ବୋଲି ଭାବୁଥିଲି । ଇତ୍ୟବସରରେ ଜଣେ ମହିଳା ବାଳକଟିଏ ସାଙ୍ଗରେ ଧରି ମୋ ପାଖକୁ ଆସିଲେ, ମୋତେ ପଥ ଦେଖାଇ ଦେବା ପାଇଁ ତାଙ୍କର ଉଦ୍ଦେଶ୍ୟ ବି ଥିଲା... । ସେ ମୋତେ ପଚାରିଲେ, ସାର୍, ଆପଣ ବୋଧହୁଏ ରାସ୍ତା ପାଉ ନାହାଁନ୍ତି, ମୁଁ ଆପଣଙ୍କୁ ସାହାଯ୍ୟ କରିପାରେ କି ? ସେ ମୋତେ ମୋର ଗନ୍ତବ୍ୟ ସ୍ଥାନକୁ ଯିବା ପାଇଁ ବାଟ ଦେଖାଇ ଦେଲେ । କେବଳ ସେତିକି ନୁହେଁ, ସେ ମୋତେ କହିଲେ, ''ଆପଣ ଲଣ୍ଡନ ଆସୁଛନ୍ତି ବୋଲି ମୁଁ ଏକ ନିର୍ଦ୍ଦିଷ୍ଟ ଖବରକାଗଜରୁ ଜାଣିଛି । ମୁଁ ଆପଣଙ୍କୁ ଦେଖିବା ମାତ୍ରେ ମୋ ପୁଅକୁ ମୁଁ କହିଲି, ଦେଖ, ସେ ହେଉଛନ୍ତି ସ୍ୱାମୀ ବିବେକାନନ୍ଦ ।''

ଯେହେତୁ ଟ୍ରେନ୍ ଧରିବା ପାଇଁ ମୁଁ ବଡ଼ ବ୍ୟଗ୍ର ଥିଲି, ମୁଁ ବିବେକାନନ୍ଦ ନୁହେଁ ବୋଲି ତାଙ୍କୁ କହିବା ଲାଗି ମୋ ପାଖରେ ସମୟ ନ ଥିଲା, ତେଣୁ ତରବରରେ ମୁଁ ସେଠାରୁ ଚାଲିଆସିଲି । ଯାହାହେଉ, ମୁଁ ଆଶ୍ଚର୍ଯ୍ୟ ହେଲି ଯେ ଉକ୍ତ ମହିଳା ବ୍ୟକ୍ତିଗତ ଭାବରେ ସ୍ୱାମୀ ବିବେକାନନ୍ଦଙ୍କୁ ଜାଣି ନ ଥିଲେ ବି, ତାଙ୍କ ପ୍ରତି ରହିଥିଲା ତାଙ୍କର ଗଭୀର ସମ୍ମାନ । ଏହି ଘଟଣାରେ ମୁଁ ଅତୀବ କୃତଜ୍ଞ ହୋଇପଡ଼ିଲି ଏବଂ ମୋର ଗେରୁଆ ପଗଡ଼ି ମୋତେ ଏତେ ସମ୍ମାନର ଅଧିକାରୀ କରିପାରିଲା, ସେଥିପାଇଁ ମୁଁ ନିଜକୁ ଧନ୍ୟ ମଣିଲି । ଏହି ଘଟଣା ବ୍ୟତୀତ, ମୁଁ ଏଠାରେ ଦେଖିଛି ଯେ ଯେକୌଣସି ଭାରତୀୟ ଗୁରୁଙ୍କର ଧାର୍ମିକ କିମ୍ବା ଆଧ୍ୟାତ୍ମିକ ସତ୍ୟ ସମ୍ବନ୍ଧିତ ସଭାରେ ବହୁ ଶିକ୍ଷିତ ଇଂରାଜୀ ଭଦ୍ରଲୋକ ଉତ୍ସାହ ସହିତ ବସି ସେମାନଙ୍କର ବକ୍ତୃତା ଶୁଣନ୍ତି ଓ ଭାରତବର୍ଷକୁ ସମ୍ମାନ ଦିଅନ୍ତି ।'' ଭାରତୀୟ ଧର୍ମ ଓ ସଂସ୍କୃତି ପ୍ରତି ଶ୍ରଦ୍ଧା ଓ ସମ୍ମାନର ଦ୍ୱାର ପ୍ରଥମେ ହିଁ ସ୍ୱାମୀଜୀ ପାଶ୍ଚାତ୍ୟ ଜଗତରେ ଉନ୍ମୁକ୍ତ କରି ଥିଲେ ଯଦ୍ଦ୍ୱାରା ଆଜି ପର୍ଯ୍ୟନ୍ତ ଶହଶହ ସନ୍ନ୍ୟାସୀ, ଗୁରୁ, ସନ୍ଥଙ୍କର ସୁଅ ଛୁଟୁଛି ପାଶ୍ଚାତ୍ୟ ଜଗତକୁ । ଏଠାରେ କହିବା ବାହୁଲ୍ୟ ଯେ ସ୍ୱାମୀଜୀ ହିଁ ଥିଲେ ପ୍ରଥମ ସନ୍ନ୍ୟାସୀ ଯିଏ ଭାରତବର୍ଷର ଆଧ୍ୟାତ୍ମିକ ଅମୂଲ୍ୟ ବସ୍ତୁ ପ୍ରତି ପାଶ୍ଚାତ୍ୟ ଜଗତର ଦୃଷ୍ଟି ଆକର୍ଷଣ କରିଥିଲେ ।



Digitized by srujanika@gmail.com

॥ ତିରିଶ ॥

# ଭାରତବର୍ଷ ଅଭିମୁଖେ ପ୍ରତ୍ୟାଗମନ ଯାତ୍ରା - ରୋମନଗରୀରେ କିଛିଦିନ ଅବସ୍ଥାନ - କଲମ୍ବୋରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା

**୧୬ ଡିସେମ୍ବର ୧୮୯୬** ମସିହାରେ, କ୍ୟାପ୍ଟେନ ଓ ଶ୍ରୀମତୀ ଚାର୍‌ଲଟ୍ ସେଭିୟର, ଜୋସିହା ଜୋନ୍ ଗୁଡୱିନ୍ ଓ ସୁଶ୍ରୀ ହେନିୟେଟ୍ରା ମୁଲର୍‌ଙ୍କୁ ସାଙ୍ଗରେ ଧରି ସ୍ୱାମୀ ବିବେକାନନ୍ଦ ଲଣ୍ଡନରୁ ବିଦାୟ ନେଇ ନେପଲ୍ସ ବନ୍ଦର ଅଭିମୁଖେ ଯାତ୍ରା କଲେ । ଲଣ୍ଡନରୁ ପ୍ରସ୍ଥାନ କରିବା ସମୟରେ ଜଣେ ଇଂରାଜୀ ବନ୍ଧୁ ତାଙ୍କୁ ପ୍ରଶ୍ନ କଲେ, ''ସ୍ୱାମୀଜୀ ବିଳାସପୂର୍ଣ୍ଣ ତଥା ପ୍ରଭାବଶାଳୀ ପାଶ୍ଚାତ୍ୟ ଜଗତରେ ତିନିବର୍ଷ କାଳର ଅଭିଜ୍ଞତା ଲାଭ କରିସାରିବା ପରେ ଆପଣ ନିଜର ମାତୃଭୂମି ଭାରତବର୍ଷକୁ କିପରି ଭଲ ପାଇବେ ? ତାଙ୍କର ମହତ୍ତ୍ୱପୂର୍ଣ୍ଣ ଉତ୍ତର ଥିଲା : ଏଠାକୁ ଆସିବା ପୂର୍ବରୁ ମୁଁ ଭାରତକୁ ଭଲ ପାଉଥିଲି । ବର୍ତ୍ତମାନ ଭାରତର ପ୍ରତିଟି ଧୂଳିକଣା ଓ ପବନ ମୋ ପାଇଁ ପବିତ୍ର ହୋଇଛି, ଏହା ଏକ ପବିତ୍ରଭୂମି, ତୀର୍ଥସ୍ଥଳୀ ।''

ଡୋଭର, **କାଲାଇସ୍ ଓ ମଣ୍ଟ ସେନିସ୍** ପ୍ରଭୃତି ସ୍ଥାନ ଅତିକ୍ରମ କରି ମିଲନ୍‌ରେ ସ୍ୱାମୀଜୀ ପହଞ୍ଚିଲେ । ରେଳଯାତ୍ରା ସମୟରେ ସ୍ୱାମୀଜୀ ହିମାଳୟ ପର୍ବତମାଳାରେ ଏକ ଆଶ୍ରମ ପ୍ରତିଷ୍ଠାର ସ୍ୱପ୍ନ ସମ୍ବନ୍ଧରେ କ୍ୟାପ୍ଟେନ୍ ସେଭିୟରଙ୍କ ସହ ବିଚାର ବିମର୍ଶ କଲେ ଏବଂ ସେଥିନିମନ୍ତେ ଯଥାସମ୍ଭବ ସହାୟତା ଯୋଗାଇଦେବେ ବୋଲି ସେ ପ୍ରତିଶ୍ରୁତି ମଧ୍ୟ ଦେଲେ । ଇଟାଲିକୁ ସ୍ୱାମୀଜୀଙ୍କର ଏହା ପ୍ରଥମ ଭ୍ରମଣ ଥିଲା । ମିଲାନ୍‌ର ବହୁ କଳାକୃତି ଭରା ମନଲୋଭା ସ୍ଥାନ ପରିଦର୍ଶନ କରି ପିଶା ଟାୱାର, ଏହାର କାଥେଡ୍ରାଲର କଳା ଓ ଧଳା  ମଖମଲ ପଥରର କାରୁକାର୍ଯ୍ୟ ବୁଲି ଦେଖିଲେ । ଫ୍ଲୋରେନ୍ସର ଐତିହାସିକ ସ୍ଥପତି ଓ  ପ୍ରାକୃତିକ ଚିତ୍ର ତାଙ୍କୁ ବେଶ୍ ମୁଗ୍ଧ କଲା । ଏଠାରେ ତାଙ୍କର ଆମେରିକୀୟ ବନ୍ଧୁ ଶ୍ରୀ ଓ ଶ୍ରୀମତୀ ଜର୍ଜ ହେଲେଙ୍କ ସହ ହଠାତ୍ ସାକ୍ଷାତ ହେଲା, ସେମାନେ ସେତେବେଳେ ଇଟାଲି ଭ୍ରମଣରେ ଆସିଥିଲେ । ବହୁସମୟ ସେମାନଙ୍କ ସହ ଆଳାପ ଆଲୋଚନା ଅନ୍ତେ ସ୍ୱାମୀଜୀ ରୋମ୍ ଅଭିମୁଖେ ଯାତ୍ରା କଲେ । ରୋମ୍‌ର ପ୍ରାଚୀନ ଇତିହାସ ଓ ସଭ୍ୟତା ତାଙ୍କ ମନରେ ଶିହରଣ ଖେଳାଇଦେଲା ।

ସ୍ୱାମୀଜୀ ସାଥୀଗଣଙ୍କ ସହିତ ପ୍ରାଚୀନ ରୋମ୍‌ର ଭଗ୍ନାବଶେଷ ଯଥା ସିଜରଙ୍କ ରାଜପ୍ରାସାଦ, ଫୋରମ୍ ଅଫ୍ ରୋମନ୍ୟୁମ, ଫୋରମ୍ ଅଫ୍ ଟ୍ରାଜନ, ପେଲେଟାଇନ୍ ହିଲ୍ ଇତ୍ୟାଦି ଉସ୍ଥାହର

Digitized by srujanika@gmail.com

ସହିତ ବୁଲି ବୁଲି ଦେଖିଲେ । ଭାଟିକାନ୍ ଏହାର ଉପାସନାସ୍ଥଳୀ ଏବଂ ଏହାର ବିଶାଳ ରେନେସାଁ ଆର୍ଟ ଟ୍ରେଜରକୁ ଦେଖି ସ୍ୱାମୀଜୀ ଖ୍ରୀଷ୍ଟଧର୍ମର ସାଂଗଠନିକ ଉତ୍ସାହକୁ ଭୂରିଭୂରି ପ୍ରଶଂସା କଲେ । ଘଟଣାକ୍ରମେ ବଡ଼ଦିନ ପର୍ବ ଭାଟିକାନ ସିଟିରେ ପାଳିତ ହେଲା । ରୋମ୍‌ର ପାଣିପବନ କ୍ରିଷ୍ଟମାସ ଲହରିରେ ତରଙ୍ଗାୟିତ ହେଲା, ସ୍ୱାମୀଜୀ ବାଳ ଖ୍ରୀଷ୍ଟ ଭାବନାରେ ତନ୍ମୟ ହୋଇଉଠିଲେ । ସେଣ୍ଟ ପିଟର ଓ ଯୀଶୁଖ୍ରୀଷ୍ଟଙ୍କ ଭାବଧାରାରେ ବୁଡି ସାଥୀମାନଙ୍କୁ ଯୀଶୁଙ୍କ ଜୀବନ ଉପରେ ବହୁ ଚମତ୍କାର କାହାଣୀ ଶୁଣାଇଲେ । ସତେକି ସ୍ୱାମୀଜୀ ସ୍ୱୟଂ ଏଠାରେ ଯୀଶୁଖ୍ରୀଷ୍ଟଙ୍କ ପ୍ରେମଧାରାରେ ଆପ୍ଳୁତ । ସେଠାରୁ ସେମାନେ ନେପ୍ଲସ୍ ଯାତ୍ରା କଲେ । ନେପ୍ଲସରେ ଜାତୀୟ ସଂଗ୍ରାହାଳୟ, ମତ୍ସ୍ୟାଗାର ବୁଲି ଦେଖିବା ସଙ୍ଗେ ସଙ୍ଗେ ଭିସୁଭିୟସ୍ ଆଗ୍ନେୟଗିରି ଦେଖିବାକୁ ଯାଇଥିଲେ ।

- ୧ -

*ଆମେ ଯେଉଁ ସତ୍ୟ ଓ ଆଦର୍ଶର ପ୍ରଚାର ଓ ପ୍ରସାର କରୁଥିଲୁ, ସେସବୁକୁ ଖ୍ରୀଷ୍ଟ ଶିଖାଇଥିଲେ ବୋଲି କହି ଖ୍ରୀଷ୍ଟଧର୍ମୀମାନେ ବର୍ତ୍ତମାନ ପ୍ରଚାର କରୁଛନ୍ତି; କିନ୍ତୁ ସେହି ସମ୍ବନ୍ଧରେ କହିବାକୁ ଗଲେ, ଯୀଶୁ ନାମଧାରୀ କୌଣସି ବ୍ୟକ୍ତି କେବେ ବି ଜନ୍ମ ହୋଇ ନ ଥିଲେ । ଏହି ସତ୍ୟକୁ ପରୀକ୍ଷା କରିବା ନିମନ୍ତେ ବିଭିନ୍ନ ପ୍ରମାଣ ଲୋକଗୋଚରକୁ ଆସିବ ଯଦି ଏହି ସ୍ଥାନକୁ ଖୋଳାଯିବ ।*

୧୮୯୬ ଡିସେମ୍ବର ୩୦ ତାରିଖରେ ପ୍ରିନ୍ସ୍ ରିଜେଣ୍ଟ ଲୁଇଟ୍ ପୋଲ୍ଡ ନାମକ ଷ୍ଟିମର୍‌ରେ ସ୍ୱାମୀଜୀ ଭାରତବର୍ଷ ଅଭିମୁଖେ ଯାତ୍ରା କଲେ । ନେପ୍ଲସ ପଛରେ ରହିଗଲା, ଜାହାଜ ଅଗାଧ ଜଳରାଶିରେ ଆଗକୁ ଆଗକୁ ଅଗ୍ରସର ହେଲା । ସୁଏଜ୍ କେନାଲରେ ଜାହାଜ ପ୍ରବେଶ କରିବା ମାତ୍ରେ ଏସିଆ ମହାଦେଶ ଆରମ୍ଭ ହେଲା । ଏସିଆ ନାଁ ଶୁଣି ସ୍ୱାମୀଜୀ ରୋମାଞ୍ଚିତ ହୋଇଉଠିଲେ । ଏହି ଜଳଯାତ୍ରା ସମୟରେ ଏକ ଅଦ୍ଭୁତ ଘଟଣା ଘଟିଥିଲା । ଏକ ରାତ୍ରିରେ ରାତ୍ର ଭୋଜନାନ୍ତେ ସ୍ୱାମୀଜୀ ଶୟନରତ ହେଲେ । ସେ ଏକ ଆଶ୍ଚର୍ଯ୍ୟ ପାର୍ଥିବ ସ୍ୱପ୍ନ ଦେଖିଲେ ଯାହା ତାଙ୍କ ମନରେ ଏକ ଅଭୁଲା ସ୍ମୃତି ଛାଡ଼ି ଦେଇଥିଲା । ଜଣେ ଦାଢ଼ୀ ଆବୃତ ବୃଦ୍ଧ, ଦେଖାଯାଉଥିଲେ ପ୍ରାଚୀନ ଋଷି ସଦୃଶ, ସ୍ୱାମୀଜୀଙ୍କ ସମ୍ମୁଖରେ ହଠାତ୍ ଆବିର୍ଭୂତ ହେଲେ ଏବଂ କହିଲେ, "ମୁଁ ଯେଉଁ ସ୍ଥାନଟିକୁ ଦେଖାଉଛି, ତାହା ତୁମେ ଭଲ ଭାବରେ ଦେଖିନିଅ । ବର୍ତ୍ତମାନ ତୁମେ କ୍ରିଟେ ଦ୍ୱୀପ ନିକଟରେ ଉପନୀତ । ଏହି ସେହି ଦ୍ୱୀପ ଯେଉଁଠାରୁ ଖ୍ରୀଷ୍ଟଧର୍ମ ପ୍ରଥମେ ଆରମ୍ଭ ହୋଇଥିଲା ।"

ତତ୍‌ପଶ୍ଚାତେ ସ୍ୱାମୀଜୀ ଉକ୍ତ ବୃଦ୍ଧଙ୍କ କଣ୍ଠରୁ ଶୁଣିଲେ, "ତୁମେ ଆସ ଏବଂ ଆମର ପୁନଃପ୍ରତିଷ୍ଠା କର; ପ୍ରାଚୀନ ଥେରାପୁତ୍ତ ସଂପ୍ରଦାୟ ଭିତରୁ ମୁଁ ଅନ୍ୟତମ, ଭାରତୀୟ ଋଷିମାନଙ୍କର ଶିକ୍ଷା ଓ ଉପଦେଶନରୁ ଏହି ଥେରାପୁତ୍ତ ସଂପ୍ରଦାୟ ଏକଦା ଉଦ୍ଭବ ହୋଇଥିଲା ।"

Digitized by srujanika@gmail.com

ଉକ୍ତ ଦିବ୍ୟାତ୍ମା ଅନ୍ୟ ଏକ ବାକ୍ୟ କହିଲେ, ଯାହା ସ୍ୱାମୀଜୀ ମନେରଖିପାରି ନ ଥିଲେ । ପୁନଶ୍ଚ ଋଷିପ୍ରତିମ ଦିବ୍ୟାତ୍ମା କହିଲେ, ''ଆମେ ଯେଉଁ ସତ୍ୟ ଓ ଆଦର୍ଶର ପ୍ରଚାର ଓ ପ୍ରସାର କରୁଥିଲୁ, ସେସବୁକୁ ଖ୍ରୀଷ୍ଟ ଶିକ୍ଷାଇଥିଲେ ବୋଲି କହି ଖ୍ରୀଷ୍ଟଧର୍ମୀମାନେ ବର୍ତ୍ତମାନ ପ୍ରଚାର କରୁଛନ୍ତି; କିନ୍ତୁ ସେହି ସମ୍ବନ୍ଧରେ କହିବାକୁ ଗଲେ, ଯୀଶୁ ନାମଧାରୀ କୌଣସି ବ୍ୟକ୍ତି କେବେ ବି ଜନ୍ମ ହୋଇ ନ ଥିଲେ । ଏହି ସତ୍ୟକୁ ପରୀକ୍ଷା କରିବା ନିମନ୍ତେ ବିଭିନ୍ନ ପ୍ରମାଣ ଲୋକଗୋଚରକୁ ଆସିବ ଯଦି ଏହି ସ୍ଥାନକୁ ଖୋଳାଯିବ ।''

ସ୍ୱାମୀଜୀ ପ୍ରଶ୍ନ କଲେ, ''ଯେଉଁ ପ୍ରମାଣ ଓ ଭଗ୍ନାବଶେଷର କଥା ଆପଣ କହୁଛନ୍ତି, ତାହା କେଉଁସ୍ଥାନକୁ ଖୋଦିତ କଲେ ମିଳିବ ? ପ୍ରାଚୀନ ଦିବ୍ୟାତ୍ମା ତୁର୍କିର ଆଖପାଖ ଅଞ୍ଚଳକୁ ଅଙ୍ଗୁଳି ଦେଖାଇ କହିଲେ, ''ଏଇଠି ଦେଖ ।''

ସ୍ୱାମୀଜୀଙ୍କ ନିଦ ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଶଯ୍ୟା ତ୍ୟାଗକରି ଜାହାଜର ଡେକ୍ ଆଡ଼କୁ କ୍ଷୀପ୍ର ପାଦରେ ଚାଲି ଆସିଲେ, ଜାହାଜର ଜଣେ ଅଫିସରଙ୍କୁ ପଚାରିଲେ, ''ବର୍ତ୍ତମାନ ସମୟ ?'' ଆମେ ବର୍ତ୍ତମାନ କେଉଁଠି ?'' ଅଫିସର କହିଲେ, ''କ୍ରିଟେଠାରୁ ଆମେ ମାତ୍ର ପଚାଶ ମାଇଲ୍ ଦୂରରେ ।''

ଏତାଦୃଶ ସ୍ୱପ୍ନ କୌଣସି ବିଷୟବସ୍ତୁର ମନନ କିମ୍ବା ଚର୍ଚ୍ଚାର କାରଣ ଯୋଗୁଁ ହୋଇପାରେ, କିନ୍ତୁ ଏହାକୁ ତର୍ଜମା କଲେ ଜଣାପଡ଼େଯେ ଥେରାପୁତ୍ତର ଅର୍ଥ ହେଉଛି ଥେରାଙ୍କର ପୁତ୍ରଗଣ କିମ୍ବା ଶିଷ୍ୟଗଣ । ବୌଦ୍ଧ ସନ୍ନ୍ୟାସୀଙ୍କ ମଧ୍ୟରୁ ଯିଏ ଜ୍ୟେଷ୍ଠ ତାଙ୍କୁ ଥେରା କୁହାଯାଏ । ହେଇପାରେ ବୌଦ୍ଧ ସନ୍ନ୍ୟାସୀଙ୍କ ଦ୍ୱାରା ଯୀଶୁଖ୍ରୀଷ୍ଟ କିମ୍ବା ଖ୍ରୀଷ୍ଟଧର୍ମ ପ୍ରଭାବିତ ହୋଇ ବୌଦ୍ଧଧର୍ମର ଶିକ୍ଷା ଗ୍ରହଣ କରିନେଇ ପାରିଥାନ୍ତି ? ଇୟୁରୋପ ଭ୍ରମଣକାଳରେ କାଥୋଲିକ ଖ୍ରୀଷ୍ଟଧର୍ମୀଙ୍କର ଉପାସନା ପଦ୍ଧତି ପରିଲକ୍ଷିତ କରି ସ୍ୱାମୀଜୀ ଅତୀବ ଆଶ୍ଚର୍ଯ୍ୟ ହୋଇଥିଲେ । କାହିଁକିନା ଖ୍ରୀଷ୍ଟଧର୍ମ ଓ ହିନ୍ଦୁଧର୍ମ ଉପାସନା ପଦ୍ଧତିରେ ସେ ସାମଞ୍ଜସ୍ୟ ଦେଖିବାକୁ ପାଇଥିଲେ । ଏହି ପରିପ୍ରେକ୍ଷୀରେ ଭଗ୍ନୀ ନିବେଦିତା କହନ୍ତି :

ଖ୍ରୀଷ୍ଟିୟାନ ଧର୍ମର ପ୍ରତୀକାତ୍ମକ ବ୍ରତ (ଯଥା - ନାମକରଣ ଓ ପୂଜା ଅର୍ପିତ ରୁଟି ଓ ମଦ ଗ୍ରହଣ **ୟୁକାରିଷ୍ଟ** କର୍ମ) ତାଙ୍କୁ ବୈଦିକ ସର୍ବଶେଷ ବର୍ଣ୍ଣନା ସଦୃଶ ପ୍ରତୀୟମାନ ହେଲା । ଯାଜକୀୟ ମସ୍ତକ ମୁଣ୍ଡନ ଭାରତୀୟ ସନ୍ନ୍ୟାସୀଙ୍କର ଲଣ୍ଡିତ ମସ୍ତକ ପ୍ରଥା ତାଙ୍କୁ ମନେ ପକାଇଦେଲା; ଯେତେବେଳେ ସେ **ଜଷ୍ଟିନିଆନ** ଚିତ୍ରରେ ଦୁଇଜଣ ଲଣ୍ଡିତ ମସ୍ତକ ଭିକ୍ଷୁଙ୍କ ଠାରୁ ଆଇନ୍ ଗ୍ରହଣ କରୁଥିବାର ଦୃଶ୍ୟ ଦେଖିଲେ, ସେତେବେଳେ ମୁଣ୍ଡନୀକରଣର ଉଦ୍ଭବ ସ୍ଥଳୀ ତାଙ୍କ ମାନସ ଆକାଶରେ ଉଦ୍‌ଭାସିତ ହୋଇଉଠିଲା । ସେ ବିଶ୍ୱାସ କରିପାରିଲେ ନାହିଁ ଯେ ଏପରିକି ବୌଦ୍ଧଧର୍ମ ପୂର୍ବରୁ ଭାରତବର୍ଷରେ ସନ୍ନ୍ୟାସୀ ଓ ବ୍ରହ୍ମଚାରିଣୀ ଥିଲେ, ଯାହା ଥେରାପନ୍ଥୀମାନଙ୍କଠାରୁ ୟୁରୋପ ଗ୍ରହଣ କରିଥିଲା । ହିନ୍ଦୁ ଧାର୍ମିକ ଉପାସନା ପଦ୍ଧତିର ଦୀପ ଜ୍ୱଳନ, ଧୂପଗନ୍ଧ ଓ ସଂଗୀତ ବି ଖ୍ରୀଷ୍ଟ ଧର୍ମରେ ବିଦ୍ୟମାନ । ଏପରିକି କ୍ରୁଶର ଚିହ୍ନ ଯେଉଁଳି ଭାବେ ଚର୍ଚ୍ଚରେ ପ୍ରଚଳିତ, ତାହା ଏକପ୍ରକାର ଧ୍ୟାନ ଅବସ୍ଥାରେ ଶରୀରର ବିଭିନ୍ନ ଅଂଶ ସ୍ପର୍ଶ କରିବା ଭଳି ତାଙ୍କୁ ଅନୁମାନ ହେଲା । ଏହିସବୁ ଦେଖିସାରିବା ପରେ, ସେ ଯେତେବେଳେ କେତେକ କେଥେଡ୍ରାଲରେ ଦେଖିଲେ ଯେ ବସିବା

Digitized by srujanika@gmail.com

ପାଇଁ ଚେୟାର ନାହିଁ ଓ ଲମ୍ବା ବେଞ୍ଚ ନାହିଁ, ସେତେବେଳେ ସେ ବାସ୍ତବରେ ଖ୍ରୀଷ୍ଟଧର୍ମ ଏକ ବିଦେଶୀ ଧର୍ମ ବୋଲି ତାଙ୍କର ବିଶ୍ୱାସ ହେଲା ନାହିଁ ।

- ୨ -

*ସ୍ୱାମୀଜୀ ଜଣେ ଖ୍ରୀଷ୍ଟିଆନ ମିସନାରୀଙ୍କର ସାର୍ଟର କଲାର୍‌କୁ ଭିଡ଼ିଆଣି ଏବଂ ଶକ୍ତ ମୁଠାରେ ଜାବୁଡ଼ି ଧରି କହି ଉଠିଲେ - "ତୁମେ ଯଦି ପୁନଶ୍ଚ ମୋ ଧର୍ମକୁ ଗାଳି ଦେବ, ତେବେ ତୁମକୁ ମୁଁ ଜାହାଜ ବାହାରକୁ ଫିଙ୍ଗିଦେବି ।" ବିଚରା ଖ୍ରୀଷ୍ଟିୟାନ ମିଶନାରୀ ଜଣକ ଭୟରେ କମ୍ପି ଉଠିଲେ, ଅଣନିଃଶ୍ୱାସୀ ହୋଇ ଥର ଥର କଣ୍ଠରେ କହିଲେ, "ସାର୍ ମୋତେ ଦୟାକରି ଛାଡ଼ି ଦିଅନ୍ତୁ, ମୁଁ ଆଉଥରେ ଏଭଳି କେବେ ବି କରିବି ନାହିଁ ।"*

ଏହି ସ୍ୱପ୍ନ ଯୀଶୁଖ୍ରୀଷ୍ଟଙ୍କର ଐତିହାସିକତା ଉପରେ ତାଙ୍କୁ ଭାବିବାକୁ ସୁଯୋଗ ପ୍ରଦାନ କଲା, କିନ୍ତୁ ଏଠାରେ ଗୋଟିଏ କଥା ମନେରଖିବାକୁ ହେବ ଯେ ସ୍ୱାମୀଜୀ କେବେ ବି ଖ୍ରୀଷ୍ଟଙ୍କ ଉପରେ କୌଣସି ପ୍ରକାର ସନ୍ଦେହ କରି ନ ଥିଲେ । ବର୍ତ୍ତମାନ ସେ ଦେଖିପାରିଲେ ଯେ ଧର୍ମମତ ପ୍ରଚାର ପାଇଁ ଯୀଶୁଙ୍କ ଦ୍ୱାରା ପ୍ରେରିତ ବାରଜଣ ଶିଷ୍ୟଙ୍କର କାର୍ଯ୍ୟ ଯୀଶୁଖ୍ରୀଷ୍ଟଙ୍କ ଧର୍ମବାଣୀ ଅପେକ୍ଷା ପୁରାତନ ହୋଇପାରେ ଏବଂ **ଥେରାପନ୍ଥୀ** ଓ **ନାଜିରେଥ୍** (ଯିଶୁଙ୍କର ଜନ୍ମସ୍ଥାନ)ଙ୍କର ଶିକ୍ଷା ଓ ଦୃଷ୍ଟିକୋଣର ଏକ ସଂଯୋଗ ଘଟିଥିଲା, ଯାହାଫଳରେ ଖ୍ରୀଷ୍ଟଧର୍ମ ଏକ ଦର୍ଶନ ଓ ବ୍ୟକ୍ତିତ୍ୱର ଉଭୟ ଲାଭ କରିପାରିଲା । ଅବଶ୍ୟ ସ୍ୱାମୀଜୀ ଭଲଭାବରେ ଜାଣିଥିଲେ ଯେ ଖ୍ରୀଷ୍ଟଧର୍ମର ଇତିହାସ ଓ ଉଦ୍ଭବ ମୂଳତତ୍ତ୍ୱ ଉପରେ ଏହିପ୍ରକାର ଅନୁମାନ ପ୍ରମାଣ ସାପେକ୍ଷ ନୁହେଁ, ତଥାପି ତାଙ୍କର ଦୃଢ଼ବିଶ୍ୱାସ ରହିଥିଲା ଯେ ଭାରତୀୟ, ଗ୍ରୀକ୍ ଓ ଇଜିପ୍ଟୀୟର ମିଳନ କ୍ଷେତ୍ର ଆଲେକଜାଣ୍ଡ୍ରିଆ ଥିଲା, ଯାହା ଖ୍ରୀଷ୍ଟଧର୍ମକୁ ଆକାର ଦେବାରେ ସାହାଯ୍ୟ କରିଥିଲା । ଏଠାରେ ସ୍ମରଣଯୋଗ୍ୟ ଯେ ଉକ୍ତ ଐତିହାସିକ ସ୍ୱପ୍ନରେ ସ୍ୱାମୀଜୀ ଏଭଳିଭାବେ ପ୍ରଭାବିତ ହୋଇଥିଲେ ଯେ ସେ ତାଙ୍କର ଇଂଲଣ୍ଡର ଜଣେ ପ୍ରତ୍ନତତ୍ତ୍ୱବିତ୍ ବନ୍ଧୁଙ୍କୁ ଏହି ସ୍ୱପ୍ନର ସତ୍ୟତା ପ୍ରମାଣିତ କରିବା ପାଇଁ ଅନୁରୋଧ କରିଥିଲେ । ଯାହାହେଉ ସ୍ୱାମୀଜୀଙ୍କର ଦେହାନ୍ତର କିଛିବର୍ଷ ପରେ, ଏକ ସମ୍ବାଦ ଷ୍ଟେଟସମ୍ୟାନ୍‌ରେ ପ୍ରକାଶ ପାଇଥିଲା ଯେ କେତେଜଣ ଇଂରାଜୀ କ୍ରେଟେର ଖୋଦନ କାର୍ଯ୍ୟ ଚାଲିଥିବା ବେଳେ ଖ୍ରୀଷ୍ଟଧର୍ମର ଉଦ୍ଭବ ସମ୍ବନ୍ଧୀୟ କେତେକ ମହତ୍ତ୍ୱପୂର୍ଣ୍ଣ ଓ ଆଶ୍ଚର୍ଯ୍ୟଜନକ ବିଷୟବସ୍ତୁ ଜାଣିବାକୁ ପାଇଥିଲେ ।

ଖ୍ରୀଷ୍ଟଧର୍ମ ସଂକ୍ରାନ୍ତରେ ସ୍ୱାମୀଜୀଙ୍କ ମନରେ ଯାହା ବି ସନ୍ଦେହ ଉପୁଜି ଥିଲା, ତାହା ଯୀଶୁଖ୍ରୀଷ୍ଟଙ୍କ ପ୍ରତି ତାଙ୍କର ଗଭୀର ପ୍ରେମ ଓ ଭକ୍ତିକୁ ତିଳେମାତ୍ର ହ୍ରାସ କରିପାରି ନ ଥିଲା । ଏଠାରେ କହିବା ବାହୁଲ୍ୟ ଯେ ଗୋଟିଏ ଘଟଣାରେ ଯେତେବେଳେ **ସିଷ୍ଟାଇନ୍ ମାଡୋନା**ଙ୍କର ଏକ ଛବିକୁ ପୂଜା କରିବା ପାଇଁ ଜଣେ ପାଶ୍ଚାତ୍ୟବାସୀ ସ୍ୱାମୀଜୀଙ୍କୁ ଅନୁରୋଧ କଲେ, ସେତେବେଳେ

Digitized by srujanika@gmail.com

ସେ ତାହା ନ କରି ଦେବଶିଶୁ ଯୀଶୁଙ୍କ ଚରଣ ଭକ୍ତି ସହକାରେ ନିଜ ହସ୍ତରେ ସ୍ପର୍ଶ କଲେ । ଆଉ ଜଣେ ମହିଳା ଭକ୍ତଙ୍କୁ ଚାହିଁ ସେ ପ୍ରଜ୍ଜ୍ୱଳିତ ଚକ୍ଷୁରେ କହିଥିଲେ, "ମାଡ଼ାମ, ନଜାରେଥ୍‌ର ଯୀଶୁଙ୍କ ସମୟରେ ମୁଁ ଯଦି ସେତେବେଳେ ପାଲେଷ୍ଟାଇନ୍‌ରେ ବାସ କରୁଥାନ୍ତି ମୁଁ ତାଙ୍କର ପାଦ ଧୌତ କରିଥାନ୍ତି, ନିଜ ଅଶ୍ରୁଦାରା ଦ୍ୱାରା ନୁହେଁ ବରଂ ମୋ ହୃଦୟର ଶୋଣିତ ଦ୍ୱାରା ।" ଯୀଶୁଙ୍କ ପ୍ରତି ସ୍ୱାମୀଜୀଙ୍କର କିଭଳି ଭକ୍ତି, ପ୍ରେମ ଓ ଶ୍ରଦ୍ଧା ରହିଥିଲା, ତାହା ଉପରୋକ୍ତ ଘଟଣାରୁ ଜଣେ ସହଜରେ ଜାଣିପାରିବ । କିନ୍ତୁ ଖ୍ରୀଷ୍ଟିୟାନ ମିଶନାରୀଙ୍କର ଯୀଶୁଙ୍କର ପ୍ରଦର୍ଶିତ ପଥରୁ ବିଚ୍ୟୁତି ମନୋଭାବ ଏବଂ ଔଦ୍ଧତ୍ୟକୁ ସ୍ୱାମୀଜୀ ଆଦୌ ବରଦାସ୍ତ କରିପାରୁ ନ ଥିଲେ ।

ଏହି ଭାରତ ପ୍ରତ୍ୟାବର୍ତ୍ତନ ଜଳଯାତ୍ରା ସମୟରେ ଏକ ଅପ୍ରୀତିକର ଘଟଣା ଘଟିଥିଲା । ସ୍ୱାମୀଜୀଙ୍କ ଜାହାଜରେ ଦୁଇଜଣ ଖ୍ରୀଷ୍ଟିଆନ ମିଶନାରୀ ବି ଯାତ୍ରା କରୁଥିଲେ । ଜାହାଜ ଯେତେବେଳେ କଲୋମ୍ବ ଓ **ଆଡ଼େନ** ମଝିରେ ଯାତ୍ରା କରୁଥିଲା, ସେହି ଦୁଇଜଣ ଖ୍ରୀଷ୍ଟିୟାନ ମିଶନାରୀ ସ୍ୱାମୀଜୀଙ୍କ ସହ ହିନ୍ଦୁ ଓ ଖ୍ରୀଷ୍ଟଧର୍ମର ପାର୍ଥକ୍ୟ ଓ ତୁଳନା ସମ୍ବନ୍ଧରେ ଆଲୋଚନାରତ ଥିଲେ । ସେମାନଙ୍କର ପ୍ରତ୍ୟେକ ଯୁକ୍ତିକୁ ସ୍ୱାମୀଜୀ ସହଜରେ କାଟି ଦେଉଥିଲେ, କିନ୍ତୁ ଯୁକ୍ତିରେ ବାରମ୍ବାର ପରାଜିତ ହେବାରୁ ସେମାନେ ଉତ୍‌କ୍ଷିପ୍ତ ହୋଇ କେବଳ ମାନସିକ ଭାରସାମ୍ୟ ହରାଇ ବସିଲେ ନାହିଁ ବରଂ କ୍ରୋଧାନ୍ୱିତ ହୋଇ ଅତି କଦର୍ଯ୍ୟ ଓ ଅଶାଳୀନ ଭାଷାରେ ହିନ୍ଦୁଧର୍ମକୁ ଗାଳିଗୁଲଜ କରିବାକୁ ଆରମ୍ଭ କଲେ । ତଥାପି ସେମାନଙ୍କର ଅଶାଳୀନ ମନ୍ତବ୍ୟକୁ ସ୍ୱାମୀଜୀ ସହ୍ୟ କଲେ କିନ୍ତୁ ଯେତେବେଳେ ସେମାନେ ମାନବିକତାର ସୀମା ଉଲଙ୍ଘନ କଲେ, ସେତେବେଳେ ସ୍ୱାମୀଜୀ କ୍ଷିପ୍ରଗତିରେ ସେ ଦୁଇଜଣଙ୍କ ପାଖକୁ ଲାଗିଯାଇ ଜଣକର ସାର୍ଟର କଲରକୁ ଭିଡ଼ି ଆଣି ଏବଂ ଶକ୍ତ ମୁଠାରେ ଜାବୁଡ଼ି ଧରି, ଅର୍ଦ୍ଧ ପରିହାସପୂର୍ଣ୍ଣ ସ୍ୱରରେ କହିଉଠିଲେ, "ତୁମେ ଯଦି ପୁନଶ୍ଚ ମୋ ଧର୍ମକୁ ଗାଳି ଦେବ, ତେବେ ତୁମକୁ ମୁଁ ଜାହାଜ ବାହାରକୁ ଫିଙ୍ଗିଦେବି ।" ବିଚରା ଖ୍ରୀଷ୍ଟିୟାନ ମିଶନାରୀ ଜଣକ ଭୟରେ କମ୍ପି ଉଠିଲେ, ଅଣନିଃଶ୍ୱାସୀ ହୋଇ ଥର ଥର କଣ୍ଠରେ କହିଲେ, "ସାର୍ ମୋତେ ଦୟାକରି ଛାଡ଼ି ଦିଅନ୍ତୁ, ମୁଁ ଆଉଥରେ ଏଭଳି କେବେ ବି କରିବି ନାହିଁ ।" ଉକ୍ତ ଘଟଣା ପରେ ସେହି ମିଶନାରୀ ବ୍ୟକ୍ତି ସ୍ୱାମୀଜୀଙ୍କର ପ୍ରିୟଭାଜନ ହେବାପାଇଁ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ ।

ପରବର୍ତ୍ତୀ ସମୟରେ, ଏକଦା କଲିକତାରେ ଅବସ୍ଥାନ କରୁଥିବାବେଳେ ସମୟରେ, ସ୍ୱାମୀଜୀ ଜଣେ ଶିଷ୍ୟଙ୍କ ନିକଟରେ ଉକ୍ତ ଘଟଣାର ଅବତାରଣ କରି କହିଥିଲେ, "ଏକୀଭୂତ କାର୍ଯ୍ୟକଳାପ ପାଇଁ ଧର୍ମ ଆଧାର ହେବା ଉଚିତ ଏବଂ ଜଣେ ନିଜର ଧର୍ମକୁ ଠିକ୍ ଭାବେ ଭଲ ପାଇଲେ, ତା'ଭିତରେ ପୌରୁଷତ୍ୱ ସଞ୍ଚରିତ ହେବ, ଯାହା ବର୍ତ୍ତମାନ ଭାରତ ପାଇଁ ନିହାତି ଆବଶ୍ୟକ ।" ତତ୍‌ପଶ୍ଚାତେ ଉକ୍ତ ଶିଷ୍ୟଙ୍କୁ ସ୍ୱାମୀଜୀ ପଚାରିଲେ, "ପ୍ରିୟ ସିହ୍ନା ତମର ମା'ଙ୍କୁ ଯିଏ ଅପମାନିତ କରିବ, ତୁମେ କ'ଣ କରିବ ?" ସିହ୍ନା କହିଲେ, ମହାଶୟ ତାଙ୍କ ଉପରକୁ ମୁଁ ଡେଇଁ ପଡ଼ିବି ଏବଂ ତାକୁ ଉଚିତ ଶିକ୍ଷା ଦେବି ।" ସ୍ୱାମୀଜୀଙ୍କର ମୁଖମଣ୍ଡଳ ହେଲା ଆଲୋକିତ ଏବଂ କହିଲେ, "ଭଲ କଥା, ହଁ ଗୋଟିଏ କଥା ତୁମେ ମନେରଖ ନିଜ ଧର୍ମ ଯାହା ଆମ ରାଷ୍ଟ୍ରର ପ୍ରକୃତ ମାତା, ତାହା ପ୍ରତି ଯଦି ଏଭଳି ସକାରାତ୍ମକ ମନୋଭାବ ତୁମର ରହିବ, ତେବେ ହିନ୍ଦୁ ଭାଇ ଖ୍ରୀଷ୍ଟଧର୍ମରେ ଧର୍ମାନ୍ତରିତ ହେବାର ଦୃଶ୍ୟ ତୁମେ କେବେ ବି ସହି ପାରିବ ନାହିଁ । ତାହା

Digitized by srujanika@gmail.com

ସତ୍ତ୍ୱେ, ଆମ ଦେଶରେ ଏଭଳି ଧର୍ମାନ୍ତରୀକରଣ ପ୍ରତିଦିନ ଘଟୁଛି, ତଥାପି ଆମେ ନିରବ ହୋଇ ତାହା ଦେଖୁଛେ । ତୁମର ବିଶ୍ୱାସ ଗଲା କୁଆଡ଼େ ? ତୁମର ଦେଶାତ୍ମବୋଧ ଗଲା କୁଆଡ଼େ ? ପ୍ରତିଦିନ ଖ୍ରୀଷ୍ଟିୟାନ ମିଶନାରୀ ହିନ୍ଦୁଧର୍ମକୁ ତୁମ ସାମ୍ନାରେ ଗାଳି ଗୁଲଜ କରୁଛନ୍ତି, ତଥାପି ତୁମଭିତରୁ କେତେଜଣ ଏହି ଧର୍ମ ସପକ୍ଷରେ ସ୍ୱର ଉତ୍ତୋଳନ କରୁଛନ୍ତି ? ଏହି ଧାର୍ମିକ ଘୃଣା ପ୍ରତି କାହାର ରକ୍ତ ଟକମକ ଫୁଟି ଉଠୁଛି ?

ଏଡ଼େନ୍ ବନ୍ଦରରେ ଜାହାଜ ପହଞ୍ଚିଲା । ବନ୍ଦର ନିକଟସ୍ଥ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଓ ଏକ ବିଶାଳ ବର୍ଷାଜଳ ସଂରକ୍ଷଣ ଭଣ୍ଡାର୍ ସ୍ୱାମୀଜୀ ସାଥୀମାନଙ୍କ ସହ ବୁଲି ଦେଖିଲେ । ଏହି ଭ୍ରମଣ କାଳରେ ଏକ କୌତୁକିଆ ଘଟଣା ଘଟିଲା । ଜଣେ ବ୍ୟକ୍ତି କିୟଦ୍ ଦୂରରେ ଆରାମରେ ବସି ହୁକ୍‌କା ଟାଣୁଥିଲେ, ସ୍ୱାମୀଜୀଙ୍କ ଦୃଷ୍ଟି ଯେମିତି ଉକ୍ତ ବ୍ୟକ୍ତିଙ୍କ ଉପରେ ପଡ଼ିଛି, ସେତେବେଳେ ସ୍ୱାମୀଜୀଙ୍କୁ ଆଉ କିଏ ସମ୍ଭାଳେ ? ଇଂରାଜୀ ବନ୍ଧୁମାନଙ୍କୁ ଛାଡ଼ି କ୍ଷିପ୍ରପାଦରେ ଉକ୍ତ ବ୍ୟକ୍ତିଙ୍କ ନିକଟକୁ ଚାଲିଲେ । ସେ ଭାରତୀୟ ମୁଖ ବହୁଦିନ ପରେ ଦେଖି ଅତୀବ ଆନନ୍ଦିତ ହେଲେ । ଉକ୍ତ ବ୍ୟକ୍ତି ଜଣେ ହିନ୍ଦୁସ୍ଥାନୀ ପାନ ବିକାଳୀ । ସ୍ୱାମୀଜୀ ତାଙ୍କୁ 'ଭାଇ ସମ୍ବୋଧନ' କରି ତାଙ୍କ ସହ କଥାବାର୍ତ୍ତାରେ ମଜିଗଲେ । କଥାବାର୍ତ୍ତା ଭିତରେ ସ୍ୱାମୀଜୀ ତାଙ୍କୁ କହିଲେ, "ଭାଇ, ତୁମର ହୁକ୍‌କା ମୋତେ ଟିକିଏ ଦିଅ ।" ହିନ୍ଦୁସ୍ଥାନୀ ପାନ ବିକାଳୀ ଭାରତୀୟ ବାବାଜୀଙ୍କର ହଠାତ୍ ସାନିଧ୍ୟ ଲାଭକରି ନିଜକୁ ପବିତ୍ର ଓ ଧନ୍ୟ ମଣିଲେ । ସ୍ୱାମୀଜୀ ମହା ଆନନ୍ଦରେ ହୁକ୍‌କା ପାନ କଲେ । ଇତ୍ୟବସରରେ ଇଂରାଜୀ ସାଥୀଗଣ ସେଠାରେ ପହଞ୍ଚି ଯାଇଥିଲେ । କ୍ୟାପଟେନ୍ ସେଭିୟାର ପରିହାସ ଛଳରେ କହିଲେ, "ସ୍ୱାମୀଜୀ, ଓହୋ ଏଥିପାଇଁ ଆପଣ ଆମମାନଙ୍କୁ ଛାଡ଼ି ଏଠାକୁ ପଳାଇ ଆସିଲେ ।" ସ୍ୱାମୀଜୀଙ୍କର ବାଳକ ସ୍ୱଭାବ ଓ ଆନନ୍ଦ ସମସ୍ତଙ୍କୁ ଭାବବିହ୍ୱଳିତ କରିଦେଲା । ପ୍ରାଚୁର୍ଯ୍ୟଶାଳୀ ପାଶ୍ଚାତ୍ୟ ଜଗତରେ ଜୀବନ ବିତାଇ ବି ନିସ୍ୱ ଦରିଦ୍ର ଭାରତୀୟଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ତିଳେମାତ୍ର ହ୍ରାସ ପାଇ ନ ଥିଲା । ବହୁବର୍ଷ ହେଲା ହୁକ୍‌କାର ମଜା ସେ ପାଶ୍ଚାତ୍ୟ ଜଗତରେ ପାଇ ନ ଥିଲେ, ତାହା ଏଠାରେ ନିଜ ଦେଶର ଜଣେ ଭାଇଙ୍କଠାରୁ ପାଇ ସେ ଅତ୍ୟନ୍ତ ଆନନ୍ଦରେ ଶିହରିତ ହୋଇପଡ଼ିଲେ ।

- ୩ -

*ଜଣେ ଭିକ୍ଷୁ ସନ୍ନ୍ୟାସୀଙ୍କୁ ଯେପରି ଭାବରେ ରାଜକୀୟ ସମ୍ମାନରେ ସମାଦୃତ ଓ ସମ୍ବର୍ଦ୍ଧିତ କରାଯାଇଛି, ତାହା ହିନ୍ଦୁମାନଙ୍କର ଆଧ୍ୟାତ୍ମିକତାର ପ୍ରକାଶନ ବ୍ୟତୀତ ଅନ୍ୟ କିଛି ନୁହେଁ ।" ସେ ଜଣେ ସେନାଧ୍ୟକ୍ଷ ନୁହଁନ୍ତି କିମ୍ବା ଜଣେ ରାଜା କିମ୍ବା ଧନୀବ୍ୟକ୍ତି ନୁହଁନ୍ତି, ତଥାପି ଏହି ଅଳିକ ସଂସାରରେ ଜନସାଧାରଣ ତଥା ବୁଦ୍ଧିଜୀବୀ ଓ ସମ୍ମାନୀତ ବ୍ୟକ୍ତିଗଣ ଜଣେ ଗୃହହୀନ ସନ୍ନ୍ୟାସୀଙ୍କୁ ସମ୍ମାନ ଦେବାପାଇଁ ଆଗେଇ ଆସିଛନ୍ତି । ସ୍ୱାମୀଜୀ ଉତ୍ସାହିତ ସ୍ୱରରେ କହିଉଠିଥିଲେ, "ଆହାଃ, ... ଆଧ୍ୟାତ୍ମିକତାର ଏହି ହିଁ ସର୍ବୋଚ୍ଚ ପ୍ରକାଶନ ।*

Digitized by srujanika@gmail.com

ଶ୍ରୀଲଙ୍କାର କଲମ୍ବୋଠାରେ ଜାହାଜ ପହଞ୍ଚିଲା । ଉଷାକାଳ - ସମୟ ଚାରି ଘଟିକା, **ଜାନୁଆରି - ୧୫, ୧୮୯୭** । ଇତ୍ୟବସରରେ ସ୍ୱାମୀଜୀଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରିବା ନିମନ୍ତେ ଅନ୍ୟ ଏକ ଲଞ୍ଚରେ ସ୍ୱାମୀ ନିରଞ୍ଜନାନନ୍ଦ, ଇଂରାଜୀ ବୌଦ୍ଧଧର୍ମୀ ମିଷ୍ଟର ଟି.ଜି. ହାରିସନ ଏବଂ ତିନିଜଣ ତାମିଲ ଭଦ୍ରଲୋକ ସମୁଦ୍ରକୂଳରେ ଉପସ୍ଥିତ ହେଲେ । ସ୍ୱାମୀଜୀ ଏବଂ ତାଙ୍କର ସହଯାତ୍ରୀ ଦଳ ଯେତେବେଳେ ଜାହାଜରୁ ଅବତରଣ କଲେ, ସେତେବେଳେ ଦୃଷ୍ଟିଗୋଚର ହେଲା ଯେ ଶହଶହ ଜନତା ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ନିମନ୍ତେ ଆନନ୍ଦମୁଖର ହୋଇ କୂଳରେ ଦଣ୍ଡାୟମାନ । ଦୁଇଟି ଅଶ୍ୱଚାଳିତ ଗାଡ଼ି ଅପେକ୍ଷାରତ ଥିଲା । ସ୍ୱାମୀଜୀଙ୍କୁ ଗୋଟିଏ ଗାଡ଼ିକୁ ପାଛୋଟି ନେଲେ ଏବଂ ଅନ୍ୟ ଗାଡ଼ିଟିରେ ତାଙ୍କର ସାଥୀଗଣ ବସିଲେ । ବିଧାନ ପରିଷଦର ସଭ୍ୟ ଶ୍ରୀଯୁକ୍ତ ପି. କୁମାରସ୍ୱାମୀ ମଧ୍ୟ ଉପସ୍ଥିତ ଥିଲେ । ଗାଡ଼ି ଦୁଇଟି **ଚିନାମୋନ ଗାର୍ଡେନରେ** ପହଞ୍ଚିଲା । ସେଠାରେ ଏକ ସୁସଜ୍ଜିତ ଗୃହ ସ୍ୱାମୀଜୀଙ୍କ ପାଇଁ ସୁରକ୍ଷିତ ଥିଲା । ସଭାମଣ୍ଡପ ଅଭିମୁଖେ ରାସ୍ତା ପାର୍ଶ୍ୱରେ ତୋରଣମାନ ସଜା ଯାଇଥିଲା । କଦଳି ଗଛ ପୋତା ଯାଇଥିଲା । ପୁଷ୍ପ ଓ ପତ୍ରରେ ପଥପାର୍ଶ୍ୱ ସୁସଜ୍ଜିତ ହୋଇଥିଲା । ରାସ୍ତାର ପ୍ରବେଶ ଦ୍ୱାରରେ 'ସ୍ୱାମୀ ବିବେକାନନ୍ଦ ସ୍ୱାଗତମ୍' ବଡ଼ ବଡ଼ ଅକ୍ଷରରେ ଲେଖାଯାଇ ଥିଲା । ବିଭିନ୍ନ ରଙ୍ଗ ବେରଙ୍ଗ ପତାକା ହେଉଥିଲା ଫରଫର ଉଡ୍ଡୟମାନ । ଏକ ଶୋଭାଯାତ୍ରାରେ, ବିଭିନ୍ନ ବାଦ୍ୟ ବଜାଇ ସ୍ୱାମୀଜୀଙ୍କ ଗଳାରେ ଅଜାଡ଼ି ଦେଉଥିଲେ ଫୁଲହାର । 'ହର ହର ମହାଦେବ' ଧ୍ୱନିରେ ପ୍ରକମ୍ପିତ ହେଉଥିଲା ସମସ୍ତ ବାତାବରଣ । ରାଜକୀୟ ଢଙ୍ଗରେ ସ୍ୱାମୀଜୀଙ୍କୁ ସମ୍ବର୍ଦ୍ଧିତ କରାଗଲା । ଏଭଳି ସମ୍ବର୍ଦ୍ଧନାରେ ସ୍ୱାମୀଜୀ ଭାବବିହ୍ୱଳିତ ହୋଇ ଶହଶହ ଜନତାଙ୍କୁ ହସ୍ତ ପ୍ରସାରଣ କରି ଆଶୀର୍ବାଦ ପ୍ରଦାନ କଲେ । ତାଙ୍କ ମୁଖରେ ଲହରିତ ହେଉଥିଲା ଦିବ୍ୟ ପ୍ରେମର ହାସ୍ୟ । ସୁଗନ୍ଧିତ ଜଳ ଓ ବିଭିନ୍ନ ରଙ୍ଗର ଫୁଲ ସ୍ୱାମୀଜୀଙ୍କ ଉପରେ ବର୍ଷଣ କରୁଥିଲେ ହଜାର ହଜାର ଜନତା ।

ବିଶାଳ ଜନତାଙ୍କର ସ୍ନେହ ଓ ସମ୍ମାନ ନିଜପାଇଁ ଉଦ୍ଦିଷ୍ଟ ନୁହେଁ ବରଂ ଭାରତବର୍ଷର ଆଧ୍ୟାତ୍ମିକ ଆଦର୍ଶ ପାଇଁ ଉଦ୍ଦିଷ୍ଟ ବୋଲି ସେ ଅନୁଭବ କଲେ । ସେ ଜଣେ ଭିକାରୀ ମାତ୍ର । କଲମ୍ବୋଠାରେ ସମ୍ବର୍ଦ୍ଧନା ସଭାରେ ସେ କହିଥିଲେ : ''ଜଣେ ଭିକ୍ଷୁ ସନ୍ୟାସୀଙ୍କୁ ଯେପରି ଭାବରେ ରାଜକୀୟ ସମ୍ମାନରେ ସମାଦୃତ ଓ ସମ୍ବର୍ଦ୍ଧିତ କରାଯାଇଛି, ତାହା ହିନ୍ଦୁମାନଙ୍କର ଆଧ୍ୟାତ୍ମିକତାର ପ୍ରକାଶନ ବ୍ୟତୀତ ଅନ୍ୟ କିଛି ନୁହେଁ ।'' ସେ ଜଣେ ସେନାଧ୍ୟକ୍ଷ ନୁହଁନ୍ତି କିମ୍ବା ଜଣେ ରାଜା କିମ୍ବା ଧନୀବ୍ୟକ୍ତି ନୁହଁନ୍ତି, ତଥାପି ଏହି ଅଳିକ ସଂସାରରେ ଜନସାଧାରଣ ତଥା ବୁଦ୍ଧିଜୀବୀ ଓ ସମ୍ମାନୀତ ବ୍ୟକ୍ତିଗଣ ଜଣେ ଗୃହହୀନ ସନ୍ୟାସୀଙ୍କୁ ସମ୍ମାନ ଦେବାପାଇଁ ଆଗେଇ ଆସିଛନ୍ତି । ସ୍ୱାମୀଜୀ ଉତ୍ସାହିତ ସ୍ୱରରେ କହିଉଠିଥିଲେ, ''ଆହାଃ, ... ଆଧ୍ୟାତ୍ମିକତାର ଏହି ହିଁ ସର୍ବୋଚ୍ଚ ପ୍ରକାଶନ ।'' ଏହା କୌଣସି ପ୍ରକାର ନିଜର ବ୍ୟକ୍ତିଗତ ସମ୍ମାନ ବୋଲି ସେ ଭାବି ନ ଥିଲେ ବରଂ ଏହା ଭାରତବର୍ଷର ସଂସ୍କୃତି ଓ ପରମ୍ପରା ବୋଲି ସ୍ପଷ୍ଟ କଣ୍ଠରେ ସ୍ୱୀକାର କରିଥିଲେ । କଲମ୍ବୋ ବ୍ୟତୀତ କାଣ୍ଡି, ଅନୁରାଧାପୁରମ୍, ଜାଫନା, ପମ୍ବନ, ରାମେଶ୍ୱରମ୍, ରାମନାଡ଼,

Digitized by srujanika@gmail.com

ପରମାକ୍କୁଡ଼ି, ମଦୁରାଇ, ତ୍ରିଚିନାପଲ୍ଲୀ, କୁମ୍ଭକୋନମ୍ ଭଳି ଅନେକ ସହରରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା ।

ଅନୁରାଧାପୁରର ପବିତ୍ର ବୋଧିବୃକ୍ଷ ତଳେ ସ୍ୱାମୀଜୀ ଉପବିଷ୍ଟ ହୋଇ ତିନିହଜାର ସମବେତ ଶ୍ରୋତାଙ୍କୁ "ଉପାସନା" ସମ୍ବନ୍ଧରେ ବକ୍ତୃତା ପ୍ରଦାନ କଲେ । ଅସାର ପୂଜାକର୍ମାଣି ପ୍ରତି ମନ ନ ଦେଇ ବେଦବାଣୀର ଶିକ୍ଷା ଉପରେ ଗୁରୁତ୍ୱପ୍ରଦାନ କରିବା ନିମନ୍ତେ ସେ ଉପସ୍ଥିତ ଜନତାଙ୍କୁ ପରାମର୍ଶ ଦେଇଥିଲେ । କିନ୍ତୁ ସେଠାରେ ଉପସ୍ଥିତ କେତେକ ଧନୀକ ବୌଦ୍ଧଭିକ୍ଷୁ ଏବଂ ବୁଦ୍ଧଧର୍ମୀ ଗୃହସ୍ଥ ଘଣ୍ଟ ଢୋଲ ବଜାଇ ସଭାରେ ଗୋଳମାଳ ସୃଷ୍ଟି କରିବା ପାଇଁ ଉଦ୍ୟତ ହେଲାରୁ ସ୍ୱାମୀଜୀ ସର୍ବଧର୍ମ ସମନ୍ୱୟ ଉପରେ ବକ୍ତୃତା ପ୍ରଦାନ କରି କହିଲେ, "ଯେଉଁମାନେ ଶିବ, ବିଷ୍ଣୁ, ବୁଦ୍ଧଙ୍କ ସମ ଦେବତାଙ୍କୁ ପୂଜା ଆରାଧନା କରନ୍ତି, ସେମାନେ ନିଜ ନିଜ ମଧ୍ୟରେ ସହନଶୀଳତା ରକ୍ଷା କରିବା ଉଚିତ ।" ଜାଫନାରେ ସ୍ୱାମୀଜୀଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ମାଇଲ ମାଇଲ ଧରି ଗୃହଗୁଡ଼ିକ ସଜ୍ଜିତ ହୋଇଥିଲା । ହିନ୍ଦୁ କଲେଜରେ ଏକ ସଭା ଅନୁଷ୍ଠିତ ହେଲା । ପ୍ରାୟ ପନ୍ଦର ହଜାର ଲୋକ ଉକ୍ତ ସଭାରେ ଯୋଗ ଦେଇଥିଲେ ।



Digitized by srujanika@gmail.com

## ।। ଏକତିରିଶ ।।

# ଭାରତମାତା କୋଳରେ ତା'ର ସୁପୁତ୍ର - ରାମେଶ୍ୱରମ୍‌ଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ସ୍ୱାମୀଜୀଙ୍କ ସମ୍ବର୍ଦ୍ଧନାଲାଗି ସବୁସ୍ଥାନ ଉତ୍ସବମୁଖର

ଜାନୁଆରି ୨୬, ୧୮୯୭ରେ ଏକ ଷ୍ଟିମର ଯୋଗେ ସ୍ୱାମୀଜୀ ଓ ତାଙ୍କର ଦଳ ପାମ୍ବନରେ ପହଞ୍ଚିଲେ । ରାଜା ରାମନାଡ଼ ସ୍ୱାମୀଜୀଙ୍କର ସ୍ୱାଗତ ଉପଲକ୍ଷେ ତାଙ୍କୁ ରାଜକୀୟ ସମ୍ବର୍ଦ୍ଧନା ଜଣାଇଥିଲେ ଏବଂ ଚାଳିଶ ଫୁଟ ଉଚ୍ଚତା ବିଶିଷ୍ଟ ଏକ ବିଶାଳ ସ୍ତମ୍ଭ ରାମେଶ୍ୱରମ୍‌ରେ ନିର୍ମାଣ କରିବାର ପ୍ରସ୍ତାବ ରଖିଥିଲେ । ସେ ବି ସ୍ୱାମୀଜୀଙ୍କର ଗୃହାଭିମୁଖେ ପ୍ରତ୍ୟାବର୍ତ୍ତନ ଅବସରରେ ମାନ୍ଦ୍ରାଜର ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାଙ୍କ ସେବା ନିମନ୍ତେ ମୁକ୍ତ ହସ୍ତରେ ଦାନ କଲେ ।

ରାମନାଡ଼ର ରାଜା ଆୟୋଜିତ ସମ୍ବର୍ଦ୍ଧନା ସଭାରେ ନିଜର ସ୍ୱାଗତ ଭାଷଣ ପ୍ରଦାନ କରିବାଉତ୍ତାରୁ ସ୍ୱାମୀଜୀ ଶହଶହ ଜନତାଙ୍କର ଶ୍ରଦ୍ଧା ଓ ସମ୍ମାନ ଦେଖି ବିମୋହିତ ହେଲେ ଏବଂ ଭାରତର ଭବିଷ୍ୟତଯେ ଉଜ୍ଜ୍ୱଳମୟ ତାହା ବର୍ଣ୍ଣନା କରି କହି ଉଠିଲେ - ''ଦୀର୍ଘ ରାତ୍ରୀର ଅନ୍ତ ଆସନ୍ନ, ଯନ୍ତ୍ରଣାଦାୟୀକ ଦୁଃଖର ଅବସାନ ଘଟୁଛି, ସୁପ୍ତ ସଦୃଶ ଶବ କ୍ରମଶଃ ପ୍ରାଣବନ୍ତ ହୋଇ ଉଠୁଛି ଏବଂ ଏକ ସ୍ୱର ଆମ ପାଖକୁ ଛୁଟି ଆସୁଛି - ଯେଉଁ ଅତୀତର ଅନ୍ଧକାରତମ ପ୍ରଦେଶକୁ ଇତିହାସ, ଏପରିକି ପରମ୍ପରା ଓ ପ୍ରଥା ଦେଖିବା ଲାଗି ଅକ୍ଷମ, ସେହିଠାରୁ ସ୍ୱର ଭାସି ଆସୁଛି ସତେକି ଅନନ୍ତ ହିମାଳୟ ରୂପକ ଜ୍ଞାନ, ପ୍ରେମ ଓ କର୍ମର ଶୃଙ୍ଗ ପରେ ଶୃଙ୍ଗ ଅତିକ୍ରମ କରି ଆମ ଜନ୍ମଦାତ୍ରୀ ଭାରତବର୍ଷକୁ ଡୁବାଇ ଦେଉଛି ! ସେହି ସ୍ୱର ଆମ ପାଇଁ ଅତୀବ କୋମଳ କିନ୍ତୁ ଦୃଢ଼ ଏବଂ ଏହାର ଉଚ୍ଚାରଣରେ ନାହିଁ କୌଣସି ତ୍ରୁଟି । ଦିନ ଯେତେ ଅତିକ୍ରାନ୍ତ ହେଉଛି ସେହି ସ୍ୱର ସେତେ ଶକ୍ତିଶାଳୀ ହେବାରେ ଲାଗିଛି । ଦେଖ, ଦେଖ ହେ ଭାରତବାସୀ-ସୁପ୍ତ କିପରି ଜାଗ୍ରତ ହେଉଛି । ହିମାଳୟରୁ ପ୍ରବାହିତ ଆଞ୍ଜୁଳାଏ ପବନ ଭଳି, ମୃତପ୍ରାୟ ଅସ୍ଥି ଓ ମାଂସପେଶୀରେ ଏହା ସଞ୍ଚରିତ କରୁଛି ପ୍ରାଣର ସ୍ପନ୍ଦନ - ଆଳସ୍ୟ ଅନ୍ତର୍ହିତ ହେଉଛି । ଚକ୍ଷୁହୀନ ଓ ବିପଥଗାମୀ କେବଳ ଦେଖିପାରିବ ନାହିଁ ଯେ ଆମର ମାତୃଭୂମି ଭାରତବର୍ଷ ଦୀର୍ଘ ନିଦ୍ରାରୁ କ୍ରମଶଃ ଜାଗ୍ରତ ହେଉଛି । ଆମ ମାତୃଭୂମିକୁ ଆଉ କେହି ବାଧା ଦେଇ ପାରିବେ ନାହିଁ, ସେ ଆଉ ଶୋଇପାରିବ ନାହିଁ, କୌଣସି ବାହ୍ୟଶକ୍ତି ମଧ୍ୟ ତା'ର ଶକ୍ତିକୁ ପ୍ରତିହତ କରିପାରିବ ନାହିଁ । କାରଣ ଏହି ଅସୀମ ଶକ୍ତି ବର୍ତ୍ତମାନ ନିଜ ଗୋଡ଼ରେ ଠିଆ ହେଉଛି ।

Digitized by srujanika@gmail.com

ଜନତାଙ୍କର ଉତ୍ସାହ ଓ ଉଦ୍ଦୀପନା, ସ୍ୱାମୀଜୀଙ୍କର ଧର୍ମ ଜଗତରେ ସଫଳତା ଓ ବିଜୟ ପାଇଁ, ଶୀର୍ଷ ସ୍ଥାନରେ ଉପନୀତ ହେଲା ମାନ୍ଦ୍ରାଜ ସହରରେ । ସ୍ୱାଗତ ପାଇଁ ମାନ୍ଦ୍ରାଜ ସହର ବାସିନ୍ଦା ଅଭୂତପୂର୍ବ ଆୟୋଜନ କରିଥିଲେ । ଏହି ମାନ୍ଦ୍ରାଜ ସହରବାସୀ ପ୍ରଥମେ ହିଁ ସ୍ୱାମୀ ବିବେକାନନ୍ଦଙ୍କର ମହାନତାକୁ ଚିହ୍ନିପାରି ଚିକାଗୋ ଯାତ୍ରା ନିମନ୍ତେ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦେଇଥିଲେ । ସେ ପ୍ରଥମେ ମାନ୍ଦ୍ରାଜକୁ ଆସି ଥିଲାବେଳେ, ଜଣେ ଅପରିଚିତ ସନ୍ନ୍ୟାସୀ ମାତ୍ର ଥିଲେ । ସେ ଏଠାରେ ଏକ ଅଜଣା 'ସେଣ୍ଟ ଥୋମ୍ ବଙ୍ଗଳାରେ ଦୁଇମାସ ଅବସ୍ଥାନ କରଥିଲେ କିନ୍ତୁ କେତେଜଣ ଶିକ୍ଷିତ ଯୁବକ ତାଙ୍କ ସହ ଆଲୋଚନା କଲାପରେ ଜାଣି ପାରିଥିଲେ ଯେ ଏହି ଯୁବ ସନ୍ନ୍ୟାସୀଙ୍କ ମଧ୍ୟରେ ରହିଛି ଜ୍ୱଳନ୍ତ ଅଗ୍ନିସମ ଶକ୍ତି ଯାହା ସେମାନଙ୍କୁ ଜ୍ଞାନାଲୋକିତ କରିବା ସଙ୍ଗେସଙ୍ଗେ ଭାରତବର୍ଷର ଧର୍ମ ଜଗତରେ ନେତୃତ୍ୱ ନେଇପାରିବେ । ସେତେବେଳେ ଏହି କେତେଜଣ ଶିକ୍ଷିତ ଯୁବକଙ୍କୁ ପଥଭ୍ରଷ୍ଟ ତଥା ଦିବାସ୍ୱପ୍ନ ଦର୍ଶକ ଭାବେ ବିଦ୍ରୁପ କରାଯାଉଥିଲା, କିନ୍ତୁ ଆଜି ଚାରିବର୍ଷ ପରେ ତାଙ୍କର ନେତା ବିଶ୍ୱ ବିଜୟୀ ହୋଇ ପ୍ରତ୍ୟାବର୍ତ୍ତନ କରୁଥିବାରୁ ସେମାନଙ୍କର ପାଦ ଭୂମିରେ ଲାଗୁ ନ ଥିଲା ।

ମାନ୍ଦ୍ରାଜର ରାସ୍ତା, ଗଳିକନ୍ଦି ପତ୍ରପୁଷ୍ପରେ ହୋଇଥିଲା ସୁସଜ୍ଜିତ । ସତରଟି ବିଜୟୀ ତୋରଣ ନିର୍ମିତ ହୋଇଥିଲା । ସମସ୍ତଙ୍କ ମୁଖରେ ସ୍ୱାମୀଜୀଙ୍କର ନାମ ଗୁଞ୍ଜରିତ । ହଜାର ହଜାର ଜନତା ଦ୍ୱାରା ରେଲଷ୍ଟେସନ ପରିପୂର୍ଣ୍ଣ ହୋଇଉଠିଲା । ସ୍ୱାମୀଜୀ ଟ୍ରେନ୍‌ରୁ ଅବତରଣ କରିବାଉତ୍ତାରୁ, ଗଡ଼ ଜିତି ଆସିଥିବା ବିଜୟୀ ରାଜକୁମାର ସଦୃଶ, ହଜାର ହଜାର ଜନତା କରତାଳି ଦେଇ ତାଙ୍କୁ ସ୍ୱାଗତ କଲେ, ପାଛୋଟି ନେଲେ ଏବଂ ପୁଷ୍ପ ବୃଷ୍ଟି କଲେ । ଏକ ବିଶାଳ ଶୋଭାଯାତ୍ରା ସ୍ୱାମୀଜୀଙ୍କୁ ନେଇଯିବା ସକାଶେ ଅପେକ୍ଷା କରିଥିଲା । ରାସ୍ତା ପାର୍ଶ୍ୱରେ ବଡ଼ ବଡ଼ ଅକ୍ଷରରେ ସ୍ୱାମୀଜୀଙ୍କୁ ସ୍ୱାଗତ କରି ଲେଖାଯାଇଥିଲା ''ସମ୍ମାନସ୍ପଦ ବିବେକାନନ୍ଦ ଜିନ୍ଦାବାଦ'' - ''ଈଶ୍ୱରଙ୍କ ଦାସ ସ୍ୱାଗତମ'', ଅତୀତର ସମସ୍ତ ଋଷିଗଣଙ୍କର ଦାସଙ୍କୁ ସ୍ୱାଗତ'', ''ପ୍ରବୁଦ୍ଧ ଭାରତଙ୍କୁ ଶୁଭେଚ୍ଛା'', ''ସ୍ୱାମୀ ବିବେକାନନ୍ଦ ସ୍ୱାଗତମ୍'', ଶାନ୍ତିର ଦୂତ ବିବେକାନନ୍ଦ'', ଶ୍ରୀରାମକୃଷ୍ଣ ପରମହଂସଙ୍କର ଉପଯୁକ୍ତ ପୁତ୍ର ବିବେକାନନ୍ଦ ଏବଂ ଏକମ୍ ସଦ୍‌ବିପ୍ରା ବହୁଧା ବଦନ୍ତି ଇତ୍ୟାଦି । ଶୋଭାଯାତ୍ରାରେ ତାଙ୍କୁ ''କେସଲ୍ କରନାନ୍‌କୁ (ଶ୍ରୀ ବିଲ୍ଲିଗିରି ଆୟଙ୍ଗରଙ୍କର ରାଜପ୍ରାସାଦ ଭଳି ଗୃହ) ନିଆଗଲା, ଯେଉଁଠାରେ ତାଙ୍କ ପାଇଁ ରହିବାର ସମସ୍ତ ସୁବିଧା ଖଞ୍ଜି ଦିଆଯାଇଥିଲା ।

ସମ୍ମାନନୀୟ ନ୍ୟାୟମୂର୍ତ୍ତି ସୁବ୍ରମଣ୍ୟା ଆୟାରଙ୍କ ଅଧ୍ୟକ୍ଷତାରେ ବିବେକାନନ୍ଦ ଅଭ୍ୟର୍ଥନା କମିଟି ଗଠିତ ହୋଇଥିଲା, ଯେଉଁଥିରେ ସାର୍ ଭାସ୍ୟମ୍ ଆୟଙ୍ଗାର, ଭି. କ୍ରିଷ୍ଣସ୍ୱାମୀ ଆୟାର, ଭି.ସି. ଶେଷଚାରିଆର, ପ୍ରଫେସର କେ. ସୁନ୍ଦରାରମଣ ଆୟାର, ଡକ୍ଟର ନାନ୍‌ଜୁନ୍ଦ ରାଓ, ପି.ଆର୍. ସୁନ୍ଦରାଆୟାରଙ୍କ ଭଳି ବହୁ ମାନ୍ୟଗଣ୍ୟ ବ୍ୟକ୍ତି ସଦସ୍ୟ ରହିଥିଲେ । ସ୍ୱାମୀଜୀଙ୍କ ନିମନ୍ତେ ଉଦ୍ଦିଷ୍ଟ ଘୋଡ଼ାଗାଡ଼ିର ଅଶ୍ୱଦ୍ୱୟକୁ କଲେଜର ଛାତ୍ରଗଣ ଖୋଲିଦେଇ ନିଜେ ରାସ୍ତାରେ ଟାଣିଟାଣି ନେଇଯାଉଥିବାର ଦୃଶ୍ୟ ସମସ୍ତ ଦର୍ଶକଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା । ମାଦ୍ରାଜରେ ଉପନୀତ

Digitized by srujanika@gmail.com

ହେବାର ତୃତୀୟ ଦିବସରେ, ଭିକ୍ଟୋରିଆ ହଲରେ ଏକ ସମ୍ବର୍ଦ୍ଧନା ସଭା ଆୟୋଜିତ ହୋଇଥିଲା । ଜନତାଙ୍କର ଏତେ ପ୍ରବଳ ଭିଡ଼ ହେଲା ଯେ ବାଧ୍ୟ ହୋଇ ସ୍ୱାମୀଜୀ ହଲ୍‌ରୁ ବାହାରି ଆସି ଏକ ଘୋଡ଼ାଗାଡ଼ି ଉପରେ ଠିଆ ହୋଇ ମୁକ୍ତ ଆକାଶ ତଳେ ସମବେତ ସହସ୍ର ଜନତାଙ୍କୁ ଉଦ୍‌ବୋଧନ ଦେଲେ । ସତେକି ସ୍ୱୟଂ ଶ୍ରୀକୃଷ୍ଣ ରଥ ଉପରେ ଦଣ୍ଡାୟମାନ ହୋଇ ଗୀତାର ବାଣୀ ସହସ୍ର ଅର୍ଜୁନଙ୍କୁ ଶୁଣାଉଛନ୍ତି ! ଜନତାଙ୍କର ପ୍ରବଳ ଭିଡ଼ ଅସମ୍ଭାଳ ହେବାରୁ ସ୍ୱାମୀଜୀ ଏକ ସଂକ୍ଷିପ୍ତ ବକ୍ତବ୍ୟ ପ୍ରଦାନ କରି କହିଥିଲେ :

''ବନ୍ଧୁଗଣ, ଆପଣମାନଙ୍କର ଉତ୍ସାହ ପରିଲକ୍ଷିତ କରି ମୁଁ ଅତ୍ୟନ୍ତ ଆନନ୍ଦିତ । ଏହା ସତରେ ଚମତ୍କାର । ଆପଣମାନେ ଭାବନ୍ତୁ ନାହିଁଯେ ଆପଣଙ୍କ ଉପରେ ମୁଁ ଖୁସି ନୁହେଁ ବରଂ ଅନ୍ୟପକ୍ଷରେ ଆପଣମାନଙ୍କର ଗଭୀର ଉତ୍ସାହ ଓ ଉଦ୍ଦୀପନା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ । ବର୍ତ୍ତମାନ ଏତାଦୃଶ ଉତ୍ସାହ ଓ ଉଦ୍ଦୀପନା ଆମର ଆବଶ୍ୟକ - ବିଶାଳ ଉତ୍ସାହ । ଏହାକୁ ସ୍ଥାୟୀ କରନ୍ତୁ ଏବଂ ଏହା ଧରିରଖନ୍ତୁ । ଏହି ଅଗ୍ନି ଆପଣଙ୍କ ଭିତରେ ନିର୍ବାପିତ ନ ହେଉ । ଭାରତବର୍ଷରେ ଆମକୁ ମହାନ୍ କାର୍ଯ୍ୟ କରିବାକୁ ହେବ । ସେଥିପାଇଁ ମୁଁ ଆପଣଙ୍କର ସାହାଯ୍ୟ ଲୋଡୁଛି, ଏଭଳି ଉତ୍ସାହ ଆବଶ୍ୟକ । ଏହି ସଭାକୁ ବହୁ ସମୟ ଧରି ଚାଲୁ ରଖି ହେବ ନାହିଁ । ଆପଣମାନଙ୍କର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ମୋର ଅଜସ୍ର ଧନ୍ୟବାଦ୍ ।''

ସ୍ୱାମୀଜୀ ମାଡ୍ରାସରେ ନ'ଦିନ ରହିଥିଲେ । ଚାରୋଟି ବକ୍ତୃତା ସର୍ବସାଧାରଣଙ୍କ ପାଇଁ ପ୍ରଦାନ କରିଥିଲେ । ସେଗୁଡ଼ିକ ହେଲା : ମୋ ଅଭିଯାନର ଯୋଜନା, ଭାରତର ଋଷି, ଭାରତୀୟ ଜୀବନରେ ବେଦାନ୍ତର ପ୍ରୟୋଗ ଏବଂ ଭାରତର ଭବିଷ୍ୟତ । ଏହିସବୁ ବକ୍ତୃତାରେ ଭାରତୀୟଙ୍କର ଉଭୟ ମହାନତା ଓ ଦୁର୍ବଳତାକୁ ସ୍ମରଣୀୟ କରାଇଦେବା ସହିତ ପ୍ରତ୍ୟେକ ଭାରତୀୟ ନିଜର ଅତୀତ ନିମନ୍ତେ ଗର୍ବ ଅନୁଭବ କରିବା ଓ ଭବିଷ୍ୟତ ପାଇଁ ଆଶାବାଦୀ ହେବା ଉଚିତ ବୋଲି କହିଥିଲେ । ମାଡ୍ରାଜର ନଅ ଦିନ ରହଣି ଭିତରେ ତାଙ୍କୁ ଟିକିଏ ନିଶ୍ୱାସ ମାରିବା ପାଇଁ ସମୟ ମିଳି ନ ଥିଲା । ଏହି ସମୟରେ ଜଣେ ଶିଷ୍ୟ ସ୍ୱାମୀଜୀଙ୍କୁ ପଚାରିଲେ, ସ୍ୱାମୀଜୀ ଆପଣ ଏଭଳି କାର୍ଯ୍ୟରେ ବ୍ୟସ୍ତ, ତଥାପି, ଆପଣ କ୍ଳାନ୍ତ ହୋଇ ପଡୁନାହାନ୍ତି, କେଉଁଠୁ ଓ କିପରି ଆପଣ ଶକ୍ତି ପାଉଛନ୍ତି ?'' ସ୍ୱାମୀଜୀ କହିଥିଲେ, ''ଆଧ୍ୟାତ୍ମିକ କାର୍ଯ୍ୟ କାହାରିକୁ ଭାରତବର୍ଷରେ କ୍ଳାନ୍ତ କରିଦିଏ ନାହିଁ ।'' କିନ୍ତୁ ଯେଉଁ ବସ୍ତୁ ବାସ୍ତବ ଜୀବନରେ ସୁଫଳ ପ୍ରଦାନ କରେ ନାହିଁ, ସେହି ବସ୍ତୁ ପ୍ରତି ତାଙ୍କର ଆଦୌ ଧୈର୍ଯ୍ୟ ରହେ ନାହିଁ । ଜଣେ ବ୍ରାହ୍ମଣ ପଣ୍ଡିତ ତାଙ୍କୁ ଏଠାରେ ପ୍ରଶ୍ନ କରିଥିଲେ, ''ସ୍ୱାମୀଜୀ, ଆପଣ ଦ୍ୱୈତ ନା ଅଦ୍ୱୈତବାଦୀ, ସ୍ପଷ୍ଟ ଭାବରେ ମୋତେ କୁହନ୍ତୁ ?'' ସ୍ୱାମୀଜୀ କହିଥିଲେ, ''ଯେତେଦିନ ପର୍ଯ୍ୟନ୍ତ ମୁଁ ଏହି ଶରୀର ଧାରଣ କରିଥିବି, ସେପର୍ଯ୍ୟନ୍ତ ମୁଁ ଜଣେ ଦ୍ୱୈତବାଦୀ କିନ୍ତୁ ଭିନ୍ନ ଭାବରେ ନୁହେଁ । ମୋର ଏହି ଜନ୍ମ ଅସାର, ଅଯଥା ଓ ଦୁଷ୍ଟ କଳହର ସମାପ୍ତି ଘଟାଇବାରେ ସାହାଯ୍ୟ କରିବା ଲାଗି ଉଦ୍ଦିଷ୍ଟ । ଏହା ମନୁଷ୍ୟ ମନକୁ ବିକର୍ଷଣ କରେ, ମଣିଷ ଜୀବନକୁ ଦୁଶ୍ଚିନ୍ତାରେ ପତିତ କରାଏ ଏବଂ ଏପରିକି ମନୁଷ୍ୟକୁ ସନ୍ଦେହୀ ଓ ନାସ୍ତିକ କରିଦିଏ ।

Digitized by srujanika@gmail.com

- ୧ -

*ଆମ ସମାଜରେ ବହୁ ମନ୍ଦ ରହିଛି, ପ୍ରତ୍ୟେକ ସମାଜରେ ବି ମନ୍ଦ ରହିଛି । ଏଠାରେ କେତେବେଳେ କେମିତି ବିଧବାର ଅଶ୍ରୁରେ ଧରିତ୍ରୀ ସିକ୍ତ, ସେଠାରେ ଅର୍ଥାତ୍ ପାଶ୍ଚାତ୍ୟ ଦେଶରେ ଅବିବାହିତଙ୍କର ଦୀର୍ଘନିଃଶ୍ୱାସରେ ବାୟୁମଣ୍ଡଳ ଗୁଞ୍ଜରିତ । ଏଠାରେ ଜୀବନରେ ଦାରିଦ୍ର୍ୟ ଏକ ବଡ଼ ଅଭିଶାପ, ସେଠାରେ ବିଳାସବ୍ୟସନ ଜୀବନକୁ ଦୁର୍ବିସହ ଓ ବ୍ୟସ୍ତ କରିଦେଇଛି । ଏଠାରେ ଖାଦ୍ୟ ଅଭାବରୁ ମଣିଷ ଆତ୍ମହତ୍ୟା କରେ, ସେଠାରେ ଖାଦ୍ୟର ପ୍ରାଚୁର୍ଯ୍ୟ ହେତୁ ମଣିଷ ଆତ୍ମହତ୍ୟା କରେ ।*

ଏହି ସମୟରେ ସ୍ୱାମୀଜୀଙ୍କର ଏକ ପତ୍ର ହସ୍ତଗତ ହେଲା । ଶୁଭ ସମ୍ବାଦ ଆଣିଥିଲା: ଆମେରିକାରେ ସ୍ୱାମୀ ସାରଦାନନ୍ଦଙ୍କ ନେତୃତ୍ୱରେ ବେଦାନ୍ତ କାର୍ଯ୍ୟ ପ୍ରଗତି ପଥରେ ଅଗ୍ରସର ହେଉଥିଲା । ଆମେରିକାର ବ୍ରୁକ୍‌ଲିନ୍ ଏଥିକାଲ ଆସୋସିଏସନ୍‌ର ପ୍ରେସିଡେଣ୍ଟ ଲିୱିସ. ଜି. ଜେନ୍‌ସ, ହାରଭାର୍ଡ ଡିଭିନିଟି ସ୍କୁଲର ଅଧକ୍ଷ ସି.ସି. ଏଭେରେଟ୍, ହାରଭାର୍ଡ ୟୁନିଭରସିଟିର ଦର୍ଶନ ଅଧାପକ ଉଇଲିୟମ ଜେମ୍‌ସ ଓ ଜୋସିହା ରୋୟସ୍, ବୋଷ୍ଟନର ଶ୍ରୀମତୀ ସାରା ସି. ବୁଲ୍ ଏବଂ ଅନ୍ୟ ଶୁଭେଚ୍ଛୁଗଣ ଚିଠିରେ ଦସ୍ତଖତ କରି ସ୍ୱାମୀଜୀଙ୍କ ନିକଟକୁ ଲେଖିଥିଲେ - ଆମେ ବିଶ୍ୱାସକରୁ ଯେ ଆପଣ ଓ ଆପଣଙ୍କର ଗୁରୁଭାଇ ସ୍ୱାମୀ ସାରଦାନନ୍ଦ ଯେଉଁ ବ୍ୟାଖ୍ୟାନ ପ୍ରତିପାଦନ କରିଛନ୍ତି, ତାହା ଏକ ମହାନ୍ ନୈତିକ ମୂଲ୍ୟବୋଧର ପରିଚାୟକ । ଏହା ଦୂରାବସ୍ଥାନ ଜନତାଙ୍କ ଭିତରେ ବନ୍ଧୁତ୍ୱ ଓ ଭାତୃତ୍ୱର ସେତୁକୁ ବଳିଷ୍ଠ କରିବ ଏବଂ ବିଶ୍ୱର ମହାନ୍ ଧର୍ମ ଦ୍ୱାରା ମାନବ ସଂପର୍କ ଓ ସ୍ୱାର୍ଥର ସଂହତିକୁ ଉପଲବ୍ଧି କରିବା ପାଇଁ ଆମକୁ ସହାୟତା କରିବ । ଆମେ ଆନ୍ତରିକତା ସହ ଆଶା କରୁଛୁ ଯେ ଭାରତରେ ଆପଣଙ୍କର ଏହି ମହତ୍ ଲକ୍ଷ୍ୟର ପ୍ରୋତ୍ସାହନ ଅଧିକରୁ ଅଧିକ ସଫଳତା ହାସଲ କରୁ ଏବଂ ଆମର ଦୂରାବସ୍ଥାନ ଆର୍ଯ୍ୟ ପରିବାରର ଭାଇମାନଙ୍କର ସ୍ନେହ ଓ ଶୁଭେଚ୍ଛା ଲାଭ କରି ଆପଣ ଆମମାନଙ୍କ ନିକଟକୁ ପୁନଶ୍ଚ ପ୍ରତ୍ୟାବର୍ତ୍ତନ କରନ୍ତୁ ।' ଡେଟ୍ରୋଏଟ୍‌ର ବୟାଳିଶ ଜଣ ବନ୍ଧୁ ଗୋଟିଏ ଚିଠିରେ ଦସ୍ତଖତ କରି ସ୍ୱାମୀଜୀଙ୍କ ପାଖକୁ ଲେଖିଥିଲେ, ''ଆମେ ପାଶ୍ଚାତ୍ୟ ଆର୍ଯ୍ୟ ଆମର ପ୍ରାଚ୍ୟ ଆର୍ଯ୍ୟ ଭାଇଙ୍କଠାରୁ ଏତେଦିନ ଧରି ଅଲଗା ରହିବା ଫଳରେ ଆମେ ନିଜର ଉତ୍ସ ବିସ୍ମରଣ ହୋଇଥିଲୁ । ଆପଣଙ୍କର ମନୋହର ଉପସ୍ଥିତି ଏବଂ ସୁନ୍ଦର ବକ୍ତୃତାର ଭାଷା ଆମ ଭିତରେ ନିହିତ ଜ୍ଞାନକୁ ପ୍ରଜ୍ୱଳିତ କଲା ଯାହାଫଳରେ ଆମେ ବର୍ତ୍ତମାନ ହୃଦୟଙ୍ଗମ କରିପାରିଲୁ ଯେ ଆମେ ଆମେରିକାବାସୀ ଏବଂ ଆପଣ ଭାରତବାସୀ ଏକ ଓ ଅଭିନ୍ନ ।

ଭିକ୍ଟୋରିଆ ହଲ୍‌ରେ ''ମୋ ଅଭିଯାନର ଯୋଜନା'' ବିଷୟବସ୍ତୁ ଉପରେ ପ୍ରଥମ ବକ୍ତୃତା ମାଧ୍ୟମରେ ନିଜର ମନ କଥା ହଜାର ହଜାର ଭାରତୀୟଙ୍କ ସମ୍ମୁଖରେ ଖୋଲିଦେଲେ ଏବଂ ବାହ୍ୟଶକ୍ତି ଯେଉଁଭଳି ଭାବରେ ଭାରତୀୟତାକୁ ପ୍ରତିମୁହୂର୍ତ୍ତରେ ଜାଳି ପୋଡ଼ି ଧ୍ୱଂସ କରିବାରେ ଲାଗିଛନ୍ତି, ସେହି ଶକ୍ତିର କାର୍ଯ୍ୟକୁ ପ୍ରତିହତ କରିବାକୁହେଲେ, ଭାରତୀୟଙ୍କୁ ନିଜର ଦୋଷ

Digitized by srujanika@gmail.com

ଦୁର୍ବଳତା ତ୍ୟାଗ କରି ସେବା ଓ ତ୍ୟାଗ ମନ୍ତ୍ରରେ ଦୀକ୍ଷିତ ହେବାକୁ ପଡ଼ିବ ବୋଲି ସେ ତାଙ୍କ ଉଦ୍‌ବୋଧନରେ ସୂଚନା ଦେଇଥିଲେ । ଥିଓସୋଫିକାଲ ସୋସାଇଟିର ପ୍ରଚାର ଥିଲା ଯେ ସ୍ୱାମୀ ବିବେକାନନ୍ଦଙ୍କର ଆମେରିକାରେ ସଫଳତାର ପଥ ସେମାନେ ପରିଷ୍କାର କରିଥିଲେ । ସ୍ୱାମୀଜୀ ଏତାଦୃଶ ଅପପ୍ରଚାରକୁ ଖଣ୍ଡନ କରି ବଜ୍ରକଣ୍ଠରେ ଘୋଷଣା କରିଥିଲେ ଯେ ସେମାନେ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କୁ ଅପମାନିତ କରୁଥିଲେ ଏବଂ ତାଙ୍କ ବିରୁଦ୍ଧରେ କୁତ୍ସାରଟନା କରୁଥିଲେ - ''ପ୍ରଚାର ଚାଲିଛି ଯେ ଥିଓସୋଫିଷ୍ଟ (ବ୍ରହ୍ମ ବିଦ୍ୟାବିଦ୍)ମାନେ ଆମେରକା ଓ ଇଂଲଣ୍ଡରେ ମୋର ସାମାନ୍ୟ ସଫଳତାରେ ମୋତେ ସାହାଯ୍ୟ କରିଥିଲେ, ଏହି ପରିପ୍ରେକ୍ଷୀରେ ମୁଁ ଆପଣମାନଙ୍କୁ କହିବାକୁ ଚାହେଁ ଯେ ସେମାନଙ୍କର ପ୍ରତ୍ୟେକ କଥା ଭିତ୍ତିହୀନ ଓ ଅସତ୍ୟ ।'' ବ୍ରାହ୍ମସମାଜ ଓ ଖ୍ରୀଷ୍ଟିଆନ୍ ମିସନାରୀମାନେ କିଭଳି ତାଙ୍କୁ ଭର୍ତ୍ସନା ଓ କାର୍ଯ୍ୟରେ ବାଧା ସୃଷ୍ଟି କରିଥିଲେ ସେସବୁର ବିବରଣୀ ନିଜର ଭାଇ ଓ ଭଉଣୀଙ୍କ ସମ୍ମୁଖରେ ଉପସ୍ଥାପନ କଲେ ।

ସମାଜ ସଂସ୍କାରକଙ୍କର ଭୂମିକା ଉପରେ ମନ୍ତବ୍ୟ ପ୍ରଦାନ କରି ସ୍ୱାମୀଜୀ କହିଥିଲେ - ସମାଜ ସଂସ୍କାରକମାନେ ସମାଜର କେତୋଟି କ୍ଷେତ୍ରରେ ସଂସ୍କାର ଆଣିବାକୁ ଚେଷ୍ଟା କରନ୍ତି । ସେମାନଙ୍କର ଏତାଦୃଶ ପ୍ରଣାଳୀ ଧ୍ୱଂସାତ୍ମକ, କିନ୍ତୁ ମୋର ଗଠନମୂଳକ । ମୁଁ ସଂସ୍କାରରେ ବିଶ୍ୱାସ କରେନାହିଁ । ମୁଁ ବୃଦ୍ଧି ବା ବିକାଶରେ ବିଶ୍ୱାସ କରେ । ଈଶ୍ୱରଙ୍କ ସ୍ଥାନରେ ନିଜକୁ ରଖି ''ଏହି ମାର୍ଗରେ ଜଣେ ଚାଲିବା ଉଚିତ ଏବଂ ଅନ୍ୟ ମାର୍ଗରେ ନୁହେଁ'' ବୋଲି ସମାଜକୁ ନିର୍ଦ୍ଦେଶ ଦେବାପାଇଁ ମୁଁ ସାହସ କରେନାହିଁ । ଶ୍ରୀରାମଙ୍କ ସେତୁବନ୍ଧରେ ଗୁଣ୍ଡୁଚିମୂଷା ସଦୃଶ ମୁଁ କାର୍ଯ୍ୟ କରିବାକୁ ଚାହେଁ, କାହିଁକିନା ବିଶାଳ ସେତୁବନ୍ଧରେ ନିଜର ଧୂଳିକଣା ଝାଡ଼ିଦେଇ ଗୁଣ୍ଡୁଚିମୂଷାଟି ଆତ୍ମତୃପ୍ତି ଲାଭ କରିଥାଏ । ତାହାହିଁ ମୋର ସ୍ଥିତି । ଆବହମାନକାଳରୁ ଏହି ଅଦ୍ଭୁତ ଜାତୀୟ କଳ କାର୍ଯ୍ୟକରି ଆସୁଛି । ଜାତୀୟ ଜୀବନର ଏହି ଅଦ୍ଭୁତ ନଦୀ ଆମର ବହୁ ପୂର୍ବରୁ ପ୍ରବାହିତ । କିଏ ଜାଣେ ଏବଂ କିଏ କହିବାକୁ ସାହସ କରିବ ଏହା ଭଲ କି ନୁହେଁ ଏବଂ କେଉଁ ଭଳି ଭାବେ ଏହା ଗତି କରିବ ? ସହସ୍ର ପରିସ୍ଥିତି ଦ୍ୱାରା ଏହା ନିରନ୍ତର ପ୍ରଭାବିତ, କେତେବେଳେ ଏହାର ଗତିକୁ ମନ୍ଥର କରିଥାଏ, କେତେବେଳେ ବି ଏହାର ଗତିକୁ କ୍ଷୀପ୍ର କରିଥାଏ । ଏହାର ଗତିକୁ କିଏ ବା ନିର୍ଦ୍ଦେଶ ଦେଇପାରିବ ? ଆମକୁ କେବଳ କର୍ମ କରିବାକୁ ହେବ, ଫଳର ଆଶା ନୁହେଁ, ଏହା ହିଁ ତ ଆମର ଗୀତା କୁହେ । ଜାତୀୟ ଜୀବନକୁ ଆବଶ୍ୟକ ଅନୁଯାୟୀ ଇନ୍ଧନ ଯୋଗାଅ, କିନ୍ତୁ ଏହା ନିଜେ ବିକଶିତ ହେବ । ଅନ୍ୟ କାହାର ନିର୍ଦ୍ଦେଶରେ ଏହାର ବୃଦ୍ଧି ଘଟିପାରିବ ନାହିଁ । ଆମ ସମାଜରେ ବହୁ ମନ୍ଦ ରହିଛି, ପ୍ରତ୍ୟେକ ସମାଜରେ ବି ମନ୍ଦ ରିହଛି । ଏଠାରେ କେତେବେଳେ କେମିତି ବିଧବାର ଅଶ୍ରୁରେ ଧରିତ୍ରୀ ସିକ୍ତ, ସେଠାରେ ଅର୍ଥାତ୍ ପାଶ୍ଚାତ୍ୟ ଦେଶରେ ଅବିବାହିତଙ୍କର ଦୀର୍ଘନିଃଶ୍ୱାସରେ ବାୟୁମଣ୍ଡଳ ଗୁଞ୍ଜରିତ । ଏଠାରେ ଜୀବନରେ ଦାରିଦ୍ର୍ୟ ଏକ ବଡ଼ ଅଭିଶାପ, ସେଠରେ ବିଳାସବ୍ୟସନ ଜୀବନକୁ ଦୁର୍ବିସହ ଓ ବ୍ୟସ୍ତ କରିଦିଏ । ଏଠାରେ ଖାଦ୍ୟ ଅଭାବରୁ ମଣିଷ ଆତ୍ମହତ୍ୟା କରେ, ସେଠାରେ ଖାଦ୍ୟର ପ୍ରାଚୁର୍ଯ୍ୟ ହେତୁ ମଣିଷ ଆତ୍ମହତ୍ୟା କରେ ।

ମନ୍ଦ ଚାରିଆଡ଼େ କାୟା ବିସ୍ତାର କରିଛି । ଏହା ଏକ ପୁରୁଣା ବାତରୋଗ ଭଳି । ପାଦରୁ ଏହାକୁ ଘଉଡ଼ାଇ ଦିଅ, ସେ ପୁଣି ମୁଣ୍ଡରେ ଦେଖାଦେବ, ସେଠାରୁ ଏହାକୁ ଘଉଡ଼ାଇ ଦିଅ, ଆଉ

Digitized by srujanika@gmail.com

କେଉଁଠି ଦେଖାଦେବ । ଏହା ପଛରେ ଖାଲି ଧାଇଁବା ସାର । ହେ ମୋର ସନ୍ତାନଗଣ, ମନ୍ଦର ପ୍ରତିକାର ପାଇଁ ପ୍ରୟାସ ପ୍ରକୃତ ମାର୍ଗ ନୁହେଁ । ଆମର ଦର୍ଶନ ଶିଖାଇଛି ଯେ ଭଲ ଓ ମନ୍ଦ ଚିରଦିନ ସାଙ୍ଗରେ ରହିବ, ଗୋଟିଏ ମୁଦ୍ରାର ଏହା ଦୁଇଟି ପାର୍ଶ୍ୱ ସଦୃଶ । ଗୋଟିଏ ଯଦି ତୁମ ପାଖରେ ରହିବ ଅନ୍ୟଟି କୁ ତୁମେ ନିଶ୍ଚୟ ରଖିବ । ସମୁଦ୍ରରେ କୌଣସି ସ୍ଥାନ ଖାଲୁଆ ହେବାରୁ ଢ଼େଉର ଜନ୍ମ ହୁଏ । ତାହାର ଅର୍ଥ ନୁହେଁ ଯେ - ସମସ୍ତ ଜୀବନ ମନ୍ଦ, କୌଣସିର ହତ୍ୟା ନ ଘଟିଲେ ନିଃଶ୍ୱାସଟିଏ ମାରିହେବ ନାହିଁ, ଗଣ୍ଡିଏ ଖାଇବାକୁ ହେଲେ, ଅନ୍ୟ କାହାକୁ ବଞ୍ଚିତ କରିବାକୁ ପଡ଼ିବ । ଏହା ହିଁ ନିୟମ; ଏହା ହିଁ ଦର୍ଶନ । ସୁତରାଂ ଆମକୁ କେବଳ ବୁଝିବାକୁ ହେବ ଯେ ମନ୍ଦ ବିରୋଧରେ ଏହି ସମସ୍ତ କାର୍ଯ୍ୟ ବସ୍ତୁନିଷ୍ଠ (obejctive) ଅପେକ୍ଷା ଅଧିକ ଅନ୍ତର୍ନିହିତ (subjective) ଅଟେ । ଆମେ ଯେତେ ବଡ଼ ବଡ଼ କଥା କହିଲେ ବି ମନ୍ଦ ବିରୋଧରେ କାର୍ଯ୍ୟ, ବାସ୍ତବତା ଅପେକ୍ଷା ଅଧିକ ଶିକ୍ଷଣୀୟ ଅଟେ । ପ୍ରଥମତଃ ଏହା ହିଁ ମନ୍ଦ ବିରୋଧରେ ଏକ ଦୃଷ୍ଟିକୋଣର କାର୍ଯ୍ୟ; ଏହା ଆମକୁ ଅଧିକ ଶାନ୍ତ କରିବ, ଏହା ଆମ ରକ୍ତରୁ ଧର୍ମାନ୍ଧତା ବାହାର କରିଦେବ । ବିଶ୍ୱ ଇତିହାସ ଆମକୁ ଶିଖାଇଛି ଯେ ଯେଉଁଠାରେ ଧର୍ମାନ୍ଧ ସଂସ୍କାର ସଂଘଟିତ ହୋଇଛି, ସେଠାରେ ଫଳ ମିଳିଛି ଯେ ସେମାନେ ନିଜର ଲକ୍ଷ୍ୟକୁ କେବଳ ପରାଜିତ କରିଛନ୍ତି ।

- ୨ -

*ଠିକ୍ ସେମିତି ଆମ ଲୋକେ ଚିତ୍କାର କରି କହୁଛନ୍ତି : ଆମେ ବହୁତ ବକ୍ତୃତା ଶୁଣିଲୁଣି, ବହୁ ସମାଜ ଆମେ ଦେଖିଲୁଣି, ବହୁ ପୁସ୍ତକ ଆମେ ପଢ଼ିଲୁଣି; ଆମକୁ ଏହି ବିଷମ ପରିସ୍ଥିତିରୁ ଉଦ୍ଧାର କରିବା ପାଇଁ ସହାୟତାର ହାତ କେଉଁଠି ? ଆମକୁ ଯିଏ ଆନ୍ତରିକତା ସହ ଭଲପାଏ, ସେହି ବ୍ୟକ୍ତି କେଉଁଠି ? ଆମ ପ୍ରତି ଯିଏ କରୁଣା ପ୍ରଦର୍ଶନ କରିବ, ସେହି ବ୍ୟକ୍ତି କେଉଁଠାରେ ? ଆହାଃ ସେହି ବ୍ୟକ୍ତି ଆମେ ଚାହୁଁ ।*

ଆମେରିକାରେ ଦାସତ୍ୱ ପ୍ରଥା ବିଲୋପ ପାଇଁ ଯେଉଁ ଯୁଦ୍ଧ ହୋଇଥିଲା ତାହା ଅପେକ୍ଷା ଅଧିକାର ଓ ମୁକ୍ତି ପ୍ରତିଷ୍ଠା ନିମନ୍ତେ ଅନ୍ୟ କୌଣସି ବିଶାଳ ବିପ୍ଳବ ଘଟି ନ ଥିଲା । ଆପଣମାନେ ଏହି ସମ୍ବନ୍ଧରେ ସମସ୍ତେ ସଚେତନ କିନ୍ତୁ ଏହାର ଫଳ କ'ଣ ହେଲା ? ଦାସତ୍ୱ ପ୍ରଥା ବିଲୋପ ପୂର୍ବରୁ ନିଗ୍ରୋମାନେ ଅନ୍ୟ କାହାର ସମ୍ପତ୍ତି ସଦୃଶ ରହିଥିଲେ, ସେମାନଙ୍କର ଯତ୍ନ ନିଆଯାଉଥିଲା, ଯାହାଫଳରେ ସେମାନଙ୍କର ଅବସ୍ଥାରେ ଅବନତି ଘଟି ନ ଥିଲା । ବର୍ତ୍ତମାନ ସେମାନେ କାହାର ସମ୍ପତ୍ତି ନୁହଁନ୍ତି । ସେମାନଙ୍କର ଜୀବନରେ କୌଣସି ମୂଲ୍ୟ ନାହିଁ, ସାମାନ୍ୟ କଥାରେ ସେମାନଙ୍କୁ ଅଗ୍ନିରେ ଦଗ୍ଧିଭୂତ କରାଯାଉଛି, ସେମାନଙ୍କୁ ଗୁଳିକରି ମାରି ଦିଆଯାଉଛି, ଯେଉଁମାନେ ସେମାନଙ୍କୁ ମାରୁଛନ୍ତି, ସେମାନଙ୍କ ପାଇଁ କୌଣସି ଆଇନ ନାହିଁ । କାହିଁକିନା ସେମାନେ ନିଗ୍ରୋ, ସେମାନେ ମନୁଷ୍ୟ ନୁହଁନ୍ତି, ଏପରିକି ସେମାନେ ପଶୁ ନୁହଁନ୍ତି, ଆଇନ କିମ୍ୱା ମଣିଷ ଦ୍ୱାରା ମନ୍ଦକୁ ଭୟଙ୍କର

Digitized by srujanika@gmail.com

ଭାବରେ ଏଭଳି ପ୍ରତିହତ କରିବା ଯୋଗୁଁ ଏହା ହିଁ ପରିଣାମ । ପ୍ରତ୍ୟେକ ମତାନ୍ଧ ଅଭିଯାନ ବିରୋଧରେ ଏହା ହିଁ ଇତିହାସର ସାକ୍ଷୀ । ଏପରିକି ଭଲ କାର୍ଯ୍ୟ ପାଇଁ, ମୁଁ ତାହା ଦେଖିଛି । ମୋ ନିଜର ଅଭିଜ୍ଞତା ତାହା ମୋତେ ଶିଖାଇଛି । ତେଣୁ ଏହିଭଳି କୌଣସି ଭର୍ତ୍ସନାମୁଖୀ ସମାଜରେ ମୁଁ ଯୋଗଦାନ କରିପାରିବି ନାହିଁ । କାହିଁକି ଭତ୍ସନା କରିବ ? ପ୍ରତ୍ୟେକ ସମାଜରେ ମନ୍ଦ ରହିଛି, ପ୍ରତ୍ୟେକ ତାହା ଜାଣନ୍ତି । ଆଜିର ପ୍ରତ୍ୟେକ ପିଲା ଏହା ଜାଣନ୍ତି; ସେ ବି ଗୋଟିଏ ମଞ୍ଚ ଉପରେ ଠିଆ ହୋଇ ହିନ୍ଦୁ ସମାଜରେ ରହିଥିବା ଭୟଙ୍କର ମନ୍ଦ ଉପରେ ଦୀର୍ଘ ଭାଷଣ ଦେଇପାରିବ । ଯେଉଁ ଅଶିକ୍ଷିତ ବିଦେଶୀ ମାନେ ବିଶ୍ୱ ଭ୍ରମଣରେ ଏଠାକୁ ଆସନ୍ତି, ସେ ରେଳରେ ବସି ଭାରତର ଅଦୃଶଗାମୀ ଚିତ୍ର ଦେଖି, ଭାରତର ବିଭତ୍ସ ମନ୍ଦ ଉପରେ ଜ୍ଞାନଗର୍ଭକ ଭାଷଣ ଦେଇଯାଆନ୍ତି ।

ଅବଶ୍ୟ ଆମେ ସ୍ୱୀକାର କରୁ ଯେ ଏଠାରେ ମନ୍ଦ ରହିଛି । ମନ୍ଦ କ'ଣ ସମସ୍ତେ ବତାଇ ପାରିବେ, କିନ୍ତୁ ଯିଏ ସମସ୍ୟା ଓ କଷ୍ଟ ଭିତରୁ ବାହାରି ଯିବା ପଥ ଦେଖାଇଦିଏ, ସେ ହିଁ ମାନବ ସମାଜର ପ୍ରକୃତ ବନ୍ଧୁ । ପାଣିରେ ବୁଡି ଯାଉଥିବା ବାଳକ ଓ ଦାର୍ଶନିକ କଥା ଭଳି - ଯେତେବେଳେ ଦାର୍ଶନିକ ତାକୁ ବକ୍ତୃତା ପ୍ରଦାନ କରୁଥିଲେ, ସେତେବେଳେ ବାଳକ ଚିତ୍କାର କରି କହୁଥିଲା, ''ପ୍ରଥମେ ମୋତେ ଜଳରୁ ଉଦ୍ଧାର କର'' - ଠିକ୍ ସେମିତି ଆମ ଲୋକେ ଚିତ୍କାର କରି କହୁଛନ୍ତି : ଆମେ ବହୁତ ବକ୍ତୃତା ଶୁଣିଲୁଣି, ବହୁ ସମାଜ ଆମେ ଦେଖିଲୁଣି, ବହୁ ପୁସ୍ତକ ଆମେ ପଢ଼ିଲୁଣି; ଆମକୁ ଏହି ବିଷମ ପରିସ୍ଥିତିରୁ ଉଦ୍ଧାର କରିବା ପାଇଁ ସହାୟତାର ହାତ କେଉଁଠି ? ଆମକୁ ଯିଏ ଆନ୍ତରିକତା ସହ ଭଲପାଏ, ସେହି ବ୍ୟକ୍ତି କେଉଁଠି ? ଆମ ପ୍ରତି ଯିଏ କରୁଣା ପ୍ରଦର୍ଶନ କରିବ, ସେହି ବ୍ୟକ୍ତି କେଉଁଠାରେ ? ଆହାଃ ସେହି ବ୍ୟକ୍ତି ଆମେ ଚାହୁଁ । ସେହିଠାରେ ହିଁ ମୁଁ ଏହି ସଂସ୍କାର ଅଭିଯାନଗୁଡ଼ିକରୁ ନିଜକୁ ସାମଗ୍ରିକ ଭାବେ ପୃଥକ ରଖେ । ଶହଶହ ବର୍ଷ ହେଲା ସେମାନେ ଏଠାରେ ଅଛନ୍ତି । ଏକ ଭୟଙ୍କର ତଥା ସର୍ବଶ୍ରେଷ୍ଠ ଭର୍ତ୍ସନାତ୍ମକ ସାହିତ୍ୟ ସୃଷ୍ଟି କରିବା ବ୍ୟତୀତ ଅଧିକ ଉତ୍ତମ କାର୍ଯ୍ୟ କ'ଣ ସେମାନେ କରିଛନ୍ତି ? ପ୍ରାଚୀନପନ୍ଥୀ ସେମାନଙ୍କର ଗଳାକୁ ଧରିବା ଏବଂ ସେମାନଙ୍କୁ ଉଚିତ ଶିକ୍ଷା ଦେବା ପର୍ଯ୍ୟନ୍ତ ସେମାନେ ପ୍ରାଚୀନପନ୍ଥୀଙ୍କୁ ସମାଲୋଚନା, ଭର୍ତ୍ସନା ଓ ଗାଳି ଦେଉଥିଲେ ଏବଂ ଏହାର ପରିଣାମ ହେଲା ଯେ ପ୍ରତ୍ୟେକ ଭାଷାରେ ଏକ ସାହିତ୍ୟ ସୃଷ୍ଟି ହେଲା, ଯାହା ଜାତି ପାଇଁ ଲଜ୍ଜାକର ଏବଂ ରାଷ୍ଟ୍ର ପାଇଁ ବି ଲଜ୍ଜାକର । ଏହାକୁ କ'ଣ ସଂସ୍କାର କୁହାଯାଏ ? ଏହା କ'ଣ ରାଷ୍ଟ୍ରକୁ ଗୌରବ ପଥରେ ନେଇଯାଇପାରେ ? କାହାର ଏହି ଦୋଷ ?

ସ୍ୱାମୀଜୀଙ୍କର ଏତାଦୃଶ କଠୋର ଭାଷା ଶୁଣିଲେ ଜଣେ ଆଶ୍ଚର୍ଯ୍ୟ ହେବ ଯେ ସ୍ୱାମୀଜୀ ସଂସ୍କାର ପ୍ରକ୍ରିୟାର ଘୋର ବିରୋଧୀ ଥିଲେ । କିନ୍ତୁ ବାସ୍ତବରେ ତାହା ନୁହେଁ । ନିଜ ଜୀବନରେ ହିନ୍ଦୁମାନଙ୍କର ମତାନ୍ଧ ଓ କୁସଂସ୍କାରକୁ ସେ ଯେପରି ଭାବରେ ଭର୍ତ୍ସନା କରିଛନ୍ତି, ସେପରି ଅନ୍ୟ କେହି କରିପାରିବେ ନାହିଁ । ତାଙ୍କର ଦୃଷ୍ଟିକୋଣ ଉର୍ଦ୍ଧ୍ୱଗାମୀ, ସଂସ୍କାର ନାଁରେ ନିଜର ମତକୁ ବଳପ୍ରୟୋଗ କରି ଲଦି ଦେଲେ ତା'ର ଫଳ ଆଜି ନୁହେଁତ କାଲି ଓଲଟା ହେବ; ତାହାହିଁ ସ୍ୱାମୀଜୀ ଏଠାରେ ସ୍ପଷ୍ଟ କରିଦେଇଛନ୍ତି । ଥିଓସୋଫିକାଲ୍ ସୋସାଇଟିର ସକାରାତ୍ମକ ଦିଗକୁ ସ୍ୱାମୀଜୀ ପ୍ରଶଂସା କରି କହୁଥିଲେ, ''ଏହି ବ୍ରହ୍ମବିଦ୍ୟା ସମିତି କେତେକାଂଶରେ ଭଲକାର୍ଯ୍ୟ ଭାରତବର୍ଷରେ ସମ୍ପାଦନ କରିଛି । ପ୍ରତ୍ୟେକ ହିନ୍ଦୁ ସେଥିପାଇଁ କୃତଜ୍ଞ ରହିବା ଉଚିତ । ବିଶେଷ

Digitized by srujanika@gmail.com

କରି ମିସେସ୍ ଆନି ବେସାନ୍ତ ଭାରତବର୍ଷର ଜଣେ ମହାନ୍ ଶୁଭାକାଂକ୍ଷୀ, ସେ ଭାରତର ଉତଥାନ ପାଇଁ ସମଗ୍ର ଜୀବନ ସମର୍ପି ଦେଇଛନ୍ତି । ଭାରତର ପ୍ରତ୍ୟେକ ନାଗରିକ ତାଙ୍କ ପାଖରେ ଚିର ଋଣୀ ରହିବ । କିନ୍ତୁ ସେମାନଙ୍କର ମତ ଓ ଚିନ୍ତାଧାରାକୁ ସଂସ୍କାର ନାଁରେ ଜୋର୍‌ଜବରଦସ୍ତି ଲଦି ଦେବାକୁ ସ୍ୱାମୀଜୀ ଚାହିଁ ନାହାଁନ୍ତି । ସ୍ୱାମୀଜୀଙ୍କ ଭାଷାରେ- ଥିଓସୋଫିଷ୍ଟ ଏବଂ ଅନ୍ୟମାନେ ମୋତେ ଭୟଭୀତ କରାଉଥିଲେ । ସେମାନେ ମୋତେ ଆମେରିକାରେ ନିର୍ଯ୍ୟାତନା ଦେଇଥିଲେ, କାରଣ ତାଙ୍କ ଦଳରେ ମୁଁ ଯୋଗ ଦେବାକୁ ମନା କରିଦେଲି ।''

ବ୍ରହ୍ମବିଦ୍ୟା ସମିତିର ସଦସ୍ୟମାନେ ସ୍ୱାମୀଜୀଙ୍କ ପଥରେ ନାନାପ୍ରକାର ବାଧାବିଘ୍ନ ସୃଷ୍ଟି କରିଥିଲେ, ତାଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଅପମାନିତ କରିଥିଲେ । ତାଙ୍କୁ ପୌତ୍ତଳିକ କହି ଆମେରିକା ସମାଜରେ ବାସନ୍ଦ କରିବାକୁ ସେମାନେ ପ୍ରବଳ ଚେଷ୍ଟା କରିଥିଲେ । କିନ୍ତୁ ସ୍ୱାମୀଜୀ ନିର୍ଭୀକତା ସହ ସେମାନଙ୍କର ପ୍ରତ୍ୟେକ ସଂହାରାତ୍ମକ ମନ୍ତବ୍ୟ ବିରୋଧରେ ଉପଯୁକ୍ତ ଜବାବ ଦେଇଥିଲେ । ମୂର୍ତ୍ତିପୂଜାର ପ୍ରାସଙ୍ଗିକତାକୁ ବୁଝାଇ ସ୍ୱାମୀଜୀ କହିଥିଲେ, ''ମୁଁ ଯେଉଁ ମହାନ୍ ବ୍ୟକ୍ତିଙ୍କ ପାଦତଳେ ବସି ବିଭିନ୍ନ ଶିକ୍ଷା ଲାଭ କରିଥିଲି, ସେହି ବ୍ୟକ୍ତି ମୂର୍ତ୍ତି ଉପାସନା ମାଧମରେ ସର୍ବଶ୍ରେଷ୍ଠ ଜ୍ଞାନ ଉପଲବ୍ଧି କରିପାରିଥିଲେ । ମୂର୍ତ୍ତି ପୂଜା ମଧ୍ୟରୁ ଯଦି ଶ୍ରୀରାମକୃଷ୍ଣ ପରମହଂସଙ୍କ ଭଳି ମହାନ୍ ବ୍ୟକ୍ତିତ୍ୱ ଜନ୍ମ ଗ୍ରହଣ କରିପାରିଲେ, ତେବେ ତୁମ ପାଖରେ କ'ଣ ରହିବ - ସଂସ୍କାରକଙ୍କର ଗୋଷ୍ଠୀ କିମ୍ବା ଯେକୌଣସି ସଂଖ୍ୟାର ମୂର୍ତ୍ତି ? ମୁଁ ଏହାର ଉତ୍ତର ଚାହେଁ । ମୂର୍ତ୍ତିପୂଜା ମାଧମରେ ତୁମେ ଯଦି ଅନେକ ରାମକୃଷ୍ଣ ପରମହଂସ ସୃଷ୍ଟି କରିପାରିବ, ତେବେ ଅଧିକ ହଜାରେ ମୂର୍ତ୍ତି ତୁମେ ଗ୍ରହଣ କର ଏବଂ ଈଶ୍ୱର ଏଥିରେ ତୁମମାନଙ୍କୁ ତ୍ୱରାନ୍ୱିତ କରନ୍ତୁ । ଏଭଳି ମହତ୍ ବ୍ୟକ୍ତି ଯେକୌଣସି ମାର୍ଗଦ୍ୱାରା ତୁମେ ସୃଷ୍ଟି କର । ତଥାପି ମୂର୍ତ୍ତିପୂଜା ଭର୍ତ୍ସିତ । କାହିଁକି ? କେହି ଜାଣନ୍ତି ନାହିଁ । କାରଣ ଶହ ଶହ ବର୍ଷ ପୂର୍ବେ ଇହୁଦି ରକ୍ତର ଜନୈକ ବ୍ୟକ୍ତି ଏକଦା ମୂର୍ତ୍ତିପୂଜାକୁ ଭର୍ତ୍ସନା କରିଥିଲେ । ସେଥିପାଇଁ ନିଜର ମନୋନୀତ ମୂର୍ତ୍ତିକୁ ଗାଳିଦେବା ସେମାନଙ୍କର ଅଭ୍ୟାସରେ ପରିଣତ ହୋଇଛି । ଯଦି ଈଶ୍ୱରଙ୍କୁ କୌଣସି ସୁନ୍ଦର ରୂପ କିମ୍ବା ପ୍ରତୀକ ରୂପରେ ବର୍ଣ୍ଣନା କରାଯାଏ, ତାହାଲେ କଥା ସରିଲା, କାରଣ ଇହୁଦୀମାନେ କହିବେ ଯେ ଏହା ସବୁଠାରୁ ବୀଭତ୍ସ କାର୍ଯ୍ୟ - ଏହା ପାପ ।

କିନ୍ତୁ ଯଦି ଗୋଟିଏ ବାକ୍ସର ଦୁଇ ପାର୍ଶ୍ୱରେ ଦୁଇଜଣ ପରୀ ବା ଦେବଦୂତ ଉପବେଶନ କରିଥିବେ ଏବଂ ଏକ ଭାସନ୍ତ ମେଘମାଳା ତା'ଉପରେ ଝୁଲି ପଡ଼ିଥିବା ଏଭଳି ଦୃଶ୍ୟରେ ଈଶ୍ୱରଙ୍କୁ ଯଦି ପ୍ରତୀକ ଭାବେ ଗ୍ରହଣ କରାଯାଏ, ତେବେ ସେମାନଙ୍କ ଦୃଷ୍ଟିରେ ଏହା ହେବ ସକଳ ପବିତ୍ରତାର ପବିତ୍ର ବସ୍ତୁ । ଯଦି ଈଶ୍ୱର ଏକ କପୋତ ରୂପରେ ଆସନ୍ତି, ତେବେ ଏହା ପବିତ୍ର । ଅଥଚ ଯଦି ଈଶ୍ୱର ଏକ ଗାଈ ରୂପରେ ଆସନ୍ତି ତେବେ ଏହା ଅଧର୍ମୀଙ୍କର ଅନ୍ଧବିଶ୍ୱାସ ଭାବେ ଅଭିହିତ କରି ଏହାକୁ ନିନ୍ଦା କରିବେ । ତାହାହିଁ ଏହିଭାବରେ ସଂସାର ଚାଲେ । ସେଥିପାଇଁ ଜଣେ କବି କହିଥିଲେ, ''ଆମେ ମରଣଶୀଳ ମଣିଷଗୁଡ଼ାକ କିପରି ନିର୍ବୋଧ !'' ସତରେ ପରସ୍ପର ଦୃଷ୍ଟିରେ କିପରି ଦେଖିବା କଷ୍ଟଦାୟକ ! ତାହା ହିଁ ତ ମାନବ ଜାତିପାଇଁ ଅଭିଶାପ । ତାହାହିଁ ତ ଘୃଣା, ଈର୍ଷା, କଳହ ଓ ଲଢ଼ାଇର ଆଧାରଭୂମି । କେତେଜଣ ବାଳକ, ନିଶୁଆ ପିଲା (ବିଦ୍ରୂପ ଭାଷାରେ)

Digitized by srujanika@gmail.com

ଯେଉଁମାନେ ମାଡ୍ରାସ ବାହାରକୁ ଜୀବନ କାଳରେ କେବେ ଯାଇ ନାହାଁନ୍ତି, ସେମାନେ ପୁଣି ବୀରଦର୍ପରେ ଠିଆ ହୋଇ ତିରିଶକୋଟି ଜନତାଙ୍କୁ ଯାହାଙ୍କ ପଶ୍ଚାତରେ ରହିଛି ସହସ୍ର ପରମ୍ପରା ଓ ପ୍ରଥା, ନିୟମ ଶିଖାଇବାକୁ ଚାହୁଁଛନ୍ତି । ତୁମେମାନେ ଲଜ୍ଜିତ ନୁହଁକି ? ଏଭଳି ଅପବାଦରୁ ନିଜକୁ ଦୂରେଇ ରଖ ଏବଂ ପ୍ରଥମେ ତୁମେ ଶାସ୍ତ୍ର ଅଧ୍ୟୟନ କର । ଅଶିଷ୍ଟ ବାଳକଗଣ ଯେଉଁମାନେ ଖଣ୍ଡିଏ କାଗଜରେ କେତେଧାଡ଼ି ଲେଖିଦେବେ ଏବଂ ଜଣେ ନିର୍ବୋଧ ଦ୍ୱାରା ଏହାକୁ ଛପାଇ ଦେଇ ନିଜକୁ ବିଶ୍ୱରେ ସବୁଠୁଁ ଶିକ୍ଷିତ ବୋଲି ବାହାସ୍ଫୋଟ ମାରିବେ; ନିଜକୁ ଭାବିବେ ଯେ ସେମାନେ ହିଁ ଭାରତବର୍ଷର ସାଧାରଣ ଜନତାଙ୍କ ମତର ପ୍ରତିନିଧିତ୍ୱ କରନ୍ତି ! ଏହା କ'ଣ ସେଇୟା ? ମାଡ୍ରାସର ସାମାଜିକ ସଂସ୍କାରକଗଣଙ୍କୁ ମୁଁ କହିବାକୁ ଚାହେଁ ଯେ ସେମାନଙ୍କ ପ୍ରତି ମୋର ଯଥେଷ୍ଟ ପ୍ରେମ ଓ ସମ୍ମାନ ରହିଛି । ରାଷ୍ଟ୍ର, ଗରିବ, ଅତ୍ୟାଚାରିତଙ୍କ ପ୍ରତି ସେମାନଙ୍କର ମହାନ୍ ହୃଦୟ ଓ ପ୍ରେମ ରହିଥିବାରୁ ମୁଁ ସେମାନଙ୍କୁ ଭଲପାଏ । କିନ୍ତୁ ଭ୍ରାତୃ ସ୍ନେହରେ ଆବଦ୍ଧ କରି ସେମାନଙ୍କୁ ମୁଁ କହିବାକୁ ଚାହେଁ ଯେ ସେମାନଙ୍କର ପଦ୍ଧତି ଠିକ୍ ନୁହେଁ । ଶହଶହ ବର୍ଷ ହେଲା ଏହା ପରୀକ୍ଷିତ ହୋଇଛି କିନ୍ତୁ ବିଫଳ ହୋଇଛି । ଆମକୁ ଏକ ନୂତନ ପଦ୍ଧତି ବାହାର କରିବାକୁ ପଡ଼ିବ ।

- ୩ -

*ସମଗ୍ର ପାଶ୍ଚାତ୍ୟ ଜଗତ ଗୋଟିଏ ଆଗ୍ନେୟଗିରି ଉପରେ ବସିଛି, କାଲି ହୁଏତ ଏହାର ବିସ୍ଫୋରଣ ଘଟିପାରେ, ସମଗ୍ର ବିଶ୍ୱ ଖଣ୍ଡ ବିଖଣ୍ଡିତ ହୋଇଯିବ । ବିଶ୍ୱର ପ୍ରତ୍ୟେକ କୋଣ ଅନୁକୋଣ ସେମାନେ ଖୋଜି ସାରିଲେଣି, ତଥାପି ସେମାନଙ୍କୁ ବିରତି ମିଳୁନାହିଁ । ସୁଖର ପୂର୍ଣ୍ଣ ପିଆଲା ସେମାନେ ପାନ କରିସାରିଲେଣି, କିନ୍ତୁ ଦେଖିଲେ ଯେ ଏହା କେବଳ ଛଳନା । ବର୍ତ୍ତମାନ କାର୍ଯ୍ୟ କରିବା ପାଇଁ ସମୟ ଉପସ୍ଥିତ, ଯଦ୍ୱାରା ଭାରତର ଆଧ୍ୟାତ୍ମିକ ଭାବଧାରା ପାଶ୍ଚାତ୍ୟବାସୀଙ୍କ ହୃଦୟରେ ଗଭୀରଭାବେ ପ୍ରବେଶ କରପାରିବ ।*

ମହାନ୍ ପ୍ରାଚୀନ ଋଷି ଓ ଗୁରୁଙ୍କର ଆଦର୍ଶ ଏବଂ ଭାବଧାରାକୁ ଅନୁସରଣ କରିବା ତାଙ୍କର ଈପ୍‌ସିତ ଯୋଜନା ବୋଲି ସ୍ୱାମୀଜୀ ସମବେତ ଜନତାଙ୍କୁ କହିଲେ । ଯେହେତୁ ଧର୍ମରେ ଏକ ବୈପ୍ଳବିକ ପରିବର୍ତ୍ତନ ଆମର ରାଷ୍ଟ୍ର ପ୍ରଥମେ ଆବଶ୍ୟକ କରେ, ତେଣୁ ଆମର ଉପନିଷଦରେ ନିହିତ ଚମତ୍କାର ସତ୍ୟ ପ୍ରତି ଆମକୁ ଦୃଷ୍ଟି ଦେବାକୁ ହେବ । ଆମ ଦେଶରେ କେତେଜଣ ନିର୍ଦ୍ଦିଷ୍ଟ ସଂପ୍ରଦାୟଙ୍କ ନିକଟରେ ତାହା ରହିଯାଇଛି ଏବଂ ଦେଶରେ ଇତସ୍ତତଃ ଉଚ୍ଚାରିତ ହେଉଛି, ସେହି ମହାନ୍ ଓ ଅଦ୍ଭୁତ ତତ୍ତ୍ୱକୁ ସମସ୍ତ ଦେଶ ଓ ବିଦେଶରେ ପ୍ରଚାରିତ କରିବାକୁ ହେବ ବୋଲି ସ୍ୱାମୀଜୀ ତାଙ୍କର ''ଆମ ସମ୍ମୁଖରେ ରହିଥିବା କାର୍ଯ୍ୟ'' ଉପରେ ଏକ ସୁବିସ୍ତୃତ ବକ୍ତୃତା ମାଧ୍ୟମରେ ଉପସ୍ଥିତ

Digitized by srujanika@gmail.com

ଶ୍ରୋତାଙ୍କୁ ସଚେତନ କରାଇ ଦେଇଥିଲେ । ପୁନଶ୍ଚ ସେ ବି କହିଥିଲେ ଯେ ଭାରତ ଓ ପାଶ୍ଚାତ୍ୟ ଦେଶ ଭିତରେ ଏକ ଆଦାନ ପ୍ରଦାନ କାର୍ଯ୍ୟକ୍ରମ ଚାଲିବା ଉଚିତ । ଏହି ପରିପ୍ରେକ୍ଷୀରେ ତାଙ୍କର ଭାଷା ଏପରି ଥିଲା :

''ଭାରତବର୍ଷରେ ବହୁ ସଂଗଠନ ଆରମ୍ଭ କରିବାଲାଗି ମୋର ଯୋଜନା ରହିଛି । ଯୁବକ ଓ ଯୁବତୀଙ୍କୁ ଆମ ଶାସ୍ତ୍ରରେ ନିହିତ ସତ୍ୟକୁ ଜାଣିବା ପାଇଁ ପ୍ରଶିକ୍ଷଣ ଦିଆଯିବ ଯଦ୍ୱାରା ସେମାନେ ଭାରତ ଓ ବିଦେଶରେ ସତ୍ୟର ପୂଜାରୀ ଭାବେ ପ୍ରଚାର କାର୍ଯ୍ୟରେ ନିମଗ୍ନ ରହିବେ । ମୋର କେବଳ ମଣିଷ-ମଣିଷ ଦରକାର - ସେମାନେ ହାଡ଼େ ହାଡ଼େ ସତ୍ୟନିଷ୍ଠ ହୋଇଥିବେ । ଏଭଳି ଶହେଜଣ ବାହାରିଲେ ସମଗ୍ର ବିଶ୍ୱ ଆମୂଳଚୂଳ ପରିବର୍ତ୍ତିତ ହୋଇଯିବ ।'' ଦେଶଭକ୍ତିର ଆଦର୍ଶ କ'ଣ ହେବା ଉଚିତ ବୋଲି ବର୍ଣ୍ଣନା କରି ସେ କହିଥିଲେ : ମୋର ବନ୍ଧୁଗଣ, ଆମର ଜାତୀୟ ନୌକା ଜୀବନରୂପକ ସମୁଦ୍ରରେ କୋଟିକୋଟି ଆତ୍ମାକୁ ପାରି କରି ଆସୁଛି, ବହୁ ଦୀପ୍ତିମନ୍ତ ଶତାବ୍ଦୀ ଏହା ଅତିକ୍ରମ କରିଛି ଏବଂ ଅଗଣିତ ଆତ୍ମା କୁ ଦିବ୍ୟ ଓ ଶାଶ୍ୱତ କୂଳରେ ପହଞ୍ଚାଇ ପାରିଛି । କିନ୍ତୁ ଆଜି ବୋଧହୁଏ ଆମର ତ୍ରୁଟି ଯୋଗୁଁ ନୌକାଟି କ୍ଷତିଗ୍ରସ୍ତ ହୋଇଛି, ଫୁଟିଯାଇଛି, ତୁମେ କ'ଣ ସେଥିପାଇଁ ଅଭିଶାପ ଦେବ ? ...ଯଦି ଜାତୀୟ ନୌକାରେ ଛିଦ୍ରଗୁଡ଼ାଏ ରହିଛି, ତଥାପି ଆମେ ଏହାର ସନ୍ତାନ । ଆସ ଛିଦ୍ରଗୁଡ଼ିକୁ ବନ୍ଦ କରିବା । ପ୍ରଫୁଲ୍ଲତା ସହକାରେ ହୃଦୟର ରକ୍ତ ଦେଇ ଚାଲ, ଏହି କାର୍ଯ୍ୟ ସମ୍ପାଦନା କରିବା । ଯଦି ନ କରିପାରିବା, ତେବେ ମୃତ୍ୟୁବରଣ କରିବା । ... ଦୟାକରି ରାଷ୍ଟ୍ରକୁ ନିନ୍ଦା କରନାହିଁ । ଏହି ସମାଜ ପ୍ରତି ପଦଟିଏବି କଠୋର ଭାଷା ପ୍ରୟୋଗ କରନାହିଁ । ଭାରତର ଅତୀତର ମହାନତାକୁ ମୁଁ ଖୁବ୍ ଭଲପାଏ । ତୁମମାନଙ୍କୁ ମୁଁ ଅତ୍ୟନ୍ତ ଭଲପାଏ, କାରଣ ତୁମେମାନେ ଦେବାଦେବୀଙ୍କର ସନ୍ତାନ, ତୁମେମାନେ ସେହି ଗୌରବମୟ ପୂର୍ବପୁରୁଷଙ୍କର ସନ୍ତାନ । ମୁଁ ତୁମମାନଙ୍କୁ କିପରି ଅଭିଶାପ ଦେଇପାରିବି ? କସ୍ମିନକାଳେ ନୁହେଁ । ସମସ୍ତ ଆଶିଷ ତୁମମାନଙ୍କ ଉପରେ ବର୍ଷିତ ହେଉ । ହେ ମୋର ସନ୍ତାନଗଣ, ତୁମମାନଙ୍କ ନିକଟକୁ ମୁଁ ଆସିଛି, ମୋ ଯୋଜନା ସମ୍ବନ୍ଧରେ ତୁମକୁ କହିବି । ତୁମେମାନେ ଯଦି ମୋ ଯୋଜନାକୁ ଶୁଣିବ, ତେବେ ତୁମମାନଙ୍କ ସହ କାର୍ଯ୍ୟ କରିବାକୁ ମୁଁ ପ୍ରସ୍ତୁତ । ଯଦି ତୁମେମାନେ ମୋର ଯୋଜନାକୁ ନ ଶୁଣିବ ଏବଂ ମୋତେ ଭାରତରୁ ପଦାଘାତ କରି ବାହାର କରିଦେବ, ତଥାପି ମୁଁ ତୁମମାନଙ୍କ ନିକଟକୁ ଫେରିଆସି କହିବି ଯେ ଆମେ ସମସ୍ତେ ରସାତଳଗାମୀ ହେଉଛନ୍ତି । ତୁମମାନଙ୍କ ଗହଣରେ ବସିବା ପାଇଁ ମୁଁ ବର୍ତ୍ତମାନ ଆସିଛି, ଯଦି ଆମକୁ ରସାତଳଗାମୀ ହେବାକୁ ପଡ଼ିବ, ତେବେ ଆମେ ସମସ୍ତେ ସାଙ୍ଗହୋଇ ବୁଡ଼ିବା, କିନ୍ତୁ ଆମ ଓଠରୁ ଆଦୌ ଅଭିଶାପ ବର୍ଷିତ ନ ହେଉ ।

ପ୍ରଚଣ୍ଡ ଦେଶଭକ୍ତିର ଜ୍ୱଳାମୟ ବାଣୀ ନିଜର ଦେଶବାସୀଙ୍କ ସମ୍ମୁଖରେ ସ୍ୱାମୀଜୀଙ୍କ ମୁଖରୁ ନିଃସୃତ ହେଉଥିଲା । ଭାରତର ସମସ୍ତ କୁସଂସ୍କାରକୁ ସଂସ୍କାରିତ କରି ଏକ ନୂତନ ଭାରତ ଗଠନର ସ୍ୱପ୍ନ ସେ ଦେଖୁଥିଲେ । ତେଣୁ ଯୁବସମ୍ପ୍ରଦାୟଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ରହିଥିଲା । ଯୁବବର୍ଗ ଜାଗିଲେ ରାଷ୍ଟ୍ରର ପୁନରୁତ୍ଥାନ ହେବ । ସେଥିପାଇଁ ଭାରତର ପ୍ରାଚୀନ ଧର୍ମ,

Digitized by srujanika@gmail.com

ସଂସ୍କୃତି ଓ ସଭ୍ୟତାକୁ ଆପଣେଇ ଏକ ନୂତନ ଆଧୁନିକ ଭାରତ ନିର୍ମାଣ କରିବା ପାଇଁ ସେ ଏଠାରେ ଆହ୍ୱାନ ଦେଇଛନ୍ତି । ସେଥିପାଇଁ ପାଶ୍ଚାତ୍ୟ ଜଗତର ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା ଓ ଭୌତିକ ଅଗ୍ରଗତିର ବୀଜ ଏହି ଦେଶରେ ପୋତିବାକୁ ହେବ । ପ୍ରତି ବଦଳରେ ପାଶ୍ଚାତ୍ୟ ଜଗତକୁ ଭାରତ ନିଜର ଆଧ୍ୟାତ୍ମିକ ଜ୍ଞାନ ପ୍ରଦାନ କରିବ । ସ୍ୱାମୀଜୀ କହୁଛନ୍ତି : ପାଶ୍ଚାତ୍ୟ ଜଗତକୁ କେବଳ ଆଧ୍ୟାତ୍ମିକତା ଜୟ କରିବ । ସେମାନେ ବୁଝିଲେଣି ଯେ ଆଧ୍ୟାତ୍ମିକତା ହିଁ ସେମାନଙ୍କୁ ଏକ ଜାତିଭାବରେ ସଂରକ୍ଷିତ କରିପାରିବ । ସେମାନେ ଏଥିପାଇଁ ପ୍ରତୀକ୍ଷାରତ, ଆଗ୍ରହୀ ମଧ୍ୟ । ଏହା କେଉଁଠୁ ଆସିବ ? ଭାରତବର୍ଷର ମହାନ୍ ଋଷିମାନଙ୍କର ବାଣୀ ନେଇ ସମଗ୍ର ବିଶ୍ୱରେ ବିତରଣ କରିବା ପାଇଁ ମନୁଷ୍ୟ କାହାଁନ୍ତି ? କାହାନ୍ତି ମନୁଷ୍ୟ ଯେଉଁମାନେ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ, ଯେଉଁମାନଙ୍କ ମାଧ୍ୟମରେ ଏହି ବାଣୀ ବିଶ୍ୱର କୋଣ ଅନୁକୋଣରେ ପହଞ୍ଚି ପାରିବ ? ସତ୍ୟର ପ୍ରଚାର ଓ ପ୍ରସାର ପାଇଁ ଏଭଳି ବୀରକର୍ମୀ ଆବଶ୍ୟକ, ଯେଉଁମାନେ ବେଦାନ୍ତର ମହାନ୍ ସତ୍ୟକୁ ପ୍ରକାଶ କରିପାରିବେ । ବିଶ୍ୱ ଏହା ଚାହେଁ, ଏହା ନ ମିଳିଲେ ସମଗ୍ର ବିଶ୍ୱ ଧ୍ୱଂସ ପାଇଯିବ ।

ସ୍ୱାମୀଜୀ ଏତିକି କହି ଏଠାରେ ଅଟକି ଗଲେ ନାହିଁ । ତାଙ୍କ ଦିବ୍ୟଦୃଷ୍ଟିରେ ପାଶ୍ଚାତ୍ୟ ଜଗତର ଭୌତିକ ଅଗ୍ରଗତିର ବିଷଫଳ ଦୃଷ୍ଟିଗୋଚର ହେଲା । ସେ କହୁଛନ୍ତି ''ସମଗ୍ର ପାଶ୍ଚାତ୍ୟ ଜଗତ ଗୋଟିଏ ଆଗ୍ନେୟଗିରି ଉପରେ ବସିଛି, କାଲି ହୁଏତ ଏହାର ବିସ୍ଫୋରଣ ଘଟିପାରେ, ସମଗ୍ର ବିଶ୍ୱ ଖଣ୍ଡ ବିଖଣ୍ଡିତ ହୋଇଯିବ । ବିଶ୍ୱର ପ୍ରତ୍ୟେକ କୋଣ ଅନୁକୋଣ ସେମାନେ ଖୋଜି ସାରିଲେଣି, ତଥାପି ସେମାନଙ୍କୁ ବିରତି ମିଳୁନାହିଁ । ସୁଖର ପୂର୍ଣ୍ଣ ପିଆଲା ସେମାନେ ପାନ କରିସାରିଲେଣି, କିନ୍ତୁ ଦେଖିଲେ ଯେ ଏହା କେବଳ ଛଳନା । ବର୍ତ୍ତମାନ କାର୍ଯ୍ୟ କରିବା ପାଇଁ ସମୟ ଉପସ୍ଥିତ, ଯଦ୍ୱାରା ଭାରତର ଆଧ୍ୟାତ୍ମିକ ଭାବଧାରା ପାଶ୍ଚାତ୍ୟବାସୀଙ୍କ ହୃଦୟରେ ଗଭୀରଭାବେ ପ୍ରବେଶ କରପାରିବ । ସୁତରାଂ, ହେ ମୋର ମାଡ୍ରାସର ଯୁବକ, ମୁଁ ତୁମମାନଙ୍କୁ ବିଶେଷକରି ସ୍ମରଣ କରାଇ ଦେଉଛି । ଆମକୁ ନିଶ୍ଚିତ ବାହାରକୁ ଯିବାକୁ ହେବ, ଆମର ଆଧ୍ୟାତ୍ମିକତା ଓ ଦର୍ଶନ ଦ୍ୱାରା ପୃଥିବୀକୁ ଜୟ କରିବାକୁ ହେବ । ଅନ୍ୟ କୌଣସି ପନ୍ଥା ନାହିଁ, ଆମକୁ ଏହା କହିବାକୁ ହେବ ନଚେତ ମରିବାକୁ ହେବ । ଭାରତୀୟ ଭାବଧାରା ଦ୍ୱାରା ବିଶ୍ୱକୁ ଜୟ କରିବାକୁ ହେଲେ ଆମର ଜାତୀୟ ଜୀବନ ପ୍ରବୁଦ୍ଧ ଓ ଶକ୍ତିଶାଳୀ ହେବା ଏକମାତ୍ର କାମ୍ୟ ।

ତତ୍ ସଙ୍ଗେସଙ୍ଗେ ଆମେ ଭୁଲିଯିବା ଉଚିତ ନୁହେଁ ଯେ ମୁଁ ଯେଉଁ ଆଧ୍ୟାତ୍ମିକ ଭାବଧାରା ଦ୍ୱାରା ବିଶ୍ୱ ଉପରେ ବିଜୟ ଲାଭ କରିବାର କଥା କହିଲି, ତାହାର ଅର୍ଥ ହେଲା ଯେ ଆମେ କେବଳ ଜୀବନ-ପ୍ରଦାନକାରୀ ଚିନ୍ତାଧାରା ପଠାଇବାକୁ ହେବ; ଶତାବ୍ଦୀ ଶତାବ୍ଦୀ ଧରି ଆମେ ଛାତିରେ ଯାବୁଡ଼ି ଧରିଥିବା ଶହଶହ ସଂଖ୍ୟାର ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ନୁହେଁ, ଏପରିକି ଏହି ମାଟିରୁ ସେଗୁଡ଼ିକର ମୂଳୋତ୍ପାଟନ କରିବାକୁ ହେବ, ଯାହାଫଳରେ ଚିରଦିନ ପାଇଁ ସେଗୁଡ଼ିକର ବିଲୋପ ଘଟିବ । ସେଗୁଡ଼ିକ ଜାତିର ଅଧଃପତନର କାରଣ ଏବଂ ମସ୍ତିଷ୍କକୁ ଦୁର୍ବଳ କରିବାର ବି କାରଣ । ଯେଉଁ ମସ୍ତିଷ୍କ ଉଚ୍ଚ ଓ ମହତ୍ ଚିନ୍ତା କରିପାରେ ନାହିଁ, ମୌଳିକତାର ସମସ୍ତ ଶକ୍ତି ହରାଇଛି, ସମସ୍ତ ତେଜସ୍ୱୀ ମନୋବଳ ହରାଇଛି, ଯେଉଁ ମସ୍ତିଷ୍କ ଧର୍ମ ନାଁରେ କ୍ଷୁଦ୍ର କ୍ଷୁଦ୍ର

Digitized by srujanika@gmail.com

ଅନ୍ଧବିଶ୍ୱାସକୁ ଧରି ମସ୍ତିଷ୍କକୁ ବିଷାକ୍ତ କରିଛି, ସେଥିପ୍ରତି ଆମକୁ ସଚେତନ ରହିବାକୁ ହେବ । ଭାରତବର୍ଷରେ ବହୁ ବିପଦ ଆମର ଦୃଷ୍ଟିଗୋଚର ହୋଇଛି... ତୁମେମାନେ ସତର୍କ ରୁହ । ଅନ୍ଧବିଶ୍ୱାସର ନିର୍ବୋଧ ବ୍ୟକ୍ତି ହେବାଠାରୁ ତୁମେ ପ୍ରତ୍ୟେକ ନାସ୍ତିକ ହେବା ବରଂ ଭଲ ବୋଲି ମୁଁ ଭାବେ । କାରଣ ନାସ୍ତିକ ଜୀବନ୍ତ, ତୁମେ ତାଠାରୁ କିଛି କାର୍ଯ୍ୟ ଆଦାୟ କରିପାରିବ, କିନ୍ତୁ ଯଦି ଅନ୍ଧବିଶ୍ୱାସ ପ୍ରବେଶ କରେ, ତେବେ ମସ୍ତିଷ୍କ ମସ୍ତିଷ୍କ ହୋଇ ଆଉ ରହେନାହିଁ, ନରମ ହୋଇଯାଏ, ତା'ର ଜୀବନକୁ ଅବକ୍ଷୟ ଗ୍ରାସ କରିଦିଏ । ଏହି ଦୁଇଟିକୁ ତ୍ୟାଗ କର । ସାହସୀ ହୁଅ ମୋର ବୀରଗଣ, ଆମେ ତୁମମାନଙ୍କୁ ଚାହୁଁ । ରକ୍ତରେ ତେଜ, ସ୍ନାୟୁରେ ଶକ୍ତି, ଲୌହ ମାଂସପେଶୀ, ଇସ୍ପାତର ସ୍ନାୟୁ, ଆମର ଆବଶ୍ୟକ, ଦୁର୍ବଳ ଓ କୋମଳ ଦୃଷ୍ଟିକୋଣ ନୁହେଁ । ଏଗୁଡ଼ିକ ତ୍ୟାଗ କର । ସମସ୍ତ ପ୍ରହେଳିକା ଓ ରହସ୍ୟକୁ ତ୍ୟାଗ କର । ଧର୍ମରେ କୌଣସି ଗୁପ୍ତ ବା ରହସ୍ୟ ବୋଲି କିଛି ନାହିଁ । ବେଦାନ୍ତ, ବେଦ, ସ୍ମୃତି ଓ ପୁରାଣରେ ରହସ୍ୟ ଓ ଗୋପନୀୟତା ଅଛି କି ? ଗୋପନୀୟତାର ପ୍ରଚାରକ ଓ ଅନ୍ଧବିଶ୍ୱାସୀ ସର୍ବଦା ଦୁର୍ବଳତାର ପ୍ରତୀକ । ଏଗୁଡ଼ିକ ଅବକ୍ଷୟ ଓ ମୃତ୍ୟୁର ପ୍ରତୀକ ।

- ୪ -

*ଯଦି ଜଣେ କୈବର୍ତ୍ତ ନିଜକୁ ଆତ୍ମା ଭାବେ ଚିନ୍ତାକରେ, ସେ ଜଣେ ଉତ୍ତମ କୈବର୍ତ୍ତ ହେବ; ଯଦି ଜଣେ ଛାତ୍ର ନିଜକୁ ଆତ୍ମା ବୋଲି ଭାବେ, ସେ ଜଣେ ଉତ୍ତମ ଛାତ୍ର ହୋଇପାରିବ; ଜଣେ ଓକିଲ ଯଦି ନିଜକୁ ଆତ୍ମା ବୋଲି ଭାବେ, ସେ ଜଣେ ଉତ୍ତମ ଓକିଲ ହୋଇପାରିବ ଏବଂ ଏହିଭଳି ଭାବରେ ପ୍ରତ୍ୟେକ ନିଜକୁ ଆତ୍ମା ବୋଲି ଭାବିପାରିବେ । ଫଳ ସ୍ୱରୂପ, ଜାତି ସବୁଦିନ ପାଇଁ ବିସ୍ମୃତି ଗର୍ଭରେ ଲୀନ ହୋଇଯିବ ।*

ସ୍ୱାମୀଜୀ ଏଠାରେ ସ୍ମରଣ କରାଇ ଦେଇଛନ୍ତି ଯେ ଆମ ଦେଶରେ ଯେଉଁ ଅଧଃପତନ ଓ ଅବନତି ବିଗତ ଶତାବ୍ଦୀମାନଙ୍କରେ ଘଟିଛି, ସେଥିପାଇଁ ଆମର ସଂକୁଚିତ ଦୃଷ୍ଟିକୋଣ ଏବଂ ସଂକୁଚିତ କାର୍ଯ୍ୟର ପରିସର ହିଁ ଦାୟୀ । ବେଦାନ୍ତ ଭଳି ସାର୍ବଜନୀନ ଭାବଧାରା ଏତାଦୃଶ ସଂକୁଚିତ ଦୃଷ୍ଟିକୋଣ ଓ ସଂକୁଚିତ କାର୍ଯ୍ୟ ଭିତିରେ ଆବୃତ ହୋଇ ରହିଯିବାରୁ ଭାରତର ପତନ ଘଟିଲା, ତେଣୁ ସ୍ୱାମୀଜୀ, ''ବେଦାନ୍ତ ଓ ଭାରତୀୟ ଜୀବନ'' ବିଷୟ ଉପରେ ଏକ ସୁନ୍ଦର ଓ ହୃଦୟସ୍ପର୍ଶୀ ବକ୍ତବ୍ୟ ପ୍ରଦାନ କରି ମାଡ୍ରାସର ଜନମାନସକୁ ଆଲୋକିତ କରିଦେଲେ - ବେଦାନ୍ତର ଭାବଧାରାକୁ ଅନାବୃତ କରିବାକୁ ହେବ, ପୂର୍ବରୁ ଯେପରି ଅରଣ୍ୟର ଋଷିମୁନିଙ୍କ ନିକଟରେ ଏହା ସୀମିତ ଥିଲା, ଗୁମ୍ଫା ଭିତରେ ସୀମିତ ଥିଲା, ସେପରି ସେଠାରେ କେବଳ ନ ରଖି ଏହାକୁ ଆଇନ୍ ବ୍ୟବସାୟ ଓ ବିଚାରାଳୟ, ଗୀର୍ଜାର ଧର୍ମୋପଦେଶ ପ୍ରଦାନ ସ୍ଥାନ, ଗରିବର କୁଡ଼ିଆ ଭଳି ପ୍ରତ୍ୟେକ ବୃତ୍ତି ଓ ପେସାରେ କାର୍ଯ୍ୟକାରୀ କରିବାକୁ ହେବ; ଯେଉଁ କୈବର୍ତ୍ତ ମାଛ ଧରନ୍ତି,

*Digitized by srujanika@gmail.com*

ଯେଉଁ ଛାତ୍ର ପାଠ ପଢ଼ନ୍ତି, ସେମାନଙ୍କ ନିକଟରେ ବେଦାନ୍ତ ପହଞ୍ଚିବା ଆବଶ୍ୟକ । ଯିଏ ଯେଉଁଠାରେ ଅବସ୍ଥିତ ହେଉପଛକେ, ଯେଉଁ ପେସାରେ ଲିପ୍ତ ଥାଉ ପଛେକେ, ସମସ୍ତଙ୍କୁ ବେଦାନ୍ତ ଗ୍ରହଣ କରେ ! ସେଠାରେ ଭୟ କ'ଣ ?

କୈବର୍ତ୍ତ ଏବଂ ଅନ୍ୟମାନେ ଉପନିଷଦର ଆଦର୍ଶ କିପରି ବହନ କରିପାରିବେ ? ପଥ ପ୍ରଦର୍ଶିତ ହୋଇଛି । ଏହା ଅସୀମ, ଧର୍ମ ଅସୀମ, ଏହାର ବାହାରକୁ କେହି ଯାଇପାରିବେ ନାହିଁ, ଏବଂ ଯାହା ବି ତୁମେ ଆନ୍ତରିକତା ସହ ସମ୍ପାଦନ କର, ତାହା ତୁମପାଇଁ ମଙ୍ଗଳ । ଏପରିକି ନଗଣ୍ୟ ବସ୍ତୁ, ଉତ୍ତମ ଭାବରେ ସମ୍ପାଦିତ ହେଲେ, ଅଦ୍ଭୁତ ଫଳ ମିଳିଥାଏ; ତେଣୁ ଜଣେ ନିଜର ସାମର୍ଥ୍ୟ ଅନୁସାରେ ଛୋଟ କାର୍ଯ୍ୟଟିଏ କରିବାକୁ ଦିଅ । ଯଦି ଜଣେ କୈବର୍ତ୍ତ ନିଜକୁ ଆତ୍ମା ଭାବେ ଚିନ୍ତାକରେ, ସେ ଜଣେ ଉତ୍ତମ କୈବର୍ତ୍ତ ହେବ; ଯଦି ଜଣେ ଛାତ୍ର ନିଜକୁ ଆତ୍ମା ବୋଲି ଭାବେ, ସେ ଜଣେ ଉତ୍ତମ ଛାତ୍ର ହୋଇପାରିବ; ଜଣେ ଓକିଲ ଯଦି ନିଜକୁ ଆତ୍ମା ବୋଲି ଭାବେ, ସେ ଜଣେ ଉତ୍ତମ ଓକିଲ ହୋଇପାରିବ ଏବଂ ଏହିଭଳି ଭାବରେ ପ୍ରତ୍ୟେକ ନିଜକୁ ଆତ୍ମା ବୋଲି ଭାବିପାରିବେ । ଫଳ ସ୍ୱରୂପ, ଜାତି ସବୁଦିନ ପାଇଁ ବିସ୍ମୃତି ଗର୍ଭରେ ଲୀନ ହୋଇଯିବ ।

ବହୁ ଦଳରେ ବିଭକ୍ତ କରିବା ସମାଜର ଏକ ନିୟମ ଏବଂ ଯାହା ପ୍ରଚଳିତ ହେବ ତାହାହିଁ ଏଗୁଡ଼ିକର ସୁବିଧା । ଜାତି ଏକ ପ୍ରାକୃତିକ ଶୃଙ୍ଖଳା; ସାମାଜିକ ଜୀବନରେ ମୁଁ ଗୋଟିଏ କର୍ତ୍ତବ୍ୟ କରିବି ଏବଂ ତୁମେ ଅନ୍ୟ ଗୋଟିଏ କାର୍ଯ୍ୟ କରିବ; ତୁମେ ଗୋଟିଏ ଦେଶକୁ ଶାସନ କରିପାରିବ, ଏବଂ ମୁଁ ହଲେ ପୁରୁଣା ଜୋତା ମରାମତି କରିପାରିବି, କିନ୍ତୁ ତାହାର କାରଣ ନୁହେଁ ଯେ ତୁମେ ମୋଠାରୁ କାହିଁକି ବଡ଼ ହେବ ? ତୁମେ ମୋ ଜୋତା ମରାମତି କରିପାରିବ କି ? ମୁଁ କ'ଣ ଦେଶ ଶାସନ କରିପାରିବି ? ଜୋତା ମରାମତି କାର୍ଯ୍ୟରେ ମୁଁ କୁଶଳୀ, ତୁମେ ବେଦପାଠରେ କୁଶଳୀ, କିନ୍ତୁ ତାହାର କାରଣ ନୁହେଁ ଯେ ତୁମେ ମୋ ମୁଣ୍ଡକୁ ପାଦରେ ଦଳିବ । ଯଦି ଜଣେ ହତ୍ୟା କରିବ, ତାଙ୍କୁ ପ୍ରଶଂସା କରାଯିବା ଉଚିତ କି ? ଏବଂ ଆଉଜଣେ ଯଦି ଚୋରି କରିବ, ତାକୁ ଫାଶି ଦେବା ଉଚିତ କି ? ଏହିସବୁ ମନୋଭାବ ବହିଷ୍କୃତ ହେବା ଉଚିତ । ଜାତି ଭଲ, ଜୀବନର ସମାଧାନ ନିମନ୍ତେ ତାହାହିଁ ଉତ୍ତମ ମାର୍ଗ । ମନୁଷ୍ୟ ନିଜକୁ ଦଳରେ ନିଶ୍ଚିତ ବିଭକ୍ତ କରିବେ, ତୁମେ ସେହି ପ୍ରକ୍ରିୟା ଭିତରୁ ନିଜକୁ ରକ୍ଷା କରିପାରିବ ନାହିଁ । ଯେଉଁଠାକୁ ବି ଯାଅ, ସେଠାରେ ଜାତି ପାଇବ । କିନ୍ତୁ ତାହାର ଅର୍ଥ ନୁହେଁ ଯେ ଏହି ସୁବିଧାଗୁଡ଼ିକ ରହିବ ଏବଂ ସେମାନଙ୍କର ମୁଣ୍ଡକୁ ଫଟାଯିବ । ତୁମେ ଯଦି ଜଣେ କୈବର୍ତ୍ତକୁ ବେଦାନ୍ତ ଶିଖାଇବ, ସେ କହିବ, ''ତୁମ ଭଳି ମୁଁ ବି ଜଣେ ମଣିଷ; ମୁଁ ଜଣେ କୈବର୍ତ୍ତ ହୋଇପାରେ, ତୁମେ ଜଣେ ଦାର୍ଶନିକ ହୋଇପାର, କିନ୍ତୁ ମୋ ଭିତରେ ଯେଉଁ ଈଶ୍ୱର ବିରାଜିତ, ତୁମ ଭିତରେ ସେ ବି ବିରାଜିତ । ଆମେ ତାହାହିଁ ଚାହୁଁ, କାହାରିକୁ କୌଣସି ସ୍ୱତନ୍ତ୍ର ସୁବିଧା ଦିଆଯିବ ନାହିଁ, ସମସ୍ତଙ୍କୁ ସମାନ ସୁଯୋଗ ପ୍ରଦାନ କରାଯିବ; ସମସ୍ତଙ୍କୁ ଶିଖାଇ ଦିଆଯାଉ ଯେ ପ୍ରତ୍ୟେକ ଭିତରେ ଦିବ୍ୟତ୍ୱ ବିଦ୍ୟମାନ ଏବଂ ପ୍ରତ୍ୟେକ ନିଜର ମୁକ୍ତି ପାଇଁ ପ୍ରୟାସ କରିବା ଉଚିତ ।

Digitized by srujanika@gmail.com

- ୫ -

*ଗରିବକୁ ଆଲୋକିତ କର ଏବଂ ଧନୀକୁ ବେଶି ଆଲୋକିତ କର କାରଣ ଗରିବ ଅପେକ୍ଷା ଧନୀ ଅଧିକ ଆଲୋକ ଆବଶ୍ୟକ କରେ । ଅଶିକ୍ଷିତକୁ ଆଲୋକ ଦେଖାଅ, ଶିକ୍ଷିତକୁ ବେଶି ଆଲୋକିତ କର, କାହିଁକିନା ଆମ ସମୟର ଶିକ୍ଷା ନିରର୍ଥକତାଠୁ ବହୁତ ବେଶି । ତେଣୁ ସମସ୍ତଙ୍କ ନିକଟକୁ ଆଲୋକ ନେଇଆସ ଏବଂ ତା'ପରେ ସମସ୍ତ କିଛି ପ୍ରଭୁଙ୍କ ଉପରେ ଛାଡ଼ିଦିଅ ।*

ସ୍ୱାମୀଜୀ ଜଣେ ବିଚକ୍ଷଣ ସମାଜବିତ୍ ସଦୃଶ କହୁଛନ୍ତି ଯେ ସଂସାରରେ ଅସମତା ରହିବ, ବିବିଧତା ରହିବ, ଜାତି ରହିବ । ଏହା ପ୍ରକୃତିର ନିୟମ, ଆଇନ୍ ଦ୍ୱାରା ଏସବୁର ପୂର୍ଣ୍ଣ ବିଲୋପ ହୋଇପାରିବ ନାହିଁ । ତଥାପି ସଚେତନତା ଅଭିଯାନ ମାଧ୍ୟମରେ ମନୁଷ୍ୟର ମନ ଓ ହୃଦୟକୁ ପରିବର୍ତ୍ତନ କରାଯାଇପାରିବ । ସମାଜରେ ମନୁଷ୍ୟ ବିଭିନ୍ନ କାର୍ଯ୍ୟ କରିବ କିନ୍ତୁ ସ୍ୱତନ୍ତ୍ର ସୁବିଧା, ସୁଯୋଗ ଓ ଅଧିକାର କୌଣସି ଗୋଟିଏ ଜାତିକୁ ଦିଆଯିବ ନାହିଁ । ସ୍ୱାମୀଜୀ କହୁଛନ୍ତି : ପ୍ରତ୍ୟେକ ପୁରୁଷ, ମହିଳା ଏବଂ ପ୍ରତ୍ୟେକଙ୍କୁ ବ୍ରହ୍ମ ସ୍ୱରୂପ ଦେଖ । ତୁମେ କାହାକୁ ସାହାଯ୍ୟ କରିପାରିବ ନାହିଁ, ତୁମେ କେବଳ ସେବା କରିପାରିବ । ତୁମ ପାଖରେ ଯଦି ବିଶେଷ ସୁବିଧା ରହିଛି, ବ୍ରହ୍ମଙ୍କର ସନ୍ତାନଗଣକୁ ସେବା କରି ବ୍ରହ୍ମଙ୍କର ସେବା କର । ଯଦି ପ୍ରଭୁ ତୁମକୁ ବର ଦେଇଛନ୍ତି ଯେ ତୁମେ ତାଙ୍କର ସନ୍ତାନଙ୍କର ସେବା କରିବ, ତେବେ ତୁମେ ଆଶିଷପ୍ରାପ୍ତ, ନିଜ ସମ୍ବନ୍ଧରେ ଅତ୍ୟଧିକ ଚିନ୍ତା କରନାହିଁ । ଯେତେବେଳେ ଅନ୍ୟମାନଙ୍କ ପାଖରେ ବିଶେଷ ସୁବିଧା ଓ ଅଧିକାର ନାହିଁ, କିନ୍ତୁ ତୁମ ପାଖରେ ଅଛି, ତେବେ ନିଜକୁ ଧନ୍ୟ ମନେକର, ପୂଜା ଭାବରେ ଏତାଦୃଶ ଅଧିକାର ଓ ସୁବିଧାକୁ ବ୍ୟବହାର କର । ମୁଁ ଗରିବ ଭିତରେ ବ୍ରହ୍ମ ଦେଖିବି, ଏହା ମୋ ପାଇଁ ପରିଣାମ ହେବ ଯେ ମୁଁ ସେମାନଙ୍କ ପାଖକୁ ଯିବି ଓ ସେମାନଙ୍କର ପୂଜା କରିବି । ଗରିବ ଓ ଦୁଃଖିମାନଙ୍କର ଜନ୍ମ ଆମର ମୁକ୍ତି ପାଇଁ । ବ୍ୟାଧିଗ୍ରସ୍ତ, ପାଗଳ, କୁଷ୍ଠରୋଗୀ, ପାପୀ ରୂପରେ ସ୍ୱୟଂ ଈଶ୍ୱର ଆମ ନିକଟକୁ ଆସନ୍ତି । ମୋର ବାକ୍ୟ ସାହସପୂର୍ଣ୍ଣ ; ମୁଁ ଏଠାରେ କଥାକୁ ଦୋହରାଉଛି ଯେ ଆମ ଜୀବନରେ ଏହା ସର୍ବୋଚ୍ଚ ବିଶେଷ ସୁବିଧା ଯେ ଏହିସବୁ ରୂପରେ ବ୍ରହ୍ମଙ୍କର ସେବା କରିବା ନିମନ୍ତେ ଆମକୁ ଅନୁମତି ପ୍ରଦାନ କରାଯାଇଛି । ଅନ୍ୟମାନଙ୍କୁ ଶାସନ କରି ତୁମେ ସେମାନଙ୍କର ମଙ୍ଗଳ କରିବାର ଆଶା ମନରୁ ପୋଛିଦିଅ, କିନ୍ତୁ ବୃକ୍ଷରୋପଣ କ୍ଷେତ୍ରରେ ତୁମେ ଯାହା କର, କେବଳ ଏଠାରେ ତାହା ହିଁ କରିପାରିବ; ଭଲ ମଞ୍ଜି ଯୋଗାଇ ଦେବ - ଏହାର କଳେବର ବୃଦ୍ଧି ପାଇଁ ଅନ୍ୟାନ୍ୟ ବସ୍ତୁ ଯୋଗାଇ ଦେବ - ମାଟି, ପାଣି, ପବନ ଯାହା ଗଛ ଚାହେଁ ବଢ଼ିବାକୁ, ସେସବୁ ତୁମେ ଯୋଗାଇ ଦେବ । କିନ୍ତୁ ନିଜର ପ୍ରକୃତି ଅନୁସାରେ ତୁମର ପ୍ରଦତ୍ତ ଜିନିଷଗୁଡ଼ିକୁ ଏହା ଗ୍ରହଣ କରିବ ଏବଂ ନିଜର ପ୍ରକୃତି ଅନୁସାରେ ଏହାର ବୃଦ୍ଧି ଘଟିବ ।

ସମସ୍ତ ଆଲୋକ ଜଗତକୁ ଦେଖାଅ । ଆଲୋକ, ଆଲୋକ ଆଣ । ପ୍ରତ୍ୟେକ ନିକଟକୁ ଆଲୋକ ଆସୁ । ବ୍ରହ୍ମଙ୍କ ନିକଟରେ ପ୍ରତ୍ୟେକ ଉପନୀତ ହେବା ପର୍ଯ୍ୟନ୍ତ କାର୍ଯ୍ୟ ସରିବ

Digitized by srujanika@gmail.com

ନାହିଁ । ଗରିବକୁ ଆଲୋକିତ କର ଏବଂ ଧନୀକୁ ବେଶି ଆଲୋକିତ କର କାରଣ ଗରିବ ଅପେକ୍ଷା ଧନୀ ଅଧିକ ଆଲୋକ ଆବଶ୍ୟକ କରେ । ଅଶିକ୍ଷିତକୁ ଆଲୋକ ଦେଖାଅ, ଶିକ୍ଷିତକୁ ବେଶି ଆଲୋକିତ କର, କାହିଁକିନା ଆମ ସମୟର ଶିକ୍ଷା ନିରର୍ଥକତାଠୁ ବହୁତ ବେଶି । ତେଣୁ ସମସ୍ତଙ୍କ ନିକଟକୁ ଆଲୋକ ନେଇଆସ ଏବଂ ତା'ପରେ ସମସ୍ତ କିଛି ପ୍ରଭୁଙ୍କ ଉପରେ ଛାଡ଼ିଦିଅ । କାରଣ ପ୍ରଭୁ କହିଛନ୍ତି, "ତୁମର କର୍ମ କରିବାର ଅଧିକାର ରହିଛି, କିନ୍ତୁ ଫଳରେ ନୁହେଁ ।" ତୁମର କର୍ମ ତୁମପାଇଁ ଫଳ ନ ଦେଉ ଏବଂ ତତ୍ ସଙ୍ଗେ ସଙ୍ଗେ ତୁମେ କେତେବେଳେ ବି କର୍ମଶୂନ୍ୟ ହୁଅ ନାହିଁ ।

"ଭାରତର ଭବିଷ୍ୟତ" ଉପରେ ବକ୍ତବ୍ୟ ପ୍ରଦାନ କରି ଉପସ୍ଥିତ ଜନତାଙ୍କ ଶରୀରରେ ସ୍ୱାମୀଜୀ ବିଦ୍ୟୁତ ଖେଳାଇ ଦେଇ କହିଥିଲେ : ବିଶେଷତଃ ମୁଁ କ୍ଷୋଭ ପ୍ରକାଶ କରୁଛି ଯେ ଆଧୁନିକ କାଳରେ ଜାତି ଜାତି ଭିତରେ ଅତ୍ୟଧିକ ଅସନ୍ତୋଷ, ସଂଘର୍ଷ ଓ କଳହ ଲାଗି ରହିଛି । ଏହାର ସମାପ୍ତି ଶୀଘ୍ର ଘଟିବା ଉଚିତ । ଉଭୟ ପକ୍ଷରେ ଏହା ଅସାର ଓ ଅବାନ୍ତର, ବିଶେଷ କରି ଉଚ୍ଚବର୍ଣ୍ଣ ବ୍ରାହ୍ମଣଙ୍କ ପକ୍ଷରେ, କାରଣ ସେମାନଙ୍କର ବିଶେଷ ସୁବିଧା ଓ ଏକାଧିକାର ଦାବୀର ଅନ୍ତ ହେବା ଆବଶ୍ୟକ । ପ୍ରତ୍ୟେକ ଉଚ୍ଚଶ୍ରେଣୀ ବା ଆଭିଜାତ୍ୟ ବର୍ଗଙ୍କର କର୍ତ୍ତବ୍ୟ ହେଉଛି ଯେ ସେମାନେ ନିଜର କବର ଆଜିଠୁଁ ଖୋଳିବା ଉଚିତ, ଯେତେ ଶୀଘ୍ର ସେମାନେ ଏହା କରିବେ, ତାହା ସେତେ ଶୁଭଙ୍କରୀ ହେବ । ଅଧିକ ବିଳମ୍ବ କଲେ, ଏହା ଅଧିକ ତୀକ୍ତତା ଜାତ କରିବ ଏବଂ ସେମାନେ ଅତ୍ୟନ୍ତ ବୀଭତ୍ସ ମୃତ୍ୟୁର ସମ୍ମୁଖୀନ ହେବ । ଏହା ବ୍ରାହ୍ମଣଙ୍କର କର୍ତ୍ତବ୍ୟ ଯେ ଭାରତରେ ଅବଶିଷ୍ଟ ଜନତାଙ୍କର ପରିତ୍ରାଣ ନିମନ୍ତେ କାର୍ଯ୍ୟ କରିବା ଉଚିତ । ଯଦି ବ୍ରାହ୍ମଣମାନେ ଏହା କରନ୍ତି, ଏବଂ ଯେପର୍ଯ୍ୟନ୍ତ ଏତାଦୃଶ କାର୍ଯ୍ୟ ସେମାନେ କରୁଥିବେ, ସେପର୍ଯ୍ୟନ୍ତ ସେ ଜଣେ ପ୍ରକୃତ ବ୍ରାହ୍ମଣ ହୋଇ ରହିବେ । କିନ୍ତୁ ଅର୍ଥ ରୋଜଗାର କର୍ମରେ ସେ ବ୍ୟସ୍ତ ରହିଲେ, ସେ କେବେ ବ୍ରାହ୍ମଣ ପଦବାଚ୍ୟ ହେବେନାହିଁ । ... ଯେଉଁ ବ୍ରାହ୍ମଣ ଧର୍ମରେ ସାଂସାରିକ ବା ପାର୍ଥିବ ବୃତ୍ତି ନାହିଁ, ସେ ବ୍ୟକ୍ତି ହିଁ ପ୍ରକୃତ ବ୍ରାହ୍ମଣ । ପାର୍ଥିବ ବୃତ୍ତି ବ୍ରାହ୍ମଣ ପାଇଁ ନୁହେଁ ବରଂ ଅନ୍ୟଜାତିଙ୍କ ପାଇଁ ଏହା ଉଦ୍ଦିଷ୍ଟ ।

ବ୍ରାହ୍ମଣମାନଙ୍କୁ ମୋର ଗୋଟିଏ ଅନୁରୋଧ ଯେ ସେମାନେ ଯାହା ଜାଣିଛନ୍ତି ଏବଂ ଶତାବ୍ଦୀ ଶତାବ୍ଦୀ ଧରି ଯେଉଁ ସଂସ୍କୃତି ସେମାନେ ସଂଗ୍ରହ କରିଛନ୍ତି; ସେସବୁ ଶିକ୍ଷା ମାଧ୍ୟମରେ ଅନ୍ୟମାନଙ୍କର ଉତ୍ଥାନ ନିମନ୍ତେ ପ୍ରଦାନ କରିବା ଲାଗି କଠୋର ପରିଶ୍ରମ କରିବା ଉଚିତ । 'ପ୍ରକୃତ ବ୍ରାହ୍ମଣତ୍ୱ କ'ଣ' ଭାରତର ବ୍ରାହ୍ମଣ ସ୍ମରଣ ରଖିବା ହିଁ ସେମାନଙ୍କର କର୍ତ୍ତବ୍ୟ । ମନୁ କହନ୍ତି" ଯେହେତୁ ବ୍ରାହ୍ମଣଙ୍କ ପାଖରେ ଗଚ୍ଛିତ ରହିଛି ପୁଣ୍ୟ ଓ ଧର୍ମର ଭଣ୍ଡାର ସେଥିପାଇଁ ଏହିସବୁ ସୁବିଧା, ଅଧିକାର ଓ ସମ୍ମାନ ସେମାନଙ୍କୁ ପ୍ରଦାନ କରାଯାଇଛି । ବ୍ରାହ୍ମଣ ଏହି ଭଣ୍ଡାରକୁ ଉନ୍ମୁକ୍ତ କରି ଏହା ଭିତରେ ଗଚ୍ଛିତ ବହୁମୂଲ୍ୟ ଜ୍ଞାନକୁ ବିଶ୍ୱରେ ବାଣ୍ଟିଦେବା ଉଚିତ । ଏହା ସତ୍ୟ ଯେ ବ୍ରାହ୍ମଣ ହିଁ ପ୍ରଥମେ ଭାରତୀୟ ଜାତିର ପ୍ରଚାରକ, ସେ ହିଁ ପ୍ରଥମ ବ୍ୟକ୍ତି ଯିଏ ମାନବ ଜୀବନର ଉଚ୍ଚତର ଉପଲବ୍ଧି ଲାଭ ନିମନ୍ତେ ସଂସାରର ସମସ୍ତ ବସ୍ତୁ ତ୍ୟାଗ କରିଥିଲେ । ଅନ୍ୟମାନେ ଏହି ଭାବଧାରାର ବଶବର୍ତ୍ତୀ ହେବା ପୂର୍ବରୁ ବ୍ରାହ୍ମଣ ପ୍ରଥମେ ଏହି ପଥ ଅନୁସରଣ କରିଥିଲେ । ଅନ୍ୟ

Digitized by srujanika@gmail.com

ଜାତିମାନଙ୍କୁ ଅତିକ୍ରମ କରି ସେ ଆଗକୁ ଯାଇ ପାରିଥିଲେ ବୋଲି ଏହା ତାଙ୍କର ଭୁଲ ନ ଥିଲା । ଅନ୍ୟ ଜାତି ଏହାକୁ କାହିଁକି ବୁଝି ନ ଥିଲେ ଏବଂ ଏହି ମାର୍ଗରେ କାହିଁକି ଯାଇ ନ ଥିଲେ ? ସେମାନେ ନିରବରେ ସେତେବେଳେ କାହିଁକି ଆଳସ୍ୟରେ ବସି ରହିଥିଲେ ? ତେଣୁ ଜାତି ଉପରେ ବ୍ରାହ୍ମଣ ବିଜୟ ଲାଭ କରୁ ।

କିନ୍ତୁ ଗୋଟିଏ ବିଶେଷ ସୁବିଧା ପାଇବା ପାଇଁ ଏହା ଏକ ଦିଗ ଏବଂ ମନ୍ଦ ସକାସେ ଏହାକୁ ବ୍ୟବହାର ଲାଗି ସାଇତି ରଖିବା ଅନ୍ୟ ଏକ ଦିଗ । ମନ୍ଦ ପାଇଁ ଶକ୍ତି ବ୍ୟବହୃତ ହେଲେ, ଏହା ଅତ୍ୟନ୍ତ ଦାନବୀୟ ହୋଇଯାଏ । ଏହା ଭଲ ପାଇଁ କେବଳ ବ୍ୟବହୃତ ହେବା ନିଶ୍ଚିତ । ସୁତରାଂ ଆବହମାନ କାଳରୁ ଯେଉଁ ସଂସ୍କୃତିକୁ ବ୍ରାହ୍ମଣ ଟ୍ରଷ୍ଟିଭାବରେ ସାଇତି ରଖିଛି, ବର୍ତ୍ତମାନ ତାହା ସେ ବହୁଜନଙ୍କୁ ପ୍ରଦାନ କରିବା ବିଧେୟ । ଯେହେତୁ ସେ ପୂର୍ବରୁ ଏହାକୁ ବହୁଜନଙ୍କ ଭିତରେ ବିତରଣ କରିପାରି ନ ଥିଲା, ତେଣୁ ମୁସଲମାନଙ୍କର ଆକ୍ରମଣ ସମ୍ଭବ ହୋଇଥିଲା ସ୍ୱାମୀଜୀ ଅତି କଠୋର ଭାଷାରେ ଉପସ୍ଥିତ ଜନତାଙ୍କୁ ସ୍ମରଣ କରାଇ ଦେଇ କହିଲେ ''ମୁସଲମାନଙ୍କର ଭାରତ ଉପରେ ବିଜୟ ନିସ୍ପେଷିତ ଓ ନିଃସ୍ୱମାନଙ୍କ ପରିତ୍ରାଣ ବା ମୁକ୍ତି ଥିଲା । ସେଥିପାଇଁ ଆମ ଦେଶର ଏକ ପଞ୍ଚମାଂଶ ଜନତା ମୁସଲମାନ ହୋଇଯାଇଛନ୍ତି । ତରବାରି ଦ୍ୱାରା ସେମାନେ ମୁସଲମାନ ହୋଇ ନ ଥିଲେ । ତରବାରି ଓ ଗୋଳାବର୍ଷଣ ଦ୍ୱାରା ଏହି ଧର୍ମାନ୍ତରୀକରଣ ସମ୍ପାଦିତ ହୋଇଥିଲା ବୋଲି ଭାବିବା ପାଗଳର ପ୍ରଳାପ ବ୍ୟତୀତ କିଛି ନୁହେଁ ।''

- ୬ -

*ଚଣ୍ଡାଳକୁ ବ୍ରାହ୍ମଣରେ ଉନ୍ନୀତ କରିବା ମୋ ଯୋଜନାର ଲକ୍ଷ୍ୟ । ଧୀରେ ଧୀରେ ଅଧିକରୁ ଅଧିକ ସ୍ୱତନ୍ତ୍ର ସୁବିଧା ଓ ଅଧିକାର ସେମାନଙ୍କୁ ପ୍ରଦାନ କର । ଆମ ଦେଶରେ କେତେକ ଶାସ୍ତ୍ର ରହିଛି ଯାହାର ଭାଷା ଅତୀବ ଭୟଙ୍କର : ଯଦି ଶୂଦ୍ର ବେଦ ପଠନ କରେ, ତେବେ ତା'ର କାନରେ ତରଳ ତମ୍ବା ଢାଳି ଦିଅ; ଏବଂ ଯଦି ବେଦର ଗୋଟିଏ ଧାଡ଼ି ସେ ଆବୃତି କରେ, ତେବେ ତାହାର ଜିଭ କାଟି ଫିଙ୍ଗି ଦିଅ ।'' ଏହା ନିଶ୍ଚିତ ଭାବରେ ଦାନବୀୟ ପୁରାତନ ବର୍ବରତା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।*

ଏଠାରେ ସ୍ୱାମୀଜୀଙ୍କ ମନ ବିଦ୍ରୋହାଗ୍ନିରେ ଜଳି ଉଠିଲା । ଭାରତର ବିଶେଷ କରି ମାଲବାର ରାଜ୍ୟରେ ଉଚ୍ଚବର୍ଗଙ୍କ ଦ୍ୱାରା ଗରିବ ଓ ନିଚ୍ଚ ଜାତିଙ୍କ ପ୍ରତି ହେଉଥିବା ଅତ୍ୟାଚାର ଓ ବିଦ୍ୱେଷ ମନୋଭାବକୁ ତୀବ୍ର ସମାଲୋଚନା କରି ଜନ ସମୁଦ୍ରଙ୍କ ସମ୍ମୁଖରେ ଅଗ୍ନିବର୍ଷୀ ଭାଷାରେ କହି ଉଠିଲେ, ''ଭ୍ରାତାଗଣ, ମନେରଖ ସେହି ଇଂରାଜୀ ପ୍ରବାଦ : ପ୍ରତ୍ୟେକ ମନୁଷ୍ୟକୁ ତା'ର ନ୍ୟାଯ୍ୟ ଭାଗ ପ୍ରଦାନ କର ।'' ବନ୍ଧୁଗଣ, ଜାତିଜାତି ଭିତରେ ସଂଘର୍ଷ ଓ କଳହ କରି କିଛି ଲାଭ ନାହିଁ । ଏହା ଆମକୁ କେଉଁ ସୁଫଳ ପ୍ରଦାନ କରିବ ? ବରଂ ଆମ ଭିତରେ ଆହୁରି ବିଭେଦ ସୃଷ୍ଟି

Digitized by srujanika@gmail.com

କରିବ, ଆମକୁ ଦୁର୍ବଳ କରିଦେବ, ଆମକୁ ଅଧଃପତିତ କରିଦେବ । ସ୍ୱତନ୍ତ୍ର ସୁବିଧା ଓ ଏକାଧିକାର ଦାବୀର ଦିନ ଆଜି ଭାରତବର୍ଷରୁ ଶେଷ ହୋଇଛି ।

... ମୁଁ ତୁମକୁ ସତର୍କ କରାଇ ଦେଇଛି - ଯଦି ମୋ କଥାରେ ତୁମ ମାନଙ୍କର ଆଖି ନ ଖୋଲେ, ତେବେ ମାଡ୍ରାସର ଏକ ପଞ୍ଚମାଂଶ - କିମ୍ୱା ଅର୍ଦ୍ଧେକ ଜନତା ଖ୍ରୀଷ୍ଟିୟାନ ହୋଇଯିବେ । ବିଶ୍ୱରେ ଏଭଳି ତୁଚ୍ଛ ଘଟଣା ମୁଁ ଦେଖି ନାହିଁ ଯାହା ମାଲବାର ରାଜ୍ୟରେ ଦେଖିଲି । ଯେଉଁ ରାସ୍ତାରେ ଉଚ୍ଚବର୍ଗର ଲୋକେ ଯାତାୟାତ କରନ୍ତି, ସେହି ପଥରେ ମେହେନ୍ତରକୁ ଯିବା ପାଇଁ ଅନୁମତି ଦିଆଯାଏ ନାହିଁ । କିନ୍ତୁ ଜଣେ ମେହେନ୍ତର ଖ୍ରୀଷ୍ଟିୟାନ ହୋଇଗଲେ ତା'ର ନାଁ ଯଦି ଇଂରାଜୀ ନାଁକୁ ପରିବର୍ତ୍ତିତ କରିଦିଏ, କିମ୍ୱା ଇସ୍‌ଲାମ୍ ଧର୍ମ ଗ୍ରହଣ କରି ମୁସଲମାନ ନାମ ଆପଣେଇ ନିଏ ତେବେ ତୁମେ ହିନ୍ଦୁମାନେ ତାଙ୍କୁ ସମ୍ମାନ ଦେବ । ମାଲବାରର ଲୋକେ ପାଗଳ, ସେମାନଙ୍କର ଘରକୁ ପାଗଳଖାନା ବ୍ୟତୀତ ତୁମେ କ'ଣ ବା ଆଉ ଭାବି ପାରିବ ? ... ଧିକ୍ ସେମାନଙ୍କର ଦୁଷ୍ଟ ଓ ଦାନବୀୟ ପ୍ରଥାକୁ; ସେମାନଙ୍କ ପିଲାମାନେ ଭୋକ ଉପାସରେ ମୃତ୍ୟୁବରଣ କରୁଛନ୍ତି, କିନ୍ତୁ ଯେତେବେଳେ ଅନ୍ୟଧର୍ମ ଗ୍ରହଣ କରନ୍ତି, ସେମାନେ ଅନାହାରରୁ ବର୍ତ୍ତିଯାଆନ୍ତି । ଭାଇମାନେ ଜାତି ଜାତି ଭିତରେ ଲଢ଼ାଇ ବନ୍ଦ କରିବାକୁ ହେବ ।

ସ୍ୱାମୀଜୀ ପୁନର୍ବାର କହୁଛନ୍ତି : ମୁଁ କହୁନାହିଁ ଯେ ଉଚ୍ଚବର୍ଗକୁ ନିମ୍ନସ୍ତରକୁ ନେଇ ଆସିଲେ ସମସ୍ୟାର ସମାଧାନ ହୋଇଯିବ । କିନ୍ତୁ ନିମ୍ନବର୍ଗଙ୍କୁ ଉଚ୍ଚବର୍ଗ ସ୍ତରକୁ ଉନ୍ନୀତ କରିବାକୁ ହେବ । ଆମ ଶାସ୍ତ୍ରରେ ତାହା ହିଁ ଲେଖାଯାଇଛି । ମୋର ଗୋଟିଏ ଯୋଜନା ରହିଛି । ଗୋଟିଏ ପାର୍ଶ୍ୱରେ ବ୍ରାହ୍ମଣ, ଅନ୍ୟ ପାର୍ଶ୍ୱରେ ଚଣ୍ଡାଳ । ଚଣ୍ଡାଳକୁ ବ୍ରାହ୍ମଣରେ ଉନ୍ନୀତ କରିବା ମୋ ଯୋଜନାର ଲକ୍ଷ୍ୟ । ଧୀରେ ଧୀରେ ଅଧିକରୁ ଅଧିକ ସ୍ୱତନ୍ତ୍ର ସୁବିଧା ଓ ଅଧିକାର ସେମାନଙ୍କୁ ପ୍ରଦାନ କର । ଆମ ଦେଶରେ କେତେକ ଶାସ୍ତ୍ର ରହିଛି ଯାହାର ଭାଷା ଅତୀବ ଭୟଙ୍କର : ଯଦି ଶୂଦ୍ର ବେଦ ପଠନ କରେ, ତେବେ ତା'ର କାନରେ ତରଳ ତମ୍ବା ଢାଳି ଦିଅ; ଏବଂ ଯଦି ବେଦର ଗୋଟିଏ ଧାଡ଼ି ସେ ଆବୃତି କରେ, ତେବେ ତାହାର ଜିଭ କାଟି ଫିଙ୍ଗି ଦିଅ ।'' ଏହା ନିଶ୍ଚିତ ଭାବରେ ଦାନବୀୟ ପୁରାତନ ବର୍ବରତା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏହା ଲୋକକଥା, ନିୟମ ପ୍ରବ୍ରତ୍ତକମାନଙ୍କୁ ଦୋଷ ଦିଅନାହିଁ, ସେମାନେ ସମାଜର କେତେକାଂଶରେ ପ୍ରଚଳିତ ଲୋକକଥାକୁ ଲିପିବଦ୍ଧ କରିଛନ୍ତି । ଏଭଳି ସୈତାନ ପ୍ରାଚୀନ କାଳରେ ବି ମୁଣ୍ଡ ଟେକିଥିଲା । ସବୁ ଯୁଗରେ ଏତାଦୃଶ ସୈତାନ ବା ରାକ୍ଷସ ବେଳେ ବେଳେ କମ୍ ଓ ବେଶି ସବୁ ସ୍ଥାନରେ ଆବିର୍ଭାବ ହୁଅନ୍ତି ।

ପରବର୍ତ୍ତୀ ସମୟରେ ସେମାନଙ୍କର ଭାଷାର ସ୍ୱର ସାମାନ୍ୟ ସଂଶୋଧିତ ହୋଇଥିଲା ବୋଲି ତୁମେ ଦେଖିବାକୁ ପାଇବ । ଉଦାହରଣ ସ୍ୱରୂପ : ''ଶୂଦ୍ରମାନଙ୍କୁ ବିବ୍ରତ କରନାହିଁ, କିନ୍ତୁ ସେମାନଙ୍କୁ ଉଚ୍ଚତମ ଜ୍ଞାନ ପ୍ରଦାନ କରନାହିଁ '' ତତ୍‌ପଶ୍ଚାତେ ଆମେ ଅନ୍ୟ ସ୍ମୃତିରେ ଦେଖିବାକୁ ପାଇବା ଯେ ''ଯଦି ଶୂଦ୍ରମାନେ ବ୍ରାହ୍ମଣଙ୍କର ଆଚରଣ ଓ ପ୍ରଥାକୁ ଅନୁକରଣ କରନ୍ତି, ତେବେ ସେମାନଙ୍କୁ ଉତ୍ସାହିତ କର ।'' ଏଭଳି ଭାବରେ ଚାଲିଛି । ମୋର ଏତେକଥା କହିବାକୁ ଏଠାରେ ସମୟ ନାହିଁ । କିନ୍ତୁ ଗୋଟିଏ କଥା କହିବି ଯେ ସବୁ ଜାତିଗୁଡ଼ିକୁ ଧୀରେ ଧୀରେ ବିକଶିତ କରିବାକୁ ହେବ । ହଜାର ହଜାର ଜାତି ରହିଛି ଏବଂ ସେମାନଙ୍କ ମଧ୍ୟରୁ

Digitized by srujanika@gmail.com

କେତେକ ବ୍ରାହ୍ମଣତ୍ୱରେ ପ୍ରବେଶ କରୁଛନ୍ତି, ଯିଏ ଯେଉଁ ଜାତିର ବ୍ୟକ୍ତି ହେଉଥାନ୍ତୁ, ତାଙ୍କୁ ଆମେ ବ୍ରାହ୍ମଣଭାବେ କାହିଁକି ଘୋଷଣା ନ କରିବା ? ଜାତି, ତା'ର ନିଜର ପରିଶ୍ରମ ଯୋଗୁଁ ଏହିଭଳି ଭାବରେ ସୃଷ୍ଟି ହୋଇଛି । ମନେକରାଯାଉ, ଏଠାରେ କେତେକ ଜାତି ରହିଛି ଏବଂ ପ୍ରତ୍ୟେକ ଜାତିରେ ଦଶହଜାର ଲେଖାଏଁ ଲୋକ ରହିଛନ୍ତି । ସେମାନେ ଯଦି ଏକ ହୋଇ ସମସ୍ୱରରେ କହିବେ, ''ଆମେ ସମସ୍ତେ ଆଜିଠାରୁ ବ୍ରାହ୍ମଣ'' ସେମାନଙ୍କୁ କୌଣସି ଶକ୍ତି ବାଧା ଦେଇପାରିବ ନାହିଁ; ମୁଁ ଏହା ନିଜ ଆଖିରେ ଦେଖିଛି ।

କେତେକ ଜାତି ଯଦି ଖୁବ୍ ବଳଶାଳୀ ହୋଇଯିବେ ଏବଂ ସମସ୍ୱରରେ ଏକମତ ହେବେ, ସେମାନଙ୍କୁ କିଏ ନାହିଁ କରିବ ? କାରଣ ଏହା ଯାହା ବି ହୋଇଥାଉ ପଛକେ, ପ୍ରତ୍ୟେକ ଜାତି ଅନ୍ୟ ଜାତିଠାରୁ ବିଶେଷ ଭାବରେ ପୃଥକ । ଗୋଟିଏ ଜାତି ଅନ୍ୟ ଜାତି କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରୁ ନଥିଲେ, ଏପରିକି ଗୋଟିଏ ଜାତି ଭିତରେ ଅନେକ ଉପଜାତି ରହିଛନ୍ତି, କେହି କାହା କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରନ୍ତି ନାହିଁ । ଶଙ୍କରାଚାର୍ଯ୍ୟ ଓ ଅନ୍ୟାନ୍ୟ ବିଖ୍ୟାତ ମହାନ୍ ବ୍ୟକ୍ତିଗଣ ଥିଲେ ଜାତିସ୍ରଷ୍ଟା ସେମାନେ ଯେଉଁ ଅଦ୍ଭୁତ କଥା ଅତିରଞ୍ଜିତ କରି କହିଥିଲେ, ସେଗୁଡ଼ିକ ତୁମକୁ ମୁଁ କହିପାରିବି ନାହିଁ, କହିଲେ ମଧ ତୁମମାନଙ୍କ ଭିତରୁ କେତେଜଣଙ୍କୁ ଭଲ ଲାଗିବ ନାହିଁ । କିନ୍ତୁ ମୋର ଭ୍ରମଣ ଓ ଅଭିଜ୍ଞତା ଦ୍ୱାରା କେତେକ ବ୍ୟକ୍ତିକୁ ମୁଁ ଠାବ କରି ଏକ ଅଦ୍ଭୁତ ସିଦ୍ଧାନ୍ତରେ ଉପନୀତ ହୋଇଛି, ଯିଏ ବେଲୁଚିର ଦଳ ଦଳ ଲୋକଙ୍କୁ ଅତୀତରେ କ୍ଷତ୍ରିୟ କରିଦେଇ ଥିଲେ । ସେମାନେ କେତେକ କୈବର୍ତ୍ତଙ୍କୁ ମଧ ବ୍ରାହ୍ମଣ କରିଦେଇଥିଲେ । ସେମାନେ ଥିଲେ ମହାନ୍ ଋଷି ଓ ମୁନି, ଆଜି ସେମାନଙ୍କ ସ୍ମୃତିରେ ଆମେ ପ୍ରଣାମ କରୁଛୁ ।

- ୭ -

*ଏହି ଭାରତମାତା ଆମର ମହାନ୍ ଦେବୀ, ବର୍ତ୍ତମାନ ପାଇଁ ଅନ୍ତତଃପକ୍ଷେ ସବୁ ଅନାବଶ୍ୟକ ଦେବତା ଆମ ମନରୁ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ଏହାହିଁ ଆମର ଏକମାତ୍ର ଈଶ୍ୱର, ଯିଏ ସଚେତନ, ସେ ହିଁ ଆମର ଜାତି, ସର୍ବସ୍ଥାନରେ ତାଙ୍କର ହସ୍ତ, ସର୍ବସ୍ଥାନରେ ତାଙ୍କର ପାଦ, ସର୍ବସ୍ଥାନରେ ତାଙ୍କର କର୍ଣ୍ଣ, ସେ ସବୁକିଛି ଆବୃତ କରି ରଖିଛନ୍ତି । ଅନ୍ୟ ସମସ୍ତ ଦେବତା ବର୍ତ୍ତମାନ ସୁପ୍ତ । ଏହିସବୁ ଦେବତାଙ୍କ ପଶ୍ଚାତରେ ଧାବନ କରି ଆମର କି ଲାଭ ? ଯେଉଁ ଈଶ୍ୱର ଆମ ଚତୁଃପାର୍ଶ୍ୱରେ ବିରାଜିତ, ତାଙ୍କର ତ ଆମେ ଉପାସନା କରୁନାହାଁନ୍ତି ? ସେ ହେଉଛନ୍ତି ବିରାଟ ।*

ସୁତରାଂ ତୁମେମାନେ ଋଷି ଓ ମୁନି ହୁଅ । ତାହା ହିଁ ଗୋପନୀୟତା । ଅଳ୍ପ ବହୁତେ ଆମେ ଋଷି ହେବା । ଋଷିର ଅର୍ଥ କ'ଣ ? ପବିତ୍ର ବ୍ୟକ୍ତି । ପ୍ରଥମେ ଶୁଦ୍ଧ ହୁଅ, ତା'ପରେ ତୁମେ ଶକ୍ତି ଲାଭ କରିବ । ଖାଲି କଥାରେ କହିଲେ, 'ମୁଁ ଜଣେ ଋଷି', ତାହା ହେବ ନାହିଁ । କିନ୍ତୁ ତୁମେ

Digitized by srujanika@gmail.com

ଯେତେବେଳେ ଜଣେ ଋଷି ହେବ, ସେତେବେଳେ ଅନ୍ୟମାନେ ତୁମକୁ ପ୍ରବୃତ୍ତିଗତ ଭାବରେ ଅନୁସରଣ କରିବେ । ଏକପ୍ରକାର ରହସ୍ୟଜନକ ଶକ୍ତି ଯେତେବେଳେ ତୁମଠାରୁ ନିର୍ଗତ ହେବ, ଯାହା ଅନ୍ୟମାନଙ୍କୁ ଅନୁସରଣ କରିବା ନିମନ୍ତେ ପ୍ରବର୍ତ୍ତାଇବ, ତୁମର ବାଣୀ ସେମାନେ ଶ୍ରବଣ କରିବେ, ତୁମର ଲକ୍ଷ୍ୟ ପଶ୍ଚାତରେ ଅଲକ୍ଷ୍ୟରେ ଧାବିତ ହେବେ । ଏହା ହିଁ ଋଷିତ୍ୱ ।'' ସ୍ୱାମୀଜୀ ଏହି କଥା କହି ଏଠାରେ ସୂଚାଇ ଦେଲେ ଯେ ଯେକୌଣସି ବ୍ୟକ୍ତି, ଯେଉଁ ଜାତିର ସେ ହେଇଥାଉ ପଛକେ, ଶୁଦ୍ଧତା ନିଶ୍ଚିତ ଭାବରେ ତାଙ୍କୁ ଋଷିରେ ରୂପାନ୍ତରିତ କରିପାରିବ । ଜାତିପ୍ରଥା ଭୁଲିଯାଇ, ସମସ୍ତ ଜନତାଙ୍କ ସେବାରେ କାୟମନୋବାକ୍ୟରେ ପ୍ରତ୍ୟେକ ଭାରତୀୟ ନିଜକୁ ସମର୍ପଣ କରିବା ନିମନ୍ତେ ସ୍ୱାମୀଜୀଙ୍କର ଏହା ଥିଲା ଆହ୍ୱାନ ।

ଋକ୍ ବେଦରୁ ଗୋଟିଏ ମନ୍ତ୍ର ଆବୃତ୍ତି କରି ସ୍ୱାମୀଜୀ କହିଲେ, ''ତୁମ ସମସ୍ତଙ୍କର ଏକ ମନ ହେଉ; ଗୋଟିଏ ଭାବଧାରା ହେଉ, ପ୍ରାଚୀନ କାଳରେ ଦେବଗଣ ଏକ ମନ ହୋଇ ଆହୁତି ଗ୍ରହଣ କରୁଥିଲେ,'' ସ୍ୱାମୀଜୀଙ୍କର ଏଠାରେ କହିବାର ଉଦ୍ଦେଶ୍ୟ ଯେ ମଣିଷ ଏକ ମନ ହେଲେ, ଏକ ଇଚ୍ଛାଶକ୍ତି ଜାଗ୍ରତ ହୁଏ, ଇଚ୍ଛା ହିଁ ଶକ୍ତି । ଦୃଢ଼ ଇଚ୍ଛାଶକ୍ତିର ମାନବ ନିଜ ଚତୁଃପାର୍ଶ୍ୱରେ ଉଜ୍ଜ୍ୱଳ ଆଲୋକ ବିଚ୍ଛୁରିତ କରିଥାଏ, ଯଦ୍ଦ୍ୱାରା ଅନ୍ୟ ବ୍ୟକ୍ତିମାନଙ୍କୁ ନିଜର ପ୍ରକମ୍ପିତ ଅବସ୍ଥାକୁ ଆକର୍ଷଣ କରିଥାଏ । ଏଭଳି ବିଶାଳ ଇଚ୍ଛା ଶକ୍ତିର ମଣିଷମାନଙ୍କର ଆବିର୍ଭାବ ଘଟୁ । ଏହି ଭାବଧାରା କ'ଣ ? ଯେତେବେଳେ ଜଣେ ଶକ୍ତିଶାଳୀ ବ୍ୟକ୍ତିର ଆବିର୍ଭାବ ଘଟେ, ତାଙ୍କର ଚିନ୍ତାଧାରା ଆମ ଭିତରେ ପ୍ରବେଶ କରେ ଏବଂ ଆମ ଭିତରୁ ଅଧିକାଂଶ ଲୋକ ତାଙ୍କଭଳି ଚିନ୍ତାଧାରାରେ ଉଦ୍‌ଭାସିତ ହୁଅନ୍ତି, ତେଣୁ ସେତେବେଳେ ଆମେ ଶକ୍ତିଶାଳୀ ହୋଇଉଠିବା । ସେଥିପାଇଁ ସଂଗଠନଗୁଡ଼ିକ କାହିଁକି ବଳଶାଳୀ ହୋଇପାରନ୍ତି ? ସଂଗଠନ ଭୌତିକ ବୋଲି କୁହ ନାହିଁ ? କାହିଁକି କହିବ ନାହିଁ ? ଉଦାହରଣ ସ୍ୱରୂପ : ଚାରିକୋଟି ଇଂରାଜୀ ତିରିଶକୋଟି ଜନତାଙ୍କୁ ଏଠାରେ ଶାସନ କରୁଛନ୍ତି କାହିଁକି ? ଏହାର ମନସ୍ତାତ୍ତ୍ୱିକ ଉତ୍ତର କ'ଣ ? ଏହି ଚାରିକୋଟି ଜନତାଙ୍କର ଇଚ୍ଛା ଏଠାରେ ଏକୀଭୂତ, ତା'ର ଅର୍ଥ ଅସୀମ ଶକ୍ତି, ଏବଂ ତୁମେ ତିରିଶ କୋଟି ଲୋକଙ୍କର ଇଚ୍ଛା ପରସ୍ପରଠାରୁ ପୃଥକ୍, ସୁତରାଂ ଭାରତ ତା'ର ଭବିଷ୍ୟତ ମହାନ୍ କରି ଗଢ଼ି ତୋଳିବାକୁ ହେଲେ ତୁମମାନଙ୍କୁ ସଂଗଠିତ ହେବାକୁ ପଡ଼ିବ, ଶକ୍ତିକୁ ଠୁଳ କରିବାକୁ ପଡ଼ିବ, ଏବଂ ଇଚ୍ଛାଶକ୍ତିର ସମନ୍ୱୟ କରିବାକୁ ହେବ... । ସେଥିପାଇଁ ଆଗାମୀ ପଚାଶବର୍ଷ ନିମନ୍ତେ ଆମର ଏକମାତ୍ର ମୂଳସ୍ୱର ହେବା ଉଚିତ - ଏହି ଭାରତମାତା ଆମର ମହାନ୍ ଦେବୀ, ବର୍ତ୍ତମାନ ପାଇଁ ଅନ୍ତଃତପକ୍ଷେ ସବୁ ଅନାବଶ୍ୟକ ଦେବତା ଆମ ମନରୁ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ଏହାହିଁ ଆମର ଏକମାତ୍ର ଈଶ୍ୱର, ଯିଏ ସଚେତନ, ସେ ହିଁ ଆମର ଜାତି, ସର୍ବସ୍ଥାନରେ ତାଙ୍କର ହସ୍ତ, ସର୍ବସ୍ଥାନରେ ତାଙ୍କର ପାଦ, ସର୍ବସ୍ଥାନରେ ତାଙ୍କର କର୍ଣ୍ଣ, ସେ ସବୁକିଛି ଆବୃତ କରି ରଖିଛନ୍ତି । ଅନ୍ୟ ସମସ୍ତ ଦେବତା ବର୍ତ୍ତମାନ ସୁପ୍ତ । ଏହିସବୁ ଦେବତାଙ୍କ ପଶ୍ଚାଦ୍‌ରେ ଧାବନ କରି ଆମର କି ଲାଭ ? ଯେଉଁ ଈଶ୍ୱର ଆମ ଚତୁଃପାର୍ଶ୍ୱରେ ବିରାଜିତ, ତାଙ୍କର ତ ଆମେ ଉପାସନା କରୁନାହାଁନ୍ତି ? ସେ ହେଉଛନ୍ତି ବିରାଟ ।

ବର୍ତ୍ତମାନର ଆବଶ୍ୟକତା ହିଁ ଚିତ୍ତଶୁଦ୍ଧି, ଅର୍ଥାତ୍ ହୃଦୟକୁ ପବିତ୍ର କରିବା । ତାହା କିପରି ହେବ ? ସବୁ ଉପାସନାର ପ୍ରଥମ ଉପାସନା ହେଉଛି ବିରାଟଙ୍କର ଉପାସନା - ଯେଉଁମାନେ

Digitized by srujanika@gmail.com

ଆମ ଚତୁଃପାର୍ଶ୍ୱରେ ବିରାଜିତ । ଏହାଙ୍କୁ ଉପାସନା କର, ପୂଜା କର... । ମନୁଷ୍ୟ ଓ ପଶୁ - ସମସ୍ତେ ଆମର ଦେବତା ଏବଂ ଆମେ ଯେଉଁ ପ୍ରଥମ ଈଶ୍ୱରଙ୍କୁ ପୂଜା କରିବା ସେ ହିଁ ହେଉଛନ୍ତି ଆମର ଦେଶବାସୀ । ପରସ୍ପର ପ୍ରତି ଈର୍ଷାଭାବ ନରଖି ଏବଂ ପରସ୍ପର ଭିତରେ ଲଢ଼ାଇ ନ କରି ଆମେ ଏହିମାନଙ୍କୁ ପୂଜା କରିବା ଉଚିତ ।

ଦେଶଭକ୍ତିର ସୀମା ସ୍ୱାମୀଜୀଙ୍କ ନିକଟରେ ହାର ମାନିଥିଲା । ଜାତି ପ୍ରଥାର ଉତ୍କଟ ବିଷ ପାନ କରି ଭାରତୀୟ ମାନେ ଯେ କୁମ୍ଭକର୍ଣ୍ଣ ନିଦ୍ରାରେ ଶୟନରତ ସେ ହାଡ଼େ ହାଡ଼େ ଅନୁଭବ କରିଥିଲେ । ସେଥିପାଇଁ ସ୍ୱାମୀଜୀ ଭାରତୀୟଙ୍କ କାନରେ ପ୍ରାଚୀନ ଋଷିଙ୍କର ସଞ୍ଜିବନୀ ମନ୍ତ୍ର ଉଚ୍ଚାରଣ କରି ସେମାନଙ୍କର ନିଦ୍ରାଭଙ୍ଗ କରିବାକୁ ଚେଷ୍ଟା କଲେ । ସ୍ୱାମୀଜୀଙ୍କର ଏତାଦୃଶ ଦେଶଭକ୍ତିକୁ କେହି ଏକ ସଂକୁଚିତ ଦୃଷ୍ଟିକୋଣ ସଦୃଶ ଭାବିବା ଉଚିତ ନୁହେଁ । କାରଣ ତାଙ୍କଭଳି ଏକ ବିଶ୍ୱ ନାଗରିକ ଏହି ଆଧୁନିକ କାଳରେ ଜନ୍ମ ହୋଇନାହାନ୍ତି । ବିଶ୍ୱରେ ଶାନ୍ତି ଓ ମୈତ୍ରୀର ବିଜୟ ଝଣ୍ଡା ଉଡ଼ାଇବାକୁ ତାଙ୍କର ଲକ୍ଷ୍ୟ । ବିଶ୍ୱବାସୀଙ୍କୁ, ବିଭିନ୍ନ ଧର୍ମ ଓ ସଂପ୍ରଦାୟ ସତ୍ତ୍ୱେ, ଏକଜୁଟ କରିପାରିବ ବେଦାନ୍ତ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ଏହି ବେଦାନ୍ତକୁ ଗୋଟିଏ ବିବେକାନନ୍ଦ ସମଗ୍ର ବିଶ୍ୱରେ ପ୍ରଚାର ଓ ପ୍ରସାର କରିପାରିବେ ନାହିଁ । ତାଙ୍କର କାର୍ଯ୍ୟଭାର ଗ୍ରହଣ କରିବା ପାଇଁ ଭାରତୀୟ ଦରକାର । ଭାରତୀୟମାନଙ୍କର ନିଦ୍ରାଭଙ୍ଗ ହେଲେ, ସେମାନେ ପ୍ରାଚୀନ ବେଦାନ୍ତର ଗୂଢ଼ତତ୍ତ୍ୱ ବୁଝିପାରିବେ । ସେମାନେ ଦଳ ଦଳ ହୋଇ ବିଦେଶ ଯାତ୍ରା କରିବେ ଏବଂ ବେଦାନ୍ତର ଶିକ୍ଷା ପ୍ରଦାନ କରିବେ ଏବଂ ପ୍ରତିବଦଳରେ ସେମାନେ ନେଇଆସିବେ ପାଶ୍ଚାତ୍ୟ ଦେଶର ବିଜ୍ଞାନ ଓ ଭୌତିକ ଅଗ୍ରଗତିର ବୀଜ ଯାହା ଏଠାରେ ସେମାନେ ବପନ କରିବେ । ଯଦି ଭାରତୀୟମାନେ ଜାତି ପ୍ରଥାର ଅମାଅନ୍ଧକାର ଭିତରେ ଚିରଦିନ ପାଇଁ ସଢୁଥିବେ ତେବେ ଭାରତବର୍ଷର ତ ଉନ୍ନତି ହେବ ନାହିଁ ବରଂ ବିଦେଶୀମାନେ ବେଦାନ୍ତ ଭଳି ଅମୂଲ୍ୟ ବସ୍ତୁ ଲାଭ କରିବାରୁ ବଞ୍ଚିତ ହେବେ ।

- ୮ -

*ରାଷ୍ଟ୍ର ସଂଘରେ ସ୍ୱାଧୀନ ଭାରତ ତା'ର ନ୍ୟାଯ୍ୟ ଅଧିକାର ଲାଭ କରିବ ଏବଂ ବିଶ୍ୱରେ ଶାନ୍ତି ଓ ମୈତ୍ରୀ ସ୍ଥାପନ ନିମନ୍ତେ ପ୍ରୟାସ କରିବ । ତାଙ୍କର ବାଣୀ ଉଭୟ ଜାତୀୟ ଓ ଅନ୍ତର୍ଜାତୀୟ ନିମନ୍ତେ ଉଦ୍ଦିଷ୍ଟ । ସେଥିପାଇଁ ସେ କହୁଥିଲେ, ରାଜନୈତିକ ନନ୍ସେନ୍ସ ସହିତ ମୋର କୌଣସି ସଂପର୍କ ନାହିଁ । ମୁଁ ରାଜନୀତିରେ ବିଶ୍ୱାସ କରେନାହିଁ । ବିଶ୍ୱରେ ଈଶ୍ୱର ଓ ସତ୍ୟ ହିଁ କେବଳ ରାଜନୀତି, ଅନ୍ୟ ସବୁ ବାଜେ ଜିନିଷ ।*

ଏହି ବିଷମ ଓ କଷ୍ଟସାଧ କାର୍ଯ୍ୟ ସେ ଭାରତର ଯୁବବର୍ଗଙ୍କ ଉପରେ ନ୍ୟସ୍ତ କରିବାକୁ ଚାହୁଁଛନ୍ତି । କାହିଁକିନା ଯୁବବର୍ଗ ଜାଗିଲେ, ଭାରତ ଜାଗିବ । ସ୍ୱାମୀଜୀ ଯୁବକ ଓ ଯୁବତୀଙ୍କ

Digitized by srujanika@gmail.com

ଉଦ୍ଦେଶ୍ୟରେ କହିଥିଲେ : ପ୍ରଥମେ ଆମର ଯୁବକ ଓ ଯୁବତୀମାନେ ଶକ୍ତିଶାଳୀ ହେବେ । ତା'ପରେ ଧର୍ମ ଆସିବ । ମୋର ଯୁବବନ୍ଧୁଗଣ, ତୁମେମାନେ ବଳଶାଳୀ ହୁଅ... । ଭଗବତ ଗୀତା ପଠନ ଅପେକ୍ଷା ଫୁଟ୍‌ବଲ୍ ଖେଳ ମାଧ୍ୟମରେ ତୁମେ ଈଶ୍ୱରଙ୍କର ନିକଟବର୍ତ୍ତୀ ହୋଇପାରିବ । ତୁମର ଶକ୍ତିଶାଳୀ ମାଂଶପେଶୀ ସହିତ ତୁମେ ଗୀତାକୁ ଅତି ଉତ୍ତମଭାବରେ ବୁଝିପାରିବ ।'' ସ୍ୱାମୀଜୀ ଯେତେବେଳେ ଛାତ୍ର ଓ ଯୁବଗଣଙ୍କୁ  ବୀର ଦର୍ପରେ ଉଦ୍‌ବୋଧନ କରୁଥିଲେ ସେତେବେଳେ ସ୍ୱାମୀଜୀ ସଭାମଣ୍ଡପରେ ଏକ ସିଂହ ସଦୃଶ ବିଚରଣ କରି ହୁଂକାର ଛାଡୁଥିଲେ । ଗୋଟିଏ ସ୍ଥାନରେ ସେ ଠିଆ ହୋଇପାରୁ ନ ଥିଲେ । ତାଙ୍କର ସିଂହରଡ଼ି କେବଳ ଉପସ୍ଥିତ ଜନତାଙ୍କ ଶରୀର ଓ ମନରେ ବିଦ୍ୟୁତ ଖେଳାଇ ଦେଉ ନ ଥିଲା, ବରଂ ସମଗ୍ର ଆକାଶ, ବୃକ୍ଷଲତା ପ୍ରତିଧ୍ୱନିତ ହେଉଥିଲା । ସତେକି ଭାରତମାତାଙ୍କର ସିଂହ ଗର୍ଜନ କରୁଛି ! ସେ ସେତେବେଳେ ଏକ ବ୍ୟକ୍ତି ହୋଇ ଛିଡ଼ା ହୋଇ ନ ଥିଲେ । ଭାରତବର୍ଷର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଏକ ମିଳିତ ଓ ସମନ୍ୱିତ ସ୍ୱରରେ ସେ ରୂପାନ୍ତରିତ ହୋଇଥିଲେ । ଧର୍ମାନ୍ଧତା, ଜାତିବାଦ, ଧର୍ମୋନ୍ମାଦନତା, କୁସଂସ୍କାର, ଅନ୍ଧବିଶ୍ୱାସ ଇତ୍ୟାଦି ଆସୁରିକ ଓ ତାମସିକ ମନୋଭାବ ଉକ୍ତ ଗର୍ଜନରେ ପାଣି ଫାଟି ଯାଇଥିଲା ।

ମାଡ୍ରାସର ବକ୍ତୃତା କାର୍ଯ୍ୟକମ ଶେଷ ଭାଗରେ ଦୀପ୍ତିମନ୍ତ ସୈନିକ ସ୍ୱାମୀ ବିବେକାନନ୍ଦ ଶିକ୍ଷା କିଭଳି ହେବା ଉଚିତ ସମ୍ବନ୍ଧରେ କହିଥିଲେ, ''ଆମ ଦେଶର ଆଧ୍ୟାତ୍ମିକ ଓ ଧର୍ମ ନିରପେକ୍ଷ ଶିକ୍ଷା ଉପରେ ଆମର କର୍ତ୍ତୃତ୍ୱ ରହିବା ଆବଶ୍ୟକ । ତୁମେ ତାହା ହୃଦୟଙ୍ଗମ କରୁଛ ତ ? ଏହାକୁ ନେଇ ତୁମେ ସ୍ୱପ୍ନ ଦେଖ, ତୁମ ବାକ୍ୟରେ ଏହା ସଦା ପ୍ରକାଶିତ ହେଉ, ତୁମେ  ନିରନ୍ତର ଏହାକୁ ଚିନ୍ତା କର, ଏବଂ ତୁମେ ଏହାକୁ କାର୍ଯ୍ୟରେ ପରିଣତ କର । ତାହା ନ କରିବା ପର୍ଯ୍ୟନ୍ତ ଜାତି ପାଇଁ ମୁକ୍ତି ନାହିଁ । ଯେଉଁ ଶିକ୍ଷା ବର୍ତ୍ତମାନ ତୁମେ ଲାଭ କରୁଛ, ସେଥିରେ ଅବଶ୍ୟ କେତେକ ଭଲ ଜିନିଷ ରହିଛି କିନ୍ତୁ ଏହା ଭିତରେ ଏତେ ବିଶାଳ ପରିମାଣର ଅସୁବିଧା ରହିଛି ଯେ ଭଲ ଜିନିଷର ସ୍ଥିତି ଅତ୍ୟନ୍ତ ନଗଣ୍ୟ ବୋଲି ପ୍ରତୀୟମାନ ହେଉଛି ।

ପ୍ରଥମତଃ ଏହା ମନୁଷ୍ୟ ନିର୍ମାଣକାରୀ ଶିକ୍ଷା ନୁହେଁ, ଏହା ଏକ ନକାରାତ୍ମକ ଶିକ୍ଷା ମାତ୍ର । ଏକ ନକାରାତ୍ମକ ଶିକ୍ଷା କିମ୍ୱା କୌଣସି ପ୍ରଶିକ୍ଷଣ ଯଦି ନକରାତ୍ମକତା ଉପରେ ଆଧାରିତ ହୁଏ, ତେବେ ଏହା ମୃତ୍ୟୁଠାରୁ ବି ଅଧିକ ହାନିକାରକ ହେବ । ଗୋଟିଏ ଶିଶୁକୁ ବିଦ୍ୟାଳୟ ପଠାଯାଏ ଏବଂ ସେଠାରେ ସେ ପ୍ରଥମେ ଶିଖେ ଯେ ତା'ର ପିତା ଜଣେ ନିର୍ବୋଧ, ଦ୍ୱିତୀୟରେ ଶିଖେ ଯେ ତା'ର ପିତାମହ ପାଗଳ, ତୃତୀୟରେ ସେ ଶିଖେ ଯେ ତା'ର ସମସ୍ତ ଶିକ୍ଷକ ଛଳନାକାରୀ ଚତୁର୍ଥ ଜିନିଷ ସେ ଶିଖେ ଯେ ତା'ର ସମସ୍ତ ପବିତ୍ର ଗ୍ରନ୍ଥ ମିଥ୍ୟା ! ଷୋଡ଼ଶ ବୟସରେ ଉପନୀତ ହେଲାବେଳକୁ ସେ ଜଣେ ନକାରାତ୍ମକ, ପ୍ରାଣହୀନ ଓ ଅସ୍ଥିଶୂନ୍ୟ ବସ୍ତୁରେ ପରିଣତ ହୋଇଯାଇଥାଏ । ଫଳସ୍ୱରୂପ ପଚାଶ ବର୍ଷ ଭିତରେ ତିନୋଟି ପ୍ରେସିଡ଼େନସୀରେ ଏମନ୍ତ ଶିକ୍ଷା ଜଣେ ହେଲେ ବି ମଣିଷ ଉତ୍ପନ୍ନ କରିପାରିଲା ନାହିଁ । ଯେଉଁ କେତେଜଣ ବାସ୍ତବ ମନୁଷ୍ୟ ସୃଷ୍ଟି ହୋଇଛନ୍ତି, ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଅନ୍ୟ ସ୍ଥାନରେ ଶିକ୍ଷା ଗ୍ରହଣ କରିଛନ୍ତି,

Digitized by srujanika@gmail.com

କିନ୍ତୁ ଏହି ଦେଶରେ ନୁହେଁ କିମ୍ବା ନିଜକୁ କୁସଂସ୍କାର ଓ ଅନ୍ଧବିଶ୍ୱାସରୁ ମୁକ୍ତ କରିବା ପାଇଁ ସେମାନେ ପୁରାତନ ବିଶ୍ୱବିଦ୍ୟାଳୟକୁ ଯାଉଥିଲେ ।

କେତେକ ପରିମାଣର ସୂଚନା ଓ ତଥ୍ୟ ତୁମ ମସ୍ତିଷରେ ପୂରାଇ ଦେବା ଓ ସେଗୁଡ଼ିକ ଜୀବନସାରା ବିଶୃଙ୍ଖଳିତ ଏବଂ ଅବ୍ୟବହୃତ ହେବା ଶିକ୍ଷାର ଉଦ୍ଦେଶ୍ୟ ନୁହେଁ । ଜୀବନଗଠନ, ମନୁଷ୍ୟ ଗଠନ ଓ ଚରିତ୍ର ଗଠନକୁ ଆପଣେଇ ନେବାର ଭାବଧାରା ଆମର ରହିବା ଆବଶ୍ୟକ । ତୁମେ ଯଦି ପାଞ୍ଚୋଟି ଭାବଧାରା ବା ଧାରଣାକୁ ଆପଣେଇ ନେବ ଏବଂ ସେଗୁଡ଼ିକୁ ନିଜର ଜୀବନ ଓ ଚରିତ୍ର ଭାବେ ଗଢ଼ି ତୋଳିବ, ତେବେ ଜଣେ ସମସ୍ତ ପାଠାଗାରକୁ କଣ୍ଠସ୍ଥ କରି ଶିକ୍ଷା ଅର୍ଜନ ଅପେକ୍ଷା ଅଧିକ ଶିକ୍ଷାପ୍ରାପ୍ତ ହୋଇଛି ବୋଲି ପ୍ରମାଣିତ ହେବ । ଗଧ ପିଠିରେ ଚନ୍ଦନକାଷ୍ଠ ବହନ କରେ, ଚନ୍ଦନର ଭାର ସେ ଜାଣେ କିନ୍ତୁ ଚନ୍ଦନର ମୂଲ୍ୟ ସେ ବୁଝି ପାରେ ନାହିଁ । ଯଦି ଶିକ୍ଷା ତଥ୍ୟ ଓ ସୂଚନା ସହ ସମାନ ବା ଏକାପରି ହେବ, ତେବେ ପୃଥିବୀରେ ପାଠାଗାରଗୁଡ଼ିକ ମହାନ୍ ଋଷି ସଦୃଶ ପ୍ରତିଭାତ ହେବ ଏବଂ ଜ୍ଞାନବିଜ୍ଞାନ କୋଷ ହିଁ ଋଷି । ସୁତରାଂ ଆମ ଦେଶରେ ଶିକ୍ଷା ଉଭୟ ଆଧ୍ୟାତ୍ମିକ ଓ ଧର୍ମନିରପେକ୍ଷ ନିଶ୍ଚିତ ହେବ ଯାହା ଆମର ରାଷ୍ଟ୍ରୀୟ ପଦ୍ଧତି ମାଧ୍ୟମରେ ଏକ ଜାତୀୟ ଶିକ୍ଷା ହେବ, ତାହାହିଁ ଆମର ଆଦର୍ଶ ।

ଦକ୍ଷିଣ ଭାରତରେ ବିଶ୍ରାମହୀନ କଠିଣ ପରିଶ୍ରମ ତାଙ୍କୁ ଅତ୍ୟନ୍ତ କ୍ଳାନ୍ତ କରିଦେଇଥିଲା । ସେ ଚାହୁଁଥିଲେ ବିଶ୍ରାମ । ସିଂହ କେତେ ଗର୍ଜନ କରିବ ! ଶିଷ୍ୟମାନେ ବୁଝିଗଲେ ସ୍ୱାମୀଜୀଙ୍କର ଅବସ୍ଥା । କଲିକତା ଯାତ୍ରା କରିବା ପାଇଁ ସେମାନେ ପ୍ରସ୍ତାବ ଦେଲେ । ସ୍ୱାମୀଜୀ ରାଜି ହେଲେ । ଫେବୃୟାରୀ ୧୫, ୧୮୯୭ ସୋମବାର ଷ୍ଟିମର ଯୋଗେ କଲିକତା ଅଭିମୁଖେ ଯାତ୍ରା ଆରମ୍ଭ କଲେ । ବହୁ ଶିଷ୍ୟଙ୍କ ଉପସ୍ଥିତିରେ ଉଚ୍ଛ୍ୱସିତ ବିଦାୟ ସମ୍ବର୍ଦ୍ଧନା ସ୍ୱାମୀଜୀଙ୍କୁ ଜ୍ଞାପନ କରାଗଲା । ଇତ୍ୟବସରରେ ପ୍ରଫେସର ସୁନ୍ଦରରାମ ଆୟାର ସ୍ୱାମୀଜୀଙ୍କୁ ପଚାରିଥିଲେ, ''ସ୍ୱାମୀଜୀ, ଆପଣଙ୍କର ମିଶନ ଆମେରିକା ଓ ଇୟୁରୋପରେ ସ୍ଥାୟୀ ପ୍ରଭାବ ପକାଇଛି କି ? ସ୍ୱାମୀଜୀ କହିଥିଲେ, ''ଏତେ ଅଧିକ ନୁହେଁ । ମୁଁ ଆଶା କରୁଛି ଯେ ଏଠାରେ ଏବଂ ସେଠାରେ ମୁଁ କେବଳ ବୀଜବପନ କରିଛି ଯାହା ସମୟ ଆସିଲେ ନିଶ୍ଚିତ ବୃଦ୍ଧିପ୍ରାପ୍ତ ହେବ ଏବଂ ଅନ୍ତତଃପକ୍ଷେ କେତେକ ଲୋକ ଏଥିରୁ ଉପକାର ପାଇବେ ।''

ସ୍ୱାମୀଜୀଙ୍କର ଉଦ୍ଦୀପକ ଭାଷା ନିଷ୍ଫଳ ହୋଇ ନ ଥିଲା । କଲମ୍ବୋରୁ ମାଡ୍ରାସ୍ ଭିତରେ ସେ ଯେଉଁ ହୃଦୟ ମନ୍ଥନକାରୀ ବକ୍ତୃତା ପ୍ରଦାନ କରିଥିଲେ, ତାହା ଭାରତର ଆତ୍ମାକୁ କମ୍ପମାନ କରାଇ ପାରିଥିଲା । ମନୁଷ୍ୟ ଭିତରେ ସୁପ୍ତ ଈଶ୍ୱର ରୂପକ ଆତ୍ମା ଓ ତାହାର ଅସୀମ ସମ୍ଭାବ୍ୟର ଶକ୍ତି ଭାରତବର୍ଷ ପ୍ରତି ସଚେତନ ହୋଇଉଠିଥିଲା । ଶ୍ରୀରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦ ଭାରତର ଜାତୀୟ ଚେତନାକୁ ଜାଗ୍ରତ କରିବାର ପ୍ରଥମ ବ୍ୟକ୍ତି ଦ୍ୱୟ; କେବଳ ସେତିକି ନୁହେଁ ସେ ଦୁହେଁ ବି ଭାରତର ପ୍ରଥମ ଜାତୀୟତାବାଦୀ ନେତା । ଶ୍ରୀରାମକୃଷ୍ଣ ଥିଲେ ଶକ୍ତି ଏବଂ ସ୍ୱାମୀ ବିବେକାନନ୍ଦ ଥିଲେ ତାଙ୍କର ସ୍ୱର ।

Digitized by srujanika@gmail.com

ଭାରତର ମୁକ୍ତି ସଂଗ୍ରାମ ଦକ୍ଷିଣେଶ୍ୱରରୁ ଆରମ୍ଭ ହୋଇଥିଲା । ପରବର୍ତ୍ତୀ କାଳର ରାଜନୈତିକ ନେତୃବୃନ୍ଦ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଦେଶକୁ ସ୍ୱାଧୀନ କରିବାର ପ୍ରେରଣା ସ୍ୱାମୀଜୀଙ୍କ ବାଣୀରୁ ପାଇଥିଲେ । ଅବଶ୍ୟ ସ୍ୱାମୀଜୀ ଭାରତର ରାଜନୈତିକ ସ୍ୱାଧୀନତାକୁ ଚାତକ ଭଳି ଚାହିଁଥିଲେ କିନ୍ତୁ ସ୍ୱାଧୀନଭାରତ ସମଗ୍ର ମାନବଜାତିର ସେବାରେ ନିଜକୁ ନିୟୋଜିତ କରୁ ବୋଲି ଥିଲା ତାଙ୍କର ଲକ୍ଷ୍ୟ । ରାଷ୍ଟ୍ର ସଂଘରେ ସ୍ୱାଧୀନ ଭାରତ ତା'ର ନ୍ୟାଯ୍ୟ ଅଧିକାର ଲାଭ କରିବ ଏବଂ ବିଶ୍ୱରେ ଶାନ୍ତି ଓ ମୈତ୍ରୀ ସ୍ଥାପନ ନିମନ୍ତେ ପ୍ରୟାସ କରିବ । ତାଙ୍କର ବାଣୀ ଉଭୟ ଜାତୀୟ ଓ ଅନ୍ତର୍ଜାତୀୟ ନିମନ୍ତେ ଉଦ୍ଦିଷ୍ଟ । ସେଥିପାଇଁ ସେ କହୁଥିଲେ, ରାଜନୈତିକ ନନ୍‌ସେନ୍ସ ସହିତ ମୋର କୌଣସି ସଂପର୍କ ନାହିଁ । ମୁଁ ରାଜନୀତିରେ ବିଶ୍ୱାସ କରେନାହିଁ । ବିଶ୍ୱରେ ଈଶ୍ୱର ଓ ସତ୍ୟ ହିଁ କେବଳ ରାଜନୀତି ଅନ୍ୟ ସବୁ ବାଜେ ଜିନିଷ ।



Digitized by srujanika@gmail.com

॥ ବତିଶ ॥

# ସ୍ୱାମୀଜୀଙ୍କ ଘର ବାହୁଡ଼ା - ଭୂମିପୁତ୍ର ନିଜ ଜନ୍ମମାଟିରେ ପଦାର୍ପଣ କଲେ

ଷ୍ଟିମରରେ କେତେଦିନ ବିଶ୍ରାମପୂର୍ଣ୍ଣ ଜଳଯାତ୍ରା ଶେଷକରି ଫେବୃଆରି ୧୯, ୧୮୯୭ରେ କଲିକତାର ବଜ୍‌ବଜ୍ ପୋତାଶ୍ରୟରେ ସ୍ୱାମୀ ବିବେକାନନ୍ଦ ପହଞ୍ଚିଲେ । ରାଜକୀୟ ଭଙ୍ଗୀରେ ବିରାଟ ବିରାଟ ତୋରଣ ସୁସଜ୍ଜିତ କରି ତାଙ୍କୁ କଲିକତାରେ ସ୍ୱାଗତ କରାଗଲା । ଛାତ୍ରମାନେ ତାଙ୍କୁ ସୁସଜ୍ଜିତ ରଥରେ ବସାଇ, ରାଜରାସ୍ତାରେ ଟାଣି ଟାଣି, ବିଭିନ୍ନ ସଂଗୀତ ବଜାଇ, ଏକ ଶୋଭାଯାତ୍ରାରେ ଗଙ୍ଗାକୂଳରେ ସ୍ଥାପିତ ଏକ ରାଜକୀୟ ଗୃହକୁ ନେଲେ । ଫେବୃଆରି ୨୮, ୧୮୯୭ରେ ତାଙ୍କୁ ଏକ ନାଗରିକ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଉକ୍ତ ସଭାରେ ରାଜା ବିନୟକୃଷ୍ଣ ଦେବ ସଭାପତିତ୍ୱ କରିଥିଲେ, ପ୍ରାୟ ପାଞ୍ଚ ହଜାରରୁ ଊର୍ଦ୍ଧ୍ୱ ଜନତା ଉକ୍ତ ସଭାରେ ସମବେତ ହୋଇଥିଲେ । ସଭାପତି ସ୍ୱାମୀଜୀଙ୍କୁ ସ୍ୱାଗତ କରି ନିଜର ବକ୍ତବ୍ୟ ପ୍ରଦାନ କଲେ । ଉକ୍ତ ସ୍ୱାଗତ ଭାଷଣକୁ ରୂପାର ଅଳଙ୍କାର ପେଡ଼ିରେ ସ୍ଥାପିତ କରି ସ୍ୱାମୀଜୀଙ୍କ ହସ୍ତରେ ଅର୍ପଣ କଲେ । ତହିଁ ଉତ୍ତାରୁ ସ୍ୱାମୀଜୀ ସ୍ୱାଗତ ସମ୍ବର୍ଦ୍ଧନାର ଉତ୍ତରରେ ଯାହା କହିଥିଲେ, ତାହା ଆଜି ଏକ ଐତିହାସିକ ଦସ୍ତାବିଜ୍ ଭାବେ ପରିଗଣିତ ।

ସାର୍ବଜନୀନତାରେ କେହି ନିଜର ବ୍ୟକ୍ତିସତ୍ତା ହରାଇଦିଏ, କେହି ସଂସାର ତ୍ୟାଗ କରେ, କେହି ସଂସାରରୁ ପଳାୟନ କରେ ଏବଂ କେହି ଅତୀତର ସମସ୍ତ ସମ୍ପର୍କ ଛିନ୍ନ କରିଦିଏ, କେହି କଷ୍ଟସାଧ କାର୍ଯ୍ୟରେ ମଗ୍ନ ରହି ନିଜେ ଜଣେ ମଣିଷ ବୋଲି ନିଜକୁ ଭୁଲିଯାଏ, ତଥାପି ତାହାର ହୃଦୟର ହୃଦୟ ଭିତରେ ଏକ ମୃଦୁ ସ୍ୱର ଗୁଞ୍ଜରିତ ହେଉଥାଏ, ତା'କାନରେ ବାରମ୍ବାର କହି ଦେଉଥାଏ ପୂର୍ବ ହେଉ କିମ୍ବା ପଶ୍ଚିମ ହେଉ, ନିଜ ଘର ହିଁ ସବୁଠାରୁ ଉତ୍ତମ । ଏହି ସାମ୍ରାଜ୍ୟର ରାଜଧାନୀର ନାଗରିକଗଣ, ଆପଣଙ୍କ ସମ୍ମୁଖରେ ମୁଁ ଦଣ୍ଡାୟମାନ, ଜଣେ ସନ୍ନ୍ୟାସୀ ଭାବରେ ନୁହେଁ, ନା ଏପରିକି ଏକ ଧର୍ମଗୁରୁଭାବେ ନୁହେଁ କିନ୍ତୁ ପୂର୍ବରୁ ଯେପରି କଲିକତାର ବାଳକ ଭଳି ମୁଁ ଆପଣମାନଙ୍କ ସହ ଆଳାପାଲୋଚନା କରୁଥିଲି, ଆଜି ଠିକ୍ ସେପରିଭାବେ ମୁଁ ଆପଣମାନଙ୍କ ସହ କଥା କହୁଛି । ଆହାଃ... ଏହି ନଗରୀର ଧୂଳିଧୂସରିତ ରାସ୍ତାରେ ବସିବାକୁ ମୋର ମନ ବ୍ୟାକୁଳିତ ଏବଂ ବାଲ୍ୟକାଳର ସ୍ୱାଧୀନତା ସଦୃଶ, ହେ ମୋର ଭ୍ରାତୃଗଣ, ମନର କଥା ଆପଣଙ୍କ ସମ୍ମୁଖରେ ଖୋଲିଦେବାକୁ ମୁଁ ଚାହେଁ । ଆଜି ସ୍ୱାଗତ ସମ୍ବର୍ଦ୍ଧନା ଅବସରରେ ଆପଣ ମୋତେ ଭ୍ରାତା ବୋଲି ସମ୍ବୋଧନ କରିଛନ୍ତି । ସେହି ଅସାଧାରଣ ଶବ୍ଦ ପାଇଁ ମୁଁ ମୋର ହୃଦୟର କୃତଜ୍ଞତା

Digitized by srujanika@gmail.com

ଜଣାଉଛି । ହଁ, ମୁଁ ଆପଣମାନଙ୍କର ଭାଇ, ଏବଂ ଆପଣମାନେ ମୋର ଭାଇ । ମୋର ଭାରତ ପ୍ରତ୍ୟାବର୍ତ୍ତନ ଉପଲକ୍ଷେ ମୋର ଜଣେ ଇଂରାଜୀ ବନ୍ଧୁ ମୋତେ ପଚାରି ଥିଲେ "ସ୍ୱାମୀଜୀ, ବିଳାସପୂର୍ଣ୍ଣ, ଗୌରବମୟ ଓ ଶକ୍ତିଶାଳୀ ପାଶ୍ଚାତ୍ୟ ଜଗତରେ ଚାରିବର୍ଷର ଅଭିଜ୍ଞତା ଲାଭ କରି ବର୍ତ୍ତମାନ ଆପଣଙ୍କର ମାତୃଭୂମିକୁ କିଭଳି ଭଲ ପାଇ ପାରିବେ ? ମୁଁ କେବଳ ଉତ୍ତର ଦେଇଥିଲି, ଆସିବା ପୂର୍ବରୁ ମୁଁ ଭାରତକୁ ଭଲ ପାଉଥିଲି, ବର୍ତ୍ତମାନ ସେହି ଭାରତବର୍ଷର ଧୂଳି ମୋ ପାଇଁ ଅତ୍ୟନ୍ତ ପବିତ୍ର, ଭାରତର ପବନ ମୋ ପାଇଁ ପବିତ୍ର; ବର୍ତ୍ତମାନ ଏହା ପବିତ୍ର ଭୂମି, ତୀର୍ଥସ୍ଥାନ ।" ହେ ମୋର କଲିକତା ନାଗରିକ ଭ୍ରାତାଗଣ - ଆଜି ଯେଉଁ ଦୟା ମୋତେ ଆପଣମାନେ ପ୍ରଦର୍ଶନ କରିଛନ୍ତି ସେଥିପାଇଁ ମୋର କୃତଜ୍ଞତା ଜ୍ଞାପନ କରିବା ପାଇଁ ଅକ୍ଷମ କିମ୍ବା ଆପଣଙ୍କୁ ମୁଁ ଆଦୌ ଧନ୍ୟବାଦ ଦେଇପାରିବି ନାହିଁ କାହିଁକିନା ଆପଣମାନେ ମୋର ଭାଇ, ଜଣେ ଭାଇର କର୍ତ୍ତବ୍ୟ କେବଳ ଆପଣମାନେ କରିଛନ୍ତି, ଆହାଃ... ଏକ ହିନ୍ଦୁ ଭାଇର କର୍ତ୍ତବ୍ୟ; ଏଭଳି ପାରିବାରିକ ବନ୍ଧନ, ଏଭଳି ସମ୍ପର୍କ, ଏଭଳି ପ୍ରେମ ଆମ ମାତୃଭୂମିର ସୀମା ବାହାରେ କେଉଁଠାରେ ମିଳିବ ନାହିଁ ।

- ୧ -

*ଶ୍ରୀରାମକୃଷ୍ଣ ପରମହଂସ - ମୋର ଗୁରୁ, ମୋ ପ୍ରଭୁ, ମୋ ଜୀବନନାୟକ, ମୋ ଆଦର୍ଶ, ମୋ ଜୀବନର ଈଶ୍ୱର । ମୋ ଭାବଧାରାରୁ ହେଉ, ବାକ୍ୟରେ ହେଉ, କିମ୍ବା କାର୍ଯ୍ୟରେ ହେଉ, ଯାହା ବି ସଫଳତା ମୁଁ ଲାଭ କରିଛି ଏବଂ ମୋ ମୁଖରୁ ନିଃସୃତ ଗୋଟିଏ ଶବ୍ଦ ବିଶ୍ୱରେ କୌଣସି ଏକ ବ୍ୟକ୍ତିକୁ ଯଦି ସହାୟତା ପ୍ରଦାନ କରିଥାଏ, ତେବେ ତାହା ଉପରେ ମୋର କୌଣସି ଦାବି ନାହିଁ, ସବୁ ତାଙ୍କର ।*

ନିଃସନ୍ଦେହରେ, ଧର୍ମ ମହାସମ୍ମିଳନୀ ଏକ ବିରାଟ ବ୍ୟାପାର ଥିଲା । ଅବଶ୍ୟ ଏହା ଥିଲା ଏକ ଆରମ୍ଭ । ସେମାନେ ଗୋଟିଏ ଅଶ୍ୱ ଚାହିଁଥିଲେ ଯାହା ଉପରେ ସେମାନେ ଆରୋହଣ କରିଥାନ୍ତେ । କିଛି ଲୋକ ଏହି ଧର୍ମ ମହାସମ୍ମିଳନୀକୁ ଏକ ଅଣ ଖ୍ରୀଷ୍ଟଧର୍ମୀ ପ୍ରଦର୍ଶନୀ କରିବାକୁ ଚାହିଁଥିଲେ (ଯେଉଁଠାରେ ସେମାନେ ଅପମାନିତ ହୋଇଥାନ୍ତେ) କିନ୍ତୁ ବିଧାତାଙ୍କର ଇଚ୍ଛା ଅନ୍ୟପ୍ରକାର ଥିଲା । ସେମାନେ ତାହା କରିପାରିଲେ ନାହିଁ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଦୟାବାନ ଥିଲେ ଯେଉଁଥିପାଇଁ ଆମେ ସେମାନଙ୍କୁ ଅଜସ୍ର ଧନ୍ୟବାଦ ଅର୍ପଣ କରିଲୁ ।

ଅନ୍ୟପକ୍ଷରେ, ଆମେରିକାରେ ମୋର ମିଶନ୍ ଧର୍ମ ମହାସମ୍ମିଳନୀ ନିମନ୍ତେ ଉଦ୍ଦିଷ୍ଟ ନ ଥିଲା । ଏହା ଏକ ଆରମ୍ଭ ଥିଲା, ଏକ ସୁଯୋଗ ଥିଲା । ମହାନ୍ ହୃଦୟବାନ୍ ଆମେରିକାବାସୀଙ୍କ ପ୍ରତି ବାସ୍ତବରେ ମୋର ମିଶନ ପ୍ରଣୋଦିତ ଥିଲା, ଧର୍ମ ମହାସମ୍ମିଳନୀର ସଫଳତା ପାଇଁ ସେମାନେ ଧନ୍ୟବାଦର ପାତ୍ର । ଇଂଲଣ୍ଡର ଅଧିବାସୀଙ୍କୁ ଆମେ ଧନ୍ୟବାଦ ଦେବା ଉଚିତ । ...

Digitized by srujanika@gmail.com

ଆମେରିକା ଅପେକ୍ଷା ଇଂଲଣ୍ଡରେ ମୋର କାର୍ଯ୍ୟ ଅଧିକ ସନ୍ତୋଷଜନକ ହୋଇଛି । ଆଜି ଇଂରାଜୀ ଓ ଆମ ଭିତରେ ଯେଉଁ ମନୋମାଳିନ୍ୟ ଦେଖାଦେଇଛି, ତାହା କେବଳ ବୁଝାମଣାର ଅଭାବ ପାଇଁ ହୋଇଛି । ଆମେ ସେମାନଙ୍କୁ ଜାଣନ୍ତି ନାହିଁ, ସେମାନେ ବି ଆମକୁ ଜାଣନ୍ତି ନାହଁ । ଆମର ଚାଲିଚଳନକୁ ସେମାନେ ବିଦ୍ରୁପ କରନ୍ତି ନାହିଁ, କିମ୍ଵା ଆମେ ବି ତାଙ୍କର କରୁନାହୁଁ ।''

ସ୍ୱାମୀଜୀଙ୍କ ଉପରୋକ୍ତ ମନ୍ତବ୍ୟ ବିଶ୍ୱ ଶାନ୍ତି ପାଇଁ ଏକ ସକାରାତ୍ମକ ପଦକ୍ଷେପ । ଇଂଲଣ୍ଡ ଓ ଆମେରିକା ଭୂମିରେ ଦଣ୍ଡାୟମାନ ହୋଇ ଯିଏ ସେମାନଙ୍କର ଔଦ୍ଧତ୍ୟ ଓ ଧାର୍ମିକ ବିଦ୍ୱେଷ ଭାବକୁ ଅତି କଟୁ ଭାଷାରେ ଭର୍ତ୍ସନା କରୁଥିଲେ, ସେ ଆଜି ନିଜ ଭୂମିରେ ଠିଆ ହୋଇ ପ୍ରଶଂସାସୂଚକ ଭାଷାରେ ସେମାନଙ୍କଠାରେ କୃତଜ୍ଞତା ଜ୍ଞାପନ କରୁଛନ୍ତି । ଅବଶ୍ୟ ଏହା ବାହ୍ୟ ଦୃଷ୍ଟିରେ ପରସ୍ପର-ବିରୋଧୀ ମନ୍ତବ୍ୟ ବୋଲି ପ୍ରତୀୟମାନ ହୋଇପାରେ । କିନ୍ତୁ ସ୍ଥିର ମନରେ ଜଣେ ଚିନ୍ତା କଲେ ଜାଣିପାରିବ ଯେ ସ୍ୱାମୀଜୀ ମଣିଷର ଅହଂଭାବକୁ କେବଳ ଭର୍ତ୍ସନା କରୁଥିଲେ, ସିଏ ଯେଉଁ ଦେଶରେ ନାଗରିକ ହୋଇଥାନ୍ତୁ ପଛକେ, କିନ୍ତୁ ସଦ୍‌ଗୁଣକୁ ସହସ୍ର କଣ୍ଠରେ ପ୍ରଶଂସା କରୁଥିଲେ । ସେ ମାନବତାର ପୂଜାରୀ । ମନୁଷ୍ୟ ଭିତରେ ନିହିତ ଅର୍ନ୍ତଶକ୍ତିକୁ ଜାଗ୍ରତ କରାଇବା ନିମନ୍ତେ, ମନୁଷ୍ୟର ଉଭୟ ଭଲ ଓ ମନ୍ଦଗୁଣକୁ ସେ ପ୍ରକଟ କରିଦେଉଥିଲେ, ଯଦ୍ୱାରା ମନୁଷ୍ୟ ନିଜର ଅର୍ନ୍ତଶକ୍ତି ପ୍ରତି ସଚେତନ ହୋଇପାରିବ ।

ସ୍ୱାମୀଜୀ ଏହି ବିଶାଳ ଜନସଭାରେ ନିଜ ହୃଦୟର ଆରାଧ୍ୟ ଦେବତା ଶ୍ରୀରାମକୃଷ୍ଣ ପରମହଂସଙ୍କ ପ୍ରତି ସମବେତ ଜନତାଙ୍କର ଦୃଷ୍ଟି ଆକର୍ଷଣ କରି କହିଥିଲେ : ହେ ଭ୍ରାତୃଗଣ, ଆପଣମାନେ ମୋର ଅନ୍ୟ ଏକ ଭାବପ୍ରବଣତାକୁ ସ୍ପର୍ଶ କରିଛନ୍ତି, ତାହା ସବୁଠାରୁ ଗଭୀରତମ । ସେ ହେଉଛନ୍ତି ଶ୍ରୀରାମକୃଷ୍ଣ ପରମହଂସ - ମୋର ଗୁରୁ, ମୋ ପ୍ରଭୁ, ମୋ ଜୀବନନାୟକ, ମୋ ଆଦର୍ଶ, ମୋ ଜୀବନର ଈଶ୍ୱର । ମୋ ଭାବଧାରାରୁ ହେଉ, ବାକ୍ୟରେ ହେଉ, କିମ୍ବା କାର୍ଯ୍ୟରେ ହେଉ, ଯାହା ବି ସଫଳତା ମୁଁ ଲାଭ କରିଛି ଏବଂ ମୋ ମୁଖରୁ ନିଃସୃତ ଗୋଟିଏ ଶବ୍ଦ ବିଶ୍ୱରେ କୌଣସି ଏକ ବ୍ୟକ୍ତିକୁ ଯଦି ସହାୟତା ପ୍ରଦାନ କରିଥାଏ, ତେବେ ତାହା ଉପରେ ମୋର କୌଣସି ଦାବି ନାହିଁ, ସବୁ ତାଙ୍କର । ଅଥଚ ଯଦି କୌଣସି ଅଭିଶାପ ମୋ ମୁଖରୁ ନିଃସୃତ ହୋଇଥାଏ, ଯଦି ଘୃଣା ମୁଁ କାହାରିକୁ କରିଥାଏ, ସେସବୁ କେବଳ ମୋର, ତାଙ୍କର ନୁହେଁ । ଯାହାସବୁ ଦୁର୍ବଳତା ସେସବୁ ମୋର ଏବଂ ଯାହାସବୁ ଜୀବନ-ପ୍ରଦାନକାରୀ, ଶକ୍ତି ପ୍ରଦାନକାରୀ, ପବିତ୍ର ଏବଂ ଶୁଦ୍ଧ, ସେସବୁ ତାଙ୍କର ପ୍ରେରଣା ଓ ସେ ସ୍ୱୟଂ ନିଜେ ।

ହେ ମୋ ବନ୍ଧୁଗଣ, ସଂସାର ସେହି ବ୍ୟକ୍ତିଙ୍କୁ ଜାଣିବା ପାଇଁ ବାକି ରହିଛି । ବିଶ୍ୱ ଇତିହାସରେ ଆମେ ଧର୍ମଯାଜକ ଓ ସେମାନଙ୍କର ଜୀବନୀ ପଢ଼ିଛେ ଏବଂ ଶତାବ୍ଦୀ ଶତାବ୍ଦୀ ଧରି ସେମାନଙ୍କ ଶିଷ୍ୟଙ୍କର ଲେଖନୀ ଓ ପ୍ରଚାର ମାଧ୍ୟମରେ ଆମେ ସେମାନଙ୍କୁ ଜାଣିଛେ । ହଜାର ହଜାର ବର୍ଷର ଗଢ଼ିତୋଳିବା ଓ ରୂପଦେବା ମାଧ୍ୟମରେ ପ୍ରାଚୀନ ମହାନ୍ ଧର୍ମଯାଜକଙ୍କର ଜୀବନୀ ଆମ ପାଖକୁ ଆସିଛି; ଏବଂ ତଥାପି ମୋ ମତରେ ସେମାନଙ୍କ ମଧ୍ୟରୁ ଜଣେ ହେଲେ ବି ସେହି ମହାମାନବଙ୍କର ଜ୍ଞାନ ସମ୍ମୁଖରେ ବିରାଟ ହୋଇ ଠିଆ ହୋଇପାରିବେ ନାହିଁ, ଯାହାଙ୍କୁ ମୁଁ ମୋ ନିଜ ଆଖିରେ

Digitized by srujanika@gmail.com

ଦେଖିଥିଲି, ଯାହାଙ୍କ ଛାୟା ତଳେ ମୁଁ ଆଶ୍ରୟ ନେଇଥିଲି ଏବଂ ଯାହାଙ୍କ ପାଦତଳେ ବସି ମୁଁ ସବୁକିଛି ଶିଖି ପାରିଥିଲି । ସେ ହିଁ ମୋର ଶ୍ରୀରାମକୃଷ୍ଣ ପରମହଂସ ।

- ୨ -

*ଉଠ - ଜାଗ, କହିଁକିନା ତୁମର ରାଷ୍ଟ୍ର ଏହି ବିଶାଳ ତ୍ୟାଗ ଚାହେଁ । ଏହି କାର୍ଯ୍ୟ ଯୁବକ ଯୁବତୀ କରିବେ । ଯୁବ, ଶକ୍ତିଶାଳୀ, ବଳଶାଳୀ, ସୁସ୍ଥ ଶାରୀରିକ ଗଠନ, ବୁଦ୍ଧିମାନର ଯୁବବର୍ଗଙ୍କ ପାଇଁ ଏହି କାର୍ଯ୍ୟ ଉଦ୍ଦିଷ୍ଟ ।*

ଆମ ଶାସ୍ତ୍ରର ସର୍ବଶ୍ରେଷ୍ଠ ଆଦର୍ଶ ହିଁ ନୈର୍ବ୍ୟକ୍ତିକ ଏବଂ ସମଗ୍ର ବସ୍ତୁ ହିଁ ଈଶ୍ୱରଙ୍କର, ଆମ ଭିତରୁ ପ୍ରତ୍ୟେକ ସେହି ନୈର୍ବ୍ୟକ୍ତିକ ଆଦର୍ଶକୁ ଉପଲବ୍ଧି କରିବା ଶ୍ରେୟସ୍କର, କିନ୍ତୁ ତାହା ହୋଇପାରିବ ନାହିଁ, ଅଧିକାଂଶ ଲୋକ ବ୍ୟକ୍ତିକ ଆଦର୍ଶକୁ ଗ୍ରହଣ କରନ୍ତି । ଜୀବନରେ ଗୋଟିଏ ମହାନ୍ ଆଦର୍ଶକୁ ଆଗ୍ରହ ସହକାରେ ଗ୍ରହଣ ନ କରି କୌଣସି ରାଷ୍ଟ୍ର ଉଠିପାରିବ ନାହିଁ, ମହାନ୍ ହୋଇପାରିବ ନାହିଁ, କୌଣସି କାର୍ଯ୍ୟ କରିପାରିବ ନାହିଁ । ରାଜନୈତିକ ଆଦର୍ଶ, ରାଜନୈତିକ ଆଦର୍ଶକୁ ପ୍ରତିନିଧିତ୍ୱ କରୁଥିବା ବ୍ୟକ୍ତିତ୍ୱ, ଏପରିକି ସାମାଜିକ ଆଦର୍ଶ, ବାଣିଜ୍ୟିକ ଆଦର୍ଶର ଶକ୍ତି ଭାରତରେ କାର୍ଯ୍ୟ କରିପାରିବ ନାହିଁ । ଆମ ସମ୍ମୁଖରେ ଆଧାତ୍ମିକ ଆଦର୍ଶ ଚାହୁଁ, ଆମେ ଉତ୍ସାହର ସହିତ ବିଶାଳ ଆଧାତ୍ମିକ ନାମ ଚାରିପାଖରେ ଘୂରି ବୁଲିବାକୁ ଚାହୁଁ । ଆମର ନାୟକ ନିଶ୍ଚିତ ଭାବରେ ଆଧାତ୍ମିକ ବ୍ୟକ୍ତି । ଏଭଳି ବ୍ୟକ୍ତିତ୍ୱ ଶ୍ରୀରାମକୃଷ୍ଣ ପରମହଂସ ରୂପରେ ଆମକୁ ପ୍ରଦାନ କରାଯାଇଛି । ଯଦି ଏହି ରାଷ୍ଟ୍ର ଉଠିବାକୁ ଚାହେଁ, ତେବେ ମୋ କଥା ଶୁଣନ୍ତୁ, ଏହା ଶ୍ରୀରାମକୃଷ୍ଣଙ୍କ ନାମ ଚତୁଃପାର୍ଶ୍ୱରେ ଧାଡ଼ି ବାନ୍ଧିବେ । କିଏ ଶ୍ରୀରାମକୃଷ୍ଣ ପରମହଂସଙ୍କୁ ପ୍ରଚାର କରିବ, ମୁଁ କିମ୍ବା ଆପଣ କିମ୍ବା ଅନ୍ୟ କେହି, ଇୟେ ବଡ଼କଥା ନୁହେଁ । କିନ୍ତୁ ମୁଁ ତାଙ୍କୁ ଆପଣଙ୍କ ସମ୍ମୁଖରେ ସ୍ଥାପନ କରୁଛି, ତାଙ୍କୁ ବିଚାର କରିବା ହିଁ ଆପଣଙ୍କର କାର୍ଯ୍ୟ ଏବଂ ଆମ ଜାତିର ମଙ୍ଗଳ ପାଇଁ, ଆମ ରାଷ୍ଟ୍ରର ହିତ ପାଇଁ ଏହି ମହାନ୍ ଆଦର୍ଶ ଜୀବନ ସହ ଆପଣ କ'ଣ କରିବେ ତାହା ବର୍ତ୍ତମାନ ବିଚାର କରନ୍ତୁ । ଗୋଟିଏ ଜିନିଷ ଆମକୁ ଏଠାରେ ସ୍ମରଣ ରଖିବାକୁ ହେବ ଯେ ଆମେ ଯେତେ ବ୍ୟକ୍ତି ଦେଖିଛନ୍ତି, କିମ୍ବା ଯେତେ ବ୍ୟକ୍ତିଙ୍କ ସମ୍ବନ୍ଧରେ ପଢ଼ିଛନ୍ତି, ସେମାନଙ୍କ ଭିତରୁ ଏହି ମହାମାନବଙ୍କର ଜୀବନୀ ଅତୀବ ପବିତ୍ର ଓ ଶୁଦ୍ଧ ।

ଏଠାରେ କହିବା ବାହୁଲ୍ୟ ଯେ ଏଠାରେ ସ୍ୱାମୀଜୀ ପୁନର୍ବାର ଭାରତୀୟଙ୍କୁ ସ୍ମରଣ କରାଇ ଦେଉଛନ୍ତି ଯେ ଭାରତର ମୂଳପିଣ୍ଡ ଆଧାତ୍ମିକ । ଆଧାତ୍ମିକତାକୁ ଆଧାର କରି ଭାରତ ବିଶ୍ୱରେ ଏକ ଆଲୋକସ୍ତମ୍ଭ ଭାବେ ପ୍ରତିଭାତ ହେବ ହିଁ ହେବ । ଭାରତରେ କାହିଁକି ବିଶ୍ୱ ପୃଷ୍ଠରେ ଯେତେ ଅବତାର, ଧର୍ମଯାଜକ, ଧର୍ମଗୁରୁ, ଋଷି, ସନ୍ଥ ଅବତରିତ ହୋଇଥିଲେ, ସେମାନଙ୍କୁ ଶ୍ରୀରାମକୃଷ୍ଣ ପରମହଂସଙ୍କ ସହ ତୁଳନା କରି ନ୍ୟୁନ କରି ନାହାଁନ୍ତି ବରଂ ମୋନଙ୍କର ଶ୍ରେଷ୍ଠଗୁଣ ଓ ଅବତାରିତ ହେବାର ଉଦ୍ଦେଶ୍ୟର ସମିଶ୍ରଣ ଅଥବା ସମନ୍ୱୟ ହିଁ ଶ୍ରୀରାମକୃଷ୍ଣ ବୋଲି ଦୃଢ଼ କଣ୍ଠରେ

Digitized by srujanika@gmail.com

ସ୍ୱୀକାର କରିଛନ୍ତି । ହଜାର ହଜାର ବର୍ଷର ଭାରତୀୟ ଧର୍ମ, ସଂସ୍କୃତି ଓ ଆଧ୍ୟାତ୍ମିକତାର ପ୍ରକଟିତ ରୂପ ହିଁ ଶ୍ରୀରାମକୃଷ୍ଣ । ସେ ନିଜ ବକ୍ତବ୍ୟରେ ଉପସ୍ଥିତ ଜନତାଙ୍କୁ ସଚେତନ କରାଇ ଦେଇଛନ୍ତି ଯେ ଭାରତର ଯେଉଁ ପୁନରୁତ୍ଥାନ ହେବ, ତାହା ବେଦାନ୍ତକୁ ଆଧାର କରି ପ୍ରସାରିତ ହେବ । ବେଦାନ୍ତ ମାର୍ଗ ହେବ ଆଧାରଭୂତ ଯାହା ଭାରତର ଶୁଦ୍ଧ ଓ ଗଭୀରତମ ଆତ୍ମା । ଶ୍ରୀରାମକୃଷ୍ଣଙ୍କ ଦେହାନ୍ତର ଦଶବର୍ଷ ପରେ, ତାଙ୍କର ଅଖଣ୍ଡ ଶକ୍ତି ସମଗ୍ର ବିଶ୍ୱର ଚତୁଃପାର୍ଶ୍ୱରେ ଘୂର୍ଣ୍ଣାୟମାନ । ଯଦି କେହି ଭାବୁ ଥାଏ ଯେ ସ୍ୱାମୀ ବିବେକାନନ୍ଦ ଏବଂ କେତେଜଣ ବ୍ୟକ୍ତି ଦ୍ୱାରା ହିଁ ତାଙ୍କର କାର୍ଯ୍ୟ କେବେ ସମାପିତ ହେବ, ତେବେ ଏତାଦୃଶ ଭାବନା ଭୁଲ ପ୍ରମାଣିତ ହେବ । କାରଣ ସେ ଏଭଳି ଏକ ମହାଶକ୍ତି ଯିଏ ଧୂଳି ମୁଠାଏରୁ ଶହେ କାହିଁକି ହଜାର ହଜାର କର୍ମୀ ସୃଷ୍ଟି କରି ନିଜର କାର୍ଯ୍ୟ କରାଇ ନେଇପାରିବେ । ଯେଉଁମାନେ ତାଙ୍କର ଛାୟାତଳେ ଆଶ୍ରିତ ଏବଂ ତାଙ୍କର କାର୍ଯ୍ୟ କରିବା ନିମନ୍ତେ ଅଣ୍ଟା ଭିଡ଼ି ବାହାରିଛନ୍ତି, ସେମାନେ ସମସ୍ତେ ଭାଗ୍ୟବାନ, ସ୍ୱାମୀଜୀ ବାଷ୍ପରୁଦ୍ଧ କଣ୍ଠରେ ଘୋଷଣା କଲେ ।

ସୃଷ୍ଟିର ସର୍ବଶ୍ରେଷ୍ଠ ସୃଷ୍ଟି ହିଁ ମଣିଷ । ମନୁଷ୍ୟ ଭିତରେ ରହିଛି ସୃଷ୍ଟି ରହସ୍ୟ ଜାଣିବା ପାଇଁ ବିଶାଳ ଶକ୍ତି । ସେହି ଶକ୍ତିର ଉପଯୋଗ କରି ମନୁଷ୍ୟ ଅସାଧ କାର୍ଯ୍ୟ ନିର୍ବାହ କରିପାରିବ । କଲିକତାର ଏକ ଅନାମଧେୟ ଗଳିରେ ଜନ୍ମ ହୋଇ ସେ କିପରି ନିଜର ଅନ୍ତର୍ନିହିତ ଉତ୍ତିଷ୍ଠତ ଶକ୍ତିକୁ ଜାଗ୍ରତ କରି ଅନେକ କାର୍ଯ୍ୟ କରିପାରିଲେ, ସେହି ସଂକ୍ରାନ୍ତରେ କଲିକତାର ଯୁବଗଣଙ୍କୁ ଆହ୍ୱାନ କରି କହିଥିଲେ, ''ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ନିବୋଧତ - ଉଠ, ଜାଗ ଏବଂ ଇପ୍‌ସିତ ଲକ୍ଷ୍ୟ ପ୍ରାପ୍ତ ନ ହେବା ପର୍ଯ୍ୟନ୍ତ କାର୍ଯ୍ୟ କରିବା ବନ୍ଦ କରନାହିଁ । ହେ କଲିକତାର ଯୁବବର୍ଗ ସମୟ ବର୍ତ୍ତମାନ ଉପସ୍ଥିତ । ଆମ ସମ୍ମୁଖରେ ସବୁକିଛି ଉନ୍ମୁକ୍ତ ହେଲାଣି । ସାହସୀ ହୁଅ ଏବଂ ନିର୍ଭୀକ ହୁଅ ।

ଆମ ଶାସ୍ତ୍ରରେ ପ୍ରଭୁ କହୁଛନ୍ତି - ଅଭୀ-ଅଭୀ । ଆମକୁ ଅଭୀ ହେବାକୁ ହେବ । ଅଭୀର ଅର୍ଥ ନିର୍ଭୟତା । ନିର୍ଭୀକ ହେଲେ କାର୍ଯ୍ୟ ଅନାୟସରେ ସମ୍ପାଦିତ ହେବ । ଉଠ - ଜାଗ, କହିଁକିନା ତୁମର ରାଷ୍ଟ୍ର ଏହି ବିଶାଳ ତ୍ୟାଗ ଚାହେଁ । ଏହି କାର୍ଯ୍ୟ ଯୁବକ ଯୁବତୀ କରିବେ । ଯୌବନ ଶକ୍ତିଶାଳୀ, ବଳଶାଳୀ, ସୁସ୍ଥ ଶାରୀରିକ ଗଠନ, ବୁଦ୍ଧିମାନର ଯୁବବର୍ଗଙ୍କ ପାଇଁ ଏହି କାର୍ଯ୍ୟ ଉଦ୍ଦିଷ୍ଟ । ଏଭଳି ଶତ ଶହସ୍ର ଯୁବକ କଲିକତାରେ ଅଛନ୍ତି । ଯଦି ତୁମେ କହୁଛ ଯେ ମୁଁ କିଛି କରିପାରିଚି, ତେବେ ମନେରଖ, ମୁଁ ଏକ ଅପାଙ୍‌କ୍ତେୟ ବାଳକ ଭାବେ ଦିନେ କଲିକତାର ଗଳିକନ୍ଦି ରାସ୍ତାରେ ଖେଳୁଥିଲି । ତାହାହୋଇ ଯଦି ମୁଁ ଏତେ କାର୍ଯ୍ୟ କରିପାରିଲି, ତେବେ ତା'ଠାରୁ କେତେ ଗୁଣରେ ଅଧିକ କାର୍ଯ୍ୟ ତୁମେମାନେ କରିପାରିବ ? ଉଠ... ଜାଗ, ବିଶ୍ୱ ତୁମକୁ ଆହ୍ୱାନ କରୁଛି । ଭାରତର ଅନ୍ୟ ଭାଗରେ ବୌଦ୍ଧିକତା ରହିଛି, ଅର୍ଥ ରହିଛି କିନ୍ତୁ ମୋ ଜନ୍ମଭୂମିରେ କେବଳ ଉତ୍ସାହ ରହିଛି । ସେହି ଉତ୍ସାହ ନିଶ୍ଚିତ ବହିଃସ୍ଫୁରଣ ହେବ; ସୁତରାଂ ହେ କଲିକତାର ଯୁବଗଣ, ତୁମ ରକ୍ତରେ ଉତ୍ସାହ ଭରିରହିଛି । କେବେ ନିଜକୁ ଗରିବ ଭାବ ନାହିଁ, ଭାବନାହିଁ ଯେ ତୁମର କେହି ବନ୍ଧୁ ନାହାଁନ୍ତି । ହଁ, ଅର୍ଥ ମନୁଷ୍ୟ ଗଠନ କରିଥିବାର କେହି ଦେଖିଛ ? ସମଗ୍ର ସଂସାର ମାନବର ଶକ୍ତିଦ୍ୱାରା ଗଠିତ, ଉତ୍ସାହର ଶକ୍ତି ଦ୍ୱାରା ଗଠିତ, ବିଶ୍ୱାସର ଶକ୍ତି ଦ୍ୱାରା ଗଠିତ ।

Digitized by srujanika@gmail.com

- ୩ -

*ପାଶ୍ଚାତ୍ୟବାସୀଙ୍କ ପାଦତଳେ ବସି ଆମେ କ'ଣ ସବୁଦିନ ସବୁ ଜିନିଷ ଏପରିକି ଧର୍ମ ଗ୍ରହଣ କରୁଥିବା ? ଅବଶ୍ୟ ପାଶ୍ଚାତ୍ୟ ଜଗତରୁ ଆମେ ବହୁ କିଛି ଶିଖିପାରିବା; କିନ୍ତୁ ବିଶ୍ୱ ଆମର ଆଧ୍ୟାତ୍ମିକତାର ଧନରାଶିକୁ ସତୃଷ୍ଣ ନୟନରେ ପ୍ରତୀକ୍ଷା କରିରହିଛି; ଆମେ ସେମାନଙ୍କୁ ତାହା ଶିକ୍ଷା ଦେବାକୁ ହେବ । ସୁତରାଂ ଆମକୁ ବାହାରକୁ ଯିବାକୁ ହେବ ହିଁ ହେବ, ସେମାନେ ଯାହା ଦେବେ, ତାହା ପ୍ରତିବଦଳରେ ଆମର ଆଧ୍ୟାତ୍ମିକତା ଦେବାକୁ ହେବ ।*

ସ୍ୱାମୀଜୀ ନିଜ ଭିତରେ ନିହିତ ଶକ୍ତି ସହିତ ପରିଚିତ ହେଲାଉତ୍ତାରୁ ସେ ଉପଲବ୍ଧି କରିଛନ୍ତି ଯେ କଲିକତା ତଥା ଭାରତର ଯୁବବର୍ଗ ଯଦି ସେମାନଙ୍କର ଅନ୍ତର୍ନିହିତ ଶକ୍ତି ସହ ପରିଚିତ ହୋଇଯିବେ, ତେବେ ଭାରତବର୍ଷ ସମାଜରେ ପ୍ରଚଳିତ ଅସ୍ପୃଶ୍ୟତା, କୁସଂସ୍କାର, ଅନ୍ଧବିଶ୍ୱାସ, ଧର୍ମାନ୍ଧତା ଓ ସାମ୍ପ୍ରଦାୟିକତା ଭଳି ରାକ୍ଷସର ମୃତ୍ୟୁ ନିଶ୍ଚିତ ହେବ ଏବଂ ବେଦାନ୍ତ ଭିତ୍ତିକ ଏକ ନୂତନ ସମାଜର ଆବିର୍ଭାବ ଘଟିବ ଯାହା ସମଗ୍ର ମାନବଜାତିର ପଥକୁ ଆଲୋକିତ କରିବ । ସ୍ୱାମୀଜୀ କହୁଛନ୍ତି : ତୁମ ରାଷ୍ଟ୍ରକୁ ହତ୍ୟା କରୁଥିବା ଅଶ୍ଳୀଳ ବାମାଚାର ମାର୍ଗକୁ ତୁରନ୍ତ ତ୍ୟାଗକର । ଭାରତର ଅନ୍ୟାନ୍ୟ ଭାଗକୁ ତୁମେ ଦେଖିନାହଁ । ଆମ ସମାଜରେ ଯେଉଁ ପରିମାଣରେ ବାମାଚାର ପ୍ରବେଶ କରିଛି, ତାହା ମୁଁ ଦେଖିଛି, ଏହି ବାମାଚାର ସଂସ୍କୃତିକୁ ଯେଉଁଭଳି ଗର୍ବିତବସ୍ତୁ ଭାବେ ପ୍ରତିପାଦନ କରାଯାଉଛି, ତାହା ଅତ୍ୟନ୍ତ ଅସମ୍ମାନସୂଚକ ବୋଲି ମୁଁ ଦେଖିଛି । ଏହି ବାମାଚାର ସଂପ୍ରଦାୟ ମହୁଫେଣା ଭଳି ସମାଜରେ ବସା ବାନ୍ଧିଛନ୍ତି ।

ଦିନ ବେଳେ ସେମାନେ ଆଚାର ସମ୍ବନ୍ଧରେ ଉଚ୍ଚସ୍ୱରରେ ବହୁ ନୀତିବାଣୀ ଶୁଣାନ୍ତି, ରାତିରେ ଭୟଙ୍କର ଶାସ୍ତ୍ରଦ୍ୱାରା ପରିଚାଳିତ ହୋଇ ବିଭତ୍ସ ବ୍ୟଭିଚାରପୂର୍ଣ୍ଣ କାର୍ଯ୍ୟରେ ଲିପ୍ତ ରୁହନ୍ତି । ସେମାନେ ଏତାଦୃଶ ଶାସ୍ତ୍ର ଦ୍ୱାରା ପ୍ରରୋଚିତ ହୋଇ ଏହିସବୁ କାର୍ଯ୍ୟ କରନ୍ତି । ଆପଣ ବଙ୍ଗଳାର ଅଧିବାସୀ ସମସ୍ତେ ଏହା ଜାଣନ୍ତି । ବଙ୍ଗଳା ଶାସ୍ତ୍ରଗୁଡ଼ିକ ବାମାଚାର ତନ୍ତ୍ର । ସେମାନେ ଏତାଦୃଶ ଗାଡ଼ିଗାଡ଼ି ଶାସ୍ତ୍ର ପ୍ରକାଶ କରନ୍ତି, ତୁମର ପିଲାମାନଙ୍କୁ ଶ୍ରୁତି ନ ପଢ଼ାଇ ଏହିସବୁ ଶାସ୍ତ୍ର ପଢ଼ିବାକୁ ଦେଇ; ସେମାନଙ୍କର ମସ୍ତିଷ୍କକୁ ବିଷାକ୍ତ କରିଦିଅନ୍ତି । ... ଏହି କଲିକତାର ପିତୃଗଣ, ଆପଣମାନେ ଯଦି ବାସ୍ତବରେ ଏଥିସକାଶେ ଲଜ୍ଜିତ, ତେବେ ତୁମର ସନ୍ତାନମାନଙ୍କୁ ଏହିସବୁ ବିଭତ୍ସ ଶାସ୍ତ୍ରଠାରୁ ଦୂରେଇ ରଖ ଏବଂ ପ୍ରକୃତ ଶାସ୍ତ୍ର, ବେଦ, ଗୀତା, ଉପନିଷଦ ସେମାନଙ୍କୁ ପଢ଼ିବାକୁ ଦିଅ । ଏଠାରେ ସ୍ମରଣୀୟ ଯେ ବାମାଚାର ସମ୍ପ୍ରଦାୟ ମଦ, ମାଂସ, ନାରୀ, ଅସ୍ତ୍ର ବ୍ୟବହାର କରି ତନ୍ତ୍ର ସାଧନା କରିଥାନ୍ତି । ଏହି ସାଧନା ରାତ୍ରିରେ ଅନୁଷ୍ଠିତ ହୁଏ । ଏହା ଏକ ଭୟଙ୍କର ଓ ବିଭତ୍ସ ଉପାସନା ପଦ୍ଧତି । ଏଥିରେ ଚରିତ୍ର ସ୍ଖଳନର ସମ୍ଭାବନା ଅଧିକ ଥାଏ । ଏତାଦୃଶ ବିଭତ୍ସତା ଓ ଅଶ୍ଳୀଳତା ହିନ୍ଦୁଧର୍ମକୁ ପଥଚ୍ୟୁତ କରେ ବୋଲି ସ୍ୱାମୀଜୀ ସତର୍କ କରାଇ ଦେଇଥିଲେ ।

Digitized by srujanika@gmail.com

ସ୍ୱାମୀଜୀ ମାଡ୍ରାସରେ ଯେଉଁ ବକ୍ତବ୍ୟ ପ୍ରଦାନ କରିଥିଲେ, ତାହା ପୁନର୍ବାର ଦୋହରାଇ କହିଲେ, ''ପ୍ରସାରଣ ହିଁ ଜୀବନର ସଂକେତ; ଆମକୁ ବାହାରକୁ ଯିବାକୁ ହେବ, ଜୀବନକୁ ପ୍ରଦର୍ଶିତ କରିବାକୁ ହେବ ନଚେତ ଅଧଃପତନ, ବନ୍ଧନ ଏବଂ ମୃତ୍ୟୁ । ବିଶ୍ୱ ଉପରେ ଭାରତକୁ ବିଜୟ ହାସଲ କରିବାକୁ ପଡ଼ିବ । ... ବିଶ୍ୱର ରାଷ୍ଟ୍ରଗୁଡ଼ିକରେ ଆମର ଶାସ୍ତ୍ରର ସତ୍ୟକୁ ପ୍ରଚାରିତ କରିବାକୁ ହେବ, ଯାହା ହେବ ଆମର ଚିରସ୍ଥାୟୀ ବୈଦେଶିକ ନୀତି । ଏଠାରେ ଅର୍ଥାତ୍ ଆମ ଘରେ ଯେଉଁ କଳହ ଲାଗିରହିଛି ତାହା କେବଳ ଏହା ହ୍ରାସ କରିବ ନାହିଁ ବରଂ ବିଶ୍ୱକୁ ଦେବାପାଇଁ ଏହା ଉଦ୍ଦିଷ୍ଟ । ଆଦାନ ଓ ପ୍ରଦାନ ହେଉଛି ଜୀବନର ଗୋପନୀୟତା । ପାଶ୍ଚାତ୍ୟବାସୀଙ୍କ ପାଦତଳେ ବସି ଆମେ କ'ଣ ସବୁଦିନ ସବୁ ଜିନିଷ ଏପରିକି ଧର୍ମ ଗ୍ରହଣ କରୁଥିବା ? ଅବଶ୍ୟ ପାଶ୍ଚାତ୍ୟ ଜଗତରୁ ଆମେ ବହୁ କିଛି ଶିଖିପାରିବା; କିନ୍ତୁ ବିଶ୍ୱ ଆମର ଆଧ୍ୟାତ୍ମିକତାର ଧନରାଶିକୁ ସତୃଷ୍ଣ ନୟନରେ ପ୍ରତୀକ୍ଷା କରିରହିଛି; ଆମେ ସେମାନଙ୍କୁ ତାହା ଶିକ୍ଷା ଦେବାକୁ ହେବ । ସୁତରାଂ ଆମକୁ ବାହାରକୁ ଯିବାକୁ ହେବ ହିଁ ହେବ, ସେମାନେ ଯାହା ଦେବେ, ତାହା ପ୍ରତିବଦଳରେ ଆମର ଆଧ୍ୟାତ୍ମିକତା ଦେବାକୁ ହେବ । ତୁମେ ଯଦି ଇଂରାଜୀ କିମ୍ବା ଆମେରିକୀୟଙ୍କ ସହ ସମକକ୍ଷ ହେବାକୁ ଚାହଁ, ସେମାନଙ୍କୁ ଶିକ୍ଷା ଦେବା ସହ ସେମାନଙ୍କଠାରୁ ଶିକ୍ଷା ଗ୍ରହଣ କରିବାକୁ ହେବ । ... କଲିକତାର ଯୁବବର୍ଗ - ଉଠ, ଜାଗ ସମୟ ବର୍ତ୍ତମାନ ଉପସ୍ଥିତ । ... ମୋର ଦୃଢ଼ ବିଶ୍ୱାସ ଯେ ବଙ୍ଗଳାର ଯୁବବର୍ଗଙ୍କଠାରୁ ଶକ୍ତି ଉଦ୍ଭବ ହେବ ଯାହା ଉପଯୁକ୍ତ ଆଧ୍ୟାତ୍ମିକ ସ୍ଥାନରେ ଆସୀନ କରିବା ପାଇଁ ଭାରତକୁ ଜାଗ୍ରତ କରିବ । ଆମେ ଗୋଟିଏ ଜିନିଷ ଚାହୁଁ, ତାହା ହେଲା ଶ୍ରଦ୍ଧା । ଏହି ଶ୍ରଦ୍ଧା ଆମ ଭିତରେ ଅଛି ଯାହା ଆମେ ଚାହୁଁ । ତୁମେ ଏହି ଶ୍ରଦ୍ଧାକୁ ଧାରଣ କର, ସବୁକିଛି ଏହାକୁ ଅନୁସରଣ କରିବାକୁ ବାଧ୍ୟ ।

ଯୁବମାନସକୁ ପ୍ରଜ୍ୱଳିତ କରିବା ଉଦ୍ଦେଶ୍ୟରେ ଦ୍ୱୈତବାଦର ବହୁ ତଥାକଥିତ ବିଶ୍ୱାସ ଓ ଚିନ୍ତାଧାରାକୁ ସ୍ୱାମୀଜୀ ସମାଲୋଚନା କରିବାକୁ ପଶ୍ଚାତ୍‌ପଦ ହେଲେ ନାହିଁ । ଦ୍ୱୈତବାଦକୁ ସ୍ୱାମୀଜୀ କସ୍ମିନକାଳେ ବିରୋଧ କରିନାହାଁନ୍ତି ବରଂ ଦ୍ୱୈତବାଦକୁ କେନ୍ଦ୍ରକରି ଯେଉଁ ସାମ୍ପ୍ରଦାୟିକ ମନୋଭାବ ଭାରତବର୍ଷରେ ଉତ୍ପନ୍ନ ହୋଇଥିଲା ଏବଂ ଭାରତବର୍ଷ ଉକ୍ତ ଅନ୍ଧବିଶ୍ୱାସରେ ବୁଡ଼ୁବୁଡ଼ୁ ହୋଇ ଧର୍ମଜଗତରେ ଅଧଃପତନର ଶିକାର ହୋଇଥିଲା, ସେହି ରୁଗ୍ଣ ମାନସିକତାକୁ ସେ କଠୋର ଶବ୍ଦରେ ସମାଲୋଚନା କରିଥିଲେ । ଏହି ପରିପ୍ରେକ୍ଷୀରେ ସ୍ୱାମୀଜୀ କହିଥିଲେ - ଭାରତବର୍ଷର ଦ୍ୱୈତବାଦୀ ସମ୍ପ୍ରଦାୟଙ୍କ ମତାନୁସାରେ ବ୍ୟକ୍ତି ଆତ୍ମା ନିରନ୍ତର ବ୍ୟକ୍ତି ଆତ୍ମା ବା ଜୀବାତ୍ମା ଭାବେ ରହିଥାଏ ଏବଂ ଈଶ୍ୱର ପ୍ରାକ୍ ଭୌତିକ ପ୍ରକୃତି ମଧ୍ୟରୁ ବିଶ୍ୱବ୍ରହ୍ମାଣ୍ଡ ରଚନା କରନ୍ତି, ତାହାହିଁ କାରଣ । କିନ୍ତୁ ଅନ୍ୟ ପକ୍ଷରେ ଅଦ୍ୱୈତବାଦୀଙ୍କ ମତାନୁସାରେ, ଈଶ୍ୱର ଉଭୟ ଭୌତିକ ଓ ଜଗତର କାରଣ ଅଟନ୍ତି । ସେ କେବଳ ଜଗତର ରଚୟିତା ନୁହଁନ୍ତି ବରଂ ସେ ନିଜେ ହିଁ ଜଗତ ଅର୍ଥାତ୍ ସେ ନିଜ ଭିତରୁ ଜଗତ ସୃଷ୍ଟି କରନ୍ତି । ଏହା ହିଁ ଅଦ୍ୱୈତବାଦର ସିଦ୍ଧାନ୍ତ । ଆଉ କେତେକ ସାଧାରଣ ବର୍ଗର ଦ୍ୱୈତବାଦୀ ଅଛନ୍ତି ଯେଉଁମାନେ ବିଶ୍ୱାସ କରନ୍ତି ଯେ ଈଶ୍ୱର ନିଜ ଭିତରୁ ଏହି ଜଗତ ସୃଷ୍ଟି କରିଛନ୍ତି ଏବଂ ସ୍ୱୟଂ ଜଗତରୁ ଚିରନ୍ତନ ପୃଥକ ହୋଇ ରହିଛନ୍ତି ଏବଂ ସମସ୍ତ ବସ୍ତୁ ଜଗତକର୍ତ୍ତାଙ୍କ ଅଧୀନସ୍ଥ ହୋଇ ରହିଛନ୍ତି । ଅନ୍ୟ କେତେକ ସଂପ୍ରଦାୟଙ୍କର ବିଶ୍ୱାସ ଯେ ଈଶ୍ୱରଙ୍କଠାରୁ

Digitized by srujanika@gmail.com

ଏହି ଜଗତ ଉଦ୍ଭବ ଏବଂ ମନୁଷ୍ୟ ଏହି ଦୃଶ୍ୟମାନ ସୀମିତ ଜଗତକୁ ତ୍ୟାଗ କରି ଶେଷରେ ନିର୍ବାଣ ପ୍ରାପ୍ତି କରିବ ଏବଂ ଅନନ୍ତ ହୋଇଯିବ । କିନ୍ତୁ ଏହି ସଂପ୍ରଦାୟ ବର୍ତ୍ତମାନ ଅନ୍ତର୍ଦ୍ଧାନ ହୋଇଗଲେଣି । ଅଦ୍ୱୈତବାଦର ଏକ ଆଧୁନିକ ଭାରତୀୟ ସମ୍ପ୍ରଦାୟ ଆଦି ଶଙ୍କରାଚାର୍ଯ୍ୟଙ୍କର ଅନୁଗାମୀ । ଶଙ୍କରଙ୍କ ମତରେ ଈଶ୍ୱର ଉଭୟ ଭୌତିକ ଓ ମାୟା ମାଧ୍ୟମରେ କାରଣ ଅଟନ୍ତି, କିନ୍ତୁ ବାସ୍ତବ କ୍ଷେତ୍ରରେ ନୁହେଁ । ଈଶ୍ୱର ଏହି ଜଗତହୋଇ ନାହାଁନ୍ତି; କିନ୍ତୁ ଜଗତ ନୁହେଁ ବରଂ ଈଶ୍ୱର ନିଜେ । ଅଦ୍ୱୈତ ବେଦାନ୍ତ ଏବଂ ମାୟାକୁ ବୁଝିବାପାଇଁ ଏହା ହିଁ ସର୍ବଶ୍ରେଷ୍ଠ ବିନ୍ଦୁ ।

ଶ୍ରୀ ଶଙ୍କର ଥିଲେ ପ୍ରଥମ ବ୍ୟକ୍ତି ଯିଏ କାଳ, ସ୍ଥାନ ଓ କାରଣର ପରିଚିତିର ଧାରଣା ମାୟା ସହିତ ଜଡ଼ିତ ବୋଲି ଉପଲବ୍ଧି କରିଥିଲେ । ... ବର୍ତ୍ତମାନ ଏହା ଏକ ଅଦ୍ଭୁତ ତତ୍ତ୍ୱ - ଅଦ୍ୱୈତ ବେଦାନ୍ତର ମାୟା ତତ୍ତ୍ୱ । ସକଳ ବସ୍ତୁ ହିଁ ବ୍ରହ୍ମ କିନ୍ତୁ ମାୟା ଦ୍ୱାରା ପାର୍ଥକ୍ୟ ବା ବିଭେଦ ସୃଷ୍ଟି ହୁଏ । ଐକ୍ୟ - ଏକ ବ୍ରହ୍ମ - ନିର୍ଗୁଣ ବ୍ରହ୍ମ - ଲକ୍ଷ୍ୟସ୍ଥଳ । ଏହି ଚିନ୍ତାଧାରାରେ ରହିଛି ଭାରତ ଓ ପାଶ୍ଚାତ୍ୟ ଭିତରେ ମତାନ୍ତର । ହଜାର ହଜାର ବର୍ଷ ଧରି ଭାରତ ବିଶ୍ୱକୁ ଏହି ଆହ୍ୱାନ ପ୍ରଦାନ କରିଥିଲେ ଏବଂ ବିଭିନ୍ନ ରାଷ୍ଟ୍ର ଏହି ଆହ୍ୱାନକୁ ଆପଣେଇ ନେଇଥିଲେ, ଫଳସ୍ୱରୂପ - ସେମାନେ ଧରି ରଖିପାରିଲେ ନାହିଁ, କିନ୍ତୁ ତୁମେ ରଖିପାରିଛ । ଏହି ଆହ୍ୱାନ ହେଉଛି ଯେ ଏହି ଜଗତ ମାୟା, ସବୁକିଛି ମାୟା । ତୁମେ ଆଙ୍ଗୁଳିରେ ମାଟି ତାଡ଼ି ଖାଅ, କିମ୍ୱା ସ୍ୱର୍ଣ୍ଣ ଥାଳିରେ ଭୋଜନ କର, କିମ୍ୱା ତୁମେ ରାଜପ୍ରାସାଦରେ ଅବସ୍ଥାନ କର କିମ୍ୱା ତୁମେ ଏକ ସର୍ବଶ୍ରେଷ୍ଠ ଶକ୍ତିମାନ ସମ୍ରାଟ ହୋଇଥାଅ କିମ୍ୱା ତୁମେ ସବୁଠାରୁ ଗରିବ ଭିକାରି ହୋଇଥାଅ, ମୃତ୍ୟୁ ସମସ୍ତଙ୍କ ପାଇଁ ଗୋଟିଏ ପରିଣାମ; ଏହା ସମସ୍ତଙ୍କ ପାଇଁ ସମାନ, ଇଯେ ସବୁ କେବଳ ମାୟା । ତାହାହିଁ ପ୍ରାଚୀନ ଭାରତୀୟ ସାରାଂଶ । କେତେ ଦେଶର ଉତ୍ଥାନ ବାରମ୍ୱାର ହୁଏ, ସେମାନେ ଏହାକୁ ଅସ୍ୱୀକାର କରନ୍ତି, ଅପ୍ରମାଣିତ କରନ୍ତି, ମହାନ୍ ହୋଇ ଯାଆନ୍ତି, ସେମାନଙ୍କର ଉପଭୋଗ ହିଁ ଜୀବନର ଲକ୍ଷ୍ୟ ହୋଇଯାଏ, ହାତରେ ଅଖଣ୍ଡ କ୍ଷମତା ବସା ବାନ୍ଧେ, ସେହି କ୍ଷମତାକୁ ସେମାନେ ସାମର୍ଥ ଅନୁସାରେ ବ୍ୟବହାର କରନ୍ତି, ସାମର୍ଥ ଅନୁସାରେ ଉପଭୋଗ କରନ୍ତି ଏବଂ ଅନ୍ୟ ମୁହୂର୍ତ୍ତରେ ସେମାନେ ମୃତ୍ୟୁବରଣ କରନ୍ତି । କିନ୍ତୁ ଆମେ ଚିରନ୍ତର ରହିଛୁ କାରଣ ଆମେ ସବୁକିଛିକୁ ମାୟା ବୋଲି ଭାବିଥାଉ । ମାୟାର ସନ୍ତାନଗଣ ଚିରଦିନ ଜୀବନଧାରଣ କରନ୍ତି କିନ୍ତୁ ଉପଭୋଗର ସନ୍ତାନଗଣଙ୍କର ମୃତ୍ୟୁ ହୁଏ ।''

- ୪ -

*ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି'' ମନ୍ତ୍ର ସର୍ବଶ୍ରେଷ୍ଠ ବିସ୍ମୟକର ଚିନ୍ତାଧାରା । ଗୋଟିଏ ସତ୍ୟ, କିନ୍ତୁ ବହୁ ଋଷି ବିଭିନ୍ନ ନାମରେ ତାଙ୍କୁ ଡାକନ୍ତି । ଏହା ଭାରତୀୟ ସଂସ୍କୃତିର ମୂଳପିଣ୍ଡ । ଆମ ରାଷ୍ଟ୍ରର ଜୀବନ ସମସ୍ୟା ଏହି ମୂଳପିଣ୍ଡକୁ ଆଧାର କରି ସମାଧିତ ହୋଇ ଆସୁଅଛି ।*

ଅଦ୍ୱୈତ ବେଦାନ୍ତରେ ବ୍ୟକ୍ତିସତ୍ତା ବି ଭ୍ରମ ବା ମାୟା । କିନ୍ତୁ ବିଶ୍ୱରେ ଏହି ମତକୁ ଗ୍ରହଣ କରିବା ବଡ଼ କଷ୍ଟ । ଯଦି ଜଣକୁ କୁହାଗଲା ଯେ ସେ ଜଣେ ବ୍ୟକ୍ତି ନୁହେଁ, ସେ ସାଙ୍ଗେ ସାଙ୍ଗେ

Digitized by srujanika@gmail.com

ଭୟଭୀତ ହୋଇପଡ଼ିବ, କାହିଁକିନା ତା'ର ବ୍ୟକ୍ତିସତ୍ତାର ଅବସ୍ଥା କ'ଣ ହେବ ବୋଲି ଭାବି ସେ ଦୁଃଖରେ ମ୍ରିୟମାଣ ହୋଇପଡ଼ିବ ବୋଲି ସ୍ୱାମୀଜୀ ଚେତାଇ ଦେଲେ । ଅଦ୍ୱୈତବାଦ ଉପରେ ନିଜର ମନ୍ତବ୍ୟ ପ୍ରକାଶ କରି କହିଲେ, ''ଅଦ୍ୱୈତବାଦୀ କୁହନ୍ତି ଯେ ଏକ ପୃଥକ ବ୍ୟକ୍ତିସତ୍ତା ବୋଲି କିଛି ନାହିଁ, ତୁମେ ପ୍ରତିମୁହୂର୍ତ୍ତରେ ଜୀବନରେ କେବଳ ରୂପ ପରିବର୍ତ୍ତନ କରୁଛ । ତୁମେ ଯେତେବେଳେ ଶିଶୁଥିଲ, ସେତେବେଳେ ଗୋଟିଏ ନିର୍ଦ୍ଦିଷ୍ଟ ଧାରାରେ ତୁମେ ଚିନ୍ତା କରୁଥିଲ । ବର୍ତ୍ତମାନ ତୁମେ ଜଣେ ପୂର୍ଣ୍ଣାଙ୍ଗ ମଣିଷ । ଅନ୍ୟ ଭାବରେ ତୁମେ ଚିନ୍ତା କରୁଛ, ପୁନଶ୍ଚ ତୁମେ ବୃଦ୍ଧ ହେବ, ଏବଂ ଅନ୍ୟ ଭାବରେ ଚିନ୍ତା କରିବ । ପ୍ରତ୍ୟେକ ପରିବର୍ତ୍ତନ ହେଉଛନ୍ତି । ତାହା ଯଦି ସତ୍ୟ, ତେବେ ତୁମର ପୃଥକ ବ୍ୟକ୍ତିସତ୍ତା ଗଲା କୁଆଡ଼େ ? ଶରୀରରେ ନିଶ୍ଚିତଭାବେ ଏହା ନାହିଁ କିମ୍ବା ମନରେ ନାହିଁ, କିମ୍ବା ଚିନ୍ତାଧାରାରେ ନାହିଁ । ତାହା ପଶ୍ଚାତରେ ରହିଛି ତୁମର ଆତ୍ମା, ତେଣୁ ଅଦ୍ୱୈତବାଦୀ କୁହନ୍ତି ଯେ ଆତ୍ମା ସ୍ୱୟଂ ବ୍ରହ୍ମ ।

ଦୁଇଟି ଅନନ୍ତ ରହିପାରିବେ ନାହିଁ । ଗୋଟିଏ ମାତ୍ର ବ୍ୟକ୍ତି ରହିଛି ଯାହା ଅନନ୍ତ ବୋଲି ସମ୍ବୋଧିତ । ସାଧାରଣ ଭାଷାରେ ଆମେମାନେ ବିବେକୀ ଜୀବ ଏବଂ ଆମେ ଚାହୁଁ ବୁଦ୍ଧି ଓ ତର୍କ । ବୁଦ୍ଧି କ'ଣ ? ଯେଉଁଠାରୁ ଆଉ ଆପଣ ଆଗକୁ ଚିନ୍ତା କରିପାରିବେ ନାହିଁ । ସେହି ପର୍ଯ୍ୟନ୍ତ ତୁମେ ଅଳ୍ପ ହେଉ ବହୁତ ହେଉ କିଛି ବିଭାଗୀକରଣ କରିପାରିବ । ତା'ବାଦେ ନାହିଁ । ସସୀମ ନିଜର ବିଶ୍ରାମ ସେଇଠି ନିଏ ଯେଉଁଠାରୁ ଅସୀମ ଆରମ୍ଭ ହୁଏ । ଗୋଟିଏ ସସୀମ ବସ୍ତୁ ନିଅ ଏବଂ ଏହା ଉପରେ ଅନୁଶୀଳନ କରିଚାଲ, ଦେଖିବ ଯେ ଅନୁଶୀଳନର ସମାପ୍ତି କେଉଁଠାରେ ଘଟିବ ନାହିଁ, କିନ୍ତୁ ଯେତେବେଳେ ଅନ୍ତିମ ଅର୍ଥାତ୍ ଅସୀମ ନିକଟରେ ଉପନୀତ ହେବ, ସେତେବେଳେ ସେହି ବସ୍ତୁର ଅନୁଶୀଳନର ସମାପ୍ତି ଘଟିବ । ଅଦ୍ୱୈତବାଦୀ କୁହନ୍ତି ଯେ ସେହି ଅନନ୍ତ ହିଁ କେବଳ ସତ୍ୟ ଓ ଶାଶ୍ୱତ । ଅନ୍ୟସବୁ ମାୟା, କୌଣସି ବସ୍ତୁର ବାସ୍ତବ ସ୍ଥିତି ନାହିଁ । ଯେଉଁ ବସ୍ତୁର ସ୍ଥିତି ରହିଛି, ସେସବୁ ହିଁ କେବଳ ବ୍ରହ୍ମ । ଆମେ ବ୍ରହ୍ମ, ରୂପ ଓ ଆକୃତି ସବୁକିଛି ମାୟା । ରୂପ ଓ ଆକୃତିକୁ କାଢ଼ିନିଅ, ଦେଖିବ ତୁମେ ଓ ମୁଁ ସହିତ ସମସ୍ତ ବସ୍ତୁ ଏକ ।

କିନ୍ତ ମୁଁ ବା ଅହଂ ଭଳି ଶବ୍ଦ ପ୍ରତି ସତର୍କ ରହିବାକୁ ପଡ଼ିବ । ସାଧାରଣତଃ ଲୋକେ କୁହନ୍ତି, ''ଯଦି ମୁଁ ବ୍ରହ୍ମ, ତେବେ ମୁଁ ଯାହାପାରେ ତାହା କାହିଁକି କରିପାରେ ନାହିଁ ?'' ଏକ ପୃଥକ ମାନସିକତାରେ ଏହି ଶବ୍ଦକୁ ବ୍ୟବହାର କରାଯାଉଛି । ଯେଉଁ ମୁହୂର୍ତ୍ତ ତୁମେ ନିଜକୁ ବଦ୍ଧ ବୋଲି ଭାବିବ, ସେତେବେଳେ ତୁମେ ଆଉ ବ୍ରହ୍ମ ହୋଇ ରହିପାରିବ ନାହିଁ । ବ୍ରହ୍ମ କିଛି ଚାହେଁ ନାହିଁ, ସେ ନିଜ ଆଲୋକରେ ଆଲୋକିତ । ତାଙ୍କର ସମସ୍ତ ଆନନ୍ଦ ଓ ସୁଖ ନିଜ ଭିତରେ ନିହିତ; ସ୍ୱୟଂ ସେ ତୃପ୍ତ । ସେ କିଛି ଚାହାଁନ୍ତି ନାହିଁ, ଆଶା କରନ୍ତି ନାହିଁ, ସମ୍ପୂର୍ଣ୍ଣ ନିର୍ଭୀକ, ଶୁଦ୍ଧ ମୁକ୍ତ । ତାହା ହିଁ ବ୍ରହ୍ମ । ତାଙ୍କ ଭିତରେ ଆମେ ସମସ୍ତେ ଏକ ଓ ଅଭିନ୍ନ ।

Digitized by srujanika@gmail.com

- ୪ -

*ବର୍ତ୍ତମାନ ଆମ ଦେଶ ଯାହା ଚାହେଁ ତାହା ହେଲା: ଲୌହ ମାଂସପେଶୀ, ଇସ୍ପାତ ସ୍ନାୟୁ, ବିଶାଳ ଇଚ୍ଛା ଶକ୍ତିର ମଣିଷ, ଯେଉଁମାନଙ୍କୁ କୌଣସି ଶକ୍ତି ବାଧା ଦେଇପାରିବ ନାହିଁ ଏବଂ ସେମାନେ ବିଭିନ୍ନ ଭଙ୍ଗୀରେ ନିଜର ଲକ୍ଷ୍ୟ ହାସଲ କରିବା ପାଇଁ କାର୍ଯ୍ୟ କରିପାରିବେ; ଏପରିକି ଆବଶ୍ୟକ ସ୍ଥଳେ ସମୁଦ୍ରର ଅତଳ ଗଭୀରତା ଭିତରକୁ ଲମ୍ଫ ପ୍ରଦାନ କରି ମୃତ୍ୟୁ ସହ ସମ୍ମୁଖୀନ ହେବା ନିମନ୍ତେ ଭୟ କରିବେ ନାହିଁ ।*

ଅଦ୍ୱୈତବେଦାନ୍ତର ପରମ ତତ୍ତ୍ୱ ସଂକ୍ଷିପ୍ତ ଭାବେ କହିବା ପରେ ସ୍ୱାମୀଜୀ ସ୍ପଷ୍ଟଭାବେ ଘୋଷଣା କରିଥିଲେ ଯେ ଦ୍ୱୈତବାଦ ଓ ଅଦ୍ୱୈତବାଦ ଉଭୟ ଭାରତରେ ଶତାବ୍ଦୀ ଶତାବ୍ଦୀ ଧରି ମତପାର୍ଥକ୍ୟ ସତ୍ତ୍ୱେ ଆଜି ପର୍ଯ୍ୟନ୍ତ ତିଷ୍ଠି ରହିପାରିଛି, ତାହାର କାରଣ ହେଲା ଶ୍ରୁତି-ବେଦ । ଦ୍ୱୈତ, ବିଶିଷ୍ଟ ଦ୍ୱୈତ, ଅଦ୍ୱୈତ ଏବଂ ଅନ୍ୟାନ୍ୟ ଧର୍ମମାର୍ଗ ମଧ୍ୟରେ ଅସହ୍ୟ କଳହ ଲାଗିଥିଲେ ବି ବେଦର ସେହି ଗୋଟିଏ ମନ୍ତ୍ର ସମସ୍ତ ସମସ୍ୟାର ସମାଧାନ କରିପାରିଛି । ଏହି ଶକ୍ତିଶାଳୀ ଓ ସ୍ୱୟଂ ମହିମାମୟ ବେଦମନ୍ତ୍ର ଭାରତୀୟ ଧର୍ମ ଓ ସଂସ୍କୃତିକୁ ବହୁ ଉତ୍‌ଥାନ ଓ ପତନରୁ ରକ୍ଷା କରିପାରିଥିଲା । ସେହି ମନ୍ତ୍ରକୁ ଭାରତ ବିଶ୍ୱକୁ ପ୍ରଦାନ କରିବାର ବେଳ ଆସିଛି । ସ୍ୱାମୀଜୀ କହିଥିଲେ - ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି'' ମନ୍ତ୍ର ସର୍ବଶ୍ରେଷ୍ଠ ବିସ୍ମୟକର ଚିନ୍ତାଧାରା । ଗୋଟିଏ ସତ୍ୟ, କିନ୍ତୁ ବହୁ ଋଷି ବିଭିନ୍ନ ନାମରେ ତାଙ୍କୁ ଡାକନ୍ତି । ଏହା ଭାରତୀୟ ସଂସ୍କୃତିର ମୂଳପିଣ୍ଡ । ଆମ ରାଷ୍ଟ୍ରର ଜୀବନ ସମସ୍ୟା ଏହି ମୂଳପିଣ୍ଡକୁ ଆଧାର କରି ସମାଧିତ ହୋଇ ଆସୁଅଛି ।

ମୁଁ ଭାବେ ଭାରତରେ କେତେଜଣ ପଣ୍ଡିତ ଏବଂ ଆଧ୍ୟାତ୍ମିକ ସନ୍ଥଙ୍କ ବ୍ୟତୀତ ଏହି ମହାନ୍ ମନ୍ତ୍ର ବା ବାଣୀକୁ ଆମେ କେବଳ ଭୁଲି ଯାଆନ୍ତି । ବାସ୍ତବିକ ଏହି ମନ୍ତ୍ର ବିଭିନ୍ନ ଭାଷାଭାଷି ଲୋକ, ବିଭିନ୍ନ ଧର୍ମ ଓ ସଂପ୍ରଦାୟାବଲମ୍ବୀ ଭାରତୀୟଙ୍କୁ ଏକ ସୂତ୍ରରେ ବାନ୍ଧି ରଖିପାରିଛି, ସମସ୍ତ କଳହ, ମନୋମାଳିନ୍ୟ ଓ ମତ ପାର୍ଥକ୍ୟର ସମାପନ କରିପାରିଛି । ସ୍ୱାମୀଜୀ ପୁନଶ୍ଚ କହନ୍ତି - ଇନ୍ଦ୍ରିୟାନୁଭୂତି ହିଁ ଦ୍ୱୈତବାଦର ଚିନ୍ତାଧାରା ଉତ୍ପନ୍ନ କରେ । ଯେତେଦିନ ପର୍ଯ୍ୟନ୍ତ ଆମେ ଇନ୍ଦ୍ରିୟମାନଙ୍କ ଦ୍ୱାରା ଆବଦ୍ଧ ସେତେଦିନ ପର୍ଯ୍ୟନ୍ତ ଆମେ ଈଶ୍ୱରଙ୍କର ସଗୁଣ ରୂପ କଳ୍ପନା କରିବୁ ହିଁ କରିବୁ । ଅନ୍ୟ କିଛି କରିପାରିବୁ ନାହିଁ କାହିଁକିନା ଯେପରି ଆମେ ସଂସାରକୁ ଦେଖୁଛୁ ସେପରି ଆମେ କଳ୍ପନା କରିବୁ । ରାମାନୁଜ କୁହନ୍ତି - ଯେଉଁ ମୁହୂର୍ତ୍ତ ପର୍ଯ୍ୟନ୍ତ ତୁମେ ନିଜକୁ ଏକ ଦେହ ଭାବୁଥିବ, ଏକ ମନ ଭାବୁଥିବ, ଏକ ଜୀବ ଭାବୁଥିବ, ସେପର୍ଯ୍ୟନ୍ତ ଇନ୍ଦ୍ରିୟାନୁଭୂତିର ପ୍ରତ୍ୟେକ କାର୍ଯ୍ୟ ତୁମକୁ ତିନୋଟି ଜିନିଷ ଦେଉଥିବ । ଆତ୍ମା, ପ୍ରକୃତି ଏବଂ ଉଭୟର କାରଣ ଭଳି ଏକ ଜିନିଷ । କିନ୍ତୁ ଯେତେବେଳେ ଦେହଭାବ ଓ ମନଭାବ ସଂପୂର୍ଣ୍ଣ ବିଲୋପ ହେବ, ସେତେବେଳେ ହିଁ ତୁମେ ସ୍ୱୟଂ ବ୍ରହ୍ମରେ ରୂପାନ୍ତରିତ ହୋଇଯିବ ।''

Digitized by srujanika@gmail.com

ଅଦ୍ୱୈତବାଦର ପ୍ରଶଂସକ ହୋଇ ସ୍ୱାମୀଜୀ କେବେ ବି ଦ୍ୱୈତବାଦକୁ ନିନ୍ଦା କରିନାହାଁନ୍ତି । ଦ୍ୱୈତବାଦର ମହାନତା ଓ ଭକ୍ତିରେ ସ୍ୱାମୀଜୀ ସ୍ୱୟଂ ଅବଗାହନ କରିଛନ୍ତି । ଦ୍ୱୈତବାଦରେ ରହିଛି ପ୍ରେମ, ଶ୍ରଦ୍ଧା ଓ ଭକ୍ତିର ଅସୀମ ସାଗର । ସାଧାରଣ ମଣିଷ ଭକ୍ତିକୁ ସହଜରେ ଧରିପାରେ ଏବଂ ତା'ର ଅନନ୍ତ ସ୍ରୋତରେ ଭାସିଭାସି ଜ୍ଞାନାଲୋକିତ ହୁଏ ଯେଉଁଠି ସେ ସ୍ୱୟଂ ଉପଲବ୍ଧି କରେ ଯେ ସ୍ୱୟଂ ବ୍ରହ୍ମ । ସ୍ୱାମୀଜୀ ଏକଦା କହିଥିଲେ - ''ମୁଁ ଅଦ୍ୱୈତବାଦର ବେଶି ପ୍ରଚାର କରୁଛି ଏବଂ ଦ୍ୱୈତବାଦ ଉପରେ ଅଳ୍ପ କହୁଛି ବୋଲି ଅଭିଯୋଗ ମୋର ଦୃଷ୍ଟିକୁ ଏକଦା ଆସିଥିଲା । ଆହାଃ... ଦ୍ୱୈତବାଦୀ ଧର୍ମରେ ଭରିରହିଛି ଉତ୍କର୍ଷତା, ପ୍ରେମର ସାଗର, ଅସୀମତା, ଭାବାତୀତ ଆଶିଷ ଓ ଆନନ୍ଦ !!! ଏହିସବୁ ମୁଁ ଭଲଭାବେ ଜାଣେ । କିନ୍ତୁ ବର୍ତ୍ତମାନ ଆନନ୍ଦରେ ଅଶ୍ରୁ ବିସର୍ଜନର ସମୟ ନୁହେଁ । ଆମେ ଯଥେଷ୍ଟ ଅଶ୍ରୁ ବିସର୍ଜନ କରିସାରିଛେ । ଆମେ କୋମଳଭାବାପନ୍ନ ହେବାର ସମୟ ବର୍ତ୍ତମାନ ନୁହେଁ । ତୁଳା ସଦୃଶ ଆମର ଜନତା ହୋଇଥିବାରୁ ଏତାଦୃଶ କୋମଳତା ଆମ ଭିତରେ ବସା ବାନ୍ଧିଛି । ବର୍ତ୍ତମାନ ଆମ ଦେଶ ଯାହା ଚାହେଁ ତାହା ହେଲା: ଲୌହ ମାଂସପେଶୀ, ଇସ୍ପାତ ସ୍ନାୟୁ, ବିଶାଳ ଇଚ୍ଛା ଶକ୍ତିର ମଣିଷ, ଯେଉଁମାନଙ୍କୁ କୌଣସି ଶକ୍ତି ବାଧା ଦେଇପାରିବ ନାହିଁ ଏବଂ ସେମାନେ ବିଭିନ୍ନ ଭଙ୍ଗୀରେ ନିଜର ଲକ୍ଷ୍ୟ ହାସଲ କରିବା ପାଇଁ କାର୍ଯ୍ୟ କରିପାରିବେ; ଏପରିକି ଆବଶ୍ୟକ ସ୍ଥଳେ ସମୁଦ୍ରର ଅତଳ ଗଭୀରତା ଭିତରକୁ ଲମ୍ଫ ପ୍ରଦାନ କରି ମୃତ୍ୟୁ ସହ ସମ୍ମୁଖୀନ ହେବା ନିମନ୍ତେ ଭୟ କରିବେ ନାହିଁ । ଏଭଳି ମନୁଷ୍ୟ ବର୍ତ୍ତମାନ ଆମର ଆବଶ୍ୟକ; ସେମାନଙ୍କୁ ଆମେ ନିଜେ ସୃଷ୍ଟି କରିପାରିବା, ପ୍ରତିଷ୍ଠିତ କରିପାରିବା ଏବଂ ଶକ୍ତିଶାଳୀ କରିପାରିବା । ଯଦି ଆମେ ଅଦ୍ୱୈତ ଅର୍ଥାତ୍ ସମଗ୍ରତାର ଏକତ୍ୱର ଆଦର୍ଶ ହୃଦୟଙ୍ଗମ କରିପାରିବା, ତେବେ ଏହା କେବଳ ସାକାର ହୋଇପାରିବ ।''

ଏଠାରେ ସ୍ୱାମୀଜୀଙ୍କର କହିବାର ଉଦ୍ଦେଶ୍ୟ ଭାରତର ତତ୍କାଳୀନ ଅବସ୍ଥା ଏବଂ ଭାରତୀୟ ରୁଗ୍ଣ ମନୋଭାବ ସହ ଜଡ଼ିତ । ଭାରତର ଜନତା ଯେଉଁଭଳି ଭାବରେ ପରାନୁବାଦ, ପରାନୁକରଣ, ପରମୁଖାପେକ୍ଷୀ ଓ ଦାସସୁଲଭ ଦୁର୍ବଳତା ସମ ମାନସିକତାରେ ଶିକାର ହୋଇଥିଲେ, ତାହାର ବହୁ କାରଣ ଭିତରୁ ଗୋଟିଏ କାରଣ ଦ୍ୱୈତବାଦରୁ ଉଦ୍ଭବ ବୋଲି ସ୍ୱାମୀଜୀ ମର୍ମେ ଅନୁଭବ କରିଥିଲେ । ସାଧାରଣ ଜନତା ଭକ୍ତିମାର୍ଗର ପ୍ରକୃତ ରହସ୍ୟ ବୁଝି ନ ପାରି ଭକ୍ତି ମାର୍ଗର ପ୍ରବାହମାନ ସ୍ରୋତରେ ମଜ୍ଜିଯିବା ଫଳରେ ସେମାନଙ୍କ ଭିତରେ ଉତ୍ପନ୍ନ ହୋଇଥିଲା କାପୁରୁଷତା ଓ ଦୁର୍ବଳତା ଯାହାଫଳରେ ବିଦେଶୀମାନେ ସେମାନଙ୍କ ଉପରେ ବାରମ୍ବାର ଆକ୍ରମଣ କରି ସେମାନଙ୍କର ମେରୁଦଣ୍ଡ ଭାଙ୍ଗି ଦେଇଥିଲେ । ସେଥିପାଇଁ ସ୍ୱାମୀଜୀ ଭାରତୀୟଙ୍କୁ ଜଗେଇବା ପାଇଁ, ଚେତେଇବା ପାଇଁ ଏବଂ ସେମାନଙ୍କ ଭିତରୁ ପୁନର୍ବାର ସିଂହ ସଦୃଶ ପରାକ୍ରମ ଫେରାଇ ଆଣିବା ପାଇଁ ଅନ୍ତଃତପକ୍ଷେ କିଛିଦିନ ପାଇଁ ଦ୍ୱୈତବାଦରୁ ଓହରି ଆସି ଅଦ୍ୱୈତବାଦ ଗ୍ରହଣ କରିବା ଲାଗି ସେ ଆହ୍ୱାନ ଦେଇଛନ୍ତି । କାରଣ ଅଦ୍ୱୈତବାଦ ମାଧ୍ୟମରେ ମଣିଷ ସ୍ୱୟଂ ବ୍ରହ୍ମ ବା ସମଗ୍ରତାର ଏକତ୍ୱ ବୋଲି କେବଳ ବୁଝିବାକୁ ସକ୍ଷମ ହୁଏ । ଏପରିକି ନ ବୁଝିପାରିଲେ ବି, ଯଦି ଜଣେ ଅଦ୍ୱୈତ ବେଦାନ୍ତ ମାର୍ଗରେ ଗତି କରେ ସେ ନିଶ୍ଚିତଭାବେ ନିର୍ଭୀକ, ବଳଶାଳୀ, ବୀର୍ଯ୍ୟବାନ ଓ ଆତ୍ମବିଶ୍ୱାସୀ ହୋଇପାରିବ ।

Digitized by srujanika@gmail.com

ସେଥିପାଇଁ ପୁନଶ୍ଚ ସ୍ୱାମୀଜୀ କହିଥିଲେ - ''ବର୍ତ୍ତମାନ ନିଜ ଭିତରେ ଆବଶ୍ୟକ ବିଶ୍ୱାସ, ବିଶ୍ୱାସ, ବିଶ୍ୱାସ । ଯଦି ତୁମର ପ୍ରାଚୀନ ଓ ପୌରାଣିକ ତେତିଶ କୋଟି ଦେବାଦେବୀ ଏବଂ ପରବର୍ତ୍ତୀ କାଳରେ ବିଦେଶୀମାନେ ତୁମମାନଙ୍କ ମଧ୍ୟରେ ପ୍ରଚଳିତ କରିଥିବା ଦେବାଦେବୀଙ୍କ ଉପରେ ବିଶ୍ୱାସ ଥାଏ, କିନ୍ତୁ ତୁମ ନିଜ ଭିତରେ ଯଦି ବିଶ୍ୱାସ ନାହିଁ, ତେବେ ତୁମର କୌଣସି ପ୍ରକାର ମୁକ୍ତି ହେବନାହିଁ । ତୁମ ଭିତରେ ବିଶ୍ୱାସ ରଖ ଏବଂ ସେହି ବିଶ୍ୱାସ ଉପରେ ଦଣ୍ଡାୟମାନ ହୁଅ । ଆମେ ତେତିଶ କୋଟି ଜନତା ବିଗତ ହଜାର ହଜାର ବର୍ଷ ହେଲା କେତେକ ହାତଗଣତି ବିଦେଶୀଙ୍କ ଦ୍ୱାରା କାହିଁକି ଶାସିତ ହେଉଛନ୍ତି ? କାରଣ ସେମାନଙ୍କର ନିଜ ଉପରେ ବିଶ୍ୱାସ ରହିଛି କିନ୍ତୁ ତାହା ଆମର ନାହିଁ । ମୁଁ ସମ୍ବାଦପତ୍ରରେ ପଢ଼େ ଯେ କେତେବେଳେ କେମିତି ଆମର ନିଶ୍ୱ ଦେଶବାସୀ ଇଂରାଜୀଙ୍କ ଦ୍ୱାରା ନିହତ ହେଉଛନ୍ତ ଏବଂ ଦୁର୍ବ୍ୟବହାର ପାଉଛନ୍ତି; ସମଗ୍ର ଦେଶ ସେମାନଙ୍କ ଆର୍ତ୍ତନାଦରେ ଶିହରିତ ହୋଇଉଠେ; ସେତେବେଳେ ମୁଁ କାନ୍ଦେ ଏବଂ ପରମୁହୂର୍ତ୍ତରେ ଗୋଟିଏ ପ୍ରଶ୍ନ ମୋ ମନରେ ଉଠେ ଯେ ଏହିସବୁ ଘଟଣା ପାଇଁ ଦାୟୀ କିଏ ? ଇଂରାଜୀମାନେ ନୁହଁନ୍ତି; ଆମେ ସ୍ୱୟଂ ଏହି ଅବକ୍ଷୟ ପାଇଁ ଦାୟୀ । ଆମର ସମ୍ଭ୍ରାନ୍ତ, ପୂର୍ବସୁରିଗଣ ଆମ ଦେଶରେ ସାଧାରଣ ଜନତାଙ୍କୁ ପଦଦଳିତ କରିଥିଲେ ଯଦ୍ୱାରା ସେମାନେ ନିଃସହାୟ ହୋଇଯାଇଛନ୍ତି, ଏପରିକି ଏତାଦୃଶ ଅତ୍ୟାଚାର ଫଳରେ ସେମାନେ ନିଜକୁ ମନୁଷ୍ୟ ବୋଲି ବିସ୍ମରଣ ହୋଇଛନ୍ତି । ସେମାନଙ୍କୁ କାଠକଟାଳି ଓ ଜଳବାହାକ କେବଳ ହେବାପାଇଁ ଯୁଗଯୁଗ ଧରି ବାଧ କରାଯାଇଥିଲା; ଯାହା ଫଳରେ ସେମାନେ ଭୃତ୍ୟ, କାଠକଟାଳୀ ଓ ଜଳବାହକ ଭାବେ ଜନ୍ମ ହୋଇଛନ୍ତି ବୋଲି ଭାବୁଛନ୍ତି ।

- ୬ -

*ଆସନ୍ତୁ, ପ୍ରତ୍ୟେକ ବ୍ୟକ୍ତି ସମ୍ମୁଖରେ ଆମେ ଘୋଷଣା କରିବା - ଉଠ, ଉଠ, ଜାଗ । ଦୁର୍ବଳତାର ସମ୍ମୋହିତ ଶକ୍ତି ଭିତରୁ ଜାଗ । ବାସ୍ତବରେ କେହି ଦୁର୍ବଳ ନୁହେଁ, ଆତ୍ମା ହିଁ ଅସୀମ, ସର୍ବଶକ୍ତିମାନ ଓ ସର୍ବବିଜ୍ଞ । ଠିଆହୁଅ, ନିଜର ମତକୁ ସୁଦୃଢ଼ କର, ତୁମ ଭିତରେ ସ୍ୱୟଂ ଈଶ୍ୱର ବିରାଜିତ ବୋଲି ଘୋଷଣା କର, ତୁମ ଭିତରେ ତାଙ୍କର ଅସ୍ତିତ୍ୱକୁ କେବେ ବି ଅସ୍ୱୀକାର କରନାହିଁ ।*

ଜାତି, ବର୍ଣ୍ଣ, ଦୁର୍ବଳତା ସବଳତା ନିର୍ବିଶେଷରେ ପ୍ରତ୍ୟେକ ନର, ନାରୀ ଓ ଶିଶୁ ଶୁଣିବା ଓ ଶିଖିବା ଉଚିତ ଯେ ଦୁର୍ବଳ ଓ ଶକ୍ତିମାନ ପଶ୍ଚାତରେ, ଉଚ୍ଚ ଓ ନୀଚ ପଶ୍ଚାତରେ, ଅବା ପ୍ରତ୍ୟେକ ମନୁଷ୍ୟ ପଶ୍ଚାତରେ ସେହି ଏକ ଅସୀମ ଆତ୍ମା ବିରାଜିତ ଯିଏ ମହାନ ଓ ଉତ୍ତମ ହେବାପାଇଁ ସମସ୍ତଙ୍କ ଭିତରେ ଅସୀମ ସମ୍ଭାବ୍ୟତା ଓ ଅସୀମ ସାମର୍ଥ୍ୟ ଭରି ରହିଛି ବୋଲି ଅଶ୍ୱାସନା ପ୍ରଦାନ କରୁଛନ୍ତି । ଆସନ୍ତୁ, ପ୍ରତ୍ୟେକ ବ୍ୟକ୍ତି ସମ୍ମୁଖରେ ଆମେ ଘୋଷଣା କରିବା - ଉଠ, ଉଠ, ଜାଗ । ଦୁର୍ବଳତାର ସମ୍ମୋହିତ ଶକ୍ତି ଭିତରୁ ଜାଗ । ବାସ୍ତବରେ କେହି ଦୁର୍ବଳ ନୁହେଁ,

Digitized by srujanika@gmail.com

ଆତ୍ମା ହିଁ ଅସୀମ, ସର୍ବଶକ୍ତିମାନ ଓ ସର୍ବବିଜ୍ଞ । ଠିଆହୁଅ, ନିଜର ମତକୁ ସୁଦୃଢ଼ କର, ତୁମ ଭିତରେ ସ୍ୱୟଂ ଈଶ୍ୱର ବିରାଜିତ ବୋଲି ଘୋଷଣା କର, ତୁମ ଭିତରେ ତାଙ୍କର ଅସ୍ତିତ୍ୱକୁ କେବେ ବି ଅସ୍ୱୀକାର କରନାହିଁ ।

ବ୍ରିଟିଶ ଭାରତର ରାଜଧାନୀ କଲିକତା ନଗରୀ ସ୍ୱାମୀଜୀଙ୍କର ସାନ୍ନିଧ ଲାଭ କରି ପ୍ରତିଦିନ ଉତ୍ସବ ମୁଖରିତ ହୋଇଉଠୁଥିଲା । ନିଜ ମାଟିର ସନ୍ତାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରିବା ପାଇଁ ଏବଂ ସାକ୍ଷାତକାର ନେବାପାଇଁ ଏବଂ ସାକ୍ଷାତ କରି ତାଙ୍କ ମୁଖରୁ ଦୁଇପଦ କଥା ଶୁଣିବା ପାଇଁ ବିଭିନ୍ନ ବର୍ଗର ଲୋକେ ପ୍ରତିଦିନ ଧାଡ଼ିବାନ୍ଧୁଥିଲେ । ଏଠାରେ ସ୍ମରଣୀୟ ଯେ ସ୍ୱାମୀଜୀଙ୍କର କଲିକତା ପ୍ରତ୍ୟାବର୍ତ୍ତନ ସମୟରେ ବଙ୍ଗଳା ଓ ଓଡ଼ିଶାରେ ଦୁର୍ଭିକ୍ଷର କରାଳଛାୟା ଘୋଟିଥିଲା । ପୋକମାଛି ପରି ବହୁଲୋକ ଅନାଟନରେ ମୃତ୍ୟୁବରଣ କରୁଥିଲେ । ସ୍ୱାମୀଜୀଙ୍କର ଦରଦି ପ୍ରାଣ ପ୍ରତି ମୁହୂର୍ତ୍ତରେ କାନ୍ଦି ଉଠୁଥିଲା ଏବଂ ସ୍ୱାଗତ ସମ୍ବର୍ଦ୍ଧନା ସଭାଗୁଡ଼ିକ ତାଙ୍କୁ ବିଷ ଭଳି ବୋଧ ହେଉଥିଲା । ଇତ୍ୟବସରରେ ଜଣେ ଗୋରକ୍ଷା ସମିତିର ପ୍ରଚାରକ ସ୍ୱାମୀଜୀଙ୍କୁ ସାକ୍ଷାତ କରିଥିଲେ ଏବଂ ସ୍ୱାମୀଜୀଙ୍କର ମନ ଓ ପ୍ରାଣ ବୁଭୁକ୍ଷୁ ଜନତାଙ୍କ ପାଇଁ କିଭଳି କ୍ରନ୍ଦନରତ ତାହା ନିମ୍ନଲିଖିତ ଆଲୋଚନାରୁ ଜ୍ଞାତ ହେବ ।

ସ୍ୱାମୀଜୀ — ଆପଣଙ୍କ ସମିତିର ଉଦ୍ଦେଶ୍ୟ କ'ଣ ?

ଗୋରକ୍ଷା ସମିତିର ପ୍ରଚାରକ — କଂସାଇ ହାତରୁ ଆମ୍ ରାଷ୍ଟ୍ରର ଗୋ-ମାତାଙ୍କୁ ଆମେ ରକ୍ଷା କରିଥାଉ । କେତେକ ସ୍ଥାନରେ ଗୋଶାଳା ସ୍ଥାପିତ ହୋଇଛି ଯେଉଁଠାରେ ରୋଗଗ୍ରସ୍ତ ଜରାଗ୍ରସ୍ତ ଗୋମାତା ଏବଂ କଂସାଇ ହାତରୁ ବର୍ତ୍ତିଯାଇଥିବା ଗୋମାତାଙ୍କୁ ଆଶ୍ରୟ ପ୍ରଦାନ କରାଯାଇଛି ।

ସ୍ୱାମୀଜୀ — ବାସ୍ତବରେ ତାହା ଏକ ଉତ୍ତମ କାର୍ଯ୍ୟ । ଆପଣମାନେ ଏଥିପାଇଁ ଅର୍ଥ କେଉଁଠାରୁ ଆଣୁଛନ୍ତି ?

ପ୍ରଚାରକ — ଆପଣଙ୍କ ଭଳି ମହାନ୍ ବ୍ୟକ୍ତିମାନଙ୍କର ଅର୍ଥଦାନ ଦ୍ୱାରା ସମିତିର କାର୍ଯ୍ୟ ସଂପାଦନା ହେଉଛି ।

ସ୍ୱାମୀଜୀ — ବର୍ତ୍ତମାନ ଆପଣମାନଙ୍କ ପାଖରେ କେତେ ଅର୍ଥ ଅଛି ?

ପ୍ରଚାରକ — ମାରୁଆଡ଼ି ବ୍ୟବସାୟୀ ସମ୍ପ୍ରଦାୟ ଏହି କାର୍ଯ୍ୟର ମୁଖ୍ୟ ପୃଷ୍ଠପୋଷକ । ଏହି ମହତ କାର୍ଯ୍ୟ ପାଇଁ ସେମାନେ ବହୁ ଅର୍ଥ ଦାନ କରିଛନ୍ତି ।

ସ୍ୱାମୀଜୀ — ମଧ୍ୟଭାରତରେ ବର୍ତ୍ତମାନ ଭୟଙ୍କର ଦୁର୍ଭିକ୍ଷର କରାଳଛାୟା ଖେଳିଯାଇଛି । ଭାରତ ସରକାର ପ୍ରକାଶ କରିଛନ୍ତି ଯେ ବର୍ତ୍ତମାନ ସୁଦ୍ଧା ନଅ ଲକ୍ଷ ବୁଭୁକ୍ଷୁ ଜନତା ମୃତ୍ୟୁବରଣ କରିଛନ୍ତି । ଏହି ଦୁର୍ଭିକ୍ଷ ସମୟରେ ଆପଣଙ୍କର ସମିତି କିଛି ସାହାଯ୍ୟ କରିଛି କି ?

Digitized by srujanika@gmail.com

ପ୍ରଚାରକ ଦୁର୍ଭିକ୍ଷ ସମୟରେ କିମ୍ବା ଅନ୍ୟ ଦୁଃଖ କଷ୍ଟ ସମୟରେ ଆମେ କାହାକୁ ସାହାଯ୍ୟ କରୁନା । ଗୋମାତାଙ୍କ ରକ୍ଷା ନିମନ୍ତେ ଏହି ସମିତି ସ୍ଥାପିତ ହୋଇଛି ।

ସ୍ୱାମୀଜୀ ଦୁର୍ଭିକ୍ଷ ସମୟରେ ତୁମର ଲକ୍ଷ ଲକ୍ଷ ଭାଇ ଓ ଭଉଣୀ ମୃତ୍ୟୁର କରାଳ ଗହ୍ୱରରେ ପତିତ, ତଥାପି ଆପଣମାନେ ନିଜର କର୍ତ୍ତବ୍ୟ ବିଷୟରେ ଚିନ୍ତା କରୁନାହାନ୍ତି ? ଆପଣଙ୍କ ନିକଟରେ ଧନ ସମ୍ବଳ ରହିଛି । ଏହି ଭୟଙ୍କର ପ୍ରାକୃତିକ ବିପଦ ସମୟରେ ଆପଣମାନେ ସେମାନଙ୍କୁ କାହିଁକି ସାହାଯ୍ୟ କରୁନାହାନ୍ତି ?

ପ୍ରଚାରକ ନା, ମନୁଷ୍ୟର ପାପକର୍ମର ଫଳ ସଦୃଶ ଏହି ଦୁର୍ଭିକ୍ଷ ବ୍ୟାପିଛି । ଏହା କର୍ମର ଫଳ ସ୍ୱରୂପ ।

- ୭ -

*ଯେଉଁ ସଂଗଠନଗୁଡ଼ିକ ମନୁଷ୍ୟ ପ୍ରତି ସମବେଦନା ଜ୍ଞାପନ କରିପାରେ ନାହିଁ, ଏପରିକି ନିଜର ଅସଂଖ୍ୟ ଭାଇ ଅନାହାରରେ ମୃତ୍ୟୁବରଣ କରୁଥିବା ଦେଖି, ସେମାନଙ୍କ ଜୀବନ ରକ୍ଷା କରିବା ନିମନ୍ତେ ମୁଠାଏ ଭାତ ଦେଇପାରେ ନାହିଁ, କିନ୍ତୁ ପକ୍ଷୀ ଓ ପଶୁଙ୍କୁ ରକ୍ଷା କରିବା ପାଇଁ ଶଗଡ଼ ଶଗଡ଼ ଖାଦ୍ୟ ଦାନ କରିପାରେ, ସେଭଳି ଅନୁଷ୍ଠାନଗୁଡ଼ିକ ପ୍ରତି ମୋର ତିଳେମାତ୍ର ସମବେଦନା ନାହିଁ ଏବଂ ମୋର ବିଶ୍ୱାସ ମାନବ ସମାଜ ସେମାନଙ୍କଠାରୁ କୌଣସି ଉପକାର ଲାଭ କରେନାହିଁ ।*

ଲକ୍ଷ ଲକ୍ଷ ଜନତା ହା ଅନ୍ନ ଚିତ୍କାର କରୁଥିବା ସମୟରେ ମାରୁଆଡ଼ି ବ୍ୟବସାୟୀ ଗୋଷ୍ଠୀଙ୍କର ଅସମ୍ବେଦନଶୀଳତା ସ୍ୱାମୀଜୀଙ୍କ ମନରେ ଅଗ୍ନି ସଂଯୋଗ କଲା । କର୍ମ ଏବଂ କର୍ମଫଳର ବାହାନା ନେଇ କେତେକ ନିର୍ଦ୍ଦିଷ୍ଟ ସ୍ୱାର୍ଥନ୍ୱେଷୀ ଗୋଷ୍ଠୀ କିପରି କୋଟି କୋଟି ଦଳିତ, ନିଷ୍ପେସିତ, ନିଃସ୍ୱ ଜନତାକୁ ପ୍ରତି ମୁହୂର୍ତ୍ତରେ ପଦଦଳିତ କରୁଛନ୍ତି ଏହି ପୁଣ୍ୟ ଭାରତବର୍ଷରେ ତାହା ସ୍ପଷ୍ଟ ଭାବରେ ସ୍ୱାମୀଜୀଙ୍କ ମାନସାକାଶରେ ଉଦ୍‌ଭାସିତ ହୋଇଉଠିଲା ଏବଂ ମୁଖମଣ୍ଡଳ କ୍ରୋଧରେ ଲୋହିତ ବର୍ଣ୍ଣ ଧାରଣ କଲା । ଏହା ସତ୍ତ୍ୱେ ନିଜର କ୍ରୋଧ ଆବେଗତାକୁ ନିୟନ୍ତ୍ରିତ କରି ସ୍ୱାମୀଜୀ କହିଲେ "ଯେଉଁ ସଂଗଠନଗୁଡ଼ିକ ମନୁଷ୍ୟ ପ୍ରତି ସମବେଦନା ଜ୍ଞାପନ କରିପାରେ ନାହିଁ, ଏପରିକି ନିଜର ଅସଂଖ୍ୟ ଭାଇ ଅନାହାରରେ ମୃତ୍ୟୁବରଣ କରୁଥିବା ଦେଖି, ସେମାନଙ୍କ ଜୀବନ ରକ୍ଷା କରିବା ନିମନ୍ତେ ମୁଠାଏ ଭାତ ଦେଇପାରେ ନାହିଁ, କିନ୍ତୁ ପକ୍ଷୀ ଓ ପଶୁଙ୍କୁ ରକ୍ଷା କରିବା ପାଇଁ ଶଗଡ଼ ଶଗଡ଼ ଖାଦ୍ୟ ଦାନ କରିପାରେ, ସେଭଳି ଅନୁଷ୍ଠାନଗୁଡ଼ିକ ପ୍ରତି ମୋର ତିଳେମାତ୍ର ସମବେଦନା ନାହିଁ ଏବଂ ମୋର ବିଶ୍ୱାସ ମାନବ ସମାଜ ସେମାନଙ୍କଠାରୁ କୌଣସି ଉପକାର ଲାଭ କରେନାହିଁ । ଆପଣମାନେ ଯଦି କର୍ମର ବାହାନା ନେଇ କହୁଛନ୍ତି ଯେ, ଲୋକମାନେ ନିଜର କର୍ମ ଯୋଗୁଁ ମୃତ୍ୟୁବରଣ କରୁଛନ୍ତି, ତେବେ ଏହା ପ୍ରମାଣିତ ହେଲା ଯେ ଏହି ସଂସାରରେ

Digitized by srujanika@gmail.com

ସଂଘର୍ଷ ଓ ପ୍ରୟାସ କରିବା ବୃଥା ମାତ୍ର ଏବଂ ଆପଣମାନଙ୍କର ପଶୁଙ୍କୁ ରକ୍ଷା କରିବାର କାର୍ଯ୍ୟ ଏକ ବ୍ୟତିକ୍ରମ ନୁହେଁ । ଆପଣମାନଙ୍କ ଧାରଣା ସମ୍ବନ୍ଧରେ କୁହାଯାଇପାରେ ଯେ ଗୋମାତା ନିଜର କର୍ମ ଯୋଗୁଁ କଂସାଇ ହାତରେ ପଡୁଛନ୍ତି ଓ ମୃତ୍ୟୁବରଣ କରୁଛନ୍ତି, ତେଣୁ ଏହି କ୍ଷେତ୍ରରେ ସେମାନଙ୍କୁ ସାହାଯ୍ୟ କରିବା ଆମର ଆବଶ୍ୟକତା ନାହିଁ ।''

ସ୍ୱାମୀଜୀଙ୍କର ବଳିଷ୍ଠ ଯୁକ୍ତିରେ ପ୍ରଚାରକ ମହୋଦୟ ହତବାକ୍ ହୋଇଗଲେ ଏବଂ ପର ମୁହୂର୍ତ୍ତରେ କହିଲେ, ''ସ୍ୱାମୀଜୀ ଆପଣ ଯାହା କହିଲେ ଅବଶ୍ୟ ସତ୍ୟ, କିନ୍ତୁ ଆମ ଶାସ୍ତ୍ର ମତରେ ଗୋମାତା ଆମର ମା ଯେ ।''

ସ୍ୱାମୀଜୀଙ୍କ ଲୋହିତ ଅଧରରେ ମୃଦୁହାସ୍ୟ ଲହରିତ ହେଲା ଏବଂ ସେ କହିଲେ, ''ହଁ, ମୁଁ ଜାଣେ ଗାଈ ଆମର ମା । ନ ହୋଇଥିଲେ ଏଭଳି ସୁସନ୍ତାନ କିପରି ଜନ୍ମ ଦେଇଥାନ୍ତେ ?''

ବିଚରା ପ୍ରଚାରକ ଅଧିକ କିଛି କହିପାରିଲେ ନାହିଁ । ବୋଧହୁଏ, ପ୍ରଚାରକ ମହୋଦୟ ସ୍ୱାମୀଜୀଙ୍କର ତୀକ୍ଷ୍ଣ ପରିହାସକୁ ବୁଝିପାରିଲେ ନାହଁ । ତଥାପି, କିଛି ଦାନ କରିବା ପାଇଁ ସେ ସ୍ୱାମୀଜୀଙ୍କୁ ଅନୁରୋଧ କଲେ ।

ପ୍ରଚାରକଙ୍କର ଅନୁରୋଧକୁ ଏଡ଼ାଇ ଦେଇ ସ୍ୱାମୀଜୀ କହିଲେ, ''ଶୁଣନ୍ତୁ ଆଜ୍ଞା, ମୁଁ ଜଣେ ସନ୍ନ୍ୟାସୀ, ଜଣେ ଫକିର ମାତ୍ର । ମୁଁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଅର୍ଥ କେଉଁଠୁ ପାଇବି ? ଯଦିଓ କିଛି ଧନ ମୋ ପାଖକୁ ଆସେ, ତାହା ମୁଁ ପ୍ରଥମେ ମନୁଷ୍ୟର ସେବା ପାଇଁ ଖର୍ଚ୍ଚ କରିବି । ପ୍ରଥମେ ମନୁଷ୍ୟ ପ୍ରାଣକୁ ରକ୍ଷା କରିବା ଭଲ, ତା'ପରେ ଉପଯୁକ୍ତ ଖାଦ୍ୟ, ଶିକ୍ଷା ଏବଂ ଆଧ୍ୟାତ୍ମିକତା ତାଙ୍କୁ ପ୍ରଦାନ କରିବାକୁ ହେବ । ଏହିସବୁ କାର୍ଯ୍ୟ ମେଣ୍ଟାଇବା ପରେ ଯଦି କିଛି ଅର୍ଥ ବଳେ, ତେବେ ତାହା ଆପଣଙ୍କ ସମିତିକୁ ଦାନ କରାଯିବ ।''

ପ୍ରଚାରକ ବାପୁଡ଼ା କାନମୁଣ୍ଡ ଆଉଁସି, ସ୍ୱାମୀଜୀଙ୍କୁ ପ୍ରଣାମ କରି, ସେଠାରୁ ପ୍ରସ୍ଥାନ କଲେ । ତତ୍‌ପଶ୍ଚାତେ, ସ୍ୱାମୀଜୀ ଉପସ୍ଥିତ ଜନତାଙ୍କୁ କହିଲେ, ''କିଭଳି ଅବାନ୍ତର କଥା ! କହୁଛି ଯେ ମଣିଷ ନିଜର କର୍ମପାଇଁ ମରୁଛନ୍ତି । ଏମାନଙ୍କୁ କିଭଳି ଦୟା ପ୍ରଦର୍ଶନ କରାଯିବ ?'' ଏଠାରେ ପ୍ରମାଣିତ ହେଲା ଯେ ଆମର ଦେଶ କିଭଳି ଧ୍ୱଂସ ବିଧ୍ୱଂସ୍ତ ହୋଇଯାଇଛି ! ତୁମେ ଜାଣିଛ, ହିନ୍ଦୁଧର୍ମର କର୍ମ ସିଦ୍ଧାନ୍ତ କିଭଳି ଦୁର୍ବ୍ୟବହୃତ ହେଉଛି ? ଯେଉଁମାନେ ମଣିଷ ସେମାନଙ୍କର ମଣିଷପାଇଁ ତିଳେମାତ୍ର ହୃଦୟ ନାହିଁ, ଏମାନେ କ'ଣ ମଣିଷ ପଦବାଚ୍ୟ ? ସ୍ୱାମୀଜୀଙ୍କ ମୁଖରୁ ଏତାଦୃଶ ଭାଷା ଯେତେବେଳେ ନିଃସୃତ ହେଉଥିଲା, ସେତେବେଳେ ତାଙ୍କର ପୂର୍ଣ୍ଣ ଅବୟବ କ୍ରୋଧ ଓ ଦୁଃଖରେ ହେଉଥିଲା ପ୍ରକମ୍ପିତ ।



Digitized by srujanika@gmail.com

॥ ତେତିଶ ॥

# ରାମକୃଷ୍ଣ ମଠ ଓ ମିଶନ ପ୍ରତିଷ୍ଠାର ସ୍ୱପ୍ନ ସାକାର ହେଲା

୧୮୯୭ ମାର୍ଚ୍ଚ ୭ ରବିବାର । ଶ୍ରୀରାମକୃଷ୍ଣ ପରମହଂସଙ୍କ ଜନ୍ମୋତ୍ସବ ଦକ୍ଷିଣେଶ୍ୱର କାଳୀ ମନ୍ଦିରରେ ପାଳିତ ହେଲା । ସ୍ୱାମୀଜୀ ସ୍ୱୟଂ ଦକ୍ଷିଣେଶ୍ୱର ଯାଇ ଶ୍ରୀରାମକୃଷ୍ଣଙ୍କର ପୂଜା ଆରାଧନା କଲେ । ବହୁ ଭକ୍ତ ଏବଂ ସନ୍ୟାସୀ ଉକ୍ତ ଉତ୍ସବରେ ଯୋଗଦେଇଥିଲେ । ଏହା ଥିଲା ତାଙ୍କ ପାଇଁ ତୀର୍ଥସ୍ଥଳୀ । ସେଠାରେ ନିଜ ଗୁରୁଙ୍କ ବିଷୟରେ ସ୍ମୃତିଚାରଣ କରି ବଙ୍ଗଳାର ବିଖ୍ୟାତ ନାଟ୍ୟକାର ତଥା ଶ୍ରୀରାମକୃଷ୍ଣଙ୍କର ପରମଭକ୍ତ ଗିରିଶ ଚନ୍ଦ୍ର ଘୋଷଙ୍କ ସହ ଆଲୋଚନାରେ ମଗ୍ନ ରହିଥିଲେ । ସହସ୍ର ଜନତା ତାଙ୍କୁ ଦେଖିବାଲାଗି ସେଠାରେ ସେତେବେଳକୁ ଭିଡ଼ ଜମାଇ ସାରିଥିଲେ । ଉପସ୍ଥିତ ଜନତାଙ୍କ ଅନୁରୋଧରେ ସେ କେତେଥର ବକ୍ତୃତା ଦେବାପାଇଁ ଚେଷ୍ଟା କଲେ, କିନ୍ତୁ ଉତ୍ସବର ଆନନ୍ଦ କୋଳାହଳ ମଧ୍ୟରେ ବକ୍ତୃତା ଦେବା ସମ୍ଭବ ହେଲାନାହିଁ । ସ୍ୱାମୀଜୀ ବାଳକବତ୍ ହାସ୍ୟୋଜ୍ଜ୍ୱଳ ବଦନରେ, ଏଣେତେଣେ ଭ୍ରମଣ କରି ଶ୍ରୀରାମକୃଷ୍ଣଙ୍କ ଭକ୍ତବୃନ୍ଦଙ୍କ ସହ ଆଳାପ କରିବାରେ ବ୍ୟସ୍ତ ରହିଲେ ।

ସମଗ୍ର ରାଷ୍ଟ୍ର ସେତେବେଳେ ସ୍ୱାମୀଜୀଙ୍କ ପଦପ୍ରାନ୍ତରେ ଆଶ୍ରିତ ହୋଇଥିଲେ ବି, ଧନ, ମାନ, ଯଶରେ ପରିପୂର୍ଣ୍ଣ ସେ ଜଣେ ବ୍ୟକ୍ତି ହୋଇଥିଲେ ବି, ଜଣେ ସାଧାରଣ ସନ୍ୟାସୀ ଭଳି ସେ ଜୀବନଯାପନ କରୁଥିଲେ । ମନରେ ନ ଥିଲା ଗର୍ବ, ହୃଦୟରେ ନ ଥିଲା ଅହଂକାର । ଜ୍ୟେଷ୍ଠଙ୍କ ପ୍ରତି ସମ୍ମାନ ଏବଂ କନିଷ୍ଠଙ୍କ ପ୍ରତି ଆଦର ସ୍ରୋତରେ ସେ ଭାସୁଥିଲେ । ସତେକି ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସକଳ ମାନବ ହିଁ ତାଙ୍କର ସହୋଦର । ଉଦାହରଣ ସ୍ୱରୂପ ଏକଦା ଶ୍ରୀରାମକୃଷ୍ଣଙ୍କର ଭ୍ରାତୃସ୍ପୁତ୍ର ରାମଲାଲ ଦାଦା ସ୍ୱାମୀଜୀଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କର ନିବାସ ସ୍ଥଳୀରେ ଉପନୀତ ହେଲେ । ସେଦିନ ବହୁ ଭଦ୍ରଲୋକ ସ୍ୱାମୀଜୀଙ୍କ ନିକଟରେ ଉପସ୍ଥିତ ଥିଲେ । ସ୍ୱାମୀଜୀ ରାମଲାଲା ଦାଦାଙ୍କୁ ଦେଖିବା ମାତ୍ରେ, ତତ୍‌କ୍ଷଣାତ୍ ଚେୟାରରୁ ନିଜେ ଉଠିଯାଇ ରାମଲାଲ ଦାଦାଙ୍କୁ ନିଜ ଚେୟାରରେ ବସାଇଦେଲେ । ସ୍ୱାମୀଜୀ କହିଥିଲେ ଗୁରୁବତ୍ ଗୁରୁପୁତ୍ରେଷୁ ଅର୍ଥାତ୍ ଗୁରୁଙ୍କର ପୁତ୍ରଙ୍କୁ ଗୁରୁସମ ସମ୍ମାନ ଦେବା ବିଧେୟ ।

ବୈଷ୍ଣବ ସମ୍ପ୍ରଦାୟର କେତେକ ଅନୁଗାମୀ ଏକଦା ଅଭିଯୋଗ କରିଥିଲେ ଯେ ପାଶ୍ଚାତ୍ୟ ଜଗତରେ ସ୍ୱାମୀଜୀ କେବଳ ଅଦ୍ୱୈତ ବେଦାନ୍ତ ସପକ୍ଷରେ ପ୍ରଚାର କରିଥିଲେ କିନ୍ତୁ ବୈଷ୍ଣବ ମାର୍ଗର ଭକ୍ତି ଉପରେ କିଛି କହି ନ ଥିଲେ, କିନ୍ତୁ ଏଭଳି ଅଭିଯୋଗକୁ ମିଥ୍ୟା ବୋଲି ଖଣ୍ଡନ କରି ସ୍ୱାମୀଜୀ ଜଣେ ବୈଷ୍ଣବ ସନ୍ଥଙ୍କୁ କହିଥିଲେ, ‘‘ବାବାଜୀ, ମୁଁ ଏକଦା ଆମେରିକାରେ ଶ୍ରୀକୃଷ୍ଣଙ୍କ

Digitized by srujanika@gmail.com

ସମ୍ବନ୍ଧରେ ବକ୍ତୃତା ପ୍ରଦାନ କରିଥିଲି । ମୋର ବକ୍ତବ୍ୟ ଏଭଳି ଜଣେ ଯୁବତୀ, ସୁନ୍ଦରୀ ଓ ଧନଶାଳୀ ମହିଳାଙ୍କୁ ପ୍ରଭାବିତ କରିଥିଲା ଯେ ସେ ସମସ୍ତ କିଛି ତ୍ୟାଗ କରି ନିର୍ଜନ ଦ୍ୱୀପରେ ବାସ କରିଥିଲେ । ସେଠାର ସେ କେବଳ ଶ୍ରୀକୃଷ୍ଣ ଚେତନାରେ ମଗ୍ନରହି ସଂସାର ଭୁଲି ଯାଇଥିଲେ ।'' ସ୍ୱାମୀଜୀ ବୈରାଗ୍ୟ ଓ ତ୍ୟାଗ ସମ୍ବନ୍ଧରେ କହିଥିଲେ, ''ବୁଝିଲେ ବାବାଜୀ ମହାଶୟ, ଧୀରେ ଧୀରେ ଅଧୋଃଗତି ସେହିସବୁ ସମ୍ପ୍ରଦାୟ ଭିତରେ ପ୍ରବେଶ କରିଛି ଯେଉଁମାନେ ତ୍ୟାଗ ଓ ବୈରାଗ୍ୟର ଉତ୍ସାହ ଠୁଁ ଦୂରେଇ ଯାଇଛନ୍ତି ।''

ସ୍ୱାମୀଜୀ, ପାଶ୍ଚାତ୍ୟ ରାଜ୍ୟରୁ ପ୍ରତ୍ୟାବର୍ତ୍ତନ କାଳରୁ, କଲମ୍ବୋଠାରୁ କଲିକତା ପର୍ଯ୍ୟନ୍ତ ମାଳମାଳ ବକ୍ତୃତା ପ୍ରଦାନ କରି ଏବଂ ଅଭିନନ୍ଦନ ପାଇ ସେ ସେତେବେଳକୁ ଅତ୍ୟନ୍ତ ବିରକ୍ତ ହୋଇପଡ଼ିଥିଲେ । ଆଲମବଜାର ସ୍ଥିତ ରାମକୃଷ୍ଣ ମଠରେ ସେ ପ୍ରାୟତଃ ନିଜ ଗୁରୁଭାଇ ସନ୍ୟାସୀଙ୍କ ଗହଣରେ ବାସ କରୁଥିଲେ । ତାଙ୍କଠାରୁ ବେଦାନ୍ତ ଦର୍ଶନର ନୂତନ ପରିଭାଷା ଶୁଣିବା ନିମନ୍ତେ ବହୁ ଜନତା ଧାଡ଼ି ବାନ୍ଧୁଥିଲେ । କିନ୍ତୁ ସ୍ୱାମୀଜୀଙ୍କ ହୃଦୟ ଶିକ୍ଷିତ ଓ ଅବିବାହିତ ଯୁବକମାନଙ୍କ ପାଖରେ ଲାଖି ରହିଥିଲା, କାରଣ ସେମାନଙ୍କୁ 'ମନୁଷ୍ୟ-ଗଠନ ଧର୍ମ'ର ପ୍ରଚାରକ ଭାବେ ପ୍ରଶିକ୍ଷଣ ଦେବାକୁ ଚାହୁଁଥିଲେ । ତାହାର ଅର୍ଥ ନୁହେଁ ଯେ ଅଶିକ୍ଷିତ ଓ ବିବାହିତ ଯୁବକଙ୍କୁ ସେ ଭଲ ପାଇ ନ ଥିଲେ । ସ୍ୱାମୀଜୀ ଥିଲେ ଦୂରଦ୍ରଷ୍ଟା । ଯେଉଁ ନୂତନ ଆଧୁନିକ ଯୁଗରେ ବିଶ୍ୱ ପ୍ରବେଶ କରିଛି, ସେଥିରେ ଭାରତର ଭୂମିକା ମହତ୍ତ୍ୱପୂର୍ଣ୍ଣ ହେବ, ବେଦାନ୍ତର ମୂଳମନ୍ତ୍ର ଯୁବବର୍ଗଙ୍କ ଦ୍ୱାରା କେବଳ ଅଙ୍କୁରିତ ହେବନାହିଁ ବରଂ ଭାରତମାତାକୁ ବିଦେଶୀ ଶାସନ ଶୃଙ୍ଖଳ ମଧ୍ୟରୁ ରକ୍ଷା କରିବେ ଏହି ଯୁବବର୍ଗ । ସେଥିପାଇଁ ସେମାନେ ଶିକ୍ଷିତ ଓ ଅବିବାହିତ ରହିବା ଆବଶ୍ୟକ, ନଚେତ୍ ତ୍ୟାଗ ଓ ବୈରାଗ୍ୟର ଝଲକ ସେମାନଙ୍କ ଭିତରେ ଦୃଷ୍ଟିଗୋଚର ହେବନାହିଁ ।

- ୧ -

*ପୁତ୍ର, ମୋ କଥା ଯଦି ମାନିବ, ତେବେ ପ୍ରଥମେ ତୁମେ ଦ୍ୱାର ଖୋଲା ରଖିବ ଏବଂ ଚତୁଃପାର୍ଶ୍ୱକୁ ଚାହିଁବ, କେବେ ଦ୍ୱାର ଓ ଆଖି ବନ୍ଦ କରିବ ନାହିଁ । ତୁମ ପଡ଼ିଶାରେ ଶହଶହ ଗରିବ ଓ ନିଃସହାୟ ବ୍ୟକ୍ତି ରହିଛନ୍ତି, ଶକ୍ତି ଅନୁସାରେ ତୁମେ ସେମାନଙ୍କର ସେବା କର । ପୀଡ଼ିତମାନଙ୍କୁ ଖାଦ୍ୟ ଓ ଔଷଧ ଯୋଗାଇ ଦେଇ ସେମାନଙ୍କର ତୁମେ ସେବା କରିପାରିବ । ଅନ୍ନକ୍ଲିଷ୍ଟଙ୍କୁ ଖୁଆଇବାକୁ ହେବ । ଅଜ୍ଞଙ୍କୁ ପାଠ ପଢ଼ାଇବାକୁ ହେବ । ତୁମେ ଯଦି ମନରେ ଶାନ୍ତି ଚାହୁଁଛ, ତୁମ ସାମର୍ଥ୍ୟାନୁସାରେ ସେମାନଙ୍କର ସେବା କର, ଏହାହିଁ ମୋର ପରାମର୍ଶ ।*

ଏକଦା ଜଣେ ଯୁବକ ସ୍ୱାମୀଜୀଙ୍କ ନିକଟରେ ଅଭିଯୋଗ କଲେ ଯେ ସେ ଆଧ୍ୟାତ୍ମିକ ସାଧନାରେ ଆଦୌ ଅଗ୍ରସର ହୋଇପାରୁ ନାହାନ୍ତି । ଜଣେ ଗୁରୁଙ୍କ ପରାମର୍ଶ କ୍ରମେ ମୂର୍ତ୍ତିପୂଜା କରୁଥିଲେ, ଆଉ ଜଣେ ଗୁରୁଙ୍କ ନିର୍ଦ୍ଦେଶରେ ଏକାଗ୍ରତା ଆଣିବା ପାଇଁ ଧ୍ୟାନାଭ୍ୟାସ କରିଥିଲେ । କିନ୍ତୁ

Digitized by srujanika@gmail.com

କୌଣସି ସୁଫଳ ମିଳିଲା ନାହିଁ । ଯୁବକ ଅତି ଭାବପ୍ରବଣତା ହୋଇ କହିଥିଲେ, ''ମହାଶୟ, କୋଠରି ବନ୍ଦ କରି, ଚକ୍ଷୁ ମୁଦ୍ରିତ କରି ମୋର ସାମର୍ଥ୍ୟାନୁସାରେ ମୁଁ ଧ୍ୟାନରେ ବସେ, ତଥାପି ମନରେ ଶାନ୍ତି ପାଉନାହିଁ । ମୋତେ ଦୟାକରି ଉପଯୁକ୍ତ ପଥ ଦେଖାଇବେ ?''

ସ୍ୱାମୀଜୀ ଯୁବକର ଆନ୍ତରିକତା ଲକ୍ଷ୍ୟକରି କହିଲେ, ''ପୁତ୍ର, ମୋ କଥା ଯଦି ମାନିବ, ତେବେ ପ୍ରଥମେ ତୁମେ ଦ୍ୱାର ଖୋଲା ରଖିବ ଏବଂ ଚତୁଃପାର୍ଶ୍ୱକୁ ଚାହିଁବ, କେବେ ଦ୍ୱାର ଓ ଆଖି ବନ୍ଦ କରିବ ନାହିଁ । ତୁମ ପଡ଼ିଶାରେ ଶହଶହ ଗରିବ ଓ ନିଃସହାୟ ବ୍ୟକ୍ତି ରହିଛନ୍ତି, ଶକ୍ତି ଅନୁସାରେ ତୁମେ ସେମାନଙ୍କର ସେବା କର । ପୀଡ଼ିତମାନଙ୍କୁ ଖାଦ୍ୟ ଓ ଔଷଧ ଯୋଗାଇ ଦେଇ ସେମାନଙ୍କର ତୁମେ ସେବା କରିପାରିବ । ଅନ୍ନକ୍ଲିଷ୍ଟଙ୍କୁ ଖୁଆଇବାକୁ ହେବ । ଅଜ୍ଞଙ୍କୁ ପାଠ ପଢ଼ାଇବାକୁ ହେବ । ତୁମେ ଯଦି ମନରେ ଶାନ୍ତି ଚାହୁଁଛ, ତୁମ ସାମର୍ଥ୍ୟାନୁସାରେ ସେମାନଙ୍କର ସେବା କର, ଏହାହିଁ ମୋର ପରାମର୍ଶ ।''

ଅନ୍ୟ ଏକ ଉପଲକ୍ଷେ, ଜଣେ ସୁପରିଚିତ ଅଧ୍ୟାପକ ତଥା ଶ୍ରୀରାମକୃଷ୍ଣଙ୍କର ଭକ୍ତ ସ୍ୱାମୀଜୀଙ୍କୁ ପ୍ରଶ୍ନ କରିଥିଲେ, ''ସ୍ୱାମୀଜୀ ଆପଣ ଦାନ, ସେବା ଓ ପୁଣ୍ୟ କର୍ମ ଉପରେ କହୁଛନ୍ତି, କିନ୍ତୁ ଏହିସବୁ ଯେ ମାୟାର ଅଧୀନ । ବେଦାନ୍ତ କୁହେ ଯେ ମାୟାର ଶୃଙ୍ଖଳ ଭାଙ୍ଗି ମୁକ୍ତି ଲାଭ କରିବା ମନୁଷ୍ୟର ଲକ୍ଷ୍ୟ । ସଂସାର କାର୍ଯ୍ୟରେ ମନ ବଳାଇବା ନିମନ୍ତେ ପ୍ରଚାର କରିବାରେ କି ଲାଭ ନିହିତ ଅଛି ?''

ସ୍ୱାମୀଜୀ କହିଲେ, ''ମାୟା ଜଗତରେ ମୁକ୍ତିର ଭାବନା ନାହିଁକି ? ବେଦାନ୍ତ ଶିକ୍ଷା ଦିଏ ନାହିଁକି ଆତ୍ମା ସର୍ବଦା ମୁକ୍ତ ? ତଥାପି ଏହା ମୁକ୍ତି ପାଇଁ କାହିଁକି ପ୍ରୟାସରତ ? ଏତଦ୍‌ବ୍ୟତୀତ, ଅନ୍ୟ ଏକ ଅବସରରେ ସ୍ୱାମୀଜୀ ଏହି ମୁକ୍ତି ସମ୍ବନ୍ଧରେ ବିସ୍ତାରିତ ଭାଷାରେ କହୁଥିଲେ, ''ଆଧ୍ୟାତ୍ମିକ ସାଧନାରେ ବ୍ରତୀ ହୋଇ ମୁଁ ଯେତେବେଳେ ସମଗ୍ର ଭାରତ ଭ୍ରମଣ କରୁଥିଲି, ସେତେବେଳେ ମୋର ଦିନଗୁଡ଼ିକୁ ଗୁମ୍ଫା ଭିତରେ ବିତୁଥିଲା । ବହୁ ସମୟରେ ମୃତ୍ୟୁବରଣ ନିମନ୍ତେ ମୁଁ ଅନାହାରରେ ଛାଣିଶୁଣି ରହୁଥିଲି, କାରଣ ମୁକ୍ତି ଲାଭ କରିପାରୁ ନ ଥିଲି । ବର୍ତ୍ତମାନ ମୋର ମୁକ୍ତିପାଇଁ ତିଳେମାତ୍ର ଇଚ୍ଛା ନାହିଁ । ଯେତେଦିନ ପର୍ଯ୍ୟନ୍ତ ବିଶ୍ୱ ବ୍ରହ୍ମାଣ୍ଡରେ ଜଣେ ବ୍ୟକ୍ତି ଦାସତ୍ୱ ବନ୍ଧନରେ ପଡ଼ିଥିବ, ସେତେଦିନ ପର୍ଯ୍ୟନ୍ତ ମୁକ୍ତିପାଇଁ ମୋର ପରବାୟ ନାହିଁ ।

ବିଭିନ୍ନ ସ୍ଥାନରେ ମୁକ୍ତି ଭଳି ଏକ ବିଷୟବସ୍ତୁ ଉପରେ ଯେଉଁ ମତ ସେ ବ୍ୟକ୍ତ କରୁଥିଲେ, ତାହା ସାଧାରଣ ଚକ୍ଷୁରେ ପରସ୍ପରବିରୋଧୀ ଭଳି ପ୍ରତୀୟମାନ ହୁଏ । କିନ୍ତୁ ବାସ୍ତବରେ ତାହା ନୁହେଁ । ଇନ୍ଦ୍ରିୟାନୁଭୂତି ମାନସିକତାରେ ଯାହା ଦ୍ୱନ୍ଦାତ୍ମକ ଓ ପରସ୍ପର ବିରୋଧୀ ବୋଲି ଅନୁଭୂତ ହୁଏ, ତାହା ଇନ୍ଦ୍ରିୟାଗୋଚର ମାନସିକତାରେ ଏକ ବୋଲି ଉପଲବ୍ଧି ହୋଇଥାଏ । ଠିକ୍ ସେଭଳି ସ୍ୱାମୀଜୀଙ୍କର ଭାଷା । ସ୍ୱାମୀଜୀ କୁହନ୍ତି ଯେ ବିଭିନ୍ନ ଯୁଗରେ ବିଭିନ୍ନ ପ୍ରକାର ଆଧ୍ୟାତ୍ମିକ ସାଧନା ସମ୍ପାଦିତ ହୁଏ । ଗୋଟିଏ ଯୁଗରେ ଥିଲା ତପସ୍ୟା ଓ କୃଚ୍ଛ୍ର ସାଧନା, ଅନ୍ୟ ଏକ ଯୁଗରେ ଥିଲା ଦିବ୍ୟ ପ୍ରେମର ସ୍ୱାଦ ଆସ୍ୱାଦନ, ଆଉ ଗୋଟିଏ ଯୁଗରେ ପ୍ରଭୁତ୍ୱ ବିସ୍ତାର କରିଥିଲା ବୈରାଗ୍ୟ ସହ ଦାର୍ଶନିକ ଜ୍ଞାନ । କିନ୍ତୁ ଆଧୁନିକ ଯୁଗ ଆବଶ୍ୟକ କରେ ପରୋପକାର ଓ ନିଃସ୍ୱାର୍ଥପର

Digitized by srujanika@gmail.com

ସେବା ଆଧାରିତ କର୍ମଯୋଗ ଯାହା ଆଧ୍ୟାତ୍ମିକ ସୁଫଳ ପ୍ରଦାନ କରିଥାଏ । ସେଥିପାଇଁ ସ୍ୱାମୀଜୀ ବାରମ୍ବାର ନିଃସ୍ୱାର୍ଥପର କର୍ମ ଉପରେ ଗୁରୁତ୍ୱ ଦେଇଛନ୍ତି । ବିଶେଷକରି ଭାରତୀୟଙ୍କ ପାଇଁ ଏହି ମାର୍ଗ ଆବଶ୍ୟକ । କାରଣ ସେମାନେ ତାମସ ଓ ଆଳସ୍ୟ ମାନସିକତା ଜାଲରେ ପତିତ । ସ୍ୱାମୀଜୀ ଭଲ ଭାବରେ ଜାଣିଥିଲେ ଯେ ରଜ ଗୁଣର ଆବିର୍ଭାବ ଘଟିଲେ, ତମ ଗୁଣର ବିଲୋପ ଘଟିବ, ଭାରତୀୟମାନେ କର୍ମମୁଖର ହୋଇଉଠିବେ ଏବଂ କୁସଂସ୍କାର ଓ ଅନ୍ଧବିଶ୍ୱାସ ରୂପକ ମାନସିକତାର ପାଚେରୀ ଭାଙ୍ଗି ଚୁରମାର ହୋଇଯିବ । କେବଳ ସେତିକି ନୁହେଁ, ରଜୋଗୁଣରେ ପରିପୂର୍ଣ୍ଣ ମନୁଷ୍ୟ ଭିତରୁ କ୍ରମଶଃ ଉଦ୍ଭବ ହେବ ସତ୍ତ୍ୱଗୁଣ ଯାହା ମନୁଷ୍ୟକୁ ମୁକ୍ତି ଅଭିମୁଖେ ପଥ ପ୍ରଦର୍ଶନ କରିବ । ଏଠାରେ ସ୍ମରଣଯୋଗ୍ୟ ଯେ ନିର୍ବିକଳ୍ପ ସମାଧି ମାଧ୍ୟମରେ ସେ ସେତେବେଳକୁ ମୁକ୍ତି କ'ଣ ଜାଣି ସାରିଥିଲେ, ଅର୍ଥାତ୍ ବ୍ରହ୍ମଙ୍କ ସହ ସେ ଏକାକାର ହୋଇସାରିଥିଲେ । କିନ୍ତୁ ଏକ ବୋଧିସତ୍ତ୍ୱ ଭାବରେ ଜଗତର କଲ୍ୟାଣ ନିମନ୍ତେ ସେ ଏହି ଅଳିକ ସଂସାରରେ ନିଜ ଚେତନାକୁ ବାନ୍ଧି ରଖିଥିଲେ ।

- ୨ -

*ତମଗୁଣରେ ବୁଡି ରହିଥିବା ମୋର ଦେଶବାସୀଙ୍କୁ କର୍ମଯୋଗ ସ୍ପୃହାରେ ଅନୁପ୍ରାଣିତ କରି ଯଦି ସେମାନଙ୍କୁ ନିଜ ଗୋଡ଼ରେ ଠିଆ ହେବାପାଇଁ ଜାଗ୍ରତ କରିପାରିଲି, ତେବେ ମୁଁ ମହାନନ୍ଦରେ ସହସ୍ର ନର୍କକୁ ଗମନ କରିବା ପାଇଁ ପ୍ରସ୍ତୁତ ଅଛି... ମୁଁ ରାମକୃଷ୍ଣଙ୍କର ଭୃତ୍ୟ ନୁହେଁ କିମ୍ବା କାହାର ବି ନୁହେଁ, କିନ୍ତୁ ଯିଏ ନିଜର ଭକ୍ତି ଓ ମୁକ୍ତି ଖାତିର ନ କରି ଅନ୍ୟର ସେବା ଓ ସହାୟତା କରେ, ତାଙ୍କରି ହିଁ ମୁଁ କେବଳ ଭୃତ୍ୟ ।*

ସ୍ୱାମୀଜୀଙ୍କର ଭାବଧାରା ବିଭିନ୍ନ ମାର୍ଗରେ ପ୍ରବାହିତ ହେଉଥିଲା । ଶ୍ରୀରାମକୃଷ୍ଣ ଏକଦା ତାଙ୍କୁ କହିଥିଲେ ଯେ ସେ ତାଙ୍କର ଚକ୍ଷୁ ମୁଦ୍ରିତ କରିବେ ନାହିଁ, କିନ୍ତୁ ଉନ୍ମୁକ୍ତ ରଖିବେ ଯାହା ମାଧ୍ୟମରେ ସେ ଗରିବ, ନିଶ୍ୱ, ପୀଡ଼ିତ, କ୍ଷୁଧାର୍ତ୍ତ ଓ ଅଜ୍ଞ ଭିତରେ ଦର୍ଶନ କରିପାରିବେ ଈଶ୍ୱରଙ୍କୁ । ପରିବ୍ରାଜକ ଜୀବନକାଳରେ ସେ ଦେଖିଥିଲେ ଜନତାର ଯନ୍ତ୍ରଣା ଓ ଦୁଃଖ ଏବଂ ଶୁଣିପାରିଥିଲେ ସାହାଯ୍ୟ ପାଇଁ ଭାରତର ନିଃଶବ୍ଦ ସ୍ୱର । ଆମେରିକା ଓ ପାଶ୍ଚାତ୍ୟ ଜଗତରେ ସେ ଦେଖିଥିଲେ ଲୋକମାନଙ୍କର ସମୃଦ୍ଧ ଭୌତିକ ଜୀବନ, ସେମାନଙ୍କର ଗତିଶୀଳ ସମାଜିକ ଜୀବନ ଏବଂ ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା ଓ ସାଂଗଠନିକ ଶକ୍ତି ମାଧ୍ୟମରେ ସାର୍ବଜନୀନ ପ୍ରଗତି । ଶ୍ରୀରାମକୃଷ୍ଣଙ୍କର ସେହି କେଇପଦ କଥା । ''ଖାଲି ପେଟରେ ଧର୍ମ ହୁଏନା'' ସର୍ବଦା ତାଙ୍କ କର୍ଣ୍ଣଗହ୍ୱରରେ ଝଙ୍କୁରିତ ହେଉଥିଲା । ସେଥିପାଇଁ ନିଜ ଗୁରୁଭାଇ ସନ୍ନ୍ୟାସୀଗଣଙ୍କୁ ସେ ବାରମ୍ବାର ସ୍ମରଣ କରାଇ ଦେଉଥିଲେ - ଯେଉଁମାନେ ନିଜର ବ୍ୟକ୍ତିଗତ ମୁକ୍ତି ପାଇଁ ଚିନ୍ତିତ, ସେମାନେ ନିଜକୁ ଅବତାର ପୁରୁଷ ଶ୍ରୀରାମକୃଷ୍ଣ ପରମହଂସଙ୍କର ଶିଷ୍ୟ ବୋଲି କହି ପାରିବେ

Digitized by srujanika@gmail.com

ନାହିଁ । ଯେହେତୁ ସେମାନେ ଶ୍ରୀରାମକୃଷ୍ଣଙ୍କ ସମ ତ୍ରାଣକର୍ତ୍ତାଙ୍କ ଆଶିଷପ୍ରାପ୍ତ, ସେମାନେ ମୁକ୍ତି ପାଇବେ ବୋଲି ଦୃଢ଼ ବିଶ୍ୱାସ ରଖିବା ଉଚିତ, ନିଜର ମୁକ୍ତି ଚିନ୍ତା କରିବା ପରିବର୍ତ୍ତେ ଅନ୍ୟମାନଙ୍କୁ ଈଶ୍ୱରଙ୍କର ଦୃଶ୍ୟମାନ ରୂପ ଭାବି ସେବା କରିବା ଉଚିତ । ସ୍ୱାମୀଜୀ ବାରମ୍ବାର କହୁଥିଲେ ''ମୁଁ ଏଭଳି ଏକ ନୂତନ ସନ୍ନ୍ୟାସୀ ସଂପ୍ରଦାୟ ସୃଷ୍ଟି କରିବାକୁ ଚାହେଁ, ଯେଉଁମାନେ ପାରମ୍ପରିକ ବ୍ୟକ୍ତିଗତ ମୁକ୍ତିର ପଥ କେବଳ ଗ୍ରହଣ ନ କରି, ବରଂ ମାନବ ସେବାର ଏକ ନୂତନ ପ୍ରତିଜ୍ଞାକୁ ଜୀବନର ବ୍ରତ କରିବେ ।

ଆଲମବଜାର ମଠର ଗୁରୁଭାଇ ସନ୍ନ୍ୟାସୀଗଣଙ୍କ ମାନସାକାଶ ହେଲା ଆଲୋକିତ । ସେମାନେ ପ୍ରଥମେ ସ୍ୱାମୀଜୀଙ୍କର ପ୍ରସାରିତ ଓ ବିଶାଳ ଆଭିମୁଖ୍ୟକୁ ବୁଝି ନ ପାରି, ଧ୍ୟାନ, ତପସ୍ୟା ଇତ୍ୟାଦି ସାଧନା ସାହାଯ୍ୟରେ ମୁକ୍ତିଲାଭର ଚେଷ୍ଟା ହିଁ 'ସନ୍ନ୍ୟାସ ଜୀବନର ଆଦର୍ଶ ବୋଲି ଭାବି ନେଇଥିଲେ । କାରଣ ସେମାନେ ଶ୍ରୀରାମକୃଷ୍ଣଙ୍କ ମୁଖରୁ ଶୁଣିଥିଲେ ଯେ ପ୍ରଚାର କରିବା, ଅତ୍ୟଧିକ ଶାସ୍ତ୍ର ଅଧ୍ୟୟନ କରିବା, ଦାତବ୍ୟ କର୍ମରେ ମାତିବା ଅପେକ୍ଷା ନିର୍ଜନ ସ୍ଥାନରେ ଏକୁଟିଆ ଧ୍ୟାନରେ ଈଶ୍ୱରଙ୍କୁ ବ୍ୟାକୁଳିତ ହୋଇ ଡାକିବା ଶତଗୁଣେ ଭଲ । ତାଙ୍କ ମଧ୍ୟରୁ ଜଣେ ଗୁରୁଭାଇ ସ୍ୱାମୀଜୀଙ୍କୁ କହିଥିଲେ, ''ତୁମେ ଆମ ଶ୍ରୀଠାକୁରଙ୍କ ବିଷୟରେ ଆମେରିକାରେ କିଛି କହି ନାହଁ, କେବଳ ନିଜ କଥା କହିଛ । ସ୍ୱାମୀଜୀ ଉକ୍ତ ଗୁରୁଭାଇଙ୍କୁ ଖୋଲାଖୋଲି ଭାବେ ସମାଲୋଚନା କରି କହିଥିଲେ, ''ଲୋକେ ପ୍ରଥମେ ମୋତେ ବୁଝନ୍ତୁ, ତା'ପରେ ସେମାନେ ଶ୍ରୀରାମକୃଷ୍ଣଙ୍କୁ ବୁଝିବେ ।

କିନ୍ତୁ ସ୍ୱାମୀଜୀଙ୍କର ଭାବଧାରା ସେମାନଙ୍କର ଏତାଦୃଶ ଅଜ୍ଞାନ ଦୂର କରିଦେଲା । ସେମାନଙ୍କୁ ସ୍ୱାମୀଜୀ ବୁଝାଇ ଦେଇଥିଲେ ଯେ ସେମାନେ ଯଦି ଏହି ଯୁଗଧର୍ମର ପ୍ରଚାର କାର୍ଯ୍ୟରେ ବଦ୍ଧପରିକର ନ ହୁଅନ୍ତି, ତାହାହେଲେ ଶ୍ରୀରାମକୃଷ୍ଣଙ୍କ ଆଗମନର ଉଦ୍ଦେଶ୍ୟ ବିଫଳ ହୋଇଯିବ । ମନ୍ଦିର ଓ ପ୍ରତିମାର ଗଣ୍ଡି ଭିତରୁ ଭଗବାନଙ୍କୁ ବାହାରକୁ ଆଣି 'ଯତ୍ର ଜୀବ, ତତ୍ର ଶିବ' ମନ୍ତ୍ରରେ 'ବିରାଟ'ର ପୂଜାରେ ଅଗ୍ରସର ହେବାକୁ ହେବ । ପ୍ରାଚୀନକାଳରେ ସନ୍ନ୍ୟାସୀଗଣଙ୍କ ପରି ଗିରିଗୁହା ବା କୁଟୀର ଭିତରେ ବସି କେବଳମାତ୍ର ଆତ୍ମସାକ୍ଷାତକାର ଚେଷ୍ଟାରେ ବ୍ୟାପୃତ ରହିଲେ ଚଳିବ ନାହିଁ । ସଂସାରର କର୍ମ କ୍ଷେତ୍ରରେ ଠିଆ ହୋଇ ମାନବକୁ ଉଚ୍ଚକାର୍ଯ୍ୟ ପାଇଁ ପ୍ରେରଣା ଦେବାକୁ ହେବ - କୋଟି କୋଟି ଭାରତବାସୀଙ୍କ ଅଜ୍ଞତା ଓ ହୃଦୟାନ୍ଧକାର ଦୂର କରିବାକୁ ହେବ । 'ବହୁଜନ ସୁଖାୟ, ବହୁଜନ ହିତାୟ ହେବ ରାମକୃଷ୍ଣ ଆନ୍ଦୋଳନରେ ସନ୍ନ୍ୟାସୀଙ୍କର ମୁଖ୍ୟ ଭୂମିକା । ସ୍ୱାମୀଜୀଙ୍କ ସ୍ପଷ୍ଟୋକ୍ତି ଗୁରୁଭାଇ ସନ୍ନ୍ୟାସୀଙ୍କ ମନରୁ ସମସ୍ତ ସନ୍ଦେହ ଓ ସଂଶୟ ଦୂରୀଭୂତ କରିଦେଲା ।

ଏକଦା ତାଙ୍କର ଜନୈକ ଗୁରୁଭାଇ-ସନ୍ନ୍ୟାସୀ ପରିହାସଛଳରେ କହିଥିଲେ ଯେ ସେ ଶ୍ରୀରାମକୃଷ୍ଣଙ୍କ ଭାବାତୀତ ଶିକ୍ଷାକୁ ପାଶ୍ଚାତ୍ୟ ସଂଗଠନ, କାର୍ଯ୍ୟ ଓ ସେବାର ଚିନ୍ତାଧାରାରେ ପୂରାଇ ଦେଇଛନ୍ତି ଯାହା ଶ୍ରୀରାମକୃଷ୍ଣ କେବେ ବି ସେସବୁ ଗ୍ରହଣ କରି ନ ଥାନ୍ତେ । ସ୍ୱାମୀଜୀ ଗର୍ଜି ଉଠି କହିଲେ, ''ତୁମେ କ'ଣ ଭାବୁଛ ଯେ ମୋ ଅପେକ୍ଷା ତୁମେ ଶ୍ରୀରାମକୃଷ୍ଣଙ୍କୁ ବେଶି ଭଲ ଭାବରେ ବୁଝିପାରିଛ । ତୁମେ କ'ଣ ଭାବ ଯେ ଜ୍ଞାନ ଏକ ଶୁଷ୍କ ବସ୍ତୁ ଯାହା ହୃଦୟର କୋମଳତମ ପ୍ରଦେଶକୁ ନଷ୍ଟ କରି ନିଃଶଙ୍କ ପଥରେ ଲାଭ କରାଯାଏ । ତୁମର ଭକ୍ତି ହେଉଛି

Digitized by srujanika@gmail.com

ନନ୍‌ସେନ୍ସ ଭାବପ୍ରବଣତା ଯାହା ଜଣକୁ ନଂପୁସକ କରିଦିଏ । ତୁମେ ଯେତିକି ଶ୍ରୀରାମକୃଷ୍ଣଙ୍କୁ ଅଳ୍ପ ବୁଝିଛ, ତାକୁ ନେଇ ପ୍ରଚାର କରିବାକୁ ଚାହୁଁଛ ! ହାତ ଟେକିଦିଅ । ତୁମ ରାମକୃଷ୍ଣଙ୍କୁ କିଏ ପଚାରେ ? ତୁମର ଭକ୍ତି ଓ ମୁକ୍ତିକୁ କିଏ ପଚାରେ ? ତୁମର ଶାସ୍ତ୍ର ଯାହା କୁହେ, ତାହାକୁ କିଏ ପଚାରେ ? ତମଗୁଣରେ ବୁଡି ରହିଥିବା ମୋର ଦେଶଭାସୀଙ୍କୁ କର୍ମଯୋଗ ସ୍ପୃହାରେ ଅନୁପ୍ରାଣିତ କରି ଯଦି ସେମାନଙ୍କୁ ନିଜ ଗୋଡ଼ରେ ଠିଆ ହେବାପାଇଁ ଜାଗ୍ରତ କରିପାରିଲି, ତେବେ ମୁଁ ମହାନନ୍ଦରେ ସହସ୍ର ନର୍କକୁ ଗମନ କରିବା ପାଇଁ ପ୍ରସ୍ତୁତ ଅଛି... ମୁଁ ରାମକୃଷ୍ଣଙ୍କର ଭୃତ୍ୟ ନୁହେଁ କିମ୍ବା କାହାର ବି ନୁହେଁ, କିନ୍ତୁ ଯିଏ ନିଜର ଭକ୍ତି ଓ ମୁକ୍ତି ଖାତିର ନ କରି ଅନ୍ୟର ସେବା ଓ ସହାୟତା କରେ, ତାଙ୍କରି ହିଁ ମୁଁ କେବଳ ଭୃତ୍ୟ ।

- ୩ -

*...ମୁଁ ଶ୍ରୀରାମକୃଷ୍ଣଙ୍କୁ ଚିନ୍ତା କଲେ କିମ୍ବା ତାଙ୍କ ସମ୍ବନ୍ଧରେ କହିବାକୁ ଆରମ୍ଭ କଲେ, ମୁଁ ଭକ୍ତିରେ ଗଦ୍‌ଗଦ୍ ହୋଇ ଉଠେ । ତେଣୁ ମୁଁ ନିଜକୁ ଜ୍ଞାନର ଲୌହ ଶିକୁଳିରେ ସର୍ବଦା ବାନ୍ଧି ରଖିବାକୁ ଚେଷ୍ଟା କରେ, କାରଣ ମୋ ମାତୃଭୂମିର ଅସମାପିତ କାର୍ଯ୍ୟ ଯେପର୍ଯ୍ୟନ୍ତ ସମାପିତ ନ ହୋଇଛି ଏବଂ ମୋର ବାଣୀ ଯେପର୍ଯ୍ୟନ୍ତ ସମଗ୍ର ବିଶ୍ୱରେ ପ୍ରଚାରିତ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ମୁଁ ନିଜକୁ ଜ୍ଞାନରେ ବାନ୍ଧି ରଖିବାକୁ ବାଧ୍ୟ ।*

ସ୍ୱାମୀଜୀ ସିନା ଏପରି କଠୋର ଭାଷା କହିଦେଲେ, କିନ୍ତୁ ତାଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା, ଶରୀର ହେଲା ପ୍ରକମ୍ପିତ ଏବଂ ଚକ୍ଷୁଦ୍ୱୟ ଲୋତକରେ ଛଳଛଳ । ସଙ୍ଗେସଙ୍ଗେ ସେ ସଂଲଗ୍ନ କୋଠରିକୁ ଚାଲିଗଲେ । କିୟତମୁହୂର୍ତ୍ତ ଅତିକ୍ରାନ୍ତେ କେତେକ ଗୁରୁଭ୍ରାତା ଉକ୍ତ କୋଠରିକୁ ପଶିବା ମାତ୍ରେ ସ୍ୱାମୀଜୀଙ୍କ ଅବସ୍ଥା ଦେଖି ତଟସ୍ଥ ହୋଇଗଲେ । ସେ ଧ୍ୟାନସ୍ଥ ଏବଂ ଅର୍ଦ୍ଧୋନ୍ମିଳିତ ଚକ୍ଷୁରୁ ଅଶ୍ରୁଧାରା ବହମାନ । ପ୍ରାୟ ଘଣ୍ଟାଏ ପରେ, ସ୍ୱାମୀଜୀଙ୍କର ଧ୍ୟାନ ଭଙ୍ଗ ହେଲା ଏବଂ ମୁଖ ଧୌତ କରି ପୁନର୍ବାର ସେ ବୈଠକଖାନାକୁ ଫେରିଆସିଲେ, ଯେଉଁଠି ଗୁରୁଭ୍ରାତା ସନ୍ନ୍ୟାସୀ ଓ ଭକ୍ତଗଣ ନିର୍ବାକ ହୋଇ ତାଙ୍କର ଫେରିବା ବାଟକୁ ଚାହିଁ ବସିଥିଲେ । ଅବଶ୍ୟ ସେତେବେଳକୁ ସେ ଶାନ୍ତ ହୋଇଯାଇଥିଲେ, ତଥାପି ଯେଉଁ ପ୍ରଚଣ୍ଡ ମାନସିକ ବାତ୍ୟା ତାଙ୍କ ମନ ଓ ଶରୀରକୁ ଦୋହଲାଇ ଦେଇଥିଲା, ତାହାର କିଞ୍ଚିତ ଅଂଶ ତାଙ୍କ ମୁଖମଣ୍ଡଳରୁ ବାରି ହେଉଥିଲା ।

ସ୍ୱାମୀଜୀ ପୁନଶ୍ଚ ଅତି ମୃଦୁ କଣ୍ଠରେ କହିଲେ, ''ମୋତେ ଚିହ୍ନିବାକୁ ଚେଷ୍ଟା କର ଭାଇ ! ଭକ୍ତିର ସ୍ରୋତ ଜଣେ ବ୍ୟକ୍ତି ଭିତରେ ଉଚ୍ଛୁଳିଲେ ତାଙ୍କର ହୃଦୟ ଓ ସ୍ନାୟୁ ଏଭଳି ନରମ ଓ ସମ୍ବେଦନଶୀଳ ହୋଇଯାଏ ଯେ ସେ ଏପରିକି ଏକ ଫୁଲକୁ ଛୁଇଁ ପାରିବ ନାହିଁ । ...ମୁଁ ଶ୍ରୀରାମକୃଷ୍ଣଙ୍କୁ ଚିନ୍ତା କଲେ କିମ୍ବା ତାଙ୍କ ସମ୍ବନ୍ଧରେ କହିବାକୁ ଆରମ୍ଭ କଲେ, ମୁଁ ଭକ୍ତିରେ ଗଦ୍‌ଗଦ୍ ହୋଇ ଉଠେ । ତେଣୁ ମୁଁ ନିଜକୁ ଜ୍ଞାନର ଲୌହ ଶିକୁଳିରେ ସର୍ବଦା ବାନ୍ଧି ରଖିବାକୁ

Digitized by srujanika@gmail.com

ଚେଷ୍ଟା କରେ, କାରଣ ମୋ ମାତୃଭୂମିର ଅସମାପିତ୍ କାର୍ଯ୍ୟ ଯେପର୍ଯ୍ୟନ୍ତ ସମାପିତ ନ ହୋଇଛି ଏବଂ ମୋର ବାଣୀ ଯେପର୍ଯ୍ୟନ୍ତ ସମଗ୍ର ବିଶ୍ୱରେ ପ୍ରଚାରିତ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ମୁଁ ନିଜକୁ ଜ୍ଞାନରେ ବାନ୍ଧି ରଖିବାକୁ ବାଧ । ଯେତେବେଳେ ମୁଁ ଲକ୍ଷ୍ୟ କରେ ଯେ ଭକ୍ତିର ଅବାରିତ ସ୍ରୋତରେ ମୋର ପାଦ ଟଳମଳ, ସେତେବେଳେ ମୁଁ ଉକ୍ତ ସ୍ରୋତକୁ ବଳପୂର୍ବକ ବାଧାଦିଏ ଏବଂ କଠୋର ଜ୍ଞାନରେ ମନ ପ୍ରବେଶ କରାଇ ନିଜକୁ ଶକ୍ତ ଓ କଠୋର କରିଦିଏ । ଓହୋଃ... ମୋର ଅନେକ କାର୍ଯ୍ୟ କରିବାକୁ ବାକି ରହିଛି ! ଶ୍ରୀରାମକୃଷ୍ଣଙ୍କର ଜଣେ ଭୃତ୍ୟ ମାତ୍ର, ସେ ମୋତେ ତାଙ୍କର କାର୍ଯ୍ୟ କରେଇ ନେବାକୁ ଛାଡ଼ି ଯାଇଛନ୍ତି ଏବଂ ତାହା ପୂର୍ଣ୍ଣ ନ କରିବା ପର୍ଯ୍ୟନ୍ତ ସେ ମୋତେ ବିଶ୍ରାମ ଦେବେନାହିଁ । ଓହୋଃ... ତାଙ୍କ ସମ୍ବନ୍ଧରେ ମୁଁ କ'ଣ ବା କହିପାରିବି ? ଆହାଃ... ତାଙ୍କର କି ପ୍ରେମ ମୋ ପ୍ରତି !''

ଯେଉଁ ସ୍ୱାମୀ ବିବେକାନନ୍ଦ ଗୁରୁଭ୍ରାତା ସ୍ୱାମୀ ଅଦ୍ଭୁତାନନ୍ଦଙ୍କର ପୂଜା କାର୍ଯ୍ୟକୁ ଭର୍ତ୍ସିତ କରି କହୁଥିଲେ, ''ତୁମେ କ'ଣ ବା ଜାଣିଛ ? ତୁମେ ଅଜ୍ଞ... ଧର୍ମ ସମ୍ବନ୍ଧରେ ତୁମେ କ'ଣ ବା ଜାଣ ? ତୁମେ କେବଳ ହାତଯୋଡ଼ି ପ୍ରାର୍ଥନା କରି ଜାଣ - ହେ ଭଗବାନ । ତୁମର ନାକ କି ସୁନ୍ଦର । ତୁମର ଚକ୍ଷୁଯୁଗଳ କିପରି ସୁନ୍ଦର ! ତୁମେ ଭାବୁଛ ଯେ ତୁମର ଅନ୍ତିମ କାଳରେ ଶ୍ରୀରାମକୃଷ୍ଣ ପହଞ୍ଚି ତୁମର ହାତଧରି ବୈକୁଣ୍ଠଧାମକୁ ନେଇ ଯିବେ'' ବୋଲି ଭକ୍ତିପୂର୍ଣ୍ଣ ଭାବପ୍ରବଣତାକୁ ନନ୍‌ସେନ୍ସ କହି ବିଦ୍ରୂପ କରୁଥିଲେ - ବର୍ତ୍ତମାନ ସେହି ବିବେକାନନ୍ଦ ସ୍ୱୀକାର କରୁଛନ୍ତି ଯେ ସେ ଶ୍ରୀରାମକୃଷ୍ଣଙ୍କର ଭୃତ୍ୟ ଏବଂ ଭକ୍ତି ସ୍ରୋତକୁ ଅଟକାଇବା ପାଇଁ ଜ୍ଞାନ ଶିକୁଳିରେ ନିଜକୁ ସେ ବାନ୍ଧି ରଖିଛନ୍ତି । ବାସ୍ତବରେ ସ୍ୱାମୀଜୀଙ୍କୁ ବୁଝିବା ଦୁରୁହ ବ୍ୟାପାର ।

- ୪ -

*ଭକ୍ତିକୁ ସେ ତିରସ୍କାର କରିନାହାଁନ୍ତି ବରଂ ଭକ୍ତିର ସ୍ରୋତ ତାଙ୍କ ଭିତରେ ଥିଲା ବେଗଗାମୀ । କିନ୍ତୁ ଭକ୍ତି ନାଁରେ ଯେଉଁ ନିଷ୍କ୍ରିୟ ମାନସିକତା ଭାରତୀୟଙ୍କୁ ତମଗୁଣୀ କରିଦେଇଥିଲା, ସେହି ତମଗୁଣକୁ ହଟାଇବା ପାଇଁ କର୍ମଯୋଗର ଆବଶ୍ୟକତା ଅଛି ବୋଲି ସ୍ୱାମୀଜୀ ବୁଝିପାରିଥିଲେ । ସେ ଖଣ୍ଡିଏ ଜଳନ୍ତା ନିଆଁ ହୋଇ ବିଶ୍ୱରେ ଖାଲି ଘୂରି ବୁଲୁଥିଲେ । ଭାରତ ବାୟୁମଣ୍ଡଳରେ ସେହି ଜ୍ୱଳନ୍ତା ନିଆଁ ଖୁବ୍ ତେଜିୟାନ୍ ହୋଇ ଉଠୁଥିଲା । ସବୁପ୍ରକାର ତାମସିକ ମାନସିକତାକୁ ସତେକି ଜାଳିପୋଡ଼ି ପାଉଁଶ କରିଦେବ !*

ସ୍ୱାମୀଜୀଙ୍କ ଭକ୍ତି ଓ ମୁକ୍ତି ବିରୋଧରେ ଏଭଳି ବିସ୍ଫୋରଣ ଦେଖି ସାଧାରଣ ମଣିଷ ଭାବିବ ଯେ ସ୍ୱାମୀଜୀ ବୋଧହୁଏ ଭକ୍ତିର ମାନବ ନ ଥିଲେ କିମ୍ବା ଭକ୍ତି ପ୍ରତି ତାଙ୍କର ସାମାନ୍ୟତମ ସ୍ପୃହା ନ ଥିଲା । ଯିଏ ଏମିତି ଭାବିବ, ତାହା ନିଶ୍ଚିତ ଭୁଲ ପ୍ରମାଣିତ ହେବ । କାରଣ ଶ୍ରୀରାମକୃଷ୍ଣଙ୍କର ଶିବ ଜ୍ଞାନେ ଜୀବ ସେବା, ଅର୍ଥାତ୍ ଅଗଣିତ ଦୁଃଖି ଦରିଦ୍ରଙ୍କର ସେବା କରିବା ସନ୍ଦେଶକୁ

Digitized by srujanika@gmail.com

ସ୍ୱାମୀଜୀ ଯେପରି ବୁଝିପାରିଥିଲେ, ଅନ୍ୟ କେହି ସେଭଳି ବୁଝିପାରି ନ ଥିଲେ । ଶ୍ରୀରାମକୃଷ୍ଣ ବାହାରକୁ ଏକ ମହାନ୍ ଭକ୍ତ ଭାବେ ଦେଖାଯାଉଥିଲେ କିନ୍ତୁ ଭିତରେ ଥିଲେ ପରମଜ୍ଞାନୀ, ଯାହା ସ୍ୱାମୀ ବିବେକାନନ୍ଦ ସ୍ୱୟଂ ବୁଝିଥିଲେ । ଭକ୍ତିକୁ ସେ ତିରସ୍କାର କରିନାହାଁନ୍ତି ବରଂ ଭକ୍ତିର ସ୍ରୋତ ତାଙ୍କ ଭିତରେ ଥିଲା ବେଗଗାମୀ । କିନ୍ତୁ ଭକ୍ତି ନାଁରେ ଯେଉଁ ନିଷ୍କ୍ରିୟ ମାନସିକତା ଭାରତୀୟଙ୍କୁ ତମଗୁଣୀ କରିଦେଇଥିଲା, ସେହି ତମଗୁଣକୁ ହଟାଇବା ପାଇଁ କର୍ମଯୋଗର ଆବଶ୍ୟକତା ଅଛି ବୋଲି ସ୍ୱାମୀଜୀ ବୁଝିପାରିଥିଲେ । ସେ ଖଣ୍ଡିଏ ଜଳନ୍ତା ନିଆଁ ହୋଇ ବିଶ୍ୱରେ ଖାଲି ଘୂରି ବୁଲୁଥିଲେ । ଭାରତ ବାୟୁମଣ୍ଡଳରେ ସେହି ଜ୍ୱଳନ୍ତା ନିଆଁ ଖୁବ୍ ତେଜୀୟାନ୍ ହୋଇ ଉଠୁଥିଲା । ସବୁପ୍ରକାର ତାମସିକ ମାନସିକତାକୁ ସତେକି ଜାଳିପୋଡ଼ି ପାଉଁଶ କରିଦେବ !

ସ୍ୱାମୀଜୀଙ୍କର ବେଦାନ୍ତ ମାର୍ଗର ସାରବତ୍ତା କେବଳ ତାଙ୍କର ଗୁରୁଭାଇ - ସନ୍ନ୍ୟାସଗଣ ହୃଦୟଙ୍ଗମ କଲେ ନାହିଁ ବରଂ ଶ୍ରୀରାମକୃଷ୍ଣଙ୍କର ଗୃହୀଭକ୍ତ ଓ ସାଧାରଣ ଲୋକ ସେବା ଓ ତ୍ୟାଗରେ ବ୍ରତୀ ହେଲେ । ଭାରତବର୍ଷରେ ପୁନରୁତ୍ଥାନର ନବଯୁଗ ଆରମ୍ଭ ହେଲା । ସ୍ୱାମୀ ରାମକୃଷ୍ଣାନନ୍ଦ ଯିଏ ଶ୍ରୀରାମକୃଷ୍ଣ ପରମହଂସଙ୍କୁ କାୟମନୋବାକ୍ୟରେ ପୂଜା, ଆରତି ଓ ଅର୍ଚ୍ଚନା କର୍ମରେ ଦୀର୍ଘ ବାରବର୍ଷ କାଳ, ଅନ୍ୟତ୍ର କେଉଁଠାକୁ ନ ଯାଇ, ନିମଗ୍ନ ଥିଲେ, ତାଙ୍କ ମନ ଓ ହୃଦୟ ଜ୍ଞାନାଲୋକରେ ପ୍ରଜ୍ୱଳିତ ହେଲା । ସେ ସ୍ୱାମୀଜୀଙ୍କ ଅନୁରୋଧକ୍ରମେ ବେଦାନ୍ତ ପ୍ରଚାର କାର୍ଯ୍ୟ କରିବାକୁ ଦାକ୍ଷିଣାତ୍ୟ ଗଲେ । ସେତେବେଳକୁ ସ୍ୱାମୀ ଅଭେଦାନନ୍ଦ ଓ ସ୍ୱାମୀ ସାରଦାନନ୍ଦ ପାଶ୍ଚାତ୍ୟ ଦେଶରେ ବେଦାନ୍ତ ପ୍ରଚାର କାର୍ଯ୍ୟଭାର ଗ୍ରହଣ କରିଥାନ୍ତି । ସ୍ୱାମୀ ଅଖଣ୍ଡାନନ୍ଦ ମୁର୍ଶିଦାବାଦ୍‌ରେ ଦୁର୍ଭିକ୍ଷ ପ୍ରପୀଡ଼ିତ ନରନାରୀଙ୍କ ସେବା କାର୍ଯ୍ୟ ଲାଗି ସେଠାକୁ ପ୍ରସ୍ଥାନ କଲେ । ଗୁରୁଭ୍ରାତାଗଣଙ୍କୁ ସେବା କାର୍ଯ୍ୟରେ ନିଯୁକ୍ତି ଦେଖି ସ୍ୱାମୀଜୀ ଆଶାତୀତ ଆନନ୍ଦ ଲାଭ କଲେ ।

ବର୍ଷ ବର୍ଷ ଧରି ନିରନ୍ତର କଠୋର ପରିଶ୍ରମ ଯୋଗୁଁ ସ୍ୱାମୀଜୀଙ୍କ ଦୃଢ଼ ଶରୀର ଅସୁସ୍ଥ ହୋଇଗଲା । ନିଜର ଅସୁସ୍ଥତା ପ୍ରତି ଭ୍ରୂକ୍ଷେପ ନ କରି ବଂର ବ୍ରହ୍ମଚାରୀ ଓ ନବଦୀକ୍ଷିତ ଶିଷ୍ୟମାନଙ୍କୁ ଗୀତା, ଉପନିଷଦ ଇତ୍ୟାଦି ଭାଷ୍ୟ ପଢ଼ାଇବାରେ ବ୍ୟସ୍ତ ରହିଲେ । ଏତାଦୃଶ ନିରନ୍ତର ମାନସିକ ପରିଶ୍ରମରୁ ବିଶ୍ରାମ ନେବାପାଇଁ ଡାକ୍ତରମାନେ ତାଙ୍କୁ ଉପଦେଶ ଦେଲେ । ସ୍ୱାମୀଜୀ ରାଜିହେଲେ ଏବଂ ଦାର୍ଜିଲିଂ ଯିବାପାଇଁ ପ୍ରସ୍ତୁତ ହେଲେ । ତାଙ୍କ ସହିତ ଶ୍ରୀ ଓ ଶ୍ରୀମତୀ ସେଭିଆର, ସ୍ୱାମୀ ବ୍ରହ୍ମାନନ୍ଦ, ଶ୍ରୀଗିରୀଶ ଚନ୍ଦ୍ର ଘୋଷ, ଶ୍ରୀ ଗୁଡ୍‌ଉଇନ୍, ଡାକ୍ତର ଟର୍ଣ୍ଣବୁଲ୍, ଆଲସିଙ୍ଗା ପେରୁମଲ, ଜି.ଡି. ନରସିଂହାଚାର୍ଯ୍ୟା, ସିଙ୍ଗାରାଭେଲୁ ମୁଦାଲିଅର ଏବଂ ଅନ୍ୟ କେତେଜଣ ସନ୍ନ୍ୟାସୀ ଦାର୍ଜିଲିଂ ଯାଇଥିଲେ । ବର୍ଦ୍ଧମାନ ମହାରାଜା ସେଠାରେ ସ୍ୱାମୀଜୀ ଓ ତାଙ୍କର ସାଥୀଗଣଙ୍କ ପାଇଁ ସମସ୍ତ ରହିବାର ବନ୍ଦୋବସ୍ତ କରିଦେଲେ । ପ୍ରାୟ ଦୁଇମାସ କାଳ ଦାର୍ଜିଲିଂରେ ରହି ମଧ ତାଙ୍କ ସ୍ୱାସ୍ଥ୍ୟରେ ବିଶେଷ ଉନ୍ନତି ଘଟିଲା ନାହିଁ । ସେ ପୁନରାୟ କଲିକତା ଫେରିଆସିଲେ ।

ଏଠାରେ ସ୍ମରଣୀୟ ଯେ ସ୍ୱାମୀଜୀ ପାଶ୍ଚାତ୍ୟ ଦେଶରେ ଥିବାସମୟରେ କେତେଜଣ ଯୁବକ ଆଲମବଜାର ମଠରେ ଯୋଗଦାନ କରି ବ୍ରହ୍ମଚାରୀ ଜୀବନଯାପନ କରୁଥିଲେ । କଲିକତାରେ ସ୍ୱାମୀଜୀଙ୍କର ଅବସ୍ଥାନ ଯୋଗୁଁ ସେମାନଙ୍କ ମନରେ ପ୍ରେରଣା ଜାଗି ଉଠିଥିଲା ଯେ ସେମାନେ

Digitized by srujanika@gmail.com

ତାଙ୍କଠାରୁ ସିଧାସଳଖ ସନ୍ୟାସ ଧର୍ମର ଦୀକ୍ଷା ଗ୍ରହଣ କରିବେ । ସ୍ୱାମୀଜୀ, ସେହି ଯୁବକମାନଙ୍କର ଉତ୍ସାହ ଓ ଆନ୍ତରିକତା ଦେଖି ଅତ୍ୟନ୍ତ ଆନନ୍ଦ କେବଳ ହେଲେ ନାହିଁ ବରଂ ସେମାନଙ୍କୁ ସ୍ୱୟଂ ଦୀକ୍ଷିତ କରିବେ ବୋଲି ଆଗ୍ରହ ପ୍ରକାଶ କଲେ । କାରଣ ଯୁବବର୍ଗ ହିଁ ଥିଲେ ତାଙ୍କର ପୁଞ୍ଜି ଯେଉଁମାନଙ୍କ ସ୍କନ୍ଧରେ ଅର୍ପଣ କରିବେ ନବଯୁଗ ନିର୍ମାଣର କାର୍ଯ୍ୟ । ଗୁରୁଭ୍ରାତାଗଣ ଏମନ୍ତ ନିଷ୍ପତ୍ତିରେ ଅବଶ୍ୟ ସହମତି ପ୍ରକାଶ କଲେ କିନ୍ତୁ ସେମାନଙ୍କ ଭିତରୁ ଜଣେ ଯୁବକର ଚରିତ୍ର ପୂର୍ବ ଜୀବନରେ ପାପପୂର୍ଣ୍ଣ ହୋଇ ଥିବା ହେତୁ ଉକ୍ତ ଯୁବକ ବ୍ୟତୀତ ସମସ୍ତଙ୍କୁ ଦୀକ୍ଷା ପ୍ରଦାନ କରିବା ନିମନ୍ତେ ସେମାନେ ଯୁକ୍ତି ବାଢ଼ିଥିଲେ । କାହିଁକିନା ଏଭଳି ଅସଦ୍‌ଚରିତ୍ର ବ୍ୟକ୍ତିଙ୍କ ପ୍ରବେଶ ଫଳରେ ରାମକୃଷ୍ଣ ମଠର ସମ୍ମାନ ଓ ମର୍ଯ୍ୟାଦା ହାନି ହେବ । ସ୍ୱାମୀଜୀ ଗୁରୁଭ୍ରାତାମାନଙ୍କ ଅଭିପ୍ରାୟ ଅବଗତ ହୋଇ ସେମାନଙ୍କୁ ଡାକି କହିଲେ ''ଭାଇ, ଆମେ ଯଦି ପାପୀଙ୍କୁ ଆଶ୍ରୟ ଦେବାପାଇଁ ସଙ୍କୁଚିତ ହେବା, ତାହା ହେଲେ ଏମାନେ କେଉଁଠାରେ ଆଶ୍ରୟ ପାଇବେ ? ଯେଉଁମାନେ ଉଚ୍ଚତର ଜୀବନଯାପନ କରିବାର ସଂକଳ୍ପ ନେଇ ସଂସାର ତ୍ୟାଗ କରିଛନ୍ତି, ସେମାନଙ୍କୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ । ତୁମେ ଯଦି ଉଚ୍ଛୃଙ୍ଖଳ ଓ ଅସଦ୍ ଚରିତ୍ର ବ୍ୟକ୍ତିଙ୍କର ଚରିତ୍ର ସଂଶୋଧନ କରିବାକୁ ଅପାରଗ ହୁଅ, ତାହାହେଲେ ଗୈରିକ ପରିଧାନ କରି ଆଚାର୍ଯ୍ୟତ୍ୱ ଗ୍ରହଣ କରିଛ କାହିଁକି ? ସ୍ୱାମୀଜୀଙ୍କର ବିଶାଳ ହୃଦୟ ଓ ପ୍ରସାରିତ ମନକୁ ଗୁରୁଭ୍ରାତାଗଣ ବୁଝିପାରି ଦୀକ୍ଷାକର୍ମରେ ଆପତ୍ତି କଲେନାହିଁ ।

ବୈଦିକ କର୍ମକାଣ୍ଡାନୁସାରେ ଯୁବ ବ୍ରହ୍ମଚାରୀଗଣଙ୍କୁ ସନ୍ୟାସ ଧର୍ମରେ ଦୀକ୍ଷିତ କରାଇ ସ୍ୱାମୀଜୀ ତପୋଦୀପ୍ତ ମୁଖମଣ୍ଡଳରେ କହିଲେ, ''ବହୁଜନ ହିତାୟ, ବହୁଜନ ସୁଖାୟ ନିମନ୍ତେ ସନ୍ୟାସୀର ଜନ୍ମ । ସନ୍ୟାସ ଗ୍ରହଣ କରି ଯେଉଁମାନେ ଏହି ଉଚ୍ଚାଦର୍ଶ ଭୁଲି ଯାଆନ୍ତି, ବୃଥୈବ ତସ୍ୟ ଜୀବନଂ । ପର ପାଇଁ ପ୍ରାଣ ଦେବାକୁ, ଜୀବର ଗଗନଭେଦୀ କ୍ରନ୍ଦନ ନିବାରଣ କରିବାକୁ, ବିଧବାର ଅଶ୍ରୁ ପୋଛି ଦେବାକୁ, ସନ୍ତାନ-ବିୟୋଗ ବିଧୂରା ପ୍ରାଣରେ ଶାନ୍ତି ଦେବାକୁ, ଅଜ୍ଞ ଇତର ସାଧାରଣ ଜୀବନ ସଂଗ୍ରାମର ଉପଯୋଗ କରିବାକୁ, ଶାସ୍ତ୍ରୋପଦେଶ ବିସ୍ତାର ଦ୍ୱାରା ସମସ୍ତଙ୍କ ଐହିକ ଓ ପାରମାର୍ଥିକ ମଙ୍ଗଳ କରିବାକୁ ଏବଂ ଜ୍ଞାନାଲୋକ ବିତରଣ କରି ସମସ୍ତଙ୍କ ଭିତରେ ପ୍ରସୁପ୍ତ ବ୍ରହ୍ମସିଂହକୁ ଜାଗ୍ରତ କରିବାକୁ ଜଗତରେ ସନ୍ୟାସୀଙ୍କର ଜନ୍ମ ।''

୧୮୯୭ ଖ୍ରୀଷ୍ଟାବ୍ଦ ମେ ୧ ତାରିଖ । ଶ୍ରୀରାମକୃଷ୍ଣଙ୍କର ଅନ୍ତରଙ୍ଗ ଗୃହୀ ଭକ୍ତ ଶ୍ରୀଯୁକ୍ତ ବଳରାମ ବୋଷଙ୍କ ବାସଭବନରେ ସ୍ୱାମୀଜୀଙ୍କ ଆହ୍ୱାନରେ ଏକ ବୈଠକ ବସିଲା । ଶ୍ରୀରାମକୃଷ୍ଣଙ୍କର ଉଭୟ ଗୃହୀଭକ୍ତ ଓ ସନ୍ୟାସୀ ଭକ୍ତ ସେଠାରେ ସମବେତ ହୋଇଥିଲେ । ସ୍ୱାମୀଜୀଙ୍କ ମାନସାକାଶରେ ବହୁଦିନ ଧରି ଯେଉଁ କ୍ଷୁଦ୍ର ଜ୍ୟୋତି ବସା ବାନ୍ଧିଥିଲା, ତାହା ସର୍ବସମ୍ମୁଖରେ ଉଦ୍‌ଭାସିତ ହେଲା । ସ୍ୱାମୀଜୀ ନିଜର ମନକଥା ଖୋଲି ସମବେତ ଭକ୍ତଗଣଙ୍କୁ ଲକ୍ଷ୍ୟ କରି କହିଲେ, ''ବହୁ ଦେଶ ଭ୍ରମଣ କରି ମୋର ଗୋଟିଏ ଧାରଣା ହୋଇଛି ଯେ ସଂଘ ବ୍ୟତୀତ କୌଣସି ବଡ଼ କାର୍ଯ୍ୟ ହୋଇପାରିବ ନାହିଁ । ଅବଶ୍ୟ ଆମ ଦେଶରେ ପ୍ରଥମରୁ ସଙ୍ଘ ଗଠନ କରିବା ବା ସାଧାରଣଙ୍କ ସମ୍ମତି ନେଇ କାମ କରିବା ସେତେ ସୁବିଧାଜନକ ନୁହେଁ । ଯେତେବେଳେ

Digitized by srujanika@gmail.com

ଏହି ଦେଶରେ ଶିକ୍ଷା ବିସ୍ତାର କରିବ, ସେତେବେଳେ ସଂକୀର୍ଣ୍ଣତା ଦୂର ହେବ ଏବଂ ମତାନୁସାରେ ସଂଘ କାର୍ଯ୍ୟ କରିପାରିବ । ସେଥିପାଇଁ ଏହି ସଙ୍ଘର ଜଣେ ପ୍ରଧାନ ପରିଚାଳକ ରହିବା ଆବଶ୍ୟକ । ସମସ୍ତଙ୍କୁ ତାଙ୍କ ଆଦର୍ଶ ମାନି ଚଳିବାକୁ ହେବ । ତାହାପରେ ସମସ୍ତଙ୍କ ମତ ନେଇ କାମ ହେବ ।

ଉକ୍ତ ବୈଠକରେ ନିମ୍ନଲିଖିତ ପ୍ରସ୍ତାବ ଗୃହୀତ ହେଲା :

''ଆମ୍ଭେମାନେ ଯାହାଙ୍କ ନାମନେଇ ସନ୍ନ୍ୟାସୀ ହୋଇଛୁ, ଆପଣମାନେ ଯାହାଙ୍କୁ ଜୀବନର ଆଦର୍ଶ କରି ସଂସାରାଶ୍ରମର କାର୍ଯ୍ୟକ୍ଷେତ୍ରରେ ରହିଛନ୍ତି, ଯାହାଙ୍କ ଦେହାବସାନର ବାରବର୍ଷ ଭିତରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ ତାଙ୍କର ପୁଣ୍ୟ ନାମ ଓ ଅଦ୍ଭୁତ ଜୀବନର ଆଶ୍ଚର୍ଯ୍ୟ ପ୍ରସାର ହୋଇଛି, ଏହି ସଙ୍ଘ ତାଙ୍କ ନାମାନୁସାରେ ପ୍ରତିଷ୍ଠିତ ହେବ । ଆମ୍ଭେମାନେ ପ୍ରଭୁଙ୍କ ଦାସ, ଆମକୁ ଏହି କାର୍ଯ୍ୟରେ ସାହାଯ୍ୟ କରନ୍ତୁ ।''

ଶ୍ରୀ ଗିରୀଶ ଚନ୍ଦ୍ର ଘୋଷ ପ୍ରମୁଖ ଗୃହୀଭକ୍ତଗଣ ଏହି ପ୍ରସ୍ତାବ ଅନୁମୋଦନ କରିବା ପରେ ରାମକୃଷ୍ଣ ସଂଘର ଭାବୀ କାର୍ଯ୍ୟପ୍ରଣାଳୀ ଆଲୋଚିତ ହେଲା । ସଂଘର ନାମ ରଖାଗଲା ରାମକୃଷ୍ଣ ମଠ ଓ ମିଶନ ।

**ଉଦ୍ଦେଶ୍ୟ :** ମାନବର ହିତ ନିମନ୍ତେ ଶ୍ରୀରାମକୃଷ୍ଣ ଯେଉଁ ସକଳ ତତ୍ତ୍ୱ ବାଖ୍ୟା କରିଛନ୍ତି ଓ କାର୍ଯ୍ୟ ଦ୍ୱାରା ତାଙ୍କ ଜୀବନରେ ପ୍ରତିପାଦିତ କରିଛନ୍ତି, ତାହାର ପ୍ରଚାର ଓ ମନୁଷ୍ୟର ଦୈହିକ, ମାନସିକ ଓ ପାରମାର୍ଥିକ ଉନ୍ନତି କଳ୍ପେ, ଯେପରି ସେହିସବୁ ତତ୍ତ୍ୱ ପ୍ରଯୁକ୍ତ ହୋଇପାରେ, ସେ ବିଷୟରେ ସାହାଯ୍ୟ କରିବା ଏହି ମିଶନର ଉଦ୍ଦେଶ୍ୟ ।

**ବ୍ରତ :** ଜଗତର ସମସ୍ତ ଧର୍ମମତକୁ ଗୋଟିଏ ଅଖଣ୍ଡ ସନାତନଧର୍ମର ରୂପାନ୍ତର ମାତ୍ର ଜ୍ଞାନରେ ସକଳ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଆତ୍ମୀୟତା ସ୍ଥାପନ ନିମିତ୍ତ ଶ୍ରୀରାମକୃଷ୍ଣ ଯେଉଁ କାର୍ଯ୍ୟର ଅବତାରଣା କରିଥିଲେ, ତାହାର ପରିଚାଳନା ଏହି ମିଶନର ବ୍ରତ ।

**କାର୍ଯ୍ୟପ୍ରଣାଳୀ :** ମଣିଷର ସଂସାରିକ ଓ ଆଧ୍ୟାତ୍ମିକ ଉନ୍ନତି ନିମିତ୍ତ ବିଦ୍ୟାଦାନ ପାଇଁ ଉପଯୁକ୍ତ ଲୋକଙ୍କୁ ପ୍ରଶିକ୍ଷଣ, ଶିଳ୍ପ ଓ ଶ୍ରମୋପଜିବୀକର ଉତ୍ସାହବର୍ଦ୍ଧନ ଏବଂ ବେଦାନ୍ତ ଓ ଅନ୍ୟାନ୍ୟ ଧର୍ମଭାବ ଶ୍ରୀରାମକୃଷ୍ଣ ଜୀବନରେ ଯେପରି ବିଖ୍ୟାତ ହୋଇଥିଲା, ତାହା ଜନସମାଜରେ ପ୍ରବର୍ତ୍ତିତ ହେବ ।

**ଭାରତବର୍ଷୀୟ କାର୍ଯ୍ୟ :** ଭାରତବର୍ଷର ପ୍ରତ୍ୟେକ ନଗରରେ ଆଚାର୍ଯ୍ୟ ବ୍ରତ ଗ୍ରହଣ ଭିଳାଷୀ ଗୃହସ୍ଥ ବା ସନ୍ନ୍ୟାସୀମାନଙ୍କ ଶିକ୍ଷା ପାଇଁ ଆଶ୍ରମ ସ୍ଥାପନ ଯଦ୍ୱାରା ସେମାନେ ଦେଶ ଦେଶାନ୍ତରକୁ ଯାଇ ଜନଗଣଙ୍କୁ ଶିକ୍ଷିତ କରିପାରନ୍ତି, ତାହାର ଉପାୟ ଅବଲମ୍ବନ ।

**ବିଦେଶୀୟ କାର୍ଯ୍ୟ ବିଭାଗ:** ଭାରତ ବାହାରେ ଦେଶମାନଙ୍କୁ 'ବ୍ରତଧାରୀ' ପ୍ରେରଣ ଏବଂ ସେହି ଦେଶରେ ସ୍ଥାପିତ ଆଶ୍ରମଗୁଡ଼ିକ ସହିତ ଭାରତୀୟ ଆଶ୍ରମଗୁଡ଼ିକର ଘନିଷ୍ଠତା ଓ ସହାନୁଭୂତି ବର୍ଦ୍ଧନ ଏବଂ ନୂତନ ଆଶ୍ରମ ସଂସ୍ଥାପନ ।

Digitized by srujanika@gmail.com

- ୫ -

*ଜଗତର ଦୁଃଖ କଷ୍ଟ ଦୂର କରିବା ନିମିତ୍ତ ଏପରିକି ଜଣଙ୍କର ଦୁଃଖ ଲାଘବ କରିବା ନିମିତ୍ତ ମୁଁ ସହସ୍ରବାର ଜନ୍ମ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ନିଜ ମୁକ୍ତି ମୁଁ ଚାହେଁ ନାହିଁ । ମୁଁ ପ୍ରତ୍ୟେକଙ୍କୁ ମୁକ୍ତ ହେବାଲାଗି ସାହାଯ୍ୟ କରିବାକୁ ଚାହେଁ ।*

ମୋଟ ଉପରେ କହିବାକୁ ଗଲେ, ବିଭିନ୍ନ ଧର୍ମ ଓ ସମ୍ପ୍ରଦାୟ ଭିତରେ ସମନ୍ୱୟ ପ୍ରତିଷ୍ଠା ଓ ଭ୍ରାତୃଭାବର ପ୍ରଚଳନ ଓ ପ୍ରଚାର ଏହି ମିଶନର ମୂଳପିଣ୍ଡ ଅଟେ । ସ୍ୱାମୀଜୀ ଯଥାର୍ଥରେ କହିଥିଲେ ''ତୁମର ନିଜ ସୀମିତ ପରିବେଶରେ ଶ୍ରୀରାମକୃଷ୍ଣଙ୍କୁ ତୁମେ କ'ଣ ବାନ୍ଧି ରଖିବାକୁ ଚାହୁଁଛ ? ତାଙ୍କର ଶିଷ୍ୟଗଣ ଶ୍ରୀରାମକୃଷ୍ଣଙ୍କୁ ଯେପରି ହୃଦୟଙ୍ଗମ କରିଛନ୍ତି ତାହାଠାରୁ ଅଧିକ ମହାନ୍ ଶ୍ରୀରାମକୃଷ୍ଣ । ଅସୀମ ଆଧ୍ୟାତ୍ମିକ ଭାବଧାରାର ସେ ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କର ଏକମାତ୍ର କୃପା ଚାହାଁଣି କ୍ଷଣିକ ମଧ୍ୟରେ ଶହ ଶହ ବିବେକାନନ୍ଦ ସୃଷ୍ଟି କରିପାରିବ । ସମସ୍ତ ସସୀମତାକୁ ଭାଙ୍ଗିଦେଇ ତାଙ୍କର ଭାବଧାରାକୁ ସମଗ୍ର ବିଶ୍ୱରେ ମୁଁ ବିଚ୍ଛୁରିତ କରିବି ।''

ଶ୍ରୀରାମକୃଷ୍ଣ ମଠ ଓ ମିଶନର ପ୍ରତିଷ୍ଠା ନିଶ୍ଚିତ ଭାବେ ସ୍ୱାମୀଜୀଙ୍କ ମନରେ ଶାନ୍ତି ଓ ସନ୍ତୋଷ ଆଣି ଦେଇଥିବ । କେବଳ ସେତିକି ନୁହେଁ, ନିଜର ଗୁରୁ-ଭ୍ରାତା ସନ୍ନ୍ୟାସୀ ତଥା ଅନ୍ତରଙ୍ଗ ଗୃହୀଭକ୍ତଗଣ ବିଳମ୍ବରେ ହେଉପଛେ, ତାଙ୍କର ମିଶନକୁ ବୁଝିପାରିଛନ୍ତି ଜାଣି ସ୍ୱାମୀଜୀ ବିଶେଷ ଖୁସି ହୋଇଥିଲେ । ଭାରତବର୍ଷରେ ତାଙ୍କର କାର୍ଯ୍ୟର ଶୁଭାରମ୍ଭ ଉପରେ ନିଜର ଆନନ୍ଦ ପ୍ରକାଶ କରି ୧୮୯୭ ଜୁଲାଇ ୯ ତାରିଖରେ ସେ ଖଣ୍ଡିଏ ପତ୍ର ଆମେରିକୀୟ ଶିଷ୍ୟ ମେରୀ ହେଲେଙ୍କ ନିକଟକୁ ଲେଖିଥିଲେ :

ମୋର ବାଳକମାନେ ଦୁର୍ଭିକ୍ଷ, ବ୍ୟାଧି ଓ କଷ୍ଟ ଭିତରେ କିଭଳି କାର୍ଯ୍ୟରତ - ହଇଜା ଆକ୍ରାନ୍ତିତ ମେହେନ୍ତରର ଶଯ୍ୟା ନିକଟରେ ବସି କିପରି ସେବା ଶୁଶ୍ରୂଷା କରୁଛନ୍ତି - କ୍ଷୁଧିତ ଚଣ୍ଡାଳମାନଙ୍କୁ ନିଜ ହାତରେ କିପରି ଖୁଆଉଛନ୍ତି - ପ୍ରଭୁ ମୋତେ, ସେମାନଙ୍କୁ ଓ ସମସ୍ତଙ୍କୁ କିପରି ସାହାଯ୍ୟ ଯୋଗାଇ ଦେଇଛନ୍ତି - ସେସବୁ ଦେଖିଲେ ତୁମର ହୃଦୟ ଆନ୍ଦରେ ନାଚି ଉଠିବ... ମୋର ପ୍ରେମିକ ଈଶ୍ୱର ମୋ ସହିତ ରହିଛନ୍ତି, ଆମେରିକା ଓ ଇଂଲଣ୍ଡରେ ମୋ ସହ ଥିଲେ ଏବଂ ମୁଁ ଯେତେବେଳେ ଜଣେ ଅପରିଚିତ ସନ୍ନ୍ୟାସୀ ଭାବେ ସମଗ୍ର ଭାରତବର୍ଷ ଭ୍ରମଣ କରୁଥିଲି, ସେତେବେଳେ ବି ସେ ମୋ ସହ ଥିଲେ ।

ଆମେରିକାର ମିଶନାରୀ ମୋ ବିରୋଧରେ ଯାହା ପ୍ରଚାର କରୁନ୍ତୁ ନା କାହିଁକି, ମୁଁ ସେମାନଙ୍କୁ ଖାତିର କରେନାହିଁ । ସେମାନେ ଶିଶୁ କୌଣସି ଉତ୍ତମ ଜିନିଷ ଜାଣନ୍ତି ନାହିଁ । କ'ଣ ହେଲା ? ଯିଏ ଆତ୍ମୋପଲବ୍ଧି କରିଛି ଏବଂ ସଂସାରର ସମସ୍ତ ଛଳନା ପୂର୍ଣ୍ଣ ବିଷୟବାସନାକୁ ତୃଣବତ୍ ତ୍ୟାଗ କରିଛି, ଏହି ଶିଶୁମାନେ ମୋତେ କ'ଣ ପଥଚ୍ୟୁତ କରିପାରିବେ ? ସେମାନଙ୍କ ଭଳି ମୁଁ କ'ଣ ଦେଖାଯାଉଛି ? ...ମୁଁ ଅନୁଭବ କରୁଛି ଯେ ମୋର କାର୍ଯ୍ୟସମାପ୍ତ ହୋଇଛି - ଆଉ ମାତ୍ର ତିନି ଚାରିବର୍ଷ ମୁଁ ଜୀବନଧାରଣ କରିବି... ମୋର ମୁକ୍ତି ପାଇଁ ସମସ୍ତ ଆଶା

Digitized by srujanika@gmail.com

ପରିତ୍ୟାଗ କରିଛି । ମୁଁ କସ୍ମିନକାଳେ ସାଂସାରିକ ଉପଭୋଗ ଚାହିଁନାହିଁ । ମୁଁ ନିଶ୍ଚୟ ଦେଖିବି ଯେ ମୋର କଳ ଯଥାରୀତି କାର୍ଯ୍ୟ କରୁଛି । ମାନବଜାତିର ହିତ ନିମନ୍ତେ କାର୍ଯ୍ୟ କରୁଛି, ଅନ୍ତତଃପକ୍ଷେ ଭାରତରେ କୌଣସି ଶକ୍ତି ଏହାକୁ ପଛେଇ ଦେଇପାରିବେ ନାହିଁ... ମୁଁ ବାରମ୍ବାର ଜନ୍ମ ହେବି ଏବଂ ହଜାର ହଜାର ବାର ଦୁଃଖ ଯନ୍ତ୍ରଣା ସହିବି ଯାହା ଫଳରେ ସେହି ଏକଇ ଈଶ୍ୱର ଯିଏ ବର୍ତ୍ତମାନ ବିଦ୍ୟମାନ, ଯାହାକିଛି ମୁଁ ବିଶ୍ୱାସ କରେ, ତାଙ୍କର ହିଁ ମୁଁ ପୂଜା ଉପାସନା କରିବି, ସେହି ଏକ ଈଶ୍ୱର ଯିଏ ଅଗଣିତ ମନୁଷ୍ୟ ଭିତରେ ବିରାଜିତ ।

ବାହାରକୁ ସ୍ୱାମୀଜୀଙ୍କର ଭାଷା ଓ ଭାବଭଙ୍ଗୀ ଯେତେ କଠୋର ଓ ବଜ୍ରନିନାଦ ସମ ପ୍ରତୀୟମାନ ହେଉଥିଲେ ହେଁ, ଭିତର ହୃଦୟ ଥିଲା ଲହୁଣି ଭଳି କୋମଳ । ପର ଦୁଃଖରେ ତରଳି ଯାଉଥିଲା ତାଙ୍କର ପ୍ରାଣ । ତତ୍‌କାଳୀନ ଦୁଃଖୀ, ନିଃସ୍ୱ, ନିଷ୍ପେଷିତ ଜନତାଙ୍କର କରୁଣ ଜୀବନଯାପନ କିପରି ପ୍ରତି ମୁହୂର୍ତ୍ତରେ ତାଙ୍କର ଚକ୍ଷୁକୁ କରୁଥିଲା ସିକ୍ତ ଓ ହୃଦୟ ହେଉଥିଲା ଯନ୍ତ୍ରଣାରେ ଛଟପଟ ତାହା ବୁଝିହେବ ଏହି ଘଟଣାରୁ । ଏକଦା ସ୍ୱାମୀଜୀଙ୍କର ଅନ୍ୟତମ ଶିଷ୍ୟ ଶ୍ରୀ ଶରତ ଚନ୍ଦ୍ର ଚକ୍ରବର୍ତ୍ତୀ ତାଙ୍କ ନିକଟରେ ଋକ୍‌ବେଦ ପାଠ କରିବାକୁ ଆରମ୍ଭ କଲେ । ଋକ୍‌ବେଦ ଅଧ୍ୟୟନ ଚାଲିଥିବା ସମୟରେ ବଙ୍ଗ ରାଜ୍ୟର ବିଖ୍ୟାତ ନାଟ୍ୟକାର ଶ୍ରୀ ଗିରୀଶ ଚନ୍ଦ୍ର ଘୋଷ ସେଠାରେ ଆସି ପହଞ୍ଚିଲେ । ପରସ୍ପର ଅଭିବାଦନ ପରେ ଗିରିଶବାବୁ ଆସନ ଗ୍ରହଣ କରିବାଉତ୍ତାରୁ ସ୍ୱାମୀଜୀ କୌତୁକ ଛଳରେ ତାଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ, ''ଜି.ସି. ତୁମେ ବୋଧହୁଏ ଏସବୁ ଜିନିଷ ପଢ଼ିବାର ଆବଶ୍ୟକତା ବୋଧ କରନାହିଁ । ଚିରକାଳ କୃଷ୍ଣ, ବିଷ୍ଣୁକୁ ନେଇ କଟାଇ ଦେଲ ।''

ଗିରୀଶବାବୁ ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ ଉତ୍ତର ଦେଲେ, ''ବେଦ ପଢ଼ି ମୋର ଆଉ କ'ଣ ହେବ ଭାଇ ? 'ସବୁ ମୋର ରାମକୃଷ୍ଣ' ଏତକ କହି ସେ ଋକ୍‌ବେଦକୁ ପୁନଃ ପୁନଃ ପ୍ରଣାମ କରି କହିଲେ, 'ଜୟ ବେଦରୂପମ୍ ଶ୍ରୀରାମକୃଷ୍ଣଙ୍କର ଜୟ' । ତତ୍‌ପଶ୍ଚାତେ ଗିରିଶବାବୁ ପୁନଶ୍ଚ ତାଙ୍କୁ ପଚାରିଲେ, ''ଆଛା, ନରେନ୍ ତୁମେ ବେଦ ବେଦାନ୍ତ ତ ଅନେକ ପଢ଼ିଛ । କ୍ଷୁଧିତର ଅନ୍ନ ପାଇଁ ହାହାକାର, ଦରିଦ୍ରର ଦୁଃଖ, ଲମ୍ପଟ୍ୟାଦି ବୀଭତ୍ସ ପାପ, ଆଉ କେତେପ୍ରକାର ଅନ୍ୟାୟ, ଅବିଚାର ଓ ଦୁଃଖ - ଯାହା ଆମେ ସଚରାଚର ଦେଖିବାକୁ ପାଉ - ତା'ର କୌଣସି ପ୍ରତିବିଧାନ ତୁମ ବେଦବେଦାନ୍ତ ଲେଖିଛି କି ? ଅମୁକ ସଂସାରର ଗୃହିଣୀ, ଯିଏ ପ୍ରତ୍ୟହ ପଚାଶ ଜଣ ଲୋକଙ୍କୁ ଅନ୍ନ ବିତରଣ କରୁଥିଲେ - ଆଜି ତିନିଦିନ ହେଲା ସେ ଅନ୍ନଭାବ ହେତୁ ପୁତ୍ରକନ୍ୟା ସହ ଅନାହାରରେ ଅଛନ୍ତି । ଅମୁକ ଅମୁକ ସଂସାରର ମହିଳାମାନେ ବଦ୍‌ମାସ୍‌ଙ୍କ ହାତରେ ଲାଞ୍ଛିତ ହେଉଛନ୍ତି, କେହି କେହି ଉତ୍‌ପୀଡ଼ିତା ହୋଇ ଅବଶେଷରେ ପ୍ରାଣତ୍ୟାଗ କରୁଛନ୍ତି । ଅମୁକ ପରିବାରର ବାଳବିଧବା କଳଙ୍କରୁ ପରିତ୍ରାଣ ପାଇବା ଲାଗି ଭ୍ରୁଣହତ୍ୟା କରିବାକୁ ଯାଇ ଆତ୍ମହତ୍ୟା କରିବସିଛି । ନରେନ୍, ବେଦ-ବେଦାନ୍ତରୁ ଏହାର କୌଣସି ପ୍ରତିକାର ପାଇଛ ? ଗିରୀଶବାବୁଙ୍କର ଏତାଦୃଶ ମର୍ମସ୍ପର୍ଶୀ ସତ୍ୟ କାହାଣୀ ଶ୍ରବଣ କରି ସ୍ୱାମୀଜୀଙ୍କର ନେତ୍ରଦ୍ୱୟ ଅଶ୍ରୁସିକ୍ତ ହେଲା । ନିଜର ଭାବାବେଗ ସମ୍ଭାଳି ନ ପାରି ସେ ବିଚଳିତ ହୃଦୟରେ ତତ୍‌କ୍ଷଣାତ୍ ଉକ୍ତ ସ୍ଥାନ ପରିତ୍ୟାଗ କରି ଅନ୍ୟ କକ୍ଷକୁ ଚାଲିଗଲେ ।

Digitized by srujanika@gmail.com

ସ୍ୱାମୀଜୀ ସେଠାରୁ ପ୍ରସ୍ଥାନ କରିବାପରେ ଗିରୀଶବାବୁ ସମବେତ ଶିଷ୍ୟମାନଙ୍କୁ ଲକ୍ଷ୍ୟ କରି କହିଲେ, ''ଦେଖିଲ, ତୁମ ଗୁରୁଙ୍କ ହୃଦୟ କିପରି ମହାନ୍ ଓ ଅନୁକମ୍ପାପୂର୍ଣ୍ଣ । ସେ ଜଣେ ଜ୍ଞାନୀ ବୋଲି ମୁଁ ତାଙ୍କୁ ସମ୍ମାନ କରେ ନାହିଁ, ଯେଉଁ ହୃଦୟ ମଣିଷର ଦୁଃଖ ନିର୍ଯ୍ୟାତନାର କାହାଣୀ ଶୁଣିଲେ କରୁଣାରେ ବିଗଳିତ ହୋଇଯାଏ, ସେହି ଅସୀମ ଉଦାର ହୃଦୟକୁ ମୁଁ ସମ୍ମାନ କରେ । ଦେଖିଲତ, ଏହିସବୁ କଥାଶୁଣି କିଛିକାଳ ପୂର୍ବେ ବେଦ -ବେଦାନ୍ତର ଯେଉଁସବୁ ବ୍ୟାଖ୍ୟା ହେଉଥିଲା, ସେହି ପାଣ୍ଡିତ୍ୟପୂର୍ଣ୍ଣ ବିଚାରବିମର୍ଶ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା ! ତୁମ ସ୍ୱାମୀଜୀ ଏକାଧାରରେ ମହାଜ୍ଞାନୀ ଓ ମହାଭକ୍ତ - ବୁଝିଲ ?''

କିୟତ୍ ସମୟ ଅତିକ୍ରାନ୍ତେ ସ୍ୱାମୀଜୀ ପୁନର୍ବାର ସେମାନଙ୍କ ନିକଟକୁ ଫେରିଆସିଲେ, ସେହି ସମୟରେ ସ୍ୱାମୀ ସଦାନନ୍ଦ ସେଠାରେ ବି ପହଞ୍ଚିଲେ । ତାଙ୍କୁ ଲକ୍ଷ୍ୟ କରି ସ୍ୱାମୀଜୀ କହିଲେ, ''ତୁମେ ରୋଗୀ, ଆତୁର, ଆର୍ତ୍ତର ସେବା ଲାଗି ଗୋଟିଏ ସେବାଶ୍ରମ ପ୍ରତିଷ୍ଠା କର ।'' ସଦାନନ୍ଦଜୀ ପ୍ରାଣପଣେ ଚେଷ୍ଟା କରିବେ ବୋଲି ଗୁରୁ ଆଜ୍ଞା ଶିରୋଧାର୍ଯ୍ୟ କଲେ । ସ୍ୱାମୀଜୀ ଚାହିଁଲେ ଗିରିଶବାବୁଙ୍କୁ ଏବଂ ତତ୍‌ପଶ୍ଚାତେ କହିଲେ, ''ଦେଖ ଜି.ସି (ଗିରିଶଚନ୍ଦ୍ର ଘୋଷଙ୍କୁ ସେ ଜି.ସି. ବୋଲି ଡାକୁଥିଲେ), ଜଗତର ଦୁଃଖ କଷ୍ଟ ଦୂର କରିବା ନିମିତ୍ତ ଏପରିକି ଜଣଙ୍କର ଦୁଃଖ ଲାଘବ କରିବା ନିମିତ୍ତ ମୁଁ ସହସ୍ରବାର ଜନ୍ମ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ନିଜ ମୁକ୍ତି ମୁଁ ଚାହେଁ ନାହିଁ । ମୁଁ ପ୍ରତ୍ୟେକଙ୍କୁ ମୁକ୍ତ ହେବାଲାଗି ସାହାଯ୍ୟ କରିବାକୁ ଚାହେଁ ।

ଏଠାରେ କହିବା ବାହୁଲ୍ୟ ଯେ ଭକ୍ତପ୍ରାଣ ସ୍ୱାମୀଜୀ ନିଜ ଭକ୍ତିର ବେଗଗାମୀ ସ୍ରୋତକୁ ଜ୍ଞାନରୂପକ ବନ୍ଧ ବାନ୍ଧି ସର୍ବଦା ଅଟକାଇ ରଖିଥିଲେ, କାରଣ ଏକ ଐକ୍ୟ ଭାରତ ତାଙ୍କୁ ଗଠନ କରିବାକୁ ହେବ । ଏହି ବ୍ରତ ତାଙ୍କ ଜୀବନର ମିଶନ ହୋଇଥିଲା ଏବଂ ସମଗ୍ର ଦେଶବାସୀଙ୍କୁ ଏହି ମିଶନରେ ସାମିଲ ହେବାକୁ ସେ ଚେଷ୍ଟା କରୁଥିଲେ । ଭକ୍ତିମାର୍ଗରେ ସେ ଯଦି ଭାସି ଯାଇଥାନ୍ତେ, ତାହାଲେ ଐକ୍ୟ ଭାରତ ଗଠନର ସ୍ୱପ୍ନ ଅଧୁରା ରହିଯାଇଥାନ୍ତା । ତାଙ୍କର ଅଗ୍ନିବାଣରେ ଭାରତବାସୀ ଅଗ୍ନିଶର୍ମା ହୋଇଯାଇଥିଲେ । ତାଙ୍କୁ ନାରିକେଳ ସଦୃଶ ହେବାକୁ ପଡ଼ିଥିଲା - ଭିତରେ କୋମଳ, ଉପରେ ଶକ୍ତ ।



Digitized by srujanika@gmail.com

॥ ଚଉତିରିଶ ॥

# ଆଲମୋଡ଼ା, ପଞ୍ଜାବ, କାଶ୍ମୀର, ଲାହୋର, ଖେତଡ଼ି ଇତ୍ୟାଦି ସ୍ଥାନ ପରିଭ୍ରମଣ - ଆର୍ଯ୍ୟସମାଜରେ ବକ୍ତୃତା ପ୍ରଦାନ ଓ ସ୍ୱାମୀ ରାମତୀର୍ଥଙ୍କ ସହ ମିଳନ -

କ୍ୟାପଟେନ ସେଭିୟର ଓ ଶ୍ରୀମତୀ ଚାରଲଟ୍ ସେଭିୟର୍ ସେମାନଙ୍କର ଇଂଲଣ୍ଡସ୍ଥିତ ସମସ୍ତ ସମ୍ପତ୍ତି ବିକ୍ରିକରି ସ୍ୱାମୀଜୀଙ୍କ ସହ ହିମାଳୟରେ ଏକ ଆଶ୍ରମ ପ୍ରତିଷ୍ଠା ଲାଗି ଭାରତ ଚାଲି ଆସିଥିଲେ । ହିମାଳୟ ପାର୍ବତ୍ୟ ଶ୍ରେଣୀର ଆଲମୋଡ଼ାଠାରେ ଏକ ଆଶ୍ରମ ସ୍ଥାପନ ପୂର୍ବରୁ ଆଲମୋଡ଼ା ଅଭିମୁଖେ ଯାତ୍ରା କରିବା ପାଇଁ ମନସ୍ଥ କରିଥିଲେ । ବର୍ତ୍ତମାନ ସମୟ ଉପସ୍ଥିତ ହେଲା । ଅତ୍ୟଧିକ ପରିଶ୍ରମ ଯୋଗୁଁ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟରେ ଅବନତି ପରିଲକ୍ଷିତ ହେଲା । ଇତିମଧ୍ୟରେ ଇଂଲଣ୍ଡରୁ ମିସ୍ ମୁଲର୍ ମଧ୍ୟ କଲିକତାରେ ପହଞ୍ଚି ଯାଇଥିଲେ । ଚିକିତ୍ସକମାନଙ୍କ ପରାମର୍ଶ କ୍ରମେ ସ୍ୱାମୀଜୀ ମେ ୬ ତାରିଖ ୧୮୯୭ ଖ୍ରୀଷ୍ଟାବ୍ଦରେ କେତେଜଣ ଶିଷ୍ୟ ଓ ଗୁରୁଭ୍ରାତାଙ୍କୁ ସଙ୍ଗରେ ନେଇ ଆଲମୋଡ଼ା ଅଭିମୁଖେ ଯାତ୍ରା କଲେ ।

ଆଲମୋଡ଼ାରେ ସ୍ୱାମୀଜୀଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । ବିରାଟ ଶୋଭାଯାତ୍ରାରେ ପରିବେଷ୍ଟିତ ହୋଇ ସ୍ୱାମୀଜୀ ଘୋଡ଼ା ଚଢ଼ି ନଗର ମଧ୍ୟରେ ପ୍ରବେଶ କଲେ । ପୁରନାରୀମାନେ ବାତାୟନରୁ ପୁଷ୍ପ ଓ ତଣ୍ଡୁଳ ବର୍ଷଣ କଲେ । ସହସ୍ର ସହସ୍ର ଉତ୍ସୁକ ନରନାରୀ ସ୍ୱାମୀଜୀଙ୍କ ସଭାମଣ୍ଡପ ସମ୍ମୁଖରେ ଉପସ୍ଥିତ ହେଲେ । ପଣ୍ଡିତ ଜ୍ୱାଲାଦତ୍ତ ଯୋଷୀ ମହାଶୟ ଅଭିନନ୍ଦନ ପତ୍ର ପାଠ କରି ସ୍ୱାମୀଜୀଙ୍କୁ ସ୍ୱାଗତ କଲେ । ସ୍ୱାମୀଜୀ ସେଠାରେ ଏକ ସଂକ୍ଷିପ୍ତ ବକ୍ତୃତା ପ୍ରଦାନ କରିଥିଲେ । ସ୍ଥାନୀୟ ବିଖ୍ୟାତ ବ୍ୟବସାୟୀ ଲାଲା ବଦରୀ ସାହାଙ୍କ ଆତିଥ୍ୟ ଗ୍ରହଣକରି ସ୍ୱାମୀଜୀ ଆଲମୋଡ଼ାରୁ କୋଡ଼ିଏ ମାଇଲ ଦୂରରେ ଥିବା ଉଦ୍ୟାନ ଗୃହରେ ବାସ କରିଥିଲେ । ହିମାଳୟର ଗମ୍ଭୀର, ବୈରାଗ୍ୟ ଉଦ୍ଦୀପକ, ମନୋହର ଦୃଶ୍ୟ ତାଙ୍କର କର୍ମଶ୍ରାନ୍ତ ମନରେ ଅପୂର୍ବ ଶାନ୍ତି ଆଣିଦେଲା ।

ଯୋଦ୍ଧା ସୈନିକର ବିଶ୍ରାମ ନାହିଁ । ଆମେରିକାରୁ ଶିଷ୍ୟଗଣଙ୍କଠାରୁ ଚିଠି ଆସି ପହଞ୍ଚିଲା । ଖ୍ରୀଷ୍ଟିଆନ ମିଶନାରୀମାନେ ତାଙ୍କ ବିରୋଧରେ ଜୋରସୋର କୁତ୍ସିତ କଦାକାର ଚରିତ୍ର ସଂହାରାତ୍ମକ ପ୍ରଚାର କାର୍ଯ୍ୟ ଚଳାଇ ଜନମାନସକୁ ବିଭ୍ରାନ୍ତ କରୁଥିଲେ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟଯେ ଚିକାଗୋର ଧର୍ମ ମହାସମ୍ମିଳନୀର ପ୍ରମୁଖ ଉଦ୍ୟୋକ୍ତା ଡକ୍ଟର ବାରୋସ୍ ଖ୍ରୀଷ୍ଟିଆନ୍

Digitized by srujanika@gmail.com

ମିସିନାରୀମାନଙ୍କ ସହ ସ୍ୱର ମିଳାଇ ପ୍ରଚାର କରୁଥିଲେ ଯେ ଭାରତବର୍ଷରେ ସ୍ୱାମୀଜୀଙ୍କୁ ବିପୁଳ ପରିମାଣରେ ଅଭିନନ୍ଦନ ଦିଆଯାଇଥିଲା ବୋଲି ଯେଉଁ ସମ୍ବାଦ ଆମେରିକାରେ ପହଞ୍ଚୁଲା, ତାହାସବୁ ମନଗଢ଼ା ଓ ଅତିରଞ୍ଜିତ ଥିଲା । ବିବେକାନନ୍ଦ ଜଣେ ମିଥ୍ୟାବାଦୀ । ତାଙ୍କ କଥା ଭାରତବର୍ଷରେ କେହି ଶୁଣନ୍ତି ନାହିଁ, ଅବଶ୍ୟ ସେ ଜଣେ ବିଚକ୍ଷଣ ବୁଦ୍ଧିମାନ ବିଦ୍ୱାନ ବ୍ୟକ୍ତି ଏବଂ ତାଙ୍କର ଅଳ୍ପ କେତେଜଣ ଅନୁଗାମୀ ଅଛନ୍ତି । ଏମିତି ଅନେକ କୁତ୍ସାରଟନା... । ଏଠାରେ ଉଲ୍ଲେଖନୀୟ ଯେ ଡକ୍ଟର ବାରୋସ କିଛିଦିନ ପୂର୍ବରୁ ଭାରତ ଆସିଥିଲେ । ସ୍ୱାମୀଜୀଙ୍କ ପରାମର୍ଶ କ୍ରମେ ତାଙ୍କୁ ମାଡ୍ରାସ୍‌ଠାରେ ହିନ୍ଦୁମାନଙ୍କ ତରଫରୁ ଏକ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା କିନ୍ତୁ ସେ ଜଣେ ମିଶନାରୀ ବ୍ୟକ୍ତି ହୋଇଥିବାରୁ, ଧାର୍ମିକ ସାର୍ବଜନୀନତା'ର ମହତ୍ତ୍ୱ ବୁଝନ୍ତି ନାହିଁ । ଭାରତରୁ ଫେରିଗଲା ପରେ, ସେ ଆମେରିକାରେ ପହଞ୍ଚି ସ୍ୱାମୀଜୀ ତଥା ହିନ୍ଦୁଧର୍ମ ବିପକ୍ଷରେ ବିଷୋଦ୍‌ଗାର କରିବାରେ ଲାଗିପଡ଼ିଲେ ।

- ୧ -

*ମୁଁ ସତ୍ୟକୁ ଉପଲବ୍ଧି କରିଛି - ଏହି ଦେହର ଉତ୍ଥାନ ହେଉ ବା ପତନ ହେଉ, କିଏ ଏହାକୁ ଖାତିର କରେ ? ଏକ ବିଦ୍ୱାନ ଜୀବନ ନିର୍ବାହ କରିବା ଲାଗି ମୁଁ ଜନ୍ମ ହୋଇଥିଲି - ବହୁ ପୁସ୍ତକ ଭିତରେ, ଧୀର ଚିତ୍ତରେ, ଅଭିନିବିଷ୍ଟ ହେବାକୁ ମୁଁ ଚାହିଁଥିଲି । କିନ୍ତୁ ଜଗଜ୍ଜନନୀ ତାହା କରାଇ ଦେଲେ ନାହିଁ । ତଥାପି ସେଭଳି ମାନସିକତା ମୋର ବର୍ତ୍ତମାନ ରହିଛି ।*

ଯେଉଁ ଟିକକ ଶାନ୍ତି ଏହି ହିମାଳୟ କୋଳରୁ ସେ ପାଉଥିଲେ, ତାହା ଏତାଦୃଶ ବିଭ୍ରାନ୍ତିକର ଚିଠି ଦ୍ୱାରା ଭଙ୍ଗ ହେଲା । ଜୁନ୍, ୩, ୧୮୯୭ ଖ୍ରୀଷ୍ଟାବ୍ଦରେ ସେ ବିଚଳିତ ମନରେ ଖ୍ରୀଷ୍ଟାଇନ୍ ଗ୍ରୀନ୍‌ଷ୍ଟିଡ଼େଲଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ : "ମୋ କାର୍ଯ୍ୟରେ ମୁଁ ସନ୍ତୁଷ୍ଟ । ମୁଁ ଯାହା ଚାହିଁଥିଲି, ସେହି ଅନୁସାରେ ବହୁ ଲୋକଙ୍କୁ ମୁଁ ଜାଗରିତ କରିପାରିଛି । ଘଟଣା ତା ନିଜ ବାଟରେ ଚାଲୁ ଏବଂ କର୍ମ ନିଜ ପଥରେ ଅଗ୍ରସର ହେଉ । ମୋ ପଛରେ କୌଣସି ବନ୍ଧନ ନାହିଁ । ମୁଁ ଜୀବନ ଦେଖିଛି ଏବଂ ସବୁକିଛି ସ୍ୱାର୍ଥରେ ପୂର୍ଣ୍ଣ । ସ୍ୱାର୍ଥ ପାଇଁ ଜୀବନ, ସ୍ୱାର୍ଥ ପାଇଁ ପ୍ରେମ, ସ୍ୱାର୍ଥ ପାଇଁ ସମ୍ମାନ, ସ୍ୱାର୍ଥ ପାଇଁ ସବୁକିଛି । ବେଳେ ବେଳେ ମୁଁ ପଛକୁ ଚାହିଁ ଦେଖେ ଯେ ମୁଁ ନିଜର ସ୍ୱାର୍ଥ ପାଇଁ କ୍ୱଚିତ କିଛି କରିଛି, ଏପରିକି ମୋର ଦୁଷ୍ଟାମି ବି ସ୍ୱାର୍ଥ ପାଇଁ ନୁହେଁ । ତେଣୁ ମୁଁ ସନ୍ତୁଷ୍ଟ, କୌଣସି ବିଶେଷ ମହାନ୍ ଓ ଉତ୍ତମ କାର୍ଯ୍ୟ କରିଛି ବୋଲିଯେ ମୁଁ ସନ୍ତୁଷ୍ଟ ତାହା ନୁହେଁ ବରଂ ଏହି ସଂସାର ଏତେ କ୍ଷୁଦ୍ର, ଜୀବନ ଏଭଳି ନିକୃଷ୍ଟ ଜିନଷ, ବଞ୍ଚିବା ଏଭଳି ଦାସତ୍ୱରେ ପରିପୂର୍ଣ୍ଣ, ତଥାପି ମଣିଷ, ବିବେକୀ ଆତ୍ମା ସ୍ୱାର୍ଥ ପଣ୍ଡାତରେ ଏକ ଘୃଣିତ ଓ ନିଚ ପୁରସ୍କାର ଲାଭ କରିବା ନିମନ୍ତେ ଏହି ସ୍ୱାର୍ଥ ପଛରେ ଧାବିତ ତାହା ଦେଖି ମୁଁ ଆଶ୍ଚର୍ଯ୍ୟରେ କେବଳ ହସୁଛି, ଏହାହିଁ ସତ୍ୟ । ଆମେ ଏକ ଜନ୍ତାରେ ଫସି ଯାଇଛନ୍ତି, ଯିଏ ଯେତେ ଶୀଘ୍ର ଏଥିରୁ ବାହାରି ଯିବ, ସେତେ

Digitized by srujanika@gmail.com

ଶୀଘ୍ର ତା'ର ମଙ୍ଗଳ ହେବ । ମୁଁ ସତ୍ୟକୁ ଉପଲବ୍ଧି କରିଛି - ଏହି ଦେହର ଉତ୍ଥାନ ହେଉ ବା ପତନ ହେଉ, କିଏ ଏହାକୁ ଖାତିର କରେ ? ଏକ ବିଦ୍ୱାନ ଜୀବନ ନିର୍ବାହ କରିବା ଲାଗି ମୁଁ ଜନ୍ମ ହୋଇଥିଲି - ବହୁ ପୁସ୍ତକ ଭିତରେ, ଧୀର ଚିତ୍ତରେ, ଅଭିନିବିଷ୍ଟ ହେବାକୁ ମୁଁ ଚାହିଁଥିଲି । କିନ୍ତୁ ଜଗଜ୍ଜନନୀ ତାହା କରାଇ ଦେଲେ ନାହିଁ । ତଥାପି ସେଭଳି ମାନସିକତା ମୋର ବର୍ତ୍ତମାନ ରହିଛି ।''

ଉପରୋକ୍ତ ଚିଠିରୁ ସ୍ୱାମୀଜୀଙ୍କର ସଂସାର ପ୍ରତି ବୈରାଗ୍ୟଭାବ ବାରି ହୋଇଯାଏ । ତାଙ୍କ ବରୋଧରେ ଏହି ଘୃଣିତ ଷଡ଼ଯନ୍ତ୍ର ଅବଶ୍ୟ ତାଙ୍କ ମନକୁ ମୁହୂର୍ତ୍ତକ ପାଇଁ ବିଚଳିତ କରିଥିଲା, ତଥାପି ସେ ଭଲ ଭାବରେ ଜାଣିଥିଲେ ଯେ ଏହି ସଂସାର କେବଳ ସ୍ୱାର୍ଥ ପଥରେ ଧାବିତ । ନୂତନ ତତ୍ତ୍ୱ, ନୂତନ ନୀତି, ନୂତନ ଭାବ ପ୍ରଚାରରେ ଲିପ୍ତ ଥିବା ସବୁ ମହାପୁରୁଷ କେବେ ବି ବାଧାବିଘ୍ନ, ନିନ୍ଦା ଅପବାଦରୁ ନିଷ୍କୃତି ପାଇ ନାହାନ୍ତି । ତଥାପି ସେମାନେ ମାନବଜାତିର କଲ୍ୟାଣ ଓ ହିତକଳ୍ପେ କାର୍ଯ୍ୟ କରିବାରୁ ବିରତ ହୋଇ ନାହାନ୍ତି । ସ୍ୱାମୀଜୀ ତ ଯୋଦ୍ଧା ସୈନିକ, ସେ କାହିଁକି ଭୟ କରିବେ କାହାକୁ ? ନିଜ ଗୁରୁଙ୍କର ଦାୟିତ୍ୱଭାର ସେ ବହନ କରୁଛନ୍ତି, ଯେ ପର୍ଯ୍ୟନ୍ତ ତାଙ୍କର କାର୍ଯ୍ୟ ସମ୍ପାଦିତ ନ ହୋଇଛି, ସେ ପର୍ଯ୍ୟନ୍ତ ସେ କେବଳ ଏକ ଯନ୍ତ୍ର ସଦୃଶ କାର୍ଯ୍ୟ କରିଚାଲିବେ ।

ଇତ୍ୟବସରରେ ସିଲୋନ୍‌ର ହିନ୍ଦୁବର୍ଗ ସେଠାକୁ ଜଣେ ସନ୍ନ୍ୟାସୀ ପଠାଇବା ପାଇଁ ସ୍ୱାମୀଜୀଙ୍କୁ ଅନୁରୋଧ କଲେ । ସ୍ୱାମୀଜୀ ସଙ୍ଗେ ସଙ୍ଗେ ସ୍ୱାମୀ ଶିବାନନ୍ଦଙ୍କୁ ସିଲୋନ୍ ପଠାଇ ଦେଲେ । ମାଡ୍ରାସ୍‌ଠାରେ ଗୋଟିଏ ଇଂରାଜୀ ପତ୍ରିକା ବ୍ରହ୍ମବାଦୀନୀ ପ୍ରକାଶନ କାର୍ଯ୍ୟରେ ପେରୁମଲ ଆଲସିଙ୍ଗାକୁ ସାହାଯ୍ୟ କରିବା ପାଇଁ ନିଜର ଷ୍ଟେନୋଗ୍ରାଫର ଗୁଡଉଇନ୍‌ଙ୍କୁ ବି ମାଡ୍ରାସ୍ ପଠାଇ ଦେଲେ । ମୁର୍ଶିଦାବାଦର ଦୁର୍ଭିକ୍ଷ ପୀଡ଼ିତ ବ୍ୟକ୍ତିମାନଙ୍କ ଦୁଃଖ ନିବାରଣ ଲାଗି ସ୍ୱାମୀ ଅଖଣ୍ଡାନନ୍ଦଙ୍କ ଅକ୍ଳାନ୍ତ ପରିଶ୍ରମ ସମ୍ବନ୍ଧିତ ସମ୍ବାଦ ପାଇ ସ୍ୱାମୀଜୀ ଆନନ୍ଦ ସହକାରେ ନିଜ ଶିଷ୍ୟ ସ୍ୱାମୀ ନିତ୍ୟାନନ୍ଦ ଓ ବ୍ରହ୍ମଚାରୀ ସୁରେଶ୍ୱରାନନ୍ଦଙ୍କୁ ତାଙ୍କୁ ସାହାଯ୍ୟ କରିବା ଲାଗି ପ୍ରେରଣ କଲେ ।

ସ୍ୱାମୀଜୀଙ୍କର ସର୍ବଧର୍ମ ସମନ୍ୱୟ ଚିନ୍ତାଧାରା ବିଷୟରେ ଖବର ପାଇଁ ଆଲମୋଡ଼ାଠାରେ ଅବସ୍ଥାପିତ ଇଂରାଜୀ ଅଧିବାସୀବୃନ୍ଦ ତାଙ୍କ ବକ୍ତୃତା ଶୁଣିବା ପାଇଁ ଆଗ୍ରହ ପ୍ରକାଶ କଲେ । ଇଂଲିଶ୍ କ୍ଳବରେ ଗୁର୍ଖା ସୈନ୍ୟବାହିନୀର କର୍ଣ୍ଣେଲ ପୁଲୀଙ୍କ ସଭାପତିତ୍ୱରେ ଗୋଟିଏ ସଭା ଆହୂତ ହେଲା । ବହୁ ଇଂରାଜୀ ଭଦ୍ରଲୋକ ଓ ଭଦ୍ରମହିଳା ସମେତ କେତେଜଣ ଭାରତୀୟ ଏହି ସଭାରେ ଉପସ୍ଥିତ ଥିଲେ । ସ୍ୱାମୀଜୀ ଆତ୍ମାତତ୍ତ୍ୱ ସମ୍ବନ୍ଧରେ ଏକ କ୍ଷୁଦ୍ର ବକ୍ତୃତା ପ୍ରଦାନ କଲେ । ମିସ୍ ମୁଲ୍‌ର ସେହି ସଭାରେ ଉପସ୍ଥିତ ଥିଲେ, ବକ୍ତୃତାଟି ଏଭଳି ହୃଦୟସ୍ପର୍ଶୀ ହୋଇଥିଲା ଯେ କୁମାରୀ ମୁଲର ନିଜର ତଥା ସମବେତ ଜନତାଙ୍କର ଚେତନାର ଗଭୀରତାକୁ ମାପି ପରବର୍ତ୍ତୀ କାଳରେ କହିଥିଲେ - ସ୍ୱାମୀଜୀ ଯେତେବେଳେ ପରମାତ୍ମାଙ୍କ ସହ ଆତ୍ମାର ସଂପର୍କ ସମ୍ବନ୍ଧରେ କହିଲେ, ସେତେବେଳେ ଶ୍ରୋତା ଓ ବକ୍ତା ଏକ ଓ ଅଭିନ୍ନ ହୋଇଗଲେ ବୋଲି ବୋଧ ହେଲା । ସତେକି ମୁଁ, ତୁମେ ଓ ସେ ଭିତରେ କିଛି ତଫାତ୍ ରହିଲା ନାହିଁ । ଉପସ୍ଥିତ ଶ୍ରୋତାଗଣ ସ୍ୱାମୀଜୀଙ୍କ ଶରୀରରୁ ନିର୍ଗତ ମହାଶକ୍ତିରେ କିୟଦ୍ ମୁହୂର୍ତ୍ତ ପାଇଁ ଆତ୍ମହରା ହୋଇପଡ଼ିଲେ ।

Digitized by srujanika@gmail.com

ଆଲମୋଡ଼ାରେ ପ୍ରାୟ ବାର ସପ୍ତାହ ବିଶ୍ରାମ ନେବାପରେ ଅଗଷ୍ଟ ୨ ତାରିଖ ପଞ୍ଜାବ ଓ କାଶ୍ମୀର ଅଭିମୁଖେ ଯାତ୍ରା କଲେ । ପଞ୍ଜାବର ଆମ୍ବଲା କେଣ୍ଟନମେଣ୍ଟରେ ସେ ପହଞ୍ଚିବା କ୍ଷଣି, ତାଙ୍କୁ ଏକ ଘୋଡ଼ାଗାଡ଼ିରେ ବସାଇ ଏକ ବିଶାଳ ଶୋଭାଯାତ୍ରାରେ ନିଆଗଲା । ଏଠାରେ ସେ ସେଭିୟର ଦମ୍ପତ୍ତିଙ୍କୁ ସାକ୍ଷାତ କଲେ । ସିମଲାରେ ତିନିମାସ ରହିବା ପରେ ସେମାନେ ଏଠାକୁ ଆସିଥିଲେ । ପ୍ରତିଦିନ ହିନ୍ଦୁ, ମୁସଲମାନ, ବ୍ରାହ୍ମ, ଆର୍ଯ୍ୟସମାଜୀମାନଙ୍କ ସହ ଆଧାତ୍ମିକ ଆଲୋଚନା କଲେ । ହିନ୍ଦୁ-ମୁସଲମାନଙ୍କର ବିଦ୍ୟାଳୟ ପରିଦର୍ଶନ କରି ସ୍ୱାମୀଜୀଙ୍କର ମନ ଆନନ୍ଦରେ ଭରିଗଲା, କାହିଁକିନା ଭାରତବର୍ଷର ସବୁ ସମ୍ପ୍ରଦାୟଙ୍କୁ ଆପଣାର କରିନେବା ସଂସ୍କୃତି ଉକ୍ତ ସ୍କୁଲ ପରିବେଶରେ ହେଉଥିଲା ପ୍ରତିଫଳିତ । ଏଠାରୁ ସ୍ୱାମୀଜୀ ଶ୍ରୀ ସେଭିୟର ଓ ଶ୍ରୀମତୀ ସେଭିୟର ଏବଂ ଅନ୍ୟ ଶିଷ୍ୟମାନଙ୍କ ସହ ଅମୃତସର ଅଭିମୁଖେ ଯାତ୍ରା କଲେ । ଅମୃତସରରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ସ୍ୱାମୀଜୀଙ୍କୁ ଭେଟିଥିଲେ । ତା'ପରେ ସ୍ୱାମୀଜୀ ରାଓଲପିଣ୍ଡିରେ ପହଞ୍ଚିଲେ । ସେଠାରୁ ମୁରି ଓ ବାରମୁଲା ବାଟେ ସେପ୍ଟେମ୍ବର ୮ ତାରିଖ ଦିନ ନୌକାଯୋଗେ ଶ୍ରୀନଗର ଅଭିମୁଖେ ଯାତ୍ରା କଲେ । ଶ୍ରୀନଗରର ଚିଫ୍ ଜଷ୍ଟିସ୍ ବାବୁ ଋଷିବର ମୁଖୋପାଧ୍ୟାୟ ଆଗ୍ରହ ସହକାରେ ସ୍ୱାମୀଜୀଙ୍କୁ ନିଜ ଘରେ ରଖି ପରିଚର୍ଯ୍ୟା କଲେ । ରାଜା ରାମ ସିଂହଙ୍କ ଅନୁରୋଧକ୍ରମେ ସ୍ୱାମୀଜୀ ରାଜଭବନକୁ ଯାଇଥିଲେ । ରାଜା ସ୍ୱାମୀଜୀଙ୍କୁ ଯଥୋଚିତ ଆଦର କଲେ । ରାଜକର୍ମଚାରୀଙ୍କ ଗହଣରେ ପ୍ରାୟ ଦୁଇଘଣ୍ଟା କାଳ ଧର୍ମ ଓ ଭାରତୀୟ ଜନତାର ଉନ୍ନତି ସମ୍ବନ୍ଧେ ନାନାବିଧ ଆଲୋଚନା ହେଲା । ସ୍ୱାମୀଜୀଙ୍କ ଉଦାର ଭାବ ଓ ମହତ୍ ହୃଦୟର ପରିଚୟ ପାଇ ରାଜା ମୁଗ୍ଧ ହେଲେ ।

- ୨ -

> *... ଯେଉଁ ପ୍ରବୃତ୍ତି ନେଇ ଜଣେ ଜନ୍ମ, ସେହି ପ୍ରବୃତ୍ତି ନେଇ ସେ ବଞ୍ଚିବ । ସମଗ୍ର ବିଶ୍ୱ ଗୋଟିଏ ଧର୍ମରେ କାହିଁକି ବନ୍ଧା ହୋଇପାରିବ ନାହିଁ, ତାହାର ଏହା ହିଁ ମୁଖ୍ୟ କାରଣ । ସେଥିପାଇଁ ଈଶ୍ୱର ବାରଣ କରିଛନ୍ତି ଯେ ଗୋଟିଏ ମାତ୍ର ଧର୍ମ ହୋଇପାରିବ ନାହିଁ, କାହିଁକିନା ସମଗ୍ର ସଂସାର ବିଶୃଙ୍ଖଳିତ ହୋଇଯିବ, ଏହା ଏକ ବିଶ୍ୱବ୍ରହ୍ମାଣ୍ଡ ହୋଇରହିବ ନାହିଁ ।" ସ୍ୱାମୀଜୀଙ୍କର କହିବାର ଉଦ୍ଦେଶ୍ୟ ଥିଲା ଯେ ବିଭିନ୍ନ ଧର୍ମ, ବିଭିନ୍ନ ସମ୍ପ୍ରଦାୟ, ମତ, ସିଦ୍ଧାନ୍ତ ରହିବ । ଏହା ପ୍ରକୃତିର ନିୟମ । କିନ୍ତୁ ସମସ୍ତ ଧର୍ମର ଲକ୍ଷ୍ୟ ଆତ୍ମୋପଲବ୍ଧି । ପରସ୍ପର ମଧ୍ୟରେ କନ୍ଦଳ, ଦ୍ୱନ୍ଦ୍ୱ ନ କରି ଏକ ସୁସ୍ଥ ସମାଜ ଗଠନ କରିବାରେ ସବୁ ଧର୍ମ ତତ୍ପର ହେବା ଉଚିତ ।*

ସ୍ୱାମୀଜୀ କାଶ୍ମୀରରେ ହାଉସ୍-ବୋଟରେ ନୌକା-ଭ୍ରମଣ କରି କାଶ୍ମୀରର ଇତିହାସ ପ୍ରସିଦ୍ଧ ସ୍ଥାନସମୂହ ଓ ପ୍ରାଚୀନ କାଳର ଧ୍ୱଂସାବଶେଷଗୁଡ଼ିକ ପରିଦର୍ଶନ କରିଥିଲେ । ତତ୍ପଶ୍ଚାତେ

Digitized by srujanika@gmail.com

ସ୍ୱାମୀଜୀ ଜାମ୍ମୁ ଭ୍ରମଣରେ ଯାଇ ଜାମ୍ମୁ ମହାରାଜାଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ସ୍ୱାମୀଜୀ ସେଠାରୁ ଲାହୋରରେ ଯାଇ ପହଞ୍ଚିଲେ । ଲାହୋରର ସ୍ଥାନୀୟ ସନାତନ ସଭାର ସଭ୍ୟବୃନ୍ଦ ତାଙ୍କୁ ଷ୍ଟେସନରେ ଅଭ୍ୟର୍ଥନା କରି ରାଜା ଧ୍ୟାନସିଂହଙ୍କ ହାବେଲୀ ନାମକ ସୁବୃହତ୍ ପ୍ରାସାଦକୁ ନେଇଗଲେ । ସେଠାରେ କିଛିକ୍ଷଣ ଅବସ୍ଥାନ କଲାଉତ୍ତାରୁ ଟ୍ରିବ୍ୟୁନ୍ ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ନଗେନ୍ଦ୍ର ନାଥ ଗୁପ୍ତଙ୍କ ଆତିଥ୍ୟ ଗ୍ରହଣ କଲେ । ପ୍ରତ୍ୟହ ଦଳଦଳ ହୋଇ ବହୁଲୋକ ତାଙ୍କୁ ସାକ୍ଷାତ କରିବାକୁ ଆସୁଥିଲେ । ସ୍ୱାମୀଜୀ ଲାହୋରରେ ଯଥାକ୍ରମେ 'ହିନ୍ଦୁଧର୍ମର ଆଧାରଭୂମି, ଭକ୍ତି ଓ ବେଦାନ୍ତ ସମ୍ବନ୍ଧରେ ତିନିଗୋଟି ବକ୍ତୃତା ପ୍ରଦାନ କରିଥିଲେ । ପଞ୍ଜାବୀମାନଙ୍କ ଭିତରେ ଭକ୍ତିଭାବ କମ୍ ଦେଖି ସ୍ୱାମୀଜୀ ଧର୍ମାଳାପ ସମୟରେ ଭକ୍ତିଯୋଗର କଥା ହିଁ ଅଧିକ ଆଲୋଚନା କରିଥିଲେ । ଶ୍ରୀଚୈତନ୍ୟଙ୍କର କିର୍ତ୍ତନ ଯାହା ବଙ୍ଗଳାର ବୈଷ୍ଣବମାନଙ୍କ ମଧ୍ୟରେ ପ୍ରଚଳିତ, ତାହା ପଞ୍ଜାବରେ ନିୟମିତ କରାଗଲେ, ପଞ୍ଜାବୀମାନେ ଭକ୍ତି ସ୍ରୋତରେ ପ୍ଲାବିତ ହେବେ ବୋଲି ସ୍ୱାମୀଜୀ ମତ ପୋଷଣ କରିଥିଲେ ।

ପଞ୍ଜାବର ସିଆଲ୍‌କୋଟଠାରେ ସ୍ୱାମୀଜୀ ଏକ ସୁନ୍ଦର ଭାଷଣ ପ୍ରଦାନ କରି କହିଥିଲେ : ବିଶ୍ୱରେ ବହୁଧର୍ମ ରହିଛି, ସେମାନଙ୍କର ପୂଜା ଉପାସନା ପଦ୍ଧତି ପରସ୍ପରଠାରୁ ଭିନ୍ନ ହେଲେ ବି ବାସ୍ତବରେ ଲକ୍ଷ୍ୟ ଏକ । ଯଦି ଈଶ୍ୱର ଚାହିଁଥାନ୍ତେ ଯେ ସମସ୍ତେ ଗୋଟିଏ ଧର୍ମକୁ ଅନୁସରଣ କରିବେ, ତେବେ ଏତେ ସଂଖ୍ୟାର ଧର୍ମ କାହିଁକି ପ୍ରଚାରିତ ହେଇଥାନ୍ତା ? ପ୍ରତ୍ୟେକ ବ୍ୟକ୍ତି ଉପରେ ଗୋଟିଏ ଧର୍ମକୁ ଲଦି ଦେବାପାଇଁ ଅକାରଣେ ବଳ ପ୍ରୟୋଗ କରାଯାଉଛି । ଏପରିକି ଗୋଟିଏ ଧର୍ମକୁ ଅନୁସରଣ କରିବା ଲାଗି ଯେଉଁଠି ଲୋକଙ୍କ ଉପରକୁ ଖଣ୍ଡା ଉଠାଯାଇଥିଲା, ଇତିହାସ ଆମକୁ ଜଣାଇ ଦେଇଥିଲା ଯେ ସେହି ଗୋଟିଏ ଜାଗାରେ ଦଶଟି ଧର୍ମ ସୃଷ୍ଟି ହୋଇଥିଲା । ଗୋଟିଏ ଧର୍ମ ସମସ୍ତଙ୍କ ପାଇଁ ଅନୁକୂଳ ହେବନାହିଁ । ମନୁଷ୍ୟ କ୍ରିୟା ଓ ପ୍ରତିକ୍ରିୟା ଭଳି ଦୁଇଟି ବଳର ଉତ୍ପାଦ, ଯାହା ତାକୁ ଚିନ୍ତା କରିବା ଲାଗି ଶକ୍ତି ଯୋଗାଇ ଥାଏ । ଯଦି ମନୁଷ୍ୟ ମନରେ ଏଭଳି ବଳ କାର୍ଯ୍ୟକାରୀ ହେବନାହିଁ, ତେବେ ମନୁଷ୍ୟ ଭାବନାଶକ୍ତି ହରାଇବ ହିଁ ହରାଇବ । ମନୁଷ୍ୟ ଏକ ପ୍ରାଣୀ ଯିଏ ଚିନ୍ତା କରେ; ମାନସ ଥିବାରୁ ମନୁଷ୍ୟ ଏକ ସତ୍ତା, ମାନସ ଶକ୍ତି ତା ଭିତରୁ ଅନ୍ତର୍ଦ୍ଧାନ ହେଲେ, ସେ ପଶୁଠାରୁ ବି ହୀନ ହୋଇଯିବ । ଏଭଳି ମନୁଷ୍ୟକୁ କିଏ ଭଲପାଇବ ?

ଏତାଦୃଶ ମନୋଭାବ ଭାରତୀୟଙ୍କର ନହେଉ ବୋଲି ଈଶ୍ୱର ଚାହାନ୍ତି । ମନୁଷ୍ୟକୁ ମନୁଷ୍ୟ ଭାବେ ବଞ୍ଚିବା ପାଇଁ ବିଭିନ୍ନତା ଭିତରେ ଐକ୍ୟ ଆବଶ୍ୟକ । ପ୍ରତ୍ୟେକ କ୍ଷେତ୍ରରେ ବିଭିନ୍ନତା ବଜାୟ ରଖିବାକୁ ହେବ, ଯେତେଦିନ ପର୍ଯ୍ୟନ୍ତ ବିଭିନ୍ନତା ରହିବ, ସେତେଦିନ ପର୍ଯ୍ୟନ୍ତ ସଂସାର ତିଷ୍ଠି ରହିବ । ଅବଶ୍ୟ ବିଭିନ୍ନତାର ଅର୍ଥ ନୁହେଁ ଯେ ଜଣେ ଛୋଟ, ଅନ୍ୟ ଜଣେ ବଡ଼, କିନ୍ତୁ ସମସ୍ତେ ନିଜ ନିଜ ସ୍ଥାନରେ ସମାନ ଭାବରେ ରହି ନିଜର ଭୂମିକା ଗ୍ରହଣ କଲେ ବିଭିନ୍ନତା ସଂରକ୍ଷିତ ହେବ । ... ଯେଉଁ ପ୍ରବୃତ୍ତି ନେଇ ଜଣେ ଜନ୍ମ, ସେହି ପ୍ରବୃତ୍ତି ନେଇ ସେ ବଞ୍ଚିବ । ସମଗ୍ର ବିଶ୍ୱ ଗୋଟିଏ ଧର୍ମରେ କାହିଁକି ବନ୍ଧା ହୋଇପାରିବ ନାହିଁ, ତାହାର ଏହା ହିଁ ମୁଖ୍ୟ

Digitized by srujanika@gmail.com

କାରଣ । ସେଥିପାଇଁ ଈଶ୍ୱର ବାରଣ କରିଛନ୍ତି ଯେ ଗୋଟିଏ ମାତ୍ର ଧର୍ମ ହୋଇପାରିବ ନାହିଁ, କାହିଁକିନା ସମଗ୍ର ସଂସାର ବିଶୃଙ୍ଖଳିତ ହୋଇଯିବ, ଏହା ଏକ ବିଶ୍ୱବ୍ରହ୍ମାଣ୍ଡ ହୋଇରହିବ ନାହିଁ ।'' ସ୍ୱାମୀଜୀଙ୍କର କହିବାର ଉଦ୍ଦେଶ୍ୟ ଥିଲା ଯେ ବିଭିନ୍ନ ଧର୍ମ, ବିଭିନ୍ନ ସମ୍ପ୍ରଦାୟ, ମତ, ସିଦ୍ଧାନ୍ତ ରହିବ । ଏହା ପ୍ରକୃତିର ନିୟମ । କିନ୍ତୁ ସମସ୍ତ ଧର୍ମର ଲକ୍ଷ୍ୟ ଆତ୍ମୋପଲବ୍ଧି । ପରସ୍ପର ମଧ୍ୟରେ କନ୍ଦଳ, ଦ୍ୱନ୍ଦ୍ୱ ନ କରି ଏକ ସୁସ୍ଥ ସମାଜ ଗଠନ କରିବାରେ ସବୁ ଧର୍ମ ତତ୍ପର ହେବା ଉଚିତ ।

ଲାହୋରସ୍ଥିତ ଏକ କଲେଜର ଗଣିତଶାସ୍ତ୍ରର ପ୍ରଫେସର ଶ୍ରୀଯୁକ୍ତ ତୀର୍ଥରାମ ଗୋସ୍ୱାମୀଙ୍କ ସହ ସ୍ୱାମୀଜୀଙ୍କର ଭେଟ ହେଲା । ପରବର୍ତ୍ତୀ କାଳରେ ଏହି ପ୍ରଫେସର ମହାଶୟ ସନ୍ନ୍ୟାସ ଗ୍ରହଣ କରି ସ୍ୱାମୀ ରାମତୀର୍ଥ ଭାବେ ସୁପରିଚିତ ହୋଇଥିଲେ ଏବଂ ଭାରତ, ମିଶର ଓ ଆମେରିକାରେ ବେଦାନ୍ତ ପ୍ରଚାର କରି ଖ୍ୟାତି ଅର୍ଜନ କରିଥିଲେ । ସ୍ୱାମୀଜୀଙ୍କର ଜ୍ଞାନୋଦୀପ୍ତ ମୁଖନିଃସୃତ ପ୍ରତ୍ୟେକ ଶବ୍ଦରେ ସେ ଏପରି ମନ୍ତ୍ରମୁଗ୍ଧ ହୋଇଯାଇଥିଲେ ଯେ ସେ ଥରେ ତାଙ୍କ କଲେଜରେ ଭାଷଣ ଦେବାପାଇଁ ସ୍ୱାମୀଜୀଙ୍କୁ ଆମନ୍ତ୍ରଣ କଲେ । ସ୍ୱାମୀଜୀଙ୍କ ସହ ଗୁଡ୍‌ଉଇନ୍ ଓ ଅନ୍ୟାନ୍ୟ ଶିଷ୍ୟବୃନ୍ଦ ଯାଇଥିଲେ । ସ୍ୱାମୀ ରାମତୀର୍ଥ ସ୍ୱାମୀଜୀଙ୍କ ଅଗ୍ନିବର୍ଷୀ ବକ୍ତବ୍ୟ ଶୁଣିବା ପରେ ନିଜେ ଲେଖିଥିଲେ : ମଧ୍ୟାହ୍ନ ଭୋଜନ ପରେ ସ୍ୱାମୀଜୀ ଏକ ସଂଗୀତ ସୁଲଳିତ କଣ୍ଠରେ ଗାନ କରିଥିଲେ - ଜାହାଁ ରାମ ୱାହାଁ କାମ୍ ନହିଁ, ଜାହାଁ କାମ୍, ତାହାଁ ନହିଁ ରାମ୍ । ଅର୍ଥାତ୍, ଯେଉଁଠି ଭଗବତ ଚେତନା ରହିଛି, ସେଠାରେ କାମନା ନାହିଁ, ଯେଉଁଠି କାମନା ରହିଛି, ସେଠାରେ ଭଗବତ୍ ଚେତନା ନାହିଁ । ତାଙ୍କର ସୁଲଳିତ କଣ୍ଠ ସ୍ୱରରେ ଭରି ରହିଥିଲା ଏଭଳି ଯାଦୁକାରୀ ଅର୍ଥ ଯାହା ଉପସ୍ଥିତ ଶ୍ରୋତାବର୍ଗଙ୍କୁ ବିମୋହିତ କରିଦେଲା ।

ଏକଦା ସ୍ୱାମୀଜୀଙ୍କ ସହ ସ୍ୱୟଂ ରାମତୀର୍ଥ ଏକ ସାଂଧ୍ୟ ଭ୍ରମଣ କାଳରେ କହିଥିଲେ ଯେ ଯିଏ ନିଜର ବ୍ୟକ୍ତିସତ୍ତାର ସମସ୍ତ ମାନସିକତା ହରାଇ ଏକଇ ଆତ୍ମା ଭାବେ ଜୀବନଯାପନ କରେ, ସେ ହିଁ ପ୍ରକୃତ ମହାତ୍ମା । ଯେତେବେଳେ ଗୋଟିଏ ଅଞ୍ଚଳର ବାୟୁମଣ୍ଡଳ ଅତ୍ୟଧିକ ସୂର୍ଯ୍ୟତାପ ଶୋଷିନିଏ, ସେତେବେଳେ ସେହି ଅଞ୍ଚଳର ବାୟୁ ହାଲୁକା ହୋଇଯାଇ ଉପରକୁ ଉଠିଯାଏ । ସେହି ଅଞ୍ଚଳର ହାଲୁକା ବାୟୁମଣ୍ଡଳ ଭିତରକୁ ଅନ୍ୟ ଅଞ୍ଚଳରୁ ବାୟୁ ପ୍ରବାହିତ ହୁଏ ଯାହାଫଳରେ ସମଗ୍ର ବାୟୁମଣ୍ଡଳ ଗତିଶୀଳ ହୋଇଯାଏ । ଠିକ୍ ସେହିଭଳି ଜଣେ ମହାତ୍ମା ଆତ୍ମ-ସଂସ୍କାର ମାଧ୍ୟମରେ ଗୋଟିଏ ଜାତି ଭିତରେ ଜୀବନ ଓ ଉତ୍ସାହ ଭରି ଦିଅନ୍ତି । ଯାହାର ଉତ୍ତରରେ ସେଦିନ ସ୍ୱାମୀଜୀ ତାଙ୍କୁ କହିଥିଲେ, ''ହଁ ତୁମେ ଠିକ୍ କହିଛ । ଏଭଳି ଥିଲେ ମୋର ଗୁରୁଦେବ ପରମହଂସ ଶ୍ରୀରାମକୃଷ୍ଣ ଦେବ ।''

ପୁନଶ୍ଚ ସ୍ୱାମୀ ରାମତୀର୍ଥ ଲେଖିଥିଲେ - ବେଦାନ୍ତ ଉପରେ ସ୍ୱାମୀଜୀ ଲାହୋରରେ ଏକ ସୁନ୍ଦର ବକ୍ତୃତା ଦେଇଥିଲେ । ଅଢ଼େଇ ଘଣ୍ଟା ଧରି ସେ କହିଥିଲେ । ଶ୍ରୋତାଗଣ ଏଭଳି ଗଭୀରଭାବେ ଉକ୍ତ ଭାବୋଦ୍ଦୀପକ ବକ୍ତୃତାରେ ନିମଗ୍ନ ହୋଇଯାଇଥିଲେ ଯେ ସମୟ, କାଳ ଓ ସ୍ଥାନର ଧାରଣା ସେତେବେଳ ଶ୍ରୋତାଙ୍କ ମନରୁ ହଜି ଯାଇଥିଲା । ବିଶ୍ୱ ଆତ୍ମା ସହ ବ୍ୟକ୍ତି ଆତ୍ମା ଏକ

Digitized by srujanika@gmail.com

ହୋଇଯାଇଥିଲା । ଗର୍ବ ଓ ଅହଙ୍କାର ସମସ୍ତଙ୍କ ଭିତରୁ ସେତେବେଳେ ସମ୍ପୂର୍ଣ୍ଣ ଭାବେ ଅନ୍ତର୍ଦ୍ଧାନ ହୋଇଯାଇଥିଲା । ଏଭଳି ବିରାଟ ସଫଳ ସଭା କ୍ୱଚିତ ମୁଁ ଦେଖିଛି । ଯେଉଁମାନେ ଏହି ବକ୍ତୃତା ଶୁଣିଥିଲେ - ଇଂରାଜୀ ବ୍ୟକ୍ତି, ଖ୍ରୀଷ୍ଟିଆନ, ମୁସଲମାନ, ଆର୍ଯ୍ୟ ସମାଜୀ, ବ୍ରାହ୍ମସମାଜୀ, ହିନ୍ଦୁ - ଏହାଥିଲା ସମସ୍ତଙ୍କ ପାଇଁ ଆଖି ଖୋଲିଦେବାର ମୁହୂର୍ତ୍ତ । ମିଶନ୍ କଲେଜ୍‌ର ଅଧ୍ୟକ୍ଷ ଓ ଇୟୁରୋପୀୟ ଅଧ୍ୟାପକଗଣ ଏଥିରୁ ଅନେକ ଉପକାର ପାଇଥିଲେ । ...ଅବଶ୍ୟ ଆର୍ଯ୍ୟ ସମାଜୀ ଓ ବ୍ରାହ୍ମ ସମାଜୀମାନଙ୍କ ସହ ସ୍ୱାମୀଜୀଙ୍କ ଆଲୋଚନା ମୁଁ ଶୁଣିବାର ସୁଯୋଗ ପାଇଥିଲି । ସେମାନଙ୍କର ପ୍ରଶ୍ନଗୁଡ଼ିକୁ ଏଭଳି ବଜ୍ରକଣ୍ଠରେ ଉତ୍ତର ପ୍ରଦାନ କରୁଥିଲେ ଯେ ମୁହଁ ତଳକୁ କରି କେବଳ ସେମାନେ ଫେରି ଯାଉଥିଲେ । ତାଙ୍କର ଆଲୋଚନା ଓ ବକ୍ତୃତାରେ ଗୋଟିଏ ସୁନ୍ଦର କଥା ମୁଁ ଦେଖିଥିଲି ଯେଉଁଥିରେ ସେ କୌଣସି ସଂପ୍ରଦାୟର ମନୋଭାବକୁ ଆଘାତ ଓ ଅପମାନିତ କଲା ଭଳି ଭାଷା ଉଚ୍ଚାରଣ କରୁ ନ ଥିଲେ, କିନ୍ତୁ ସେମାନଙ୍କ ନୀତି ଓ ଆଦର୍ଶର ଅସାରତା ଓ ଅଧାରଶୂନ୍ୟତାକୁ ଗ୍ରହଣ କରିବା ପାଇଁ ସେମାନଙ୍କୁ ଶେଷରେ ବାଧ୍ୟ କରୁଥିଲେ ।

- ୩ -

*ବର୍ତ୍ତମାନ ଭାରତୀୟ ନା ହିନ୍ଦୁ ନା ବୈଦାନ୍ତିକ; ସେମାନେ କେବଳ 'ମୋତେ ଛୁଅଁ ନାହିଁ' ଧର୍ମର ମଣିଷ : ସେମାନଙ୍କର ରୋଷେଇଶାଳା ବର୍ତ୍ତମାନ ମନ୍ଦିର ଓ ବାସନକୁସନ ହେଉଛି ସେମାନଙ୍କର ପୂଜା ସାମଗ୍ରୀ । ଏହି ଅବସ୍ଥାର ଅନ୍ତ ନିଶ୍ଚିତ ହେବା ଆବଶ୍ୟକ । ଯେତେଶୀଘ୍ର ଏହାର ଅନ୍ତହେବ, ସେତେଶୀଘ୍ର ଏହା ଆମ ଧର୍ମପାଇଁ ଉତ୍ତମ ପ୍ରମାଣିତ ହେବ । ଉପନିଷଦଗୁଡ଼ିକ ଗୌରବରେ ଉଜ୍ଜ୍ୱଳମୟ ହେଉ, ଏବଂ ତତ୍‌ସହିତ ବିଭିନ୍ନ ସମ୍ପ୍ରଦାୟ ଭିତରେ ରହିଥିବା କଳହର ଅବସାନ ମଧ୍ୟ ଶୀଘ୍ର ହେଉ ।*

ସ୍ୱାମୀଜୀଙ୍କର ବେଦାନ୍ତ ଦର୍ଶନରେ ସ୍ୱାମୀ ରାମତୀର୍ଥ ଏଭଳି ଅନୁପ୍ରାଣିତ ହେଲେ, ଯାହାଫଳରେ ତାଙ୍କ ଜୀବନ ଆମୂଳଚୂଳ ପରିବର୍ତ୍ତିତ ହୋଇଗଲା । ଲାହୋରରୁ ସ୍ୱାମୀଜୀଙ୍କ ବିଦାୟ ସମୟରେ ସେ ତାଙ୍କର ପ୍ରିୟ ବହୁମୂଲ୍ୟ ସୁନା ଘଡ଼ିଟିକୁ ସ୍ୱାମୀଜୀଙ୍କୁ ଉପହାର ଦେଇଥିଲେ; ସ୍ୱାମୀଜୀ ପରମାନନ୍ଦରେ ତାହା ଗ୍ରହଣ କରିଥିଲେ । କିନ୍ତୁ ପରମୁହୂର୍ତ୍ତରେ ଆଦର କରି ଅଧ୍ୟାପକଙ୍କ ପକେଟରେ ଘଡ଼ିଟିକୁ ରଖିଦେଇ ସ୍ୱାମୀଜୀ କହିଲେ, ''ବନ୍ଧୁ, ଏହି ଘଡ଼ିଟିକୁ ମୁଁ ଏହି ପକେଟରେ ରଖି ବ୍ୟବହାର କରିବି ।'' ରହସ୍ୟମୟ ହସରେ ସ୍ୱାମୀଜୀ ତୀର୍ଥରାମଙ୍କ ପ୍ରତି ଅର୍ଥପୂର୍ଣ୍ଣ ଦୃଷ୍ଟି ନିକ୍ଷେପ କଲେ । ସ୍ୱାମୀଜୀଙ୍କର ଅର୍ଥପୂର୍ଣ୍ଣ ଚାହାଣି ସୂଚାଇ ଦେଇଥିଲା ଯେ ଆଗାମୀ ଦିନଗୁଡ଼ିକରେ ସ୍ୱାମୀ ରାମତୀର୍ଥ ଯେତେବେଳେ ଦେଶ ଓ ବିଦେଶରେ ବେଦାନ୍ତ ପ୍ରଚାର କାର୍ଯ୍ୟରେ ଲିପ୍ତ ରହିବେ, ସେତେବେଳେ ତାଙ୍କୁ ପକେଟର ଘଡ଼ି ରୂପେ ନୁହେଁ, ବରଂ ବେଦାନ୍ତର ବାଣୀ ହୋଇ ତାଙ୍କ ମୁଖରୁ ନିଃସୃତ ସେ ନିଜେ ହିଁ ହେବେ ।

Digitized by srujanika@gmail.com

ଲାହୋର ଅବସ୍ଥାନ ସମୟରେ ସ୍ୱାମୀଜୀ ଲକ୍ଷ୍ୟ କଲେ ଯେ ଶିଖ, ମୁସଲମାନ, ଆର୍ଯ୍ୟସମାଜ ଓ ରକ୍ଷଣଶୀଳ ହିନ୍ଦୁ ସନାତନ ସମ୍ପ୍ରଦାୟଙ୍କ ଭିତରେ କଳହ ଓ ଦ୍ୱନ୍ଦ୍ୱ ଉଗ୍ରରୂପ ଧାରଣ କରିଛି । ବିଶେଷତଃ ଆର୍ଯ୍ୟ ସମାଜୀ ହିନ୍ଦୁ ସନାତନଧର୍ମୀର ଶ୍ରାଦ୍ଧ ପ୍ରଥାକୁ ଘୋର ବିରୋଧ କରୁଥିଲେ । ଦୁଇ ସମ୍ପ୍ରଦାୟର ଅନୁଗାମୀଙ୍କ ଉପସ୍ଥିତିରେ ସ୍ୱାମୀଜୀ ଆଧ୍ୟାତ୍ମିକ ବିଷୟବସ୍ତୁ ଉପରେ ଆଲୋଚନା କଲେ । ଆର୍ଯ୍ୟସମାଜୀ ଭାବିଥିଲେ ଯେ ସ୍ୱାମୀଜୀ ନିଶ୍ଚିତଭାବେ ଶ୍ରାଦ୍ଧ ପରମ୍ପରାକୁ ବିରୋଧ କରିବେ ଏବଂ ଠିକ୍ ସେହିଭଳି ସନାତନଧର୍ମୀ ଭାବିଥିଲେ ଯେ ଶ୍ରାଦ୍ଧର ଉପାଦେୟତାକୁ ସ୍ୱାମୀଜୀ ଠିକ୍ ପ୍ରମାଣିତ କରି ଆର୍ଯ୍ୟସମାଜୀଙ୍କୁ ମୁହଁତୋଡ଼ ଜବାବ ଦେବେ । କିନ୍ତୁ ତାହା ଘଟିଲା ନାହିଁ । ଶ୍ରାଦ୍ଧ କର୍ମ ଆବଶ୍ୟକତାକୁ ସ୍ୱାମୀଜୀ ପ୍ରାଞ୍ଜଳଭାବେ ବୁଝାଇ କହିଥିଲେ, ଏହି ଶ୍ରାଦ୍ଧକର୍ମର ମୂଳକୁ ଯଦି ଚିହ୍ନଟ କରାଯାଏ ତେବେ ଦେଖିବାକୁ ମିଳିବ ଯେ ପରଲୋକଗତ ଆତ୍ମାର ପୂଜାରୁ ହିଁ ହିନ୍ଦୁଧର୍ମର ଆରମ୍ଭ ହୋଇଥିଲା । ପ୍ରଥମେ ସେମାନଙ୍କ ପୂର୍ବପୁରୁଷଙ୍କର ପରଲୋକଗତ ଆତ୍ମାକୁ ଏକ ପୁରୁଷ ମାଧ୍ୟମରେ ଆମନ୍ତ୍ରଣ କରୁଥିଲେ, ତାକୁ ପୂଜା କରୁଥିଲେ ଏବଂ ଖାଦ୍ୟ ଅର୍ପଣ କରୁଥିଲେ । କିନ୍ତୁ କାଳକ୍ରମେ ଏହା ଅନୁଭୂତ ହେଲା ଯେ ଯେଉଁ ବ୍ୟକ୍ତିଙ୍କୁ ଏକ ମାଧ୍ୟମ ଭାବେ ବ୍ୟବହାର କରି ପରଲୋକଗତ ଆତ୍ମାଙ୍କୁ ଅବତରଣ କରାଉଥିଲେ, ସେହି ବ୍ୟକ୍ତି ବହୁ ଶାରୀରିକ ଯନ୍ତ୍ରଣା ଭୋଗ କରିବାକୁ ପଡୁଥିଲା । ତେଣୁ ସେମାନେ ମନୁଷ୍ୟ ସ୍ଥାନରେ ଗୋଟିଏ କୁଶପୁତ୍ତଳିକାର ବ୍ୟବହାର କରି, ତାହାରି ମାଧ୍ୟମରେ ସେମାନେ ନିଜର ପରଲୋକଗତ ପୂର୍ବପୁରୁଷଙ୍କୁ ଆମନ୍ତ୍ରଣ କଲେ । କୁଶପୁତଳିର ପୂଜାର୍ଚ୍ଚନା କଲେ ଏବଂ ପିଣ୍ଡ ଦାନ କଲେ । ବେଦରେ ଦେବାଦେବୀଙ୍କୁ ପୂଜା ଓ ଯଜ୍ଞ ନିମନ୍ତେ ଯେଉଁ ମନ୍ତ୍ରୋଚାରଣ କରି ଆହ୍ୱାନ କରାଯାଏ, ତାହା ହିଁ ପରଲୋକଗତ ଆତ୍ମାର ପୂଜା ଉପାସନାରୁ ବିକାଶ ଲାଭ କରିଛି ।

ସ୍ୱାମୀଜୀଙ୍କର ଏତାଦୃଶ ସ୍ପଷ୍ଟୀକରଣ ଉଭୟ ପକ୍ଷଙ୍କୁ ସନ୍ତୁଷ୍ଟ କରିପାରିଥିଲା । ହିନ୍ଦୁଧର୍ମକୁ ନୂତନ ଢଙ୍ଗରେ ସଂସ୍କାରିତ କରିବାର ପ୍ରୟାସୀ ଆର୍ଯ୍ୟସମାଜ ଏବଂ ହିନ୍ଦୁଧର୍ମର ପ୍ରାଚୀନପନ୍ଥୀଙ୍କ ମଧ୍ୟରେ ଯେଉଁ କଳହ ଓ ବିଦ୍ୱେଷଭାବର ପ୍ରାଚେରୀ ପଞ୍ଜାବରେ ଧୀରେ ଧୀରେ ମୁଣ୍ଡ ଟେକୁଥିଲା, ତାହା ପ୍ରତିହତ କରି ସେମାନଙ୍କ ମଧ୍ୟରେ ଶାନ୍ତି ଓ ଐକ୍ୟଭାବ ପ୍ରତିଷ୍ଠା କରିବା ସ୍ୱାମୀଜୀଙ୍କର ଲକ୍ଷ୍ୟଥିଲା । ସ୍ୱାମୀଜୀଙ୍କର ହସ୍ତକ୍ଷେପ ଫଳରେ ଦୁଇପକ୍ଷ ଅନ୍ତତଃପକ୍ଷେ ପରସ୍ପରକୁ ସମ୍ମାନ କରିବା ପାଇଁ ଶପଥ ନେଇଥିଲେ । ସେ'ତ ଯୋଡ଼ିବା ପାଇଁ ଆସିଛନ୍ତି, କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମ ପ୍ରଚାରକ ଭାବେ ନୁହେଁ । ସେ ଆର୍ଯ୍ୟ ସମାଜ ପ୍ରତି ଏଭଳି ଉଚ୍ଚ ସମ୍ମାନ ପ୍ରଦର୍ଶନ କରୁଥିଲେ ଯେ ଆର୍ଯ୍ୟସମାଜର କେତେକ ପ୍ରତିଷ୍ଠିତ ଓ ସମାଦୃତ ନେତୃଗଣ ସ୍ୱାମୀଜୀଙ୍କୁ ଆର୍ଯ୍ୟସମାଜର ମୁଖ୍ୟ ହେବା ପାଇଁ ଅନୁରୋଧ କରିଥିଲେ । ରାଓଲପିଣ୍ଡିଠାରେ ଆର୍ଯ୍ୟସମାଜ ଓ ମୁସଲମାନଙ୍କ ଭିତରେ ରହିଥିବା ବିଦ୍ୱେଷଭାବକୁ ସମୂଳେ ବିନାଶ କରିବା ଲାଗି ଏକ ପଦ୍ଧତି ସେ ପରାମର୍ଶ ଦେଇଥିଲେ ।

Digitized by srujanika@gmail.com

ଲାହୋରରୁ ପ୍ରସ୍ଥାନ କରି ସ୍ୱାମୀଜୀ ସେଭିଅର ଦମ୍ପତି ଓ ଗୁରୁଭ୍ରାତାଙ୍କ ସହ ଡେରାଡୁନ୍‌ରେ ପହଞ୍ଚିଲେ । ସେଠାରେ କିଛିଦିନ ରହି, ଖେତଡ଼ି ରାଜାଙ୍କର ଆମନ୍ତ୍ରଣକ୍ରମେ ଖେତଡ଼ି ଅଭିମୁଖେ ଯାତ୍ରା କଲେ । ଉଚ୍ଛ୍ୱସିତ ଭବ୍ୟ ସମ୍ବର୍ଦ୍ଧନା ସ୍ୱାମୀଜୀଙ୍କୁ ଖେତଡ଼ିରେ ଜ୍ଞାପନ କରାଗଲା । ରାଜା ଅଜିତ୍ ସିଂହ, ମୁନ୍‌ସି ଜଗମୋହନ୍ ଲାଲଙ୍କ ସହ ଖେତଡ଼ିରୁ ବାର ମାଇଲ ପଥ ଅତିକ୍ରମ କରି ସ୍ୱାମୀଜୀଙ୍କୁ ବାବାଇଠାରେ ସ୍ୱାଗତ କରି ଥିଲେ । ଖେତଡ଼ିର ବହୁ ଅନୁଷ୍ଠାନ ସ୍ୱାମୀଜୀଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ ଉତ୍ସବ ମୁଖରିତ ହୋଇଉଠିଲେ । ରାଜାଙ୍କ ବଙ୍ଗଳାରେ ଅନୁଷ୍ଠିତ ଏକ ସଭାରେ ବହୁ ଶ୍ରୋତାଙ୍କ ଉପସ୍ଥିତିରେ ସ୍ୱାମୀଜୀ ବେଦାନ୍ତମାର୍ଗ ଉପରେ ଦେଢ଼ଘଣ୍ଟା କାଳ ବକ୍ତୃତା ପ୍ରଦାନ କରିଥିଲେ । କେତେକ ଇୟୁରୋପୀୟ ଭଦ୍ରଲୋକ ଓ ମହିଳା ଉକ୍ତ ସଭାରେ ଉପସ୍ଥିତ ଥିଲେ । ପ୍ରାଚୀନ ଗ୍ରୀକ୍ ଓ ଆର୍ଯ୍ୟ ସଭ୍ୟତା ଉପରେ ଏକ ସାରଗର୍ଭକ ବକ୍ତୃତା ପ୍ରଦାନ କରି କହିଥିଲେ ଯେ ଇୟୁରୋପରେ ଭାରତୀୟ ଚିନ୍ତାଧାରାର ପ୍ରଭାବ ସେ ସ୍ୱୟଂ ଦେଖିବାକୁ ପାଇଛନ୍ତି । ଗ୍ରୀକ୍‌ର ଦାର୍ଶନିକ ପିଥାଗୋରାସ, ସକ୍ରେଟିସ୍ ଓ ପ୍ଲାଟୋ ଏବଂ ଇଜିପ୍ଟର ଆଧୁନିକ ପ୍ଲାଟୋବାଦୀଙ୍କ ଉପରେ ଯେ କେବଳ ଭାରତୀୟ ଚିନ୍ତାଧାରା ପ୍ରଭାବ ବିସ୍ତାର କରିଥିଲା ତାହାନୁହେଁ ବରଂ ସ୍ପେନ୍, ଜର୍ମାନୀ ଓ ଅନ୍ୟ ଇୟୁରୋପୀୟ ରାଷ୍ଟ୍ରରେ ବିଭିନ୍ନ ଯୁଗରେ ଏହା ପ୍ରବେଶ କରିଥିଲା । ବେଦ ଓ ବୈଦିକ କାହାଣୀ ଉପରେ ସେ ଆଲୋଚନା କରି ବିଭିନ୍ନ ଭାବଧାରା ଓ ଉପାସନାର ସ୍ତରଗୁଡ଼ିକୁ ପ୍ରାଞ୍ଜଳ ଭାବରେ ବ୍ୟାଖ୍ୟା କରିଥିଲେ । ସବୁ ଉପାସନା ପଦ୍ଧତି ଓ ଭାବଧାରା ପଶ୍ଚାତରେ ଗୋଟିଏ ସତ୍ୟ ବିରାଜିତ ଥିଲା, ତାହା 'ଏକମ୍ ସଦ୍ ବିପ୍ରା ବହୁଧା ବଦନ୍ତି' । ଅର୍ଥାତ୍ ଏକ ସତ୍ୟ ଯାହାଙ୍କୁ ଋଷି ମୁନିଗଣ ବିଭିନ୍ନ ନାଁରେ ଡାକନ୍ତି । ଗ୍ରୀକ୍‌ମାନଙ୍କ ଭଳି ନ ଥିଲେ ଆର୍ଯ୍ୟ । ବାହ୍ୟ ପ୍ରକୃତିରେ ସନ୍ତୁଷ୍ଟ ନ ହୋଇ ଆର୍ଯ୍ୟମାନେ ଅନ୍ତର୍ଜଗତ ଅଭିମୁଖେ ମନକୁ ଅଭିନିବିଷ୍ଟ କଲେ ଏବଂ ଆତ୍ମୋପଲବ୍ଧି ମାଧ୍ୟମରେ ଜୀବନର ସମସ୍ତ ସମସ୍ୟାକୁ ସମାଧାନ କରିପାରିଥିଲେ ।

ତତ୍‌ପଶ୍ଚାତେ ସ୍ୱାମୀଜୀ ଦ୍ୱୈତବାଦ ବିଶିଷ୍ଟ ଦ୍ୱୈତବାଦ ଓ ଅଦ୍ୱୈତବାଦର ତତ୍ତ୍ୱ କିପରି ସମନ୍ୱିତ ହୋଇ ଅଦ୍ୱୈତବାଦର ଶେଷ ପାହାଚ "ତତ୍ ତ୍ୱମ୍ ଅସି" ଅର୍ଥାତ୍ - "ତୁମେ ହିଁ ସେ"ରେ ଉପନୀତ ହେଲେ, ସେ ସମ୍ବନ୍ଧରେ ସ୍ୱାମୀଜୀ ଆଲୋଚନା କଲେ । କିନ୍ତୁ ପରବର୍ତ୍ତୀ କାଳରେ ଶାସ୍ତ୍ରକୁ କିଭଳି କଦର୍ଯ୍ୟ କରି ବ୍ୟାଖ୍ୟା କରାଯାଇଥିଲା ସେ ସମ୍ବନ୍ଧରେ କହି ସ୍ୱାମୀଜୀ ଦୁଃଖ ପ୍ରକାଶ କଲେ । ମହାନ୍ ଭାଷ୍ୟକାର ରାମାନୁଜ ଉପନିଷଦର ଅଦ୍ୱୈତ ଚିନ୍ତାଧାରାକୁ ଯେପରି କଦର୍ଥ କରି ବ୍ୟାଖ୍ୟା କରିଥିଲେ, ଠିକ୍ ସେଭଳି ଆଦି ଶଙ୍କରାଚାର୍ଯ୍ୟ ମଧ୍ୟ ଦ୍ୱୈତବାଦ ଶାସ୍ତ୍ରର କଦର୍ଥ ବ୍ୟାଖ୍ୟା କରିଥିଲେ ବୋଲି ସ୍ୱାମୀଜୀ ଦର୍ଶାଇଥିଲେ । ସ୍ୱାମୀଜୀ ଆଧୁନିକ ଭାରତର ଅଧଃପତନ ଉପରେ ନିଜର କ୍ଷୋଭ ପ୍ରକାଶ କରି କହିଥିଲେ, "ବର୍ତ୍ତମାନ ଭାରତୀୟ ନା ହିନ୍ଦୁ ନା ବୈଦାନ୍ତିକ; ସେମାନେ କେବଳ 'ମୋତେ ଛୁଅଁ ନାହିଁ' ଧର୍ମର ମଣିଷ : ସେମାନଙ୍କର ରୋଷେଇଶାଳା ବର୍ତ୍ତମାନ ମନ୍ଦିର ଓ ବାସନକୁସନ ହେଉଛି ସେମାନଙ୍କର ପୂଜା ସାମଗ୍ରୀ । ଏହି

Digitized by srujanika@gmail.com

ଅବସ୍ଥାର ଅନ୍ତ ନିଶ୍ଚିତ ହେବା ଆବଶ୍ୟକ । ଯେତେଶୀଘ୍ର ଏହାର ଅନ୍ତହେବ, ସେତେଶୀଘ୍ର ଏହା ଆମ ଧର୍ମପାଇଁ ଉତ୍ତମ ପ୍ରମାଣିତ ହେବ । ଉପନିଷଦଗୁଡ଼ିକ ଗୌରବରେ ଉଜ୍ଜ୍ୱଳମୟ ହେଉ, ଏବଂ ତତ୍‌ସହିତ ବିଭିନ୍ନ ସମ୍ପ୍ରଦାୟ ଭିତରେ ରହିଥିବା କଳହର ଅବସାନ ମଧ୍ୟ ଶୀଘ୍ର ହେଉ ।

ଖେତଡ଼ି ରାଜା ରାମକୃଷ୍ଣ ମଠ ଓ ମିଶନ ସ୍ଥାପନ ପାଇଁ ତିନିହଜାର ମୁଦ୍ରା ଦାନ କରିଥିଲେ । ରାଜା ତାଙ୍କର ରାଜକର୍ମୀ ଓ ବନ୍ଧୁ, ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଉପସ୍ଥିତିରେ ସ୍ୱାମୀଜୀଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇଥିଲେ । ଖେତଡ଼ିରୁ ବିଦାୟ ନେଇ ସ୍ୱାମୀଜୀ ୧୯୯୭ ଡିସେମ୍ବର ୨୪ ତାରିଖରେ ଜୟପୁରରେ ପହଞ୍ଚିଲେ । ସେଠାରେ କିଛିଦିନ ରହି କିଶନଗଡ଼, ଆଜମିର, ଯୋଧପୁର ଓ ଇନ୍ଦୋର ଭ୍ରମଣ କରି ଖଣ୍ଡୱାରେ ପହଞ୍ଚିଲେ । ଯୋଧପୁରରେ ଦିୱାନ ସାର୍ ରାଜା ପ୍ରତାପ ସିଂହଙ୍କ ବାସଭବନରେ ଦଶଦିନ ରହିଥିଲେ ।



Digitized by srujanika@gmail.com

॥ ପଇଁତିରିଶ ॥

# ମାରଗେରେଟ୍ ନୋବଲ୍ ବ୍ରହ୍ମଚାରିଣୀ ଦୀକ୍ଷାରେ ଦୀକ୍ଷିତ - ବିଶ୍ୱବନ୍ଦିତା ଭଗ୍ନୀ ନିବେଦିତା ହେଲେ - ଗାଜିପୁରର ପାଓ୍ୱାହାରି ବାବା ଓ ଜେ.ଜେ. ଗୁଡ଼ୱିନଙ୍କର ଦେହାନ୍ତ

୧୯୯୮ ଜାନୁଆରି ତୃତୀୟ ସପ୍ତାହରେ ସ୍ୱାମୀଜୀ କଲିକତାକୁ ପ୍ରତ୍ୟାବର୍ତ୍ତନ କଲେ । ଜାନୁଆରୀ ୨୮ ତାରିଖରେ ମିସ୍ ମାରଗେରେଟ୍ ନୋବଲ (ଭଗ୍ନୀ ନିବେଦିତା) କଲିକତାରେ ପହଞ୍ଚିଲେ । ସ୍ୱାମୀଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ଭଗ୍ନୀ ନିବେଦିତା ଇଂଲଣ୍ଡ ସହ ସମସ୍ତ ସମ୍ପର୍କ ଛିନ୍ନ କରି ଭାରତରେ ସେବା କାର୍ଯ୍ୟ ଆରମ୍ଭ କରିବା ଲାଗି ଚାଲି ଆସିଛନ୍ତି । ସ୍ୱାମୀଜୀ ମିସ୍ ମାର୍‌ଗେରେଟ ନୋବଲ୍‌ଙ୍କ ଆଗମନରେ ଏଭଳି ଖୁସି ହୋଇଥିଲେ ଯେ ସ୍ୱୟଂ ହିନ୍ଦୁ ମାନସିକତାକୁ ଭଲ ଭାବରେ ବୁଝିବା ପାଇଁ ସେ ଉପଯୁକ୍ତ ପ୍ରଶିକ୍ଷଣ ତାଙ୍କୁ ଯୋଗାଇ ଦେଇଥିଲେ । କାରଣ ଜଣେ ବିଦେଶୀନୀ ପକ୍ଷରେ ହିନ୍ଦୁ ସଂସ୍କୃତି ବିଶେଷତଃ ହିନ୍ଦୁର ଦୃଷ୍ଟିକୋଣକୁ ହୃଦୟଙ୍ଗମ କରିବା କାଠିକର ପାଠ । ଅନ୍ୟ ଜଣେ ବିଦେଶିନୀ ଶିଷ୍ୟା ମିସ୍ ମୁଲର ବି ସେଠାରେ ପହଞ୍ଚିଗଲେ । ଶିଷ୍ୟ ଓ ଶିଷ୍ୟାମାନଙ୍କୁ ଆଧ୍ୟାତ୍ମିକ ଶିକ୍ଷା ପ୍ରଦାନ କରିବା ବର୍ତ୍ତମାନ ତାଙ୍କର ମୁଖ୍ୟ କାର୍ଯ୍ୟ ହେଲା ।

ସ୍ୱାମୀଜୀ ଆଲମୋଡ଼ାରୁ ଜୁଲାଇ ୨୯, ୧୮୯୭ରେ ଖଣ୍ଡିଏ ଚିଠି ମାର୍ଗେରେଟ୍ ନୋବଲ୍‌ଙ୍କ ପାଖକୁ ଲେଖିଥିଲେ : ମୁଁ ତୁମକୁ ଅତ୍ୟନ୍ତ ସ୍ପଷ୍ଟ ଭାବରେ କହିଦେଉଛି ଯେ ମୋର ବର୍ତ୍ତମାନ ଦୃଢ଼ ବିଶ୍ୱାସ ହୋଇଛି ଭାରତରେ ତୁମପାଇଁ ଏକ ମହାନ୍ କାର୍ଯ୍ୟ ଅପେକ୍ଷା କରିଛି । ଯାହା ବର୍ତ୍ତମାନ ଆବଶ୍ୟକ, ତାହା ପୁରୁଷ ନୁହେଁ, ବରଂ ସିଂହୀ ସଦୃଶ ନାରୀର ଆବଶ୍ୟକ ଯିଏ ଭାରତୀୟ ବିଶେଷତଃ ନାରୀଙ୍କ ନିମନ୍ତେ କାର୍ଯ୍ୟ କରିବେ । ଭାରତ ବର୍ତ୍ତମାନ ମହାନ୍ ନାରୀ ଉତ୍ପନ୍ନ କରିପାରି ନାହିଁ, ଅନ୍ୟ ରାଷ୍ଟ୍ରରୁ ଉଧାର ଆଣିବାକୁ ହେବ । ତୁମର ଶିକ୍ଷା, ଆନ୍ତରିକତା, ପବିତ୍ରତା, ଆମାପ ପ୍ରେମ, ସଂକଳ୍ପ ଏବଂ ସର୍ବୋପରି ତୁମର ଇୟୁରୋପୀୟ ପ୍ରାଚୀନ ଆଇରିସ୍ ଆର୍ଯ୍ୟ ରକ୍ତ ପ୍ରଭାହିତ ନାରୀ ବର୍ତ୍ତମାନ ଆବଶ୍ୟକ । ତଥାପି ବହୁ ଅସୁବିଧା ରହିଛି । ଏହି ଭାରତବର୍ଷରେ ଯେଉଁ ଦୁଃଖ, ଅନ୍ଧବିଶ୍ୱାସ, କୁସଂସ୍କାର ଓ ଦାସତ୍ୱ ରହିଛି, ତାହା ତୁମ ଧାରଣା ବାହାରେ । ଛୁଆଁ-ଅଛୁଆଁ ସଂକୀର୍ଣ୍ଣ ମାନସିକତା ପରିପୂର୍ଣ୍ଣ ଅର୍ଦ୍ଧ-ଉଲଗ୍ନ ପୁରୁଷ ଓ ନାରୀ ଯେଉଁମାନେ ଶ୍ୱେତାଙ୍ଗ ମନୁଷ୍ୟକୁ ଭୟ କରନ୍ତି, ଅଥବା ଘୃଣା କରନ୍ତି, ସେହିମାନଙ୍କ ଗହଣରେ ତୁମକୁ ବାସ କରିବାକୁ ହେବ । ଅନ୍ୟପକ୍ଷରେ

Digitized by srujanika@gmail.com

ଶ୍ୱେତାଙ୍ଗମାନେ ତୁମକୁ ଏକ ଅଖାଡୁଆ ବ୍ୟକ୍ତିଭାବେ କେବଳ ପରିଗଣିତ କରିବେ ନାହିଁ ବରଂ ତୁମର ଗତିବିଧିକୁ ସନ୍ଦେହ ଦୃଷ୍ଟିରେ ଲକ୍ଷ୍ୟ କରିବେ ।

ତା'ବାଦେ ଏଠାକାର ଜଳବାୟୁ ଖୁବ୍ ଗରମ: ଅଧିକାଂଶ ସ୍ଥାନରେ ଆମ ଶିତଋତୁ ତୁମର ଗ୍ରୀଷ୍ମଋତୁ ସହ ସମାନ ଏବଂ ଦକ୍ଷିଣ ଭାରତରେ ଏହା ଅତ୍ୟନ୍ତ ଗରମ । ସହର ବାହାରେ ତୁମେ କୌଣସିଠାରେ ଇୟୁରୋପୀୟ ସୁବିଧା ପାଇବ ନାହିଁ । ଏହିସବୁ ଅସୁବିଧା ସତ୍ତ୍ୱେ, ଏଠାରେ କାର୍ଯ୍ୟ କରିବାକୁ ଯଦି ତୁମର ସାହସ ଅଛି, ତେବେ ତୁମକୁ ମୁଁ ସ୍ୱାଗତ କରୁଛି; ଶତସହସ୍ର ବାର ତୁମକୁ ସ୍ୱାଗତ କରୁଛି । ହଁ ମୋ ସମ୍ବନ୍ଧରେ ତୁମକୁ ଅବଗତ କରାଇ ଦେଉଛି ଯେ ଅନ୍ୟ ସ୍ଥାନ ଭଳି ଏହି ଭାରତବର୍ଷରେ ମୋର ଅସ୍ତିତ୍ୱ ନାହିଁ, ତଥାପି ଯେଉଁ ଟିକକ ମୋର ପ୍ରଭାବ ଏଠାରେ ରହିଛି, ତାହା ତୁମ ସେବାରେ ମୁଁ ନିୟୋଜିତ କରିଦେବି । ତୁମେ ଏଠାକୁ ଆସିବାର ନିଷ୍ପତ୍ତି ନେବା ପୂର୍ବରୁ ତୁମେ ଭଲ ଭାବରେ ଚିନ୍ତାକର । ଯଦି ତୁମେ କାର୍ଯ୍ୟରେ ଅକୃତକାର୍ଯ୍ୟ ହୁଅ କିମ୍ବା ବିରକ୍ତ ହୋଇଯାଅ, ମୋ ତରଫରୁ ପ୍ରତିଶ୍ରୁତି ଦେଉଛି, ମୁଁ ତୁମ ପଛରେ ମୃତ୍ୟୁ ପର୍ଯ୍ୟନ୍ତ ଠିଆ ହେବି, ତୁମେ ଭାରତ ପାଇଁ କାର୍ଯ୍ୟ କରିବ କିମ୍ବା ନ କରିବ, ତୁମେ ବେଦାନ୍ତକୁ ପରିତ୍ୟାଗ କରିବ କିମ୍ବା ଆପଣେଇ ନେବ, ସବୁ ପରିସ୍ଥିତିରେ ତୁମ ପଶ୍ଚାତରେ ମୁଁ ଠିଆ ହେବି ।

- ୧ -

*ତାଙ୍କର ଶରଣ ନିଅ, ତାଙ୍କୁ ଅନୁସରଣ କର । ବୁଦ୍ଧତ୍ୱ ପ୍ରାପ୍ତି ପୂର୍ବରୁ*
*ଯିଏ ଅନ୍ୟମାନଙ୍କ ହିତପାଇଁ ପାଞ୍ଚଶହ ବାର ଜନ୍ମଗ୍ରହଣ କରିଥିଲେ,*
*ସେହି ମହାକାରୁଣିକ ବୁଦ୍ଧଙ୍କ ନିକଟରେ ଶରଣ ନିଅ ପୁତ୍ରୀ ।*

୧୮୯୮ ମାର୍ଚ୍ଚ ୨୫ ତାରିଖରେ ରାମକୃଷ୍ଣ ମିଶନରେ ତାଙ୍କୁ ଏକ ଉତ୍ସର୍ଗିତ ସନ୍ନ୍ୟାସୀନୀ ଭାବେ ସ୍ୱାମୀଜୀ ଦୀକ୍ଷିତ କଲେ । ତାଙ୍କର ନାମକରଣ କଲେ ନିବେଦିତା । ଦୀକ୍ଷା ଉତ୍ସବ ଅନ୍ତେ ମହାକାରୁଣିକ ବୁଦ୍ଧଙ୍କ ପାଦରେ ପୁଷ୍ପ ଅର୍ପଣ କରିବା ଲାଗି ତାଙ୍କୁ ନିର୍ଦ୍ଦେଶ ଦେଲେ ଓ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ତାଙ୍କର ଶରଣ ନିଅ, ତାଙ୍କୁ ଅନୁସରଣ କର । ବୁଦ୍ଧତ୍ୱ ପ୍ରାପ୍ତି ପୂର୍ବରୁ ଯିଏ ଅନ୍ୟମାନଙ୍କ ହିତପାଇଁ ପାଞ୍ଚଶହ ବାର ଜନ୍ମଗ୍ରହଣ କରିଥିଲେ, ସେହି ମହାକାରୁଣିକ ବୁଦ୍ଧଙ୍କ ନିକଟରେ ଶରଣ ନିଅ ପୁତ୍ରୀ ।" ନିଜର ପରମଗୁରୁ ଶ୍ରୀରାମକୃଷ୍ଣଙ୍କ ପାଦରେ ପୁଷ୍ପ ନିବେଦନ ନ କରି ପରମକାରୁଣିକ ବୁଦ୍ଧଙ୍କ ପାଦରେ ଅର୍ପଣ କରିବା ଲାଗି ତାଙ୍କୁ ସେ କାହିଁକି କହିଲେ ? ଜଣକ ମନରେ ନିଶ୍ଚିତଭାବେ ଏଭଳି ପ୍ରଶ୍ନ ଉଠିବା ସ୍ୱାଭାବିକ । କିନ୍ତୁ ଏଠାରେ ସ୍ମରଣ ରଖିବାକୁ ହେବ ଯେ ଜଗତର ହିତପାଇଁ ନିବେଦିତାଙ୍କୁ ଭବିଷ୍ୟତରେ ବହୁ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ ଏବଂ ବୁଦ୍ଧ ଯେପରି ରାଜ୍ୟ, ସିଂହାସନ, ପରିବାର ଭଳି ସମସ୍ତ ସାଂସାରିକ ମୋହମାୟା ବନ୍ଧନ ପରିତ୍ୟାଗ କରି ବହୁଜନ ହିତାୟ ଓ ବହୁଜନ ସୁଖାୟ ନିମନ୍ତେ କାର୍ଯ୍ୟ କରିଥିଲେ, ତାଙ୍କୁ ସେଭଳି କରିବାକୁ ପଡ଼ିବ । ପ୍ରାୟ ଏକ ଦଶନ୍ଧି ପୂର୍ବରୁ ସେ ସ୍ୱୟଂ ଘୋଷଣା କରିଥିଲେ । (ଗାଜିପୁରରୁ ସେ ସ୍ୱାମୀ ଅଖଣ୍ଡାନନ୍ଦଙ୍କ ନିକଟକୁ ଫେବୃଆରୀ ୧୮୯୦ରେ ଲେଖିଥିବା ପତ୍ର) ଯେ "ଭଗବାନ

Digitized by srujanika@gmail.com

ବୁଦ୍ଧ ମୋର ଇଷ୍ଟ ମୋ ଈଶ୍ୱର । ସେ ଈଶ୍ୱରଙ୍କ ସମ୍ବନ୍ଧରେ କୌଣସି ତତ୍ତ୍ୱ ପ୍ରଚାର କରି ନ ଥିଲେ - ସେ ଥିଲେ, ସ୍ୱୟଂ ଈଶ୍ୱର । ସୁତରାଂ ଜଣେ ବିଦେଶିନୀ ନାରୀଙ୍କର ତାର୍କିକ ଚିନ୍ତାଧାରା ଭଗବାନ ବୁଦ୍ଧଙ୍କର ତତ୍ତ୍ୱକୁ ଭଲ ଭାବରେ ଧାରଣ କରିପାରିବ ବୋଲି ସ୍ୱାମୀଜୀ ଅବଗତ ଥିଲେ । ସେଥିପାଇଁ ସେ ବୋଧହୁଏ ତାଙ୍କୁ ବୁଦ୍ଧଙ୍କ ପାଦରେ ପୁଷ୍ପ ନିବେଦନ କରିବା ପାଇଁ କହିଥିଲେ ।

ଏଠାରେ କହିବା ବାହୁଲ୍ୟ ଯେ ନାରୀକୁ ସନ୍ନ୍ୟାସୀ ଧର୍ମରେ ଦୀକ୍ଷିତ କରିବା କ୍ଷେତ୍ରରେ ସ୍ୱାମୀଜୀ ଭଗବାନ ବୁଦ୍ଧଙ୍କ ଅପେକ୍ଷା ଅଧିକ ଆଗ୍ରହୀ ଥିଲେ, ଅବଶ୍ୟ ବୁଦ୍ଧଙ୍କ ସମୟ ଓ ସ୍ୱାମୀ ବିବେକାନନ୍ଦଙ୍କ ସମୟ ମଧ୍ୟରେ ରହିଛି ଆକାଶ - ପାତାଳ ପ୍ରଭେଦ । ବୌଦ୍ଧ ସଂଘରେ ନାରୀର କୌଣସି ଭୂମିକା ନ ଥିଲା, ବରଂ ସଂଘର ଶୃଙ୍ଖଳା ପ୍ରତି ନାରୀର ଉପସ୍ଥିତି ଏକ ବିନିଷ୍ଟକାରୀ ଶକ୍ତି ଭାବେ ବିପଦ ସୃଷ୍ଟି କରିପାରେ ବୋଲି ବୁଦ୍ଧ ପ୍ରଥମେ ଭାବିଥିଲେ । ବୁଦ୍ଧଙ୍କର ମାଉସୀ ଗୌତମୀ ମହାପ୍ରଜାପତି ଯିଏ ନିଜ କୋଳରେ ବୁଦ୍ଧଙ୍କୁ ଧରି ପାଳନପୋଷଣ କରିଥିଲେ, ସେ ଯେତେବେଳେ ଧର୍ମ ଓ ସଂଘରେ ଦୀକ୍ଷିତ ହେବାପାଇଁ ତାଙ୍କୁ କହିଲେ, ସେତେବେଳେ ବୁଦ୍ଧ ସ୍ପଷ୍ଟ ଭାଷାରେ ତାଙ୍କୁ ମନା କରିଦେଇଥିଲେ । ପରବର୍ତ୍ତୀ ସମୟରେ ପୁନଶ୍ଚ ଗୌତମୀ ମହାପ୍ରଜାପତି ନିଷ୍ପତ୍ତିର ପୁନର୍ବିଚାର ପାଇଁ ତିନିବାର ବୁଦ୍ଧଙ୍କୁ ଅନୁରୋଧ କରିଥିଲେ ବି ବୁଦ୍ଧ ତାଙ୍କର ଅନୁରୋଧକୁ ତ୍ରିବାର ପ୍ରତ୍ୟାଖ୍ୟାନ କରିଦେଇଥିଲେ । କେତେମାସ ପରେ, କପିଳବାସ୍ତୁରୁ ଚାଲି ଚାଲି ଗୌତମି ମହାପ୍ରଜାପତି, ଦଳେ ମହିଳାଙ୍କୁ ସାଙ୍ଗରେ ଧରି, ବୈଶାଳୀରେ ପହଞ୍ଚିଥିଲେ । ପାଦ ତାଙ୍କର ପଥଶ୍ରାନ୍ତରେ ଫୁଲି ରକ୍ତାକ୍ତ ହୋଇଥିଲା । ଲଣ୍ଡିତ ମସ୍ତକ ହୋଇ, ଗୈରିକ ବସ୍ତ୍ର ପରିଧାନ କରିଥିଲେ । ସେ ପୁନଶ୍ଚ ସଂସାରତ୍ୟାଗୀ ସନ୍ନ୍ୟାସୀ ଭାବରେ ତାଙ୍କୁ ଧର୍ମ ଓ ସଂଘରେ ପ୍ରବେଶ କରିବା ଲାଗି ବୁଦ୍ଧଙ୍କୁ ବିନମ୍ର ଅନୁରୋଧ କରିଥିଲେ, ତଥାପି ବୁଦ୍ଧ ରାଜି ହେଲେ ନାହିଁ ।

ସର୍ବଶେଷରେ ବୁଦ୍ଧଙ୍କର ବ୍ୟକ୍ତିଗତ ଅନ୍ତରଙ୍ଗ ସେବକ ତଥା ଭ୍ରାତା ଆନନ୍ଦ କ୍ରନ୍ଦନରତ ଗୌତମୀଙ୍କୁ ଦେଖି ଦୁଃଖରେ ମ୍ରିୟମାଣ ହୋଇଗଲେ । ସେ ବୁଦ୍ଧଙ୍କୁ କହିଲେ, ''ପ୍ରଭୁ ମହା ପ୍ରଜାପତି ଗୌତମି ଆପଣଙ୍କର ମା, ଆପଣଙ୍କୁ କୋଳରେ ଧରି ବଢ଼ାଇଛନ୍ତି, ଦୁଧ ପିଆଇଛନ୍ତି । ଆପଣଙ୍କର ଶୈଶବକାଳରେ, ମାତୃ ବିୟୋଗ ପରେ, ଆପଣଙ୍କର ମଳମୂତ୍ର ସଫା କରିଛନ୍ତି । ପ୍ରଭୋ, ଆପଣ ଦୟାପରବଶ ହୋଇ ତାଙ୍କୁ ଧର୍ମ ଓ ସଂଘରେ ଦୀକ୍ଷିତ କରାନ୍ତୁ ।'' ବୁଦ୍ଧ ଦ୍ୱିଧାସହକାରେ ରାଜିହେଲେ କିନ୍ତୁ ଆଠଟି ସର୍ତ୍ତ ରଖିଲେ ଯାହା ବୌଦ୍ଧ ନିୟମରେ ଅଷ୍ଟସର୍ତ୍ତ ଭାବେ ପରିଚିତ । ସର୍ତ୍ତଗୁଡ଼ିକ ଏଭଳି କଠୋର ଥିଲା ଯାହା ଭିକ୍ଷୁ ସମ୍ମୁଖରେ ଭିକ୍ଷୁଣୀଙ୍କୁ ପ୍ରତି କ୍ଷେତ୍ରରେ ଶିର ଅବନତ କରିବାକୁ ପଡ଼ିବ । ତଥାପି ଗୌତମୀ ସେହି କଠୋର ଅଷ୍ଟସର୍ତ୍ତକୁ ମାନି ନେଲେ ଏବଂ ତାଙ୍କୁ ସଂଘର ଧର୍ମରେ ଦୀକ୍ଷିତ କରାଗଲା । ବୁଦ୍ଧଙ୍କର ଏତାଦୃଶ ନିଷ୍ପତ୍ତି ପକ୍ଷପାତ ନୀତି ଭାବେ ପରିଦୃଷ୍ଟ ହୁଏ । ନିଜର ନିଷ୍ପତ୍ତି ସମ୍ବନ୍ଧରେ ଭଗବାନ ବୁଦ୍ଧ ପରବର୍ତ୍ତୀ ସମୟରେ ବୁଝାଇ ଆନନ୍ଦଙ୍କୁ କହିଥିଲେ -

''ଯଦି ମହିଳାଙ୍କୁ ଧର୍ମ ଓ ସଂଘ ମଧ୍ୟରେ ପ୍ରବେଶ କରିବା ଲାଗି ଅନୁମତି ଦିଆଯାଇ ନ ଥାନ୍ତା, ତେବେ ବ୍ରହ୍ମଚର୍ଯ୍ୟ ରୂପକ ଧାର୍ମିକ ମାର୍ଗ ବହୁକାଳ ପର୍ଯ୍ୟନ୍ତ ତିଷ୍ଠି ରହିଥାନ୍ତା । ବୌଦ୍ଧଧର୍ମ

Digitized by srujanika@gmail.com

ହଜାର ବର୍ଷ ଧରି ବଞ୍ଚି ରହିଥାନ୍ତା, ଯେହେତୁ ବର୍ତ୍ତମାନ ଧର୍ମ ଓ ସଂଘରେ ନାରୀଙ୍କୁ ଦୀକ୍ଷିତ କରାଯାଇଛି, ତେଣୁ ଏହି ଧର୍ମ ମାର୍ଗ ବେଶିଦିନ ତିଷ୍ଠି ରହିପାରିବ ନାହିଁ । ଆନନ୍ଦ, ଏହି ସତ୍ୟମାର୍ଗ କେବଳ ପାଞ୍ଚଶହ ବର୍ଷ ତିଷ୍ଠି ରହିବ । ଉଦାହରଣ ସ୍ୱରୂପ ଯଦି ଗୋଟିଏ ପରିବାରରେ ପୁରୁଷ ଅପେକ୍ଷା ଅଧିକ ମହିଳା ବାସ କରନ୍ତି, ସେହି ଗୃହ ଦସ୍ୟୁମାନଙ୍କ ଦ୍ୱାରା ଅତିଶୀଘ୍ର ଲୁଣ୍ଠିତ ହୋଇ ଭାଙ୍ଗିଯାଏ, ସେହିଭଳି ସତ୍ୟମାର୍ଗରେ ବହୁ ମହିଳା ପ୍ରବେଶ କଲେ, ତାହା ବେଶିକାଳ ତିଷ୍ଠି ରହିପାରିବ ନାହିଁ ।''

- ୨ -

*ନାରୀ ଜାତିର ଅଭ୍ୟୁଦୟ ନ ହେଲେ ଜଗତର କଲ୍ୟାଣ ଅସମ୍ଭବ । ଗୋଟିଏ ଡେଣାରେ ପକ୍ଷୀର ଉଡ୍ଡୟନ ସମ୍ଭବ ନୁହେଁ । ସେଥିପାଇଁ ଶ୍ରୀରାମକୃଷ୍ଣାବତାରରେ ନାରୀ-ଗୁରୁ ଗ୍ରହଣ, ନାରୀଭାବ ସାଧନ ଓ ମାତୃଭାବ ପ୍ରଚାର ହୋଇଥିଲା । ... ସୁତରାଂ ନାରୀ-ମଠ ସ୍ଥାପନ ପାଇଁ ମୋର ପ୍ରଥମ ଉଦ୍ୟୋଗ । ଉକ୍ତ ମଠ ଗାର୍ଗୀ ଓ ମୈତ୍ରେୟୀ ଅପେକ୍ଷା ଆହୁରି ଉଚ୍ଚତର ଭାବାପନ୍ନ ନାରୀକୁଳର ଆକାର ସ୍ୱରୂପ ହେବ ।*

ବୁଦ୍ଧଙ୍କର ମହାପରିନିର୍ବାଣ ଉତ୍ତାରୁ ଯେଉଁ ପ୍ରଥମ ଧର୍ମସଭା ଅନୁଷ୍ଠିତ ହୋଇଥିଲା, ସେହି ସଭାରେ ଧର୍ମ ଓ ସଂଘରେ ନାରୀଙ୍କୁ ପ୍ରବେଶ କରାଇବା ଲାଗି ଭଗବାନ ବୁଦ୍ଧଙ୍କ ଉପରେ ଚାପ ପ୍ରୟୋଗ କରିଥିବା ଅଭିଯୋଗରେ ଆନନ୍ଦଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇଥିଲା । ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଯଦି ସେହି ପ୍ରଥମ ଧର୍ମସଭା ପୁଣିଥରେ ଅନୁଷ୍ଠିତ ହୋଇଥାନ୍ତା, ସେମାନେ ସ୍ୱାମୀ ବିବେକାନନ୍ଦଙ୍କୁ ତାହା ଅପେକ୍ଷା ଗୁରୁତର ଅଭିଯୋଗରେ ଅଭିଯୁକ୍ତ କରିଥାନ୍ତେ । କାହିଁକିନା ଭଗବାନ ବୁଦ୍ଧଙ୍କୁ ନିଜର ଇଷ୍ଟଭାବେ ଗ୍ରହଣ କରି ନାରୀମାନଙ୍କ ଲାଗି ଏକ ମଠ ସ୍ଥାପନ ସକାସେ ସେ ଘୋଷଣା କରିଥିଲେ । ଉକ୍ତ ମଠରେ ସନ୍ନ୍ୟାସୀଙ୍କ ପରି ସନ୍ନ୍ୟାସୀନୀଙ୍କୁ ସମାନ ବ୍ୟବସ୍ଥା ଓ ସୁବିଧା ମିଳିବ ଏବଂ କୌଣସି କ୍ଷେତ୍ରରେ ପୁରୁଷଙ୍କ ଠାରୁ ମହିଳା ନ୍ୟୁନ ହେବେନାହିଁ ବୋଲି ସ୍ୱାମୀଜୀ ସ୍ପଷ୍ଟ ଭାଷାରେ ଘୋଷଣା କରିଥିଲେ ।

ବୁଦ୍ଧଙ୍କ ସମ ଅନାତ୍ମା ପ୍ରଚାର ନ କରି ଏକ ଶାଶ୍ୱତ ଆତ୍ମାର ବିଦ୍ୟମାନ ସମ୍ବନ୍ଧରେ ସ୍ୱାମୀଜୀ କହିଥିଲେ । ଅଦ୍ୱୈତ ବେଦାନ୍ତର ଚରମ ଉପଲବ୍ଧି ହେଉଛି ସେହି ଶାଶ୍ୱତ ଆତ୍ମା । ବୁଦ୍ଧଙ୍କର ଅନାତ୍ମା ହିଁ ସେହି ଏକଇ ଶାଶ୍ୱତ ଆତ୍ମା । ବୁଦ୍ଧଙ୍କୁ ତାଙ୍କର ଅନୁଗାମୀ ବୁଝିପାରି ନ ଥିଲେ । ସ୍ୱାମୀଜୀଙ୍କୁ ମଧ୍ୟ ନିଜର ଗୁରୁଭ୍ରାତାଗଣ ବୁଝିପାରି ନ ଥିଲେ । ତାହା ନ ହୋଇଥିଲେ ସ୍ୱାମୀଜୀ ନିଜର ଗୁରୁଭ୍ରାତାଙ୍କୁ ତିରସ୍କାର କରି କହିଥାନ୍ତେ କି ? ତୁମ ରାମକୃଷ୍ଣଙ୍କୁ କିଏ ପଚାରେ ? ତୁମେ ଭାବୁଛ ଯେ ତୁମେ ତାଙ୍କୁ ଭଲ ଭାବରେ ଜାଣିଛ, ତୁମେ ଯାହା ଜାଣିଛ ତାହା ଅତିକ୍ଷୁଦ୍ର ।'' ଠିକ୍ ସେହିଭଳି ସ୍ୱାମୀ ବିବେକାନନ୍ଦ ପ୍ରଥମ ବୌଦ୍ଧ ସଭାର ଭିକ୍ଷୁମାନଙ୍କୁ କହିଥାନ୍ତେ, ତୁମର ବୁଦ୍ଧଙ୍କୁ

Digitized by srujanika@gmail.com

କିଏ ପଚାରେ ? ତୁମେ ସେହି ମହାମାନବଙ୍କୁ ଗୁଚ୍ଛାଏ ତତ୍ତ୍ୱ ଭିତରେ ସୀମିତ କରି ରଖିଛ । ନିଜର ତତ୍ତ୍ୱ ଅପେକ୍ଷା ସମସ୍ତ ଗୁଣରେ ଅଧିକ ଥିଲେ ସ୍ୱୟଂ ଭଗବାନ ବୁଦ୍ଧ ।

ସ୍ୱାମୀଜୀ ପୁନଶ୍ଚ କହିଲେ : ''ନିର୍ବାଣ ତତ୍ତ୍ୱ ତାଙ୍କ ଉପରେ କ'ଣ ବା ସ୍ୱତନ୍ତ୍ର ମହାନତା ପ୍ରଦାନ କରିଛି ? ତାଙ୍କର ଅପ୍ରତିଦ୍ୱନ୍ଦୀ କରୁଣା ଭିତରେ ନିହିତ ତାଙ୍କର ମହାନତା । ସମାଧିର ଉଚ୍ଚସ୍ତର ଭଳି ଯେଉଁ କଥାଗୁଡ଼ିକ ତାଙ୍କ ଧର୍ମରେ ରହିଛି, ସେସବୁ ବେଦରେ ପୂର୍ବରୁ ବର୍ଣ୍ଣିତ ହୋଇଥିଲା । କେବଳ ବେଦର ଯାହା ନାହିଁ, ତାହା ହେଉଛି ତାଙ୍କର ବିବେକ ଓ ହୃଦୟ ଯାହା ବିଶ୍ୱ ଇତିହାସ ପୃଷ୍ଠାରେ ବର୍ଣ୍ଣିତ ବିବେକ ଓ ହୃଦୟ ସହ ତୁଳନା ହୋଇପାରିବ ନାହିଁ ।'' ସେଥିପାଇଁ ସ୍ୱାମୀଜୀ କହି ଥିଲେ, ''ହେ ଜ୍ଞାନଦୀପ୍ତ ବୁଦ୍ଧ, ତୁମର ଅପ୍ରତିଦ୍ୱନ୍ଦୀ ହୃଦୟରେ ବୈଶାଳୀର ରାଜନର୍ତ୍ତକୀ ଆମ୍ରପଲ୍ଲୀଙ୍କ ଗୃହକୁ ଥରେ ମାତ୍ର ଯିବା ବ୍ୟତୀତ ଅନ୍ୟ ନାରୀଙ୍କୁ କାହିଁକି ସ୍ଥାନ ଦେଲେ ନାହିଁ ?'' ଅଦ୍ୱୈତ ବେଦାନ୍ତ ପୁରୁଷ ସିଂହ ବିବେକାନନ୍ଦଙ୍କ ହୃଦୟରେ ତିଳେମାତ୍ର ପକ୍ଷପାତିତା ନ ଥିଲା - ଉଭୟ ନର ଓ ନାରୀ ସମାନ । ବିଶେଷତଃ ନାରୀ ଜାଗରଣ ପାଇଁ ସେ ବିଶେଷ ଧ୍ୟାନ ଦେଇଥିଲେ ।

ସ୍ୱାମୀଜୀଙ୍କ ଦ୍ୱାରା ଦୀକ୍ଷିତ ହେବାର ଦେଢ଼ବର୍ଷ ପରେ ଭଗ୍ନୀ ନିବେଦିତା ସୁଶ୍ରୀ ଯୋଶେଫିନ୍ ମେକ୍‌ଲିଓଡ଼ଙ୍କ ନିକଟକୁ ସ୍ୱାମୀଜୀଙ୍କର ବିଶାଳ କାରୁଣ୍ୟ ହୃଦୟ ସମ୍ବନ୍ଧରେ ଏକ ଚିଠି ଲେଖିଥିଲେ : ହେ ଭଗବାନ, ସ୍ୱାମୀଜୀ କିଭଳି ନାରୀତ୍ୱର ଆଦର୍ଶ ଧାରଣ କରିଛନ୍ତି ! ନିଶ୍ଚିତ ଭାବରେ ଆଉ କିଏ ତାଙ୍କ ଭଳି ହେବନାହିଁ, ଏପରିକି ସେକ୍ସପିଅର ନୁହେଁ । ସେ ମୋତେ ଯାହା କହିଛନ୍ତି ତାହା ଯେତେବେଳେ ମୁଁ ଚିନ୍ତା କରେ, ସେତେବେଳେ ମୋର ଉପଲବ୍ଧି ହୁଏ ଯେ ତାଙ୍କର ପ୍ରତ୍ୟେକ ଶବ୍ଦ ବିଶ୍ୱର ସମଗ୍ର ନାରୀଜାତିର ଭବିଷ୍ୟତ ପାଇଁ ବିଶ୍ୱାସ - ବିଶେଷତଃ ତାଙ୍କ ଦେଶର ନାରୀଜାତି ପାଇଁ ମୁଖ୍ୟ । ଅବଶ୍ୟ ଏହା ଏକ ନଗଣ୍ୟ ବୋଲି ପ୍ରତୀୟମାନ ହୋଇପାରେ, କିନ୍ତୁ ଜଣେ ଏହାପାଇଁ ପ୍ରକୃତରେ ଯୋଗ୍ୟ କିମ୍ୱା ନୁହେଁ ତାହା ଅଲଗା କଥା, କିନ୍ତୁ ସେ ଏଭଳି ମହତ୍ ଚିନ୍ତା ସୃଷ୍ଟି କରିବା ଲାଗି ଏଭଳି ବିଶାଳ ହୃଦୟ ପାଇଛନ୍ତି ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ସମଗ୍ର ନାରୀଜାତି ଭିତରେ ସେ ଦର୍ଶନ କରୁଥିଲେ ମହାମାୟାଙ୍କର ଛବି । ଭାରତରେ ନାରୀ ଜାତିର ଉତ୍ଥାନ ଆଣିଦେବ ଏକ ନୂତନ ଭାରତ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ସେ ନିଜର ମାତା ଭୁବନେଶ୍ୱରୀ ଦେବୀଙ୍କ ପାଇଁ ଯେତିକି ଚିନ୍ତିତ ଥିଲେ, ତାହାଠାରୁ ଅଧିକ ଚିନ୍ତିତ ଥିଲେ ଶ୍ରୀରାମକୃଷ୍ଣଙ୍କର ଲୀଳା ସହଚରୀ ସାରଦାଦେବୀଙ୍କ ପାଇଁ; କିପରି ତାଙ୍କର ଅବସ୍ଥାନ ପାଇଁ ଏକ ସୁରକ୍ଷିତ ଘରଟିଏ ନିର୍ମାଣ କରିବେ । ୧୮୯୪ ମସିହାରେ ଦିବ୍ୟଜନନୀ ସାରଦାଦେବୀଙ୍କ ପାଇଁ ବ୍ୟସ୍ତ ହୋଇ ସେ ଖଣ୍ଡିଏ ଚିଠି ସ୍ୱାମୀ ଶିବାନନ୍ଦ (ତାରକ)ଙ୍କ ପାଖକୁ ଲେଖିଥିଲେ : ''ମା'ଙ୍କ ବାସସ୍ଥାନ ନିର୍ମାଣ ପାଇଁ ମୁଁ ଅନ୍ତତଃପକ୍ଷେ ସାତ ହଜାର ଟଙ୍କା ପଠାଇପାରିବି । ଯଦି ତାଙ୍କ ପାଇଁ ପ୍ରଥମେ ବାସସ୍ଥାନର ବ୍ୟବସ୍ଥା ହୋଇଯାନ୍ତା, ତାହାଲେ ଆଉ କୌଣସି ଜିନିଷ ପାଇଁ ମୋର ପରବାୟ ନାହିଁ । ... ତୁମେ ଏପର୍ଯ୍ୟନ୍ତ ମା'ଙ୍କ ଜୀବନର ଅଦ୍ଭୁତ ମହତ୍ତ୍ୱ ବୁଝିପାରିନାହଁ,

Digitized by srujanika@gmail.com

ତୁମମାନଙ୍କ ମଧ୍ୟରୁ କେହି ଜଣେ ବି ନୁହେଁ । କିନ୍ତୁ ଧୀରେ ଧୀରେ ତୁମେ ବୁଝିବ । ଶକ୍ତି ବିନା ବିଶ୍ୱର ପୁନରୁତ୍ଥାନ କେବେ ସମ୍ଭବ ନୁହେଁ । ସବୁ ରାଷ୍ଟ୍ରଠାରୁ ଆମ ଦେଶ କାହିଁକି ଦୁର୍ବଳ ଓ ପଛୁଆ ହୋଇ ରହିଛି ? କାରଣ ଏଠାରେ ମାତୃଶକ୍ତିକୁ ଅବମାନନା କରାଯାଇଛି । ଭାରତରେ ଅଦ୍ଭୁତ ଶକ୍ତି ସଞ୍ଚାରଣ ନିମନ୍ତେ ମା'ଙ୍କର ଜନ୍ମ ଏବଂ ତାଙ୍କୁ କେନ୍ଦ୍ର କରି ବିଶ୍ୱରେ ପୁଣିଥରେ ଅନେକ ଗାର୍ଗି ଓ ମୈତ୍ରେୟୀ ଜନ୍ମଗ୍ରହଣ କରିବେ ...ତେଣୁ ମା'ଙ୍କର ମଠ ମୁଁ ପ୍ରଥମେ ଚାହେଁ ... ଶକ୍ତିଙ୍କର କରୁଣା ବିନା କୌଣସି କାର୍ଯ୍ୟ ହୋଇପାରିବ ନାହିଁ ... ସୁତରାଂ ଆମକୁ ମା'ଙ୍କ ଲାଗି ଗୋଟିଏ ମଠ ସ୍ଥାପନ କରିବାକୁ ପଡ଼ିବ । ପ୍ରଥମେ ମା (ଶ୍ରୀ ସାରଦା ଦେବୀ) ଏବଂ ତାଙ୍କର କନ୍ୟା ସନ୍ତାନଗଣଙ୍କ ପାଇଁ ମଠ, ତା'ପରେ ପିତା (ଶ୍ରୀରାମକୃଷ୍ଣ) ଏବଂ ତାଙ୍କର ପୁତ୍ର ସନ୍ତାନଗଣଙ୍କ ପାଇଁ ମଠ । ତୁମେ ଏହା ବୁଝିପାରୁଛ ତ ? .... ମୋ ପାଇଁ ଶ୍ରୀରାମକୃଷ୍ଣଙ୍କ ଅପେକ୍ଷା ମା'ଙ୍କର ଆଶୀର୍ବାଦ ସହସ୍ର ଗୁଣରେ ମୂଲ୍ୟବାନ ... ମୋତେ ଦୟାକରି କ୍ଷମା କରିବ, ମୁଁ ମା'ଙ୍କ ପାଇଁ ସାମାନ୍ୟ ମାତ୍ର ଧର୍ମାନ୍ଧ ହୋଇଯାଇଛି । ... ଭାଇ, ଜୀବନ୍ତ ଦୁର୍ଗାଙ୍କୁ କିପରି ପୂଜା କରାଯାଏ ତାହା ମୁଁ ଦେଖାଇ ଦେବି ଏବଂ ତା'ପରେ ମୋ ନାଁର ସାର୍ଥକତା ପାଇଁ ଯୋଗ୍ୟ ହେବି ।

ସ୍ୱାମୀଜୀଙ୍କର ନାରୀ ଜାତିର ଉତ୍ଥାନ ପାଇଁ ଚିନ୍ତା ୧୮୯୫ ମସିହାରେ ସ୍ୱାମୀ ରାମକୃଷ୍ଣାନନ୍ଦଙ୍କ ନିକଟକୁ ଲିଖିତ ପତ୍ରରେ ପୁନର୍ବାର ପ୍ରକଟିତ ହୋଇଥିଲା । ନାରୀ ଜାତିର ଅଭ୍ୟୁଦୟ ନ ହେଲେ ଜଗତର କଲ୍ୟାଣ ଅସମ୍ଭବ । ଗୋଟିଏ ଡେଣାରେ ପକ୍ଷୀର ଉଡ୍ଡୟନ ସମ୍ଭବ ନୁହେଁ । ସେଥିପାଇଁ ଶ୍ରୀରାମକୃଷ୍ଣାବତାରରେ ନାରୀ-ଗୁରୁ ଗ୍ରହଣ, ନାରୀଭାବ ସାଧନ ଓ ମାତୃଭାବ ପ୍ରଚାର ହୋଇଥିଲା । ... ସୁତରାଂ ନାରୀ-ମଠ ସ୍ଥାପନ ପାଇଁ ମୋର ପ୍ରଥମ ଉଦ୍ୟୋଗ । ଉକ୍ତ ମଠ ଗାର୍ଗୀ ଓ ମୈତ୍ରେୟୀ ଅପେକ୍ଷା ଆହୁରି ଉଚ୍ଚତର ଭାବାପନ୍ନ ନାରୀକୁଳର ଆକାର ସ୍ୱରୂପ ହେବ ।

ମିସ୍ ମାର୍ଗେରେଟ୍ ନୋବଲ୍‌କୁ ବ୍ରହ୍ମଚାରିଣୀ ମାର୍ଗରେ ଦୀକ୍ଷିତ କରି, ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ ଘଟାଇ, ପ୍ରାଚୀନ ବେଦ ପରମ୍ପରାର ଶିକ୍ଷା ସମଗ୍ର ନାରୀ ଜାତି ଭିତରେ ପୁନର୍ବାର ଉନ୍ମେଷ କରାଇବା ପାଇଁ ଏହା ଥିଲା ସ୍ୱାମୀଜୀଙ୍କର ଅଯାରମ୍ଭ । ବିଶେଷ କରି ଭାରତୀୟ ନାରୀଙ୍କୁ ଶିକ୍ଷିତ କରିବା ଲାଗି ସେ ଭଗ୍ନୀ ନିବେଦିତାଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କଲେ । ନାରୀ ଶିକ୍ଷାର ଏକ ନୂତନ ଦିଗନ୍ତ ଉନ୍ମୁକ୍ତ ହେଲା ।

ଏହି ସମୟରେ ଶ୍ରୀରାମକୃଷ୍ଣଙ୍କର ଜଣେ ଅନ୍ତରଙ୍ଗ ଗୃହୀଭକ୍ତ ବାବୁ ନବଗୋପାଳ ଘୋଷ ନିଜର ହାଓଡ଼ାଠାରେ ଅବସ୍ଥିତ ନବନିର୍ମିତ ଗୃହରେ ଶ୍ରୀରାମକୃଷ୍ଣ ପରମହଂସଙ୍କର ମୂର୍ତ୍ତିଟିଏ ସ୍ଥାପନ କଲେ । ଏହି ମୂର୍ତ୍ତି ସ୍ଥାପନ ଉତ୍ସବରେ ସେ ସ୍ୱାମୀଜୀ ତଥା ସମସ୍ତ ସନ୍ନ୍ୟାସୀ ଓ ବ୍ରହ୍ମଚାରୀଙ୍କୁ ନିମନ୍ତ୍ରଣ କଲେ । ସ୍ୱାମୀଜୀ ସ୍ୱୟଂ ମୂର୍ତ୍ତି ସ୍ଥାପନ କରିବେ ଥିଲା ତାଙ୍କର ବିନୀତ ଅନୁରୋଧ । ସ୍ୱାମୀଜୀ ତାଙ୍କର ନିମନ୍ତ୍ରଣ ସ୍ୱୀକାର କରିବାରୁ ବାବୁ ନବଗୋପାଳ ଅତ୍ୟନ୍ତ ଆନନ୍ଦିତ ହେଲେ । ନିର୍ଘଣ୍ଟ ଶୁଭ ମୁହୂର୍ତ୍ତରେ ସ୍ୱାମୀଜୀ ନିଜର ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣଙ୍କ ସହ ସେଠାରେ ଉପନୀତ

Digitized by srujanika@gmail.com

ହେବାରୁ ଗୃହକର୍ତ୍ତା ସେମାନଙ୍କୁ ଶଙ୍ଖ, ହୁଳହୁଳି, ଝାଞ୍ଜ, କରତାଳ ବଜାଇ ସ୍ୱାଗତ କଲେ । ଶଙ୍ଖ ମଲମଲ୍ ପଥରରେ ନିର୍ମିତ ଉପାସନା ଗୃହ ଏବଂ ଅନ୍ୟାନ୍ୟ ପୂଜା ଉପକରଣ ଓ ଆସ୍ଥାନ ଦେଖି ସ୍ୱାମୀଜୀ ଆନନ୍ଦ ପ୍ରକାଶ କଲେ । ଗୃହକର୍ତ୍ତା ହାତଯୋଡ଼ି ସ୍ୱାମୀଜୀଙ୍କୁ ଅନୁନୟ ବିନୟ ହୋଇ କହିଲେ, ''ସ୍ୱାମୀଜୀ ଆମେ ଅତ୍ୟନ୍ତ ଗରିବ ଏବଂ ପ୍ରଭୁଙ୍କର ଯଥୋଚିତ ସେବା କରିବା ଆମପକ୍ଷେ ବି ଦୁଷ୍କର, ଆମକୁ ଆଶୀର୍ବାଦ କରନ୍ତୁ ସ୍ୱାମୀଜୀ ଯେପରି ଆମେ ଭକ୍ତି ସହକାରେ ପ୍ରଭୁଙ୍କର ସେବା କରିପାରିବୁ ।

- ୩ -

*ହେ ରାମକୃଷ୍ଣ, ତୁମକୁ ମୋର ପ୍ରଣାମ । ତୁମେ ଧର୍ମର ପୁନଃସ୍ଥାପକ, ତୁମେ ହିଁ ସର୍ବଧର୍ମର ମୂର୍ତ୍ତିମନ୍ତ ପ୍ରତୀକ । ସର୍ବ ଅବତାରମାନଙ୍କ ଭିତରେ ତୁମେ ବରିଷ୍ଠ ଓ ଶ୍ରେଷ୍ଠ । ଓଁ ସ୍ଥାପକାୟ ଚ ଧର୍ମସ୍ୟ ସର୍ବଧର୍ମ ସ୍ୱରୁପିଣେ, ଅବତାର ବରିଷ୍ଠାୟ ରାମକୃଷ୍ଣାୟ ତେନମଃ । ଶ୍ରୀରାମକୃଷ୍ଣଙ୍କ ପ୍ରତି ତାଙ୍କର ଗଭୀର ପ୍ରେମର ସୂଚକ ଏହି ଶ୍ଳୋକ, ହଁ ଶ୍ଳୋକ ନୁହେଁ, ଏହା ଏକ ମହାନ୍ ମନ୍ତ୍ର ।*

ସ୍ୱାମୀଜୀ ଭକ୍ତପ୍ରାଣର ପ୍ରବହମାନ ଭକ୍ତିସ୍ରୋତର ଗଭୀରତା ତଥା ସୁନ୍ଦର ମଖମଲ ଆସ୍ଥାନ ପରିଲକ୍ଷିତ କରି କହିଲେ, ''ମା, ଆମର ଠାକୁର୍ ନିଜ ଜୀବନରେ କେବେ ବି ମଖମଲ ପଥର ନିର୍ମିତ ଚଟାଣ ଗୃହରେ ବାସ କରି ନ ଥିଲେ । ନଡ଼ା ଚାଳ ଛପର ନିର୍ମିତ କୁଟୀରରେ ତାଙ୍କର ଜନ୍ମ ଏବଂ ଜୀବନଯାକ ନିରାଡମ୍ବର ସରଳ ଜୀବନଯାପନ କରିଥିଲେ । ସେ ଯଦି ଏଠାରେ ରହିବେ ନାହିଁ ଯେଉଁଠାରେ ଭକ୍ତ ହୃଦୟରୁ ସମସ୍ତ ସୁବିଧା ଝରିପଡୁଛି, ତେବେ ଆଉ ସେ କେଉଁଠି ରହିବେ ତାହା ମୁଁ ଜାଣିନାହିଁ ।''

ସର୍ବାଙ୍ଗ ଦେହରେ ବିଭୁତି ବୋଳି ପୂଜକ ଆସନରେ ଉପବିଷ୍ଟ ହେଲେ ସ୍ୱାମୀଜୀ । ଭକ୍ତ ଓ ଶିଷ୍ୟମଣ୍ଡଳୀ ଉପସ୍ଥିତିରେ ସ୍ୱାମୀ ପ୍ରକାଶାନନ୍ଦ ବେଦମନ୍ତ୍ର ଉଚ୍ଚାରଣ କଲେ । ସ୍ୱାମୀଜୀ ମୂର୍ତ୍ତିକୁ ଯଥାସ୍ଥାନରେ ସ୍ଥାପିତ କରି ଧ୍ୟାନସ୍ଥ ହେଲେ । ଧ୍ୟାନ ଭଙ୍ଗ ଉତ୍ତାରୁ ଝରିପଡ଼ିଲା ତାଙ୍କ ମୁଖରୁ ଏକ ଭକ୍ତି ଆପ୍ଲୁତ ଶ୍ଳୋକ ଯାହା କାଳଜୟୀ ହୋଇଗଲା । କୋଟି କୋଟି ମୁଖରୁ ସେହି ଶ୍ଳୋକ ସମଗ୍ର ବିଶ୍ୱରେ ଆଜି ଉଚ୍ଚାରିତ ହେଉଛି, ଅତ୍ୟନ୍ତ ଭକ୍ତି-ଉଦ୍ଦୀପକ । ''ହେ ରାମକୃଷ୍ଣ, ତୁମକୁ ମୋର ପ୍ରଣାମ । ତୁମେ ଧର୍ମର ପୁନଃସ୍ଥାପକ, ତୁମେ ହିଁ ସର୍ବଧର୍ମର ମୂର୍ତ୍ତିମନ୍ତ ପ୍ରତୀକ । ସର୍ବ ଅବତାରମାନଙ୍କ ଭିତରେ ତୁମେ ବରିଷ୍ଠ ଓ ଶ୍ରେଷ୍ଠ । ଓଁ ସ୍ଥାପକାୟ ଚ ଧର୍ମସ୍ୟ ସର୍ବଧର୍ମ ସ୍ୱରୁପିଣେ, ଅବତାର ବରିଷ୍ଠାୟ ରାମକୃଷ୍ଣାୟ ତେନମଃ । ଶ୍ରୀରାମକୃଷ୍ଣଙ୍କ ପ୍ରତି ତାଙ୍କର ଗଭୀର ପ୍ରେମର ସୂଚକ ଏହି ଶ୍ଳୋକ, ହଁ ଶ୍ଳୋକ ନୁହେଁ, ଏହା ଏକ ମହାନ୍ ମନ୍ତ୍ର ।

ମାର୍ଚ୍ଚ ୧୮୯୮ ଖ୍ରୀଷ୍ଟାବ୍ଦରେ ବେଲୁଡ଼ଠାରେ ଗଙ୍ଗାନଦୀର ପଶ୍ଚିମ କୂଳରେ ସ୍ୱାମୀଜୀ ଖଣ୍ଡିଏ ଜାଗା କ୍ରୟ କଲେ । ସେହି ଜାଗାରେ ଗୋଟିଏ ଘର ବି ଥିଲା । ଜାଗାରେ କ୍ରୟ ମଲ୍ୟ

Digitized by srujanika@gmail.com

ଥିଲା ଟ ୩୯୦୦/- । ମିସ୍ ଏଫ୍. ହେନ୍ରିଏଟା ମୁଲର ଯିଏ ସ୍ୱାମୀଜୀଙ୍କର ଜଣେ ଆମେରିକୀୟ ଅନ୍ତରଙ୍ଗ ଭକ୍ତ ଓ ଶୁଭେଚ୍ଛୁ, ଏହି ଅର୍ଥରାଶି ସ୍ୱାମୀଜୀଙ୍କୁ ପ୍ରଦାନ କରିଥିଲେ । ଏହି ମହିୟସୀ ମହିଳା ସ୍ୱାମୀଜୀଙ୍କର ଧର୍ମୋପଦେଶ ତଥା ପ୍ରଜ୍ୱଳିତ ଭାବଧାରାରେ ବିମୋହିତ ହୋଇ ସଂସାର ତ୍ୟାଗ କରି ସନ୍ନ୍ୟାସୀନୀ ହେବାକୁ ଏକଦା ମନ ବଳାଇଥିଲେ, କିନ୍ତୁ ନିଜ ସ୍ଥାନରେ ଏକ ନିଃସ୍ୱାର୍ଥପର ଜୀବନ ବିତାଇ ସଂସାରକୁ ସାହାଯ୍ୟ କରିବା ଲାଗି ସ୍ୱାମୀଜୀ ତାଙ୍କୁ ପ୍ରବର୍ତ୍ତାଇ ଥିଲେ । ଏହି ଜାଗାରେ ରାମକୃଷ୍ଣ ମଠ ଓ ମିଶନ ନିର୍ମିତ ହେବ । ସ୍ୱାମୀଜୀ ମଠ ନିର୍ମାଣ ଚିନ୍ତାରେ ମଗ୍ନ ଥିବା ସମୟରେ, ରାମକୃଷ୍ଣ ପରମହଂସଙ୍କର ଜଣେ ପ୍ରତ୍ୟକ୍ଷ ଶିଷ୍ୟ ହରିପ୍ରସନ୍ନ ଚାକିରିରୁ ଇସ୍ତଫା ଦେଇ ସେଠାରେ ପହଞ୍ଚିଲେ । ସେ ଉତ୍ତର ପ୍ରଦେଶ ସରକାରଙ୍କ ଅଧୀନରେ ଜଣେ ଏକ୍ସିକ୍ୟୁଟିଭ ଇଞ୍ଜିନିୟର ଭାବେ କାର୍ଯ୍ୟ କରୁଥିଲେ । ସେ ରାମକୃଷ୍ଣ ମଠରେ ଜଣେ ବ୍ରହ୍ମଚାରୀ ଭାବେ ଯୋଗ ଦେଲେ । ୧୮୯୯ ଅଗଷ୍ଟ ମାସରେ ସେ ସନ୍ନ୍ୟାସୀ ଧର୍ମରେ ଦୀକ୍ଷିତ ହେଲେ ଏବଂ ତାଙ୍କର ନାମ ହେଲା ସ୍ୱାମୀ ବିଜ୍ଞାନାନନ୍ଦ । ମଠ ନିର୍ମାଣର ପ୍ରତ୍ୟକ୍ଷ ଦାୟିତ୍ୱ ତାଙ୍କୁ ଅର୍ପିତ ହେଲା ଏବଂ ସ୍ୱାମୀ ଅଦ୍ୱୈତାନନ୍ଦ ତାଙ୍କୁ ସାହାଯ୍ୟ କଲେ । ସେ ଜଣେ ଇଞ୍ଜିନିୟର ହୋଇ ଥିବାରୁ ମଠ ନିର୍ମାଣ ଯଥାରୀତି ସମ୍ପନ୍ନ ହେବ ବୋଲି ଜାଣି ସ୍ୱାମୀଜୀ ଆତ୍ମସନ୍ତୋଷ ଲାଭ କଲେ । ଗୋଟିଏ ବର୍ଷ ଭିତରେ ବହୁ କୋଠରି, ଉପାସନାସ୍ଥଳୀ, ରୋଷେଇ ଘର, ପ୍ରାର୍ଥନା କକ୍ଷ, ଭଣ୍ଡାର ଘର ନିର୍ମାଣ ତାଙ୍କର ତତ୍ତ୍ୱାବଧାନରେ ସମାପିତ ହେଲା । ଶ୍ରୀମତୀ ଓଲେ ବୁଲ୍ ଆମେରିକାରୁ ମଠ ନିର୍ମାଣ ସକାଶେ ପର୍ଯ୍ୟାପ୍ତ ଅର୍ଥ ପଠାଇଥିଲେ । ପ୍ରାୟ ଏକ ଲକ୍ଷରୁ ଉର୍ଦ୍ଧ୍ୱ ଅର୍ଥ ବ୍ୟୟ ହୋଇ ବେଲୁଡ଼ ମଠ ନିର୍ମିତ ହେଲା ।

ନୂତନ ବେଲୁଡ଼ ମଠର ଯତ୍ନ ନେବା ପାଇଁ ୧୯୯୮ ଫେବୃଆରୀ ୧୩ ତାରିଖରେ ଆଲାମବଜାରରୁ ନୀଳାମ୍ବର ମୁଖାର୍ଜୀ ଉଦ୍ୟାନବାଟିକୁ ମଠ ସ୍ଥାନାନ୍ତରିତ ହେଲା । ଫେବୃଆରି ୧୪, ତାରିଖରେ ସ୍ୱାମୀ ସାରଦାନନ୍ଦ, ନୂତନ ଅନୁଷ୍ଠାନର ଦାୟିତ୍ୱ ବହନ କରିବା ଲାଗି ଆମେରିକାରୁ ଆସି କଲିକତାରେ ପହଞ୍ଚିଲେ । ତାଙ୍କ ସହିତ ଆମେରିକାରୁ ଆସିଥିଲେ ଶ୍ରୀମତୀ ଓଲେବୁଲ୍ ଏବଂ ଯୋସେଫିନ୍ ମେକ୍ଲିଓଡ୍ । ନିୟୁୟର୍କର ବେଦାନ୍ତ ସୋସାଇଟିର ଦାୟିତ୍ୱ ସ୍ୱାମୀ ଅଭେଦାନନ୍ଦଙ୍କ ହସ୍ତରେ ଅର୍ପଣକରି ସେ ଏଠାକୁ ଆସିଲେ । ଆମେରିକାର ବିଳାସପୂର୍ଣ୍ଣ ଜୀବନ୍ ବିତାଉଥିବା ଏହି ମହିଳାମାନେ ବେଲୁଡ଼ର କ୍ଷୁଦ୍ର ପରିସର ଭିତରେ ଏଭଳି ଶାନ୍ତି ଓ ସହୃଦୟତା ସହ ବାସ କରିବାକୁ ଲାଗିଲେ ଯେ ସ୍ୱାମୀଜୀ ସ୍ୱୟଂ ତଟସ୍ଥ ହୋଇଗଲେ । ସ୍ୱାମୀଜୀ ପ୍ରତ୍ୟହ ପାଶ୍ଚାତ୍ୟ ଶିଷ୍ୟ ଓ ଶିଷ୍ୟାମାନଙ୍କ ସହ ଧର୍ମଚର୍ଚ୍ଚାରେ ଘଣ୍ଟା ଘଣ୍ଟା ସମୟ ବିତାଉଥିଲେ । ହିନ୍ଦୁଧର୍ମ, ସଂସ୍କୃତି, ପୁରାଣ, ବେଦ, ଉପନିଷଦ ଓ ଗୀତାରୁ ବହୁ ଉପାଦେୟ ବସ୍ତୁ ଉଦ୍ଧୃତ କରି ସେମାନଙ୍କର ଜ୍ଞାନକୁ ଆଲୋକିତ କଲେ ।

ପାଶ୍ଚାତ୍ୟ ମହିଳା ଶିଷ୍ୟମାନଙ୍କୁ ଦିବ୍ୟ ଜନନୀ ସାରଦାଦେବୀଙ୍କ ସହ ଅନ୍ତରଙ୍ଗ ସହକାରେ ମିଶିବା ପାଇଁ ସ୍ୱାମୀଜୀଙ୍କର ଥିଲା ପରାମର୍ଶ ଓ ନିବେଦେନ । ମା ସ୍ୱୟଂ ବିନାଦ୍ୱିଧାରେ ସେମାନଙ୍କୁ

Digitized by srujanika@gmail.com

ନିଜର ସନ୍ତାନ ଭଳି ସ୍ନେହ କରୁଥିଲେ । ସେମାନଙ୍କର ପାଶ୍ଚାତ୍ୟ ମାନସିକତାକୁ ହିନ୍ଦୁ ମାନସିକତାରେ ପରିଣତ କରିବାଲାଗି ହିନ୍ଦୁ ମହିଳାମାନଙ୍କ ସହ ମିଶିବା, ସେମାନଙ୍କର ଆଚାର ବ୍ୟବହାର, ଖାଦ୍ୟ, ପରିପାଟୀ, ଲକ୍ଷ୍ୟ କରିବାଲାଗି ସେମାନଙ୍କୁ ସର୍ବଦା ଉତ୍ସାହିତ କରୁଥିଲେ । ସେମାନଙ୍କ ଭିତରେ ବେଦାନ୍ତ ଓ ଭାରତ ପ୍ରତି ପ୍ରେମ ଜାଗ୍ରତ କରିବା ଲାଗି ସେମାନଙ୍କୁ ସେ କଠୋର ପରୀକ୍ଷାର ସମ୍ମୁଖୀନ କରାଉଥିଲେ । ପାଶ୍ଚାତ୍ୟ ରାଷ୍ଟ୍ରରେ ମୁକ୍ତିର ପଥପ୍ରଦର୍ଶକ ତଥା ପ୍ରଫେଟ୍ ଭାବେ ସେମାନେ ସ୍ୱାମୀଜୀଙ୍କୁ ସମାଦୃତ କରୁଥିଲେ, କିନ୍ତୁ ଭାରତବର୍ଷରେ ସେମାନେ ସ୍ୱାମୀଜୀଙ୍କୁ ଜଣେ ଦେଶଭକ୍ତ ଭାବେ ଦେଖିବାକୁ ପାଇଲେ, କାରଣ ନିଜର ମାତୃଭୂମିର ପୁନରୁତ୍ଥାନ ପାଇଁ ଜଣେ କର୍ମୀଭାବେ ସେମାନଙ୍କ ସମ୍ମୁଖରେ ସେ ହୋଇଥିଲେ ଆବିର୍ଭୂତ । ଏତଦ୍‌ବ୍ୟତୀତ ସେମାନଙ୍କର ଜାତୀୟତା ମୋହ କିମ୍ୱା ଭାରତୀୟ ପରମ୍ପରା ବିରୋଧି ସମାଲୋଚନାକୁ ସେ ଆଦୌ ସହ୍ୟ କରିପାରୁ ନ ଥିଲେ । ସେମାନେ ଭାରତକୁ ଜାଣିଲେ, ଭାରତର ପୂର୍ବଗୌରବ ଓ ବର୍ତ୍ତମାନର ପରିସ୍ଥିତି ପ୍ରତି ସଚେତନ ହେଲେ, ସେମାନେ ଭାରତକୁ ଭଲପାଇବେ ବୋଲି ସ୍ୱାମୀଜୀ ଜାଣିଥିଲେ । ତେଣୁ ସେମାନଙ୍କୁ ସାଙ୍ଗରେ ଧରି ଭାରତବର୍ଷ ଭ୍ରମଣ କରୁଥିଲେ ।

- ୪ -

*କାହିଁକି, ମଠ ପାଇଁ ଯେଉଁ ଜମି ଆମେ କ୍ରୟ କରିଥିଲେ, ତାହା ବିକ୍ରି କରିଦେବା । ଆମେ ସନ୍ନ୍ୟାସୀ, ଆମେ ବୃକ୍ଷତଳେ ଶୋଇପାରିବା ଓ ଭିକ୍ଷାମାଗଣ କରି ଜୀବନ ଧାରଣ କରିବା । ଆମ ଆଖି ଆଗରେ ହଜାର ହଜାର ଲୋକଙ୍କର ପୀଡ଼ା ଓ ମୃତ୍ୟୁ ଦେଖିବା ଅପେକ୍ଷା ଆମର ସମ୍ପତ୍ତି ବିକ୍ରି କରିଦେବା ଶ୍ରେୟସ୍କର ।*

ନୀଳାମ୍ବର ମୁଖାର୍ଜୀ ଉଦ୍ୟାନବାଟି ମଠରେ ଯୁବ ସନ୍ୟାସୀ ଓ ବ୍ରହ୍ମଚାରୀଙ୍କୁ ଯଥୋଚିତ ପ୍ରଶିକ୍ଷଣ ଦେଇଥିବାରୁ ସ୍ୱାମୀଜୀ ସ୍ୱାମୀ ତୁରୀୟାନନ୍ଦଙ୍କୁ ଅଭିନନ୍ଦନ ଜଣାଇବା ସହ ମଠର ସୁପରିଚାଳନା ପାଇଁ ସ୍ୱାମୀ ବ୍ରହ୍ମାନନ୍ଦଙ୍କୁ ବଧାଇ ଜଣାଇଲେ । ସେ ଦିନ ଥିଲା ଶିବରାତ୍ରି ଶ୍ରୀରାମକୃଷ୍ଣଙ୍କର ଜନ୍ମଦିନ (ତିଥି ପୂଜା) ବି ସେ ଦିନ ପଡ଼ିଲା । ଗଙ୍ଗାରେ ସ୍ନାନ କରି ପଚାଶ ଜଣରୁ ଅଧିକ ଭକ୍ତ ଓ ଶିଷ୍ୟ ଗାୟତ୍ରୀ ମନ୍ତ୍ର ଓ ଉପବୀତ ଧାରଣ କଲେ । ବହୁ ସନ୍ୟାସୀ, ବ୍ରହ୍ମଚାରୀ ଓ ଭକ୍ତଙ୍କ ଗହଣରେ ସ୍ୱାମୀଜୀ ସେମାନଙ୍କୁ ଉପବୀତ ପ୍ରଦାନ କଲେ । ଉପନୟନ ଉତ୍ସବ ସମାପ୍ତି ପରେ ମଠର ସନ୍ୟାସୀମାନେ ସ୍ୱାମୀଜୀଙ୍କୁ ବେଢ଼ିଯାଇ ତାଙ୍କୁ ଶିବ ରୂପରେ ପୂଜା କଲେ । ତାଙ୍କ କର୍ଣ୍ଣରେ କୁଣ୍ଡଳ ପିନ୍ଧାଇ ଦେଲେ । ସର୍ବାଙ୍ଗ ଶରୀରକୁ ବିଭୂତି ଲେପି ଆଣ୍ଠୁ ପର୍ଯ୍ୟନ୍ତ ଲମ୍ୱା ଜଟାଜୁଟ ତାଙ୍କ ମସ୍ତକରେ ଥୋଇ ଦେଲେ । ତାଙ୍କ ବାହୁରେ ପିନ୍ଧାଇଦେଲେ ମୋଟା ବଳା । ଗଳାରେ ଲମ୍ୱାଇ ଦେଲେ ଏକ ରୁଦ୍ରାକ୍ଷର ମାଳା । ବାମ ହସ୍ତରେ ଧରାଇଦେଲେ ତ୍ରିଶୂଳ । ସ୍ୱାମୀଜୀ ଭୋଳାନାଥ ଶିବଙ୍କ ସଦୃଶ ପ୍ରତୀୟମାନ ହେଲେ । ସତେକି ସ୍ୱୟଂ ଦେବ ଦେବ ମହାଦେବ ଶିବ କୈଳାସ ତ୍ୟାଗକରି ସେଠାରେ ଉଭା ହୋଇଛନ୍ତି !

Digitized by srujanika@gmail.com

ଉପସ୍ଥିତ ସନ୍ନ୍ୟାସୀ, ବ୍ରହ୍ମଚାରୀ, ଶିଷ୍ୟ, ଶିଷ୍ୟା ଓ ଭକ୍ତଗଣ ଉପଲବ୍ଧି କଲେ ମହାତ୍ୟାଗ ଶିବଙ୍କର ଆବିର୍ଭାବ । ଶିବଙ୍କୁ ଭୈରବଗଣ ବେଢ଼ି ରହିବା ଭଳି ସନ୍ନ୍ୟାସୀମାନେ ସ୍ୱାମୀଜୀଙ୍କୁ ବେଢ଼ି ବସିରହିଲେ । ଧ୍ୟାନସ୍ଥ ଶିବ ରାମନାମ ଜପରେ ମଗ୍ନ ଯେପରି, ସ୍ୱାମୀଜୀ ପ୍ରେମଭୋଳରେ ଶ୍ରୀରାମ ଶ୍ରୀରାମ ଶ୍ରୀରାମ ଉଚ୍ଚାରଣ କରୁଥିଲେ । ଇତ୍ୟବସରରେ ତାଙ୍କର ମୁଖମଣ୍ଡଳ ଦିବ୍ୟ ଆଭାରେ ଜ୍ୟୋତିର୍ମୟ ହୋଇଉଠିଲା । ଚକ୍ଷୁ ଅର୍ଦ୍ଧୋନ୍ମୀଳିତ । ପଦ୍ମାସନରେ ଉପବିଷ୍ଟ ହୋଇ ତାନପୁରା ବଜାଉଥିଲେ । ନୀରବତା ଭିତରେ ସ୍ୱାମୀଜୀଙ୍କ ମୁଖରୁ ଝରିପଡୁଥିଲା ରାମନାମ ସ୍ୱର । ପ୍ରାୟ ଅଧଘଣ୍ଟାଏ ଧରି ଭକ୍ତଗଣ ସ୍ତବ୍ଧ ହୋଇ ବସିଥିଲେ ଏବଂ ଦେଖୁଥିଲେ ଶିବଙ୍କର ଯୋଗୀବେଶ । ଚମତ୍କାର ଥିଲା ସେହି ଦୃଶ୍ୟ । ଶିବରାତ୍ରିରେ ଶିବମୟ ହୋଇଯାଇଥିଲା ରାତି ଗୋଟାକ ।

୧୮୯୮ରେ ଶ୍ରୀରାମକୃଷ୍ଣଙ୍କ ଜନ୍ମଦିନ ପାଳନ ଅବସରରେ ଏକ ସମସ୍ୟା ଦେଖାଗଲା । ଦକ୍ଷିଣେଶ୍ୱର କାଳୀମନ୍ଦିରର ଟ୍ରଷ୍ଟୀମାନେ ମନ୍ଦିରରେ ବିଦେଶୀଙ୍କର ପ୍ରବେଶକୁ ଘୋର ବିରୋଧ କଲେ । ସ୍ୱାମୀଜୀ ସେମାନଙ୍କର ଏତାଦୃଶ ସଂକୁଚିତ ଓ କୁସଂସ୍କାରରେ ପରିପୂର୍ଣ୍ଣ ମନୋଭାବକୁ ତୀବ୍ର ସମାଲୋଚନା କରିବାସହ ବାଲିଠାରେ ଅବସ୍ଥିତ ପୂର୍ଣ୍ଣଚନ୍ଦ୍ର ଦେଓଙ୍କର ରାଧା ରମଣଜୀ ଠାକୁରବାଡ଼ିରେ ଜନ୍ମଦିବସ ମହାସମାରୋହରେ ପାଳନ କଲେ । ଏହା ଥିଲା ଶ୍ରୀରାମକୃଷ୍ଣଙ୍କ ୬୫ତମ ଜନ୍ମଦିବସ । ଏହି ସମୟକାଳରେ ସ୍ୱାମୀଜୀ ଅଳ୍ପ ବକ୍ତୃତା ସଭାରେ ଭାଗ ନେଉଥିଲେ । ରାମକୃଷ୍ଣ ମିଶନ ଆନୁକୂଲ୍ୟରେ ଏକ ସଭା ଷ୍ଟାର ଥିଏଟରରେ ଅନୁଷ୍ଠିତ ହେଲା । ଭଗ୍ନୀ ନିବେଦିତା ଉକ୍ତ ସଭାରେ ଇଂଲଣ୍ଡରେ ଭାରତୀୟ ଆଧ୍ୟାତ୍ମିକ ଚିନ୍ତାଧାରା ସମ୍ବନ୍ଧରେଏକ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ । ନିବେଦିତା ଏବଂ ମିସ୍ ମୁଲର୍‌ଙ୍କୁ ସଭାରେ ପରିଚିତ ପ୍ରଦାନ କରାଇ ସ୍ୱାମୀଜୀ କହିଥିଲେ - ଭାରତ ପାଇଁ ଇଂଲଣ୍ଡର ଆଉ ଏକ ଦାନ ବୋଲି ନିବେଦିତାଙ୍କୁ ଲକ୍ଷ୍ୟ କରି ସ୍ୱାମୀଜୀ କହିଥିଲେ - ଅନ୍ୟ ଦୁଇଜଣ ହେଲେ ଶ୍ରୀମତୀ ଆନିବେସାନ୍ତ ଓ ମିସ୍ ମୁଲର୍ । ଏହି ମହିୟସୀ ମହିଳାଗଣ ଭାରତର କଲ୍ୟାଣ ନିମନ୍ତେ ନିଜର ଜୀବନକୁ ଉତ୍ସର୍ଗ କରିଛନ୍ତି ।

ଭଗ୍ନୀ ନିବେଦିତା ତାଙ୍କ ବକ୍ତବ୍ୟରେ କହିଥିଲେ : ଛଅ ହଜାର ବର୍ଷର ରକ୍ଷଣଶୀଳତାର କୌଶଳ ଆପଣଙ୍କ ପାଖରେ ରହିଛି । କିନ୍ତୁ ଆପଣଙ୍କର ହିଁ ଗୋଟିଏ ବ୍ୟକ୍ତିର ରକ୍ଷଣଶୀଳତା ଯିଏ ଯୁଗଯୁଗ ଧରି ବିଶ୍ୱ ପାଇଁ ମହାନ୍ ଆଧ୍ୟାତ୍ମିକ ଧନରାଶିକୁ ସଂରକ୍ଷିତ କରିପାରିଛି, ସେହି ଭାରତମାତାଙ୍କ ସେବାପାଇଁ ଆଗ୍ରହ ସହକାରେ ମୁଁ ଭାରତ ଆସିଛି ।''

ନିବେଦିତାଙ୍କ ଭାଷଣରେ ତନ୍ମୟ ହୋଇଯାଇଥିଲେ ସ୍ୱାମୀଜୀ, ସେ ନିବେଦିତାଙ୍କୁ କହିଥିଲେ : ମୋତେ ଜଣାପଡୁଛି ଏହି ସ୍ଥାନ ତୁମ ପାଇଁ ବିଶାଳ କ୍ଷେତ୍ର ଯେଉଁଠାରେ ତୁମେ ଶିକ୍ଷାଦାନ କାର୍ଯ୍ୟ କରିବା ସହ ମୋତେ ବହୁ ସାହାଯ୍ୟ ତୁମେ କରିବ । ମିସ୍ ମୁଲରଙ୍କୁ ତାଙ୍କର ବକ୍ତବ୍ୟ ପ୍ରଦାନ ନିମନ୍ତେ ସ୍ୱାମୀଜୀ ଅନୁରୋଧ କଲେ । ସେ ଯେତେବେଳେ ସମବେତ ଜନତାଙ୍କୁ ମୋର ପ୍ରିୟ ବନ୍ଧୁଗଣ ଓ ମୋର ଦେଶବାସୀଗଣ କହି ଉଦ୍‌ବୋଧନ ଦେଲେ, ସେତେବେଳେ ସମଗ୍ର

Digitized by srujanika@gmail.com

ଜନତା କରତାଳିରେ ତାଙ୍କୁ ସ୍ୱାଗତ କଲେ । ମିସ୍ ମୁଲର୍ କହିଥିଲେ, ''ଭାରତର ସାହିତ୍ୟ ପାଶ୍ଚାତ୍ୟ ମନ ପାଇଁ ଜୀବନ୍ତ ବସ୍ତୁ ଭାବେ ପ୍ରତିଭାତ ହୋଇଛି ଏବଂ ସ୍ୱାମୀ ବିବେକାନନ୍ଦଙ୍କର କାର୍ଯ୍ୟ ବର୍ତ୍ତମାନ ଆମେରିକାର ଘରେ ଘରେ ପରିଚିତ ଓ ପଠିତ ।''

୧୮୯୮ ଖ୍ରୀଷ୍ଟାବ୍ଦଟି ପାଶ୍ଚାତ୍ୟ ଶିଷ୍ୟ ଓ ଶିଷ୍ୟାମାନଙ୍କୁ ଆଧ୍ୟାତ୍ମିକ ପ୍ରଶିକ୍ଷଣ ପ୍ରଦାନରେ ସ୍ୱାମୀଜୀଙ୍କର ମୁହୂର୍ତ୍ତଗୁଡ଼ିକ କଟିଥିଲା । କେତେବେଳେ ହାସ୍ୟରସ କୌତୁକରେ ତ କେତେବେଳେ ଶାନ୍ତି ପ୍ରଶାନ୍ତି ମୁହୂର୍ତ୍ତ ଭିତରେ ସମୟ ହେଉଥିଲା ଅତିବାହିତ । ହିନ୍ଦୁଧର୍ମ ଓ ଭାରତ ଥିଲା ପ୍ରଶିକ୍ଷଣ କାର୍ଯ୍ୟକ୍ରମର ମୁଖ୍ୟ ବିଷୟବସ୍ତୁ । ଯିଏ ତାଙ୍କୁ ଏହି ସମୟରେ ପଚାରୁଥିଲେ, ''ସ୍ୱାମୀଜୀ, ମୁଁ ଆପଣଙ୍କୁ କିଭଳି ସାହାଯ୍ୟ କରିପାରିବି ? ତାଙ୍କର ଉତ୍ତର ଥିଲା ''ଭାରତକୁ ଭଲ ପାଅ ।'' ଅତ୍ୟଧିକ ଭ୍ରମଣ, ଅନର୍ଗଳ ବକ୍ତୃତା ଓ ଧର୍ମ ସମ୍ବନ୍ଧୀୟ ଆଲୋଚନାର ସୀମା ନ ଥିଲା । ନିଜ ସ୍ୱାସ୍ଥ୍ୟ ପ୍ରତି ସର୍ବଦା ବିମୁଖ, ସତେକି ତାଙ୍କର ହଜାର ହଜାର ବର୍ଷର କାର୍ଯ୍ୟକୁ ମାତ୍ର ଚାରି ପାଞ୍ଚବର୍ଷ ଭିତରେ ଶେଷ କରିଦେବେ ! ସ୍ୱାସ୍ଥ୍ୟର ଅବନତି ବାରମ୍ବାର ହେଉଥିଲା, କିନ୍ତୁ ତିଳେମାତ୍ର ସେଥିପାଇଁ ତାଙ୍କର ପରବାୟ ନ ଥିଲା ।

୧୯୯୮ ମାର୍ଚ୍ଚ ୩୦ ତାରିଖରେ ସ୍ୱାମୀଜୀ ଦାରଜିଲିଙ୍ଗ୍ ଅଭିମୁଖେ ଯାତ୍ରା କଲେ, ହିମାଳୟର ଶୀତଳ ପବନ ସ୍ପର୍ଶ ପାଇଁ । କ୍ୱଚିତ ସମୟ ସେଠାରେ ବିତାଇଛନ୍ତି କି ନାହିଁ, ପୁନଶ୍ଚ କଲିକତାକୁ ଫେରିଆସିଲେ । ମହାମାରୀ ପ୍ଲେଗ୍ ସେତେବେଳେ କଲିକତା ନଗରୀକୁ ଭୟଙ୍କର ଭାବେ ଆକ୍ରାନ୍ତ କରିଥିଲା, ହଜାର ହଜାର ଲୋକ ସେବା ଶୁଶ୍ରୂଷା ଓ ଔଷଧ ଅଭାବରେ ପୋକମାଛି ପରି ମୃତ୍ୟୁବରଣ କରୁଥାନ୍ତି । ସ୍ୱାମୀଜୀଙ୍କର କାରୁଣ୍ୟ ହୃଦୟ ନିଜ ଦେଶବାସୀଙ୍କର ମୃତ୍ୟୁ ଦେଖି କାନ୍ଦିଉଠିଲା । ସଙ୍ଗେ ସଙ୍ଗେ ରାମକୃଷ୍ଣ ମଠର ସଦସ୍ୟଗଣ ଓ ସ୍ୱେଚ୍ଛାସେବୀମାନଙ୍କ ସହଯୋଗ ଓ ସାହାଯ୍ୟ ନେଇ ପ୍ଲେଗ୍ ଆକ୍ରାନ୍ତିତ ରୋଗୀଙ୍କର ସେବା ନିମନ୍ତେ କାର୍ଯ୍ୟରେ ଲାଗିପଡ଼ିଲେ ।

ରିଲିଫ୍ କାର୍ଯ୍ୟ ପାଇଁ ଅର୍ଥ ଆବଶ୍ୟକ । ଜଣେ ଗୁରୁଭ୍ରାତା ତାଙ୍କୁ ଯେତେବେଳେ ଅର୍ଥ କେଉଁଠି ଆସିବ ବୋଲି ପଚାରିବାରୁ, ସେ କହିଲେ, ''କାହିଁକି, ମଠ ପାଇଁ ଯେଉଁ ଜମି ଆମେ କ୍ରୟ କରିଥିଲେ, ତାହା ବିକ୍ରି କରିଦେବା । ଆମେ ସନ୍ୟାସୀ, ଆମେ ବୃକ୍ଷତଳେ ଶୋଇପାରିବା ଓ ଭିକ୍ଷାମାଗଣ କରି ଜୀବନ ଧାରଣ କରିବା । ଆମ ଆଖି ଆଗରେ ହଜାର ହଜାର ଲୋକଙ୍କର ପୀଡ଼ା ଓ ମୃତ୍ୟୁ ଦେଖିବା ଅପେକ୍ଷା ଆମର ସମ୍ପତ୍ତି ବିକ୍ରି କରିଦେବା ଶ୍ରେୟସ୍କର । ଯାହାହେଉ, ସୌଭାଗ୍ୟବଶତଃ ଜମି ବିକ୍ରି କରିବାକୁ ପଡ଼ିଲା ନାହିଁ, ବହୁଲୋକ ଆଗେଇ ଆସି ସ୍ୱାମୀଜୀଙ୍କ ହସ୍ତରେ ଅର୍ଥ ପ୍ରଦାନ କଲେ, ଯାହାଫଳରେ ସେବାକାର୍ଯ୍ୟ ଯଥାରୀତି ସମ୍ପାଦିତ ହୋଇପାରିଲା । ଅଗଣିତ ପ୍ଲେଗ୍ ଆକ୍ରାନ୍ତିତ ଲୋକଙ୍କର ପୀଡ଼ା ଦୂର କରିବା ନିମନ୍ତେ କଠୋର ପରିଶ୍ରମରେ ସେ ମଗ୍ନ ହେଲେ । ତାଙ୍କର ବେଦାନ୍ତର ବାସ୍ତବ ପ୍ରୟୋଗ ଦେଖି ଅଗଣିତ ଜନତାଙ୍କର ପ୍ରେମ ଓ ପ୍ରଶଂସା ସ୍ୱାମୀଜୀଙ୍କ ଉପରେ ଅଜାଡ଼ି ପଡ଼ିଲା । ଏହ ଥିଲା ସ୍ୱାମୀଜୀଙ୍କ ବେଦାନ୍ତର ବାସ୍ତବ ପ୍ରୟୋଗ ।

ମହାମାରୀ ପ୍ଲେଗ ନିୟନ୍ତ୍ରିତ ହେଲାପରେ, ସ୍ୱାମୀଜୀ ନୈନିତାଲ ଦେଇ ଆଲମୋଡ଼ା ଅଭିମୁଖେ ମେ ୧୧ ତାରିଖରେ ଯାତ୍ରା ଆରମ୍ଭ କଲେ । ସ୍ୱାମୀ ତୁରିଆନନ୍ଦ, ସ୍ୱାମୀ ନିରଞ୍ଜନାନନ୍ଦ,

Digitized by srujanika@gmail.com

ସ୍ୱାମୀ ସଦାନନ୍ଦ, ସ୍ୱାମୀ ସ୍ୱରୂପାନନ୍ଦ, ଶ୍ରୀମତୀ ଓଲେବୁଲ, ଭଗ୍ନୀ ନିବେଦିତା, ମିସ୍ ଯୋସେଫିନ୍ ମେକ୍‌ଲିଓଡ୍ ଏବଂ କଲିକତାରେ ଅବସ୍ଥାପିତ ଆମେରିକାର କନସଲ୍ ଜେନେରାଲଙ୍କର ପତ୍ନୀ ଶ୍ରୀମତୀ ପେଟର୍‌ସନ୍ ସ୍ୱାମୀଜୀଙ୍କ ସହିତ ଯାତ୍ରା କରିଥିଲେ ।

- ୫ -

*... ମୁଁ ଦୃଢ଼ତା ସହ କହିବି ଯେ ପ୍ରକୃତ ଇସଲାମ ଧର୍ମର ସାହାଯ୍ୟ ବିନା, ବେଦାନ୍ତର ତତ୍ତ୍ୱ ଯେତେବି ଶୁଦ୍ଧ ଓ ବିସ୍ମୟକର ହୋଇଥାଉ, ସାଧାରଣ ଜନତାଙ୍କ ପାଇଁ ଅର୍ଥହୀନ ହେବ । ... ଆମର ମାତୃଭୂମି ନିମନ୍ତେ ହିନ୍ଦୁଧର୍ମ ଓ ଇସ୍‌ଲାମ ଧର୍ମ ଭଳି ଦୁଇଟି ମହାନ୍ ମାର୍ଗର ମିଳନ - ବେଦାନ୍ତ ମସ୍ତିଷ୍କ ଓ ଇସ୍‌ଲାମ ଶରୀର - କେବଳ ହିଁ ଆଶା ।'' ବାସ୍ତବରେ ଏମନ୍ତ ବାକ୍ୟ କେବଳ ସ୍ଫୁରଣ ହୋଇପାରିବ ବେଦାନ୍ତବାଦୀ ପାଖରୁ, ଯେଉଁଠି ଧର୍ମର ସଂକୀର୍ଣ୍ଣ ପ୍ରାଚୀରୀ ନ ଥାଏ ।*

ନୈନିତାଲରେ ସ୍ୱାମୀଜୀ ତାଙ୍କର ବିଦ୍ୟାଳୟ ସହପାଠୀ ଶ୍ରୀ ଯୋଗେଶ ଚନ୍ଦ୍ର ଦତ୍ତଙ୍କୁ ସାକ୍ଷାତ କଲେ । ଯୋଗେଶବାବୁ ଏକ ପରାମର୍ଶ ଦେଲେ ଯେ କିଛି ଅର୍ଥ ସଂଗ୍ରହ କରି ଏକ ପାଣ୍ଠି ସୃଷ୍ଟି କରାଯିବ ଏବଂ ସେହି ଅର୍ଥରେ ଭାରତୀୟ ସ୍ନାତକ ଛାତ୍ରଙ୍କୁ ଇଂଲଣ୍ଡ ପଠାଯିବ, ସେଠାରେ ସେମାନେ ସିଭିଲ୍ ସର୍ଭିସ୍ ପରୀକ୍ଷା ପାଇଁ ପାଠ ପଢ଼ିବେ, ସେମାନେ ସେଠାରୁ ଫେରିଆସିଲେ, ଭାରତର ସେବା କରିପାରିବେ । ସ୍ୱାମୀଜୀ ତାଙ୍କର ପ୍ରସ୍ତାବକୁ ଅଗ୍ରାହ୍ୟ କରି କହିଲେ, ''ସେମିତି କିଛି ଘଟିବ ନାହିଁ । ସେମାନଙ୍କ ଭିତରୁ ଅଧିକାଂଶଙ୍କ ଚିନ୍ତାଧାରା ବଦଳିଯିବ ଏବଂ ସେମାନେ ଏଠାକୁ ଫେରିଆସି ୟୁରୋପୀୟଙ୍କ ସହ ବେଶି ମିଶିବାକୁ ପସନ୍ଦ କରିବେ । ଏହା ନିଶ୍ଚିତ ଘଟିବ ତୁମେ ଜାଣିରଖ । ସେମାନେ କେବଳ ନିଜ ପାଇଁ ବଞ୍ଚିବେ ଏବଂ ୟୁରୋପୀୟ ପୋଷାକ ପରିପାଟୀ, ଖାଦ୍ୟ, ଆଚାରବ୍ୟବହାର ଏବଂ ସବୁକିଛି ଅନୁକରଣ କରିବେ ଏବଂ ନିଜ ଦେଶକଥା ସଂପୂର୍ଣ୍ଣଭାବେ ଭୁଲିଯିବେ ।'' ସେ ଯେତେବେଳେ ରାଷ୍ଟ୍ରର ଭୌତିକ ଅଗ୍ରଗତି ପ୍ରତି ସେମାନଙ୍କର ଉଦାସୀନତା, ବିଶେଷ କରି ଉଦ୍ୟୋଗ କ୍ଷେତ୍ରରେ ସେମାନଙ୍କର ଉଦ୍ୟମର ବିତସ୍ପୃହତା ସମ୍ବନ୍ଧରେ କହିବାକୁ ଲାଗିଲେ, ସେତେବେଳେ ଅଭିମାନରେ ତାଙ୍କର ଚକ୍ଷୁଦ୍ୱୟ ଅଶ୍ରୁପୂର୍ଣ୍ଣ ହୋଇଗଲା । ଧାର ଧାର ଅଶ୍ରୁ ବହମାନ ହେଲା ତାଙ୍କ ଚିବୁକରେ । ଯୋଗେଶବାବୁ ଉକ୍ତ ଦୃଶ୍ୟର ଅବତାରଣା କରି ଲେଖିଥିଲେ : ମୋ ଜୀବନରେ ସେହି ଦୃଶ୍ୟକୁ ମୁଁ ଭୁଲିପାରିବି ନାହିଁ । ସେ ବାସ୍ତବରେ ଥିଲେ ତ୍ୟାଗୀ, ସେ ସଂସାର ପରିତ୍ୟାଗ କରିଥିଲେ, କିନ୍ତୁ ତାଙ୍କର ଆତ୍ମାର ଗଭୀରତମ ପ୍ରଦେଶରେ ଭାରତ ଜୀବନ୍ତ ଥିଲା, ଭାରତ ଥିଲା ତାଙ୍କର ପ୍ରେମ, ସେ ଭାରତ ବିଷୟରେ ପ୍ରତି ମୁହୂର୍ତ୍ତରେ ଚିନ୍ତା କରୁଥିଲେ ଓ କାନ୍ଦୁଥିଲେ, ସେ ଶେଷରେ ଭାରତ ପାଇଁ ଶେଷ ନିଶ୍ୱାସ ତ୍ୟାଗ କଲେ ।''

ନୈନିତାଲରେ ଖେତଡ଼ି ମହାରାଜାଙ୍କ ସହ ସାକ୍ଷାତ ହେଲା । ରାଜା ସେତେବେଳେ ପାହାଡ଼ ଅଞ୍ଚଳରେ ଅସ୍ଥାୟୀଭାବେ ବାସ କରୁଥିଲେ । ରାଜକର୍ମଚାରୀଙ୍କ ଗହଣରେ ସ୍ୱାମୀଜୀଙ୍କୁ

Digitized by srujanika@gmail.com

ପାଛୋଟି ନେଲେ । ତାଙ୍କ ପାଦରେ ପୁଷ୍ପ ଅଜାଡ଼ି ଦେଲେ । ସ୍ୱାମୀଜୀ ପାଶ୍ଚାତ୍ୟ ଶିଷ୍ୟ ଓ ଶିଷ୍ୟାଗଣଙ୍କୁ ରାଜାଙ୍କ ସହ ପରିଚିତ କରାଇଦେଲେ । ଏହିଠାରେ ଜଣେ ମୁସଲମାନ ବ୍ୟକ୍ତିଙ୍କ ସହ ସ୍ୱାମୀଜୀଙ୍କ ସାକ୍ଷାତ ହୋଇଥିଲା । ତାଙ୍କର ନାଁ ମହମ୍ମଦ ସର୍ଫରାଜ୍ ହୁସେନ୍ । ସ୍ୱାମୀଜୀଙ୍କର ତେଜସ୍ୱୀ ରୂପ ଓ ବ୍ୟକ୍ତିତ୍ୱ ଏବଂ ଅସାଧାରଣ ଆଧ୍ୟାତ୍ମିକ ଜ୍ଞାନ ପରିଲକ୍ଷିତ କରି ହୁସେନ୍ ସାହେବ ବିସ୍ମିତ ସ୍ୱରରେ କହିଥିଲେ, ''ସ୍ୱାମୀଜୀ, ପରବର୍ତ୍ତୀ କାଳରେ ଯଦି କେହି ଆପଣଙ୍କୁ ଅବତାର କିମ୍ବା ସ୍ୱତନ୍ତ୍ର ଦେବଦୂତ ବୋଲି ଘୋଷଣା ବା ଦାବୀ କରନ୍ତି, ତେବେ ଜଣେ ମୁସଲମାନ ହୋଇଥିଲେ ବି ମୁଁ ପ୍ରଥମେ, ତାହା ଗ୍ରହଣ କରିବି । ହୁସେନ୍ ସାହେବ ଏଭଳି ସ୍ୱାମୀଜୀଙ୍କ ପ୍ରତି ଆକର୍ଷିତ ହୋଇଥିଲେ, ସେ ତତ୍‌ସଙ୍ଗେସଙ୍ଗେ ତାଙ୍କର ଜଣେ ସଚ୍ଚା ଅନୁଗାମୀ ପାଲଟିଗଲେ । ସେ ନିଜକୁ ମହମ୍ମଦାନନ୍ଦ ବୋଲି ନାମକରଣ କଲେ । ସ୍ୱାମୀଜୀ ଆଲମୋଡ଼ାରୁ ଖଣ୍ଡିଏ ଚିଠିରେ ତାଙ୍କ ପାଖକୁ ଲେଖିଥିଲେ, ''ଆମେ ଏହାକୁ ବେଦାନ୍ତବାଦ କିମ୍ବା କୌଣସି ବାଦ ବୋଲି କହୁ ବା ନ କହୁ, ସତ୍ୟ ହେଉଛି ଯେ ଧର୍ମ ଓ ଭାବଧାରାର ଶେଷ ବାକ୍ୟ ଅଦ୍ୱୈତବାଦ ଏବଂ ଏହି ସ୍ଥାନରୁ ଜଣେ ସମସ୍ତ ଧର୍ମଓ ସଂପ୍ରଦାୟକୁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଦେଖିପାରିବ । ମୋର ବିଶ୍ୱାସ ଯେ ଆଗାମି ସଚେତନ ମାନବସମାଜ ପାଇଁ ଏହା ହେବ ଧର୍ମ । ... ମୁଁ ଦୃଢ଼ତା ସହ କହିବି ଯେ ପ୍ରକୃତ ଇସଲାମ ଧର୍ମର ସାହାଯ୍ୟ ବିନା, ବେଦାନ୍ତର ତତ୍ତ୍ୱ ଯେତେବି ଶୁଦ୍ଧ ଓ ବିସ୍ମୟକର ହୋଉଥାଉ, ସାଧାରଣ ଜନତାଙ୍କ ପାଇଁ ଅର୍ଥହୀନ ହେବ । ... ଆମର ମାତୃଭୂମି ନିମନ୍ତେ ହିନ୍ଦୁଧର୍ମ ଓ ଇସ୍‌ଲାମ ଧର୍ମ ଭଳି ଦୁଇଟି ମହାନ୍ ମାର୍ଗର ମିଳନ - ବେଦାନ୍ତ ମସ୍ତିଷ୍କ ଓ ଇସ୍‌ଲାମ ଶରୀର - କେବଳ ହିଁ ଆଶା ।'' ବାସ୍ତବରେ ଏମନ୍ତ ବାକ୍ୟ କେବଳ ସ୍ଫୁରଣ ହୋଇପାରିବ ବେଦାନ୍ତବାଦୀ ପାଖରୁ, ଯେଉଁଠି ଧର୍ମର ସଂକୀର୍ଣ୍ଣ ପ୍ରାଚେରୀ ନ ଥାଏ ।

୧୮୯୮ ମେ ୧୭ ତାରିଖରେ ସ୍ୱାମୀଜୀ ନିଜ ଦଳ ସହ ଆଲମୋଡ଼ାରେ ଉପନୀତ ହେଲେ । ସ୍ୱାମୀଜୀ, ଗୁରୁଭ୍ରାତା ସନ୍ନ୍ୟାସୀଗଣ, କ୍ୟାପ୍‌ଟେନ ଓ ଶ୍ରୀମତୀ ସେଭିଅରଙ୍କ ''ଥମ୍ପସନ୍ ହାଉସ୍''ରେ ବାସ କଲେ । ତାଙ୍କର ପାଶ୍ଚାତ୍ୟ ଶିଷ୍ୟ ଓ ଶିଷ୍ୟାଗଣ ନିକଟସ୍ଥ ''ଓକଲେ ହାଉସ୍''ରେ ବାସ କଲେ । ପ୍ରତିଦିନ ଗୁରୁଭ୍ରାତୃଗଣଙ୍କ ସହିତ ସ୍ୱାମୀଜୀ ପ୍ରାତଃଭ୍ରମଣ ପରେ ଶ୍ରୀମତୀ ବୁଲ୍ ଓ ପାଶ୍ଚାତ୍ୟ ଶିଷ୍ୟମାନଙ୍କ ଆବାସରେ ଉପସ୍ଥିତ ହୋଇ କଥୋପକଥନରେ ପ୍ରବୃତ୍ତ ହେଉଥିଲେ । ଶିଷ୍ୟ ଓ ଶିଷ୍ୟାଗଣ ଭକ୍ତି ବିନମ୍ର ଚିତ୍ତରେ ତନ୍ମୟ ହୋଇ ସ୍ୱାମୀଜୀଙ୍କ ମୁଖନିଃସୃତ ଭାରତୀୟ ଆଦର୍ଶସମୂହର ଅଫୁରନ୍ତ ବ୍ୟାଖ୍ୟା ଶ୍ରବଣ କରୁଥିଲେ । ଶିକ୍ଷାଦାନ ଓ ଆଲୋଚନା ପ୍ରସଙ୍ଗରେ ସ୍ୱାମୀଜୀ ଯେଉଁ ସମସ୍ତ ଅଭିମତ ବ୍ୟକ୍ତ କରୁଥିଲେ, ତାହାର ଅଧିକାଂଶ ଭଗିନୀ ନିବେଦିତା ସୁନ୍ଦରଭାବେ ଲେଖି ରଖୁଥିଲେ । ସ୍ୱାମୀଜୀଙ୍କର ଶିକ୍ଷାଦାନର ଶୈଳୀ ସମ୍ବନ୍ଧରେ ଭଗିନୀ ନିବେଦିତା କହିଛନ୍ତି ''ଆଲମୋଡ଼ା ଅବସ୍ଥାନ ସମୟରେ ସ୍କୁଲକୁ ପାଠ ପଢ଼ି ଯିବାଭଳି ଆମକୁ ଅନୁଭୂତ ହେଉଥିଲା । ପିଲାମାନେ ଯେପରି ସ୍କୁଲକୁ ଯିବାପାଇଁ ମନ ବଳାନ୍ତି ନାହିଁ, ଏଠାରେ ବି ଅସହ୍ୟ ଯନ୍ତ୍ରଣା ଅନୁଭୂତ ହେଉଥିଲେ ବି ଅଧ୍ୟାପନ୍ତରିଆ ଦୃଷ୍ଟିକୋଣର ତମସାଚ୍ଛନ୍ନତାକୁ ପରିହାର କରିବାକୁ

Digitized by srujanika@gmail.com

ପଡ଼ିବ । ମନର ଗୁରୁତ୍ୱ କେନ୍ଦ୍ରକୁ ପରିବର୍ତ୍ତନ କରିବା ନିହାତି ଆବଶ୍ୟକ । ଏହାଠାରୁ ଅଧିକ କେବେ ନ ଥିଲା; ମତ କିମ୍ୱା ଗୋଷ୍ଠୀର କର୍ତ୍ତୃତ୍ୱ ଛାରି କରିବା କେବେ ବି ନ ଥିଲା, ପକ୍ଷପାତିତାରୁ ମୁକ୍ତି ଅପେକ୍ଷା ଅଧିକ ନ ଥିଲା ଏପରିକି ଭୟଙ୍କର ଅନୁଭୂତି ଶେଷରେ, ଯେତେବେଳେ ଜାତି ଓ ଦେଶଭିତ୍ତିକ ମାନସିକତାର ଲୋପ ହେଲା, ତାହାପରେ ପୁନଶ୍ଚ ଏହି ପଦ୍ଧତି ଅନୁସରିତ ହେଲାନାହିଁ । କୌଣସି ଧର୍ମ ସପକ୍ଷରେ ସେ କହୁ ନ ଥିଲେ କିମ୍ୱା କୌଣସି ନୂତନ ମତବାଦର ଘୋଷଣା ସେ କରୁ ନ ଥିଲେ । ଆମ ସମ୍ମୁଖରେ ସମସ୍ତ ପ୍ରଶ୍ନ ଅଜାଡ଼ି ଦେଉଥିଲେ । ଶ୍ରୋତାମାନେ ମୁକ୍ତଚିତ୍ତରେ ଉତ୍ତର ଦେବାକୁ ଛାଡ଼ି ଦେଉଥିଲେ ।

- ୬ -

*ମାଡ଼ାମ, ମୁଁ ଭଗବାନ ବୁଦ୍ଧଙ୍କର ଭୃତ୍ୟଙ୍କର ଭୃତ୍ୟଙ୍କର ଭୃତ୍ୟଙ୍କର ଭୃତ୍ୟ । ତାଙ୍କ ଭଳି କିଏ ଥିଲା ? ପ୍ରଭୁ - ଯିଏ ନିଜ ସ୍ୱାର୍ଥପାଇଁ ଲେଶମାତ୍ର କାର୍ଯ୍ୟ କରି ନ ଥିଲେ - ଏଭଳି ଥିଲା ତାଙ୍କର ହୃଦୟ ଯାହା ସମଗ୍ର ବିଶ୍ୱକୁ କାରୁଣ୍ୟରେ ଆଲିଙ୍ଗନ କରିଥିଲେ । ଏଭଳି କରୁଣାରେ ପରିପୂର୍ଣ୍ଣ ଥିଲେ ସେହି ରାଜକୁମାର ଓ ସନ୍ନ୍ୟାସୀ ଯିଏ ଗୋଟିଏ ଛାଗର ରକ୍ଷାଲାଗି ନିଜର ଜୀବନକୁ ପଣ ଲଗାଇ ଦେଇଥିଲେ । ସେ ଏଭଳି ପ୍ରେମପୂର୍ଣ୍ଣ ବ୍ୟକ୍ତିତ୍ୱ ଯିଏ ବାଘୁଣୀର କ୍ଷୁଧା ଦୂରକରିବା ଲାଗି ନିଜକୁ ଉତ୍ସର୍ଗ କରିଥିଲେ ! ମେହେନ୍ତରକୁ ଆଶୀର୍ବାଦ କରିଥିଲେ । ମୁଁ ଯେତେବେଳେ ବାଳକ ଥିଲି, ସେ ମୋ କୋଠରିକୁ ଆସିଥିଲେ, ମୁଁ ତାଙ୍କ ପାଦତଳେ ପଡ଼ିଯାଇଥିଲି ! କାହିଁକିନା ମୁଁ ଜାଣିଥିଲି ଯେ ସେ ସ୍ୱୟଂ ବୁଦ୍ଧ ଥିଲେ ।*

ଭଗିନୀ ନିବେଦିତାଙ୍କୁ ଭାରତୀୟ କରିବାଲାଗି ସ୍ୱାମୀଜୀ ବହୁ ସମୟରେ କଠୋରତା ପ୍ରଦର୍ଶନ କରୁଥିଲେ । ଦୃଢ଼ମନା ନିବେଦିତା ନିଜର ସ୍ୱାତନ୍ତ୍ର୍ୟକୁ ଜଳାଞ୍ଜଳି ଦେଇ ସବୁ ସମୟରେ ସ୍ୱାମୀଜୀଙ୍କ ସହିତ ଏକମତ ହୋଇପାରୁ ନ ଥିଲେ । ତାଙ୍କର ମତ ପାର୍ଥକ୍ୟକୁ ସ୍ୱାଧୀନଚେତା ବିବେକାନନ୍ଦ ପସନ୍ଦ କରୁଥିଲେ । କାରଣ ଜଣେ ଇଂରାଜୀ ମହିଳାଙ୍କ ପକ୍ଷରେ ଭାରତୀୟ ଚିନ୍ତାଧାରା ଗ୍ରହଣ କରିବା ବଡ଼ କଷ୍ଟ ବ୍ୟାପାର ଥିଲା । ତେଲ ଓ ପାଣି ଭଳି କେହି କାହା ସହିତ ମିଶିପାରୁ ନଥିଲେ । ଶିଷ୍ୟାଙ୍କର ମନକୁ ଶାନ୍ତ କରିବା ପାଇଁ ସ୍ୱାମୀଜୀ ନିଜର ଉଦାହରଣ ଦେଇ ତାଙ୍କୁ କହୁଥିଲେ, ''ଦେଖ, ମୋ ଗୁରୁଦେବ ରାମକୃଷ୍ଣଙ୍କର ମତ ମୁଁ ପ୍ରଥମେ ଗ୍ରହଣ କରିପାରୁ ନ ଥିଲି । ତାଙ୍କର ମତଗ୍ରହଣ କରିବାପାଇଁ ମୋତେ ପାଞ୍ଚବର୍ଷ ଲାଗିଲା । ନିବେଦିତାଙ୍କ ମନ ଓ ହୃଦୟ ଭିତରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମାନସିକତାକୁ ନେଇ ଯେଉଁ ପ୍ରବଳ ଝଡ଼ ସୃଷ୍ଟି ହେଉଥିଲା ଏବଂ ସେହି ମହାବାତ୍ୟା ଭିତରେ ସେ ଯେପରି ରମ୍ଭାପତ୍ର ସମ ପ୍ରକମ୍ପିତ ହେଉଥିଲେ, ସତେକି ତାଙ୍କର ଚିରପୋଷିତ ଧାରଣାଗୁଡ଼ିକ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଉଛି । ତାହା ବୁଝିପାରି ସ୍ୱାମୀଜୀ ଦିନେ

Digitized by srujanika@gmail.com

ରାତ୍ରିରେ ସହସା କହିଉଠିଲେ, "ଦେଖ, ଆକାଶରେ ଦାଆ ଭଳି ଚନ୍ଦ୍ରକୁ । ମୁସଲମାନମାନେ ନୂତନ ଚନ୍ଦ୍ରଙ୍କୁ ପ୍ରେମ କରନ୍ତି । ଆସ ପୁତ୍ରୀ, ଆମେ ନୂତନ ଚନ୍ଦ୍ର ସହିତ ନୂତନ ଜୀବନ ଆରମ୍ଭ କରିବା । ନିବେଦିତାଙ୍କ ମସ୍ତକ ସ୍ପର୍ଶ କଲା ସ୍ୱାମୀଜୀଙ୍କ ଆଶିଷପୂର୍ଣ୍ଣ ହସ୍ତ । ସେ ସ୍ୱାମୀଜୀଙ୍କର ପାଦ ସ୍ପର୍ଶ କଲେ । ସ୍ୱାମୀଜୀଙ୍କର ସ୍ପର୍ଶରେ ସମସ୍ତ ଜନ୍ମଗତ ଓ ଜାତିଗତ ସଂସ୍କାର ମୁହୂର୍ତ୍ତକେ ତାଙ୍କ ଭିତରୁ ଉଭେଇ ଗଲା । ତାଙ୍କର ସମସ୍ତ ଭାବ ସଂଘାତ ବିଲୁପ୍ତ ହେଲା । ଏକ ନୂତନ ମନ ଜନ୍ମ ନେଲା, ସତେକି ସେ ପୁଣିଥରେ ଜନ୍ମଲାଭ କଲେ ।

ତାଙ୍କ ଭିତରେ ଆଉ ମାନସିକ ସଂଘର୍ଷ ନାହିଁ । ଏଭଳି ସ୍ପର୍ଶଜନିତ ପରମାନନ୍ଦ ଲାଭ କରିବା ଉତ୍ତାରୁ ସେ ଏକୁଟିଆ ଏକଦା ଧ୍ୟାନ ନିମନ୍ତେ ଉପବିଷ୍ଟ ହେଲେ । ଧ୍ୟାନାକାଶରେ ଏକ ଦିବ୍ୟଦର୍ଶନ ଉଦ୍‌ଭାସିତ ହେଲା । ଅନନ୍ତ ଆନନ୍ଦ ସାଗରରେ ସେ ସନ୍ତରଣ କରୁଛନ୍ତି । କୌଣସି ମନ ଓ ଅହଙ୍କାର ସେହି ଦୃଶ୍ୟର ବ୍ୟାଖ୍ୟା କରିପାରିବ ନାହିଁ, କିମ୍ବା ସେହି ସ୍ଥିତି ନିକଟକୁ ନେଇଯାଇ ପାରିବ ନାହିଁ । ହିନ୍ଦୁଶାସ୍ତ୍ରର ଧାର୍ମିକ ମନୋବିଜ୍ଞାନ ଯାହା ସଂସାରର ପ୍ରତ୍ୟେକ ଅନୁଭୂତି ସହ ସମ୍ବନ୍ଧିତ ଓ ଜଡ଼ିତ ତାହା ସେ ସ୍ପଷ୍ଟ ଭାବରେ ବୁଝିପାରିଲେ । ସେ ବି ପ୍ରଥମଥର ପାଇଁ ବୁଝିପାରିଲେ ଯେ ଜଣେ ମହାନ୍ ଗୁରୁ ଶିଷ୍ୟର ସମସ୍ତ ବ୍ୟକ୍ତିଗତ ଗୁଣ ଓ ଅବଗୁଣକୁ ନିମିଷକ ଭିତରେ ଦଗ୍ଧ କରି ନୈର୍ବ୍ୟକ୍ତିକ ସତ୍ତା ଅଭିମୁଖେ ନେଇ ଯାଇପାରିବେ । ବହୁ ପୂର୍ବରୁ ଶ୍ରୀରାମକୃଷ୍ଣ ତାଙ୍କ ଶିଷ୍ୟମାନଙ୍କୁ କହିଥିଲେ - ଏପରି ଦିନ ଆସିବ, ଯେତେବେଳେ ନରେନ୍‌ର ସ୍ପର୍ଶ ମାତ୍ରକେ ଅନ୍ୟର ହୃଦୟରେ ଜ୍ଞାନ ସଞ୍ଚାର ହୋଇଯିବ । ଭଗିନୀ ନିବେଦିତାଙ୍କ କ୍ଷେତ୍ରରେ ଏତାଦୃଶ ଭବିଷ୍ୟବାଣୀର ବାସ୍ତବ ରୂପ ଦେଖିବାକୁ ମିଳିଲା ।

ହିମାଳୟ ପର୍ବତମାଳାର ବିଶାଳ ପରିବେଶରେ ସ୍ୱାମୀଜୀ ବିଶାଳତା ମଧ୍ୟରେ ବିଚରଣ କରୁଥିଲେ । ଭାରତର ଇତିହାସ, ପୁରାଣ, ଧର୍ମ ଓ ସଂସ୍କୃତି ଶିଷ୍ୟ ଓ ଶିଷ୍ୟାମାନଙ୍କ ସମ୍ମୁଖରେ ସ୍ୱାମୀଜୀଙ୍କ ମାଧ୍ୟମରେ ପ୍ରକଟିତ ହେଉଥିଲା । ପ୍ରାଚୀନକାଳରେ ଜନକଋଷି, ଶୁକମୁନିଠାରୁ ଆରମ୍ଭ କରି ଶ୍ରୀରାମକୃଷ୍ଣ ପରମହଂସ, ରାଜା ରାମମୋହନ ରାୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଭଳି ଆଧୁନିକ ଭାରତର ମହାନ୍ ବ୍ୟକ୍ତିଙ୍କର ଜୀବନାଦର୍ଶ ଶ୍ରବଣ କରି ପାଶ୍ଚାତ୍ୟ ଶିଷ୍ୟମଣ୍ଡଳି ମନ୍ତ୍ରମୁଗ୍ଧ ହୋଇଗଲେ । ସେ ଏକଦା ଶିଷ୍ୟମାନଙ୍କ ସମ୍ମୁଖରେ ଭଗବାନ ବୁଦ୍ଧଙ୍କ ସମ୍ବନ୍ଧରେ ଆଲୋଚନା କରୁଥିବା ବେଳେ, ଜଣେ ଶିଷ୍ୟା ତାଙ୍କ ମଧ୍ୟରେ ବ୍ରାହ୍ମଣବାଦ ବିରୋଧୀ ମନୋଭାବ ଲକ୍ଷ୍ୟ କରି ପଚାରିଲେ, "ସ୍ୱାମୀଜୀ, ଆପଣ ଜଣେ ବୌଦ୍ଧଧର୍ମାବଲମ୍ବୀ ବୋଲି ମୁଁ ଜାଣିଥିଲି ।" ମହାକାରୁଣିକ ବୁଦ୍ଧଙ୍କ ନାମଶ୍ରବଣ କରିବା ମାତ୍ରେ, ତାଙ୍କର ଶରୀର ହେଲା ରୋମାଞ୍ଚିତ ଏବଂ ମୁଖମଣ୍ଡଳ ଦିବ୍ୟ ଆଭାରେ ପରିପୂର୍ଣ୍ଣ ହୋଇଉଠିଲା । ସେ ଧୀର ସ୍ୱରରେ ପ୍ରଶ୍ନକର୍ତ୍ତୀଙ୍କୁ ଚାହିଁ କହିଲେ, "ମାଡ଼ାମ, ମୁଁ ଭଗବାନ ବୁଦ୍ଧଙ୍କର ଭୃତ୍ୟଙ୍କର ଭୃତ୍ୟଙ୍କର ଭୃତ୍ୟଙ୍କର ଭୃତ୍ୟ । ତାଙ୍କ ଭଳି କିଏ ଥିଲା ? ପ୍ରଭୁ - ଯିଏ ନିଜ ସ୍ୱାର୍ଥପାଇଁ ଲେଶମାତ୍ର କାର୍ଯ୍ୟ କରି ନ ଥିଲେ - ଏଭଳି ଥିଲା ତାଙ୍କର ହୃଦୟ ଯାହା ସମଗ୍ର ବିଶ୍ୱକୁ କାରୁଣ୍ୟରେ ଆଲିଙ୍ଗନ କରିଥିଲେ । ଏଭଳି କରୁଣାରେ ପରିପୂର୍ଣ୍ଣ ଥିଲେ ସେହି

Digitized by srujanika@gmail.com

ରାଜକୁମାର ଓ ସନ୍ୟାସୀ ଯିଏ ଗୋଟିଏ ଛାଗର ରକ୍ଷାଲାଗି ନିଜର ଜୀବନକୁ ପଣ ଲଗାଇ ଦେଇଥିଲେ । ସେ ଏଭଳି ପ୍ରେମପୂର୍ଣ୍ଣ ବ୍ୟକ୍ତିତ୍ୱ ଯିଏ ବାଘୁଣୀର କ୍ଷୁଧା ଦୂରକରିବା ଲାଗି ନିଜକୁ ଉତ୍ସର୍ଗ କରିଥିଲେ ! ମେହେନ୍ତରକୁ ଆଶୀର୍ବାଦ କରିଥିଲେ । ମୁଁ ଯେତେବେଳେ ବାଳକ ଥିଲି, ସେ ମୋ କୋଠରିକୁ ଆସିଥିଲେ, ମୁଁ ତାଙ୍କ ପାଦତଳେ ପଡ଼ିଯାଇଥିଲି ! କାହିଁକିନା ମୁଁ ଜାଣିଥିଲି ଯେ ସେ ସ୍ୱୟଂ ବୁଦ୍ଧ ଥିଲେ ।

ଆଲମୋଡ଼ା ଅବସ୍ଥାନ କାଳରେ ଶ୍ରୀମତୀ ଆନି ବେସାନ୍ତଙ୍କ ସହ ସ୍ୱାମୀଜୀଙ୍କର ଅଚାନକ ସାକ୍ଷାତ ହେଲା । ସେ ଆଲମୋଡ଼ା ପରିଭ୍ରମଣରେ  ଆସି ଜି.ଏନ୍. ଚକ୍ରବର୍ତ୍ତୀଙ୍କ ବାସଗୃହରେ ରହୁଥିଲେ । ତାଙ୍କର ରହଣି ସମୟରେ ସେ ସ୍ୱାମୀଜୀଙ୍କୁ ନିମନ୍ତ୍ରଣ କରି ସେଠାରେ ଚା-ପାନରେ ଅପାୟିତ କରିଥିଲେ । ଇଂରାଜୀ ସରକାରଙ୍କର ପୋଲିସ୍ ଓ ଗୁଇନ୍ଦା ବିଭାଗ ସ୍ୱାମୀଜୀଙ୍କ ଉପରେ ସତର୍କ ଦୃଷ୍ଟି ରଖିଥିଲେ । ତାଙ୍କର ଆଲୋଚନା, ବିଦେଶୀନୀ ମହିଳାଙ୍କ ସହ ସଂପର୍କ ଏବଂ ଗତିବିଧି ସତର୍କତା ସହ ସାଧାପୋଷାକଧାରୀ ପୋଲିସ୍ ପ୍ରତି ମୁହୂର୍ତ୍ତରେ ନିରୀକ୍ଷଣ କରୁଥିଲେ । ଆଧ୍ୟାତ୍ମିକ ଆଲୋଚନା ବ୍ୟତୀତ, ସ୍ୱାମୀଜୀଙ୍କର ସାମାଜିକ ଓ ଅର୍ଥନୈତିକ ଆଲୋଚନା ଅଗ୍ନିବର୍ଷୀ ଥିଲା ଯାହାକୁ ପୋଲିସ୍ ରାଜନୈତିକ ଅଭସନ୍ଧିମୂଳକ ବୋଲି ଭାବୁଥିଲେ । ସତ କହିବାକୁ ଗଲେ ସ୍ୱାମୀଜୀଙ୍କର ସମଗ୍ର ଭାରତବର୍ଷ ଭ୍ରମଣ ଏବଂ ନିଜର ସକାରାତ୍ମକ ଚିନ୍ତାଧାରା ବକ୍ତୃତା, ଆଲୋଚନା ଓ ଶିକ୍ଷାଦାନ ମାଧ୍ୟମରେ ଭାରତୀୟଙ୍କ ମନରେ ଅଗ୍ନି ସଂଯୋଗ କରିଥିଲା, ଯାହାଫଳରେ ଧାର୍ମିକ, ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ନୈତିକ ଦୃଷ୍ଟିକୋଣରୁ ଏହା ଏକ ପ୍ରଜ୍ୱଳିତ ବହ୍ନି ସଦୃଶ ଉଦ୍‌ଗୀରଣ ହେବ ବୋଲି ଇଂରାଜୀ ଶାସକଗଣ ହୃଦୟଙ୍ଗମ କରିସାରିଥିଲେ । କିନ୍ତୁ ସ୍ୱାମୀଜୀ ଜଣେ ସନ୍ୟାସୀଙ୍କଠାରୁ ପୋଲିସ୍‌ର ତୀକ୍ଷ୍ଣ ଦୃଷ୍ଟି ସମ୍ପର୍କରେ ଶୁଣିବା ପରେ, ଘଟଣାକୁ ଗୁରୁତ୍ୱ ନ ଦେଇ ସ୍ୱାମୀଜୀ ଖୁବ୍ ଜୋର୍‌ରେ ହସି କହିଥିଲେ, ବୋଧହୁଏ ସରକାର ପାଗଳ ହୋଇଗଲେଣି ।

ଶିକ୍ଷାଦାନ ଓ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ କ୍ଳାନ୍ତ ହୋଇ କ୍ୟାପଟେନ ଓ ଶ୍ରୀମତି ସେଭିୟରଙ୍କ ସହ ଗୋଟିଏ ସପ୍ତାହ ନିମନ୍ତେ ଆଲମୋଡ଼ାସ୍ଥ ନିର୍ଜନ ଜାଗାକୁ ଚାଲି ଯାଇଥିଲେ । ତା ପୂର୍ବରୁ ସ୍ୱାମୀଜୀ କିୟତ ଦୂରରେ ଅବସ୍ଥିତ ସିୟାଦେବୀ ସ୍ଥାନକୁ ଯାଇ ପ୍ରତିଦିନ ଦଶଘଣ୍ଟାକାଳ ଧ୍ୟାନରେ ମଗ୍ନ ରହୁଥିଲେ । ଯାହାହେଉ ସ୍ୱାମୀଜୀ ଅଳ୍ପ ଦିନରେ ସେଭିଅର ଦମ୍ପତିଙ୍କ ସହ ଆଲମୋଡ଼ାକୁ ଫେରିଆସିଲେ । ସେତେବେଳେ ଏକ ଦୁଃସମ୍ବାଦ ତାଙ୍କ ପାଇଁ ଅପେକ୍ଷା କରିଥିଲା । ଆମେରିକାର ଶୁଭେଚ୍ଛୁ ଓ ବନ୍ଧୁ ଶ୍ରୀମତୀ ବେଗଲେ ମୃତ୍ୟୁବରଣ କରିଥିଲେ । ଶ୍ରୀମତୀ ବେଗଲେ ଆମେରିକାରେ ସ୍ୱାମୀଜୀଙ୍କୁ ବହୁ ସାହାଯ୍ୟ କରିଥିଲେ । ସ୍ୱାମୀଜୀ ଦୁଃଖ ପ୍ରକାଶ କରି କ୍ରିଷ୍ଟାଇନ୍ ଗ୍ରୀନ୍‌ଷ୍ଟିଡ଼ୋଲଙ୍କ ପାଖକୁ ଚିଠିଟିଏ ଲେଖିଥିଲେ ।

ଆହୁରି ଦୁଇଟି ଦୁଃସମ୍ବାଦ ଜୁନ୍ ୫ ତାରିଖରେ ସ୍ୱାମୀଜୀଙ୍କ ନିକଟରେ ପହଞ୍ଚିଲା । ଶ୍ରୀରାମକୃଷ୍ଣଙ୍କ ପରେ ଯାହାଙ୍କୁ ସେ ଆଧ୍ୟାତ୍ମିକ ଗୁରୁଭାବେ ଭଲ ପାଇଥିଲେ, ସେ ଥିଲେ ଗାଜିପୁରର ପାଓ୍ୱାହାରି ବାବା । ତାଙ୍କର ଦେହ ତ୍ୟାଗ ସମ୍ବାଦରେ ସ୍ୱାମୀଜୀ ଦୁଃଖିତ ହୋଇ ଗମ୍ଭୀର ହୋଇଉଠିଲେ, କେବଳ ନୀରବତା ହିଁ ତାଙ୍କର ଭାଷା ଥିଲା । ଶିଷ୍ୟମଣ୍ଡଳିଙ୍କ ସମ୍ମୁଖରେ ସ୍ୱାମୀଜୀ

Digitized by srujanika@gmail.com

ସଂଧ୍ୟା ସମୟରେ ନିଜର ନୀରବତା ଭଙ୍ଗକରି କହିଲେ : ମୁଁ ଚିଠି ପାଇଛି ଯେ ପଓ୍ୱାହାରି ବାବା ସମସ୍ତବସ୍ତୁ ଯଜ୍ଞରେ ଆହୂତି ପ୍ରଦାନକରି ନିଜକୁ ଯଜ୍ଞକୁଣ୍ଡରେ ଆହୂତି ଦେଇ ଭସ୍ମିଭୂତ ହୋଇଛନ୍ତି ।'' ଇତ୍ୟବସରରେ ଜଣେ ଶିଷ୍ୟ ପଚାରିଲେ, ''ଏହା କ'ଣ ଭୁଲ ନୁହେଁ କି ?'' ସ୍ୱାମୀଜୀ ଗମ୍ଭୀର ସ୍ୱରରେ କହିଲେ, ''ସେ ମୋ ଦୃଷ୍ଟିରେ ଏଭଳି ମହାନ୍ ଥିଲେ ଯେ ମୁଁ ତାଙ୍କୁ ବିଚାର କରିପାରିବି ନାହିଁ । ସେ କ'ଣ କରୁଥିଲେ ସେ ନିଜେ ହିଁ ଜାଣିଥିଲେ ।''

ସ୍ୱାମୀଜୀଙ୍କ ବ୍ୟକ୍ତିଗତ ଷ୍ଟେନୋଗ୍ରାଫର ତଥା ଅନ୍ତରଙ୍ଗ ଶିଷ୍ୟ ଜେ.ଜେ. ଗୁଡ୍‌ୱିନ୍ ଯାହାଙ୍କୁ ସେ ବ୍ରହ୍ମବାଦିନୀ ପତ୍ରିକା ପ୍ରକାଶନ କ୍ଷେତ୍ରରେ ଆଲସିଙ୍ଗାକୁ ସହାୟତା କରିବା ଲାଗି ମାଡ୍ରାସ ପଠାଇଥିଲେ, ତାଙ୍କର ଉତ୍‌କମଣ୍ଡାଠାରେ ମୃତ୍ୟୁ ଜନିତ ସମ୍ବାଦ ଶ୍ରବଣପାଇ ସ୍ୱାମୀଜୀ ଦୁଃଖରେ ମ୍ରିୟମାଣ ହୋଇଗଲେ । ଜୁନ୍ ୨, ୧୮୯୮ରେ ଆନ୍ତ୍ରିକ ଜ୍ୱରରେ ପୀଡ଼ିତ ହୋଇ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଗୁଡ୍‌ୱିନ୍ ବହୁଦିନ ଧରି ଭକ୍ତି ସହକାରେ ତାଙ୍କର ସେବା କରିଥିଲେ । ସ୍ୱାମୀଜୀ ବ୍ୟଥିତ କଣ୍ଠରେ କହିଲେ, ''ମୋ ଡାହାଣ ହାତ ଚାଲିଗଲା ।'' ମୋ କ୍ଷତି ମାପିହେବ ନାହିଁ, ଯଦି ଗୁଡ୍‌ୱିନ୍ ବଞ୍ଚିଥାନ୍ତେ, ବହୁ କାର୍ଯ୍ୟ ତାଙ୍କ ଦ୍ୱାରା ସମାପିତ ହୋଇଥାନ୍ତା । ମୁଁ ତାଙ୍କଠାରେ ଋଣୀ, ତାଙ୍କର ଋଣ କେହି ପରିଶୋଧ କରିପାରିବେ ନାହିଁ । ଇସ୍ପାତ ଭଳି ଦୃଢ଼ ବନ୍ଧୁଟିଏ ସେ ଥିଲେ, ଭକ୍ତିରେ ବିଫଳତା କ'ଣ ସେ ଜାଣି ନ ଥିଲେ । କ୍ଲାନ୍ତିରହିତ ଜଣେ କର୍ମୀ ଥିଲେ । ସ୍ୱାମୀଜୀଙ୍କ କଲମ ମୁନରୁ ସେହି ଦିବଂଗତ ଆତ୍ମା ଉଦ୍ଦେଶ୍ୟରେ ଝରିପଡ଼ିଥିଲା ଏକ ଅଶ୍ରୁଳ କବିତା, ଯାହା ସେ ଗୁଡ୍‌ୱିନ୍‌ଙ୍କ ମା'ଙ୍କ ନିକଟକୁ ପଠାଇଥିଲେ - ହେ ଆତ୍ମନ୍, ନକ୍ଷତ୍ର ଖଚିତ ପଥରେ ତୁମେ ଅଗ୍ରସର ହୁଅ ପରମାନନ୍ଦ ରାଜ୍ୟକୁ, ଯେଉଁଠି ଭାବନା ସର୍ବଦା ମୁକ୍ତ, କାଳ ଓ ସ୍ଥାନ ସୃଷ୍ଟି କରେନି କୁହେଳିକା, ଶାଶ୍ୱତ ପ୍ରଶାନ୍ତି ଓ ଆଶୀଷ ଭିତରେ ତୁମେ ବୁଡ଼ିଯାଅ ।''

କ୍ୟାପ୍‌ଟେନ ଓ ଶ୍ରୀମତୀ ସେଭିଅରଙ୍କ ଆଲମୋଡ଼ାସ୍ଥିତ ବାସଗୃହରେ ସ୍ୱାମୀଜୀ ବାସ କରୁଥିଲେ । ସେହି ସମୟରେ ଶ୍ରୀରାମକୃଷ୍ଣଙ୍କର ଭକ୍ତ ତଥା ବଙ୍ଗଳାର ଦେଶଭକ୍ତ ସନ୍ତ ଅଶ୍ୱିନ କୁମାର ଦତ୍ତ ଆଲମୋଡ଼ା ଭ୍ରମଣରେ ପହଞ୍ଚିଥିଲେ । ସେ ଶୁଣିବାକୁ ପାଇଲେ ଯେ ଜଣେ ବଙ୍ଗାଳୀ ସାଧୁ ଆଲମୋଡ଼ାରେ ବାସ କରୁଛନ୍ତି, ଯାହାଙ୍କ ଖ୍ୟାତିରେ ଆଲମୋଡ଼ା ଭଳି କ୍ଷୁଦ୍ର ସହର ପ୍ରଶଂସା ମୁଖରିତ । ଅଶ୍ୱିନବାବୁ ଠଉରେଇ ନେଲେଯେ ଉକ୍ତ ସନ୍ନ୍ୟାସୀ ନରେନ୍ଦ୍ର ହୋଇଥିବେ । ସେ କାଳବିଳମ୍ବ ନ କରି ସେଠାରେ ହେଲେ ଉପନୀତ । ଅଗଣାରେ ଠିଆହୋଇ ପଚାରିଲେ ''ନରେନ୍ଦ୍ର ଦତ୍ତ ଏଠାରେ ରହୁଛନ୍ତି ?'' ଜଣେ ଯୁବ ସନ୍ନ୍ୟାସୀ ଘରୁ ବାହାରି ଆସି ବିରକ୍ତି କଣ୍ଠରେ କହିଲେ, ନା ଆଜ୍ଞା, ଏଠାରେ ନରେନ୍ଦ୍ର ଦତ୍ତ ବୋଲି କୌଣସି ବ୍ୟକ୍ତି ନାହାନ୍ତି । ବହୁ ବର୍ଷ ହେଲା ସେ ମରିଗଲେଣି । କିନ୍ତୁ ଏଠାରେ କେବଳ ସ୍ୱାମୀ ବିବେକାନନ୍ଦ ଅଛନ୍ତି ।'' ''କିନ୍ତୁ ପରମହଂସ ଦେବଙ୍କର ନରେନ୍ଦ୍ର ତ ?'' ଅଶ୍ୱିନବାବୁ ପୁନଶ୍ଚ ପ୍ରଶ୍ନ କଲେ । ଏହି କଥାବାର୍ତ୍ତା ଇତିମଧ୍ୟରେ ସ୍ୱାମୀଜୀଙ୍କ କାନରେ ବାଜିଲା । ସେ ସଙ୍ଗେସଙ୍ଗେ ଉକ୍ତ ସନ୍ନ୍ୟାସୀଙ୍କୁ ଭିତରକୁ ଡକାଇ ଆଣି ତାଙ୍କ ପାଖରୁ ସମସ୍ତ ବିଷୟ ଶୁଣିବା ପରେ ସେ ଚିତ୍କାର କରି ଉଠିଲେ ''ଓହୋଃ ତୁମେ କ'ଣ କଲ ? ତାଙ୍କୁ ଭିତରକୁ ସସମ୍ମାନେ ନେଇଆସ ।''

Digitized by srujanika@gmail.com

- ୭ -

*ତୁମେ ଅସ୍ପୃଶ୍ୟ, ମୋଚି, ମେହେନ୍ତର ଏବଂ ଏତାଦୃଶ ବ୍ୟକ୍ତିଙ୍କ ପାଖକୁ ଯାଅ ଏବଂ ସେମାନଙ୍କୁ କୁହ, ''ତୁମେମାନେ ହିଁ ରାଷ୍ଟ୍ର ଓ ଜାତିର ଆତ୍ମା । ତୁମ ଭିତରେ ନିହିତ ଅମାପ ଶକ୍ତି ଯାହା ସମଗ୍ର ବିଶ୍ୱକୁ ଆନ୍ଦୋଳିତ କରିପାରିବ । ଠିଆହୁଅ, ହାତଗୋଡ଼ରୁ କଡ଼ି ଓ ବେଡ଼ି ଖୋଲିଦିଅ ଏବଂ ସମଗ୍ର ବିଶ୍ୱ ବିସ୍ମୟରେ ତୁମମାନଙ୍କୁ ଚାହିଁବ, ତୁମେ ଯାଅ ଓ ସେମାନଙ୍କ ଅଞ୍ଚଳରେ ବିଦ୍ୟାଳୟ ଖୋଲ ଏବଂ ସେମାନଙ୍କୁ ଉପବୀତ ପ୍ରଦାନ କର ।''*

ଅଶ୍ୱିନବାବୁ ଯେମିତି ଭିତରକୁ ପ୍ରବେଶ କରିଛନ୍ତି, ତତ୍‌କ୍ଷଣାତ୍ ସ୍ୱାମୀଜୀ ଠିଆହୋଇ ତାଙ୍କୁ ସ୍ନେହରେ ପାଛୋଟି ଆଣିଲେ । ଅଶ୍ୱିନବାବୁ ଭାବ ଗଦ୍‌ଗଦ୍ କଣ୍ଠରେ କହି ଉଠିଲେ, ''ଶ୍ରୀଠାକୁର ମୋତେ ନରେନ୍ଦ୍ର ସହ କଥା ହେବାକୁ ଥରେ କହିଥିଲେ । କିନ୍ତୁ ସେଦିନ ନରେନ୍ଦ୍ର ମୋ ସହ ବେଶି କଥାବାର୍ତ୍ତା ହୋଇପାରି ନଥିଲେ । ଏହା ଭିତରେ ଚଉଦ ବର୍ଷ ବିତିଗଲାଣି, ମୁଁ ପୁଣି ଥରେ ତାଙ୍କୁ ଆଜି ଭେଟିଲି, ଠାକୁରଙ୍କ କଥା କେବେ ବ୍ୟର୍ଥ ହୁଏ ନାହିଁ ।'' ସ୍ୱାମୀଜୀଙ୍କର ସ୍ମୃତିପଟରେ ଜାଗି ଉଠିଲା ସେଦିନର ଘଟଣା, ତାଙ୍କ ସହ ବେଶି କଥାବାର୍ତ୍ତା ହୋଇ ନ ପାରିଥିବାରୁ ସେ ଦୁଃଖପ୍ରକାଶ କଲେ । ତତ୍‌ପଶ୍ଚାତେ ଅଶ୍ୱିନବାବୁ ତାଙ୍କୁ 'ସ୍ୱାମୀଜୀ' ସମ୍ବୋଧନ କରି କଥାବାର୍ତ୍ତା ଆରମ୍ଭ କଲାରୁ, ସ୍ୱାମୀଜୀ ବାଧାଦେଇ କହିଉଠିଲେ, ''ତୁମ ପାଖରେ କେବେ ମୁଁ ସ୍ୱାମୀଜୀ ହେଲି ? ବର୍ତ୍ତମାନ ସୁଦ୍ଧା ମୁଁ ତୁମର ନରେନ୍ଦ୍ର ହୋଇରହିଛି । ଯେଉଁ ନାମଧରି ଠାକୁର ମୋତେ ଡାକୁଥିଲେ, ତାହା ମୋ ପାଇଁ ଅମୂଲ୍ୟ । ମୋତେ ତୁମେ ନରେନ୍ କହି ସମ୍ବୋଧନ କର ।'' ଆଳାପ ଆଲୋଚନା ସେମାନଙ୍କ ଭିତରେ ଆରମ୍ଭ ହେଲା ।

ଅଶ୍ୱିନବାବୁ : ତୁମେ ସମଗ୍ର ବିଶ୍ୱ ଭ୍ରମଣ କରିଛ ଏବଂ ଲକ୍ଷଲକ୍ଷ ଲୋକଙ୍କ ହୃଦୟକୁ ଆଧ୍ୟାତ୍ମିକ ଜ୍ଞାନରେ ଆଲୋକିତ କରିଛ । ତୁମେ ମୋତେ କହିପାରିବ କେଉଁ ମାର୍ଗରେ ଭାରତ ସୁରକ୍ଷିତ ରହିପାରିବ ଅଥବା ମୁକ୍ତି ମିଳିପାରିବ ?

ସ୍ୱାମୀଜୀ　ଶ୍ରୀରାମକୃଷ୍ଣଙ୍କଠାରୁ ତୁମେ ଯାହା ଶୁଣିଛ, ତାହାଠୁଁ ଅଧିକ ମୁଁ କହିପାରିବି ନାହିଁ - ଆମ ସତ୍ତାର ମୌଳିକତା ହିଁ ଧର୍ମ, ଏହା ମାଧ୍ୟମରେ ସଂସ୍କାରମୂଳକ କାର୍ଯ୍ୟ ନିର୍ବାହିତ ହେଲେ, ଜନସାଧାରଣ ଗ୍ରହଣ କରିବେ । ତାହା ନ ହେଲେ, ଗଙ୍ଗାକୁ ତା'ର ଉତ୍ସସ୍ଥଳୀ ହିମାଳୟ ବକ୍ଷକୁ ଫେରାଇ ଆଣିବାଭଳି ଅବାସ୍ତବ କାର୍ଯ୍ୟ ହେବ ।

ଅଶ୍ୱିନବାବୁ : କିନ୍ତୁ ଜାତୀୟ କଂଗ୍ରେସର କାର୍ଯ୍ୟପ୍ରଣାଳୀ ଉପରେ ତୁମର ବିଶ୍ୱାସ ନାହିଁ ?

ସ୍ୱାମୀଜୀ　ନା, ମୋର ବିଲକୁଲ ନାହିଁ । କିନ୍ତୁ ନାହିଁ ମାମୁଁଠାରୁ କଣା ମାମୁଁ ଯେ ଭଲ । କିନ୍ତୁ ସୁପ୍ତ ଜାତିକୁ ସବୁଦିଗରୁ ଠେଲି ଉଠାଇବା ଉତ୍ତମ କାର୍ଯ୍ୟ । ଜନସାଧାରଣଙ୍କ ପାଇଁ କଂଗ୍ରେସ କ'ଣ କରୁଛି ମୋତେ କହିଲ ? ତୁମେ କ'ଣ ଭାବୁଛ ଯେ

Digitized by srujanika@gmail.com

କେତେକ ଆନୁଷ୍ଠାନିକ ପ୍ରସ୍ତାବ ଗୃହୀତ କରିଦେଲେ ସ୍ୱାଧୀନତା ମିଳିଯିବ ? ସେଥିରେ ମୋର ଆଦୌ ବିଶ୍ୱାସ ନାହିଁ । ପ୍ରଥମେ ସମଗ୍ର ଦେଶବାସୀଙ୍କୁ ଜାଗରିତ କରିବାକୁ ହେବ । ସେମାନେ ପ୍ରଥମେ ଦୁଇଓଳି ପୂର୍ଣ୍ଣ ଭୋଜନ ପାଆନ୍ତୁ, ତା'ପରେ ସେମାନେ ନିଜର ମୁକ୍ତି ଲାଗି କାର୍ଯ୍ୟପନ୍ଥା ବାହାର କରିବେ । ଯଦି ସେମାନଙ୍କ ପାଇଁ କଂଗ୍ରେସ କିଛି କାର୍ଯ୍ୟ କରିଛି, ତେବେ ତାହା ପ୍ରତି ମୋର ସମ୍ବେଦନତା ରହିଛି । ଇଂରାଜୀମାନଙ୍କର ଭଲଗୁଣକୁ ଆମେ ଆପଣେଇବା ଉଚିତ ।

ଅଶ୍ୱିନବାବୁ : ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମ ବିଶ୍ୱାସକୁ ତୁମେ ଧର୍ମ ବୋଲି କହୁଛ କି ?

ସ୍ୱାମୀଜୀ ଠାକୁର କ'ଣ କୌଣସି ନିର୍ଦ୍ଦିଷ୍ଟ ଧର୍ମ ପ୍ରଚାର କରିଥିଲେ ? କିନ୍ତୁ ଏକ ବ୍ୟାପକ ଓ ସଂଶ୍ଳେଷିକ ଧର୍ମ ଭାବେ ବେଦାନ୍ତ ସମ୍ବନ୍ଧରେ ସେ କହିଥିଲେ । ସୁତରାଂ ମୁଁ ଏହାକୁ ପ୍ରଚାର କରୁଛି । କିନ୍ତୁ ମୋ ଧର୍ମର ମୌଳିକ ପ୍ରକୃତି ହେଉଛି ଶକ୍ତି । ଯେଉଁ ଧର୍ମ ହୃଦୟରେ ଶକ୍ତି ସଞ୍ଚରଣ କରେ ନାହିଁ, ଏପରିକି ତାହା ଉପନିଷଦ, ଗୀତା ଓ ଭାଗବତ ହୋଇଥାଉ, ତାହା ମୋ ପାଇଁ ଧର୍ମ ପଦବାଚ୍ୟ ନୁହେଁ । ଶକ୍ତି ହିଁ ଧର୍ମ ଏବଂ ଶକ୍ତି ଅପେକ୍ଷା କେହି ବି ମହାନ ନୁହଁନ୍ତି ।

ଅଶ୍ୱିନୀବାବୁ : ଦୟାକରି ମୋତେ କୁହ ମୁଁ କ'ଣ କରିବି ?

ସ୍ୱାମୀଜୀ ମୁଁ ଜାଣେ, ତୁମେ ଶୈକ୍ଷିକ କାର୍ଯ୍ୟରେ ଲିପ୍ତ । ତାହା ହିଁ ପ୍ରକୃତ କାର୍ଯ୍ୟ । ଏକ ମହାନ୍ ଶକ୍ତି ତୁମ ଭିତରେ କାର୍ଯ୍ୟରତ ଏବଂ ଶିକ୍ଷାଦାନ ସବୁଠାରୁ ମହତ୍ କାର୍ଯ୍ୟ । ହଁ ମନେରଖ, ମନୁଷ୍ୟ-ଗଠନ କାର୍ଯ୍ୟ । ତୁମର ଛାତ୍ରଛାତ୍ରୀଙ୍କର ଚରିତ୍ର ବଜ୍ର ସମ ଗଢ଼ିତୋଳ । ବଙ୍ଗାଳୀ ଯୁବ ସଂପ୍ରଦାୟଙ୍କର ଅସ୍ଥିକୁ ବଜ୍ର ସମ ଗଠନ କର, ଯେପରି ସେମାନେ ଭାରତର ଦାସତ୍ୱକୁ ଭାଙ୍ଗି ଚୁରମାର କରିଦେବେ । ତୁମେ ମୋତେ ଅଳ୍ପ କେତେକ ଉପଯୁକ୍ତ ବାଳକ ଦେଇପାରିବ ? ବିଶ୍ୱକୁ ମୁଁ ଏକ ସୁନ୍ଦର ଧକ୍କା ମାରିପାରିବି ।

ଯେଉଁଠି ତୁମେ ରାଧାକୃଷ୍ଣ ଭଜନ ଶୁଣିବାର ଦେଖିବ, ତୁମର ଚାବୁକ ଡାହାଣ-ବାମ କରି ବ୍ୟବହାର କର । ସମଗ୍ର ରାଷ୍ଟ୍ର ଧ୍ୱଂସ ଅଭିମୁଖେ ଯାତ୍ରା କରୁଛି । ଲୋକଙ୍କର ନିଜ ଉପରେ ଆତ୍ମ-ସଂଯମତା ନାହିଁ, କିନ୍ତୁ ଏଭଳି ଭଜନ ଗାନରେ ଲିପ୍ତ । ଏତାଦୃଶ ଉଚ୍ଚାଦର୍ଶକୁ ହୃଦୟଙ୍ଗମ କରିବା ଲାଗି ସାମାନ୍ୟ ଅପବିତ୍ରତା ବାଧା ସୃଷ୍ଟି କରେ, ଏହା କ'ଣ ଥଟ୍ଟା ତାମସା ? ଆମେ ବହୁତ ଗାଇଲେଣି ଓ ନାଚିଲେଣି : ଅଳ୍ପ ସମୟ ପାଇଁ ଏଭଳି ନିଷ୍କ୍ରିୟ ଅବସ୍ଥା ଭିତରେ କ୍ଷତି ନାହିଁ, ବର୍ତ୍ତମାନ ଦେଶ ଶକ୍ତିଶାଳୀ ହେଉ ।

ତୁମେ ଅସ୍ପୃଶ୍ୟ, ମୋଚି, ମେହେନ୍ତର ଏବଂ ଏତାଦୃଶ ବ୍ୟକ୍ତିଙ୍କ ପାଖକୁ ଯାଅ ଏବଂ ସେମାନଙ୍କୁ କୁହ, ''ତୁମେମାନେ ହିଁ ରାଷ୍ଟ୍ର ଓ ଜାତିର ଆତ୍ମା । ତୁମ ଭିତରେ

Digitized by srujanika@gmail.com

ନିହିତ ଅମାପ ଶକ୍ତି ଯାହା ସମଗ୍ର ବିଶ୍ୱକୁ ଆନ୍ଦୋଳିତ କରିପାରିବ । ଠିଆହୁଅ, ହାତଗୋଡ଼ରୁ କଡ଼ି ଓ ବେଡ଼ି ଖୋଲିଦିଅ ଏବଂ ସମଗ୍ର ବିଶ୍ୱ ବିସ୍ମୟରେ ତୁମମାନଙ୍କୁ ଚାହିଁବ, ତୁମେ ଯାଅ ଓ ସେମାନଙ୍କ ଅଞ୍ଚଳରେ ବିଦ୍ୟାଳୟ ଖୋଲ ଏବଂ ସେମାନଙ୍କୁ ଉପବୀତ ପ୍ରଦାନ କର ।''

ସ୍ୱାମୀଜୀଙ୍କର ପ୍ରାତଃଭୋଜନ ସମୟ ହୋଇଯାଇଥିବାରୁ ଅଶ୍ୱିନୀବାବୁ ମେଲାଣି ମାଗିଲେ । ପ୍ରସ୍ଥାନ ପୂର୍ବରୁ ସେ ସ୍ୱାମୀଜୀଙ୍କୁ ପଚାରିଲେ, ''ଏହା କ'ଣ ସତ୍ୟ, ମାଡ୍ରାସର ବ୍ରାହ୍ମଣମାନେ ତୁମେ ଶୂଦ୍ର ହୋଇଥିବାରୁ ବେଦ ପ୍ରଚାର କରିବାର ଅଧିକାର ନାହିଁ ଏବଂ ତୁମେ ସେମାନଙ୍କୁ କହିଥିଲ, ''ମୁଁ ଯଦି ଶୂଦ୍ର, ତେବେ ମାଡ୍ରାସର ବ୍ରାହ୍ମଣମାନେ ମେହେନ୍ତରଙ୍କର ମେହେନ୍ତର ତାହା କ'ଣ ସତ୍ୟ ?

ସ୍ୱାମୀଜୀ ହଁ ସତ୍ୟ ।

ଅଶ୍ୱିନୀବାବୁ : ତୁମ ଭଳି ଜଣେ ବ୍ୟକ୍ତିତ୍ୱ, ଧର୍ମଗୁରୁ ଏବଂ ଆତ୍ମସଂଯମୀ ବ୍ୟକ୍ତି ପକ୍ଷରେ ଏଭଳି ପ୍ରତ୍ୟୁତ୍ତର ଦେବା କ'ଣ ଠିକ୍ ହୋଇଥିଲା ?

ସ୍ୱାମୀଜୀ କିଏ ଏଭଳି କହୁଛି ? ମୁଁ ଠିକ୍ ବୋଲି ତ କହିନାହିଁ । ଏହି ଲୋକମାନଙ୍କର ଅପରିଣାମଦର୍ଶିତା ଯୋଗୁଁ ମୋର କ୍ରୋଧ ଜାତ ହେଲା ଏବଂ ଏଭଳି ଶବ୍ଦ ମୋ ମୁଖରୁ ନିଃସୃତ ହେଲା । ମୁଁ ଆଉ କ'ଣ କରିପାରିଥାନ୍ତି ? କିନ୍ତୁ ମୁଁ ଯାହା କହିଲି, ତାହା ଠିକ୍ କହିନାହିଁ ।

ସ୍ୱାମୀଜୀଙ୍କ ଉଦାରତା ପରିଲକ୍ଷିତ କରି ଅଶ୍ୱିନୀବାବୁ ସ୍ୱାମୀଜୀଙ୍କୁ ସ୍ନେହଭରା ଆବେଗତାରେ ଆଲିଙ୍ଗନ କରି କହିଲେ, ''ଆଜି ମୋ ଦୃଷ୍ଟିକୋଣରେ ତୁମେ ବିଶାଳ ହୋଇଗଲ । ଆଜି ମୁଁ ଉପଲବ୍ଧି କଲି ଯେ ତୁମେ କାହିଁକି ବିଶ୍ୱ ବିଜେତା ହୋଇପାରିଛ ଏବଂ ଠାକୁର କାହିଁକି ତୁମକୁ ଏତେ ସ୍ନେହ କରୁଥିଲେ ।''

ସ୍ୱାମୀଜୀଙ୍କର ବ୍ୟକ୍ତିତ୍ୱ ବିଚିତ୍ର । ନିଜର କ୍ରୋଧ ଯାହା ବ୍ରାହ୍ମଣଙ୍କ ଦ୍ୱାରା ନିର୍ଯ୍ୟାତିତ ମେହେନ୍ତରଙ୍କର ହିନିମାନ ଜୀବନ ଓ ଅଶ୍ରୁଳ ନୟନକୁ ଦେଖି ଜାତ ହୋଇଥିଲା, ତାହା ବି କ୍ରୋଧ ବୋଲି ସେ ହୃଦୟଙ୍ଗମ କରିପାରି ଅବଶୋଷ ପ୍ରକାଶ କଲେ । କ୍ରୋଧ ଏଭଳି ଏକ ବିନାଶକାରୀ ଭାବପ୍ରବଣତା ଯାହା ଯେକୌଣସି ପରିସ୍ଥିତିରେ ଜାତ ହେଉନା କାହିଁକି ତାହା ନିଶ୍ଚିତଭାବେ ବର୍ଜନୀୟ । ନିଜର କ୍ରୋଧକୁ ସେ ଆଦୌ ସମର୍ଥନ କଲେନାହିଁ । କିନ୍ତୁ ଏତାଦୃଶ ବିନିଷ୍ଟକାରୀ ଭାବପ୍ରବଣତାକୁ ଘଣ୍ଟ ଘୋଡ଼ାଇଲେ ନାହିଁ ବରଂ ମନୁଷ୍ୟର ଏକ ଅବଗୁଣ ଭାବେ ଏହାକୁ ପ୍ରତିପାଦିତ କରି ଦୁଃଖ ପ୍ରକାଶ କଲେ । ଏତଦ୍‌ବ୍ୟତୀତ ସ୍ୱାମୀଜୀଙ୍କ ମୁଖରୁ ଉଚ୍ଚାରିତ ବାକ୍ୟ ସହଜରେ ବୁଝିହେବ ନାହିଁ, କାରଣ ସାଧାରଣ ମନରେ ଏହା ପରସ୍ପର ବିରୋଧୀ ବିଷୟବସ୍ତୁ ଭଳି ଅନୁଭୂତ ହେବ । କେଉଁ ପରିପ୍ରେକ୍ଷୀରେ ସେ କେଉଁ କଥା କହିଲେ, ତାହା ଭଲ ଭାବରେ ବୁଝିବାକୁ ହେବ । ଉଦାହରଣସ୍ୱରୂପ ସ୍ୱାମୀଜୀ ଉପରୋକ୍ତ କଥପୋକଥନ ଭିତରେ ପରାମର୍ଶ ଦେଲେ ଯେ ରାଧାକୃଷ୍ଣ ଗାନରେ ନିମଗ୍ନ ବ୍ୟକ୍ତିଙ୍କୁ ବାଁ ଡାହାଣ କରି ଚାବୁକ ପ୍ରହାର କରିବ । ସ୍ୱାମୀଜୀ ତତ୍‌କାଳୀନ ସମାଜରେ ଯେଉଁ ବ୍ୟକ୍ତି କୌଣସି କାର୍ଯ୍ୟ ନ କରି, ନିଷ୍କ୍ରିୟ ଓ ନିକମା ହୋଇ, କପାଳରେ ତିଳକ

Digitized by srujanika@gmail.com

ଚିତା ଲଗାଇ, ଆଳସ୍ୟପୂର୍ଣ୍ଣ ଜୀବନ ବିତାଉ ଥିଲେ ସେମାନଙ୍କୁ କାର୍ଯ୍ୟରତ କରିବାକୁ ଏପରି ବାକ୍ୟ ତାଙ୍କ ମୁଖରୁ ନିଃସୃତ ହେଲା ।

ଏକ ମନୋବୈଜ୍ଞାନିକ ଦୃଷ୍ଟିକୋଣରୁ ସେ ଅଙ୍ଗେ ନିଭେଇ ଥିଲେ ଯେ ଭାରତର ଅଧଃପତନ ଓ ଦାସତ୍ୱ ମନୋଭାବର ଆରମ୍ଭ ନିଷ୍କ୍ରିୟତା ଓ ଦୁର୍ବଳତା ଗଣ୍ଡି ଭିତରୁ ହୋଇଥିଲା, ତାହା ନ ହୋଇଥିଲେ ଶତାବ୍ଦୀ ଶତାବ୍ଦୀ ଧରି ବାହ୍ୟ ଆକ୍ରମଣ ଓ ବିଦେଶୀ ଶାସନର ଭାରତ ଶିକାର ହୋଇ ନ ଥାନ୍ତା । ଅନ୍ୟପକ୍ଷରେ ରାଧାକୃଷ୍ଣ ପ୍ରେମ ଭାରତୀୟ ଧର୍ମ ଜଗତରେ ସବୁଠାରୁ ଉଚ୍ଚ ଆଦର୍ଶ । ଏହି ଆଦର୍ଶକୁ ଲାଭ କରିବାକୁ ହେଲେ ମନୁଷ୍ୟ ଶୁଦ୍ଧ ଓ ପବିତ୍ର ପଥରେ ଯାତ୍ରା କରିବାକୁ ପଡ଼ିବ । ଶୁଦ୍ଧ ଓ ପବିତ୍ର ଜୀବନଯାପନର ଅର୍ଥ ନୁହେଁ ନିଜେ କର୍ମଶୂନ୍ୟ ହୋଇ ଅନ୍ୟ କେତେକଙ୍କୁ ଅକର୍ମା କରିଦେବା ! ସାମାନ୍ୟତମ ଅଶୁଦ୍ଧତା ସେହି ଅପ୍ରାକୃତ ଓ ଶ୍ରେଷ୍ଠ ପ୍ରେମ ବୁଝିବା କ୍ଷେତ୍ରରେ ପ୍ରତିବନ୍ଧ ସୃଷ୍ଟି କରିବ । ତେଣୁ ସ୍ୱାମୀଜୀଙ୍କର ଏତାଦୃଶ କଠୋର ସେହି କେତେକ ଅକର୍ମା, ଅଳସୁଆ, ଭଣ୍ଡଙ୍କ ଉଦ୍ଦେଶ୍ୟରେ ଥିଲା ଉଦ୍ଦିଷ୍ଟ, ଯେଉଁମାନଙ୍କ ପ୍ରଭାବରେ ନିରୀହ ଦେଶବାସୀ ଶିକାର ହୋଇ ନିଜ ଭିତରେ ନିହିତ ପ୍ରଚଣ୍ଡ ଶକ୍ତିକୁ ବିସ୍ମରଣ ହୋଇଥିଲେ । ସ୍ୱାମୀଜୀ ଦେଶବାସୀଙ୍କୁ ଏମନ୍ତ ତାମସିକ ଆଳସ୍ୟତାରୁ ଉଠାଇବା ପାଇଁ କଠୋର ଭାଷା ପ୍ରୟୋଗ କରିଥିଲେ ।

ଏଥିପୂର୍ବରୁ ପଞ୍ଜାବ ରାଜ୍ୟ ପରିଭ୍ରମଣ କାଳରେ ପଞ୍ଜାବୀଙ୍କ ଭିତରେ ଭକ୍ତିର ଆବେଗତା ଅଭାବ ଯୋଗୁଁ ସ୍ୱାମୀଜୀ ନିଜର କ୍ଷୋଭ ପ୍ରକାଶ କରି କହିଥିଲେ ଯେ ପଞ୍ଚନଦୀର ରାଜ୍ୟ ପଞ୍ଜାବ ଏବେ ଏକ ଶୁଷ୍କ ଆଧ୍ୟାତ୍ମିକତାର ସ୍ଥାନ ପାଲଟି ଯାଇଛି । ଭକ୍ତିର ଉଦ୍ରେକଲାଗି ପଞ୍ଜାବୀମାନେ ଫଳପ୍ରଦ ଆଧ୍ୟାତ୍ମିକ ଦିଗ ପ୍ରତି ଦୃଷ୍ଟି ଦେବାକୁ ସେ ଆହ୍ୱାନ କରିଥିଲେ । ଶ୍ରୀ ଚୈତନ୍ୟଙ୍କର ସଂକୀର୍ତ୍ତନ ଯାହା ବଙ୍ଗଳାର ବୈଷ୍ଣବ ସମ୍ପ୍ରଦାୟ ଭିତରେ ପ୍ରଚଳିତ, ତାହା ପଞ୍ଜାବର ଜନସାଧାରଣଙ୍କ ମଧ୍ୟରେ ପ୍ରଚାରିତ ଓ ପ୍ରସାରିତ ହେବା ସକାଶେ ସେ ନିଜର ମତପୋଷଣ କରିଥିଲେ । ଗୋଟିଏ ପକ୍ଷରେ ସ୍ୱାମୀଜୀ ରାଧାକୃଷ୍ଣ ଭକ୍ତି ସଂଗୀତର ପ୍ରଶଂସକ ଓ ଅନ୍ୟ ପକ୍ଷରେ ଏହାର ବିରୋଧୀ । ତେବେ କ'ଣ ଆମେ ସ୍ୱାମୀଜୀଙ୍କୁ ଜଣେ ପରସ୍ପର ବିରୋଧି ମନୋଭାବର ବ୍ୟକ୍ତିତ୍ୱ କହି ପାରିବା ? ନା, କସ୍ମିନକାଳେ ନୁହେଁ । ମନୁଷ୍ୟର ଆଧ୍ୟାତ୍ମିକ ବିକାଶ ପାଇଁ ଭକ୍ତି ଅତ୍ୟନ୍ତ ଆବଶ୍ୟକ । ଅନନ୍ୟ ଭକ୍ତି ମନୁଷ୍ୟ ଭିତରେ କେବଳ ସମ୍ବେଦନଶୀଳତା, କରୁଣା, ପ୍ରେମ ସୃଷ୍ଟି କରେ ନାହିଁ ବରଂ ମନୁଷ୍ୟକୁ ଶୁଦ୍ଧ, ସାହସୀ ଓ ବଳବାନ କରି ଗଢ଼ିତୋଳେ, ସେଥିରେ ତିଳେମାତ୍ର ଅପବିତ୍ରତାର ମନୋଭାବ ରହେନାହିଁ । କିନ୍ତୁ ମୁଖରେ ହରିନାମ, କପାଳରେ ତିଳକ ଚିତା, କର୍ମରେ ସ୍ୱାର୍ଥପରତା ଓ ମନରେ ବିଦ୍ୱେଷଭାବ ଓ ଯୌନଲାଳସା ସହ ଆଳସ୍ୟ ଜୀବନଯାପନର ବ୍ୟକ୍ତିତ୍ୱ ସମାଜରେ ଉପକାର ପରିବର୍ତ୍ତେ ବେଶି ଅପକାର କରିଥାନ୍ତି । ସେହିଭଳି ମଧ୍ୟ ଶକ୍ତିବାନ ହୋଇ, କଠୋର ପରିଶ୍ରମରେ ନିମଗ୍ନ ରହି, ସୁସ୍ଥ ଓ ପ୍ରାଚୁର୍ଯ୍ୟ ଜୀବନଯାପନ କଲେ, ମନ ଓ ହୃଦୟରେ ଶାନ୍ତି ମିଳେ ନାହିଁ । ତେଣୁ ଭକ୍ତି ଆବଶ୍ୟକ । ଆଦି ଶଙ୍କରାଚାର୍ଯ୍ୟଙ୍କର ବୌଦ୍ଧିକତା ଓ ଇସଲାମର ଶକ୍ତିଶାଳୀ ଶରୀର ଧାରଣ କରି ଆଳସ୍ୟ ଓ ଦୁର୍ବଳ ମାନସିକତା ପରିହାର କରି, ବିଶ୍ୱର କଲ୍ୟାଣ ନିମନ୍ତେ କାର୍ଯ୍ୟ କରିବାକୁ ସେ ଏଠାରେ ବଜ୍ରବାଣୀ ଶୁଣାଇଛନ୍ତି ।



Digitized by srujanika@gmail.com

॥ ଛତିଶ ॥

# ଅମରନାଥ ଓ କ୍ଷୀରଭବାନୀଙ୍କର ଦର୍ଶନ ଲାଭ - ସ୍ୱାମୀ ବିବେକାନନ୍ଦ କିଏ - ସେ ନିଜକୁ ଚିହ୍ନିଲେ

ଅନ୍ତରଙ୍ଗ ଶିଷ୍ୟ ଗୁଡ୍‌ୱିନ୍‌ଙ୍କର ଅକାଳ ବିୟୋଗ ସ୍ୱାମୀଜୀଙ୍କ ମନରେ ଅସ୍ଥିରତା ସୃଷ୍ଟି କରୁଥିବାରୁ ସେ ଜନଗହଳି ଭିତରୁ ବାହାରି ଯାଇ ଏକ ନିଃସଙ୍ଗ ଜୀବନ ଭିତରେ ହଜିଯିବାକୁ ଚାହୁଁଥିଲେ । ଭକ୍ତମାନଙ୍କ ସହ କାଶ୍ମୀରର ନିର୍ଜନ ଉପତ୍ୟାକା ଅଭିମୁଖେ ଯାତ୍ରା କରିବାକୁ ସେ ମନସ୍ଥ କଲେ । କାଠଗୋଦାମ, ଲୁଧିଆନା, ଲାହୋର, ଦୋଆବ୍, ରାଓଲପିଣ୍ଡି ଅତିକ୍ରମ କରି କାଶ୍ମୀରରେ ଉପନୀତ ହେଲେ । କାଶ୍ମୀରର ମନୋରମ ଦୃଶ୍ୟ ଏବଂ ସ୍ୱାମୀଜୀଙ୍କର ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକତାର ବର୍ଣ୍ଣନା ପାଶ୍ଚାତ୍ୟବାସୀଙ୍କ ପାଇଁ ଏକ ସ୍ମୃତି ହୋଇ ରହିଗଲା । ମହାତ୍ୟାଗୀ ଶିବଙ୍କର ମହିମା ଏହି ପରିଭ୍ରମଣ କାଳରେ ବିଶେଷତଃ ତୁଷାରାଚ୍ଛନ୍ନ ହିମାଳୟ ତୁଙ୍ଗଦେଶ, ଅରଣ୍ୟବନାନୀ, ନାନା କିସମର ପୁଷ୍ପରାଜି ମଣ୍ଡିତ ଉପତ୍ୟାକାମାଳା ଦର୍ଶନରେ, ସ୍ୱାମୀଜୀଙ୍କ ମୁଖରୁ ଅନର୍ଗଳ ନିଃସୃତ ହେଲା । ମର୍ତ୍ତ୍ୟରେ ଶିବଙ୍କର ଅତି ପ୍ରିୟ ସ୍ଥାନ ହିମାଳୟ । ସମସ୍ତ ହିମାଳୟ ପର୍ବତଶ୍ରେଣୀର ପ୍ରତ୍ୟେକ ବାଲିକଣାରେ ଶିବ ବିରାଜିତ ବୋଲି ସେ ଅନୁଭବ କଲେ । ସ୍ରୋତସ୍ୱିନୀ ଗଙ୍ଗା ବହମାନ ହିମାଳୟ ଅଗ୍ର ଦେଶରୁ । ଶିବଙ୍କ ଜଟାରୁ । ସ୍ୱାମୀଜୀଙ୍କର ମନ ନିରନ୍ତର ଆକର୍ଷଣ ହିମାଳୟ ପ୍ରତି । ବାଲ୍ୟକାଳରେ ଶିବ ହିଁ ଥିଲେ ତାଙ୍କର ଆରାଧ୍ୟ ଦେବ । ଶିଷ୍ୟମାନଙ୍କୁ ଶିବଙ୍କର ଅର୍ଦ୍ଧନାରୀଶ୍ୱର ରୂପ ବର୍ଣ୍ଣନା କରିବାକୁ ଯାଇ କହିଲେ, "ଶିବ ଓ ଉମା ଏକ ଶରୀର, ଅର୍ଦ୍ଧେକ ଶରୀର ପୁରୁଷ ଓ ଅର୍ଦ୍ଧେକ ଶରୀର ନାରୀ । ସନ୍ୟାସ ଓ ମାତୃ ଆରାଧନାର ଦୁଇଟି ସର୍ବଶ୍ରେଷ୍ଠ ଦର୍ଶନର ମିଳନସ୍ଥଳୀ ଏହି ଶରୀର । ତ୍ୟାଗ ଓ ପ୍ରେମ ଦୁଇଟି ମହାସ୍ରୋତ । ଶିବରୂପୀ ହିମାଳୟ ମସ୍ତକରୁ ବହମାନ ଗଙ୍ଗା । 'ବମ୍ ବମ୍ ହର' ନିର୍ଝର ଶବ୍ଦରେ ପ୍ରକମ୍ପିତ କରୁଛି ସାରା ହିମାଳୟ । ଏହି ହିମାଳୟ ସ୍ୱୟଂ ଦେବ ଦେବ ମହାଦେବ ଯିଏ ଶାନ୍ତ ଓ ସୁନ୍ଦର; ମୁଁ ତାଙ୍କର ପରମଭକ୍ତ ।"

ସ୍ୱାମୀଜୀ ଶିଷ୍ୟଗଣଙ୍କ ସହିତ କିଛିଦିନ ନୌକାରେ ବାସ କରି, ଉପତ୍ୟାକାର ସବୁଜିମା ପ୍ରାନ୍ତରରେ ପୁଷ୍ପରାଜି ଗହଣରେ ଅନେକ ସମୟରେ ପଦଚାରଣ କରୁଥିଲେ । ତାଙ୍କର କଥପୋକଥନ ଶକ୍ତି ସଞ୍ଚରଣକାରୀ ଥିଲା ଶିଷ୍ୟମାନଙ୍କ ପାଇଁ । ଏଭଳି ପଦଚାରଣ ମୁହୂର୍ତ୍ତରେ ସେ ଏକଦା ଚେଙ୍ଗିଜ୍ ଖାନ୍‌ଙ୍କ ବୀରତ୍ୱ ସମ୍ବନ୍ଧରେ କହିଥିଲେ : ଚେଙ୍ଗିଜ୍ ଖାଁ ଜଣେ ମଙ୍ଗୋଲୀୟ ଅସଭ୍ୟ ଆକ୍ରମଣକାରୀ କେବଳ ନ ଥିଲେ, ନେପୋଲିୟନ ଓ ଆଲେକ୍‌ଜାଣ୍ଡାରଙ୍କ ଭଳି ଯୋଦ୍ଧା ଥିଲେ । ଏହି

Digitized by srujanika@gmail.com

ବୀରଗଣ ସମଗ୍ର ବିଶ୍ୱକୁ ଏକତ୍ରୀତ କରିବାକୁ ଚାହିଁଥିଲେ; ବୋଧହୁଏ ସେହି ଏକା ଆତ୍ମା ତିନିବାର ଜନ୍ମହୋଇ ରାଜନୈତିକ ବିଜୟ ମାଧମରେ ବିଶ୍ୱକୁ ଏକାଠି ରଖିବାର ପ୍ରୟାସ କରିଥିଲେ । ସେହିଭଳି ଭାବରେ ଏକ ଆତ୍ମା ବୋଧହୁଏ ଶ୍ରୀକୃଷ୍ଣ, ବୁଦ୍ଧ ଓ ଖ୍ରୀଷ୍ଟ ରୂପରେ ବାରମ୍ବାର ଜନ୍ମହୋଇ ଧର୍ମ ମାଧମରେ ମାନବଜାତିକୁ ଏକ ସୂତ୍ରରେ ବାନ୍ଧି ରଖିବାକୁ ଚେଷ୍ଟା କରିଥିଲେ ।

- ୧ -

*ଯୋଜନା ... ଯୋଜନା ଲକ୍ଷ୍ୟ ଇଯେସବୁ କ'ଣ ? ସେଇଥିପାଇଁ ତୁମେ ପାଶ୍ଚାତ୍ୟବାସୀ କସ୍ମିନକାଳେ ଗୋଟିଏ ଧର୍ମ ସୃଷ୍ଟି କରିପାରିଲ ନାହିଁ । ତୁମମାନଙ୍କ ଭିତରୁ ଯଦି ବା କେହି କରିଥା'ନ୍ତି, ସେମାନେ ଥିଲେ କାଥୋଲିକ୍ ସନ୍ଥଗଣ ଯାହାଙ୍କର କୌଣସି ଯୋଜନା ନ ଥିଲା । ଧର୍ମ କେବେ ବି ଯୋଜନାକାରୀଙ୍କ ଦ୍ୱାରା ପ୍ରଚାରିତ ହୋଇ ନଥିଲା ।*

କାଶ୍ମୀରରେ ସ୍ୱାମୀଜୀଙ୍କ ମନ ନିଃସଙ୍ଗତା ଅଭିମୁଖେ ଧାବିତ ହେଉଥିଲା । ସନ୍ନ୍ୟାସୀର ନିଃଶଙ୍ଗ ଜୀବନ ତାଙ୍କ ଭିତରେ ପ୍ରବଳ ବେଗଗାମୀ ହେଉଥିଲା ଯାହ ସେ ଆଦୌ ପ୍ରତିରୋଧ କରିପାରୁ ନ ଥିଲେ; ଶିଷ୍ୟମାନଙ୍କଠାରୁ ବିଚ୍ଛିନ୍ନ ହୋଇ ସେ ବେଳେ ବେଳେ ଏକୁଟିଆ ଭ୍ରମଣ କରୁଥିଲେ । ଭ୍ରମଣରୁ ପ୍ରତ୍ୟାବର୍ତ୍ତନ କରି ସେ ଅନେକ ସମୟରେ ଏଭଳି ପ୍ରଶ୍ନ କରୁଥିଲେ : 'ଶରୀର ଉପରେ ଚିନ୍ତା କରିବା ପାପ', 'ଶକ୍ତି ପ୍ରଦର୍ଶନ କରିବା ନିହାତି ଭୁଲ' କିମ୍ବା 'କେଉଁ ଜିନିଷ ଭଲ ବଢ଼େ ନାହିଁ, ସେଗୁଡ଼ିକ ଯେପରି ସେପରି ରହନ୍ତି' ଏପରି ଅନେକ କଥା । ତାଙ୍କର ଅନାସକ୍ତ ଭାବ ଏବଂ ବୈରାଗ୍ୟ ସଂସାରଠାରୁ ଏପରି ଦୂରେଇ ଯାଉଥିଲା, ସତେକି ପ୍ରତୀୟମାନ ହେଉଥିଲା ଯେ ତାଙ୍କର କଥା ବୋଧହୁଏ ଶେଷକଥା, ଆଉ ସ୍ୱାମୀଜୀଙ୍କଠାରୁ କୌଣସି ଉପଦେଶ ଶୁଣିହେବନାହିଁ, ସେ ଦେହତ୍ୟାଗ କରିବେ । ପ୍ରତ୍ୟେକ ବାକ୍ୟରେ ସୂଚିତ ହେଉଥିଲା ତାଙ୍କର ଅନ୍ତିମ ମୁହୂର୍ତ୍ତ, ଜୀବନରେ କୌଣସି ଯୋଜନା ନ ଥିଲା କିମ୍ବା ଦେହ ପ୍ରତି ତିଳେମାତ୍ର ଆସକ୍ତି ନ ଥିଲା । ନିଃସଙ୍ଗତା ଭିତରେ ତାଙ୍କର ମନ ଉଡ଼ିବୁଲୁଥିଲା ସେହି ପରମ ଆନନ୍ଦ ସାଗରରେ, ଏହି ବିଶ୍ୱରେ ତାଙ୍କର ପାଦଦ୍ୱୟ ରଖିବାକୁ ସେ ଚାହୁଁ ନ ଥିଲେ ।

ଏତାଦୃଶ ମନୋଭାବ ପରିଲକ୍ଷିତ କରି, ଭଗିନୀ ନିବେଦିତା ଭୟଭୀତ ହୋଇ ବାରମ୍ବାର ସାଂସାରିକ ଯୋଜନା ଓ ଲକ୍ଷ୍ୟ ସମ୍ବନ୍ଧରେ ତାଙ୍କସହ କଥାବାର୍ତ୍ତା କରିବା ଲାଗି ଚେଷ୍ଟା କରୁଥିଲେ, କିନ୍ତୁ ସ୍ୱାମୀଜୀ ବିରକ୍ତ ସ୍ୱରରେ କହୁଥିଲେ, ''ଯୋଜନା ... ଯୋଜନା ... ଲକ୍ଷ୍ୟ ଇଯେସବୁ କ'ଣ ? ସେଇଥିପାଇଁ ତୁମେ ପାଶ୍ଚାତ୍ୟବାସୀ କସ୍ମିନକାଳେ ଗୋଟିଏ ଧର୍ମ ସୃଷ୍ଟି କରିପାରିଲ ନାହିଁ । ତୁମମାନଙ୍କ ଭିତରୁ ଯଦି ବା କେହି କରିଥା'ନ୍ତି, ସେମାନେ ଥିଲେ କାଥୋଲିକ୍ ସନ୍ଥଗଣ ଯାହାଙ୍କର୍ କୌଣସି ଯୋଜନା ନ ଥିଲା । ଧର୍ମ କେବେ ବି ଯୋଜନାକାରୀଙ୍କ ଦ୍ୱାରା ପ୍ରଚାରିତ ହୋଇ ନଥିଲା । ନିଃସଙ୍ଗତାକୁ ଆଧାତ୍ମିକ ସାଧନାର ମୁଖ୍ୟ ଅବସ୍ଥା ବୁଝାଇ ଏକଦା ସ୍ୱାମୀଜୀ

Digitized by srujanika@gmail.com

କହିଥିଲେ "କୋଡ଼ିଏ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ନିଃସଙ୍ଗତାରେ ନ ରହିବା ପର୍ଯ୍ୟନ୍ତ ଜଣେ ଭାରତୀୟ ନିଜକୁ ଜାଣିବା ପାଇଁ ଅର୍ଥାତ୍ ଆତ୍ମୋପଲବ୍ଧି ଲାଭ କରିବା ପାଇଁ କେବେ ବି ଭାବିପାରିବ ନାହିଁ । କିନ୍ତୁ ପାଶ୍ଚାତ୍ୟ ଦୃଷ୍ଟିକୋଣରୁ ଜଣେ ଏକୁଟିଆ କୋଡ଼ିଏ ବର୍ଷ ନୀରବରେ ରହିପାରିବ ନାହିଁ ।

ସ୍ୱାମୀଜୀଙ୍କର ମନ ଓ ଦୃଷ୍ଟିକୋଣ ହଠାତ୍ ହେଲା ପରିବ୍ୟାପ୍ତ ଓ ବିଶାଳତା ଭିତରେ ମଗ୍ନ ରହି ସେ ବିଦ୍ରୁପ କଣ୍ଠରେ ସଂସାରୀ ଜୀବନକୁ ତାଚ୍ଛଲ୍ୟ କରି କହିଉଠିଲେ : ଜୁଳୁଜୁଳିଆ ପୋକ ଓ ସୂର୍ଯ୍ୟ, କ୍ଷୁଦ୍ର ପୋଖରୀ ଓ ଅସୀମ ସମୁଦ୍ର ଏବଂ ସୋରିଷ ଓ ମେରୁ ପର୍ବତ ଭିତରେ ରହିଥିବା ପାର୍ଥକ୍ୟ ସମ ହେଉଛି ଗୃହସ୍ଥାଶ୍ରମ ଓ ସନ୍ନ୍ୟାସୀ ଜୀବନ । ସନ୍ନ୍ୟାସୀ ଆଶ୍ରମର ଗୈରିକ ବସ୍ତ୍ର ଏକ ପ୍ରତୀକ ନ ହୋଇଥିଲେ, ସଂସାରର ବିଳାସବ୍ୟସନ ଓ ବିଷୟବାସନା ମଣିଷର ପୁରୁଷତ୍ୱକୁ ଛଡ଼ାଇ ନେଇଥାନ୍ତା । ଶିକ୍ଷାଦାନ ମାଧ୍ୟମରେ ସ୍ୱାମୀଜୀ ଏହି ଭ୍ରମଣକାଳରେ ବୈଦିକ ଉପାସନା ପଦ୍ଧତି, ରୋମାନ କାଥୋଲିକ୍ ତତ୍ତ୍ୱ, ଖ୍ରୀଷ୍ଟଧର୍ମର ଉତ୍ଥାନ ଏବଂ ବୁଦ୍ଧଙ୍କ ସମ୍ବନ୍ଧରେ ଆଲୋଚନା କରି ଶିଷ୍ୟଗଣଙ୍କୁ ଆଲୋକିତ କରୁଥିଲେ । ବୁଦ୍ଧ କେବେ ବି ଉପାସନା ଓ ପୂଜା ରୀତିକୁ ସମର୍ଥନ କରୁ ନ ଥିଲେ । ବୁଦ୍ଧ ଏକ ମନୁଷ୍ୟ ନୁହେଁ ବରଂ ଏକ ଅବସ୍ଥା । ମୁଁ ସେହି ଅବସ୍ଥାକୁ ଠାବ କରିପାରିଛି, 'ତୁମେମାନେ ସେହି ମାର୍ଗରେ ପ୍ରବେଶ କରିପାରିବ' ବୋଲି ସେ ଆଶ୍ୱାସନା ବାଣୀ ଶୁଣାଇ ଥିଲେ ।

- ୨ -

*ଅମରନାଥ ହିମଲିଙ୍ଗ ହିଁ ସ୍ୱୟଂ ପରମେଶ୍ୱର । ସମସ୍ତ ପୂଜା ଓ ଉପାସନାରେ ପରିପୂର୍ଣ୍ଣ ସେହି ସ୍ଥାନ, ଏଭଳି ସୌନ୍ଦର୍ଯ୍ୟ ଓ ପ୍ରେରଣାପୂର୍ଣ୍ଣ ସତ୍ତା ମୁଁ ଜୀବନରେ କେଉଁଠି ଦେଖିନାହିଁ ।*

ଇଜିପ୍ଟବାସୀ, ଇହୁଦୀବାସୀ ଓ ଆର୍ଯ୍ୟମାନଙ୍କ ଭିତରେ ପ୍ରଚଳିତ ପାପବୋଧ ଉପରେ ସେ ଆଲୋକପାତ କରି କହିଥିଲେ : ବୈଦିକ ଚିନ୍ତାଧାରା ଅନୁଯାୟୀ ସଇତାନକୁ କ୍ରୋଧର ଦେବତା, ବୌଦ୍ଧଧର୍ମ ଅନୁସାରେ ମାର ବୋଲି କୁହାଯାଇଥାଏ । ପବିତ୍ର ବାଇବେଲ ସମଗ୍ର ସୃଷ୍ଟି ଈଶ୍ୱର ଓ ସଇତାନଙ୍କ ଦ୍ୱୈତ ନିୟନ୍ତ୍ରଣରେ ରହିଛି ବୋଲି ସୂଚିତ ହୋଇଛି, କିନ୍ତୁ ହିନ୍ଦୁଧର୍ମରେ ସଇତାନ ବା ରାକ୍ଷସ ଅପବିତ୍ରତାର ପ୍ରତିନିଧିତ୍ୱ କରେ, କିନ୍ତୁ ଦ୍ୱୈତବାଦ ନୁହେଁ ।

ଇସଲାମବାଦ ଭ୍ରମଣ ସମୟରେ, ହିମାଳୟର ପଶ୍ଚିମ ଭାଗରେ ଅବସ୍ଥିତ ତୁଷାରାବୃତ ଉପତ୍ୟକାରେ ବିଶାଳ ହିମ ଶିବଲିଙ୍ଗ ଅମରନାଥ ଦର୍ଶନ ଲାଗି ସ୍ୱାମୀଜୀଙ୍କ ମନରେ ହଠାତ୍ ଅଭିପ୍ସା ଜାତ ହେଲା । ତାଙ୍କ ସହିତ ଯାତ୍ରା କରିବା ପାଇଁ ସେ ଭଗିନୀ ନିବେଦିତାଙ୍କୁ ପରାମର୍ଶ ଦେଲେ, କାରଣ ହିନ୍ଦୁ ତୀର୍ଥଯାତ୍ରୀ ଜୀବନର ଜ୍ଞାନ ସେ ଆହରଣ କରିପାରିବେ ।

Digitized by srujanika@gmail.com

ଅମରନାଥ ଅଭିମୁଖେ ସ୍ୱାମୀଜୀ ବର୍ତ୍ତମାନ ଯାତ୍ରା ଆରମ୍ଭ କଲେ । ଏହା ଥିଲା ତାଙ୍କର ତୀର୍ଥଯାତ୍ରା । ପରମ୍ପରା ଅନୁଯାୟୀ ଦିନରେ ଗୋଟିଏ ବେଳା ଭୋଜନ କଲେ, ନିସଙ୍ଗ ହୋଇ ମାଳା ଜପ କଲେ ଏବଂ ଧ୍ୟାନରତ ହେଲେ । ପାହାଡ଼ିଆ ଅମଡ଼ା ପଥରେ ପଦଚାରଣ କଲେ । ପାହାଡ଼ ଶୀର୍ଷ ଦେଶ ଆରୋହଣ କଲେ, ଝରଣାରେ ଅବଗାହନ କଲେ, ମାଇଲ୍ ମାଇଲ୍ ଧରି ତୁଷାରାଚ୍ଛନ୍ନ ଉପତ୍ୟକାରେ ପଦଚାରଣ କଲେ । ଅମରନାଥ ଯାତ୍ରା ସମୟରେ ସେ ବାରମ୍ବାର ଧ୍ୟାନସ୍ଥ ହୋଇପଡ଼ୁଥିଲେ । ଅମରନାଥଙ୍କୁ ଦର୍ଶନ କରିବା ଅଭିଳାଷ ତାଙ୍କ ଭିତରେ ସ୍ରୋତଗାମୀ ନଦୀ ସଦୃଶ ପ୍ରବଳ ବେଗଗାମୀ ହେଉଥିଲା । କାହିଁକିନା ନିଜ ସ୍ୱରୂପଙ୍କୁ ସେ ଦର୍ଶନ କରିବେ । ଅମରନାଥରେ ଉପନୀତ ହେଲେ ସ୍ୱାମୀଜୀ । ନିକଟସ୍ଥ ଝରଣାରେ ଅବଗାହନ କଲେ । ଅମରନାଥ ଗୁମ୍ଫାରେ ପହଞ୍ଚି ବିଶାଳ ହିମଲିଙ୍ଗ ଦର୍ଶନ କଲେ । ବିଶାଳ ହିମଲିଙ୍ଗ ଅମରନାଥ ଦର୍ଶନରେ ତାଙ୍କର ସର୍ବାଙ୍ଗ ଶରୀର ପ୍ରକମ୍ପିତ । ବିଭୂତି ଆଚ୍ଛାଦିତ ଶରୀର ଓ ମୁଖମଣ୍ଡଳ ପ୍ରେମରେ ଜ୍ୟୋତିର୍ମୟ ହୋଇଉଠିଲା । କଟୀଦେଶରେ ଥିଲା କେବଳ କୌପିନ । ଶିବଙ୍କ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ କଲେ ସ୍ୱାମୀଜୀ । ଅମରନାଥର ଗିରିଗୁହା ସ୍ୱାମୀଜୀଙ୍କ ମୁଖ ନିଃସୃତ ମନ୍ତ୍ରରେ ହେଲା ପ୍ରତିଧ୍ୱନିତ । ଏକ ଅଦ୍ଭୁତ ଅନୁଭୂତି ତାଙ୍କର ଶରୀରକୁ ରୋମାଞ୍ଚିତ କଲା ।

ସ୍ୱୟଂ ଶିବ ହେଲେ ଆବିର୍ଭୂତ । ନିଜର ସ୍ୱରୂପକୁ ଏଇଠି ଚିହ୍ନିଲେ । ଶ୍ରୀରାମକୃଷ୍ଣ ଭବିଷ୍ୟତବାଣୀ ଶୁଣାଇ ଏକଦା କହିଥିଲେ, ଯେଉଁଦିନ ନରେନ୍ ଜାଣିପାରିବ ଯେ ସେ କିଏ, ତାକୁ ଏହି ମର୍ତ୍ତ୍ୟମଣ୍ଡଳରେ କେହି ରଖିପାରିବେ ନାହିଁ । ସ୍ୱାମୀଜୀ ଏଇଠି ନିଜକୁ ଚିହ୍ନିଲେ । କାଳେ ଦେହର ବିନାଶ ହୋଇଯିବ । ମାଗିନେଲେ ବର ଶିବଙ୍କଠାରୁ । ସେ ନ ଚାହିଁଲା ପର୍ଯ୍ୟନ୍ତ ତାଙ୍କ ଶରୀରର ବିନାଶ ହେବ ନାହିଁ । ଏଠାରେ ଉଲ୍ଲେଖନୀୟ ଯେ ବାଲ୍ୟକାଳରୁ ଏକ ଚିନ୍ତା ତାଙ୍କ ମନରେ ବସା ବାନ୍ଧିଥିଲା - ତାଙ୍କର ମୃତ୍ୟୁ ହେବ ଏକ ଶିବ ମନ୍ଦିରରେ । ଅମରନାଥଙ୍କ ଶରୀରରେ ସେ ଲୀନ ହୋଇଯାଇଥାନ୍ତେ - ତାଙ୍କ କୃପାରୁ ଶରୀର ରକ୍ଷା ହେଲା । କିନ୍ତୁ ସେହିଦିନଠାରୁ ସେ ହେଲେ ଦୁର୍ବଳ ଓ ବ୍ୟାଧିଗ୍ରସ୍ତ । ସ୍ୱୟଂ ଶିବଙ୍କ ଦର୍ଶନରେ ସେ ଉପଲବ୍ଧି କଲେ ସେ ହିଁ ସ୍ୱୟଂ ଶିବ - ଅମରତ୍ୱର ପ୍ରତୀକ । ଅମରନାଥଙ୍କ ଦର୍ଶନ ଲାଭଉତ୍ତାରୁ ସେ ଖୁବ୍ ଶାନ୍ତ ଓ ଧ୍ୟାନମଗ୍ନ ହେଲେ । ଚତୁର୍ଦ୍ଦିଗ ଶିବମୟ ହୋଇଉଠିଲା । ଯତେକି ସାରା ବିଶ୍ୱବ୍ରହ୍ମାଣ୍ଡ ହିଁ ଶିବ । ବୋଧହୁଏ ଲୀଳା ସାଙ୍ଗ କରିବାର ସମୟ ଉପସ୍ଥିତ ହେଲା ।

ଏତାଦୃଶ ଅଲୌକିକ ଅନୁଭୂତି ତାଙ୍କର ସ୍ନାୟୁକୁ ଦୁର୍ବଳ କରିଦେଲା । ଉକ୍ତ କମନୀୟ ଗୁମ୍ଫାରୁ ସେ ପ୍ରସ୍ଥାନ କରିବା ସମୟରେ ତାଙ୍କ ବାମ ଚକ୍ଷୁରେ ରକ୍ତ ଠୋପା ଝରି ପଡ଼ୁଥିଲା । ହୃଦୟ ହେଲା ପ୍ରସାରିତ; ତାଙ୍କର କେବେ ବି ସୁସ୍ଥ ଶରୀର ଆଉ ରହିଲା ନାହିଁ । କିଛିଦିନ ଧରି ସେ କିଛି କହିଲେ ନାହିଁ, କେବଳ ଶିବ ଶିବ ତାଙ୍କ ମୁଖରୁ ନିଃସୃତ ହେଉଥିଲା । ନିଜର ସମସ୍ତ ଅନୁଭୂତି ଗୋପନ ରଖି ସେ କେବଳ କହିଥିଲେ : ଅମରନାଥ ହିମଲିଙ୍ଗ ହିଁ ସ୍ୱୟଂ ପରମେଶ୍ୱର । ସମସ୍ତ ପୂଜା ଓ ଉପାସନାରେ ପରିପୂର୍ଣ୍ଣ ସେହି ସ୍ଥାନ, ଏଭଳି ସୌନ୍ଦର୍ଯ୍ୟ ଓ ପ୍ରେରଣାପୂର୍ଣ୍ଣ ସତ୍ତା ମୁଁ ଜୀବନରେ କେଉଁଠି ଦେଖିନାହିଁ ।''

Digitized by srujanika@gmail.com

ଅଗଷ୍ଟ ୮ ତାରିଖରେ ସ୍ୱାମୀଜୀ ପ୍ରତ୍ୟାବର୍ତ୍ତନ କଲେ ଶ୍ରୀନଗର (ଅନନ୍ତନାଗ)କୁ । ସେଠାରେ ସେପ୍ଟେମ୍ବର ୩୦ ପର୍ଯ୍ୟନ୍ତ ଅବସ୍ଥାନ କଲେ । ଏହି ସମୟରେ ସ୍ୱାମୀଜୀ ଧ୍ୟାନ ଓ ନିର୍ଜ୍ଜନତା ପ୍ରତି ବିଶେଷ ଭାବେ ଆକୃଷ୍ଟ ହେଉଥିଲେ । କାଶ୍ମୀରର ମହାରାଜା ନିଷ୍ଠା ଓ ଆନ୍ତରିକତା ସହକାରେ ସମସ୍ତ ପ୍ରକାର ସେବା ତାଙ୍କୁ ଯୋଗାଇ ଦେଲେ । କେବଳ ସେତିକି ନୁହେଁ, ମଠ ଓ ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ଖଣ୍ଡିଏ ଜାଗା ମହାରାଜା ଚିହ୍ନଟ କରି ସ୍ୱାମୀଜୀଙ୍କୁ ପ୍ରଦାନ କଲେ । ଦୁର୍ଭାଗ୍ୟବଶତଃ ଉକ୍ତ ପ୍ରସ୍ତାବଟିକୁ ବ୍ରିଟିସ ସରକାର ଅନୁମୋଦନ କଲେ ନାହିଁ । ସ୍ୱାମୀଜୀ ସେଥିରେ ଆଦୌ ବିଚଳିତ ନ ହୋଇ ଏହା ଈଶ୍ୱରଙ୍କ ଇଚ୍ଛା ବୋଲି ଗ୍ରହଣ କଲେ ।

- ୩ -

*ଜଗଜ୍ଜନନୀ ଭର୍ତ୍ସନା କରି କହୁଛନ୍ତି - "ଯଦିବା ମୁସଲମାନ ମୋ ମନ୍ଦିରକୁ ଧ୍ୱଂସ କରି ପ୍ରତିମା ଅପବିତ୍ର କରିଛନ୍ତି, ସେଥିରେ ତୋର କ'ଣ ଅଛି ? ତୁ ମୋତେ ରକ୍ଷା କରିବୁ ନା ମୁଁ ତୋତେ ରକ୍ଷା କରିବି ? ଯଦି ମୋର ଇଚ୍ଛା ହୁଏ, ମୁଁ କଣ ସାତ ମହଲା ସୁବର୍ଣ୍ଣ ମନ୍ଦିର ଏହି ମୁହୂର୍ତ୍ତରେ ଗଢ଼ି ପାରିବି ନାହିଁ ? ମୋ ଇଚ୍ଛାନୁସାରେ ଏହି ମନ୍ଦିର ଭଗ୍ନାବସ୍ଥାରେ ପଡ଼ିରହିଛି, ମୁଁ ଯେମିତି ଚାହିଁଛି, ସେମିତି ହୋଇଛି ।"*

କାଶ୍ମୀର ରାଜ୍ୟରେ କ୍ଷୀରଭବାନୀ ଏକ ପ୍ରସିଦ୍ଧ ଶକ୍ତିପୀଠ । ମା'ଙ୍କର ଦର୍ଶନ ଲାଭ କରିବା ନିମନ୍ତେ ମନ ତାଙ୍କର ଉଚ୍ଛନ୍ନ ହେଲା । ସେ ସେଠାକୁ ସେପ୍ଟେମ୍ବର ୩୦ ତାରିଖରେ ଯାତ୍ରା କଲେ । ହୃଦୟରେ ବହମାନ ପ୍ରଚଣ୍ଡ ଭକ୍ତିସ୍ରୋତ । ତାଙ୍କର ନିରାକାରଗାମୀ ମନ ଭକ୍ତିସ୍ରୋତରେ ଉବୁଟୁବୁ ହେଉଥିଲା । କ୍ଷୀରଭବାନୀ ନିକଟସ୍ଥ ପବିତ୍ର ପ୍ରସ୍ରବଣ ତଟରେ ଉପନୀତ ହୋଇ ସ୍ୱାମୀଜୀ କଠୋର ତପସ୍ୟା ଓ ଧ୍ୟାନରେ ମଗ୍ନ ହେଲେ । ଜଗଜ୍ଜନନୀ କ୍ଷୀରଭବାନୀଙ୍କ ଉଦ୍ଦେଶ୍ୟରେ ମଧ୍ୟ ଯଥାରୀତି ପୂଜାର୍ଚ୍ଚନା କଲେ । ଦିନେ ପ୍ରଜ୍ୱଳିତ ହୋମାଗ୍ନି ସମ୍ମୁଖରେ ଯୋଗାସନରେ ଉପବିଷ୍ଟହୋଇ ମହାମାୟାଙ୍କୁ ଧ୍ୟାନ କରିବା ଲାଗି ଉଦ୍ୟତ ହେଲାବେଳେ ଦେବୀଙ୍କର ଭଗ୍ନ ମନ୍ଦିର ତାଙ୍କର ଦୃଷ୍ଟିଗୋଚର ହେଲା । ସେ ଜାଣିବାକୁ ପାଇଲେ ଯେ ଧର୍ମାନ୍ଧ ମୁସଲମାନ କ୍ଷୀରଭବାନୀଙ୍କ ମନ୍ଦିର ଭାଙ୍ଗି ନଷ୍ଟଭ୍ରଷ୍ଟ କରିଦେଇଛନ୍ତି । ତାଙ୍କ ହୃଦୟ ଦୁଃଖ ଓ ଘୃଣାରେ ଭାଙ୍ଗିପଡ଼ିଲା । ତତ୍‌କ୍ଷଣାତ୍ ଏକ ଚିନ୍ତା ତାଙ୍କୁ ଆଚ୍ଛାଦିତ କଲା - ଯେତେବେଳେ ଏହି ମନ୍ଦିରକୁ ମୁସଲମାନମାନେ ଭାଙ୍ଗି ଦେଉଥିଲେ, ସେତେବେଳେ ହିନ୍ଦୁମାନେ କ'ଣ ବାହୁବଳରେ ସେମାନଙ୍କୁ ପ୍ରତିରୋଧ କରିପାରିଲେ ନାହିଁ ? ମୁଁ ଯଦି ସେତେବେଳେ ଉପସ୍ଥିତ ଥାଆନ୍ତି, ତାହାହେଲେ ପ୍ରାଣପଣ ରଖି ଜଗଜ୍ଜନନୀ ମନ୍ଦିରକୁ ରକ୍ଷା କରିଥାନ୍ତି ! କସ୍ମିନକାଳେ ପବିତ୍ର ମନ୍ଦିରକୁ ଧ୍ୱଂସ ହେବାକୁ ଦେଇ ନ ଥାନ୍ତି ।

ସ୍ୱାମୀଜୀ ଏଭଳି ଚିନ୍ତାରେ ନିମଗ୍ନଥିବା ସମୟରେ ହଠାତ୍ ଏକ ଅଦ୍ଭୁତ ଘଟଣା ଘଟିଲା । ଦୈବବାଣୀ ସେ ଶୁଣିବାକୁ ପାଇଲେ । ବିସ୍ମୟବିମୂଢ଼ ବିବେକାନନ୍ଦ ଉତ୍କର୍ଣ୍ଣ ହୋଇ ଶୁଣିଲେ । ଜଗଜ୍ଜନନୀ ସସ୍ନେହେ ଭର୍ତ୍ସନା କରି କହୁଛନ୍ତି - "ଯଦିବା ମୁସଲମାନ ମୋ ମନ୍ଦିରକୁ

Digitized by srujanika@gmail.com

ଧ୍ୱଂସ କରି ପ୍ରତିମା ଅପବିତ୍ର କରିଛନ୍ତି, ସେଥିରେ ତୋର କ'ଣ ଅଛି ? ତୁ ମୋତେ ରକ୍ଷା କରିବୁ ନା ମୁଁ ତୋତେ ରକ୍ଷା କରିବି ?'' କି ଆଶ୍ଚର୍ଯ୍ୟ ଘଟଣା ? ତଥାପି ସ୍ୱାମୀଜୀ ବୁଝିପାରିଲେ ନାହିଁ । ଜଗଜ୍ଜନନୀଙ୍କ ସସ୍ନେହ ଭର୍ତ୍ସନାକୁ । ପରଦିନ ସେ ପୁନରାୟ ଭାବିଲେ - ଯାହା ହେବାର ତ ହୋଇଯାଇଛି । କିନ୍ତୁ ଯେମିତି ହେଉ ପଛକେ ମୁଁ ଭିକ୍ଷା ମାଗଣ କରି ଅର୍ଥ ସଂଗ୍ରହ କରିବି ଏବଂ ଜୀର୍ଣ୍ଣ ମନ୍ଦିରକୁ ପୁନଃନିର୍ମାଣ କରିବି ।'' ସହସା ପୁନର୍ବାର ସେ ଦୈବବାଣୀ ଶୁଣିବାକୁ ପାଇଲେ । ଜଗଜ୍ଜନନୀ କହୁଛନ୍ତି - ଯଦି ମୋର ଇଚ୍ଛା ହୁଏ, ମୁଁ କଣ ସାତ ମହଲା ସୁବର୍ଣ୍ଣ ମନ୍ଦିର ଏହି ମୁହୂର୍ତ୍ତରେ ଗଢ଼ି ପାରିବି ନାହିଁ ? ମୋ ଇଚ୍ଛାନୁସାରେ ଏହି ମନ୍ଦିର ଭଗ୍ନାବସ୍ଥାରେ ପଡ଼ିରହିଛି, ମୁଁ ଯେମିତି ଚାହିଁଛି, ସେମିତି ହୋଇଛି ।''

ପ୍ରବୀଣ ସନ୍ନ୍ୟାସୀ ବିବେକାନନ୍ଦଙ୍କ ମନରେ ସାମୟିକ ଭାବରେ ଦେଖାଯାଇଥିବା ରଜୋଗୁଣରେ ଭରପୂର ଅହଙ୍କାରୀ ମନ ନିମିଷକ ଭିତରେ ଭାଙ୍ଗି ଚୂନା ହୋଇଗଲା । ଅହଙ୍କାରର କଳାବାଦଲ ବକ୍ଷ ବିଦାରି ଜ୍ଞାନ ସୂର୍ଯ୍ୟ ପୁନର୍ବାର ହେଲେ ଉଦ୍‌ଭାସିତ ସ୍ୱାମୀଙ୍କ ଚେତନା ରାଜ୍ୟରେ । ତାଙ୍କର ଦିବ୍ୟଦୃଷ୍ଟି ଖୁବ୍ ଉଜ୍ଜ୍ୱଳ ହୋଇଉଠିଲା । ସେ ଉପଲବ୍ଧି କଲେ ଯେ ମହାମାୟାଙ୍କ ବିରାଟ ଇଚ୍ଛାରେ ସେ ଯେପରି ଯନ୍ତ୍ରଚାଳିତ ! କେବଳ ସେତିକି ନୁହେଁ, ଅଭିନବ ଅନୁଭୂତିରେ ତାଙ୍କ ପ୍ରାଣ ଅପୂର୍ବ ଶାନ୍ତିରେ ଭରି ଉଠିଲା । ସ୍ୱାମୀଜୀଙ୍କର ଏହି ଘଟଣାରୁ ସ୍ପଷ୍ଟ ବୁଝିହୁଏ ଯେ ଧର୍ମ ମଣିଷକୁ ରକ୍ଷା କରେ, ମଣିଷ ଧର୍ମକୁ ରକ୍ଷା କରେନାହିଁ । ମଣିଷର ମନ ନିମ୍ନ ଚେତନାରେ ଅବସ୍ଥାନ କଲେ, ସେ ଅତ୍ୟନ୍ତ ଅହଂକାରୀ ଓ ସ୍ୱାର୍ଥପର ହୋଉଉଠେ । ଧର୍ମାଧର୍ମ ଜ୍ଞାନ ରହେନାହିଁ, ଯାହାଫଳରେ ସେ ନିଜ ଭିତରେ ନିହିତ ଦେବତ୍ତ୍ୱକୁ ଉପଲବ୍ଧି କରି ନ ପାରି ସମାଜରେ ଅନ୍ଧଭାବରେ ପ୍ରଚଳିତ ବ୍ୟବସାୟିକ ଧର୍ମକୁ ଜୀବନରେ ଆବୋରି ନିଏ, ଫଳରେ ଧର୍ମ କେବଳ ଉପସନାସ୍ଥଳୀ ଭିତରେ ସୀମାବଦ୍ଧ ହୋଇଯାଏ ଏବଂ ଉପାସନାସ୍ଥଳୀ ଉପରେ ଯଦି କୌଣସି ପ୍ରକାର ଆଞ୍ଚ ଆସେ, ସେ ଉତ୍‌କ୍ଷିପ୍ତ ହୋଇଉଠେ । ହାଣକାଟ ହୁଏ, ରକ୍ତର ସୁଅ ଛୁଟେ । ଧର୍ମକୁ ରକ୍ଷାକରିବା ପାଇଁ ଚେଷ୍ଟା କରେ । ଧର୍ମ ତାକୁ ରକ୍ଷା କରିବା କଥା ସେ ଏକାବେଳକେ ଭୁଲିଯାଏ ।

କ୍ଷୀରଭବାନୀରୁ ପ୍ରତ୍ୟାବର୍ତ୍ତନ କରି ନିଜର ଅନୁଭୂତି ଶିଷ୍ୟଙ୍କ ସମ୍ମୁଖରେ ବର୍ଣ୍ଣନା କରି ସ୍ୱାମୀଜୀ କହିଥିଲେ - ମୋର ସମସ୍ତ ଦେଶଭକ୍ତି ଉଭେଇ ଗଲା, ସବୁକିଛି ହେଲା ବିଲୁପ୍ତ । ... ମୁଁ ସତରେ ଏକ କ୍ଷୁଦ୍ର ଶିଶୁ । ଆଉ ମୁଁ କୌଣସି ପରିକଳ୍ପନା କରିବି ନାହିଁ । ମା ଯେପରି ଚାହାଁନ୍ତି, ତାହା ସେପରି ହେଉ ।'' ଦିବ୍ୟବାଣୀ ସମ୍ବନ୍ଧରେ ସେ ବିଶେଷ କିଛି କହିଲେ ନାହିଁ । ଶ୍ରୀରାମକୃଷ୍ଣ ବହୁବର୍ଷ ପୂର୍ବରୁ ଭବିଷ୍ୟବାଣୀ ଶୁଣାଇଥିଲେ ଯେ ନରେନ୍ଦ୍ର ଜଗଜ୍ଜନନୀଙ୍କ କାର୍ଯ୍ୟ ନିର୍ବାହ ଲାଗି କେବଳ ଶରୀର ଧାରଣ କରିବ ଏବଂ ଯେଉଁଦିନ ମା'ଙ୍କର କାର୍ଯ୍ୟ ଶେଷ ହେବ, ସେହି ଦିନ ନିଜ ଇଚ୍ଛାମତେ ସେ ଶରୀର ତ୍ୟାଗ କରିବ ।'' କ୍ଷୀରଭବାନୀ ଭଗ୍ନ ମନ୍ଦିରଠାରେ ତାଙ୍କର ଦିବ୍ୟଦର୍ଶନ ଓ ଦିବ୍ୟବାଣୀ ଶ୍ରବଣ ପୃଥିବୀପୃଷ୍ଠରୁ ବିଦାୟ ନେବାପାଇଁ ଏକ ଦୈବ ସୂଚନା ଥିଲା ।

ଯେତେବେଳେ ସ୍ୱାମୀଜୀ ଶ୍ରୀନଗରଠାରେ ଅବସ୍ଥାପିତ ଶିଷ୍ୟଗଣଙ୍କ ସହ ଯୋଗଦେଲେ, ସେତେବେଳେ ସେ ଏକ ଭିନ୍ନ ବ୍ୟକ୍ତିତ୍ୱରେ ରୂପାନ୍ତରିତ ହୋଇଯାଇଥିଲେ । ସେଠାରେ ଉପନୀତ ହୋଇ ଦୁଇବାହୁ ଉତ୍ତୋଳନ କରି ଶିଷ୍ୟ ଓ ଶିଷ୍ୟାଙ୍କୁ ଆଶୀର୍ବାଦ କଲେ ଏବଂ ଯେଉଁ ପୁଷ୍ପରାଜି

Digitized by srujanika@gmail.com

କ୍ଷୀରଭବାନୀଙ୍କ ଉପାସନାସ୍ଥଳୀରୁ ଆଣିଥିଲେ, ତାହା ଶିଷ୍ୟ ଓ ଶିଷ୍ୟାମାନଙ୍କ ମସ୍ତକରେ ଥୋଇ କହି ଉଠିଲେ, ''ଆଉ କିଛି ଆବଶ୍ୟକ ନାହିଁ, କେବଳ ମା ... ସବୁକିଛି ମା । ମାତୃ ଭକ୍ତିରେ ନିମଗ୍ନ ।

ଏଠାରେ ସ୍ମରଣୀୟ ଯେ ଅମରନାଥ ଦର୍ଶନପରେ ସ୍ୱାମୀଜୀଙ୍କ ମନ ଓ ଚେତନା ଦିବ୍ୟଜନନୀ କାଳୀଙ୍କ ଅଭିମୁଖେ ଅହର୍ନିଶ ହେଉଥିଲା ଆକର୍ଷିତ । ଶ୍ରୀରାମକୃଷ୍ଣ ପରମହଂସ ଜଗଜ୍ଜନନୀ କାଳୀଙ୍କୁ ସ୍ନେହମୟୀ ଓ କରୁଣାମୟୀ ଭାବେ ଦର୍ଶନ କରୁଥିଲେ । କିନ୍ତୁ ସ୍ୱାମୀଜୀଙ୍କ ମାନସାକାଶରେ କାଳୀଙ୍କର ସମ୍ପୂର୍ଣ୍ଣ ସାକାର ରୂପ ହେଲା ପ୍ରକଟିତ, ବିଶେଷକରି ତାଙ୍କର ଭୀଷଣକାୟ ସଂହାର ରୂପ । ନିରାକାର ପରଂବ୍ରହ୍ମଙ୍କର ଏକ ଅଦ୍ୱିତୀୟ ପ୍ରତୀକ କାଳୀ ଯିଏ ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ପ୍ରତିନିଧିତ୍ୱ କରନ୍ତି - ସୃଷ୍ଟି, ସ୍ଥିତି ଓ ବିନାଶ - ଜୀବନ ଓ ମୃତ୍ୟୁ, ଭଲ ଓ ମନ୍ଦ, ସୁଖ ଓ ଦୁଃଖ ଭଳି ସମସ୍ତ ବିପରୀତଧର୍ମୀ ଯୁଗଳସ୍ଥିତି ତାଙ୍କରି ଭିତରେ ସମାହିତ । ସମୁଦ୍ର ଜଳ ଦୂରରୁ ଯେପରି ନୀଳବର୍ଣ୍ଣ ଦେଖାହୁଏ, କାଳୀ ସେପରି ଦୂରରୁ କୃଷ୍ଣବର୍ଣ୍ଣ ଭଳି ପ୍ରତୀୟମାନ । କିନ୍ତୁ ଜଣେ ଅନ୍ତରଙ୍ଗ ଭକ୍ତଙ୍କ ନିକଟରେ ସେ ରଙ୍ଗହୀନ ଓ ବ୍ରହ୍ମଙ୍କ ସହ ଏକ ଓ ଅଭିନ୍ନ । ତାଙ୍କର ସୃଜନଶକ୍ତି ବିଶ୍ୱବ୍ରହ୍ମାଣ୍ଡ ରଚନା କରେ ।

ଗୋଟିଏ ଦିଗରେ ସେ ଭୟଙ୍କର, ମୁଣ୍ଡମାଳ ବିଭୂଷିତା, ଛିନ୍ନହସ୍ତ ଧାରିଣୀ, ଲହଲହ ଜିହ୍ୱାରୁ ନିଃସୃତ ଶୋଣିତଧାରା, ଖଡ୍ଗ ଧାରିଣୀ ଏବଂ ଶ୍ୱାନ ଶୃଗାଳ ବେଷ୍ଟିତ ଶ୍ମଶାନନିବାସୀ ସମ କରାଳ ଦୃଶ୍ୟ ଭିତରେ ବିଚରଣରତା । ଅନ୍ୟ ଦିଗରେ ସେ କୃପାମୟୀ, ଅଭୟଦାତ୍ରୀ ଓ ସ୍ନେହମୟୀ ଭାବେ ଭକ୍ତଗଣଙ୍କୁ ଅମରତ୍ୱ ପ୍ରଦାନ କରନ୍ତି । ସେ ମଦ୍ୟପାନ କରି ନିଶାଗ୍ରସ୍ତ ଭଳି ଦୃଶ୍ୟମାନ : ତାହା ନ ହୋଇଥିଲେ କିଏ ଏହି ପାଗଳ ସଂସାରକୁ ରଚନା କରିଥାନ୍ତା ! ଶିବଙ୍କ ଉପରେ କାଳୀ ଦଣ୍ଡାୟମାନ । ଅର୍ଥାତ୍ ବ୍ରହ୍ମଙ୍କର ପ୍ରତୀକ ଶିବଙ୍କ ଉପରେ ପ୍ରକୃତି ରୂପିଣୀ କାଳୀ ଦଣ୍ଡାୟମାନ । ବ୍ରହ୍ମ ନିଷ୍କ୍ରିୟ କିନ୍ତୁ ଜଗଜ୍ଜନନୀ କାଳୀଙ୍କ ସଂସ୍ପର୍ଶରେ ସେ କ୍ରିୟାଶୀଳ । ପରଂବ୍ରହ୍ମଙ୍କୁ ଯଦି ଅଗ୍ନି କୁହାଯାଏ, କାଳୀ ବା ପ୍ରକୃତି ହେଉଛନ୍ତି ତାଙ୍କର ଦାହିକା ଶକ୍ତି ।

- ୪ -

*ମୃତ୍ୟୁ ଉପରେ ଧ୍ୟାନ କର । ଭୟଙ୍କରକୁ ଉପାସନା କର, କେବଳ ଭୟଙ୍କର ... ଭୟଙ୍କର । ଜଗଜ୍ଜନନୀ ସ୍ୱୟଂ ହିଁ ବ୍ରହ୍ମ । ଏପରିକି ତାଙ୍କର ଅଭିଶାପ ବି ଆଶୀର୍ବାଦ । ହୃଦୟ ଏକ ଶ୍ମଶାନ ହେବା ଆବଶ୍ୟକ - ଗର୍ବ, ସ୍ୱାର୍ଥପରତା ଏବଂ କାମନା ସବୁ ଦଗ୍ଧିଭୂତ ହୋଇ ପାଉଁଶ ହୋଇଯିବ । ତେବେଯାଇ ମା ଆମ ନିକଟକୁ ଆସିବେ ।*

ହିନ୍ଦୁ ମାନସିକତା ଭଲ ଓ ମନ୍ଦ ଭଳି ନୈତିକତାମୂଳକ ପାର୍ଥକ୍ୟ ସୃଷ୍ଟି କରିପାରେ ନାହିଁ । ଉଭୟ ଭଲ ଓ ମନ୍ଦ ଲୌକିକ ସଂସାରରେ ବାସ୍ତବ ଏବଂ ତାହା ନିରନ୍ତର ରହିବ, କାରଣ

Digitized by srujanika@gmail.com

ପରଂବ୍ରହ୍ମଙ୍କୁ ମାୟା ଘୋଡ଼ାଇ ରଖିଛି । ଏହି ପ୍ରକୃତି ରୂପକ ମାୟା ଅପସାରିତ ହେଲେ ଆଉ ଭଲ ଓ ମନ୍ଦ ଭେଦଭାବ ରହିବ ନାହିଁ । ନାମ, ରୂପ, ଗୁଣ ହୀନ ପରଂବ୍ରହ୍ମ ଉଦ୍‌ଭାସିତ ହେବେ । ଏଠାରେ ସ୍ୱାମୀଜୀ ହଠାତ୍ କାଳୀଙ୍କର ବିନାଶଦିଗକୁ ଉପଲବ୍ଧି କଲେ । ସୃଷ୍ଟି ପ୍ରକ୍ରିୟା ଓ ବିନାଶ ପ୍ରକ୍ରିୟା ଭିତରେ ସତରେ କ'ଣ ପାର୍ଥକ୍ୟ ରହିଛି ? ଏହା ମନର ଭ୍ରମ ନୁହେଁ କି ? ବିବେକାନନ୍ଦଙ୍କର ଅନୁଭୂତି ହେଲା ଯେ ଦିବ୍ୟଜନନୀ ସର୍ବବିଦ୍ୟମାନ । ସେ ଯେଉଁ ଦିଗକୁ ଚାହିଁଲେ ଦିବ୍ୟଜନନୀଙ୍କର ଉପସ୍ଥିତି ଅନୁଭବ କଲେ, ସତେକି ସେ ଜଣେ ବ୍ୟକ୍ତିଭଳି କୋଠରିରେ ବିରାଜିତା । ସେ ଉପଲବ୍ଧ କଲେ "ସତେକି ତାଙ୍କର ହସ୍ତ ମୋ ହସ୍ତ ଦ୍ୱାରା ତାଳି ବଜାଉଛନ୍ତି, ସେ ମୋ ହାତ ଧରି ବାଟ କଢ଼ାଉଛନ୍ତି ।" ଏଭଳି ଦିବ୍ୟଜନନୀଙ୍କ ଚିନ୍ତାରେ ସେ ମଗ୍ନ ଥିଲେ ଯେ ମୁସଲମାନ ନୌକାଚାଳକର ଚାରିବର୍ଷର କନ୍ୟାକୁ ପୂଜା କରିବା ପାଇଁ ସେ ଭୁଲି ଯାଇ ନ ଥିଲେ ।

ଜଗଜ୍ଜନନୀ କାଳୀଙ୍କ ଉପରେ ତାଙ୍କର ଧ୍ୟାନ ଏଭଳି ଗଭୀର ଭାବରେ କେନ୍ଦ୍ରିତ ହେଲା, ତାଙ୍କ ମାନସପଟରେ କାଳୀଙ୍କର ସ୍ପଷ୍ଟ ଚିତ୍ର ହେଲା ଉଦ୍‌ଭାସିତ, ଏକ ଅତୁଳନୀୟ ଅନୁଭୂତି ତାଙ୍କୁ ଡୁବାଇ ଦେଲା । ପରମସତ୍ୟର ଅନ୍ଧକାର, ବେଦନାପୂର୍ଣ୍ଣ ଓ ଦୁର୍ଭେଦ୍ୟଦିଗ ଉପରେ ସେ ତାଙ୍କର ଧ୍ୟାନ କେନ୍ଦ୍ରିତ କଲେ, ମନରେ ଦୃଢ଼ ଆଶା ଯେ ଏହି ମାର୍ଗରେ ଗମନ କରି ପ୍ରପଞ୍ଚ ସଂସାର ପଶ୍ଚାତରେ ବିରାଜିତ ଅଦ୍ୱୈତ ପରମସତ୍ତା ନିକଟରେ ସେ ହେବେ ଉପନୀତ । ସମଗ୍ର ଶରୀର ପ୍ରକମ୍ପିତ ହେଲା ସତେକି ବିଦ୍ୟୁତ ସ୍ରୋତ ତାଙ୍କ ଶରୀରରେ ପ୍ରବାହିତ । ଜୀବ ଜଗତର କୋଟି କୋଟି ପାଦରୁ ଉତ୍‌ଥିତ ଧୂଳି ଝଡ଼ ଦ୍ୱାରା ଆଚ୍ଛାଦିତ ଜୀବନ ପଶ୍ଚାତରେ ଭୀଷଣକାୟ ବିନାଶକାରୀ ଶକ୍ତିମୟୀ କାଳୀଙ୍କୁ ସେ ଦର୍ଶନ କଲେ, ମହାମାୟାଙ୍କ ରହସ୍ୟାବୃତ ଅନନ୍ତଶକ୍ତିରେ ମୂର୍ଚ୍ଛାପ୍ରାୟ ହୋଇ ସେ କେବଳ ଚିତ୍କାର କରୁଥିଲେ । ସେହି ଆର୍ତ୍ତନାଦ ଭିତରେ ଖଣ୍ଡିଏ କାଗଜରେ ପ୍ରକମ୍ପିତ ହସ୍ତରେ ପେନ୍‌ସିଲ୍‌ଟିଏ ଧରି ଆଙ୍କିବାକୁ ଲାଗିଲେ ନିଜର ଅନୁଭୂତି । ଲେଖିବା ଉତ୍ତାରୁ ସେ ଭୀଷଣ ଭାବେ ହେଲେ କ୍ଲାନ୍ତ ଓ ଦୁର୍ବଳ, କିନ୍ତୁ ଜନ୍ମନେଲା ଏକ କବିତା "କାଳୀ ଜଗଜ୍ଜନନୀ" ଯାହା ଆଜି ବି ପଢ଼ିଲେ ମନୁଷ୍ୟର ମନ ଭୟଭୀତ ହୋଇଉଠେ କିନ୍ତୁ କରୁଣାମୟୀଙ୍କ ଆଶୀଷପ୍ରାପ୍ତ ଭଳି ଅନୁଭୂତ ହୁଏ ।

ଭାଗ୍ୟର ବିଡ଼ମ୍ବନା ଯେ ଏହି କବିତାଟି ଲେଖିବାର ଠିକ୍ ଚାରିବର୍ଷ ପରେ ୧୯୦୨ ଖ୍ରୀଷ୍ଟାବ୍ଦ ଜୁଲାଇ ୪ ତାରିଖରେ ସ୍ୱାମୀଜୀ ଇହଲୀଳା ସମ୍ବରଣ କଲେ । ସେଥିପାଇଁ ବୋଧହୁଏ ସ୍ୱାମୀଜୀ କହିଥିଲେ - ଭୟଙ୍କରକୁ ପୂଜା ଆରାଧନା କଲେ, ଭୟଙ୍କରକୁ ଅତିକ୍ରମ କରିହୁଏ ଏବଂ ଅମରତ୍ୱ ପ୍ରାପ୍ତି ହୋଇଥାଏ । ମୃତ୍ୟୁ ଉପରେ ଧ୍ୟାନ କର । ଭୟଙ୍କରକୁ ଉପାସନା କର, କେବଳ ଭୟଙ୍କର ... ଭୟଙ୍କର । ଜଗଜ୍ଜନନୀ ସ୍ୱୟଂ ହିଁ ବ୍ରହ୍ମ । ଏପରିକି ତାଙ୍କର ଅଭିଶାପ ବି ଆଶୀର୍ବାଦ । ହୃଦୟ ଏକ ଶ୍ମଶାନ ହେବା ଆବଶ୍ୟକ - ଗର୍ବ, ସ୍ୱାର୍ଥପରତା ଏବଂ କାମନା ସବୁ ଦଗ୍ଧିଭୂତ ହୋଇ ପାଉଁଶ ହୋଇଯିବ । ତେବେଯାଇ ମା ଆମ ନିକଟକୁ ଆସିବେ ।

Digitized by srujanika@gmail.com

- ୫ -

*ଈଶ୍ୱରଙ୍କୁ ପୂଜା କର ବୀର ଭାବରେ । ଭୟ ରଖ ନାହିଁ, କୃପାଭିକ୍ଷା ମାଗ ନାହିଁ କିନ୍ତୁ ଦାବି କର 'ସର୍ବୋଚ୍ଚ ଗତି' । ମା'ଙ୍କର ପ୍ରକୃତ ଭକ୍ତଗଣ ସିଂହ ସଦୃଶ କଠୋର, ଦୃଢ଼ ଓ ସଂକଳ୍ପବଦ୍ଧ । ସମଗ୍ର ପୃଥିବୀ ଭାଙ୍ଗି ଧୂଳିସାତ ହୋଇଗଲେ ବି ସେମାନେ ଆଦୌ ବିଚଳିତ ହୁଅନ୍ତି ନାହିଁ । ତୁମର ପ୍ରାର୍ଥନା ଶୁଣିବା ଲାଗି ତାଙ୍କୁ ଆହ୍ୱାନ ଓ ପ୍ରାର୍ଥନା କର । ମନେରଖ ସେ ସର୍ବଶକ୍ତିମାନ, ପଥର ଖଣ୍ଡିଏରୁ ବି ସେ ଜ୍ଞାନୀ ସୃଷ୍ଟି କରିପାରିବେ ।*

ଶିଷ୍ୟ ଓ ଶିଷ୍ୟାଗଣ ପାଶ୍ଚାତ୍ୟ ଶିକ୍ଷା ଓ ଚିନ୍ତାଧାରାରୁ ଶିଖିଥିଲେଯେ ଈଶ୍ୱରଙ୍କ ସୃଷ୍ଟିରେ ଭଲ, ଶୃଙ୍ଖଳା, ଆନନ୍ଦ ଓ ସୌନ୍ଦର୍ଯ୍ୟ ହିଁ ଈଶ୍ୱରୀୟ ଗୁଣ, ତାହା ସ୍ୱାମୀଜୀଙ୍କର ପରମସତ୍ୟ ଦର୍ଶନ ଝଡ଼ରେ ଭାଙ୍ଗି ଚୂରମାର ହୋଇଗଲା । ଈଶ୍ୱରଙ୍କ ସତ୍ତା ଯେପରି ଭଲରେ ରହିଛି, ସେପରି ଭୂମିକମ୍ପ, ଆଗ୍ନେୟଗିରି ସଦୃଶ ମନ୍ଦ ଓ ଭୟଙ୍କର ଭିତରେ ବି ରହିଛି । ସେମାନଙ୍କ ପାଇଁ ଏହା ଏକ ନୂତନ ଅନୁଭୂତି ଥିଲା କାରଣ ସ୍ୱାମୀଜୀ କହୁଥିଲେ ମୃତ୍ୟୁର ସମ୍ମୁଖୀନ ହୁଅ, ଖଡ୍ଗର ତୀକ୍ଷ୍ଣମୁନ ସମ୍ମୁଖରେ ଠିଆହୋଇ ଭୀଷଣ ଓ କରାଳ ଶକ୍ତି ସହ ଏକାକାର ହୋଇଯାଅ । ଏଠାରେ ସ୍ୱାମୀଜୀଙ୍କର କହିବାର ତାତ୍ପର୍ଯ୍ୟ ହେଉଛି ଯେ ପରମସତ୍ୟ ବି ଭୟଙ୍କର ଭିତରେ ଦେଖ ଯେମିତି ସୌନ୍ଦର୍ଯ୍ୟ ଭିତରେ ଦେଖୁଛ । ପାଇବାର ଆଶା ମନରେ ନ ରଖି କିମ୍ବା ସ୍ୱର୍ଗ ରାଜ୍ୟରେ ଖଣ୍ଡିଏ ସ୍ଥାନର ଆଶା ନ ରଖି, ପରମ ସତ୍ୟ ସହ ଏକାକାର ହୋଇଯାଅ । ସ୍ୱାମୀଜୀ କର୍ମର ନାୟକ; ନିୟତକର୍ମ ସମ୍ପାଦନ ସମୟରେ ଭଲ ଓ ମନ୍ଦକୁ ସମାନଭାବେ ସାମନା କର । ନିଶ୍ଚିତ ଭାବେ ଈଶ୍ୱର ମଙ୍ଗଳମୟ, ସତ୍ୟ ସନାତନ ଓ ସୌନ୍ଦର୍ଯ୍ୟର ପାରାବାର, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ; କିନ୍ତୁ ଏହି ପ୍ରପଞ୍ଚ ଜଗତରେ ରହିଥିବା ସଗୁଣ ସହ ତାଙ୍କର ନିର୍ଗୁଣ ତୁଳନା ହୋଇପାରିବ ନାହିଁ । ତେଣୁ ପ୍ରତ୍ୟେକ ଗୁଣ ଭିତରେ ତାହା ମଙ୍ଗଳ ଓ ଅମଙ୍ଗଳ ହୋଇଥାଉ ପଛକେ ଈଶ୍ୱରଙ୍କୁ ଦର୍ଶନ କରିବା ଉଚିତ ।

ଶିଷ୍ୟଗଣଙ୍କୁ ବୁଝାଇ କହିଥିଲେ - ଈଶ୍ୱରଙ୍କୁ ପୂଜା କର ବୀର ଭାବରେ । ଭୟ ରଖ ନାହିଁ, କୃପାଭିକ୍ଷା ମାଗ ନାହିଁ କିନ୍ତୁ ଦାବି କର 'ସର୍ବୋଚ୍ଚ ଗତି' । ମା'ଙ୍କର ପ୍ରକୃତ ଭକ୍ତଗଣ ସିଂହ ସଦୃଶ କଠୋର, ଦୃଢ଼ ଓ ସଂକଳ୍ପବଦ୍ଧ । ସମଗ୍ର ପୃଥିବୀ ଭାଙ୍ଗି ଧୂଳିସାତ ହୋଇଗଲେ ବି ସେମାନେ ଆଦୌ ବିଚଳିତ ହୁଅନ୍ତି ନାହିଁ । ତୁମର ପ୍ରାର୍ଥନା ଶୁଣିବା ଲାଗି ତାଙ୍କୁ ଆହ୍ୱାନ ଓ ପ୍ରାର୍ଥନା କର । ମନେରଖ ସେ ସର୍ବଶକ୍ତିମାନ, ପଥର ଖଣ୍ଡିଏରୁ ବି ସେ ଜ୍ଞାନୀ ସୃଷ୍ଟି କରିପାରିବେ ।

କାଶ୍ମୀର ଅବସ୍ଥାନ କାଳରେ ଗୋଟିଏ ଘଟଣା ସ୍ୱାମୀଜୀଙ୍କ ମନକୁ ସାମୟିକ ଭାବେ ଅଶାନ୍ତ କରିଦେଲା । ତାଙ୍କ ଜୀବନକାଳରେ ଏହା ଏକ ସମସ୍ୟା ବୋଲି ସେ ପରବର୍ତ୍ତୀ କାଳରେ କହିଥିଲେ । ଜଣେ ମୁସଲମାନ ଫକିରଙ୍କର ଏକ ଶିଷ୍ୟ ବେଳେବେଳେ ସ୍ୱାମୀଜୀଙ୍କ ନିକଟକୁ ଆସୁଥିଲେ । ସେ ତାଙ୍କର ବ୍ୟକ୍ତିତ୍ୱ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇଥିଲେ । ଏକଦା ଉକ୍ତ ମୁସଲମାନ ଜ୍ୱରରେ ଆକ୍ରାନ୍ତ ହୋଇ ମୁଣ୍ଡବିନ୍ଧା ଯନ୍ତଣାରେ ପୀଡ଼ିତ ଥିଲେ । ସ୍ୱାମୀଜୀ ତାଙ୍କର ମସ୍ତକକୁ ଆଙ୍ଗୁଳିରେ ସ୍ପର୍ଶ କଲେ, ଆଶ୍ଚର୍ଯ୍ୟଭାବେ ଜ୍ୱର ଓ ମୁଣ୍ଡବିନ୍ଧାରୁ ସେ ଆରୋଗ୍ୟ ଲାଭ କଲେ ।

Digitized by srujanika@gmail.com

ସ୍ୱାମୀଜୀଙ୍କର ଜଣେ ସଚ୍ଚା ଭକ୍ତ ସେ ପାଲଟିଗଲେ ଏବଂ ପୂର୍ବାପେକ୍ଷା ସେ ବହୁବାର ସ୍ୱାମୀଜୀଙ୍କ ନିକଟକୁ ଯିବାଆସିବା କଲେ । କିନ୍ତୁ ଯେତେବେଳେ ଉକ୍ତ ମୁସଲମାନ ଭକ୍ତଙ୍କର ଗୁରୁ ଫକିର ଏହି ଘଟଣା ଜାଣିବାକୁ ପାଇଲେ, ସେତେବେଳେ ସେ ସ୍ୱାମୀଜୀଙ୍କ ଉପରେ ଈର୍ଷାନ୍ୱିତ ହୋଇପଡ଼ିଲେ । କାଳେ ତାଙ୍କର ଶିଷ୍ୟ ତାଙ୍କୁ ପରିତ୍ୟାଗ କରି ଚାଲିଯିବ, ସେହି ଭୟରେ ଫକିର ସ୍ୱାମୀଜୀଙ୍କ ବିରୋଧରେ କୁତ୍ସାରଟନା କଲେ । ଏପରିକି ହିନ୍ଦୁ ସନ୍ନ୍ୟାସୀଙ୍କୁ ସାକ୍ଷାତ ନ କରିବା ଲାଗି ସେ ତାଙ୍କୁ ତାଗିଦ୍ କରିଦେଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେ ଦେଖିବାକୁ ପାଇଲେ ଯେ ତାଙ୍କର ଶିଷ୍ୟ ପରାମର୍ଶ ନ ମାନି ବାରମ୍ବାର ସ୍ୱାମୀଜୀଙ୍କ ନିକଟକୁ ଧାଉଁଛି, ସୁତରାଂ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ତାଙ୍କୁ ଗାଳିବର୍ଷଣ କଲେ ।

ଫକିର ମହାଶୟ ବି ନିଜର ଯାଦୁକାରୀ ଶକ୍ତିବଳରେ ଉକ୍ତ ଶିଷ୍ୟଙ୍କର କ୍ଷତି ସାଧନ କରିବେ ବୋଲି ଧମକ୍ ଦେଲେ । ତଥାପି ତାଙ୍କ ଶିଷ୍ୟ ଉପରେ କୌଣସି ପ୍ରଭାବ ଦୃଷ୍ଟିଗୋଚର ହେଲାନାହିଁ । ଶେଷରେ ଫକିର ଭବିଷ୍ୟବାଣୀ ଶୁଣାଇ କହିଲେ - ''ସ୍ୱାମୀଜୀ ବାନ୍ତି କରିବେ ଓ ତାଙ୍କର ମୁଣ୍ଡ ବୁଲାଇବ । ସେ କାଶ୍ମିରରେ ରହି ପାରିବେ ନାହିଁ ।'' ଫକିରଙ୍କର ଯାଦୁକାରୀ ଶକ୍ତି ଫଳପ୍ରଦ ହେଲା । ସ୍ୱାମୀଜୀଙ୍କର ମନ ବିଚଳିତ ହେଲା ଏବଂ ସମସ୍ତଙ୍କ ଉପରେ ଚିଡ଼ିଚିଡ଼ି ହେଲେ ଅର୍ଥାତ୍ ଚିଡ଼ିଚିଡ଼ା ପ୍ରକୃତି ହୋଇଗଲେ । ଏହାର ପ୍ରଭାବ ଜାଣିପାରି ଉତ୍ତେଜିତ କଣ୍ଠରେ ସ୍ୱାମୀଜୀ କହିଥିଲେ : ''ଶ୍ରୀରାମକୃଷ୍ଣ କି ଉପକାରରେ ମୋର ଆସିବେ ? ମୋ ଆତ୍ମୋପଲବ୍ଧି ଓ ମୋର ବେଦାନ୍ତ ପ୍ରଚାରର ଲାଭ କ'ଣ ? ସକଳ ଭିତରେ ଆତ୍ମା ବିରାଜିତ ବୋଲି ମୁଁ କହେ ଏବଂ ନିଜକୁ କଳାଯାଦୁକାରୀ ଶକ୍ତି କବଳରୁ ରକ୍ଷା କରିପାରୁ ନାହିଁ ?'' ତାଙ୍କର ମନ ଇତ୍ୟବସରରେ ଏଭଳି ବିଚଳିତ ହୋଇଗଲାଯେ ସେ କଲିକତା ପ୍ରତ୍ୟାବର୍ତ୍ତନ କରିବା ପରେ ବି ସେ ଉତ୍ୟକ୍ତ ହୋଇପଡୁଥିଲେ । ମା ସାରଦାଙ୍କ ନିକଟରେ ନିଜର ଅନୁଭୂତି ପ୍ରକାଶ କରି ସେ କ୍ଷୋଭ ପ୍ରକାଶ କରିଥିଲେ । କିନ୍ତୁ ମା ତାଙ୍କୁ ଅଭୟବାଣୀ ଶୁଣାଇବା ପରେ ତାଙ୍କ ମନ ଶାନ୍ତ ହୋଇଥିଲା ।

୧୮୯୮ ଅକ୍ଟୋବର ୧୧ ତାରିଖରେ ସ୍ୱାମୀଜୀ କାଶ୍ମୀରରୁ ପ୍ରସ୍ଥାନ କଲେ ଏବଂ ଲାହୋର ଅଭିମୁଖେ ଯାତ୍ରା କଲେ । ତାଙ୍କର ପାଶ୍ଚାତ୍ୟ ଶିଷ୍ୟଗଣ ଆଗ୍ରା, ଦିଲ୍ଲୀ ଓ ଅନ୍ୟାନ୍ୟ ସହର ଭ୍ରମଣ ଲାଗି ପ୍ରସ୍ଥାନ ଦେଲେ । କାଶ୍ମୀର ଭ୍ରମଣ କାଳରେ ସ୍ୱାମୀଜୀଙ୍କର ସ୍ୱାସ୍ଥ୍ୟ ଅତ୍ୟନ୍ତ ଦୁର୍ବଳ ହୋଇଯାଇଥିଲା । କଲିକତାର ବେଲୁଡ଼ ମଠରେ ଦୁର୍ଗାପୂଜାରେ ଭାଗ ନେବାପାଇଁ ତାଙ୍କର ମନ ଉଛନ୍ନ ହେଲା । ଭଗିନୀ ନିବେଦିତା କଲିକତାରେ ତାଙ୍କର ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରିବା ଲାଗି ବ୍ୟସ୍ତ ହୋଇଉଠିଲେ । ସେ ବି କଲିକତା ଫେରିଯିବାକୁ ଚାହିଁଲେ । ସ୍ୱାମୀଜୀଙ୍କର ବର୍ତ୍ତମାନ ମନ ଚାହୁଁ ନ ଥିଲା ଏହି ପ୍ରପଞ୍ଚ ଜଗତରେ ଅଧିକ କାଳ ରହିବା ପାଇଁ, ସତେକି ଗୁରୁଦେବଙ୍କର କାର୍ଯ୍ୟ ଶେଷ ହୋଇଆସୁଛି ବୋଲି ସେ ମନେ ମନେ ଅନୁଭବ କରୁଥିଲେ । ୧୮୯୮ ଅକ୍ଟୋବର ୧୬ ତାରିଖରେ ସନ୍ନ୍ୟାସୀ ଓ ଶିଷ୍ୟଙ୍କୁ ସାଙ୍ଗରେ ଧରି ଲାହୋରରୁ କଲିକତା ଅଭିମୁଖେ ଟ୍ରେନ୍ ଚଢ଼ିଲେ । ଏହି ସମୟରେ ସେ ଶ୍ୱାସ ରୋଗରେ ଆକ୍ରାନ୍ତ, ମୁଖମଣ୍ଡଳ ନୀଳବର୍ଣ୍ଣ ଧାରଣ କରିଥିଲା । ଏହି ଚଳଚଞ୍ଚଳ ବିଦ୍ରୋହୀ ସନ୍ନ୍ୟାସୀଙ୍କ ମନରେ ସ୍ପୃହା ଫୁଟନ୍ତା ଅବସ୍ଥାରେ ନ ଥିଲା ଯେତେବେଳେ ସେ କାଶ୍ମୀରରୁ ବିଦାୟ ନେଇଥିଲେ ।



Digitized by srujanika@gmail.com

॥ ସଇଁତିରିଶ ॥

# ବେଲୁଡ଼ଠାରେ ନବନିର୍ମିତ ଗୃହକୁ ରାମକୃଷ୍ଣ ମଠ ଓ ମିଶନ ସ୍ଥାନାନ୍ତରିତ - ପରମଭକ୍ତ ନାଗମହାଶୟ ସ୍ୱାମୀଜୀଙ୍କୁ ଭେଟିଲେ - ଗୁରୁଭ୍ରାତା ସନ୍ନ୍ୟାସୀ ସ୍ୱାମୀ ଯୋଗାନନ୍ଦଙ୍କ ଦେହାନ୍ତ

୧୮୯୮ ଅକ୍ଟୋବର ୧୮ ତାରିଖରେ ସ୍ୱାମୀଜୀ ନୀଳାମ୍ବର ମୁଖାର୍ଜୀ ଉଦ୍ୟାନବାଟିରେ ଅବସ୍ଥିତ ରାମକୃଷ୍ଣ ମଠରେ ହଠାତ୍ ଉପନୀତ ହେବାରୁ ସମସ୍ତ ଗୁରୁଭ୍ରାତାଙ୍କ ଭିତରେ ଖେଳିଗଲା ଆନନ୍ଦ ଲହରି । ମଠାଧ୍ୟକ୍ଷ ସ୍ୱାମୀ ବ୍ରହ୍ମାନନ୍ଦ କିନ୍ତୁ ସ୍ୱାମୀଜୀଙ୍କର ଅସୁସ୍ଥ ଶରୀର ଦେଖି ବିଚଳିତ ହୋଇଉଠିଲେ । ଶ୍ୱାସରୋଗ ତାଙ୍କୁ ପ୍ରଚଣ୍ଡ ଭାବରେ ଆକ୍ରାନ୍ତିତ କରିଥିଲା, ସେ ଶଯ୍ୟାଶାୟୀ ହେଲେ । ଅସୁସ୍ଥତା ସତ୍ତ୍ୱେ, ତାଙ୍କ ଅବର୍ତ୍ତମାନରେ ସ୍ୱାମୀ ବ୍ରହ୍ମାନନ୍ଦ ଯେପରି ଭାବେ ମଠର ଉନ୍ନତି ସାଧନ କରିଥିଲେ, ତାହା ଦେଖି ସେ ଅତ୍ୟନ୍ତ ପ୍ରସନ୍ନ ହେଲେ । ବ୍ରହ୍ମାନନ୍ଦଙ୍କୁ ସେ ରାଜା ବୋଲି ଡାକୁଥିଲେ । ଉଚ୍ଚ ପ୍ରଶଂସା କରି ସ୍ୱାମୀଜୀ କହିଥିଲେ, ରାଜାର କାର୍ଯ୍ୟ (ସ୍ୱାମୀ ବ୍ରହ୍ମାନନ୍ଦ)ଙ୍କର କାର୍ଯ୍ୟ ଦେଖି ମୁଁ ଅବାକ୍ ହୋଇଯାଇଛି । ସୁନ୍ଦରଭାବେ ସେ ମଠ ପରିଚାଳନା କରୁଛି ! ଠାକୁର ବାସ୍ତବରେ ସତ କଥା କହିଥିଲେ ଯେ ରାଜା ଗୋଟିଏ ରାଜ୍ୟ ସମ୍ଭାଳି ପାରିବ ।

ଦୁଇ କିମ୍ବା ତିନିଦିନ ପରେ, ସ୍ୱାମୀଜୀଙ୍କର ଶିଷ୍ୟ ଶରତଚନ୍ଦ୍ର ଚକ୍ରବର୍ତ୍ତୀ ମଠରେ ପହଞ୍ଚିଲେ । ତାଙ୍କୁ ଦେଖି ସ୍ୱାମୀ ବ୍ରହ୍ମାନନ୍ଦ କହିଲେ, ''କାଶ୍ମୀରରୁ ଫେରିବା ପରେ, ସ୍ୱାମୀଜୀ କାହା ସହିତ ପ୍ରାୟ କଥାବାର୍ତ୍ତା ହେଉନାହାନ୍ତି । ସେ ଗୋଟିଏ ଜାଗାରେ ଏକାଗ୍ର ଚିତ୍ତରେ ବସି ରହୁଛନ୍ତି । ତୁମେ ଟିକିଏ ଯାଅ ଏବଂ ତାଙ୍କ ମନକୁ କଥାବାର୍ତ୍ତା ଜରିଆରେ ସାଂସାରିକ ବିଷୟବସ୍ତୁ ଆଡ଼କୁ ଆକର୍ଷିଣ କର ।''

ଶରତବାବୁ ତତ୍‌କ୍ଷଣାତ୍ ସ୍ୱାମୀଜୀଙ୍କ କୋଠରିକୁ ପ୍ରବେଶ କରି ଦେଖିଲେ ଯେ ସ୍ୱାମୀଜୀ ପୂର୍ବଦିଗକୁ ମୁଖକରି ଚିନ୍ତାଗ୍ରସ୍ତ ହୋଇ ଉପବିଷ୍ଟ । ଶରତବାବୁଙ୍କୁ ଦେଖି ସ୍ୱାମୀଜୀ ଧୀର କଣ୍ଠରେ କହିଉଠିଲେ, ''ବତ୍ସ, ତୁମେ ଆସିଛ, ବସ ।'' ଏତିକି ମାତ୍ର କହି ସେ ପୁନଶ୍ଚ ନୀରବ ହୋଇଗଲେ । ସ୍ୱାମୀଜୀଙ୍କର ବାମ ଚକ୍ଷୁ ଲୋହିତବର୍ଣ୍ଣ ଦେଖି ସେ ପ୍ରଶ୍ନ କଲେ, ''ଆପଣଙ୍କର

Digitized by srujanika@gmail.com

ବାମ ଚକ୍ଷୁ କାହିଁକି ଲାଲ ପଡ଼ିଛି ? ''ନା କିଛି ନୁହେଁ'' କହି ସ୍ୱାମୀଜୀ ପୁନଶ୍ଚ ନୀରବତା ଭିତରେ ହଜିଗଲେ । ଭକ୍ତପ୍ରାଣ ଏତାଦୃଶ ନୀରବତା ଭିତରେ ମଛି ହେଲା, ସେ ସ୍ୱାମୀଜୀଙ୍କ ପାଦଧରି ବାଷ୍ପରଦ୍ଧ କଣ୍ଠରେ କହିଉଠିଲେ, ''ଆପଣ ଅମରନାଥରେ କ'ଣ ଦର୍ଶନ ଲାଭ କଲେ ମୋତେ କହିବେ ନାହିଁ ?'' ଶିଷ୍ୟଙ୍କର ଆକୁଳତା ତାଙ୍କର କଠୋର ମାନସିକତାକୁ ଭଙ୍ଗ କଲା । ସେ ବାହ୍ୟଜଗତକୁ ତାଙ୍କର ଅନ୍ତର୍ମୁଖୀ ମନକୁ ଫେରାଇ ଆଣି କହିଲେ, ''ପୁତ୍ର, ଅମରନାଥ ଦର୍ଶନ କରିବା ପରେ, ମୁଁ ଅନୁଭବ କରୁଛି, ସତେକି ସ୍ୱୟଂ ଶିବ ମୋ ମସ୍ତକ ଉପରେ ଚବିଶ ଘଣ୍ଟା ବସି ରହିଛନ୍ତି ଏବଂ ସେ ଆଦୌ ଅବତରଣ କରୁନାହାନ୍ତି ।'' ଶିଷ୍ୟ ଏମନ୍ତ ବାକ୍ୟ ଶ୍ରବଣରେ ବାକ୍ରଦ୍ଧ ହୋଇଗଲେ ।

କିୟତ୍‌କ୍ଷଣ ଅତିକ୍ରାନ୍ତେ ସ୍ୱାମୀଜୀ କହିଲେ, ''ବୁଝିଲ ପୁତ୍ର, ଅମରନାଥରେ ମୁଁ ଭୀଷଣ କ୍ଲିଷ୍ଟ ଧାର୍ମିକ ଉପାସନା କରିଥିଲି ଏବଂ ତତ୍‌ପଶ୍ଚାତେ କ୍ଷୀରଭବାନୀ ମନ୍ଦିରରେ ବି । ଅମରନାଥ ଯାତ୍ରା ସମୟରେ ପର୍ବତମାଳାର ବହୁ ଉଚ୍ଚକୁ ମୋତେ ଆରୋହଣ କରିବାକୁ ପଡ଼ିଥିଲା । ସାଧାରଣତଃ ତୀର୍ଥଯାତ୍ରୀଗଣ ସେଭଳି ପଥରେ ଯାତ୍ରା କରନ୍ତି ନାହିଁ, କିନ୍ତୁ ମୋ ଭିତରେ ଏପରି ତୀବ୍ର ସଂକଳ୍ପ ଜାତ ହେଲା ଯେ ମୁଁ ତାହା କରିବାକୁ ବାଧ୍ୟ ହେଲି । ପର୍ବତ ଆରୋହଣର ପରିଶ୍ରମ ମୋ ଶରୀର ଉପରେ ପ୍ରଭାବ ପକାଇଲା । ପ୍ରବଳ ଶୀତ ଲହରି ମୋ ଦେହରେ ଛୁଞ୍ଚିଭଳି ଫୋଡ଼ି ହେଉଥିଲା - ମୁଁ ଗୁମ୍ଫା ଭିତରକୁ ପ୍ରବେଶ କରିବା ସମୟରେ ମୋର ସମଗ୍ର ଶରୀର ବିଭୂତି ଆଚ୍ଛାଦିତ ଓ ଅଣ୍ଟାରେ ଥିଲା କେବଳ କୌପିନ । ମୁଁ ଆଦୌ ଶୀତ ଓ ଉଷ୍ମ ଅନୁଭବ କରୁ ନ ଥିଲି । କିନ୍ତୁ ଗୁମ୍ଫା ଭିତରୁ ବାହାରି ଆସିବା ପରେ, ମୋର ସମଗ୍ର ଶରୀର କାଳୁଆ ପଡ଼ିଯାଇଥିଲା ।

ଶିଷ୍ୟ ପୁନର୍ବାର ପ୍ରଶ୍ନ କଲେ ''ସ୍ୱାମୀଜୀ, କିମ୍ବଦନ୍ତୀ କହେ ଯେ ଅମରନାଥ ଗୁମ୍ଫାରେ ରହନ୍ତି ଅନେକ ଶ୍ୱେତ କପୋତ, ତୀର୍ଥଯାତ୍ରୀ ଗୁମ୍ଫାରୁ ପ୍ରତ୍ୟାବର୍ତ୍ତନ ସମୟରେ ଯଦି ଏଭଳି ଶ୍ୱେତ କପୋତ ଦେଖନ୍ତି, ତେବେ ଭକ୍ତର ମନୋସ୍କାମନା ପୂର୍ଣ୍ଣ ହୁଏ ।'' ସ୍ୱାମୀଜୀ ତତ୍‌କ୍ଷଣାତ୍ କହି ଉଠିଲେ, ''ହଁ ହଁ ମୁଁ ଜାଣେ । ମୁଁ ତିନୋଟି କିମ୍ବା ଚାରୋଟି ଶ୍ୱେତ କପୋତ ସେଠାରେ ଦେଖିଥିଲି । ଉକ୍ତ ପକ୍ଷୀଗୁଡ଼ିକ ଗୁମ୍ଫା କିମ୍ବା ନିକଟସ୍ଥ ପର୍ବତର ମୁଁ ଜାଣେନାହିଁ ।''

''ସ୍ୱାମୀଜୀ, ଆପଣ ଯେଉଁ ଦୈବବାଣୀ ମାତା କ୍ଷୀରଭବାନୀ ମନ୍ଦିରରେ ଶୁଣିଲେ, ମୁଁ ଭାବୁଛି ତାହା ବୋଧହୁଏ ଆପଣଙ୍କର ଗଭୀରତମ ଶକ୍ତିଶାଳୀ ଚିନ୍ତାରାଶିର ପ୍ରତିଫଳନ ମାତ୍ର ଯେଉଁଥିରେ ସତ୍ୟତା ନ ଥାଇପାରେ ।'' ସ୍ୱାମୀଜୀ ଏମନ୍ତ କଥା ଶୁଣି ଗମ୍ଭୀର ମୁଖମଣ୍ଡଳରେ ଶରତବାବୁଙ୍କୁ ଚାହିଁ କହିଲେ, ''ଏଭଳି ଦିବ୍ୟସ୍ୱର ତୁମ ଭିତରୁ ଆସିଛି କିମ୍ବା ବାହ୍ୟ ରାଜ୍ୟରୁ ଆସିଛି, ମୁଁ ଯେପରି ତୁମ ସହ କଥାବାର୍ତ୍ତା କରୁଛି, ସେଭଳି ତୁମେ ଯଦି ତୁମ କାନରେ ଶୁଣ ଯାହା କୌଣସି ରୂପ ସହ ସଂପର୍କ ନାହିଁ କିନ୍ତୁ ଅନନ୍ତ ଆକାଶରୁ ଭାସି ଆସୁଛି, ତେବେ କ'ଣ ଏହାର ସତ୍ୟତା ଉପରେ ତୁମେ ସଂଶୟ ପ୍ରକାଶ କରି ପାରିବ ?'' ଶରତବାବୁ ବିସ୍ମିତ ନୟନରେ ନୀରବ ରହିଲେ ।

Digitized by srujanika@gmail.com

- ୧ -

*ପୁତ୍ର, ତୁମେ କ'ଣ ଭାବ ଯେ ମୁଁ ମନୁଷ୍ୟକୁ ଜାଣିପାରେନାହିଁ ?*
*କ'ଣ ! ମୁଁ ଯେତେବେଳେ ଜଣେ ବ୍ୟକ୍ତିକୁ ଦେଖେ, ସେତେବେଳେ*
*ତା'ର ଅନ୍ତର୍ରାଜ୍ୟରେ କ'ଣ ଘଟୁଛି ତାହା କେବଳ ଜାଣେନାହିଁ*
*ବରଂ ତା'ର ବିଗତ ଜୀବନର କାର୍ଯ୍ୟକଳାପର ଝଲକ ମୋ*
*ସମ୍ମୁଖରେ ଭାସିଉଠେ । ତା'ର ଅବଚେତନ ମନରେ କ'ଣ ଘଟୁଛି*
*ମୁଁ ଜାଣିପାରେ, ଏପରିକି ସେ ବ୍ୟକ୍ତି ନିଜେ ତାହା ଜାଣି ନ ଥାଏ ।*

ଡାକ୍ତର ଆର.ଏଲ.ଦତ୍ତଙ୍କ ଚିକିତ୍ସା ଫଳରେ ସ୍ୱାମୀଜୀଙ୍କ ଶ୍ୱାସରୋଗ କିୟଦାଂଶରେ ଉପସମ ହେଲା, କିନ୍ତୁ ଅତ୍ୟଧିକ ଧ୍ୟାନ ତାଙ୍କର ସ୍ୱାସ୍ଥ୍ୟପକ୍ଷେ ଅନୁକୂଳ ନୁହେଁ ବୋଲି ଡାକ୍ତର ପରାମର୍ଶ ଦେଇଥିଲେ । ବର୍ତ୍ତମାନ ସ୍ୱାମୀଜୀଙ୍କର ନିରାକାରବାଦୀ ମନ ଓ ହୃଦୟ ପ୍ରେମ ଓ ଭକ୍ତି ସ୍ରୋତରେ ଆପ୍ଲୁତ । ତାଙ୍କର ଆଶୀର୍ବାଦ ଓ କୃପା ସାଧୁ ଓ ପାପୀଙ୍କ ଉପରେ ବର୍ଷଣମୁଖର । ଅନ୍ତିମକାଳ ପାଖେଇ ଆସୁଥିବାରୁ ସେ କାହାକୁ ଆଶୀର୍ବାଦ ଓ କୃପାରୁ ବଞ୍ଚିତ କରୁ ନ ଥିଲେ । ଯିଏ ତାଙ୍କ ନିକଟକୁ ଆସୁଥିଲେ ସମସ୍ତଙ୍କ ପ୍ରତି ବିନା ବାଛବିଚାରରେ ଅଜାଡ଼ି ଦେଉଥିଲେ ପ୍ରେମ ଓ କରୁଣା । ଏକଦା ସାଂଧ୍ୟକାଳୀନ ଭ୍ରମଣ ସମୟରେ ଜନୈକ ଶିଷ୍ୟ ସ୍ୱାମୀଜୀଙ୍କୁ ପଚାରିଲେ, ''ସ୍ୱାମୀଜୀ, ଆପଣ ବ୍ୟକ୍ତିର ଭଲ ଓ ମନ୍ଦ - ପାପ ଓ ପୁଣ୍ୟର ବିଚାର ନ କରି, ଯିଏ ଆପଣଙ୍କୁ ପ୍ରଶଂସାମୂଳକ କଥାବାର୍ତ୍ତା କଲା, ତାଙ୍କ ଉପରେ ଆପଣ କୃପାବାରି ଛିଞ୍ଚି ଦେଉଛନ୍ତି, ଏପରିକି ସେହି ବ୍ୟକ୍ତିର ପୂର୍ବ ଜୀବନ ଓ ଅନ୍ତର୍ନିହିତ ଗୁଣ ଉପରେ ଆଦୌ ଦୃଷ୍ଟିପାତ କରୁନାହାନ୍ତି । ଆପଣଙ୍କର ଏତାଦୃଶ ବାଛବିଚାରହୀନ କୃପା ପ୍ରଦର୍ଶନ ଯୋଗୁଁ ବହୁ ଅସତ୍ ଚରିତ୍ର ବ୍ୟକ୍ତି ମଠରେ ପ୍ରବେଶ କରିବେ ବୋଲି ଗୁଜବ ହେଉଛି ।''

ଶିଷ୍ୟଙ୍କର ଅବାନ୍ତର ପ୍ରଶ୍ନରେ ସ୍ୱାମୀଜୀ ସ୍ତବ୍ଧ ହୋଇ ଛିଡ଼ା ହୋଇଗଲେ ଏବଂ ବୁଲିପଡ଼ି ଭାବପ୍ରବଣପୂର୍ଣ୍ଣ ଉଚ୍ଚସ୍ୱରରେ କହିଉଠିଲେ : ପୁତ୍ର, ତୁମେ କ'ଣ ଭାବ ଯେ ମୁଁ ମନୁଷ୍ୟକୁ ଜାଣିପାରେନାହିଁ ? କ'ଣ ! ମୁଁ ଯେତେବେଳେ ଜଣେ ବ୍ୟକ୍ତିକୁ ଦେଖେ, ସେତେବେଳେ ତା'ର ଅନ୍ତର୍ରାଜ୍ୟରେ କ'ଣ ଘଟୁଛି ତାହା କେବଳ ଜାଣେନାହିଁ ବରଂ ତା'ର ବିଗତ ଜୀବନର କାର୍ଯ୍ୟକଳାପର ଝଲକ ମୋ ସମ୍ମୁଖରେ ଭାସିଉଠେ । ତା'ର ଅବଚେତନ ମନରେ କ'ଣ ଘଟୁଛି ମୁଁ ଜାଣିପାରେ, ଏପରିକି ସେ ବ୍ୟକ୍ତି ନିଜେ ତାହା ଜାଣି ନ ଥାଏ । ତେବେ ଏଭଳି ବ୍ୟକ୍ତିଙ୍କୁ ମୁଁ କାହିଁକି କୃପା ପ୍ରଦର୍ଶନ କରେ ତୁମେ ଜାଣିଛ ? ଏହି ବିଚରା ଆତ୍ମାମାନେ ଟିକିଏ ଶାନ୍ତି ଲାଗି ପ୍ରତ୍ୟେକ ଦ୍ୱାର ଖଟ୍‌ଖଟ୍ କରିଛନ୍ତି, କିନ୍ତୁ କାହାର ଦ୍ୱାର ସେମାନଙ୍କ ପାଇଁ ଉନ୍ମୁକ୍ତ ହୋଇନାହିଁ । ଶେଷରେ ସେମାନେ ମୋ ପାଖକୁ ଆସିଛନ୍ତି । ମୁଁ ଯଦି ସେମାନଙ୍କୁ ନିରାଶ କରିବି, ସେମାନଙ୍କର ପତନ ହେବା ବ୍ୟତୀତ ଆଉ କିଛି ହେବନାହିଁ । ତେଣୁ ମୋର ବାଛବିଚାର ନାହିଁ । ଆହାଃ ସେମାନେ ଏଭଳି ବେଦନାଗ୍ରସ୍ତ ! ସଂସାର ଖାଲି ଦୁଃଖରେ ପରିପୂର୍ଣ୍ଣ !!!

*Digitized by srujanika@gmail.com*

ଇତ୍ୟବସରରେ ଭଗିନୀ ନିବେଦିତା ପ୍ରତ୍ୟାବର୍ତ୍ତନ କଲେ କଲିକତା । ଦିବ୍ୟଜନନୀ ସାରଦାଦେବୀ ପରମଭକ୍ତ ବଳରାମବାବୁଙ୍କ ଗୃହରେ ବାସ କରୁଥିଲେ, ଭଗିନୀ ନିବେଦିତା ଏକ ପୃଥକ ଗୃହ ଆୟୋଜିତ ହେବା ପର୍ଯ୍ୟନ୍ତ, ମା'ଙ୍କ ସହ ଅବସ୍ଥାନ କଲେ । ଶ୍ରୀମତୀ ଓଲେବୁଲ୍ ଏହି ସମୟରେ ମା'ଙ୍କର ଫଟୋ ଉତ୍ତୋଳନ କରିଥିଲେ । କାଳୀପୂଜା ଦିନ ବାଗ୍‌ବଜାରଠାରେ ନିବେଦିତାଙ୍କର ବାଳିକା ବିଦ୍ୟାଳୟର ଶୁଭାରମ୍ଭ ହେଲା । ଶ୍ରୀରାମକୃଷ୍ଣଙ୍କୁ ମା ପୂଜାର୍ଚ୍ଚନା କରିବା ପରେ, ବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଜଗଜ୍ଜନନୀଙ୍କୁ ପ୍ରାର୍ଥନା କରିଥିଲେ । ମା'ଙ୍କର ସେଦିନର ଆଶୀର୍ବାଦ କଥା ମନେପକାଇ ନିବେଦିତା କହିଥିଲେ, ''ଭବିଷ୍ୟତର ଶିକ୍ଷିତ ହିନ୍ଦୁନାରୀଙ୍କ ପ୍ରତି ମା'ଙ୍କର ଆଶୀର୍ବାଦସୂଚକ ବାଣୀ, କି ବିଶାଳ ଶୁଭ ସଙ୍କେତ ଥିଲା ଯାହା ମୁଁ କଳ୍ପନା କରିପାରିବି ନାହିଁ ।''

ହିନ୍ଦୁ ପରିବାରରେ ସାନ ଭଉଣୀକୁ ବଡ଼ ଭାଇ ଯେପରି ସ୍ନେହରେ ବାନ୍ଧି ବହୁ କଥା ଶିଖାଇଥାନ୍ତି, ତାହାହିଁ ଭଗିନୀ ନିବେଦିତାଙ୍କ କ୍ଷେତ୍ରରେ ଘଟିଥିଲା । ସ୍ୱାମୀଜୀ ତାଙ୍କ ଉପରେ ଗୁରୁଗିରି କେବେ ଜାରି କରି ନ ଥିଲେ, ତାଙ୍କୁ ସେ ଏଭଳି ଭାବେ ଶିକ୍ଷାଦାନ କରୁଥିଲେ ଯେପରି ସେ ଭାରତୀୟ ନାରୀଙ୍କ ଭିତରେ ଏକ ବିପ୍ଳବ ସୃଷ୍ଟି କରିପାରିବେ ।

- ୨ -

*ବିଶ୍ୱର ମହାନ୍ ଧର୍ମ ଓ ବିଶ୍ୱାସର ସମନ୍ୱୟକେନ୍ଦ୍ର ଏହି ମଠ ହେବ ଯାହ ଶ୍ରୀରାମକୃଷ୍ଣ ନିଜ ଜୀବନରେ ସାଧନା କରି ଆଦର୍ଶ ରଖିଯାଇଛନ୍ତି । ଧର୍ମର ସାର୍ବଜନୀନ ଦିଗ ଏଠାରେ କେବଳ ପ୍ରଚାରିତ ହେବ । ଏହି କେନ୍ଦ୍ରରୁ ସାର୍ବଜନୀନ ସହନଶୀଳତା, ଶାନ୍ତି, ମୈତ୍ରୀର ବାଣୀ ବହିର୍ଗତ ହୋଇ ସମଗ୍ର ବିଶ୍ୱକୁ ବୁଡାଇ ଦେବ ।*

ଏକ ଚମତ୍କାର ଘଟଣା ଭାରତୀୟ ବିଜ୍ଞାନ ଓ ଶିଳ୍ପ ଆକାଶରେ ହେଲା ଉଦୟ । ୧୮୯୩ ଖ୍ରୀଷ୍ଟାବ୍ଦରେ ୟୋକୋହାମାରୁ ଭେଙ୍କୋଭର ଜଳଯାତ୍ରା କାଳରେ କୋଟିପତି ତଥା ମାନବବାଦୀ ସାର୍ ଜାମସେଦ୍‌ଜୀ ଟାଟାଙ୍କ ସହ ସ୍ୱାମୀଜୀଙ୍କର ସାକ୍ଷାତ ଜାପାନରେ ହୋଇଥିଲା । ଜାପାନର ଶିଳ୍ପୋନ୍ନତି ପରିଲକ୍ଷିତ କରି ସେ ବିମୁଗ୍ଧ ହୋଇ ଚାହିଁଥିଲେ ଏତାଦୃଶ ଔଦ୍ୟୋଗିକ ଅଗ୍ରଗତି ଭାରତ ବର୍ଷରେ ହେଉ ଯାହା ଏହି ପୁସ୍ତକର ପୂର୍ବ ଅଧ୍ୟାୟରେ ଆଲୋଚିତ ହୋଇଛି । ସେହି କିମ୍ବଦନ୍ତୀ ପୁରୁଷ ଟାଟାଙ୍କଠାରୁ ନଭେମ୍ବର ୨୩ରେ ଲିଖିତପତ୍ର ସ୍ୱାମୀଜୀଙ୍କର ବର୍ତ୍ତମାନ ହସ୍ତଗତ ହେଲା । ସ୍ୱାମୀଜୀଙ୍କର ଜ୍ଞାନାଲୋକିତ ଆକର୍ଷଣୀୟ ବ୍ୟକ୍ତିତ୍ୱ ତଥା ଦେଶଭକ୍ତି ଚିନ୍ତାଧାରା ଜାମସେଦ୍‌ଜୀ ଟାଟାଙ୍କ ମାନସପଟରେ ଏକ ଅଲିଭା ସ୍ମୃତି ହୋଇ ରହିଯାଇଥିଲା, ଯାହା ନିମ୍ନଲିଖିତ ପତ୍ରରୁ ସ୍ପଷ୍ଟ ପ୍ରତୀୟମାନ ହୁଏ :

''ପ୍ରିୟ ସ୍ୱାମୀ ବିବେକାନନ୍ଦ, ମୋର ବିଶ୍ୱାସ, ଜାପାନର ସିକାଗୋ ଜଳଯାତ୍ରା ସମୟରେ ଜଣେ ସହ-ଯାତ୍ରୀ ଭାବେ ମୁଁ ଆପଣଙ୍କ ସହ ଯାତ୍ରା କରୁଥିବାର ସ୍ମୃତି ଆପଣଙ୍କର ନିଶ୍ଚୟ

Digitized by srujanika@gmail.com

ମନେଥିବ । ଭାରତରେ ତ୍ୟାଗପୂତ ଉତ୍ସାହପୂର୍ଣ୍ଣ ଜୀବନଧାରାର ବିକାଶ ଏବଂ ଧ୍ୱଂସାତ୍ମକ ପଥରେ ଏହାକୁ ବିନିଷ୍ଟ ନ କରି, ଉପକାରୀ ମାର୍ଗରେ ପରିଚାଳିତ କରିବାର ଦାୟିତ୍ୱ ଉପରେ ଆପଣଙ୍କର ଦୃଷ୍ଟିକୋଣ ଏହି ମୁହୂର୍ତ୍ତରେ ମୋ ମାନସପଟରେ ଉଦ୍‌ଭାସିତ ହେଉଛି ।

ଭାରତ ବର୍ଷରେ ମୋର ଏକ ବିଜ୍ଞାନ ଗବେଷଣା ଅନୁଷ୍ଠାନର କାର୍ଯ୍ୟକ୍ରମ ପରିପ୍ରେକ୍ଷୀରେ ଆପଣଙ୍କ ଦୃଷ୍ଟିକୋଣ ମୋର ମନେପଡୁଛି, ଯାହା ଆପଣ ନିଃସନ୍ଦେହରେ ଶୁଣିଥିବେ କିମ୍ବା ପଢ଼ିଥିବେ । ମୋତେ ଜଣାପଡୁଛି ଯେ ମଠ କିମ୍ବା ଆଶ୍ରମ ପ୍ରତିଷ୍ଠା କରିବା ଅପେକ୍ଷା ଏଭଳି ଅନୁଷ୍ଠାନ ସ୍ଥାପନ କଲେ ତ୍ୟାଗପୂତ ଉତ୍ସାହର ଉପଯୋଗ ସବୁଠାରୁ ଅଧିକ ହେବ ଯେଉଁଠି ଏତାଦୃଶ ଉତ୍ସାହରେ ପରିପୂର୍ଣ୍ଣ ବ୍ୟକ୍ତି ଉଭୟ ପ୍ରାକୃତିକ ଓ ମାନବିକ ବିଜ୍ଞାନର ଗଭୀର ଅଧ୍ୟୟନ ନିମନ୍ତେ ସେମାନଙ୍କର ଜୀବନ ଉତ୍ସର୍ଗ କରିପାରିବେ । ମୋ ମତରେ ଯଦି ଏହିପ୍ରକାର ତ୍ୟାଗପୂତ ଉତ୍ସାହର ବର୍ଦ୍ଧନ ନିମନ୍ତେ ଯଦି ଜଣେ ଦକ୍ଷ ନେତା ଏକ ବଳିଷ୍ଠ ପଦକ୍ଷେପ ନିଅନ୍ତେ, ତେବେ ତ୍ୟାଗ ମନୋଭାବ, ବିଜ୍ଞାନ ଓ ଆମ ରାଷ୍ଟ୍ରର ଗୌରବ ନିଶ୍ଚିନ୍ତ ବୃଦ୍ଧିପ୍ରାପ୍ତ ହୁଅନ୍ତା । ମୁଁ ଭଲଭାବରେ ଜାଣେ ବିବେକାନନ୍ଦଙ୍କ ଅପେକ୍ଷା ଅନ୍ୟ କେହି ଏହି ଅଭିଯାନରେ ଶ୍ରେଷ୍ଠ ବ୍ୟକ୍ତି ହୋଇପାରିବେ ନାହିଁ । ଏହି କ୍ଷେତ୍ରରେ ଆମର ପ୍ରାଚୀନ ପରମ୍ପରା ଓ ସଂସ୍କୃତିର ପ୍ରଚାର ଅଭିଯାନରେ ଆପଣ ନିଜକୁ ନିୟୋଜିତ କରିବା ପାଇଁ ଯତ୍ନ ନେବେ ? ଆମ ଦେଶବାସୀଙ୍କୁ ଉଠାଇବା ଓ ଜାଗରିତ କରିବା ଲାଗି ଆପଣ ପ୍ରଥମେ ଅଗ୍ନିବର୍ଷୀ ପ୍ରଚାର ପତ୍ର ଆରମ୍ଭ କଲେ ବୋଧହୁଏ ଭଲ ହୁଅନ୍ତା । ପ୍ରକାଶନର ସମସ୍ତ ଖର୍ଚ୍ଚ ମୁଁ ଆନନ୍ଦରେ ବହନ କରିବି । ସମ୍ମାନସହ ଆପଣଙ୍କର ବିଶ୍ୱସ୍ତ - ଜାମସେଦଜୀ ଏନ୍ ଟାଟା ।''

ଜାମସେଦ୍‌ଜୀ ଟାଟାଙ୍କର ଉଦ୍ୟମକୁ ସ୍ୱାମୀଜୀ ନିଶ୍ଚିତ ଭାବେ ପ୍ରଶଂସା କରିଥିବେ ଏବଂ ଆଗାମୀ ଭାରତବର୍ଷ ସମଗ୍ର ବିଶ୍ୱରେ ଉଭୟ ଧର୍ମ ଓ ବିଜ୍ଞାନ କ୍ଷେତ୍ରରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିବାର ମାନସଦର୍ଶନ ଯେ ସାକାର ରୂପନେବା ଆରମ୍ଭ କଲାଣି, ତାହା ଭାବି ସ୍ୱାମୀଜୀ ନିଃସନ୍ଦେହରେ ଖୁସି ହୋଇଥିବେ ।

୧୮୯୮ ଡିସେମ୍ବର ୯ ତାରିଖ (ଶୁକ୍ରବାର) ନବଭାରତ ଇତିହାସ ତଥା ବିଶ୍ୱ ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ଦିବସ ବୋଲି ସ୍ୱର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହେଲା । ବେଲୁଡ଼ଠାରେ ଉଦ୍‌ଘାଟିତ ହେଲା ରାମକୃଷ୍ଣ ମଠ । ସ୍ୱାମୀଜୀ ନୂତନ ଗୈରିକ ବସ୍ତ୍ର ପରିଧାନ କରି ଶ୍ରୀରାମକୃଷ୍ଣଙ୍କର ଦେହାବଶେଷକୁ ପୁଷ୍ପ, ବିଲ୍ୱପତ୍ର, ଚନ୍ଦନ, ସିନ୍ଦୁର, ଅଗୁର, ଝୁଣା, ଦୀପ ପ୍ରଦାନ କରି ସ୍ୱୟଂ ଅତୀବ ଭକ୍ତି ସହକାରେ ପୂଜାର୍ଚ୍ଚନା କଲେ । ସମସ୍ତ ସନ୍ନ୍ୟାସୀ, ବ୍ରହ୍ମଚାରୀ, ଗୃହୀ ଭକ୍ତଗଣ ନୀରବରେ ଦଣ୍ଡାୟମାନ ହୋଇ ସ୍ୱାମୀଜୀଙ୍କର ଉପାସନା ଓ ଧ୍ୟାନ ଲକ୍ଷ୍ୟ କରୁଥିଲେ । ଶ୍ରୀରାମକୃଷ୍ଣ ପରମହଂସଙ୍କର ଦେହାବଶେଷର କଳସି ଯଥାସ୍ଥାନରେ ପ୍ରତିଷ୍ଠା କରାଗଲା । ସମସ୍ତେ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ଏଠାରେ ଉଲ୍ଲେଖନୀୟ ଯେ ନୀଳାମ୍ବର ମୁଖାର୍ଜୀ ଉଦ୍ୟାନବାଟିସ୍ଥିତ ମଠରୁ କଳସିରେ ସ୍ଥାପିତ ଶ୍ରୀରାମକୃଷ୍ଣଙ୍କର ଦେହାବଶେଷକୁ ଏକ ବିଶାଳ ଶୋଭାଯାତ୍ରାରେ ବେଲୁଡ଼ ମଠକୁ

Digitized by srujanika@gmail.com

ନିଆଯାଇଥିଲା । ସ୍ୱୟଂ ସ୍ୱାମୀ ବିବେକାନନ୍ଦ ନିଜ ଦକ୍ଷିଣ କାନ୍ଧରେ ଉକ୍ତ ପବିତ୍ର କଳସୀକୁ ଧାରଣ କରି ଶୋଭାଯାତ୍ରାର ନେତୃତ୍ୱ ନେଇ ଅଗ୍ରସର ହେଉଥିଲେ ଏବଂ ଶଙ୍ଖ, ହୁଳହୁଳି, ହରିବୋଲ, ମୃଦଙ୍ଗ, ଝାଞ୍ଜ, କରତାଳ, ଘଣ୍ଟ ଧ୍ୱନି ସହ କୀର୍ତ୍ତନର ସୁଲଳିତ ମୂର୍ଚ୍ଛନାରେ ସମଗ୍ର ବାତାବରଣ ଆଧ୍ୟାତ୍ମିକତାରେ ହେଲା ପରିପୂର୍ଣ୍ଣ । କାନ୍ଧରେ ପବିତ୍ର କଳସୀ, ମନ୍ଥର ପଦଚାରଣ, ମୁଖମଣ୍ଡଳରେ ଶାନ୍ତି ଓ ସନ୍ତୋଷର ଚିହ୍ନ, ସ୍କନ୍ଧରେ ଉଡ୍ଡୀୟମାନ ଗୈରିକ ପଣତ ସହ, ସ୍ୱାମୀଜୀ ଶୋଭାଯାତ୍ରାରେ ଅଗ୍ରସର ହେଉଥିବା ବେଳେ ଜଣେ ଶିଷ୍ୟଙ୍କୁ କହିଲେ, ''ବୁଝିଲ ବତ୍ସ, ଠାକୁର ଥରେ କହିଥିଲେ, ''ଖୁସିରେ ମୋତେ ଯେଉଁଠାକୁ ତୁମେ ନେଇଯିବ ମୁଁ ଯିବି, ତାହା ବୃକ୍ଷତଳ ହେଇଥାଉ କିମ୍ୱା ଗରିବ କୁଡ଼ିଆ ହେଇଥାଉ ।'' ସେହି କୃପାପୂର୍ଣ୍ଣ ପ୍ରତିଶ୍ରୁତିରେ ବିଶ୍ୱାସ ରଖି ମୁଁ ବର୍ତ୍ତମାନ ତାଙ୍କୁ ଆମର ଭବିଷ୍ୟତ ମଠକୁ କାନ୍ଧରେ ବୋହି ନେଇଯାଉଛି । ପୁତ୍ର, ଭଲକରି ମନେରଖ ଯେ ଯେପର୍ଯ୍ୟନ୍ତ ତାଙ୍କର ନାମ ଏବଂ ତାଙ୍କର ପବିତ୍ରତା, ଶୁଦ୍ଧତା ଏବଂ ମନୁଷ୍ୟ ପ୍ରତି ତାଙ୍କର ପ୍ରେମୋତ୍ସାହକୁ ତାଙ୍କର ଅନୁଗାମୀଗଣ ଅନୁସରଣ କରୁଥିବେ, ସେତେଦିନ ପର୍ଯ୍ୟନ୍ତ ଏହି ସ୍ଥାନ ତାଙ୍କର ଦିବ୍ୟ ଉପସ୍ଥିତି ଅନୁଭବ କରିବ ।''

ଯେତେବେଳେ ମଠର ନବ କଳେବର ଦୃଷ୍ଟିଗୋଚର ହେଲା, ସେତେବେଳେ ସ୍ୱାମୀଜୀ ଗୌରବମୟ ଭବିଷ୍ୟତ ସମ୍ୱନ୍ଧରେ କହି ଉଠିଲେ, ''ବିଶ୍ୱର ମହାନ୍ ଧର୍ମ ଓ ବିଶ୍ୱାସର ସମନ୍ୱୟକେନ୍ଦ୍ର ଏହି ମଠ ହେବ ଯାହ ଶ୍ରୀରାମକୃଷ୍ଣ ନିଜ ଜୀବନରେ ସାଧନା କରି ଆଦର୍ଶ ରଖିଯାଇଛନ୍ତି । ଧର୍ମର ସାର୍ବଜନୀନ ଦିଗ ଏଠାରେ କେବଳ ପ୍ରଚାରିତ ହେବ । ଏହି କେନ୍ଦ୍ରରୁ ସାର୍ବଜନୀନ ସହନଶୀଳତା, ଶାନ୍ତି, ମୈତ୍ରୀର ବାଣୀ ବହିର୍ଗତ ହୋଇ ସମଗ୍ର ବିଶ୍ୱକୁ ଡୁବାଇ ଦେବ ।'' ତତ୍ ସଙ୍ଗେ ସଙ୍ଗେ ଭବିଷ୍ୟତରେ ଯେପରି କୌଣସି ପ୍ରକାର ସଂକୀର୍ଣ୍ଣ ସମ୍ପ୍ରଦାୟ ଏହି କେନ୍ଦ୍ରରୁ ମୁଣ୍ଡ ନ ଟେକେ ସେଥିପାଇଁ ସେ ସତର୍କ କରାଇ ଦେଲେ । ଶ୍ରୀରାମକୃଷ୍ଣଙ୍କର ସାଧନା ଓ ଶିକ୍ଷାରେ ବଶବର୍ତ୍ତୀ ହୋଇ ସନ୍ନ୍ୟାସୀଗଣ କାର୍ଯ୍ୟ କରିବେ ଏବଂ ଏହି ମଠ ସେମାନଙ୍କର ମୁଖ୍ୟ କାର୍ଯ୍ୟାଳୟ ହେବ ।

କେବଳ ସେତିକି ନୁହେଁ ଏହି ମଠ ପ୍ରଥମେ ଗରିବ, ନିସ୍ୱ, ପୀଡ଼ିତ ତଥା ସାଧାରଣ ଜନତାଙ୍କୁ ଖାଦ୍ୟ ଓ ଜୀବନର ଅନ୍ୟାନ୍ୟ ଆବଶ୍ୟକତା ଯୋଗାଇ ଦେବ, ତା'ପରେ ବିଦ୍ୟାଦାନ ଓ ବୁଦ୍ଧିଦାନ ଏବଂ ଶେଷରେ ଜ୍ଞାନଦାନ ଓ ଆଧ୍ୟାତ୍ମିକ ଦାନ । ଏହି ତିନୋଟି ଦିଗ ପ୍ରତି ଯତ୍ନ ନେଇ ମଠ ଲୋକଙ୍କର ଶାରୀରିକ, ଶୈକ୍ଷିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ଉନ୍ନତି ସାଧନ କରିବ । ସ୍ୱାମୀଜୀ ଅତ୍ୟନ୍ତ ସନ୍ତୁଷ୍ଟ ଚିତ୍ତରେ ଶିଷ୍ୟଙ୍କୁ କହିଲେ, ''ପ୍ରଭୁଙ୍କ ଇଚ୍ଛାରୁ ଆଜି ତାଙ୍କର ଧର୍ମକ୍ଷେତ୍ର ପ୍ରତିଷ୍ଠିତ ହେଲା । ବାରବର୍ଷ କାଳ ତାଙ୍କର ଦାୟିତ୍ୱର ଭାର ବହନ କରି ଚାଲିଥିଲି, ସତରେ ଆଜି ମୁଁ ଭାରମୁକ୍ତ ହେଲି ।'' ସ୍ୱାମୀଜୀ ବୋଧହୁଏ ଅପ୍ରତ୍ୟକ୍ଷ ଭାବରେ ସୂଚେଇ ଦେଲେ ଯେ ଯେଉଁ ଚାବିକାଠି ଶ୍ରୀରାମକୃଷ୍ଣ ତାଙ୍କ ପାଖରେ ରଖିଥିଲେ, ତାହା ତାଙ୍କୁ ହସ୍ତାନ୍ତର କରିବା ସମୟ ଉପସ୍ଥିତ ହୋଇଯାଇଛି, ଯଦ୍ୱାରା ସେ ଚାବିଦ୍ୱାରା ଦ୍ୱାର ଖୋଲି ନିଜର ରାଜ୍ୟକୁ ଫେରିଯିବେ ।

ସ୍ୱାମୀଜୀ କଲିକତା ପ୍ରାଣୀବିଜ୍ଞାନ ଉଦ୍ୟାନ ଦେଖିବାକୁ ଇତି ମଧ୍ୟରେ ଯାଇଥିଲେ । ଉଦ୍ୟାନର ସୁପରିନ୍‌ଟେଣ୍ଡେଣ୍ଟ୍ ରାୟ ବାହାଦୁର ରମାବ୍ରହ୍ମା ସାନ୍ନ୍ୟାଲ୍ ତାଙ୍କୁ ପାଛୋଟି ନେଇଥିଲେ । ଦୁଇଜଣଙ୍କ ଭିତରେ ଆଲୋଚନାକାଳରେ ସାନ୍ୟାଲ୍ ମହାଶୟ ଡାରଓ୍ୱିନଙ୍କର ବିବର୍ତ୍ତନବାଦକୁ

Digitized by srujanika@gmail.com

ଉଚ୍ଚ ପ୍ରଶଂସା କରି କହିଲେ ଏବଂ ସ୍ୱାମୀଜୀ ବିବର୍ତ୍ତନବାଦକୁ ସମର୍ଥନ କରି କହିଥିଲେ, ''ଅବଶ୍ୟ ଡାରଓ୍ୱିନ୍‌ଙ୍କ ତତ୍ତ୍ୱ ସିଦ୍ଧ ପ୍ରମାଣିତ, ଏଥିରେ ସନ୍ଦେହ ନାହିଁ କିନ୍ତୁ ଏହା ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ପ୍ରମାଣିତ ବୋଲି ପ୍ରତୀୟମାନ ହେବ, ତା'ପରେ ନୁହେଁ । କିନ୍ତୁ ପାତଞ୍ଜଳିଙ୍କର ତତ୍ତ୍ୱ କାଳଜୟୀ ଏବଂ ଡାରଓ୍ୱିନ୍ ତତ୍ତ୍ୱରେ ଯେଉଁ ଶୂନ୍ୟସ୍ଥାନ ରହିଛି, ତାହା ପାତଞ୍ଜଳିଙ୍କର ସିଦ୍ଧାନ୍ତ ପୂରଣ କରିବ ।

ଏହି ସଂକ୍ରାନ୍ତରେ ସ୍ୱାମୀଜୀ କହିଥିଲେଯେ ପାଶ୍ଚାତ୍ୟ ଦାର୍ଶନିକଗଣଙ୍କ ଭଳି ମହର୍ଷି ପାତଞ୍ଜଳି 'ବଞ୍ଚିବା ପାଇଁ ସଂଘର୍ଷ', 'ବଳବାନ୍ କେବଳ ବଞ୍ଚିବେ' ଏବଂ 'ପ୍ରାକୃତିକ ଚୟନ', 'ଗୋଟିଏ ପ୍ରଜାତିରୁ ଅନ୍ୟ ପ୍ରଜାତିକୁ ବିବର୍ତ୍ତନର କାରଣ' ବୋଲି କହି ନ ଥିଲେ । ସଂଘର୍ଷ ଓ ପ୍ରତିଯୋଗିତା ପ୍ରକୃତିର ନିମ୍ନସ୍ତରର ବିବର୍ତ୍ତନ ଭିତରେ ରହିଥାଏ, କିନ୍ତୁ ମାନବର ଚରିତ୍ରବିକାଶରେ ଏହା କିନ୍ତୁ ସାହାଯ୍ୟ କରେନାହିଁ । ବିଶୁଦ୍ଧତା ହିଁ ମନୁଷ୍ୟର ବାସ୍ତବ ଚରିତ୍ର ବୋଲି ପ୍ରାଚୀନ ଋଷିଗଣ କହିଯାଇଛନ୍ତି । ଏତାଦୃଶ ମନୁଷ୍ୟର ବାସ୍ତବ ଚରିତ୍ରର ପ୍ରକଟୀକରଣ ବାଧାବିଘ୍ନ ଯୋଗୁଁ ହୋଇପାରେ ନାହିଁ କିନ୍ତୁ ଏହି ବାଧାବିଘ୍ନ ଦୂରୀଭୂତ ହେଲେ ତାହା ପୂର୍ଣ୍ଣ ପ୍ରକାଶିତ ହୁଏ । ଶିକ୍ଷା, ସଂସ୍କୃତି ମାଧ୍ୟମରେ, ଧ୍ୟାନ ଓ ଏକାଗ୍ରତା ମାଧ୍ୟମରେ, ସର୍ବୋପରି ତ୍ୟାଗ ଓ ବୈରାଗ୍ୟ ମାଧ୍ୟମରେ ଏହି ବାଧାବିଘ୍ନ ବା ପ୍ରତିବନ୍ଧ ଦୂର ହୋଇଯାଏ । ତେଣୁ ଯୌନ ଓ ଖାଦ୍ୟ ଭଳି ପ୍ରତିଯୋଗିତାମୂକ ସଂଘର୍ଷ ମନୁଷ୍ୟର ଉଚ୍ଚତର ସ୍ତରରେ କାର୍ଯ୍ୟ କରେନାହିଁ । ଋଷିମାନେ ପ୍ରକୃତିର ନିୟନ୍ତ୍ରଣରୁ ଊର୍ଦ୍ଧ୍ୱକୁ ଗମନ କରିବା ଲାଗି ସଂଘର୍ଷ କରୁଥିଲେ । ପାଶବିକ ପ୍ରବୃତ୍ତି ଉପରେ ବିଜୟ ଲାଭ କରୁଥିଲେ, ଯେପରିକି ଇନ୍ଦ୍ରିୟଗୁଡ଼ିକର ପ୍ରଗତିର ମାନସିକତାର ବହୁ ଊର୍ଦ୍ଧ୍ୱକୁ ସେମାନେ ଗତି କରୁଥିଲେ ଏବଂ ଦିବ୍ୟତ୍ୱ ସହ ମାନବିକ ପ୍ରକୃତିକୁ ଯୋଗ କରାଇ ଦେଉଥିଲେ ।''

- ୩ -

*କାରଣ ପଶୁ ପ୍ରବୃତ୍ତି ଦ୍ୱାରା ତୁମେ ପରିଚାଳିତ, ମୁଁ ତୁମକୁ ଶିକ୍ଷା ଦେଉଛି, ପ୍ରଥମେ ତୁମେ ବଞ୍ଚିବା ପାଇଁ ସଂଘର୍ଷରେ ସଫଳତା ଲାଭ କର ଏବଂ ସୁସ୍ଥ ଶରୀର ଗଠନରେ ମନୋଯୋଗ ଦିଅ, ତେବେଯାଇ ମନ ସହିତ ତୁମେ ଭଲ ଭାବରେ ସଂଘର୍ଷ କରିବା ଲାଗି ସକ୍ଷମ ହେବ । ମୁଁ ବାରମ୍ବାର କହୁଛି ଏବଂ କହିବି ମଧ୍ୟ ''ଶାରୀରିକ ଦୁର୍ବଳ ବ୍ୟକ୍ତି ଆତ୍ମୋପଲବ୍ଧି ପାଇଁ ଅସମର୍ଥ । ଯେତେବେଳେ ଥରେ ମନ ସଂଯତ ହୋଇଯିବ ଏବଂ ନିଜ ଉପରେ ପ୍ରଭୁତ୍ୱ ବିସ୍ତାର କରିବ, ସେତେବେଳେ ଶରୀର ଶକ୍ତିଶାଳୀ ହେଉଥାଉ କିମ୍ବା ନ ହେଉଥାଉ, ତାହା ଉପରେ କୌଣସି ପ୍ରଭାବ ପଡ଼ିବ ନାହିଁ ।*

ସାନ୍ୟାଲ ମହାଶୟ ସ୍ୱାମୀଜୀଙ୍କ ଯୁକ୍ତିରେ ବିମୋହିତ ହୋଇ ଚିତ୍କାର କରିଉଠିଲେ - ଆହାଃ - ଭାରତରେ ବର୍ତ୍ତମାନ ଆପଣଙ୍କ ଭଳି ଅଧିକ ବ୍ୟକ୍ତିତ୍ୱ ଆବଶ୍ୟକ, ଯିଏ ଆମର ଶିକ୍ଷିତ ସମାଜର ଏକତରଫା ପାଶ୍ଚାତ୍ୟ ମାନସିକତାକୁ ପ୍ରାଚ୍ୟ ଶିକ୍ଷା ଦ୍ୱାରା ସଂଶୋଧନ

Digitized by srujanika@gmail.com

କରିପାରିବେ ।'' ଆଧୁନିକ ଭାରତକୁ ଦୃଷ୍ଟିରେ ରଖି ସ୍ୱାମୀଜୀ ଡାରଓ୍ୱିନ ତତ୍ତ୍ୱକୁ ପ୍ରାଞ୍ଜଳଭାବେ ବୁଝାଇ କହିଲେ : ଡାରଓ୍ୱିନ ତତ୍ତ୍ୱ ପଶୁ ଓ ଉଦ୍ଭିଦଜଗତ ପାଇଁ ପ୍ରଯୁଜ୍ୟ, କିନ୍ତୁ ମାନବ ଜଗତ ପାଇଁ ନୁହେଁ । କାରଣ ଏଠାରେ ବିବେକ ଓ ଜ୍ଞାନ ଅଧିକ ବିକଶିତ । ସନ୍ଥ ଓ ଆଦର୍ଶ ମାନବ ମଧ୍ୟରେ କୌଣସି ପ୍ରକାର ସଂଘର୍ଷର ଚିହ୍ନ ପରିଲକ୍ଷିତ ହୁଏନାହିଁ ଏବଂ ଅନ୍ୟକୁ ଧ୍ୱଂସ କରି, ପଦନତ କରି, ପ୍ରଗତି କରିବା କିମ୍ବା ବଳଶାଳୀ ହେବାଭଳି ମାନସିକତା ସେମାନଙ୍କ ମଧ୍ୟରେ ନ ଥାଏ । କେବଳ ସେମାନଙ୍କ ଭିତରେ ତ୍ୟାଗ ମନୋଭାବ ଆମେ ଦେଖୁଛନ୍ତି । ଯେଉଁ ମାନବ ଯେତେ ଅଧିକ ତ୍ୟାଗ କରିପାରିଲା, ସେ ସେତେ ଅଧିକ ମହାନ୍ ହୋଇଯାଏ । ଜଣେ ବିବେକବାନ ବ୍ୟକ୍ତିର ସଂଘର୍ଷ କେବଳ ତା'ର ଅନ୍ତଃପ୍ରକୃତି ଜୟ କରିବା ଭିତରେ ସୀମିତ । ଯେତେ ଅଧିକ ସେ ତା'ର ମନ ସଂଯମ କରିବାକୁ ସମର୍ଥ ହେବ, ସେତେ ଅଧିକ ସେ ମହାନ୍ ହେବ ।''

ଇତ୍ୟବସରରେ ସାନ୍ୟାଲ ମହାଶୟଙ୍କ ମୁଖରୁ ହଠାତ୍ ଏକ ପ୍ରଶ୍ନ ବହିର୍ଗତ ହେଲା, ''ସ୍ୱାମୀଜୀ, ତେବେ ଆମର ଶାରୀରିକ ଉନ୍ନତି ପାଇଁ ଆପଣ କାହିଁକି ଏତେ ଗୁରୁତ୍ୱ ଦେଉଛନ୍ତି ? ସ୍ୱାମୀଜୀଙ୍କୁ କିଏ ଆଉ ସମ୍ଭାଳେ ! ଗର୍ଜନ କରି କହି ଉଠିଲେ, ତୁମେମାନେ କ'ଣ ମଣିଷ ! ପଶୁଠାରୁ ତୁମେମାନେ ଆଦୌ ଉତ୍ତମ ନୁହଁ, ତୁମେ ଆହାର, ଶୟନ ଓ ପ୍ରଚାରରେ ମଗ୍ନ ରହି ସନ୍ତୁଷ୍ଟ ଏବଂ ଭୟରେ ସଦା ଜର୍ଜରିତ, ତୁମମାନଙ୍କ ଭିତରେ ଯଦି ସାମାନ୍ୟ ବିବେକ ବୁଦ୍ଧି ନ ଥାନ୍ତା, ତେବେ ତୁମେ ଆଜି ବି ଚତୁଷ୍ପଦ ପ୍ରାଣୀ ହୋଇ ରହିଥାନ୍ତ । ତୁମର ଆତ୍ମ-ସମ୍ମାନ ନାହିଁ, କେବଳ ତୁମ ଭିତରେ ଈର୍ଷା ପରିପୂର୍ଣ୍ଣ ଏବଂ ବିଦେଶୀଙ୍କ ନିକଟରେ ତୁମେମାନେ ନିଜକୁ ଘୃଣ୍ୟବସ୍ତୁ କରିଦେଇଛ । ବୁଝିଲ ଇଯେ ସବୁ ବଡ଼ବଡ଼ ତୁଚ୍ଛା ଭାଷଣ ଛାଡ଼, ତୁମର ତତ୍ତ୍ୱ ଚୁଲିକୁ ଯାଉ ଏବଂ ତୁମ ଦୈନନ୍ଦିନ ଜୀବନର କାର୍ଯ୍ୟ ଓ ବ୍ୟବହାରରେ ତାହା ପ୍ରତିଫଳିତ କର । କାରଣ ପଶୁ ପ୍ରବୃତ୍ତି ଦ୍ୱାରା ତୁମେ ପରିଚାଳିତ, ମୁଁ ତୁମକୁ ଶିକ୍ଷା ଦେଉଛି, ପ୍ରଥମେ ତୁମେ ବଞ୍ଚିବା ପାଇଁ ସଂଘର୍ଷରେ ସଫଳତା ଲାଭ କର ଏବଂ ସୁସ୍ଥ ଶରୀର ଗଠନରେ ମନୋଯୋଗ ଦିଅ, ତେବେଯାଇ ମନ ସହିତ ତୁମେ ଭଲ ଭାବରେ ସଂଘର୍ଷ କରିବା ଲାଗି ସକ୍ଷମ ହେବ । ମୁଁ ବାରମ୍ବାର କହୁଛି ଏବଂ କହିବି ମଧ୍ୟ ''ଶାରୀରିକ ଦୁର୍ବଳ ବ୍ୟକ୍ତି ଆତ୍ମୋପଲବ୍ଧି ପାଇଁ ଅସମର୍ଥ । ଯେତେବେଳେ ଥରେ ମନ ସଂଯତ ହୋଇଯିବ ଏବଂ ନିଜ ଉପରେ ପ୍ରଭୁତ୍ୱ ବିସ୍ତାର କରିବ, ସେତେବେଳେ ଶରୀର ଶକ୍ତିଶାଳୀ ହେଇଥାଉ କିମ୍ବା ନ ହେଇଥାଉ, ତାହା ଉପରେ କୌଣସି ପ୍ରଭାବ ପଡ଼ିବ ନାହିଁ ।

ନୂତନ ମଠର ପରିଚାଳନା କାର୍ଯ୍ୟ ତଥା ସନ୍ନ୍ୟାସୀ ଓ ବ୍ରହ୍ମଚାରୀଙ୍କର ପ୍ରଶିକ୍ଷଣ ଓ ଶିକ୍ଷାଦାନରେ ଏଭଳି ସେ ବ୍ୟସ୍ତ ତାଙ୍କ ଆଖିରେ ନିଦ ଟିକିଏ ବି ଆସୁ ନ ଥିଲା । ତାହା ସହିତ ତାଙ୍କର ବ୍ୟାଧି ଉତ୍କଟ ରୂପ ଧାରଣ କରୁଥିଲା, ବାରମ୍ବାର ରାତିରେ ଉଠି ସେ ପଦଚାରଣ କରୁଥିଲେ । ମନ ଅଗ୍ନି ସମ ଦାଉ ଦାଉ ଜଳୁଥିଲା, ବିଶ୍ରାମ ଚାହୁଁଥିଲେ ହେଁ ନିଦ ଆସୁନ ଥିଲା ଆଖିରେ । ସେ ଜଣେ ଭକ୍ତଙ୍କୁ ଏକଦା କହିଥିଲେ; ''ଜଗଜ୍ଜନନୀ ମୋର ଏହି ଶରୀରରେ ନିଦ ଦେଇ ନାହାନ୍ତି ।'' ସ୍ୱାମୀଜୀ କଲିକତାର ଜନଗହଳି ଭିତରୁ ବାହାରକୁ ବିଶ୍ରାମ ପାଇଁ ଚାହିଁଲେ । ବାୟୁ ପରିବର୍ତ୍ତନ ନିମନ୍ତେ ବୈଦ୍ୟନାଥ ଅଭିମୁଖେ ଯାତ୍ରା କଲେ । ସେଠାରେ ବାବୁ ପ୍ରିୟନାଥ ମୁଖର୍ଜୀଙ୍କ ଘରେ ଅବସ୍ଥାନ କଲେ । ଶ୍ୱାସ ରୋଗରେ ସେ ସେତେବେଳେ ଭୀଷଣ ଭାବେ ଆକ୍ରାନ୍ତିତ ।

Digitized by srujanika@gmail.com

ଏହି ଅବସ୍ଥାନ ସମୟରେ ସେ ଥରେ ଗୁରୁଭ୍ରାତା ସ୍ୱାମୀ ନିରଞ୍ଜନାନନ୍ଦଙ୍କ ସଙ୍ଗରେ ପଦଚାରଣ କରୁଥିଲେ, ହଠାତ୍ ରାସ୍ତା ପାର୍ଶ୍ୱରେ ଜଣେ ବ୍ୟକ୍ତି ଅସହାୟ ଭାବେ ପଡ଼ିଥିବାର ଦୃଶ୍ୟ ତାଙ୍କ ଦୃଷ୍ଟିରେ ପତିତ ହେଲା । ସ୍ୱାମୀଜୀ ଦୌଡ଼ିଗଲେ ତା' ନିକଟକୁ । ପ୍ରବଳ ଶୀତ ଏବଂ ଆମାଶୟ ରୋଗରେ ଆକ୍ରାନ୍ତିତ ଉକ୍ତ ବ୍ୟକ୍ତି ଅସହାୟରେ କମ୍ପମାନ । ସ୍ୱାମୀଜୀ ନିଜର ଗୁରୁଭ୍ରାତାଙ୍କ ସହିତ ମିଶି ପୀଡ଼ିତ ବ୍ୟକ୍ତିକୁ ରାସ୍ତାକଡ଼ରୁ ଉଠାଇ ଆଣିଲେ । ନିଜ ବାସସ୍ଥାନକୁ ଦୁହେଁ ତାକୁ ଟେକି ଟେକି ନେଇ ଆସିଲେ । ତା'ର ମଳମୂତ୍ର ସଫା କଲେ ଏବଂ ଔଷଧ କ୍ଷତ ସ୍ଥାନରେ ଲଗାଇ ସେବା ଶୁଶ୍ରୂଷାରେ ଲାଗିପଡ଼ିଲେ । କିଛିଦିନ ଉତ୍ତାରୁ, ବ୍ୟକ୍ତିଜଣକ ଆରୋଗ୍ୟ ଲାଭ କଲାରୁ ତାକୁ ସସମ୍ମାନେ ବିଦାୟ ଦେଲେ । ପ୍ରିୟନାଥବାବୁ ସ୍ୱାମୀଜୀଙ୍କର ପାରାବାରବତ୍ ମାନବୀୟ ପ୍ରେମର ଉତ୍ତାଳ ତରଙ୍ଗ ଦେଖି ବିଶ୍ୱାସ କରିପାରିଲେ ନାହିଁ ଯେ ସ୍ୱାମୀ ବିବେକାନନ୍ଦ ଭଳି ଜଣେ ବିଶ୍ୱ ସମାଦୃତ ସନ୍ୟାସୀଙ୍କ ହୃଦୟ ଏଭଳି ଅନନ୍ତ ପ୍ରେମରେ ଉବୁଟୁବୁ ।

- ୪ -

*ପଣ୍ଡିତଜୀ, ମୋ ଦେଶର ଗୋଟିଏ ଶ୍ୱାନ ଭୋକିଲା ରହିଥିବା ପର୍ଯ୍ୟନ୍ତ,*
*ତା'କୁ ଖାଦ୍ୟ ଯୋଗାଇ ଦେବା ଓ ତା'ର ଯତ୍ନନେବା ହିଁ ମୋର*
*ଧର୍ମ, ଅନ୍ୟସବୁ ଅଧର୍ମ କିମ୍ବା ମିଛ ଧର୍ମ ।*

ସ୍ୱାମୀଜୀଙ୍କର କାରୁଣ୍ୟ ହୃଦୟର ଗଭୀରତାର ପ୍ରତିଫଳନ ଅନ୍ୟ ଏକ ଘଟଣାରୁ ଅନୁଭବ କରିହେବ । ଏକଦା ହିତବାଦ ପତ୍ରିକାର ବିଖ୍ୟାତ ପଣ୍ଡିତ ସଖାରାମ ଗଣେଶ ଦେବସ୍କର ସ୍ୱାମୀଜୀଙ୍କର ଧର୍ମ ଉପରେ ବିଭିନ୍ନ ଶିକ୍ଷା ଓ ପାଣ୍ଡିତ୍ୟ ସମ୍ବନ୍ଧରେ ଜାଣି ତାଙ୍କୁ ସାକ୍ଷାତ କରିବା ଲାଗି ଦୁଇଜଣ ବନ୍ଧୁଙ୍କ ସହ ପହଞ୍ଚିଲେ । ଯେହେତୁ ସେମାନଙ୍କ ମଧ୍ୟରୁ ଜଣେ ପଞ୍ଜାବ ପ୍ରଦେଶର ଅଧିବାସୀ ଥିଲେ, ତେଣୁ ପଞ୍ଜାବ ରାଜ୍ୟର ଆବଶ୍ୟକତା, ବିଶେଷତଃ ଖାଦ୍ୟାଭାବ ଏବଂ ତାହା କିପରି ସମାଧାନ କରିହେବ, ସେହି ସମ୍ବନ୍ଧିତ ବିଷୟ ଉପରେ ସେ କହିବାକୁ ଲାଗିଲେ । ଧନୀକ ସବର୍ଣ୍ଣ କିପରି ଅସବର୍ଣ୍ଣଙ୍କର ଉନ୍ନତି ଲାଗି ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ଖାଦ୍ୟପେୟର ସୁବନ୍ଦୋବସ୍ତ କରିବେ, ସେହି ସମ୍ବନ୍ଧରେ ବି ପଣ୍ଡିତଙ୍କ ଦୃଷ୍ଟି ଆକର୍ଷଣ କରେ । ଆଲୋଚନାନ୍ତେ ଯେତେବେଳେ ପଣ୍ଡିତ ସଖାରାମ ବିଦାୟ ନେବାକୁ ଉଦ୍ୟତ ହେଲେ, ସେତେବେଳେ ସେ ସ୍ୱାମୀଜୀଙ୍କୁ କହିଲେ ''ମହାଶୟ, ଆପଣଙ୍କଠାରୁ ଧର୍ମ ସମ୍ବନ୍ଧିତ ବିଭିନ୍ନ ଶିକ୍ଷା ଶୁଣିବାକୁ ମୋର ବନ୍ଧୁଦ୍ୱୟଙ୍କ ସହ ଏଠାକୁ ଆସିଥିଲି, କିନ୍ତୁ ପରିତାପର ବିଷୟ ଯେ ସାଧାରଣ ବିଷୟବସ୍ତୁ ଉପରେ ଆଲୋଚନା କେନ୍ଦ୍ରିତ ହେଲା, ଦିନଟି ଆଜି ମୋର ବୃଥାରେ କଟିଲା ।

ଏମନ୍ତ ମନ୍ତବ୍ୟରେ ସ୍ୱାମୀଜୀ ଗମ୍ଭୀର ହୋଇ ବିସ୍ତାରିତ ନୟନରେ ପଣ୍ଡିତ ମହାଶୟଙ୍କୁ ଚାହିଁ କହିଲେ, ''ପଣ୍ଡିତଜୀ, ମୋ ଦେଶର ଗୋଟିଏ ଶ୍ୱାନ ଭୋକିଲା ରହିଥିବା ପର୍ଯ୍ୟନ୍ତ, ତା'କୁ ଖାଦ୍ୟ ଯୋଗାଇ ଦେବା ଓ ତା'ର ଯତ୍ନନେବା ହିଁ ମୋର ଧର୍ମ, ଅନ୍ୟସବୁ ଅଧର୍ମ କିମ୍ବା ମିଛ ଧର୍ମ ।'' ପଣ୍ଡିତ ସଖାରାମ ଏବଂ ବନ୍ଧୁଦ୍ୱୟ ତାଙ୍କର ଦେଶଭକ୍ତି ଦେଖି କେବଳ ନିର୍ବାକ୍ ହୋଇଯାଇ ନ ଥିଲେ ବରଂ ସେମାନଙ୍କର ହୃଦୟ ଓ ଆତ୍ମା ପ୍ରଜ୍ୱଳିତ ହୋଇଥିଲା ।

Digitized by srujanika@gmail.com

କଲିକତାରେ ସ୍ୱାମୀଜୀଙ୍କ ଅବର୍ତ୍ତମାନରେ ଦିବ୍ୟଜନନୀ ସାରଦାଦେବୀ ନୂତନ ମଠ ପରିଦର୍ଶନ କରି ସେଠାରେ ପୂଜାର୍ଚ୍ଚନା ସମ୍ପାଦନ କରିଥିଲେ । ୧୮୯୯ ଜାନୁଆରୀ ଦୁଇ ତାରିଖରେ ନୀଳାମ୍ବର ମୁଖର୍ଜୀ ଉଦ୍ୟାନବାଟିରୁ ରାମକୃଷ୍ଣ ମଠ ସମ୍ପୂର୍ଣ୍ଣ ଭାବେ ସ୍ଥାନାନ୍ତରିତ ହୋଇ ବେଲୁଡ଼ଠାରେ ନବନିର୍ମିତ ରାମକୃଷ୍ଣ ମଠରେ କାର୍ଯ୍ୟ ଆରମ୍ଭ କଲା । ମା' ସାରଦାଙ୍କ ପବିତ୍ର ସ୍ପର୍ଶରେ ବେଲୁଡ଼ ମଠ କାର୍ଯ୍ୟ ଚଳଚଞ୍ଚଳ ହୋଇଉଠିଲା । ଭାରତ ଇତିହାସରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା ।

ବୈଦ୍ୟନାଥ ଧାମରୁ ୧୮୯୯ ଜାନୁଆରି ୨୨ ତାରିଖରେ କଲିକତାକୁ ସ୍ୱାମୀଜୀ ପ୍ରତ୍ୟାବର୍ତ୍ତନ କଲେ । ସ୍ୱାମୀଜୀଙ୍କର ଶୁଭେଚ୍ଛୁ ଓ ପ୍ରଶଂସକ କୁମାରୀ ଏଫ୍. ହେନ୍ରିଏଟା ମୁଲର୍ ସ୍ୱାମୀଜୀ ତଥା ତାଙ୍କର ଅନୁଗାମୀଗଣଙ୍କ ସହ ସଂପର୍କ ଛିନ୍ନ କରି ଚାଲିଯାଇଥିବାର ସମ୍ବାଦ ତାଙ୍କୁ ଏକ ଧକ୍କା ଦେଲା । କିନ୍ତୁ ସ୍ୱାମୀଜୀ ବିଶେଷ ଦୁଃଖିତ ହେଲେ ନାହିଁ କାରଣ ଧର୍ମ ଓ ସଂସ୍ଥା ପରିବର୍ତ୍ତନ କରିବା ହେନ୍ରିଏଟାଙ୍କର ଏକ ସହଜାତ ଗୁଣ ଥିଲା ବୋଲି ସେ ଭଲଭାବରେ ଜାଣିଥିଲେ । ତା'ବାଦେ ସ୍ୱାମୀଜୀଙ୍କଠାରୁ ଅଲୌକିକ ତଥା ଚମତ୍କାରିତା ଶକ୍ତିର ପ୍ରଦର୍ଶନ ଦେଖିବା ଲାଗି ତାଙ୍କ ମନରେ ଇଚ୍ଛା ଥିଲା, ସେ ଯେତେବେଳେ କିଛି ପାଇଲେ ନାହିଁ, ଚାଲିଯିବା ବରଂ ଭଲ ହୋଇଛି ବୋଲି କେତେକ ମତ ଦେଲେ । ସଂସାରୀମାନଙ୍କ ଚିନ୍ତାଧାରାରେ ସ୍ୱାମୀଜୀଙ୍କ ଭଳି ତେଜସ୍ୱୀ ବ୍ୟକ୍ତି କସ୍ମିନକାଳେ ଏକ ଅଥର୍ବ କଣ୍ଢେଇ ହୋଇ ନାଚି ପାରିବେ ନାହିଁ । ତଥାପି ମୁଲର୍ଙ୍କର ଭଲ ଗୁଣକୁ ପ୍ରଶଂସା କରି ଆମେରିକାର କ୍ରିଷ୍ଟାଇନ୍ ଗ୍ରୀନ୍‌ଷ୍ଟିଡେଲଙ୍କ ପାଖରୁ ଲେଖିଥିଲେ, ''ଅବଶ୍ୟ ହେନ୍ରିଏଟା ଆମକୁ ଛାଡ଼ିଯିବା ମୋ ପାଇଁ ଏକ ଧକ୍କା - ମୁଁ ତାଙ୍କୁ ଭଲପାଏ, ସେ ଜଣେ ଆମର ମହାନ୍ ସହାୟକ ଓ କର୍ମୀ ।''

- ୫ -

*ବତ୍ସ ! ଫଳାକାଂକ୍ଷା ଶୂନ୍ୟ ହୋଇ ଜଗତର ହିତ ଲାଗି କର୍ମରେ ଅଗ୍ରସର ହୁଅ । ଯଦି ପର-କଲ୍ୟାଣ କାମନା କର୍ମରେ ଅଗ୍ରସର ହୋଇ ନରକକୁ ବି ଯିବାକୁ ହୁଏ, ସେଥିରେ ବା କ'ଣ ଯାଏ ଆସେ ?*

ମଠର କାର୍ଯ୍ୟ ସୁଚାରୁରୂପେ ଚାଲିଥିବା ଦେଖି ସେ ଆନନ୍ଦିତ ହେଲେ । ପ୍ରଶ୍ନୋତ୍ତର ସଭା, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନ ଶାସ୍ତ୍ରର ତୁଳନାତ୍ମକ ଆଲୋଚନା, ସଂସ୍କୃତ ଭାଷା ଶିକ୍ଷାଦାନ ଇତ୍ୟାଦି କାର୍ଯ୍ୟ ସ୍ୱାମୀ ତୁରିୟାନନ୍ଦଙ୍କ ନେତୃତ୍ୱରେ ସୁନ୍ଦରରୂପେ ସମ୍ପାଦିତ ହେଉଥିଲା । ସ୍ୱାମୀଜୀ ଶିଷ୍ୟମାନଙ୍କ ସହ ଆଲୋଚନା ସମୟରେ ଗୋଟିଏ ଆପ୍ତବାକ୍ୟ ଉପରେ ଜୋର ଦେଇ କହୁଥିଲେ ଯେ କାର୍ଯ୍ୟ ଯେତେ ଛୋଟ ହେଲେ ବି ଯଦି ଆନ୍ତରିକତା ସହ ସମ୍ପାଦିତ ହୁଏ, ତେବେ ଆତ୍ମସନ୍ତୋଷ ତଥା ସଫଳତା ମିଳିଥାଏ ଯାହା ବଡ଼ କାର୍ଯ୍ୟ କରିବାକୁ ପ୍ରେରଣା ଭରିଦିଏ - ଚିଲମରେ ଯଦି ଗଞ୍ଜେଇ ଭର୍ତ୍ତି କରିବା କାର୍ଯ୍ୟ ତୁମେ ଭଲଭାବରେ ଜାଣ ଏବଂ କରିପାରି ତେବେ ଧ୍ୟାନ କିପରି କରିବାକୁ ହେବ, ତାହା ତୁମେ ଜାଣିପାରିବ । ଯଦି ଜଣେ ରୋଷେଇ ସୂଚାରୁରୂପେ କରିପାରେ

Digitized by srujanika@gmail.com

ନାହିଁ, ତେବେ ସେ ଜଣେ ଭଲ ସନ୍ନ୍ୟାସୀ ହୋଇପାରିବ ନାହିଁ।'' ମାନବ ଆତ୍ମାର ବିଶାଳ ସମ୍ଭାବ୍ୟତା ଉପରେ ତାଙ୍କର ପ୍ରଚଣ୍ଡ ବିଶ୍ୱାସ ଥିଲା, ସେ ତାଙ୍କର ଅନୁଗାମୀଗଣଙ୍କୁ ସର୍ବଦା ଅଗ୍ନିବର୍ଷୀ ପ୍ରେରଣାରେ ଅନୁପ୍ରାଣିତ କରୁଥିଲେ, ଯଦି କୌଣସି ବ୍ୟକ୍ତି ଭିତରେ ଅଣୁମାତ୍ର ଭଲଗୁଣ ରହିଥାଏ, ସେ ତାକୁ ପର୍ବତ ସମାନ ଦେଖି ପ୍ରଶଂସା କରୁଥିଲେ ଏବଂ ପର୍ବତ ସମାନ ତ୍ରୁଟି ଓ କୁଗୁଣକୁ ଅଣୁମାତ୍ରରେ ଦେଖୁଥିଲେ ।

ଶ୍ରୀରାମକୃଷ୍ଣ ପରମହଂସଙ୍କର ବାଣୀ ଢାକାରେ ପ୍ରଚାର କରିବା ଲାଗି ସନ୍ନ୍ୟାସୀ ସ୍ୱାମୀ ବିରଜାନନ୍ଦଙ୍କୁ ସ୍ୱାମୀଜୀ ନିର୍ଦ୍ଦେଶ ଦେଲେ । କିନ୍ତୁ ବିରଜାନନ୍ଦଜୀ ବିନୀତ ଭାବରେ ଆପତ୍ତି କରି କହିଲେ, ''ସ୍ୱାମୀଜୀ ! ମୁଁ କିଛି ଜାଣିନାହିଁ, ଲୋକଙ୍କୁ ମୁଁ ବା କ'ଣ କହିପାରିବି ? ସ୍ୱାମୀଜୀ ତାଙ୍କର ଦୁର୍ବଳତା ଲକ୍ଷ୍ୟକରି ବଜ୍ର କଣ୍ଠରେ କହିଲେ, ''ତୁମେ କହିବ ଯେ ମୁଁ କିଛି ଜାଣିନାହିଁ - ଏହା ହିଁ ହେବ ମହତ୍ତ୍ୱ ବାର୍ତ୍ତା' । ପ୍ରଚାର-କାର୍ଯ୍ୟ ଦାୟିତ୍ୱରୁ ଅବ୍ୟାହତି ନେଇ ସେ ସାଧନା-ତପସ୍ୟାରେ ନିମଗ୍ନ ରହିବାକୁ ଚାହାନ୍ତି ବୋଲି ପୁନଶ୍ଚ ବିରଜାନନ୍ଦ କହିବାରୁ ସ୍ୱାମୀଜୀ ତାଙ୍କର ଏତାଦୃଶ ମୁକ୍ତି ପାଇଁ ଆକାଙ୍କ୍ଷାକୁ ଧିକ୍କାର କରି ଗର୍ଜିଉଠି କହିଲେ, ''ସ୍ୱାର୍ଥପରଙ୍କ ପରି ନିଜ ମୁକ୍ତି ପାଇଁ ଚେଷ୍ଟା କଲେ ତୁମେ ନରକକୁ ଯିବ । ଯଦି ତୁମେ ସେହି ପୂର୍ଣ୍ଣବ୍ରହ୍ମଙ୍କୁ ଉପଲବ୍ଧି କରିବାକୁ ଚାହଁ, ତାହା ହେଲେ ଅନ୍ୟର ମୁକ୍ତିଲାଗି ସାହାଯ୍ୟ କର; ନିଜର ମୁକ୍ତିଲାଭ ଆକାଙ୍କ୍ଷାକୁ ସମୂଳେ ବିନାଶ କରିବା ହିଁ ସର୍ବଶ୍ରେଷ୍ଠ ସାଧନା ।''

ସ୍ୱାମୀଜୀ ସ୍ୱାମୀ ବିରଜାନନ୍ଦ ଓ ସ୍ୱାମୀ ପ୍ରକାଶାନନ୍ଦ ଶିଷ୍ୟଦ୍ୱୟଙ୍କୁ ସ୍ନେହଭରା କଣ୍ଠରେ ସମ୍ବୋଧନ କରି କହିଲେ, ''ବତ୍ସ ! ଫଳାକାଙ୍କ୍ଷା ଶୂନ୍ୟ ହୋଇ ଜଗତର ହିତ ଲାଗି କର୍ମରେ ଅଗ୍ରସର ହୁଅ । ଯଦି ପର-କଲ୍ୟାଣ କାମନା କର୍ମରେ ଅଗ୍ରସର ହୋଇ ନରକକୁ ବି ଯିବାକୁ ହୁଏ, ସେଥିରେ ବା କ'ଣ ଯାଏ ଆସେ ?'' ଅତଃପର ଶିଷ୍ୟଦ୍ୱୟଙ୍କୁ ସାଙ୍ଗରେ ଧରି ମଠର ଠାକୁର ଘରେ ପ୍ରବେଶ କରି ଧ୍ୟାନସ୍ଥ ହେଲେ । ବହୁକ୍ଷଣ ଗଭୀର ଧ୍ୟାନାନ୍ତେ ସେ ଚକ୍ଷୁ ଉନ୍ମୀଳନ କରି କହିଲେ, ''ମୁଁ ମୋ ଶକ୍ତିକୁ ତୁମ ଭିତରେ ସଞ୍ଚାରିତ କରିବି । ଭଗବାନ ଶ୍ରୀରାମକୃଷ୍ଣ ସର୍ବଦା ତୁମ ପଛରେ ରହିବେ, କୌଣସି ଚିନ୍ତା କରନାହିଁ ।'' ସ୍ୱାମୀଜୀ ନିରନ୍ତର ଗୋଟିଏ ବାକ୍ୟ ଉପରେ ଗୁରୁତ୍ୱ ଦେଉଥିଲେ, ତାହା ହେଲା ଆତ୍ମ-ବିଶ୍ୱାସ, ଆତ୍ମ-ବିଶ୍ୱାସୀ ମନୁଷ୍ୟ ପାଇଁ କୌଣସି କାର୍ଯ୍ୟ ଅସମ୍ଭବ ନୁହେଁ :

''ଅଳ୍ପ କେତେଜଣ ବ୍ୟକ୍ତି ଯେଉଁମାନଙ୍କର ନିଜ ଉପରେ ଅଖଣ୍ଡ ବିଶ୍ୱାସ ଥିଲା, ସେହିମାନଙ୍କୁ ନେଇ ବିଶ୍ୱ ଇତିହାସ ରଚିତ । ମନୁଷ୍ୟର ଅନ୍ତର୍ନିହିତ ଦିବ୍ୟତ୍ୱକୁ ବିଶ୍ୱାସ ପ୍ରକଟିତ କରିଥାଏ । ତୁମେ ସବୁ କରିପାରିବ । ତୁମେ ଯେତେବେଳେ ନିଜ ଭିତରେ ନିହିତ ଅନନ୍ତ ଶକ୍ତିକୁ ପର୍ଯ୍ୟାପ୍ତ ପରିମାଣରେ ପ୍ରକଟନ କରିପାର ନାହିଁ, ସେତେବେଳେ ତୁମେ ବିଫଳତାର ସମ୍ମୁଖୀନ ହୋଇଥାଅ । ମନୁଷ୍ୟ ମଧ୍ୟରୁ ବିଶ୍ୱାସ ଅନ୍ତର୍ଦ୍ଧାନ ହେଲେ, ମୃତ୍ୟୁର ଆଗମନ ହୁଏ । ପ୍ରଥମେ ନିଜ ଉପରେ ବିଶ୍ୱାସ ରଖ, ତା'ପରେ ଈଶ୍ୱରଙ୍କଠାରେ । ଅଳ୍ପ କେତେଜଣ ଶକ୍ତିମାନ ବ୍ୟକ୍ତି ସମଗ୍ର ବିଶ୍ୱକୁ ଦୋହଲାଇ ଦେବେ । ଆମେ ଏଭଳି ହୃଦୟ ଚାହୁଁ ଯିଏ ଅନୁଭବ କରିପାରୁଥିବ, ଏଭଳି ମସ୍ତିଷ୍କ ଆମର ଆବଶ୍ୟକ ଯିଏ କଳ୍ପନା କରିପାରୁଥିବ ଏବଂ ଆମର ଏଭଳି ବାହୁ ଆବଶ୍ୟକ ଯିଏ

Digitized by srujanika@gmail.com

କାର୍ଯ୍ୟ କରିପାରୁଥିବ । ପଶୁ ପାଇଁ ବୁଦ୍ଧ ନିଜର ଜୀବନ ପଣ କରିଦେଇଥିଲେ । ପ୍ରଥମେ ନିଜକୁ କାର୍ଯ୍ୟକ୍ଷମ କରିବା ପାଇଁ ପ୍ରସ୍ତୁତ କର, ତାବାଦେ ସେହି ଈଶ୍ୱର ତୁମ ଭିତରେ କାର୍ଯ୍ୟ କରିବେ, ତୁମେ ନୁହଁ । ଜଣେ ମନୁଷ୍ୟ ଭିତରେ ରହିଛି ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ । ଗୋଟିଏ ବସ୍ତୁର ଅଣୁ ଧାରଣ କରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ଶକ୍ତି । ଯେଉଁଠି ଦେଖିବ ହୃଦୟ ଓ ମସ୍ତିଷ୍କ ଭିତରେ କୌଣସି କଥାରେ ମେଳ ଖାଉନାହିଁ, ସେହି କ୍ଷେତ୍ରରେ ହୃଦୟର ଭାଷା ଶୁଣିବ ।''

ଶ୍ରୀରାମକୃଷ୍ଣଙ୍କର ପରମଭକ୍ତ ନାଗ ମହାଶୟ ଦେଓଭୋଗ ଜିଲ୍ଲାସ୍ଥିତ ନିଜ ଗାଁରୁ ପହଞ୍ଚିଲେ କଲିକତାରେ । ନୂତନ ରାମକୃଷ୍ଣ ମଠ ବେଲୁଡ଼ରେ ଦେଖିବେ । ନାଗ ମହାଶୟଙ୍କ ଭିତରେ ଦୁଇଟି ଆଶ୍ରମର ଶ୍ରେଷ୍ଠ ଆଦର୍ଶ ଜାଜ୍ଜ୍ୱଲ୍ୟମାନ । ସନ୍ୟାସାଶ୍ରମ ଓ ଗୃହାସ୍ତାଶ୍ରମ, ଏହି ଦୁଇଟିର ମିଳନସ୍ଥଳୀ ହେଉଛି ନାଗ ମହାଶୟଙ୍କର ମନ ଓ ହୃଦୟ । ନାଗ ମହାଶୟ ପ୍ରଣାମ କଲେ ସ୍ୱାମୀଜୀଙ୍କୁ ଏବଂ ସ୍ୱାମୀଜୀ ପ୍ରଣାମ କଲେ ନାଗ ମହାଶୟଙ୍କୁ । ଯୋଡ଼ହସ୍ତରେ ନାଗ ମହାଶୟ ଦଣ୍ଡାୟମାନ ହୋଇ ଭକ୍ତି ବିହ୍ୱଳିତ କଣ୍ଠରେ କହୁଥିଲେ : ଜୟ ଶଙ୍କର । ଜୀବନ୍ତ ଶିବଙ୍କୁ ସମ୍ମୁଖରେ ଦେଖି ମୁଁ ଆଜି ଭାଗ୍ୟବାନ ।'' ସ୍ୱାମୀଜୀ ଯେତେବେଳେ ତାଙ୍କୁ ସ୍ୱାସ୍ଥ୍ୟ ସମ୍ବନ୍ଧରେ ପଚାରିଲେ ସେ କହିଲେ, ''ମେଞ୍ଚାଏ ଅପଦାର୍ଥ ମାଂସ ଓ ହାଡ଼ର ଦେହ ସମ୍ବନ୍ଧରେ ପଚାରିବାରେ ଲାଭ କ'ଣ ? ସ୍ୱୟଂ ଶିବଙ୍କୁ ଏହି ମୁହୂର୍ତ୍ତରେ ଦର୍ଶନ କରି ଅପୂର୍ବ ଆନନ୍ଦରେ ମୁଁ ଶିହରିତ ।'' ଏତିକି କହି ନାଗ ମହାଶୟ ସ୍ୱାମୀଜୀଙ୍କ ପାଦ ତଳେ ଲମ୍ୱଖମ୍ୱ ହୋଇ ପ୍ରଣିପାତ କଲେ । ସ୍ୱାମୀଜୀ ସସ୍ନେହେ ତାଙ୍କୁ ଉଠାଇ ଆଲିଙ୍ଗନ କଲେ । ସେହି ସମୟରେ ଉପନିଷଦ କ୍ଲାସ ଚାଲିଥିଲା । ସ୍ୱାମୀଜୀ ଶିଷ୍ୟମାନଙ୍କୁ କହିଲେ, ''ଏଠାରେ ଆଜି ଅଧ୍ୟୟନ ଓ ଆଲୋଚନା ବନ୍ଦ ହେଉ । ଆସ ଓ ଦେଖ ନାଗ ମହାଶୟଙ୍କୁ ।

- ୬ -

*ବର୍ତ୍ତମାନ ଦେଶକୁ ଜାଗ୍ରତ କରାଇବା ମୋର ଏକମାତ୍ର ଇଚ୍ଛା । ଏକ ମହାନ୍ ଶକ୍ତି ଶୟନରତ, ରାଷ୍ଟ୍ର ତା'ର ବିଶାଳ ଶକ୍ତି ଉପରେ ବିଶ୍ୱାସ ହରାଇ ବସିଛି - ସୁପ୍ତ ଓ ମୃତ ସମ ପ୍ରତୀୟମାନ ହେଉଛି । ସନାତନ ଧର୍ମରେ ନିହିତ ଅନନ୍ତ ଚେତନାକୁ ଯଦି ଆମେ ଜାଗ୍ରତ କରିପାରିବା, ତେବେ ବୁଝିବି ଯେ ଠାକୁର ଓ ଆମର ଆସିବା ବୃଥା ହେଲାନାହିଁ । କେବଳ ଏହି ଇଚ୍ଛାଟି ମୋର ଅଛି - ମୁକ୍ତି ଫୁକ୍ତି ସବୁ ତୁଚ୍ଛ ମନେହେଉଛି । ମୋତେ ଆପଣ ଆଶୀର୍ବାଦ କରନ୍ତୁ, ଯେପରି ମୁଁ ଏଥିରେ କୃତକାର୍ଯ୍ୟ ହୁଏ ।*

ନାଗ ମହାଶୟଙ୍କୁ ବେଢ଼ି ଶିଷ୍ୟଗଣ ଉପବିଷ୍ଟ ହେଲେ । ସ୍ୱାମୀଜୀ କହିଲେ, ''ଦେଖ, ସେ ଜଣେ ଗୃହସ୍ଥ, କିନ୍ତୁ ତାଙ୍କର ଦେହ ଅଛି କି ନାହିଁ, ସଂସାର ଅଛି କି ନାହିଁ, ସେଥିପ୍ରତି ସେ ଆଦୌ ସଚେତନ ନୁହନ୍ତି । ସେ ନିରନ୍ତର ଈଶ୍ୱର ଚିନ୍ତାରେ ମଗ୍ନ । ଯେତେବେଳେ ମନୁଷ୍ୟ ପରମଭକ୍ତିରେ ଆପ୍ଲୁତ ହୁଏ, ସେହି ଅବସ୍ଥାର ନାଗ ମହାଶୟ ହେଉଛନ୍ତି ଜୀବନ୍ତ ଆଦର୍ଶ ।'' ନାଗ

Digitized by srujanika@gmail.com

ମହାଶୟଙ୍କ ଆଡ଼କୁ ଚାହିଁ ସ୍ୱାମୀଜୀ ଶ୍ରୀରାମକୃଷ୍ଣ ପରମହଂସଙ୍କ ସମକ୍ଷରେ କିଛି କହିବାକୁ ଅନୁରୋଧ କଲେ । ନାଗ ମହାଶୟ ନମ୍ରତା ସହ କହିଲେ, ''ମୁଁ ବା କ'ଣ କହିପାରିବି ! ତାଙ୍କ ବିଷୟରେ କହିବା ପାଇଁ ମୁଁ ଅତି ନଗଣ୍ୟ ବ୍ୟକ୍ତି । ମୁଁ ତ କେବଳ ମହାବୀରଙ୍କୁ ସାକ୍ଷାତ କରି ନିଜକୁ ଶୁଦ୍ଧ କରିବା ଲାଗି ଏଠାକୁ ଆସିଛି । ଈଶ୍ୱରଙ୍କର ଅବତାର ଶ୍ରୀରାମକୃଷ୍ଣ ଦିବ୍ୟ ଲୀଳାରେ ସ୍ୱାମୀଜୀ ତ ମହାବୀର । ଜୟ ରାମକୃଷ୍ଣ, ଜୟ ରାମକୃଷ୍ଣ ।'' ସ୍ୱାମୀଜୀ ତାଙ୍କର ଅଦମ୍ୟ ଭକ୍ତି ସ୍ରୋତ ପରିଲକ୍ଷିତ କରି କହିଲେ, ''ଆମର ଠାକୁର କ'ଣ ଥିଲେ, ଆପଣ ତ ତାଙ୍କୁ ପ୍ରକୃତରେ ଜାଣିଛନ୍ତି, ଆମେ କେବଳ ତୁଚ୍ଛାଟାରେ ତାଙ୍କୁ ଖୋଜି ଖୋଜି ନୟାନ୍ତ ହେଲୁଣି ।'' ନାଗ ମହାଶୟ ତତ୍‌କ୍ଷଣାତ୍ କହି ଉଠିଲେ - ଛି ! ଏକଥା କ'ଣ କହୁଛନ୍ତି ! ଆପଣ ଠାକୁରଙ୍କ ଛାୟା ! ସେ ଓ ଆପଣ ଗୋଟିଏ ମୁଦ୍ରାର ଏପଟ ଓ ସେପଟ । ଯାହାର ଆଖି ଅଛି ସେ ଦେଖୁ ।

କିୟତ୍ କଥପୋକଥନ ପରେ ସ୍ୱାମୀଜୀ ନାଗ ମହାଶୟଙ୍କୁ କହିଲେ, ''ଆପଣ ଯଦି ନବନିର୍ମିତ ମଠରେ ବାସ କରନ୍ତେ ଅତି ଭଲ ହୁଅନ୍ତା । ଏହି ପିଲାମାନେ ଆପଣଙ୍କୁ ଜୀବନ୍ତ ଆଦର୍ଶ ଭାବେ ଗ୍ରହଣ କରି ସେମାନଙ୍କର ଜୀବନକୁ ଗଢ଼ି ତୋଳନ୍ତେ ।'' ଭକ୍ତ ପ୍ରବୀଣ ନାଗ ମହାଶୟ ସ୍ୱାମୀଜୀଙ୍କର ପରାମର୍ଶକୁ ସମ୍ମାନ ସହକାରେ ଏଡ଼ାଇ ଦେଇ କହିଲେ, ''ମୁଁ ଏକଦା ସଂସାର ତ୍ୟାଗ କରିବା ଲାଗି ଠାକୁରଙ୍କ ନିକଟରେ ଅଳି କରିଥିଲି । ସେ ମୋତେ କହିଥିଲେ, ''ତୁମେ ସଂସାରରେ ରହ ।'' ତେଣୁ ତାଙ୍କର ଆଦେଶ ମୁଁ ପାଳନ କରୁଛି ଏବଂ ମଝିରେ ମଝିରେ ଏଠାକୁ ଆସି ଆପଣଙ୍କୁ ତଥା ଠାକୁରଙ୍କର ସନ୍ତାନମାନଙ୍କୁ ଦର୍ଶନ କରି ଆଶୀଷପ୍ରାପ୍ତ ହେବି ।''

କଥାବାର୍ତ୍ତା ଭିତରେ ସ୍ୱାମୀଜୀ ନାଗ ମହାଶୟଙ୍କୁ କହିଲେ, ''ବର୍ତ୍ତମାନ ଦେଶକୁ ଜାଗ୍ରତ କରାଇବା ମୋର ଏକମାତ୍ର ଇଚ୍ଛା । ଏକ ମହାନ୍ ଶକ୍ତି ଶୟନରତ, ରାଷ୍ଟ୍ର ତା'ର ବିଶାଳ ଶକ୍ତି ଉପରେ ବିଶ୍ୱାସ ହରାଇ ବସିଛି - ସୁପ୍ତ ଓ ମୃତ ସମ ପ୍ରତୀୟମାନ ହେଉଛି । ସନାତନ ଧର୍ମରେ ନିହିତ ଅନନ୍ତ ଚେତନାକୁ ଯଦି ଆମେ ଜାଗ୍ରତ କରିପାରିବା, ତେବେ ବୁଝିବି ଯେ ଠାକୁର ଓ ଆମର ଆସିବା ବୃଥା ହେଲାନାହିଁ । କେବଳ ଏହି ଇଚ୍ଛାଟି ମୋର ଅଛି - ମୁକ୍ତି ଫୁକ୍ତି ସବୁ ତୁଚ୍ଛ ମନେହେଉଛି । ମୋତେ ଆପଣ ଆଶୀର୍ବାଦ କରନ୍ତୁ, ଯେପରି ମୁଁ ଏଥିରେ କୃତକାର୍ଯ୍ୟ ହୁଏ ।''

ନାଗ ମହାଶୟ କହିଲେ, ''ଆପଣଙ୍କ ଉପରେ ତ ଠାକୁରଙ୍କର ନିରନ୍ତର ଆଶୀର୍ବାଦ ବର୍ଷିତ ହେଉଛି । ଆପଣଙ୍କୁ କିଏ ବାଧା ଦେବ ? ଆପଣଙ୍କର ଇଚ୍ଛା ଓ ଠାକୁରଙ୍କ ଇଚ୍ଛା ଏକ । ଜୟ ଶ୍ରୀରାମକୃଷ୍ଣ ।'' ସ୍ୱାମୀଜୀ ନିଜର ଅସୁସ୍ଥତାକୁ ଲକ୍ଷ୍ୟକରି କହି ଉଠିଲେ, ''ଓହୋଃ... ମୋର ଯଦି ବଳିଷ୍ଠ ଶରୀର ହୋଇଥାନ୍ତା, ବହୁତ କାର୍ଯ୍ୟ କରିପାରନ୍ତି ! ବର୍ତ୍ତମାନ ଦେଖନ୍ତୁ, ଭାରତ ପ୍ରତ୍ୟାବର୍ତ୍ତନ କରିବା ପରେ, ମୋ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଛି, ସବୁପ୍ରକାର କାର୍ଯ୍ୟ ମୋର ପସର ଫାଟୁଛି । ଇୟୁରୋପ ଓ ଆମେରିକାରେ ମୋର ସ୍ୱାସ୍ଥ୍ୟ ଭଲ ଥିଲା ।''

''ଠାକୁର ସର୍ବଦା କହୁଥିଲେ, ଦେହ ଧାରଣ କଲେ ଜଣକୁ ରୋଗ ଓ ପୀଡ଼ା ଆକାରରେ ଟିକସ୍ ଦେବାକୁ ପଡ଼ିଥାଏ । କିନ୍ତୁ ଆପଣଙ୍କର ବକ୍ଷ ସ୍ୱର୍ଣ୍ଣରାଜ୍ୟ, ଯତ୍ନ ସହକାରେ ଏହାକୁ ଜଗି ରହିବାକୁ ପଡ଼ିବ । ହେ ଭଗବାନ, କିଏ ଏହା କରିବ ? ଆପଣଙ୍କ ଶରୀରଯେ ସଂସାର ନିମନ୍ତେ

Digitized by srujanika@gmail.com

ଉଚ୍ଛିଷ୍ଟ କିଏ ବୁଝିବ ?'' ନାଗ ମହାଶୟ ଏମନ୍ତ କହିବାରୁ ସ୍ୱାମୀଜୀ କହି ଉଠିଲେ, ''ମଠର ପ୍ରତ୍ୟେକ ବ୍ୟକ୍ତି ପ୍ରେମ ଓ ଯତ୍ନ ସହକାରେ ମୋର ଦେଖାଶୁଣା କରନ୍ତି ।''

ନାଗ ମହାଶୟ ଆନନ୍ଦ ପ୍ରକାଶ କରି କହିଲେ, ''ଯାହା ହେଉ ଯେଉଁମାନେ ଆପଣଙ୍କର ସେବା କରୁଛନ୍ତି, ସେମାନେ କେବଳ ଭାଗ୍ୟବାନ ନୁହନ୍ତି ବରଂ ସମଗ୍ର ସଂସାର ପାଇଁ ସେମାନେ ମଙ୍ଗଳ ସାଧନ କରୁଛନ୍ତି । ସେମାନେ ଏହା ବୁଝନ୍ତି କି ନାହିଁ ମୁଁ ଜାଣେନାହିଁ ।''

- ୭ -

*ହରିଭାଇ, ତୁମେ କ'ଣ ଦେଖୁନାହଁ ଯେ ଠାକୁରଙ୍କର ଲକ୍ଷ୍ୟ ପୂରଣ ଲାଗି ତିଳ ତିଳ କରି ମୋ ଜୀବନକୁ ମୁଁ ବଳିଦେଇ ଚାଲିଛି ଏବଂ ମୁଁ ତାହା ମୃତ୍ୟୁ ପର୍ଯ୍ୟନ୍ତ କରିବି । ମୋର ଦାୟିତ୍ୱର ଭାରକୁ ଲାଘବ କରିବା ପାଇଁ ମୋତେ କ'ଣ ସାହାଯ୍ୟ କରିବ ନାହିଁ ?*

ସ୍ୱାମୀଜୀଙ୍କର ହିମାଳୟରେ ଏକ ମଠ ସ୍ଥାପନର ସ୍ୱପ୍ନ ଶେଷରେ ସାକାର ହେଲା । ସେଭିଅର ଦମ୍ପତ୍ତିଙ୍କ ଉପରେ ଏହି ଦାୟିତ୍ୱ ସେ ନ୍ୟସ୍ତ କରିଥିଲେ । ଆଲମୋଡ଼ାରୁ ପୂର୍ବଦିଗକୁ ପ୍ରାୟ ପଚାଶ ମାଇଲ୍ ଦୂରରେ ଏକ ଜାଗା କ୍ରୟ କରି ସେଠାରେ ଅଦ୍ୱୈତ ଆଶ୍ରମ ହେଲା ପ୍ରତିଷ୍ଠିତ । ଛଅ ହଜାରରୁ ସାତ ହଜାର ଫୁଟ ଉଚ୍ଚରେ ଅବସ୍ଥିତ ଏହି ଆଶ୍ରମରୁ ହିମାଳୟର ତୁଷାରାଚ୍ଛନ୍ନ ପାର୍ବତୀୟ ଶ୍ରେଣୀର ଚମତ୍କାର ଦୃଶ୍ୟ ଅତୀବ ମନୋହର । ଶ୍ରୀରାମକୃଷ୍ଣ ପରମହଂସଙ୍କ ପୁଣ୍ୟ ଜନ୍ମତିଥି ୧୮୯୯ ମାର୍ଚ୍ଚ ୧୯ ତାରିଖ ଶୁଭ ଅବସରରେ ଅଦ୍ୱୈତ ଆଶ୍ରମର ଶୁଭାରମ୍ଭ ହେଲା । ସ୍ୱାମୀଜୀଙ୍କ ଇଚ୍ଛାନୁସାରେ ଏହି ଆଶ୍ରମରେ କୌଣସି ଦେବାଦେବୀଙ୍କ ପ୍ରତିମା, ଚିତ୍ର, ପ୍ରତୀକ କିମ୍ବା କୌଣସି ପ୍ରକାର ଧାର୍ମିକ ପୂଜାର୍ଚ୍ଚନା ହେବନାହିଁ ବୋଲି ନିଷ୍ପତ୍ତି ଗ୍ରହଣ କରାଗଲା । ଅଦ୍ୱୈତ ମାର୍ଗର ସାଧନା ନିମିତ୍ତ ଏହି ମଠ ଉତ୍ସର୍ଗୀକୃତ । ନିରାକାର ପରଂବ୍ରହ୍ମଙ୍କ ଧ୍ୟାନରେ ସାଧକ ଏହିଠାରେ ନିମଗ୍ନ ହୋଇ ଆତ୍ମୋପଲବ୍ଧି କରିବ ।

ମାନବ ଜାତିର ମୁକ୍ତିପାଇଁ ସ୍ୱାମୀଜୀ ସର୍ବଦା ଚିନ୍ତିତ, ଏକତ୍ୱ ସହ ଏକାକାର ହେଲେ ବ୍ୟକ୍ତି ତା'ର ବ୍ୟକ୍ତିସତ୍ତା ହରାଇବ । ଦ୍ୱୈତବାଦକୁ ସ୍ୱାମୀଜୀ ଆଦୌ ବହିଷ୍କାର କରିନାହାନ୍ତି, ତାଙ୍କ ଭାଷାରେ ''ଦ୍ୱୈତବାଦରେ ବହୁ ଉପକାରିତା ରହିଛି, ଯେଉଁମାନେ ଦୁର୍ବଳ କିନ୍ତୁ ଭଗବାନଙ୍କୁ ପାଇବା ପାଇଁ ବ୍ୟାକୁଳ, ସେମାନଙ୍କୁ ଏହି ମାର୍ଗ ସହାୟତା କରେ । ଅଥଚ୍ଚ ପରେ ମୁଁ ଏହାର ଅପରପାର୍ଶ୍ୱ ଚିନ୍ତା କରେ । ସଂସାର ସତ୍ୟ ନିକଟରେ ଉପନୀତ ହେବାକୁ କେତେ ଯୁଗ ଅପେକ୍ଷା କରିବାକୁ ପଡ଼ିବ ଯଦି ଏଭଳି ମନ୍ଥର ଗତିରେ ମନୁଷ୍ୟ ଗତି କରେ ? ...ପରମ ସତ୍ୟ ଉପଲବ୍ଧି ହୋଇପାରିବ ନାହିଁ... ଭାରତରେ ମୁଁ ଦୁଇଟିଯାକ ପନ୍ଥା ଅନୁସରଣ କରିଥାଏ । କଲିକତାରେ ସମସ୍ତ ମୂର୍ତ୍ତି ଓ ମନ୍ଦିର ନିକଟରେ ମୁଁ ପହଞ୍ଚେ, କିନ୍ତୁ ହିମାଳୟ ତୁଙ୍ଗ ଦେଶରେ ଅବସ୍ଥାପିତ ଅଦ୍ୱୈତ ଆଶ୍ରମରେ ମୋ ଭିତରକୁ କିଛି ହିଁ ପ୍ରବେଶ କରେନାହିଁ, କେବଳ ପରମ ସତ୍ୟ ।''

Digitized by srujanika@gmail.com

୧୮୯୯ ମାର୍ଚ୍ଚ ୨୫ ତାରିଖରେ ସ୍ୱାମୀଜୀ ଭଗିନୀ ନିବେଦିତାଙ୍କୁ ଜଣେ ନୈଷ୍ଠିକ ବ୍ରହ୍ମଚାରିଣୀ ଭାବେ ଦୀକ୍ଷିତ କଲେ । ପ୍ରଜ୍ୱଳିତ ଅଗ୍ନି ସମ୍ମୁଖରେ, ବହୁ ସନ୍ନ୍ୟାସୀଙ୍କ ଉପସ୍ଥିତିରେ, ଜୀବନବ୍ୟାପୀ ବ୍ରହ୍ମଚାରିଣୀ ରହିବାକୁ ସେ ଶପଥ ନେଲେ । ରୁଦ୍ରାକ୍ଷମାଳା ତାଙ୍କୁ ପ୍ରଦାନ କଲେ ସ୍ୱାମୀଜୀ । ନିବେଦିତା ଚାହିଁଥିଲେ ସନ୍ନ୍ୟାସୀନୀ ହେବାପାଇଁ, ନ ହେବାରୁ ତାଙ୍କର ମନ ହେଲା ବିଷାଦଗ୍ରସ୍ତ । ତଥାପି ସାହସର ସହିତ ଦିନେ ସେ ସ୍ୱାମୀଜୀଙ୍କୁ କହିଥିଲେ, ‘‘ମୁଁ ଜଣେ ସନ୍ନ୍ୟାସୀନୀ ହେବା ଲାଗି କେଉଁ ପ୍ରକାର ପବିତ୍ରତା'ର ପ୍ରୟାସ ମୋତେ କରିବାକୁ ହେବ ?’’ ସ୍ୱାମୀଜୀ ସ୍ନେହପୂର୍ଣ୍ଣ ଚକ୍ଷୁରେ ଚାହିଁ କହିଲେ, ‘‘ପୁତ୍ରୀ, ତୁମେ ଯାହା, ସେହି ସ୍ଥିତିରେ ରୁହ ।’’ ନିବେଦିତା କେବେ ବି ଏଭଳି ପ୍ରଶ୍ନ ପରବର୍ତ୍ତୀ କାଳରେ ସ୍ୱାମୀଜୀଙ୍କୁ ପଚାରି ନ ଥିଲେ ।

ଏହି ସମୟରେ ଗୋଟିଏ ପରେ ଗୋଟିଏ ଦାରୁଣ ଦୁଃଖଦ ସମ୍ବାଦ ସ୍ୱାମୀଜୀଙ୍କ ବକ୍ଷକୁ ପ୍ରହାର କରିଥିଲା । ଗୁରୁଭ୍ରାତା ସ୍ୱାମୀ ଯୋଗାନନ୍ଦଙ୍କର ଦେହାନ୍ତ ହେଲା । ରାମକୃଷ୍ଣ ପରିବାର ଗୃହରୁ ଖଣ୍ଡିଏ ଇଟା ଝରିପଡ଼ିଲା ବୋଲି ସେ ଦୁଃଖପୂର୍ଣ୍ଣ କଣ୍ଠରେ କହିଥିଲେ । ଶ୍ରୀରାମକୃଷ୍ଣଙ୍କର ପରମ ଗୃହୀଭକ୍ତ ରାମଚନ୍ଦ୍ର ଦତ୍ତ, ଯିଏ କାଙ୍କୁରଗାଛି ଯୋଗୋଦ୍ୟାନର ମୁଖ୍ୟ କର୍ତ୍ତା, ତାଙ୍କର ଦେହାନ୍ତ ସ୍ୱାମୀଜୀଙ୍କୁ ଏକ ଧକ୍କା ଦେଲା ।

ସ୍ୱାମୀଜୀଙ୍କର ଶ୍ୱାସରୋଗ ବର୍ତ୍ତମାନ ଉତ୍କଟ । କବିରାଜଙ୍କ ପରାମର୍ଶ ଥିଲା ଯେ ସ୍ୱାମୀଜୀଙ୍କ ପାଇଁ ଶ୍ୱାସ ରୋଗର ଉପଶମ ନିମନ୍ତେ ଜଳଯାତ୍ରା ଆବଶ୍ୟକ । ସ୍ୱାମୀ ବ୍ରହ୍ମାନନ୍ଦ ତଥା ଅନ୍ୟ ସନ୍ନ୍ୟାସୀଗଣ ସ୍ୱାମୀଜୀଙ୍କର ବିଦେଶଯାତ୍ରା ପାଇଁ ଆୟୋଜନରେ ଲାଗିପଡ଼ିଲେ । ଭଗିନୀ ନିବେଦିତା ସ୍ୱାମୀ ବିବେକାନନ୍ଦ ଓ ସ୍ୱାମୀ ତୁରୀୟାନନ୍ଦଙ୍କ ପାଇଁ ଦୁଇଟି ପ୍ରଥମ ଶ୍ରେଣୀ ଟିକେଟର ବ୍ୟବସ୍ଥା କରିଦେଲେ । ଏସ୍.ଏସ୍. ଗୋଲକଣ୍ଡା ଜାହାଜରେ ଯାତ୍ରା କରିବା ନିର୍ଘଣ୍ଟ ହେଲା । ସ୍ୱାମୀଜୀ ଉକ୍ତ ଜାହାଜରେ ଭଗିନୀ ନିବେଦିତାଙ୍କୁ ଯାତ୍ରା କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏଠାରେ ଉଲ୍ଲେଖନୀୟ ଯେ ସ୍ୱାମୀ ତୁରୀୟାନନ୍ଦ ସଦାସର୍ବଦା ଧ୍ୟାନାଭ୍ୟାସରେ ନିମଗ୍ନ ରହିବାକୁ ପସନ୍ଦ କରୁଥିଲେ । ଜନ ସମାବେଶ, ପ୍ରଚାର ଓ ବକ୍ତୃତାଠାରୁ ସେ ସର୍ବଦା ନିଜକୁ ଦୂରେଇ ରଖୁଥିଲେ । କିନ୍ତୁ ସ୍ୱାମୀଜୀ ତାଙ୍କୁ ମଠ କାର୍ଯ୍ୟରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିବା ପାଇଁ ଯେତେ କହିଲେ ବି ସେ ଆଦୌ ତାଙ୍କର ପରାମର୍ଶ ପ୍ରତି କର୍ଣ୍ଣପାତ କରୁ ନ ଥିଲେ ।

ଏକଦା ତୁରୀୟାନନ୍ଦଙ୍କୁ ମଠର କାର୍ଯ୍ୟଧାରାର ମୁଖ୍ୟସ୍ରୋତରେ ସାମିଲ କରିବା ଲାଗି ସ୍ୱାମୀଜୀ ଏକ ଅଭିନବ ପନ୍ଥା ଗ୍ରହଣ କଲେ । ସେ ଭଲଭାବରେ ଜାଣିଥିଲେ ଯେ ନିଜର ଗୁରୁଭ୍ରାତା ତୁରୀୟାନନ୍ଦ ଏଭଳି ଜ୍ଞାନଦୀପ୍ତ ସନ୍ନ୍ୟାସୀ, ସେ ଯଦି ପ୍ରଚାର କାର୍ଯ୍ୟରେ ଭାଗ ନେବେ, ବହୁ ଜ୍ଞାନପିପାସୁ ଭକ୍ତ ନିଶ୍ଚିତଭାବେ ଆଲୋକିତ ହେବେ । ନିଜ ଦୁଇବାହୁରେ ତୁରୀୟାନନ୍ଦଙ୍କ ଗଳାଦେଶକୁ ସସ୍ନେହେ ଜାବୁଡ଼ି ଧରି ଏବଂ ନିଜର ମସ୍ତକ ତାଙ୍କର ବକ୍ଷରେ ଚାପିଧରି, କଇଁ କଇଁ କାନ୍ଦି ଉଠି ସ୍ୱାମୀଜୀ କହିଲେ, ‘‘ହରିଭାଇ, ତୁମେ କ'ଣ ଦେଖୁନାହଁ ଯେ ଠାକୁରଙ୍କର ଲକ୍ଷ୍ୟ ପୂରଣ ଲାଗି ତିଳ ତିଳ କରି ମୋ ଜୀବନକୁ ମୁଁ ବଳିଦେଇ ଚାଲିଛି ଏବଂ ମୁଁ ତାହା ମୃତ୍ୟୁ ପର୍ଯ୍ୟନ୍ତ କରିବି । ମୋର ଦାୟିତ୍ୱର ଭାରକୁ ଲାଘବ କରିବା ପାଇଁ ମୋତେ କ'ଣ ସାହାଯ୍ୟ କରିବ

Digitized by srujanika@gmail.com

ନାହିଁ ? ସ୍ୱାମୀଜୀଙ୍କ ପ୍ରତି ତାଙ୍କର ଥିଲା ଅମାପ ପ୍ରେମ ଏବଂ ସ୍ୱାମୀଜୀ ଯେ ତାଙ୍କୁ ଏଭଳି ପ୍ରେମ କରନ୍ତି, ତାହା ଜାଣି ସେ ସ୍ୱୟଂ ଭାବବିହ୍ୱଳ ହୋଇଗଲେ ଏବଂ ତାଙ୍କ ଭିତରୁ ସମସ୍ତ ଦ୍ୱିଧାଭାବ ଅପସରି ଗଲା । ସେ ମଠ କାର୍ଯ୍ୟରେ ସଂପୂର୍ଣ୍ଣ ଭାଗ ନେବାକୁ ଲାଗିଲେ ଏବଂ ବେଦାନ୍ତ ପ୍ରଚାର ଲାଗି ସ୍ୱାମୀଜୀଙ୍କ ସହ ଆମେରିକା ଯାତ୍ରା କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

ପାଶ୍ଚାତ୍ୟ ରାଷ୍ଟ୍ର ଅଭିମୁଖେ ଯାତ୍ରା ଦିନ ଦିବ୍ୟଜନନୀ ସାରଦା ଦେବୀ ସ୍ୱାମୀଜୀ ଓ ଅନ୍ୟ ସନ୍ୟାସୀ ପୁତ୍ରଙ୍କୁ ନିଜର କଲିକତା ବାସଗୃହରେ ଭୋଜନ କରାଇ ଆପାୟିତ କଲେ । ମଙ୍ଗଳମୟୀ ଦିବ୍ୟଜନନୀଙ୍କର ଆଶୀର୍ବାଦ ଗ୍ରହଣ କଲେ ସ୍ୱାମୀଜୀ । ହୁଗୁଳି ନଦୀର ପ୍ରିନ୍‌ସେପ୍ ଘାଟରେ ଜାହାଜ ଚଢ଼ିବା ପାଇଁ ସ୍ୱାମୀଜୀ ବହୁ ଶୁଭେଚ୍ଛୁଙ୍କ ସହ ଦିବା ତିନି ଘଟିକାରେ ପହଞ୍ଚିଲେ । ପୁନଶ୍ଚ କର୍ମଭୂମିରୁ ବିଦାୟ ନେଇ ଯିବେ ଭୋଗ ଭୂମିକୁ । ଭୋଗ ବା ଉପଭୋଗ ପାଇଁ ନୁହେଁ । ସନ୍ୟାସୀ ଜୀବନ ତ ଅନ୍ୟର ମଙ୍ଗଳ ନିମନ୍ତେ ଉଦ୍ଦିଷ୍ଟ । ତାଙ୍କରି ଭାଷାରେ ''ସନ୍ୟାସୀ ସର୍ବଦା ମୃତ୍ୟୁକୁ ଆଦର କରିବା ଉଚିତ । ଜଗତର ମଙ୍ଗଳ ଲାଗି ସେ ତା'ର ଜୀବନ ବଳିଦେବ । ସ୍ୱାର୍ଥାନ୍ୱେଷୀ ମନୋବୃତ୍ତି ତା'ର ମନ ଓ ହୃଦୟକୁ ସ୍ପର୍ଶ କରିବ ନାହିଁ ।'' ସ୍ୱାମୀ ବିବେକାନନ୍ଦ ତ ଖଣ୍ଡିଏ ଜଳନ୍ତା ନିଆଁ । ମଣିଷ ଭିତରେ ସୁପ୍ତ ଚେତନାରେ ସେ ଅଗ୍ନି ସଂଯୋଗ କରନ୍ତି, ଜ୍ଞାନକୁ ପ୍ରଜ୍ୱଳିତ କରନ୍ତି । ବିଦାୟବେଳରେ ସ୍ୱାମୀଜୀଙ୍କର ଅବର୍ତ୍ତମାନ ଚିନ୍ତାରେ ଶୁଭେଚ୍ଛୁ, ବନ୍ଧୁ ଓ ସନ୍ୟାସୀଙ୍କ ମନ ଦୁଃଖାଭିଭୂତ ହୋଇପଡୁଥିବା ବେଳେ ସେ ସ୍ୱୟଂ ଦିବ୍ୟ ଆଭାରେ ସମସ୍ତଙ୍କୁ ଆଶୀର୍ବାଦ ସୂଚକ ଚାହାଣିରେ ହସ୍ତ ପ୍ରସାରଣ କରି ମେଲାଣି ମାଗିଲେ ।



Digitized by srujanika@gmail.com

॥ ଅଠତିରିଶ ॥

# ପୁନର୍ବାର ବିଦେଶ ଯାତ୍ରା - ନିୟୁର୍କସ୍ଥ ବେଦାନ୍ତ ସମିତିର ନୂତନ ଗୃହ ଉଦ୍‌ଘାଟନ

ଜୀବନ ସଂଗ୍ରାମରେ ବାରମ୍ବାର ବିଦ୍ରୋହ କରି କ୍ଲାନ୍ତ ଓ ଅସୁସ୍ଥ ସ୍ୱାମୀ ବିବେକାନନ୍ଦ ୧୮୯୯ ଖ୍ରୀଷ୍ଟାବ୍ଦ ଜୁନ୍ କୋଡ଼ିଏ ତାରିଖ ଦିନ 'ଗୋଲକୁଣ୍ଡା' ଜାହାଜରେ ଇଂଲଣ୍ଡ ଅଭିମୁଖେ ଯାତ୍ରା କଲେ । ସାଙ୍ଗରେ ଥିଲେ ଗୁରୁଭ୍ରାତା ସ୍ୱାମୀ ତୁରୀୟାନନ୍ଦ ଓ ଭଗିନୀ ନିବେଦିତା । ଜାହାଜ ପହଞ୍ଚିଲା ମାନ୍ଦ୍ରାଜ ବନ୍ଦରରେ । କଲିକତାରେ ପ୍ଲେଗ୍‌ର ପ୍ରକୋପ ସେପର୍ଯ୍ୟନ୍ତ ପ୍ରଶମିତ ନ ହୋଇଥିବାରୁ, କଲିକତାରୁ ଆସିଥିବା କୌଣସି ଯାତ୍ରୀଙ୍କୁ ମାନ୍ଦ୍ରାଜରେ ଅବତରଣ କରିବାକୁ ଅନୁମତି ଦିଆଗଲା ନାହିଁ । ମାନ୍ଦ୍ରାଜର ମାନ୍ୟଗଣ୍ୟ ବ୍ୟକ୍ତି ସ୍ୱାମୀଜୀଙ୍କୁ ଅଳ୍ପ ସମୟ ପାଇଁ ମାନ୍ଦ୍ରାଜରେ ପ୍ରବେଶ କରିବା ଲାଗି ସରକାରୀ କର୍ତ୍ତୃପକ୍ଷଙ୍କୁ ପ୍ରାର୍ଥନା କରିଥିଲେ, କାରଣ ବହୁ ଜନତା ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିବେ ବୋଲି ଉତ୍କଣ୍ଠା ସହ ଅପେକ୍ଷାରତ ଥିଲେ । କିନ୍ତୁ ବ୍ରିଟିସ୍ ସରକାର ସେତେବେଳକୁ ସ୍ୱାମୀଜୀଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ, ତେଣୁ ଅନୁମତି ପ୍ରଦାନ କଲେ ନାହିଁ । ହଜାର ହଜାର ଜନତା ନିରାଶ ହେଲେ, କେତେକ ଡଙ୍ଗା ଭଡ଼ାକରି ଜାହାଜର ଡେକ୍ ପାଖକୁ ଯାଇ ଦୂରରୁ ତାଙ୍କୁ ଦେଖିଲେ । ଡେକ୍ ଉପରେ ବୀର ସନ୍ୟାସୀ ହସ୍ତ ପ୍ରସାରଣ କରି ଦର୍ଶନାଭିଳାଷୀଙ୍କ ଉପରେ ଢାଳି ଦେଉଥିଲେ ନିଜର କୃତଜ୍ଞତା । କିନ୍ତୁ ନିଜ ଦେଶବାସୀଙ୍କର ଆଶା ଓ ଉଦ୍ଦୀପନାକୁ ବିଦେଶୀ ଶାସକ ପଦଦଳିତ କରିବାର ଦୁଃଖ ତାଙ୍କ ହୃଦୟକୁ କରୁଥିଲା ଦଗ୍ଧିଭୂତ ।

'ବ୍ରହ୍ମବାଦିନ୍' ପତ୍ରିକାର ପରିଚାଳନା ସମ୍ବନ୍ଧରେ ପରାମର୍ଶ କରିବା ଲାଗି ଚାହିଁଥିଲେ ପରମଶିଷ୍ୟ ଆଲସିଙ୍ଗା ପେରୁମଲ । କିନ୍ତୁ ତାହା ବିଫଳ ହେବାରୁ ସେ ବାଧ୍ୟ ହୋଇ ଉକ୍ତ 'ଗୋଲକୁଣ୍ଡା' ଜାହାଜରେ ମାନ୍ଦ୍ରାଜରୁ କଲମ୍ବୋ ଯିବା ଲାଗି ଜାହାଜରେ ଚଢ଼ିଲେ । ଚାରିଦିନ ପରେ କଲମ୍ବୋରେ ଜାହାଜ ପହଞ୍ଚିଲା । ଜୟଧ୍ୱନି ମୁଖରିତ ସମୁଦ୍ରକୂଳସ୍ଥ ହଜାର ହଜାର ନରନାରୀ ସ୍ୱାମୀଜୀଙ୍କୁ ସ୍ୱାଗତ କରିଥିଲେ । ସମାଦୃତ ସାର୍ କୁମାର ସ୍ୱାମୀ, ତାଙ୍କର ଇଂରେଜୀ ପତ୍ନୀ ଓ ପୁତ୍ର ବିଭୂତି କଳସ ମୁଣ୍ଡରେ ଥୋଇ ସେଠାରେ ପହଞ୍ଚି ସ୍ୱାମୀଜୀଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ଶ୍ରୀ ଅରୁଣାଚଳମ୍‌ଙ୍କ ସମେତ ସ୍ୱାମୀଜୀଙ୍କ ଭକ୍ତବୃନ୍ଦ ଓ ହିନ୍ଦୁ ସମାଜର ମାନ୍ୟଗଣ୍ୟ ବ୍ୟକ୍ତି ସ୍ୱାମୀଜୀଙ୍କୁ ଭେଟି ତାଙ୍କର ଆଶୀର୍ବାଦ ଗ୍ରହଣ କରିଥିଲେ । ଆଲସିଙ୍ଗା ପେରୁମଲ୍ଲ ମଧ୍ୟ ସ୍ୱାମୀଜୀଙ୍କର ପରାମର୍ଶ

Digitized by srujanika@gmail.com

ଯାତ୍ରା କାଳରେ ବ୍ରହ୍ମବାଦିନ ସଂକ୍ରାନ୍ତରେ ନେଇ ସାରିଥିଲେ । ଜାହାଜ 'ଗୋଲକୁଣ୍ଡା' ଜୁନ୍ ୨୮ ତାରିଖ ସଂଧ୍ୟାରେ କଲମ୍ବୋ କୂଳରୁ ବିଦାୟ ନେଇ ଅନନ୍ତ ସମୁଦ୍ର ବକ୍ଷରେ ଯାତ୍ରା ଆରମ୍ଭ କଲା ।

କଲମ୍ବୋରୁ ଏଡ଼େନ ଦଶ ଦିନ ଲାଗିଲା । ମୌସୁମୀ ଝଡ଼ି ବର୍ଷା ସମୁଦ୍ରବକ୍ଷରେ ଲାଗି ରହିଥିଲା । ଏହି ଯାତ୍ରା କାଳରେ ସ୍ୱାମୀଜୀ ଅଧିକାଂଶ ସମୟ, ଗଭୀର ଚିନ୍ତାମଗ୍ନ ରହୁଥିଲେ ହେଁ ବେଳେ ବେଳେ ଅଜ୍ଞାତସାରରେ ନିଜର ଶ୍ରେଷ୍ଠତମ ଚିନ୍ତା ଓ ଅନୁଭୂତି ବ୍ୟକ୍ତ କରି ପକାଉଥିଲେ । ତାଙ୍କର ଭାଷାଗୁଡ଼ିକ ଏଭଳି ତତ୍ତ୍ୱପୂର୍ଣ୍ଣ ଥିଲା ଯାହାର ଅର୍ଥ ବୁଝିବା ବଡ଼ କଷ୍ଟକର ହେଉଥିଲା । ଯଦିଓ ଏହି ଯାତ୍ରା ସମୟରେ ଗମ୍ଭୀର ଓ ଉଦାସୀନ ବିବେକାନନ୍ଦ ବାହ୍ୟ ଜଗତର ଘଟଣା-ବୈଚିତ୍ର୍ୟରୁ ଏକପ୍ରକାର ଅବସର ନେଇ ଆତ୍ମସ୍ଥ ଯୋଗୀଙ୍କ ପରି ଭାବମଗ୍ନ ହୋଇ ରହିବାକୁ ଅଧିକ ଆଗ୍ରହ ପ୍ରକାଶ କରୁଥିଲେ, ତଥାପି ତାଙ୍କ ସହିତ ମିଶିବାର କ୍ଷୁଦ୍ରତମ ସୁଯୋଗକୁ ମଧ୍ୟ ନିବେଦିତା କୌଣସି ଦିନ ହାତଛଡ଼ା କରୁ ନ ଥିଲେ । ତାଙ୍କର ପ୍ରତ୍ୟେକ ମୁଖନିଃସୃତ ଶବ୍ଦ ଥିଲା ଶିକ୍ଷଣୀୟ ସ୍ୱାମୀ ତୁରୀୟାନନ୍ଦ ଓ ନିବେଦିତାଙ୍କ ପାଇଁ । ସ୍ୱାମୀଜୀଙ୍କ ସହ ଜଳଯାତ୍ରାର ଅନୁଭବ ନିବେଦିତା ତାଙ୍କ ରଚିତ ପୁସ୍ତକ ''ଦି ମାଷ୍ଟର ଏଜ୍ ଆଇ ସ ହିମ୍'' ରେ ଅତି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି ।

- ୧ -

*ବହିର୍ଜଗତରେ ଯେଉଁ ସୌନ୍ଦର୍ଯ୍ୟ ଦେଖି ଆମେ ବିମୋହିତ ହେଉ,*
*ତାହା ବାସ୍ତବରେ ଆମ ମନ ଭିତରେ ରହିଥାଏ - ବାହାରେ ଏହାର*
*କୌଣସି ଅସ୍ତିତ୍ୱ ନାହିଁ, ଏହା ବୁଝାଉ ବୁଝାଉ ସ୍ୱାମୀଜୀ ନୀରବତା*
*ଭିତରେ ନିମଗ୍ନ ହେଲେ ।*

ଜଳଯାତ୍ରା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ଚିନ୍ତାଧାରା ଓ ଗଳ୍ପର ସ୍ରୋତ ସ୍ୱାମୀଜୀଙ୍କ ମୁଖରୁ ବେଗଗାମୀ ଥିଲା । କେଉଁ ମୁହୂର୍ତ୍ତରେ ତାଙ୍କର ଅନ୍ତରାତ୍ମାର ଦ୍ୱାର ଖୋଲିଯିବ ଏବଂ ପରମସତ୍ୟର ନିର୍ଝରଣୀ ପ୍ରବାହିତ ହେବ ତାଙ୍କ ଶ୍ରୀମୁଖରୁ କିଏ ଜାଣେ ? ସମୁଦ୍ର ଯାତ୍ରାର ପ୍ରଥମ ଦିନ ଅପରାହ୍ଣରେ ଆମେ ଭାଗୀରଥୀ ବକ୍ଷରେ ଜାହାଜରେ ବସି ଗପ କରୁଥିଲୁ । ଏହି ସମୟରେ ସହସା ସ୍ୱାମୀଜୀ କହିଲେ, ''ଦେଖ, ଯେତେଦିନ ଅତିକ୍ରାନ୍ତ ହେଉଛି, ମୁଁ ସେତେ ସ୍ପଷ୍ଟ ଭାବରେ ଉପଲବ୍ଧି କରୁଛି ଯେ ମନୁଷ୍ୟତ୍ୱ ଲାଭ ହିଁ ଜୀବନର ସର୍ବଶ୍ରେଷ୍ଠ ସାଧନା । ଏହି ଅଭିନବ ବାର୍ତ୍ତାକୁ ମୁଁ ଜଗତରେ ପ୍ରଚାର କରୁଛି, ଯଦି ଅନ୍ୟାୟ କାର୍ଯ୍ୟ କରିବାକୁ ହୁଏ, ତେବେ ତାହା ମଣିଷ ପରି କର । ଯଦି ଦୁଷ୍ଟ ହେବାକୁ ହୁଏ, ତେବେ ବଡ଼ ଦୁଷ୍ଟ ହୁଅ ।''

ଦିନେ ସ୍ୱାମୀଜୀ ଜାହାଜର ଡେକ୍‌ରେ ଦଣ୍ଡାୟମାନ । ସୂର୍ଯ୍ୟାସ୍ତର ମନୋରମ ଦୃଶ୍ୟ ଉପଭୋଗ କରୁଥିଲେ । ପାଖରେ ଠିଆ ହୋଇଥିଲେ ନିବେଦିତା, ପୀତାଭ-ଲୋହିତ-ରଶ୍ମିମାଳା ଭାସନ୍ତ ମେଘମାଳା ଉପରେ ସୁନେଲୀ-ସ୍ୱପ୍ନପରି ବିଛି ହୋଇପଡ଼ିଥିଲା । ଅଦୂରରେ ଏଟ୍‌ନା ଆଗ୍ନେୟଗିରି ଶିଖରରୁ ଅଳ୍ପ ଅଳ୍ପ ଧୂମମଣ୍ଡଳି ଊର୍ଦ୍ଧ୍ୱକୁ ଉଠୁଥିଲା । କ୍ରମେ ଜାହାଜ ମେସୀନା ପ୍ରଣାଳୀରେ ପ୍ରବେଶ

Digitized by srujanika@gmail.com

କରିବା ମାତ୍ରେ ଚନ୍ଦ୍ର ଉଦୟ ହେଲେ । ସ୍ୱାମୀଜୀ ଡେକ୍ ଉପରେ ପଦଚାରଣ କରି ଭଗିନୀଙ୍କୁ ସୌନ୍ଦର୍ଯ୍ୟର ବ୍ୟାଖ୍ୟା ଶୁଣାଉଥିଲେ । ଶୁଣ ଭଉଣୀ - ବହିର୍ଜଗତରେ ଯେଉଁ ସୌନ୍ଦର୍ଯ୍ୟ ଦେଖି ଆମେ ବିମୋହିତ ହେଉ, ତାହା ବାସ୍ତବରେ ଆମ ମନ ଭିତରେ ରହିଥାଏ - ବାହାରେ ଏହାର କୌଣସି ଅସ୍ତିତ୍ୱ ନାହିଁ, ଏହା ବୁଝାଉ ବୁଝାଉ ସ୍ୱାମୀଜୀ ନୀରବତା ଭିତରେ ନିମଗ୍ନ ହେଲେ । ଇତ୍ୟବସରରେ ଇଟାଲୀ ଉପକୂଳରେ ଦୃଶ୍ୟମାନ ଧୂସରବର୍ଣ୍ଣ ଗିରିମାଳା ଭ୍ରୂକୁଟି ଭଙ୍ଗିରେ ଗର୍ବୋନ୍ନତ ହୋଇ ଶିର ଟେକି ଦଣ୍ଡାୟମାନ ଥିଲେ । ଅନ୍ୟ ପାର୍ଶ୍ୱରେ ସ୍ନିଗ୍ଧ ଚନ୍ଦ୍ରାଲୋକସ୍ନାତ ହାସ୍ୟମୟ ସିସିଲୀ ଦ୍ୱୀପ ଦୃଶ୍ୟମାନ ହେଉଥିଲା ।

ବୟାଳିଶ ଦିନ ଯାତ୍ରା ସମାପ୍ତ କରିବା ଉତ୍ତାରୁ ଜାହାଜ 'ଗୋଲକୋଣ୍ଡା' ଲଣ୍ଡନସ୍ଥ ଟିଲବରି ପୋତାଶ୍ରୟରେ ପହଞ୍ଚିଲା । ନିବେଦିତାଙ୍କ ମା ଓ ଭଉଣୀ, ଆମେରିକୀୟ ଶିଷ୍ୟା କ୍ରିଷ୍ଟାଇନ୍ ଗ୍ରୀନ୍‌ଷ୍ଟିଡ଼େଲ, ମେରୀ ଫନ୍‌କେ ଏବଂ ଅନ୍ୟ କେତେଜଣ ଶିଷ୍ୟ ସ୍ୱାମୀଜୀଙ୍କୁ ସ୍ୱାଗତ କରିବା ଲାଗି ଜାହାଜର ଡେକ୍ ପାଖରେ ପହଞ୍ଚିଥିଲେ । ନିବେଦିତାଙ୍କ ମା ଶ୍ରୀମତୀ ସାମୁଏଲ୍ ରିଚ୍‌ମଣ୍ଡ ନୋବଲ୍ ସ୍ୱାମୀଜୀଙ୍କୁ ପୁତ୍ର ଭାବେ ଗ୍ରହଣ କଲେ ଏବଂ ତାଙ୍କର ସମସ୍ତ ପ୍ରକାର ଯତ୍ନ ନେଲେ । ସ୍ୱାମୀଜୀ ଲଣ୍ଡନରେ ପହଞ୍ଚିବାଠାରୁ ସେ ବାରମ୍ବାର ଅସୁସ୍ଥ ହୋଇପଡୁଥିଲେ ଏବଂ ବିଶ୍ରାମ ତାଙ୍କ ପାଇଁ ନିହାତି ଆବଶ୍ୟକ ଥିଲା । ନିବେଦିତାଙ୍କ ସାନ ଭଉଣୀ ମେରୀ ଉଇଲସନ୍ ଏବଂ ସାନ ଭାଇ ରିଚମଣ୍ଡ ସ୍ୱାମୀଜୀଙ୍କୁ ଗଭୀର ସ୍ନେହ ପାଶରେ ବନ୍ଧନ କରିଦେଲେ । ଯୀଶୁଖ୍ରୀଷ୍ଟ ସମ ସ୍ୱାମୀଜୀ ବାଳକ ରିଚମଣ୍ଡଙ୍କ ଦୃଷ୍ଟିରେ ଉଦ୍‌ଭାସିତ ହେଲେ ବୋଲି ସ୍ୱୟଂ ସେ କହିଥିଲେ । ନୋବଲ୍ ପରିବାର ସ୍ୱାମୀଜୀଙ୍କ ସାନିଧ ଲାଭ କରି କୃତକୃତ ହେଲେ ।

ଇଂଲଣ୍ଡରେ ଯେଉଁ ବେଦାନ୍ତ କାର୍ଯ୍ୟ ସ୍ୱାମୀଜୀ ପୂର୍ବରୁ ଆରମ୍ଭ କରି ଯାଇଥିଲେ, ତାହା ଶୀଥିଳ ପଡ଼ିଯାଇଥିଲା । ସ୍ୱାମୀଜୀଙ୍କର ଶିଷ୍ୟ ଶ୍ରୀ ଇ.ଟି.ଷ୍ଟର୍ଡ଼ି ଓ ଶିଷ୍ୟା କୁମାରୀ ହେନ୍ରିଏଟା ମୁଲର୍‌ଙ୍କ ଅସହଯୋଗ ଯୋଗୁଁ ମୁଖ୍ୟତ ଏହି ଅବସ୍ଥା ଘଟିଥିଲା । ହିନ୍ଦୁଧର୍ମ ଓ ସ୍ୱାମୀଜୀଙ୍କର ଶିକ୍ଷାଦାନ ପ୍ରତି ସେମାନଙ୍କର ଆସ୍ଥା ରହିଲା ନାହିଁ । ସ୍ୱାମୀଜୀଙ୍କର ଅସୁସ୍ଥତା ମଧ୍ୟ କେତେକ ଅନୁଗାମୀଙ୍କ ମନରେ ସନ୍ଦେହ ସୃଷ୍ଟି କରିଥିଲା । ସେମାନଙ୍କର ଧାରଣା ଥିଲା ଯେ ଯେଉଁ ବ୍ୟକ୍ତି ଈଶ୍ୱରଙ୍କର ଦୂତ ବା ଅବତାର ସେ କେବେବି ସାଧାରଣ ମନୁଷ୍ୟଙ୍କ ଭଳି ବ୍ୟାଧିଗ୍ରସ୍ତ ହୋଇପାରିବେ ନାହିଁ । ଏତାଦୃଶ ଅପପ୍ରଚାର ଓ ସଂଶୟାଚ୍ଛନ୍ନ ମାନସିକତା ପରିଲକ୍ଷିତ କରି ସ୍ୱାମୀଜୀ ମନେ ମନେ ହସୁଥିଲେ, କିନ୍ତୁ ତାଙ୍କ ତେଜୋମୟ ମୁଖମଣ୍ଡଳରେ କୌଣସି ପ୍ରକାର ହତାଶର ଚିହ୍ନ ନ ଥିଲା । ଭଗିନୀ ନିବେଦିତାଙ୍କ ଅନୁଜ ରିଚମେଣ୍ଡ ପରବର୍ତ୍ତୀ କାଳରେ ସ୍ୱାମୀଜୀଙ୍କ ସମ୍ବନ୍ଧରେ କହିଥିଲେ :

''ମୋ ଭଉଣୀ ତାଙ୍କର ଡାକରାକୁ ଗ୍ରହଣ କରିବା ଏବଂ ତାଙ୍କୁ ଅନୁସରଣ କରିବା କୌଣସି ବିସ୍ମୟକର ଘଟଣା ନ ଥିଲା । ମୁଁ ନିଜେ ସ୍ୱାମୀଜୀଙ୍କୁ ଦେଖିଛି ଏବଂ ତାଙ୍କର ଶକ୍ତିକୁ ବି ଚିହ୍ନିଛି । ଜଣେ ବ୍ୟକ୍ତି ସ୍ୱାମୀଜୀଙ୍କୁ କେବଳ ଦେଖିବା ଓ ଶୁଣିବା ପରେ ସେ ନିଜକୁ ପଚାରିବ : ଦେଖହେ ଏହି ମାନବଙ୍କୁ ।'' ସେ ସତ୍ୟ କହୁଥିଲେ, ''ଜଣେ ବିଦ୍ୱାନ କିମ୍ବା ଧର୍ମଯାଜକ ଭଳି ନୁହେଁ, ବରଂ ନିଜର କର୍ତ୍ତୃତ୍ୱ ଓ ପ୍ରଭୁତ୍ୱ ତାଙ୍କର ପ୍ରତ୍ୟେକ ଶବ୍ଦରେ ଭରି ରହିଥିଲା । ତାଙ୍କ

Digitized by srujanika@gmail.com

ପ୍ରତ୍ୟେକ ଶବ୍ଦ ନିଶ୍ଚିତତା, ପ୍ରତିଶ୍ରୁତି ଓ ବିଶ୍ୱାସରେ ଥିଲା ଭରପୂର । ସେଥିପାଇଁ ମୋ ଭଉଣୀ ତାଙ୍କୁ ନିର୍ଭୀକତା ସହ ଅନୁସରଣ କରୁଥିଲେ, କୌଣସି ଅନୁଶୋଚନା ନ ଥିଲା ।''

ଆମେରିକାର ଶିଷ୍ୟ ଓ ଶିଷ୍ୟାମାନଙ୍କର ବାରମ୍ବାର ଅନୁରୋଧ ସ୍ୱାମୀଜୀଙ୍କୁ ବ୍ୟସ୍ତ କରିଦେଲା ଆମେରିକା ଯିବାପାଇଁ । ଅଗଷ୍ଟ ସାତ ତାରିଖ ଦିନ ସ୍ୱାମୀଜୀ ଆମେରିକା ଯାତ୍ରା କଲେ ଏବଂ ୧୮୯୯ ଅଗଷ୍ଟ ୨୮ ତାରିଖରେ ନିଉୟର୍କରେ ପହଞ୍ଚିଲେ । ଆମେରିକା ଭୂମିରେ ପୁନର୍ବାର ସ୍ୱାମୀଜୀଙ୍କୁ ପାଇ ଶିଷ୍ୟ ଓ ଶୁଭେଚ୍ଛୁଗଣଙ୍କ ଭିତରେ ହର୍ଷୋତ୍ସାହ ଖେଳିଗଲା । ତାଙ୍କର ପୁରାତନ ବନ୍ଧୁ ଶ୍ରୀ ଓ ଶ୍ରୀମତୀ ଫ୍ରାନ୍‌ସିସ୍ ଲେଗେଟଙ୍କ ବାସଭବନକୁ ଯାଇ ସେମାନଙ୍କୁ ସାକ୍ଷାତ କଲେ । ସେମାନଙ୍କ ଗୃହରେ କିଛି ସମୟ କଟାଇ ସେହିଦିନ ଅପରାହ୍ଣ ଲେଗେଟ୍ ଦମ୍ପତ୍ତିଙ୍କ ଅନୁରୋଧରେ ଗୁରୁଭ୍ରାତା ସ୍ୱାମୀ ତୁରୀୟାନନ୍ଦଙ୍କ ସହିତ ନିଉୟର୍କଠାରୁ ଦେଢ଼ଶହ ମାଇଲ ଦୂରବର୍ତ୍ତୀ ସେମାନଙ୍କର ପଲ୍ଲୀଭବନ 'ରିଜ୍‌ଲେ ମ୍ୟାନର' ନାମକ ସ୍ଥାନକୁ ଚାଲିଗଲେ । ସ୍ୱାମୀଜୀଙ୍କର ସ୍ୱାସ୍ଥ୍ୟାବସ୍ଥା ଦର୍ଶନ କରି ସହୃଦୟ ଲେଗେଟ୍ ଦମ୍ପତ୍ତି ସହସା ତାଙ୍କୁ ପ୍ରଚାର କାର୍ଯ୍ୟ ଆରମ୍ଭ କରିବାକୁ ଅନୁମତି ଦେଲେ ନାହିଁ । ଭଗ୍ନ ଦେହ କଠୋର ପରିଶ୍ରମର ଭାର ସହ୍ୟ କରିପାରିବ ନାହିଁ ବୋଲି ଆଶଙ୍କା କରି ସେମାନେ ସ୍ୱାମୀଜୀଙ୍କ ସୁଚିକିତ୍ସାର ବନ୍ଦୋବସ୍ତ କଲେ । ଭଗିନୀ ନିବେଦିତା ନିଜ କନିଷ୍ଠ ଭଗ୍ନୀଙ୍କର ଲଣ୍ଡନଠାରେ ବିବାହ କାର୍ଯ୍ୟ ସମାପନ ହେବା ଉତ୍ତାରୁ ମାସକ ପରେ ସେ ଆସି ଆମେରିକାରେ ପହଞ୍ଚିଲେ । ଏଠାରେ ଉଲ୍ଲେଖନୀୟ ଯେ ସ୍ୱାମୀ ଅଭେଦାନନ୍ଦ ଆମେରିକାରେ ସେତେବେଳେ ବେଦାନ୍ତ ପ୍ରଚାର କାର୍ଯ୍ୟରେ ଲିପ୍ତ ଥିଲେ, ସେ ବି ଆସି ସ୍ୱାମୀଜୀଙ୍କ ପାଖରେ ଯୋଗ ଦେଲେ । ତାଙ୍କଠାରୁ ବେଦାନ୍ତ ପ୍ରଚାର କାର୍ଯ୍ୟରେ ସଫଳତାର ସମ୍ବାଦ ଓ ନିଉୟର୍କରେ 'ବେଦାନ୍ତ ସମିତି'ର ଗୋଟିଏ ସ୍ଥାୟୀ ଗୃହର ବନ୍ଦୋବସ୍ତ ହେଉଛି ଶୁଣି ସ୍ୱାମୀଜୀ ଅତୀବ ଆନନ୍ଦିତ ହେଲେ ଏବଂ ଗୁରୁଭ୍ରାତାଙ୍କ ନିଃସ୍ୱାର୍ଥ ଉଦ୍ୟମ ଯୋଗୁଁ ଧନ୍ୟବାଦ ଦେଲେ ।

- ୨ -

*ମାଡ଼ାମ, ମୋର ପାପଗୁଡ଼ିକ ବି ପବିତ୍ର । ପାପ ମାଧ୍ୟମରେ ମୁଁ ପୁଣ୍ୟ ଜାଣିଛି । ମୋର ସମସ୍ତ ପାପ ଓ ପୁଣ୍ୟ, ଆଜି ମୁଁ ଯାହା ହୋଇଛି, ତାହା ହିଁ ଗଢ଼ିଛି ମୋତେ । ବର୍ତ୍ତମାନ ମୁଁ ପୁଣ୍ୟର ମୁଖପାତ୍ର । ମାନବ ପ୍ରବୃତ୍ତିର ଦୁର୍ବଳ ଦିଗ ଉପରେ ଆପଣ କାହିଁକି ମହତ୍ତ୍ୱ ଦେଉଛନ୍ତି ? ଆପଣ କ'ଣ ଜାଣି ନାହାନ୍ତି ଯେ ଅତି ନିଚ ଦୁଷ୍ଟ ବ୍ୟକ୍ତିଙ୍କ ଭିତରେ ବି କେତେକ ସାଧୁତା ଭରି ରହିଛି ଯାହା ସନ୍ଥଙ୍କ ଭିତରେ ନ ଥାଏ ? ଏକ ଇ ଶକ୍ତି ବିରାଜିତ ଯାହା ଭଲ ଓ ମନ୍ଦଭାବେ ପ୍ରକଟିତ ହୋଇଥାଏ । ଈଶ୍ୱର ଓ ସଇତାନ ଗୋଟିଏ ନଦୀ କିନ୍ତୁ ତା'ର ଜଳ ପରସ୍ପର ବିପରୀତ ଦିଗରେ ବହମାନ ।*

ସ୍ୱାମୀ ବିବେକାନନ୍ଦ, ସାମାନ୍ୟ ସୁସ୍ଥ ହେବାରୁ, ନିୟୁର୍କସ୍ଥ ବେଦାନ୍ତ ସମିତିର ନୂତନ ଗୃହ ଉଦ୍‌ଘାଟନ ଉତ୍ସବରେ ଯୋଗଦେଲେ । ନଭେମ୍ବର ଆଠ ତାରିଖରେ ବେଦାନ୍ତ ସମିତି ନୂତନ

Digitized by srujanika@gmail.com

ଗୃହରେ ଆହୂତ ପ୍ରଶ୍ନୋତ୍ତର ସଭାରେ ସ୍ୱାମୀ ବିବେକାନନ୍ଦ ସାଧାରଣ ଜନତା ସମ୍ମୁଖରେ ଉପସ୍ଥିତ ହେଲେ । ସ୍ୱାମୀ ଅଭେଦାନନ୍ଦ ତାଙ୍କୁ ବେଦାନ୍ତ ସମିତିର ନୂତନ ସଭ୍ୟମାନଙ୍କ ସହିତ ପରିଚୟ କରାଇ ଦେଲେ । ଶହଶହ ଉତ୍ସୁକ ନରନାରୀଙ୍କ ଆଗ୍ରହପୂର୍ଣ୍ଣ ନିବେଦନ ହେତୁ ସ୍ୱାମୀଜୀ ଉକ୍ତ ଦିନ ସ୍ୱୟଂ ଜିଜ୍ଞାସୁ ବ୍ୟକ୍ତିମାନଙ୍କ ପ୍ରଶ୍ନର ଉତ୍ତର ପ୍ରଦାନ କରି ସେମାନଙ୍କୁ କୃତାର୍ଥ କଲେ । ନଭେମ୍ବର ଦଶ ତାରିଖ ଦିନ ସ୍ଥାନୀୟ ଜନସାଧାରଣଙ୍କ ତରଫରୁ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରାଗଲା । ସ୍ୱାମୀଜୀ ପୁରାତନ ବନ୍ଧୁ ଓ ଶିଷ୍ୟମଣ୍ଡଳୀଙ୍କ ସହିତ ମିଳିତ ହୋଇ ଆନନ୍ଦ ଚିତ୍ତରେ ଉକ୍ତ ଅଭିନନ୍ଦନପତ୍ରର ସମୁଚିତ ଉତ୍ତର ପ୍ରଦାନ କରିଥିଲେ ।

ଉପସ୍ଥିତ ଉତ୍ସୁକ ଜନତା ଜଣ ଜଣ କରି ପ୍ରଶ୍ନ ପଚାରୁଥିଲେ ଏବଂ ସ୍ୱାମୀଜୀ ପ୍ରତ୍ୟେକ ପ୍ରଶ୍ନର ଉତ୍ତର ହାସ୍ୟବଦନରେ ଦେଉଥିଲେ । ଇତିମଧ୍ୟରେ ଚର୍ଚ୍ଚର ଜଣେ ମହିଳା ପ୍ରଶ୍ନ କଲେ, ''ସ୍ୱାମୀଜୀ, ଆପଣତ କାହିଁକି ପାପ ସମ୍ବନ୍ଧରେ କିଛି କହୁ ନାହାନ୍ତି ?'' ସ୍ୱାମୀଜୀଙ୍କ ମୁଖମଣ୍ଡଳରେ ସହସା ବିସ୍ମୟର ରେଖାଟିଏ ଆଙ୍କି ହୋଇଗଲା ଏବଂ କହିଲେ, ''ମାଡ଼ାମ, ମୋର ପାପଗୁଡ଼ିକ ବି ପବିତ୍ର । ପାପ ମାଧ୍ୟମରେ ମୁଁ ପୁଣ୍ୟ ଜାଣିଛି । ମୋର ସମସ୍ତ ପାପ ଓ ପୁଣ୍ୟ, ଆଜି ମୁଁ ଯାହା ହୋଇଛି, ତାହା ହିଁ ଗଢ଼ିଛି ମୋତେ । ବର୍ତ୍ତମାନ ମୁଁ ପୁଣ୍ୟର ମୁଖପାତ୍ର । ମାନବ ପ୍ରବୃତ୍ତିର ଦୁର୍ବଳ ଦିଗ ଉପରେ ଆପଣ କାହିଁକି ମହତ୍ତ୍ୱ ଦେଉଛନ୍ତି ? ଆପଣ କ'ଣ ଜାଣି ନାହାନ୍ତି ଯେ ଅତି ନିଚ ଦୁଷ୍ଟ ବ୍ୟକ୍ତିଙ୍କ ଭିତରେ ବି କେତେକ ସାଧୁତା ଭରି ରହିଛି ଯାହା ସନ୍ଥଙ୍କ ଭିତରେ ନ ଥାଏ ? ଏକ ଇ ଶକ୍ତି ବିରାଜିତ ଯାହା ଭଲ ଓ ମନ୍ଦଭାବେ ପ୍ରକଟିତ ହୋଇଥାଏ । ଈଶ୍ୱର ଓ ସଇତାନ ଗୋଟିଏ ନଦୀ କିନ୍ତୁ ତା'ର ଜଳ ପରସ୍ପର ବିପରୀତ ଦିଗରେ ବହମାନ ।'' ଉକ୍ତ ମହିଳା ଏତାଦୃଶ ବ୍ୟାଖ୍ୟାରେ ଭୟଭୀତ ହୋଇପଡ଼ିଲେ କିନ୍ତୁ ଅନ୍ୟମାନେ ସ୍ୱାମୀଜୀଙ୍କର କହିବାର ସାରାଂଶଟିକୁ ଧରିପାରିଲେ । ତତପଶ୍ଚାତେ, ସ୍ୱାମୀଜୀ ପ୍ରତ୍ୟେକ ମଣିଷ ଭିତରେ ନିହିତ ଦିବ୍ୟତ୍ୱ, ଆତ୍ମା କିପରି ଶୁଦ୍ଧ, ପବିତ୍ର, ଶାଶ୍ୱତ ଓ ଅମର, ସେହି ବିଷୟରେ କହି ଉପସ୍ଥିତ ଜନତାଙ୍କର ସଂଶୟ ଦୂର କଲେ ।

ଗୋଟିଏ କଥା ଏଠାରେ ସ୍ମରଣ ରଖିବା ଉଚିତ ହେବ, ଯେଉଁମାନେ ଜୀବନର ରହସ୍ୟ ଜାଣିବା ପାଇଁ ଅନ୍ୱେଷଣରତ ଏବଂ ବାରମ୍ବାର ଚେଷ୍ଟା ସତ୍ତ୍ୱେ ଜାଣି ପାରୁନାହାନ୍ତି, ସେମାନଙ୍କ ପାଇଁ ସ୍ୱାମୀଜୀଙ୍କର ବାକ୍ୟ ହୃଦୟ କବାଟରେ କରାଘାତ ସଦୃଶ; ଯାହାଫଳରେ ସେମାନେ ଦିନେ ନା ଦିନେ କବାଟ ଖୋଲି ଜୀବନର ରହସ୍ୟକୁ ଦେଖିପାରିବେ । କିନ୍ତୁ ଯେଉଁମାନେ ଅନ୍ୱେଷଣ କରିବା ପରିବର୍ତ୍ତେ, ଏକ ବିଶ୍ୱାସ-ଗଣ୍ଡି ଭିତରେ ପାପ ପୁଣ୍ୟ ଚିନ୍ତାକରି ନିଜକୁ ବାନ୍ଧି ରଖିଛନ୍ତି, ସେମାନଙ୍କର କବାଟରେ କରାଘାତ ହେବାତ ଦୂରର କଥା, ସେମାନେ କବାଟର ପାଖ ମାଡ଼ି ପାରିବେନାହିଁ । ତାହାହିଁ ଚର୍ଚ୍ଚର ଉକ୍ତ ପ୍ରଶ୍ନକର୍ତ୍ତୀ ନାରୀଙ୍କ କ୍ଷେତ୍ରରେ ଘଟିଥିଲା ।

Digitized by srujanika@gmail.com

- ୩ -

*ନା ରେ ଭାଇ, ତୁମେ ମୋତେ ବୁଝିପାରିବ ନାହିଁ । ମୋତେ ଲାଗୁଛି ଯେ ମୁଁ ବିଶାଳ ହୋଇ ଉଠୁଛି । ମୋର ଆତ୍ମ-ସତ୍ତା ଏଭଳି ଭାବେ ପ୍ରସାରିତ ହେଉଛି, ମୁଁ ବେଳେବେଳେ ଅନୁଭବ କରୁଛି ଯେ ମୋର ଦେହ ଏହାକୁ ଧାରଣ କରିବା ପାଇଁ ସକ୍ଷମ ନୁହେଁ । ମୋର ବିସ୍ଫୋରଣ ଆସନ୍ନ । ସତ କହୁଛି ମୋର ରକ୍ତ ମାଂସର ଶରୀର ବେଶିଦିନ ମୋତେ ଧରି ରଖିପାରିବ ନାହିଁ ।*

ଏହି ସମୟରେ ସ୍ୱାମୀଜୀ ସିନା ଶିଷ୍ୟ, ଶିଷ୍ୟା ଓ ଶୁଭେଚ୍ଛୁମାନଙ୍କୁ ଆତ୍ମୋପଲବ୍ଧି ସମ୍ବନ୍ଧରେ ବିଭିନ୍ନ ସାରଗର୍ଭକ ତଥା ତାତ୍ତ୍ୱିକ କଥା ଶୁଣାଇ ଆଲୋକିତ କରୁଥିଲେ, କିନ୍ତୁ ନିଜର ଅନ୍ତର୍ରାଜ୍ୟରେ ବାରମ୍ବାର ଦେହାବସାନର ଅଦ୍ଭୁତ ଝଲକ ଉଲ୍‌କା ଭଳି ପତିତ ହେଉଥିବା ସେ ଜଳ ଜଳ ଦେଖି ପାରୁଥିଲେ । ସ୍ୱାମୀଜୀ ଅଭେଦାନନ୍ଦଙ୍କୁ ଦିନେ ନିଜର ମନର କଥା ଜଣାଇଲେ - ଭାଇ, ମୋର ଦିନ ସରିଆସୁଛି, ମୁଁ ଅତିବେଶିରେ ଆଉ ମାତ୍ର ତିନିଚାରି ବର୍ଷ ବଞ୍ଚିବି ।'' ଅନ୍ତିମ କାଳ ପାଖେଇ ଆସୁଥିବା ସମୟରେ ଭଗବାନ ବୁଦ୍ଧଙ୍କଠାରୁ ଏଭଳି ଭବିଷ୍ୟତବାଣୀ ଶୁଣି ଯେପରି ପରମଶିଷ୍ୟ ତଥା କନିଷ୍ଠ ଭ୍ରାତା ଆନନ୍ଦ ଚିଇଁକି ପଡ଼ି ଦୁଃଖାଭିଭୂତ ହୋଇ ପଡ଼ିଥିଲେ, ସେପରି ଗୁରୁଭ୍ରାତା ସ୍ୱାମୀ ଅଭେଦାନନ୍ଦଙ୍କ ଛାତିରେ ଛୁରି ପଶିଗଲା ଭଳି ଲାଗିଲା । ସେ ଅତ୍ୟନ୍ତ ଦୁଃଖରେ କହି ଉଠିଲେ, ''ସ୍ୱାମୀଜୀ, ଆପଣ ଏଭଳି ଅମଙ୍ଗଳ କଥା କୁହନ୍ତୁନି । ଆପଣ ଦ୍ରୁତଗତିରେ ସୁସ୍ଥ ହେଉଛନ୍ତି । ଆପଣ ଏଠାରେ କିଛିଦିନ ରହିଲେ, ଆପଣଙ୍କର ପୂର୍ବଭଳି ଶକ୍ତି ଓ ସାମର୍ଥ୍ୟ ଫେରିଆସିବ । ତାବାଦେ, ଆପଣଙ୍କୁ ବହୁକାର୍ଯ୍ୟ କରିବା ବାକି ରହିଛି । ବର୍ତ୍ତମାନ ତ ଖାଲି ଆରମ୍ଭ ।'' କିନ୍ତୁ ସ୍ୱାମୀଜୀ କହିଲେ, ''ନା ରେ ଭାଇ, ତୁମେ ମୋତେ ବୁଝିପାରିବ ନାହିଁ । ମୋତେ ଲାଗୁଛି ଯେ ମୁଁ ବିଶାଳ ହୋଇ ଉଠୁଛି । ମୋର ଆତ୍ମ-ସତ୍ତା ଏଭଳି ଭାବେ ପ୍ରସାରିତ ହେଉଛି, ମୁଁ ବେଳେବେଳେ ଅନୁଭବ କରୁଛି ଯେ ମୋର ଦେହ ଏହାକୁ ଧାରଣ କରିବା ପାଇଁ ସକ୍ଷମ ନୁହେଁ । ମୋର ବିସ୍ଫୋରଣ ଆସନ୍ନ । ସତ କହୁଛି ମୋର ରକ୍ତ ମାଂସର ଶରୀର ବେଶିଦିନ ମୋତେ ଧରି ରଖିପାରିବ ନାହିଁ ।

ପ୍ରଚାରକାର୍ଯ୍ୟର ଦାୟିତ୍ୱ ସେ ଆଗରୁ ସୁଯୋଗ୍ୟ ଗୁରୁଭ୍ରାତାମାନଙ୍କ ହସ୍ତରେ ଦେଇସାରିଥିଲେ । ସନ୍ୟାସୀର ସର୍ବୋତମୁଖୀ ସ୍ୱାଧୀନତା ତାଙ୍କ ଆଚାର-ବ୍ୟବହାରରେ ସୁସ୍ପଷ୍ଟ ଭାବରେ ଫୁଟି ଉଠୁଥିଲା, ତାଙ୍କୁ ଦେଖିଲେ ମନେ ହେଉଥିଲା ଯେପରିକି ସେ ବାହ୍ୟ ଜଗତ ସହିତ ସବୁପ୍ରକାର ଦାୟିତ୍ୱ ଓ କର୍ତ୍ତବ୍ୟମୂଳକ ବନ୍ଧନ ଛିନ୍ନ କରିବାକୁ ଉଦ୍ୟତ । ଆମେରିକୀୟ ସନ୍ୟାସୀ କୃପାନନ୍ଦ ବି ମିସ୍ ହେନ୍ରିଏଟା ମୁଲର ଓ ମିଷ୍ଟର ଷ୍ଟର୍ଡ଼ିଙ୍କ ଭଳି ସ୍ୱାମୀଜୀଙ୍କଠାରୁ ସବୁ ସଂପର୍କ ଛିନ୍ନ କରି ଦୂରେଇ ଯିବାରୁ ଅବଶ୍ୟ ତାଙ୍କୁ ଏକ ଶକ୍ତ ଧକ୍‌କା ଲାଗିଲା । ଏଣେ ତ ଅସୁସ୍ଥ ଶରୀର, ତାବାଦେ ଜଣେ ଅନୁରକ୍ତ ସନ୍ୟାସୀଙ୍କର ପଳାୟନ ତାଙ୍କର ସମ୍ବେଦନଶୀଳ ଶରୀରକୁ ପ୍ରଭାବିତ କଲା । କିନ୍ତୁ ସ୍ୱାମୀଜୀ ନ ଥିଲେ ଏକ ପଳାୟନପନ୍ଥୀ କିମ୍ବା ଭୟାଳୁ । ନିଜ ମନ ଓ

Digitized by srujanika@gmail.com

ଶରୀରକୁ ସେ ଭଲଭାବେ ଚିହ୍ନିଛନ୍ତି । ନିଉୟର୍କରୁ ଜଣେ ଶିଷ୍ୟଙ୍କ ପାଖକୁ ଇତ୍ୟବସରରେ ଏକ ଚିଠି ଲେଖିଥିଲେ ଯେଉଁଥିରେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ସୂଚନା ମିଳେ - ସାମଗ୍ରିକ ଭାବେ ଦେଖିବାକୁ ଗଲେ ମୋ ଦେହ ପ୍ରତି ତୁମେ ଆଦୌ ଚିନ୍ତିତ ହେବା ଆବଶ୍ୟକ ନାହିଁ । ଏଭଳି ସ୍ନାୟୁବିକ ଶରୀର କେତେବେଳେ ସୁଲଳିତ ସଙ୍ଗୀତର ମୂର୍ଚ୍ଛନାର ବାଦ୍ୟଯନ୍ତ୍ର ସାଜିଥାଏ, ଆଉ କେତେବେଳେ ବି ଅନ୍ଧକାର ଭିତରେ ବିଳାପ କରିଥାଏ । ସାଂସାରିକ ଦୁଃଖ ଓ ସୁଖକୁ ଜଣେ ସ୍ଥିତପ୍ରଜ୍ଞ ବ୍ୟକ୍ତି ସମାନ ଭାବରେ ଦେଖେ । ସ୍ୱାମୀଜୀ ତାହାହିଁ ଦେଖୁଥିଲେ ।

ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟର ଉନ୍ନତି ନିମନ୍ତେ କାଲିଫର୍ଣ୍ଣିଆ ଯିବାପାଇଁ ତାଙ୍କୁ ପରାମର୍ଶ ଦିଆଗଲା । ସେଠାକାର ଜଳବାୟୁ ଅନୁକୂଳ ଥିବାରୁ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟର ପରିବର୍ତ୍ତନ ଘଟିପାରେ ବୋଲି ତାଙ୍କର ଶୁଭେଚ୍ଛୁଗଣ ଭାବିଲେ । ତା'ବାଦେ କେମ୍ବ୍ରିଜ୍‌ରେ ଶ୍ରୀମତୀ ବୁଲ୍‌ଙ୍କ ଘରେ କିଛିଦିନ ବିଶ୍ରାମ ନେଇପାରିବେ । କିନ୍ତୁ ତାହା ହେଲାନାହିଁ । ଯିବା ବାଟରେ ସିକାଗୋରେ (ଚିକାଗୋ) ତାଙ୍କର ବନ୍ଧୁ ଓ ଶୁଭେଚ୍ଛୁମାନେ ତାଙ୍କୁ ଅଟକାଇ ଦେଲେ । ବାଧହୋଇ ସେ ସିକାଗୋରେ ଭକ୍ତ ଓ ଶୁଭେଚ୍ଛୁମାନଙ୍କ ଗହଣରେ ରହିଲେ । ହେଲେ ପରିବାରରେ ସେ ରହୁଥିଲେ, ବକ୍ତୃତା, ସାଧାରଣ ସଭା ଓ ଆଲୋଚନାରେ ସେ ଯେତିକି ଭାଗ ନେଉଥିଲେ, ତା'ଠାରୁ ଅଧିକ ଧ୍ୟାନ ଓ ନୀରବତା ଏବଂ ସଙ୍ଗୀତ ଶୁଣିବାରେ ସମୟ କଟାଉଥିଲେ । ଏହି ଅବସ୍ଥାନ କାଳରେ ଥୋମାସ୍ ଏଡ଼ିସ୍‌ନଙ୍କ ଦ୍ୱାରା ଉଦ୍ଭାବିତ ମେଗାଫୋନ୍ ଜରିଆରେ ସ୍ୱାମୀଜୀ କଥାବାର୍ତ୍ତା କରୁଥିବା ସମୟରେ, ସେଗୁଡ଼ିକୁ ରେକର୍ଡ଼ିଙ୍ଗ କରାଯାଇଥିଲା । ଦୁର୍ଭାଗ୍ୟବଶତଃ, ତାହା ବର୍ତ୍ତମାନ କେଉଁଠି ଅଛି ଜଣାପଡୁନାହିଁ ।

- ୪ -

*ଯେହେତୁ ତୁମେ ଭଲ, ସେଥିପାଇଁ ତୁମେ ଗର୍ବିତ ହେବା ଉଚିତ କି ? ନିଶ୍ଚିତ ଭାବେ ନୁହେଁ । ତୁମେ ଭଲ ହୋଇଛ, କାରଣ ତୁମେ ଭଲ ହେବାକୁ ବାଧ ତାହା ବିନା ତୁମେ କିଛି କରିପାରିବ ନାହିଁ । ସେ ମନ୍ଦ ହୋଇଛି, କାରଣ ସେ ମନ୍ଦ ହେବାକୁ ବାଧ, ତାହାବିନା ସେ କିଛି କରି ପାରିବ ନାହିଁ । ଯଦି ତାଙ୍କ ଜାଗାରେ ତୁମେ ହୋଇଥାନ୍ତ, କିଏ ଜାଣେ, ତୁମେ କ'ଣ ହୋଇଥାନ୍ତ ! ରାସ୍ତା ପାର୍ଶ୍ୱସ୍ଥ କୋଠିରେ ବାଈ କିମ୍ବା କାରାଗାର କକ୍ଷରେ ଚୋର ହେଉଛି ଖ୍ରୀଷ୍ଟ ଯିଏ ପ୍ରତି ମୁହୂର୍ତ୍ତରେ କ୍ରୁଶବିଦ୍ଧ ତୁମରି ପାଇଁ କାରଣ ତୁମେ ଜଣେ ଭଲ ମନୁଷ୍ୟ ହେବ । ଏହା ହିଁ ଭାରସାମ୍ୟ ରଖିବାର ନିୟମ ।*

ଡିସେମ୍ବର ୩ ତାରିଖରେ ସ୍ୱାମୀଜୀ ଲସ୍ ଆଞ୍ଜେଲ୍‌ସରେ ପହଞ୍ଚିଲେ । ଆମେରିକାର ବହୁ ଲୋକ ସେତେବେଳକୁ ତାଙ୍କର ପୁସ୍ତକ ପଢ଼ି ସାରିଥାନ୍ତି । ସେମାନେ ଉଦ୍‌ଗ୍ରୀବ ହୋଇ ସ୍ୱାମୀଜୀଙ୍କ ମୁଖରୁ ପଦେକଥା ଶୁଣିବା ଲାଗି ଚାହିଁ ରହିଥାନ୍ତି । ସେମାନଙ୍କ ମଧ୍ୟରୁ ଥିଲେ ଶ୍ରୀ ବର୍ଣ୍ଣହାର୍ଡ ବାଉମ୍ ଗାର୍ଟ । ସଦର୍ଣ୍ଣ କାଲିଫର୍ଣ୍ଣିଆ ଆକାଡ଼େମୀ ଅଫ୍ ସାଇନ୍‌ସେସ୍‌ର ସେ ଥିଲେ ସେକ୍ରେଟାରୀ ଏବଂ ଯଶସ୍ୱୀ ବିଦ୍ୱାନ । ସେ ସ୍ୱାମୀଜୀଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ଲସ୍

Digitized by srujanika@gmail.com

ଆଞ୍ଜେଲ୍‌ରେ ଏକ ବକ୍ତୃତା କାର୍ଯ୍ୟକ୍ରମର ଆୟୋଜନ କରିଥିଲେ । ଏତଦ୍‌ବ୍ୟତୀତ କ୍ଲାସ୍‌ରୁମ୍ ଶିକ୍ଷା କାର୍ଯ୍ୟକ୍ରମରେ ସେ ଭାଗ ନେଉଥିଲେ । ତାଙ୍କର ବାର୍ତ୍ତା ଅତି ସରଳ ଥିଲା - ମନୁଷ୍ୟର ଦିବ୍ୟ ସ୍ୱଭାବକୁ କଦ୍ପିନକାଳେ ଭୁଲ ନାହିଁ, ସେ ଯେଉଁ ସ୍ତରରେ ଥାଉପଛେ ସେ ପ୍ରଥମେ ମଣିଷ । ଗୁରୁଦେବଙ୍କ ''ଜୀବ ହିଁ ଶିବ'' ମହାମନ୍ତ୍ରରେ ସେ ଦୀକ୍ଷିତ ସେଥିପାଇଁ ସବୁ ଜୀବ ତାଙ୍କ ଦୃଷ୍ଟିରେ ତ ଶିବ ।

ହୋମ୍ ଅଫ୍ ଟ୍ରୁଥ୍‌ରେ 'ହିଣ୍ଟସ୍ ଅନ୍ ପ୍ରାକ୍ଟିକାଲ ସ୍ପିରିଚ୍ୟୁଆଲିଟି' ଉପରେ ନିଜର ବକ୍ତବ୍ୟ ରଖି ସେ କହିଥିଲେ, ''ଦାତବ୍ୟ ଆଲୋକରେ ଆମେ ମନୁଷ୍ୟକୁ ସର୍ବଦା ମନୁଷ୍ୟ ଭଳି ଦେଖିବା ଉଚିତ । ସୁମଣିଷ ହେବା ଏତେ ସହଜ ନୁହେଁ । ବର୍ତ୍ତମାନ ତୁମେ କ'ଣ ? ଯେପର୍ଯ୍ୟନ୍ତ ମୁକ୍ତ ହୋଇନାହଁ ତୁମେ କେବଳ ଯନ୍ତ୍ରମାତ୍ର । ଯେହେତୁ ତୁମେ ଭଲ, ସେଥିପାଇଁ ତୁମେ ଗର୍ବିତ ହେବା ଉଚିତ କି ? ନିଶ୍ଚିତ ଭାବେ ନୁହେଁ । ତୁମେ ଭଲ ହୋଇଛ, କାରଣ ତୁମେ ଭଲ ହେବାକୁ ବାଧ ତାହା ବିନା ତୁମେ କିଛି କରିପାରିବ ନାହିଁ । ସେ ମନ୍ଦ ହୋଇଛି, କାରଣ ସେ ମନ୍ଦ ହେବାକୁ ବାଧ, ତାହାବିନା ସେ କିଛି କରି ପାରିବ ନାହିଁ । ଯଦି ତାଙ୍କ ଜାଗାରେ ତୁମେ ହୋଇଥାନ୍ତ, କିଏ ଜାଣେ, ତୁମେ କ'ଣ ହୋଇଥାନ୍ତ ! ରାସ୍ତା ପାର୍ଶ୍ୱସ୍ଥ କୋଠିରେ ବାଈ କିମ୍ବା କାରାଗାର ବକ୍ଷରେ ଚୋର ହେଉଛି ଖ୍ରୀଷ୍ଟ ଯିଏ ପ୍ରତି ମୁହୂର୍ତ୍ତରେ କ୍ରୁଶବିଦ୍ଧ ତୁମରି ପାଇଁ କାରଣ ତୁମେ ଜଣେ ଭଲ ମନୁଷ୍ୟ ହେବ । ଏହା ହିଁ ଭାରସାମ୍ୟ ରଖିବାର ନିୟମ ।

ସମସ୍ତ ଚୋର, ନରହତ୍ୟାକାରୀ, ସମସ୍ତ ଅବିଚାର, ଦୁର୍ବଳ, ଦୁଷ୍ଟ, ରାକ୍ଷସ, ସମସ୍ତେ ମୋର ଖ୍ରୀଷ୍ଟ ! ମୁଁ ଈଶ୍ୱର-ଖ୍ରୀଷ୍ଟ ଓ ରାକ୍ଷସ-ଖ୍ରୀଷ୍ଟଙ୍କୁ ପୂଜା କରେ । ତାହା ହିଁ ମୋର ସିଦ୍ଧାନ୍ତ, ତା'ବିନା ମୁଁ କିଛି କରିପାରିବି ନାହିଁ । ସନ୍ଥ ଓ ଈଶ୍ୱରଙ୍କ ପାଦରେ ମୋର ପ୍ରଣାମ ଏବଂ ଦୁଷ୍ଟ ଓ ସୈତାନଙ୍କ ପାଦରେ ବି ମୋର ପ୍ରଣାମ । ସେମାନେ ସମସ୍ତେ ମୋର ଗୁରୁ, ସମସ୍ତେ ମୋର ଆଧାତ୍ମିକ ପିତା, ଏବଂ ସମସ୍ତେ ମୋର ତ୍ରାଣକର୍ତ୍ତା । ମୁଁ ଜଣକ ଉପରେ ଅଭିଶାପ ବର୍ଷଣ କରିପାରେ ତଥାପି ତା'ର ବିଫଳତା ମୋ ଉପକାରରେ ଆସେ; ମୁଁ ଅନ୍ୟ ଜଣକୁ ଆଶୀର୍ବାଦ କରେ, ତଥାପି ତା'ର ଭଲକାମ ଦ୍ୱାରା ମୁଁ ଉପକୃତ ହୁଏ । ମୁଁ ଏଠାରେ ଠିଆ ହୋଇଛି ଯେପରି ସତ୍ୟ, ସେପରି ତାହା ବି ସତ୍ୟ । ଗଳିରେ ପଦଚାରଣରତ ମହିଳା ପ୍ରତି ମୋତେ ଘୃଣାପୂର୍ଣ୍ଣ ଦୃଷ୍ଟି ନିକ୍ଷେପ କରିବାକୁ ପଡ଼େ କାରଣ ସମାଜ ଏହା ଚାହେଁ । ସେ ବି ମୋର ତ୍ରାଣକର୍ତ୍ତା । ଗଳିକନ୍ଦିରେ ବୁଲୁଥିବା ମହିଳାମାନଙ୍କ ଯୋଗୁଁ ଅନ୍ୟ ମହିଳାଙ୍କର ସତୀତ୍ୱର କାରଣ ହୋଇଥାଏ । ତାହା ଆପଣ ଚିନ୍ତା କରନ୍ତୁ । ଏହି ପୁରୁଷ ଓ ମହିଳାଙ୍କର ପ୍ରଶ୍ନ ଉପରେ ଆପଣ ଚିନ୍ତା କରନ୍ତୁ । ଏହା ସତ୍ୟ - ନିଛକ, ସାହସପୂର୍ଣ୍ଣ ସତ୍ୟ ! ମୁଁ ଏହି ସଂସାରକୁ ଯେତେ ଅଧିକ ଦେଖୁଛି, ଯେତେ ସଂଖ୍ୟାର ପୁରୁଷ ଓ ମହିଳାମାନଙ୍କୁ ଦେଖୁଛି, ସେତେ ମୋର ବିଶ୍ୱାସ ଦୃଢ଼ତର ହେଉଛି । ମୁଁ କାହାକୁ ଦୋଷ ଦେବି ? ମୁଁ କାହାକୁ ପ୍ରଶଂସା କରିବି ? ଢାଲର ଦୁଇପାର୍ଶ୍ୱକୁ ଦେଖିବାକୁ ହେବ ।

ପ୍ରଚଣ୍ଡ ଅଦ୍ୱୈତର ସ୍ରୋତସ୍ୱିନୀ ନିର୍ଝରିଣୀ ଉପସ୍ଥିତ ଶ୍ରୋତାମଣ୍ଡଳୀଙ୍କର ହୃଦୟକୁ ସ୍ପର୍ଶ କଲା । ଚକିତ ନୟନରେ କିନ୍ତୁ ପ୍ରେମପୂର୍ଣ୍ଣ ହୃଦୟ ସହ ଚାହିଁଲେ ଗୈରିକ ବସନାବୃତ ତେଜସ୍ୱୀ ଭାରତୀୟ ସନ୍ନ୍ୟାସୀଙ୍କୁ - କିଏ ଏହି ବ୍ୟକ୍ତି ! ପୁଣି ଥରେ ଯୀଶୁଖ୍ରୀଷ୍ଟ ଆବିର୍ଭାବ ହେଲେ କି ? ବୁଝିବା

Digitized by srujanika@gmail.com

ଲୋକ ବୁଝିଗଲେ, ନ ବୁଝିବା ଲୋକ କାଲ ଆଗରେ ମୂଳା ଚୋବାଇଲା ଭଳି ଅନାଇଥିଲେ । ଶ୍ରୀଯୁକ୍ତ ବ୍ରାନ୍ଡବାଇ ପ୍ରଥମେ ଥିଲେ ସ୍ୱାମୀଜୀଙ୍କର ଜଣେ ଅନ୍ତରଙ୍ଗ ଅନୁଗାମୀ, କିନ୍ତୁ ସ୍ୱାମୀଜୀଙ୍କର ପ୍ରଚଣ୍ଡ ଅଦ୍ୱୈତ ଚିନ୍ତାଧାରାକୁ ବୁଝି ନ ପାରି ବିଦ୍ରୁପ କରି କହିଲେ, ''ସ୍ୱାମୀଜୀ, ସବୁଜିନିଷ ଯଦି ଏକ, ତେବେ ବନ୍ଧାକୋବି ଓ ମଣିଷ ଭିତରେ ପାର୍ଥକ୍ୟ କ'ଣ ? ଶାଣିତ୍ ପ୍ରତ୍ୟୁତ୍ତର ସ୍ୱାମୀଜୀଙ୍କ ମୁଖରୁ ନିଃସୃତ ହେଲା - ତୁମ ଗୋଡ଼ରେ ଛୁରିଟିଏ ଭୁଷି ଦିଅ, ତେବେ ତୁମେ ଜାଣିପାରିବ ପାର୍ଥକ୍ୟର ରେଖା ।

ବୁଝିବା ଲୋକ ଭିତରୁ ଶ୍ରୀମତୀ ହାନ୍ସବ୍ରଗ୍ ସ୍ୱାମୀଜୀଙ୍କ ପ୍ରଚଣ୍ଡ ଅଦ୍ୱୈତ ଚିନ୍ତାଧାରାରେ ଆଲୋକିତ ହୋଇ କହିଥିଲେ - ଆଧ୍ୟାତ୍ମବିଦ୍ୟାର ବହୁ ଗୁରୁ ଏବଂ ଛଳନାପୂର୍ଣ୍ଣ ପ୍ରଚାରକ ସ୍ୱାମୀଜୀଙ୍କୁ ଭର୍ତ୍ସନା କରୁଥିଲେ କାରଣ ସେମାନଙ୍କଠାରୁ ସେ ବହୁ ଗୁଣରେ ଉଚ୍ଚାଦର୍ଶର ବ୍ୟକ୍ତିତ୍ୱ ଥିଲେ ଏବଂ ବାସ୍ତବ ଆଧ୍ୟାତ୍ମ ବିଦ୍ୟା ଶିକ୍ଷା ମାଧ୍ୟମରେ ସେ ସେମାନଙ୍କର ଅଜ୍ଞ ବିଦ୍ୟାକୁ ପଦାରେ ପକାଇ ଦେଉଥିଲେ ଅଥବା ସେମାନଙ୍କର ଧର୍ମ ବ୍ୟବସାୟକୁ ନଷ୍ଟ କରିଦେଉଥିଲେ । ସେଥିପାଇଁ ତାଙ୍କୁ ପ୍ରତିକ୍ଷେତ୍ରରେ ବିରୋଧ କରିବା ସେମାନଙ୍କର ଏକ ଅଭ୍ୟାସ ହୋଇଯାଇଥିଲା ।'' ଏଠାରେ କହିବା ବାହୁଲ୍ୟ ଯେ ସ୍ୱାମୀଜୀ ଯେଉଁଠାକୁ ଯାଉଥିଲେ, ସବୁଠାରେ ଏକ ମହାନ୍ ଧାର୍ମିକ ଗୁରୁଭାବେ ସେ ସମାଦୃତ ହେଉଥିଲେ ।

- ୫ -

*ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ଏହି ବିଶ୍ୱର ଜଣେ ଧର୍ମପ୍ରବର୍ତ୍ତକଙ୍କ ମଧ୍ୟରେ ନିହିତ ପରମସତ୍ୟ, ଦିବ୍ୟତ୍ୱ ତଥା ଈଶ୍ୱରଙ୍କୁ ବୁଝିପାରିଛନ୍ତି ଏବଂ ଅନ୍ୟ କୌଣସି ଧର୍ମପ୍ରବର୍ତ୍ତକ ମଧ୍ୟରେ ନୁହେଁ ବୋଲି ଭାବନ୍ତି ସେମାନଙ୍କ ସମ୍ବନ୍ଧରେ ମୁଁ କହିବି ଯେ ବାସ୍ତବରେ ଆପଣ କାହା ଭିତରେ ନିହିତ ଦିବ୍ୟତ୍ୱକୁ ବୁଝିପାରି ନାହାନ୍ତି; ଆପଣ କେବଳ ପବିତ୍ରବାଣୀକୁ ଶୁଣି ଏକ ସମ୍ପ୍ରଦାୟ ନିଗଡ଼ ଭିତରେ ନିଜକୁ ବାନ୍ଧି ରଖିଛନ୍ତି, ଦଳୀୟ ରାଜନୀତିର ମତ ପରିପ୍ରେକ୍ଷୀରେ ଆପଣ ଯାହା କରନ୍ତି, ତାହାହିଁ ଆପଣ ଧର୍ମକ୍ଷେତ୍ରରେ କରୁଥିବାରୁ, ସେହି ପ୍ରକାର ଧର୍ମ ଧର୍ମଶୂନ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।*

୧୯୦୦, ଜାନୁଆରି ୧୨ ତାରିଖ ପରେ, ସ୍ୱାମୀଜୀ ନିକଟସ୍ଥ ସହର ପାଶାଡେନା ଅଭିମୁଖେ ଯାତ୍ରା କଲେ । ଲସ୍ ଏଞ୍ଜେଲ୍ସରେ ଯେଉଁ ତିନି ଭଉଣୀ ସ୍ୱାମୀଜୀଙ୍କ ଶ୍ରେଣୀଗୃହ ଶିକ୍ଷାଦାନ କାର୍ଯ୍ୟକ୍ରମରେ ଯୋଗ ଦେଉଥିଲେ, ସେମାନଙ୍କ ବାସଭବନରେ ସେ ଅବସ୍ଥାନ କଲେ । ସେ ବର୍ତ୍ତମାନ ପ୍ରାୟ ରୋଗମୁକ୍ତ । ପୂର୍ବବତ୍ ତାଙ୍କ ଶରୀରରେ ବଳ ସଞ୍ଚାର ହୋଇଛି । ସ୍ୱାମୀଜୀ ଖୁସିରେ ଏକଦା ଏଠାରେ କହିଥିଲେ ବର୍ତ୍ତମାନ ମୁଁ ସିଂହ ସଦୃଶ ଶକ୍ତିଶାଳୀ ଓ ଖେଚର ଭଳି କଠୋର ପରିଶ୍ରମୀ । ଏଠାରେ ପ୍ରତିଦିନ ସେ ବକ୍ତୃତା ପ୍ରଦାନ କରୁଥିଲେ । ''ବିଶ୍ୱର ମହାନ୍ ଗୁରୁଗଣ'' ସମ୍ବନ୍ଧରେ ଏକ ଯୁଗାନ୍ତକାରୀ ବକ୍ତୃତା ପ୍ରଦାନ କରି ସମସ୍ତଙ୍କ ମନ ଜିଣି ନେଇଥିଲେ :

Digitized by srujanika@gmail.com

''ଏହି ମହାନ୍ ଗୁରୁମାନେ ଆମ ପୃଥିବୀ ପୃଷ୍ଠରେ ଜୀବନ୍ତ ଓ ଚଳନ୍ତି ଈଶ୍ୱର । ଆମେ କାହାକୁ ପୂଜା କରିବା ଉଚିତ ? ମନରେ ଈଶ୍ୱରଙ୍କର ଏକ ଧାରଣା ସୃଷ୍ଟି କରିବା ଲାଗି ମୁଁ ଚେଷ୍ଟା କରେ, କିନ୍ତୁ ପରେ ଦେଖେ ଯେ ସତରେ କେଡ଼େ କ୍ଷୁଦ୍ର ଅସତ୍ୟ ଜିନିଷ ମୁଁ ସୃଷ୍ଟି କରୁଛି; ସେହି ଈଶ୍ୱରଙ୍କର ଉପାସନା କରିବା ଏକ ପାପ ହେବ । ମୁଁ ଆଖି ଖୋଲି ଚାହେଁ ଏବଂ ଦେଖେ ପୃଥିବୀର ଏହି ମହାନ୍ ଗୁରୁଙ୍କର ବାସ୍ତବ ଜୀବନକୁ । ଯେଉଁ ଈଶ୍ୱରଙ୍କ ଧାରଣା ମୁଁ ମନରେ ସୃଷ୍ଟି କରେ, ସେମାନଙ୍କଠାରୁ ଏମାନେ ବହୁ ଉଚ୍ଚରେ । ମୋ ଠାରୁ ଯିଏ ଧନ ଅପହରଣ କରିନିଏ ଏବଂ ଯାହାକୁ ମୁଁ କାରାଗାର ପଠାଇଦିଏ, ସେହି ବ୍ୟକ୍ତିକ୍ଷେତ୍ରରେ କେଉଁ ପ୍ରକାର କରୁଣାର ଧାରଣା ମୋ ଭଳି ବ୍ୟକ୍ତି ପାଖରୁ ସୃଷ୍ଟି ହୋଇପାରିବ ? ଏବଂ କ୍ଷମାର ଉଚ୍ଚତମ ଧାରଣା କ'ଣ ମୋ ଭିତରୁ ଜନ୍ମ ନେଇପାରିବ ? ମୋଠାରୁ ଅଧିକ କିଛି ହେବନାହିଁ ।

ଆପଣମାନଙ୍କ ମଧ୍ୟରୁ କିଏ ନିଜ ଶରୀର ବାହାରକୁ ଯାଇପାରିବ ? ଆପଣମାନଙ୍କ ମଧ୍ୟରୁ କିଏ ନିଜ ମନ ବାହାରକୁ ଲମ୍ଫ ପ୍ରଦାନ କରିପାରିବ ? ଆପଣମାନଙ୍କ ଭିତରୁ କେହିବି ଜଣେ ଏହା କରିପାରିବେ ନାହିଁ । ତୁମ ନିଜର ପ୍ରେମ ବ୍ୟତୀତ କେଉଁ ଦିବ୍ୟ ପ୍ରେମ ତମେ ସୃଷ୍ଟି କରିପାରିବ ? ଯେଉଁ ବିଷୟକୁ ଆମେ ଅଙ୍ଗେ ନିଭାଇ ନାହାନ୍ତି କିମ୍ବା ଆମର ଅନୁଭୂତିର ବାହାରେ, ସେହି ସମ୍ବନ୍ଧରେ ଆମେ ଧାରଣା ସୃଷ୍ଟି କରିପାରିବା ନାହିଁ । ସୁତରାଂ ଈଶ୍ୱରଙ୍କ ସମ୍ବନ୍ଧରେ ଧାରଣା ସୃଷ୍ଟି କରିବାର ପ୍ରୟାସ ମୋର ପ୍ରତ୍ୟେକ କ୍ଷେତ୍ରରେ ବିଫଳ ହେବ ହିଁ ହେବ । ତେଣୁ ଏଠାରେ ମୁଁ ଆପଣମାନଙ୍କ ସମ୍ମୁଖରେ ନିଛକ ସତ ଉପସ୍ଥାପନ କରୁଛି, ଯେଉଁଥିରେ କୌଣସି ଆଦର୍ଶବାଦ ନାହିଁ - ପ୍ରେମ, ଦୟା, ପବିତ୍ରତାର ବାସ୍ତବ ସତ୍ୟ ଏପରି ଯାହାର ଧାରଣା ମୁଁ ସୃଷ୍ଟି କରିପାରିନାହିଁ ।

ଏହି ମହାନ୍ ବ୍ୟକ୍ତିଙ୍କ ପାଦତଳେ ପଡ଼ି ମୁଁ ଯଦି ସେମାନଙ୍କର ଉପାସନା କରେ, ସେମାନଙ୍କୁ ପୂଜା କରେ ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଏହାଠୁଁ ଅଧିକ କେହି କ'ଣ କରିପାରିବ ? ମୁଁ ଏଭଳି ବ୍ୟକ୍ତି ଦେଖିବାକୁ ଚାହେଁ ଯିଏ ଯେକୌଣସି କାର୍ଯ୍ୟ କରିପାରିବେ ବରଂ ସେ ଯେତେ ଅଧିକ କୁହନ୍ତୁ ପଛେ । ଖାଲି କହିବା ପ୍ରକୃତରେ ବାସ୍ତବତା ନୁହେଁ । ଈଶ୍ୱର ଓ ନୈର୍ବ୍ୟକ୍ତିକ ସମ୍ବନ୍ଧରେ କହିବା ଏବଂ ଅନ୍ୟ କୌଣସି ବିଷୟ ଉପରେ କହିବା ଅବଶ୍ୟ ଅତ୍ୟନ୍ତ ଉତ୍ତମ କଥା, କିନ୍ତୁ ମନୁଷ୍ୟ ଈଶ୍ୱରମାନେ ସମସ୍ତ ରାଷ୍ଟ୍ର ଓ ଜାତିର ପ୍ରକୃତ ଈଶ୍ୱର । ଏହି ଦିବ୍ୟ ମାନବଗଣ ସଦା ପୂଜିତ ଏବଂ ଯେପର୍ଯ୍ୟନ୍ତ ମନୁଷ୍ୟ ଭାବେ ରହିଥିବ, ସେପର୍ଯ୍ୟନ୍ତ ସେମାନେ ପୂଜିତ ହେଉଥିବେ । ତାହାରି ମଧ୍ୟରେ ରହିଛି ଆମର ପରମସତ୍ୟ ପ୍ରତି ବିଶ୍ୱାସ ଓ ଆଶା । ଅନ୍ୟ ସବୁ କେବଳ ଆଧ୍ୟାତ୍ମିକ ସଞ୍ଚା ।

ମୁଁ ଆପଣମାନଙ୍କୁ ଯାହା କହିବି, ତା'ର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ହେଉଛି ଯେ ସେହି ମହାନ ଐଶ୍ୱରିକ ମାନବଗଣଙ୍କୁ ମୋ ଜୀବନରେ ପୂଜା କରିବା ସମ୍ଭବ ବୋଲି ମୁଁ ଜାଣିଛି ଏବଂ ଭବିଷ୍ୟତରେ ଯେଉଁମାନେ ଆଗମନ କରିବେ, ସେମାନଙ୍କୁ ବି ପୂଜା କରିବା ଲାଗି ମୁଁ ପ୍ରସ୍ତୁତ । ପୁତ୍ର ଯେଉଁ ପୋଷାକ ପରିଧାନ କରି ନିଜର ମା'ଙ୍କ ସମ୍ମୁଖକୁ ଆସିଲେ, ମା ଚିହ୍ନିପାରେ ନିଜର ପୁତ୍ରକୁ; ଯେଉଁ ମା ଚିହ୍ନିପାରେ ନାହିଁ, ମୁଁ ନିଶ୍ଚୟ କହିବି ଯେ, ସେହି ବ୍ୟକ୍ତି କେବେ ବି ତାଙ୍କର ପୁତ୍ର ନୁହେଁ । ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ଏହି ବିଶ୍ୱର ଜଣେ ଧର୍ମପ୍ରବର୍ତ୍ତକଙ୍କ ମଧ୍ୟରେ ନିହିତ

Digitized by srujanika@gmail.com

ପରମସତ୍ୟ, ଦିବ୍ୟତ୍ୱ ତଥା ଈଶ୍ୱରଙ୍କୁ ବୁଝିପାରିଛନ୍ତି ଏବଂ ଅନ୍ୟ କୌଣସି ଧର୍ମପ୍ରବର୍ତ୍ତକ ମଧ୍ୟରେ ନୁହେଁ ବୋଲି ଭାବନ୍ତି ସେମାନଙ୍କ ସମ୍ବନ୍ଧରେ ମୁଁ କହିବି ଯେ ବାସ୍ତବରେ ଆପଣ କାହା ଭିତରେ ନିହିତ ଦିବ୍ୟତ୍ୱକୁ ବୁଝିପାରି ନାହାନ୍ତି; ଆପଣ କେବଳ ପବିତ୍ରବାଣୀକୁ ଶୁଣି ଏକ ସମ୍ପ୍ରଦାୟ ନିଗଡ଼ ଭିତରେ ନିଜକୁ ବାନ୍ଧି ରଖିଛନ୍ତି, ଦଳୀୟ ରାଜନୀତିର ମତ ପରିପ୍ରେକ୍ଷୀରେ ଆପଣ ଯାହା କରନ୍ତି, ତାହାହିଁ ଆପଣ ଧର୍ମକ୍ଷେତ୍ରରେ କରୁଥିବାରୁ, ସେହି ପ୍ରକାର ଧର୍ମ ଧର୍ମଶୂନ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଆଉ କେହି ମହାନ୍ ଧର୍ମ ପ୍ରବର୍ତ୍ତକ ପୁନଶ୍ଚ ଆଗମନ କରିବେ କି ? ଏହି ସଂସାରକୁ ବହୁ ଧର୍ମ ପ୍ରବର୍ତ୍ତକ ନିଶ୍ଚିତ ଆଗମନ କରିବେ । ଆପଣ ସେଥିପାଇଁ ଅପେକ୍ଷା ନ କରନ୍ତୁ । ମୋର ଇଚ୍ଛା, ଆପଣମାନଙ୍କ ଭିତରୁ ପ୍ରତ୍ୟେକ ଏହି ପୁରାତନ ଧର୍ମକୁ ଆଧାରିତ କରି ନୂତନ ଧର୍ମର ଜଣେ ଲେଖାଏଁ ଧର୍ମ ପ୍ରବର୍ତ୍ତକ ହୁଅନ୍ତୁ । ସମସ୍ତ ପୁରାତନ ବାଣୀକୁ ଏକାଠି କରି ଏବଂ ନିଜର ଆତ୍ମୋପଲବ୍ଧିକୁ ତାହାସହ ମିଶାଇ ଅନ୍ୟମାନଙ୍କ ନିମନ୍ତେ ଆପଣ ଜଣେ ଧର୍ମପ୍ରବର୍ତ୍ତକ ହୁଅନ୍ତୁ । ପ୍ରତ୍ୟେକ ଆଧ୍ୟାତ୍ମିକ ଗୁରୁ ଅଥବା ଧର୍ମପ୍ରବର୍ତ୍ତକ ମହାନ୍; ପ୍ରତ୍ୟେକ ଆମ ପାଇଁ କିଛି ଦେଇ ଯାଇଛନ୍ତି, ସେମାନେ ସମସ୍ତେ ଈଶ୍ୱର । ଆମେ ସେମାନଙ୍କୁ ପ୍ରଣାମ କରୁ, ଆମେ ସେମାନଙ୍କର ସେବକ ମାତ୍ର ଏବଂ ଠିକ୍ ସେଭଳି ମଧ୍ୟ ଆମେ ନିଜକୁ ପ୍ରଣାମ କରିଥାଉ, କାରଣ ସେମାନେ ଯଦି ଈଶ୍ୱରଙ୍କର ଧର୍ମ ପ୍ରବର୍ତ୍ତକ ଓ ସନ୍ତାନ, ଆମେ ବି ସେମାନଙ୍କ ଭଳି ଈଶ୍ୱରଙ୍କ ସନ୍ତାନ । ସେମାନେ ସଂପୂର୍ଣ୍ଣତା ଲାଭ କରିଥିଲେ, ବର୍ତ୍ତମାନ ଆମେ ତାହା ଲାଭ କରିବାକୁ ଉଦ୍ୟତ । ଯୀଶୁଙ୍କ ବାଣୀ ସ୍ମରଣ କରନ୍ତୁ ''ଆପଣଙ୍କଠାରେ ରହିଛି ସ୍ୱର୍ଗରାଜ୍ୟ ।'' ଏହି ମୁହୂର୍ତ୍ତରେ ଚାଲ ଆମେ ପ୍ରତ୍ୟେକ ଏକ ସଂକଳ୍ପ ନେବା, ''ମୁଁ ଜଣେ ଧର୍ମପ୍ରବର୍ତ୍ତକ ହେବି, ମୁଁ ଆଲୋକର ଦୂତ ହେବି, ମୁଁ ଈଶ୍ୱରଙ୍କର ସନ୍ତାନ ହେବି, ମୁଁ ସ୍ୱୟଂ ଈଶ୍ୱର ହେବି ।''

- ୬ -

*ମୋ ଧର୍ମ ଠିକ୍, ଅନ୍ୟ ଧର୍ମ ଠିକ୍ ନୁହେଁ, ମୋ ଗୁରୁ ବା ଧର୍ମପ୍ରବର୍ତ୍ତକ ଈଶ୍ୱରଙ୍କର ଖାସ୍ ଦୂତ ବା ପୁତ୍ର ଭଳି ଅବାଞ୍ଛିତ ମାନସିକତା କେବଳ ଧର୍ମର ଉପରଠାଉରିଆ ଜ୍ଞାନରୁ ଜାତ ହୋଇଥାଏ । ସେଥିପାଇଁ ସ୍ୱାମୀଜୀ କହୁଛନ୍ତି ଯେ ପ୍ରତ୍ୟେକ ମନୁଷ୍ୟ ସ୍ୱୟଂ ଏକ ଗୁରୁ ହେଉ ଏବଂ ତା'ର ନୂତନ ଧର୍ମ ସମସ୍ତ ପୁରାତନ ଧର୍ମକୁ ଆପଣେଇ ନେଇ ଆବିର୍ଭୂତ ହେଉ ।*

ବିଶ୍ୱର ପ୍ରତ୍ୟେକ ଧର୍ମର ଚିନ୍ତାଧାରାକୁ ସେ ଗଭୀର ଭାବେ ଗ୍ରହଣ କରୁଥିଲେ ଏବଂ ପ୍ରତ୍ୟେକ ଧର୍ମରେ ପରମସତ୍ୟ, ଦିବ୍ୟତ୍ୱ ଓ ଈଶ୍ୱରଙ୍କ ଅସ୍ତିତ୍ୱ ନିହିତ ବୋଲି ତାଙ୍କର ଅଟଳ ବିଶ୍ୱାସ ଥିଲା । ଗୋଟିଏ ଧର୍ମ ଆଶ୍ରୟ କରି ଜଣେ ମନୁଷ୍ୟ ସେହି ଧର୍ମର ତତ୍ତ୍ୱ ନିଜର ଅଣୁ-ପରମାଣୁରେ ଉପଲବ୍ଧି କଲେ, ସେ ଅନ୍ୟ ଧର୍ମର ମହତ୍ତ୍ୱ ବୁଝିପାରିବେ ଏବଂ ସମସ୍ତ ଧର୍ମକୁ ସମ୍ମାନ ଦେବେ । ସ୍ୱାମୀଜୀ ସ୍ପଷ୍ଟ ଭାଷାରେ ବାରମ୍ବାର କହୁଛନ୍ତି ଯେ ଜଣେ ନିଜ ଧର୍ମରେ ଅଖଣ୍ଡ

Digitized by srujanika@gmail.com

ବିଶ୍ୱାସ ରଖୁ, ଅନ୍ୟ ଧର୍ମରେ ବରଂ ତା'ର ବିଶ୍ୱାସ ନ ଥାଉ, ସେଥିରେ ଯା'ଆସେ ନାହିଁ, କିନ୍ତୁ ଅନ୍ୟଧର୍ମ ପ୍ରତି ଘୃଣା, ଅସହନଶୀଳତା, ବିଦ୍ୱେଷ ତା ମନରେ ଉଦ୍ରେକ ନ ହେଉ । କାରଣ ତାହାହେଲେ, ମାନବ ସମାଜରେ ଶାନ୍ତି ରହିବ ନାହିଁ ବରଂ ପରସ୍ପର କଳହ ଓ ସଂଘର୍ଷରେ ମନୁଷ୍ୟ ଜୀବନ ବୃଥାରେ କଟିବ । "ମୋ ଧର୍ମ ଠିକ୍, ଅନ୍ୟ ଧର୍ମ ଠିକ୍ ନୁହେଁ, ମୋ ଗୁରୁ ବା ଧର୍ମପ୍ରବର୍ତ୍ତକ ଈଶ୍ୱରଙ୍କର ଖାସ୍ ଦୂତ ବା ପୁତ୍ର ଭଳି ଅବାଞ୍ଛିତ ମାନସିକତା କେବଳ ଧର୍ମର ଉପରଠାଉରିଆ ଜ୍ଞାନରୁ ଜାତ ହୋଇଥାଏ । ସେଥିପାଇଁ ସ୍ୱାମୀଜୀ କହୁଛନ୍ତି ଯେ ପ୍ରତ୍ୟେକ ମନୁଷ୍ୟ ସ୍ୱୟଂ ଏକ ଗୁରୁ ହେଉ ଏବଂ ତା'ର ନୂତନ ଧର୍ମ ସମସ୍ତ ପୁରାତନ ଧର୍ମକୁ ଆପଣେଇ ନେଇ ଆବିର୍ଭୂତ ହେଉ ।

ଲସ୍ ଏଞ୍ଜେଲ୍ସ, ପାଶେଡୋନା, କାଲିଫର୍ଣ୍ଣିଆ, ଓକଲେଣ୍ଡ, ସାନଫ୍ରାନ୍ସିସ୍କୋରେ ସ୍ୱାମୀଜୀଙ୍କର ବକ୍ତବ୍ୟ ବିଭିନ୍ନ ବିଷୟବସ୍ତୁ ଉପରେ କେନ୍ଦ୍ରିତ ଥିଲା ଏବଂ ବହୁ ଲୋକ ତାଙ୍କ ମୁଖନିଃସୃତ ପଦେକଥା ଶୁଣିବା ପାଇଁ ଅତ୍ୟନ୍ତ ଉତ୍ସାହିତ ହୋଇ ପଡୁଥିଲେ । ତାଙ୍କର ତେଜସ୍ୱୀ ଯୁବ ସୁଲଭ ରୂପ ଏବଂ ଶ୍ରୋତାମାନଙ୍କୁ ଆପଣେଇ ନେବାର କୌଶଳ ଉପସ୍ଥିତ ଜନତାଙ୍କର ମନକୁ କିଛି ସମୟ ପାଇଁ ଏକ ଭାବାତୀତ ରାଜ୍ୟକୁ ନେଇଯାଉଥିଲା । ସେ ଯେତେବେଳେ ସଭାମଞ୍ଚରେ ଦଣ୍ଡାୟମାନ ହୋଇ କିମ୍ବା ଘରୋଇ ଆଲୋଚନା ବୈଠକରେ ଆସୀନ ହୋଇ, ସମବେତ ଜନତାଙ୍କୁ ଚାହିଁ କହୁଥିଲେ, "ଆପଣମାନଙ୍କର ମୁଖମଣ୍ଡଳ ମୋର ଅତି ପ୍ରିୟ" ...ସମସ୍ତଙ୍କ ଭିତରେ ଈଶ୍ୱର ବିରାଜିତ" କିମ୍ବା "ଏପରିକି ସବୁଠାରୁ ମନ୍ଦବ୍ୟକ୍ତି ମଧ୍ୟ ମା'ଙ୍କର ସନ୍ତାନ" କିମ୍ବା "ବିଶ୍ୱ ଭଲ ହେଉ କିମ୍ବା ମନ୍ଦ, ସବୁ ଈଶ୍ୱରଙ୍କ ଲୀଳା", ସେତେବେଳେ ତାଙ୍କର ମୁଖମଣ୍ଡଳ ଏଭଳି ଦୀପ୍ତିମନ୍ତ ଏବଂ ଭାଷାର ଶବ୍ଦ ଓ ସ୍ୱର ଏଭଳି ଶ୍ରୁତିମଧୁର ହେଉଥିଲା ଯେ ମୁହୂର୍ତ୍ତକ ପାଇଁ ଶ୍ରୋତାର ଚେତନାରେ ଖେଳାଇ ଦେଉଥିଲା ଏକ ଅବ୍ୟକ୍ତ ଶିହରଣ ଓ ଆନନ୍ଦ । ଏତଦ୍‌ବ୍ୟତୀତ ତାଙ୍କର କଥାକୁହା ଚକ୍ଷୁଦ୍ୱୟ, ପ୍ରକାଶମୟ ମୁଖମଣ୍ଡଳର ଔଜ୍ଜଲ୍ୟ ଏବଂ କହିବାର ଭାବଭଙ୍ଗୀ ସହିତ ଗମ୍ଭୀର ସଂସ୍କୃତ ଉଚ୍ଚାରଣ ଶ୍ରୋତାଙ୍କ ମନରେ ଅଲିଭା ଦାଗ ଛାଡ଼ି ଦେଉଥିଲା ।

- ୭ -

*ବକ୍ତୃତା ଏକ କଳା । ଅଭ୍ୟାସବଳରେ ଜଣେ ଏଥିରେ ଉତ୍କର୍ଷ ଲାଭ କରିପାରିବ । ଶ୍ରୋତାଙ୍କୁ ସେ ସମ୍ମୋହିତ କରିପାରିବ । କିନ୍ତୁ କେତେ କାଳ ? କିନ୍ତୁ ଯେଉଁ ବ୍ୟକ୍ତି ଈଶ୍ୱରଙ୍କୁ ଦର୍ଶନ କରିଥିବେ କିମ୍ବା ଆତ୍ମୋପଲବ୍ଧି କରିଥିବେ, ସେହି ବ୍ୟକ୍ତି ସାଧାରଣ ବ୍ୟକ୍ତି ହୋଇ ରହିବେ ନାହିଁ, ତାଙ୍କର କଥା ନୁହେଁ ସେହି ବକ୍ତା ସ୍ୱୟଂ ଶ୍ରୋତାଙ୍କ ଭିତରକୁ ପଶିଯିବେ । ରେଭେରେଣ୍ଡ ମିଲ୍ସ ଏହାର ଏକ ଜ୍ୱଳନ୍ତ ପ୍ରମାଣ ।*

ଓକଲେଣ୍ଡର ୟୁନିଟେରିଆନ୍ ଚର୍ଚ୍ଚର ଧାର୍ମିକ ନେତା ରେଭେରେଣ୍ଡ ବି.ଏଫ ମିଲ୍ସ ସିକାଗୋସ୍ଥିତ ବିଶ୍ୱ ଧର୍ମ ମହାସମ୍ମିଳନୀରେ ସ୍ୱାମୀଜୀଙ୍କ ସହିତ ବକ୍ତୃତା ଦେଇଥିଲେ ଏବଂ ତାଙ୍କର

Digitized by srujanika@gmail.com

ବାଗ୍ମୀତା ଓ ତାତ୍ତ୍ୱିକ ଭାଷଣରେ ଅତୀବ ପ୍ରଭାବିତ ହୋଇଥିଲେ । ସ୍ୱାମୀଜୀଙ୍କର ଆଗମନ ସମ୍ବାଦ ପାଇଁ ସେ ଓକ୍‌ଲେଣ୍ଡରେ ଏକ ଧର୍ମ ସଭାର ଆୟୋଜନ କଲେ । ଉକ୍ତ ସଭା ୧୯୦୦ ଖ୍ରୀଷ୍ଟାବ୍ଦ ଜାନୁଆରି ଓ ଫେବୃଆରି ମାସ ଭିତରେ ଆଠଟି ରବିବାର ସନ୍ଧ୍ୟାରେ ଅନୁଷ୍ଠିତ ହୋଇଥିଲା ଏବଂ ବିଭିନ୍ନ ଧର୍ମ ସଂପ୍ରଦାୟର ମୁଖ୍ୟ ଏହି ସଭାରେ ନିଜ ନିଜର ମତ ଉପସ୍ଥାପନ କରିଥିଲେ । ବହୁ ବୁଦ୍ଧିଜୀବୀ ଓ ଧାର୍ମିକ ନେତା ସ୍ୱାମୀଜୀଙ୍କର ବେଦାନ୍ତ ଦର୍ଶନରେ ଅଭିମନ୍ତ୍ରିତ ହେବାକୁ ସୁଯୋଗ ପାଇଥିଲେ । ଶ୍ରୀଯୁକ୍ତ ମିଲ୍ସ ସ୍ୱୀକାର କରିଥିଲେ ଯେ ସ୍ୱାମୀଜୀଙ୍କର ବିଶାଳ ବୌଦ୍ଧିକତା ସମ୍ମୁଖରେ ଆମର ପ୍ରସିଦ୍ଧ ବିଶ୍ୱ ବିଦ୍ୟାଳୟର ପ୍ରଫେସରମାନେ କେବଳ ଶିଶୁ ଭଳି ପ୍ରତୀୟମାନ ହେବେ । ସେହିଭଳି ଶ୍ରୀଯୁକ୍ତ ଥୋମାସ୍ ଆଲାନ୍ ତାଙ୍କର ବକ୍ତବ୍ୟ ଶୁଣି ବିସ୍ମୟବିମୂଢ଼ କଣ୍ଠରେ ତାଙ୍କ ପତ୍ନୀଙ୍କୁ କହିଥିଲେ, ‘‘ମୁଁ ଆଜି ଜଣେ ମନୁଷ୍ୟଠାରୁ ଶୁଣିନାହିଁ, ବରଂ ସ୍ୱୟଂ ଈଶ୍ୱରଙ୍କ କଣ୍ଠରୁ ଶୁଣିଲି ।’’

ବକ୍ତୃତା ଏକ କଳା । ଅଭ୍ୟାସବଳରେ ଜଣେ ଏଥିରେ ଉତ୍କର୍ଷ ଲାଭ କରିପାରିବ । ଶ୍ରୋତାଙ୍କୁ ସେ ସମ୍ମୋହିତ କରିପାରିବ । କିନ୍ତୁ କେତେ କାଳ ? କିନ୍ତୁ ଯେଉଁ ବ୍ୟକ୍ତି ଈଶ୍ୱରଙ୍କୁ ଦର୍ଶନ କରିଥିବେ କିମ୍ବା ଆତ୍ମୋପଲବ୍ଧି କରିଥିବେ, ସେହି ବ୍ୟକ୍ତି ସାଧାରଣ ବ୍ୟକ୍ତି ହୋଇ ରହିବେ ନାହିଁ, ତାଙ୍କର କଥା ନୁହେଁ ସେହି ବକ୍ତା ସ୍ୱୟଂ ଶ୍ରୋତାଙ୍କ ଭିତରକୁ ପଶିଯିବେ । ରେଭେରେଣ୍ଡ ମିଲ୍ସ ଏହାର ଏକ ଜ୍ୱଳନ୍ତ ପ୍ରମାଣ । ଶ୍ରୀମତୀ ହାନ୍ସବ୍ରୋଗଙ୍କୁ ସ୍ୱାମୀଜୀଙ୍କ ବାଣୀ ଶୁଣିବାପରେ ସେ କହିଥିଲେ, ‘‘ଏହି ବ୍ୟକ୍ତି ମୋ ଜୀବନକୁ ପରିବର୍ତ୍ତନ କରିଦେଲେ ।’’ ସାଧାରଣତଃ ପ୍ରଶ୍ନ ଉଠେ ଯେ ସ୍ୱାମୀଜୀ ଏଭଳି କ’ଣ କହୁଥିଲେ ଯେ ସେମାନଙ୍କ ଖ୍ରୀଷ୍ଟଧର୍ମ ପ୍ରଭାବିତ ମାନସିକତାରେ ପରିବର୍ତ୍ତନ ଘଟାଇ ପାରୁଥିଲା । ସେ କ’ଣ ଏକ ନୂତନ ଧର୍ମର ପ୍ରବର୍ତ୍ତକ ଥିଲେ ? କେବେ ନୁହେଁ । ଏଠାରେ କହିବା ବାହୁଲ୍ୟଯେ  ବିଶ୍ୱର ପ୍ରତ୍ୟେକ ଧର୍ମ ପ୍ରତି ସ୍ୱାମୀଜୀଙ୍କର ଥିଲା ପୂର୍ଣ୍ଣବିଶ୍ୱାସ ଓ ଶ୍ରଦ୍ଧା, କିନ୍ତୁ ଧର୍ମରେ ବିଦ୍ୱେଷଭାବ ଓ ସଂକୀର୍ଣ୍ଣମନାକୁ ସେ ଆଦୌ ସହ୍ୟ କରିପାରୁ ନ ଥିଲେ, କାରଣ ସେ ଜାଣିଥିଲେ ଯେ ଏତାଦୃଶ ଧାର୍ମିକ ସଂଘର୍ଷ ଓ ସଂଘାତ ଯୋଗୁଁ ମାନବ ସମାଜ ଅସୂୟା, ଈର୍ଷାର ଚୂଡ଼ାନ୍ତ ଅରାଜକତା ଆଡ଼କୁ ଏକମୁହାଁ ହୋଇ ଧାଇଁବ । ପୂର୍ବରୁ ଏହା ହୋଇଥିଲା, ବର୍ତ୍ତମାନ ବି ହେଉଛି ଏବଂ ଭବିଷ୍ୟତରେ ପୃଥିବୀ ଯେତିକି ଯେତିକି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାରେ ସମୃଦ୍ଧ ହେବ, ସେତିକି ଅନିଶ୍ଚୟତା ଓ ଅସ୍ଥିରତାର ବଳୟ ଭିତରେ ଖାଲି ଦୋହଲିବ । ଭବିଷ୍ୟତରେ ବିଜ୍ଞାନର ଅଭୂତପୂର୍ବ ଅଗ୍ରଗତି ସତ୍ତ୍ୱେ, ଏକମୁହାଁ ହୋଇ ଧାଉଁଥିବା ଧର୍ମଗୁଡ଼ିକ ବିଶ୍ୱରେ ସଂହତି ସ୍ଥାପନ କରିପାରିବେ ନାହିଁ । କାରଣ ଧର୍ମକୁ ଭିତ୍ତିକରି କ୍ଷମତା ଲୋଭ, ପ୍ରାଧାନ୍ୟ ଲାଭ, ସାମ୍ରାଜ୍ୟ ବିସ୍ତାର ଏବଂ ପ୍ରତିଦ୍ୱନ୍ଦିତା ମୋହରେ ମାନବ ସମାଜ ଛନ୍ଦିହୋଇ ଖାଲି ଛଟପଟ ହେବ । ସେଥିପାଇଁ ଧର୍ମ ଧର୍ମ ଭିତରେ ସମନ୍ୱୟ ଆବଶ୍ୟକ ।



Digitized by srujanika@gmail.com

॥ ଅଣଚାଳିଶ ॥

# ବିଦେଶ ଭୂମିରେ ଅଦ୍ୱୈତ ବେଦାନ୍ତର ଗର୍ଜନ

ଏହି ସମନ୍ୱୟ କିପରି ସମ୍ଭବ ହେବ ? ସର୍ବଧର୍ମର ଜନନୀ ଭାରତବର୍ଷ ଏହି କ୍ଷେତ୍ରରେ ନେତୃତ୍ୱ ନେଲେ ବିଶ୍ୱରେ ସର୍ବଧର୍ମ ସମନ୍ୱୟ ହୋଇପାରିବ ବୋଲି ସ୍ୱାମୀଜୀଙ୍କର ଦୃଢ଼ ବିଶ୍ୱାସ ଥିଲା । କାହିଁକିନା ସର୍ବଧର୍ମ ସମନ୍ୱୟର ଜନନୀ ହେଉଛି ଭାରତବର୍ଷ । ବେଦାନ୍ତ, ଉପନିଷଦର ମୂଳପିଣ୍ଡ ଏବଂ ମାନବୀୟ ଜ୍ଞାନର ଉତ୍କର୍ଷ । ବେଦାନ୍ତ କେବଳ ଧର୍ମକୁ ଯୋଡ଼େ ନାହିଁ ବରଂ ସମସ୍ତ ମନୁଷ୍ୟକୁ ଏକ ସୂତ୍ରରେ ବାନ୍ଧି ରଖେ । ସେହି ମହିମାମୟ ଅଦ୍ୱୈତ ବେଦାନ୍ତର ବାଣୀ ଯେତେବେଳେ ନିଃସୃତ ହେଉଥିଲା ସ୍ୱାମୀଜୀଙ୍କ ମୁଖରୁ, ଆମେରିକାବାସୀ କେବଳ ନୁହଁନ୍ତି, ବରଂ ୟୁରୋପବାସୀ ତଥା ସାଂପ୍ରଦାୟିକ ନିଗଡ଼ ଭିତରେ ଆବଦ୍ଧ ଭାରତୀୟଙ୍କ ଚେତନାକୁ ତାହା ଶରବିଦ୍ଧ କରୁଥିଲା । ସେମାନଙ୍କ ଭିତରେ ପରିବର୍ତ୍ତନ ଘଟୁଥିଲା ।

ସ୍ୱାମୀଜୀ ଏହି ଧରାପୃଷ୍ଠରୁ ବର୍ତ୍ତମାନ ପ୍ରାୟ ଏକଶହ ଚାରିବର୍ଷ ହେଲା ବିଦାୟ ନେଲେଣି । ଏକବିଂଶ ଶତାବ୍ଦୀର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଶ୍ରେଷ୍ଠ ବୁଦ୍ଧିସମ୍ପନ୍ନ ମାନବ ଯେତେବେଳେ ତାଙ୍କର ସେହି ଅଦ୍ୱୈତ ବେଦାନ୍ତର ବାଣୀ ଶୁଣନ୍ତି ବର୍ତ୍ତମାନ ବି ସେମାନଙ୍କ ହୃଦୟ ହେଉଛି ଶିହରିତ ଏବଂ ଜ୍ଞାନ ଆଲୋକିତ ଏବଂ ସେମାନେ ଚାହାଁନ୍ତି ବିସ୍ମିତ ନୟନରେ ସେହି ପରମପୁରୁଷ ବିଦ୍ରୋହୀ ସନ୍ନ୍ୟାସୀ ବିବେକାନନ୍ଦଙ୍କୁ । ତାଙ୍କର ଆଧୁନିକ ବିଶ୍ୱ ପାଇଁ ବେଦାନ୍ତର ବାର୍ତ୍ତା ଯାହା ସେ ଆମେରିକାରେ କହିଥିଲେ, ବର୍ତ୍ତମାନ କିପରି ଏକ ବିଂଶ ଶତାବ୍ଦୀର ତାର୍କିକ ଓ ବୈଜ୍ଞାନିକ ମନକୁ ଝଙ୍କୁରିତ କରି ଇନ୍ଦ୍ରିୟାତୀତ ରାଜ୍ୟ ଅଭିମୁଖେ ନେଇଯାଉଛି !

ବେଦାନ୍ତର ବିଶାଳତା ଭିତରକୁ ଲମ୍ଫ ପ୍ରଦାନ କରି ସ୍ୱାମୀଜୀ ଆମେରିକାବାସୀଙ୍କୁ ଏକ ସଭାରେ କହିଥିଲେ, ''ଏହି ଆମେରିକା ଦେଶରେ ସମ୍ରାଟ ଆପଣମାନଙ୍କ ମଧ୍ୟରୁ ପ୍ରତ୍ୟେକ ହୃଦୟରେ ବିଜେ ହୋଇଛନ୍ତି । ଏହି ଦେଶରେ ଆପଣ ସମସ୍ତେ ରାଜା । ସୁତରାଂ ବେଦାନ୍ତ ଧର୍ମ ଜଗତରେ ଆପଣ ସମସ୍ତେ ଇଶ୍ୱର । ଗୋଟିଏ ରାଜା ପର୍ଯ୍ୟାପ୍ତ ନୁହେଁ । ଆପଣ ସମସ୍ତେ ଈଶ୍ୱର, ତାହାହିଁ ଆମ ବେଦାନ୍ତ କହିଥାଏ ।''

ସେଥିପାଇଁ ତ ବେଦାନ୍ତ ଭାରି କଷ୍ଟ । ଈଶ୍ୱରଙ୍କ ସମ୍ବନ୍ଧରେ ଆମର ଯେଉଁ ପୁରାତନ ଧାରଣା ସବୁ ରହିଛି ତାହା ବେଦାନ୍ତ ଆଦୌ ଶିକ୍ଷା ଦିଏନାହିଁ । ''ଅନନ୍ତ ନୀଳ ଆକାଶର ମେଘମାଳା ଊର୍ଦ୍ଧ୍ୱରେ ଈଶ୍ୱର ଉପବିଷ୍ଟ ହୋଇ ସଂସାରର କାର୍ଯ୍ୟ ପରିଚାଳନା କରନ୍ତି, ଏହି କାର୍ଯ୍ୟରେ ଆମ

Digitized by srujanika@gmail.com

ସହ ସେ କୌଣସି ପରାମର୍ଶ କରନ୍ତି ନାହିଁ, ଯେହେତୁ ସେ ଆମକୁ ଭଲ ପାଆନ୍ତି, ତେଣୁ ସେ ଆମକୁ ଅନସ୍ତିତ୍ୱରୁ ସୃଷ୍ଟି କଲେ ଏବଂ ସମସ୍ତ ପ୍ରକାର ଦୁଃଖ ଓ ବେଦନା ଭୋଗ କରିବା ପାଇଁ ସେ ଆମକୁ ବାଧ କରିଛନ୍ତି, କାରଣ ସେ ଆମକୁ ଭଲ ପାଆନ୍ତି ।'' ଏଭଳି ବିଶ୍ୱାସର ସ୍ଥାନ ବେଦାନ୍ତରେ ନାହିଁ । ଆମ ବେଦାନ୍ତ କହେ ଯେ ପ୍ରତ୍ୟେକ ଭିତରେ ଈଶ୍ୱର ବିରାଜିତ, ସେ ନିଜେ ହିଁ ପ୍ରତ୍ୟେକ ବ୍ୟକ୍ତି ଏବଂ ସବୁକିଛି ହୋଇଛନ୍ତି । ସେହି ମହାମହିମ ସମ୍ରାଟ ନିଜ ରାଜ୍ୟରୁ ଚାଲି ଆସିଛନ୍ତି; ଶହଶହ ବର୍ଷ ପୂର୍ବରୁ ବେଦାନ୍ତରୁ 'ସ୍ୱର୍ଗରାଜ୍ୟ' ଅବତରଣ କରିଛି... । ଆପଣମାନଙ୍କର ଗଣତନ୍ତ୍ର ରାଷ୍ଟ୍ର, ସେଥି ସକାଶେ ଆପଣଙ୍କ ରାଷ୍ଟ୍ରର ଧର୍ମ ବେଦାନ୍ତ ହେବାର ସୁଯୋଗ ଆସିଛି । କିନ୍ତୁ ଏହି ବେଦାନ୍ତର ମର୍ମ ଆପଣ ପରିଷ୍କାର ଭାବେ ହୃଦୟଙ୍ଗମ କରିପାରିଲେ, ସମସ୍ତ ନରନାରୀ ସତ୍ୟନିଷ୍ଠ ଓ ଆଧ୍ୟାତ୍ମିକ ହୋଇପାରିଲେ, ଏହା କେବଳ ସମ୍ଭବ ହେବ । କାରଣ ବେଦାନ୍ତ ପ୍ରକୃତ ଆଧ୍ୟାତ୍ମିକତା ସହ ଜଡ଼ିତ । ଯେଉଁମାନଙ୍କର ମନ ସମସ୍ତ ଅସ୍ୱଷ୍ଟ ଧାରଣା ଓ ଅନ୍ଧବିଶ୍ୱାସରେ ଆଚ୍ଛାଦିତ, ସେମାନେ କେବେ ବି ବେଦାନ୍ତ ଧର୍ମରେ ଅଭିମନ୍ତ୍ରିତ ହୋଇପାରିବେ ନାହିଁ ।

ବେଦାନ୍ତ ଏଭଳି ଭାବଧାରା ଦେଇପାରିବ ନାହିଁ । କୌଣସି ଶାସ୍ତ୍ରର ଆବଶ୍ୟକତା ନାହିଁ । ସମଗ୍ର ମାନବଜାତିରୁ ଜଣକୁ ପୃଥକ କରି ବେଦାନ୍ତ ଘୋଷଣା କରିପାରିବ ନାହିଁ ଯେ ତୁମେ ସବୁ କୀଟ ଏବଂ ଆମେ ପ୍ରଭୁ ଓ ଈଶ୍ୱର । ବେଦାନ୍ତରେ ତାହା ସମ୍ଭବ ନୁହେଁ । ତୁମେ ଯଦି ପ୍ରଭୁ-ଈଶ୍ୱର, ମୁଁ ମଧ୍ୟ ପ୍ରଭୁ-ଈଶ୍ୱର । ସୁତରାଂ ବେଦାନ୍ତ ପାପ ଜାଣେନାହିଁ । ଅବଶ୍ୟ ତ୍ରୁଟି ରହିଛି କିନ୍ତୁ ପାପ ନୁହେଁ । ଯାହା ଅନ୍ତିମ ସମୟରେ ସବୁକିଛି ଠିକ୍ ହୋଇଯିବ । ସୈତାନ କେବଳ ନୁହେଁ ବରଂ ଏତାଦୃଶ ନନ୍‌ସେନ୍ସ (ଅସାର କଥା)ର ଚିହ୍ନବର୍ଣ୍ଣ ରହିବ ନାହିଁ ବେଦାନ୍ତରେ । ସମସ୍ତ ସଂସାରରେ ଗୋଟିଏ ମାତ୍ର ପାପ ରହିଛି ବୋଲି ବେଦାନ୍ତ ଜାଣେ; ତାହା ହେଉଛି : ଯେଉଁ ମୁହୂର୍ତ୍ତରେ ତୁମେ ଚିନ୍ତା କର ତୁମେ ଜଣେ ପାପୀ କିମ୍ବା ଅନ୍ୟ କେହି ପାପୀ, ତାହାହିଁ ପାପ । ସେହିଠାରୁ ଆରମ୍ଭ ହୁଏ ଅନ୍ୟାନ୍ୟ ତ୍ରୁଟି ଅଥବା ପାପର ମାନସିକତା । ଆମ ଜୀବନ କାଳରେ ବହୁ ଭୁଲ୍ ବା ତ୍ରୁଟି ରହିଛି । ଅଥଚ୍ଚ ଆମେ ଜୀବନ ନିର୍ବାହ କରିଚାଲିଛନ୍ତି । ଧନ୍ୟ ଆମ ଜୀବନ ଏଇଥି ପାଇଁ ଯେ ଆମେ ଭୁଲ କରୁଛେ । ତୁମର ଅତୀତ ଜୀବନ ଉପରେ ଏକ ଦୃଷ୍ଟିପାତ କର । ଯଦି ତୁମର ବର୍ତ୍ତମାନର ଅବସ୍ଥା ଉତ୍ତମ, ତେବେ ତୁମର ଅତୀତ ଜୀବନର ସଫଳତା ଓ ତ୍ରୁଟି ଯୋଗୁଁ ହିଁ ଏହା ସମ୍ଭବ ହୋଇଛି । ଧନ୍ୟ ଆମର ସଫଳତା ! ଧନ୍ୟ ଆମର ତ୍ରୁଟି ଓ ଭୁଲ ! ଯାହା ଘଟିଯାଇଛି ତାହା ପଛକୁ ଚାହିଁ ଦେଖନାହିଁ । ଅଗ୍ରସର ହୁଅ - ଆଗେଇ ଯାଅ ।

- ୧ -

*ଏହି ଦେଶରେ ମୁଁ ଦେଖୁଛି ଲୋକମାନେ ବ୍ୟକ୍ତିସତ୍ତାର ବିଲୟ ପାଇଁ ଅତ୍ୟନ୍ତ ଭୟଭୀତ । ତାହାର ଅର୍ଥ ଯେ ଆପଣମାନେ ଏପର୍ଯ୍ୟନ୍ତ ବ୍ୟକ୍ତି ହୋଇନାହାନ୍ତି, ଯେତେବେଳେ ଆପଣ ଈଶ୍ୱରଙ୍କୁ ଜାଣିବେ, ସେତେବେଳେ ହିଁ ଆପଣ ବ୍ୟକ୍ତି ପଦବାଚ୍ୟ ହେବେ, ଆପଣଙ୍କର ସମଗ୍ର ପ୍ରବୃତ୍ତି ଯଦି ଆପଣ ଜାଣିପାରିବେ, ତେବେ ଆପଣ ନିଜର*

Digitized by srujanika@gmail.com

*ପ୍ରକୃତ ରୂପକୁ ଜାଣିପାରିବେ । ଈଶ୍ୱରଙ୍କୁ ଜାଣିଲେ ଆପଣ କିଛି ହରାଇବେ ନାହିଁ । ... କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ଆମକୁ ପ୍ରକୃତି ସହ ଲଢ଼ାଇ କରିବାକୁ ହେବ, ତେବେଯାଇ ଆମେ ପ୍ରଗତି ହାସଲ କରିପାରିବା । ... ଯଦି ପ୍ରକୃତି କହେ, ''ତୁମେ କାନ୍ଦ'' କିନ୍ତୁ ଆମେ କାନ୍ଦିବା ନାହିଁ ।*

କୌଣସି ଶାସ୍ତ୍ର, କୌଣସି ବ୍ୟକ୍ତି, କୌଣସି ସାକାର ଈଶ୍ୱରଙ୍କର ଆବଶ୍ୟକତା ନାହିଁ । ଏହିସବୁ ମନରୁ ଦୂର କର । ଇନ୍ଦ୍ରିୟଗୁଡ଼ିକୁ ପରିତ୍ୟାଗ କର । ଇନ୍ଦ୍ରିୟମାନଙ୍କର ଆମେ ଦାସ ହୋଇପାରିବା ନାହିଁ । ବିଶାଳ ତୁଷାର ଖଣ୍ଡର ପ୍ରଚଣ୍ଡ ଶୀତ ଲହରିରେ ମୃତ୍ୟୁକୁ ପ୍ରତୀକ୍ଷା କରିବା ଭଳି ଆମେ ବର୍ତ୍ତମାନ ଇନ୍ଦ୍ରିୟମାନଙ୍କ ପାଖରେ ବନ୍ଧା ପଡ଼ିଛନ୍ତି । କାରଣ ଶୋଇବା ଲାଗି ଆମ ଭିତରେ ଏଭଳି ପ୍ରଚଣ୍ଡ ଇଚ୍ଛା ବିରାଜିତ ଯେ ଆମର ବନ୍ଧୁମାନେ ଆମକୁ ଉଠାଇବା ପାଇଁ ଚେଷ୍ଟା କରୁଛନ୍ତି ଏବଂ ମୃତ୍ୟୁର କରାଳ ଗହ୍ୱରରେ ପତିତ ହେବାର ବେଳ ଆସିଗଲାଣି ବୋଲି ଆମକୁ ସତର୍କ କରାଇ ଦେଉଛନ୍ତି, ତଥାପି ଆମେ କହୁଛେ, ''ମୃତ୍ୟୁ ଆସୁ, କିନ୍ତୁ ମୁଁ ଶୋଇବି ।'' ଇନ୍ଦ୍ରିୟମାନଙ୍କର କ୍ଷୁଦ୍ର ବସ୍ତୁ ପ୍ରତି ଆମେ ସମସ୍ତେ ବନ୍ଧା ଓ ଆସକ୍ତ, ଏପରିକି ଆମେ ଧ୍ୱଂସ ହୋଇଯିବୁ, ତଥାପି ଏହା ଅପେକ୍ଷା ମହାନ୍ ଜିନିଷ ଅଛି ବୋଲି ଆମେବିସ୍ମରଣ ହେବୁ ।''

ବେଦାନ୍ତ ଦର୍ଶନ, ବିଶେଷତଃ ଅଦ୍ୱୈତ ପଥରେ ବ୍ୟକ୍ତିସତ୍ତାର ବିଲୟ ଅଭିମୁଖେ ବ୍ୟକ୍ତିର ପ୍ରୟାସ ଓ ସାଧନା କେତେକ ଲୋକଙ୍କୁ ଜ୍ଞାନଲୋକିତ କରୁଥିଲେ ହେଁ ବହୁଲୋକ ଭୟଭୀତ ହୋଇ ପଡୁଥିଲେ । ଶ୍ରୋତାବର୍ଗଙ୍କ ମଧ୍ୟରୁ ବେଳେବେଳେ ପ୍ରଶ୍ନ ଉଦ୍‌ଭୂତ ହେଉଥିଲା - ସ୍ୱାମୀଜୀ, ଜଣେ ଈଶ୍ୱରଙ୍କ ସହ ଏକାକାର ହୋଇଗଲେ ତାହାର ବ୍ୟକ୍ତିସତ୍ତାର ଅବସ୍ଥା କ'ଣ ହେବ ? ଏଭଳି ପ୍ରଶ୍ନରେ ସ୍ୱାମୀଜୀ ଖୁବ୍ ଜୋର୍‌ରେ ହସି ଉଠୁଥିଲେ ଏବଂ କହୁଥିଲେ, ''ଏହି ଦେଶରେ ମୁଁ ଦେଖୁଛି ଲୋକମାନେ ବ୍ୟକ୍ତିସତ୍ତାର ବିଲୟ ପାଇଁ ଅତ୍ୟନ୍ତ ଭୟଭୀତ । ତାହାର ଅର୍ଥ ଯେ ଆପଣମାନେ ଏପର୍ଯ୍ୟନ୍ତ ବ୍ୟକ୍ତି ହୋଇନାହାନ୍ତି, ଯେତେବେଳେ ଆପଣ ଈଶ୍ୱରଙ୍କୁ ଜାଣିବେ, ସେତେବେଳେ ହିଁ ଆପଣ ବ୍ୟକ୍ତି ପଦବାଚ୍ୟ ହେବେ, ଆପଣଙ୍କର ସମଗ୍ର ପ୍ରବୃତ୍ତି ଯଦି ଆପଣ ଜାଣିପାରିବେ, ତେବେ ଆପଣ ନିଜର ପ୍ରକୃତ ରୂପକୁ ଜାଣିପାରିବେ । ଈଶ୍ୱରଙ୍କୁ ଜାଣିଲେ ଆପଣ କିଛି ହରାଇବେ ନାହିଁ । ... କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ଆମକୁ ପ୍ରକୃତି ସହ ଲଢ଼ାଇ କରିବାକୁ ହେବ, ତେବେଯାଇ ଆମେ ପ୍ରଗତି ହାସଲ କରିପାରିବା । ... ଯଦି ପ୍ରକୃତି କହେ, ''ତୁମେ କାନ୍ଦ'' କିନ୍ତୁ ଆମେ କାନ୍ଦିବା ନାହିଁ ।''

ଶ୍ରୋତାମଣ୍ଡଳୀ ଭିତରୁ ଜଣେ ମହିଳା ଖୁବ୍ ଭୟଭୀତ ହୋଇ କହିଲେ, ''ସ୍ୱାମୀଜୀ, ଆପଣ ଯାହା କହୁଛନ୍ତି, ତାହା ଭାରି କଷ୍ଟ ବ୍ୟାପାର । ଯିଏ ମୋତେ ଭଲପାଏ, ତାହାର ଯଦି କିଛି ଅମଙ୍ଗଳ ଘଟିଯାଏ, ମୁଁ କିପରି ଶୋକ ନ କରି ରହିପାରିବି, ଏହା କ'ଣ କଠୋର ହୃଦୟ ନୁହେଁ କି ? ସ୍ୱାମୀଜୀ ତତ୍‌କ୍ଷଣାତ୍ କହି ଉଠିଲେ, ''ହଁ ମାଡ଼ାମ୍, ଏହା ନିଃସନ୍ଦେହରେ କଠୋର । କିନ୍ତୁ

Digitized by srujanika@gmail.com

ସେଥିରେ କ'ଣ ଅଛି ? ସବୁ ଶ୍ରେଷ୍ଠ କାର୍ଯ୍ୟତ କଠିଣ । କୌଣସି ଉଚିତ ଉଦ୍ୟମ ଏତେ ସହଜ ନୁହେଁ । ଏହା ଲାଭ କରିବା କଷ୍ଟକର ବ୍ୟାପାର ବୋଲି ଆଳ ଦେଖାଇ ନିଜର ଆଦର୍ଶକୁ ନୀଚ କରନାହିଁ । ମୁକ୍ତିର ପତାକାକୁ ଉର୍ଦ୍ଧ୍ୱଗାମୀ କରି ସଦା ଉଠାଅ । ମାଡ଼ାମ୍, ଆପଣ ପ୍ରକୃତରେ ଜାଣିଶୁଣି ଶୋକ କରୁନାହାନ୍ତି, ପ୍ରକୃତି ଆପଣଙ୍କୁ କାନ୍ଦିବା ପାଇଁ ବାଧ କରୁଚି । ଯେତେବେଳେ ପ୍ରକୃତି କହେ ''ତୁମେ କାନ୍ଦ'' । ତୁମେ କୁହ 'ନା', ମୁଁ କାନ୍ଦିବି ନାହିଁ । ଶକ୍ତି, ଶକ୍ତି, ଶକ୍ତି - ଦିନରାତି ତୁମେ କହି ଚାଲ । ତୁମେ ଶକ୍ତିଶାଳୀ, ତୁମେ ପବିତ୍ର, ତୁମେ ମୁକ୍ତ । ତୁମ ଭିତରେ ଦୁର୍ବଳତା ନାହିଁ, ତୁମ ଭିତରେ ପାପ ନାହିଁ, ତୁମ ଭିତରେ ବେଦନା ନାହିଁ ।

- ୨ -

*ବୁଦ୍ଧଙ୍କ ଭିତରେ ଯେଉଁ ଦିବ୍ୟଶକ୍ତି ବିରାଜିତ ଥିଲା, ତାହାବି ଜଣେ ସାଧାରଣ ମନୁଷ୍ୟ ଭିତରେ ବିରାଜିତ । ସେ ତ ଆସିଥିଲେ ଆମକୁ ବୁଦ୍ଧ କରିବା ପାଇଁ । ଆମେ କିନ୍ତୁ ବୁଦ୍ଧ ନ ହୋଇ, ସଂପ୍ରଦାୟ ବୃଦ୍ଧି କରିବାରେ ଲାଗିପଡ଼ିଲେ । ସଂଘର୍ଷ ଓ କଳହରେ ମାତିଗଲେ । ତେଣୁ ବୁଦ୍ଧଙ୍କର ଆଗମନର ଉଦ୍ଦେଶ୍ୟ ଉପରେ ଆମେ କୁଠାରଘାତ କଲେ ।*

ଧର୍ମବିଶ୍ୱାସର ନିଗଡ଼ ଭିତରେ ବନ୍ଦୀ ହୋଇ ନିଜର ଦିବ୍ୟସ୍ୱରୂପକୁ ଭୁଲନାହିଁ, ଏକ ବୀରତ୍ୱପୂର୍ଣ୍ଣ ଜୀବନ ବଞ୍ଚିବା ପାଇଁ ନିରନ୍ତର ତାଙ୍କର ମାନବସମାଜକୁ ଆହ୍ୱାନ ଥିଲା । ସାହସୀ ବ୍ୟକ୍ତି ଧର୍ମକୁ ଭଲ ଭାବରେ ବୁଝିପାରେ, ଅନେକ ଧାର୍ମିକ ଅନ୍ଧବିଶ୍ୱାସ ଓ ଅସ୍ପଷ୍ଟ ଓ ଅବାନ୍ତର କାହାଣୀ ମନୁଷ୍ୟର ମନୁଷ୍ୟତ୍ୱକୁ ନଷ୍ଟ କରିଦିଏ । ରାମ, କୃଷ୍ଣ, ବୁଦ୍ଧ, ଯୀଶୁ, ମହମ୍ମଦଙ୍କ ସମ ଜ୍ଞାନାଲୋକିତ ବ୍ୟକ୍ତିତ୍ୱ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ଭବିଷ୍ୟତରେ ନିରନ୍ତର ଅବତରଣ କରିବେ ହିଁ କରିବେ, ଅବଶ୍ୟ ବିଭିନ୍ନ ରୂପ ଓ ନାଁରେ ମାନବକୁ ମୁକ୍ତିର ମାର୍ଗ ଦେଖାଇବା ପାଇଁ । ସେମାନଙ୍କର ପ୍ରଦର୍ଶିତ ପଥରେ ଗମନ ନ କରି, ସେମାନଙ୍କର ଚେହେରା, ପୋଷାକ, ଚାଲିଚଳନ, କହିବାର ଢଙ୍ଗ ଇତ୍ୟାଦିକୁ ନେଇ ତର୍କ ବିତର୍କରେ ମାତିଲେ କେବଳ ସଂପ୍ରଦାୟ ସୃଷ୍ଟି ହେବ ସିନା ଆଉ କିଛି ହେବନାହିଁ । ଏଭଳି ମହାନ୍ ଅବତାର, ଗୁରୁ, ଈଶ୍ୱରଙ୍କର ଦୂତ ଏବଂ ଅନ୍ୟ ସାଧୁସନ୍ଥଗଣଙ୍କୁ ଅନୁସରଣ କରିବା ଏବଂ ପ୍ରତ୍ୟେକ ଅନୁଗାମୀ ନିଜ ନିଜର ପଥପ୍ରଦର୍ଶକ ଭଳି ହେବାପାଇଁ ପ୍ରୟାସ କରିବା ଉଚିତ ବୋଲି ମଧ ପରାମର୍ଶ ଦେଉଥିଲେ । ଉଦାହରଣ ସ୍ୱରୂପ : ବୁଦ୍ଧଙ୍କ ଭିତରେ ଯେଉଁ ଦିବ୍ୟଶକ୍ତି ବିରାଜିତ ଥିଲା, ତାହାବି ଜଣେ ସାଧାରଣ ମନୁଷ୍ୟ ଭିତରେ ବିରାଜିତ । ସେ ତ ଆସିଥିଲେ ଆମକୁ ବୁଦ୍ଧ କରିବା ପାଇଁ । ଆମେ କିନ୍ତୁ ବୁଦ୍ଧ ନ ହୋଇ, ସଂପ୍ରଦାୟ ବୃଦ୍ଧି କରିବାରେ ଲାଗିପଡ଼ିଲେ । ସଂଘର୍ଷ ଓ କଳହରେ ମାତିଗଲେ । ତେଣୁ ବୁଦ୍ଧଙ୍କର ଆଗମନର ଉଦ୍ଦେଶ୍ୟ ଉପରେ ଆମେ କୁଠାରଘାତ କଲେ । ସେଥିପାଇଁ ସ୍ୱାମୀଜୀ ସ୍ପଷ୍ଟ ଭାଷାରେ ଫ୍ରାନ୍ସିସ୍କୋ ବେଦାନ୍ତ ସମିତିରେ ଲଗାତର ମେ ୨୬, ୨୮ ଓ ୨୯ ତାରିଖରେ

Digitized by srujanika@gmail.com

ଭଗବଦ୍ ଗୀତା ଉପରେ ବକ୍ତୃତା ଦେଇ ଦୁର୍ବଳତା ବିରୋଧରେ ଲଢ଼ାଇ କରିବା ପାଇଁ ଶ୍ରୋତାଗଣଙ୍କୁ ବଜ୍ର ନିନାଦ କଣ୍ଠରେ କହିଥିଲେ :

ଠିଆ ହୁଅ ଏବଂ ଲଢ଼ାଇ କର ! ଗୋଟିଏ ପାଦ ପଛକୁ ଫେରାଅ ନାହିଁ, ତାହା ହିଁ ଆଦର୍ଶ... ଯାହା ବି ଆସୁ, ଲଢ଼ାଇ କରି ସେସବୁ ହଟାଅ । ନକ୍ଷତ୍ରଗୁଡ଼ିକ ପଛେ ଗୋଲକରୁ ଉଭେଇ ଯାଉ । ସମଗ୍ର ବିଶ୍ୱ ଆମ ବିରୋଧରେ ପଛେ ଦଣ୍ଡାୟମାନ ହେଉ । ମୃତ୍ୟୁର ଅର୍ଥ କେବଳ ଗୋଟିଏ ବସ୍ତୁର ପରିବର୍ତ୍ତନ । ସେଥିରୁ କ'ଣ ମିଳିବ ? ତେଣୁ ସଂଘର୍ଷ କର । ଭୀରୁ ହେଲେ ତୁମକୁ କିଛି ମିଳିବ ନାହିଁ... ପାଦଟିଏ ପଛକୁ ଘୁଞ୍ଚିଗଲେ, ତୁମେ ଦୁର୍ଭାଗ୍ୟକୁ ଟାଳିପାରିବ ନାହିଁ । ଜଗତରେ ଯେତେ ଦେବାଦେବୀ ଅଛନ୍ତି, ସେମାନଙ୍କ ସମ୍ମୁଖରେ ତୁମେ କ୍ରନ୍ଦନ କରିସାରିଛ । ଦୁଃଖର କ'ଣ ସମାପ୍ତ ଘଟିଛି ? ଭାରତବର୍ଷର ଜନସମ୍ପ୍ରଦାୟ ତେତିଶକୋଟି ଦେବାଦେବୀଙ୍କ ନିକଟରେ କାନ୍ଦନ୍ତି, ତଥାପି ସେମାନେ କୁକୁର ଭଳି ମୃତ୍ୟୁବରଣ କରନ୍ତି । ସେହିସବୁ ଦେବାଦେବୀ ଗଲେ କୁଆଡ଼େ ? ...ତୁମେ ଯେତେବେଳେ ସଫଳତା ଲାଭ କର, ଦେବାଦେବୀ ସେତେବେଳେ ତୁମ ନିକଟକୁ ଆଗମନ କରନ୍ତି । ସୁତରାଂ କ'ଣ ବା ସେମାନେ ଆମ ବ୍ୟବହାରରେ ଆସିବେ ? ମୃତ୍ୟୁ ଖେଳ... ହେ ମୋର ଆତ୍ମନ ! ଅନ୍ଧବିଶ୍ୱାସ ସମ୍ମୁଖରେ ନତ ଜାନୁ ହେବା, ନିଜ ମନ ନିକଟରେ ନିଜକୁ ବିକ୍ରି କରିଦେବା ତୁମକୁ ଶୋଭା ପାଏନାହିଁ । ତୁମେ ଅସୀମ, ମୃତ୍ୟୁହୀନ, ଜନ୍ମରହିତ, କାରଣ ତୁମେ ହିଁ ଅନନ୍ତ ଆତ୍ମା, ଏକ ଭୃତ୍ୟ ହେବା ତୁମ ପାଇଁ ଆଦୌ ଶୁଭଙ୍କରୀ ନୁହେଁ... ଉଠ, ଜାଗ, ଠିଆହୁଅ ଓ ସଂଘର୍ଷ କର । ଆବଶ୍ୟକ ସ୍ଥଳେ ମୃତ୍ୟୁକୁ କୋଳେଇ ନିଅ । ତୁମକୁ ସାହାଯ୍ୟ କରିବା ପାଇଁ କେହି ନାହିଁ । ତୁମେ ହିଁ ସମଗ୍ର ଜଗତ । ତୁମକୁ କିଏ ବା ସାହାଯ୍ୟ କରିବ ?

ସ୍ୱାମୀଜୀଙ୍କର ଏଭଳି ବିଶ୍ୱାସପୂର୍ଣ୍ଣ ସିଂହ ଗର୍ଜନ ଆମେରିକୀୟ ରାଜସିକ ଓ ତାମସିକ ଭୋଗବିଳାସୀ ମନକୁ ପ୍ରକମ୍ପିତ କଲା । ଚର୍ଚ୍ଚରେ ସଦା ଉଚ୍ଚାରିତ ପାପୀ ପାପୀ ଶବ୍ଦସବୁ ନୀରବ ହୋଇ ଚାହିଁଲେ ମୁକ୍ତିର ବାର୍ତ୍ତା ଛୁଟି ଆସୁଥିବା କଣ୍ଠକୁ, ସେ କିନ୍ତୁ ଗଳା ଫଟାଇ ଅନର୍ଗଳ କହି ଚାଲିଥିଲେ ଅଦ୍ୱୈତ ବେଦାନ୍ତର ଯୁଗାନ୍ତକାରୀ ସାରମର୍ମକୁ ।'' ପାପୀ ନୁହେଁ ଆମେ ଅମୃତର ସନ୍ତାନ ବୋଲି ନିଜେ କୁହ ହେ ମୋର ଆମେରିକାର ଭଉଣୀ ଓ ଭାଇମାନେ । ସ୍ୱାମୀଜୀଙ୍କର ଏଭଳି ସ୍ନେହପୂର୍ଣ୍ଣ, ପ୍ରେମପୂର୍ଣ୍ଣ ଓ ବିଶ୍ୱାସପୂର୍ଣ୍ଣ ବାଣୀକୁ କିଏ ବା ନ ଶୁଣିବ ? ଭାରତବର୍ଷରେ ଏମନ୍ତ ଶ୍ରେଷ୍ଠ ବିଦ୍ୟା ରହିଛି ଜାଣି ଆମେରିକାର ସାଧାରଣ ବର୍ଗର ଲୋକ ଓ ବୁଦ୍ଧିଜୀବୀ କେବଳ ଉତ୍ସାହିତ ହେଲେ ନାହିଁ ବରଂ ଚର୍ଚ୍ଚର ବହୁ ଖ୍ରୀଷ୍ଟଧର୍ମୀ ନେତୃବର୍ଗଙ୍କ ଚିନ୍ତାଧାରାରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଘଟିଲା । ଏଥିପାଇଁ ଯେ ପବିତ୍ର ବାଇବେଲର ବର୍ଣ୍ଣିତ ତତ୍ତ୍ୱକୁ ସ୍ୱାମୀଜୀ ପରିଷ୍କାର ଭାବରେ ବ୍ୟାଖ୍ୟା କରିଦେଲେ । ସେମାନେ ବୁଝିପାରିଲେ ଯେ ସ୍ୱାମୀଜୀ ଯାହା କହୁଛନ୍ତି, ତାହା ହିଁ ବାଇବେଲର ଯଥାର୍ଥ ବ୍ୟାଖ୍ୟା । ଯୀଶୁଙ୍କ ଭାଷାକୁ କେବଳ ସ୍ୱାମୀଜୀ ବୁଝିପାରିଛନ୍ତି ।

Digitized by srujanika@gmail.com

- ୩ -

*ଆଦିମାନବ ପ୍ରକୃତିର ଭୟଙ୍କର ରୂପଦର୍ଶନ କରି ପ୍ରଥମେ ଖୁବ୍ ଭୟଭୀତ ହୋଇଗଲା ଏବଂ ଭୟରୁ ମୁକ୍ତିଲାଭ କରିବା ଲାଗି ବିଭିନ୍ନ ଦେବାଦେବୀ କଳ୍ପନା ରାଜ୍ୟରେ ଗଢ଼ି ପକାଇଲା । ଏହାର ସୁଯୋଗ ନେଲେ ସ୍ୱେଚ୍ଛାଚାରୀ ଓ ଅତ୍ୟାଚାରୀ ଶାସକଗଣ । ସେମାନେ ବିଭିନ୍ନ ଦେବଦେବୀଙ୍କର ରୂପ କିମ୍ବା ଈଶ୍ୱରଙ୍କର ପ୍ରତିନିଧି ବୋଲି ନିଜକୁ ଘୋଷଣା କଲେ । ଅନନ୍ତ ଆକାଶରେ ସ୍ୱର୍ଗ ଓ ନର୍କର ପରିକଳ୍ପନା କଲେ ଏବଂ ଏକ କୃପାଳୁ ଈଶ୍ୱର ହାତରେ ବାଡ଼ି ଧରି ସ୍ୱର୍ଗରେ ଉପବିଷ୍ଟ ହୋଇ ସମଗ୍ର ସଂସାରକୁ ଶାସନ କରୁଛନ୍ତି ବୋଲି ଭ୍ରମଧାରଣା ସୃଷ୍ଟି ହେଲା । ସେହିଠାରୁ ଆରମ୍ଭ ହେଲା ଦ୍ୱୈତବାଦୀ ଦର୍ଶନ ଅର୍ଥାତ୍ ମନୁଷ୍ୟ ନିଜେ ନିଜଠାରୁ ଅଲଗା ହୋଇଗଲା ।*

ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବରୁ ମହାକାରୁଣିକ ଗୌତମବୁଦ୍ଧ ଭାରତବର୍ଷର ଧର୍ମ ଜଗତରେ ଏକ ଆମୂଳଚୂଳ ପରିବର୍ତ୍ତନ ଆଣିଥିଲେ । ବେଦ, ପୁରାଣ ଓ ଅନ୍ୟାନ୍ୟ ଧର୍ମଶାସ୍ତ୍ର ନିର୍ବାଣ ପ୍ରାପ୍ତିରେ ସାହାଯ୍ୟ କରିବ ନାହିଁ ଏବଂ ଆତ୍ମା, ପରମାତ୍ମା ଓ ଈଶ୍ୱରଙ୍କର ଅନସ୍ତିତ୍ୱ କହି ଧର୍ମଜଗତରେ ଏକ ବିପ୍ଳବ ସୃଷ୍ଟି କରିଥିଲେ । ବିଶ୍ୱବ୍ରହ୍ମାଣ୍ଡରେ ସବୁ ପରିବର୍ତ୍ତନଶୀଳ, କାହା ପଛରେ ଗୋଡ଼ାଇ ଲାଭ ନାହିଁ । ନିର୍ବାଣର ବୀଜ ପ୍ରତ୍ୟେକ ମନୁଷ୍ୟ ଭିତରେ ନିହିତ, ଜଣେ ପ୍ରୟାସ କଲେ ନିର୍ବାଣପ୍ରାପ୍ତି ସମ୍ଭବ । ଏଠାରେ ସ୍ୱାମୀ ବିବେକାନନ୍ଦ କୌଣସି ଧର୍ମ ବିଶ୍ୱାସ ବିରୋଧରେ ଆକ୍ରମଣ କଲେ ନାହିଁ । କିନ୍ତୁ ଧର୍ମ ସ୍ଥାନରେ ଆଧ୍ୟାତ୍ମିକତା ଉପରେ ଗୁରୁତ୍ୱ ଦେଇ କହିଲେ ଯେ ବ୍ରହ୍ମଙ୍କ ସହ ମିଳନ ହେବାର ଅସଲ ମଞ୍ଜି ପ୍ରତ୍ୟେକ ମାନବ ଭିତରେ ରହିଛି । ନିର୍ବାଣ ପ୍ରାପ୍ତିରେ ଯେପରି ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧିରୁ ମୁକ୍ତି ମିଳେ ଏବଂ ମନୁଷ୍ୟ ସମଗ୍ର ଜଗତ ଅର୍ଥାତ୍ ମହାଶୂନ୍ୟରେ ମିଳେଇ ଯାଏ, ଠିକ୍ ସେପରି ବ୍ରହ୍ମଙ୍କ ସହ ଥରେ ସାକ୍ଷାତ ହୋଇଗଲେ ମନୁଷ୍ୟକୁ ପୁନର୍ଜନ୍ମରୁ ତ୍ରାହି ମିଳିଯାଏ । ତାଙ୍କ ମତରେ ଧର୍ମଶାସ୍ତ୍ର, ଦେବାଦେବୀଙ୍କୁ ଯିଏ ଯେପରି ଅନୁସରଣ କରୁଛି କରୁ, ସେଥିରେ କାହାକୁ ବାଧା ଦେବା ଉଚିତ ନୁହେଁ, କିନ୍ତୁ ଜଣେ ଯଦି ସ୍ୱୟଂ ସାହସୀ, ଦୃଢ଼, ଆତ୍ମ-ବିଶ୍ୱାସୀ, ନିର୍ଭୀକ ଓ କାରୁଣ୍ୟ ନ ହୁଏ ତେବେ ସେସବୁ ଅନୁସରଣ ଦ୍ୱାରା କିଛି ଫଳ ମିଳିବ ନାହିଁ ।

ତାଙ୍କର ଏଭଳି କହିବାର ତାତ୍ପର୍ଯ୍ୟ ହେଉଛି ଯେ ଗୋଟିଏ ସତ୍ୟ ବହୁ ରୂପରେ ପ୍ରକଟିତ । ସମସ୍ତ ପ୍ରକଟିତ ଓ ଅପ୍ରକଟିତ ରୂପ ପରିବର୍ତ୍ତନଶୀଳ, ଯାହାକୁ ଅଦ୍ୱୈତ ବେଦାନ୍ତରେ ମାୟା କୁହାଯାଏ । ମନୁଷ୍ୟ ସମେତ ପ୍ରତ୍ୟେକ ବସ୍ତୁ ସେହି ଏକକ ସତ୍ୟର ଆଲୋକରେ କେବଳ ଆଲୋକିତ । କାହାର ବି ପୃଥକ ଅସ୍ତିତ୍ୱ ନାହିଁ । ଦେଖିବାକୁ ଗଲେ ବୁଦ୍ଧଙ୍କ ଭଳି ବିବେକାନନ୍ଦ ମଧ୍ୟ ଏକ ପୃଥକ ଆତ୍ମା, ପୃଥକ ଈଶ୍ୱର ଏବଂ ସ୍ୱର୍ଗନର୍କର ଅସ୍ତିତ୍ୱକୁ ପ୍ରତ୍ୟାଖାନ କରି ଦେଇଛନ୍ତି, କିନ୍ତୁ ଭିନ୍ନ

Digitized by srujanika@gmail.com

ଭାବରେ । ଏହି ପରିପ୍ରେକ୍ଷୀରେ, ଧର୍ମର ଜନ୍ମ ଓ ବିବର୍ତ୍ତନ କିପରି ସମ୍ଭବ ହେଲା ଏବଂ ସ୍ୱାମୀଜୀଙ୍କର ଦୃଷ୍ଟିକୋଣ କିଭଳି ଥିଲା, ତାହା ପ୍ରଥମେ ବୁଝିବାକୁ ହେବ ।

ମନୁଷ୍ୟ ଏକ ବିବେକୀ ଜୀବ । ଅନ୍ୟାନ୍ୟ ଜୀବମାନଙ୍କ ତୁଳନାରେ ମନୁଷ୍ୟ ଧାରଣ କରିଛି ଏକ ଉନ୍ନତ ଓ ବିକଶିତ ମସ୍ତିଷ୍କ । ସେ ପ୍ରକୃତିର ଭୃତ୍ୟ ନୁହେଁ, ପ୍ରଭୁ ହେବାଲାଗି ନିରନ୍ତର ଚେଷ୍ଟା ଚଳାଇଛି । ପ୍ରକୃତିକୁ ପରିବର୍ତ୍ତନ କରିବା ପ୍ରୟାସରେ ସେ ସ୍ୱୟଂ ପରିବର୍ତ୍ତନ ହୋଇଚାଲିଛି । ପଶୁରୁ ସେ ମାନବ ହୋଇଛି । ଏହି ରୂପାନ୍ତର ନିଜର ନିରନ୍ତର ସଂଘର୍ଷ ଯୋଗୁଁ ଘଟୁଛି, ହୋଇପାରେ ଏତାଦୃଶ ରୂପାନ୍ତରଣ ପଶ୍ଚାତରେ ଅଲୌକିକ ଶକ୍ତି କାର୍ଯ୍ୟ କରିପାରୁଥାଏ । ଆଦିମାନବ ପ୍ରକୃତିର ଭୟଙ୍କର ରୂପଦର୍ଶନ କରି ପ୍ରଥମେ ଖୁବ୍ ଭୟଭୀତ ହୋଇଗଲା ଏବଂ ଭୟରୁ ମୁକ୍ତିଲାଭ କରିବା ଲାଗି ବିଭିନ୍ନ ଦେବାଦେବୀ କଳ୍ପନା ରାଜ୍ୟରେ ଗଢ଼ି ପକାଇଲା । ଏହାର ସୁଯୋଗ ନେଲେ ସ୍ୱେଚ୍ଛାଚାରୀ ଓ ଅତ୍ୟାଚାରୀ ଶାସକଗଣ । ସେମାନେ ବିଭିନ୍ନ ଦେବାଦେବୀଙ୍କର ରୂପ କିମ୍ବା ଈଶ୍ୱରଙ୍କର ପ୍ରତିନିଧି ବୋଲି ନିଜକୁ ଘୋଷଣା କଲେ । ଅନନ୍ତ ଆକାଶରେ ସ୍ୱର୍ଗ ଓ ନର୍କର ପରିକଳ୍ପନା କଲେ ଏବଂ ଏକ କୃପାଳୁ ଈଶ୍ୱର ହାତରେ ବାଡ଼ି ଧରି ସ୍ୱର୍ଗରେ ଉପବିଷ୍ଟ ହୋଇ ସମଗ୍ର ସଂସାରକୁ ଶାସନ କରୁଛନ୍ତି ବୋଲି ଭ୍ରମଧାରଣା ସୃଷ୍ଟି ହେଲା । ସେହିଠାରୁ ଆରମ୍ଭ ହେଲା ଦ୍ୱୈତବାଦୀ ଦର୍ଶନ ଅର୍ଥାତ୍ ମନୁଷ୍ୟ ନିଜେ ନିଜଠାରୁ ଅଲଗା ହୋଇଗଲା ।

ସ୍ୱର୍ଗରାଜ୍ୟ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନେ ଗାଇ ଉଠିଲେ, ''ହେ ଈଶ୍ୱର, ମୁଁ ଏହି ପୃଥିବୀରେ ଶହେ ବର୍ଷ ଜୀବନଧାରଣ କରେ, ଶହେ ବର୍ଷ ଧରି ମୁଁ ଶୁଣୁଥାଏ, ମୁଁ କଥା କହୁଥାଏ, ମୋର ଜୀବନଧାରଣ ସମୟରେ କୌଣସି ବେଦନା ଓ ଦୁଃଖ ନ ଆସୁ । ଉର୍ଦ୍ଧ୍ୱସ୍ଥ ଆକାଶରେ ଭାସନ୍ତ ମେଘମାଳାକୁ ଚାହିଁ କହି ଉଠିଲା, ''ହେ ମେଘର ଦେବତା ଯଥା ସମୟରେ ଏହି ଧରିତ୍ରୀ ବକ୍ଷରେ ବର୍ଷଣମୁଖର ହୁଅ, ଶସ୍ୟଶ୍ୟାମଳାରେ ପରିପୂର୍ଣ୍ଣ ହେଉ ଏହି ଧରାପୃଷ୍ଠ, ମୋ ଭିତରୁ ସମସ୍ତ ଭୟ ଦୂରୀଭୂତ ହେଉ, ମୁଁ ବହୁ ବର୍ଷ ଧରି ସୁଖ ଓ ଶାନ୍ତିରେ କାଳଯାପନ କରେ ।

## - ୪ -

*ସନ୍ଥ ମରେ, ପାପୀ ବି ମରେ ଏବଂ ରାଜା ମରେ, ଭିକାରି ବି ମରେ । ସେମାନେ ସମସ୍ତେ ମୃତ୍ୟୁ ଅଭିମୁଖେ ଧାବିତ । ତଥାପି ବଞ୍ଚିବା ପାଇଁ ମୋହ ଛାଡୁନାହିଁ । ଯାହା ବି ହେଉ ଆମେ ଜୀବନକୁ ଏପରି କାହିଁକି ଯାବୁଡ଼ି ଧରନ୍ତି, ତାହା ଆମକୁ ଜଣାନାହିଁ, କିନ୍ତୁ ଆମେ ଏହା ତ୍ୟାଗ କରିପାରିବା ନାହିଁ । ତେଣୁ ଏହା ମାୟା ।*

ଈଶ୍ୱର ସମ୍ବନ୍ଧିତ କଳ୍ପନାଗୁଡ଼ିକ କାଳକ୍ରମେ କ୍ଷୀପ୍ରଗତିରେ ମନୁଷ୍ୟ ମାନସାକାଶରେ ସୃଷ୍ଟିହେଲେ ଏବଂ ଭାସମାନ ହେଲେ । କଳ୍ପନାଗୁଡ଼ିକ ଚିନ୍ତାଧାରା ପାଲଟିଲେ ଓ ଚିନ୍ତାଧାରାଗୁଡ଼ିକ ପରସ୍ପର ଭିତରେ ଧକ୍କା ଲାଗିଲେ । ଯେତେ ଚିନ୍ତାରାଶି ସେତେ ଧର୍ମ ହୋଇଗଲା । ଏକ ଆଉ

Digitized by srujanika@gmail.com

ଏକ ହୋଇ ରହିଲା ନାହିଁ ବରଂ ଏକରୁ ଅନେକ ହେବାକୁ ଲାଗିଲା । ଆତ୍ମା, ପରମାତ୍ମା, ଈଶ୍ୱର, ରାକ୍ଷସ, ସଇତାନ, ସ୍ୱର୍ଗ, ନର୍କ, ପାପ-ପୂଣ୍ୟ, ଜୀବ ଏବଂ ଏଭଳି ଅନେକ ଚିନ୍ତାଧାରାରେ ମଣିଷ ନିଜକୁ ଅଡୁଆ ଜାଲରେ ପକାଇଦେଲା ।

ଏଭଳି ଅଡୁଆ ଜାଲରେ ମନୁଷ୍ୟ ପଡ଼ି କଲବଲ ହେଲା ଯେ ସେଥିପାଇଁ ମହାମାନବମାନେ ମଝିରେ ମଝିରେ ଜନ୍ମ ହୋଇ ସେମାନଙ୍କର ଜାଲ କାଟିବାକୁ ପ୍ରୟାସ କଲେ ଏବଂ ଅନ୍ଧକାରରୁ ଆଲୋକ ଅଭିମୁଖେ ଅର୍ଥାତ୍ ବହୁରୁ ଏକ ଅଭିମୁଖେ ନେଇଯିବା ପାଇଁ ଚେଷ୍ଟା କଲେ । ଅବଶ୍ୟ କେତେକାଂଶରେ ସଫଳତା ମିଳିଲା, କିନ୍ତୁ ପରବର୍ତ୍ତୀ ସମୟରେ ଯେଉଁ କଥାକୁ ସେହି କଥା ହେଲା । ଶ୍ରୀରାମକୃଷ୍ଣ ପରମହଂସଙ୍କ ଭାଷାରେ ପୋଖରୀରୁ ଯେତେ ବୁର ବା ଦଳ ଆଡ଼େଇ ଦେଲେ କିଛି ସମୟ ଜଳ ପରିଷ୍କାର ଦିଶେ କିନ୍ତୁ ପରବର୍ତ୍ତୀ ସମୟରେ ପବନର ସ୍ପର୍ଶରେ ପୁଣି ବୁର ବା ଦଳଗୁଡ଼ିକ ନାଚି ନାଚି ଏକାଠି ହୋଇଯାଆନ୍ତି । ଜଳ ଆଉ ଦିଶେନାହିଁ, କେବଳ ବୁର ଓ ଦଳପୂର୍ଣ୍ଣ ପୋଖରି ଦୃଶ୍ୟମାନ ହୁଏ । ଠିକ୍ ସେହିଭଳି ମହାମାନବମାନଙ୍କ କାଳ ସରିଗଲେ ଅନୁଗାମୀମାନଙ୍କ ଭିତରେ ଲାଗିଯାଏ ମତାନ୍ତର ଓ ମନାନ୍ତର ଏବଂ ଶେଷକୁ ସଂଘର୍ଷ, ରକ୍ତପାତ ଓ ହଣାକଟା ।

ଯାହାହେଉ ଏହିସବୁ ସଂଘର୍ଷ ଭିତରେ ମଣିଷ କ୍ରମବିକାଶ ପଥରେ କେବେ ବି କ୍ଳାନ୍ତ ଓ ଅବଶ ହୋଇ ପଡ଼ିନାହିଁ, ବରଂ ତା'ର ଚିନ୍ତାଧାରା କ୍ରମଶଃ ଉନ୍ନତ ଓ ବିକଶିତ ହେବାକୁ ଆରମ୍ଭ କଲା । ସଦା ପରିବର୍ତ୍ତନଶୀଳ ଜଗତର ପଶ୍ଚାତରେ ଏକ ଅପରିବର୍ତ୍ତନୀୟ ଅବସ୍ଥା ଥିବ ବୋଲି ସେ ଅନୁଭବ କଲା । ଏଭଳି ଏକ ଅବସ୍ଥା ଅଭିମୁଖେ ମନୁଷ୍ୟ ମନର ଯାତ୍ରା ସମ୍ବନ୍ଧରେ ସ୍ୱାମୀଜୀ ନିଜର ମତବ୍ୟକ୍ତ କରିଥିଲେ ଯେ ମୃତ୍ୟୁର ଭୟଙ୍କର ବାସ୍ତବତା ମନୁଷ୍ୟ ମନାକାଶରେ ନାଚିଉଠିଲା । ସମଗ୍ର ବିଶ୍ୱ ମୃତ୍ୟୁ ଅଭିମୁଖେ ଧାବିତ । ପ୍ରତ୍ୟେକ ବସ୍ତୁର ମୃତ୍ୟୁ ଘଟେ । ଆମର ସମସ୍ତ ପ୍ରଗତି, ଛଳନା, ସଂସ୍କାର, ଆମୋଦପ୍ରମୋଦ, ଧନସମ୍ପତ୍ତି, ଜ୍ଞାନ ଭଳି ସବୁକିଛିର ଅନ୍ତ ହୋଇଯାଏ - ତାହା ହେଉଛି ମୃତ୍ୟୁ । ତାହା ହିଁ କେବଳ ନିଶ୍ଚିତ । ସହରର ଉତ୍ଥାନ ଓ ପତନ ଘଟେ, ସାମ୍ରାଜ୍ୟର ଉତ୍ଥାନ ଓ ପତନ ହୁଏ, ଗ୍ରହ, ନକ୍ଷତ୍ର ଭାଙ୍ଗି ଚୂରମାର ହୋଇଯାଇ ବିଶାଳ ଧୂଳିରେ ହୁଏ ପରିଣତ । ଅନନ୍ତ କାଳରୁ ଏଭଳି ଘଟଣା ଘଟିଚାଲିଛି । ମୃତ୍ୟୁ ହିଁ ସବୁକିଛିର ଅନ୍ତ । ଜୀବନର ଅନ୍ତ ହିଁ ମୃତ୍ୟୁ ଏବଂ ସୌନ୍ଦର୍ଯ୍ୟ, ସମ୍ପତ୍ତି, କ୍ଷମତା, ପୁଣ୍ୟର ଅନ୍ତ ବି ମୃତ୍ୟୁ । ସନ୍ଥ ମରେ, ପାପୀ ବି ମରେ ଏବଂ ରାଜା ମରେ, ଭିକାରି ବି ମରେ । ସେମାନେ ସମସ୍ତେ ମୃତ୍ୟୁ ଅଭିମୁଖେ ଧାବିତ । ତଥାପି ବଞ୍ଚିବା ପାଇଁ ମୋହ ଛାଡୁନାହିଁ । ଯାହା ବି ହେଉ ଆମେ ଜୀବନକୁ ଏପରି କାହିଁକି ଯାବୁଡ଼ି ଧରନ୍ତି, ତାହା ଆମକୁ ଜଣାନାହିଁ, କିନ୍ତୁ ଆମେ ଏହା ତ୍ୟାଗ କରିପାରିବା ନାହିଁ । ତେଣୁ ଏହା ମାୟା, ସଦା ପରିବର୍ତ୍ତନଶୀଳ ଦୃଷ୍ଟିକୋଣରୁ ଜନ୍ମନେଲା ଏକ ଅପରିବର୍ତ୍ତନୀୟ ସତ୍ତା, ଯାହା ଉପରେ ପୁଣି ଚର୍ଚ୍ଚା ଆରମ୍ଭ ହେଲା ।

ସ୍ୱାମୀ ବିବେକାନନ୍ଦ ଏହି ପରିପ୍ରେକ୍ଷୀରେ କୁହନ୍ତି ଯେ ''ଯେତେବେଳେ ଗୀତା ପ୍ରଚାରିତ ହେଲା, ସେତେବେଳେ ଦୁଇଟି ସମ୍ପ୍ରଦାୟ ଭିତରେ ଏକ ବିବାଦ ଲାଗି ରହିଥିଲା । ଗୋଟିଏ ଦଳ ବୈଦିକ ଯଜ୍ଞ, ପଶୁବଳି ଏବଂ ଏଭଳି ଅନେକ ଉପାସନା କର୍ମକୁ ଧାର୍ମିକ କାର୍ଯ୍ୟ ଭାବେ ଗ୍ରହଣ

Digitized by srujanika@gmail.com

କରୁଥିଲେ ଏବଂ ଅନ୍ୟପକ୍ଷରେ ଅନ୍ୟଦଳଟି ଅସଂଖ୍ୟ ଅଶ୍ୱ ଓ ପାଳିତ ପଶୁବଧ ଧାର୍ମିକ କାର୍ଯ୍ୟ ନୁହେଁ ବୋଲି ସେମାନଙ୍କର କାର୍ଯ୍ୟକୁ ପ୍ରତିରୋଧ କରୁଥିଲେ । ଦ୍ୱିତୀୟ ଦଳରେ ସାଧାରଣତଃ ସନ୍ୟାସୀ ଓ ଜ୍ଞାନୀଗଣ ଅନ୍ତର୍ଭୁକ୍ତ ଏବଂ କର୍ମଶୂନ୍ୟ ହୋଇ ଆତ୍ମଜ୍ଞାନ ଲାଭ କରିବା ହିଁ ମୋକ୍ଷପ୍ରାପ୍ତି ସମ୍ଭବ ବୋଲି ସେମାନେ କହିବୁଲୁଥିଲେ । ସେହି ଦୁଇଦଳ ଭିତରୁ ଆଉ ଗୋଟିଏ ଦଳ ବାହାରି ପ୍ରଚାର କଲେ ଯେ ଯଜ୍ଞ, ଜ୍ଞାନ, ମୋକ୍ଷ ଫୋକ୍ଷ ଛାଡ଼, ଏସବୁ ତୁଚ୍ଛା ମିଛକଥା, ଜୀବନ ପାଇଛନ୍ତି ଯେତେବେଳେ ଉପଭୋଗରେ ମାତିଯାଅ । ଈଶ୍ୱର ଓ ଆତ୍ମା ବୋଲି କିଛି ନାହିଁ, ଇଯେ ସବୁ ନିର୍ବୋଧଙ୍କର ପ୍ରଳାପ । ଏମାନଙ୍କର ଦର୍ଶନକୁ ଲୋକାୟତ କୁହାଯାଉଥିଲା ଏବଂ ଏମାନେ ଥିଲେ ଚାର୍ବାକ୍‌ପନ୍ଥୀ । ଏହିସବୁ ଦ୍ୱନ୍ଦ୍ୱାତ୍ମକ ବିବାଦ ଭିତରୁ ଏକ ମହାନ୍ ଚିନ୍ତା ଆବିର୍ଭୂତ ହେଲା । କପିଳଙ୍କର ସାଂଖ୍ୟ ଦର୍ଶନ । ବିଶ୍ୱରେ ଏହା ଥିଲା ସର୍ବପ୍ରଥମ ଦାର୍ଶନିକ ଚିନ୍ତାଧାରା, ଯାହା ଜଗତ ସମ୍ବନ୍ଧରେ ଏକ ଯୁକ୍ତିଯୁକ୍ତ ପ୍ରମାଣ ଜନସମ୍ପ୍ରଦାୟଙ୍କ ସମ୍ମୁଖରେ ଉପସ୍ଥାପନ କରିପାରିଥିଲା ।

ମହର୍ଷି କପିଳଙ୍କ ସାଂଖ୍ୟ ଦର୍ଶନାନୁସାରେ, ଜଗତର ସ୍ରଷ୍ଟା ଈଶ୍ୱର ନୁହନ୍ତି । ସତ୍ତ୍ୱ, ରଜ ଓ ତମରେ ସମଗ୍ର ବ୍ରହ୍ମାଣ୍ଡ ରଚିତ । ଯେହେତୁ ବୁଦ୍ଧି ପ୍ରକୃତିର ସ୍ରଷ୍ଟା, ସେହେତୁ ଏହା ଜଗତର ଏକ ଅଂଶ । ତଥାପି ଆଉ ଏକ ସତ୍ତା ରହିଛି ଯାହାକୁ ପୁରୁଷ କୁହାଯାଏ । ସେ ବୁଦ୍ଧି ଓ ପ୍ରକୃତିଠାରୁ ପୃଥକ କିନ୍ତୁ ବୁଦ୍ଧି ଓ ପ୍ରକୃତିକୁ ସର୍ବଦା ସକ୍ରିୟ କରୁଥାନ୍ତି । ଉଭୟ ପୁରୁଷ ଓ ପ୍ରକୃତି କାଳାତୀତ ଓ ପରସ୍ପରଠାରୁ ସ୍ୱାଧୀନ ।

- ୫ -

*ଯିଏ ଶାଶ୍ୱତ, ସନାତନ ଓ ଚିରନ୍ତନ, ତାଙ୍କର ଅନ୍ତନାହିଁ । ତାଙ୍କୁ ଖଣ୍ଡ ଖଣ୍ଡ କରିହେବ ନାହିଁ, କାରଣ ସେ ଅଖଣ୍ଡ । ସେ ହିଁ ଏକଇ ସତ୍ୟ, ଦ୍ୱିତୀୟ ନାସ୍ତି । ଯେଉଁସବୁ ବସ୍ତୁ ତଥା ଜୀବ ବହୁ ଭଳି ପ୍ରତୀୟମାନ ହେଉଛନ୍ତି, ସେସବୁ କେହି ନୁହଁନ୍ତି ବରଂ ତାଙ୍କର ପ୍ରତିଫଳନ ମାତ୍ର । ଗୋଟିଏ ସୂର୍ଯ୍ୟ ଯେପରି ଅନେକ ଜଳପୂର୍ଣ୍ଣ ଘଟରେ ଅନେକ ହୋଇ ଦେଖାଯାନ୍ତି, ସେଭଳି ଗୋଟିଏ ସତ୍ୟ, ଯାହାକୁ ବ୍ରହ୍ମ କୁହନ୍ତି, ସେ ଅନେକ ଜୀବାତ୍ମା ଭାବେ ପ୍ରକାଶିତ ହୁଅନ୍ତି । ଯାହାସବୁ ପୃଥକ ବୋଲି ଲୌକିକ ଦୃଷ୍ଟିରେ ପ୍ରତୀୟମାନ ହୁଅନ୍ତି, ସେସବୁ ମାୟା ଯାହା ସଦା ପରିବର୍ତ୍ତନଶୀଳ ଏବଂ ସୃଷ୍ଟି, ସ୍ଥିତି ଓ ବିନାଶ ପ୍ରକ୍ରିୟାର ଅଧୀନ ।*

କାଳକ୍ରମେ ସାଂଖ୍ୟ ଦର୍ଶନରେ ଆଧ୍ୟାତ୍ମିକତା ପ୍ରବେଶ କଲା । କପିଳଙ୍କର ପୁରୁଷ ହେଲେ ଆତ୍ମା ଏବଂ ଏହା ବେଦାନ୍ତରେ ରୂପାନ୍ତରିତ ହେଲା । ସ୍ୱାମୀଜୀଙ୍କ ମତରେ ସାଂଖ୍ୟଦର୍ଶନକୁ ବିରୋଧ କରି ବୈଦାନ୍ତିକ କହିଲେ ଯେ ସାଂଖ୍ୟ ଦର୍ଶନ ଏକ ପୂର୍ଣ୍ଣ ବିଶ୍ଳେଷଣ ନୁହେଁ । ଯଦି

Digitized by srujanika@gmail.com

ପ୍ରକୃତି ଓ ଆତ୍ମା (ପୁରୁଷ) ଉଭୟ ପୃଥକ ଭାବେ ସ୍ୱାଧୀନ, ତେବେ ଆମକୁ ଦୁଇଟି ସତ୍ୟ ବିରାଜିତ ବୋଲି ଗ୍ରହଣ କରିବାକୁ ହେବ । ତେଣୁ ଆତ୍ମାର ସର୍ବବିଦ୍ୟମାନତା ପ୍ରକୃତିକୁ ବି ଲାଗୁ ହେବ । ବେଦାନ୍ତ ଦର୍ଶନରେ ପ୍ରମାଣିତ ହେଲା - ପ୍ରକୃତି ସ୍ଥାନ, କାଳ ଓ କାରଣ ସହିତ ବନ୍ଧା ଏବଂ ଆତ୍ମା ସ୍ଥାନ, କାଳ ଓ କାରଣର ଉର୍ଦ୍ଧ୍ୱରେ ଏକ ଅଖଣ୍ଡ ଓ ସନାତନ ଏବଂ ଜଗତର ସ୍ରଷ୍ଟା ଈଶ୍ୱରଙ୍କର ଅଂଶ । ଏହି ଦର୍ଶନରେ ମାୟା ଓ କର୍ମ ତତ୍ତ୍ୱ ବି ସ୍ଥାନ ପାଇଲା । ଉଭୟ ପରସ୍ପର ପରିପୂରକ । ସେ ବି ଯାହାହେଉ, ସାଂଖ୍ୟ ଦର୍ଶନର ଆଧାତ୍ମିକ ଦିଗକୁ ବେଦାନ୍ତ ଦର୍ଶନ ବି କୁହାଗଲା । ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ, ସୌରୀକ ଭଳି ହିନ୍ଦୁଧର୍ମର ସମସ୍ତ ସମ୍ପ୍ରଦାୟ ବେଦାନ୍ତ ଦର୍ଶନର ବିଭିନ୍ନ ପ୍ରକଟନ କେବଳ ନୁହେଁ ବରଂ ଏପରିକି ଜୈନ ଓ ବୁଦ୍ଧଧର୍ମ ବି ଏଥିରେ ଅନ୍ତର୍ଭୁକ୍ତ । ସେମାନଙ୍କର ଈଶ୍ୱରଙ୍କ ଅସ୍ତିତ୍ୱ ଓ ଅନସ୍ତିତ୍ୱ ସମ୍ବନ୍ଧିତ ଧାରଣା ଓ ରୂପର ଦୃଷ୍ଟିକୋଣ ପରସ୍ପର ବିରୋଧୀ ହେଲେ ମଧ୍ୟ ସେମାନଙ୍କୁ ଦ୍ୱୈତ, ବିଶିଷ୍ଟାଦ୍ୱୈତ ଓ ଅଦ୍ୱୈତ ଶ୍ରେଣୀଭୁକ୍ତ କରାଯାଇଛି ।

ବେଦାନ୍ତ ଦର୍ଶନ ଆଦି ଶଙ୍କରାଚାର୍ଯ୍ୟ ଓ ରାମାନୁଜଙ୍କ ଦ୍ୱାରା ବିକଶିତ ଓ ଋଦ୍ଧିମନ୍ତ ହେଲା । ଈଶ୍ୱର, ପ୍ରକୃତି ଓ ଅଗଣିତ ଆତ୍ମାର ଅବସ୍ଥିତି ଦ୍ୱୈତବାଦୀ ବିଶ୍ୱାସ କରୁଥିବା ବେଳେ, ବିଶିଷ୍ଟାଦ୍ୱୈତବାଦୀ ଆଉ ପାଦେ ଆଗେଇ ଯାଇ କହିଲେ - ଈଶ୍ୱର ସ୍ୱୟଂ ଜଗତ ଓ ଜୀବରୂପ ଧାରଣ କରିଛନ୍ତି । ଆମେ ସମସ୍ତେ ତାଙ୍କର ଅଂଶ ଏବଂ ଆମେ ସମସ୍ତେ ଏକ ଓ ଅଭିନ୍ନ । ତଥାପି ଏହି ମତବାଦରେ ମାନବ ଓ ମାନବ ଭିତରେ ଏବଂ ଈଶ୍ୱର ଓ ମାନବ ଭିତରେ ଏକ ଦୃଢ଼ ପ୍ରଭେଦତା ରହିଛି । ଈଶ୍ୱର ଓ ଜୀବର ପୃଥକ ସ୍ଥିତି ରହିଛି । ଯଦି ଦ୍ୱୈତବାଦ ଧର୍ମଜଗତ ବିବର୍ତ୍ତନ ପ୍ରକ୍ରିୟାରେ ପ୍ରଥମ ସ୍ତର ହୁଏ, ତେବେ ବିଶିଷ୍ଟା ଦ୍ୱୈତବାଦ ଦ୍ୱିତୀୟ ସ୍ତର ହେବ ।

ଧର୍ମର ବିବର୍ତ୍ତନ ପ୍ରକ୍ରିୟାରେ ଅଦ୍ୱୈତବାଦ ଅନ୍ତିମ ପର୍ଯ୍ୟାୟ । ଅଦ୍ୱୈତବାଦୀ କହିଲେ - ଯିଏ ଶାଶ୍ୱତ, ସନାତନ ଓ ଚିରନ୍ତନ, ତାଙ୍କର ଅନ୍ତନାହିଁ । ତାଙ୍କୁ ଖଣ୍ଡ ଖଣ୍ଡ କରିହେବ ନାହିଁ, କାରଣ ସେ ଅଖଣ୍ଡ । ସେ ହିଁ ଏକଇ ସତ୍ୟ, ଦ୍ୱିତୀୟ ନାସ୍ତି । ଯେଉଁସବୁ ବସ୍ତୁ ତଥା ଜୀବ ବହୁ ଭଳି ପ୍ରତୀୟମାନ ହେଉଛନ୍ତି, ସେସବୁ କେହି ନୁହଁନ୍ତି ବରଂ ତାଙ୍କର ପ୍ରତିଫଳନ ମାତ୍ର । ଗୋଟିଏ ସୂର୍ଯ୍ୟ ଯେପରି ଅନେକ ଜଳପୂର୍ଣ୍ଣ ଘଟରେ ଅନେକ ହୋଇ ଦେଖାଯାନ୍ତି, ସେଭଳି ଗୋଟିଏ ସତ୍ୟ, ଯାହାକୁ ବ୍ରହ୍ମ କୁହନ୍ତି, ସେ ଅନେକ ଜୀବାତ୍ମା ଭାବେ ପ୍ରକାଶିତ ହୁଅନ୍ତି । ଯାହାସବୁ ପୃଥକ ବୋଲି ଲୌକିକ ଦୃଷ୍ଟିରେ ପ୍ରତୀୟମାନ ହୁଅନ୍ତି, ସେସବୁ ମାୟା ଯାହା ସଦା ପରିବର୍ତ୍ତନଶୀଳ ଏବଂ ସୃଷ୍ଟି, ସ୍ଥିତି ଓ ବିନାଶ ପ୍ରକ୍ରିୟାର ଅଧୀନ ।

ଇଂଲଣ୍ଡ ଓ ଆମେରିକାରେ ସ୍ୱାମୀଜୀ ବେଦାନ୍ତରେ ବିବର୍ତ୍ତନବାଦ ପ୍ରବେଶ କରାଇ ବେଦାନ୍ତଶାସ୍ତ୍ରରେ ଗୋଟିଏ ନୂତନ ଦିଗ ଉନ୍ମୋଚନ କଲେ । ସେ ଗର୍ବର ସହିତ ନିଜର ସେହି ନୂତନ ଦିଗକୁ ଘୋଷଣା କରି କହିଲେ ଯେ ଦ୍ୱୈତ, ବିଶିଷ୍ଟାଦ୍ୱୈତ ଏବଂ ଅଦ୍ୱୈତ ହେଉଛି ଧର୍ମର ତିନୋଟି ପ୍ରଗତିଶୀଳ ସୋପାନ । ସେମାନଙ୍କ ମଧ୍ୟରେ ଦ୍ୱୈତ ନିମ୍ନ ସ୍ତରରେ ଅବସ୍ଥିତ ଏବଂ ଶୀର୍ଷ ସ୍ଥାନରେ ରହିଛି ଅଦ୍ୱୈତ । ତେଣୁ ଅଦ୍ୱୈତ ବେଦାନ୍ତ ସବୁ ଧର୍ମକୁ କୋଳେଇ ନେଇଥାଏ । ସେଥିପାଇଁ ସ୍ୱାମୀଜୀ କହୁଥିଲେ - ସର୍ବୋତ୍ତମ ପଦାର୍ଥରୁ ନିମ୍ନତମ ପଦାର୍ଥ, ଦୁଷ୍ଟ ମନୁଷ୍ୟରୁ ମହାମାନବ

Digitized by srujanika@gmail.com

ଏବଂ ଏପରିକି କୀଟ ପର୍ଯ୍ୟନ୍ତ ସବୁରି ଭିତରେ ବିରାଜିତ ଏକଇ ଆତ୍ମା ଯାହା ଶୁଦ୍ଧ ଓ ପବିତ୍ର ଏବଂ ଅନନ୍ତ । କୀଟ ମଧ୍ୟରେ ସେହି ପରମବ୍ରହ୍ମଙ୍କର କ୍ଷୁଦ୍ର ଅଂଶର ଶକ୍ତି ଓ ପବିତ୍ରତା ବିରାଜିତ ଥିବାବେଳେ ମହାମାନବ ଅର୍ଥାତ୍ ମହାପୁରୁଷ ଭିତରେ ବହୁଦାଂଶ ପ୍ରତିଫଳିତ । କେବଳ ପ୍ରକାଶନରେ ତାରତମ୍ୟ ମାତ୍ରା କିନ୍ତୁ ମୌଳିକ ପ୍ରକୃତିରେ ନୁହେଁ । ସମସ୍ତ ବସ୍ତୁ ଓ ଜୀବ ଭିତରେ ସେହି ଏକ ପୂର୍ଣ୍ଣ ଓ ଶୁଦ୍ଧ ବ୍ରହ୍ମଙ୍କର ପ୍ରକାଶନ ।'' ଏଥିରୁ ଜଣାଗଲା ଯେ ଗୋଟିଏ ପିମ୍ପୁଡ଼ି ଓ ଶୁକର ଭିତରେ ଯେଉଁ ବ୍ରହ୍ମ ବିରାଜିତ, ତାହା ବି ମନୁଷ୍ୟ ଭିତରେ ବିରାଜିତ । ପିମ୍ପୁଡ଼ି ଭିତରେ ଏହା ଅଳ୍ପ ପ୍ରକାଶିତ, ଶୂକର ଭିତରେ ଟିକିଏ ଅଧିକା ଏବଂ ମନୁଷ୍ୟ ଭିତରେ ବହୁଗୁଣରେ ଅଧିକ ।

ସ୍ୱାମୀଜୀ କୁହନ୍ତି - ମନ ପରିବର୍ତ୍ତନ ହେଲେ, ଚରିତ୍ର ପରିବର୍ତ୍ତନ ହୁଏ । ମଣିଷର ଚରିତ୍ର ଯେତେ ପରିବର୍ତ୍ତିତ ହେଉଥିବ, ସେତେ ପରିମାଣରେ ଆତ୍ମାର ପ୍ରକାଶନ ତାହା ଭିତରେ ପ୍ରତିଫଳିତ ହେଉଥିବ । ଏହି ପ୍ରକ୍ରିୟା ନିରନ୍ତର ଜାରି ରହିଲେ, ଶେଷରେ ମନୁଷ୍ୟର ମନ ଶୁଦ୍ଧ ଓ ପବିତ୍ର ହୋଇଯାଏ ଏବଂ ନିଜ ଭିତରେ ଆତ୍ମାର ପୂର୍ଣ୍ଣ ପ୍ରତିଫଳନ ହେବାକ୍ଷଣି, ସେ ଆଉ ଜୀବ ହୋଇ ରହେନାହିଁ, ସେ ଆଉ ଜନ୍ମ-ମୃତ୍ୟୁ-ଜରା ବ୍ୟାଧି ଚକ୍ରରେ ଘୂରିବୁଲେ ନାହିଁ, ସେ ମୁକ୍ତ ହୋଇଯାଏ, ମୋକ୍ଷ ପ୍ରାପ୍ତି ହୁଏ, ଅର୍ଥାତ୍ ବ୍ରହ୍ମଙ୍କ ସହ ଏକ ହୋଇଯାଏ । ଏକରୁ ଜାତ, ଏକରେ ବିଲୟ, ଏହା ହିଁ ଅଦ୍ୱୈତ ବେଦାନ୍ତର ସିଦ୍ଧାନ୍ତ ।

- ୬ -

*କୌଣସି ଈଶ୍ୱର ତୁମଠାରୁ ଭିନ୍ନ ନୁହଁନ୍ତି, କୌଣସି ଈଶ୍ୱର ବି ତୁମଠାରୁ ଉଚ୍ଚ ନୁହଁନ୍ତି - ତୁମେ ହିଁ ସେହି ସତ୍ୟ । ତୁମ ସମ୍ମୁଖରେ ସମସ୍ତ ଦେବାଦେବୀ କ୍ଷୁଦ୍ର, ଆତ୍ମା ଓ ସ୍ୱର୍ଗରାଜ୍ୟର ପିତା ସମ୍ବନ୍ଧିତ ତୁମର ସମସ୍ତ ଧାରଣା କେବଳ ତୁମର ପ୍ରତିଫଳନ ମାତ୍ର ।*

ପାଶ୍ଚାତ୍ୟ ମନକୁ ବୁଝାଇବାକୁ ଯାଇ ସ୍ୱାମୀଜୀ ପୁନଶ୍ଚ କହୁଛନ୍ତି ଯେ ବିବର୍ତ୍ତନ ପ୍ରକ୍ରିୟା ଭିତରେ ବିକାଶର ନିମ୍ନ ସ୍ତରରେ ଏକକୋଷୀ ଜୀବାଣୁ ରହିଥିବା ବେଳେ ମାନବ ଉଚ୍ଚ ସ୍ତରରେ ବିରାଜିତ । ଯେତେବେଳେ ଆତ୍ମା ପୂର୍ଣ୍ଣ ମନୁଷ୍ୟ ସ୍ତରରେ ରୂପାନ୍ତରିତ ହେଲା, ସେ ପ୍ରଥମେ ପ୍ରକୃତି ବିରୋଧରେ ଲଢ଼ାଇ କରିବା ଆରମ୍ଭ କଲା, କାରଣ ସେ ଶୀର୍ଷ ସ୍ଥାନରେ ପହଞ୍ଚିବାକୁ ଚାହେଁ ଯେଉଁଠି ସେ ନିଜର ଅନ୍ତରାତ୍ମାକୁ ଚିହ୍ନିପାରିବ ଏବଂ ଯେଉଁଠାରୁ ଆସିଥିଲା, ତାହା ସହ ଏକ ହୋଇଯିବ । ଅବଶ୍ୟ ଆତ୍ମା ଯେତେବେଳେ ପକ୍ଷୀ, ପଶୁ ଏବଂ ଅନ୍ୟାନ୍ୟ ରୂପ ଭିତରେ ଗତି କରୁଥିଲା, ସେତେବେଳେ ତାଙ୍କର ନ ଥିଲା ଶକ୍ତି ଓ ସାମର୍ଥ୍ୟ ନିଜକୁ ଚିହ୍ନିବା ଓ ପ୍ରକୃତି ବିରୋଧରେ ଲଢ଼ାଇ କରି ନିଜର ମୂଳ ଉତ୍ସ ସହ ମିଶିଯିବା ପାଇଁ ।

ସ୍ୱାମୀଜୀ ପୁଣି କହୁଛନ୍ତି ଯେ ପ୍ରକୃତିର ସହାୟତାକାରୀ ଭାବେ ଆମେ ଜନ୍ମ ହୋଇ ନାହାନ୍ତି ବରଂ ପ୍ରକୃତି ସହ ପ୍ରତିଦ୍ୱନ୍ଦିତା କରିବା ପାଇଁ ଆମର ଜନ୍ମ । ଆମେ ପ୍ରକୃତିର ବନ୍ଧନକାରୀ ପ୍ରଭୁ କିନ୍ତୁ ଆମେ ପ୍ରକୃତି ଭିତରେ ବନ୍ଧା ପଡ଼ିଯା'ନ୍ତି । ଆଜି ଏଠାରେ ଗୃହଟିଏ ଦଣ୍ଡାୟମାନ

Digitized by srujanika@gmail.com

କାହିଁକି ? ଏହି ଘରଟିକୁ ତ ପ୍ରକୃତି ନିର୍ମାଣ କରିନାହିଁ । ପ୍ରକୃତି ସର୍ବଦା କୁହେ "ଯାଅ, ବଣରେ ବାସ କର ।" ମନୁଷ୍ୟ କହେ "ନା, ମୁଁ ଗୋଟିଏ ଗୃହ ନିର୍ମାଣ କରିବି ଏବଂ ପ୍ରକୃତି ସହ ସଂଘର୍ଷ କରିବି ।" ଏବଂ ତାହା ହିଁ ସେ କରି ଦେଖାଏ । ପ୍ରକୃତିର ତଥାକଥିତ ନିୟମ ସହ ମନୁଷ୍ୟର ନିରନ୍ତର ସଂଘର୍ଷ ହିଁ ସମଗ୍ର ମାନବଜାତିର ଇତିହାସ, ଶେଷରେ ମନୁଷ୍ୟ ବିଜୟ ଲାଭ କରିଥାଏ । ଠିକ୍ ସେହିଭଳି ମନୁଷ୍ୟର ଅର୍ନ୍ତରାଜ୍ୟରେ ଅହରହ ସଂଘର୍ଷ ଜାରି ରହିଛି - ମାନବିକତା ଓ ପାଶବିକତା ମଧ୍ୟରେ ଏବଂ ଅନ୍ଧକାର ଓ ଆଲୋକ ମଧ୍ୟରେ । ଏଠାରେ ବି ମନୁଷ୍ୟର ବିଜୟ ହୋଇଥାଏ । ପ୍ରକୃତିକୁ ପରାଜିତ କରି ନିଜେ ମୁକ୍ତ ହୋଇଯାଏ ।

ପ୍ରକୃତି ବିରୋଧରେ ମନୁଷ୍ୟର ନିରନ୍ତର ସଂଘର୍ଷ ଓ ଲଢ଼ାଇ ତାକୁ କ୍ରମଶଃ ଶୀର୍ଷ ସ୍ତରରେ ଉପନୀତ କରାଏ । ତା'ର ପୂଜା ଓ ପୂଜ୍ୟର ପଦ୍ଧତି ଓ ଦୃଷ୍ଟିକୋଣ ବିକାଶ ଓ ଉନ୍ନତି ପ୍ରକ୍ରିୟାରେ ପରିବର୍ତ୍ତିତ ହେଉଥାଏ । ଏହି ସଂଘର୍ଷ ଭିତରେ ମନୁଷ୍ୟର ପୂଜା ଓ ପୂଜ୍ୟର ଧାରଣା କିପରି ସଦା ପରିବର୍ତ୍ତନଶୀଳ, ତାହା ସୁନ୍ଦରଭାବେ ବର୍ଣ୍ଣନା କରି ସ୍ୱାମୀଜୀ କହୁଛନ୍ତି "କୌଣସି ଈଶ୍ୱର ତୁମଠାରୁ ଭିନ୍ନ ନୁହଁନ୍ତି, କୌଣସି ଈଶ୍ୱର ବି ତୁମଠାରୁ ଉଚ୍ଚ ନୁହଁନ୍ତି - ତୁମେ ହିଁ ସେହି ସତ୍ୟ । ତୁମ ସମ୍ମୁଖରେ ସମସ୍ତ ଦେବାଦେବୀ କ୍ଷୁଦ୍ର, ଆତ୍ମା ଓ ସ୍ୱର୍ଗରାଜ୍ୟର ପିତା ସମ୍ବନ୍ଧିତ ତୁମର ସମସ୍ତ ଧାରଣା କେବଳ ତୁମର ପ୍ରତିଫଳନ ମାତ୍ର ।

ସ୍ୱାମୀଜୀଙ୍କର ଏତାଦୃଶ ଅଭିବ୍ୟକ୍ତି ଏଭଳି ପ୍ରଚଣ୍ଡ ଥିଲା ଯେ ତାଙ୍କର ମୁଖ ନିଃସୃତ ଶବ୍ଦଗୁଡ଼ିକ ବଜ୍ର ନିନାଦ ଭଳି ଶୁଣାଯାଉଥିଲେ ଏବଂ ପାଶ୍ଚାତ୍ୟବାସୀଙ୍କର ତାର୍କିକ ଓ ବିଜ୍ଞାନୀ ମନରେ ଶାନ୍ତି ଓ ସନ୍ତୋଷର ଅମୃତ ଧାରା ପ୍ରବାହିତ କରିଦେଉଥିଲା । ସେମାନେ ଚକିତ ନୟନରେ ସ୍ୱାମୀଜୀଙ୍କର ଶବ୍ଦଗୁଡ଼ିକ ହୃଦୟଙ୍ଗମ କରୁଥିବା ସମୟରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଏକ ମହୁଫେଣା ଭଳି ଝୁଲନ୍ତ ହେବାର ଦୃଶ୍ୟ ସେମାନଙ୍କ ମାନସାକାଶରେ ଭାସି ଉଠୁଥିଲା । ସତେକି ମହୁଫେଣାରେ ସମସ୍ତ ଜୀବ ମଧୁ ଆସ୍ୱାଦନରେ ପ୍ରମତ୍ତ । ମହୁଫେଣାର ତଳେ, ଉପରେ, ପାର୍ଶ୍ୱରେ ଏକ ଅନନ୍ତ ଶୂନ୍ୟରୂପୀ ଶାନ୍ତ, ସ୍ତବ୍ଧ, ଓ ସ୍ନିଗ୍ଧ କାୟା ବିସ୍ତାର କରି ପଡ଼ିରହିଛି । ମହୁଫେଣାର ମୋହ ଯିଏ ତ୍ୟାଗ କରୁଛି, ସିଏ ଅବିଳମ୍ବେ ଅନନ୍ତ ହୋଇଯାଉଛି । ଏହା ବୋଧହୁଏ ସତ୍-ଚିତ୍-ଆନନ୍ଦ ସାଗର । ବୁଦ୍ଧ ଯେଉଁ ନିର୍ବାଣର ଦିଗ ଉନ୍ମୋଚନ କରିଥିଲେ, ବିବେକାନନ୍ଦ ସେହି ଦିଗ ଆଡ଼କୁ ପାଶ୍ଚାତ୍ୟବାସୀଙ୍କୁ ନେଇଗଲେ । ବୁଦ୍ଧ ପ୍ରଚଳିତ ଧର୍ମଗୁଡ଼ିକୁ ଭ୍ରାନ୍ତ ଓ ଅସତ୍ୟ କହି ଧର୍ମ ତ୍ୟାଗ କରିବାକୁ ଏବଂ ତାଙ୍କ ପ୍ରଦର୍ଶିତ ସଦ୍‌ମାର୍ଗରେ ଗତି କରି ନିର୍ବାଣ ପ୍ରାପ୍ତି କରିବାକୁ କହିଲେ, କିନ୍ତୁ ବିବେକାନନ୍ଦ ତାହା ହିଁ କହିଲେ କିନ୍ତୁ ସବୁଧର୍ମକୁ ତ୍ୟାଗକରି ନୁହେଁ, ଧର୍ମ ଧର୍ମ ଭିତରେ ସମନ୍ୱୟ ରକ୍ଷାକରି ଏବଂ ନିଜ ଉପରେ ଅଖଣ୍ଡ ବିଶ୍ୱାସ ରଖି ଅଗ୍ରସର ହେଲେ ମୁକ୍ତି ନିଶ୍ଚିତ ।

ସ୍ୱାମୀଜୀଙ୍କର ସମଗ୍ର ଜୀବନ ଏକ ବୀରର କାହାଣୀ । କଥା ଓ କାମରେ ତାଙ୍କର ଆଦୌ ଅମେଳ ନ ଥିଲା । ଶରୀର ଯେପରି ଦୃଢ଼, ସେପରି ମନ ବି । କେବଳ ଆଧ୍ୟାତ୍ମିକ ବିଷୟବସ୍ତୁରେ ଯେ ସେ ଥିଲେ ଧୁରନ୍ଧର ଓ ଦକ୍ଷ ତାହା ନୁହେଁ, ବରଂ ତାଙ୍କର ସାଂସାରିକ ଦୃଷ୍ଟିକୋଣ ଓ ଶାରୀରିକ ଶକ୍ତି ଥିଲା ଅତୁଳନୀୟ । ଏକ ଦୃଷ୍ଟାନ୍ତ : ଏକଦା ସ୍ୱାମୀଜୀ ଆମେରିକାର ଏକ ନଦୀକୂଳସ୍ଥ ସହରରେ ଅବସ୍ଥାନ କରୁଥିଲେ । କେତେକ ଯୁବକ ନଦୀର ପୋଲ ଉପରେ

Digitized by srujanika@gmail.com

ଠିଆହୋଇ, ସ୍ରୋତରେ ଭାସନ୍ତ ଶୁଷ୍କ ସାମୁକା ଭେଳା ଉପରକୁ ଗୁଳି ମାରୁଥିଲେ, କିନ୍ତୁ ସେମାନଙ୍କର ଲକ୍ଷ୍ୟ ବାରମ୍ବାର ଭ୍ରଷ୍ଟ ହେଉଥିଲା । ଯୁବକମାନଙ୍କର ଏତାଦୃଶ କ୍ରୀଡ଼ା ଉପରେ ସ୍ୱାମୀଜୀଙ୍କର ନଜର ପଡ଼ିବାରୁ, ତାଙ୍କ ଓଠରେ ମୃଦୁ ହାସ୍ୟ ଲହରିତ ହେଲା । ସେମାନଙ୍କର ବିଫଳତା ପରିଲକ୍ଷିତ କରି ସ୍ୱାମୀଜୀ ହସୁଛନ୍ତି ଭାବି ଜଣେ ଯୁବକ ତାଙ୍କୁ କହିଲେ, ''ମହାଶୟ, ଉକ୍ତ ଭାସନ୍ତ ଭେଳାଗୁଡ଼ିକୁ ଲକ୍ଷ୍ୟଭେଦ କରିବା ଏତେ ସହଜ ନୁହେଁ ।''

ସ୍ୱାମୀଜୀଙ୍କୁ କିଏ ସମ୍ଭାଳେ ! ଯୁବୋନ୍ମାଦନା କ୍ଷଣିକ ମୁହୂର୍ତ୍ତରେ ସଞ୍ଚରିତ ହେଲା ତାଙ୍କ ଶରୀରରେ । ସେ ତତ୍‌କ୍ଷଣାତ୍ ଜଣେ ଯୁବକଠାରୁ ବନ୍ଧୁକଟିଏ ନେଇ ଭାସନ୍ତ ଭେଳାଗୁଡ଼ିକ ଆଡ଼କୁ ଗୁଳିଚାଳନା କଲେ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ପ୍ରାୟ ଡର୍ଜନ ଭାସନ୍ତ ଭେଳା ଉପରେ ଗୁଳିବିଦ୍ଧ ହେଲା । ଯୁବଗଣ ଆଶ୍ଚର୍ଯ୍ୟରେ ସ୍ୱାମୀଜୀଙ୍କୁ ଚାହିଁଲେ ଏବଂ ଭାବିଲେ ଯେ ସ୍ୱାମୀଜୀ ବୋଧହୁଏ ଜଣେ ଅଭ୍ୟାସଗତ ବନ୍ଧୁକଚାଳକ ହୋଇଥିବେ । ସେମାନଙ୍କ ମନର ଭାଷା ବୁଝିଗଲେ ସ୍ୱାମୀଜୀ ଏବଂ ଆଶ୍ୱାସନା ଦେଇ କହିଲେ, ''ବନ୍ଧୁଗଣ, ମୁଁ ପୂର୍ବରୁ କେବେ ବି ବନ୍ଧୁକଟିଏ ଧରି ନ ଥିଲି । ମୋର ଏହି ସଫଳତା ପଶ୍ଚାତରେ ରହିଛି ମନର ଏକାଗ୍ରତା ।'' ମନ ଏକାଗ୍ର ହେଲେ ଧ୍ୟାନର ପାହାଚ ପରେ ପାହାଚ ଅତିକ୍ରମ କରି ସାଧକ ଆଗକୁ ଅଗ୍ରସର ହୋଇପାରିବ । ଏହାହିଁ ଥିଲା ଯୁବଗଣଙ୍କ ପ୍ରତି ସ୍ୱାମୀଜୀଙ୍କର ବାର୍ତ୍ତା ।

ଏଠାରେ ଉଲ୍ଲେଖନୀୟ ଯେ କୁମାରୀ ମିନି ସି. ବୁକ୍ ନାମୀ ତାଙ୍କର ଜଣେ ଭକ୍ତିମତୀ ଶିଷ୍ୟା ଗୋଟିଏ ସ୍ଥାୟୀ ମଠ ସ୍ଥାପନ ଉଦ୍ଦେଶ୍ୟରେ ତାଙ୍କୁ ୧୬୦ ଏକର ପରିମିତ ଖଣ୍ଡିଏ ବଡ଼ ଜମି ଦେଲେ । ଏହି ଜମି କାଲିଫର୍ଣ୍ଣିଆସ୍ଥ ସାନ୍ ଆଣ୍ଟୋନ୍ ଉପତ୍ୟାକାରେ ଅବସ୍ଥିତ । ସ୍ୱାମୀଜୀ ଆନନ୍ଦର ସହିତ ଏ ଦାନ ଗ୍ରହଣ କରିଥିଲେ - ଅବଶ୍ୟ ପରବର୍ତ୍ତୀ କାଳରେ ସ୍ୱାମୀ ତୁରୀୟାନନ୍ଦ ସେଠାରେ ଏକ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଯଦିଓ ସ୍ୱାମୀଜୀଙ୍କ ଜୀବଦ୍ଦଶାରେ ଏହି ସ୍ଥାନରେ 'ଶାନ୍ତି ଆଶ୍ରମ' ପ୍ରତିଷ୍ଠା ହୋଇଥିଲା, ସେ କିନ୍ତୁ ଏହା ପରିଦର୍ଶନ କରିପାରି ନ ଥିଲେ ।



Digitized by srujanika@gmail.com

॥ ଚାଳିଶ ॥

# ପ୍ୟାରିସଠାରେ ଅନୁଷ୍ଠିତ ଧର୍ମ - ଇତିହାସ ସଭାରେ ଯୋଗଦାନ - ବିଶ୍ୱ ବିଖ୍ୟାତ ଭାରତୀୟ ବୈଜ୍ଞାନିକ ସାର୍ ଜଗଦୀଶ ଚନ୍ଦ୍ର ବୋଷଙ୍କ ସହ ଭେଟ - ଇୟୁରୋପ ମହାଦେଶର ଅଷ୍ଟ୍ରିଆ, ଗ୍ରୀସ୍ ପ୍ରଭୃତି ରାଷ୍ଟ୍ର ଭ୍ରମଣ କରି ଇଜିପ୍ଟ ବାଟ ଦେଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ

ସ୍ୱାମୀଜୀ ଜୁଲାଇ ୧୯୦୦ ଖ୍ରୀଷ୍ଟାବ୍ଦରେ ଡେଟ୍ରୋୟେଟ୍‌ରେ ରହିଥିଲେ । ଖ୍ରୀଷ୍ଟାଇନ୍ ଗ୍ରୀନ୍‌ଷ୍ଟିଡ଼େଲଙ୍କ ପରିବାରରେ ସେ ଜଣେ ସଦସ୍ୟ ହୋଇଗଲେ । ଏହି ଭକ୍ତିମତୀ ମହିଳା ଧନୀ ନ ଥିଲେ ବି ସ୍ୱାମୀଜୀଙ୍କର ସମସ୍ତ ଆବଶ୍ୟକତା ପୂରଣ କରିବାରେ କେବେ ଅବହେଳା ପ୍ରଦର୍ଶନ କରି ନ ଥିଲେ । ଧନ୍ୟ ଏହି ନାରୀ, ଧନ୍ୟ ତାଙ୍କର ପରିବାର । ଜୁଲାଇ ୧୦ ତାରିଖରେ ସ୍ୱାମୀଜୀ ନିୟୁୟର୍କକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ବେଦାନ୍ତ ସମିତିରେ ଅବସ୍ଥାନ କଲେ । ଏହି ଅବସ୍ଥାନ ସମୟରେ ସ୍ୱାମୀଜୀ ତାଙ୍କର ଜଣେ ଶିଷ୍ୟ ଶ୍ରୀ ହେନ୍ରିଭାନ୍ ହାଗ୍ଜେନ୍, ଯିଏ ଜଣେ ଚିତ୍ରକାର ଥିଲେ, ତାଙ୍କର ସହାୟତା ନେଇ ରାମକୃଷ୍ଣ ମଠର ଚିହ୍ନ ଓ ପ୍ରତୀକର ନକ୍ସା ପ୍ରସ୍ତୁତ କରିଥିଲେ । ସ୍ୱାମୀଜୀ ଏହି ପ୍ରତୀକର ପରିକଳ୍ପନା କରିଥିଲେ । ସେହି ଚିହ୍ନ ସମ୍ବନ୍ଧରେ କୁମାରୀ ମେକ୍‌ଲିଓଡ଼କୁ ଖଣ୍ଡିଏ ଚିଠିରେ ଲେଖିଥିଲେ - ଜ୍ଞାନର ପ୍ରତୀକ ସୂର୍ଯ୍ୟ - ଅଶାନ୍ତ ଜଳ ହେଉଛି କର୍ମ - ପଦ୍ମ ହେଉଛି ପ୍ରେମ - ସର୍ପ ହିଁ ଯୋଗ - ଆତ୍ମାର ଚିହ୍ନ ହଂସ । ଏହି ଚିହ୍ନ ସୂଚନା ଦେଉଛି - ପରମାତ୍ମା (ହଂସ) ଆମକୁ ପଠାଇଛନ୍ତି - ଏହା ମନର ହ୍ରଦ ।

ଏଠାରେ ଉଲ୍ଲେଖନୀୟ ଯେ ସ୍ୱାମୀଜୀ କାଲିଫର୍ଣ୍ଣିଆରେ ଥିଲାବେଳେ ଲଣ୍ଡନରେ ଅବସ୍ଥାପିତ ପରମବନ୍ଧୁ ଶ୍ରୀ ଓ ଶ୍ରୀମତୀ ଫ୍ରାନ୍‌ସିସ୍ ଲିଗେଟ୍ ପ୍ୟାରିସ୍‌ରେ ସେମାନଙ୍କୁ ଜୁଲାଇରେ ତାଙ୍କୁ ସାକ୍ଷାତ କରିବା ଲାଗି ଅନୁରୋଧ କରିଥିଲେ । ଏତଦ୍‌ବ୍ୟତୀତ ଶ୍ରୀ ଜିରାଲ୍ଡ ନୋବେଲ ପ୍ୟାରିସ୍‌ରେ ସେପ୍ଟେମ୍ବର ମାସରେ ଅନୁଷ୍ଠିତ ହେବାକୁ ଥିବା "ପ୍ୟାରିସ୍ ଏକ୍ସପୋଜିସନ୍ ଅଫ୍ ୧୯୦୦"ରେ ବକ୍ତୃତା ପ୍ରଦାନ ନିମନ୍ତେ ସ୍ୱାମୀଜୀଙ୍କୁ ଅନୁରୋଧ କରିଥିଲେ । ସ୍ୱାମୀଜୀ ସେମାନଙ୍କର ଆମନ୍ତ୍ରଣ ରକ୍ଷା କରିଥିଲେ । ଏବଂ ୟୁରୋପ ଭ୍ରମଣ ନିମନ୍ତେ ଇତ୍ୟବସରରେ ସେ ଇଚ୍ଛାପ୍ରକଟ କଲେ ।

Digitized by srujanika@gmail.com

ଖାଲି କାମ କାମ । କାମ ଭିତରେ ସେ ଆଉ କେତେ କାମ କରିବେ । କାମ ଭିତରୁ ଉଡ଼ିଯିବାକୁ ମନ ତାଙ୍କର ବ୍ୟଗ୍ର ହେଉଥିଲା । ସତେକି ଯେଉଁ ଲକ୍ଷ୍ୟ ନେଇ ସେ ଧରାପୃଷ୍ଠରେ ଅବତୀର୍ଣ୍ଣ, ସେହି ଲକ୍ଷ୍ୟ ପୂରଣ ହୋଇଯାଉଛି ! ତାଙ୍କର ଚକ୍ଷୁଦ୍ୱୟ ସତେକି ଅନ୍ୟ ଏକ ରାଜ୍ୟର ଆଲୋକ ପ୍ରତି ନିବଦ୍ଧ ହୋଇଯାଇଛି ! ନିଜ ରାଜ୍ୟ ଅଭିମୁଖେ ପ୍ରତ୍ୟାବର୍ତ୍ତନର ପ୍ରବଳ ଇଚ୍ଛା ତାଙ୍କୁ କିପରି ବିଚଳିତ କରୁଥିଲା, କୁମାରୀ ମେକ୍‌ଲିଓଡ଼୍‌ଙ୍କ ନିକଟକୁ ଏପ୍ରିଲ୍ ୧୮, ୧୯୦୦ ଖ୍ରୀଷ୍ଟାବ୍ଦରେ ଲେଖିଥିବା ପତ୍ରରୁ ତାହା ସ୍ପଷ୍ଟ ହୋଇଉଠେ । ମେକଲିଓଡ଼୍‌ଙ୍କୁ ସ୍ନେହରେ ସ୍ୱାମୀଜୀ ଜୋ ବୋଲି ଡାକୁଥିଲେ । ସେ ଜୋ'କୁ କହୁଛନ୍ତି - କାର୍ଯ୍ୟ ଏକ କଷ୍ଟକର ବ୍ୟାପାର । ମୋ ପାଇଁ ଜୋ ଟିକେ ପ୍ରାର୍ଥନା କର, ମୋର କାର୍ଯ୍ୟ ସବୁଦିନ ଯେପରି ବନ୍ଦ ହୋଇଯାଉ ଏବଂ ମୋର ଆତ୍ମା ଜଗଜ୍ଜନନୀଙ୍କ ଭିତରେ ବିଲୀନ ହୋଇଯାଉ । ସେ ଜାଣନ୍ତି ତାଙ୍କର କାର୍ଯ୍ୟ... । ମୁଁ ସୁସ୍ଥ, ମାନସିକ ସ୍ତରରେ ଅତ୍ୟନ୍ତ ସୁସ୍ଥ । ଶରୀର ଅପେକ୍ଷା ଆତ୍ମାରେ ବିଶ୍ରାମ ମୁଁ ବେଶି ଆବଶ୍ୟକ କରେ । ଯୁଦ୍ଧରେ ବିଜୟ ଓ ପରାଜୟ ଘଟେ । ମୋର ଗଣ୍ଠୁଲି ମୁଁ ବାନ୍ଧି ସାରିଛି ଏବଂ ସେହି ମହାନ୍ ପରିତ୍ରାଣକର୍ତ୍ତାଙ୍କ ପ୍ରତୀକ୍ଷାରେ ମୁଁ ବସିରହିଛି । ଶିବ, ହେ ଶିବ, ମୋର ନୌକାକୁ ଅନ୍ୟ କୂଳକୁ ନେଇଯାଅ ।

- ୧ -

*ମୁଁ କେବଳ ଉପନିଷଦ୍ ପ୍ରଚାର କରିଛି । ତୁମେ ଯଦି ଭଲଭାବରେ ଦେଖିବ, ତେବେ ଜାଣିପାରିବେ ଯେ ମୁଁ କୌଣସି ବିଷୟ ପ୍ରଚାର କରିନାହିଁ, କିନ୍ତୁ କେବଳ ପ୍ରଚାର କରିଛି ଉପନିଷଦ । ଉପନିଷଦରୁ ଗୋଟିଏ ଜିନିଷ ମୁଁ ପାଇଛି, ତାହା ହେଲା - ଶକ୍ତି, ବେଦ ଓ ବେଦାନ୍ତର ସାରକଥା ଗୋଟିଏ ବାକ୍ୟରେ କହିହେବ - ଶକ୍ତି ଓ ନିର୍ଭୀକତା ।*

ଜୋ, ମୁଁ କେବଳ ଏକ ବାଳକ । ଦକ୍ଷିଣେଶ୍ୱରର ବଟବୃକ୍ଷ ତଳେ ବସି ଏକଦା ଶ୍ରୀରାମକୃଷ୍ଣଙ୍କ ମୁଖରୁ ଚକିତ ହୋଇ ଶୁଣୁଥିଲି ସେହି ଅପୂର୍ବ କଥା । ସେହି ବାଳକ ସ୍ୱଭାବ ହିଁ ମୋର ପ୍ରକୃତ ସ୍ୱଭାବ - କର୍ମ ଓ କାର୍ଯ୍ୟକଳାପ ଏବଂ ମହତ୍ କାର୍ଯ୍ୟ କରିବା ଇତ୍ୟାଦି କେବଳ ଅଧ୍ୟାରୋପଣ ମାତ୍ର । ବର୍ତ୍ତମାନ ମୁଁ ପୁନର୍ବାର ତାଙ୍କର ସ୍ୱର ଶୁଣିପାରୁଛି, ସେହି ପୁରାତନ ସ୍ୱର, ମୋର ଆତ୍ମାକୁ ଶିହରିତ କରୁଛି । ସବୁ ବନ୍ଧନ ଭାଙ୍ଗିଯାଉଛି - ପ୍ରେମର ମୃତ୍ୟୁ ହେଉଛି - କାର୍ଯ୍ୟଗୁଡ଼ିକ ସ୍ୱାଦହୀନ ହୋଇପଡୁଛି - ଜୀବନରୁ ମନୋମୁଗ୍ଧକର ଶୋଭା ଲିଭିଯାଉଛି । ବର୍ତ୍ତମାନ ଠାକୁରଙ୍କର ଡାକିବା ସ୍ୱର ମୁଁ ଶୁଣୁଛି - ମୁଁ ଆସୁଛି, ପ୍ରଭୁ, ମୁଁ ଆସୁଛି ମୃତର ସତ୍କାର ମୃତ ଲୋକ ହିଁ କରନ୍ତୁ । ତୁମେ ମୋତେ ଅନୁସରଣ କର - ମୁଁ ଆସୁଛି, ହେ ପ୍ରଭୁ, ମୁଁ ଆସୁଛି ।

ହଁ, ମୁଁ ଆସୁଛି, ନିର୍ବାଣ ମୋ ସମ୍ମୁଖରେ ଉପସ୍ଥିତ । ଅନେକ ସମୟରେ ମୁଁ ଅନୁଭବ କରୁଛି ସେହି ଅନନ୍ତ ଶାନ୍ତ ମହାପାରାବାର ଯେଉଁଠି କ୍ଷୁଦ୍ର ତରଙ୍ଗଟିଏ ନାହିଁ, ଟିକିଏପବନ ବି ନାହିଁ ।

Digitized by srujanika@gmail.com

ମୁଁ ଜନ୍ମଗ୍ରହଣ କରିଥିଲି ବୋଲି ମୁଁ ଆନନ୍ଦିତ, ବହୁ ଦୁଃଖ କଷ୍ଟ ଭୋଗ କରିଛି ବୋଲି ମୁଁ ଆନନ୍ଦିତ, ଆନନ୍ଦିତ ବି ଏଇଥିପାଇଁ ଯେ ବଡ଼ ବଡ଼ ଗୁରୁତର ଭୁଲ ମୁଁ ଜୀବନରେ କରିଛି, ଶାନ୍ତି ମଧ୍ୟକୁ ପ୍ରବେଶ ଲାଗି ମୁଁ ଆନନ୍ଦିତ । ମୁଁ କାହାକୁ ବନ୍ଧନରେ ପକାଇ ଛାଡ଼ି ଯାଉନାହିଁ, ସାଥିରେ ବି କୌଣସି ବନ୍ଧନ ନେଇ ଯାଉନାହିଁ । ମୋର ଏହି ଶରୀର ପତିତ ହୋଇ ମୋତେ ମୁକ୍ତି ଦେବ କି ନାହିଁ କିମ୍ବା ମୁଁ ଶରୀରରେ ରହି ମୁକ୍ତି ପାଇବି । ବୃଦ୍ଧ ବିଦାୟ ନେଇଛନ୍ତି, ବିଦାୟ ନେଇଛନ୍ତି ସବୁଦିନ ପାଇଁ, ପୁନର୍ବାର ଆଗମନ କରିପାରିବେ ନାହିଁ । ମାର୍ଗଦର୍ଶୀ, ଗୁରୁ, ନେତା, ଶିକ୍ଷକ ଚାଲିଯାଇଛନ୍ତି, ପଡ଼ିରହିଛନ୍ତି କେବଳ ପୂର୍ବର ସେହି ବାଳକ, ଶିଷ୍ୟ, ସେବକ ।

ମୋର କାର୍ଯ୍ୟ ପଶ୍ଚାତରେ ରହିଥିଲା ଲକ୍ଷ୍ୟ, ମୋର ପ୍ରେମ ପଶ୍ଚାତରେ ବ୍ୟକ୍ତିତ୍ୱ, ମୋ ପବିତ୍ରତା ପଶ୍ଚାତରେ ଭୟ, ମୋ ପଥପ୍ରଦର୍ଶନ ପଶ୍ଚାତରେ ଶକ୍ତି ପାଇଁ ତୃଷା । ବର୍ତ୍ତମାନ ସେଗୁଡ଼ିକ ଅନ୍ତର୍ଦ୍ଧାନ ହୋଇଯାଉଛନ୍ତି । ମୁଁ ଆସୁଛି, ମା ମୁଁ ଆସୁଛି ତୁମର ଉଷ୍ମ କୋଳକୁ, ମା ତୁମେ ଯେଉଁଠିକୁ ମୋତେ ନେଇଯାଇପାର - ସ୍ୱରହୀନ, ଅଦ୍ଭୁତ ରାଜ୍ୟକୁ - ମୁଁ ଆସୁଛି ଜଣେ ଦର୍ଶକ ଭାବେ, ଆଉ ନୁହେଁ ଅଭିନେତା ଭାବେ ।

ଓହୋଃ... ଏହା ଖୁବ୍ ଶାନ୍ତ ! ମୋର ହୃଦୟର ଗଭୀରତମ ପ୍ରଦେଶର ବହୁଦୂରରୁ ଭାସି ଆସୁଛି ମୋର ଚିନ୍ତାଧାରା । ସେଗୁଡ଼ିକ ଅତି କ୍ଷୀଣ, ଦୂରରୁ ଶୁଣାଯାଉଥିବା ସ୍ୱରଭଳି, ଏବଂ ସବୁକିଛିରେ ଭରିରହିଛି ଶାନ୍ତି, ଅତି ମଧୁର, ମଧୁର ଶାନ୍ତି, ଶୋଇବା ପୂର୍ବରୁ ଚକ୍ଷୁ ମୁଦ୍ରିତ ହେଉଥିବା ସମୟରେ କେତେକ ମୁହୂର୍ତ୍ତ ପାଇଁ ଜଣେ ଯେପରି ଶାନ୍ତି ଅନୁଭବ କରେ, ଯେପରି ନିଦ ଘାରି ଆସୁଥିବା ଆଖିରେ ବସ୍ତୁଗୁଡ଼ିକ ଛାଇଭଳି ଦୃଶ୍ୟମାନ ହୁଏ - ଭୟ ନାହିଁ, ପ୍ରେମ ନାହିଁ, ଆବେଗତା ହୀନ - କେବଳ ଶାନ୍ତି ଅନୁଭୂତ, ଚତୁଃପାର୍ଶ୍ୱ ମୂର୍ତ୍ତି ଓ ଚିତ୍ରରେ ପରିପୂର୍ଣ୍ଣ - ମୁଁ ଆସୁଛି, ପ୍ରଭୁ ମୁଁ ଆସୁଛି ।

ଏହି ସଂସାର, ନୁହେଁ ସୁନ୍ଦର ଅବା କୁତ୍ସିତ କିନ୍ତୁ କୌଣସି ଆବେଗତାହୀନ ଶିହରଣ ମାତ୍ର । ଓହୋ, ଜୋ, ଏହା ଆଶୀର୍ବାଦପ୍ରାପ୍ତ । ସବୁକିଛି ଭଲ ଓ ସୁନ୍ଦର, ମୋ ପାଇଁ ସବୁ ବସ୍ତୁ ସେମାନଙ୍କର ମହତ୍ତ୍ୱ ହରାଇଲେଣି - ସେଥିମଧ୍ୟରୁ ମୋ ଶରୀର ପ୍ରଥମ । ଓମ୍ ତତ୍ ସତ୍ ।

ଜୋ ଏହି ଚିଠିଟିକୁ ସର୍ବଦା ନିଜ ହ୍ୟାଣ୍ଡ୍ ବ୍ୟାଗ୍‌ରେ ସାଇତି ରଖୁଥିଲେ । କାର୍ଯ୍ୟବ୍ୟସ୍ତତା ଭିତରେ ସେ ଯେତେବେଳେ କର୍ମବିମୁଖ ହୋଇପଡୁଥିଲେ, ସେତେବେଳେ ସେହି ଚିଠିଟିକୁ ଆନ୍ତରିକତା ସହ ପଢୁଥିଲେ । ଏହି ଚିଠିଟି ଏମନ୍ତ ଶକ୍ତିଶାଳୀ ଥିଲା, ଯାହା ଜୋ ଙ୍କ ଭିତରେ ଭରି ଦେଉଥିଲା ସ୍ପୃହା ଓ ସ୍ଫୂର୍ତ୍ତି । ସମସ୍ତ ମାନସିକ ବ୍ୟର୍ଥତା ବିଲୀନ ହେଉଥିଲା । ଯେଉଁ କାଗଜ ଖଣ୍ଡିକରେ ସ୍ୱାମୀଜୀଙ୍କର ହାତଲେଖା ରହିଥିଲା, ତାହା ସମୟ ସ୍ରୋତରେ ଅବଶ୍ୟ ପୀତବର୍ଣ୍ଣ ଧାରଣ କରିଥିବ, କିନ୍ତୁ ଚିଠିର ଶବ୍ଦଗୁଡ଼ିକ ଚିର ଭାସ୍ୱର ହୋଇ ରହିଗଲା ।

ଆମେରିକାରୁ ସ୍ୱାମୀଜୀଙ୍କର ବିଦାୟ ଆସନ୍ନ । ଯାହା ଦେବାର ଥିଲା, ତାହା ତ ସେ ଦେଇଦେଲେ । ସେ ଏକଦା ଜଣେ ଶିଷ୍ୟଙ୍କୁ କହିଥିଲେ, "ମୁଁ କେବଳ ଉପନିଷଦ୍ ପ୍ରଚାର କରିଛି । ତୁମେ ଯଦି ଭଲଭାବରେ ଦେଖିବ, ତେବେ ଜାଣିପାରିବେ ଯେ ମୁଁ କୌଣସି ବିଷୟ

Digitized by srujanika@gmail.com

ପ୍ରଚାର କରିନାହିଁ, କିନ୍ତୁ କେବଳ ପ୍ରଚାର କରିଛି ଉପନିଷଦ । ଉପନିଷଦରୁ ଗୋଟିଏ ଜିନିଷ ମୁଁ ପାଇଛି, ତାହା ହେଲା - ଶକ୍ତି, ବେଦ ଓ ବେଦାନ୍ତର ସାରକଥା ଗୋଟିଏ ବାକ୍ୟରେ କହିହେବ - ଶକ୍ତି ଓ ନିର୍ଭୀକତା । ସିପାହୀବିଦ୍ରୋହରେ ସେହି ସନ୍ଥ ଯାହାଙ୍କର ହୃଦୟ ତରବାରୀ ବିଦ୍ଧ ହେଲା ସମୟରେ, ମୁଖରୁ ନିଃସୃତ ହୋଇଥିଲା ''ତୁମେ ହିଁ ସେହି'' । ତାହା ହିଁ ମୋର ଜୀବନର ଆଦର୍ଶ ।

ବେଦାନ୍ତର ବିଜୟ ଝଣ୍ଡା ବିଦେଶ ଭୂମିରେ ଉଡ଼ାଇଲେ ଏବଂ ଚାହିଁଲେ ମୃଦୁ ମୃଦୁ ହସରେ ସେହି ଫରଫର ଉଡ଼ନ୍ତା ପତାକାକୁ, ହୃଦୟ ପୂର୍ଣ୍ଣହେଲା ଶାନ୍ତି ଓ ସନ୍ତୋଷରେ ।

- ୨ -

*ମୁଁ ମୋର ଗୁରୁଦେବ ଶ୍ରୀରାମକୃଷ୍ଣଙ୍କଠାରୁ ଅଦ୍ଭୁତ ସତ୍ୟ ଶ୍ରବଣ କରିଥିଲି ଯେ ବିଶ୍ୱରେ ଯେତେ ଧର୍ମ ମାର୍ଗ ରହିଛି, ସେସବୁ ଆଦୌ ପରସ୍ପର ବିରୋଧୀ ଓ ପ୍ରତିଦ୍ୱନ୍ଦିତାମୂଳକ ନୁହେଁ । ଏକ ଶାଶ୍ୱତ ଧର୍ମର ବିଭିନ୍ନ ସ୍ତରମାତ୍ର । ସେହି ଶାଶ୍ୱତ ଧର୍ମ ବିଭିନ୍ନ ଅବସ୍ଥିତି, ବିଭିନ୍ନ ମନ ଓ ଜାତିର ମତ ଅନୁସାରେ ବ୍ୟବହୃତ ହୁଏ । ମୋ ଧର୍ମ କିମ୍ବା ତୁମ ଧର୍ମ, ମୋ ଜାତୀୟ ଧର୍ମ କିମ୍ବା ତୁମ ଜାତୀୟ ଧର୍ମ ବୋଲି କିଛି ନ ଥିଲା, କେବଳ ଥିଲା ଗୋଟିଏ ଧର୍ମ ।*

୧୯୦୦ ଜୁଲାଇ ୨୬ ତାରିଖରେ ସ୍ୱାମୀଜୀ ପ୍ୟାରିସ୍ ଅଭିମୁଖେ ଜଳଯାତ୍ରା ଆରମ୍ଭ କଲେ । ନିୟୁୟର୍କରୁ ଜାହାଜ ''ସାମେନ୍'' ବିଦାୟ ନେବା ସମୟରେ ସ୍ୱାମୀଜୀ ଆମେରିକାର ଭୂଖଣ୍ଡକୁ ଚାହିଁଲେ, ଅବଶ୍ୟ ସେ ଆଉ ଏଠାକୁ ଆସିବେ ନାହିଁ, ଏହା ତାଙ୍କର ଥିଲା ଅନ୍ତିମ ଆଗମନ, କିନ୍ତୁ ସେ ଦିବ୍ୟଦୃଷ୍ଟିରେ ନିଶ୍ଚୟ ଦେଖିଥିବେ ଯେ ସେ ଯେଉଁ ବେଦାନ୍ତ ମାର୍ଗର ପଥ ପରିଷ୍କାର କରିଯାଇଛନ୍ତି, ସେହି ମାର୍ଗରେ ଭାରତବର୍ଷରୁ ଭବିଷ୍ୟତରେ ସନ୍ଥ, ସନ୍ୟାସୀ ଓ ଆଧ୍ୟାତ୍ମିକ ଗୁରୁମାନଙ୍କର ସୁଅ ଛୁଟିବ ଏବଂ ଆମେରିକା କେବଳ ନୁହେଁ ସମଗ୍ର ବିଶ୍ୱ ବେଦାନ୍ତର ଭ୍ରାତୃତ୍ୱ ବନ୍ଧନରେ ଦିନେ ବାନ୍ଧି ହୋଇଯିବେ ଏବଂ ବିଶ୍ୱବାସୀ ଶାନ୍ତିରେ ଟିକିଏ ନିଶ୍ୱାସ ମାରିପାରିବେ ।

ସ୍ୱାମୀଜୀ ସିନା ଆଉ ଫେରିବେ ନାହିଁ ଆମେରିକା ଭୂଖଣ୍ଡକୁ, କିନ୍ତୁ ଧର୍ମକୁ ନେଇ ଭବିଷ୍ୟତ ଆଧୁନିକ ବିଶ୍ୱରେ ଯେଉଁ ସଂଘର୍ଷ ଓ ସଂଘାତ ସୃଷ୍ଟି ହେବ, ସ୍ୱାମୀଜୀଙ୍କର ''ମୋ ଗୁରୁଦେବ'' ଶୀର୍ଷକ ବକ୍ତୃତାରେ ପ୍ରଦତ୍ତ ଆମ୍ଳାନ ବାଣୀ ସେହି ସଂଘର୍ଷ ଓ ସଂଘାତର ଯନ୍ତ୍ରଣା ଓ ବେଦନାର ଉପଶମ ପାଇଁ ମଲମ ସଦୃଶ କାର୍ଯ୍ୟ କରିବ - ''ମୁଁ ମୋର ଗୁରୁଦେବ ଶ୍ରୀରାମକୃଷ୍ଣଙ୍କଠାରୁ ଅଦ୍ଭୁତ ସତ୍ୟ ଶ୍ରବଣ କରିଥିଲି ଯେ ବିଶ୍ୱରେ ଯେତେ ଧର୍ମ ମାର୍ଗ ରହିଛି, ସେସବୁ ଆଦୌ ପରସ୍ପର ବିରୋଧୀ ଓ ପ୍ରତିଦ୍ୱନ୍ଦିତାମୂଳକ ନୁହେଁ । ଏକ ଶାଶ୍ୱତ ଧର୍ମର ବିଭିନ୍ନ ସ୍ତରମାତ୍ର । ସେହି ଶାଶ୍ୱତ ଧର୍ମ ବିଭିନ୍ନ ଅବସ୍ଥିତି, ବିଭିନ୍ନ ମନ ଓ ଜାତିର ମତ ଅନୁସାରେ ବ୍ୟବହୃତ ହୁଏ । ମୋ ଧର୍ମ କିମ୍ବା ତୁମ ଧର୍ମ, ମୋ ଜାତୀୟ ଧର୍ମ କିମ୍ବା ତୁମ ଜାତୀୟ ଧର୍ମ ବୋଲି କିଛି ନ ଥିଲା, କେବଳ ଥିଲା

Digitized by srujanika@gmail.com

ଗୋଟିଏ ଧର୍ମ । ଏକ ଅନନ୍ତ ଧର୍ମ ଅନାଦିକାଳରୁ ବିରାଜିତ ଏବଂ ଭବିଷ୍ୟତରେ ବି ବିରାଜମାନ କରିବ ଏବଂ ଏହି ଏକମାତ୍ର ଧର୍ମ ବିଭିନ୍ନ ଦେଶରେ ବିଭିନ୍ନ ମାର୍ଗରେ ନିଜକୁ ପ୍ରକଟିତ କରୁଛି । ସୁତରାଂ ଆମେ ସବୁ ଧର୍ମକୁ ସମ୍ମାନ ଦେବା ଏବଂ ପାରୁପର୍ଯ୍ୟନ୍ତ ସବୁଧର୍ମକୁ ଗ୍ରହଣ କରିନେବା ପାଇଁ ପ୍ରଯତ୍ନ କରିବା ।''

୧୯୦୦ ଖ୍ରୀଷ୍ଟାବ୍ଦ ଅଗଷ୍ଟ ତିନି ତାରିଖରେ ଜାହାଜ 'ଲେ ହେଭ୍ରେ' ବନ୍ଦରରେ ପହଞ୍ଚିଲା । ସ୍ୱାମୀଜୀ ରେଳ ଯୋଗେ ପ୍ୟାରିସ୍‌ରେ ଉପନୀତ ହେଲେ । ଲିଗେଟ୍-ଦମ୍ପତ୍ତିଙ୍କ ଆତିଥ୍ୟ ଗ୍ରହଣ କରି ସେମାନଙ୍କର ସୁନ୍ଦର ବାସଭବନରେ ଅବସ୍ଥାନ କଲେ । ଶ୍ରୀ ଓ ଶ୍ରୀମତୀ ଫ୍ରାନ୍‌ସିସ୍ ଲିଗେଟ୍ ସ୍ୱାମୀଜୀଙ୍କର ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଲକ୍ଷ୍ୟ ରଖି ମୁକ୍ତ ହସ୍ତରେ ଅର୍ଥବ୍ୟୟ କରୁଥିଲେ ।

ଏହି ସମୟରେ ଶ୍ରୀମତୀ ଓଲେବୁଲ୍ ବ୍ରିଟାନୀ ପ୍ରଦେଶର ଲାନିଓନ୍ ନାମକ ସ୍ଥାନରେ ବାସ କରୁଥିଲେ; ତାଙ୍କ ସାଗ୍ରହ ଆହ୍ୱାନରେ ସ୍ୱାମୀଜୀ ଅଳ୍ପଦିନ ପାଇଁ ସେଠାକୁ ଗଲେ । ଶ୍ରୀମତୀ ବୁଲ୍‌ଙ୍କ ଗୃହରେ ଫ୍ରାନସ୍‌ର ପ୍ରସିଦ୍ଧ ଦାର୍ଶନିକ ଓ ଲେଖକ ଶ୍ରୀ ଜୁଲ୍ ବୋୟାଙ୍କ ସହିତ ସ୍ୱାମୀଜୀଙ୍କର ପରିଚୟ ହେଲା । ଏହି ବ୍ୟକ୍ତି ଇଂରାଜୀ ଜାଣି ନ ଥିଲେ, ସେଥିପାଇଁ ସ୍ୱାମୀଜୀ ଫରାସୀ ଭାଷା ଶିଖିବା ଲାଗି ସୁଯୋଗ ପାଇଥିଲେ ।

ଲିଗେଟ୍ - ଦମ୍ପତ୍ତିଙ୍କ ବାସଭବନ ସ୍ୱାମୀଜୀଙ୍କ ଉପସ୍ଥିତିରେ ଏକ ଆକର୍ଷଣୀୟ କେନ୍ଦ୍ର ହୋଇଉଠିଲା । ଫ୍ରାନସ୍‌ର ସ୍ୱନାମଧନ୍ୟ କବି, ଲେଖକ, ଦାର୍ଶନିକ, ବୈଜ୍ଞାନିକ, ରାଜନୈତିକ, ସାମାଜିକ ନେତା, ଗାୟକ, ଗାୟିକା, ଶିକ୍ଷକ, ଶିକ୍ଷୟତ୍ରୀ, ଚିତ୍ରକର, ଶିଳ୍ପୀ, ଭାସ୍କର, ବାଦକଙ୍କର ସୁଅ ସେଠାକୁ ଛୁଟୁଥିଲା । ଏଠାକୁ ଏଡ଼ିନବର୍ଗ ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ସମାଜତତ୍ତ୍ୱବିତ୍ ପ୍ରଫେସର ପାଟ୍ରିକ୍ ଗିଡ୍ଡେସ୍, ଆମେରିକାର ବିଖ୍ୟାତ ସମାଜସେବୀ ଜେନ୍ ଆଡ଼ାମ୍‌ସ୍, ସାର୍ ହିରାମ ମେକ୍ସିମ୍, ଡିୟୁକ୍ ଅଫ୍ ରିଚେଲ୍ୟୁ, ମାଡ଼ାମ ଏମ୍ମା କାଲ୍‌ଭେଙ୍କ ଭଳି ବହୁ ପ୍ରଥିତଯଶା ବ୍ୟକ୍ତି ସ୍ୱାମୀଜୀଙ୍କର ଆଲୋଚନା ଶୁଣିବା ଲାଗି ଲିଗେଟ୍‌ଙ୍କ ବାସଭବନରେ ପହଞ୍ଚୁଥିଲେ ।

ପ୍ରସିଦ୍ଧ ବୈଜ୍ଞାନିକ ସାର୍ ଜଗଦୀଶ ଚନ୍ଦ୍ର ବୋଷ ପ୍ୟାରିସ୍ ପ୍ରଦର୍ଶନୀର ବୈଜ୍ଞାନିକ ସଭାରେ ଯୋଗ ଦେବା ଲାଗି ଜଣେ ସମ୍ମାନୀତ ଅତିଥି ଭାବେ ଆମନ୍ତ୍ରିତ ହୋଇଥିଲେ । ସ୍ୱାମୀଜୀ ତାଙ୍କୁ ବାରମ୍ବାର ଭେଟୁଥିଲେ ଏବଂ ଅନ୍ୟମାନଙ୍କୁ ହାତ ଠାରି କହୁଥିଲେ, ''ଦେଖ ସେହି ଭାରତୀୟ ବୈଜ୍ଞାନିକଙ୍କୁ, ଯିଏ ବଙ୍ଗଳାର ଗର୍ବ ଓ ଗୌରବ ।'' ଏକଦା ବୁଦ୍ଧିଜୀବୀଙ୍କର ଆଲୋଚନା ଚକ୍ରରେ ସ୍ୱାମୀଜୀ ଭାଗ ନେଉଥିବା ସମୟରେ, ଜଣେ ବିଖ୍ୟାତ ଇଂରାଜୀ ବୈଜ୍ଞାନିକଙ୍କର ଏକ ଛାତ୍ର କହି ଉଠିଲେ ଯେ ତାଙ୍କ ପ୍ରଫେସର ବଢୁ ନ ଥିବା ଗୋଟିଏ କଇଁଫୁଲ ଉପରେ ଗବେଷଣା କରିବାରେ ବ୍ୟସ୍ତ । ସ୍ୱାମୀଜୀ ପରିହାସ ଛଳରେ କହିଲେ, ''ଓହୋଃ - ତାହା କିଛି ନୁହେଁ । ଯେଉଁ ପାତ୍ରରେ କଇଁଫୁଲ ବଢୁଛି, ସେହି ପାତ୍ରଟିକୁ ବୋଷ କଥା କୁହାଇ ଦେବେ, ଅପେକ୍ଷା କର ।''

ଚିକାଗୋ ଧର୍ମ ମହାସମ୍ମିଳନୀ ଅନୁକରଣରେ ପ୍ୟାରିସ୍ ପ୍ରଦର୍ଶନୀ ଉପଲକ୍ଷେ ଏକ ଧର୍ମ ମହାସଭା ଅଧିବେଶନ ହେବାର ଯୋଜନା ଥିଲା, କିନ୍ତୁ ରୋମାନ୍ କ୍ୟାଥୋଲିକ୍ ଖ୍ରୀଷ୍ଟିଆନ ସମ୍ପ୍ରଦାୟର ପ୍ରଚଣ୍ଡ ବିରୋଧ ଯୋଗୁଁ ତାହା ଅନୁଷ୍ଠିତ ହୋଇ ପାରିଲା ନାହିଁ । ଚିକାଗୋ ଧର୍ମ

Digitized by srujanika@gmail.com

ମହାସଭାରେ କ୍ୟାଥୋଲିକ୍ ସମ୍ପ୍ରଦାୟ ଅତ୍ୟନ୍ତ ଉତ୍ସାହ ସହିତ ଯୋଗଦେଇ ଥିଲେ । ସେମାନେ ଭାବିଥିଲେ ଯେ ଖ୍ରୀଷ୍ଟଧର୍ମ ବିଶ୍ୱରେ ସର୍ବଶ୍ରେଷ୍ଠ ଧର୍ମଭାବେ ପ୍ରତିପାଦନ କରିବାକୁ ସମର୍ଥ ହେବେ । କିନ୍ତୁ ସ୍ୱାମୀ ବିବେକାନନ୍ଦଙ୍କର ବେଦାନ୍ତ ଧର୍ମର ଜୟଗାନ ଏଭଳି ପ୍ରଶଂସାମୁଖର ହେଲା ଯେ କ୍ୟାଥୋଲିକ୍ ଖ୍ରୀଷ୍ଟିଆନମାନେ ଈର୍ଷାରେ ଜଳି ଉଠିଥିଲେ । ଯେହେତୁ ଫ୍ରାନ୍ସର ଅଧିକାଂଶ ଅଧିବାସୀ କ୍ୟାଥୋଲିକ୍ ସମ୍ପ୍ରଦାୟଭୁକ୍ତ; ସେମାନେ ଏଭଳି ଧର୍ମ ସଭାର ଆୟୋଜନ କରିବାକୁ ମନ ବଳାଇଲେ ନାହିଁ । ଏମାନଙ୍କୁ ଉପେକ୍ଷା କରି ଧର୍ମସଭା ଆହ୍ୱାନ କରିବାକୁ ପ୍ରଦର୍ଶନୀ କର୍ତ୍ତୃପକ୍ଷ ସାହସ କଲେ ନାହିଁ । ସେହି ସ୍ଥାନରେ ଏକ ଧର୍ମ-ଇତିହାସ ସଭା ସେପ୍ଟେମ୍ବର ୩ରୁ ୮ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେଲା । ଏହି ସଭା ଚିକାଗୋ ଧର୍ମସଭା ଭଳି ମହତ୍ତ୍ୱପୂର୍ଣ୍ଣ ନ ଥିଲା । ବିଭିନ୍ନ ଧର୍ମର ଐତିହାସିକ ଦିଗ ଉପରେ କେବଳ ଆଲୋଚନା ହୋଇଥିଲା । ଅବଶ୍ୟ ଏହି ଧର୍ମ ଇତିହାସ ସଭାରେ ବହୁ ଅଧିବେଶନରେ ସ୍ୱାମୀଜୀ ଯୋଗ ଦେଇଥିଲେ, ତଥାପି ନିଜର ଅସୁସ୍ଥତା କାରଣ ଯୋଗୁଁ ଦୁଇଟି ଅଧିବେଶନରେ ଯୋଗ ଦେଇ ପାରି ନ ଥିଲେ ।

- ୩ -

*ସ୍ୱାମୀଜୀଙ୍କର ଦୃଷ୍ଟିକୋଣକୁ ସଂସାରୀ ବୁଝିପାରିବେ ନାହିଁ । ଜନ୍ମ-ମୃତ୍ୟୁ ବ୍ୟବଧାନ ଭିତରେ ସମସ୍ତେ ସୁଖ ଖୋଜନ୍ତି । ମୃତ୍ୟୁପରେ କ'ଣ ହେବ କାହାକୁ ଜଣା ନ ଥାଏ । ସେଥିପାଇଁ ମୃତ୍ୟୁ ଏକ ଅମଙ୍ଗଳ କଥା ଓ ଭୟର କାରଣ । କିନ୍ତୁ ଯିଏ ନିଜକୁ ବୁଝିପାରେ, ତା'ପାଇଁ ଜନ୍ମ ଓ ମୃତ୍ୟୁର କୌଣସି ଅର୍ଥ ନାହିଁ । ବିଚରା ଡୁ୍ୟକ୍ କାହୁଁବା ବୁଝିବେ, ସେ ସଂସାରୀ ଜୀବନ ଆପଣେଇ ନେଲେ, କିନ୍ତୁ ସ୍ୱାମୀ ବିବେକାନନ୍ଦଙ୍କର ଜଣେ ସଚ୍ଚା ପ୍ରଶଂସକ ହୋଇ ସବୁଦିନ ପାଇଁ ରହିଗଲେ ।*

ଧର୍ମ-ଇତିହାସ ସଭା, ବିଭିନ୍ନ ଧର୍ମର ଉତ୍ପତ୍ତି ଓ ଐତିହାସିକ ଦିଗ ଉପରେ ବୌଦ୍ଧିକ ଆଲୋଚନା ଲାଗି ଅଭିପ୍ରେତ ଥିବାରୁ ସ୍ୱାମୀଜୀ ଏଠାରେ ଜଣେ ପ୍ରାଚ୍ୟ ବୁଦ୍ଧିଜୀବୀ ଭାବେ ପାଶ୍ଚାତ୍ୟ ପଣ୍ଡିତଙ୍କର ଭାରତୀୟ ଧର୍ମ ଓ ଦର୍ଶନ ପ୍ରତି ରହିଥିବା ବହୁ ଭ୍ରାନ୍ତ ଓ ଅମୂଳକ ଧାରଣାକୁ ଦୂର କରିବାରେ ସକ୍ଷମ ହୋଇଥିଲେ । ଉକ୍ତ ସଭାରେ ଗୁସ୍ତଭ ଓପର୍ଟ ନାମକ ଜଣେ ଜର୍ମାନ ପଣ୍ଡିତ ଶାଳଗ୍ରାମ ଶିଳାର ଉତ୍ପତ୍ତି ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ପାଠ କରିଥିଲେ । ସେଥିରେ ସେ ଶାଳଗ୍ରାମର ଉତ୍ପତ୍ତି 'ଯୋନି' ଚିହ୍ନ ବୋଲି ନିର୍ଦ୍ଧାରଣ କରିଥିଲେ । ତାଙ୍କ ମତରେ ଶିବଲିଙ୍ଗ ପୁଂଲିଙ୍ଗର ଚିହ୍ନ ଏବଂ ଶାଳଗ୍ରାମ ସ୍ତ୍ରୀଲିଙ୍ଗର ଚିହ୍ନ । ଶିବଲିଙ୍ଗ ଓ ଶାଳଗ୍ରାମ ହିଁ ଲିଙ୍ଗ-ଯୋନୀ ପୂଜାର ଅଙ୍ଗ । ସ୍ୱାମୀଜୀ ଏଭଳି ଭ୍ରାନ୍ତ ଧାରଣାକୁ ଖଣ୍ଡନ କରି କହିଥିଲେ ଯେ ପାଶ୍ଚାତ୍ୟ ପଣ୍ଡିତଗଣ ଭାରତର ଧର୍ମ ଓ ସଂସ୍କୃତିର ମୌଳିକତାକୁ ବୁଝିବାକୁ ଚେଷ୍ଟା କରିବା ପରିବର୍ତ୍ତେ କେବଳ ବିକୃତ କରିବା ଜାଣିଛନ୍ତି । ଶାଳଗ୍ରାମ ଶିଳାର ପୂଜନ ବେଦ ସହିତ ଜଡ଼ିତ । ଅଥର୍ବ ବେଦ ସଂହିତା

Digitized by srujanika@gmail.com

ଅନୁସାରେ ଯୂପ-ସ୍ତମ୍ଭର ପ୍ରସିଦ୍ଧ ସ୍ତୋତ୍ରରୁ ଉଦ୍‌ଭୁତ । ଉକ୍ତ ସ୍ତୋତରେ ଅନାଦି ଅନନ୍ତ ବ୍ରହ୍ମଙ୍କର ଯୂପ ସ୍ତମ୍ଭ ଏକ ପ୍ରତୀକ ବୋଲି ବର୍ଣ୍ଣିତ । ଯଜ୍ଞର ଅଗ୍ନିଶିଖା, ଧୂମ, ଭସ୍ମ, ସୋମଲତା ଓ ଯଜ୍ଞକାଷ୍ଠର ବାହକ ବୃଷଭ, ପରବର୍ତ୍ତୀ କାଳରେ ମହାଦେବଙ୍କର ପିଙ୍ଗଳ ଜଟା, ନୀଳକଣ୍ଠ, ଅଙ୍ଗ କାନ୍ତି ଓ ବାହାନାଦିରେ ପରିଣତ ହୋଇଛି, ଠିକ୍ ସେପରି ଯୂପ-ସ୍ତମ୍ଭ ମଧ୍ୟ ଶ୍ରୀ ଶଙ୍କରଙ୍କଠାରେ ଲୀନ ହୋଇ ମହିମାନ୍ୱିତ ହୋଇଛି ।

ସ୍ୱାମୀଜୀ ଶିବ ଲିଙ୍ଗର ଉତ୍ପତ୍ତି ବୈଦିକ ଉପାସନାରେ କେବଳ ସୀମିତ ନ ରଖି, ଏକ ଜ୍ଞାନଦୀପ୍ତ ଐତିହାସିକ ଭୂମିକାରେ ଅବତୀର୍ଣ୍ଣ ହୋଇ ଶିବଲିଙ୍ଗ ଉତ୍ପତ୍ତିର ଅନ୍ୟ ଏକ ଦିଗ ପାଶ୍ଚାତ୍ୟ ପଣ୍ଡିତଙ୍କ ସମ୍ମୁଖରେ ଉନ୍ମୋଚନ କରିଥିଲେ - ବୌଦ୍ଧଧର୍ମ ସହ ଏହି ଶିବଲିଙ୍ଗ ଓ ଶାଳଗ୍ରାମ ଶିଳାର ସମ୍ପର୍କ ରହିଥାଇପାରେ । ବୌଦ୍ଧ ସ୍ତୁପର ଅନ୍ୟନାମ ଧାତୁଗର୍ଭ । ସ୍ତୂପ ମଧ୍ୟସ୍ଥ ଶିଳାଖଣ୍ଡ ଭିତରେ ପ୍ରସିଦ୍ଧ ଭିକ୍ଷୁଗଣଙ୍କର ଭସ୍ମାଦି ରକ୍ଷିତ ହେଉଥିଲା । ତତ୍ ସଙ୍ଗେ ସ୍ୱର୍ଣ୍ଣାଦି ଧାତୁ ମଧ୍ୟ ପ୍ରୋଦ୍‌ଥିତ ହେଉଥିଲା । ଶାଳଗ୍ରାମ ଶିଳା ଉକ୍ତ ଅସ୍ଥି ଭସ୍ମାଦି ରକ୍ଷଣ ଶିଳାର ପ୍ରାକୃତିକ ପ୍ରତିରୂପ । ଏଥିରୁ ସ୍ପଷ୍ଟ ହେଲା ଯେ ଶାଳଗ୍ରାମ ପ୍ରଥମେ ବୌଦ୍ଧମାନଙ୍କ ଦ୍ୱାରା ପୂଜିତ ହୋଇ ପରବର୍ତ୍ତୀ ସମୟରେ ବୈଷ୍ଣବ ସମ୍ପ୍ରଦାୟ ଭିତରେ ବିଷ୍ଣୁ ଶାଳଗ୍ରାମ ଭାବେ ପୂଜିତ ହୋଇଥିବ । ଏହି ଶାଳଗ୍ରାମ ଶିଳାକୁ ନେଇ ଯେତେ ମତ ରହିଥିଲେ ବି ନର୍ମଦାକୂଳ ଓ ନେପାଳର ଗଣ୍ଡୁକି ନଦୀ କୂଳରେ ଏହା ବେଶି ଦୃଷ୍ଟିଗୋଚର ଆବହମାନ କାଳରୁ ହୋଇଆସୁଛି । ଉଭୟ ବୌଦ୍ଧ ଓ ହିନ୍ଦୁଧର୍ମ ପାଇଁ ଶାଳଗ୍ରାମ ଶିଳା ଓ ଶିବଲିଙ୍ଗ ପବିତ୍ର ଓ ସମାଦୃତ । ତଥାପି ହୋଇପାରେ ଯେ ବୌଦ୍ଧଧର୍ମର ପତନ ପରେ, ଭାରତବର୍ଷର ଧର୍ମ ଜୀବନରେ ଅଧୋଗତି ଦେଖା ଦେଇଥିଲା, ଏହାର ସୁଯୋଗ ନେଇ କେତେକ ପତିତ ବୌଦ୍ଧ ସମ୍ପ୍ରଦାୟ ଶିବଲିଙ୍ଗ ଓ ଶାଳଗ୍ରାମ ଶିଳାସହ ଯୌନ-ପ୍ରବଣତାକୁ ଯୋଡ଼ି ଦେଇଥିଲେ । କିନ୍ତୁ ବାସ୍ତବ କ୍ଷେତ୍ରରେ ଏହା ନୁହେଁ ।

ଭାରତୀୟ ସାହିତ୍ୟ, କଳା, ଜ୍ୟୋତିଷଶାସ୍ତ୍ର, ଗଣିତ ପ୍ରଭୃତି ଗ୍ରୀକ୍ ସଭ୍ୟତା ଦ୍ୱାରା ପ୍ରଭାବିତ ବୋଲି ପାଶ୍ଚାତ୍ୟ ପଣ୍ଡିତଙ୍କର ମତକୁ ସ୍ୱାମୀଜୀ ବଜ୍ର କଣ୍ଠରେ ଖଣ୍ଡନ କରିଥିଲେ । ପାଶ୍ଚାତ୍ୟବାସୀ ସଂସ୍କୃତ ସାହିତ୍ୟକୁ ଗଭୀର ଭାବେ ଅଧ୍ୟୟନ ନ କରି, ପକ୍ଷପାତ ଦୃଷ୍ଟିକୋଣରେ ଭାରତର ସବୁକିଛିକୁ କଦର୍ଥ ଓ ବିକୃତ କରିବାରେ ଓସ୍ତାଦ ବୋଲି ସର୍ବ ସମ୍ମୁଖରେ ଘୋଷଣା କଲେ । ଯୁକ୍ତି ମାଧ୍ୟମରେ ପାଶ୍ଚାତ୍ୟ ପଣ୍ଡିତଗଣଙ୍କୁ ବୁଝାଇ ଦେଲେ ଯେ ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଆଦୌ ଗ୍ରୀକ୍ ପ୍ରଭାବ ନାହିଁ ବରଂ ଅନେକ  କ୍ଷେତ୍ରରେ ଗ୍ରୀକ୍‌ମାନେ ହିନ୍ଦୁମାନଙ୍କଠାରୁ ଅନେକ ବିଷୟ ଶିଖିଥିଲେ । ଅବଶ୍ୟ ପୁରାତନ କାଳରେ ଗ୍ରୀକ୍ ଓ ଭାରତୀୟଙ୍କ ଭିତରେ ମତ ବିନିମୟ ହୋଇଛି, ନ ହୋଇଥିଲେ ଗ୍ରୀକ୍‌ର ପ୍ରସିଦ୍ଧ ଦାର୍ଶନିକ ପିଥାଗୋରାସ୍‌ଙ୍କୁ ବ୍ରାହ୍ମଣଙ୍କର ଶିଷ୍ୟ ବୋଲି କାହିଁକି କହିଥାନ୍ତେ ? ହୋଇପାରେ ବହୁ ଜ୍ଞାନପିପାସୁ ଗ୍ରୀକ୍ ବିଦ୍ୱାନ ଜ୍ଞାନଲାଭ ପାଇଁ ସେତେବେଳେ ଭାରତବର୍ଷକୁ ଆସୁଥିଲେ । ସ୍ୱାମୀଜୀଙ୍କର ବ୍ୟାଖ୍ୟା ଉପସ୍ଥିତ ବହୁ ବିଦ୍ୱାନ ଓ ପଣ୍ଡିତଗଣଙ୍କୁ ମୁଗ୍ଧ କରିଥିଲା ।

ଫ୍ରାନ୍ସର ଷୋଡ଼ଶ ଲୁଇଙ୍କ ରାଜତ୍ୱ କାଳରେ ଜଣେ ପ୍ରଧାନମନ୍ତ୍ରୀଙ୍କର ବଂଶଧର ମଧ୍ୟରୁ ଜଣେ ଯୁବକ ସ୍ୱାମୀଜୀଙ୍କର ଆଲୋଚନାରେ ଅଂଶଗ୍ରହଣ କରି ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ସେ

Digitized by srujanika@gmail.com

ଥିଲେ ଡ୍ୟୁକ୍ ଅଫ୍ ରିଚେଲୁ । ସେ ବି ଜଣେ ଉଚ୍ଚ ଶିକ୍ଷିତ । ସ୍ୱାମୀଜୀଙ୍କ ସହ ପ୍ରାୟ ମିଶୁଥିଲେ ଏବଂ ତାଙ୍କର ଜଣେ ଅନୁଗାମୀ ହୋଇଗଲେ । ପ୍ୟାରିସ୍‌ରୁ ବିଦାୟ ନେବା ଅବସରରେ, ସ୍ୱାମୀଜୀ ତାଙ୍କୁ ପଚାରିଥିଲେ, ''ହେ ଯୁବକ, ତୁମେ କ'ଣ ସଂସାର ତ୍ୟାଗ କରି ମୋର ଶିଷ୍ୟ ହୋଇପାରିବ ?'' ଯୁବକ ଉତ୍ତର ଦେଇଥିଲେ, ''ସ୍ୱାମୀଜୀ, ମୁଁ ସଂସାର ତ୍ୟାଗ କରି ଆପଣଙ୍କର ଶିଷ୍ୟ ହେଲେ, ପାଇବି କ'ଣ ?'' ସ୍ୱାମୀଜୀ ତତ୍‌କ୍ଷଣାତ୍ କହିଲେ, ''ମୁଁ ତୁମକୁ ଇଚ୍ଛାମୃତ୍ୟୁ ପ୍ରଦାନ କରିବି ।'' ଏଭଳି ଅମଙ୍ଗଳ କଥା ଶୁଣି ଡ୍ୟୁକ ଅବାକ୍ ହେଲେ । କିଏ ବା ମରିବାକୁ ଚାହିଁବ ? ସ୍ୱାମୀଜୀ ତାଙ୍କର ଚିନ୍ତିତ ଓ ଭୟଭୀତ ମୁଖମଣ୍ଡଳକୁ ଲକ୍ଷ୍ୟ କରି କହିଲେ, ''ଶୁଣ ଯୁବକ, ମୁଁ ତୁମର ମନକୁ ଏଭଳି ଗଢ଼ିଦେବି, ଯା'ଫଳରେ ମୃତ୍ୟୁ ତୁମ ସମ୍ମୁଖରେ ଉପସ୍ଥିତ ହେଲେ ବି ତୁମେ ହସି ହସି ତାକୁ ସ୍ୱାଗତ କରିବ ।'' ସ୍ୱାମୀଜୀଙ୍କର ଦୃଷ୍ଟିକୋଣକୁ ସଂସାରୀ ବୁଝିପାରିବେ ନାହିଁ । ଜନ୍ମ-ମୃତ୍ୟୁ ବ୍ୟବଧାନ ଭିତରେ ସମସ୍ତେ ସୁଖ ଖୋଜନ୍ତି । ମୃତ୍ୟୁପରେ କ'ଣ ହେବ କାହାକୁ ଜଣା ନ ଥାଏ । ସେଥିପାଇଁ ମୃତ୍ୟୁ ଏକ ଅମଙ୍ଗଳ କଥା ଓ ଭୟର କାରଣ । କିନ୍ତୁ ଯିଏ ନିଜକୁ ବୁଝିପାରେ, ତା'ପାଇଁ ଜନ୍ମ ଓ ମୃତ୍ୟୁର କୌଣସି ଅର୍ଥ ନାହିଁ । ବିଚରା ଡ୍ୟୁକ୍ କାହୁଁବା ବୁଝିବେ, ସେ ସଂସାରୀ ଜୀବନ ଆପଣେଇ ନେଲେ, କିନ୍ତୁ ସ୍ୱାମୀ ବିବେକାନନ୍ଦଙ୍କର ଜଣେ ସଚ୍ଚା ପ୍ରଶଂସକ ହୋଇ ସବୁଦିନ ପାଇଁ ରହିଗଲେ ।

ବ୍ରିଟାନୀର ଚର୍ଚ୍ଚ ଓ ପ୍ୟାରିସ୍‌ର ବିଶୋପଙ୍କର ବଡ଼ ବଡ଼ ଗୀର୍ଜାରେ ଉପାସନା ପଦ୍ଧତି ସ୍ୱାମୀଜୀଙ୍କୁ ବିସ୍ମିତ କଲା । ହିନ୍ଦୁଧର୍ମ ଓ ରୋମାନ୍ କାଥୋଲିକ୍ ମଧ୍ୟରେ ରହିଥିବା ପୂଜା ପଦ୍ଧତି ପ୍ରାୟ ଏକାଭଳିଆ । ସେ କହିଥିଲେ, ''ହିନ୍ଦୁମାନଙ୍କ ପାଇଁ ଖ୍ରୀଷ୍ଟଧର୍ମ ଏକ ବିଦେଶୀ ଧର୍ମ ନୁହେଁ ।'' ଯାହାହେଉ ପ୍ୟାରିସ୍‌ର ମହାପ୍ରଦର୍ଶନୀ ଯୋଗୁଁ ବହୁ ମନିଷୀଗଣ ସେଠାରେ ସମବେତ ହୋଇଥିଲେ । ସ୍ୱାମୀଜୀ ସେମାନଙ୍କ ସହ ପରିଚିତ ହୋଇ ନିଜର ବୈଦାନ୍ତିକ ଚିନ୍ତାଧାରା ବ୍ୟକ୍ତ କରିଥିଲେ ଏବଂ ସେମାନଙ୍କୁ ବେଦାନ୍ତ ଦର୍ଶନରେ ଉଦ୍‌ବୁଦ୍ଧ କରିଥିଲେ । ଏଠାରେ କହିବା ବାହୁଲ୍ୟ ଯେ ସ୍ୱାମୀଜୀଙ୍କ ମନ ଏହି ସମୟରେ ଭଗବାନ ବୁଦ୍ଧଙ୍କ ଭାବନାରେ ମଜ୍ଜି ଯାଉଥିଲା । ଶ୍ରୀମତୀ ଓଲେବୁଲ୍‌ଙ୍କ ବାସଭବନରେ ବିଶ୍ରାମ ନେବା ସମୟରେ ବାରମ୍ବାର ବୌଦ୍ଧ ଜାତକ, ଲଳିତ ବିସ୍ତାର, ବିନୟ ପିଟକ ଭଳି ବୌଦ୍ଧ ଶାସ୍ତ୍ରରୁ ବହୁ ପଙ୍‌କ୍ତି ଉଦ୍ଧାର କରି ଫ୍ରାନ୍‌ସର ପ୍ରସିଦ୍ଧ ଦାର୍ଶନିକ ଓ ଲେଖକ ଜୁଲ୍ ବୋୟାଙ୍କୁ ଶୁଣାଇଥିଲେ । ବୁଦ୍ଧଧର୍ମ ଓ ଅଦ୍ୱୈତ ମଧ୍ୟରେ ରହିଥିବା ସାମଞ୍ଜସ୍ୟ ଓ ପାର୍ଥକ୍ୟ ଉପରେ ନିଜର ମତ ବ୍ୟକ୍ତ କରି ସେ କହୁଥିଲେ, ''ବୁଦ୍ଧଧର୍ମ ଠିକ୍ ହୋଇଥିବ ! ପୁନର୍ଜନ୍ମ କେବଳ ମାୟା । କିନ୍ତୁ ଏହା କେବଳ ଅଦ୍ୱୈତ ମାର୍ଗରେ ସମ୍ଭବ । ଶେଷରେ ଦୁଇଧର୍ମକୁ ତୁଳନା କରି ସ୍ୱାମୀଜୀ କହିଥିଲେ :

ବୁଦ୍ଧଧର୍ମ କହେ - ସବୁ ବସ୍ତୁ ମାୟା ଭାବି ତ୍ୟାଗକର ଏବଂ ଆତ୍ମୋପଲବ୍ଧି କର । ହିନ୍ଦୁଧର୍ମ କହେ-ସବୁ ବସ୍ତୁ ମାୟା କିନ୍ତୁ ମାୟା ଭିତରେ ରହିଛି ସତ୍ୟ, ତାକୁ ଉପଲବ୍ଧି କର । ଏହି ଆତ୍ମୋପଲବ୍ଧି ଲାଭ କରିବା ନିମନ୍ତେ ମନୁଷ୍ୟକୁ ଭିକ୍ଷୁ ସାଜିବା ପାଇଁ ହେବ, ବୌଦ୍ଧ ମଠରେ ରହିବାକୁ ହେବ, ଏଭଳି ଅନେକ କଠୋର ନିୟମ ବୁଦ୍ଧଧର୍ମ ଭିତରେ ରହିଛି । କିନ୍ତୁ ହିନ୍ଦୁଧର୍ମରେ ସେଭଳି କିଛି

Digitized by srujanika@gmail.com

କଠୋର ନିୟମ ନାହିଁ । ଯିଏ ଯେଉଁ ପରିସ୍ଥିତିରେ ରହିଥାଉ, ସେ ଯଦି ନିଷ୍ଠା ଓ ଅନାସକ୍ତ ହୋଇ କର୍ମ କରେ, ତେବେ ତାକୁ ଆତ୍ମୋପଲବ୍ଧି ମିଳିଯିବ । ହିନ୍ଦୁଧର୍ମ ଓ ବୌଦ୍ଧଧର୍ମର ମତବାଦକୁ ନେଇ ଯିଏ ଯେତେ କଳହ କଲେ ବି, ପ୍ରତ୍ୟେକ ବ୍ୟକ୍ତିକୁ ସ୍ୱୀକାର କରିବାକୁ ହେବ ଯେ ସ୍ୱୟଂ ତଥାଗତ ବୁଦ୍ଧ ଥିଲେ ସିଂହ-ହୃଦୟୀ ଅବତାର ପୁରୁଷ ।

- ୪ -

*ୟୁରୋପର ଦିଗବଳୟ ସଂଲଗ୍ନ ଆକାଶରେ ସ୍ୱାମୀଜୀ ଦେଖିପାରିଲେ ଭୀଷଣ ଯୁଦ୍ଧର ଆଭାସ । ସେ କହିଥିଲେ, "ଇୟରୋପ ଏକ ବିଶାଳ ସେନା ଛାଉଣି । ଅଷ୍ଟ୍ରିଆର ବର୍ତ୍ତମାନ ସମ୍ରାଟ ଫ୍ରାନସିସ୍ ଯୋଶେଫଙ୍କ ମୃତ୍ୟୁପରେ ଅଷ୍ଟ୍ରିଆ ସାମ୍ରାଜ୍ୟର ଜର୍ମାନୀ ଭାଷାଭାଷି ଇଲାକାକୁ ଜର୍ମାନ ନିଜ ଦେଶରେ ମିଶାଇ ଦେବ - ରୁଷିଆ ଓ ଅନ୍ୟରାଷ୍ଟ୍ର ଏହାକୁ ବିରୋଧ କରିବେ, ଯା'ଫଳରେ ଦେଖାଦେବ ଭୟାନକ ଯୁଦ୍ଧର ବିଭୀଷିକା ।" କେବଳ ସେତିକି ନୁହେଁ ୧୮୯୫ରେ, କ୍ରିଷ୍ଟାଇନ୍ ଗ୍ରୀନଷ୍ଟିଡେଲଙ୍କୁ ଭବିଷ୍ୟତବାଣୀ ଶୁଣାଇ କହିଲେ ସମଗ୍ର ୟୁରୋପ ଏକ ଆଗ୍ନେୟଗିରି ପାର୍ଶ୍ୱରେ ଦଣ୍ଡାୟମାନ । ଯଦି ଆଧ୍ୟାତ୍ମିକ ମାଧ୍ୟମରେ ଏହି ଆଗ୍ନେୟଗିରିକୁ କାବୁ କରା ନ ଯାଏ, ତେବେ ଏହା ନିଶ୍ଚିତ ଉଦ୍‌ଗୀରଣ ହେବ ।"*

ପ୍ୟାରିସ୍ ଅବସ୍ଥାନ କାଳରେ ଜଣେ ବିଖ୍ୟାତ ବ୍ୟକ୍ତିଙ୍କ ସହ ସ୍ୱାମୀଜୀଙ୍କର ସାକ୍ଷାତ ହୋଇଥିଲା, ଯିଏ ତାଙ୍କର ଜ୍ଞାନଗର୍ଭକ ବେଦାନ୍ତ ଚିନ୍ତା ଏବଂ ସର୍ବଧର୍ମ ସମନ୍ୱୟ ମନୋଭାବର ଉଚ୍ଚ ପ୍ରଶଂସକ ଥିଲେ । ସେ ଥିଲେ ମେସିନ୍‌ଗନ୍‌ର ଉଦ୍ଭାବକ ସାର୍ ହିରାମ୍ ମେକ୍‌ସିମ୍ । ସେ ଚୀନ୍ ଓ ଭାରତକୁ ଭଲ ପାଉଥିଲେ ଏବଂ ଧର୍ମ ଓ ଦର୍ଶନ ସମ୍ବନ୍ଧରେ ସେ ବି ଲେଖାଲେଖି କରୁଥିଲେ । ଖ୍ରୀଷ୍ଟିଆନ୍ ମିଶନାରୀମାନେ ଚୀନ୍‌ରେ ଲୋକଙ୍କୁ ଧର୍ମାନ୍ତରିତ କରୁଥିବାରୁ, ସେ ତାହାର ପ୍ରବଳ ବିରୋଧ କରି ଛଦ୍ମନାମରେ ମିଶନାରୀଙ୍କର ଏତାଦୃଶ ହୀନ ଚକ୍ରାନ୍ତ ସମ୍ବନ୍ଧରେ ବହୁ ପ୍ରବନ୍ଧ ଲେଖୁଥିଲେ । ୧୮୯୩ ଖ୍ରୀଷ୍ଟାବ୍ଦରେ ସିକାଗୋଠାରେ ଅନୁଷ୍ଠିତ ଧର୍ମ ମହାସଭାରେ ସେ ଯୋଗ ଦେଇଥିଲେ । ସ୍ୱାମୀଜୀଙ୍କର ଦିବ୍ୟ ବ୍ୟକ୍ତିତ୍ୱ ଏବଂ ଗଭୀରଜ୍ଞାନ ଆଧାରିତ ବଳିଷ୍ଠ ଯୁକ୍ତି ସମ୍ମୁଖରେ ଧର୍ମାନ୍ଧତା ଓ ଧର୍ମୋନ୍ମାଦନତା ଫିକା ପଡ଼ିଯାଇଥିଲା ବୋଲି ସେ ମତବ୍ୟକ୍ତ କରିଥିଲେ । ପ୍ୟାରିସ୍‌ରୁ ଖଣ୍ଡିଏ ଚିଠି ସ୍ୱାମୀଜୀ ଅକ୍ଟୋବର ୨୨ ତାରିଖରେ ଶ୍ରୀମତୀ ବୁଲ୍‌ଙ୍କ ପାଖକୁ ଲେଖିଥିଲେ : ବନ୍ଧୁକ ନିର୍ମାତା ମେକ୍ସିମ୍ ମୋ କାର୍ଯ୍ୟରେ ଉତ୍ସାହ ଦେଖାଇଛନ୍ତି ଏବଂ ମୋ ବିଷୟରେ ତାଙ୍କ ପୁସ୍ତକରେ ସେ ଲେଖିବେ ବୋଲି ମୋତେ କହିଛନ୍ତି । ତୁମ ପାଖରେ ଯେଉଁସବୁ କାଗଜପତ୍ର ରହିଛି, ସେସବୁ ତାଙ୍କୁ ଦେଇଦେବ ।" ସ୍ୱାମୀଜୀଙ୍କ ମୁକ୍ତ ମନ ଓ ପ୍ରାଚୀନ ଭାରତର ଗୌରବ ଓ ଆଧ୍ୟାତ୍ମିକତାର ସଠିକ୍ ଉପସ୍ଥାପନ ବହୁ ୟୁରୋପୀୟଙ୍କର ଭୁଲ ବୁଝାମଣାକୁ ଦୂରୀଭୂତ

Digitized by srujanika@gmail.com

କରିପାରିଥିଲା, ଯା'ଫଳରେ ଭାରତକୁ ଜାଣିବା ପାଇଁ ସେମାନଙ୍କ ମନରେ ଉତ୍ସାହ ଓ କୌତୁହଳ ଜାତ ହୋଇଥିଲା।

ଫ୍ରାନ୍ସରେ ସ୍ୱାମୀଜୀ ପ୍ରାୟ ତିନିମାସ କାଳ ରହି ୧୯୦୦ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୨୪ ତାରିଖରେ ପ୍ୟାରିସ୍‌ରୁ ବିଦାୟ ନେଲେ । ତାଙ୍କ ସହ ଯାଇଥିଲେ ମୋନସିଅର ଓ ମ୍ୟାଡ଼ାମ ଲୟସନ, ଜୁଲ୍ ବୋୟା, ମାଡାମ୍ କାଲଭେ ଓ କୁମାରୀ ଯୋଶେଫିନ୍ ମେକ୍‌ଲିଓଡ୍ । ପ୍ରସିଦ୍ଧ ଗାୟିକା ମାଡ଼ାମ୍ କାଲଭେ ତାଙ୍କର ସମସ୍ତ ସଙ୍ଗୀତ କାର୍ଯ୍ୟକ୍ରମକୁ ବାତିଲ କରି ସ୍ୱାମୀଜୀଙ୍କ ସହ ଯିବାକୁ ପସନ୍ଦ କରିଥିଲେ । ଅକ୍ଟୋବର ୨୫ ତାରିଖରେ ସେମାନେ ଭିଏନାରେ ପହଞ୍ଚିଲେ, ଏଠାରେ ରହଣି ତିନିଦିନ ଥିଲା । ନେପୋଲିଅନଙ୍କ ପୁତ୍ର ସ୍କୋନବ୍ରୁନ ରାଜବାଟିରେ ବନ୍ଦୀ ଜୀବନ କାଟି ଭଗ୍ନ ହୃଦୟରେ ମୃତ୍ୟୁବରଣ କରିଥିଲେ । ସେହି ରାଜବାଟିର ପ୍ରତ୍ୟେକ କୋଠରି ତଥା କାରୁକାର୍ଯ୍ୟଗୁଡ଼ିକୁ ସ୍ୱାମୀଜୀ ବୁଲି ବୁଲି ଦେଖିଲେ । ଇୟୁରୋପ ଇତିହାସର ପ୍ରତ୍ୟେକ ପୃଷ୍ଠା ତାଙ୍କ ମାନସପଟରେ ଜାଗି ଉଠିଲା । ଅଷ୍ଟ୍ରିଆ ରାଷ୍ଟ୍ରର କ୍ଷମତା ଓ ମର୍ଯ୍ୟାଦାର ଅଧୋଃଗତି ସମ୍ବନ୍ଧରେ ସ୍ୱାମୀଜୀ ନିଜର ଚିନ୍ତା ପ୍ରକଟ କରି କହିଥିଲେ, "ଯଦି ତୁର୍କିକୁ ଇୟୁରୋପର ରୁଗ୍ଣ ମାନବ ବୋଲି କୁହାଯାଏ, ତେବେ ଅଷ୍ଟ୍ରିୟା ନିଶ୍ଚୟ ହେବ ଇୟୁରୋପର ରୁଗ୍ଣ ମାନବୀ । ୟୁରୋପର ଦିଗବଳୟ ସଂଲଗ୍ନ ଆକାଶରେ ସ୍ୱାମୀଜୀ ଦେଖିପାରିଲେ ଭୀଷଣ ଯୁଦ୍ଧର ଆଭାସ । ସେ କହିଥିଲେ, "ଇୟରୋପ ଏକ ବିଶାଳ ସେନା ଛାଉଣି । ଅଷ୍ଟ୍ରିଆର ବର୍ତ୍ତମାନ ସମ୍ରାଟ ଫ୍ରାନସିସ୍ ଯୋଶେଫଙ୍କ ମୃତ୍ୟୁପରେ ଅଷ୍ଟ୍ରିଆ ସାମ୍ରାଜ୍ୟର ଜର୍ମାନୀ ଭାଷାଭାଷି ଇଲାକାକୁ ଜର୍ମାନ ନିଜ ଦେଶରେ ମିଶାଇ ଦେବ - ରୁଷିଆ ଓ ଅନ୍ୟରାଷ୍ଟ୍ର ଏହାକୁ ବିରୋଧ କରିବେ, ଯା'ଫଳରେ ଦେଖାଦେବ ଭୟାନକ ଯୁଦ୍ଧର ବିଭୀଷିକା ।" କେବଳ ସେତିକି ନୁହେଁ ୧୮୯୫ରେ, କ୍ରିଷ୍ଟାଇନ୍ ଗ୍ରୀନଷ୍ଟିଡେଲଙ୍କୁ ଭବିଷ୍ୟତବାଣୀ ଶୁଣାଇ କହିଲେ ସମଗ୍ର ୟୁରୋପ ଏକ ଆଗ୍ନେୟଗିରି ପାର୍ଶ୍ୱରେ ଦଣ୍ଡାୟମାନ । ଯଦି ଆଧାତ୍ମିକ ମାଧ୍ୟମରେ ଏହି ଆଗ୍ନେୟଗିରିକୁ କାବୁ କରା ନ ଯାଏ, ତେବେ ଏହା ନିଶ୍ଚିତ ଉଦ୍‌ଗୀରଣ ହେବ ।" ବଡ଼ ଆଶ୍ଚର୍ଯ୍ୟର କଥା ଯେ ସ୍ୱାମୀଜୀଙ୍କର ଭବିଷ୍ୟତବାଣୀ ସତ୍ୟ ପ୍ରମାଣିତ ହୋଇଥିଲା ।

ହଙ୍ଗାରୀ, ସର୍ବିଆ, ରୋମାନିଆ ଓ ବୁଲଗାରିଆ ବାଟଦେଇ ସ୍ୱାମୀଜୀ କନଷ୍ଟାଣ୍ଟିନୋପଲ୍‌ରେ ଅକ୍ଟୋବର ୩୦ ତାରିଖରେ ପହଞ୍ଚିଲେ । ଏଠାରେ ସହର ଓ ଦର୍ଶନୀୟ ସ୍ଥାନ ଦେଖି ସାରିବାପରେ ସ୍କୁଟାରି ଯିବାପାଇଁ ସ୍ୱାମୀଜୀ ମନସ୍ଥ କଲେ । କୁମାରୀ ମେକ୍‌ଲିଓଡ଼ଙ୍କ ସହିତ ସ୍ୱାମୀଜୀ ସେଠାକୁ ଯାତ୍ରା କଲେ । ମିଷ୍ଟର ପେରିହ୍ୟାସିନ୍ଥ ତାଙ୍କ ପତ୍ନୀଙ୍କ ସହ ଆମେରିକାନ୍ କଲେଜ୍ ଫର୍ ଗାର୍ଲ୍ସରେ ରହୁଥିଲେ । ସ୍ୱାମୀଜୀ ସେଠାରେ ହିନ୍ଦୁଧର୍ମ ଉପରେ ଏକ ବକ୍ତୃତା ପ୍ରଦାନ କରିଥିଲେ । ଫାଦର୍ ଲୟସନ୍ (ପେରି ହ୍ୟାସିନ୍ଥ) ଜଣେ ବିଦ୍ୱାନ୍ ଓ ଧର୍ମ ବିଷାରଦ ଥିଲେ । ତାଙ୍କ ସହ ଧର୍ମ ସମ୍ବନ୍ଧରେ ଆଲୋଚନା କଲେ । କନଷ୍ଟାଣ୍ଟିପୋଲରେ ଦଶଦିନ ବିତାଇ ସ୍ୱାମୀଜୀ ନିଜର ସହଯାତ୍ରୀଙ୍କ ସହ ଆଥେନ୍ସ ଯାତ୍ରା କଲେ । ବାଟରେ ପଡ଼ିଲା ମାର୍ ମାରା ସମୁଦ୍ର, ସେହି ସମୁଦ୍ର କୂଳରେ ଅବସ୍ଥିତ ପ୍ରାଚୀନ ଗ୍ରୀକ୍ ମଠ ପରିଦର୍ଶନ କଲେ ସ୍ୱାମୀଜୀ । ସମୁଦ୍ର କୂଳର ଅନ୍ୟ ସ୍ଥାନରେ ବହୁ ଭଗ୍ନ ମନ୍ଦିର ସ୍ୱାମୀଜୀଙ୍କର ଦୃଷ୍ଟିଗୋଚର ହେଲା ।

Digitized by srujanika@gmail.com

- ୫ -

*ବର୍ତ୍ତମାନ ମୁଁ ସମ୍ପୂର୍ଣ୍ଣ ମୁକ୍ତ, ମୋ ପାଖରେ କୌଣସି ପଦବୀ, କ୍ଷମତା ଓ ଦାୟିତ୍ୱ ନାହିଁ । ରାମକୃଷ୍ଣ ମିଶନର ଅଧ୍ୟକ୍ଷ ପଦରୁ ମୁଁ ଇସ୍ତଫା ଦେଇସାରିଛି । ମୋ ଛଡ଼ା ମଠ ଓ ମଠର ସମ୍ପତ୍ତି ସବୁକିଛି ଶ୍ରୀରାମକୃଷ୍ଣଙ୍କ ପ୍ରତ୍ୟକ୍ଷ ଶିଷ୍ୟଙ୍କ ହାତରେ ସମର୍ପି ଦେଇଛି । ସ୍ୱାମୀ ବ୍ରହ୍ମାନନ୍ଦ ବର୍ତ୍ତମାନ ମଠର ଅଧ୍ୟକ୍ଷ - ତା'ପରେ ସ୍ୱାମୀ ପ୍ରେମାନନ୍ଦ ଓ ଅନ୍ୟମାନଙ୍କ ହାତରେ ମଠର ଅଧ୍ୟକ୍ଷ ପଦ ସମୟାନୁସାରେ ରହିବ । ମୋ ଉପରୁ ଆଜି ସମସ୍ତ ଭାର ନିଷ୍କାସିତ ହୋଇଥିବାରୁ ମୁଁ ଆଜି ଖୁବ୍ ଆନନ୍ଦିତ ।*

ଗ୍ରୀସ୍‌ରେ ପହଞ୍ଚିଲେ ସ୍ୱାମୀଜୀ । ଆଥେନ୍ସର ପ୍ରାଚୀନ କାନ୍ଥ, ଅଲିମ୍ପିଆନ୍ ଜିୟୁସ୍ ମନ୍ଦିର, ଥିଏଟର ଡାୟିଓନିସସ୍, ଇଲ୍ୟୁସିସ୍ ଭଳି ବହୁ ଐତିହାସିକ ଓ ପ୍ରାଚୀନ କୀର୍ତ୍ତିରାଜି ପରିଭ୍ରମଣ କରି ସ୍ୱାମୀଜୀ ଅତ୍ୟନ୍ତ ଭାବ ବିହ୍ୱଳ ହୋଇପଡ଼ିଥିଲେ । ଗ୍ରୀସ୍‌ରୁ ବିଦାୟ ନେଇ ରୁଷିଆର ଏକ ଷ୍ଟିମର୍ ଯୋଗେ ସ୍ୱାମୀଜୀ ଇଜିପ୍ଟ ଅଭିମୁଖେ ଯାତ୍ରା କଲେ ।

ଆମେରିକା ଓ ଇୟୁରୋପରେ ଦ୍ୱିତୀୟବାର ଭ୍ରମଣ ସ୍ୱାମୀଜୀଙ୍କୁ ଆଦୌ ଆକର୍ଷଣ କରି ନ ଥିଲା । ସେଠିକାର ପରିବେଶ ପ୍ରତି ସେ ସଂପୂର୍ଣ୍ଣ ଉଦାସୀନ ଥିଲେ । ସଫଳତାରେ ସେ ଆଦୌ ଆଶ୍ଚର୍ଯ୍ୟ ହେଉ ନ ଥିଲେ କିମ୍ବା ଖୁସି ହେଉ ନ ଥିଲେ । ନିଜ ଭିତରେ ଏକ ମହାନ୍ ତଥା ପ୍ରଚଣ୍ଡ ଶକ୍ତି କାର୍ଯ୍ୟରତ ବୋଲି ସେ ଅନୁଭବ କରୁଥିଲେ । ଉଭୟ ଜୟ ଓ ପରାଜୟ ଭାସମାନ ମେଘମାଳା ସଦୃଶ ତାଙ୍କ ସମ୍ମୁଖରେ ଅନ୍ତର୍ଦ୍ଧାନ ହୋଇଯାଉଥିଲା, ସେ ଏକ ନିର୍ଭୀକ ଓ ଅନାସକ୍ତ ବ୍ୟକ୍ତି ଭାବେ ପ୍ରାଚୁର୍ଯ୍ୟଶାଳୀ ଆମେରିକା ଓ ଇୟୁରୋପରେ ଭ୍ରମଣ କରୁଥିଲେ । ତାଙ୍କର ଆଉ କୌଣସି ବନ୍ଧନ ନାହିଁ, ସେ ମୁକ୍ତ - ଚିରମୁକ୍ତ । ସେଥିପାଇଁ ତ ତାଙ୍କ ନାଁରେ ଥିବା ବେଲୁଡ଼ ମଠର ସମ୍ପତ୍ତିକୁ ମଠର ଟ୍ରଷ୍ଟିଙ୍କ ନାମରେ ହସ୍ତାନ୍ତର କରିଦେଇଥିଲେ । ନିଜର ମନକଥା ଜଣାଇ ଅଗଷ୍ଟ ୨୫, ୧୯୦୦ ଖ୍ରୀଷ୍ଟାବ୍ଦରେ ଖଣ୍ଡିଏ ଚିଠି ପ୍ୟାରିସ୍‌ରୁ ନିବେଦିତାଙ୍କ ନିକଟକୁ ଲେଖିଥିଲେ :

"ହେ ମୋର ସ୍ନେହର ଭଉଣୀ - ବର୍ତ୍ତମାନ ମୁଁ ସମ୍ପୂର୍ଣ୍ଣ ମୁକ୍ତ, ମୋ ପାଖରେ କୌଣସି ପଦବୀ, କ୍ଷମତା ଓ ଦାୟିତ୍ୱ ନାହିଁ । ରାମକୃଷ୍ଣ ମିଶନର ଅଧ୍ୟକ୍ଷ ପଦରୁ ମୁଁ ଇସ୍ତଫା ଦେଇସାରିଛି । ମୋ ଛଡ଼ା ମଠ ଓ ମଠର ସମ୍ପତ୍ତି ସବୁକିଛି ଶ୍ରୀରାମକୃଷ୍ଣଙ୍କ ପ୍ରତ୍ୟକ୍ଷ ଶିଷ୍ୟଙ୍କ ହାତରେ ସମର୍ପି ଦେଇଛି । ସ୍ୱାମୀ ବ୍ରହ୍ମାନନ୍ଦ ବର୍ତ୍ତମାନ ମଠର ଅଧ୍ୟକ୍ଷ - ତା'ପରେ ସ୍ୱାମୀ ପ୍ରେମାନନ୍ଦ ଓ ଅନ୍ୟମାନଙ୍କ ହାତରେ ମଠର ଅଧ୍ୟକ୍ଷ ପଦ ସମୟାନୁସାରେ ରହିବ । ମୋ ଉପରୁ ଆଜି ସମସ୍ତ ଭାର ନିଷ୍କାସିତ ହୋଇଥିବାରୁ ମୁଁ ଆଜି ଖୁବ୍ ଆନନ୍ଦିତ ।

ମୁଁ କାହାର ପ୍ରତିନିଧିତ୍ୱ କରୁନାହିଁ କିମ୍ବା ମୁଁ କାହାପାଖରେ ଉତ୍ତରଦାୟୀ ବି ନୁହେଁ । ମୋ ବନ୍ଧୁମାନଙ୍କ ପ୍ରତି ମୋର ବିଷର୍ଣ୍ଣ ଆନୁଗତ୍ୟ ମନୋଭାବ ଥିଲା । ମୁଁ କା'ର ଧାରଧୁରେ ନୁହେଁ ।

Digitized by srujanika@gmail.com

ମୃତ୍ୟୁ ଭଳିଆ ପରିସ୍ଥିତିର ସମ୍ମୁଖୀନ ହୋଇ ମୁଁ ମୋର ସମସ୍ତ ଶକ୍ତି ପ୍ରଦାନ କରିଛି, କିନ୍ତୁ ତା'ବଦଳରେ ପାଇଛି ପାଟିତୁଣ୍ଡ, ଦୁଷ୍ଟ ଆଚରଣ ଓ ବିରକ୍ତି । ତୁମ ଚିଠିରୁ ମୁଁ ସୂଚନା ପାଇଲି ଯେ ମୁଁ କାଳେ ତୁମର ନୂତନ ବନ୍ଧୁମାନଙ୍କ ପ୍ରତି ଈର୍ଷାନ୍ୱିତ । କିନ୍ତୁ ତୁମେ ଜାଣିରଖ ଯେ ମୋର ଈର୍ଷା ନାହିଁ, ଧନଲିପ୍ସା ନାହିଁ, ଅନ୍ୟକୁ ଶାସନ କରିବାର ମୋହ ନାହିଁ । ପୂର୍ବରୁ ତୁମକୁ ମୁଁ ନିର୍ଦ୍ଦେଶ ଦେଉ ନ ଥିଲି, ବର୍ତ୍ତମାନ ତ ମୁଁ କୌଣସି କାର୍ଯ୍ୟରେ ଲିପ୍ତ ନୁହେଁ, ମୋ ଭିତରେ କାହାକୁ ନିର୍ଦ୍ଦେଶ ଦେବାର ତିଳେମାତ୍ର ଇଚ୍ଛା ନାହିଁ । ମୁଁ କେବଳ ଏତିକି ଜାଣେ : ହୃଦୟ ଢାଳି ଯେତେଦିନ ପର୍ଯ୍ୟନ୍ତ ତୁମେ ମା'ଙ୍କର ସେବାରେ ନିମଗ୍ନ ରହିଥିବ, ସେ ତୁମକୁ ସାହାଯ୍ୟ କରୁଥିବେ ।

କେଉଁପ୍ରକାର ସାଙ୍ଗମାନଙ୍କ ସହ ତୁମେ ମିଶୁଛ, ସେଥିପାଇଁ ମୋର କୌଣସି ଈର୍ଷା କରିବାର ନାହିଁ । ଏପରିକି ମୋର ଭାଇମାନଙ୍କୁ କାହା ସହ ମିଶିଲେ ମୁଁ ସମାଲୋଚନା କରେନାହିଁ । କେବଳ ଏତିକି ଜାଣେ ଯେ ପାଶ୍ଚାତ୍ୟବାସୀ ଯେଉଁଠି ଭଲ ଦେଖନ୍ତି, ସେମାନେ ଅନ୍ୟମାନଙ୍କୁ ସେହି ଦିଗକୁ ଟାଣିବା ଲାଗି ବାଧ କରନ୍ତି । ସେମାନେ ଭୁଲିଯା'ନ୍ତି ଯେ ତୁମପାଇଁ ଯାହା ଭଲ, ତାହା ଅନ୍ୟପାଇଁ ଭଲ ହେବନାହିଁ । ମୋର ଗୋଟିଏ କଥାକୁ ଡର ଯେ ତୁମ ମନରେ ଯାହା ଆସିବ, ତାହା ତୁମେ ତୁମର ନୂତନ ସାଙ୍ଗମାନଙ୍କ ଉପରେ ଲଦିଦେବାକୁ ଚେଷ୍ଟା କରିବ । ସେଥିପାଇଁ କୌଣସି ନିର୍ଦ୍ଦିଷ୍ଟ ପ୍ରଭାବରେ ବଶବର୍ତ୍ତୀ ନ ହେବାକୁ ମୁଁ ସତର୍କ କରି ଦେଇଥାଏ ।

ତୁମେ ସ୍ୱାଧୀନ, ନିଜର ରଚି ରଖ, ନିଜର କର୍ମ କର... । ବନ୍ଧୁ ହୁଅନ୍ତୁ, ବା ଶତ୍ରୁ ହୁଅନ୍ତୁ, ସେମାନେ ସମସ୍ତେ ମା'ଙ୍କ ହାତରେ ଯନ୍ତ୍ର, ଆମ ନିଜର କାର୍ଯ୍ୟ ସୁଖ ଓ ଦୁଃଖରେ ସମ୍ପାଦନ କରିବାଲାଗି ସେମାନେ ଆମକୁ ସାହାଯ୍ୟ କରନ୍ତି । ସୁତରାଂ ମା ସମସ୍ତଙ୍କୁ ଆଶୀର୍ବାଦ ପ୍ରଦାନ କରନ୍ତି ।

- ୬ -

*ସ୍ୱାମୀଜୀଙ୍କର କାରୁଣ୍ୟ ହୃଦୟ ଏବଂ ଅଶ୍ରୁବିଗଳିତ ଚକ୍ଷୁଦ୍ୱୟ ଅବଲୋକନ କରି ମହିଳାଗଣ ନିରବ ଓ ନିର୍ବାକ୍ ନୟନରେ ଚାହିଁ ରହିଲେ ସ୍ୱାମୀଜୀଙ୍କୁ । ସେମାନଙ୍କ ମଧ୍ୟରୁ ଜଣେ ମହିଳା ବେଞ୍ଚରୁ ଉଠିଆସି ସ୍ୱାମୀଜୀଙ୍କର ଗୈରିକ ପରିଚ୍ଛଦର ପ୍ରାନ୍ତକୁ ଚୁମ୍ବନ ଦେଇ ଭକ୍ତିଭରା କଣ୍ଠରେ କହିଉଠିଲେ, "ଇଏ ଈଶ୍ୱରଙ୍କ ବ୍ୟକ୍ତି, ଇଏ ଈଶ୍ୱରଙ୍କ ବ୍ୟକ୍ତି ।" ଆଉ ଜଣେ ନାରୀ ନିଜର ମୁଖମଣ୍ଡଳକୁ ଦୁଇହାତରେ ଘୋଡ଼ାଇ ପକାଇଲେ, କାହିଁକିନା ସେ ସ୍ୱାମୀଜୀଙ୍କର ତେଜପୂର୍ଣ୍ଣ ତଥା ପବିତ୍ର ଦୃଷ୍ଟିକୁ ସହି ପାରୁ ନ ଥିଲେ ।*

ଇଜିପ୍ଟରେ ଉପନୀତ ହୋଇ କାଏରୋ ଦେଖିବାକୁ ସ୍ୱାମୀଜୀ ବିଶେଷ ଉତ୍ସୁକ ହୋଇପଡ଼ିଲେ । ପ୍ରାଚୀନ କାଳରେ ଫାରୋଙ୍କ ରାଜତ୍ୱ ସମୟରେ ଇଜିପ୍ଟ ଏକ ଶକ୍ତିଶାଳୀ ଓ

Digitized by srujanika@gmail.com

ବିଶ୍ୱଶକ୍ତି ଥିଲା । ସ୍ୱାମୀଜୀଙ୍କ ହୃଦୟରେ ଇଜିପ୍ଟର ଗୌରବମୟ ଇତିହାସ ପ୍ରତିଧ୍ୱନିତ ହେଲା । ଇଜିପ୍ଟରେ ସେହି ପ୍ରାଚୀନ ଗୌରବ ଓ କ୍ଷମତା ଗଲା କୁଆଡ଼େ ? ମାୟାର ଭୟଙ୍କର ବନ୍ଧନରେ ସବୁକିଛି ଲୁପ୍ତ । ମନ ତାଙ୍କର ହଜି ଯାଉଥିଲା ଇଜିପ୍ଟର ଇତିହାସ ଭିତରେ, ଅନ୍ୟମନସ୍କ ହୋଇ କାଏରୋ ପଥରେ ପଦଚାରଣ ସମୟରେ ଦେଖୁଥିଲେ ଭଗ୍ନ ଗୃହଗୁଡ଼ିକୁ । ହଠାତ୍ ଦଳେ ସୁନ୍ଦରୀ ନାରୀ ଭଗ୍ନ ଗୃହ ସମ୍ମୁଖରେ ଏକ ବେଞ୍ଚରେ ବସିଥିବାର ଦୃଶ୍ୟ ସ୍ୱାମୀଜୀଙ୍କର ଦୃଷ୍ଟି ପଡ଼ିଲା । ସେମାନଙ୍କ ଭିତରୁ କେତେକ ଅର୍ଦ୍ଧନଗ୍ନ ଅବସ୍ଥାରେ ଚାହିଁଥିଲେ । ସ୍ୱାମୀଜୀଙ୍କର ରୂପ ଓ ବେଶଭୂଷା ଦେଖି କେତେଜଣ ସ୍ତ୍ରୀଲୋକ ହାତଠାରି ତାଙ୍କୁ ଡାକିଲେ ଏବଂ ସେମାନେ ହସରେ ଫାଟି ପଡୁଥିଲେ ।

ଉକ୍ତ ନାରୀଗଣ ଥିଲେ ବାରାଙ୍ଗନା । ସ୍ୱାମୀଜୀଙ୍କୁ କାଳେ ସେମାନେ ଅପମାନିତ କରିବେ ଭାବି ବନ୍ଧୁମାନେ ସେଠାରୁ ଶୀଘ୍ର ଚାଲିଯିବାକୁ ତାଙ୍କୁ ଅନୁରୋଧ କଲେ, କିନ୍ତୁ ଏହି ପତିତା ନାରୀଙ୍କର ଦୁଃଖ ଓ ହୀନିମାନ ଜୀବନ ଭିତରେ ଏପରି ହଜିଯାଇଥିଲେ ଯେ ସେ ସାଙ୍ଗମାନଙ୍କର ପରାମର୍ଶ ପ୍ରତି ଆଦୌ କର୍ଣ୍ଣପାତ କଲେନାହିଁ, ବରଂ ବେଞ୍ଚରେ ବସିଥିବା ପତିତା ରମଣୀଗଣଙ୍କ ଆଡ଼କୁ ଚାଲିଯାଇ ବାଷ୍ପରୁଦ୍ଧ କଣ୍ଠରେ କହିଉଠିଲେ, ''ହେ ମୋର ହତଭାଗ୍ୟ ପୁତ୍ରୀଗଣ'' ଯୌବନ ଓ ରୂପରେ ମାତିଯାଇ ଈଶ୍ୱରଙ୍କୁ ଭୁଲି ଯାଅନିରେ ।'' ଆଉ ବେଶି ସେ କିଛି କହିପାରିଲେ ନାହିଁ, କାରୁଣ୍ୟ ଚାହାଣିରେ ସେମାନଙ୍କୁ ଅନାଇଥିବା ବେଳେ ଝରିପଡୁଥିଲା ତାଙ୍କ ଚକ୍ଷୁରୁ ଝର ଝର ଅଶ୍ରୁ ।

ସ୍ୱାମୀଜୀଙ୍କର କାରୁଣ୍ୟ ହୃଦୟ ଏବଂ ଅଶ୍ରୁବିଗଳିତ ଚକ୍ଷୁଦ୍ୱୟ ଅବଲୋକନ କରି ମହିଳାଗଣ ନିରବ ଓ ନିର୍ବାକ୍ ନୟନରେ ଚାହିଁ ରହିଲେ ସ୍ୱାମୀଜୀଙ୍କୁ । ସେମାନଙ୍କ ମଧ୍ୟରୁ ଜଣେ ମହିଳା ବେଞ୍ଚରୁ ଉଠିଆସି ସ୍ୱାମୀଜୀଙ୍କର ଗୈରିକ ପରିଚ୍ଛଦର ପ୍ରାନ୍ତକୁ ଚୁମ୍ବନ ଦେଇ ଭକ୍ତିଭରା କଣ୍ଠରେ କହିଉଠିଲେ, ''ଇୟେ ଈଶ୍ୱରଙ୍କ ବ୍ୟକ୍ତି, ଇୟେ ଈଶ୍ୱରଙ୍କ ବ୍ୟକ୍ତି ।'' ଆଉ ଜଣେ ନାରୀ ନିଜର ମୁଖମଣ୍ଡଳକୁ ଦୁଇହାତରେ ଘୋଡ଼ାଇ ପକାଇଲେ, କାହିଁକିନା ସେ ସ୍ୱାମୀଜୀଙ୍କର ତେଜପୂର୍ଣ୍ଣ ତଥା ପବିତ୍ର ଦୃଷ୍ଟିକୁ ସହି ପାରୁ ନ ଥିଲେ । ସ୍ୱାମୀଜୀ ଫେରିଆସିଲେ ସାଙ୍ଗମାନଙ୍କ ପାଖକୁ ।

ସ୍ପିଙ୍କ୍ସ, ପିରାମିଡ଼, ନାଇଲ୍ ନଦୀ ଭଳି ବହୁ ଦର୍ଶନୀୟ ପ୍ରାଚୀନ ସ୍ଥାନଗୁଡ଼ିକୁ ବୁଲି ବୁଲି ଦେଖୁଥିଲେ ହେଁ ମନ ତାଙ୍କର ଏହିସବୁ ବସ୍ତୁରେ ଆଦୌ ଲାଗୁ ନ ଥିଲା । ମନ ସେତେବେଳକୁ ଖୁବ୍ ଅନ୍ତର୍ମୁଖୀ । ହଜିଲା ହଜିଲା ମନ । ପରମ ବନ୍ଧୁ ଏବଂ ଶିଷ୍ୟ କ୍ୟାପଟାନ୍ ସେଭିଅର ମୃତ୍ୟୁ ଶଯ୍ୟାରେ ଶାୟିତ । ଆଲମୋଡ଼ା ଅଦ୍ୱୈତ ଆଶ୍ରମର ତତ୍ତ୍ୱବଧାରକ ପରମପ୍ରିୟ ସେଭିଅର କ'ଣ ଏତେ ଶୀଘ୍ର ସଂସାର ତ୍ୟାଗ କରି ଚାଲିଯିବେ । ସ୍ୱାମୀଜୀ ମନର ଗଭୀରତମ ପ୍ରଦେଶରେ କ'ଣ ଦେଖିଲେ ତାଙ୍କୁ ହିଁ ଜଣା, କିନ୍ତୁ ସେଭିଅରଙ୍କ ସମ୍ବନ୍ଧରେ ଅମଙ୍ଗଳ ଚିନ୍ତା ତାଙ୍କୁ ବାରମ୍ବାର ଅସ୍ଥିର ଓ ବ୍ୟତିବ୍ୟସ୍ତ କରୁଥିଲା । ତା'ବାଦେ, ସଂସାରର ମାୟା ତାଙ୍କୁ ଆଉ ବାନ୍ଧି ରଖି ପାରୁ ନ ଥିଲା, ସତେକି ସେ ନିଜ ରାଜ୍ୟକୁ ଉଡ଼ିଯିବା ପାଇଁ ଚାହୁଁଥିଲେ । ସବୁ ବୁଲାବୁଲି ଛାଡ଼ି ଭାରତ ପ୍ରତ୍ୟାବର୍ତ୍ତନ କରିବାକୁ ସେ ହଠାତ୍ ସାଙ୍ଗମାନଙ୍କୁ କହିଲେ । ସମସ୍ତଙ୍କ ମୁଖମଣ୍ଡଳ ଏତାଦୃଶ ନିଷ୍ପତ୍ତିରେ

Digitized by srujanika@gmail.com

ଶୁଣିଗଲା । କେହି ତାଙ୍କ ସହ ଯୁକ୍ତି କଲେ ନାହିଁ । ମାଡାମ୍ କାଲଭେ ତୁରନ୍ତ ତାଙ୍କ ପାଇଁ ବମ୍ବେ ଯିବାପାଇଁ ଟିକେଟ୍‌ଟିଏ କାଟି ଦେଲେ । ସେ ସ୍ୱାମୀଜୀଙ୍କୁ ରୋମାନ୍ କାଥୋଲିକ୍ ଭାଷାରେ ''ମାଇଁ ଫାଦର୍'' ବୋଲି ଭକ୍ତି ଭରେ ଡାକୁଥିଲେ ।

ନଭେମ୍ବର ୨୬, ୧୯୦୦ ଖ୍ରୀଷ୍ଟାବ୍ଦରେ ସ୍ୱାମୀଜୀ ଭାରତ ଅଭିମୁଖେ ଜାହାଜ ଚଢ଼ିଲେ । ମାଡ଼ାମ କାଲ୍‌ଭେ, ମୋନସିର୍ ବୟସ୍, କୁମାରୀ ମେକ୍‌ଲିଓଡ୍ ଏବଂ ଅନ୍ୟ ବନ୍ଧୁଗଣ ବିମର୍ଷ ବଦନ ଓ ଦୁଃଖାଭିଭୂତ ହୃଦୟରେ ସ୍ୱାମୀଜୀଙ୍କୁ ବିଦାୟ ଦେଲେ । ସତେକି ସେମାନଙ୍କର ତ୍ରାଣକର୍ତ୍ତା ସ୍ୱାମୀ ବିବେକାନନ୍ଦ ସେମାନଙ୍କୁ ଛାଡ଼ି ସ୍ୱର୍ଗରାଜ୍ୟକୁ ଆରୋହଣ କଲେ । ଦୀର୍ଘ ଏଗାରଦିନ ଜଳଯାତ୍ରା କରି ସ୍ୱାମୀଜୀ ୧୯୦୦ ଡିସେମ୍ବର ୬ ତାରିଖରେ ବମ୍ବେରେ ପହଞ୍ଚିଲେ ।



Digitized by srujanika@gmail.com

॥ ଏକଚାଳିଶ ॥

# ବେଲୁଡ଼ ମଠରେ ପଦାର୍ପଣ - ପରମ ଶିଷ୍ୟ ଓ ବନ୍ଧୁ କ୍ୟାପ୍ଟେନ ସେଭିୟରଙ୍କ ଦେହାନ୍ତ ସମ୍ବାଦରେ ସ୍ୱାମୀଜୀ ମର୍ମାହତ - ମାୟାବତୀ ଆଶ୍ରମ ଅଭିମୁଖେଯାତ୍ରା

ସ୍ୱାମୀଜୀ ଏଭଳି ମଠମୁହାଁ ହୋଇଥିଲେ ଯେ ବମ୍ବେରେ ସେ ବେଶି ସମୟ ରହିପାରିଲେ ନାହିଁ, ବମ୍ବେ ଏକ୍ସପ୍ରେସ ଟ୍ରେନ୍ ଯୋଗେ କଲିକତା ଚାଲିଆସିଲେ । ଖବର ନାହିଁ ଟବର ନାହିଁ ସିଧା ବେଲୁଡ଼ ମଠରେ ହାଜର । ସେଦିନ ଡିସେମ୍ବର ୯, ୧୯୦୦ର ରାତ୍ର ସମୟ । ବେଲୁଡ଼ ମଠର ମାଳି ତାଙ୍କୁ ପ୍ରଥମେ ଦେଖି ଧଇଁସଇଁ ଦୌଡ଼ିଲା ଏବଂ ରାତ୍ରଭୋଜନରେ ବସିଥିବା ସନ୍ୟାସୀ ଓ ବ୍ରହ୍ମାଚାରୀଙ୍କୁ ଏକା ନିଃଶ୍ୱାସରେ କହିଲା, ''ଆଜ୍ଞା ଜଣେ ସାହେବ ଆମ ମଠକୁ ଆସିଛନ୍ତି ।'' ସେମାନେ ବ୍ୟସ୍ତ ହୋଇ ପଡ଼ିଲେ, ଏଇଥିପାଇଁ ଯେ ଅବେଳରେ ସାହେବ ପହଞ୍ଚିଥିବାରୁ ତାଙ୍କ ପାଇଁ ରହିବା ଓ ଖାଇବାର ବ୍ୟବସ୍ଥା କରିବାକୁ ପଡ଼ିବ । ଯାହାହେଉ ସେମାନଙ୍କର ଚିନ୍ତା ବେଶି ସମୟ ରହିଲା ନାହିଁ, ସାହେବ ଆସି ସେମାନଙ୍କ ଗହଣରେ ପହଞ୍ଚିଗଲେ । ''ହେ ଭାଇ, ସ୍ୱାମୀଜୀ ଆସିଛନ୍ତି'' ଆନନ୍ଦମୁଖର ହୋଇପଡ଼ିଲେ ସମସ୍ତେ । ସ୍ୱାମୀଜୀ ଚେକାମାଡ଼ି ବସିପଡ଼ିଲେ ସେମାନଙ୍କ ଗହଣରେ । ଗରମ ଗରମ ଖେଚୁଡ଼ି ଖାଉଥିବା ସମୟରେ ପାଶ୍ଚାତ୍ୟ ଦେଶର ଅନୁଭୂତି ଝରିପଡୁଥିଲା ତାଙ୍କ ଶ୍ରୀମୁଖରୁ । ସେଦିନ ରାତିରେ ଉଲ୍ଲସିତ ଆନନ୍ଦ ଲହରି ଭିତରେ ସନ୍ୟାସୀ ଓ ବ୍ରହ୍ମଚାରୀଙ୍କ ଆଖିରୁ ନିଦ ହଜିଗଲା ।

ଗୁରୁଭ୍ରାତା, ସନ୍ୟାସୀ ଓ ବ୍ରହ୍ମଚାରୀଙ୍କ ସହ ନିଜର ଅନୁଭୂତି କାହାଣୀ ବର୍ଣ୍ଣନା କରୁଥିବା ସମୟରେ ସ୍ୱାମୀଜୀ କହିଥିଲେ ଯେ ତାଙ୍କର ଆମେରିକା ଓ ଇୟୁରୋପର ପ୍ରଥମ ଭ୍ରମଣରେ ସେ ଦେଖିଥିଲେ ସେମାନଙ୍କର ଶକ୍ତି, ସାଂଗଠନିକ କ୍ଷମତା ଓ ଗଣତନ୍ତ୍ରର ଚମତ୍କାରିତା ଏବଂ ବିଶେଷ ପ୍ରଭାବିତ ହୋଇଥିଲେ ମଧ୍ୟ । କିନ୍ତୁ ଦ୍ୱିତୀୟବାର ଭ୍ରମଣରେ ସେ ସେମାନଙ୍କର ପ୍ରଗତିଶୀଳ ଉତ୍ସାହ ଭିତରେ ଲୋଭ, ସ୍ୱାର୍ଥପରତା ଏବଂ କ୍ଷମତା ପାଇଁ ଲଢ଼େଇ ଦେଖିଲେ । ଛୋଟ ଛୋଟ ବ୍ୟବସାୟ ବଡ଼ ବଡ଼ ବ୍ୟବସାୟ ଗୋଷ୍ଠୀ ଦ୍ୱାରା ଶୋଷିତ । ଯେଉଁ ପାଶ୍ଚାତ୍ୟ ଜୀବନ ନିର୍ବାହ ପ୍ରଣାଳୀକୁ ସେ ପ୍ରଶଂସା କରୁଥିଲେ, ସେହି ସଭ୍ୟତା ସମ୍ବନ୍ଧରେ ଏଥର କହିଲେ ଯେ ସେମାନଙ୍କ ଜୀବନଧାରା ନର୍କ ଭଳି ମୋତେ ଲାଗିଲା, କିନ୍ତୁ ଚୀନ ସମ୍ବନ୍ଧରେ ତାଙ୍କ ମତ ବେଶ୍ ଅନୁକୂଳ ଥିଲା । ସେ ପରବର୍ତ୍ତୀ ସମୟରେ କହିଥିଲେ, ''ମୋ ସମ୍ମୁଖରେ ଏକ ବିଶାଳ ହାତୀର ଦେହ ଦେଖିପାରୁଛି ।

Digitized by srujanika@gmail.com

ତା'ଭିତରେ ରହିଛି ଏକ ଘୋଡ଼ା-ସାବକ । କିନ୍ତୁ ତାହା ମଧ୍ୟରୁ ଏକ ସିଂହ-ସାବକର ଜନ୍ମ ହେବ । ଏହା ଭବିଷ୍ୟତରେ ବଢ଼ିବ ଏବଂ ଚୀନ୍ ଏକ ମହାନ୍ ଶକ୍ତିଶାଳୀ ରାଷ୍ଟ୍ର ହେବ ।

- ୧ -

*ହେ ଭଗବାନ୍, ମୋର ତରବରିଆ ଭାବେ ଭାରତକୁ ଚାଲି ଆସିବାରେ କିଛି ଲାଭ ହେଲାନାହିଁ । ବିଚରା କ୍ୟାପ୍‌ଟେନ ସେଭିଅର ଆଉ ଇହ ଜଗତରେ ନାହାନ୍ତି । ଅଳ୍ପ ଦିନ ପୂର୍ବରୁ ଦୁଇଜଣ ଇଂରେଜୀ ଆମ ହିନ୍ଦୁମାନଙ୍କ ପାଇଁ ସେମାନଙ୍କର ବହୁ ମୂଲ୍ୟ ଜୀବନ ତ୍ୟାଗ କରିଦେଇଛନ୍ତି । ସେମାନେ ସହିଦ୍ ହୋଇଛନ୍ତି ବୋଲି ମୁଁ ନିଶ୍ଚୟ କହିବି ।*

ପରମମିତ୍ର ତଥା ଶିଷ୍ୟ ସେଭିଅରଙ୍କ ମୃତ୍ୟୁ ସମ୍ବାଦ ତାଙ୍କୁ ଜଣାଇ ଦିଆଗଲା । ଅକ୍ଟୋବର ୨୮ ତାରିଖରେ ତାଙ୍କର ଦେହାନ୍ତ ହୋଇଥିଲା । ଯାହାଙ୍କୁ ଟିକିଏ ଦେଖିବା ପାଇଁ, ତରବରରେ ସେ ଅଧା-ଭ୍ରମଣରୁ ଚାଲି ଆସିଥିଲେ, ତାଙ୍କୁ ସେ ଦେଖି ନ ପାରିବାରୁ ହୃଦୟ ଅତ୍ୟନ୍ତ ବିଷାଦରେ ପରିପୂର୍ଣ୍ଣ ହୋଇଗଲା । ତାଙ୍କର ମନ ଓ ହୃଦୟ କିପରି ବିଷାଦଗ୍ରସ୍ତ ଥିଲା ଏହି ଚିଠିରୁ ଅନୁମାନ କରିହେବ । ଡିସେମ୍ବର ୧୧ ତାରିଖରେ ସେ କୁମାରୀ ମେକ୍‌ଲିଓଡ୍‌ଙ୍କ ନିକଟକୁ ଲେଖିଥିଲେ : ''ହେ ଭଗବାନ୍, ମୋର ତରବରିଆ ଭାବେ ଭାରତକୁ ଚାଲି ଆସିବାରେ କିଛି ଲାଭ ହେଲାନାହିଁ । ବିଚରା କ୍ୟାପ୍‌ଟେନ ସେଭିଅର ଆଉ ଇହ ଜଗତରେ ନାହାନ୍ତି । ଅଳ୍ପ ଦିନ ପୂର୍ବରୁ ଦୁଇଜଣ ଇଂରେଜୀ ଆମ ହିନ୍ଦୁମାନଙ୍କ ପାଇଁ ସେମାନଙ୍କର ବହୁ ମୂଲ୍ୟ ଜୀବନ ତ୍ୟାଗ କରିଦେଇଛନ୍ତି । ସେମାନେ ସହିଦ୍ ହୋଇଛନ୍ତି ବୋଲି ମୁଁ ନିଶ୍ଚୟ କହିବି । .... ମୋ ପ୍ରିୟ ସେଭିଅର ପହଞ୍ଚିବା ପୂର୍ବରୁ ମୋତେ ଛାଡ଼ି ଚାଲିଯାଇଥିଲେ । ଆଶ୍ରମ ନିକଟରେ ପ୍ରବାହିତ ନଦୀ କୂଳରେ ତାଙ୍କର ଶେଷକୃତ ସମ୍ପନ୍ନ ହୋଇଥିଲା । ତାଙ୍କର ଶବକୁ ଫୁଲମାଳରେ ଶୋଭିତ କରି, ବାଳକମାନଙ୍କର ବେଦମନ୍ତ୍ର ଉଚ୍ଚାରଣ ଭିତରେ ବ୍ରାହ୍ମଣମାନେ ତାଙ୍କର ଶବକୁ କାନ୍ଧରେ ବୋହି ନଦୀକୂଳକୁ ନେଇଯାଇଥିଲେ । ଶ୍ରୀମତୀ ସେଭିୟର ଶାନ୍ତ ଓ ନୀରବ, ମୁଁ ତାଙ୍କୁ ଭେଟିବା ପାଇଁ ହିମାଳୟ ଯାଉଛି । ଈଶ୍ୱର ମୋର ବୀର ଶିଷ୍ୟ ସେଭିଅରଙ୍କର ଆତ୍ମାକୁ ଆଶ୍ରୟ ପ୍ରଦାନ କରନ୍ତୁ ।''

ଉପରୋକ୍ତ ମନ୍ତବ୍ୟ ସ୍ୱାମୀଜୀଙ୍କର ଗଭୀର ପ୍ରେମ ପ୍ରକାଶ କରେ । ବାସ୍ତବରେ ସେ ସେଭିଅରଙ୍କ ଉପରେ ବହୁକାର୍ଯ୍ୟର ଭାର ସମର୍ପି ଦେଇଥିଲେ । ସେ କହିଥିଲେ, ''ସେଭିଅରଙ୍କର ଦେହାନ୍ତ ମୋ ପାଇଁ ଏକ ଭୟଙ୍କର ଦାରୁଣ ଧକ୍କା । ହିମାଳୟ ପାର୍ବତ୍ୟମାଳାରେ ଭବିଷ୍ୟତ କାର୍ଯ୍ୟ କିପରି ସଂପନ୍ନ ହେବ ମୁଁ ଭାବି ପାରୁନାହିଁ । ସ୍ୱାମୀଜୀ ମାତ୍ର ବେଲୁଡ଼ ମଠରେ ଅଠର ଦିନ ରହି ମାୟାବତୀ ଅଭିମୁଖେ ଯାତ୍ରା କଲେ । ଶ୍ରୀମତୀ ସେଭିଅରଙ୍କୁ ସେଠାରେ ଭେଟିବେ, ତାଙ୍କୁ ଆଶ୍ୱାସନା ଦେବେ । ଶୀତଦିନ, ଭୀଷଣ ଥଣ୍ଡା । ପାହାଡ଼ିଆ ରାସ୍ତା, ଉଠାଣି ପକାଣି, ପ୍ରତି ପଦକ୍ଷେପ ବିପଦପୂର୍ଣ୍ଣ । ଜୀବନ ହରାଇବାର ସମ୍ଭାବନା । ଝିପିଝିପି ବର୍ଷା ସାଙ୍ଗକୁ ତୁଷାର

Digitized by srujanika@gmail.com

ପାତ । କାଠଗୋଦାମଠାରୁ ମାୟାବତୀ ପର୍ଯ୍ୟନ୍ତ ଯାତ୍ରା ଅତ୍ୟନ୍ତ କଷ୍ଟଦାୟକ । ତଥାପି ସ୍ୱାମୀଜୀ ପଦବ୍ରଜରେ ଯାତ୍ରା କରୁଥିଲେ, ପଛେ ପଛେ ଚାଲୁଥିଲେ ସାଥୀ ସନ୍ନ୍ୟାସୀଗଣ । ତାଙ୍କ ଦେହରେ ଜ୍ୱର, କିନ୍ତୁ ମନରେ ଅଦମ୍ୟ ଉତ୍ସାହ । ଲାଲା ଗୋବିନ୍ଦ ସାହା ବି ପହଞ୍ଚଗଲେ ଭିମ-ତାଲ ନିକଟରେ । ସ୍ୱାମୀ ବିରଜାନନ୍ଦ ଛାଇଭଳି ସ୍ୱାମୀଜୀଙ୍କ ପାଖ ପାଖେ ଲଗି ରହିଥିଲେ । କିନ୍ତୁ ସ୍ୱାମୀଜୀଙ୍କର ବାଳକ ସ୍ୱଭାବୀ କଥାବାର୍ତ୍ତା ଓ ପରିହାସମୂଳକ ମନ୍ତବ୍ୟ ସହଯାତ୍ରୀଙ୍କର କ୍ଲାନ୍ତ ମନରେ ସ୍ଫୁର୍ତ୍ତି ଭରିଦେଉଥିଲା ।

ଜାନୁଆରି ୩ ତାରିଖରେ ମାୟାବତୀରେ ପହଞ୍ଚଲେ । ମାୟାବତୀର ନୂତନ ନିର୍ମିତ ଆଶ୍ରମଗୃହର ଶୋଭା ଦେଖି ସ୍ୱାମୀଜୀ ଆନନ୍ଦରେ କୁରୁଳି ଉଠିଲେ । ଏହି ସମୟରେ ଆଶ୍ରମର ଘଣ୍ଟାଧ୍ୱନି ତାଙ୍କ କାନରେ ବାଜିଲା । ସେ ଏଭଳି ଉଲ୍ଲସିତ ହୋଇଉଠିଲେ ଯେ ସେ ଲମ୍ଫ ପ୍ରଦାନ କରି ଗୋଟିଏ ଘୋଡ଼ା ପିଠିରେ ବସିପଡ଼ିଲେ ଏବଂ କ୍ଷିପ୍ରଗତିରେ ଘୋଡ଼ାକୁ ଧାବିତ କରି ଆଶ୍ରମ ନିକଟରେ ନିମିଷକ ମଧ୍ୟରେ ପହଞ୍ଚଗଲେ । ତାଙ୍କର ଆଗମନ ଉପଲକ୍ଷେ ପୁଷ୍ପମାଲ୍ୟ ଓ ପତ୍ରରାଜିରେ ସୁସଜ୍ଜିତ ହୋଇଥିଲା ଆଶ୍ରମ । ସନ୍ନ୍ୟାସୀ ଓ ବ୍ରହ୍ମଚାରୀବୃନ୍ଦ ସ୍ୱାମୀଜୀଙ୍କର ଆଗମନରେ ହେଲେ ଉଲ୍ଲସିତ । ପାଛୋଟି ନେଲେ ଭକ୍ତି ଓ ଶ୍ରଦ୍ଧାରେ । ହିମାଳୟର ବିଶାଳତା ଓ ଚମତ୍କାର ଦୃଶ୍ୟର ବକ୍ଷ ଭିତରେ ଏକ ମୁକ୍ତ ବିହଙ୍ଗମଟିଏ ହୋଇ ହଜିଯିବାକୁ ପ୍ରବଳ ଆଗ୍ରହ ନିଜ ଭିତରେ ଉଙ୍କି ମାରୁଥିଲେ ହେଁ ଆଶ୍ରମ ଭିତରେ ବଦ୍ଧ ପକ୍ଷୀଟିଏ ହୋଇ ରହିଯିବାକୁ ତାଙ୍କୁ ପଡ଼ିଲା । କାରଣ ଭୀଷଣ ତୁଷାର, ଝଡ଼ ପ୍ରଖର ପବନ ଓ ଅବିରାମ ତୁଷାରପାତ ହିମାଳୟର ସମଗ୍ର ପରିବେଶକୁ କରିଥିଲା ଭୟଙ୍କର ।  ତଥାପି ଅପୂର୍ବ ଉନ୍ମାଦନା ଓ ଉତ୍ସାହର ବ୍ୟକ୍ତି ଭିତରେ ପଶି ପାରିବ ନାହିଁ ଆଳସ୍ୟ । ପ୍ରତିକୂଳ ଜଳବାୟୁ ସ୍ୱାମୀଜୀଙ୍କୁ ପ୍ରଭାବିତ କରିପାରିଲା ନାହିଁ ।

ଆଶ୍ରମର ବାହାରକୁ ସେ ସିନା ଯାଇପାରିଲେ ନାହିଁ, ଆଶ୍ରମ ଭିତରେ ରହି ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣଙ୍କୁ ନିଜ ମିଶନର କାର୍ଯ୍ୟକାରିତା ସମ୍ବନ୍ଧରେ ରୂପରେଖ ଉପସ୍ଥାପନ କଲେ । ଜ୍ଞାନଦୀପ୍ତ ପ୍ରାଚୀନ ଋଷି ସଦୃଶ ଜ୍ୱଳନ୍ତ ଅଗ୍ନିକୁଣ୍ଡ ସମ୍ମୁଖରେ ଉପବିଷ୍ଟ । ସମ୍ମୁଖରେ ଉପବିଷ୍ଟ ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣ । ଉକ୍ତ ଆଶ୍ରମରେ ଲଗାତର ତିନିବର୍ଷ ଧରି ରହିବାକୁ ଜଣ ଜଣ କରି ସମସ୍ତଙ୍କୁ ପଚାରିଲେ । ସମସ୍ତେ ସ୍ୱାମୀଜୀଙ୍କୁ 'ହଁ' କହିଲେ, କିନ୍ତୁ ସ୍ୱାମୀ ବିରଜାନନ୍ଦ ନମ୍ରତା ସହ ଉତ୍ତର ଦେଇଥିଲେ, ''ସ୍ୱାମୀଜୀ, ଅନ୍ୟ ଜାଗାରେ ରହି, ଭିକ ମାଗି ଚଳିବି । ଏବଂ ଏକାନ୍ତରେ ଘଣ୍ଟା ଘଣ୍ଟା ଧରି କେବଳ ଧ୍ୟାନରେ ମଜ୍ଜିଯିବି ।''

ସ୍ୱାମୀଜୀ ତାଙ୍କୁ ଏଭଳି ଜୀବନ ନିର୍ବାହରୁ ନିବୃତ୍ତ ରହିବାକୁ ପରାମର୍ଶ ଦେଇ କହିଥିଲେ, ''ତୁମର ସ୍ୱାସ୍ଥ୍ୟକୁ କୃଚ୍ଛ୍ର ତପସ୍ୟା ଓ ସାଧନା କରି ତିଳ ତିଳ ନଷ୍ଟ କରନାହିଁ । କିନ୍ତୁ ଆମର ଅନୁଭୂତିକୁ ପାଥେୟ କରି ଆଧ୍ୟାତ୍ମିକ ସାଧନା ଏହିଠାରେ କଲେ ତୁମେ ଲାଭାନ୍ୱିତ ହେବ । କୃଚ୍ଛ୍ର ସାଧନା କରି ଆମେ ପାଇଲୁ କ'ଣ ? ଯୌବନ କାଳରେ ଆମେ ଆମର ସ୍ୱାସ୍ଥ୍ୟ ହରାଇ ରୋଗଗ୍ରସ୍ତ ହୋଇଛୁ । ଘଣ୍ଟା ଘଣ୍ଟା ଧରି ତୁମେ କିପରି ଧ୍ୟାନ କରିପାରିବ ? କେବଳ ସକାଳେ ଓ ସନ୍ଧ୍ୟା ସମୟରେ ପାଞ୍ଚ ଦଶ ମିନିଟ ଧ୍ୟାନ କରି, ଶାସ୍ତ୍ର ଅଧ୍ୟୟନ କରି, ଲୋକହିତକର କାର୍ଯ୍ୟ କଲେ ଯଥେଷ୍ଟ ହେବ ।'' ତଥାପି ସ୍ୱାମୀଜୀ ସ୍ୱାମୀ ବିରଜାନନ୍ଦଙ୍କର ସନ୍ନ୍ୟାସୀ ହୃଦୟକୁ

Digitized by srujanika@gmail.com

ବୁଝିପାରିଥିଲେ ଏବଂ ସେ ଯାହା କହୁଛନ୍ତି ତାହା ଠିକ୍ ବୋଲି ବି ସେ ହୃଦୟଙ୍ଗମ କରିଥିଲେ । ବୈରାଗ୍ୟ ଓ ତ୍ୟାଗ ସନ୍ନ୍ୟାସୀ ଜୀବନର ମୂଳମନ୍ତ୍ର । ଗୋଟିଏ ଜାଗାରେ ରହିଲେ ସଂସାରି ମନ ଜାଗିଉଠିବ । ସେଥିପାଇଁ ସନ୍ନ୍ୟାସୀ ଚାହେଁ ଭ୍ରମଣଶୀଳ ଜୀବନ । ମୁକ୍ତ ପବନ ସଦା ପ୍ରବାହିତ । ସନ୍ନ୍ୟାସୀ ସେଭଳି ମୁକ୍ତ । ସ୍ୱାମୀଜୀ ନିରବ ରହିଲେ ।

ଶ୍ରୀମତୀ ସେଭିଅରଙ୍କୁ ସାକ୍ଷାତ କରି ନିଜର ବେଦନାଗ୍ରସ୍ତ ହୃଦୟକୁ ବ୍ୟକ୍ତ କଲେ । ଜୀବନର ନଶ୍ୱରତା ସମ୍ବନ୍ଧରେ ତାଙ୍କୁ ବୁଝେଇଲେ । କ୍ୟାପ୍‌ଟେନ୍ ସେଭିଅର ମୃତ୍ୟୁ ପୂର୍ବରୁ ତାପସ ଜୀବନଯାପନ କରୁଥିଲେ । ସାଧାରଣ ବସ୍ତ୍ର ପରିଧାନ କରି ଆଶ୍ରମ କାର୍ଯ୍ୟରେ ନିଜକୁ ବ୍ୟସ୍ତ ରଖୁଥିଲେ । ତାଙ୍କର ତପସ୍ୱୀ ତଥା ବୈରାଗ୍ୟ ଜୀବନ ଲକ୍ଷ୍ୟକରି ସମସ୍ତେ ବିସ୍ମିତ ହୋଇଯାଉଥିଲେ । ମୂତ୍ରରୋଗରେ ପୀଡ଼ିତ ଥିଲେ ବି ସେ ଆଦୌ ବିଚଳିତ ନ ଥିଲେ । ଆଲମୋଡ଼ା ଯାଇ ସେଠାରେ ଚିକିତ୍ସିତ ହେବାକୁ ତାଙ୍କୁ ପରାମର୍ଶ ଦିଆଯାଇଥିଲେ ବି ସେଥିପ୍ରତି ସେ କର୍ଣ୍ଣପାତ ନ କରି କହିଥିଲେ - ମୋ ଜୀବନକାଳରେ ମୁଁ କେଉଁଠାରେ ଛଅମାସରୁ ଅଧିକ ସମୟ ରହିନାହିଁ, ବର୍ତ୍ତମାନ ମୁଁ ସଂକଳ୍ପବଦ୍ଧ ଯେ ମାୟାବତୀ ଛାଡ଼ି ମୁଁ କେଉଁଠାକୁ ଯିବିନାହିଁ । ଭଗବାନଙ୍କ ନାମ, ଜପ ଓ କୀର୍ତ୍ତନ କରି ସେ ନିଜ ରୋଗର ଯନ୍ତ୍ରଣା ସହି ଯାଉଥିଲେ । ତାଙ୍କର ଏଭଳି ଯନ୍ତ୍ରଣା ସହିଯିବାର ଦୃଶ୍ୟ ଯେଉଁମାନେ ଦେଖିଥିଲେ, ସେମାନେ ଆଶ୍ଚର୍ଯ୍ୟ ହେଉଥିଲେ । ସ୍ୱାମୀଜୀଙ୍କ ଆଦର୍ଶରେ ସେ ଏଭଳି ଅନୁପ୍ରାଣିତ ଯେ ତାଙ୍କରି କାର୍ଯ୍ୟକରୁ କରୁ ଦେହ ତ୍ୟାଗ କଲେ ।

- ୨ -

*ମୁଁ ଭାବିଥିଲି ଯେ ଗୋଟିଏ କେନ୍ଦ୍ର ଏଭଳି ହେବ ଯେଉଁଠାରେ ଶ୍ରୀରାମକୃଷ୍ଣ ପରମହଂସଙ୍କର ଫଟୋ ପୂଜିତ ହେବ ନାହିଁ । କିନ୍ତୁ ମୁଁ ଦେଖିଲି ଯେ ପୁଣି ସେହି ବୁଢ଼ା ଅଦ୍ୱୈତ ଆଶ୍ରମରେ ଆସନ ଜମେଇ ଦେଲେଣି । ଠିକ୍ ଅଛି !'' ସ୍ୱାମୀଜୀଙ୍କର ଏତାଦୃଶ ମନୋଭାବକୁ କେହି ଭୁଲ ବୁଝିବା ଉଚିତ ନୁହେଁ ଯେ ସେ ଶ୍ରୀରାମକୃଷ୍ଣ ପରମହଂସଙ୍କର ପୂଜା ଓ ଦ୍ୱୈତବାଦ ପ୍ରତି ତାଙ୍କର ସମ୍ମାନ ଓ ଆଦର ନ ଥିଲା । ବେଲୁଡ଼ ମଠରେ ସେ ନିଜେ ଶ୍ରୀରାମକୃଷ୍ଣ ଓ ଦିବ୍ୟଜନନୀ ସାରଦାଦେବୀଙ୍କୁ ପରମ୍ପରାଗତ ପୂଜା ପଦ୍ଧତି ଅନୁସାରେ ଉପାସନା କରିଥିଲେ ।*

ଶ୍ରୀମତୀ ସେଭିଅରଙ୍କର ଧୈର୍ଯ୍ୟ ଓ ମନୋବଳ ପରିଲକ୍ଷିତ କରି ସ୍ୱାମୀଜୀ ଶ୍ରୀମତୀ ବୁଲ୍‌ଙ୍କ ପାଖକୁ ଲେଖିଥିଲେ : ଶ୍ରୀମତୀ ସେଭିଅର ଜଣେ ଦୃଢ଼ମନା ନାରୀ, ସ୍ୱାମୀଙ୍କର ଦେହାନ୍ତକୁ ନିରବ ଓ ସାହସର ସହିତ ସେ ସହି ନେଇଛନ୍ତି । ଏକ ବିଶାଳ ଜାଗାରେ ସୁନ୍ଦର ଉଦ୍ୟାନଟିଏ ତିଆରି କରିଛନ୍ତି, ଫଳଗଛ, ଫୁଲଗଛ ରୋପଣ କରି ଉଦ୍ୟାନଟିକୁ ଶୋଭାମଣ୍ଡିତ କରିଛନ୍ତି । ସୁନ୍ଦର ରାସ୍ତାକୁ ନିଜେ ଶ୍ରୀମତୀ ସେଭିଅର ତିଆରି କରିଛନ୍ତି । ତାଙ୍କର ଉଦ୍ୟାନ ଓ ଗୃହ ଦେଖି

Digitized by srujanika@gmail.com

ତୁମେ ବହୁତ ଖୁସି ହେବ ।'' ଯାହାହେଉ, ସ୍ୱାମୀଜୀଙ୍କର ସାନିଧ ଲାଭ ଶ୍ରୀମତୀ ସେଭିଅରଙ୍କ ହୃଦୟରେ ଶାନ୍ତି ପ୍ରଦାନ କଲା । କେବଳ ସେତିକି ନୁହେଁ, ଏହି ମହାପୁରୁଷଙ୍କର ପ୍ରତି ବାକ୍ୟ ଏଭଳି ଆଧ୍ୟାତ୍ମିକତାରେ ପୂର୍ଣ୍ଣ ଥିଲା ଯେ ତାଙ୍କ ମନରୁ ସବୁ ଦୁଃଖ ଓ ପରିତାପ ନିଷ୍କାସିତ ହୋଇଯାଇଥିଲା ।

ଅଦ୍ୱୈତ ଆଶ୍ରମ ମାୟାବତୀରେ ସ୍ଥାପିତ ହୋଇଥିଲା ଗୋଟିଏ ଲକ୍ଷ୍ୟ ନେଇ । ସନ୍ନ୍ୟାସୀ, ବ୍ରହ୍ମଚାରୀ ଓ ସାଧକମାନେ ଏହିଠାରେ ବାସ କରି କେବଳ ଅଦ୍ୱୈତ ବେଦାନ୍ତ ମାର୍ଗରେ ସାଧନା କରିବେ । କୌଣସି ପ୍ରକାର ମୂର୍ତ୍ତି, ପ୍ରତୀକ, ରୂପ, ଆକାର ପୂଜିତ ହେବନାହିଁ କିମ୍ୱା କୌଣସି ପ୍ରକାର ଉପାସନା ପଦ୍ଧତି ଏଠାରେ ଅନୁସରିତ ହେବନାହିଁ । ନିରାକାର ପରଂବ୍ରହ୍ମଙ୍କ ଠାରେ ମନରଖି ଧ୍ୟାନ ମଗ୍ନ ହେବେ ଏଠାରେ ସାଧକଗଣ । କିନ୍ତୁ କେତେକ ସନ୍ନ୍ୟାସୀ ଓ ବ୍ରହ୍ମଚାରୀ, ଉପାସନା ପଦ୍ଧତିରେ ପୂର୍ବରୁ ଅଭ୍ୟସ୍ତ ଯୋଗୁଁ, ଅଦ୍ୱୈତ ଆଶ୍ରମର ପ୍ରାର୍ଥନା ସଭା କକ୍ଷରେ ଶ୍ରୀରାମକୃଷ୍ଣ ପରମହଂସଙ୍କ ଫଟୋ ସ୍ଥାପନ କରି ନିତ୍ୟପୂଜାର ଆୟୋଜନ କରିଥିଲେ । ସ୍ୱାମୀଜୀଙ୍କୁ ଏହା ଜଣା ନ ଥିଲା । ଦିନେ ସକାଳେ ଉପାସନା କକ୍ଷକୁ ସେ ପ୍ରବେଶ କଲା କ୍ଷଣି ଦେଖିଲେ ଯେ ପୂଜାର୍ଚ୍ଚନା ଚାଲିଛି । ଏହା ଦେଖି ସେଠାରେ କିଛି କହିଲେ ନାହିଁ, କିନ୍ତୁ ଭୀଷଣ କ୍ରୋଧ ଓ ବିରକ୍ତି ତାଙ୍କ ହୃଦୟକୁ ପ୍ରକମ୍ପିତ କରୁଥିଲା । ସନ୍ଧ୍ୟା ସମୟରେ ଆଶ୍ରମର ଅନ୍ତେବାସୀଙ୍କୁ ଡକାଇ ଭୀଷଣ ଭର୍ତ୍ସନା କରିବା ସହିତ ଆଶ୍ରମର ନିୟମ ଭାଙ୍ଗିଥିବାରୁ ସେମାନଙ୍କୁ ଦୋଷ ଦେଲେ । ଅବଶ୍ୟ ପୂଜାର୍ଚ୍ଚନା ବନ୍ଦ କରିବାକୁ ସେ ନିର୍ଦ୍ଦେଶ ଦେଲେନାହିଁ, କିନ୍ତୁ ଅନ୍ତେବାସୀଗଣ ସ୍ୱାମୀଜୀଙ୍କର ମନୋଭାବକୁ ସମ୍ମାନ ଦେଇ ପୂଜାର୍ଚ୍ଚନା ବନ୍ଦ କରିଦେଲେ ।

କିନ୍ତୁ ଜଣେ ସନ୍ନ୍ୟାସୀଙ୍କର ମନ ବୁଝିଲା ନାହିଁ । ଦ୍ୱୈତବାଦରେ ତାଙ୍କର ମନ ଲିପ୍ତ । ଶ୍ରୀରାମକୃଷ୍ଣଙ୍କର ପୂଜାର୍ଚ୍ଚନା ବନ୍ଦ ହୋଇଯିବାରୁ ମନ ଦୁଃଖରେ ସେ ଖଣ୍ଡିଏ ଚିଠି ଦିବ୍ୟଜନନୀ ସାରଦାଦେବୀଙ୍କ ପାଖକୁ ଲେଖିଲେ । ଚିଠି ପାଇ ମା ସନ୍ନ୍ୟାସୀଙ୍କର ଭକ୍ତି ପ୍ରାଣର ବ୍ୟାକୁଳତା ହୃଦୟଙ୍ଗମ କଲେ ଏବଂ ଚିଠିଟିଏ ଲେଖି ଜଣାଇଦେଲେ ''ଶ୍ରୀରାମକୃଷ୍ଣ ସ୍ୱୟଂ ଅଦ୍ୱୈତ ଥିଲେ ଏବଂ ଅଦ୍ୱୈତ ପ୍ରଚାର କରିଥିଲେ । ତୁମେମାନେ କାହିଁକି ଅଦ୍ୱୈତ ଅନୁସରଣ କରିବ ନାହିଁ ? ତାଙ୍କର ସମସ୍ତ ଶିଷ୍ୟ ଅଦ୍ୱୈତବାଦୀ ।

ବେଲୁଡ଼ ମଠକୁ ପ୍ରତ୍ୟାବର୍ତ୍ତନ କଲା ଉତ୍ତାରୁ ସ୍ୱାମୀଜୀ ଏକଦା ଆଲୋଚନା ପ୍ରସଙ୍ଗରେ କହିଥିଲେ, ''ମୁଁ ଭାବିଥିଲି ଯେ ଗୋଟିଏ କେନ୍ଦ୍ର ଏଭଳି ହେବ ଯେଉଁଠାରେ ଶ୍ରୀରାମକୃଷ୍ଣ ପରମହଂସଙ୍କର ଫଟୋ ପୂଜିତ ହେବ ନାହିଁ । କିନ୍ତୁ ମୁଁ ଦେଖିଲି ଯେ ପୁଣି ସେହି ବୁଢ଼ା ଅଦ୍ୱୈତ ଆଶ୍ରମରେ ଆସନ ଜମେଇ ଦେଲେଣି । ଠିକ୍ ଅଛି !'' ସ୍ୱାମୀଜୀଙ୍କର ଏତାଦୃଶ ମନୋଭାବକୁ କେହି ଭୁଲ ବୁଝିବା ଉଚିତ ନୁହେଁ ଯେ ସେ ଶ୍ରୀରାମକୃଷ୍ଣ ପରମହଂସଙ୍କର ପୂଜା ଓ ଦ୍ୱୈତବାଦ ପ୍ରତି ତାଙ୍କର ସମ୍ମାନ ଓ ଆଦର ନ ଥିଲା । ବେଲୁଡ଼ ମଠରେ ସେ ନିଜେ ଶ୍ରୀରାମକୃଷ୍ଣ ଓ ଦିବ୍ୟଜନନୀ ସାରଦାଦେବୀଙ୍କୁ ପରମ୍ପରାଗତ ପୂଜା ପଦ୍ଧତି ଅନୁସାରେ ଉପାସନା କରିଥିଲେ ।

ଦେଖିବାକୁ ଗଲେ, ସ୍ୱାମୀଜୀ ସିନା ବାହାରକୁ ଜଣେ ଦାର୍ଶନିକ ଭଳି ପ୍ରତୀୟମାନ ହୁଅନ୍ତି, କିନ୍ତୁ ଭିତରେ ସେ ଥିଲେ ଗୋଟାପଣେ ପରମଭକ୍ତ । ଅବଶ୍ୟ ଭାରତ ଓ ବିଦେଶରେ ସେ ଯାହା

Digitized by srujanika@gmail.com

ପ୍ରଚାର କରିଥିଲେ, ସେସବୁ କେବଳ ଅଦ୍ୱୈତ ଦର୍ଶନର କଥା । ହିନ୍ଦୁ ଦର୍ଶନ ପରମ୍ପରାନୁସାରେ, ପରମବ୍ରହ୍ମ ହିଁ ନିର୍ଗୁଣ ଓ ନିରାକାର । ଈଶ୍ୱରଙ୍କ ସାକାର ରୂପ ନିରାକାର ଅଭିମୁଖେ ଏକ ପଥ, ଅର୍ଥାତ ଦ୍ୱୈତବାଦ ଅଦ୍ୱୈତବାଦ ଅଭିମୁଖେ ଏକ ପାହାଚ ମାତ୍ର । ଈଶ୍ୱରଙ୍କର ବିଭିନ୍ନ ସାକାର ରୂପକୁ ସେ କଦାପି ଅସ୍ୱୀକାର କରିନାହାନ୍ତି, ବରଂ ଅଦ୍ୱୈତର ନିରାକାର ଓ ନିର୍ଗୁଣ ଈଶ୍ୱରଙ୍କ ଚିନ୍ତା ମାଧ୍ୟମରେ ଏହି ସାକାର ରୂପ ଭକ୍ତିରେ ସମନ୍ୱୟ ପ୍ରତିଷ୍ଠା ସହଜରେ କରିହେବ । ଗୋଟିଏ ସାକାର ରୂପୀ ସମ୍ପ୍ରଦାୟ ଶେଷରେ ଅଦ୍ୱିତ ଦର୍ଶନରେ ବିଲୀନ ହୋଇପାରେ, କିନ୍ତୁ ଅନ୍ୟ ସାକାର ରୂପୀ ସମ୍ପ୍ରଦାୟକୁ ଏକାଠି କରି ସମନ୍ୱୟ ଆଣିପାରିବ ନାହିଁ । ଯେଉଁ ସାକାର ରୂପୀ ସଂପ୍ରଦାୟ ବା ଗୋଷ୍ଠୀ ଅଦ୍ୱୈତ ଦର୍ଶନରେ ବିଶ୍ୱାସ କରେନାହିଁ, ସେଠାରେ ଧର୍ମାନ୍ଧତା, ଏକାଧିକାର ପ୍ରବଣତା ଏବଂ ଭୟଙ୍କର ଭାବପ୍ରବଣତା ସୃଷ୍ଟି ହୋଇଥାଏ । ସ୍ୱାମୀଜୀ ନିଜ ଜୀବନରେ ଦେଖିଛନ୍ତି, ଭାରତ ଓ ବିଦେଶର ମନ୍ଦିର, ଗୀର୍ଜା, ମସ୍‌ଜିଦ୍ ଓ ଅନ୍ୟାନ୍ୟ ଉପାସନା ସ୍ଥଳୀରେ ଦ୍ୱୈତବାଦର କିପରି ବିକୃତୀକରଣ ଘଟୁଛି ।

ଭାରତବର୍ଷରେ ଅଦ୍ୱୈତ-ଦର୍ଶନ ଖାଲି ଶୁଷ୍କ ବୌଦ୍ଧିକ ଚର୍ଚ୍ଚାରେ ପରିଣତ ହୋଇଛି ବୋଲି ସ୍ୱାମୀଜୀ ସ୍ୱୟଂ ଉପଲବ୍ଧି କରିଛନ୍ତି । ଅଦ୍ୱୈତ ଦର୍ଶନକୁ ପୁନର୍ବାର ନିଜର ମୂଳ ଶୁଦ୍ଧତାରେ ପ୍ରତିଷ୍ଠିତ କରିବାକୁ ସେ ଚାହିଁଛନ୍ତି । ସେଥିପାଇଁ ସେ ପ୍ରତିଷ୍ଠା କଲେ ମାୟାବତୀରେ ଅଦ୍ୱୈତ ଆଶ୍ରମ । ହିମାଳୟର ସଦା ତୁଷାରାବୃତ ଦୃଶ୍ୟ ଏବଂ ଆକାଶଚୁମ୍ବୀ ଶିଖର ଦେଶ ଏବଂ ଦିଗନ୍ତ ବିସ୍ତାରୀ ପର୍ବତମାଳା ଅନନ୍ତ ଅଭିମୁଖେ ସାଧକର ମନକୁ ଉଡ଼ାଇ ନେବ । ସାକାରବାଦୀ ମନର ବିଲୁପ୍ତି ଘଟିବ । ଅଦ୍ୱୈତ-ଦର୍ଶନ ପୁଣି ନିଜ ଗୌରବରେ ଉଦ୍‌ଭାସିତ ହେବ ।

- ୩ -

*ସବୁ କ୍ଷେତ୍ରରେ ତାଙ୍କର ବିଦ୍ରୋହ । କେବଳ ଧର୍ମର କୁସଂସ୍କାର ବିରୋଧରେ ନୁହେଁ, ବରଂ ସାମାଜିକ, ଅର୍ଥନୈତିକ ଓ ନୈତିକତା କ୍ଷେତ୍ରରେ ଯେଉଁଠି ସ୍ଖଳନ ଦେଖୁଥିଲେ, ସେଠାରେ ତାଙ୍କର ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହୋଇଉଠୁଥିଲା । ଭାରତର ସ୍ୱାଭିମାନ ଅଛି । ପ୍ରତ୍ୟେକ ଭାରତୀୟ ଏହା ବୁଝିବା ଉଚିତ ବୋଲି କେବଳ କଥାରେ ନୁହେଁ କାର୍ଯ୍ୟରେ ସେ ଦେଖାଉଥିଲେ । ଆମେ ଏହି ପୁସ୍ତକରେ କହିଛୁ, ସ୍ୱାମୀ ବିବେକାନନ୍ଦ ଏକ ବ୍ୟକ୍ତିତ୍ୱ ନ ଥିଲେ, ଖଣ୍ଡିଏ ଜଳନ୍ତା ନିଆଁ, ନିଜ ଦେଶ ହେଉ, କିମ୍ବା ବିଦେଶ ହେଉ, ଯେଉଁଠି ମାନବିକତାର ଉଲଙ୍ଘନ, ସେଠାରେ ସେ ଖେଞ୍ଚି ହୋଇଯାଉଥିଲେ । ସେ ଅନ୍ୟ ଭିତରେ ଶକ୍ତି ସଞ୍ଚରିତ କରି ଦେଉଥିଲେ ।*

ଜାନୁଆରୀ ୧୩ ତାରିଖ ସ୍ୱାମୀଜୀଙ୍କ ଜନ୍ମଦିନ । ଅଠତିରିଶ ବୟସରେ ପଦାର୍ପଣ କଲେ । ଅବିରାମ ବର୍ଷା ଲାଗି ରହିଥିଲା । ଯାହାହେଉ ସେଦିନ ସେ ସାମାନ୍ୟ ସୁସ୍ଥ ଅନୁଭବ କଲେ ।

Digitized by srujanika@gmail.com

ତା'ପରଦିନ କ୍ୟାପ୍‌ଟେନ୍ ସେଭିଅରଙ୍କ ଜନ୍ମଦିନ ପଡ଼ିଲା । ସେ ବଞ୍ଚିଥିଲେ ତାଙ୍କର ବୟସ ଛପନ ବର୍ଷ ହୋଇଥାନ୍ତା । ଏହି ସମୟରେ ଆମେରିକାର ଶ୍ରୀମତୀ ଷ୍ଟର୍ଡିଙ୍କ ମୃତ୍ୟୁ ଖବର ତାଙ୍କର ହସ୍ତଗତ ହେଲା । ସେହି ମହାନ୍ ମହିଳାଙ୍କର ସ୍ନେହ ଓ ସାହାଯ୍ୟକୁ ଉଚ୍ଚ ପ୍ରଶଂସା କରି ସ୍ୱାମୀଜୀ ତାଙ୍କର ପତି ଶ୍ରୀ ଷ୍ଟର୍ଡ଼ିଙ୍କ ପାଖକୁ ଏଠାରୁ ଚିଠି ଖଣ୍ଡିଏ ଲେଖିଥିଲେ ।

ଏକ ଦାରୁଣ ଦୁଃସମ୍ବାଦ, ଇତ୍ୟବସରରେ ସ୍ୱାମୀଜୀଙ୍କ ପାଖରେ ପହଞ୍ଚିଲା । ପରମଭକ୍ତ ଓ ବିଶ୍ୱସ୍ତ ଯିଏ ସ୍ୱାମୀଜୀଙ୍କର ପ୍ରଥମ ଆମେରିକା ଯାତ୍ରାର ଆର୍ଥିକ ବୋଝ ସ୍ୱୟଂ ବହନ କରିଥିଲେ, ସେହି ଖେତଡ଼ି ମହାରାଜାଙ୍କର ଶୋଚନୀୟ ମୃତ୍ୟୁ ଘଟିଛି । ଆଗ୍ରା ନିକଟରେ ସମ୍ରାଟ ଆକବରଙ୍କର ୮୬ ଫୁଟର ସମାଧି ସ୍ତମ୍ଭର ମରାମତି କାର୍ଯ୍ୟର ଦାୟିତ୍ୱ ନେଇଥିଲେ । ଏହି ପୁରାତନ କୀର୍ତ୍ତିରାଜିର ସଂରକ୍ଷଣ ନିମନ୍ତେ ସେ ନିଜ ରାଜକୋଷରୁ ଅର୍ଥ ବ୍ୟୟ କରି ମରାମତିର କାର୍ଯ୍ୟ ହାତକୁ ନେଇଥିଲେ । ସେ ସେଠାକୁ କାର୍ଯ୍ୟର ଅଗ୍ରଗତି ଦେଖିବାକୁ ଯାଇଥିଲେ । ବିଧିର ବିଧାନ ଅତୀବ ବିଚିତ୍ର ଓ ରହସ୍ୟମୟ । ରାଜା ଯେତେବେଳେ ୮୬ ଫୁଟ ଉଚ୍ଚତା ବିଶିଷ୍ଟ ସମାଧିସ୍ତମ୍ଭ ଆରୋହଣ କରି କାର୍ଯ୍ୟ ତଦାରଖ କରୁଥିଲେ, ହଠାତ୍ ତାଙ୍କର ପାଦ ଖସିଗଲା, ସେ ବହୁ ଉପରୁ ତଳକୁ ଖସିପଡ଼ିଲେ ଏବଂ ସେହିଠାରେ ହିଁ ତାଙ୍କର ମୃତ୍ୟୁ ଘଟିଲା । ମେରୀ ହେଲେଙ୍କ ନିକଟକୁ ସ୍ୱାମୀଜୀ ଲେଖିଥିଲେ - "ପୁରାତନ ଜିନିଷ ପ୍ରତି ଆଗ୍ରହ ରୂପକ ଲୋଭ ବେଳେ ବେଳେ ଆମକୁ ଦୁଃଖରେ ଭସାଇ ଦେଇଥାଏ । ନିଜ ପ୍ରତି ଯତ୍ନ ନେବ ମେରୀ, ଯେପରି ଭାରତୀୟମାନଙ୍କ ଭଳି ପୁରାତନ ବସ୍ତୁ ପ୍ରତି ତୁମର ଆଗ୍ରହ ନ ଜନ୍ମେ । ... ଦେଖ ମେରୀ, ଘଟଣାଗୁଡ଼ିକ ମୋ ପାଇଁ ଅନ୍ଧକାରମୟ ହୋଇଉଠୁଛି । ମୋର ସ୍ୱାସ୍ଥ୍ୟ ନଷ୍ଟଭ୍ରଷ୍ଟ ହେଲାଣି । ବହୁଶୀଘ୍ର ମୁଁ ଚହଲି ଯିବି, ଅପେକ୍ଷା କରିଛି ମୋର ପାଳିକୁ ।

ସ୍ୱାମୀଜୀ ଜାନୁଆରି ୧୮ ତାରିଖରେ ମାୟାବତୀରୁ ପ୍ରସ୍ଥାନ କଲେ । ଚାରିଦିନ କାଳ ପାହାଡ଼ିଆ ଅଙ୍କାବଙ୍କା ରାସ୍ତାରେ, କେତେବେଳେ ତୁଷାରାଚ୍ଛନ୍ନ ପଥ ଓ କେତେବେଳେ ପ୍ରଖର ନଦୀର ସ୍ରୋତ ଅତିକ୍ରମ କରିବାକୁ ପଡୁଥିଲା । ଘୋଡ଼ା ଚଢ଼ିବାରେ ସ୍ୱାମୀଜୀ ଥିଲେ ଧୁରନ୍ଧର । ରାଜକୀୟ ଭଙ୍ଗୀରେ ଅଶ୍ୱପୃଷ୍ଠକୁ ଲମ୍ଫ ପ୍ରଦାନ କରି, ଦ୍ରୁତଗତିରେ ଦୌଡ଼ାଉଥିଲେ ଘୋଡ଼ାକୁ । ଏଭଳି ବିଷମ ପାହାଡ଼ିଆ ଅଣଓସାରିଆ ରାସ୍ତାରେ ଘୋଡ଼ାକୁ ନିୟନ୍ତ୍ରଣ କରି ଦୌଡ଼ାଇବା ଯେ କଷ୍ଟକର ବ୍ୟାପାର, ତାହା ସମସ୍ତଙ୍କୁ ଜଣା । ତଥାପି ସ୍ୱାମୀଜୀଙ୍କ ଭିତରେ ତିଳେମାତ୍ର ନ ଥିଲା ଭୟ । ଯାହାହେଉ ଶେଷରେ ପହଞ୍ଚିଲେ ନିକଟସ୍ଥ ରେଳ ଷ୍ଟେସନରେ । ବହୁ ମାନ୍ୟଗଣ୍ୟ ବ୍ୟକ୍ତି ତଥା ରେଳବାଇ କର୍ମଚାରୀ ସ୍ୱାମୀଜୀଙ୍କୁ ସେଠାରେ ସ୍ୱାଗତ କଲେ । ଗୋଟିଏ ଦ୍ୱିତୀୟ ଶ୍ରେଣୀ କମ୍ପାର୍ଟମେଣ୍ଟରେ ସ୍ୱାମୀଜୀ ଓ ସ୍ୱାମୀ ସଦାନନ୍ଦ ଚଢ଼ିଲେ । ସେହି କମ୍ପାର୍ଟମେଣ୍ଟରେ ଆଗରୁ ବସିଥିଲେ ଜଣେ ଇଂରେଜୀ କର୍ଣ୍ଣେଲ । ଭାରତୀୟ ଅଧିବାସୀ ତାଙ୍କ କମ୍ପାର୍ଟମେଣ୍ଟରେ ଚଢ଼ିବାରୁ ସେ ତୀବ୍ର ପ୍ରତିବାଦ କଲେ । କିନ୍ତୁ ସ୍ୱାମୀଜୀଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବାପାଇଁ ବହୁ ଲୋକ ସେଠାରେ ସମବେତ ହୋଇଥିବା ଦେଖି କର୍ଣ୍ଣେଲ ମହାଶୟ ସ୍ୱାମୀଜୀଙ୍କୁ କିଛି କହିବାକୁ ସାହାସ କଲେ ନାହିଁ । କିନ୍ତୁ ଡବାରୁ ଓହ୍ଲାଇପଡ଼ି ଦୌଡ଼ିଲେ ଷ୍ଟେସନମାଷ୍ଟରଙ୍କ ପାଖକୁ ।

Digitized by srujanika@gmail.com

ଷ୍ଟେସନ ମାଷ୍ଟର ସେଠାରେ ପହଞ୍ଚି ଦେଖିଲେ ଯେ ବିଶ୍ୱବିଖ୍ୟାତ ସ୍ୱାମୀ ବିବେକାନନ୍ଦ ସ୍ୱୟଂ ଡବାରେ ବସିଛନ୍ତି । ସେ ହାତଯୋଡ଼ି ଅନ୍ୟ ଡବାକୁ ଚାଲିଯିବା ପାଇଁ ବିନମ୍ର ସହକାରେ ସ୍ୱାମୀଜୀଙ୍କୁ ଅନୁରୋଧ କଲେ । ଷ୍ଟେସନମାଷ୍ଟର ତାଙ୍କର କଥା ପୂରା କରିବା ପୂର୍ବରୁ ଭାରତୀୟ ସିଂହ ସ୍ୱାମୀ ବିବେକାନନ୍ଦ ଗର୍ଜି ଉଠିଲେ, ''ଏଭଳି କଥା ମୋତେ କହିବା ଲାଗି ତୁମର ସାହସ କେମିତି ହେଲା ଷ୍ଟେସନମାଷ୍ଟର ସାହେବ ? ଆପଣ ସେଥିପାଇଁ ନିଜେ ଲଜ୍ଜିତ ନୁହଁନ୍ତି କି ? ବିଚରା ଷ୍ଟେସନମାଷ୍ଟର ଅଧିକ କିଛି କହିବା ପାଇଁ ସାହସ କଲେନାହିଁ, ବରଂ ସେଠାରୁ ଦ୍ରୁତପାଦରେ ପଳାଇ ଆସିଲେ । କର୍ଣ୍ଣେଲ ଭାବିଲେ ଯେ ତାଙ୍କର ଆଦେଶ ବୋଧହୁଏ ପାଳିତ ହୋଇଛି । ସେ ଯେତେବେଳେ ନିଜର କମ୍ପାର୍ଟମେଣ୍ଟ ଭିତରକୁ ପ୍ରବେଶ କଲେ, ସେତେବେଳେ ଦେଖିଲେ ଯେ ସ୍ୱାମୀଜୀ ପୂର୍ବବତ୍ ଆଉ ଜଣେ ସନ୍ନ୍ୟାସୀଙ୍କ ସହ ବସି ମୁରୁକି ମୁରୁକି ହସୁଛନ୍ତି ।

କର୍ଣ୍ଣେଲ ପୁନର୍ବାର ଡବାରୁ ଓହ୍ଲାଇପଡ଼ି ପ୍ଲାଟଫର୍ମର ଗୋଟିଏ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ଖାଲି ଦୌଡ଼ି ଦୌଡ଼ି ଚିତ୍କାର କରି କହୁଥିଲେ, ''ଷ୍ଟେସନମାଷ୍ଟର... ଷ୍ଟେସନମାଷ୍ଟର'', କିନ୍ତୁ ବିଚରା ଷ୍ଟେସନମାଷ୍ଟର କ'ଣ ସେଠାରେ ଥିଲେ । ଏଣୁ ମାଇଲେ ବ୍ରହ୍ମ ହତ୍ୟା, ତେଣେ ମାଇଲେ ଗୋ-ହତ୍ୟା ଭାବି ନିଜ ଅଫିସରୁ ପଳାଇ ଯାଇଥିଲେ । କର୍ଣ୍ଣେଲ ରାଗି ଲାଲ, କ୍ରୋଧରେ ତାଙ୍କର ନାଲି ଓଠ ଖାଲି ଫରଫର ହୋଇ କମ୍ପମାନ ହେଉଥିଲା । ଏହି ସମୟରେ ଟ୍ରେନ୍ ଛାଡ଼ିଲା, ଅନନ୍ୟୋପାୟ ହୋଇ କର୍ଣ୍ଣେଲ ବିଚରା ଅନ୍ୟ ଗୋଟିଏ କମ୍ପାଟମେଣ୍ଟରେ ଚଢୁଥିବା ସମୟରେ, ସ୍ୱାମୀଜୀ ଅନ୍ୟ ସନ୍ନ୍ୟାସୀଙ୍କ ସହ ଖିଲି ଖିଲି ହସୁଥିଲେ ।

ସବୁ କ୍ଷେତ୍ରରେ ତାଙ୍କର ବିଦ୍ରୋହ । କେବଳ ଧର୍ମର କୁସଂସ୍କାର ବିରୋଧରେ ନୁହେଁ, ବରଂ ସାମାଜିକ, ଅର୍ଥନୈତିକ ଓ ନୈତିକତା କ୍ଷେତ୍ରରେ ଯେଉଁଠି ସ୍ଖଳନ ଦେଖୁଥିଲେ, ସେଠାରେ ତାଙ୍କର ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହୋଇଉଠୁଥିଲା । ଭାରତର ସ୍ୱାଭିମାନ ଅଛି । ପ୍ରତ୍ୟେକ ଭାରତୀୟ ଏହା ବୁଝିବା ଉଚିତ ବୋଲି କେବଳ କଥାରେ ନୁହେଁ କାର୍ଯ୍ୟରେ ସେ ଦେଖାଉଥିଲେ । ଆମେ ଏହି ପୁସ୍ତକରେ କହିଛୁ, ସ୍ୱାମୀ ବିବେକାନନ୍ଦ ଏକ ବ୍ୟକ୍ତିତ୍ୱ ନ ଥିଲେ, ଖଣ୍ଡିଏ ଜଳନ୍ତା ନିଆଁ, ନିଜ ଦେଶ ହେଉ, କିମ୍ବା ବିଦେଶ ହେଉ, ଯେଉଁଠି ମାନବିକତାର ଉଲଘନ, ସେଠାରେ ସେ ଖୋଞ୍ଚି ହୋଇଯାଉଥିଲେ । ସେ ଅନ୍ୟ ଭିତରେ ଶକ୍ତି ସଞ୍ଚରିତ କରି ଦେଉଥିଲେ ।



Digitized by srujanika@gmail.com

॥ ବୟାଳିଶ ॥

# ସ୍ୱାମୀଜୀଙ୍କର ଢାକା ଯାତ୍ରା - ଉତ୍କଟ ଶ୍ୱାସ ଓ ମଧୁମେହ ରୋଗରେ ଅସ୍ତବ୍ୟସ୍ତ

୧୯୦୧ ଜାନୁଆରି ୨୪ ତାରିଖ ବେଲୁଡ଼ ମଠରେ ପହଞ୍ଚିଲେ ସ୍ୱାମୀଜୀ । ଆମେରିକା ଓ ଇୟୁରୋପରୁ ଦ୍ୱିତୀୟଥର ଫେରିବା ପରେ ମଠକାର୍ଯ୍ୟର ଅଗ୍ରଗତି ଉପରେ ସମୀକ୍ଷା କରି ନ ଥିଲେ । ମଠର ସୁପରିଚାଳନା ନିମନ୍ତେ ଯେଉଁ ଟ୍ରଷ୍ଟି ଗଠନ କରାଯାଇଥିଲା, ତାହା ଜାନୁଆରି ୩୦ରେ ଆଇନ୍ ଅନୁସାରେ ପ୍ରସ୍ତୁତ ହୋଇ ଫେବୃଆରି ୬ ତାରିଖରେ ରେଜିଷ୍ଟ୍ରିଭୁକ୍ତ ହେଲା । ମଠର ଟ୍ରଷ୍ଟିମାନେ ହେଲେ : ସ୍ୱାମୀ ବ୍ରହ୍ମାନନ୍ଦ, ସ୍ୱାମୀ ପ୍ରେମାନନ୍ଦ, ସ୍ୱାମୀ ଶିବାନନ୍ଦ, ସ୍ୱାମୀ ସାରଦାନନ୍ଦ, ସ୍ୱାମୀ ଅଖଣ୍ଡାନନ୍ଦ, ସ୍ୱାମୀ ତ୍ରିଗୁଣାତୀତାନନ୍ଦ, ସ୍ୱାମୀ ରାମକୃଷ୍ଣାନନ୍ଦ, ସ୍ୱାମୀ ଅଦ୍ୱୈତାନନ୍ଦ, ସ୍ୱାମୀ ସୁବୋଧାନନ୍ଦ, ସ୍ୱାମୀ ଅଭେଦାନନ୍ଦ ଏବଂ ସ୍ୱାମୀ ତୁରୀୟାନନ୍ଦ ।

ଏମାନେ ସମସ୍ତେ ଥିଲେ ଶ୍ରୀରାମକୃଷ୍ଣ ପରମହଂସଙ୍କର ପ୍ରତ୍ୟକ୍ଷ ଶିଷ୍ୟ । ସ୍ୱାମୀଜୀ ଜାଣିଶୁଣି ନିଜର ଶିଷ୍ୟମାନଙ୍କୁ ଟ୍ରଷ୍ଟିରେ ରଖିଲେ ନାହିଁ । ସେ ତ ନିଜେ ଟ୍ରଷ୍ଟିରେ ରହିଲେ ନାହିଁ, ଏପରିକି ନିଜର ଶିଷ୍ୟଙ୍କୁ ରଖିଲେ ନାହିଁ, ଏହା ତାଙ୍କର ପ୍ରଚଣ୍ଡ ତ୍ୟାଗ ନୁହେଁ ତ ଆଉ କ'ଣ ! ସ୍ୱାମୀ ଅଦ୍ଭୁତାନନ୍ଦଙ୍କୁ ଟ୍ରଷ୍ଟିରେ ସାମିଲ କରିବା ପାଇଁ ସ୍ୱାମୀଜୀ ତାଙ୍କୁ ବହୁତ ବୁଝାଇଲେ, କିନ୍ତୁ ସେ ଆଦୌ ରାଜି ହେଲେ ନାହିଁ । ଶ୍ରୀରାମକୃଷ୍ଣଙ୍କ ଛଡ଼ା ତାଙ୍କୁ କୌଣସି ଜିନିଷରେ ମନ ବଳୁ ନ ଥିଲା, କିନ୍ତୁ ମଠ ଓ ଗୁରୁଭ୍ରାତାଙ୍କ ପ୍ରତି ଅଖଣ୍ଡ ବିଶ୍ୱାସ ଓ ଶ୍ରଦ୍ଧା ରହିଥିଲା । ସେତେବେଳେକୁ ସ୍ୱାମୀ ଯୋଗାନନ୍ଦଙ୍କର ଦେହାନ୍ତ ହୋଇଯାଇଥିଲା । ଠାକୁରଙ୍କ ଷୋହଳ ଜଣ ପ୍ରତ୍ୟକ୍ଷ ଶିଷ୍ୟଙ୍କ ମଧ୍ୟରୁ ସ୍ୱାମୀ ବିଜ୍ଞାନାନନ୍ଦଙ୍କୁ ବାଦ ରଖାଯାଇଥିଲା । ସ୍ୱାମୀ ବ୍ରହ୍ମାନନ୍ଦ ଓ ସ୍ୱାମୀ ସାରଦାନନ୍ଦ ଯଥାକ୍ରମେ ଅଧ୍ୟକ୍ଷ ଓ ସମ୍ପାଦକ ଦାୟିତ୍ୱ ବହନ କଲେ । ସ୍ୱାମୀଜୀ ବର୍ତ୍ତମାନ ସମସ୍ତ ଜଞ୍ଜାଳରୁ ମୁକ୍ତ ।

ଫ୍ରାନ୍ସରୁ ସ୍ୱାମୀଜୀଙ୍କର ଶୁଭେଚ୍ଛୁ ଓ ବନ୍ଧୁ ଜୁଲେବୋୟା ବେଲୁଡ଼ ମଠରେ ଶିବରାତ୍ରି ଦିନ ପହଞ୍ଚିଲେ । ସ୍ୱାମୀଜୀ ସନ୍ନ୍ୟାସୀଗଣଙ୍କ ସହିତ ତାଙ୍କୁ ପାଛୋଟି ନେଇ ଯଥାରୀତି ଆତିଥେୟ ସ୍ୱୀକାର କଲେ । ସେ କଲିକତାରେ କିଛିଦିନ ରହି ନେପାଳ ଅଭିମୁଖେ ଯାତ୍ରା କରିଥିଲେ । ଶ୍ରୀରାମକୃଷ୍ଣ ପରମହଂସଙ୍କର ଅଠଷଠି ଜନ୍ମଦିନ ତିରିଶ ହଜାର ଭକ୍ତମାନଙ୍କ ଗହଣରେ ପାଳିତ ହୋଇଥିଲା । ବହୁ ଗରିବ ଓ ନିଃସ୍ୱ ଏହି ଉପଲକ୍ଷେ ମଠରେ ଭୋଜନ କରିଥିଲେ । ଇତ୍ୟବସରରେ,

Digitized by srujanika@gmail.com

ପୂର୍ବବଙ୍ଗରେ ଅଧିବାସୀଗଣ ତାଙ୍କୁ ଢାକା ନେଇଯିବା ପାଇଁ ପ୍ରବଳ ଅନୁରୋଧ କରୁଥାନ୍ତି । ଏହି ସଂକ୍ରାନ୍ତରେ ସ୍ୱାମୀଜୀ ଶ୍ରୀମତୀ ଓଲେବୁଲ୍‌ଙ୍କୁ ଲେଖିଥିଲେ : ତୀର୍ଥ ଭ୍ରମଣରେ ମୁଁ ମୋର ମା'ଙ୍କ ସହ ଯାତ୍ରା କରିବାକୁ ମନସ୍ଥ କରିଛି... ଜଣେ ହିନ୍ଦୁ ବିଧବା ପାଇଁ ଏହା ଗୋଟିଏ ମହାନ୍ ଇଚ୍ଛା । ଜୀବନସାରା ମୋ ପରିବାର ଲୋକଙ୍କୁ ମୁଁ ଦୁଃଖ ଦେଇଛି । ମା'ଙ୍କର ଏହି ଗୋଟିଏ ଇଚ୍ଛାକୁ ମୁଁ ପୂରଣ କରିବାକୁ ଚାହେଁ ।''

- ୧ -

*ସ୍ୱାମୀଜୀ କୌଣସି ଧର୍ମକୁ ନୀଚ ବୋଲି କହିନାହାନ୍ତି । ଏକ ଉଦ୍ୟାନର ପ୍ରତ୍ୟେକ ଧର୍ମ ଗୋଟିଏ ଗୋଟିଏ ପୁଷ୍ପପାଦକ ହୋଇଥିବାରୁ ଉଦ୍ୟାନର ଶୋଭାବର୍ଦ୍ଧନ ହୋଇଥାଏ । ବିଶ୍ୱ ବି ବହୁ ଧର୍ମକୁ ନେଇ ଶୋଭାମଣ୍ଡିତ ଓ ସୌନ୍ଦର୍ଯ୍ୟମୟ, କିନ୍ତୁ ଭାରତୀୟମାନେ ନିଜ ହିନ୍ଦୁଧର୍ମର ମହତ୍ତ୍ୱକୁ ବୁଝି ନ ପାରି ନାଶାକୁଞ୍ଚନ କରୁଥିବାର ଦେଖି ସ୍ୱାମୀଜୀଙ୍କର ହୃଦୟ ଅଗ୍ନିବର୍ଷୀ ହୋଇ ଉଠିଥିଲା ।*

୧୯୦୧ ମାର୍ଚ୍ଚ ୧୮ ତାରିଖରେ ସ୍ୱାମୀଜୀ ଅନେକ ସନ୍ୟାସୀଙ୍କ ସହିତ ଢାକା ଯାତ୍ରା କଲେ । ପରବର୍ତ୍ତୀ ଦିନ ସେ ଢାକାରେ ପହଞ୍ଚିଲେ । ଶ୍ୱାସରୋଗ ଓ ମଧୁମେହ ରୋଗରେ ଭୀଷଣ ପୀଡ଼ିତ, ଯା'ଫଳରେ ସେ ଖୁବ୍ ଦୁର୍ବଳ ହୋଇଯାଇଥିଲେ । ଶ୍ୱାସରୋଗର ଉତ୍କଟ ଯନ୍ତ୍ରଣା ଭିତରେ ବି ସେ ବହୁ ଲୋକଙ୍କୁ ଭେଟୁଥିଲେ । ପିମ୍ପୁଡ଼ିଧାର ଭଳି ଲୋକଙ୍କର ସୁଅ ତାଙ୍କ ପାଖକୁ ଛୁଟୁଥିଲା । କାହାକୁ ସେ ନିରାଶ କରୁ ନ ଥିଲେ । ଦେହର ଯନ୍ତ୍ରଣା ତାଙ୍କର ମନବଳକୁ ଆଦୌ ପରାସ୍ତ କରୁ ନ ଥିଲା । ସେ ଯନ୍ତ୍ରଣା ଭିତରେ ଏକଦା ଅର୍ଦ୍ଧସ୍ୱପ୍ନ ସ୍ୱରରେ କହିଥିଲେ: ଆଉ ବା କ'ଣ ଅଛି ! ମୁଁ ତ ଏମାନଙ୍କ ପାଇଁ ପନ୍ଦର ଶହ ବର୍ଷ ପାଇଁ ଯଥେଷ୍ଟ ଦେଇସାରିଛି ।''

ଢାକା ଅବସ୍ଥାନ କାଳରେ ସେ ଦୁଇଟି ସାଧାରଣ ସଭାରେ ବକ୍ତୃତା ପ୍ରଦାନ କରିଥିଲେ । ଦେଓଭୋଗରେ ନାଗ ମହାଶୟଙ୍କ ଗୃହରେ ସେ ଆତିଥ୍ୟ ଗ୍ରହଣ କରିଥିଲେ । ନାଗମହାଶୟଙ୍କ ପତ୍ନୀ ବିଭିନ୍ନ ସ୍ୱାଦପୂର୍ଣ୍ଣ ବ୍ୟଞ୍ଜନ ପ୍ରସ୍ତୁତ କରି ସ୍ୱାମୀଜୀଙ୍କୁ ଖୁଆଇଥିଲେ । ନାଗମହାଶୟଙ୍କ ପତ୍ନୀ ତାଙ୍କୁ ଏକ ନୂତନ ବସ୍ତ୍ର ଦେଇଥିଲେ ଏବଂ ସ୍ୱାମୀଜୀ ଏହି ବସ୍ତ୍ରକୁ ନିଜର ପଗଡ଼ି ଭାବେ ବ୍ୟବହାର କରିଥିଲେ । ହଁ, ଏଠାରେ ସ୍ମରଣଯୋଗ୍ୟ ଯେ ସ୍ୱାମୀଜୀ ଦେଓଭୋଗ ଆସିବେ ବୋଲି ନାଗମହାଶୟଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ଏତେଦିନ ପରେ ସ୍ୱାମୀଜୀ ଆସିଲେ, କିନ୍ତୁ ନାଗମହାଶୟ ନ ଥିଲେ । ୧୮୯୯ ଡିସେମ୍ବର ମାସରେ ତାଙ୍କର ପରଲୋକ ହୋଇଯାଇଥିଲା । ସ୍ୱାମୀଜୀ ଭକ୍ତିପୂତ ମନରେ ସେହି ଋଷିପ୍ରତିମ ମହାନ୍ ଆତ୍ମାଙ୍କର ପୂଜିତ ଫଟୋ ସମ୍ମୁଖରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କଲେ ।

ଢାକାରେ ଆୟୋଜିତ ଏକ ବିଶାଳ ଜନସଭାରେ ''ମୁଁ କ'ଣ ଶିଖିଛି'' ବୋଲି ଏକ ସୁନ୍ଦର ବକ୍ତୃତା ପ୍ରଦାନ କରି ସେ କହିଥିଲେ ଯେ ଧର୍ମ ବାସ୍ତବରେ କ'ଣ ତାହା ଜାଣିବା ପାଇଁ ସେ

Digitized by srujanika@gmail.com

ବିଭିନ୍ନ ସମ୍ପ୍ରଦାୟ ଭିତରେ ଘୂରି ବୁଲିଛନ୍ତି, ଯେଉଁ ସମ୍ପ୍ରଦାୟ ବିଦେଶୀ ଆଦର୍ଶକୁ ଆପଣେଇ ନେଇଛି, ତାହା ଭିତରେ ସେ ପ୍ରବେଶ କରି ସେମାନଙ୍କର ଗତିବିଧିକୁ ଲକ୍ଷ୍ୟ କରିଛନ୍ତି, ଅନ୍ୟମାନଙ୍କ ଦ୍ୱାର ଦେଶରେ ଦଣ୍ଡାୟମାନ ହୋଇ ସେ ଭିକ୍ଷା ମାଗିଛନ୍ତି, କିନ୍ତୁ ସେତେବେଳେ ଆମର ଜାତୀୟ ଧର୍ମ ଭିତରେ ଏଭଳି ସୌନ୍ଦର୍ଯ୍ୟ ଓ ବିଶାଳତା ଭରି ରହିଛି ବୋଲି ସେ ଜାଣି ନ ଥିଲେ । ବହୁବର୍ଷ ଅତିକ୍ରାନ୍ତ ହେଲାପରେ ସେ ବର୍ତ୍ତମାନ ହୃଦୟଙ୍ଗମ କରିଛନ୍ତି ଯେ ସମଗ୍ର ବିଶ୍ୱରେ ହିନ୍ଦୁଧର୍ମ ହିଁ ସବୁଠାରୁ ଶୁଦ୍ଧ ଓ ସନ୍ତୋଷଜନକ ଧର୍ମ । ତଥାପି ସ୍ୱାମୀଜୀ କ୍ଷୋଭ ପ୍ରକାଶ କରୁଛନ୍ତି ନିଜର ତତ୍‌କାଳୀନ ଭାରତୀୟଙ୍କ ପରମୁଖାପେକ୍ଷୀ ମାନସିକତା ପାଇଁ । ସେମାନେ ନିଜ ଧର୍ମ ପ୍ରତି ଉଦାସୀନ ମନୋଭାବ ପୋଷଣ କରି ପାଶ୍ଚାତ୍ୟ ଦେଶର ଭୌତିକ ଜୀବନ ଓ ଧର୍ମ ପ୍ରତି ଖୁବ୍ ବ୍ୟଗ୍ର । ପାଶ୍ଚାତ୍ୟ ଚିନ୍ତାଧାରା ଓ ଜୀବନ ହିଁ କିପରି ଭାରତ ଭୂମିରେ ଅନୁକୂଳ ନୁହେଁ, ତାହା ସେ ଭଲଭାବେ ଜାଣିଛନ୍ତି । କେବଳ ସେତିକି ନୁହେଁ, ହିନ୍ଦୁଧର୍ମକୁ ସଂସ୍କାରିତ କରିବା ଲାଗି ମୂର୍ତ୍ତିପୂଜା ବିରୋଧରେ ବିଷୋଦ୍ଗାର କରନ୍ତି, ବିଦେଶୀ ଦୃଷ୍ଟିକୋଣକୁ ହିନ୍ଦୁଧର୍ମ ଭିତରେ ପୂରାନ୍ତି, ଆଉ କେତେକ ଦଳ ହିନ୍ଦୁଧର୍ମର ପ୍ରତ୍ୟେକ ପ୍ରଥା, ପରମ୍ପରା ଓ ସଂସ୍କୃତିକୁ ବେଖାତିର କରି ବିଦ୍ୟୁତ ଶକ୍ତି, ଚୁମ୍ବକୀୟ ଶକ୍ତି, ବାୟୁ କମ୍ପନ ଭଳି ଅନେକ ବୈଜ୍ଞାନିକ ଘଟଣା ଓ ଦୃଷ୍ଟାନ୍ତ ଦେଇ ହିନ୍ଦୁଧର୍ମର ଅସାରତାକୁ ବୁଲି ବୁଲି ପ୍ରତିପାଦନ କରନ୍ତି, ସତେକି ହିନ୍ଦୁଧର୍ମ ଏହି ପୃଥିବୀ ପୃଷ୍ଠରେ ସବୁଠାରୁ ହୀନ ଓ ତୁଚ୍ଛ ଧର୍ମ ! ସେମାନଙ୍କର ମତବାଦକୁ ସମାଲୋଚନା କରି ସ୍ୱାମୀଜୀ କହିଥିଲେ, ''କିଏ ଜାଣେ, ଦିନେ ସେମାନେ କହିବେ ଯେ ଈଶ୍ୱର କିଛିନୁହେଁ, କେବଳ ବିଦ୍ୟୁତ ଶକ୍ତିର କମ୍ପନ ମାତ୍ର ।''

ଏଭଳି କଥା କହୁ କହୁ ସ୍ୱାମୀଜୀଙ୍କର ମୁଖମଣ୍ଡଳ ଦୀପ୍ତିମୟ ହୋଇଉଠିଲା । ସେ ସମବେତ ଜନତାଙ୍କୁ ଚାହିଁ କହିଲେ : କେତେକ ପ୍ରାଚୀନ ସମ୍ପ୍ରଦାୟ ଆମ ସମାଜରେ ଅଛନ୍ତି ଯେଉଁମାନେ କୁହନ୍ତି, ମୁଁ କିଛି ଜାଣେନାହିଁ, ମୁଁ ଜାଣିବାକୁ ଖାତିର କରେନାହିଁ କିମ୍ବା ତୁମର ଲୋମହର୍ଷଣକାରୀ ଯୁକ୍ତି ଓ କଳ୍ପନା ମୁଁ ବୁଝିପାରେ ନାହିଁ; ମୁଁ ଈଶ୍ୱରଙ୍କୁ ଚାହେଁ, ମୁଁ ଆତ୍ମାକୁ ଚାହେଁ, ମୁଁ ସେହି ସ୍ଥାନ ଓ କାଳରହିତ ଅବସ୍ଥାକୁ ଯିବାପାଇଁ ଚାହେଁ, ଯେଉଁଠି ନାହିଁ ବିଶ୍ୱବ୍ରହ୍ମାଣ୍ଡ, ନାହିଁ ସୁଖ ଓ ଦୁଃଖ, କେବଳ ଆନନ୍ଦ ହିଁ ଆନନ୍ଦ । ଯେଉଁମାନେ କୁହନ୍ତି ''ମୁଁ ପବିତ୍ର ଗଙ୍ଗାରେ ସ୍ନାନ କଲେ ମୁକ୍ତି ମିଳେ, ଯେଉଁମାନେ କୁହନ୍ତି ''ଜଗତର ଏକଇ ଈଶ୍ୱର ବିରାଜିତ, ଶିବ, ରାମ, ବିଷ୍ଣୁ ପ୍ରଭୃତି ରୂପରେ ତାଙ୍କୁ ଏକମନ ଓ ଏକନିଷ୍ଠ ହୋଇ ପୂଜା ଓ ଉପାସନା କଲେ ମୋକ୍ଷ ମିଳେ'' ସେହି ସବୁ ପ୍ରାଚୀନ ସଂପ୍ରଦାୟ ପାଇଁ ମୁଁ ଗର୍ବିତ ।

ସ୍ୱାମୀଜୀ କୌଣସି ଧର୍ମକୁ ନୀଚ ବୋଲି କହିନାହାନ୍ତି । ଏକ ଉଦ୍ୟାନର ପ୍ରତ୍ୟେକ ଧର୍ମ ଗୋଟିଏ ଗୋଟିଏ ପୁଷ୍ପପାଦକ ହୋଇଥିବାରୁ ଉଦ୍ୟାନର ଶୋଭାବର୍ଦ୍ଧନ ହୋଇଥାଏ । ବିଶ୍ୱ ବି ବହୁ ଧର୍ମକୁ ନେଇ ଶୋଭାମଣ୍ଡିତ ଓ ସୌନ୍ଦର୍ଯ୍ୟମୟ, କିନ୍ତୁ ଭାରତୀୟମାନେ ନିଜ ହିନ୍ଦୁଧର୍ମର ମହତ୍ତ୍ୱକୁ ବୁଝି ନ ପାରି ନାଶାକୁଞ୍ଚନ କରୁଥିବାର ଦେଖି ସ୍ୱାମୀଜୀଙ୍କର ହୃଦୟ ଅଗ୍ନିବର୍ଷୀ ହୋଇ

Digitized by srujanika@gmail.com

ଉଠିଥିଲା । ହିନ୍ଦୁଧର୍ମରେ ନିହିତ ପ୍ରକୃତ ରହସ୍ୟ ଯେ କେତେ ସୁନ୍ଦର ଓ ଆଧ୍ୟାତ୍ମିକତାରେ ପରିପୂର୍ଣ୍ଣ, ତାହା ବୁଝାଇ ଦେଇଥିଲେ ଢାକାର ଅନ୍ୟ ଏକ ବକ୍ତୃତାରେ । ବିଷୟବସ୍ତୁଟି ଥିଲା "ଯେଉଁ ଧର୍ମରେ ଆମର ଜନ୍ମ ।" ଏହି ଶେଷ ବକ୍ତୃତାଟି ପ୍ରତ୍ୟେକ ହିନ୍ଦୁ ପାଇଁ ପଥପ୍ରଦର୍ଶକ ହୋଇ ନିରନ୍ତର ରହିବ, କହିଲେ ଅତ୍ୟୁକ୍ତି ହେବନାହିଁ । ଆଜିର ଭାରତବର୍ଷ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ପଥରେ ଗର୍ବର ସହିତ ଅଗ୍ରସର ହେଉଥିବାବେଳେ ସ୍ୱାମୀଜୀଙ୍କର ହିନ୍ଦୁଧର୍ମର ପରିଭାଷାଟି ନିଶ୍ଚିତଭାବେ ଭାରତୀୟଙ୍କର ସହଜରେ ବୋଧଗମ୍ୟ ହେବ ଏବଂ ଗର୍ବିତ କଣ୍ଠରେ ବିନା ସଂକୋଚରେ ବିଶ୍ୱ ସମ୍ମୁଖରେ କହିପାରିବେ 'ଆମେ ହିନ୍ଦୁ' ।

- ୨ -

*ମୋର ଦୃଢ଼ ବିଶ୍ୱାସ ରହିଛି ଯେ ଆମର ପ୍ରାଚୀନ ଋଷିଙ୍କଠାରୁ ଆମେ ମହତ୍ତର ଋଷି ହେବା । ସେମାନଙ୍କର ଗୌରବମୟ ଜୀବନ ଚିନ୍ତାକରି ମୁଁ ଗର୍ବିତ, ବର୍ତ୍ତମାନର ଅଧୋଃଗତି ଦେଖି ମୁଁ ଆଦୌ ନିରାଶ ହୁଏନାହିଁ, ବରଂ ଭବିଷ୍ୟତର ରୂପରେଖ ମୁଁ ଦେଖିପାରୁଛି ଯାହା ଅତ୍ୟନ୍ତ ଉଜ୍ଜ୍ୱଳମୟ ହେବ । କାହିଁକି ? କାରଣ ବୀଜର ରୂପାନ୍ତର ଘଟେ, ବୀଜର ସଂପୂର୍ଣ୍ଣ ବିଲୁପ୍ତିକରଣରେ ବୃକ୍ଷ ଜନ୍ମ ନିଏ । ଠିକ୍ ସେହିଭଳି, ଅଧଃପତନ ଭିତରେ ସାମୟିକ ଭାବେ ଲୁଚିରହିଛି ଆମ ଧର୍ମର ଭବିଷ୍ୟତର ମହାନତା, ଯାହା ଏହି ଅଧଃପତନ ବକ୍ଷବିଦାରି ଆମର ଧର୍ମ ପୂର୍ବାପେକ୍ଷା ଶକ୍ତିଶାଳୀ ଓ ମହିମାମୟ ହୋଇ ଆବିର୍ଭୂତ ହେବ ।*

ଢାକାର ମୁକ୍ତ ଆକାଶ ତଳେ ସ୍ୱାମୀଜୀ ଅଗଣିତ ଜନସମୁଦ୍ର ସମ୍ମୁଖରେ ୧୯୦୧ ମାର୍ଚ୍ଚ ୩୧ ତାରିଖରେ ଯେଉଁ ଚିନ୍ତା ଉଦ୍ରେକକାରୀ ବକ୍ତୃତା ପ୍ରଦାନ କରିଥିଲେ, ତାହା ଏବେ ବି ପ୍ରାସଙ୍ଗିକତା ହରାଇ ନାହିଁ ବରଂ ଆମପାଇଁ ଏକ ପ୍ରେରଣାର ଉତ୍ସଭାବେ ଭାସ୍ୱର ହୋଇ ରହିଛି - "ଅତୀତରେ ଆମ ଦେଶ ଆଧ୍ୟାତ୍ମିକ ଚିନ୍ତାଧାରାରେ ଅଗ୍ରଗତି କରିଥିଲା । ସେହି ପ୍ରାଚୀନ ଇତିହାସର ସ୍ୱର୍ଣ୍ଣ ପୃଷ୍ଠା ଉପରେ ଅମେ ଦୃଷ୍ଟିପାତ କରିବା ଚାଲ । କିନ୍ତୁ ଏଥିରେ ବିପଦ ରହିଛି, କାରଣ ପ୍ରାଚୀନ ଗୌରବରେ ବିମୋହିତ ହୋଇ ଆମେ ସନ୍ତୁଷ୍ଟ ରହିଗଲେ ବର୍ତ୍ତମାନର କାର୍ଯ୍ୟ ପ୍ରତି ଆମର ସ୍ପୃହା ରହିବ ନାହିଁ । ସେଥିପ୍ରତି ଆମେ ସଜାଗ ରହିବା ଉଚିତ । ପ୍ରାଚୀନ କାଳରେ ଅବଶ୍ୟ ବହୁ ଋଷି ମୁନି ସତ୍ୟକୁ ଉପଲବ୍ଧି କରିଥିଲେ, ବର୍ତ୍ତମାନ ଆମେ ଯଦି ସେମାନଙ୍କର ଦିବ୍ୟଦୃଷ୍ଟିରୁ କିଛି ଉପକାର ପାଇବା ପାଇଁ ଚାହାଁନ୍ତି, ତେବେ ସେମାନଙ୍କ ଭଳି ଆମକୁ ଋଷି ହେବାକୁ ପଡ଼ିବ । ଆହାଃ, କେବଳ ସେତିକି ନୁହେଁ, ମୋର ଦୃଢ଼ ବିଶ୍ୱାସ ରହିଛି ଯେ ଆମର ପ୍ରାଚୀନ ଋଷିଙ୍କଠାରୁ ଆମେ ମହତ୍ତର ଋଷି ହେବା । ସେମାନଙ୍କର ଗୌରବମୟ ଜୀବନ ଚିନ୍ତାକରି

Digitized by srujanika@gmail.com

ମୁଁ ଗର୍ବିତ, ବର୍ତ୍ତମାନର ଅଧୋଃଗତି ଦେଖି ମୁଁ ଆଦୌ ନିରାଶ ହୁଏନାହିଁ, ବରଂ ଭବିଷ୍ୟତର ରୂପରେଖ ମୁଁ ଦେଖିପାରୁଛି ଯାହା ଅତ୍ୟନ୍ତ ଉଜ୍ଜ୍ୱଳମୟ ହେବ । କାହିଁକି ? କାରଣ ବୀଜର ରୂପାନ୍ତର ଘଟେ, ବୀଜର ସଂପୂର୍ଣ୍ଣ ବିଲୁପ୍ତିକରଣରେ ବୃକ୍ଷ ଜନ୍ମ ନିଏ । ଠିକ୍ ସେହିଭଳି, ଅଧଃପତନ ଭିତରେ ସାମୟିକ ଭାବେ ଲୁଚିରହିଛି ଆମ ଧର୍ମର ଭବିଷ୍ୟତର ମହାନତା, ଯାହା ଏହି ଅଧଃପତନ ବକ୍ଷବିଦାରି ଆମର ଧର୍ମ ପୂର୍ବାପେକ୍ଷା ଶକ୍ତିଶାଳୀ ଓ ମହିମାମୟ ହୋଇ ଆବିର୍ଭୂତ ହେବ ।

ଆମେ ଯେଉଁ ଧର୍ମ ପୃଷ୍ଠଭୂମିରେ ଜନ୍ମଲାଭ କରିଛନ୍ତି, ଆସନ୍ତୁ ସେହି ଅସାଧାରଣ ଆଧାରଭୂମି ଉପରେ ଆଲୋଚନା କରିବା । ଆମ ଧର୍ମର ବିଭିନ୍ନ ସମ୍ପ୍ରଦାୟ ଭିତରେ ବହୁ ପ୍ରଭେଦ ରହିଥିବାର ଦୃଶ୍ୟ ପ୍ରଥମେ ଆମର ଦୃଷ୍ଟିଗୋଚର ହୁଏ । ସେମାନଙ୍କ ଭିତରୁ କେତେକ ଅଦ୍ୱିତମାର୍ଗୀ, କେତେକ ବିଶିଷ୍ଟା ଦ୍ୱୈତମାର୍ଗୀ ଏବଂ ଅନ୍ୟମାନେ ଦ୍ୱୈତମାର୍ଗୀ । କେହି ଈଶ୍ୱରଙ୍କ ଅବତାରରେ ବିଶ୍ୱାସ କରେ, କେହି ରୂପ ବା ମୂର୍ତ୍ତିର ପୂଜା କରେ ଏବଂ ଅନ୍ୟମାନେ ନିରାକାର ତତ୍ତ୍ୱର ବିଶ୍ୱାସୀ । ପ୍ରଥା ଓ ପରମ୍ପରା ମଧ ସେହି ଭଳି ଅଲଗା ଅଲଗା । ମୁସଲମାନ ଓ ଖ୍ରୀଷ୍ଟିଆନ୍‌ଙ୍କୁ ଛାଠ ବିବାହ କଲେ, ସେମାନଙ୍କର ଜାତି ଯାଏନାହିଁ । ବିନା ବାଧାରେ ସେମାନେ ଯେକୌଣସି ହିନ୍ଦୁ ମନ୍ଦିରକୁ ପ୍ରବେଶ କରନ୍ତି । ପଞ୍ଜାବର ବହୁ ଗାଁରେ ଯିଏ ଘୁଷୁରି ମାଂସ ଖାଏନାହିଁ, ସେ କ୍ୱଚିତ୍ ହିନ୍ଦୁଭାବେ ପରିଗଣିତ ହୁଏ । ନେପାଳରେ ଜଣେ ବ୍ରାହ୍ମଣ ଚାରିବର୍ଣ୍ଣ ଭିତରୁ ଯାହାକୁ ସେ ବିବାହ କରିପାରେ; କିନ୍ତୁ ବଙ୍ଗଳାରେ ଜଣେ ବ୍ରାହ୍ମଣ ଅନ୍ୟ ଜାତିରେ ବିବାହ କରିବା ତ ଦୂରର କଥା, ନିଜ ବ୍ରାହ୍ମଣ ସଂପ୍ରଦାୟର ଉପଜାତି ଭିତରୁ ବିବାହ କରିପାରିବ ନାହିଁ । ଏଭଳି ଅନେକ ପ୍ରଥା ଓ ପରମ୍ପରା ଭରିରହିଛି ଆମ ଧର୍ମରେ । ଆମ ହିନ୍ଦୁଧର୍ମରେ ବହୁ ପାର୍ଥକ୍ୟ ସତ୍ତ୍ୱେ, କୌଣସି ସମ୍ପ୍ରଦାୟ ଯେପରି ଗୋମାଂସ ଭକ୍ଷଣ କରନ୍ତି ନାହିଁ, ସେପରି ଅନେକ ସାର୍ବଜନୀନ ସାମଞ୍ଜସ୍ୟ ହିନ୍ଦୁଧର୍ମର ସଂପ୍ରଦାୟ ଭିତରେ ଭରି ରହିଛି ।

ପ୍ରଥମତଃ, ଯେଉଁ ଧର୍ମଗୁଡ଼ିକ ନିଜର ଗୋଟିଏ କିମ୍ୱା ବହୁ ଧର୍ମଶାସ୍ତ୍ର ଉପରେ ଆଧାରିତ, ସେଗୁଡ଼ିକ ବହୁ ନିର୍ଯ୍ୟାତନା ଓ ଦମନର ଶିକାର ହୋଇ ବି ଆଜିପର୍ଯ୍ୟନ୍ତ ତିଷ୍ଠି ରହିଛନ୍ତି ଓ ଅଗ୍ରସର ହେଉଛନ୍ତି । ଗ୍ରୀକ୍ ଧର୍ମ ନିଜର ସମସ୍ତ ପ୍ରକାର ସୌନ୍ଦର୍ଯ୍ୟ ଓ ସଦାଚାର ସତ୍ତ୍ୱେ, ବିସ୍ମୃତି ଗର୍ଭରେ ଲୀନ ହୋଇଗଲା, କାରଣ ଏହି ଧର୍ମକୁ ସମର୍ଥନ କରିବା ପାଇଁ ସେମାନଙ୍କ ପାଖରେ କୌଣସି ଧର୍ମଶାସ୍ତ୍ର ନ ଥିଲା । ଇହୁଦିମାନଙ୍କ ନିକଟରେ ନିଜର ଧର୍ମଶାସ୍ତ୍ର ''ଓଲ୍ଡ ଟେଷ୍ଟାମେଣ୍ଟ'' ଥିବାରୁ, ତାହା ଅଜି ପର୍ଯ୍ୟନ୍ତ ନିଷ୍ପ୍ରଭ ହୋଇପାରି ନାହିଁ । ଠିକ୍ ସେହିଭଳି ହିନ୍ଦୁଧର୍ମ ପ୍ରାଚୀନ ବେଦ ଉପରେ ଆଧାରିତ ବୋଲି ବିଶ୍ୱର ସର୍ବପୁରାତନ ଧର୍ମର ଗୌରବ ହାସଲ କରି ଆଜି ପର୍ଯ୍ୟନ୍ତ ତିଷ୍ଠି ରହିପାରିଛି । କର୍ମକାଣ୍ଡ ଓ ଜ୍ଞାନକାଣ୍ଡ ଭଳି ଦୁଇ ଭାଗରେ ବେଦ ବିଭକ୍ତ । ଭଲ ପାଇଁ ହେଉ କିମ୍ୱା ମନ୍ଦ ପାଇଁ ହେଉ, କର୍ମକାଣ୍ଡ ଭାରତବର୍ଷରେ ବର୍ତ୍ତମାନ ଅବ୍ୟହୃତ ହୋଇପଡ଼ିଛି । ଅବଶ୍ୟ ଡେକାନ୍ ଅଞ୍ଚଳରେ କେତେକ ବ୍ରାହ୍ମଣ ବର୍ତ୍ତମାନ ସୁଦ୍ଧା ଯଜ୍ଞକର୍ମ ସମ୍ପାଦନ କରି ଯଜ୍ଞକୁଣ୍ଡ ସମ୍ମୁଖରେ ଛାଗବଳି ଦେଉଛନ୍ତି । ବିବାହ, ବ୍ରତ ଓ ଶ୍ରାଦ୍ଧ ଇତ୍ୟାଦି ମନ୍ତ୍ରୋଚାରଣ କ୍ଷେତ୍ରରେ ମଧ ବର୍ତ୍ତମାନ କାଁ

Digitized by srujanika@gmail.com

ଭାଁ କ୍ରିୟାକାଣ୍ଡର ଚିହ୍ନ ଦେଖିବାକୁ ମିଳୁଛି । କିନ୍ତୁ କର୍ମକାଣ୍ଡ ଆଉ ଭାରତରେ ତା'ର ମୂଳସ୍ଥିତିକୁ ଫେରିଆସି ପାରିବ ନାହିଁ । କୁମାରିଲ ଭଟ୍ଟ ଏକଦା ଏହାର ପୁନଃପ୍ରଚଳନ ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ସଫଳ ହେଲେ ନାହିଁ ।

- ୩ -

*ଏହି ଋଷିମାନେ କିଏ ? ବାତ୍ସାୟନ କୁହନ୍ତି - ''ଯେଉଁ ବ୍ୟକ୍ତି ଉପଯୁକ୍ତ ସତ୍‌ପଥ ମାଧ୍ୟମରେ ଧର୍ମର ପ୍ରତ୍ୟକ୍ଷ ଉପଲବ୍ଧି କରିଥାନ୍ତି, ସେ ହିଁ କେବଳ ଜଣେ ଋଷି ହୋଇପାରିବେ, ଏପରିକି ଯଦି ସେ ଜନ୍ମରୁ ଜଣେ ମ୍ଳେଚ୍ଛ ହୋଇଥାନ୍ତି, ସେଥିରେ କିଛି ଯାଆସେ ନାହିଁ ।''*

ବେଦର ଜ୍ଞାନକାଣ୍ଡ ଉପନିଷଦକୁ ନେଇ ଗଠିତ । ଉପନିଷଦକୁ ବେଦାନ୍ତ କୁହାଯାଏ, ଶ୍ରୁତିର ଚରମ ପରିଣତି । ଯେଉଁଠି ଆଚାର୍ଯ୍ୟଗଣ କୌଣସି ବାକ୍ୟ ଶ୍ରୁତିରୁ ଉଚ୍ଚାରଣ କରନ୍ତି, ଜାଣିବ ଯେ ଏହା ସାଧାରଣତଃ ଉପନିଷଦରୁ ଆସିଛି । ବର୍ତ୍ତମାନ ବେଦାନ୍ତ ହିଁ ହିନ୍ଦୁମାନଙ୍କର ଧର୍ମ । ଭାରତର କୌଣସି ସମ୍ପ୍ରଦାୟ ଯଦି ଲୋକଙ୍କ ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରିବାକୁ ଆଗ୍ରହୀ, ତେବେ ସେମାନେ ବେଦାନ୍ତର ଜ୍ଞାନକୁ ଆଧାର କରିବା ଶ୍ରେୟସ୍କର ହେବ । ସେମାନେ ଦ୍ୱୈତମାର୍ଗୀ କିମ୍ବା ଅଦ୍ୱୈତ ମାର୍ଗୀ ହୁଅନ୍ତୁ ପଛକେ, ସେମାନଙ୍କୁ ଏହା କରିବାକୁ ହେବ । ଏପରିକି ବୈଷ୍ଣବମାନଙ୍କୁ ନିଜ ସିଦ୍ଧାନ୍ତର ସତ୍ୟକୁ ପ୍ରମାଣିତ କରିବା ପାଇଁ ଗୋପାଳତାପିନି ଉପନିଷଦର ଆଶ୍ରୟ ନେବାକୁ ପଡ଼ିବ । ଯଦି କୌଣସି ଏକ ସମ୍ପ୍ରଦାୟ ଶ୍ରୁତିରେ ନିଜର ମତବାଦ ସପକ୍ଷରେ କୌଣସି ଜିନିଷ ପାଏନାହିଁ, ତେବେ ସେମାନଙ୍କୁ ଏକ ନୂତନ ଉପନିଷଦ ସୃଷ୍ଟି କରିବାକୁ ହେବ ଯାହା ପ୍ରାଚୀନ ଉପନିଷଦର ଏକ ସ୍ରୋତ ଭାବେ ରଚିତ ହେବ । ଅତୀତରେ ଏଭଳି ଅନେକ ରଚିତ ହୋଇଛି ।

ବର୍ତ୍ତମାନ ବେଦ ଉପରେ ଦୃଷ୍ଟିପାତ କରାଯାଉ, ପ୍ରାଚୀନକାଳରେ କୌଣସି ଏକ ନିର୍ଦ୍ଧିଷ୍ଟ ସମୟରେ ବେଦ ସାଧାରଣ ପୁସ୍ତକ ଭାବେ କୌଣସି ବ୍ୟକ୍ତି ଦ୍ୱାରା ରଚିତ ବା ସଂକଳିତ ହୋଇ ନ ଥିଲା । ସେମାନଙ୍କର ଧାରଣା ଯେ ଏହା ଏକ ଅସୀମ ଦିବ୍ୟ ଅଭିଜ୍ଞତା ବିଚାରଶୀଳତାର ଆଧାରିତ ଜ୍ଞାନ, କେତେବେଳେ ବ୍ୟକ୍ତ ଅନ୍ୟ ସମୟରେ ଅବ୍ୟକ୍ତ ହୋଇ ରହିଥାଏ । ବ୍ୟାଖ୍ୟାକାରୀ ସାୟନାଚାର୍ଯ୍ୟ ତାଙ୍କର ବ୍ୟାଖ୍ୟାରେ କହିଛନ୍ତି, ''ଯୋ ବେଦେଭ୍ୟୋଃଖିଳଂ ଜଗତ୍ ନିର୍ମମେ'' - ଅର୍ଥାତ୍ ବେଦ ଜ୍ଞାନରୁ ସେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ରଚନା କରିଛନ୍ତି । ବେଦର ସଂକଳନକାରୀଙ୍କୁ କସ୍ମିନକାଳେ କେହି ଦେଖି ନାହାନ୍ତି ଏବଂ ଏହାକୁ କେହି ଜଣେ ସଂକଳନ କରିଛନ୍ତି ବୋଲି କଳ୍ପନା କରିବା ଅସମ୍ଭବ । ଏହି ଶାଶ୍ୱତ ନିୟମ କିମ୍ବା ମନ୍ତ୍ରର ଦ୍ରଷ୍ଟା କେବଳ ଋଷିଗଣ, ସେମାନେ କେବଳ ଏହି ଅନନ୍ତ ଜ୍ଞାନର ଭଣ୍ଡାର ବେଦକୁ ମୁହାଁମୁହିଁ ଦର୍ଶନ କରିଥିଲେ, ଯାହା ଅନାଦି କାଳରୁ ବିରାଜିତ ।

Digitized by srujanika@gmail.com

ଏହି ଋଷିମାନେ କିଏ ? ବାତ୍ସାୟନ କୁହନ୍ତି - "ଯେଉଁ ବ୍ୟକ୍ତି ଉପଯୁକ୍ତ ସତ୍‌ପଥ ମାଧ୍ୟମରେ ଧର୍ମର ପ୍ରତ୍ୟକ୍ଷ ଉପଲବ୍ଧି କରିଥାନ୍ତି, ସେ ହିଁ କେବଳ ଜଣେ ଋଷି ହୋଇପାରିବେ, ଏପରିକି ଯଦି ସେ ଜନ୍ମରୁ ଜଣେ ମ୍ଳେଛ ହୋଇଥାନ୍ତି, ସେଥିରେ କିଛି ଯାଆସେ ନାହିଁ।" ସୁତରାଂ ପ୍ରାଚୀନ କାଳରେ, ବଶିଷ୍ଠ ଏକ ଅବୈଧ ମିଳନରୁ ଜନ୍ମିତ ସନ୍ତାନ, ବ୍ୟାସ କୈବର୍ତ୍ତର ସନ୍ତାନ, ପିତା ପରିଚୟ ହୀନ ଭୃତ୍ୟା ଗର୍ଭରୁ ଜାତ ନାରଦ ଏବଂ ଏଭଳି ଅନେକ ବ୍ୟକ୍ତି ଋଷି ହେବାର ସୌଭାଗ୍ୟ ଅର୍ଜନ କରିପାରିଥିଲେ । ସତ କହିବାକୁ ଗଲେ ସତ୍ୟ ଉପଲବ୍ଧି କ୍ଷେତ୍ରରେ ସବୁ ଜାତିର ଲୋକଙ୍କର ସମାନ ଅଧିକାର ରହିଛି, ସେମାନଙ୍କ ଭିତରେ କୌଣସି ପ୍ରକାର ପ୍ରଭେଦ ସୃଷ୍ଟିକରିବା ଉଚିତ ନୁହେଁ ଯାହା ଆବହମାନ କାଳରୁ ଆଜି ପର୍ଯ୍ୟନ୍ତ ଚଳି ଆସୁଅଛି । ଯେଉଁ ବ୍ୟକ୍ତିମାନଙ୍କର ନାମ ଏଠାରେ ସୂଚୀତ ହେଲା, ସେମାନେ ଯଦି ଋଷି ହୋଇପାରିଲେ ତେବେ ଆମେ, ଆଜିର କୂଳୀନ ବ୍ରାହ୍ମଣଗଣ ତୁମେମାନେ ସେହି ଋଷିମାନଙ୍କ ଅପେକ୍ଷା କିପରି ମହତ୍ତର ହୋଇପାରିବ ! ସେହି ଋଷିତ୍ୱ ପାଇଁ ପ୍ରୟାସ କର, ଯେପର୍ଯ୍ୟନ୍ତ ତାହା ଲାଭ କରିନାହଁ, ସେପର୍ଯ୍ୟନ୍ତ ତୁମେ ବିରାମ କରନାହିଁ, ଦେଖିବ ସମଗ୍ର ବିଶ୍ୱ ତୁମ ପାଦତଳେ ମସ୍ତକ ଅବନତ କରିବ ! ଋଷି ହୁଅ - ତାହା ହିଁ ଶକ୍ତିର ରହସ୍ୟ ।

ଏହି ବେଦ ହିଁ ଆମର ସର୍ବୋଚ୍ଚ କର୍ତ୍ତା ଏବଂ ଏହା ପ୍ରତି ପ୍ରତ୍ୟେକଙ୍କର ଅଧିକାର ରହିଛି ।

"ଯଥେମାଂ ବାଚଂ କଲ୍ୟାଣୀମାବଦାନି ଜନେଭ୍ୟଃ
ବ୍ରହ୍ମାରାଜନ୍ୟାଭ୍ୟାଂ ଶୂଦ୍ରାୟ ଚାର୍ଯ୍ୟାୟ ଚ ଶ୍ୱାୟ ଚାରଣାୟ ।"

ଏହା ହିଁ ଶୁକ୍ଳ ଯଜୁର୍ବେଦର ମନ୍ତ୍ର (୨୬.୨) । ବେଦରେ ସମସ୍ତ ମାନବ ଜାତିର ଅଧିକାର ନାହିଁ ବୋଲି ତୁମେ ଦେଖାଇପାରିବ ? ପୁରାଣ କହେ ଯେ କେତେକ ଜାତିର ଅଧିକାର ଅମକେଇ ଉପରେ ଅଛି, ବେଦ ଅମକେଇ ସମୟରେ ରଚିତ କିମ୍ବା କୌଣସି ଏକ ଜାତିର ବେଦ ଅଧ୍ୟୟନ କରିବାରେ ଅଧିକାର ନାହିଁ, କିମ୍ବା ବେଦର ଏହି ଅଂଶ ସତ୍ୟଯୁଗ ଓ ଆଉ ଏକ ଅଂଶ କଳିଯୁଗ ପାଇଁ ଉଦ୍ଦିଷ୍ଟ । କିନ୍ତୁ ସ୍ମରଣ ରଖ, ବେଦ ଏଭଳି କଥା କହିନାହିଁ, କେବଳ ତୁମର ପୁରାଣ ତାହା କହିଛି । ଜଣେ ଭୃତ୍ୟ କ'ଣ ପ୍ରଭୁଙ୍କୁ ନିର୍ଦ୍ଦେଶ ଦେଇପାରିବ ? ସ୍ମୃତି, ପୁରାଣ, ତନ୍ତ୍ର - ଯଦି ଏହିସବୁ ଶାସ୍ତ୍ର ବେଦ ସହ ଏକମତ ହୋଇଥିବେ, ତେବେ ସେସବୁ ଗ୍ରହଣଯୋଗ୍ୟ । ଯଦି ବେଦର ବିପରୀତ ହେବେ, ସେସବୁକୁ ତୁଚ୍ଛ ଅବିଶ୍ୱାସନୀୟ ଭାବେ ବର୍ଜନ କରିବାକୁ ହେବ । କିନ୍ତୁ ବର୍ତ୍ତମାନ ଆମେ କ'ଣ କରିଛନ୍ତି ? ବେଦର ଆସନରେ ପୁରାଣକୁ ଥୋଇଛନ୍ତି ! ବଙ୍ଗଳାରୁ ବେଦ ଅଧ୍ୟୟନ ପ୍ରାୟତଃ ଲୋପ ପାଇଲେଣି । ଯେତେବେଳେ ଯୁବକ, ଯୁବତୀ, ବୃଦ୍ଧ, ବୃଦ୍ଧା ବେଦର ଉପାସନା ଆରମ୍ଭ କରିବେ, ସେତେବେଳେ ପ୍ରତ୍ୟେକ ଘରେ ଶାଳଗ୍ରାମ, କୂଳ ଦେବତାଙ୍କ ସହିତ ବେଦ ପୂଜିତ ହେବ, ସେହି ଶୁଭଦିନ ଶୀଘ୍ର ଆସିବ ବୋଲି ମୋର ଇଚ୍ଛା ।

Digitized by srujanika@gmail.com

- ୪ -

*ଏଠାରେ ତୁମମାନଙ୍କୁ ସ୍ମରଣ କରାଇ ଦେବାକୁ ଚାହେଁ ଯେ ସ୍ମରଣାତୀତ କାଳରୁ ହିନ୍ଦୁମାନେ ଆତ୍ମାଠାରୁ ମାନସ ଅର୍ଥାତ୍ ମନରୁ ପୃଥକ ବୋଲି ଜାଣିଥିଲେ । କିନ୍ତୁ ପାଶ୍ଚାତ୍ୟବାସୀ ମନଠାରୁ ଅଧିକ ଊର୍ଦ୍ଧ୍ୱକୁ ଯାଇପାରି ନ ଥିଲେ । ସେମାନେ କେବଳ ଜାଣନ୍ତି ଯେ ଜଗତ କେବଳ ସୁଖରେ ପରିପୂର୍ଣ୍ଣ, ସୁତରାଂ ସେମାନେ ଅକଣ୍ଠ ସୁଖ ଏଠାରେ ଉପଭୋଗ କରିପାରିବେ, କିନ୍ତୁ ପ୍ରାଚ୍ୟବାସୀ ବିଶ୍ୱାସକୁ ନେଇ ଜନ୍ମ । ସେମାନେ ଜାଣନ୍ତି ଯେ ଏହି ସଂସାର ସଦା ପରିବର୍ତ୍ତନଶୀଳ ଏବଂ ଦୁଃଖରେ ପରିପୂର୍ଣ୍ଣ, ସୁତରାଂ ଏହା କିଛି ନୁହେଁ, କେବଳ ମାୟା - ଏହାର କ୍ଷଣଭଙ୍ଗୁର ଆନନ୍ଦ ଓ ଧନସମ୍ପତ୍ତି ସହ ଆତ୍ମାର କୌଣସି ସମ୍ପର୍କ ନାହିଁ । ଏହି କାରଣବଶତଃ ପାଶ୍ଚାତ୍ୟ ସର୍ବଦା ସଂଘଠିତ କର୍ମରେ ଉତ୍ସାହୀ, ସେହିଭଳି ଅନ୍ତର୍ଜଗତରେ ରହସ୍ୟ ଉଦ୍‌ଘାଟନ ପାଇଁ ପ୍ରାଚ୍ୟବାସୀ ନିରନ୍ତର ଚେଷ୍ଟିତ ।*

ବେଦ ସମ୍ବନ୍ଧରେ ପାଶ୍ଚାତ୍ୟ ବିଦ୍ୱାନଗଣ ଯେଉଁ ତତ୍ତ୍ୱ ପ୍ରଚାର କରିଛନ୍ତି, ସେଥିରେ ମୋର ଆଦୌ ବିଶ୍ୱାସ ନାହିଁ । ସେମାନେ ବେଦର କାଳ ଆଜି ଗୋଟିଏ ନିର୍ଦ୍ଦିଷ୍ଟ ସମୟ ପାଇଁ ନିର୍ଣ୍ଣୟ କରନ୍ତି ଏବଂ ଆସନ୍ତାକାଲି ପୁନଶ୍ଚ ଏହାକୁ ଖଣ୍ଡନ କରି ଆହୁରି ହଜାରେ ବର୍ଷ ଆଗକୁ ନେଇଯା'ନ୍ତି, ଏହିଭଳି ଭାବରେ ସେମାନେ ବାରମ୍ବାର ବେଦର କାଳ ନିର୍ଣ୍ଣୟ କରନ୍ତି । ସୁତରାଂ ପୁରାଣ ସମ୍ବନ୍ଧରେ ତୁମମାନଙ୍କୁ ମୁଁ କହିଛି ଯେ ପୁରାଣ ଯଦି ବେଦ ସହ ଏକମତ ଅଥବା ମେଳ ଖାଉଥାଏ, ତେବେ ତାହା ଗ୍ରହଣୀୟ, ନଚେତ ନାହିଁ । ଆମେ ପୁରାଣରେ ଅନେକ ଜିନିଷ ପାଆନ୍ତି ଯାହା ବେଦ ସହିତ ମେଳ ଖାଏନାହିଁ । ଉଦାହରଣ ସ୍ୱରୂପ, ପୁରାଣରେ ଲେଖାହୋଇଛି ଯେ ଜଣେ ବ୍ୟକ୍ତି ଦଶହଜାର ବର୍ଷ ବଞ୍ଚିଥିଲେ, ଅନ୍ୟଜଣେ କୋଡ଼ିଏ ହଜାର ବର୍ଷ ବଞ୍ଚିଥିଲେ, କିନ୍ତୁ ଆମେ ବେଦରେ ଦେଖିବାକୁ ପାଉ : "ଶତାୟୁର୍ବୈ ପୁରୁଷ" - ଅର୍ଥାତ୍ ମନୁଷ୍ୟ ବାସ୍ତବରେ ଏକଶହ ବର୍ଷ ଜୀବନଧାରଣ କରେ । ଏହି କ୍ଷେତ୍ରରେ ଆମେ କାହାକୁ ଗ୍ରହଣ କରିବା ? ନିଶ୍ଚିତଭାବରେ ବେଦ । ଏତାଦୃଶ ମନ୍ତବ୍ୟ ସତ୍ତ୍ୱେ ମୁଁ ପୁରାଣକୁ ନିନ୍ଦା କରେନାହିଁ । ଯୋଗ, ଭକ୍ତି, ଜ୍ଞାନ ଓ କର୍ମ ଭଳି ବିଜ୍ଞତାର ବାକ୍ୟ ସମେତ ଅନେକ ସୁନ୍ଦର ଓ ଜ୍ଞାନାଲୋକିତ ଶିକ୍ଷା ପୁରାଣଗୁଡ଼ିକ ଧାରଣ କରିଛି, ସେଗୁଡ଼ିକୁ ଅବଶ୍ୟ ଆମେ ଗ୍ରହଣ କରିବା ଉଚିତ ।

ତା'ପରେ ରହିଛି ତନ୍ତ୍ର । ତନ୍ତ୍ର ଶବ୍ଦର ପ୍ରକୃତ ଅର୍ଥ ହିଁ ଶାସ୍ତ୍ର, ଉଦାହରଣ ସ୍ୱରୂପ, କପିଳ ତନ୍ତ୍ର । କିନ୍ତୁ ତନ୍ତ୍ର ଶବ୍ଦ ସାଧାରଣତଃ ସୀମିତ କ୍ଷେତ୍ରରେ ବ୍ୟବହୃତ । ଯେଉଁ ରାଜାଗଣ ବୌଦ୍ଧଧର୍ମ ଗ୍ରହଣ କଲେ ଏବଂ ଅହିଂସା ଧର୍ମ ପ୍ରଚାର ଓ ପ୍ରସାର କଲେ, ବୈଦିକ ଯାଗ-ଯଜ୍ଞର ଉପାସନା ଏକ ଅତୀତର ଘଟଣା ହୋଇଗଲା, ସେମାନେ ରାଜାଙ୍କୁ ଭୟକରି ଯଜ୍ଞରେ ପଶୁବଳି ପ୍ରଦାନ

Digitized by srujanika@gmail.com

କରିପାରିଲେ ନାହିଁ । କିନ୍ତୁ ପରବର୍ତ୍ତୀ କାଳରେ ବୌଦ୍ଧଧର୍ମୀଙ୍କ ମଧ୍ୟରେ, ଯେଉଁମାନେ ହିନ୍ଦୁଧର୍ମରୁ ବୌଦ୍ଧଧର୍ମକୁ ଧର୍ମାନ୍ତରିତ ହୋଇଥିଲେ, ସେମାନେ ଏହିସବୁ ଯାଗ-ଯଜ୍ଞର ଉତ୍ତମ ଅଂଶକୁ ଗ୍ରହଣ କଲେ ଏବଂ ଗୋପନରେ ଅଭ୍ୟାସ କରିବାକୁ ଲାଗିଲେ । ସେମାନଙ୍କଠାରୁ ତନ୍ତ୍ର ମୁଣ୍ଡ ଟେକିଲା । ବାମାଚାର ପ୍ରଭୃତି ଭଳି କେତେକ ଘୃଣ୍ୟ ଜିନିଷକୁ ଛାଡ଼ିଦେଲେ, ଲୋକେ ଯାହା ଭାବନ୍ତି, ସେପରି ତନ୍ତ୍ର ଅତ୍ୟନ୍ତ ମନ୍ଦ ନୁହେଁ । ତନ୍ତ୍ରରେ ଅନେକ ଉଚ୍ଚ ସୂକ୍ଷ୍ମ ବୈଦାନ୍ତିକ ଚିନ୍ତାଧାରା ରହିଛି । ବାସ୍ତବରେ ବେଦର ବ୍ରାହ୍ମଣଭାଗକୁ କିୟଦାଂଶରେ ପରିବର୍ତ୍ତିତ କରି, ତନ୍ତ୍ର ଅଙ୍ଗରେ ଯୋଗ କରିଦିଆଗଲା । ଆଜି ଆମର ସମସ୍ତ ପୂଜାପଦ୍ଧତି, ଆଚାର ଓ ଉତ୍ସବ ଯାହାକୁ ନେଇ କର୍ମକାଣ୍ଡ ଗଠିତ, ତାହା ସବୁ ତନ୍ତ୍ର ମତରେ ପାଳିତ ହେଉଛି ।

ବର୍ତ୍ତମାନ ଆମ ଧର୍ମର ସୂତ୍ର ଓ ନିୟମ ସମ୍ବନ୍ଧରେ ଚାଲନ୍ତୁ ଟିକିଏ ଆଲୋଚନା କରିବା । ଆମର ବିଭିନ୍ନ ସମ୍ପ୍ରଦାୟ ଭିତରେ ପ୍ରଭେଦ, କଳହ ଓ ସଂଘର୍ଷ ରହିଥିବା ସତ୍ତ୍ୱେ ସେମାନଙ୍କ ଭିତରେ ରହିଛି ଅନେକ ଐକ୍ୟର ଆଧାରଭୂମି । ପ୍ରଥମତଃ ସେମାନଙ୍କ ଭିତରୁ ଅଧିକାଂଶ ଈଶ୍ୱର, ଆତ୍ମା ଓ ଜଗତ ଭଳି ତିନୋଟି ଜିନିଷ - ତିନୋଟି ସତ୍ତାର ଅବସ୍ଥିତିକୁ ଗ୍ରହଣ କରନ୍ତି । ଈଶ୍ୱର ହିଁ ସେ ଯିଏ ଚିରନ୍ତନ ରୀତିରେ ସମଗ୍ର ଜଗତର ସୃଷ୍ଟି, ସ୍ଥିତି ଓ ବିନାଶର କାର୍ଯ୍ୟ ନିର୍ବାହ କରନ୍ତି । ସାଂଖ୍ୟଦର୍ଶନ ବ୍ୟତୀତ, ଅନ୍ୟ ସମସ୍ତେ ଏହା ବିଶ୍ୱାସ କରନ୍ତି । ତା'ପରେ ଆସେ ଆତ୍ମାର ସିଦ୍ଧାନ୍ତ ଏବଂ ଆତ୍ମାର ପୁନର୍ଜନ୍ମ; ଏହା ସ୍ୱୀକାର କରେ ଯେ ଅଗଣିତ ବ୍ୟକ୍ତି ଆତ୍ମା ବାରମ୍ବାର ଶରୀର ଗ୍ରହଣ କରି, ନିଜର କର୍ମାନୁସାରେ ଜନ୍ମ ଓ ମୃତ୍ୟୁ ଚକ୍ରରେ ଘୂରିବୁଲନ୍ତି ଯାହା ସଂସାରବାଦ ନାମରେ ପରିଚିତ, କିମ୍ବା ସାଧାରଣତଃ ଏହାକୁ ପୁନର୍ଜନ୍ମ ତତ୍ତ୍ୱ ବୋଲି କୁହାଯାଏ । ତା'ପରେ ଆସେ ଜଗତ ବା ଅନାଦି ଓ ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ । ଅବଶ୍ୟ କେତେକଙ୍କ ମତରେ ଏହା ଏକଇ ସତ୍ତାର ତିନୋଟି ବିଭିନ୍ନ ସ୍ତର, ଅନ୍ୟମାନଙ୍କ ମତରେ ଏହି ତିନୋଟି ସତ୍ତା ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ, ଏବଂ ପୁନଶ୍ଚ ଅନ୍ୟମାନେ ବିଭିନ୍ନ ମାର୍ଗରେ ଏହାର ଅସ୍ତିତ୍ୱକୁ ସ୍ୱୀକାର କରନ୍ତି, ତଥାପି ସେମାନେ ସମସ୍ତେ ସର୍ବସମ୍ମତି କ୍ରମେ ଏହି ତିନୋଟି ସତ୍ତାରେ ବିଶ୍ୱାସ ରଖିଥାନ୍ତି ।

ଏଠାରେ ତୁମମାନଙ୍କୁ ସ୍ମରଣ କରାଇ ଦେବାକୁ ଚାହେଁ ଯେ ସ୍ମରଣାତୀତ କାଳରୁ ହିନ୍ଦୁମାନେ ଆତ୍ମାଠାରୁ ମାନସ ଅର୍ଥାତ୍ ମନରୁ ପୃଥକ ବୋଲି ଜାଣିଥିଲେ । କିନ୍ତୁ ପାଶ୍ଚାତ୍ୟବାସୀ ମନଠାରୁ ଅଧିକ ଊର୍ଦ୍ଧ୍ୱକୁ ଯାଇପାରି ନ ଥିଲେ । ସେମାନେ କେବଳ ଜାଣନ୍ତି ଯେ ଜଗତ କେବଳ ସୁଖରେ ପରିପୂର୍ଣ୍ଣ, ସୁତରାଂ ସେମାନେ ଆକଣ୍ଠ ସୁଖ ଏଠାରେ ଉପଭୋଗ କରିପାରିବେ, କିନ୍ତୁ ପ୍ରାଚ୍ୟବାସୀ ବିଶ୍ୱାସକୁ ନେଇ ଜନ୍ମ । ସେମାନେ ଜାଣନ୍ତି ଯେ ଏହି ସଂସାର ସଦା ପରିବର୍ତ୍ତନଶୀଳ ଏବଂ ଦୁଃଖରେ ପରିପୂର୍ଣ୍ଣ, ସୁତରାଂ ଏହା କିଛି ନୁହେଁ, କେବଳ ମାୟା - ଏହାର କ୍ଷଣଭଙ୍ଗୁର ଆନନ୍ଦ ଓ ଧନସମ୍ପତ୍ତି ସହ ଆତ୍ମାର କୌଣସି ସମ୍ପର୍କ ନାହିଁ । ଏହି କାରଣବଶତଃ ପାଶ୍ଚାତ୍ୟ ସର୍ବଦା ସଂଘଠିତ କର୍ମରେ ଉତ୍ସାହୀ, ସେହିଭଳି ଅନ୍ତର୍ଜଗତରେ ରହସ୍ୟ ଉଦ୍‌ଘାଟନ ପାଇଁ ପ୍ରାଚ୍ୟବାସୀ ନିରନ୍ତର ଚେଷ୍ଟିତ ।

Digitized by srujanika@gmail.com

ବର୍ତ୍ତମାନ ହିନ୍ଦୁଧର୍ମର ଗୋଟିଏ କିମ୍ବା ଦୁଇଟି ଦିଗ ଉପରେ ଦୃଷ୍ଟି ନିକ୍ଷେପ କରାଯାଉ । ଈଶ୍ୱରଙ୍କର ଅବତାର ସମ୍ବନ୍ଧିତ ତତ୍ତ୍ୱ ସେଗୁଡ଼ିକ ମଧ୍ୟରୁ ଅନ୍ୟତମ । ବେଦରେ କେବଳ ମତ୍ସ୍ୟ ଅବତାରର ଉଲ୍ଲେଖ ରହିଥିବା ଆମେ ଦେଖୁଛେ । ସମସ୍ତେ ଏହି ତତ୍ତ୍ୱରେ ବିଶ୍ୱାସ କରନ୍ତି କିମ୍ବା ନାହିଁ, ଏହା ବଡ଼ କଥା ନୁହେଁ, କିନ୍ତୁ ଏହି ଅବତାରବାଦର ବାସ୍ତବ ଅର୍ଥ ହେଉଛି ଯେ ମନୁଷ୍ୟ ଭିତରେ ଈଶ୍ୱରଙ୍କ ଦର୍ଶନ କରିବା ହିଁ ପ୍ରକୃତ ଈଶ୍ୱରଦର୍ଶନ । ହିନ୍ଦୁ ପ୍ରକୃତି ମାଧ୍ୟମରେ ଈଶ୍ୱର ନିକଟକୁ ଗମନ କରେନାହିଁ - ସେ ମାନବର ଈଶ୍ୱରଙ୍କ ନିକଟକୁ ମନୁଷ୍ୟ ମାଧ୍ୟମରେ ଗମନ କରେ ।

ତା'ପରେ ଆସେ ରୂପ- ଉପାସନା । ଆମ ଶାସ୍ତ୍ରରେ ବର୍ଣ୍ଣିତ ପଞ୍ଚ ଦେବତା ପ୍ରତ୍ୟେକ ଶୁଭକର୍ମରେ ପୂଜିତ ହେବା ବ୍ୟତୀତ, ଅନ୍ୟ ଦେବତାଗଣ କେବଳ କେତେକ ନିର୍ଦ୍ଦିଷ୍ଟ ଅବସ୍ଥାର ନାମ ମାତ୍ର । ପୁନଶ୍ଚ ଏହି ପଞ୍ଚଦେବତା ଅନ୍ୟ କେହି ନୁହନ୍ତି ବରଂ ଏକଇ ଈଶ୍ୱରଙ୍କର ପାଞ୍ଚଟି ନାମ ଅଟେ । ରୂପର ଏହି ବାହ୍ୟ ଉପାସନା ଆମ ଶାସ୍ତ୍ରରେ ଉପାସନାର ନିମ୍ନସ୍ତରର ସାକାର ରୂପର ନିମ୍ନତମ ଭାବେ ବର୍ଣ୍ଣିତ ହୋଇଛି । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଏହା କରିବା ଆମର ଉଚିତ ନୁହେଁ । ରୂପ-ଉପାସନା ଅର୍ଥାତ୍ ମୂର୍ତ୍ତିପୂଜାର ପ୍ରଚଳନ ଭିତରେ ବହୁ ଅନିଷ୍ଟକର ଜିନିଷ ପ୍ରବେଶ କରିଥିଲେ ମଧ୍ୟ ମୁଁ ଏହାକୁ ଭର୍ତ୍ସନା କରେନାହିଁ । ଆହାଃ... ସେହି ମୂର୍ତ୍ତି ପୂଜକ ପ୍ରାଚୀନପନ୍ଥୀ ବ୍ରାହ୍ମଣଙ୍କର ପବିତ୍ର ଚରଣ ଧୂଳି ପାଇ ମୁଁ ଯଦି ଆଶୀଷପ୍ରାପ୍ତ ହୋଇ ନ ଥାନ୍ତି, ଆଜି ମୁଁ କେଉଁଠି ଥାଆନ୍ତି !

ଯେଉ ସଂସ୍କାରକଗଣ ମୂର୍ତ୍ତିପୂଜା ବିରୋଧରେ ପ୍ରଚାର କରନ୍ତି କିମ୍ବା ଯାହାକୁ ମୂର୍ତ୍ତିପୂଜକ ଭାବେ ଭର୍ତ୍ସନା କରନ୍ତି, ସେମାନଙ୍କୁ ମୁଁ କହିବାକୁ ଚାହେଁ, ହେ ମୋର ଭ୍ରାତୃଗଣ, ତୁମେ ଯଦି ସମସ୍ତ ବାହ୍ୟ ସହାୟତା ବିନା ନିରାକାର ଈଶ୍ୱରଙ୍କୁ ଉପାସନା କରିବା ଲାଗି ସକ୍ଷମ, ତେବେ ତାହା ତୁମେ କରିପାର, କିନ୍ତୁ ଯେଉଁମାନେ ତୁମ ଭଳି କରିପାରୁ ନାହାନ୍ତି, ସେମାନଙ୍କୁ କାହିଁକି ଭର୍ତ୍ସନା କରୁଛ ? ଗୋଟିଏ ସୁନ୍ଦର, ବିଶାଳ ସୌଧ ପୁରାତନର ଗୌରମମୟ ଅବଶେଷାଂଶ, ଯତ୍ନ ଅଭାବ କିମ୍ବା ବ୍ୟବହୃତ ନ ହେବା ଯୋଗୁଁ ଭଗ୍ନାବସ୍ଥାରେ ପଡ଼ିରହିଛି, ଧୂଳି ଓ ଅପରିଚ୍ଛନ୍ନ ବସ୍ତୁ ଦ୍ୱାରା ଏହା ଆବୃତ, କେତେକ ଅଂଶ ବି ଭୂପତିତ । ତୁମେ ଏହାପାଇଁ କ'ଣ କରିବ ? ତୁମେ ମରାମତି ଓ ପରିଷ୍କାର କରି ଏହାର ପୁନର୍ଗଠନ କରିବ ନା ସମଗ୍ର ଢାଞ୍ଚାକୁ ଭାଙ୍ଗିଦେଇ, ତା ଜାଗାରେ ଆଉ ଗୋଟିଏ ନୂତନ ଢାଞ୍ଚା ନିର୍ମାଣ କରିବ; ଆଧୁନିକ ପରିକଳ୍ପନାର ସ୍ଥାୟିତ୍ୱ ବର୍ତ୍ତମାନ ସୁଦ୍ଧା ପ୍ରମାଣିତ ହୋଇନାହିଁ ? ଆମକୁ ଏହାର ସଂସ୍କାର କରିବାକୁ ପଡ଼ିବ, ତା'ର ଅର୍ଥ ଏହାକୁ ପରିଷ୍କାର କରି ମରାମତି କରିବାକୁ ହେବ, କିନ୍ତୁ ଏହାକୁ ସଂପୂର୍ଣ୍ଣଭାବେ ଧ୍ୱଂସ କରିନୁହେଁ । ସେହିଠାରେ ସଂସ୍କାର କାର୍ଯ୍ୟର ଅନ୍ତ ହୋଇଥାଏ । ଯେତେବେଳେ ପୁରାତନର ନବୀକରଣ କରିବା କାର୍ଯ୍ୟ ସମାପ୍ତ ହୁଏ, ସେତେବେଳେ ଏହାର ଆବଶ୍ୟକତା ଆଉ କ'ଣ ଥାଏ ? ଯଦି

Digitized by srujanika@gmail.com

ତୁମେ ପାରିବ, ତାହା କର ନଚେତ ହାତ ଟେକିଦିଅ । ଆମ ଦେଶର ସଂସ୍କାରକଗଣ, ଅନ୍ୟ ପକ୍ଷରେ, ନିଜର ଏକ ପୃଥକ ସମ୍ପ୍ରଦାୟ ସୃଷ୍ଟି କରିବାକୁ ଚାହାଁନ୍ତି । ଅବଶ୍ୟ ସେମାନେ ଉତ୍ତମ କାର୍ଯ୍ୟ ସମ୍ପାଦନ କରନ୍ତି; ମୋନଙ୍କ ମସ୍ତକରେ ଈଶ୍ୱରଙ୍କ ଆଶୀର୍ବାଦ ବର୍ଷଣ ହେଉ । କିନ୍ତୁ ତୁମେ ହିନ୍ଦୁମାନେ ମହାନ୍ ସାର୍ବଜନୀନତା ଭିତରୁ ନିଜକୁ ପୃଥକ ରଖିବାକୁ କାହିଁକି ଚାହୁଁଛ ?

- ୫ -

*ବ୍ରାହ୍ମଣମାନଙ୍କୁ ମୁଁ କହିବାକୁ ଚାହେଁ, ତୁମର ଜନ୍ମ ଓ ବଂଶର ଗର୍ବ ଓ ଗାରିମା ହିଁ ବୃଥା । ଏହା ତ୍ୟାଗ କର । ତୁମର ଶାସ୍ତ୍ରାନୁସାରେ ଅନୁମୋଦିତ ବ୍ରାହ୍ମଣତ୍ୱ ବର୍ତ୍ତମାନ ଆଉ ନାହିଁ, କାରଣ ମ୍ଳେଛ ରାଜାମାନଙ୍କ ଶାସନରେ ତୁମେ ବହୁକାଳ ହେଲା ଜୀବନ ନିର୍ବାହ କଲଣି । ଯଦି ତୁମର ପୂର୍ବପୁରୁଷଙ୍କ ବାକ୍ୟରେ ତିଳେମାତ୍ର ବିଶ୍ୱାସ ରହିଛି, ତେବେ ଏହି ମୁହୂର୍ତ୍ତରେ ତୁମେ ଏଠାରୁ ବିଦାୟ ନିଅ ଏବଂ ନିଜ ପାପରୁ ମୁକ୍ତି ପାଇଁ ନିଷ୍ପତ୍ତ ତୁଷାଗ୍ନିରେ ପ୍ରବେଶ କର ।*

ହିନ୍ଦୁଧର୍ମ ତୁମ ପାଇଁ ସର୍ବଶ୍ରେଷ୍ଠ ଓ ଗୌରବମୟ ସମ୍ପତ୍ତି, ତୁମେ ହିନ୍ଦୁ ନାମ ଉଚ୍ଚାରଣ କରିବା ପାଇଁ କାହିଁକି ଲଜ୍ଜିତ ? ଆମର ଏହି ଜାତୀୟ ପୋତ, ହେ ମୋର ଅମୃତର ସନ୍ତାନ ଦେଶବାସୀଗଣ, ସଭ୍ୟତାକୁ ସାଙ୍ଗରେ ଧରି ଯୁଗ ଯୁଗ ଧରି ଗତି କରୁଛି ଏବଂ ଏହାର ଅମାପ ସମ୍ପତ୍ତି ସମଗ୍ର ବିଶ୍ୱକୁ ଋଦ୍ଧିମନ୍ତ କରୁଛି । ବହୁ ଉଜ୍ଜ୍ୱଳମୟ ଯୁଗ ଦେଇ, ଆମର ଏହି ଜାତୀୟ ପୋତ ଭବସାଗରରେ ନିରନ୍ତର ଯାତ୍ରାକରି, କୋଟି କୋଟି ଆତ୍ମାକୁ ପାରିକରି, ଭବସାଗରର ଅପରପାର୍ଶ୍ୱରେ ଅବସ୍ଥିତ ବେଦନା ଓ ଦୁଃଖ ରହିତ କୂଳରେ ପହଞ୍ଚାଇ ଦେଇଆସୁଛି । ଆଜି ତୁମର ଦୋଷ କିମ୍ୱା ଅନ୍ୟ କାରଣ ଯୋଗୁଁ କ'ଣ ଏହି ପୋତରେ ଛିଦ୍ର ହୋଇ ନଷ୍ଟ ବିନିଷ୍ଟ ହୋଇଯିବ । କେବେ ନୁହେଁ । ତୁମେ ଏହି ପୋତର ଯାତ୍ରୀ, ଯାହା କରିବାର କଥା ବର୍ତ୍ତମାନ କର । ତୁମେ କ'ଣ ଏହି ପୋତ ଉପରେ ଅଭିଶାପ ବର୍ଷଣ କରିଚାଲିବ ଏବଂ ତୁମମାନଙ୍କ ଭିତରେ ଖାଲି ଗାଳିବର୍ଷଣକରି ବ୍ୟସ୍ତ ରହିଯିବ ! ତୁମେମାନେ କ'ଣ ଏକତ୍ରିତ ହୋଇ ଏହି ଛିଦ୍ରକୁ ବନ୍ଦ କରିବା ପାଇଁ ପ୍ରୟାସ କରିବ ନାହିଁ ? ଚାଲ ଆନନ୍ଦରେ ଆମ ହୃଦୟର ରକ୍ତ ଦେଇ ଏହି କାର୍ଯ୍ୟନିର୍ବାହ କରିବା । ଯଦି ଏହି ଚେଷ୍ଟାରେ ଆମେ ବିଫଳ ହେବା, ତଥାପି ଆମ ମୁଖରୁ ଅଭିଶାପ ବର୍ଷଣ ନ ହେଉ, କେବଳ ଆଶୀର୍ବାଦ ଝରିପଡୁ ।

ବ୍ରାହ୍ମଣମାନଙ୍କୁ ମୁଁ କହିବାକୁ ଚାହେଁ, ତୁମର ଜନ୍ମ ଓ ବଂଶର ଗର୍ବ ଓ ଗାରିମା ହିଁ ବୃଥା । ଏହା ତ୍ୟାଗ କର । ତୁମର ଶାସ୍ତ୍ରାନୁସାରେ ଅନୁମୋଦିତ ବ୍ରାହ୍ମଣତ୍ୱ ବର୍ତ୍ତମାନ ଆଉ ନାହିଁ, କାରଣ ମ୍ଳେଛ ରାଜାମାନଙ୍କ ଶାସନରେ ତୁମେ ବହୁକାଳ ହେଲା ଜୀବନ ନିର୍ବାହ କଲଣି । ଯଦି ତୁମର ପୂର୍ବପୁରୁଷଙ୍କ ବାକ୍ୟରେ ତିଳେମାତ୍ର ବିଶ୍ୱାସ ରହିଛି, ତେବେ ଏହି ମୁହୂର୍ତ୍ତରେ ତୁମେ ଏଠାରୁ

Digitized by srujanika@gmail.com

ବିଦାୟ ନିଅ ଏବଂ ନିଜ ପାପରୁ ମୁକ୍ତି ପାଇଁ ନିଷ୍ପ୍ରଭ ତୁଶାଗ୍ନିରେ ପ୍ରବେଶ କର । ମନେ ଅଛି ତୁମର ପ୍ରାଚୀନ କାଳର କୁମାରିଲ ଭଟ୍ଟଙ୍କ କଥା ? ବୌଦ୍ଧାଧର୍ମାବଲମ୍ବୀମାନଙ୍କୁ ହଟାଇବା ଲାଗି ସେ ପ୍ରଥମେ ବୌଦ୍ଧ ସନ୍ନ୍ୟାସୀଙ୍କଠାରୁ ଦୀକ୍ଷାଗ୍ରହଣ କରି ଜଣେ ଶିଷ୍ୟ ହେଲେ । ତତ୍‌ପଶ୍ଚାତେ ସେ ବୌଦ୍ଧ ସନ୍ନ୍ୟାସୀ ଓ ବୌଦ୍ଧ ଧର୍ମାବଲମ୍ବୀମାନଙ୍କୁ ଯୁକ୍ତି ଓ ତର୍କରେ ପରାସ୍ତ କରି ବହୁ ଲୋକଙ୍କ ପ୍ରାଣହାନୀର କାରଣ ହେଲେ । ସେଥିପାଇଁ ସେ ନିଜ ଦେହରୁ ପାପ ଛଡ଼ାଇବା ପାଇଁ ପରବର୍ତ୍ତୀକାଳରେ, ତୁଶାଗ୍ନିରେ ପ୍ରବେଶ କରିଥିଲେ । ତୁମର ଯଦି ସେଭଳି କାର୍ଯ୍ୟ କରିବା ପାଇଁ ସାହସ ନାହିଁ, ତେବେ ନିଜର ଦୁର୍ବଳତାକୁ ସ୍ୱୀକାର କର ଏବଂ ସହାୟତାର ହାତ ଶୋଷିତ, ନିଷ୍ପେଷିତ ଓ ବଞ୍ଚିତ ଜନତାଙ୍କ ଅଭିମୁଖେ ବଢ଼ାଅ । ଜ୍ଞାନର ଦ୍ୱାର ସମସ୍ତଙ୍କ ପାଇଁ ଖୋଲିଦିଅ ଏବଂ ନ୍ୟାଯ୍ୟ ଅଧିକାର ଓ ସାମାଜିକ ନ୍ୟାୟ ସେମାନଙ୍କୁ ପ୍ରଦାନ କର ।

ଢାକା ଅବସ୍ଥାନ କାଳରେ ଏକ ହୃଦୟସ୍ପର୍ଶୀ ଘଟଣା ଘଟିଲା । ଜଣେ ରୂପସୀ ଯୁବତୀ ନିଜକୁ ବେଶଭୂଷାରେ ସଜାଇ ନିଜ ମା'ଙ୍କ ସହ ସ୍ୱାମୀଜୀଙ୍କୁ ଭେଟିବା ଲାଗି ପହଞ୍ଚିଲେ । ସେହି ସମୟରେ ସ୍ୱାମୀଜୀ ଯତିନବାବୁଙ୍କ ଗୃହରେ ବାସ କରୁଥିଲେ । ଯେହେତୁ ଉକ୍ତ ଯୁବତୀଙ୍କର ସ୍ୱଭାବ ଓ ଚରିତ୍ର ସନ୍ଦେହଜନକ ଥିଲା, ଯତୀନବାବୁ ତାଙ୍କୁ ଗୃହ ଭିତରକୁ ପ୍ରବେଶ କରିବା ଲାଗି ନିଷେଧ କଲେ । କିନ୍ତୁ ସ୍ୱାମୀଜୀଙ୍କ କାନରେ ଏହିକଥା ପଡ଼ିବାରୁ, ସେ ତତ୍‌କ୍ଷଣାତ୍ ସେମାନଙ୍କୁ ଅନୁମତି ଦେଇଥିଲେ । ମା ଓ ଝିଅ ଦୁହେଁ ସ୍ୱାମୀଜୀଙ୍କୁ ପ୍ରଣିପାତ କରି ସେଠାରେ ବସିଲେ । ରୂପସୀ ଯୁବତୀ କହିଲେ, ''ସ୍ୱାମୀଜୀ, ମୁଁ ଶ୍ୱାସ ରୋଗରେ ପୀଡ଼ିତ । ଦୟାକରି କିଛି ଔଷଧ ମୋତେ ଦେଇ ମୋର ରୋଗ ଭଲ କରିଦିଅନ୍ତୁ ।'' ସ୍ୱାମୀମଜୀଙ୍କର ହୃଦୟ କରୁଣାରେ ବିଗଳିତ ହୋଇଉଠିଲା । ସେ ନମ୍ରତା ସହ କହିଲେ, ''ଦେଖ ମା ! ମୁଁ ବି ଶ୍ୱାସ ରୋଗରେ ପୀଡ଼ିତ, ନିଜକୁ ଆରୋଗ୍ୟ କରିପାରୁ ନାହିଁ । ତଥାପି ମୁଁ ଚାହୁଁଛି ତୁମପାଇଁ କିଛି କରିପାରିବି ।'' ଏତିକି କହି ଶିଶୁସୁଲଭ ସରଳତା ଓ କାରୁଣ୍ୟ ହୃଦୟରେ ସେ ଉଭୟ ମା ଓ ଝିଅଙ୍କୁ ସ୍ପର୍ଶ କଲେ, କେବଳ ସେତିକି ନୁହେଁ, ଉପସ୍ଥିତ ସମସ୍ତ ବ୍ୟକ୍ତିଙ୍କୁ ମଧ୍ୟ ସ୍ପର୍ଶ କଲେ ।

ଅନ୍ୟ ଏକ ଘଟଣା । ଜଣେ ଭାବପ୍ରବଣ ଯୁବକ ଗୋଟିଏ ଫଟୋ ସ୍ୱାମୀଜୀଙ୍କୁ ଦେଖାଇ ପଚାରିଥିଲେ ଉକ୍ତ ବ୍ୟକ୍ତି ଜଣେ ଅବତାର କି ନୁହେଁ । ସ୍ୱାମୀଜୀ କହିଥିଲେ, ''ଆରେ ପୁତ୍ର, ମୁଁ କେମିତି ଜାଣିବି ?'' କିନ୍ତୁ ଯୁବକ ନଛୋଡ଼ବନ୍ଧା, ଚାରି ପାଞ୍ଚଥର ପ୍ରଶ୍ନ କଲେ । ଶେଷରେ ସ୍ୱାମୀଜୀ କହିଲେ ''ଆରେ ପୁତ୍ର, ମୋର ଉପଦେଶ ଶୁଣ; ପ୍ରଥମେ ନିଜର ମସ୍ତିଷ୍କ ଓ ସ୍ନାୟୁକୁ ସୁଷମ ଖାଦ୍ୟ ଓ ସ୍ୱାସ୍ଥ୍ୟକର ବ୍ୟାୟାମ ଜରିଆରେ ବିକଶିତ କର, ତେବେ ଯାଇ ତୁମେ ନିଜ ପାଇଁ ଚିନ୍ତା କରିବା ଲାଗି ସକ୍ଷମ ହେବ । ସୁଷମ ଖାଦ୍ୟାଭାବରେ ତୁମର ମସ୍ତିଷ୍କ ଦୁର୍ବଳ ହୋଇଯାଇଥିବାର ମୁଁ ଦେଖୁଛି ।'' କିନ୍ତୁ ଯୁବକ ନିଜ ଜିଦ୍‌ରେ ଅଟଳ, ସେ ଚାହୁଁଥିଲେ ଏକ ଅସ୍ତିବୋଚକ ଉତ୍ତର । ସ୍ୱାମୀଜୀ ଦେଖିଲେ ଯେ ଏଭଳି ବ୍ୟକ୍ତିଙ୍କୁ ସତର୍କ କରାଇ ନ ଦେଲେ, ସେମାନେ ମସ୍ତିଷ୍କରେ ଭାରସାମ୍ୟ ହରାଇପାରନ୍ତି । ତେଣୁ ସେ କହିଲେ, ''ଦେଖ ପୁତ୍ର ! ତୁମର ଗୁରୁଙ୍କୁ ତୁମେ ଅବତାର କିମ୍ବା ଅନ୍ୟ ରୂପରେ ଭାବି ପାର । କିନ୍ତୁ ଈଶ୍ୱରଙ୍କର ଅବତାର ବହୁତ କ୍ୱଚିତ ଓ ଯୁଗଯୁଗ ପରେ

Digitized by srujanika@gmail.com

ଥରେ ଆବିର୍ଭାବ ଘଟିଥାଏ । ମୁଁ ଶୁଣିଛି ଯେ ଢାକାରେ ତିନି କିମ୍ବା ଚାରିଟି ଅବତାର ଅଛନ୍ତି । ବାସ୍ତବରେ ଆଜିକାଲି ଏହା ଏକ ପାଗଳାମିରେ ପରିଣତ ହୋଇଗଲାଣି, ଯାହା ମୋତେ ଢଣାପଡୁଛି ।'' ଯୁବଗଣଙ୍କର ଦୁର୍ବଳ ଶାରୀରିକ ଶକ୍ତି ପରିଲକ୍ଷିତ କରି ସ୍ୱାମୀଜୀ ଏକ ସାଧାରଣ ସଭାରେ ଥରେ କହିଥିଲେ, ''ଗୀତା ଅଧ୍ୟୟନ କରିବା ଅପେକ୍ଷା ତୁମେ ଫୁଟ୍‌ବଲ୍ ଖେଳି ଈଶ୍ୱରଙ୍କର ସନ୍ନିକଟ ହୋଇପାରିବ ।''

- ୬ -

*ଏହିଭଳି ଚିନ୍ତାରେ ଘାରି ହେଉଥିବା ବେଳେ ତାଙ୍କ ମନରେ ଏକ ଚିନ୍ତା ପ୍ରକଟ ହେଲା । ସେହି ଚିନ୍ତାକୁ ସର୍ବଶକ୍ତିମାନ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି ସେ କାତର ହୋଇ ପ୍ରାର୍ଥନା କଲେ, ''ହେ ଭଗବାନ, ସ୍ୱାମୀଜୀଙ୍କର ରୋଗ ମୋତେ ଦେଇଦିଅ, ସ୍ୱାମୀଜୀ ସୁସ୍ଥ ହୋଇଉଠନ୍ତୁ ।'' ଯନ୍ତ୍ରଣାଗ୍ରସ୍ତ ସ୍ୱାମୀଜୀ ବୁଝିଗଲେ ସେବକ ବ୍ରହ୍ମଚାରୀଙ୍କର ମନକଥା । ସେ ଆଖି ଖୋଲି ଚାହିଁଲେ ଏବଂ କରୁଣାର୍ଦ୍ର ଦୃଷ୍ଟିରେ ବ୍ରହ୍ମଚାରୀଙ୍କୁ କହିଲେ, ''ପୁତ୍ର ! ମୁଁ ଦୁଃଖ କଷ୍ଟ ଭୋଗ କରିବା ଲାଗି ଦେହ ଧାରଣ କରିଛି, ତୁମେ ବ୍ୟସ୍ତ ହୁଅନାହିଁ ।'' ଭକ୍ତର ମନୋବାଞ୍ଛା ପୂର୍ଣ୍ଣ ହେଲା । ପ୍ରଭାତର ସୂର୍ଯ୍ୟକିରଣ ଧରିତ୍ରୀ ସ୍ପର୍ଶ କଲା ଉତ୍ତାରୁ ସ୍ୱାମୀଜୀ ସାମାନ୍ୟ ସୁସ୍ଥ ଅନୁଭବ କଲେ ।*

ଢାକାରୁ ସ୍ୱାମୀଜୀ ନିଜ ମା, ଭଉଣୀ, ପିଯୁସୀ, ରାମଦାଦାଙ୍କ ପତ୍ନୀ ଓ ଅନ୍ୟମାନଙ୍କ ସହ ବିଦାୟ ନେଇ ଆସାମର କାମାକ୍ଷାପୀଠ ଓ ଚିଟାଗଞ୍ଜର ଚନ୍ଦ୍ରନାଥ ଅଭିମୁଖେ ଯାତ୍ରା କଲେ । ପଥ ମଧ୍ୟରେ ସେ ଗୋଆଲପଡ଼ା ଓ ଗୌହାଟିରେ କିଛିଦିନ ରହିଥିଲେ । କିନ୍ତୁ କଷ୍ଟସାଧ ଯାତ୍ରା ତାଙ୍କର ଶ୍ୱାସରୋଗକୁ ଉତ୍କଟ କରାଇଦେଲା । ଶିଷ୍ୟମାନେ ସିଲଙ୍ଗ ପାର୍ବତ୍ୟାଞ୍ଚଳକୁ ତାଙ୍କୁ ନେଇଗଲେ, ଆଶାଥିଲା ଯେ ରୋଗର ପ୍ରାବଲ୍ୟ ହ୍ରାସପାଇବ । କିନ୍ତୁ  ତାହା ହେଲାନାହିଁ । କାମାକ୍ଷାଦେବୀଙ୍କୁ ଦର୍ଶନ କରିଥିଲେ । କିନ୍ତୁ ସେ ଭୀଷଣ ଅସୁସ୍ଥ ହୋଇପଡ଼ିଲେ ।

ଶିଲଙ୍ଗରେ ଭାରତପ୍ରେମୀ ବ୍ରିଟିସ୍‌ର ଚିଫ୍ କମିଶନର ସାର୍ ହେନ୍ରି କଟନଙ୍କ ସହ ସ୍ୱାମୀଜୀଙ୍କର ସାକ୍ଷାତ ହେଲା । କଟନ୍‌ସାହେବ ସ୍ୱାମୀଜୀଙ୍କୁ ପଚାରିଥିଲେ, ''ସ୍ୱାମୀଜୀ ! ୟୁରୋପ ଓ ଆମେରିକା ଭ୍ରମଣ କରିସାରିବା ପରେ, ଏହି ଦୂରସ୍ଥ ହିମାଳୟ ପର୍ବତମାଳାକୁ କାହିଁକି ଆସିଲେ ?'' କିନ୍ତୁ ସ୍ୱାମୀଜୀଙ୍କର ଭଦ୍ରୋଚିତ ବ୍ୟବହାର ଓ କଥାବାର୍ତ୍ତାରେ ଏମିତି ବିମୁଗ୍ଧ ହୋଇଗଲେ ଯେ ତାଙ୍କୁ ଏକ ବକ୍ତୃତା ପ୍ରଦାନ ଲାଗି ଅନୁରୋଧ କରିଥିଲେ । ତାଙ୍କର ଅନୁରୋଧ କ୍ରମେ ସେ ଇଂରେଜୀ ଅଫିସରମାନଙ୍କ ସମ୍ମୁଖରେ ଏକ ବକ୍ତୃତା ଦେଇଥିଲେ । କିନ୍ତୁ ସ୍ୱାମୀଜୀଙ୍କର ସାଂଘାତିକ

Digitized by srujanika@gmail.com

ରୋଗଗ୍ରସ୍ତ ଶରୀର ପରିଲକ୍ଷିତ କରି ସେଠିକାର ସିଭିଲ୍ ସର୍ଜନଙ୍କୁ କଟନ୍‌ସାହେବ ତାଙ୍କ ପାଖକୁ ପଠାଇ ଦେଇଥିଲେ ।

ରୋଗ ଯନ୍ତ୍ରଣାରେ ଛଟପଟ ହେଉଥିଲେ ବି ବ୍ରହ୍ମପୁତ୍ର ଓ ଶିଲଙ୍ଗ ଉପତ୍ୟାକାଞ୍ଚଳର ଶୋଭା ଓ ମନୋରମ ଦୃଶ୍ୟ ତାଙ୍କ ଦୃଷ୍ଟିଗୋଚରରୁ ଅନ୍ତର ହେଉ ନ ଥିଲା । ପ୍ରକୃତି ମାତାର ସୌନ୍ଦର୍ଯ୍ୟରେ ସେ ବାରମ୍ବାର ବିଭୋର ହୋଇ ଉଠୁଥିଲେ । ପୂର୍ବବଙ୍ଗ ଓ ଆସାମ ଥିଲା ସ୍ୱାମୀଜୀଙ୍କ ଅନ୍ତିମ ସାଧାରଣ ଭ୍ରମଣ । ଉଭୟ ମଧୁମେହ ଓ ଶ୍ୱାସରୋଗ ତାଙ୍କୁ ସେତେବେଳକୁ ଅସ୍ତବ୍ୟସ୍ତ କରିଦେଉଥିଲା - ସତେକି ପ୍ରାଣପକ୍ଷୀ ପଞ୍ଜୁରିରୁ କେଉଁ ମୁହୂର୍ତ୍ତରେ ଉଡ଼ିଯିବ ! ସବୁ ଯନ୍ତ୍ରଣା ସତ୍ତ୍ୱେ ସେ ଶାନ୍ତ ରହୁଥିଲେ, ବେଳେବେଳେ ଅସ୍ପଷ୍ଟ ସ୍ୱର ଝରିପଡୁଥିଲା ''ଏହି ଦେହ ଚାଲିଗଲେ ପରବାୟ ନାହିଁ । ସଂସାରକୁ ଭାବିବା ପାଇଁ ବହୁତ କିଛି ମୁଁ ଦେଇସାରିଛି ।''

ପାର୍ବତ୍ୟାଞ୍ଚଳର ଏକ ରାତ୍ରି ଯେତେ ଗଭୀର ହେଉଥିଲା, ସ୍ୱାମୀଜୀଙ୍କର ଶ୍ୱାସ ସେତେ ଉତ୍କଟ ହେଉଥିଲା । ଜଣେ ସେବକ ବ୍ରହ୍ମଚାରୀ ସର୍ବଦା ଅନିଦ୍ରା ହୋଇ ସ୍ୱାମୀଜୀଙ୍କୁ ଜଗି ରହୁଥିଲେ । ତାଙ୍କର ମସ୍ତକକୁ ଦୁଇହାତରେ ଟେକି ଧରୁଥିଲେ । ସ୍ୱାମୀଜୀଙ୍କର ଅସହ୍ୟ ଯନ୍ତ୍ରଣା ଯୁବ ବ୍ରହ୍ମାଚରୀଙ୍କର ହୃଦୟକୁ ବିଦୀର୍ଣ୍ଣ କରୁଥିଲା ଏବଂ ମନେ ମନେ ଖାଲି ଚିନ୍ତା କରୁଥିଲେ ଯେ କ'ଣ କଲେ ଏ ଯନ୍ତ୍ରଣାର ଉପଶମ ହେବ । ଏହିଭଳି ଚିନ୍ତାରେ ଘାରି ହେଉଥିବା ବେଳେ ତାଙ୍କ ମନରେ ଏକ ଚିନ୍ତା ପ୍ରକଟ ହେଲା । ସେହି ଚିନ୍ତାକୁ ସର୍ବଶକ୍ତିମାନ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି କାତର ହୋଇ ପ୍ରାର୍ଥନା କଲେ, ''ହେ ଭଗବାନ, ସ୍ୱାମୀଜୀଙ୍କର ରୋଗ ମୋତେ ଦେଇଦିଅ, ସ୍ୱାମୀଜୀ ସୁସ୍ଥ ହୋଇଉଠନ୍ତୁ ।'' ଯନ୍ତ୍ରଣାଗ୍ରସ୍ତ ସ୍ୱାମୀଜୀ ବୁଝିଗଲେ ସେବକ ବ୍ରହ୍ମାଚାରୀଙ୍କର ମନକଥା । ସେ ଆଖି ଖୋଲି ଚାହିଁଲେ ଏବଂ କରୁଣାର୍ଦ୍ର ଦୃଷ୍ଟିରେ ବ୍ରହ୍ମଚାରୀଙ୍କୁ କହିଲେ, ''ପୁତ୍ର ! ମୁଁ ଦୁଃଖ କଷ୍ଟ ଭୋଗ କରିବା ଲାଗି ଦେହ ଧାରଣ କରିଛି, ତୁମେ ବ୍ୟସ୍ତ ହୁଅନାହିଁ ।'' ଭକ୍ତର ମନୋବାଞ୍ଛା ପୂର୍ଣ୍ଣ ହେଲା । ପ୍ରଭାତର ସୂର୍ଯ୍ୟକିରଣ ଧରିତ୍ରୀ ସ୍ପର୍ଶ କଲା ଉତାରୁ ସ୍ୱାମୀଜୀ ସାମାନ୍ୟ ସୁସ୍ଥ ଅନୁଭବ କଲେ ।

ସ୍ୱାମୀ ସଦାନନ୍ଦ, ତାଙ୍କର ମା, ପିଉସୀ, ଭଉଣୀଙ୍କ ସହିତ ସ୍ୱାମୀଜୀ ସିଲଙ୍ଗରୁ ବିଦାୟ ନେଇ କଲିକତାରେ ୧୯୦୧ ମେ ୧୨ ତାରିଖରେ ପହଞ୍ଚିଲେ । ମଧୁମେହ ରୋଗ ଯୋଗୁଁ ତାଙ୍କର ପାଦ ଓ ଶରୀର କେତେକ ଅଂଶ ଫୁଲିଯାଇଥିଲା । ଜଣେ ବୈଦ୍ୟ ଅଧୀନରେ ସେ ଚିକିତ୍ସିତ ହେଲେ । ସମଗ୍ର ବେଲୁଡ଼ ମଠ ଚିନ୍ତିତ ଓ ଶୋକାକୁଳ ହୋଇ ପଡ଼ିଲେ । କିନ୍ତୁ ସ୍ୱାମୀଜୀ ଥଟ୍ଟା ମଜା କରି ସେମାନଙ୍କୁ ଖୁସି ରଖିବାକୁ କେବଳ ଚେଷ୍ଟା କରୁଥିଲେ ।



Digitized by srujanika@gmail.com

॥ ତେୟାଳିଶ ॥

# ବେଲୁଡ଼ ମଠକୁ ପୁନରାଗମନ - ମଠରେ ଦୁର୍ଗୋତ୍ସବ ପାଳିତ - ବୌଦ୍ଧଧର୍ମ ସାହିତ୍ୟରେ ବେଦାନ୍ତର ସ୍ପର୍ଶ

ବେଲୁଡ଼ ମଠରେ ସ୍ୱାମୀଜୀଙ୍କର ଅବସ୍ଥାନ ବନାଗ୍ନି ସଦୃଶ ଚତୁଃଦିଗରେ ପ୍ରସାରିତ ହେଲା । ବହୁଲୋକ ତାଙ୍କର ଆଶୀର୍ବାଦ ତଥା ପରାମର୍ଶ ଗ୍ରହଣ କରିବାଲାଗି ମଠରେ ପହଞ୍ଚିଲେ । ସେମାନଙ୍କ ସହ ସେ ବହୁ ସମୟ ବିତାଇଲେ । ବିଶେଷ କରି ବିଶ୍ୱବିଦ୍ୟାଳୟର ଯୁବଛାତ୍ରଙ୍କ ସହ ସେ ବେଶି ମିଶୁଥିଲେ । ନିଜ ଦେଶ କିପରି ଘୋର ଦୁର୍ଦ୍ଦିନ ଭିତରେ ଗତି କରୁଛି ଏବଂ ସେସବୁର ନିରାକରଣ କିପରି ହେବ, ସେ ଛାତ୍ରମାନଙ୍କୁ ଉପଦେଶ ଛଳରେ ବହୁ ପରାମର୍ଶ ଦେଉଥିଲେ । ସେମାନଙ୍କୁ ବଳବାନ ଓ ସାହସୀ ହେବାକୁ ସର୍ବଦା ଆହ୍ୱାନ ଦେଉଥିଲେ । ଏଭଳି ନିରନ୍ତର ଆଲୋଚନା ତାଙ୍କର ସ୍ୱାସ୍ଥ୍ୟରେ ହାନି ପହଞ୍ଚାଇପାରେ ଭାବି, ଗୁରୁ-ଭ୍ରାତାମାନେ ତାଙ୍କୁ ବାରଣ କରୁଥିଲେ । କିନ୍ତୁ ସ୍ୱାମୀଜୀ ସେମାନଙ୍କର ଉପଦେଶ ପ୍ରତି କର୍ଣ୍ଣପାତ ନ କରି ଯୁକ୍ତି ବାଢୁଥିଲେ ଯେ ଯଦି ସେମାନଙ୍କ ଭିତରୁ ଜଣେ ଆଦର୍ଶ ମାନବ ହୋଇପାରିବ, ତାହାଲେ ତାଙ୍କର ଶ୍ରମ ସାର୍ଥକ ହେବ ।

ଗଙ୍ଗାକୂଳରେ ନିର୍ମିତ ଦ୍ୱିତଳ ପ୍ରାସାଦର ଉପର ମହଲାରେ ରହିବାକୁ ସ୍ୱାମୀଜୀ ଭାରି ଭଲ ପାଉଥିଲେ । ଉତ୍ତର ଦିଗରେ ଅବସ୍ଥିତ ଦକ୍ଷିଣେଶ୍ୱର କାଳୀମନ୍ଦିର ଓ ପଞ୍ଚବଟିର ବୃକ୍ଷ ସମୂହକୁ ଘଣ୍ଟା ଘଣ୍ଟା ଧରି ଚାହୁଁଥିଲେ । ଅତୀତର ସ୍ମୃତିସବୁ ମାଳମାଳ ହୋଇ ତାଙ୍କ ମାନସପଟରେ ଜୀବନ୍ତ ହୋଇ ଉଠୁଥିଲା । ସ୍ମୃତିଚାରଣ ଭିତରେ ସେ ହଜି ଯାଉଥିଲେ, ବେଳେ ବେଳେ ତାଙ୍କର ମୁଖ ବିଷାଦଗ୍ରସ୍ତ ତ କେତେବେଳେ ଭାବାତୀତ ଅବସ୍ଥାରେ ଦୀପ୍ତିମନ୍ତ ହୋଇଉଠୁଥିଲା । ବେଲୁଡ଼ମଠର ଶାନ୍ତ ପରିବେଶରେ ସେ ସବୁଜ ଦୁର୍ବାଦଳ ଆଚ୍ଛାଦିତ ପ୍ରାନ୍ତରରେ ପଦଚାରଣ କରନ୍ତି, ବେଲଗଛ ମୂଳରେ ବସି ଧ୍ୟାନ କରୁ କରୁ ବାହ୍ୟଜ୍ଞାନ ଶୂନ୍ୟ ହୋଇଯାଆନ୍ତି, ଅନ୍ୟ ସମୟରେ ତାଙ୍କର ପ୍ରିୟ ପଶୁ ଶ୍ୱାନ-ବାଘା, ଛାଗ-ହଂସି, ଏକ କୃଷ୍ଣସାର ମୃଗ,ବଗ, ଗାଈ, ମେଷ, ବତକ, ହଂସ ଓ ଛାଗ ଶାବକ-ମାତୃ ସହ ବାଳକଟିଏ ପରି କ୍ରୀଡ଼ା କୌତୁକରେ ମଜ୍ଜି ଯାଉଥିଲେ । ଛାଗଶାବକ - ମାତୃ ତାଙ୍କ କୋଠରିରେ ଶୋଉଥିଲା, ପୂର୍ବ-ଜନ୍ମର କୌଣସି ଏକ ଜନ୍ମରେ ତାହା ସହ ସମ୍ପର୍କ ଥିଲା ବୋଲି ସ୍ୱାମୀଜୀ କୌତୁକ ଛଳରେ କହୁଥିଲେ । ଆଶ୍ଚର୍ଯ୍ୟଜନକ ଯେ ମାତୃର ମୃତ୍ୟୁ ହୋଇଗଲା ପରେ ସ୍ୱାମୀଜୀ ପିଲାଟିଏ ଭଳି କାନ୍ଦି କାନ୍ଦି ଜଣେ ଶିଷ୍ୟଙ୍କୁ କହିଥିଲେ, ''କି ଆଶ୍ଚର୍ଯ୍ୟ କଥା ! ଯାହାକୁ ମୁଁ ଭଲପାଏ, ସେ ଶୀଘ୍ର ମରିଯାଏ ।''

Digitized by srujanika@gmail.com

- ୧ -

*ପୁତ୍ର, ମୋ ପାଇଁ ବିଶ୍ରାମ ନାହିଁ । ଶ୍ରୀରାମକୃଷ୍ଣ ଯାହାଙ୍କୁ କାଳୀ ବୋଲି ସମ୍ବୋଧନ କରୁଥିଲେ, ତାଙ୍କ ଦେହାନ୍ତର ତିନିଚାରିଦିନ ପୂର୍ବରୁ ସେହି ଜଗଜ୍ଜନନୀ ମୋର ଦେହ ଓ ଆତ୍ମାକୁ ଧାରଣ କରିନେଇଛନ୍ତି । ସେ ମୋତେ କେବଳ କର୍ମରେ ବାରମ୍ବାର ବୁଡାଇ ରଖିଛନ୍ତି, କେବେ ବି ମୋତେ ସାମାନ୍ୟ ବିଶ୍ରାମ ଦେଉନାହାନ୍ତି କିମ୍ବା ମୋର ବ୍ୟକ୍ତିଗତ ସୁଖ ପ୍ରତି ତାଙ୍କର ନଜର ନାହିଁ ।*

ନିଜର ଗୃହପାଳିତ ପଶୁମାନଙ୍କ ବିଷୟରେ ସେ ଶିଷ୍ୟା କ୍ରିଷ୍ଟାଇନ୍ ଗ୍ରୀନ୍‌ଷ୍ଟିଡ଼େଲଙ୍କ ପାଖକୁ ସେପ୍ଟେମ୍ବର ୭ ତାରିଖରେ ଲେଖିଲେ : ''ଭୟଙ୍କର ବର୍ଷା ଦିନେ ମାଡ଼ି ଆସିଲା । ରାତି ଓ ଦିନ ଅନବରତ ବର୍ଷଣରେ ଗଡ଼ିଆ, ପୋଖରି ଉଚ୍ଛୁଳି ପଡ଼ିଲା, ନଦୀ କୂଳ ଲଘିଲା । ମଠ ପରିସର ଭିତର ପାଣି ଲହଡ଼ି ଭାଙ୍ଗିଲା । ବର୍ତ୍ତମାନ ଗୋଟିଏ ନାଳ ତିଆରି କରି ମଠ ପରିସର ଭିତରୁ ପାଣି ନିଷ୍କାସିତ କରାଗଲା, ମୁଁ ସେଥିରେ ସାହାଯ୍ୟ କଲି, ବଡ଼ ବଗର ଖୁସି କହିଲେ ନ ସରେ, ବତକ ଓ ହଂସ ତ ଆହୁରି ଖୁସି । ମୋ କୃଷ୍ଣସାର ମୃଗ ମଠରୁ କେଉଁଆଡ଼େ ପଳାଇଲା, ତାକୁ ଖୋଜି ବାହାର କରିବାରେ ଆମେ ଖୁବ୍ ଚିନ୍ତିତ ହୋଇପଡ଼ିଲୁ । ଦୁର୍ଭାଗ୍ୟବଶତଃ ଗୋଟିଏ ବତକ ଗତକାଲି ମରିଗଲା । ଗୋଟିଏ ସପ୍ତାହ ହେଲା ସେ ଥଣ୍ଡା ରୋଗରେ ପୀଡ଼ିତ ହୋଇ ନିଶ୍ୱାସ-ପ୍ରଶ୍ୱାସ ନେଇ ପାରୁନ ଥିଲା । ଆମର ଜଣେ ବୃଦ୍ଧ ସନ୍ନ୍ୟାସୀ କହିଲେ - ଆଜ୍ଞା, ଯେଉଁଠି ବତକକୁ ଥଣ୍ଡା ଧରେ ଓ ବେଙ୍ଗ ଥଣ୍ଡାରେ ଛିଙ୍କେ, ସେହି କଳିଯୁଗରେ ବଞ୍ଚି ଲାଭ ନାହିଁ । ଗୋଟିଏ ହଂସୀ ତା'ର ପରଗୁଡ଼ିକୁ ହରାଇଛି । ତା'ର କୌଣସି ଚିକିତ୍ସା ମୁଁ ଜାଣିନ ଥିଲି, ତଥାପି ଗୋଟିଏ ପାତ୍ରରେ ଉଷୁମ୍ ପାଣି ଓ ହାଲୁକା କାର୍‌ବୋଲିକ୍ ମିଶାଇ ତାକୁ ସେଥିରେ କିଛି ସମୟ ଛାଡ଼ିଦେଲି - ଭାବିଥିଲି ସେ ମରିଯିବ କିମ୍ବା ଭଲ ହୋଇଯିବ । କିନ୍ତୁ ସେ ବର୍ତ୍ତମାନ ଭଲରେ ଅଛି ।''

ସ୍ୱାମୀଜୀଙ୍କର ସ୍ୱାସ୍ଥ୍ୟବସ୍ଥାର ଉନ୍ନତିହେବା ପରିବର୍ତ୍ତେ କ୍ରମଶଃ ଅବନତି ହେବାକୁ ଲାଗିଲା । ଜଳଶୋଥ ରୋଗରେ ସେ ବର୍ତ୍ତମାନ ଆକ୍ରାନ୍ତିତ । ପାଦଦ୍ୱୟ ଏଭଳି ଫୁଲିଥିଲା ଯେ ସେ ଚାଲିପାରୁ ନ ଥିଲେ । ତାଙ୍କର ଦେହ ଅତ୍ୟନ୍ତ ସମ୍ବେଦନଶୀଳ ହୋଇଯାଇଥିଲା, କେହି ଯଦି ତାଙ୍କ ଶରୀରକୁ ମୃଦୁ ଭାବରେ ସ୍ପର୍ଶ କରି ଦେଉଥିଲା, ସେ ଉତ୍କଟ ଯନ୍ତ୍ରଣାରେ ଛଟପଟ ହୋଇପଡୁଥିଲେ । ସେଥିରେ ବି କାହାକୁ ସେ ତାଙ୍କ ସହ କଥାବାର୍ତ୍ତାରୁ ବଞ୍ଚିତ କରୁ ନ ଥିଲେ । ସେହିଭଳି ଜ୍ୱଳନ୍ତ ଭାଷା ତାଙ୍କ ମୁଖରୁ ଉଦ୍‌ଗୀରଣ ଯାହାଫଳରେ ଯେଉଁମାନେ ତାଙ୍କ ସହ ଆଲୋଚନା କରୁଥିଲେ, ସମସ୍ତେ ବୈଦ୍ୟୁତିକ ପ୍ରବାହରେ ଶିହରିତ ହେଉଥିଲେ । ଯେତେବେଳେ ଶିଷ୍ୟ ଶରତଚନ୍ଦ୍ର ତାଙ୍କୁ ଦେଖିବା ପାଇଁ ଆସି ପଚାରିଲେ, ''ଗୁରୁଦେବ, ଆପଣ କେମିତି ଅଛନ୍ତି ?'', ସେତେବେଳେ ସ୍ୱାମୀଜୀ କହିଥିଲେ, ''ପୁତ୍ର, ମୋ ଦେହ ବିଷୟରେ ଆଉ କାହିଁକି ପଚାରୁଛ ? ଦିନକୁ ଦିନ ଏହି ଶରୀର ସମସ୍ତ ନୀତି-ନିୟମରୁ ଅଲଗା ହୋଇଯାଉଛି । ବଙ୍ଗଦେଶରେ ଜନ୍ମ ହୋଇଛି ତ, ସେଥିପାଇଁ

Digitized by srujanika@gmail.com

ଏହି ଶରୀର ରୋଗରୁ କେବେ ବି ମୁକ୍ତ ହେବନାହିଁ । ଆଉ ଯଦି ଅଳ୍ପଦିନ ଏହି ଶରୀର ରହନ୍ତା, ତାହେଲେ ତୁମମାନଙ୍କ ପାଇଁ କିଛି କାମ କରି ଟିକିଏ ଶାନ୍ତିରେ ମରନ୍ତି ।''

କିଛି ମାସ ବିଶ୍ରାମ ନେବାପାଇଁ ତାଙ୍କୁ କହିବାରୁ ସ୍ୱାମୀଜୀ ତତ୍‌କ୍ଷଣାତ୍ କହିଉଠିଲେ, ''ପୁତ୍ର, ମୋ ପାଇଁ ବିଶ୍ରାମ ନାହିଁ । ଶ୍ରୀରାମକୃଷ୍ଣ ଯାହାଙ୍କୁ କାଳୀ ବୋଲି ସମ୍ବୋଧନ କରୁଥିଲେ, ତାଙ୍କ ଦେହାନ୍ତର ତିନିଚାରିଦିନ ପୂର୍ବରୁ ସେହି ଜଗଜ୍ଜନନୀ ମୋର ଦେହ ଓ ଆତ୍ମାକୁ ଧାରଣ କରିନେଇଛନ୍ତି । ସେ ମୋତେ କେବଳ କର୍ମରେ ବାରମ୍ବାର ବୁଡାଇ ରଖିଛନ୍ତି, କେବେ ବି ମୋତେ ସାମାନ୍ୟ ବିଶ୍ରାମ ଦେଉନାହାନ୍ତି କିମ୍ବା ମୋର ବ୍ୟକ୍ତିଗତ ସୁଖ ପ୍ରତି ତାଙ୍କର ନଜର ନାହିଁ ।'' ଶରତବାବୁ ଏହି କଥା ଶୁଣି ଅଧିକ ଜାଣିବା ଲାଗି ଆଗ୍ରହାନ୍ୱିତ ହେବାରୁ ସ୍ୱାମୀଜୀ ଏହି ନିମ୍ନୋଲିଖିତ କାହାଣୀ ତାଙ୍କୁ ଶୁଣାଇଲେ :

ଠାକୁରଙ୍କ ଦେହାନ୍ତର ଦୁଇ କିମ୍ବା ତିନିଦିନ ପୂର୍ବରୁ, ମୋତେ ସେ ଏକୁଲା ଦେଖି ତାଙ୍କ ଶଯ୍ୟା ପାଖକୁ ଡାକିଲେ ଏବଂ ତାଙ୍କ ସମ୍ମୁଖରେ ଉପବେଶନ ନିମନ୍ତେ ସେ ମୋତେ କହିଲେ । ତାଙ୍କର ଆଦେଶ ଶିରୋଧାର୍ଯ୍ୟ କରି ମୁଁ ବସିଲି, ସେ ମୋତେ ଅପଲକ ନୟନରେ ଅବଲୋକନ କରି ସମାଧିସ୍ଥ ହେଲେ । ମୁଁ ବାସ୍ତବରେ ଶକ୍ତିଶାଳୀ ଇଲେକ୍ଟ୍ରିସିଟି କରେଣ୍ଟ ଭଳି ଏକ ସୂକ୍ଷ୍ମ ଶକ୍ତି ତାଙ୍କ ଶରୀରରୁ ବହିର୍ଗତ ହୋଇ ମୋ ଭିତରକୁ ପ୍ରବେଶ କଲାଭଳି ମୁଁ ଅନୁଭବ କଲି । କିୟତ୍ ମୁହୂର୍ତ୍ତ ଅତିକ୍ରାନ୍ତେ ମୁଁ ବାହ୍ୟ ଜ୍ଞାନ ହରାଇ ସମାଧିମଗ୍ନ ହୋଇପଡ଼ିଲି । ସେହି ଅବସ୍ଥାରେ ମୁଁ କେତେ ସମୟ ରହିଥିଲି, ତାହା ମୁଁ କହିପାରିବି ନାହିଁ । ମୋର ବାହ୍ୟଜ୍ଞାନ ଫେରିବାରୁ ମୁଁ ଦେଖିଲି ଯେ ଠାକୁର କାନ୍ଦୁଛନ୍ତି । ମୁଁ ତାଙ୍କୁ କାନ୍ଦିବାର ହେତୁ ପଚାରିବାରୁ ସେ ମୃଦୁ ସ୍ୱରରେ କହିଲେ, ''ଆରେ ନରେନ୍, ଆଜି ମୋର ସବୁକିଛି ତୋତେ ଦେଇ ମୁଁ ଫକିର ହୋଇଗଲି । ଏହି ଶକ୍ତି ବଳରେ, ଜଗତରେ ତୁ ଅନେକ ମହାନ୍ କାର୍ଯ୍ୟ ସମ୍ପାଦନ କରିବୁ ଏବଂ ତାହାସବୁ କରିସାରିବା ପରେ, ତୁ ଏହି ସଂସାରରୁ ବିଦାୟ ନେବୁ । ମୋର ଅନୁଭୂତ ହେଉଛି ଯେ ସେହି ଶକ୍ତି ମୋତେ ଅନବରତ କାର୍ଯ୍ୟ କରାଉଛି ଏବଂ ଏହାର ଜଳାବର୍ତ୍ତରେ ମୁଁ ସଦା ଘୂର୍ଣ୍ଣାୟମାନ । ଏହି ଶରୀର ଆଳସ୍ୟରେ ବିତାଇବା ପାଇଁ ଗଠିତ ହୋଇନାହିଁ ।

ଯାହାହେଉ ସ୍ୱାମୀଜୀ ୧୯୦୧ ମସିହା ଜୁଲାଇ ଓ ଅଗଷ୍ଟ ଦୁଇମାସ କାଳ ଅଧିକ ବିଶ୍ରାମ ନେଲେ । ସେପ୍ଟେମ୍ବର ମାସ ବେଳକୁ ସାମାନ୍ୟ ସୁସ୍ଥ ହେଲେ । କିନ୍ତୁ ସ୍ୱାମୀଜୀଙ୍କର ନବୀନ ଓ ଆଧୁନିକ ଚିନ୍ତାଧାରା ସାଙ୍ଗକୁ ମଠର କାର୍ଯ୍ୟପ୍ରଣାଳୀ ବହୁ ଧର୍ମାନ୍ଧ ତଥା ପ୍ରାଚୀନପନ୍ଥୀଗଣଙ୍କର ଗାତ୍ରୋଦାହ କଲା । ଏକେତ ସେମାନଙ୍କର ଶାସ୍ତ୍ରଜ୍ଞାନ ନ ଥିଲା, ଦ୍ୱିତୀୟରେ ସ୍ୱାମୀଜୀ ଓ ଅନ୍ୟାନ୍ୟ ସନ୍ନ୍ୟାସୀଙ୍କର ଗତିବିଧିରେ ଉତ୍ୟକ୍ତ ହୋଇ ତାଙ୍କୁ କଠୋର ସମାଲୋଚନା କରିବାକୁ ଲାଗିପଡ଼ିଲେ । ସ୍ୱାମୀଜୀଙ୍କ କାନରେ ଏକଥା ପଡ଼ିଲା । ସେ ସେମାନଙ୍କ ଉଦ୍ଦେଶ୍ୟରେ କହିଥିଲେ - ତୁମେ ସେହି ପୁରୁଣା ଢଗ ଜାଣିଛ - ହାତୀ ଚାଲେ ବଜାର, କୁକୁର ଭୋକେ ହଜାର ।'' ସାଧୁ କିନ୍ତୁ ସେମାନଙ୍କ ଗାଳିରେ ଆଦୌ ବିବ୍ରତ ହୁଏନାହିଁ । ଏହା ମଧ ପ୍ରକୃତିର ଏକ ନିୟମ - ଯେତେବେଳେ କୌଣସି ଦେଶରେ ନୂତନ ଚିନ୍ତାଧାରା ପ୍ରଚାରିତ ହୁଏ, ସେତେବେଳେ ପୁରୁଣାକାଳିଆ ଲୋକମାନେ ବିରୋଧ କରନ୍ତି । ପ୍ରତ୍ୟେକ ଧର୍ମର

Digitized by srujanika@gmail.com

ପ୍ରତିଷ୍ଠାତା ଏତାଦୃଶ ପରୀକ୍ଷାର ସମ୍ମୁଖୀନ ହୁଅନ୍ତି । ଉଚ୍ଚ ଚିନ୍ତାଧାରା ବିନା କେହି ବି ସମାଜର ଅନ୍ତଃସ୍ଥଳକୁ ପ୍ରବେଶ କରିପାରିବେ ନାହିଁ ।''

- ୨ -

*ପ୍ରତିମା ପୂଜାରେ ଅଂଶଗ୍ରହଣ କରି ସ୍ୱାମୀଜୀ ଜଗତକୁ ଜଣାଇ ଦେଇଥିଲେ ଯେ ସର୍ବଶକ୍ତିମାନ ଈଶ୍ୱରଙ୍କର ପ୍ରତିମା ମାଧ୍ୟମରେ ପୂଜା ଆରାଧନା ଗର୍ହିତ ଅପରାଧ ନୁହେଁ ବରଂ ଏହା ମନୁଷ୍ୟ ମନ ଓ ହୃଦୟରେ ଭକ୍ତି ସଞ୍ଚାର କରେ, ଯେଉଁଠାରୁ ଅନାଦି ଓ ଅନନ୍ତ ନିରାକାର ପରଂବ୍ରହ୍ମ ଅଭିମୁଖେ ମନୁଷ୍ୟର ମନ ଯାତ୍ରା କରିବାକୁ ଆରମ୍ଭ କରିବ । ସେଥିପାଇଁ ପ୍ରଚଣ୍ଡ ଅଦ୍ୱୈତବାଦୀ ସନ୍ନ୍ୟାସୀ ଆଦି ଶଙ୍କରାଚାର୍ଯ୍ୟ ସ୍ୱୟଂ ଈଶ୍ୱରଙ୍କର ସାକାର ରୂପ ବର୍ଣ୍ଣନା କରି ଅନେକ ସ୍ତୋତ୍ର ରଚନା କରିଥିଲେ ।*

ଇତ୍ୟବସରରେ ସ୍ୱାମୀଜୀ ବେଲୁଡ଼ ମଠରେ ଦୁର୍ଗାପୂଜା ପାଳନ କରିବା ଲାଗି ମନ ବଳାଇଲେ । ୧୯୦୧ ଖ୍ରୀଷ୍ଟାବ୍ଦରେ ଦୁର୍ଗୋତ୍ସବ ଅକ୍ଟୋବର ମାସରେ ପଡ଼ିଥିଲା । ଆଠଦିନ ସେତେବେଳକୁ ଦୁର୍ଗାସବ ପାଇଁ ବାକି ଥିଲା । ମାନସପଟରେ ମଠରେ ଦୁର୍ଗାଙ୍କର ପ୍ରତିମା ସ୍ଥାପନ କରି ଦୁର୍ଗାପୂଜା କରିବାର ଦୃଶ୍ୟ ସେ ଦେଖିଥିଲେ । କିନ୍ତୁ ନିଜର ମନକଥା କାହାକୁ କହି ନ ଥିଲେ । ଠିକ୍ ସେହିଭଳି ମଠର ଅଧକ୍ଷ ସ୍ୱାମୀ ବ୍ରହ୍ମାନନ୍ଦ ବେଲୁଡ଼ ମଠରେ ଗଙ୍ଗାକୁ ଚାହିଁ ବସିଥିବା ବେଳେ ହଠାତ୍ ଏକ ମାନସ ଦର୍ଶନ ତାଙ୍କର ହେଲା - କୁଳୁକୁଳୁ ନାଦିନୀ ଗଙ୍ଗାର ଅପର ପାର୍ଶ୍ୱରେ ଅବସ୍ଥିତ ଦକ୍ଷିଣେଶ୍ୱରରୁ ମା ଦୁର୍ଗା ଆଗମନ କରି, ଗଙ୍ଗାର ବକ୍ଷ ଦେଶରେ ଧୀରେ ଧୀରେ ଯାତ୍ରାକରି, ବେଲୁଡ଼ ମଠର ବିଲ୍ୱବୃକ୍ଷ ନିକଟରେ ଉପନୀତ ହେଲେ । ଏତାଦୃଶ ଦିବ୍ୟ ଦର୍ଶନରେ ସେ ହତ୍‌ବାକ୍ ହେଲେ । ଏହି ସମୟରେ ସ୍ୱାମୀଜୀ କଲିକତାରୁ ଏକ ନୌକା ଯୋଗେ ଆସି ବେଲୁଡ଼ ମଠରେ ପହଞ୍ଚି ରାଜା (ସ୍ୱାମୀ ବ୍ରହ୍ମାନନ୍ଦ) କେଉଁଠି ବୋଲି ଡାକ ଛାଡ଼ିଲେ । ସ୍ୱାମୀ ବ୍ରହ୍ମାନନ୍ଦ ତାଙ୍କ ପାଖରେ ପହଞ୍ଚିବାଉତ୍ତାରୁ ସେ ହଠାତ୍ କହିଉଠିଲେ, ''ରାଜା, ମଠରେ ଦୁର୍ଗାପୂଜା କରିବା ।'' ତତ୍‌ପଶ୍ଚାତେ ସନ୍ନ୍ୟାସୀଦ୍ୱୟ ନିଜ ନିଜର ଦିବ୍ୟ ଦର୍ଶନ ସମ୍ବନ୍ଧରେ କହିବାରୁ, ଉଭୟ ନିଶ୍ଚିତ ହେଲେ ଯେ କରୁଣାମୟୀ ମା ଦୁର୍ଗାଙ୍କର ଇଚ୍ଛା ପୂର୍ଣ୍ଣ ହେବ । କାଳବିଳମ୍ବ ନ କରି, କଲିକତାର ବାଗ୍‌ବଜାର ଗୃହରେ ଅବସ୍ଥାପିତ ମା ସାରଦାଙ୍କର ଅନୁମତି ଭିକ୍ଷା କଲେ । ମା ରାଜି ହେଲେ ।

ଦୁର୍ଗାପୂଜା ଉପଲକ୍ଷେ ମା ନିଜର ସଙ୍ଗିନୀଗଣଙ୍କୁ ଧରି ବେଲୁଡ଼ ମଠ ନିକଟସ୍ଥ ନିଳାମ୍ବର ବାବୁଙ୍କ ଉଦ୍ୟାନବାଟିରେ ଅବସ୍ଥାନ କଲେ । ଶାସ୍ତ୍ର ଓ ପରମ୍ପରାନୁସାରେ ବେଲୁଡ଼ ମଠରେ ଦୁର୍ଗାପୂଜା ଅନୁଷ୍ଠିତ ହେଲା । କଲିକତାର ଭକ୍ତ ଓ ଗୃହସ୍ଥମାନେ ବେଲୁଡ଼ ମଠରେ ଦୁର୍ଗାପୂଜା ପାଳିତ ହେଉଥିବା ସମ୍ବାଦରେ ଅତୀବ ଆନନ୍ଦିତ ହୋଇ, ପୂଜାରେ ବହୁ ସଂଖ୍ୟାରେ ଭାଗ ନେଲେ ।

Digitized by srujanika@gmail.com

ଦୁର୍ଗାମୂର୍ତ୍ତି ସ୍ଥାପିତ ହୋଇ, ପୂଜାକର୍ମ, ଯଜ୍ଞ, ହୋମ ଇତ୍ୟାଦି ପଣ୍ଡିତ ଓ ବ୍ରାହ୍ମଣଙ୍କ ଦ୍ୱାରା ସମ୍ପାଦିତ ହେଲା । ଦିବ୍ୟଜନନୀ ସାରଦାଦେବୀ, ସ୍ୱାମୀଜୀ, ଗୁରୁଭ୍ରାତା, ସନ୍ନ୍ୟାସୀ, ବ୍ରହ୍ମଚାରୀ, ଗୃହସ୍ଥ ଓ ଭକ୍ତମାନଙ୍କ ଉପସ୍ଥିତିରେ ବେଲୁଡ଼ ମଠ ଉତ୍ସବ ମୁଖରିତ ହେଲା । ପରମ୍ପରାନୁସାରେ ଦୁର୍ଗାମୂର୍ତ୍ତି ସମ୍ମୁଖରେ ଛାଗବଳି ଉତ୍ସର୍ଗ ନମନ୍ତେ ସ୍ୱାମୀଜୀ ଚାହିଁଥିଲେ ମଧ୍ୟ, ମା ସାରଦାଙ୍କର ନିଷେଧାତ୍ମକ ହସ୍ତକ୍ଷେପ ଫଳରେ ତାହା ବନ୍ଦ ହେଲା । ସ୍ୱାମୀଜୀ ମା'ଙ୍କର ଆଦେଶକୁ ଶିରୋଧାର୍ଯ୍ୟ କଲେ । ବେଲୁଡ଼ ମଠର ନିକଟସ୍ଥ ଗ୍ରାମମାନଙ୍କରୁ ବହୁ ଶ୍ରଦ୍ଧାଳୁ ଭକ୍ତ ଯୋଗଦେଇ ମଠର କାର୍ଯ୍ୟକୁ ଶତମୁଖରେ ପ୍ରଶଂସା କଲେ । ଏତଦ୍‌ବ୍ୟତୀତ, ଯେଉଁ ପଣ୍ଡିତ ଓ ବ୍ରାହ୍ମଣମାନେ ସ୍ୱାମୀଜୀଙ୍କର ବିଚାରଧାରା ଓ ମଠର କାର୍ଯ୍ୟାବଳୀକୁ ସମାଲୋଚନା କରୁଥିଲେ, ସେମାନେ ମଧ୍ୟ ମଠରେ ଦୁର୍ଗାପୂଜାର ଆୟୋଜନ ଦେଖି ବେଶ୍ ଖୁସି ହେଲେ ଏବଂ ବେଲୁଡ଼ ମଠ ପ୍ରତି ରହିଥିବା ସେମାନଙ୍କର ସମସ୍ତ ସଂଶୟ ଦୂର ହୋଇଗଲା ଏବଂ ହିନ୍ଦୁଧର୍ମର ସେମାନେ ରକ୍ଷକ ବୋଲି ଏକପ୍ରକାର ମାନସିକତା ସେମାନଙ୍କର ଜାତ ହେଲା ।

ଦୁର୍ଗାପୂଜା ପରେ ସ୍ୱାମୀଜୀଙ୍କର ରୋଗ ପୁଣି ଗୁରୁତର ହେଲା । ଡାକ୍ତରଙ୍କ ପରାମର୍ଶକ୍ରମେ ସେ ଶଯ୍ୟାରେ ପଡ଼ି ରହିଲେ । ଶଯ୍ୟାସାୟୀ ହୋଇ ବି ଲକ୍ଷ୍ମୀପୂଜା ଓ କାଳୀପୂଜା ସେହିବର୍ଷ ସେ ପାଳନ କଲେ । କାଳୀପୂଜା ପରେ ସ୍ୱାମିଜୀଙ୍କ ମାତା ଭୁବନେଶ୍ୱରୀ ଦେବୀ ଖବର ପଠାଇଲେ ଯେ ସ୍ୱାମୀଜୀ ବାଲ୍ୟକାଳରେ ଏକଦା ରୋଗରେ ପୀଡ଼ିତ ଥିଲେ, ସେଥିପାଇଁ ସେ କାଳୀଘାଟର କାଳୀଙ୍କ ପାଖରେ ଏକ ସ୍ୱତନ୍ତ୍ର ପୂଜା କରି ତାଙ୍କୁ ମା କାଳୀଙ୍କ ସମ୍ମୁଖସ୍ଥ ଚଟାଣରେ ଗଡ଼ାଇବେ ବୋଲି ମାନସିକ କରିଥିଲେ । ତାହା ସେ ଭୁଲି ଯାଇଥିଲେ । ବର୍ତ୍ତମାନ ତାଙ୍କର ମାନସିକ ପୂରଣ କରିବାକୁ ଚାହାଁନ୍ତି ।

ମା'ଙ୍କର କଥାକୁ ସ୍ୱାମୀଜୀ ଟାଳି ପାରିଲେ ନାହିଁ । ସେ ମା'ଙ୍କ ସହ କାଳୀଘାଟ ଯାଇ, ଆଦି ଗଙ୍ଗାରେ ସ୍ନାନ କରି, ଓଦା ବସ୍ତ୍ରରେ କାଳୀ ମନ୍ଦିରକୁ ଆସି, ମା'ଙ୍କ ସମ୍ମୁଖରେ ତିନିଥର ଭୂମିରେ ଗଡ଼ିଲେ । ସ୍ୱତନ୍ତ୍ର ହୋମ ସେ ନିଜେ ସମ୍ପାଦନ କଲେ । ପୂଜା ପରେ ମନ୍ଦିର ଚତୁଃପାର୍ଶ୍ୱରେ ସେ ସାତ ଥର ପ୍ରଦକ୍ଷିଣ କଲେ । ପଣ୍ଡାମାନେ ତାଙ୍କୁ ସବୁପ୍ରକାର ସାହାଯ୍ୟ କରିଥିଲେ । ଦରିଆ ପାରି ହୋଇ ମ୍ଳେଛ ଦେଶକୁ ସ୍ୱାମୀଜୀ ଯାଇଥିଲେ ବୋଲି କେହି ତାଙ୍କୁ ମନ୍ଦିର ପ୍ରବେଶ କରିବାରୁ ବଞ୍ଚିତ କରି ନ ଥିଲେ । ମା ଭୁବନେଶ୍ୱରୀ ଦେବୀ ପୁତ୍ରର ଆଜ୍ଞାପାଳନକୁ ଶତସହସ୍ର କଣ୍ଠରେ ପ୍ରଶଂସା କରିଥିଲେ । କେବଳ ସେତିକି ନୁହେଁ ତାଙ୍କ ନିଜ ଘରେ ପାଳିତ ଜଗଦ୍ଧାତ୍ରୀ ପୂଜା ଓ ମଠରେ ପାଳିତ ସରସ୍ୱତୀ ପୂଜାରେ ସ୍ୱାମୀଜୀ ଆଗ୍ରହ ସହକାରେ ଯୋଗ ଦେଉଥିଲେ ।

ପ୍ରତିମା ପୂଜାରେ ଅଂଶଗ୍ରହଣ କରି ସ୍ୱାମୀଜୀ ଜଗତକୁ ଜଣାଇ ଦେଇଥିଲେ ଯେ ସର୍ବଶକ୍ତିମାନ ଈଶ୍ୱରଙ୍କର ପ୍ରତିମା ମାଧ୍ୟମରେ ପୂଜା ଆରାଧନା ଗର୍ହିତ ଅପରାଧ ନୁହେଁ ବରଂ ଏହା ମନୁଷ୍ୟ ମନ ଓ ହୃଦୟରେ ଭକ୍ତି ସଞ୍ଚାର କରେ, ଯେଉଁଠାରୁ ଅନାଦି ଓ ଅନନ୍ତ ନିରାକାର ପରଂବ୍ରହ୍ମ ଅଭିମୁଖେ ମନୁଷ୍ୟର ମନ ଯାତ୍ରା କରିବାକୁ ଆରମ୍ଭ କରିବ । ସେଥିପାଇଁ ପ୍ରଚଣ୍ଡ ଅଦ୍ୱୈତବାଦୀ ସନ୍ନ୍ୟାସୀ ଆଦି ଶଙ୍କରାଚାର୍ଯ୍ୟ ସ୍ୱୟଂ ଈଶ୍ୱରଙ୍କର ସାକାର ରୂପ ବର୍ଣ୍ଣନା କରି ଅନେକ ସ୍ତୋତ୍ର ରଚନା କରିଥିଲେ । ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସଙ୍କର ସାଧନାଲବ୍ଧ ଜ୍ଞାନ

Digitized by srujanika@gmail.com

ଏବଂ ତାଙ୍କର ଏହି ଧରିତ୍ରୀ ପୃଷ୍ଠକୁ ଆଗମନ ରହସ୍ୟ ସ୍ୱାମୀଜୀଙ୍କ ଶିରା ପ୍ରଶିରାରେ ପୂର୍ଣ୍ଣ ପ୍ରକାଶିତ ଓ ଝଙ୍କୁରିତ ମଧ । ଏକଇ ସତ୍ୟ ବିଭିନ୍ନ ରୂପ ପଣ୍ଡାତରେ ବିରାଜିତ ବୋଲି ସାଧାରଣ କିମ୍ବା ବୌଦ୍ଧିକ ମନୁଷ୍ୟ ବୁଝିପାରେ ନାହିଁ, କିନ୍ତୁ ମନ, ଇନ୍ଦ୍ରିୟ, ବୁଦ୍ଧି, ଅହଙ୍କାର, ଚେତନା ପଣ୍ଡାତରେ ସେହି ସତ୍ୟର କ୍ରୀଡ଼ା ସ୍ୱାମୀଜୀଙ୍କୁ ଅଛପା ନ ଥିଲା ।

- ୩ -

*ରୋମାନ୍ କାଥୋଲିକ୍ ଓ ହିନ୍ଦୁ ବିବାହକୁ ପବିତ୍ର ଓ ଅକ୍ଷୁଣ୍ଣ ରଖିଥିବାରୁ ସେମାନେ ମହାନ୍ ଶୁଦ୍ଧ ତଥା ପରାକ୍ରମଶାଳୀ ପୁରୁଷ ଓ ନାରୀ ସୃଷ୍ଟି କରିପାରିଥିଲେ । ଆରବ ପାଇଁ ବିବାହ ଏକ ଚୁକ୍ତି କିମ୍ବା ବଳପୂର୍ବକ ସମ୍ପତ୍ତି, ଇଚ୍ଛାନୁସାରେ ଏହା ବାତିଲ ଯୋଗ୍ୟ, ଆମେ ସେଠାରେ ବ୍ରହ୍ମଚାରୀଣୀର ଆଦର୍ଶର ବିଚାର ଦେଖିବାକୁ ପାଆନ୍ତି ନାହିଁ । ଆଧୁନିକ ବୌଦ୍ଧଧର୍ମ, ଏପର୍ଯ୍ୟନ୍ତ ବିବାହର ବିବର୍ତ୍ତନ ପାଖକୁ ଆସିନାହିଁ, ସନ୍ୟାସ ଭିତରେ କେବଳ ସୀମିତ ରହିଯାଇଛି । ସୁତରାଂ ଯେପର୍ଯ୍ୟନ୍ତ ଏକ ମହାନ୍ ତଥା ପବିତ୍ର ବିବାହର ଆଦର୍ଶ ଜାପାନରେ ବିକଶିତ ନ ହୋଇଛି, ମୁଁ ଦେଖିପାରୁନାହିଁ ଯେ ସେଠାରେ କିପରି ମହାନ୍ ସନ୍ୟାସୀ ଓ ବ୍ରହ୍ମଚାରିଣୀ ସୃଷ୍ଟି ହେବେ ?*

୧୯୦୧ରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ କଲିକତାରେ ଡିସେମ୍ବର ୨୩, ୧୯୦୧ରେ ଆରମ୍ଭ ହେଲା । ଭାରତବର୍ଷର ସବୁ ରାଜ୍ୟରୁ ପ୍ରତିନିଧିମାନେ ଆସିଥିଲେ । ସେମାନଙ୍କ ମଧ୍ୟରୁ ବହୁ ପ୍ରତିନିଧି ବେଲୁଡ଼ ମଠ ପରିଦର୍ଶନ କରି ସ୍ୱାମୀଜୀଙ୍କୁ ସାକ୍ଷାତ କଲେ । ବହୁ କଂଗ୍ରେସ ନେତା ତାଙ୍କ ସହ ଆଲୋଚନା କରି ଦେଶମାତୃକାର ସେବା କରିବା ପାଇଁ ପ୍ରଜ୍ୱଳିତ ହେବା ସଙ୍ଗେ ସଙ୍ଗେ ଏହି ଦେଶପ୍ରେମୀ ସନ୍ୟାସୀଙ୍କର ଆଧୁନିକ ଭାରତ ନିର୍ମାଣ କରିବାର ମାନସିକତାକୁ ବୁଝିବାକୁ ସକ୍ଷମ ହେଲେ । ସେମାନଙ୍କ ସହ ସ୍ୱାମୀ ଇଂଗ୍ରେଜୀରେ କଥାବାର୍ତ୍ତା ନ ହୋଇ ହିନ୍ଦୀରେ କଥାବାର୍ତ୍ତା ହେଉଥିଲେ । ଲୋକମାନ୍ୟ ବାଳଗଙ୍ଗାଧର ତିଳକ ମଧ ମଠକୁ ଆସିଥିଲେ । ସ୍ୱାମୀଜୀ ତାଙ୍କୁ ଆଦରରେ ପାଛୋଟି ନେଇ ଚା' ପାନରେ ଆପାୟିତ କରିଥିଲେ ଏବଂ ଭାରତର ବହୁ ସମସ୍ୟା ସହ ତାଙ୍କ ସହ ଆଲୋଚନା କରିଥିଲେ । ମହାତ୍ମା ଗାନ୍ଧୀ ସ୍ୱାମୀଜୀଙ୍କୁ ବେଲୁଡ଼ ମଠରେ ସାକ୍ଷାତ କରିବା ପାଇଁ ବ୍ୟାକୁଳିତ ହୋଇ ଆସିଥିଲେ ହେଁ ସ୍ୱାମୀଜୀଙ୍କୁ ମଠରେ ନ ପାଇ ନିରାଶ ମନରେ ଫେରି ଯାଇଥିଲେ ।

ପରବର୍ତ୍ତୀ କାଳରେ ଜାତିର ଜନକ ମହାତ୍ମା ଗାନ୍ଧୀ ନିଜର ଆତ୍ମ ଜୀବନୀରେ ଲେଖିଥିଲେ - ଅତ୍ୟନ୍ତ ଆଗ୍ରହ ସହକାରେ ମୁଁ ସ୍ୱାମୀଜୀଙ୍କୁ ଭେଟିବା ପାଇଁ ପ୍ରାୟ ଚାଲି ଚାଲି ବେଲୁଡ଼ ମଠକୁ ଯାଇଥିଲି । ସହରର କୋଳାହଳ ଜୀବନଯାତ୍ରାଠାରୁ ଦୂରରେ ଅବସ୍ଥିତ ବେଲୁଡ଼ ମଠର ଦୃଶ୍ୟ ମୋତେ ଭାରି ଭଲ ଲାଗିଲା । ମୁଁ ମଠରେ ପହଞ୍ଚି ଅତ୍ୟନ୍ତ ନୈରାଶ୍ୟରେ ବୁଡିଗଲି । କାରଣ

Digitized by srujanika@gmail.com

ସ୍ୱାମୀ ବିବେକାନନ୍ଦ ଅସୁସ୍ଥ ହୋଇ କଲିକତାରେ ସେତିକିବେଳେ ରହୁଥିଲେ, ତାଙ୍କୁ ଦର୍ଶନ କରିବାର ସୌଭାଗ୍ୟରୁ ମୁଁ ବଞ୍ଚିତ ହେଲି ।

ଡିସେମ୍ବର ମାସରେ ସ୍ୱାମୀଜୀଙ୍କର ପାଶ୍ଚାତ୍ୟ ଶିଷ୍ୟ ଓ ବନ୍ଧୁଗଣ ବେଲୁଡ଼ ମଠରେ ଜଣକ ପରେ ଜଣେ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଥିଲେ ଶ୍ରୀମତୀ ସେଭିଅର୍, ଜୋସେଫିନ୍ ମେକ୍‌ଲିଓଡ୍ ଏବଂ ତାଙ୍କ ଜାପାନୀ ବନ୍ଧୁ । ଶ୍ରୀମତୀ ବୁଲ୍ ଓ ଭଗିନୀ ନିବେଦିତା ବି ଗୋଟିଏ ମାସ ଭିତରେ ପହଞ୍ଚିଲେ । ମେକ୍‌ଲିଓଡ୍ ଆମେରିକାନ୍ କନ୍‌ସଲେଟ୍‌ଙ୍କ ଭବନରେ ରହିଲେ କିନ୍ତୁ ତାଙ୍କର ଜାପାନୀ ବନ୍ଧୁ ଓକାକୁରା ଓ ହୋରି ବେଲୁଡ଼ ମଠରେ ରହିଲେ । ଏହି ବୌଦ୍ଧଧର୍ମାବଲମ୍ବୀ ବିଦ୍ୱାନ ଜାପାନରେ ଅନୁଷ୍ଠିତ ହେବାକୁଥିବା କଂଗ୍ରେସ ଅଫ୍ ରିଲିଜନ୍‌ରେ ଯୋଗଦେବା ପାଇଁ ସ୍ୱାମୀଜୀଙ୍କୁ ଅନୁରୋଧ କଲେ । ଓକାକୁରା କଳାର ଅଧ୍ୟାପକ । ଓକାକୁରାଙ୍କ ସହ ସ୍ୱାମୀଜୀଙ୍କର ବନ୍ଧୁତ୍ୱ ବେଶ୍ ଜମି ଯାଇଥିଲା । ନିଜର ଶାରୀରିକ ଅସୁସ୍ଥତା ଯୋଗୁଁ ସେ ଜାପାନ ଯାଇପାରିବେ ନାହିଁ ବୋଲି ଓକାକୋରାଙ୍କୁ ଜଣାଇଦେଲେ । ତା'ବାଦେ ଅଦ୍ୱୈତ ବେଦାନ୍ତର ଆଦର୍ଶ କୁ ଜାପାନୀମାନେ ଗ୍ରହଣ କରବେ କି ନାହିଁ, ସେଥିପ୍ରତି ସ୍ୱାମୀଜୀଙ୍କ ମନରେ ସଂଶୟ ବି ଥିଲା ।

ସ୍ୱାମୀଜୀ ଏଭଳି ଏକ ବ୍ୟକ୍ତିତ୍ୱ ଯିଏ ଉଭୟ ସତୀତ୍ୱ ଓ ବ୍ରହ୍ମଚର୍ଯ୍ୟର ଆଦର୍ଶକୁ ସମ୍ମାନ ଦେଉଥିଲେ : ''ମୋ ମତରେ, ଶୁଦ୍ଧ ସତୀତ୍ୱର ଆଦର୍ଶ ଲାଭ କରିବା ପୂର୍ବରୁ, ବିବାହର ପବିତ୍ରତା ଓ ଅକ୍ଷୁର୍ଣ୍ଣତା ମାଧ୍ୟମରେ ଜାତ ମାତୃତ୍ୱକୁ ଗୋଟିଏ ଜାତି ସମ୍ମାନ ଦେବା ଉଚିତ । କାରଣ ଏହା ଭିତରୁ ଜନ୍ମ ନେବ ଶୁଦ୍ଧ ସତୀତ୍ୱ । ରୋମାନ୍ କାଥୋଲିକ୍ ଓ ହିନ୍ଦୁ ବିବାହକୁ ପବିତ୍ର ଓ ଅକ୍ଷୁଣ୍ଣ ରଖିଥିବାରୁ ସେମାନେ ମହାନ୍ ଶୁଦ୍ଧ ତଥା ପରାକ୍ରମଶାଳୀ ପୁରୁଷ ଓ ନାରୀ ସୃଷ୍ଟି କରିପାରିଥିଲେ । ଆରବ ପାଇଁ ବିବାହ ଏକ ଚୁକ୍ତି କିମ୍ବା ବଳପୂର୍ବକ ସମ୍ପତ୍ତି, ଇଚ୍ଛାନୁସାରେ ଏହା ବାତିଲଯୋଗ୍ୟ, ଆମେ ସେଠାରେ ବ୍ରହ୍ମଚାରୀଣୀର ଆଦର୍ଶର ବିଚାର ଦେଖିବାକୁ ପାଆନ୍ତି ନାହିଁ । ଆଧୁନିକ ବୌଦ୍ଧଧର୍ମ, ଏପର୍ଯ୍ୟନ୍ତ ବିବାହର ବିବର୍ତ୍ତନ ପାଖକୁ ଆସିନାହିଁ, ସନ୍ନ୍ୟାସ ଭିତରେ କେବଳ ସୀମିତ ରହିଯାଇଛି । ସୁତରାଂ ଯେପର୍ଯ୍ୟନ୍ତ ଏକ ମହାନ୍ ତଥା ପବିତ୍ର ବିବାହର ଆଦର୍ଶ ଜାପାନରେ ବିକଶିତ ନ ହୋଇଛି, ମୁଁ ଦେଖିପାରୁନାହିଁ ଯେ ସେଠାରେ କିପରି ମହାନ୍ ସନ୍ନ୍ୟାସୀ ଓ ବ୍ରହ୍ମଚାରିଣୀ ସୃଷ୍ଟି ହେବେ ? ଜୀବନର ଗୌରବ ହିଁ ସତୀତ୍ୱ ବୋଲି ଯେହେତୁ ତୁମେ ଦେଖିବାକୁ ଆସିଛ, ସେଥିପାଇଁ ଆଧୁନିକ ବୌଦ୍ଧଧର୍ମ, ଯେଉଁ ଜାତି ବିବାହର ବିବର୍ତ୍ତନ ମାଧ୍ୟମରେ ଗତି ନ କରି ସନ୍ନ୍ୟାସୀ ସଂପ୍ରଦାୟ ଭିତରେ ଗତି କରିଥିଲା ଏହି ମହାନ୍ ପବିତ୍ରତାର ଆବଶ୍ୟକତା ପ୍ରତି ମୋ ଆଖିଖୋଲି ଯାଇଛି, ଯା'ଫଳରେ କେତେଜଣ ଜୀବନବ୍ୟାପୀ ସତୀତ୍ୱ ଶକ୍ତି ସୃଷ୍ଟି ହୋଇପାରିବ ।'' ଉପରୋକ୍ତ ମନ୍ତବ୍ୟରୁ ସ୍ୱାମୀଜୀଙ୍କର ଦୃଷ୍ଟିକୋଣ ଅତି ସହଜରେ ବୁଝିହୁଏ । ସ୍ୱାମୀଜୀ କହୁଥିଲେ ଯେ ତିନିପୁରୁଷ ଧରି ପତି ଓ ପତ୍ନୀଙ୍କ ମଧ୍ୟରେ ଯଦି ନିରନ୍ତର ଶୁଦ୍ଧ ସମ୍ପର୍କ ରହିବ, ତେବେ ଜଣେ ଆଦର୍ଶ ସନ୍ନ୍ୟାସୀର ଉତ୍ପତ୍ତି ନିଶ୍ଚିତ ହେବ । ପବିତ୍ର ଓ ଶୁଦ୍ଧ ବିବାହ କେବଳ ସନ୍ଥ ଓ ସନ୍ନ୍ୟାସୀ ଉତ୍ପନ୍ନ କରିପାରିବ , ନଚେତ୍ ବ୍ରହ୍ମଚାରୀ ଓ ସନ୍ନ୍ୟାସୀ ଆସିବେ କେଉଁଠୁ ?

ସାମାନ୍ୟ ସୁସ୍ଥ ଅନୁଭବ କରିବା ପରେ ସ୍ୱାମୀଜୀ ଓକାକୁରାଙ୍କ ବୁଦ୍ଧଗୟା ଯିବାପାଇଁ ଅନୁରୋଧକୁ ରକ୍ଷା କଲେ । ଓକାକୁରା ଓ କୁମାରୀ ମେକ୍‌ଲିଓଡ୍‌ଙ୍କ ସହ ସେ ଜାନୁଆରୀ ୨୭,

Digitized by srujanika@gmail.com

୧୯୦୨ରେ ବୁଦ୍ଧଗୟା ଯାତ୍ରା କଲେ । ସ୍ୱାମୀଜୀ ଯେଉଁଦିନ ବୁଦ୍ଧଗୟାରେ ପହଞ୍ଚିଥିଲେ, ସେଦିନ ଥିଲା ତାଙ୍କର ଚାଳିଶତମ ଜନ୍ମଦିନ । ବୁଦ୍ଧଗୟା ମନ୍ଦିରର ମହାନ୍ତ ସ୍ୱାମୀଜୀ ଓ ତାଙ୍କର ସାଥୀଗଣଙ୍କୁ ପାଛୋଟି ନେଇ ରହିବାର ବ୍ୟବସ୍ଥା କରିଥିଲେ । ଗୋଟିଏ ସପ୍ତାହ ସ୍ୱାମୀଜୀ ବୁଦ୍ଧଗୟାରେ ଅବସ୍ଥାନ କଲେ । ବୌଦ୍ଧଧର୍ମ ତଥା ଗୌତମବୁଦ୍ଧଙ୍କ ସମ୍ବନ୍ଧରେ ଅନେକ ବିଷୟ ଜାପାନୀବନ୍ଧୁଙ୍କୁ କହି ତାଙ୍କୁ ଆଲୋକିତ କରିଥିଲେ । ସେଠାରୁ ଓକାକୁରା ଓ ଅନ୍ୟ ସାଥୀମାନଙ୍କ ସହ ସେ ବାରଣାସି ଯାତ୍ରା କଲେ । ସ୍ୱାମୀଜୀଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ଲାଗି ବାରାଣାସି ରେଲୱେ ଷ୍ଟେସନରେ ପ୍ରାୟ ପାଞ୍ଚଶହ ଲୋକ ରୁଣ୍ଡ ହୋଇଥିଲେ । ଏକ ବିରାଟ ଉଦ୍ୟାନରେ ନିର୍ମିତ 'ଗୋପାଲାଲ ଭିଲା'ରେ ସ୍ୱାମୀଜୀ ଓକାକୁରାଙ୍କ ସହିତ ଅବସ୍ଥାନ କଲେ । ଏହି ଅବସ୍ଥାନ କାଳରେ ବହୁ ଲୋକଙ୍କର କେନ୍ଦ୍ରବିନ୍ଦୁ ହେଲେ ସ୍ୱାମୀଜୀ । ବହୁ ବିଦ୍ୱାନ, ପଣ୍ଡିତ, ମଠ ମହାନ୍ତ, ହିନ୍ଦୁ ସଂସ୍କୃତି ଉପରେ ସ୍ୱାମୀଜୀଙ୍କର ପରିବର୍ତ୍ତିତ ବିଚାରଧାରା ଏବଂ ହିନ୍ଦୁଧର୍ମର ପୁନରୁତ୍ଥାନ ପାଇଁ ପରିକଳ୍ପନା ଶ୍ରବଣ କରି ତାଙ୍କର ଉଚ୍ଚ ପ୍ରଶଂସକ ହୋଇଗଲେ । ଇତ୍ୟବସରରେ ଭିଙ୍ଗା'ର ମହାରାଜା ବାରାଣସୀରେ ଗୋଟିଏ ମଠ ସ୍ଥାପନ ପାଇଁ ପ୍ରସ୍ତାବ ଦେବା ସଙ୍ଗେ ସଙ୍ଗେ ଆର୍ଥିକ ସହାୟତା ବର୍ଷକ ପାଇଁ ଯୋଗାଇ ଦେବାର ପ୍ରତିଶ୍ରୁତି ଦେବାରୁ ସ୍ୱାମୀଜୀ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ସେ କଲିକତାକୁ ପ୍ରତ୍ୟାବର୍ତ୍ତନ କଲାପରେ ସ୍ୱାମୀ ଶିବାନନ୍ଦଙ୍କୁ ବାରାଣସୀରେ ମଠ ଖୋଲିବା ପାଇଁ ପଠାଇ ଦେଇଥିଲେ ।

- ୪ -

> *କୁହନ୍ତୁ ଅଞ୍ଜା, ଭାରତୀୟଙ୍କର ଏଭଳି ଅଧଃପତିତ, ଓ ଦାରିଦ୍ର୍ୟ ଅବସ୍ଥା ଦେଖିବା ପାଇଁ ଅଧିକ କାଳ ବଞ୍ଚିବାର କି ଲାଭ ଅଛି ? ପ୍ରତ୍ୟେକ ମୁହୂର୍ତ୍ତରେ ନର୍କ ଯନ୍ତ୍ରଣା ଭୋଗ କରନ୍ତି, ଖାଲି ଜୀବନରକ୍ଷା ପାଇଁ କେବଳ ସେମାନେ ବଞ୍ଚିରହନ୍ତି, ଦିନରାତି ଅନାହାର, ଅପବାଦ ଓ ଦାରିଦ୍ର୍ୟର ଯନ୍ତ୍ରଣା ଭୋଗକରନ୍ତି, ସତେକି ଦିନରାତି ସେମାନେ ନର୍କର ହୁତାସନରେ ଦଗ୍ଧିଭୂତ, ଏପରି ହୀନିମାନ ଜୀବନ ଅପେକ୍ଷା ମୃତ୍ୟୁ ସେମାନଙ୍କ ପାଇଁ ଶ୍ରେୟସ୍କର । ପାଶ୍ଚାତ୍ୟ ଜଗତର ରାଜନୈତିକ ପଦ୍ଧତିର ଅନୁକରଣ ଆମକୁ ସେମତି କିଛି ଉପକାର ପ୍ରଦାନ କରିପାରିବ ନାହିଁ କିନ୍ତୁ ଭାରତର ପାରମ୍ପରିକ ସଂସ୍କୃତିକୁ ଯଦି ପୁନରୁଦ୍ଧାର କରାଯାଇପାରନ୍ତା, ତେବେ କିଛି ସୁବିଧା ମିଳିପାରନ୍ତା । ଭାରତ ଧର୍ମ ମାଧମରେ ସାମାଜିକ ତଥା ଅନ୍ୟାନ୍ୟ ବିକାଶ କାର୍ଯ୍ୟ ସର୍ବଦା କରିଆସିଛି ।*

ବାରଣାସିରେ ବାସ କରୁଥିବା ସମୟରେ ସ୍ୱାମୀଜୀ ଭାରତୀୟ ଐତିହାସିକ ଓ ପ୍ରତ୍ନତତ୍ତ୍ୱ ଦୃଷ୍ଟିକୋଣରୁ ବୌଦ୍ଧଧର୍ମର ଅବସ୍ଥିତି ସମ୍ବନ୍ଧରେ ଅନେକ ଚିନ୍ତା କରିଥିଲେ । ବୋଧଗୟାଓ ବାରଣାସି ଭ୍ରମଣ ଅନୁଭୂତିରୁ ଏତାଦୃଶ ଚିନ୍ତା ତାଙ୍କର ଉଦ୍ରେକ ହୋଇଥିଲା । ସ୍ୱାମୀଜୀଙ୍କର ବୌଦ୍ଧିକ ଚିନ୍ତାଧାରା

Digitized by srujanika@gmail.com

ଅଦ୍ୱୈତ ବେଦାନ୍ତ ଓ ବୌଦ୍ଧଧର୍ମ ଭିତରେ ଏକ ସେତୁବନ୍ଧ ବାନ୍ଧିଛି କହିଲେ ଅତ୍ୟୁକ୍ତି ହେବନାହିଁ । ସ୍ୱାମୀଜୀ ଫେବୃଆରି ୭ ତାରିଖ ଚିଠିରେ ସ୍ୱାମୀ ସ୍ୱରୂପାନନ୍ଦଙ୍କ ନିକଟକୁ ଯାହା ଲେଖିଥିଲେ, ତାହା ଉକ୍ତ ସେତୁବନ୍ଧର ପରିକଳ୍ପନାକୁ ବାସ୍ତବ ରୂପ ଦେଇଛି ।

ବୌଦ୍ଧଧର୍ମ ସାହିତ୍ୟରେ ବେଦାନ୍ତର ସ୍ପର୍ଶ ରହିଛି, ଏପରକି ବୌଦ୍ଧଧର୍ମର ମହାଯାନ ମାର୍ଗ ଇ ଅଦ୍ୱୈତବାଦ । ଅମର ସିଂହଙ୍କ ଭଳି ଜଣେ ବୌଦ୍ଧଧର୍ମାବଲମ୍ବୀ ବୁଦ୍ଧଙ୍କୁ କାହିଁକି ଅଦ୍ୱୈତବାଦୀ ବୋଲି ନାମକରଣ କରିଥିଲେ ? ଉପନିଷଦରେ ବ୍ରହ୍ମ ବୋଲି କୌଣସି ଶବ୍ଦ ନାହିଁ ବୋଲି ଚାରୁ ଲେଖିଛି ! ଏହା ଏକାବେଳକେ ନନ୍‌ସେନ୍ସ ! ଏଠାରେ ଚାରୁ - (ଚାରୁଚନ୍ଦ୍ର ଦାସ ଯିଏ ପରବର୍ତ୍ତୀ କାଳରେ ସ୍ୱାମୀ ଶୁଭାନନ୍ଦ ହୋଇଥିଲେ) । ସ୍ୱାମୀଜୀ ପୁନଶ୍ଚ ଏଠାରେ ସୂଚାଇ ଦେଉଛନ୍ତି ଯେ ବୌଦ୍ଧଧର୍ମର ଦୁଇଟି ଦର୍ଶନ ଭିତରୁ ମହାଯାନ ସବୁଠାରୁ ପ୍ରାଚୀନ । ମାୟା ସୂତ୍ର ବି ଋକ୍ ସଂହିତା ଭଳି ଅତି ପ୍ରାଚୀନ । ଶ୍ୱେତସାର ଉପନିଷଦରେ 'ମାୟା' ଶବ୍ଦ ରହିଛି ଯାହା ପ୍ରକୃତିରୁ ବିକାଶ ଲାଭ କରିଛି । ମୋ ମତରେ ବୌଦ୍ଧଧର୍ମଠାରୁ ଉପନିଷଦ ବେଶି ପ୍ରାଚୀନ ନୁହେଁ ।

ସ୍ୱାମୀଜୀ ଏଠାରେ ସ୍ୱୀକାର କରିଛନ୍ତି ଯେ ବୌଦ୍ଧଧର୍ମ ସମ୍ବନ୍ଧରେ ସେ ବିଳମ୍ବରେ ବହୁ ସତ୍ୟ ପାଇଛନ୍ତି ଯାହା ସେ ନିଜେ ପ୍ରମାଣ କରିବାକୁ ପ୍ରସ୍ତୁତ । ପ୍ରଥମତଃ - ବିଭିନ୍ନ ରୂପରେ ଶିବ ଉପାସନା ବୌଦ୍ଧଧର୍ମ ପୂର୍ବରୁ ପ୍ରଚଳିତ ଥିଲା, ବୌଦ୍ଧଧର୍ମାବଲମ୍ବୀମାନେ ପବିତ୍ର ଶୈବପୀଠକୁ ନିଜ ଅକ୍ତିଆରରେ ରଖିବାକୁ ଚେଷ୍ଟା କରିଥିଲେ, କିନ୍ତୁ ସେଥିରେ ସେମାନେ ବିଫଳ ହେବାରୁ, ବୁଦ୍ଧଗୟା ଓ ସାରନାଥ ଭଳି ପବିତ୍ର ସ୍ଥାନରେ ନୂତନ ଉପାସନା ପୀଠ ସ୍ଥାପନ କରିଥିଲେ । ଦ୍ୱିତୀୟରେ, ଅଗ୍ନିପୁରାଣରେ ଗୟାସୁର ସମ୍ବନ୍ଧରେ ବର୍ଣ୍ଣିତ କାହାଣୀ ବୁଦ୍ଧଙ୍କ କ୍ଷେତ୍ରରେ ଡକ୍ଟର ରାଜେନ୍ଦ୍ରଲାଲ ଉଲ୍ଲେଖ କରି ନାହାନ୍ତି ବରଂ ଏହାକୁ ଏକ ଅତୀତ-କାହାଣୀ ଭାବେ ଛାଡ଼ି ଦେଇଛନ୍ତି । ଯେହେତୁ ବୁଦ୍ଧ ଗୟାଶୀର୍ଷ ପର୍ବତକୁ ରହିବା ପାଇଁ ଯାଇଥିଲେ, ତେଣୁ ସେହି ସ୍ଥାନର ପୂର୍ବ ଅସ୍ତିତ୍ୱ ରହିଛି । ତୃତୀୟରେ ଗୟା ହେଉଛି ପୂର୍ବପୁରୁଷମାନଙ୍କର ଉପାସନାସ୍ଥଳୀ, ବୌଦ୍ଧଧର୍ମରେ ପ୍ରଚଳିତ ପାଦପୂଜା ହିନ୍ଦୁମାନଙ୍କଠାରୁ ଅନୁକରଣ ହୋଇଛି । ଚତୁର୍ଥରେ, ଶିବ-ଉପାସନା ପାଇଁ ବାରଣାସି ବୌଦ୍ଧଧର୍ମ ପୂର୍ବରୁ ଖ୍ୟାତି ଅର୍ଜନ କରିଥିଲା ଯାହା ସର୍ବ ପ୍ରମାଣିତ ।

ଏଭଳି ବହୁ ତଥ୍ୟ ମୁଁ ବୁଦ୍ଧଗୟା ଓ ବୌଦ୍ଧ ସାହିତ୍ୟରୁ ସଂଗ୍ରହ କରିଛି । ଏହିସବୁ ଶାସ୍ତ୍ର ଗଭୀରଭାବେ ପଢ଼ିବା ଲାଗି ତାକୁ କୁହ, ନିର୍ବୋଧ ମତଦାନରେ ସେ ଗୋଳେଇ ଘାଣ୍ଟି ନ ହେଉ । ବୌଦ୍ଧଧର୍ମ ଓ ଆଧୁନିକ ହିନ୍ଦୁଧର୍ମର ସଂପର୍କ ସମ୍ବନ୍ଧରେ ଏକ ବୈପ୍ଳବିକ ଚିନ୍ତାଧାରା ମୋ ମନରେ ବର୍ତ୍ତମାନ ପ୍ରବେଶ କରିଛି । ଏହିସବୁ ଲୋକଲୋଚନକୁ ଆଣିବା ପର୍ଯ୍ୟନ୍ତ ଦେହ ଧାରଣ ମୁଁ କରିପାରିବି ନାହିଁ । କିନ୍ତୁ ମୁଁ କେତେକ ଝଲକ ଛାଡ଼ି ଦେଇଯାଉଛି, ଯାହା ଉପରେ ତୁମେ ଓ ତୁମର ଭାଇମାନେ କିଛି କାର୍ଯ୍ୟ କରିପାରିବ ।

ସ୍ୱାମୀଜୀଙ୍କର ବିଚାରଧାରାରେ ଅନୁପ୍ରାଣିତ ହୋଇ ବାରଣାସିର କେତେଜଣ ଯୁବ ବଙ୍ଗାଳୀ ଚାରୁଚନ୍ଦ୍ର ଦାସ (ପରବର୍ତ୍ତୀ କାଳରେ ସ୍ୱାମୀ ଶୁଭାନନ୍ଦ), କେଦାରନାଥ ମଲ୍ଲିକ (ପରବର୍ତ୍ତୀ କାଳରେ ସ୍ୱାମୀ ଅଚଳାନନ୍ଦ) ଏବଂ ଯାମିନୀରଞ୍ଜନ ମଜୁମଦାରଙ୍କ ନେତୃତ୍ୱରେ ଏକ ସେବାଦଳ

Digitized by srujanika@gmail.com

ବାରଣାସିରେ ରହିଲେ । ତୀର୍ଥଯାତ୍ରାରେ ହଜାର ହଜାର ଲୋକ ବାରଣାସିରେ ପହଞ୍ଚି ଅସୁସ୍ଥ ହୋଇପଡୁଥିଲେ, କେତେକ ବୃଦ୍ଧ ଓ ବିଧବା ମହିଳା ଉପଯୁକ୍ତ ଖାଦ୍ୟପେୟ ଅଭାବରେ ଭଗ୍ନ ଓ ରୋଗଗ୍ରସ୍ତ ହୋଇ ରାସ୍ତାଘାଟରେ ପଡ଼ି ମୃତ୍ୟୁବରଣ କରୁଥିଲେ । ସେମାନଙ୍କର ସେବା, ଚିକିତ୍ସା ଓ ଖାଦ୍ୟପେୟ ଯୋଗାଇ ଦେବା ପାଇଁ ଏହି ଯୁବଦଳ ଏକ ଘର ଭଡ଼ା ନେଲେ ଏବଂ ନିଃସ୍ୱାର୍ଥ ଭାବରେ ସେମାନଙ୍କୁ ଉକ୍ତ ଗୃହରେ ଆଶ୍ରୟ ପ୍ରଦାନ କରି ସେବା ଶୁଶ୍ରୂଷାରେ ଲାଗିପଡ଼ିଲେ । ସେମାନଙ୍କ ଏତାଦୃଶ ଉତ୍ସାହ ପରିଲକ୍ଷିତ କରି ସ୍ୱାମୀଜୀ ଉତ୍‌ଫୁଲ୍ଲିତ ହୋଇ କହିଥିଲେ - ହେ ଯୁବଗଣ, ତୁମମାନଙ୍କ ପ୍ରତି ମୋର ପ୍ରେମ ଓ ଆଶୀର୍ବାଦ ସଦା ରହିବ । ସାହାସର ସହିତ ଅଗ୍ରସର ହୁଅ; ତୁମର ଏହି ଅପ୍ରତିହତ ଆକାଂକ୍ଷାରୁ ଜନ୍ମ ନେବ ମହାନ୍ କାର୍ଯ୍ୟ । ସ୍ୱାମୀଜୀଙ୍କର ଇଚ୍ଛାନୁସାରେ ଏହି ସଂଗଠନର ନାମକରଣ କରାଗଲା ''ରାମକୃଷ୍ଣ ସେବା କୁଟୀର'' ।

ପୁନାର ପ୍ରସିଦ୍ଧ ସମ୍ବାଦପତ୍ର ''ମରହଟ୍ଟା''ର ସମ୍ପାଦକ ତଥା ଉଚ୍ଚ ଶିକ୍ଷିତ ବିଦ୍ୱାନ ଶ୍ରୀ ନରସିଂହ ଚିନ୍ତାମଣି କେଲକର କୌଣସି କାର୍ଯ୍ୟରେ ସେତେବେଳେ ବାରଣାସି ଆସିଥିଲେ । ଯେତେବେଳେ ସେ ଜାଣିଲେ ଯେ ବିଶ୍ୱବିଖ୍ୟାତ ବିବେକାନନ୍ଦ ବାରଣାସିରେ ଅବସ୍ଥାନ କରୁଛନ୍ତି, ସେ ତତ୍‌କାଳ ଏକ ସନ୍ଧ୍ୟାରେ ସ୍ୱାମୀଜୀଙ୍କୁ ସାକ୍ଷାତ କରିବା ପାଇଁ ପହଞ୍ଚିଲେ । ସ୍ୱାମୀଜୀ ସେହିଦିନ ଥିଲେ ଖୁବ୍ ଅସୁସ୍ଥ ଓ ଶଯ୍ୟାଶାୟୀ । ଶ୍ରୀଯୁକ୍ତ କେଲକର ଚଟାଣରେ ବିସ୍ତାରିତ ଆସନରେ ବସିଲେ ଏବଂ ସ୍ୱାମୀଜୀ ଶୋଇରହି ତାଙ୍କ ସହ କଥାବାର୍ତ୍ତ ହେଲେ । ଚର୍ଚ୍ଚାର ବିଷୟ ଥିଲା ଭାରତର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାର ବିକାଶ । ସ୍ୱାମୀଜୀ ପ୍ରଥମେ ଧୀର ସ୍ୱରରେ କଥା କହୁଥିଲେ, କିନ୍ତୁ ଭାରତର ଦାରିଦ୍ର୍ୟ ଓ ଦେଶବାସୀଙ୍କର ନିର୍ଯ୍ୟାତନା ଓ ଦୁଃଖ ଆଡ଼କୁ ଯେତେବେଳେ ବିଷୟବସ୍ତୁ ମୁହାଁଇଲା, ସେତେବେଳେ ସ୍ୱାମୀଙ୍କର ସ୍ୱର କ୍ରମଶଃ ବର୍ଦ୍ଧିତ ହେବାକୁ ଲାଗିଲା, ଶେଷରେ ସୁପ୍ତ ସିଂହ ଉଠିପଡ଼ି ବିଛଣାରେ ବସି ଗର୍ଜିଉଠିଲେ :

''କୁହନ୍ତୁ ଅଜ୍ଞା, ଭାରତୀୟଙ୍କର ଏଭଳି ଅଧଃପତିତ ଓ ଦାରିଦ୍ର୍ୟ ଅବସ୍ଥା ଦେଖିବା ପାଇଁ ଅଧିକ କାଳ ବଞ୍ଚିବାର କି ଲାଭ ଅଛି ? ପ୍ରତ୍ୟେକ ମୁହୂର୍ତ୍ତରେ ସେମାନେ ନର୍କ ଯନ୍ତ୍ରଣା ଭୋଗ କରନ୍ତି, ଖାଲି ଜୀବନରକ୍ଷା ପାଇଁ କେବଳ ବଞ୍ଚିରହନ୍ତି, ଦିନରାତି ଅନାହାର, ଅପବାଦ ଓ ଦାରିଦ୍ର୍ୟର ଯନ୍ତ୍ରଣା ଭୋଗକରନ୍ତି, ସତେକି ଦିନରାତି ନର୍କର ହୁତାସନରେ ଦଗ୍ଧିଭୂତ, ଏପରି ହୀନିମାନ ଜୀବନ ଅପେକ୍ଷା ମୃତ୍ୟୁ ସେମାନଙ୍କ ପାଇଁ ଶ୍ରେୟସ୍କର । ପାଶ୍ଚାତ୍ୟ ଜଗତର ରାଜନୈତିକ ପଦ୍ଧତିର ଅନୁକରଣ ଆମକୁ ସେମତି କିଛି ଉପକାର ପ୍ରଦାନ କରିପାରିବ ନାହିଁ; କିନ୍ତୁ ଭାରତର ପାରମ୍ପରିକ ସଂସ୍କୃତିକୁ ଯଦି ପୁନରୁଦ୍ଧାର କରାଯାଇପାରନ୍ତା, ତେବେ କିଛି ସୁବିଧା ମିଳିପାରନ୍ତା । ଭାରତ ଧର୍ମ ମାଧ୍ୟମରେ ସାମାଜିକ ତଥା ଅନ୍ୟାନ୍ୟ ବିକାଶ କାର୍ଯ୍ୟ ସର୍ବଦା କରିଆସିଛି ।''

ଅବଶ୍ୟ ସ୍ୱାମୀଜୀଙ୍କର ଏତାଦୃଶ ବିଚାରଧାରା ଏକ ନୂତନ ଦିଗ ଆମପାଇଁ ସୃଷ୍ଟି କରିଛି । ସ୍ୱାମୀଜୀଙ୍କର ସେଦିନ ଆଲୋଚନାରେ ଅଂଶଗ୍ରହଣ କରି ଶ୍ରୀଯୁକ୍ତ କେଲେକର ଏଭଳି ପ୍ରଜ୍ୱଳିତ ହୋଇଥିଲେ, ପରବର୍ତ୍ତୀ କାଳରେ ସେ କହିଥିଲେ, ''ମୁଁ ଯଦି ଶ୍ରୀରାମକୃଷ୍ଣ ପରମହଂସଙ୍କୁ ଏକ ଅଦ୍ୱିତୀୟ ଦୀପ୍ତିମନ୍ତ ଆଲୋକ ସହ ତୁଳନା କରିବି, ତେବେ ମୁଁ କହିବି ଯେ ସ୍ୱାମୀ ବିବେକାନନ୍ଦ ସମଗ୍ର ମାନବଜାତିକୁ ଏହି ଆଲୋକ ସହାୟତାରେ ପ୍ରଜ୍ୱଳିତ କରାଇଥିଲେ ।

Digitized by srujanika@gmail.com

ଇତ୍ୟବସରରେ ଓକାକୁରାଙ୍କ ଭିତରେ ଘଟିଲା ଅପୂର୍ବ ପରିବର୍ତ୍ତନ । ସେ ଧୋତି ପରିଧାନ କରି ମୁଣ୍ଡରେ ବାନ୍ଧିଲେ ପଗଡ଼ି । ବୌଦ୍ଧଧର୍ମୀ ଓକାକୁରା ଶିବଭକ୍ତ ପାଲଟିଲେ ଏବଂ ବିଶ୍ୱନାଥଙ୍କୁ ଦର୍ଶନ କରି ପୂଜା ଆରାଧନା କଲେ । ତାଙ୍କର ବେଶଭୂଷା ଏପରି ଥିଲା ଯେ ନେପାଳ ରାଜ ପରିବାରର ଜଣେ ସଦସ୍ୟ ବୋଲି ସେଠିକାର ଜନତା ତାଙ୍କୁ ଭାବିବାକୁ ଲାଗିଲେ ।

ବାରଣାସି ଜଳବାୟୁରେ ସ୍ୱାମୀଜୀଙ୍କର ସ୍ୱାସ୍ଥ୍ୟର ପରିବର୍ତ୍ତନ ଘଟିବ ବୋଲି ଯେଉଁମାନେ ଭାବିଥିଲେ, ସେମାନଙ୍କର ଆଶା ନିରାଶାରେ ପରିଣତ ହେଲା । ସେ ପୁନଶ୍ଚ ଗୁରୁତର ଅସୁସ୍ଥ ହୋଇପଡ଼ିଲେ । ତିନିତିନି ଜଣ ସେବକ ତାଙ୍କୁ ରାତିସାରା ଉଜାଗର ହୋଇ ବିଞ୍ଚୁଥିଲେ ବି ତାଙ୍କ ଯନ୍ତ୍ରଣାରେ ଉପଶମ ହେଲାନାହିଁ । ସ୍ୱାମୀ ଶିବାନନ୍ଦଙ୍କୁ ଦିନେ ପାଖକୁ ଡାକି ସ୍ୱାମୀଜୀ କହିଲେ, "ତାରକ, (ସ୍ୱାମୀ ଶିବାନନ୍ଦଙ୍କର ପୂର୍ବାଶ୍ରମର ନାମ) ଏହି ରୋଗାକ୍ରାନ୍ତ ଶରୀରକୁ ଏଭଳି ଅବସ୍ଥାରେ ଆଉ କେତେଦିନ ରଖିପାରିବି ? ମୋର ଯଦି ଦେହାନ୍ତ ହୋଇଯିବ, ତେବେ ପରବାୟ ନାହିଁ, ନିବେଦିତା ଓ ଶଶି (ସ୍ୱାମୀ ରାମକୃଷ୍ଣାନନ୍ଦ) ଏବଂ ଅନ୍ୟମାନେ ସେମାନଙ୍କ ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ଠାକୁରଙ୍କ କାର୍ଯ୍ୟ କରିବେ । ସେମାନେ ସ୍ଥିତପ୍ରଜ୍ଞ ସମ କାର୍ଯ୍ୟ ନିର୍ବାହ କରିବେ । ସେମାନଙ୍କ ପ୍ରତି ମୋର ବିଶ୍ୱାସ ଅଛି ।"

ବାରଣାସିରେ ସ୍ୱାମୀଜୀ ଥିବା ସମୟରେ ଆମେରିକାରୁ ଶ୍ରୀମତୀ ଓଲେବୁଲ୍ ଓ ଭଗିନୀ ନିବେଦିତା ଫେବୃଆରୀ ୧୯୦୨ ପ୍ରଥମ ସପ୍ତାହରେ କଲିକତାରେ ପହଞ୍ଚିଲେ । ସ୍ୱାମୀଜୀ ବି ବାରଣାସିରେ ମାସେ କାଳ ରହି ବେଲୁଡ଼ ମଠ ଅଭିମୁଖେ ଯାତ୍ରା କଲେ ଏବଂ ମାର୍ଚ୍ଚ ଆଠ ତାରିଖରେ ମଠରେ ପହଞ୍ଚିଲେ ।



Digitized by srujanika@gmail.com

॥ ଚଉରାଳିଶ ॥

# ସ୍ୱାମୀଜୀଙ୍କ ବ୍ୟାଧିଗ୍ରସ୍ତ ଶରୀର କ୍ରମଶଃ ଭାଙ୍ଗିପଡୁଥିଲା - ଶ୍ରୀରାମକୃଷ୍ଣଙ୍କର ଦାୟିତ୍ୱ ସେ ସମ୍ପାଦନ କରିସାରିଲେଣି - ତାଙ୍କର ଯନ୍ତ୍ରଣାଗ୍ରସ୍ତ ମୁଖରୁ ଅଗ୍ନି ସ୍ଫୁଲିଙ୍ଗ ଭଳି କଥାଗୁଡ଼ାକ ବୁନ୍ଦ ବୁନ୍ଦ ହୋଇ ଝଡ଼ିପଡୁଥଲା - ସେ ନିଜ ରାଜ୍ୟକୁ ଫେରିଯିବାଲାଗି ପ୍ରବଳ ଆଗ୍ରହୀ

ବେଲୁଡ଼ ମଠର ଭୂମିକୁ ପରିଷ୍କାର ଓ ସମତଳ କରିବା ଲାଗି ଅନେକ ସାନ୍ତାଳ ଶ୍ରମିକ କାର୍ଯ୍ୟ କରୁଥିଲେ । ସେହି ନିରୀହ ଓ ଦରିଦ୍ର ଆଦିବାସୀଙ୍କର ଗତିବିଧିକୁ ସ୍ୱାମୀଜୀ ପ୍ରାୟ ଲକ୍ଷ୍ୟକରି ନିଜର ଭାବନା ରାଜ୍ୟ ଭିତରେ ବୁଡିଯାଉଥିଲେ । ଜୀବନକାଳରେ ବହୁ ଦେଶ ସେ ଭ୍ରମଣ କରିଛନ୍ତି, ବହୁ ଅନୁଭୂତିରେ ବି ଦୀପ୍ତିମନ୍ତ, ଆଧ୍ୟାତ୍ମିକ ଶୀର୍ଷ ଦେଶରେ ସେ ଉପନୀତ ହୋଇ ପରମ ଓ ଚରମ ସତ୍ୟର ଦର୍ଶନ କରିଛନ୍ତି, ଏଭଳି ଅନେକ ଦର୍ଶନ ଓ ଅନୁଭୂତିରେ ଶ୍ରେଷ୍ଠତ୍ୱ ଲାଭ କରିଛନ୍ତି, ତଥାପି ସେ ପୂର୍ଣ୍ଣତା ନିଜ ଭିତରେ ଅନୁଭବ କରିପାରୁ ନ ଥିଲେ । ମନୁଷ୍ୟର ଦାରିଦ୍ର୍ୟ, କଷ୍ଟ, ଦୁଃଖ ତାଙ୍କୁ ବାରମ୍ବାର ଆଘାତ ଦେଉଥିଲା । ସମସ୍ତ ଜ୍ଞାନ ଓ ଆଧ୍ୟାତ୍ମିକତା ସତେକି ତୁଚ୍ଛ ତାଙ୍କ ନିକଟରେ । ସ୍ୱାମୀଜୀ ବହୁ ସମୟ ଦୌଡ଼ିଯାଉଥିଲେ ସେହି ଅର୍ଦ୍ଧନଗ୍ନ ମେହନତି ମଣିଷଙ୍କ ପାଖକୁ ଏବଂ ସେମାନଙ୍କ ଦୁଃଖସୁଖର କାହାଣୀ ଭିତରେ ଏକବାର ହଜିଯାଉଥିଲେ । କୌଣସି ଧନିକ ବ୍ୟକ୍ତି କିମ୍ବା ସମାଜର ପ୍ରତିଷ୍ଠିତ ବ୍ୟକ୍ତି, କିମ୍ବା ଗୁରୁଭାଇ ସନ୍ନ୍ୟାସୀ ଓ ଗୃହସ୍ଥ ମଠରେ ପହଞ୍ଚି ତାଙ୍କ ସହ ସାକ୍ଷାତ ପାଇଁ ଘଣ୍ଟା ଘଣ୍ଟା ବସି ରହୁଥିଲେ ବି ସେ ସେମାନଙ୍କ ଗହଣରୁ ଆସିବା ପାଇଁ ଚାହୁଁ ନ ଥିଲେ । ବେଳେ ବେଳେ ବିରକ୍ତି ସ୍ୱରରେ କହୁଥିଲେ, ମୁଁ ସେମାନଙ୍କୁ ସାକ୍ଷାତ କରିବା ପାଇଁ ବର୍ତ୍ତମାନ ଯାଇପାରିବି ନାହିଁ, ମୁଁ ଏହି ନିସ୍ୱ, ଦରିଦ୍ର ଦୁଃଖୀଙ୍କ ମେଳରେ ବେଶ୍ ଶାନ୍ତିରେ ଅଛି ।

କାର୍ଯ୍ୟରତ ସାନ୍ତାଳ ଶ୍ରମିକମାନଙ୍କ ଭିତରୁ କେଷ୍ଟୋକୁ ସେ ଅତି ଭଲ ପାଉଥିଲେ । ତା'ସହ ସେ ବହୁ ସମୟ ଧରି କଥାବାର୍ତ୍ତା ହେଉଥିଲେ । ସାନ୍ତାଳ ମାନଙ୍କର ସମସ୍ୟାମାନ ତା'ଠାରୁ ସେ ବୁଝି ନେଉଥିଲେ । ନିଜ ମନ ଭିତରେ ସମସ୍ୟାଗୁଡ଼ିକର ନିରାକରଣ ସମ୍ବନ୍ଧରେ

Digitized by srujanika@gmail.com

ବହୁ ଚିନ୍ତାର ପାହାଡ଼ ସେ ଗଢ଼ି ପକାଉଥିଲେ । ଭାରତବର୍ଷର ଏହି ଆଦିମ ସନ୍ତାନଗଣଙ୍କୁ କିପରି ନ୍ୟାଯ୍ୟ ଅଧିକାର ମିଳିବ ଏବଂ ସେମାନେ କିପରି ମୁଣ୍ଡଟେକି ଏହି ସ୍ୱାର୍ଥପର ସମାଜରେ ଜୀବନଧାରଣ କରିବେ ? କିନ୍ତୁ କେଷ୍ଟୋ ସ୍ୱାମୀଜୀଙ୍କ ଚିନ୍ତାଧାରାକୁ ବୁଝିପାରୁ ନ ଥିଲା, ଅବଶ୍ୟ ସ୍ୱାମୀଜୀଙ୍କ ଭିତରେ ଉଠୁଥିବା ସମବେଦନାର ଉର୍ମିମାଳାରେ ସେ ଅବଗାହନ କରୁଥିଲା । ତଥାପି କାମ କରିବାଭିତରେ ସ୍ୱାମୀଜୀ ବାଧା ସୃଷ୍ଟି କରୁଥିବାରୁ, ମଜୁରି ଅଧିକ ନ ମିଳିବାର ସମ୍ଭାବନାର ଭୟ ତାକୁ ବାରମ୍ବାର ଶିହରିତ କରୁଥିଲା । ନିଜର ମନର କଥାକୁ ପ୍ରକାଶ କରି ଥରେ କହିଲା, ''ହଇଓ ସ୍ୱାମୀ, ଆମେ କାମ କରୁଥିବା ସମୟରେ ତୁମେ ଏଠାକୁ ଆସନାହିଁ, ତୁମ ସହ କଥାବାର୍ତ୍ତା ହେଲେ ଆମେ କାମ କରିପାରିବୁ ନାହିଁ, ଯାହାଫଳରେ ଆମ କାମର ମାପ କମିଯିବ ।

- ୧ -

*ଦେଖ ଏହି ସରଳ ହୃଦୟ ଓ ଅଶିକ୍ଷିତ ଗରିବମାନଙ୍କୁ । ଏହିମାନଙ୍କର ଦୁଃଖ ତୁମେ ସାମାନ୍ୟ ଦୂର କରିପାରିବ ? ଯଦି ପାରିବ ନାହିଁ, ତେବେ ଗୈରିକ ବସ୍ତ୍ର ପରିଧାନର ମୂଲ୍ୟ କ'ଣ ? ଅନ୍ୟମାନଙ୍କ ପାଇଁ ନିଜର ସବୁକିଛି ତ୍ୟାଗ କରିଦେବା ହିଁ ପ୍ରକୃତ ସନ୍ନ୍ୟାସ । ବେଳେବେଳେ ମୁଁ ଭାବେ, ମଠ ସମ୍ପତ୍ତି ଇତ୍ୟାଦି ନିର୍ମାଣ କରି ଲାଭ କ'ଣ ! ସେସବୁ ବିକ୍ରି କରି ଗରିବଙ୍କ ଭିତରେ କାହିଁକି ବାଣ୍ଟି ଦେବାନାହିଁ ? ଘର ଆମର କ'ଣ ଆବଶ୍ୟକ, ବୃକ୍ଷତଳେ ହିଁ ଆମର ଆଶ୍ରୟ ? ଆମର ଦେଶବାସୀଙ୍କୁ ଯେତେବେଳେ ଗଣ୍ଡିଏ ଖାଇବାକୁ ଓ ଖଣ୍ଡିଏ ପିନ୍ଧିବାକୁ ମିଳୁନାହିଁ, ଆମେ ନିଜ ପାଟିରେ କିପରି ଦାନାଟିଏ ପୂରାଇବା !*

ସ୍ୱାମୀଜୀଙ୍କର କାରୁଣ୍ୟ ହୃଦୟ ପ୍ରକମ୍ପିତ ହେଲା । ସେ ବ୍ୟର୍ଥ କଣ୍ଠରେ କହିଲେ, ''ହଁ ତୁମେମାନେ ବୋଧହୁଏ ସ୍ୱାମୀ ଅଦ୍ୱୈତାନନ୍ଦଙ୍କଠାରୁ ଗାଳି ଶୁଣୁଥିବ । ମୁଁ ତାଙ୍କୁ କହିଦେବି ସେ ତୁମକୁ ଆଉ ଗାଳିଦେବେ ନାହିଁ,'' ଏଠାରେ ଉଲ୍ଲେଖନୀୟ ଯେ ଶ୍ରୀରାମକୃଷ୍ଣଙ୍କର ପରମ ଭକ୍ତ ବୁଢ଼ା ଗୋପାଳ ଯିଏ ପରବର୍ତ୍ତୀ କାଳରେ ସ୍ୱାମୀ ଅଦ୍ୱୈତାନନ୍ଦ ହୋଇଥିଲେ ସେ ମଠର ନିର୍ମାଣ କାର୍ଯ୍ୟ ତଦାରଖ କରୁଥିଲେ । ସ୍ୱାମୀଜୀ ବେଳେ ବେଳେ ସେମାନଙ୍କର କରୁଣ କାହାଣୀ ଶୁଣି ପିଲାଙ୍କ ଭଳି କାନ୍ଦି ଉଠୁଥିଲେ, କିନ୍ତୁ କେଷ୍ଟୋ ତାଙ୍କ ଆଖିର ଲୁହ ଦେଖି କହିବ, ''ସ୍ୱାମୀ, ତୁମେ ଗଲ ଏଠୁ । ଆମେ କେବେବି ଆମର ଦୁଃଖ ତୁମକୁ କହିବୁ ନାହୁଁ । ଆମ କଥା ଶୁଣି ଖାଲି କାନ୍ଦିବ ।''

ରାଜା ହୋଇଥିଲେ ତ ସବୁ ଦେଇ ଦିଅନ୍ତେ । ଅନ୍ନ, ବସ୍ତ୍ର, ବାସର ବ୍ୟବସ୍ଥା ସାଙ୍ଗେ ସାଙ୍ଗେ କରି ଦେଇଥାନ୍ତେ । ସେ ଯେ କପର୍ଦ୍ଦକଶୂନ୍ୟ ସନ୍ନ୍ୟାସୀ । ତଥାପି ସେମାନଙ୍କୁ ପେଟ ପୂରାଇ ଭୋଜନ କରାଇବାର ଇଚ୍ଛା ତାଙ୍କ ମନରେ ଜାଗ୍ରତ ହେଲା । ଏକଦା ମଠ ପରିସରରେ ସେମାନଙ୍କ ନିମନ୍ତେ ସ୍ୱତନ୍ତ୍ର ଭୋଜି ସ୍ୱାମୀଜୀ ଆୟୋଜନ କଲେ - ପୁରି, ମିଠା, ସ୍ୱାଦପୂର୍ଣ୍ଣ ବ୍ୟଞ୍ଜନ, ବସାଦହି ପ୍ରଭୃତି । ସ୍ୱାମୀଜୀଙ୍କର ତତ୍ତ୍ୱାବଧାନରେ ସମସ୍ତ ସାନ୍ତାଳ ଶ୍ରମିକ ଭୋଜନ କଲେ । ତାଙ୍କର ମନ ଅବ୍ୟକ୍ତ

Digitized by srujanika@gmail.com

ଆନନ୍ଦରେ ଘୁମୁରି ଉଠିଲା । ସାନ୍ତାଳ ଶ୍ରମିକ ମାନେ ଖୁସିରେ ବିହ୍ୱଳିତ ହୋଇ କହିଉଠିଲେ, ହେ ସ୍ୱାମୀ, ଏଭଳି ସୁଆଦିଆ ଜିନିଷ କେଉଁଠୁ ଆଣିଲ ? ଆମେ ଜୀବନରେ କେବେ ଚାଖି ନ ଥିଲୁ ।'' ସେମାନେ ସିନା ସ୍ୱାଦପୂର୍ଣ୍ଣ ଭୋଜନ କରି ମୁହୂର୍ତ୍ତକ ପାଇଁ ଆନନ୍ଦରେ ଫାଟି ପଡ଼ିଲେ, କିନ୍ତୁ ସ୍ୱାମୀଜୀଙ୍କ ଛାତିଟା ବିଷାଦରେ ଫାଟି ପଡୁଥିଲା, ଏମାନଙ୍କୁ ସବୁଦିନେ କିଏ ଏଭଳି ଖାଦ୍ୟ ଖୁଆନ୍ତା କି ! ଏମାନଙ୍କ ମୁହଁରେ ଏଭଳି ସନ୍ତୋଷର ଚିହ୍ନ ସବୁଦିନ ଉଙ୍କି ମାରନ୍ତା କି ! ହେ ନାରାୟଣ, ଏହି ନିଷ୍ପାପ ହୃଦୟୀ ଓ ନିରୀହ ମଣିଷ ଭିତରେ ତୁମେ ତ ବିରାଜିତ ।

ଏତାଦୃଶ ଭୋଜନ ବ୍ୟବସ୍ଥାର ସମାପ୍ତି ଘଟିବାର କିୟତ୍ ଦିବସ ଅନ୍ତେ ମଠର ସନ୍ୟାସୀ ଓ ବ୍ରହ୍ମଚାରୀମାନଙ୍କୁ ଡକାଇ ସ୍ୱାମୀଜୀ ଅତି ସ୍ପଷ୍ଟ ଭାଷାରେ କହିଥିଲେ - ଦେଖ ଏହି ସରଳ ହୃଦୟ ଓ ଅଶିକ୍ଷିତ ଗରିବମାନଙ୍କୁ । ଏହିମାନଙ୍କର ଦୁଃଖ ତୁମେ ସାମାନ୍ୟ ଦୂର କରିପାରିବ ? ଯଦି ପାରିବ ନାହିଁ, ତେବେ ଗୈରିକ ବସ୍ତ୍ର ପରିଧାନର ମୂଲ୍ୟ କ'ଣ ? ଅନ୍ୟମାନଙ୍କ ପାଇଁ ନିଜର ସବୁକିଛି ତ୍ୟାଗ କରିଦେବା ହିଁ ପ୍ରକୃତ ସନ୍ୟାସ । ବେଳେବେଳେ ମୁଁ ଭାବେ, ମଠ ସମ୍ପତ୍ତି ଇତ୍ୟାଦି ନିର୍ମାଣ କରି ଲାଭ କ'ଣ ! ସେସବୁ ବିକ୍ରି କରି ଗରିବଙ୍କ ଭିତରେ କାହିଁକି ବାଣ୍ଟି ଦେବାନାହିଁ ? ଘର ଆମର କ'ଣ ଆବଶ୍ୟକ, ବୃକ୍ଷତଳେ ହିଁ ଆମର ଆଶ୍ରୟ ? ଆମର ଦେଶବାସୀଙ୍କୁ ଯେତେବେଳେ ଗଣ୍ଡିଏ ଖାଇବାକୁ ଓ ଖଣ୍ଡିଏ ପିନ୍ଧିବାକୁ ମିଳୁନାହିଁ, ଆମେ ନିଜ ପାଟିରେ କିପରି ଦାନାଟିଏ ପୂରାଇବା ! ନିଜର ବ୍ୟକ୍ତିଗତ ମୁକ୍ତି ଲାଗି ଆମର ଶିକ୍ଷା ଓ ଶାସ୍ତ୍ର ଅଧ୍ୟୟନ ଏବଂ ସମସ୍ତ ଆଧ୍ୟାତ୍ମିକ ସାଧନାର ଗର୍ବ ଓ ଅହଂକାର ତ୍ୟାଗ କରି, ଚାଲ ଦ୍ୱାର ଦ୍ୱାର ବୁଲି ଗରିବ ଓ ନିଃସ୍ୱମାନଙ୍କର ସେବା କରିବା । ଆସ, ଆମେ ନିଜର ଚରିତ୍ର ଓ ଆଧ୍ୟାତ୍ମିକତା ବଳରେ, ଧନୀ ଓ ପ୍ରାଚୁର୍ଯ୍ୟଶାଳୀଙ୍କୁ ସେମାନଙ୍କର କର୍ତ୍ତବ୍ୟ ପ୍ରତି ସଚେତନ କରିବା ଯଦ୍ୱାରା ଗରିବ ଓ ନିଷ୍ପେଷିତଙ୍କ ସେବା ନିମନ୍ତେ ସେମାନେ ଅର୍ଥ ଦାନ କରିପାରିବେ । ହେ ଭଗବାନ, ଆମ ଦେଶର କେହି ବି ନୀଚ, ଗରିବ ଓ ନିଷ୍ପେଷିତଙ୍କ ପାଇଁ ଚିନ୍ତା କରନ୍ତି ନାହିଁ ! ଯେଉଁମାନେ ନିଜର ଶ୍ରମ ଦେଇ ଖାଦ୍ୟ ଉତ୍ପାଦନ କରନ୍ତି, ସେମାନେ ହିଁ ଆମ ଦେଶର ମେରୁଦଣ୍ଡ ।

- ୨ -

*କୋଟି କୋଟି ଭାରତୀୟଙ୍କର ଆର୍ଥିକ ଓ ସାମାଜିକ ଅବସ୍ଥାରେ ଉନ୍ନତି ନ ଘଟିଲେ, ରାଜନୈତିକ ସ୍ୱାଧୀନତାର ଲାଭ କ'ଣ ? ସେଭଳି ଏକ ସ୍ୱାଧୀନ ରାଷ୍ଟ୍ରରେ ଆହୁରି ଭୟଙ୍କର ଦାରିଦ୍ର୍ୟ ଓ ସାମାଜିକ ଅସମାନତା ଦେଖାଦେବ । ବିଶ୍ୱରେ ଭାରତ ଏଭଳି ଏକ ରାଷ୍ଟ୍ର ଯାହାର ପୃଷ୍ଠଭୂମି ଧର୍ମ । ଧର୍ମକୁ ହତାଦାର କରି ଭାରତ କେବେ ବି ସମାନତା ଆଡ଼କୁ ଅଗ୍ରସର ହୋଇପାରିବ ନାହିଁ ।*

କାହାଁନ୍ତି ଲୋକ ଆମ ଦେଶରେ ଯେଉଁମାନେ ଗରିବ ଓ ନିଃସ୍ୱମାନଙ୍କ ପ୍ରତି ସମ୍ବେଦନଶୀଳ ଏବଂ ସେମାନଙ୍କ ଦୁଃଖ ଓ ସୁଖରେ ସାଥୀ ହୋଇପାରିବେ ? ଦେଖ, ହିନ୍ଦୁମାନଙ୍କର ସମବେଦନାର

Digitized by srujanika@gmail.com

ଅଭାବ ଯୋଗୁଁ, ମାନ୍ଦ୍ରାସ ପ୍ରେସିଡ଼େନ୍ସୀର ହଜାର ହଜାର ମେହେନ୍ତର କିପରି ଖ୍ରୀଷ୍ଟିଆନ ହୋଇଯାଉଛନ୍ତି ? ଭାବ ନାହିଁ ଯେ କ୍ଷୁଧାର ତାଡ଼ନାରେ ସେମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଛନ୍ତି ? ଆମର ସମବେଦନା ପାଉନାହାନ୍ତି ବୋଲି ସେମାନେ ଧର୍ମାନ୍ତରିତ ହେଉଛନ୍ତି । ଆମ ଦେଶରେ ଭ୍ରାତୃତ୍ୱ-ଭାବ କିମ୍ବା ଦାନଧର୍ମର ମନୋଭାବ ଅଛି କି ? କେବଳ ବର୍ତ୍ତମାନ 'ଛୁଅନାହିଁ' ରହିଛି । ଏଭଳି ଅଧୋଗାମୀ ପ୍ରଥାକୁ ହଟାଅ ! ଛୁଅନାହିଁର ପ୍ରତିବନ୍ଧକୁ ମୁଁ ଭାଙ୍ଗି ଚୂରମାର କରିଦେବାକୁ ଚାହେଁ ଏବଂ ଏଥିରୁ ବାହାରି ଯାଇ ସମସ୍ତଙ୍କୁ ଡାକି କହିବି, ''ହେ ମୋର ନିସ୍ୱ, ଦରିଦ୍ର, ହତଭାଗ୍ୟ, ପତିତ ଓ ନିଷ୍ପେଷିତ ସମସ୍ତେ ଆସ । ଶ୍ରୀରାମକୃଷ୍ଣଙ୍କ ନାଁରେ ଆମେ ଏକ ! ସେମାନେ ଯେପର୍ଯ୍ୟନ୍ତ ଉଠି ନାହାଁନ୍ତି, ଆମର ମାତୃଭୂମି କେବେ ବି ଜାଗ୍ରତ ହୋଇପାରିବ ନାହିଁ ।

ସେମାନଙ୍କୁ ଯଦି ଖାଦ୍ୟ ଓ ବସ୍ତ୍ର ନ ଦେଇପାରିବା ଆମର କି ମଙ୍ଗଳ ହେବ ? ହାୟ, ସେମାନଙ୍କୁ ସଂସାରର ପଥ ଜଣାନାହିଁ, ସେଥିପାଇଁ ଦିନରାତି କଠିଣ ପରିଶ୍ରମ କରି ମଧ୍ୟ ଭଲଭାବେ ଜୀବନ ନିର୍ବାହ କରିପାରୁ ନାହାନ୍ତି । ତୁମର ସମସ୍ତ ଶକ୍ତି ବିନିଯୋଗ କରି ସେମାନଙ୍କର ଅନ୍ଧପୁଟୁଳି ଖୋଲିଦିଅ । ମୋ ଭିତରେ ବିରାଜିତ ସେହି ବ୍ରହ୍ମ ଓ ସେହି ଶକ୍ତିକୁ ମୁଁ ଦିବାଲୋକ ଭଳି ସେମାନଙ୍କ ଭିତରେ ଦେଖିପାରୁଛି । କେବଳ ପ୍ରକାଶର ପାର୍ଥକ୍ୟ ରହିଛି, ବାସ୍ ଏତିକି । ବିଶ୍ୱର ସମଗ୍ର ଇତିହାସରେ, ଗୋଟିଏ ରାଷ୍ଟ୍ରର ସମଗ୍ର ଶରୀରରେ ମୁକ୍ତ ରକ୍ତ ପ୍ରବାହିତ ନ ହୋଇ କୌଣସି ଦେଶ ଉତ୍ଥାନ ହେବାର ଦେଖିଛ କି ? ଗୋଟିଏ ଅଙ୍ଗ ଯଦି ପକ୍ଷଘାତ ହୁଏ, ଅଥଚ ଅନ୍ୟ ଅଙ୍ଗ ସମୂହ ଯଦି ଭଲଥାଏ, ତେବେ ଶରୀର ପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇପାରିବ ନାହିଁ ବୋଲି ତୁମେମାନେ ଜାଣିରଖ ।''

ଏଭଳି ହୃଦୟସ୍ପର୍ଶୀ ଭାଷା ସୂଚାଇ ଦିଏ ସ୍ୱାମୀଜୀଙ୍କର ଅଖଣ୍ଡ ବିଶ୍ୱାସ । ତାଙ୍କର ବିଶ୍ୱାସ ଥିଲା ଯେ ଯଦି ଜଣେ ବ୍ୟକ୍ତି ଭାରତର ହତଭାଗ୍ୟ, ଗରିବ, ଅତ୍ୟାଚାରିତ, ଅଜ୍ଞ, କ୍ଷୁଧିତ, କଳହପ୍ରିୟ ଓ ଈର୍ଷାନ୍ୱିତ ମଣିଷ ପ୍ରତି ବାସ୍ତବ ପ୍ରେମ ପ୍ରଦର୍ଶନ କରେ, ଭାରତ ନିଶ୍ଚୟ ପୁନର୍ବାର ଜୀବନ୍ତ ହୋଇଉଠିବ । ଏଭଳି ମଣିଷ ଶହ ଶହ ସଂଖ୍ୟାରେ ସେ ଆବଶ୍ୟକ କରୁଥିଲେ ଯେଉଁମାନଙ୍କର ହୃଦୟ ହୋଇଥିବ ବିଶାଳ ଏବଂ ଯେଉଁମାନେ ନିଜର ସମସ୍ତ ପ୍ରକାର କାମନା ତଥା ସୁଖସ୍ୱାଚ୍ଛ୍ୟନ୍ଦ ତ୍ୟାଗ କରି ଏହି ଗରିବମାନଙ୍କୁ ଦାରିଦ୍ର୍ୟ ଓ ନିର୍ଯ୍ୟାତନାରୁ ଉଦ୍ଧାର କରିବା କାର୍ଯ୍ୟରେ ଲାଗି ପଡ଼ିବେ । ନିଜ ଜନ୍ମ ଭୂମି ପ୍ରତି ଥିଲା ତାଙ୍କର ଅସୀମ ପ୍ରେମ ଯାହାଫଳରେ ସେ ଧର୍ମର ସମସ୍ତ ପ୍ରତିବନ୍ଧ ଡେଇଁ ମାନବତାର ସେବା କରିବା ଲାଗି ଉଚ୍ଛନ୍ନ ହୋଇପଡୁଥିଲେ । ଗୈରିକ ବସ୍ତ୍ର ପରିଧାନ କରି, ମଠରେ ବସି ନିଜର ମୁକ୍ତିପାଇଁ ଜପ ତପ କରିବାର ଲକ୍ଷ୍ୟ ସନ୍ନ୍ୟାସୀର ନୁହେଁ ବରଂ ନିଃସ୍ୱ ଦରିଦ୍ର ଶ୍ରମିକ ମୁହଁରେ ହସ ଫୁଟାଇବା ହିଁ ପ୍ରକୃତ ଧର୍ମ ।

ସ୍ୱାମୀଜୀ ଅଙ୍ଗେ ନିଭାଇଛନ୍ତି କୌଣସି ବିପ୍ଲବ, ବିଦ୍ରୋହ, ରାଜନୈତିକ ହେଉ କିମ୍ବା ସାମାଜିକ ଓ ଅର୍ଥନୈତିକ ହେଉ କିମ୍ବା ସଂସ୍କାରମୂଳକ ହେଉ, ତାହା ମାନବ ସମାଜରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା କରିପାରିବ ନାହିଁ । ମାନବସମାଜ ବହୁ ତତ୍ତ୍ୱ, ମତ, ସିଦ୍ଧାନ୍ତ ଦ୍ୱାରା ଚାଳିତ ବିପ୍ଳବ

Digitized by srujanika@gmail.com

ଆବହମାନ କାଳରୁ ଦେଖିଆସୁଛି, କିନ୍ତୁ ସେସବୁ ମାନବସମାଜ ଭିତରେ ଚିରସ୍ଥାୟୀ ଐକ୍ୟ ପ୍ରତିଷ୍ଠା କରିବାପେକ୍ଷା ବହୁ କଳହ ଓ ସଂଘର୍ଷ ସୃଷ୍ଟି କରିଛି । ସେଥିପାଇଁ ଭାରତୀୟ ଜାତୀୟ କଂଗ୍ରେସ ନେତାଙ୍କ ସହ ରାଜନୀତି ସମ୍ବନ୍ଧରେ କଥାବାର୍ତ୍ତା କରି ନ ଥିଲେ, କିମ୍ବା କୌଣସି ସମାଜବାଦୀ ଓ ସମାଜ ସଂସ୍କାରକମାନଙ୍କର ସିଦ୍ଧାନ୍ତକୁ ସେ ଗ୍ରହଣ କରି ନ ଥିଲେ । ସଂସ୍କୃତ ଭାଷାର ପ୍ରଚଳନ ପାଇଁ ଶିକ୍ଷାନୁଷ୍ଠାନର ପ୍ରତିଷ୍ଠା ଓ ବେଦ, ଉପନିଷଦ ଓ ବେଦାନ୍ତର ଶିକ୍ଷା ସମସ୍ତଙ୍କ ନିମନ୍ତେ ଉନ୍ମୁକ୍ତ କରିବା ପାଇଁ ସେ ପରାମର୍ଶ ଦେଇଥିଲେ । କାରଣ ଏହି ଶାସ୍ତ୍ର କୌଣସି ଏକ ନିର୍ଦ୍ଦିଷ୍ଟ ମାର୍ଗରେ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟକୁ ପରିଚାଳିତ କରିବାର କଥା କହେନାହିଁ, ବରଂ ସମଗ୍ର ମଣିଷର ସ୍ୱରୂପକୁ ଚିହ୍ନିବାରେ ସହାୟତା କରିଥାଏ ।

ମନୁଷ୍ୟ ଯେତେବେଳେ ନିଜକୁ ଚିହ୍ନିବାର ପ୍ରକ୍ରିୟା ଭିତରେ ସାମିଲ କରିଦେବ, ସେତେବେଳେ ସମଗ୍ର ମାନବ ଭିତରେ ଏକ ବ୍ରହ୍ମର ବିଦ୍ୟମାନତାକୁ ବୁଝିପାରିବ । କିଛିଲୋକ ବୁଝିବେ ଆଉ କିଛିଲୋକ ବୁଝିବେ ନାହିଁର ସ୍ଥିତି ଯେତେଦିନ ପର୍ଯ୍ୟନ୍ତ ଚାଲିଥିବ, ତେବେ ସ୍ଥାୟୀ ଶାନ୍ତି ଓ ସହାବସ୍ଥାନ ଆସିବ କେଉଁଠୁ ? କୋଟି କୋଟି ଭାରତୀୟଙ୍କର ଆର୍ଥିକ ଓ ସାମାଜିକ ଅବସ୍ଥାରେ ଉନ୍ନତି ନ ଘଟିଲେ, ରାଜନୈତିକ ସ୍ୱାଧୀନତାର ଲାଭ କ'ଣ ? ସେଭଳି ଏକ ସ୍ୱାଧୀନ ରାଷ୍ଟ୍ରରେ ଆହୁରି ଭୟଙ୍କର ଦାରିଦ୍ର୍ୟ ଓ ସାମାଜିକ ଅସମାନତା ଦେଖାଦେବ । ବିଶ୍ୱରେ ଭାରତ ଏଭଳି ଏକ ରାଷ୍ଟ୍ର ଯାହାର ପୃଷ୍ଠଭୂମି ଧର୍ମ । ଧର୍ମକୁ ହତାଦାର କରି ଭାରତ କେବେ ବି ସମାନତା ଆଡ଼କୁ ଅଗ୍ରସର ହୋଇପାରିବ ନାହିଁ । ଅବଶ୍ୟ କାର୍ଲମାକ୍ସ ଏବଂ ହେଗେଲଙ୍କର ସମାଜବାଦର ଶ୍ରେଣୀ ସଂଘର୍ଷ ଓ ଶ୍ରେଣୀ ମାନସିକତା ସମ୍ବନ୍ଧରେ ସ୍ୱାମୀଜୀ କିଛି କହି ନ ଥିଲେ ମଧ୍ୟ ପାଶ୍ଚାତ୍ୟ ଜଗତର ପୁଞ୍ଜିବାଦ ଓ ଭୋଟ ମାଧ୍ୟମରେ ନିର୍ବାଚନ ଓ ଗଣତନ୍ତ୍ର ପ୍ରତିଷ୍ଠା ଭିତରେ ପ୍ରଚ୍ଛନ୍ନ ବିକଟତା ଓ ପାଷାଣ୍ଡତା ସେ ନିଜ ମାନସ ଦର୍ଶନରେ ଦେଖିପାରି ଥିଲେ । ପାଶ୍ଚାତ୍ୟର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଅଗ୍ରଗତିକୁ ସେ ପ୍ରଶଂସା କରିଥିଲେ କିନ୍ତୁ ସେମାନଙ୍କର ରାଜନୈତିକ ପ୍ରଣାଳୀ ଯେ ଭାରତବର୍ଷ ପାଇଁ କ୍ଷତିକାରକ ହେବ ସେ ଜାଣିପାରିଥିଲେ । କାହିଁକିନା ସେହି ପଦ୍ଧତି ଭାରତଭୂମିରେ ରୋପିତ ହେଲେ, କିମ୍ଭୂତକିମାକାର ରୂପ ଗଣତନ୍ତ୍ର ଗ୍ରହଣ କରିବ ଯେଉଁଥିରେ ଅର୍ଥବଳ, ବାହୁବଳ ଏବଂ ଏକଛତ୍ରବାଦ ମୁଣ୍ଡ ଟେକିବ ।

ସ୍ୱାମୀଜୀ ପୁନଶ୍ଚ କହନ୍ତି - ଅବଶ୍ୟ ପାଶ୍ଚାତ୍ୟ ଜଗତରେ ସାଧାରଣ ଜନତା ଯେପରି ଭୋଟ ଓ ବେଲଟ୍ ମାଧ୍ୟମରେ ଶିକ୍ଷାର ସୁଯୋଗ ପାଆନ୍ତି, ଆମ ଦେଶରେ ଜନତା ସେପରି ପାଆନ୍ତି ନାହିଁ । କିନ୍ତୁ ଅନ୍ୟପକ୍ଷରେ ୟୁରୋପୀୟ ଦେଶମାନଙ୍କରେ କେତେକ ରାଜନୈତିକ ଲୋକ ଯେପରି ସେମାନଙ୍କର ଜନତାକୁ ଲୁଟନ୍ତି ଓ ରକ୍ତଶୋଷଣ କରି ମୋଟା ହୁଅନ୍ତି, ସେପରି ଘଟଣା ଯାହାହେଉ ଆମ ଦେଶରେ ଦେଖାଯାଏ ନାହିଁ । ଏତାଦୃଶ ରାଜନୈତିକ ବ୍ୟକ୍ତିଙ୍କର ପର୍ଦ୍ଦା ଅନ୍ତରାଳେ ଶୋଷଣର ଦୃଶ୍ୟ - ଦୁର୍ନୀତିର ଆମୋଦ ପ୍ରମୋଦ, ଦିବାଲୋକରେ ସେମାନଙ୍କର ଲୁଟ୍‌ତରାଜ ଏବଂ ମନୁଷ୍ୟ ଭିତରେ ରାକ୍ଷସର ନୃତ୍ୟ ଯାହା ଏହିସବୁ କାର୍ଯ୍ୟରେ ସଂଘଟିତ ହେଉଛି,

Digitized by srujanika@gmail.com

ତୁମେ ଯଦି ବନ୍ଧୁ ଦେଖିବ ତାହାଲେ ମନୁଷ୍ୟ ପାଇଁ ତୁମେ ନୈରାଶ୍ୟ ସାଗରରେ ବୁଡିଯିବ । ଯେଉଁଠାରେ ଦୁଧ ଠୋପାଏ ଦୁଆର ଦୁଆର ବୁଲିଲେ ମିଳେନାହିଁ, ଅଥଚ ସେଠାରେ ମଦ ଦୋକାନରେ ଲୋକଙ୍କର ଭିଡ଼ ଜମିଥାଏ । ଯେଉଁଠି ନାରୀ ନିଜର ଲଜ୍ଜା ନିବାରଣ ପାଇଁ ବସ୍ତ୍ରଟିଏ କ୍ରୟ କରବା ଲାଗି କ୍ୱଚିତ ଅର୍ଥ ପାଏ, ଅଥଚ ସେଠାରେ ସହରର ନାରୀ ବହୁ ମୂଲ୍ୟବାନ ଅଳଙ୍କାର ପରିଧାନ କରି ଇତସ୍ତତଃ ପଦଚାରଣ କରନ୍ତି । ଯେଉଁମାନଙ୍କ ପାଖରେ ଅର୍ଥବଳ ରହିଛି, ସେମାନେ ସରକାରକୁ ନିଜ ହାତ ମୁଠାରେ ରଖି ଜନସାଧାରଣଙ୍କୁ ଲୁଟନ୍ତି ଏବଂ ସେମାନଙ୍କୁ ବିଦେଶୀ ଭୂମିକୁ ସୈନିକ ଭାବେ ମରିବା ଲାଗି ପଠାନ୍ତି । ଯଦି ସେମାନଙ୍କର ବିଜୟ ହୁଏ, ତେବେ ଏହି ହତଭାଗ୍ୟ ମୃତ ସୈନିକଗଣଙ୍କ ପାଇଁ ସୁନାର କଫିନ ତିଆରି କରି କବର ଦିଆଯାଏ । ଏହି ସୁନା ପରାଜିତ ଦେଶର ପ୍ରଜାଙ୍କ ରକ୍ତରୁ ସେମାନେ କ୍ରୟ କରନ୍ତି । ଏବଂ ଏହି ପ୍ରଜାଗଣ ? ହଁ ସେମାନେ କେବଳ ରକ୍ତ ଝରାଇବେ । ଏହା ହିଁ ରାଜନୀତି । ହତବାକ୍ ହୁଅନାହିଁ ମୋର ବନ୍ଧୁଗଣ; ଏହାର କୁଜ୍ଝଟିକା ଭିତରେ ହଜିଯାଅ ନାହିଁ ବନ୍ଧୁ ।

- ୩ -

*କୌଣସି କାର୍ଯ୍ୟକୁ ଯଦି ତୁମେ କଷ୍ଟକର ବ୍ୟାପାର ବୋଲି ଭାବୁଛ, ଏଠାକୁ ପୁନର୍ବାର ଆସିବ ନାହିଁ । ଈଶ୍ୱରଙ୍କ କୃପା ମାଧ୍ୟମରେ ସମସ୍ତ କାର୍ଯ୍ୟ ସଫଳତା ଲାଭ କରେ । ଜାତି ଓ ଧର୍ମ ନିର୍ବିଶେଷରେ ଗରିବ ଓ ପ୍ରପୀଡ଼ିତଙ୍କର ସେବା କରିବା ତୁମର କର୍ତ୍ତବ୍ୟ । ନିଜ କର୍ମର ପରିଣାମ ପାଇଁ ଏତେ ଚିନ୍ତା କରିବା କ'ଣ ଦରକାର ? ତୁମର କର୍ତ୍ତବ୍ୟ ହେଲା କେବଳ କାମ କରିଚାଲ, ଫଳ ଆପେ ଆପେ ଅନୁଧାବନ କରିବ । ଗଠନ କରିବା ମୋର କାର୍ଯ୍ୟ କିନ୍ତୁ ଯାହା ରହିଛି, ତାକୁ ଧ୍ୱଂସ କରିବା ମୋର କାର୍ଯ୍ୟର ଧାରା ନୁହେଁ ।*

ସୁତରାଂ ସ୍ୱାମୀଜୀ ପାଶ୍ଚାତ୍ୟ ଜଗତର ପୁଞ୍ଜିବାଦ ଅର୍ଥନୀତି ଓ ରାଜନୀତି, କାର୍ଲମାର୍କ୍ସଙ୍କର ସମାଜବାଦ ଓ ଶ୍ରେଣୀ ସଂଘର୍ଷ, ହିଗେଲଙ୍କର ଦ୍ୱନ୍ଦାତ୍ମକ ବସ୍ତୁବାଦ ପ୍ରତି ଦୃଷ୍ଟିପାତ ନ କରି ବେଦାନ୍ତ ମାର୍ଗ ମାଧ୍ୟମରେ ଗଣତନ୍ତ୍ର ପ୍ରତିଷ୍ଠା କରିବାର ସ୍ୱପ୍ନ ଦେଖିଥିଲେ । ଯେଉଁ ଧର୍ମକଥା ସେ କହୁଛନ୍ତି, ତାହା ପ୍ରଚଳିତ ଧର୍ମର ପରିଭାଷାରେ ସୀମିତ ନୁହେଁ ବରଂ ଆତ୍ମୋପଲବ୍ଧି ହିଁ ଧର୍ମର ଯଥାର୍ଥ ରୂପ ବୋଲି ସେ କହିଛନ୍ତି । ଆଧ୍ୟାତ୍ମିକ ବେଦାନ୍ତ ମନୁଷ୍ୟ ଭିତରେ ଖୋଲିଦିଏ ଆତ୍ମ ଉପଲବ୍ଧିର ମାର୍ଗ କିନ୍ତୁ ବସ୍ତୁବାଦ ଓ ସାଂଗଠନିକ ଧର୍ମ ନୁହେଁ । ଆମେରିକାର ବୃକ୍‌ଲିନ୍ ଏଥିକାଲ ସୋସାଇଟିରେ ସେ ସ୍ପଷ୍ଟ ଭାବରେ କହିଥିଲେ "ମୋ ମତରେ, ବାହ୍ୟ ଜଗତ ଏବଂ ଆମ ମାନସିକ ଇନ୍ଦ୍ରିୟାନୁଭୂତି ପଶ୍ଚାତରେ ରହିଛି ଏକ ଅସ୍ତିତ୍ୱ । ସମସ୍ତ ସୃଷ୍ଟି ଆଧ୍ୟାତ୍ମିକ ବିବର୍ତ୍ତନ ନିୟମାନୁସାରେ ଗତିଶୀଳ କିନ୍ତୁ ଏହା ବସ୍ତୁର ବିବର୍ତ୍ତନଠାରୁ ପୃଥକ । ଏହି ବସ୍ତୁର ବିବର୍ତ୍ତନ ଏକ

Digitized by srujanika@gmail.com

ପ୍ରତୀକ, ଏହା ଆଧାତ୍ମିକ ବିବର୍ତ୍ତନ ବ୍ୟାଖ୍ୟା କରିପାରେ ନାହିଁ । ବର୍ତ୍ତମାନର ଆମର ସାଂସାରିକ ପରିବେଶ ଭିତରେ ଆମେ ବର୍ତ୍ତମାନ ବ୍ୟକ୍ତି ନୁହଁନ୍ତି । ଯେପର୍ଯ୍ୟନ୍ତ ଆମେ ଉଚ୍ଚତର ଅବସ୍ଥାରେ ନ ପହଞ୍ଚୁଛନ୍ତି, ଆମେ ଆମର ବ୍ୟକ୍ତିତ୍ୱ ନିକଟରେ ପହଞ୍ଚି ପାରିବା ନାହିଁ । ଆମ ଭିତରେ ଯେଉଁ ଦିବ୍ୟ ସତ୍ତା ବିରାଜିତ, ତାହା ଯେତେବେଳେ ଏକ ଶୁଦ୍ଧ ମାଧ୍ୟମ ପାଇଯିବ, ସେତେବେଳେ ଏହାର ପ୍ରକୃତ ସ୍ୱରୂପ ପ୍ରକଟିତ ହେବ ।

ସ୍ୱାମୀଜୀଙ୍କର ଉପରୋକ୍ତ ମନ୍ତବ୍ୟର ତାତ୍ପର୍ଯ୍ୟ ହେଉଛି ଯେତେବେଳେ ନିଜର ସ୍ୱରୂପ ସହ ମୁହାଁମୁହିଁ ଭେଟ ହୋଇଯିବ, ସେତେବେଳେ ସେ ଏକ ପୂର୍ଣ୍ଣ ମାନବରେ ହେବ ରୂପାନ୍ତରିତ ଅର୍ଥାତ୍ ପୂର୍ଣ୍ଣ ମାନବ ଭିତରେ ଖଣ୍ଡବିଖଣ୍ଡିତ ଚିନ୍ତାଧାରା ଏବଂ ପକ୍ଷପାତିତା ବିଚାରଧାରାର ପରିସମାପ୍ତି ଘଟିବ । ସମାଜରେ ଏଭଳି ମନୁଷ୍ୟମାନଙ୍କର ସଂଖ୍ୟା ବଢ଼ିଲେ, ସମାଜରେ ଶାନ୍ତି ଦେଖାଦେବ ଏବଂ ଶାସକ ଓ ଶାସିତ ଭିତରେ ବେଶି ପ୍ରଭେଦ ରହିବ ନାହିଁ । ଏକ ସୁସ୍ଥ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ହୋଇପାରିବ ।

ସ୍ୱାମୀଜୀଙ୍କ ଭିତରେ ଯେଉଁ ଦିବ୍ୟ ସ୍ରୋତ ପ୍ରବାହିତ, ତାହାକ'ଣ ଏତେ ସହଜରେ ଆମ ଭଳି ସଂସାରୀ ବୁଝିପାରିବେ ! ଜଣେ ଶିଷ୍ୟ କହୁ କହୁ କହିପକାଇଲେ, ''ଗୁରୁଦେବ, ଏହି ଦେଶରେ ବିଭିନ୍ନ ଧାର୍ମିକ ସମ୍ପ୍ରଦାୟ ଓ ଜାତି ଭିତରେ ଗୋଟିଏ ସାର୍ବଜନୀନ ଲକ୍ଷ୍ୟ ପାଇଁ ସଂହତି ଓ ସହଯୋଗ ପ୍ରତିଷ୍ଠା କରିବା ବଡ଼ କଷ୍ଟକର ବ୍ୟାପାର ।'' ସ୍ୱାମୀଜୀ ତତ୍‌କ୍ଷଣାତ୍ ଉତ୍ତେଜିତ ହୋଇ କହିଲେ, ''କୌଣସି କାର୍ଯ୍ୟକୁ ଯଦି ତୁମେ କଷ୍ଟକର ବ୍ୟାପାର ବୋଲି ଭାବୁଛ, ଏଠାକୁ ପୁନର୍ବାର ଆସିବ ନାହିଁ । ଈଶ୍ୱରଙ୍କ କୃପା ମାଧ୍ୟମରେ ସମସ୍ତ କାର୍ଯ୍ୟ ସଫଳତା ଲାଭ କରେ । ଜାତି ଓ ଧର୍ମ ନିର୍ବିଶେଷରେ ଗରିବ ଓ ପ୍ରପୀଡ଼ିତଙ୍କର ସେବା କରିବା ତୁମର କର୍ତ୍ତବ୍ୟ । ନିଜ କର୍ମର ପରିଣାମ ପାଇଁ ଏତେ ଚିନ୍ତା କରିବା କ'ଣ ଦରକାର ? ତୁମର କର୍ତ୍ତବ୍ୟ ହେଲା କେବଳ କାମ କରିଚାଲ, ଫଳ ଆପେ ଆପେ ଅନୁଧାବନ କରିବ । ଗଠନ କରିବା ମୋର କାର୍ଯ୍ୟ କିନ୍ତୁ ଯାହା ରହିଛି, ତାକୁ ଧ୍ୱଂସ କରିବା ମୋର କାର୍ଯ୍ୟର ଧାରା ନୁହେଁ ।''

ବିଶ୍ୱ ଇତିହାସ ପଢ଼ । ସବୁ ଜାଗାରେ, ପ୍ରତ୍ୟେକ ଦେଶରେ, ଏକ ନିର୍ଦ୍ଦିଷ୍ଟ ଯୁଗରେ, ଜଣେ ମହାପୁରୁଷ ଜାତୀୟ ଜୀବନର କେନ୍ଦ୍ରବିନ୍ଦୁରେ ଦଣ୍ଡାୟମାନ ହୋଇ, ନିଜର ଚିନ୍ତାଧାରାରେ ସର୍ବସାଧାରଣଙ୍କୁ ପ୍ରଭାବିତ କରିବାର ଦୃଷ୍ଟାନ୍ତ, ତୁମେ ଦେଖିବାକୁ ପାଇବ । ତୁମେ ସମସ୍ତେ ବୁଦ୍ଧିମାନ ବାଳକ । ମୋର ଶିଷ୍ୟ ହେବାକୁ ତୁମେମାନେ ଆଗ୍ରହୀ - ମୋତେ କୁହ ତୁମେ କ'ଣ କରିଛ ? ଗୋଟିଏ ଜୀବନ ଅନ୍ୟର କାର୍ଯ୍ୟ ଲାଗି ଉତ୍ସର୍ଗ କରିପାରିବ ନାହିଁ ? ବେଦାନ୍ତ ଅଧ୍ୟୟନ ଏବଂ ଧ୍ୟାନାଭ୍ୟାସ ଭଳି ଅନେକ କିଛି ଆଗାମୀ ଜୀବନ ପାଇଁ ରଖିଦିଅ । ଏହି ଶରୀର ଅନ୍ୟମାନଙ୍କ ସେବାରେ ନିୟୋଜିତ ହେଉ; ତେବେ ଯାଇ ମୁଁ ଜାଣିବି ଯେ ମୋ ନିକଟକୁ ତୁମର ଆଗମନ ବ୍ୟର୍ଥ ହୋଇନାହିଁ । ବହୁ ତପସ୍ୟା ପରେ ମୁଁ ଗୋଟିଏ ମାତ୍ର ମହାସତ୍ୟ ଉପଲବ୍ଧି କରିଛି -

Digitized by srujanika@gmail.com

**ପ୍ରତ୍ୟେକ ଜୀବ ଭିତରେ ଈଶ୍ୱର ବିରାଜିତ । ଏହା ବ୍ୟତୀତ ଅନ୍ୟ ଈଶ୍ୱର କେଉଁଠାରେ ନାହାନ୍ତି । ଯେଉଁ ବ୍ୟକ୍ତି ସମସ୍ତ ଜୀବର ସେବା କରେ, ସେ ହିଁ ବାସ୍ତବରେ ଈଶ୍ୱରଙ୍କର ସେବା କରିଥାଏ ।**

ବ୍ୟାଧିଗ୍ରସ୍ତ ଶରୀର କ୍ରମଶଃ ଭାଙ୍ଗି ପଡୁଥିଲା କିନ୍ତୁ ମନ ତାଙ୍କର ଜ୍ୱାଳାମୁଖୀ ହୋଇ ଲହ ଲହ ଜିଭରେ ଛୁଇଁ ଦେଉଥିଲା ଅସଂଖ୍ୟ ଯୁବସଂପ୍ରଦାୟ କୋମଳମତୀ ମନକୁ । ଦୁଃଖୀ, ଦରିଦ୍ର ସେବା ଓ ଭାରତମାତାର ସେବା ପାଇଁ । ସେବା ଓ ତ୍ୟାଗର ଜ୍ୱାଳାମୁଖୀ ଉଦ୍‌ଗୀରଣ ଦେଖି ସମସ୍ତଙ୍କ ଭିତରେ ଖେଳିଯାଉଥିଲା ଅଦମ୍ୟ ଉତ୍ସାହ, ସତେକି ଭାରତବର୍ଷର ଏକ ନବଯୁଗର ଉନ୍ମେଷ ଘଟିଛି ! ବହୁଜନ ହିତାୟ, ବହୁଜନ ସୁଖାୟ ମନ୍ତ୍ର ସହିତ **ଆତ୍ମୋନ ମୋକ୍ଷାର୍ଥଂ ଜଗଦ୍ଧିତାୟଚ** ଧ୍ୱନି ବର୍ତ୍ତମାନ ଅନବରତ ଉଚ୍ଚାରିତ ତାଙ୍କର କଣ୍ଠରୁ । ସେ କହୁଥିଲେ, ନଚିକେତାଙ୍କର ଯେପରି ଆତ୍ମବିଶ୍ୱାସ ଥିଲା, ସେଭଳି ଆତ୍ମବିଶ୍ୱାସୀ ଦଶ ବାର ଜଣ ଯୁବକ ତାଙ୍କୁ ମିଳିଯାନ୍ତା କି, ସେ ଦେଶର ସମଗ୍ର ଚିନ୍ତାଧାରା ଓ ଆକାଙ୍‌କ୍ଷାର ସ୍ରୋତକୁ ଏକ ନୂତନ ପ୍ରବାହରେ ପରିବର୍ତ୍ତନ କରି ଦିଅନ୍ତେ !

- ୪ -

*ବ୍ରହ୍ମଙ୍କୁ ଖୋଜିବା ପାଇଁ ତୁମେ କେଉଁଠାକୁ ଯିବ ? ସେ ସମସ୍ତ ଜୀବ ଭିତରେ ବିଦ୍ୟମାନ । ଏଠାରେ, ଏଠାରେ ହିଁ ଅବସ୍ଥାନ କରୁଛନ୍ତି ଦୃଶ୍ୟମାନ ବ୍ରହ୍ମ ! ସେମାନଙ୍କୁ ଧିକ୍ ଯେଉଁମାନେ ଦୃଶ୍ୟମାନ ବ୍ରହ୍ମଙ୍କୁ ସମ୍ମାନ ନ ଦେଇ ଅନ୍ୟ ବସ୍ତୁ ଉପରେ ମନ ଦେଉଛନ୍ତି ! ତୁମ ସମ୍ମୁଖରେ ବ୍ରହ୍ମ ବିରାଜିତ, ହାତ ମୁଠାରେ ଯେପରି ଫଳ ତୁମେ ଧରିଛ, ସେପରି ତୁମ ସମ୍ମୁଖସ୍ଥ ବ୍ରହ୍ମଙ୍କର ସ୍ପର୍ଶ ତୁମେ ଅନୁଭବ କରିପାରିବ ! ଦେଖିପାରୁ ନାହିଁ ! ଏଇଠି, ଏଇଠି - ଏଇଠି ହିଁ ବ୍ରହ୍ମ ।*

ଶ୍ୱାସରୋଗ ତାଙ୍କର ନିଶ୍ୱାସ-ପ୍ରଶ୍ୱାସକୁ କଣ୍ଠ ଦେଶରେ ରନ୍ଧି ଦେଉଥିଲା,ତଥାପି ଉତ୍‌ଫଣ ବକ୍ଷ ବିଦାରି ନିର୍ଗତ ହେଉଥିଲା ମାନବ ସେବା ମାଧବ ସେବାର ମହାମନ୍ତ୍ର । ଏହି ଜୀବନ-ମୃତ୍ୟୁ ସଂଗ୍ରାମ ଭିତରେ ସେ ତାଙ୍କର ପରମଶିଷ୍ୟ ଶରତଚନ୍ଦ୍ରଙ୍କୁ ହଠାତ୍ କହିଥିଲେ - ତ୍ୟାଗ ଓ ବୈରାଗ୍ୟର ଜାତୀୟ ଆଦର୍ଶକୁ ତୁମେ ନିଜ ସମ୍ମୁଖରେ ସ୍ଥାପିତ କରି, ସିଂହର ଶକ୍ତିକୁ ଆପଣେଇ ନିର୍ଭୀକ ଭାବେ ତୁମକୁ କାର୍ଯ୍ୟ କରିବାକୁ ହେବ । ପ୍ରଭୁଙ୍କଠାରେ ଭକ୍ତିରଖ, ସେହିଠାରୁ ତୁମକୁ ମିଳିବ ତ୍ୟାଗର ଆଦର୍ଶ । କର୍ମର ଫଳପ୍ରତି ଆଦୌ ଦୃଷ୍ଟି ଦିଅନାହିଁ, ସମାଲୋଚନାକୁ ବି ଖାତିର କରିନାହିଁ । ସ୍ୱୟଂ ମହାବୀର ତୁମର ଆଦର୍ଶ ହୁଅନ୍ତୁ । ଦେଖ ରାମନାମରେ ତାଙ୍କର କିଭଳି ଥିଲା ଅସୀମ ବିଶ୍ୱାସ, ଆତ୍ମସଂଯମର ସେ ଥିଲେ ରାଜକୁମାର, ବୁଦ୍ଧିମାନ ଓ ସ୍ଥିତପ୍ରଜ୍ଞ । ଏକ ଲମ୍ଫ ପ୍ରଦାନରେ,

Digitized by srujanika@gmail.com

ମୃତ୍ୟୁକୁ ଖାତିର ନ କରି, ମହାସାଗର ଲଙ୍ଘନ କଲେ । ନିଜକୁ ପ୍ରଭୁଙ୍କର ଭୃତ୍ୟ ଭାବି, ସେହି ଆଦର୍ଶରେ ତୁମେ ନିଜକୁ ଗଢ଼ିତୋଳ ।'' କେବଳ ସେତିକି ନୁହେଁ, ଜୀବନର ସମସ୍ତ ଦୁର୍ବଳ ଆଦର୍ଶ ଏପରିକି ଧର୍ମକୁ ସେ ଭର୍ତ୍ସନା କରିବାକୁ ମଧ୍ୟ ଛାଡ଼ି ନ ଥିଲେ, କିନ୍ତୁ ଆତ୍ମାର ବିଶାଳତାକୁ ପ୍ରକଟିତ କରିବା ହିଁ ପୌରୁଷତ୍ୱର ପ୍ରତୀକ ବୋଲି ସେ ବଜ୍ର କଣ୍ଠରେ କହୁଥିଲେ । ''ଏଭଳି ଏକ ବୀରତ୍ୱର ଆଦର୍ଶ ଅନୁସରଣ କର, ଆମେ ମାତୃଭୂମିର କଲ୍ୟାଣ ସାଧାନ କରିବାକୁ ସକ୍ଷମ ହୋଇପାରିବା ଏଥିରେ ସନ୍ଦେହ ନାହିଁ । କିନ୍ତୁ ସାବଧାନ କୌଣସି ମୁହୂର୍ତ୍ତରେ ସଦାଚାର ମାର୍ଗରୁ ଇଞ୍ଚେ ବି ଘୁଞ୍ଚିବ ନାହିଁ । ଦୁର୍ବଳତା କେବେ ବି ତୁମକୁ ପରାଜିତ ନ କରୁ ।''

ତାଙ୍କର ଯନ୍ତ୍ରଣାଗ୍ରସ୍ତ ମୁଖରୁ ଅଗ୍ନି ସ୍ଫୁଲିଙ୍ଗ ଭଳି କଥାଗୁଡ଼ାକ ବୁନ୍ଦ ବୁନ୍ଦ ହୋଇ ଝରିପଡୁଥିଲା । ସେ ଥୟ ଧରି ଅଧିକ କାଳ ବସିପାରିଲେ ନାହିଁ, ଉପର ତାଲାରୁ ଓହ୍ଲେଇ ଆସିଲେ, ଅଗଣାରେ ଦଣ୍ଡାୟମାନ ଆମ୍ବଗଛ ମୂଳରେ ପଡ଼ିଥିବା କାନ୍‌ଭାସ୍ ଖଟ ଉପରେ ବସିପଡ଼ିଲେ । ସବୁଦିନ ଭଳି ପଶ୍ଚିମ ଦିଗକୁ ଚାହିଁଲେ, ଦୂର ଦିଗବଳୟରୁ ଦେଖାଯାଉଥିଲା ଦକ୍ଷିଣେଶ୍ୱର ମନ୍ଦିର । ତାଙ୍କର ଚକ୍ଷୁଦ୍ୱୟ ଦୀପ୍ତିମନ୍ତ, ସମଗ୍ର ଶରୀର ଅଦ୍ଭୁତ ଆଧାତ୍ମିକ ଚେତନାରେ ଦେଖାଯାଉଥିଲା ଜୀବନ୍ତ ଓ ଶିହରିତ । ହଠାତ୍ ନିଜକୁ ଇଙ୍ଗିତ କରି ସେ ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣଙ୍କୁ ଉଚ୍ଚସ୍ୱରରେ କହିଲେ, ''ବ୍ରହ୍ମଙ୍କୁ ଖୋଜିବା ପାଇଁ ତୁମେ କେଉଁଠାକୁ ଯିବ ? ସେ ସମସ୍ତ ଜୀବ ଭିତରେ ବିଦ୍ୟମାନ । ଏଠାରେ, ଏଠାରେ ହିଁ ଅବସ୍ଥାନ କରୁଛନ୍ତି ଦୃଶ୍ୟମାନ ବ୍ରହ୍ମ ! ସେମାନଙ୍କୁ ଧିକ୍ ଯେଉଁମାନେ ଦୃଶ୍ୟମାନ ବ୍ରହ୍ମଙ୍କୁ ସମ୍ମାନ ନ ଦେଇ ଅନ୍ୟ ବସ୍ତୁ ଉପରେ ମନ ଦେଉଛନ୍ତି ! ତୁମ ସମ୍ମୁଖରେ ବ୍ରହ୍ମ ବିରାଜିତ, ହାତ ମୁଠାରେ ଯେପରି ଫଳ ତୁମେ ଧରିଛ, ସେପରି ତୁମ ସମ୍ମୁଖସ୍ଥ ବ୍ରହ୍ମଙ୍କର ସ୍ପର୍ଶ ତୁମେ ଅନୁଭବ କରିପାରିବ ! ଦେଖିପାରୁ ନାହଁ ! ଏଇଠି, ଏଇଠି - ଏଇଠି ହିଁ ବ୍ରହ୍ମ ।''

ସେ ଏଭଳି ଭାବେ କହୁଥିଲେ ଯେ ତାଙ୍କର ମୁଖନିଃସୃତ ଶବ୍ଦଗୁଡ଼ାକ ଉପସ୍ଥିତ ବ୍ୟକ୍ତିମାନଙ୍କ ଦେହ ଓ ମନଭିତରକୁ ଚରିଯାଉଥିଲା, ଯା'ଫଳରେ ସେମାନେ ନିଜ ଭିତରେ ଅପୂର୍ବ ଶାନ୍ତି ଅନୁଭବ କରିବା ସଙ୍ଗେ ସଙ୍ଗେ ଗଭୀର ଧ୍ୟାନରେ ସେମାନଙ୍କର ଅନ୍ତର୍ଦୃଷ୍ଟି ଉନ୍ମୁକ୍ତ ହେଉଥିଲା । ସମସ୍ତେ ମାର୍ବଲ ପ୍ରତିମୂର୍ତ୍ତି ସମ ଦଣ୍ଡାୟମାନ ହୋଇ ନୀରବତାରେ ହଜିଗଲେ । ଠିକ୍ ସେହି ସମୟରେ ସ୍ୱାମୀ ପ୍ରେମାନନ୍ଦ ଗଙ୍ଗାରୁ ସ୍ନାନ କରି ପୂଜାର୍ଚ୍ଚନା ପାଇଁ ମନ୍ଦିରକୁ ଯାଉଥିଲେ । ଗୁରୁଭ୍ରାତା ସନ୍ନ୍ୟାସୀଙ୍କର ଏଭଳି କଥା ତାଙ୍କ କାନରେ ବାଜିବାକ୍ଷଣି ସେ ତତ୍‌କ୍ଷଣାତ୍ ସେହିଠାରେ ଗଭୀର ଧ୍ୟାନମଗ୍ନ ହୋଇ ସ୍ଥାଣୁଭାବେ ଠିଆ ହୋଇଗଲେ । ପ୍ରାୟ ପନ୍ଦର ମିନିଟ୍ ପରେ, ସ୍ୱାମୀଜୀ ତାଙ୍କୁ କହିଲେ, ''ବର୍ତ୍ତମାନ ତୁମେ ପୂଜାର୍ଚ୍ଚନା ପାଇଁ ଯାଅ ।'' ଏହିକଥା ଶୁଣିବା ପରେ ହିଁ ପ୍ରେମାନନ୍ଦଙ୍କର ଚେତା ଫେରିଆସିଲା । ସେହି ଦିନର ଦୃଶ୍ୟ ଥିଲା ଅବିସ୍ମରଣୀୟ । ବେଲୁଡ଼୍ ମଠର ପ୍ରତ୍ୟେକ ବ୍ୟକ୍ତି ନିଜ ପ୍ରିୟ ସ୍ୱାମୀଜୀଙ୍କର ପଦଟିଏ କଥାରେ ସେଦିନ ବିସ୍ମୟବିମୂଢ଼ ହୋଇଯାଇଥିଲେ, ସେମାନଙ୍କର ମନ ଅନ୍ତର୍ଦୃଷ୍ଟିର ଚରମରାଜ୍ୟକୁ ଉଡ଼ିଯାଇଥିଲା ।

Digitized by srujanika@gmail.com

- ୫ -

*ପୁତ୍ର, ଦୁଃଖକରି ଲାଭ କ'ଣ ? ଏହି ଶରୀର ଜନ୍ମ ହୋଇଥିଲା । ଏହାର ମୃତ୍ୟୁ ହେବ । ତୁମମାନଙ୍କ ଭିତରେ ମୋର ସମସ୍ତ ଚିନ୍ତାଧାରାର କିୟଦାଂଶ ଯଦି ପ୍ରବେଶ କରିଥିବ, ତେବେ ମୁଁ ଜାଣିବି ଯେ ମୁଁ ଅକାରଣେ ଏହି ସଂସାରରେ ଜୀବନଧାରଣ କରି ନ ଥିଲି । ସବୁବେଳେ ମନେରଖିବ - ତ୍ୟାଗ ଓ ବୈରାଗ୍ୟ ହିଁ ମୂଳକଥା । ଏହି ଚିନ୍ତାଧାରାରେ ସେ ଦୀକ୍ଷିତ ନ ହେଲେ, ବ୍ରହ୍ମା କିମ୍ବା କୌଣସି ଦେବାଦେବୀଙ୍କର ମୁକ୍ତି ଲାଭ ପାଇଁ ଶକ୍ତି ରହିବ ନାହିଁ ।*

ମରଣଶରୀର ତ୍ୟାଗ କରିବାର ବେଳ ଦ୍ରୁତଗତିରେ ପାଖେଇ ଆସୁଥିଲା । ଖଣ୍ଡ ବିଖଣ୍ଡିତ ରୋଗିଣା ଦେହ ପରମଶକ୍ତିକୁ ଅଧିକକାଳ ଧାରଣ କରିବାକୁ ଚାହୁଁ ନ ଥିଲା । ଅଖଣ୍ଡ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ପ୍ରାଣ ପକ୍ଷୀ ହେଉଥିଲା ଉଚ୍ଛନ୍ନ । କିନ୍ତୁ କୋଟିକୋଟି ମାନବର ତହଲ ବିକଳ ଅବସ୍ଥା ତାଙ୍କୁ ବାରମ୍ବାର ଟାଣି ଧରୁଥିଲା - ଏହି ଦଉଡ଼ି ଟଣା ଖେଳରେ ସେ ଅଣନିଶ୍ୱାସୀ ହୋଇପଡୁଥିଲେ । କିନ୍ତୁ ସେ ଜାଣି ସାରିଲେଣି ଯେ ଠାକୁର ଶ୍ରୀରାମକୃଷ୍ଣ ଆଉ ଅଳ୍ପ କେତେଟା ମାସ ପରେ ତାଲା ଖୋଲିଦେବେ, କାହିଁକିନା ତାଙ୍କର କାର୍ଯ୍ୟ ସମାପ୍ତ ହେଲାଣି । ମାର୍ଚ୍ଚ ୧୬, ୧୯୦୨, ଶ୍ରୀରାମକୃଷ୍ଣଙ୍କର ଜନ୍ମୋତ୍ସବ ପାଇଁ ବେଲୁଡ଼ ମଠ ହେଲା କୋଳାହଳ ମୟ । କିନ୍ତୁ ସ୍ୱାମୀଜୀ ଆଜକୁ କେତେଦିନ ହେଲା ନିଜ ଶଯ୍ୟା ପାଖରୁ କେଉଁଠାକୁ ଯାଉ ନାହାଁନ୍ତି । ତାଙ୍କର ପାଦ ଫୁଲିଛି । ସେ ଚାଲି ପାରୁନାହାନ୍ତି । ଉତ୍ସବ ମୁଖରିତ ଦିବସରେ ସ୍ୱାମୀଜୀଙ୍କର ଭୀଷଣ ଅସୁସ୍ଥତା ସମ୍ବାଦ କଲିକତା ସହର ଆକାଶରେ କଳା ବାଦଲ ଘୋଟାଇ ଦେଲା । ହଜାର ହଜାର ଭକ୍ତ ମଠକୁ ଛୁଟି ଆସିଲେ, ସ୍ୱାମୀଜୀଙ୍କ କଣ୍ଠରୁ ଅମୃତବାଣୀ ଶୁଣିବେ ଏବଂ ତାଙ୍କର ପାଦସ୍ପର୍ଶ କରି ଧନ୍ୟ ହେବେ । ସକାଳ ବିଦାୟ ନେଲା, ଅପରାହ୍ନ ଆସିଲା, ତଥାପି ସ୍ୱାମୀଜୀଙ୍କର ଦର୍ଶନ ମିଳିଲା ନାହିଁ । ଭକ୍ତଗଣ ସତୃଷ୍ଣ ନୟନରେ ତାଙ୍କ ଆଗମନକୁ ଅପେକ୍ଷା କରି ଚାହିଁ ବସିଥିଲେ ।

ଜଣେ ଗୃହୀଭକ୍ତ ସ୍ୱାମୀଜୀଙ୍କ ସେବା କରୁଥିଲେ, କିନ୍ତୁ ତାଙ୍କର ଶୋଚନୀୟ ଅବସ୍ଥା ଦେଖି ସେ ଅତ୍ୟନ୍ତ ଦୁଃଖରେ ଭାଙ୍ଗି ପଡ଼ିଲେ । ସ୍ୱାମୀଜୀ ବୁଝିଗଲେ ଭକ୍ତଙ୍କର ମନକଥା, ଆଶ୍ୱାସନା କଣ୍ଠରେ ତାଙ୍କୁ କହିଲେ, ''ପୁତ୍ର, ଦୁଃଖକରି ଲାଭ କ'ଣ ? ଏହି ଶରୀର ଜନ୍ମ ହୋଇଥିଲା । ଏହାର ମୃତ୍ୟୁ ହେବ । ତୁମମାନଙ୍କ ଭିତରେ ମୋର ସମସ୍ତ ଚିନ୍ତାଧାରାର କିୟଦାଂଶ ଯଦି ପ୍ରବେଶ କରିଥିବ, ତେବେ ମୁଁ ଜାଣିବି ଯେ ମୁଁ ଅକାରଣେ ଏହି ସଂସାରରେ ଜୀବନଧାରଣ କରି ନ ଥିଲି । ସବୁବେଳେ ମନେରଖିବ - ତ୍ୟାଗ ଓ ବୈରାଗୀ ହିଁ ମୂଳକଥା । ଏହି ଚିନ୍ତାଧାରାରେ ସେ ଦୀକ୍ଷିତ ନ ହେଲେ, ବ୍ରହ୍ମା କିମ୍ବା କୌଣସି ଦେବାଦେବୀଙ୍କର ମୁକ୍ତି ଲାଭ ପାଇଁ ଶକ୍ତି ରହିବ ନାହିଁ ।''

ଏତକ କହୁ କହୁ ସ୍ୱାମୀଜୀ ଗଭୀର ଚିନ୍ତାରେ ହେଲେ ମଗ୍ନ । କିୟଦ୍ ସମୟ ଅତିକ୍ରାନ୍ତେ, ସ୍ୱାମୀଜୀ ସାମାନ୍ୟ ପ୍ରକୃତିସ୍ଥ ହୋଇ କହିଲେ, ''ମୁଁ ଭାବୁଛି, ଆଜିଠାରୁ ଶ୍ରୀରାମକୃଷ୍ଣଙ୍କର ଜନ୍ମୋତ୍ସବ ଭିନ୍ନ ମାର୍ଗରେ ପାଳିତ ହେଲେ ଭଲ ହୁଅନ୍ତା । ଗୋଟିଏ ଦିନ ଅପେକ୍ଷା ଉତ୍ସବ ଚାରିପାଞ୍ଚ ଦିନ

Digitized by srujanika@gmail.com

ଧରି ପାଳିତ ହେବା ଉଚିତ । ପ୍ରଥମ ଦିନରେ ଶାସ୍ତ୍ର ଅଧ୍ୟୟନ ଓ ବ୍ୟାଖ୍ୟା; ଦ୍ୱିତୀୟ ଦିନରେ ବେଦ ଓ ବେଦାନ୍ତ ଉପରେ ଚର୍ଚ୍ଚା ଏବଂ ତତ୍ ସମ୍ବନ୍ଧିତ ସମସ୍ୟାର ସମାଧାନ ଉପରେ ଆଲୋଚନା; ତୃତୀୟ ଦିନରେ ପ୍ରଶ୍ନ-ଉତ୍ତର କାର୍ଯ୍ୟକ୍ରମ; ଚତୁର୍ଥ ଦିନରେ ବକ୍ତୃତା ପ୍ରଦାନ ଏବଂ ଶେଷ ଦିନରେ ଉତ୍ସବ ।

- ୬ -

*ଯେଉଁମାନେ ଶ୍ରୀରାମକୃଷ୍ଣଙ୍କୁ ଦେଖିଛନ୍ତି, ସତରେ ସେମାନେ ଭାଗ୍ୟବାନ । ତୁମେ ସମସ୍ତେ ତାଙ୍କର ଦର୍ଶନ ଲାଭ କରିବ । ତୁମେ ଯେହେତୁ ଏଠାକୁ ଆସିଛ, ତେଣୁ ତୁମେ ତାଙ୍କର ଅତି ନିକଟତର । ଯିଏ ଶ୍ରୀରାମକୃଷ୍ଣ ରୂପରେ ଏହି ପୃଥିବୀ ପୃଷ୍ଠକୁ ଆସିଥିଲେ, ତାଙ୍କୁ କେହି ଜାଣିବାକୁ ସକ୍ଷମ ହୋଇନାହାନ୍ତି । ଏପରିକି ତାଙ୍କର ଅନ୍ତରଙ୍ଗ ଓ ନିକଟତମ ଭକ୍ତମାନେ ଏହି ରହସ୍ୟର ଉଦ୍‌ଘାଟନ କରିପାରି ନାହାନ୍ତି । କେବଳ କେତେଜଣ ଏହାର ସଙ୍କେତ ପାଇଛନ୍ତି; ସମୟ ଆସିଲେ ତାଙ୍କୁ ସମସ୍ତେ ଜାଣିବେ ।*

ଇତ୍ୟବସରରେ ସଂକୀର୍ତ୍ତନ ଦଳ ତାଙ୍କର ଗୃହ ସମ୍ମୁଖରେ ପହଞ୍ଚିଲେ । ସ୍ୱାମୀଜୀ ଧୀରେ ଧୀରେ କକ୍ଷରୁ ବାହାରି ବାଲ୍‌କୋନିର ଲୁହା ରେଲିଙ୍ଗ ଧରି ସମବେତ ହଜାର ହଜାର ଭକ୍ତଗଣଙ୍କୁ ସ୍ନେହ ଓ ପ୍ରେମପୂର୍ଣ୍ଣ ମୁଖମଣ୍ଡଳରେ ଚାହିଁଲେ । ଯେହେତୁ ସେ ବେଶି ସମୟ ଧରି ଠିଆହୋଇ ପାରିଲେ ନାହିଁ, ତେଣୁ ସେଠାରେ ଏକ ଚୌକିରେ ବସିପଡ଼ିଲେ । ଧୀର କଣ୍ଠରେ ଉପସ୍ଥିତ ଶ୍ରଦ୍ଧାଳୁଙ୍କୁ ସ୍ୱାମୀଜୀ ଶ୍ରୀରାମକୃଷ୍ଣ ପରମହଂସଙ୍କ ସମ୍ବନ୍ଧରେ କହିଲେ - ''ତାଙ୍କଠାରେ ଭକ୍ତି ରଖିଲେ ନିଶ୍ଚୟ ଆତ୍ମୋପଲବ୍ଧି ହେବ ହିଁ ହେବ, ଏଥିରେ ସନ୍ଦେହ ନାହିଁ । ଅବତାର ହିଁ କେବଳ କୋଟି କୋଟି ଆତ୍ମାକୁ ମୋକ୍ଷ ପ୍ରଦାନ କରିପାରିବେ, ଏପରିକି ସେମାନଙ୍କର ସମସ୍ତ ଅଜ୍ଞାନ ଦୂର କରି ଗୋଟିଏ ଜୀବନରେ ତାହା କରିପାରିବେ । ଯେଉଁ ବ୍ୟକ୍ତି ଆତ୍ମୋପଲବ୍ଧି କରିଥାନ୍ତି, ସେ ମହାନ୍ ଶକ୍ତିର ଭଣ୍ଡାରଗୃହ ହୋଇଯାନ୍ତି, ତାଙ୍କଠାରୁ ଆଧ୍ୟାତ୍ମିକ ଶକ୍ତି ନିର୍ଗତ ହୁଏ ଏବଂ ତାଙ୍କ ଚତୁଃପାର୍ଶ୍ୱସ୍ଥ ବ୍ୟକ୍ତିଗଣ ଉକ୍ତ ଆଧ୍ୟାତ୍ମିକ ଶକ୍ତିର ସଂସ୍ପର୍ଶରେ ଆସି ସ୍ୱୟଂ କ୍ରିୟାଶୀଳ ହୋଇଯାନ୍ତି । ସେମାନଙ୍କୁ ବିଶେଷ ଜପ, ତପ, ସାଧନା ଓ ଧାର୍ମିକ କର୍ମ କରିବାକୁ ପଡ଼େ ନାହିଁ । ଏହିଭଳି ଅବତାର ଅଥବା ମହାପୁରୁଷ ନିଜର ଅପୂର୍ବ ଆଧ୍ୟାତ୍ମିକ ଶକ୍ତି ବଳରେ ଅନୁଗାମୀମାନଙ୍କ ଭିତରେ ଶକ୍ତି ଭରି ଦିଅନ୍ତି, ସେମାନେ ପୂର୍ଣ୍ଣମାନବ ହୋଇଯାନ୍ତି । ଏହାକୁ କୃପା କୁହାଯାଏ ।''

ସ୍ୱାମୀଜୀ ଏଭଳି ଅଦ୍ଭୁତ କଥା କହୁ କହୁ ନିଜ ଗୁରୁଦେବଙ୍କ ଆଡ଼କୁ ମନ ପ୍ରବଳ ବେଗରେ ଆକର୍ଷିତ ହେଲା । ସେ କହିଲେ -ଯେଉଁମାନେ ଶ୍ରୀରାମକୃଷ୍ଣଙ୍କୁ ଦେଖିଛନ୍ତି, ସତରେ ସେମାନେ ଭାଗ୍ୟବାନ । ତୁମେ ସମସ୍ତେ ତାଙ୍କର ଦର୍ଶନ ଲାଭ କରିବ । ତୁମେ ଯେହେତୁ ଏଠାକୁ ଆସିଛ, ତେଣୁ ତୁମେ ତାଙ୍କର ଅତି ନିକଟତର । ଯିଏ ଶ୍ରୀରାମକୃଷ୍ଣ ରୂପରେ ଏହି ପୃଥିବୀ ପୃଷ୍ଠକୁ ଆସିଥିଲେ, ତାଙ୍କୁ କେହି ଜାଣିବାକୁ ସକ୍ଷମ ହୋଇନାହାନ୍ତି । ଏପରିକି ତାଙ୍କର ଅନ୍ତରଙ୍ଗ ଓ ନିକଟତମ ଭକ୍ତମାନେ

Digitized by srujanika@gmail.com

ଏହି ରହସ୍ୟର ଉଦ୍‌ଘାଟନ କରିପାରି ନାହାନ୍ତି । କେବଳ କେତେଜଣ ଏହାର ସଙ୍କେତ ପାଉଛନ୍ତି; ସମୟ ଆସିଲେ ତାଙ୍କୁ ସମସ୍ତେ ଜାଣିବେ ।

ଭକ୍ତ ଓ ଶୁଭେଚ୍ଛୁଙ୍କର ସୁଅ ବେଲୁଡ଼ ମଠକୁ ଛୁଟୁଥିଲା, ସ୍ୱାମୀଜୀଙ୍କୁ ପ୍ରଣାମ କରିବେ, ତାଙ୍କ ସହ କଥାବାର୍ତ୍ତା ହେବେ । କିନ୍ତୁ କଥାବାର୍ତ୍ତା ଫଳରେ ସେ ବାରମ୍ବାର ଅଣନିଃଶ୍ୱାସୀ ହୋଇପଡୁଥିବାରୁ, ଗୁରୁଭ୍ରାତା ସନ୍ନ୍ୟାସୀମାନେ ସାକ୍ଷାତ ଉପରେ କଟକଣା ଜାହିର କଲେ । କାହାରିକୁ ତାଙ୍କ ପାଖକୁ ଛାଡ଼ିଲେ ନାହିଁ । କବିରାଜ ମହାନନ୍ଦ ସେନଗୁପ୍ତାଙ୍କ ଅଧୀନରେ ସେ ଚିକିତ୍ସିତ ହେଉଥିବାରୁ ତାଙ୍କର ସମସ୍ତ ନିର୍ଦ୍ଦେଶ ମାନିବାକୁ ପଡୁଥିଲା । ଯାହାହେଉ ଆୟୁର୍ବେଦିକ ଔଷଧ ସେବନ ତାଙ୍କୁ କେତେକାଂଶରେ ସୁସ୍ଥ କଲା । ଏହି ସମୟରେ ସଦ୍ୟ ପ୍ରକାଶିତ ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକା ପଢ଼ିବାକୁ ଆରମ୍ଭ କଲେ । ଶିଷ୍ୟ ଶରତଚନ୍ଦ୍ର ଚକ୍ରବର୍ତ୍ତୀ ପଚିଶଟି ବିଶାଳ ପୁସ୍ତକ ଦେଖି କହି ଉଠିଥିଲେ, ''ସ୍ୱାମୀଜୀ, ଏଭଳି ପଚିଶଟି ବିଶାଳ ପୁସ୍ତକର ବିଷୟବସ୍ତୁ ଜଣେ ଗୋଟିଏ ଜୀବନରେ ପଢ଼ି ତାହା ଉପରେ ଜ୍ଞାନ ଆହରଣ କରିପାରିବ ନାହିଁ ।'' ବିଚରା ଶରତବାବୁଙ୍କୁ ଜଣା ନ ଥିଲା ଯେ ସ୍ୱାମୀଜୀ ସେତେବେଳକୁ ଦଶଟି ପୁସ୍ତକ ପଢ଼ିସାରି ଏକାଦଶ ପୁସ୍ତକ ପଢ଼ିବା ଆରମ୍ଭ କରିଛନ୍ତି । ତତ୍‌ସଙ୍ଗେସଙ୍ଗେ ଶରତବାବୁଙ୍କୁ କହିଲେ, ''ତୁମେ କ'ଣ ଭାବୁଛ ? ଏହି ଦଶଟି ବିଶାଳ ପୁସ୍ତକରୁ ଯାହା ବି ତୁମେ ମୋତେ ପଚାରିବ, ମୁଁ ତାହା ତୁମକୁ କହିପାରିବି ।'' ଶିଷ୍ୟଙ୍କ ମନରେ କୌତୂହଳ ଜାତ ହେଲା । ପ୍ରତ୍ୟେକ ଖଣ୍ଡରୁ ସେ ଦୁଇ କିମ୍ବା ତିନୋଟି କଷ୍ଟକର ବିଷୟବସ୍ତୁ ଚୟନ କରି ସ୍ୱାମୀଜୀଙ୍କୁ ପଚାରିଗଲେ । ସ୍ୱାମୀଜୀ ସବୁ ପ୍ରଶ୍ନର ଉତ୍ତର ସଠିକ ଭାବରେ କେବଳ ଦେଲେ ନାହିଁ ବରଂ ଯାନ୍ତ୍ରିକ ଓ ବୈଷୟିକ ଶବ୍ଦଗୁଡ଼ିକୁ ନିର୍ଭୁଲ ଭାବରେ ଉଚ୍ଚାରଣ କରି ସେଗୁଡ଼ିକର ଅର୍ଥ ବି ପ୍ରାଞ୍ଜଳ ଭାବରେ ବୁଝାଇଦେଲେ । ସ୍ୱାମୀଜୀଙ୍କ ମୁଖରୁ ନିଃସୃତ ବାକ୍ୟ ଓ ଶବ୍ଦ ପୁସ୍ତକ ସହ ଏକାବେଳକେ ମିଳିଯାଉଥିଲା ।

- ୭ -

*ଦେଖ ! ଏହି ଦେହର କ'ଣ ବା ମୂଲ୍ୟ ଅଛି । ଅନ୍ୟମାନଙ୍କୁ ସାହାଯ୍ୟ କରି ଏହା ଚାଲିଯାଉ । ଅନ୍ତିମକ୍ଷଣ ପର୍ଯ୍ୟନ୍ତ ଠାକୁର କ'ଣ ଏହା ଶିକ୍ଷା ଦେଇ ନ ଥିଲେ ? ମୁଁ କ'ଣ ଏକାକଥା କରିବି ? ଏହି ଶରୀର ଯଦି ଚାଲିଯାଏ ମୁଁ କୁଟାଖିଅଟିଏ ଭଳି ଏହାକୁ ପରବାୟ କରେନାହିଁ । ଯେତେବେଳେ ସତ୍ୟ ଜାଣିବା କିମ୍ବା ସତ୍ୟ ସମ୍ବନ୍ଧରେ ଶୁଣିବା ପାଇଁ କେହି ଆନ୍ତରିକତାପୂର୍ଣ୍ଣ ବ୍ୟକ୍ତି ମୋ ପାଖକୁ ଆସନ୍ତି, ସେତେବେଳେ ମୁଁ କିପରି ଆନନ୍ଦିତ ହୁଏ ତୁମେ ଜାଣିପାରିବ ନାହିଁ । ମୋ ଦେଶବାସୀଙ୍କର ଆତ୍ମାକୁ ଜାଗ୍ରତ କରିବା ପାଇଁ ମୁଁ ବାରମ୍ବାର ଆନନ୍ଦରେ ମୃତ୍ୟୁବରଣ କରିବି ।*

ନିଜ ଗୁରୁଦେବଙ୍କର ଅସାଧାରଣ ଧାରଣକ୍ଷମ ସାମର୍ଥ୍ୟ ଓ ସ୍ମରଣଶକ୍ତି ପରିଲକ୍ଷିତ କରି ବିସ୍ମୟରେ ଚିତ୍କାର କରିଉଠିଲେ : ''ଏହି ସାମର୍ଥ୍ୟ ନିଶ୍ଚିତ ଭାବରେ ମଣିଷର ଶକ୍ତି ବାହାରେ ।''

Digitized by srujanika@gmail.com

ସ୍ୱାମୀଜୀ ତାଙ୍କୁ ଆଶ୍ୱାସନା ଦେଇ କହିଲେ, ''ଆରେ ବାବା, ଏଥିରେ କୌଣସି ଚମତ୍କାରିତା ନାହିଁ; ଯଦି ଜଣେ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ କରେ, ସେ ଯାହା ଶୁଣିଥିବେ ଏବଂ ପଢ଼ିଥିବେ ତାହା ସଠିକ ଭାବରେ ଉପସ୍ଥାପନ କରିପାରିବେ । ବହୁ ବର୍ଷ ପୂର୍ବରୁ ଜଣେ ଯାହା ଶୁଣିଥିବ କିମ୍ବା ପଢ଼ିଥିବ, ତାହା ସେ ତତ୍‌କ୍ଷଣାତ୍ କହିପାରିବ । ଏହି ବ୍ରହ୍ମଚର୍ଯ୍ୟର ଅଭାବ ଯୋଗୁଁ, ଆମେ ଏକ ରାଷ୍ଟ୍ରଭାବରେ ଗରିବ ଏବଂ ଶକ୍ତି ଓ ବୁଦ୍ଧିରେ ଦୁର୍ବଳ ହେଉଛନ୍ତି ଏବଂ ଆମର ପୌରୁଷତ୍ୱ ହରାଇ ବସୁଛନ୍ତି ।'' ଅନ୍ୟ ଏକ ପରିପ୍ରେକ୍ଷୀରେ ଭାରତୀୟ ନାରୀଙ୍କ ଉନ୍ନତି ଓ ପୁନରୁତ୍ଥାନ ନିମନ୍ତେ କଲିକତାର ଗଙ୍ଗାକୂଳରେ ଏକ ମଠ ସ୍ଥାପନ ପାଇଁ ନିଜର ଅଭିଳାଷ ବ୍ୟକ୍ତ କଲେ, ଏବଂ ଦିବ୍ୟଜନନୀ ସାରଦାଦେବୀ ହେବେ ଏହି ମଠର ପ୍ରାଣକେନ୍ଦ୍ର । ବ୍ରହ୍ମଚାରିଣୀ ଓ ଶିକ୍ଷୟିତ୍ରୀ ଏହି ମଠରେ ପ୍ରଶିକ୍ଷଣ ଲାଭ କରିବେ ଏବଂ ସମଗ୍ର ଭାରତବର୍ଷରେ ଭ୍ରମଣ କରି ସେମାନେ ନାରୀଶକ୍ତିର ଜାଗରଣ କାର୍ଯ୍ୟରେ ଲାଗିପଡ଼ିବେ ।

ଅଭିନିବିଷ୍ଟ ଭକ୍ତଗଣ ସ୍ୱାମୀଜୀଙ୍କ ସାନିଧ୍ୟ ଲାଭରୁ ବଞ୍ଚିତ ହୋଇ ଦୁଃଖ ଓ ଚିନ୍ତାରେ ଭାଙ୍ଗି ପଡୁଥିଲେ । ଏହିକଥା ସ୍ୱାମୀଜୀଙ୍କ କାନରେ ପଡ଼ିବାକ୍ଷଣି, ବ୍ୟସ୍ତ ହୋଇ କେତେବେଳେ କେମିତି କହୁଥିଲେ, ''ଦେଖ ! ଏହି ଦେହର କ'ଣ ବା ମୂଲ୍ୟ ଅଛି । ଅନ୍ୟମାନଙ୍କୁ ସାହାଯ୍ୟ କରି ଏହା ଚାଲିଯାଉ । ଅନ୍ତିମକ୍ଷଣ ପର୍ଯ୍ୟନ୍ତ ଠାକୁର କ'ଣ ଏହା ଶିକ୍ଷା ଦେଇ ନ ଥିଲେ ? ମୁଁ କ'ଣ ଏକାକଥା କରିବି ? ଏହି ଶରୀର ଯଦି ଚାଲିଯାଏ ମୁଁ କୁଟାଖିଅଟିଏ ଭଳି ଏହାକୁ ପରବାୟ କରେନାହିଁ । ଯେତେବେଳେ ସତ୍ୟ ଜାଣିବା କିମ୍ବା ସତ୍ୟ ସମ୍ବନ୍ଧରେ ଶୁଣିବା ପାଇଁ କେହି ଆନ୍ତରିକ ବ୍ୟକ୍ତି ମୋ ପାଖକୁ ଆସନ୍ତି, ସେତେବେଳେ ମୁଁ କିପରି ଆନନ୍ଦିତ ହୁଏ ତୁମେ ଜାଣିପାରିବ ନାହିଁ । ମୋ ଦେଶବାସୀଙ୍କର ଆତ୍ମାକୁ ଜାଗ୍ରତ କରିବା ପାଇଁ ବାରମ୍ବାର ଆନନ୍ଦରେ ମୃତ୍ୟୁବରଣ କରିବି ।''

ଏପ୍ରିଲ ୨ ତାରିଖରେ ଜାପାନ ବୌଦ୍ଧମଠରୁ ରେଭେରେଣ୍ଡ ଓଡ଼ ଭାରତ ଆସି ବେଲୁଡ଼ ମଠରେ ସ୍ୱାମୀଜୀଙ୍କୁ ସାକ୍ଷାତ କଲେ । କୁମାରୀ ମେକ୍‌ଲିଓଡ଼ ସେତେବେଳେ ଆମେରିକା କନ୍‌ସଲେଟ୍‌ରେ ରହୁଥିଲେ, ଓଡ଼ବି ସେଠାରେ ରହିଲେ । ଜାପାନ ଧର୍ମକ୍ଷେତ୍ରରେ ଏକ ଘଡ଼ିସନ୍ଧି ମୁହୂର୍ତ୍ତ ଦେଇ ଗତିକରୁଛି ଏବଂ ସ୍ୱାମୀଜୀଙ୍କର ଜାପାନରେ ଅନୁଷ୍ଠିତ କଂଗ୍ରେସ ଅଫ୍ ରିଲିଜନ୍‌ରେ ଯୋଗଦାନ ନିଶ୍ଚିତଭାବେ ଜାପାନବାସୀଙ୍କୁ ସାହାଯ୍ୟ କରିବ ବୋଲି ଓଡ଼ ସ୍ୱାମୀଜୀଙ୍କୁ କେବଳ କହି ନ ଥିଲେ, ବରଂ ଜାପାନ ଯିବାପାଇଁ ଆନ୍ତରିକ ଅନୁରୋଧ କଲେ । ତାଙ୍କର ନିଷ୍ଠା ଓ ଉତ୍ସାହ ପରିଲକ୍ଷିତ କରି ସ୍ୱାମୀଜୀ ଅବଶ୍ୟ ଜାପାନ ଯିବାପାଇଁ ରାଜି ହୋଇଥିଲେ, କିନ୍ତୁ ତାଙ୍କର ପ୍ରତିଶ୍ରୁତି ହିଁ ପ୍ରତିଶ୍ରୁତିରେ ରହିଯାଇଥିଲା । ସେ ଜାପାନ ଯାଇ ପାରିଲେ ନାହିଁ ।

ବିଦେଶିନୀ ଶିଷ୍ୟା ଶ୍ରୀମତୀ ବୁଲ୍, ଜୋ (କୁମାରୀ ମେକ୍‌ଲିଓଡ଼) ଏବଂ ଭଗିନୀ ନିବେଦିତା (ଅବଶ୍ୟ ସେତେବେଳେ ସେ ମାୟାବତୀ ଯାଇଥିଲେ) କଲିକତାରେ ସେତେବେଳେ ଅବସ୍ଥାନ କରୁଥିଲେ । ଇତ୍ୟବସରରେ ମାର୍ଚ୍ଚ ୩୦ ତାରିଖରେ ଖ୍ରୀଷ୍ଟାଇନ୍ ଗ୍ରୀନ୍‌ଷ୍ଟିଡେ଼ଲ ବି କଲିକତାରେ ପହଞ୍ଚିଲେ । କୁମାରୀ ମେକ୍‌ଲିଓଡ଼ ସ୍ୱାମୀଜୀଙ୍କର ସ୍ୱାସ୍ଥ୍ୟବସ୍ଥା ଓ ଦେହତ୍ୟାଗ କରିବାର ପ୍ରବଳ ଇଚ୍ଛା ସମ୍ବନ୍ଧରେ ଲେଖିଥିଲେ : ଏପ୍ରିଲ୍, ୧୯୦୨ର କୌଣସି ଏକ ଦିନରେ ସ୍ୱାମୀଜୀ ମୋତେ

Digitized by srujanika@gmail.com

କହିଥିଲେ, ଏହି ସଂସାରରେ ମୋର କିଛି ନାହିଁ, ମୋ ପାଖରେ ପଇସାଟିଏ ବି ନାହିଁ । ମୁଁ ଯାହା ପାଇଥିଲି, ସବୁ ଦେଇଦେଇଛି ।'' ଏହି କଥାରେ ମେକ୍‌ଲିଓଡ୍ କହିଥିଲେ, ସ୍ୱାମୀଜୀ ଆପଣ ଯେତେଦିନ ବଞ୍ଚିବେ ମୁଁ ଆପଣଙ୍କୁ ପ୍ରତିମାସରେ ପଚାଶ ଡଲାର ଦେବି ।'' ସ୍ୱାମୀଜୀ ଗୋଟିଏ ମିନିଟ୍ ଚିନ୍ତା କଲେ, ଏବଂ ତତ୍‌ପଶ୍ଚାତେ କହିଲେ ମୁଁ କ'ଣ ତାହା ଉପରେ  ଚଳିପାରିବି ?'' ମେକ୍‌ଲିଓଡ୍ କହିଲେ, ''କାହିଁକି ନୁହେଁ ସ୍ୱାମୀଜୀ, ନିଶ୍ଚୟ ଚଳିପାରିବେ, ଅବଶ୍ୟ ଦୁଧ ଘିଅ ଖାଇ ନୁହେଁ ।'' ସେ ତାଙ୍କୁ ସେଦିନ ଦୁଇଶହ ଡଲାର ଦେଇଥିଲେ, କିନ୍ତୁ ଚାରିମାସ ପୂର୍ଣ୍ଣ ହେବା ପୂର୍ବରୁ ସେ ଚାଲିଯାଇଥିଲେ ।

ବେଲୁଡ଼ ମଠରେ ଏକଦା ଭଗିନୀ ନିବେଦିତା କେତେଜଣ କୃତୀ ଖେଳାଳୀଙ୍କୁ ପୁରସ୍କାର ବିତରଣ କରୁଥିଲେ । ସେଦିନ ମେକ୍‌ଲିଓଡ୍ ସ୍ୱାମୀଜୀଙ୍କ ପାଖରେ ବସିଥିଲେ । ଝରକାବାଟେ ସ୍ୱାମୀଜୀ ଚାହିଁଥିଲେ ପୁରସ୍କାର ବିତରଣ କାର୍ଯ୍ୟକୁ । ସେ ହଠାତ୍ ତାଙ୍କୁ କହିଲେ, ''ମୁଁ କେବେ ବି ଚାଳିଶ ବର୍ଷ ଦେଖି ପାରିବି ନାହିଁ ।'' ମେକ୍‌ଲିଓଡ୍ ଜାଣିଥିଲେ ଯେ ସ୍ୱାମୀଜୀ ଅଣଚାଳିଶ ବର୍ଷ ଅତିକ୍ରମ କଲେଣି, ତେଣୁ ସେ ସ୍ୱାମୀଜୀଙ୍କୁ କହିଲେ, ''ସ୍ୱାମୀଜୀ, ବୁଦ୍ଧ ଚାଳିଶ ବର୍ଷ ଅତିକ୍ରମ କଲା ପରେ ପ୍ରଚାର କଲେ ନିଜର ସଦ୍‌ମାର୍ଗ ଏବଂ ଅଶୀବର୍ଷ ବଞ୍ଚିଥିଲେ ।'' ସ୍ୱାମୀଜୀ ମୁହଁରେ ହସର ରେଖାଟିଏ ଖେଳାଇ କହିଉଠିଲେ, ''ବାଣୀ ପ୍ରଦାନ କରିସାରିଛି, ଏବେ ମୋତେ ନିଶ୍ଚୟ ଯିବାକୁ ହେବ ।'' ମେକ୍‌ଲିଓଡ୍ ଉତ୍ସୁକ ହୋଇ କାହିଁକି ଯିବେ ବୋଲି ପଚାରିବାରୁ ସ୍ୱାମୀଜୀ କହିଲେ, ବିଶାଳ ବୃକ୍ଷର ଛାୟା କ୍ଷୁଦ୍ର ବୃକ୍ଷକୁ ବଢ଼ିବାକୁ ଦେବନାହିଁ, ମୋତେ ସେମାନଙ୍କ ପାଇଁ ସ୍ଥାନ ଶୂନ୍ୟ କରିବାକୁ ହେବ ।'' ଏହା ହିଁ ଥିଲା ତାଙ୍କର ପ୍ରିୟ ଜୋ (ମେକ୍‌ଲିଓଡ୍)ଙ୍କ ପ୍ରତି ଶେଷ କଥାବାର୍ତ୍ତା । ସେ ହିମାଳୟ ଚାଲିଯାଇଥିଲେ, ସେଠାରୁ ପ୍ରତ୍ୟାବର୍ତ୍ତନ କଲାପରେ ସ୍ୱାମୀଜୀ ସ୍ୱଶରୀରରେ ଆଉ ନ ଥିଲେ ।

- ୮ -

*ଏହି ପୃଥିବୀରେ ଧର୍ମ ବୋଲି ଯଦି କିଛି ଥାଏ, ତାହା ହେଉଛି ପରାର୍ଥପର ସେବା ।'' ଯିଏ ଯେତେ ଜୀବନରେ ତ୍ୟାଗ କରିବ, ସେ ସେତେ ଶକ୍ତିମାନ ହେବ । ସିଂହ ଭଳି ପରାକ୍ରମୀ ହେବ । ଜୀବକୁ ଶିବ ଭାବେ ପୂଜା କର ।*

ବର୍ତ୍ତମାନ ସ୍ୱାମୀଜୀ ଅନୁଭବ କଲେଣି ଯେ ନିଜର ଗୁରୁଦେବ ଶ୍ରୀରାମକୃଷ୍ଣ ଯେଉଁ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରିଥିଲେ, ତାହା ବାଣୀ ରୂପରେ ସେ ବିଶ୍ୱକୁ ଦେଇସାରିଲେଣି । ବର୍ତ୍ତମାନ ଶିଷ୍ୟମାନଙ୍କ ପ୍ରଶିକ୍ଷଣ ଉପରେ ସେ ମନଯୋଗ କଲେ, ସେମାନଙ୍କର ଚରିତ୍ର ନିର୍ମାଣ ତଥା ଆଧ୍ୟାତ୍ମିକ ସାଧନାର ବିଭିନ୍ନ କୌଶଳ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କଲେ । ନିଜେ ଯେ ଜଣେ ବିଶ୍ୱବିଖ୍ୟାତ ବ୍ୟକ୍ତିତ୍ୱ, ତାହା ସେ ସମ୍ପୂର୍ଣ୍ଣଭାବେ ବିସ୍ମରଣ ହୋଇ ଗଙ୍ଗାକୂଳରେ ନିରବରେ ବସି

Digitized by srujanika@gmail.com

ଗଙ୍ଗାର ସ୍ରୋତକୁ କେତେବେଳେ ଚାହୁଁଥିଲେ, କେତେବେଳେ ଜଣେ ଆଧ୍ୟାତ୍ମିକ ଗୁରୁଭାବରେ ଶିଷ୍ୟଗଣଙ୍କୁ ଶିକ୍ଷାପ୍ରଦାନ କରୁଥିଲେ, କେତେବେଳେ ପିତା ସମାନ ଭକ୍ତଗଣଙ୍କ ମଧ୍ୟରେ ସ୍ନେହ ବାଣ୍ଟୁଥିଲେ । ବେଦ ଓ ପାଣିନିଙ୍କର ବ୍ୟାକରଣ ଚର୍ଚ୍ଚା କରି ଶିଷ୍ୟମାନଙ୍କୁ ଜ୍ଞାନାଲୋକିତ କରୁଥିଲେ । ସଂଧ୍ୟା ଓ ସକାଳେ ଧ୍ୟାନାଭ୍ୟାସ ଶିଷ୍ୟଙ୍କ ଗହଣରେ ବସି କରୁଥିଲେ । ମଧ୍ୟାହ୍ନ ଭୋଜନ ପରେ ପୁନରାୟ ଅଧ୍ୟାପନା ଚାଲୁଥିଲା । ଅପରାହ୍ଣରେ ବ୍ରହ୍ମଚାରୀ ଓ ସନ୍ନ୍ୟାସୀଗଣ କିଛି ସମୟ ବିଶ୍ରାମ ନେବାପରେ କେହି ବୁଲି ଯାଉଥିଲେ, କିଏବା ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ । ସଂଧ୍ୟା ଆରତି ଘଣ୍ଟା ବାଜିଲେ ସମସ୍ତେ ଧ୍ୟାନ ଘରେ ଏକତ୍ର ହେଉଥିଲେ । ବସ୍ତୁତଃ ଏହି ସମୟରେ ସେ ବର୍ହିଜଗତର ଯଶ-ସମ୍ମାନ, ପ୍ରତିପତ୍ତି ଇତ୍ୟାଦି ବିଷୟ ସମ୍ପୂର୍ଣ୍ଣ ଭୁଲି ତାଙ୍କର ସମସ୍ତ ଶକ୍ତି 'ମଣିଷ ତିଆରି' ଲାଗି ନିୟୋଜିତ କରୁଥିଲେ ।

ସ୍ୱାମୀଜୀ ବେଦାନ୍ତ ପ୍ରଚାର କଲେ, ବେଦାନ୍ତରେ ଜୀବନଧାରଣ କରୁଛନ୍ତି ଏବଂବେଦାନ୍ତରେ ସେ ସର୍ବଦା ଗତିଶୀଳ । ନିଜ ଜୀବନରେ ସେ ଯାହା ଅଙ୍ଗେ ନିଭେଇଛନ୍ତି ଏବଂ ଅନୁଭୂତିରୁ ଯାହା ସେ ପାଇଛନ୍ତି, ତାହାହିଁ ସେ ସମଗ୍ର ମାନବ ସମାଜକୁ ଦାନ କରିଛନ୍ତି । ଏହା କୌଣସି ଥିଓରି ନୁହେଁ ବରଂ ସାଧନାର ନିର୍ଯ୍ୟାସ । ପ୍ରତ୍ୟେକ ମଣିଷ ଭିତରେ ଲୁଚିରହିଥିବା ଦେବତ୍ୱକୁ ପରିପ୍ରକାଶ କରିବା ଜୀବନର ଲକ୍ଷ୍ୟ । ସେବା ଓ ତ୍ୟାଗଦ୍ୱାରା ଦେବତ୍ୱର ପ୍ରକଟନ କେବଳ ସମ୍ଭବ କିନ୍ତୁ ସ୍ୱାର୍ଥପରତାରେ ନୁହେଁ । ସ୍ୱାର୍ଥପରତାରେ ମଣିଷ ହୁଏ ଦୁର୍ବଳ ଓ ତ୍ୟାଗରେ ହୁଏ ସର୍ବଶକ୍ତିମାନ । ଏହି ସତ୍ୟକୁ ବ୍ରହ୍ମଚାରୀ ଓ ଶଷ୍ୟମାନଙ୍କୁ ସେ ଆନ୍ତରିକତା ସହ ବୁଝାଇ କହୁଥିଲେ । "ଏହି ପୃଥିବୀରେ ଧର୍ମ ବୋଲି ଯଦି କିଛି ଥାଏ, ତାହା ହେଉଛି ପରାର୍ଥପର ସେବା ।" ଯିଏ ଯେତେ ଜୀବନରେ ତ୍ୟାଗ କରିବ, ସେ ସେତେ ଶକ୍ତିମାନ ହେବ । ସିଂହ ଭଳି ପରାକ୍ରମୀ ହେବ । ଜୀବକୁ ଶିବ ଭାବେ ପୂଜା କର । ସ୍ୱାମୀଜୀଙ୍କର ସ୍ନେହପୂର୍ଣ୍ଣ ଭାଷା ସମସ୍ତ ଶିଷ୍ୟଙ୍କ ମନ ଓ ଚେତନାକୁ ଋଦ୍ଧିମନ୍ତ କରୁଥିଲା । ସେଠାରେ ଗୁରୁ-ଶିଷ୍ୟର ପାର୍ଥକ୍ୟ ବିସ୍ମୃତ ହେଲାଭଳି ଜଣାପଡୁଥିଲା ।

ଭୀଷଣ ଅସୁସ୍ଥତା ସତ୍ତ୍ୱେ, ବିଦେଶର ଶିଷ୍ୟ ଓ ଶିଷ୍ୟାଗଣଙ୍କ ପାଖକୁ ପତ୍ର ଲେଖିବା ଏବଂ ସେମାନଙ୍କର କୁଶଳ ମନାସିବା କାର୍ଯ୍ୟରୁ ସେ କେବେ ବି ବିଚ୍ୟୁତ ହୋଇ ନ ଥିଲେ । ତଥାପି ସେ ବହୁସମୟ ଧ୍ୟାନମଗ୍ନ ହୋଇପଡୁଥିଲେ । ବେଳେବେଳେ ଦୁଇଘଣ୍ଟାରୁ ଉର୍ଦ୍ଧ୍ୱ ସମୟ ଧ୍ୟାନରେ ବିତିଯାଉଥିଲା । ଧ୍ୟାନରୁ ଉଠିବା କ୍ଷଣି ମୁଖରୁ ଝରିପଡୁଥିଲା "ଶିବ, ଶିବ" । ଗୁରୁଭ୍ରାତା ସନ୍ନ୍ୟାସୀ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ଭାଷାରେ, "ଆହାଃ ଯିଏ ଥରେ ନରେନ୍ ପାଖରେ ବସି ଧ୍ୟାନ କରିବ, ସେ ସଙ୍ଗେ ସଙ୍ଗେ ଗଭୀର ଧ୍ୟାନରେ ବୁଡିଯିବ । ମୁଁ ଏକୁଟିଆ ଧ୍ୟାନ କରିବାବେଳେ ଏମିତି ଆନନ୍ଦ ଅନୁଭବ କରିପାରେ ନାହିଁ ।" ସ୍ୱାମୀଜୀଙ୍କ ଶରୀର ମଧ୍ୟରୁ ନିଃସୃତ ମହାଶକ୍ତିର ଏହି ଚମତ୍କାରିତାକୁ ସେହିମାନେ ବୁଝିଥିଲେ ଯେଉଁମାନେ ତାଙ୍କର ଅତି ନିକଟତମ ବ୍ୟକ୍ତି ଥିଲେ ।"



Digitized by srujanika@gmail.com

॥ ପଇଁଚାଳିଶ ॥

# ଆକୃତି ଭସ୍ମୀଭୂତ - ପୁନଶ୍ଚ ଅବ୍ୟକ୍ତ ହେଲେ - କିନ୍ତୁ ସ୍ୱର ଶବ୍ଦ ମାଳ ହୋଇ ପ୍ରେରଣାର ଉତ୍ସ ଭାବେ ମଣିଷ ହୃଦୟରେ ବସା ବାନ୍ଧିଲେ

ଆଉ ମାତ୍ର ଦୁଇମାସ ବାକି ରହିଲା । ସେ ଯାହା ଏକଦା କହିଥିଲେ ''ମୁଁ ଏକ ଆକୃତିବିହୀନ ସ୍ୱର'', ତାହାହିଁ ସେ ହୋଇଯିବେ, କିନ୍ତୁ ଆକୃତି ଆଉ ଦେଖାଯିବ ନାହିଁ । ଯେତେ ଅନ୍ତିମ ମୁହୂର୍ତ୍ତ ପାଖେଇ ଆସୁଥିଲା, ସେତେ ସେ ମଠ କାର୍ଯ୍ୟରେ ପରାମର୍ଶ ଦେବା କାର୍ଯ୍ୟରୁ ସ୍ୱୟଂ ଦୂରେଇ ଯାଉଥିଲେ । ଅନ୍ୟମାନଙ୍କୁ ସ୍ୱାଧୀନଭାବେ ମଠର ପରିଚାଳନାଗତ କାର୍ଯ୍ୟ ତଦାରଖ କରିବା ପାଇଁ ସେ ଅଧିକ ସୁଯୋଗ ଦେଲେ । ତାଙ୍କରି ଭାଷାରେ ''ଶିଷ୍ୟମାନଙ୍କ ଗହଣରେ ସବୁବେଳେ ଜଣେ ଗୁରୁ ରହି କ'ଣ ସେମାନଙ୍କୁ ନଷ୍ଟ କରିଦେବେ ! ଯେତେବେଳେ ବ୍ୟକ୍ତି ଉପଯୁକ୍ତ ପ୍ରଶିକ୍ଷଣ ଲାଭକରେ, ସେତେବେଳେ ଏହା ଅତ୍ୟନ୍ତ ଆବଶ୍ୟକ ଯେ ନେତା ନିଜକୁ ଦୂରେଇ ରଖିବା ଉଚିତ, କାହିଁକିନା ସେମାନେ ନେତାର ଅନୁପସ୍ଥିତରେ ନିଜକୁ ବିକଶିତ କରିବାର ସୁଯୋଗ ପାଇବେ ।'' ଅବଶ୍ୟ ସ୍ୱାମୀଜୀଙ୍କର ଏତାଦୃଶ ମନ୍ତବ୍ୟ ବହୁ ଅନ୍ତରଙ୍ଗ ଶିଷ୍ୟଙ୍କ ଛାତିରେ ଛୁରି ଚଳାଇ ଦେଇଥିଲା, କିନ୍ତୁ ଏହା ଥିଲା କଟୁ ସତ୍ୟ !

ଏହି ସମୟରେ ସ୍ୱାମୀଜୀଙ୍କର ଜଣେ ଆମେରିକୀୟ ଶିଷ୍ୟା ମେରୀ ଲୁଇସ୍ (ଅଭୟାନନ୍ଦ) ବେଦାନ୍ତ ମାର୍ଗ ତ୍ୟାଗକରି ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବାର ସମ୍ବାଦ ପହଞ୍ଚିଲା । ସ୍ୱାମୀଜୀ ଏକ ଚିଠିରେ ନିଜର ପ୍ରତିକ୍ରିୟା ପ୍ରକାଶ କରି ଲେଖିଥିଲେ - ମେରି ଲୁଇସ୍ କଲିକତା ଆସିଛନ୍ତି, ବର୍ତ୍ତମାନ ସେ ଚୈତନ୍ୟଙ୍କର ଅନୁଗାମୀ । କେତେକ ଧନ୍ୟାଢ଼୍ୟ ବ୍ୟକ୍ତି ତାଙ୍କୁ ଏଥିରେ ସାମିଲ କରିଛନ୍ତି । ବର୍ତ୍ତମାନ ତାଙ୍କ ପାଖରେ ବହୁ ଧନ ରହିବ ! ''ଯିଏ ମୋତେ ଯେଉଁ କାମନା ନେଇ ଉପାସନା କରେ, ମୁଁ ସେହି ବ୍ୟକ୍ତିର କାମନା ପୂରଣ କରିଥାଏ ।'' ଏହା ହିଁ ଗୀତାର ବାଣୀ । ସେ ଟଙ୍କା ଚାହୁଁଥିଲେ, ଈଶ୍ୱର ତାଙ୍କୁ ଏବେ ପର୍ଯ୍ୟାପ୍ତ ଧନ ଦିଅନ୍ତୁ ।'' କହିବାକୁ ଗଲେ ସ୍ୱାମୀଜୀଙ୍କର କୌଣସି ପ୍ରତିକ୍ରିୟା ନ ଥିଲା, ବରଂ ସଂସାରର ଏକ ନିତିଦିନିଆ ଘଟଣା ଭାବେ ଏହାକୁ ଦେଖିଥିଲେ ।

Digitized by srujanika@gmail.com

- ୧ -

*କେତେଜଣ ଗୁରୁଭ୍ରାତା ସନ୍ୟାସୀ ସ୍ୱାମୀଜୀଙ୍କ ସହ ଏକଦା ଦକ୍ଷିଣେଶ୍ୱରର ସ୍ମୃତିଚାରଣ କରୁଥିବା ସମୟରେ, ସେମାନଙ୍କ ମଧ୍ୟରୁ ଜଣେ ସନ୍ୟାସୀ ହଠାତ୍ ପ୍ରଶ୍ନ କଲେ - "ସ୍ୱାମୀଜୀ, ଆପଣ କିଏ ଜାଣିପାରିଲେଣି କି ?" ତାଙ୍କର ଅପ୍ରତ୍ୟାଶିତ ଉତ୍ତର ଥିଲା "ହଁ, ବର୍ତ୍ତମାନ ମୁଁ ଜାଣିଛି ।" ବାସ୍, ଏମନ୍ତ ଅଶୁଭ କଥାରେ ଉପସ୍ଥିତ ସମସ୍ତ ସନ୍ୟାସୀ ଘୋର ନୀରବତା ଭିତରେ ବୁଡ଼ିଗଲେ, କିନ୍ତୁ ତାଙ୍କୁ ପୁନର୍ବାର ପଚାରିବାକୁ କେହି ମନରେ ସାହସ ବାନ୍ଧି ପାରିଲେ ନାହିଁ ।*

ସ୍ୱାମୀଜୀଙ୍କର ମନ ବାହ୍ୟଜଗତରେ ଆଦୌ ଥୟ ଧରି ରହୁ ନ ଥିଲା, ଅନନ୍ତ ଅଭିମୁଖେ ତାହା ବର୍ତ୍ତମାନ ନିରନ୍ତର ଧାବିତ । ଶରୀର ଏକ ବୋଝ ଭଳି ତାଙ୍କୁ ଲାଗୁଥିଲା । ବିଶାଳ ଆଧ୍ୟାତ୍ମିକ ପ୍ରବାହ ତାଙ୍କ ମନକୁ ଜାବୁଡ଼ି ଧରି ରଖୁଥିଲା, ଯେତେକି ଶେଷ ନିଃଶ୍ୱାସ ପାଇଁ ବର୍ତ୍ତମାନ ପ୍ରସ୍ତୁତ । ଗୁରୁ-ଭ୍ରାତା, ସନ୍ୟାସୀ ଓ ବ୍ରହ୍ମଚାରୀଗଣ ତାଙ୍କର ଏଭଳି ବାରମ୍ବାର ଧ୍ୟାନମଗ୍ନ ଅବସ୍ଥା ଦେଖି, ଶ୍ରୀରାମକୃଷ୍ଣଙ୍କର ସେହି ଭବିଷ୍ୟତବାଣୀ ମନେ ପଡ଼ିଯାଉଥିଲା - "ତାଙ୍କର କାର୍ଯ୍ୟ ସମାପ୍ତ ପରେ, ନରେନ୍ଦ୍ର ଜାଣିପାରିବେ ସେ କିଏ ଏବଂ ନିର୍ବିକଳ୍ପ ସମାଧିରେ ସେ ସବୁଦିନ ପାଇଁ ବୁଡ଼ିଯିବେ ।" ଭଗିନୀ ନିବେଦିତା ନିଜ ଗୁରୁଙ୍କର ଅନ୍ତିମ ଦିନଗୁଡ଼ିକର ଘଟଣାକୁ ସ୍ମରଣ କରି କହିଥିଲେ - କେତେଜଣ ଗୁରୁଭ୍ରାତା ସନ୍ୟାସୀ ସ୍ୱାମୀଜୀଙ୍କ ସହ ଏକଦା ଦକ୍ଷିଣେଶ୍ୱରର ସ୍ମୃତିଚାରଣ କରୁଥିବା ସମୟରେ, ସେମାନଙ୍କ ମଧ୍ୟରୁ ଜଣେ ସନ୍ୟାସୀ ହଠାତ୍ ପ୍ରଶ୍ନ କଲେ - "ସ୍ୱାମୀଜୀ, ଆପଣ କିଏ ଜାଣିପାରିଲେଣି କି ?" ତାଙ୍କର ଅପ୍ରତ୍ୟାଶିତ ଉତ୍ତର ଥିଲା "ହଁ, ବର୍ତ୍ତମାନ ମୁଁ ଜାଣିଛି ।" ବାସ୍, ଏମନ୍ତ ଅଶୁଭ କଥାରେ ଉପସ୍ଥିତ ସମସ୍ତ ସନ୍ୟାସୀ ଘୋର ନୀରବତା ଭିତରେ ବୁଡ଼ିଗଲେ, କିନ୍ତୁ ତାଙ୍କୁ ପୁନର୍ବାର ପଚାରିବାକୁ କେହି ମନରେ ସାହସ ବାନ୍ଧି ପାରିଲେ ନାହିଁ ।"

ସ୍ୱାମୀଜୀ ଇତ୍ୟବସରରେ ଗୋଟିଏ ବଙ୍ଗଳା ପଞ୍ଜିକା ଆଣିବାକୁ ନିଜର ଶିଷ୍ୟ ସ୍ୱାମୀ ଶୁଦ୍ଧାନନ୍ଦଙ୍କୁ କହିଲେ । ପଞ୍ଜିକା ହସ୍ତଗତ ହେଲାରୁ ସେ ଏହାର ପୃଷ୍ଠା ପରେ ପୃଷ୍ଠା ଲେଉଟାଇ ପଢ଼ିଲେ । ଅତି ମନୋଯୋଗ ସହ ପଢ଼ିବା ଦେଖି ଶିଷ୍ୟ ଚିନ୍ତିତ ହୋଇପଡ଼ିଲେ । ଶେଷରେ ଗୋଟିଏ ଶୁଭଦିନ ଦେଖି, ସେ ମନେ ମନେ ଭାବି ନେଇଥିଲେ ଯେ କେବେ ସେ ଦେହତ୍ୟାଗ କରିବେ । ଶିଷ୍ୟ କିନ୍ତୁ ଜାଣିପାରି ନ ଥିଲେ ସ୍ୱାମୀଜୀଙ୍କର ନିର୍ଦ୍ଧାରିତ ଦିବସଟିକୁ । ଜୁନ୍ ୨୬ ତାରିଖରେ ଭଗିନୀ ନିବେଦିତା

Digitized by srujanika@gmail.com

ମାୟାବତୀରୁ କଲିକତାରେ ପହଞ୍ଚିଲେ । ବାଗବଜାରସ୍ଥିତ ବୋଷପଡ଼ା ମାର୍ଗରେ ଗୋଟିଏ ଘରଭଡ଼ା ନିଆଯାଇଥିଲା, ସେ ସେଠାରେ ବାଳିକା ବିଦ୍ୟାଳୟ ଆରମ୍ଭ କରିବେ । କଲିକତାକୁ ନିବେଦିତାଙ୍କ ଆଗମନର ସମ୍ବାଦ ସ୍ୱାମୀଜୀଙ୍କୁ ଆନନ୍ଦିତ କଲା ।

ସେ ସ୍ୱୟଂ ନିବେଦିତାଙ୍କୁ ଭେଟିବା ପାଇଁ ବୋଷପଡ଼ା ମାର୍ଗରେ ଜୁନ୍ ୨୮ ତାରିଖରେ ପହଞ୍ଚିଲେ । ନିବେଦିତା ତାଙ୍କୁ ନେଇ ବିଦ୍ୟାଳୟର ଉପକରଣ ତଥା ଅନ୍ୟାନ୍ୟ ବ୍ୟବସ୍ଥାକୁ ଦେଖାଇଲେ । ମାଇକ୍ରୋସ୍କୋପ୍, ମେଜିକ୍ ଲାନ୍‌ଟର୍ଣ୍ଣ, କ୍ୟାମେରା ଇତ୍ୟାଦି ସେଠାରେ ଦେଖି ସ୍ୱାମୀଜୀ ନିଜର ସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କର ଭବିଷ୍ୟତ କାର୍ଯ୍ୟପନ୍ଥା ବିଷୟରେ ପଚାରିଲେ । ଭାରତୀୟ ମହିଳାଙ୍କ ନିମନ୍ତେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାର ଲକ୍ଷ୍ୟ ସେ ରଖିଛନ୍ତି କହିବାରୁ ସ୍ୱାମୀଜୀ ନିଜର ସନ୍ତୋଷ ପୁନର୍ବାର ପ୍ରକାଶ କଲେ । ସ୍ୱାମୀଜୀ ସେଠାରୁ ପ୍ରସ୍ଥାନ କରିବା ପାଇଁ ଉଦ୍ୟତ ହେବାରୁ ନିବେଦିତା କହିଲେ, ''ସ୍ୱାମୀଜୀ ଆପଣ ନିଶ୍ଚୟ ଏଠାକୁ ଆସିବେ ଏବଂ ମୋର କାର୍ଯ୍ୟକୁ ଆଶୀର୍ବାଦ ପ୍ରଦାନ କରିବେ । ସ୍ୱାମୀଜୀ ତାଙ୍କୁ ସ୍ମିତହାସ୍ୟରେ ଚାହିଁ ପଦଟିଏ କହିଥିଲେ, ''ପୁତ୍ରୀ, ମୁଁ ତୁମକୁ ସବୁବେଳେ ଆଶୀର୍ବାଦ କରୁଛି ।

ସେଠାରୁ ବିଦାୟ ନେଇ ସ୍ୱାମୀଜୀ ଅନ୍ୟମାନଙ୍କ ସହ ନିଜର ଭଉଣୀଙ୍କ ବାସଭବନକୁ ଯାଇଥିଲେ । ଲକ୍ଷ୍ୟଥିଲା ପୈତୃକ ସମ୍ପତ୍ତିକୁ ନେଇ ଯେଉଁ ବିବାଦ ଲାଗିରହିଥିଲା, ତାହାର ସମାଧାନ କରିବା । ଶେଷରେ ତାହାହିଁ ହେଲା । ଆପୋଷ ମିଳାମିଶା ମାଧ୍ୟମରେ ସେହି ବିବାଦ ଯାହାହେଉ ସମାଧାନ ହୋଇଗଲା । ଉଭୟ ପକ୍ଷର ଓକିଲ ସର୍ତ୍ତକୁ ମାନିନେବା ଫଳରେ ଏକ ରାଜିନାମା ସ୍ୱାକ୍ଷରିତ ହେଲା । ଏହି ବିବାଦ ଏକ ଖଣ୍ଡା ସଦୃଶ ସ୍ୱାମୀଜୀଙ୍କ ମସ୍ତକ ଉପରେ ବହୁବର୍ଷ ଧରି ଝୁଲୁଥିଲା, ଏହାର ସମାଧାନ ସ୍ୱାମୀଜୀଙ୍କ ମନରୁ ସମସ୍ତ ପ୍ରକାର ଶଙ୍କା ଦୂର କଲା । ଏହି ପୃଥିବୀ ପୃଷ୍ଠରୁ ବିଦାୟ ନେବା ପୂର୍ବରୁ ସତେକି ସମସ୍ତ ଦାୟତ୍ୱରୁ ସେ ଅବ୍ୟାହତି ନେବାକୁ ଚାହୁଁଛନ୍ତି !

ଜୁନ୍ ୨୯ ତାରିଖ ଭଗିନୀ ନିବେଦିତା ପହଞ୍ଚିଲେ ବେଲୁଡ଼ ମଠରେ । ସେ ମଠରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ରହିଲେ । କେତେ ବିଷୟରେ ତାଙ୍କ ସହ କଥାବାର୍ତ୍ତା ହେଲେ । କିନ୍ତୁ ଅପରାହ୍ଣରେ ସ୍ୱାମୀଜୀ ଅଧିକ କ୍ଳାନ୍ତ ଓ ବିରକ୍ତ ହୋଇଉଠିଲେ । ତାଙ୍କର ଅବସ୍ଥା ଦେଖି ଭଗିନୀ ନିବେଦିତା ଉଚ୍ଚ ସ୍ୱରରେ କାନ୍ଦି ଉଠିଲେ । ଅଲିଅଳ ଭଗିନୀ, ଯିଏ ଉତ୍ସର୍ଗ କରିଛନ୍ତି ସମଗ୍ର ଜୀବନ, ତାଙ୍କର ଲକ୍ଷ୍ୟକୁ ସାକାର କରିବା ପାଇଁ, ତାଙ୍କ ଚକ୍ଷୁରେ ପୁଣି ଲୋତକ ଦେଖି ସ୍ୱାମୀଜୀ ଥୟ ଧରି ରହିପାରିବେ ! ସେ ସ୍ନେହରେ ତାଙ୍କ ମସ୍ତକକୁ ଆଉଁସି ଦେଇ ଆଶୀର୍ବାଦ ଢାଳି ଦେଲେ । ସେହିଦିନ ସ୍ୱାମୀଜୀ ତାଙ୍କୁ କହିଥିଲେ, ଏକ ମହାନ୍ ତପସ୍ୟା ତାଙ୍କ ପାଇଁ ଅପେକ୍ଷାରତ ।

Digitized by srujanika@gmail.com

ମୃତ୍ୟୁ ଅତି ନିକଟତର ହେଉଛି ବୋଲି କହିବାରୁ ତତ୍‌କ୍ଷଣାତ୍ ଗୋଟିଏ ଝିଟିପିଟି ଟିକ୍‌ଟିକ୍ କଲା । ନିବେଦିତାଙ୍କ ଛାତି ଦୁଲୁକି ଉଠିଲା । ଏଠାରେ ସ୍ମରଣଯୋଗ୍ୟ ଯେ ତାଙ୍କର ମହାସମାଧିର ଠିକ୍ ତିନିଦିନ ପୂର୍ବରୁ ଏକ ଅପରାହ୍ଣରେ ସ୍ୱାମୀଜୀ ନିଜ ଗୁରୁଭ୍ରାତା ସ୍ୱାମୀ ପ୍ରେମାନନ୍ଦଙ୍କ ସହ ବେଲୁଡ଼ ମଠର ବଗିଚାରେ ପଦଚାରଣ କରୁଥିଲେ । ହଠାତ୍ ଠିଆହୋଇ ଗଙ୍ଗାକୂଳସ୍ଥ ଏକ ଜାଗାକୁ ହାତଠାରି ଗମ୍ଭୀର କଣ୍ଠରେ ସେ କହିଉଠିଥିଲେ, ‘‘ମୁଁ ଯେଉଁଦିନ ଦେହତ୍ୟାଗ କରିବି, ମୋର ସେହି ଜାଗାରେ ଶେଷକୃତ୍ୟ ସମ୍ପନ୍ନ କରିବ ।’’

ସ୍ୱାମୀଜୀ ଏକାଦଶୀ ତିଥିରେ ଉପବାସ ରଖିଲେ । ପ୍ରାତଃଭୋଜନ ସମୟରେ ଶିଷ୍ୟମାନଙ୍କୁ ସ୍ୱୟଂ ଖାଦ୍ୟ ପରିବେଷଣ କରି ଭୋଜନ କରାଇବାକୁ ଇଚ୍ଛାପ୍ରକଟ କଲେ । ପଣସ ମଞ୍ଜିସିଝା, ଆଳୁସିଝା, ଭାତ ଓ ଦୁଧ ଥିଲା ସେଦିନର ଭୋଜନ । ଭୋଜନ ସମୟରେ ସ୍ୱାମୀଜୀ ଥଟ୍ଟା ତାମସା କରି ସମସ୍ତଙ୍କୁ ହସାଇବାକୁ ଲାଗିଲେ । ତାଙ୍କର ପ୍ରଫୁଲ୍ଲଭାବ ଦେଖି ଶିଷ୍ୟମାନେ ବିଶେଷ ଆନନ୍ଦିତ ହେଲେ । ଭୋଜନାନ୍ତେ ସମସ୍ତେ ଉଠିବା ପରେ ସ୍ୱାମୀଜୀ ସ୍ୱୟଂ ହାତଧୋଇବା ପାଇଁ ସେମାନଙ୍କ ହାତରେ ପାଣି ଢାଳିଦେଲେ । ଧୋଇବା ପାଇଁ ନିବେଦିତାଙ୍କ ହାତରେ ପାଣି ଢାଳିବା ବେଳେ, ଭଗିନୀ ନିବେଦିତା ଚିଇଁକି ଉଠି କହିଉଠିଲେ, ‘‘ସ୍ୱାମୀ, ଆପଣ ଇୟେ କ’ଣ କରୁଛନ୍ତି ? ଆପଣଙ୍କ ପାଇଁ ମୁଁ ଏହି କାର୍ଯ୍ୟ କରିବି, କିନ୍ତୁ ଆପଣ ନୁହେଁ ।’’ ସ୍ୱାମୀଜୀଙ୍କ ମୁହଁରେ ସ୍ମିତହାସ୍ୟ ଲହରିତ ହେଲା ଏବଂ ସେ କହିଲେ, ‘‘ଯୀଶୁଖ୍ରୀଷ୍ଟ ବି ତାଙ୍କ ଶିଷ୍ୟଙ୍କର ପାଦ ଧୋଇଥିଲେ ।’’ ସମସ୍ତେ କେବଳ ବିସ୍ମିତ ନୟନରେ ସ୍ୱାମୀଜୀଙ୍କୁ ଚାହିଁଲେ ।

- ୨ -

*ମଠ ପ୍ରାଙ୍ଗଣରେ ପଦଚାରଣ କରୁଥିବା ସମୟରେ ସେ ନୀରବ ହୋଇଗଲେ, ସତେକି ସେ ନିଜର ମନ ଭିତରେ ନ ଥିଲେ । କିନ୍ତୁ ଅତି ଧୀର ସ୍ୱରରେ ନିଜକୁ କହୁଥିଲେ, ‘‘ଆଜି ଯଦି ଆଉ ଜଣେ ବିବେକାନନ୍ଦ ଥାଆନ୍ତେ, ତେବେ ବିବେକାନନ୍ଦ କ’ଣ କରିଛି ସେ ବୁଝିପାରିଥାନ୍ତେ ? କିନ୍ତୁ କାଳକ୍ରମେ ଅନେକ ବିବେକାନନ୍ଦ ଜନ୍ମଗ୍ରହଣ କରିବେ ।*

ମହାସମାଧି ଦିନ, ସ୍ୱାମୀଜୀଙ୍କର ପ୍ରତ୍ୟେକ କାର୍ଯ୍ୟ ଥିଲା ଉଦ୍ଦେଶ୍ୟମୂଳକ ଓ ଅର୍ଥପୂର୍ଣ୍ଣ । ସକାଳ ଆଠରୁ ଏଗାରଟା ପର୍ଯ୍ୟନ୍ତ ତିନିଘଣ୍ଟା ବ୍ୟାପୀ ନିଃସଙ୍ଗ ଧ୍ୟାନ ସବୁଠାରୁ ଥିଲା ଆଶ୍ଚର୍ଯ୍ୟଜନକ । ସେଦିନ ସେ ଖୁବ୍ ସକାଳୁ ଶଯ୍ୟା ତ୍ୟାଗ କରିଥିଲେ ଏବଂ ଚା’ପାନ ପରେ ସିଧା ମଠର ଉପାସନା କକ୍ଷକୁ ପ୍ରବେଶ କରିଥିଲେ । କିୟତ୍‌ସମୟ ଅତିକ୍ରାନ୍ତେ, କକ୍ଷର ସମସ୍ତ ବାତାୟନ

Digitized by srujanika@gmail.com

ବନ୍ଦ କରି ଭିତରୁ ସବୁ ଦ୍ୱାର ବନ୍ଦ କରିଦେଲେ । ରଦ୍ଧ ଉପାସନା କକ୍ଷ ଭିତରେ ସେ କ'ଣ କଲେ, ତାହା କାହାରିକୁ ଜଣା ନ ଥିଲା । ହୋଇପାରିଥାଏ, ଏକଇ ସତ୍ତାର ଦୁଇଟି ରୂପ ଇଷ୍ଟ ଗୁରୁଦେବ ଶ୍ରୀରାମକୃଷ୍ଣ ପରମହଂସ ଓ ଜଗଜ୍ଜନନୀ ମହାକାଳୀ ତାଙ୍କ ଧ୍ୟାନାକାଶରେ ଉଦ୍‌ଭାସିତ ହୋଇଥିବେ ଏବଂ ବ୍ରହ୍ମର୍ଷି ଋଷିଙ୍କର ଶୂନ୍ୟସ୍ଥାନକୁ ଅଖଣ୍ଡ ଧ୍ୟାନରେ ମଗ୍ନ ହେବାପାଇଁ ପଥ ଦେଖାଇ ଦେଇଥିବେ । ତିନିଘଣ୍ଟା ଧ୍ୟାନ କରିବା ପରେ, ଭାବାନନ୍ଦରେ ସ୍ୱାମୀଜୀ ଧୀରେ ଧୀରେ ଶିଡ଼ି ତଳକୁ ଓହ୍ଲାଇ ଆସିଲେ । ମୁଖରୁ ଗୁଣୁ ଗୁଣୁ ନାଦରେ ଝରିପଡୁଥିଲା ତାଙ୍କର ପ୍ରିୟଗାନ ''ମନ ଚଲ ନିଜ ନିକେତନ'' । ମଠର ପ୍ରାଙ୍ଗଣରେ ସେ ପଦଚାରଣ କରିବାକୁ ଲାଗିଲେ । ଗୁରୁଦେବ ଶ୍ରୀରାମକୃଷ୍ଣଙ୍କ ସହ ଦକ୍ଷିଣେଶ୍ୱରରେ ଯେଉଁଦିନ ସାକ୍ଷାତ ହୋଇଥିଲା, ସେହିଦିନ ଏହି ଗୀତଟି ଗାନ କରି ସେ ଗୁରୁଙ୍କର ମନ ମୋହି ନେଇଥିଲେ ।

ମଠ ପ୍ରାଙ୍ଗଣରେ ପଦଚାରଣ କରୁଥିବା ସମୟରେ ସେ ନୀରବ ହୋଇଗଲେ, ସତେକି ସେ ନିଜର ମନ ଭିତରେ ନ ଥିଲେ । କିନ୍ତୁ ଅତି ଧୀର ସ୍ୱରରେ ନିଜକୁ କହୁଥିଲେ, ''ଆଜି ଯଦି ଆଉ ଜଣେ ବିବେକାନନ୍ଦ ଥାଆନ୍ତେ, ତେବେ ବିବେକାନନ୍ଦ କ'ଣ କରିଛି ସେ ବୁଝିପାରିଥାନ୍ତେ ? କିନ୍ତୁ କାଳକ୍ରମେ ଅନେକ ବିବେକାନନ୍ଦ ଜନ୍ମଗ୍ରହଣ କରିବେ ।'' ଅଳ୍ପ ଦୂରରେ ଦଣ୍ଡାୟମାନ ଥିଲେ ସ୍ୱାମୀ ପ୍ରେମାନନ୍ଦ । ଏହି କେଇପଦ କଥା ତାଙ୍କ କାନରେ ବାଜିଲାକ୍ଷଣି ସେ ଚମକି ପଡ଼ିଲେ । ବିସ୍ମୟବିମୂଢ଼ ନୟନରେ ସେ କେବଳ ସ୍ୱାମୀଜୀଙ୍କୁ ଚାହିଁ ରହିଲେ । ସେ କେବଳ ଏତିକି ବୁଝି ପାରିଥିଲେ ଯେ ସ୍ୱାମୀଜୀଙ୍କ ମନ ଉଚ୍ଚତମ ଭାବଭୂମିରେ ଆରୂଢ଼, ସେଥିପାଇଁ ଏତାଦୃଶ ଅପୂର୍ବ ବାଣୀ ଝରିପଡ଼ିଲା । କିନ୍ତୁ ସ୍ୱାମୀଜୀ ଯେ ସେହି ଦିନ ଇହଲୀଳା ସମ୍ବରଣ କରିବେ ତାହା ତାଙ୍କୁ ଜଣା ନ ଥିଲା ।

ଏହି ସମୟରେ ମଧ୍ୟାହ୍ନ ଭୋଜନ ପାଇଁ ଘଣ୍ଟା ବାଜିଲା । ଠାକୁର ଘରର ତଳ ମହଲା ବାରଣ୍ଡା ଉପରେ ସମସ୍ତଙ୍କ ସାଙ୍ଗରେ ସେ ଭୋଜନ କରିବାକୁ ବସିଲେ । ରୋଗଗ୍ରସ୍ତ ହେବା ପରଠାରୁ ସାଧାରଣତଃ ସମସ୍ତଙ୍କ ସହିତ ଏକାଠି ବସି ଭୋଜନ କରୁ ନ ଥିଲେ । ଆଜି ହଠାତ୍ ସେହି ନିୟମର ବ୍ୟତିକ୍ରମ ଦେଖି ମଧ୍ୟ କାହାରି ହୃଦୟରେ କୌଣସି ସନ୍ଦେହ ସୃଷ୍ଟିହେଲା ନାହିଁ; ବରଂ ଅପ୍ରତ୍ୟାଶିତ ଭାବରେ ସ୍ୱାମୀଜୀଙ୍କ ସହିତ ଏକତ୍ର ଆହାର କରିବାର ସୌଭାଗ୍ୟ ଲାଭ କରି ସମସ୍ତେ ଆନନ୍ଦିତ ହେଲେ । ଅନ୍ୟପକ୍ଷରେ ଭୋଜନ ବେଳେ ସମସ୍ତଙ୍କ ସହ ଥଟ୍ଟା ପରିହାସକରି ସ୍ୱାମୀଜୀ ସମସ୍ତଙ୍କୁ ଆନନ୍ଦିତ କରୁଥିଲେ । ସବୁଠାରୁ ବିସ୍ମୟକର ଘଟଣା ଯେ ସେଦିନ ସ୍ୱାମୀଜୀ ମନଭରି ଭୋଜନ କରିଥିଲେ । କିଏ ବା କାହିଁକି ଜାଣିପାରିବ ଯେ ସେଦିନ ଥିଲା ସ୍ୱାମୀଜୀଙ୍କର ଅନ୍ତିମ ଦିନ ?

Digitized by srujanika@gmail.com

- ୩ -

*ମଠ ପରିସର ଭିତରେ ବୈଦିକ ମହାବିଦ୍ୟାଳୟ ପ୍ରତିଷ୍ଠା ପଶ୍ଚାତରେ ସ୍ୱାମୀଜୀଙ୍କର ସ୍ପଷ୍ଟ ଆଭିମୁଖ୍ୟ ଜାଣିବା ପାଇଁ ଯେତେବେଳେ ସ୍ୱାମୀ ପ୍ରେମାନନ୍ଦ ପଚାରିଲେ, ସେତେବେଳେ ସ୍ୱାମୀଜୀ ତାଙ୍କୁ କହିଥିଲେ ଯେ ଆମର ଅନ୍ଧବିଶ୍ୱାସ ଓ କୁସଂସ୍କାର ବେଦ ଅଧ୍ୟୟନ ଦ୍ୱାରା ଦୂରିଭୂତ ହେବ । ଏଥିରୁ ଜଣାପଡୁଛି ଯେ ଭାରତବର୍ଷର ପ୍ରଚଳିତ ଅନ୍ଧବିଶ୍ୱାସ ଓ ବହୁ କୁସଂସ୍କାର ଭାରତୀୟ ମନ ଓ ଚେତନାକୁ ନଷ୍ଟ କରିଛି ଏବଂ ବେଦଠାରୁ ଦୂରେଇ ଯିବାରୁ ଏଭଳି ଅବସ୍ଥା ଭାରତୀୟଙ୍କୁ ଗ୍ରାସ କରିଛି । ବେଦ ଅଧ୍ୟୟନ ସେମାନଙ୍କୁ ମୁକ୍ତ କରିବ ।*

ଜଗଜ୍ଜନନୀ କାଳୀଙ୍କର ବିଶେଷ ପୂଜା କରିବା ପାଇଁ ସ୍ୱାମୀଜୀଙ୍କର ମନ ବଳିଲା । ଗୁରୁଭ୍ରାତା ସନ୍ୟାସୀ ସ୍ୱାମୀ ରାମକୃଷ୍ଣାନନ୍ଦଙ୍କର ପିତା ଶ୍ରୀଯୁକ୍ତ ଈଶ୍ୱରଚନ୍ଦ୍ର ଚକ୍ରବର୍ତ୍ତୀ ଯିଏ ଜଣେ ପ୍ରସିଦ୍ଧ କାଳୀସାଧକ, ସେଦିନ ମଠରେ ପହଞ୍ଚିବାରୁ ସ୍ୱାମୀଜୀଙ୍କ ମନରେ କାଳୀଙ୍କର ପୂଜା କରିବା ଇଚ୍ଛା ଜାଗ୍ରତ ହୋଇଥିଲା । ସ୍ୱାମୀ ଶୁଦ୍ଧାନନ୍ଦ ଓ ସ୍ୱାମୀ ବୋଦ୍ଧାନନ୍ଦଙ୍କୁ ପୂଜାସାମଗ୍ରୀ ଠିକ କରିବା ପାଇଁ ସେ ନିର୍ଦ୍ଦେଶ ଦେଲେ । ପରଦିନ ଏହି ପୂଜା ଅନୁଷ୍ଠିତ ହେବାର କାର୍ଯ୍ୟ ନିର୍ଘଣ୍ଟ ହେଲା । ଇତିମଧ୍ୟରେ ସ୍ୱାମୀଜୀ ଶୁକ୍ଲ - ଯଜୁର୍ବେଦ ଲାଇବ୍ରେରୀରୁ ଆଣିବା ପାଇଁ ସ୍ୱାମୀ ଶୁଦ୍ଧାନନ୍ଦଙ୍କୁ କହିଲେ । ସେ ଶୁକ୍ଳ ଯଜୁରବେଦ ପୁସ୍ତକ ଆଣିବା ପରେ ତାଙ୍କୁ "ସୁଷୁମ୍ନାଃ ସୂର୍ଯ୍ୟରଶ୍ମିଃ..." ମନ୍ତ୍ରଟି ବ୍ୟାଖ୍ୟାକାରଙ୍କ ଟୀପ୍ପଣୀ ସହ ପଢ଼ିବାକୁ କହିଲେ । କିନ୍ତୁ ସ୍ୱାମୀଜୀ ଶୁଣିବା ପରେ କହିଲେ ଯେ ସେ ବ୍ୟାଖ୍ୟାକାରଙ୍କ ଟୀକାସହ ଆଦୌ ଏକମତ ନୁହଁନ୍ତି ପରନ୍ତୁ ବୈଦିକ ଶାସ୍ତ୍ରର ନୂତନ ବ୍ୟାଖ୍ୟା କରିବା ପାଇଁ ସେ ଶିଷ୍ୟଙ୍କୁ ପରାମର୍ଶ ଦେଲେ ।

ଦିନ ଗୋଟାଏ ସମୟରେ ସ୍ୱାମୀଜୀ ବ୍ରହ୍ମଚାରୀଗଣଙ୍କ କୋଠରିକୁ ସହସା ପ୍ରବେଶ କଲେ । ସଂସ୍କୃତ ବ୍ୟାକରଣ ଅଧ୍ୟୟନ କ୍ଲାସରେ ଯୋଗ ଦେବାପାଇଁ ସେମାନଙ୍କୁ ଡାକିଲେ । ସମସ୍ତ ବ୍ରହ୍ମଚାରୀ କୋଠରିରେ ନିଜ ନିଜ ଆସନ ଗ୍ରହଣ କଲା ଉତ୍ତାରୁ ସେ ତିନି ଘଣ୍ଟା କାଳ ସଂସ୍କୃତ ବ୍ୟାକରଣ ପଢ଼ାଇଲେ । ପଢ଼ାଉଥିବା ସମୟରେ କେତେକ ଶବ୍ଦକୁ ନିଜ ଭାବଭଙ୍ଗୀରେ ବ୍ୟାଖ୍ୟା କରି ଶିଷ୍ୟଗଣଙ୍କୁ ହସରେ ବୁଡାଇ ଦେଉଥିଲେ । କ୍ଲାସ ଆଦୌ ବିରକ୍ତିକର ନ ଥିଲା । ତିନିଘଣ୍ଟା ସମୟ କିପରି ବିତିଯାଇଥିଲା, ବ୍ରହ୍ମଚାରୀମାନେ ଜାଣିପାରି ନ ଥିଲେ । ସେଦିନର ଶିକ୍ଷା ଦାନ ସବୁଠାରୁ ଉତ୍ସାହଜନକ ଥିଲା ବୋଲି ସେମାନଙ୍କର ଅନୁଭବ ହୋଇଥିଲା । କିନ୍ତୁ ବିଚରା ବାଳକମାନେ ଜାଣି ନ ଥିଲେ ଯେ ମାତ୍ର କେତେ ଘଣ୍ଟା ପରେ ସ୍ୱାମୀଜୀ ଆଉ ଇହଜଗତରେ ରହିବେ ନାହିଁ । ବ୍ୟାକରଣ କ୍ଲାସ ନେବାପରେ ଅବଶ୍ୟ ସ୍ୱାମୀଜୀ ସାମାନ୍ୟ କ୍ଲାନ୍ତ ଜଣାପଡୁଥିଲେ ।

Digitized by srujanika@gmail.com

ତତ୍‌ପଶ୍ଚାତେ ପ୍ରାୟ ଗୋଧୂଳି ବେଳେ ଗୁରୁଭ୍ରାତା ସ୍ୱାମୀ ପ୍ରେମାନନ୍ଦଙ୍କ ସହିତ ସ୍ୱାମୀଜୀ ଦୀର୍ଘ ପଦଚାରଣ ପାଇଁ ବାହାରିଲେ । ପଥ ମଧ୍ୟରେ ବହୁ ବିଷୟବସ୍ତୁ ଉପରେ ସେ ନିଜର ମତ ବିନିମୟ କରୁଥିଲେ । ବେଲୁଡ଼ ବଜାର ପର୍ଯ୍ୟନ୍ତ ସେଦିନ ସେ ଚାଲିଚାଲି ଯାଇଥିଲେ । ମଠ ପରିସର ଭିତରେ ବୈଦିକ ମହାବିଦ୍ୟାଳୟ ପ୍ରତିଷ୍ଠା ପଶ୍ଚାତରେ ସ୍ୱାମୀଜୀଙ୍କର ସ୍ପଷ୍ଟ ଆଭିମୁଖ୍ୟ ଜାଣିବା ପାଇଁ ଯେତେବେଳେ ସ୍ୱାମୀ ପ୍ରେମାନନ୍ଦ ପଚାରିଲେ, ସେତେବେଳେ ସ୍ୱାମୀଜୀ ତାଙ୍କୁ କହିଥିଲେ ଯେ ଆମର ଅନ୍ଧବିଶ୍ୱାସ ଓ କୁସଂସ୍କାର ବେଦ ଅଧ୍ୟୟନ ଦ୍ୱାରା ଦୂରିଭୂତ ହେବ । ଏଥିରୁ ଜଣାପଡୁଛି ଯେ ଭାରତବର୍ଷର ପ୍ରଚଳିତ ଅନ୍ଧବିଶ୍ୱାସ ଓ ବହୁ କୁସଂସ୍କାର ଭାରତୀୟ ମନ ଓ ଚେତନାକୁ ନଷ୍ଟ କରିଛି ଏବଂ ବେଦଠାରୁ ଦୂରେଇ ଯିବାରୁ ଏଭଳି ଅବସ୍ଥା ଭାରତୀୟଙ୍କୁ ଗ୍ରାସ କରିଛି । ବେଦ ଅଧ୍ୟୟନ ସେମାନଙ୍କୁ ମୁକ୍ତ କରିବ ।

ଗୋଧୂଳି ଭ୍ରମଣରୁ ପ୍ରତ୍ୟାବର୍ତ୍ତନ କରି ବେଲୁଡ଼ ମଠର ସନ୍ନ୍ୟାସୀମାନଙ୍କ ସହ କିଛି ସମୟ ଆଳାପାଲୋଚନା କଲେ । କେହି ଜାଣିପାରି ନ ଥିଲେ ଯେ ସ୍ୱାମୀଜୀଙ୍କର ମହାସମାଧି ଅତି ନିକଟତର ହେଉଛି । ସ୍ୱାମୀଜୀ ବି ସେମାନଙ୍କୁ ଜାଣିବାର ଅବସର ଦେଇ ନ ଥିଲେ । ସେଦିନର ତାଙ୍କର ଆଳାପ ଆଲୋଚନା ଏତେ ଶ୍ରୁତିମଧୁର ଥିଲା, ସନ୍ନ୍ୟାସୀଗଣ ଆଚମ୍ବିତ ହୋଇଯାଇଥିଲେ । ଜାତି ଓ ରାଷ୍ଟ୍ରଗୁଡ଼ିକର ଉତ୍ଥାନ ଓ ପତନ ଅତୀତରେ କିପରି ହୋଇଥିଲା, ତାହାର ଏକ ସଂକ୍ଷିପ୍ତ ବିବରଣୀ ଆଳାପାଲୋଚନାରେ ସ୍ଥାନ ମଣ୍ଡିତ କରିଥିଲା । ସେ ପୂର୍ବାପେକ୍ଷା ଖୁବ୍ ଖୁସୀ ଓ ସ୍ୱାଧୀନ ଦେଖାଯାଉଥିଲେ, ଯାହା ବିଗତ ଛଅମାସ ଭିତରେ ଏଭଳି ତାଙ୍କୁ କେହି ଦେଖି ନ ଥିଲେ ।

- ୪ -

*"ଜୟ ଶ୍ରୀରାମକୃଷ୍ଣ, ଜୟ ଶ୍ରୀରାମକୃଷ୍ଣ ।" ସେମାନଙ୍କର ବିଶ୍ୱାସ ଥିଲା ଯେ ସ୍ୱାମୀଜୀ ବୋଧହୁଏ ଗଭୀର ସମାଧିମଗ୍ନ, ଶ୍ରୀରାମକୃଷ୍ଣଙ୍କର ନାମ ଉଚ୍ଚାରଣ ତାଙ୍କ ଚେତା ଫେରାଇ ଆଣିବ । କିନ୍ତୁ ବାରମ୍ବାର ନାମୋଚ୍ଚାରଣ ସତ୍ତ୍ୱେ, ସ୍ୱାମୀଜୀ ଅଟଳ ମହାମେରୁ ସଦୃଶ ଥିଲେ ଶୟନରତ ।*

ସନ୍ଧ୍ୟାବେଳକୁ ସ୍ୱାମୀଜୀଙ୍କର ମନ ବହିର୍ଜଗତରୁ ପ୍ରାୟତଃ ଛାଡ଼ଛାଡ଼ ହୋଇଯାଇଥିଲା । ସେ ନିଜ କୋଠରିକୁ ପ୍ରବେଶ କଲେ, କିନ୍ତୁ ସେ ନ ଡାକିବା ପର୍ଯ୍ୟନ୍ତ ତାଙ୍କ କୋଠରିକୁ କେହି ପ୍ରବେଶ କରିବେ ନାହିଁ ବୋଲି ନିର୍ଦ୍ଦେଶ ଦେଇଥିଲେ । ମଠର ସନ୍ଧ୍ୟା ଘଣ୍ଟା ବାଜିଲା, କିନ୍ତୁ ସ୍ୱାମୀଜୀ ଗଙ୍ଗା ଆଡ଼କୁ ମୁହଁ କରି ଧ୍ୟାନମଗ୍ନ ହେଲେ । ସେତେବେଳେ ସାତଟା ବାଜିଥିଲା । ଘଣ୍ଟାଏ ପରେ ଜଣେ ଶିଷ୍ୟ ଯିଏ ସ୍ୱାମୀଜୀଙ୍କର କୋଠରିର ବାରଣ୍ଡାରେ ଜଗି ବସିଥିଲେ, ହଠାତ୍

Digitized by srujanika@gmail.com

ଶୁଣିଲେ ସ୍ୱାମୀଜୀଙ୍କ ଡାକ । ସେ କ୍ଷିପ୍ର ପାଦରେ କୋଠରି ଭିତରେ ପ୍ରବେଶ କଲେ ଏବଂ ତାଙ୍କ ମସ୍ତକକୁ ବିଞ୍ଚିଦେବା ପାଇଁ ସ୍ୱାମୀଜୀ କହିଲେ । ସ୍ୱାମୀଜୀ ଶଯ୍ୟାରେ ଶୟନରତ ଏବଂ ରୁଦ୍ରାକ୍ଷମାଳା ତାଙ୍କ ହାତରେ ଝୁଲୁଥିଲା ।

ସେବକ ଶିଷ୍ୟ ତାଙ୍କ ମସ୍ତକକୁ ବିଞ୍ଚି ଦେଉଥିବା ବେଳେ ଭାବିଲେ ଯେ ସ୍ୱାମୀଜୀ ଧ୍ୟାନପରେ କ୍ଳାନ୍ତ ହୋଇ ବୋଧହୁଏ ଟିକିଏ ଶୋଇ ପଡ଼ିଛନ୍ତି । କିନ୍ତୁ ପର ମୁହୂର୍ତ୍ତରେ ସେବକକୁ କହିଲେ, "ପୁତ୍ର ମୋ ମୁଣ୍ଡକୁ ବିଞ୍ଚିଦେବା ଆବଶ୍ୟକ ନାହିଁ । ବରଂ ତୁମେ ଟିକିଏ ମୋ ତଳିପାକୁ ଘଷିଦିଅ ।" ସେବକ ତାଙ୍କ ପାଦ ଘଷିଦେବା ସମୟରେ ସ୍ୱାମୀଜୀ ଶୋଇପଡ଼ିଲେ ।

ଏଠାରେ ସ୍ମରଣଯୋଗ୍ୟ ଯେ ସ୍ୱାମୀଜୀ ତଳେ ଏକ ସତରଞ୍ଜି ଉପରେ ଶୋଇଥିଲେ । ଘଣ୍ଟାଏ ପରେ ସେ କଡ଼ ଲେଉଟାଇଲେ ଏବଂ କିୟତ ମୂହୂର୍ତ୍ତପରେ ଶିଶୁ ଯେଭଳି ସ୍ୱପ୍ନ ଦେଖି ନିଦରେ କାନ୍ଦି ଉଠେ, ଠିକ୍ ସେପରି ସ୍ୱାମୀଜୀ କାନ୍ଦି ଉଠିଲେ । ତତ୍‌ପଶ୍ଚାତେ ଏକ ଗଭୀର ନିଃଶ୍ୱାସ ନିର୍ଗତ ହେଲା ନାଶାପୁଟରୁ, ଛାତି ଉତ୍‌ଫଣିତ ହେଲା, ତକିଆରୁ ମୁଣ୍ଡ ଗଡ଼ିପଡ଼ିଲା । ତା'ପରେ ପୁନଶ୍ଚ ଏକ ଦୀର୍ଘନିଃଶ୍ୱାସ ନିର୍ଗତ କରି ସ୍ୱାମୀଜୀ ଶାନ୍ତ ଓ ନୀରବ ହୋଇଗଲେ । କ୍ଳାନ୍ତ ଶାନ୍ତ ଶିଶୁ ଜଗଜ୍ଜନନୀଙ୍କ କୋଳରେ ଶୋଇପଡ଼ିଲେ ।

ରାତି ନ'ଟା ବାଜିବାରୁ ମଠରୁ ନୈଶ ଭୋଜନର ଘଣ୍ଟା ବାଜି ଉଠିଲା । ଉପରତାଲାସ୍ଥ ସ୍ୱାମୀଜୀଙ୍କ କୋଠରିରୁ ସେବକ ତଳକୁ ଓହ୍ଲାଇ ଆସି ସମ୍ବାଦ ଦେଲେ । ସ୍ୱାମୀ ପ୍ରେମାନନ୍ଦ ଓ ସ୍ୱାମୀ ନିଶ୍ଚଳାନନ୍ଦ ହଠାତ୍ ସ୍ୱାମୀଜୀଙ୍କ କକ୍ଷରେ ଉପନୀତ ହୋଇ ଉଚ୍ଚସ୍ୱରରେ ଗାଇ ଉଠିଲେ "ଜୟ ଶ୍ରୀରାମକୃଷ୍ଣ, ଜୟ ଶ୍ରୀରାମକୃଷ୍ଣ ।" ସେମାନଙ୍କର ବିଶ୍ୱାସ ଥିଲା ଯେ ସ୍ୱାମୀଜୀ ବୋଧହୁଏ ଗଭୀର ସମାଧିମଗ୍ନ, ଶ୍ରୀରାମକୃଷ୍ଣଙ୍କର ନାମ ଉଚ୍ଚାରଣ ତାଙ୍କ ଚେତା ଫେରାଇ ଆଣିବ । କିନ୍ତୁ ବାରମ୍ବାର ନାମୋଚ୍ଚାରଣ ସତ୍ତ୍ୱେ, ସ୍ୱାମୀଜୀ ଅଟଳ ମହାମେରୁ ସଦୃଶ ଥିଲେ ଶୟନରତ । ସ୍ୱାମୀ ଅଦ୍ୱୈତାନନ୍ଦ ଓ ସ୍ୱାମୀ ବୋଧାନନ୍ଦ ଇତିମଧ୍ୟରେ ସେଠାରେ ପହଞ୍ଚିଗଲେ । ତାଙ୍କର ନାଡ଼ିକୁ ପରୀକ୍ଷା ନିରୀକ୍ଷା କଲାରୁ, ସେମାନେ ଉଚ୍ଚ ସ୍ୱରରେ କାନ୍ଦି ଉଠିଲେ । ସ୍ୱାମୀ ଅଦ୍ୱୈତାନନ୍ଦ ସହସା ସ୍ୱାମୀ ନିର୍ଭୟାନନନ୍ଦଙ୍କୁ କହିଉଠିଲେ, "ହେ ଭଗବାନ, କ'ଣ ଆଉ ଦେଖୁଛ, ଶୀଘ୍ର ଯାଇ ଡାକ୍ତର ମହେନ୍ଦ୍ରନାଥ ମଜୁମଦାରଙ୍କୁ କଲିକତାରୁ ଡାକିଆଣ ।"

ଶିଷ୍ୟଗଣ ଗଙ୍ଗାନଦୀ ପାର ହୋଇ ଦୌଡ଼ିଗଲେ କଲିକତା । ସ୍ୱାମୀ ବ୍ରହ୍ମାନନ୍ଦ ଓ ସ୍ୱାମୀ ସାରଦାନନ୍ଦ ସେଦିନ କଲିକତାରେ ରହିଥିଲେ । ସେମାନଙ୍କ ନିକଟକୁ ଖବର ପଠାଗଲା । ସେମାନେ ରାତି ସାଢ଼େ ଦଶଟା ସୁଦ୍ଧା ମଠରେ ପହଞ୍ଚିଗଲେ । ଡାକ୍ତର ମଜୁମଦାର ସ୍ୱାମୀଜୀଙ୍କର ଦେହକୁ ପରୀକ୍ଷା କରିବା ସହ କୃତ୍ରିମ ଶ୍ୱାସ ପ୍ରକ୍ରିୟା ଆରମ୍ଭ କରିଦେଲେ । କିନ୍ତୁ ହାୟ, କିଛି ଫଳ ମିଳିଲା ନାହିଁ । ଡାକ୍ତର ବ୍ୟଥିତ କଣ୍ଠରେ ଘୋଷଣା କଲେ - ସ୍ୱାମୀଜୀଙ୍କର ହୃଦ୍‌କ୍ରିୟା

Digitized by srujanika@gmail.com

ବନ୍ଦ ହୋଇଯିବାରୁ ତାଙ୍କର ଦେହାନ୍ତ ହୋଇଛି । ଦୁଇ ଭ୍ରୂଲତା ମଧ୍ୟଭାଗରେ ନିବଦ୍ଧ ହୋଇଥିଲା ତାଙ୍କର ଚକ୍ଷୁଯୁଗଳ । ସ୍ମିତହାସ୍ୟ ଲାଖି ଯାଇଥିଲା ସ୍ଥିର ମୁଖମଣ୍ଡଳରେ, ଶାଶ୍ୱତ ନିରବତା ରାଜତ୍ୱ କରୁଥିଲା ତାଙ୍କର ଶାନ୍ତ ଓଷ୍ଠରେ । ଯୋଗଶାସ୍ତ୍ର ଅନୁସାରେ, ସ୍ୱାମୀଜୀ ମସ୍ତକ ଉପର ସହସ୍ର ଶୀର୍ଷା ସ୍ଥାନରୁ ନିଜର ପ୍ରାଣବାୟୁକୁ ଉଡ଼ାଇ ନେଇଥିଲେ, ଯା'ଫଳରେ ତାଙ୍କର ନାଶାପୁଟ, ଚକ୍ଷୁ ଓ ଓଷ୍ଠ ରକ୍ତବର୍ଣ୍ଣ ଧାରଣା କରିଥିଲା ଏବଂ ସାମାନ୍ୟତମ ରକ୍ତକଣିକାର ଚିହ୍ନ ବି ଦୃଶ୍ୟମାନ ହେଉଥିଲା ।

୧୯୦୨ ଜୁଲାଇ ୪ ତାରିଖ ଶୁକ୍ରବାର ରାତି ୯.୧୫ ଘଟିକା ସମୟରେ ସ୍ୱାମୀ ବିବେକାନନ୍ଦ ବେଲୁଡ଼ ମଠରେ ଇହଲୀଳା ସରଣ କଲେ । ବୟସ ମାତ୍ର ଥିଲା ୩୯ ବର୍ଷ ୫ ମାସ ଏବଂ ୨୪ ଦିନ । ସେ ଯାହା କହିଥିଲେ ଚାଳିଶବର୍ଷ ବୟସରେ ସେ ପଦାର୍ପଣ କରିପାରିବେ ନାହିଁ, ତାହାହିଁ ହେଲା । ବେଲୁଡ଼ ମଠ ରାତ୍ରର ଘନ ଅନ୍ଧକାରରେ ନିର୍ବାକ୍ ହୋଇଗଲା, ସନ୍ନ୍ୟାସୀ, ବ୍ରହ୍ମଚାରୀ ଓ ସେବକଗଣ ପରାକ୍ରମୀ ସିଂହଙ୍କର ଭୂମିଶାୟିତ ସ୍ଥିର ଶରୀରକୁ କେବଳ ଚାହିଁ ରହିଥିଲେ ।

ପ୍ରଭାତ ଧରାପୃଷ୍ଠରେ ଅବତରଣ କଲା । ହଜାର ହଜାର ସଂଖ୍ୟାରେ ଭକ୍ତ, ଶୁଭେଚ୍ଛୁ ଓ ସାଧାରଣ ଜନତାଙ୍କର ବେଲୁଡ଼ ମଠକୁ ସୁଅ ଛୁଟିଲା । ଭଗିନୀ ନିବେଦିତା ବାଳିକାଟିଏ ଭଳି କାନ୍ଦୁଥିଲେ । ସେ ସକାଳେ ମଠରେ ପହଞ୍ଚି ସ୍ୱାମୀଜୀଙ୍କ ମର ଶରୀର ପାଖରେବସି ତାଙ୍କୁ ବିଞ୍ଚି ଦେଉଥିଲେ । ଚତୁର୍ଦ୍ଦିଗରେ ଶୋକର ଛାୟା । ବହୁ ବୁଦ୍ଧିଜୀବୀ ତଥା ସାଧାରଣ ଜନତା ପୁଷ୍ପଗୁଚ୍ଛ ପ୍ରଦାନ କରି ବୀର ସନ୍ନ୍ୟାସୀଙ୍କୁ ଶେଷ ସମ୍ମାନ ପ୍ରଦାନ କଲେ । ବିଦେଶକୁ ତାର ପଠାଗଲା । ଦେଶର ସମସ୍ତ କୋଣ ଅନୁକୋଣରେ ଦାବାଗ୍ନି ସଦୃଶ ଏହି ଦୁଃସମ୍ବାଦ ବ୍ୟାପୀଯିବାରୁ ସମସ୍ତେ ହତ୍‌ବାକ୍ ହୋଇଗଲେ । ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣ ନୀରବତା ଅବଲମ୍ବନ କରି ପ୍ରିୟ ନେତାଙ୍କର ସ୍ମୃତିଚାରଣ କେବଳ ମନେ ମନେ କରୁଥିଲେ ।

ଅପରାହ୍ଣରେ ସ୍ୱାମୀଜୀଙ୍କର ମର ଶରୀରକୁ ଉପରତାଲାରୁ ତଳକୁ ଅଣାଗଲା । ଗୋଟିଏ ଖଟରେ ତାଙ୍କୁ ଶୁଆଇ ଦିଆଗଲା । ନୂତନ ଗୈରିକ ବସ୍ତ୍ରରେ ତାଙ୍କୁ ଭୂଷିତ କରାଗଲା । ପାଦରେ ଅଳତା ଭକ୍ତମାନେ ପିନ୍ଧାଇ ଦେଲେ । ଫୁଲପତ୍ରରେ ସଜ୍ଜିତ ହେଲା ଖଟ । ଝୁଣା, ଦୀପ, ଧୂପରେ ବାୟୁମଣ୍ଡଳ ହେଲା ଧୂମାୟିତ । ବୈଦିକ ମନ୍ତ୍ରଧ୍ୱନି ହେଉଥିଲା ଗୁଞ୍ଜରିତ । ଜଣ ଜଣ କରି ପ୍ରିୟନେତାଙ୍କୁ ପ୍ରଣାମ କରୁଥିଲେ । ମଠର ବିଶାଳ ପ୍ରାଙ୍ଗଣରେ ଶୋଭାଯାତ୍ରାରେ ହଜାର ହଜାର ଜନତା ସ୍ୱାମୀଜୀଙ୍କୁ ବୁଲାଇ ସେହି ବିଲ୍ୱବୃକ୍ଷ ନିକଟରେ ଚିହ୍ନିତ ସ୍ଥାନରେ ତାଙ୍କର ଅନ୍ତିମ ସଂସ୍କାର ପାଇଁ ଖଟକୁ ରଖାଗଲା ।

Digitized by srujanika@gmail.com

- ୫ -

*ମୁଁ ଶରୀର ଭିତରୁ ବାହାରିଯିବି - ଏହି ଶରୀରକୁ ଏକ ଜୀର୍ଣ୍ଣଶୀର୍ଣ୍ଣ ବସ୍ତ୍ର ଭଳି ପରିତ୍ୟାଗ କରିବି । କିନ୍ତୁ ମୋର କାର୍ଯ୍ୟ ସମାପ୍ତ କରିବି ନାହିଁ, ଯେପର୍ଯ୍ୟନ୍ତ ସମଗ୍ର ବିଶ୍ୱ ନ ଜାଣିଛି ଯେ ଈଶ୍ୱରଙ୍କ ସହିତ ସମସ୍ତେ ଏକ ଓ ଅଭିନ୍ନ, ସେପର୍ଯ୍ୟନ୍ତ ବିଶ୍ୱର ପ୍ରତ୍ୟେକ ବ୍ୟକ୍ତିଙ୍କୁ ମୁଁ ପ୍ରେରଣା ପ୍ରଦାନ କରିବି । ମୁଁ ବାରମ୍ବାର ଜନ୍ମଗ୍ରହଣ କରି ଅଶେଷ ଦୁଃଖ ନିର୍ଯ୍ୟାତନା ସହିବି ଏବଂ ମୁଁ ଯେଉଁ ଏକ ଈଶ୍ୱରଙ୍କୁ ବିଶ୍ୱାସ କରେ, ତାଙ୍କର କେବଳ ପୂଜା ଓ ଉପାସନା କରିବି - ସମସ୍ତ ଆତ୍ମାର ସମଷ୍ଟି ହିଁ ସେହି ଏକ ଈଶ୍ୱର ।*

ଚନ୍ଦନକାଷ୍ଠ ଭାଡ଼ି ସଜ୍ଜିତ । ଝୁଣା, ଧୂପ, ଓ ଦୀପରେ ସୁଗନ୍ଧିତ ସ୍ଥାନ । ମରଶରୀର ଭାଡ଼ି ଉପରେ ଥୁଆହେଲା । ପୂଜା, ପାଠ ଓ ଆଳତି ପରେ ଅଗ୍ନି ସଂଯୋଗ କରାହେଲା । "ଜୟ ଶ୍ରୀଗୁରୁ ମହାରାଜ କି ଜୟ, ଜୟ ଶ୍ରୀ ସ୍ୱାମୀଜୀ ମହାରାଜ କି ଜୟ, ଜୟ ଶ୍ରୀ ସନାତନ ଧର୍ମ କି ଜୟ" ସକଳ ସନ୍ନ୍ୟାସୀ ଓ ବ୍ରହ୍ମଚାରୀଗଣଙ୍କ ଦ୍ୱାରା ହେଉଥିଲା ଉଚ୍ଚାରିତ । ବେଦମନ୍ତ୍ର ଉଚ୍ଚାରଣରେ ସ୍ଥାନ ଦୁଲୁକୁ ଥିଲା । ସବୁରି ଆଖିରେ ଲୁହ, ଗଙ୍ଗା କୁଳୁକୁଳୁ ନାଦରେ ପ୍ରବାହିତ, ଅଗ୍ନିର ହୁତାଶନ ଉପରେ ଝୁଲନ୍ତ ଅନନ୍ତ ଆକାଶ ନିର୍ବାକ୍ ଚକ୍ଷୁରେ କେବଳ ଚାହିଁଥିଲା ।

ଭଗ୍ନୀ ନିବେଦିତା ଶିଶୁଟିଏ ଭଳି ଭୂମିରେ ଗଡ଼ି ଗଡ଼ି କେବଳ କାନ୍ଦୁଥିଲେ । ହଠାତ୍ ପବିତ୍ର ଜୁଇ ମଧ୍ୟରୁ ଖଣ୍ଡିଏ ଗେରୁଆ କନା ପବନରେ ଉଡ଼ି ଆସି ତାଙ୍କ କୋଳରେ ପତିତ ହେଲା । ହାତ ମୁଠାରେ ତାକୁ ଜାବୁଡ଼ି ଧରି ଆହୁରି ଉଚ୍ଚ ସ୍ୱରରେ କ୍ରନ୍ଦନ କରୁଥିଲେ ହେଁ ଏହି ଗେରୁଆ ବସ୍ତ୍ରର ଅଂଶ ଯେ ତାଙ୍କପାଇଁ ଏକ ଆଶୀର୍ବାଦ ତାହା ସେ ଅନୁଭବ କରିପାରିଥିଲେ ।

ଅଗ୍ନିର ଜ୍ୱାଳାମୟ ଶିଖା ଚତୁଃପାର୍ଶ୍ୱରେ ଅଗଣିତ ଜନତା କେବଳ ନୀରବଦ୍ରଷ୍ଟା ହୋଇ ଠିଆ ହୋଇଥିଲେ । ଗୁରୁଭ୍ରାତା ସନ୍ନ୍ୟାସୀଗଣଙ୍କ ମନ ଓ ଚେତନାରେ ନିରନ୍ତର ଝଙ୍କୃରିତ ହେଉଥିଲା ସ୍ୱାମୀଜୀଙ୍କ ସେହି ପ୍ରେରଣାପୂର୍ଣ୍ଣ ବାଣୀ - ମୁଁ ଶରୀର ଭିତରୁ ବାହାରିଯିବି - ଏହି ଶରୀରକୁ ଏକ ଜୀର୍ଣ୍ଣଶୀର୍ଣ୍ଣ ବସ୍ତ୍ର ଭଳି ପରିତ୍ୟାଗ କରିବି । କିନ୍ତୁ ମୋର କାର୍ଯ୍ୟ ସମାପ୍ତ କରିବି ନାହିଁ, ଯେପର୍ଯ୍ୟନ୍ତ ସମଗ୍ର ବିଶ୍ୱ ନ ଜାଣିଛି ଯେ ଈଶ୍ୱରଙ୍କ ସହିତ ସମସ୍ତେ ଏକ ଓ ଅଭିନ୍ନ, ସେପର୍ଯ୍ୟନ୍ତ ବିଶ୍ୱର ପ୍ରତ୍ୟେକ ବ୍ୟକ୍ତିଙ୍କୁ ମୁଁ ପ୍ରେରଣା ପ୍ରଦାନ କରିବି । ମୁଁ ବାରମ୍ବାର ଜନ୍ମଗ୍ରହଣ କରି ଅଶେଷ ଦୁଃଖ ନିର୍ଯ୍ୟାତନା ସହିବି ଏବଂ ମୁଁ ଯେଉଁ ଏକ ଈଶ୍ୱରଙ୍କୁ ବିଶ୍ୱାସ କରେ, ତାଙ୍କର କେବଳ ପୂଜା ଓ ଉପାସନା କରିବି - ସମସ୍ତ ଆତ୍ମାର ସମଷ୍ଟି ହିଁ ସେହି ଏକ ଈଶ୍ୱର ।

ଯେଉଁ ଅବ୍ୟକ୍ତ ସ୍ୱର ଶ୍ରୀରାମକୃଷ୍ଣଙ୍କ ତପସ୍ୟା ଓ ସାଧନାବଳରେ ଆକୃତି ଧାରଣ କରିଥିଲେ, ସେହି ଆକୃତି ଅଗ୍ନିର ହୁତାଶନରେ ମୁଠାଏ ପାଉଁଶରେ ରୂପାନ୍ତରିତ ହୋଇଗଲେ । କିନ୍ତୁ ସମଗ୍ର ମାନବଜାତି ନିମନ୍ତେ ସେ ପ୍ରେରଣାପୂର୍ଣ୍ଣ ଆକୃତିବିହୀନ ସ୍ୱର ହୋଇ ରହିଗଲେ ।



Digitized by srujanika@gmail.com



ସ୍ୱାମୀ ବିବେକାନନ୍ଦଙ୍କର ଅଣଚାଳିଶ ବର୍ଷର ସ୍ୱଳ୍ପ ଜୀବନ ଭିତରେ ଆଧୁନିକ ଭାରତର ଦେଶପ୍ରେମୀ-ସନ୍ଥ ଭାବେ ସମଗ୍ର ବିଶ୍ୱରେ ସେ ସର୍ବଆଦୃତ ଓ ସମ୍ମାନୀତ ହୋଇଥିଲେ। ତାଙ୍କ ସମ୍ବନ୍ଧରେ ବହୁ ପୁସ୍ତକ ରଚିତ ହୋଇଛି ଏବଂ ବହୁ ଲୋକଙ୍କ ଭିତରେ ସେ ଏକ ପରିଚିତ ବ୍ୟକ୍ତିତ୍ୱ, ତଥାପି ବର୍ତ୍ତମାନର ସମସ୍ୟା ପରିପ୍ରେକ୍ଷୀରେ ତାଙ୍କର ପ୍ରାସଙ୍ଗିକତାକୁ ବହୁତ କମ୍ ଲୋକ ବୁଝନ୍ତି। ବହୁ ସମସ୍ୟାରେ ଛନ୍ଦିପଡ଼ିଥିବା ମଣିଷ ଯଦି ତାଙ୍କୁ ପଢ଼ି ବୁଝିପାରିବ, ତେବେ ବର୍ତ୍ତମାନ ଭିତରେ ଜଳ ଜଳ ଦେଖିପାରିବ ତାଙ୍କର ପ୍ରାସଙ୍ଗିକତା ; ବୁଝିଯିବ ସେ ନିଜକୁ ଏବଂ ବୁଝିଯିବ ସର୍ବଧର୍ମ ସମନ୍ୱୟର ସାରାଂଶ 'ଅଦ୍ୱୈତ ବେଦାନ୍ତ' କାହିଁକିନା ସେ ସ୍ୱୟଂ ଥିଲେ ଜୀବନ୍ତ ବେଦାନ୍ତର ମଣିଷଟିଏ।



ଶ୍ରୀ ମନୋଜ କୁମାର ମହାପାତ୍ର ଜନ୍ମ ୧୯୫୦, ବର୍ତ୍ତମାନ ଇମ୍ଫା ଶିଳ୍ପ ଗୋଷ୍ଠୀରେ ଜେନେରାଲ୍ ମ୍ୟାନେଜର, ମାନବ ସମ୍ବଳ ପଦବୀରେ କାର୍ଯ୍ୟରତ ଏବଂ ଅଖିଳ ଭାରତ ବିବେକାନନ୍ଦ ଯୁବ ମହାମଣ୍ଡଳ, ଓଡ଼ିଶା ଶାଖାର ଉପସଭାପତି। ସେ କେବଳ ଜଣେ ସୁସାହିତ୍ୟିକ ନୁହନ୍ତି ବରଂ ସୁବକ୍ତା, ସମାଜସେବୀ ଓ ଆଧ୍ୟାତ୍ମିକ ମାର୍ଗର ସାଧକ ମଧ୍ୟ। ଓଡ଼ିଆ ଭାଷାରେ ସେ ଏ.ପି.ଜେ. ଅବଦୁଲ କଲାମଙ୍କର ସମସ୍ତ ପୁସ୍ତକର ଅନୁବାଦ କରିଛନ୍ତି ଯଥା :- ଅଗ୍ନିର ଡେଣା, ପ୍ରଜ୍ୱଳିତ ମନ, ଭାରତ ୨୦୨୦, ଏକ ଶକ୍ତିଶାଳୀ ବିକଶିତ ଭାରତର ସ୍ୱପ୍ନ, ଅଦମ୍ୟ ଉତ୍ସାହ, ମାର୍ଗଦର୍ଶୀ, ମୋ ଯାତ୍ରା, କଲାମଙ୍କୁ ପିଲାଙ୍କ ପ୍ରଶ୍ନ। ତାଙ୍କର "ମା" ସାରଦାଙ୍କ ଜୀବନୀ ଏବଂ ଗୌତମ ବୁଦ୍ଧଙ୍କ ଚରିତ ଉପନ୍ୟାସ "ନିର୍ବାଣ" ବିଶେଷ ଆଦୃତ। ଏହା ବ୍ୟତିତ ସେ ଋଷି ମଣିଷ କଲାମ, ସମର୍ଥ ଉପନ୍ୟାସ ଏବଂ ସ୍ୱର୍ଣ୍ଣପ୍ରଭା, ଯନ୍ତ୍ରଣାର ଅନ୍ୟନାମ, କାଳିସୀ କନ୍ୟା, କାମ ତୃଷ୍ଣା, ତୁମ ପାଇଁ ଗପ ଗଳ୍ପ ସବୁ ରଚନା କରିଛନ୍ତି।

Price : Rs. 225/-



ନିଉ ଏଜ୍ ପବ୍ଲିକେଶନ୍ସ

ISBN -81-88337-71-4




Digitized by srujanika@gmail.com